# ଶ୍ରୀମଦ୍ଭଗ ... ୀତା

## କର୍ମ...

ମନ୍ଦଃ କବିଯଶଃ-ପ୍ରାର୍ଥୀ ଗମିଷ୍ୟାମ୍ୟୁପହାସ୍ୟତାମ୍,
ପ୍ରାଂଶୁଲଭ୍ୟେ ଫଳେ ଲୋଭାଦୁଦ୍‌ବାହୁରିବ ବାମନଃ ।
କାଳିଦାସଃ

ପ... ୀ ଚୁଳମଣି ଦାସ

ପ୍ରକାଶକ

ଶ୍ରୀ ଉ...ାଚରଣ ମହାନ୍ତି

ମେ...ର, ... ରଷ୍ଟ ...ାଉସ୍



ପ୍ରଥମ ସଂସ୍କରଣ

୧୯୫୫

ମୂଲ୍ୟ ଟ ୯୮ ନଅ ଟଙ୍କା ମାତ୍ର

ବନ୍ଧାଇ ଖର୍ଚ୍ଚ ଟ ୧୮

ମୁଦ୍ରାକର

ଶ୍ରୀ ଉମାଚରଣ ମହାନ୍ତି

କଟକ ପବ୍ଲିଶିଂ ପ୍ରେସ,

କଟକ

# ଉତ୍ସର୍ଗ ପତ୍ରମ୍



ଯତ୍ କରୋଷି ଯଦଶ୍ନାସି
ଯଜ୍ଜୁହୋଷି ଦଦାସି ଯତ୍
ଯତ୍ ତପସ୍ୟସି କୌନ୍ତେୟ
ତତ୍କୁରୁଷ୍ୱ ମଦର୍ପଣମ୍ । ଗୀ: ୯ । ୨୭

ଶ୍ରୀକୃଷ୍ଣାର୍ପଣମସ୍ତୁ

# ଆଭାଷ

ଶ୍ରୀମଦ୍‌ଭଗବଦ୍‌ଗୀତା ସନାତନ ବୈଦିକ ଧର୍ମର ଗୋଟିଏ ବଶିଷ୍ଟ ଗ୍ରନ୍ଥ । କେବଳ ଏହି ଧର୍ମଗ୍ରନ୍ଥଟିକୁ ଉତ୍ତମରୂପେ ଆଲୋଚନା କଲେ ଧର୍ମଗ୍ରନ୍ଥର ସବୁ ଗୂଢ଼ରହସ୍ୟ ଧର୍ମପିପାସୁଙ୍କ ହୃଦୟରେ ପ୍ରକାଶିତ ହେବ । ଏ ଯୁଗରେ ହିନ୍ଦୀ, ବଙ୍ଗଳା, ମରହଟ୍ଟୀ ପ୍ରଭୃତି ଭାରତୀୟ ବିଭିନ୍ନ ଆର୍ଯ୍ୟଭାଷାରେ ଗୀତାର ଅନେକ ସଂସ୍କରଣ ପ୍ରକାଶିତ ହୋଇଅଛି । ମାତ୍ର ଆମ ଓଡ଼ିଆଭାଷାରେ ଆଲୋଚନାମୂଳକ ଟୀକା, ଟିପ୍ପଣୀ ସମ୍ବଳିତ ଗୀତା-ଗ୍ରନ୍ଥ ୨।୩ ଖଣ୍ଡରୁ ଅଧିକ ପ୍ରକାଶିତ ହୋଇ ନାହିଁ । ସେହି ଅଭାବ ଦୂର କରିବା ପାଇଁ ମୋର ଏହି କ୍ଷୀଣ ଉଦ୍ୟମ । ଏଥିରେ ମୁଁ କେତେଦୂର କୃତକାର୍ଯ୍ୟ ହୋଇଅଛି, ଉତ୍କଳୀୟ ସୁଧୀ-ସମାଜ ବିଚାର କରିବେ ।

ଗୀତା ଜ୍ଞାନମୂଳକ ଭକ୍ତିପ୍ରଧାନ କର୍ମଯୋଗ ଶାସ୍ତ୍ର । ସଂସ୍କୃତ ଭାଷାରେ ଲିଖିତ ଗୀତାର ଯେତେ ଭାଷ୍ୟ ଓ ଟୀକା ଏ ଯୁଗରେ ମିଳେ, ତନ୍ମଧ୍ୟରେ ଆଚାର୍ଯ୍ୟ ଶଙ୍କରଙ୍କର ଭାଷ୍ୟ ହିଁ ପ୍ରାଚୀନତମ । ଶଙ୍କର ଜ୍ଞାନବାଦୀ ସନ୍ନ୍ୟାସୀ, ତେଣୁ ତାଙ୍କର ଭାଷ୍ୟ ଯେ ଜ୍ଞାନଯୋଗମୂଳକ ହେବ—ଏହା ଅତି ସ୍ୱାଭାବିକ । ଶଙ୍କରଙ୍କ ପରବର୍ତ୍ତୀ ଭାରତର ବିଭିନ୍ନ ଅଞ୍ଚଳର ଯେଉଁ ପଣ୍ଡିତମାନେ ଗୀତାର ଭାଷ୍ୟ ଓ ଟୀକା ପ୍ରଣୟନ କରିଅଛନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ ଶଙ୍କରଭାଷ୍ୟାନୁବର୍ତ୍ତୀ । ପୂଜ୍ୟପାଦ ଶ୍ରୀଧରସ୍ୱାମୀ ଶଙ୍କର ମତାବଲମ୍ବୀ ହେଲେହେଁ, ଗୀତା ଯେ ଜ୍ଞାନମୂଳକ ଭକ୍ତିପ୍ରଧାନ ଗ୍ରନ୍ଥ ଏହା ତାଙ୍କ ଟୀକାରେ ସ୍ପଷ୍ଟରୂପେ ସୂଚିତ ଅଛନ୍ତି । ତାଙ୍କର ଟୀକା ଯେପରି ସରଳ ଓ ସହଜବୋଧ ସେହିପରି ସ୍ୱାଧୀନମତଦ୍ୟୋତକ, ସେହିହେତୁରୁ ଏ ଦେଶର ପଣ୍ଡିତମାନଙ୍କ ମଧ୍ୟରେ ତାହାର ଆଦର ଅଧିକ । ମୁଁ ଏ ସଂସ୍କରଣରେ ତାହାଙ୍କ 'ସୁବୋଧିନୀ' ଟୀକାକୁ ଅଙ୍ଗୀଭୂତ କରିଅଛି । ଶ୍ରୀଧରସ୍ୱାମୀ କେଉଁ ଅଞ୍ଚଳରେ କେବେ ଜନ୍ମଗ୍ରହଣ କରିଥିଲେ ତାହାର କୌଣସି ଐତିହାସିକ ପ୍ରମାଣ ନାହିଁ; ମୁଁ ଶୁଣିଛି—ବାଲେଶ୍ୱର ନିକଟବର୍ତ୍ତୀ ରେମୁଣା ଗ୍ରାମର କେତେକ ଓଡ଼ିଆ ବ୍ରାହ୍ମଣ ଶ୍ରୀଧରସ୍ୱାମୀଙ୍କ ବଂଶଧର ବୋଲି ଆପଣାର ପରିଚୟ ଦିଅନ୍ତି ।

ଭାରତ ପାଶ୍ଚାତ୍ୟ ଦେଶମାନଙ୍କ ସଂସ୍ରବରେ ଆସିବା ପରେ ଏ ଦେଶର ଯେଉଁ ମନୀଷୀମାନେ ଗୀତା ଉପରେ ଭାଷ୍ୟ ଓ ଟୀକା ଲେଖିଯାଇଅଛନ୍ତି ସେମାନଙ୍କ ମଧ୍ୟରେ ମହାରାଷ୍ଟ୍ର ପ୍ରଦେଶର ମହାମନୀଷୀ ସ୍ୱର୍ଗତ ଲୋକମାନ୍ୟ ବାଳଗଙ୍ଗାଧର ତିଳକ ଅଗ୍ରଗଣ୍ୟ । ବଙ୍ଗଳା ଭାଷାରେ ଯେତେ ଗୀତା ବ୍ୟାଖ୍ୟା

ପ୍ରକାଶିତ ହୋଇଅଛି ତନ୍ମଧ୍ୟରେ ଯୋଗୀ ଅରବିନ୍ଦଙ୍କ ପ୍ରଣୀତ Essays on Gita ର ଶ୍ରୀ ଅନିଲବରଣ ରାୟଙ୍କ ଅନୂଦିତ ବଙ୍ଗଳା ସଂସ୍କରଣ ପ୍ରଧାନ । ଗୀତା ଯେ କର୍ମଯୋଗ ଶାସ୍ତ୍ର ଲୋକମାନ୍ୟ ତିଳକ ଓ ଅରବିନ୍ଦ ଉଭୟେ ସୁଯୁକ୍ତି ଦ୍ୱାରା ପ୍ରତିପାଦନ କରିଅଛନ୍ତି । ମୋର ଏହି ସଙ୍କଳନ କାର୍ଯ୍ୟରେ ପୂର୍ବୋକ୍ତ ଦୁଇ ବ୍ୟାଖ୍ୟାହିଁ ପ୍ରଧାନ ଅବଲମ୍ବନ । ବିଶେଷତଃ ତିଳକ ମହାରାଜଙ୍କ 'ଗୀତା ରହସ୍ୟ' ଗୀତାର ଧର୍ମମତ ସମ୍ବନ୍ଧୀୟ ମୋର ପୂର୍ବ ଧାରଣାକୁ ସମ୍ପୂର୍ଣ୍ଣ ପରିବର୍ତ୍ତିତ କରି ଦେଇଅଛି । ଏ ସବୁ ଛଡ଼ା ମୁଁ ବଙ୍ଗୀୟ ସାହିତ୍ୟ ସମ୍ରାଟ୍ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ ଗୀତାବ୍ୟାଖ୍ୟା, ସ୍ୱର୍ଗତ ହୀରେନ୍ଦ୍ରନାଥ ଦତ୍ତଙ୍କ ପ୍ରଣୀତ 'ଗୀତାୟ ଈଶ୍ୱରବାଦ', କୃଷ୍ଣାନନ୍ଦ ସ୍ୱାମୀଙ୍କ ପ୍ରଣୀତ 'ଗୀତାର୍ଥ ସନ୍ଦୀପନୀ' ଓ ସୁଧୀଭକ୍ତ ଶ୍ରୀ ଜଗଦୀଶଚନ୍ଦ୍ର ଘୋଷଙ୍କ ସମ୍ପାଦିତ 'ଶ୍ରୀଗୀତା' ଓ ବିହାରୀଲାଲ ପଣ୍ଡିତଙ୍କ ପ୍ରକାଶିତ ଗୀତାରୁ ନାନା ଭାବରେ ସାହାଯ୍ୟ ପାଇଅଛି । ତେଣୁ ସେମାନଙ୍କ ନିକଟରେ ମୁଁ ଚିର କୃତଜ୍ଞ । ମୋଟରେ କହିଲେ ଏ ଗୀତା ମୋର ଗୋଟିଏ ସଙ୍କଳନ, ପ୍ରଣୟନ ନୁହେ । 'ଅସ୍ମ ନିବେଦନମ୍' ରେ ମୁଁ ଏହାହିଁ ପ୍ରକାଶ କରିଅଛି ।

ଯେଉଁ ଧର୍ମର ତତ୍ତ୍ୱ ଦାର୍ଶନିକ ସତ୍ୟ ଉପରେ ପ୍ରତିଷ୍ଠିତ ନୁହେ, ତାହା ଧର୍ମପଦବାଚ୍ୟ ନୁହେ । ଗୀତାର ଧର୍ମତତ୍ତ୍ୱ ଆଲୋଚନା ପ୍ରସଙ୍ଗରେ ଭଗବାନ୍ ଯେଉଁ ଦାର୍ଶନିକତତ୍ତ୍ୱର ଅବତାରଣା କରିଅଛନ୍ତି, ତାହା ଭାରତୀୟ ଦର୍ଶନ— ସାଂଖ୍ୟ, ପୂର୍ବମୀମାଂସା, ବେଦାନ୍ତ ଓ ପାତଞ୍ଜଳ ଯୋଗର ମତ ଉପରେ ପ୍ରତିଷ୍ଠିତ । ସାଧାରଣ ପାଠକମାନଙ୍କ ସୁବିଧା ନିମିତ୍ତ ମୁଁ ସେ ସବୁ ଦର୍ଶନର ସ୍ଥୂଳ ବିବରଣ ଓ ଗୀତୋକ୍ତ ଧର୍ମମତ ସଙ୍ଗେ ସେସବୁ ଦର୍ଶନର ସାମ୍ୟ ଓ ବୈଷମ୍ୟ 'ଗୀତା ପ୍ରବେଶିକା' ନାମକ ପ୍ରକରଣରେ ଆଲୋଚନା କରିଅଛି । ସେସବୁ ମଧ୍ୟ ଏ ଯୁଗର ବିଶିଷ୍ଟ ଦାର୍ଶନିକ ପଣ୍ଡିତମାନଙ୍କ ମତରୁ ସଂଗୃହୀତ ।

"ଶକ୍ତିହରା ଜରା ଚୁଇଁଲାଣି ଦେହ-ପୁର
ଅଲକ୍ଷିତେ ବଳ ମୋର କରୁଅଛି ଚୁର ।
ଯୌବନ ପ୍ରାସାଦ ଭିତ୍ତି ଅଳ୍ପ ଆଘାତରେ
ଭାଙ୍ଗି ପଡ଼ୁଅଛି ନିତି କମ୍ପି ଥରଥରେ ।
ଲିଭି ଯାଉଅଛି କ୍ରମେ ଦୀପ୍ତି ନୟନର
ସାମର୍ଥ୍ୟ ଯାଉଛି ତୁଟି ଏ ମୋ ଚରଣର ।"

ମଧୁସୂଦନ

ଏହି ଗୁରୁ ବାକ୍ୟ ସ୍ମରଣରେ ଜୀବର ପୂର୍ଣ୍ଣ ଅବସାନ ପୂର୍ବରୁ ଏ ଗ୍ରନ୍ଥର ସଙ୍କଳନ ଓ ମୁଦ୍ରଣ ଶେଷକରି ମୋ ଦେଶବାସୀଙ୍କ ହସ୍ତରେ ଅର୍ପଣ କରିଗଲି ।

ଏହାର ଦ୍ୱିତୀୟ ସଂସ୍କରଣ ମୋ ଆଖିରେ ପଡ଼ିବ ବୋଲି ମୁଁ କିପରି ବା ଆଶା କରିବି ?

ବଙ୍ଗଳା ଓ ହିନ୍ଦୀ ପ୍ରଭୃତି ଭାଷାରେ ସଂସ୍କୃତ ଗ୍ରନ୍ଥମାନ ନିର୍ଭୁଲରେ ଛପା ହେବାରେ ଯେପରି ସୁବିଧା ଦେଖାଯାଏ, ଆମ ଓଡ଼ିଆରେ ଅଦ୍ୟାଏ ସେପରି ହୋଇ ପାରି ନାହିଁ । ଏହାର ପ୍ରଧାନ କାରଣ ପ୍ରେସମାନଙ୍କରେ ନାନାମାତ୍ରାଫଳାଯୁକ୍ତ ଓଡ଼ିଆ ଟାଇପ୍‌ଗୁଡ଼ିକର ଅଦ୍ଭୁଡ଼ତା । ତେଣୁ ଏ ଗ୍ରନ୍ଥର ମୁଦ୍ରଣରେ ଅଧଭଗତ ପ୍ରମାଦ ଓ ମାତ୍ରାଫଳା ପ୍ରଭୃତି ଭାଙ୍ଗିଯାଇଥିବା ସମ୍ଭବପର । ମୋର ଆଶା ପାଠକମାନେ ଏହି ତ୍ରୁଟି ମାର୍ଜନା କରିବେ ।

ପରିଶେଷରେ କୃତଜ୍ଞ ହୃଦୟରେ ଲେଖୁଅଛି ଯେ କଟକ ପବ୍ଲିଶିଙ୍ଗ୍ ହାଉସ୍‌ର ସତ୍ତ୍ୱାଧିକାରୀ ଶ୍ରୀମାନ୍ ଉମାଚରଣ ମହାନ୍ତି ମୋର ଶେଷ ଜୀବନରେ ଏହି ଗୀତା ଲେଖିବା କାର୍ଯ୍ୟର ପ୍ରଧାନ ଉତ୍ସାହଦାତା । ତାଙ୍କର ପ୍ରେରଣା ହିଁ ବାର୍ଦ୍ଧକ୍ୟରେ ଦୀର୍ଘ ପାଞ୍ଚବର୍ଷ ମୋତେ ଏହି ଦୁରୂହ କର୍ମରେ ନିଯୋଜିତ କରି ଥିଲା ।

ମୋର ଅନବଙ୍କନ ବନ୍ଧୁ କଟକ ରାଧାରମଣ ପ୍ରେସର ସ୍ୱତ୍ତ୍ୱାଧିକାରୀ ଶ୍ରୀମାନ୍ ଲକ୍ଷ୍ମୀଧର ଗସ୍ତବନ୍ଧୁ ନିଜର ନାନା ଅସୁବିଧା ମଧ୍ୟରେ ଏ ପୁସ୍ତକର ଅଧିକାଂଶ ତାଙ୍କ ପ୍ରେସରେ ଛାପିବାର ସୁବିଧା କରି ଦେଇ ଥିବାରୁ ମୁଁ ଆଶୀର୍ବାଦ ସହ ତାଙ୍କ ନିକଟରେ କୃତଜ୍ଞତା ଜଣାଉଅଛି ।

ଦୀର୍ଘ ୯ ମାସ କାଳ ଏ ଗ୍ରନ୍ଥର ମୁଦ୍ରଣ କାର୍ଯ୍ୟ ଚାଲିଲେ ହେଁ, ଗୋଟିଏ ପ୍ରେସ୍‌ରେ ସମଗ୍ର ଗ୍ରନ୍ଥ ଛାପିବାର ସୁବିଧା ହୋଇ ନାହିଁ । ତେଣୁ ଏହାକୁ ଅସ୍ୱାଭାବିକ ଭାବରେ ପ୍ରଥମ ଓ ଦ୍ୱିତୀୟ ଦୁଇ ଭାଗରେ ବିଭକ୍ତ କରି ଦୁଇଟି ପ୍ରେସ୍‌ରେ ଛପାଇବାକୁ ହେଲା । ଏପରି ବିଭାଗ କରଣର ଅନ୍ୟ କୌଣସି କାରଣ ନାହିଁ । ଯେବେ ଏ ଗ୍ରନ୍ଥର ପରବର୍ତ୍ତୀ ସଂସ୍କରଣ ଆବଶ୍ୟକ ହୁଏ, ତେବେ ଏପରି ବିଭାଗ ରହିବ ନାହିଁ ।

କଟକ
ତା ୨୦ । ୧୦ । ୧୯୫୫ } କୁଳମଣି ଦାଶ

# ସୂଚୀପତ୍ର

## ପ୍ରବେଶିକା ସୂଚୀ

# ପ୍ରଥମଭାଗ



# ଦ୍ୱିତୀୟୋଭାଗଃ



## ପରିଶିଷ୍ଟ

## ଓଁ ନମଃ ପରମାତ୍ମନେ

## ପ୍ରଚ୍ଛବଶିକା

## ବୈଦିକ ଧର୍ମରେ ଗୀତାର ସ୍ଥାନ

ବେଦେଷୁ ପୌରୁଷଂ ସୂକ୍ତଂ ପୁରାଣେଷୁ ଚ ବୈଷ୍ଣବମ୍
ଭାରତେ ଭଗବଦ୍‌ଗୀତା ତ୍ରୟଂ ତ୍ରୈଲୋକ୍ୟ ଦୁର୍ଲ୍ଲଭମ୍ ।

"ବେଦରେ ପୁରୁଷସୂକ୍ତ, ପୁରାଣ ମାନଙ୍କରେ ବୈଷ୍ଣବ ପୁରାଣ, ମହାଭାରତରେ ଭଗବଦ୍‌ଗୀତା—ଏହି ତିନିଗୋଟି ତିନି ଲୋକରେ ଦୁର୍ଲ୍ଲଭ ।"

ମହାଭାରତରେ ପ୍ରାଚୀନ ଭାରତୀୟ ଆର୍ଯ୍ୟ ସଭ୍ୟତା ଓ ସଂସ୍କୃତିର ଯେଉଁ ସମୁଜ୍ଜ୍ୱଳଚିତ୍ର ଅଙ୍କିତ ରହିଅଛି, ତାହାର ଅମ୍ଳାନ ଜ୍ୟୋତି ଏକା ଭାରତ କାହିଁକି ସମୁଦାୟ ଜଗତକୁ ମଧ୍ୟ ଆଜିଯାଏ ସମ୍ଭୁଦ୍ଭାସିତ କରୁଅଛି । ଅନନ୍ତ ଜ୍ଞାନର ଆଧାର ସେହି ମହାଭାରତ ମଧ୍ୟରେ ଭଗବତ୍‌ ଗୀତା ଗୋଟିଏ ଉଜ୍ଜ୍ୱଳ ରତ୍ନ, ସମଗ୍ର ମହାଭାରତର ଶ୍ଳୋକ ସଂଖ୍ୟା ଏକଲକ୍ଷ, ତନ୍ମଧ୍ୟରୁ ଗୀତାର ଶ୍ଳୋକ ସଂଖ୍ୟା ସାତଶହ ମାତ୍ର । ଗୀତାର ଭାଷା ସରଳ ଓ ପ୍ରାଞ୍ଜଳ, ସହଜ ବୋଧ ଭାଷାରେ ଧର୍ମର ନିଗୂଢ଼ ଓ ରହସ୍ୟ ପୂର୍ଣ୍ଣ ତଥ୍ୟମାନ ଏଥିରେ ଯେପରି ବର୍ଣ୍ଣିତ ହୋଇଅଛି, ପୃଥିବୀର ଅନ୍ୟ କୌଣସି ଧର୍ମ ଗ୍ରନ୍ଥରେ ସେପରି ହୋଇ ପାରି ନାହିଁ । ତେଣୁ ଏ ଦେଶର ମନୀଷୀମାନେ ଅନନ୍ତ ରତ୍ନରାଜିପୂର୍ଣ୍ଣ ମହାସମୁଦ୍ର ସଙ୍ଗେ ଏହି ଗୀତା ଗ୍ରନ୍ଥର ତୁଳନା କରନ୍ତି । ଆଜୀବନ ପରିଶ୍ରମ କଲେହେଁ ମନୁଷ୍ୟ ଯେପରି ମହାସାଗର ମଧ୍ୟସ୍ଥ ସମଗ୍ର ରତ୍ନରାଜିର ସନ୍ଧାନ ପାଇ ପାରେ ନାହିଁ, ସେହିପରି ସମଗ୍ର ଜୀବନକାଳ ଯତ୍ନକରି ମଧ୍ୟ ମହା ମନୀଷୀମାନେ ଏହି ଗୀତା ସାଗର ମଧ୍ୟସ୍ଥ ସମଗ୍ର ରତ୍ନରାଜିର ସନ୍ଧାନ ପାଇ ପାରି ନାହାନ୍ତି । ଯୁଗେ ଯୁଗେ ଏ ଦେଶର ଜ୍ଞାନୀ, କର୍ମୀ, ଭକ୍ତ ଓ ସାଧକମାନେ ସେହି ରତ୍ନମାନଙ୍କର ସନ୍ଧାନରେ ଲାଗି ଅଛନ୍ତି, ତଥାପି ସେହି ରତ୍ନମାନଙ୍କର ଆଂଶିକ ଉଦ୍ଧାର ସାଧନ ହୋଇ ପାରି ନାହିଁ ।

ଗୀତାଭଳି ଅପୂର୍ବ ଗ୍ରନ୍ଥ ଜଗତର ସାହିତ୍ୟରେ ନାହିଁ କହିଲେ ଚଳେ, କାବ୍ୟ ହିସାବରେ ଦେଖିଲେ ଏହାକୁ ଉତ୍ତମ କାବ୍ୟ ଭିତରେ ମଧ୍ୟ ପରିଗଣିତ କରାଯିବ । କାରଣ ଧର୍ମର ଅନେକ ନିଗୂଢ଼ ତତ୍ତ୍ୱ ଆବାଳ ବୃଦ୍ଧଙ୍କ ବୋଧଗମ୍ୟ ଭାଷାରେ ଏଥିରେ ପ୍ରକାଶିତ ହୋଇଅଛି ଏବଂ ଜ୍ଞାନସମନ୍ୱିତ ଭକ୍ତିରସର ଅନାବିଳ ସ୍ରୋତ ଏହି ପରମ ପବିତ୍ର ଗ୍ରନ୍ଥ ମଧ୍ୟରେ ସର୍ବଦା ପ୍ରବାହିତ ହେଉଅଛି । ଅକୃତିରେ କ୍ଷୁଦ୍ର ହେଲେହେଁ ସବୁ ଧର୍ମର ସାର ଏବଂ ସକଳ ଶାସ୍ତ୍ରର ନିର୍ଯ୍ୟାସ ଏଥିରେ ବିଦ୍ୟମାନ; ସମୁଦ୍ର ମନ୍ଥନରୁ ଯେପରି ଅମୃତର ଉଦ୍‌ଭବ ହୋଇଥିଲା, ସେହିପରି ଶାସ୍ତ୍ର-ସମୁଦ୍ର ମନ୍ଥନରୁ ଏହି ଗୀତାମୃତ ଉତ୍‌ଥିତ ହୋଇଅଛି । ଜଡ଼ ବ୍ରହ୍ମାଣ୍ଡ ଜ୍ଞାନ ସଙ୍ଗେ ଆତ୍ମବିଦ୍ୟାର ନିଗୂଢ଼ତତ୍ତ୍ୱମାନ ସଂକ୍ଷେପରେ ଏଥିରେ ନିର୍ଣ୍ଣୀତ ହୋଇଥିବାରୁ ଏହାର ଆଲୋଚନାକାରୀ ପୁରୁଷାର୍ଥ ଓ ଆଧ୍ୟାତ୍ମିକ ପୂର୍ଣ୍ଣାବସ୍ଥାର ପ୍ରକୃତ ପରିଚୟ ଲାଭ କରି ଜୀବନକୁ ଧନ୍ୟ କରେ ଏବଂ ସାଂସାରିକ ଦୁଃଖ କ୍ଳେଶ ମଧ୍ୟରେ ତତ୍ତ୍ୱଜ୍ଞାନର ଆଲୋଚନା ଦ୍ୱାରା ପବିତ୍ର ଶାନ୍ତିସନ୍ତୋଷ ଲାଭକରି ନିଷ୍କାମ କର୍ତ୍ତବ୍ୟାଚରଣରେ ପ୍ରବୃତ୍ତ ହୁଏ । ଯେଉଁ ଗ୍ରନ୍ଥରେ ଭଗବାନଙ୍କ ବାଣୀ-ରୂପରେ ସକଳ ବୈଦିକ ଧର୍ମର ସାର ସଂଗୃହୀତ ହୋଇଅଛି, ତାହାର ଯୋଗ୍ୟତା ସମ୍ବନ୍ଧରେ ଅଧିକ କଅଣ କୁହା ଯାଇ ପାରେ ? କୁରୁକ୍ଷେତ୍ର ଯୁଦ୍ଧ ଶେଷରେ ଦିନେ ଶ୍ରୀକୃଷ୍ଣ ଓ ଅର୍ଜୁନ ବିଶ୍ରମ୍ଭାଳାପ କରୁଥିବାବେଳେ ଅର୍ଜୁନ କହିଲେ, 'ଆପଣ ଯୁଦ୍ଧ ଆରମ୍ଭରେ ଧର୍ମ ତତ୍ତ୍ୱ ସମ୍ବନ୍ଧରେ ମୋତେ ଯେଉଁ ଉପଦେଶ ଦେଇଥିଲେ, ତାହା ମୁଁ ବିସ୍ମୃତ ହୋଇଅଛି, ଦୟାକରି ଆଉ ଥରେ ମୋତେ ସେ ଉପଦେଶ ଦିଅନ୍ତୁ ।' ଏହା ଶୁଣି ଶ୍ରୀକୃଷ୍ଣ ଉତ୍ତର-କଲେ, 'ସେତେବେଳେ ମୁଁ ଏକାନ୍ତ ଯୋଗ ଯୁକ୍ତ ଅବସ୍ଥାରେ ତୁମ୍ଭଙ୍କୁ ଉପଦେଶ ଦେଇଥିଲି, ବର୍ତ୍ତମାନ ସେପରି ଉପଦେଶ ଦେବା ମୋ ପକ୍ଷରେ ଅସମ୍ଭବ ।' ( ମହାଭାରତ ଅଶ୍ୱମେଧ ପର୍ବ ୧୬ । ୭୦—୭୩ ), ପ୍ରକୃତରେ ବୁଝିଲେ ଆଉଥରେ ଉପଦେଶ ଦେବା ଶ୍ରୀକୃଷ୍ଣଙ୍କ ପକ୍ଷରେ ଅସମ୍ଭବ ନ ଥିଲା, କିନ୍ତୁ ତାଙ୍କ ଉତ୍ତରରୁ ଗୀତାର ମାହାତ୍ମ୍ୟ କେତେ ସହଜରେ ବୁଝାଯାଏ ।

ଗୀତାର ଗୋଟିଏ ବିଶେଷତ୍ୱ—ତାହାର ସାର୍ବଭୌମ ଉଦାରତା । ଏଥିରେ ସାଂପ୍ରଦାୟିକତା ବା ସଂକୀର୍ଣ୍ଣତା ଲେଶମାତ୍ର ନାହିଁ । ତେଣୁ ସକଳ

ସଂପ୍ରଦାୟର ସାଧକ ଏହାକୁ ସମାନ ଦୃଷ୍ଟିରେ ଦେଖନ୍ତି । କର୍ମୀ, ଜ୍ଞାନୀ, ଭକ୍ତ, ଯୋଗୀ—ସମସ୍ତଙ୍କପକ୍ଷରେ ଗୀତା ସମଭାବରେ ଉପାଦେୟ । ସକଳ ପ୍ରକାର ସାର ସତ୍ୟର ସମାବେଶ ଏକାଧାରରେ ଏଥିରେ ସନ୍ନିବେଷ୍ଟ ହୋଇଅଛି । ତାହା ହୋଇ ନ ଥିଲେ ଏହି ରତ୍ନର ଭାସ୍ୱର ଜ୍ୟୋତି ସମଗ୍ର ବିଶ୍ୱବାସୀଙ୍କ ଚିତ୍ତ ଉଦ୍‌ଭାସିତ କରି ପାରନ୍ତା କି ?

ଭାରତର ତଥା ପୃଥିବୀର ପ୍ରତ୍ୟେକ ପ୍ରଧାନ ଭାଷାରେ ଗୀତାର ନାନାବିଧ ଅନୁବାଦ ଓ ବ୍ୟାଖ୍ୟା ପ୍ରଚଳିତ ଅଛି । ପାଶ୍ଚାତ୍ୟ ଦେଶରେ ସଂସ୍କୃତ ଭାଷାର ପରିଚୟ ହେବା ପରେ ଗ୍ରୀକ୍, ଲାଟିନ୍, ଫ୍ରେଞ୍ଚ୍, ଜର୍ମାନୀ ଇଂରାଜୀ ପ୍ରଭୃତି ଉନ୍ନତ ଭାଷାମାନଙ୍କରେ ଏହାର ଅନୁବାଦ ଓ ବ୍ୟାଖ୍ୟାର ବହୁଳ ପ୍ରଚାର ହୋଇଅଛି ।

ଆମ ଉତ୍କଳ ଖଣ୍ଡରେ ପ୍ରାଗ୍ ଐତିହାସିକ ଯୁଗରୁ ଗୀତା-ଧର୍ମର ପ୍ରଚାର ହୋଇଅଛି । ପୁରୀ ବା ପୁରୁଷୋତ୍ତମ କ୍ଷେତ୍ରରେ ପ୍ରତିଷ୍ଠିତ ମୂର୍ତ୍ତିତ୍ରୟ—ଯାହା ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ନାମରେ ପରିଚିତ—ଗୀତୋକ୍ତ କ୍ଷର, ଅକ୍ଷର, ପୁରୁଷୋତ୍ତମଙ୍କ ପ୍ରତିମା ଭିନ୍ନ ଅନ୍ୟ କିଛି ନୁହନ୍ତି, ଉତ୍କଳ ଭିନ୍ନ ଭାରତର ଅନ୍ୟ କୌଣସି ପ୍ରଦେଶରେ ଗୀତୋକ୍ତ ପୁରୁଷ ତ୍ରୟଙ୍କର ପ୍ରତିମୂର୍ତ୍ତି ପୂଜିତ ହୁଅନ୍ତି ନାହିଁ । ଏହି ବିଶିଷ୍ଟତା ହେତୁରୁ ଉତ୍କଳ ଖଣ୍ଡ ସମଗ୍ର ଭାରତରେ ପୁଣ୍ୟ ଭୂମିରୂପେ ପରିଚିତ । ଯଥାସ୍ଥାନରେ ଏ ବିଷୟର ଆଲୋଚନା କରି ହୋଇଅଛି, ଓଡ଼ିଶାର ଆଦି କବି ଶାରଳାଦାସ ପ୍ରାୟ ପାଞ୍ଚଶହ ବର୍ଷ ପୂର୍ବେ ମହାଭାରତ ରଚନା କରିଥିଲେ, ତାଙ୍କ ମହାଭାରତ ସଂସ୍କୃତ ମହାଭାରତର ଅନୁବାଦ ନୁହେଁ, ତଥାପି ସେ ସ୍ୱ ପ୍ରଣୀତ ମହାଭାରତର ଭୀଷ୍ମପର୍ବରେ ଗୀତାର ୧୮ ଅଧ୍ୟାୟକୁ ଅନୁବାଦ କରି ଅଛନ୍ତି । ପରବର୍ତ୍ତୀ କାଳରେ ଏ ଦେଶର ଅନେକ ଲୋକ ମଧ୍ୟ ଗଦ୍ୟରେ ଏବଂ ପଦ୍ୟରେ ଗୀତାର ଅନୁବାଦ ଓ ବ୍ୟାଖ୍ୟା କରି ଅଛନ୍ତି । ଭାରତ ବର୍ଷରେ ଏବଂ ଭାରତ ବାହାରେ ଅନ୍ୟ ଦେଶମାନଙ୍କରେ ଗୀତା ସମ୍ବନ୍ଧରେ ନାନାବିଧ ବ୍ୟାଖ୍ୟା ପ୍ରଚାରିତ ହୋଇଥିଲେହେଁ ଗୀତାର ଚରମ ସତ୍ୟ ଯେ ପ୍ରକାଶିତ ହୋଇ ଗଲାଣି—ଏହା କେହି କହିପାରିବେ ନାହିଁ । ତେଣୁ କଥିତ ଅଛି :—

‘କୃଷ୍ଣୋ ଜାନାତି ବୈ ସମ୍ୟକ୍ କିଞ୍ଚିତ୍ କୁନ୍ତୀସୁତଃ ଫଳମ୍’,
“ ବ୍ୟାସୋ ବେତ୍ତି ନ ବେତ୍ତି ବା ”

ଅର୍ଥାତ୍ ଗୀତାର ପ୍ରକୃତତତ୍ତ୍ୱ ଶ୍ରୀକୃଷ୍ଣ ହିଁ ଉତ୍ତମରୂପେ ଜାଣନ୍ତି, କୁନ୍ତୀପୁତ୍ର ଅର୍ଜୁନ ଏହାର କିଛି ତତ୍ତ୍ୱ ବା ଜାଣିଥିବେ । ଏ ଶାସ୍ତ୍ରର ପ୍ରଣେତା ବ୍ୟାସଦେବ ସ୍ୱୟଂ ଏହାର ପ୍ରକୃତ ତତ୍ତ୍ୱ ଜାଣନ୍ତି କି ଜାଣନ୍ତି ନାହିଁ । ଏପରି ଅବସ୍ଥାରେ ସାଧାରଣ ଲୋକଙ୍କ ପକ୍ଷରେ ଏହାର ମର୍ମୋଦ୍‌ଘାଟନ କିପରି କଷ୍ଟସାଧ୍ୟ ସହଜରେ ଜଣାପିବ । ପ୍ରତ୍ୟେକ ଲୋକ ନିଜ ନିଜ ଶିକ୍ଷା ଅନୁସାରେ ଜ୍ଞାନଚକ୍ଷୁ ପ୍ରାପ୍ତହୋଇ ଥାଆନ୍ତି ଓ ତଦନୁସାରେ ସତ୍ୟ ଗ୍ରହଣ କରନ୍ତି, ଶଙ୍କରାଚାର୍ଯ୍ୟ ପ୍ରମୁଖ ମହାମନୀଷୀମାନେ ନିଜ ନିଜ ଶିକ୍ଷା ଓ ସଂସ୍କାରଅନୁସାରେ ଗୀତାର ବ୍ୟାଖ୍ୟା କରିଯାଇ ଅଛନ୍ତି, ସେମାନଙ୍କ ବ୍ୟାଖ୍ୟାକୁ ପରବର୍ତ୍ତୀ ମନୀଷୀମାନେ ଖଣ୍ଡନ କରି ନୂତନ ସତ୍ୟ ତହିଁରୁ ପ୍ରକାଶ କରି ଅଛନ୍ତି । ଏହି ହେତୁରୁ କୁହାଯାଏ ଗୀତା ସମ୍ବନ୍ଧରେ ଚରମ ସତ୍ୟ ନିର୍ଣ୍ଣୟ କରିବାର ସମୟ ଏ ପର୍ଯ୍ୟନ୍ତ ଆସି ନାହିଁ ।

ସାଧାରଣତଃ ଦାର୍ଶନିକମାନେ ନାନା ଯୁକ୍ତି, ତର୍କ ଦ୍ୱାରା ସତ୍ୟ ନିର୍ଣ୍ଣୟ କରିବାକୁ ଚେଷ୍ଟା କରନ୍ତି । କିନ୍ତୁ ତର୍କ ବା ଯୁକ୍ତିଦ୍ୱାରା ପ୍ରକୃତ ସତ୍ୟ ନିର୍ଣ୍ଣୟ କରାଯାଇ ପାରେ ନାହିଁ । ଶ୍ରୁତିରେ ଉକ୍ତ ଅଛି 'ନୈଷାତର୍କେଣ ମତିରାପନେୟା' ଅର୍ଥାତ୍ ତର୍କଦ୍ୱାରା ପ୍ରକୃତ ସତ୍ୟର ଜ୍ଞାନ ଲାଭ କରାଯାଇ ପାରେ ନାହିଁ । ପ୍ରକୃତରେ ମନୁଷ୍ୟ ନିଜ ବୁଦ୍ଧି ଉପରେ ନିର୍ଭରକରି ଯେଉଁ ତର୍କ ଉତ୍‌ଥାପନ କରେ ସେ ତର୍କର ପ୍ରତିଷ୍ଠା ନଥାଏ । କାରଣ ଜଣେ ବୁଦ୍ଧିମାନର ଅନୁମୋଦିତ ତର୍କ ଅନ୍ୟ ବୁଦ୍ଧିମାନ ଲୋକ ଖଣ୍ଡନ କରନ୍ତି । ପରେ ଅନ୍ୟ ବୁଦ୍ଧିମାନ୍ ଲୋକ ଦ୍ୱିତୀୟ ବୁଦ୍ଧିମାନଙ୍କର ତର୍କକୁ ଖଣ୍ଡନ କରନ୍ତି, ଅତଏବ ତର୍କର ଶେଷ ନାହିଁ । ସେହି ହେତୁରୁ ଶାସ୍ତ୍ରକାର ମାନଙ୍କର ଉପଦେଶ ଯେ 'ଅଚିନ୍ତ୍ୟାଃ ଖଳୁଯେ ଭାବା ନତାଂ ସ୍ତର୍କେଣ ଯୋଜୟେତ୍' ଅର୍ଥାତ୍ ଅଚିନ୍ତ୍ୟ ଚରମ ତତ୍ତ୍ୱର ବିଚାର ବେଳେ ତର୍କ ପ୍ରୟୋଗ କରିବା ଉଚିତ ନୁହେ । ତେବେ ସତ୍ୟ ନିର୍ଣ୍ଣୟର ପ୍ରକୃତ ଉପାୟ କଅଣ ? ଅମ୍ଭମାନଙ୍କ ପକ୍ଷରେ ଚରମ ସତ୍ୟ ନିର୍ଣ୍ଣୟର ଏକମାତ୍ର ପନ୍ଥା ଆପ୍ତବାକ୍ୟ । ଆପ୍ତ ଶବ୍ଦର ଅର୍ଥ ଭ୍ରମ ପ୍ରମାଦ ଶୂନ୍ୟ ପୁରୁଷ, ଯେ ତତ୍ତ୍ୱଦୃଷ୍ଟିଦ୍ୱାରା ଚରମ ସତ୍ୟର ସାକ୍ଷାତ୍‌କାର ଲାଭକରି ଅଛନ୍ତି, ତାହାଙ୍କର ଉପଦେଶହିଁ ଆପ୍ତବାକ୍ୟ । ଋଷିମାନେହିଁ ଆପ୍ତ; ସେମାନଙ୍କ ପ୍ରଣୀତ ଶ୍ରୁତି ସ୍ମୃତି ପ୍ରଭୃତି ଶାସ୍ତ୍ରହିଁ ଚରମସତ୍ୟ ରୂପେ ଗୃହୀତ ହୁଏ । ତେଣୁ ଶାସ୍ତ୍ରବାକ୍ୟ ଶ୍ରବଣ କରିବାକୁ ହେବ ଏବଂ ସେହି ଶ୍ରୁତି ବାକ୍ୟ ସମୂହକୁ

ପରସ୍ପର ସମନ୍ୱୟ କରି ମନନ ବା ଚିନ୍ତାକରିବାକୁ ହେବ ଏବଂ ସେ ସମ୍ବନ୍ଧରେ ଏକାଗ୍ର ଚିତ୍ତରେ ଧ୍ୟାନ କରିବାକୁ ହେବ । ତେବେ ଯାଇ ପ୍ରକୃତସତ୍ୟ ଅନ୍ତଃକରଣରେ ଅବଗ୍ଭସିତ ହେବ, ଏହାହିଁ ଉପନିଷଦ-ଅନୁମୋଦିତ ସତ୍ୟ ନିର୍ଣ୍ଣୟ ପ୍ରଣାଳୀ । ଏହି ପ୍ରଣାଳୀ ଅନୁସରଣ କଲେ ଗୀତାର ସତ୍ୟ ଆମ୍ଭମାନଙ୍କର ହୃଦୟକୁ ଆଲୋକିତ କରିବ, ଏହା ଭିନ୍ନ ଅନ୍ୟ ଉପାୟ ନାହିଁ ।

ବେଦ ଆମର ଆଦିମ ଧର୍ମଗ୍ରନ୍ଥ, ଏହାର ଅନ୍ୟ ନାମ ଶ୍ରୁତି । ଉପନିଷଦ୍ ସମୂହ ଶ୍ରୁତିର ଶେଷ ବା ଅନ୍ତଭାଗ, ତେଣୁ ଉପନିଷଦ୍‌ମାନଙ୍କୁ 'ବେଦାନ୍ତ' କୁହାଯାଏ । ଆମ୍ଭମାନଙ୍କ ପକ୍ଷରେ ବେଦାନ୍ତ ବା ଉପନିଷଦମାନଙ୍କରେ ପ୍ରଦତ୍ତ ଉପଦେଶ ପରମ ଆପ୍ତବାକ୍ୟ । ଗୀତାରେ ସମସ୍ତ ଉପନିଷଦର ସାର ସଂଗୃହୀତ ହୋଇଅଛି, ତେଣୁ ଗୀତା ଧ୍ୟାନରେ ଯଥାର୍ଥରେ କୁହାଯାଇଅଛି :—

ସର୍ବୋପନିଷଦୋଗାବୋ ଦୋଗ୍ଧା ଗୋପାଳନନ୍ଦନଃ,
ପାର୍ଥୋବତ୍ସଃ ସୁଧୀ ର୍ଭୋକ୍ତା ଦୁଗ୍ଧଂ ଗୀତାମୃତଂ ମହତ୍ ।

ଅର୍ଥାତ୍ ଏହି ଗୀତା ଉପନିଷଦରୂପ ଗାଭୀସମୂହର ଅମୃତମୟ ଦୁଗ୍ଧ; ସ୍ୱୟଂ ଶ୍ରୀକୃଷ୍ଣ ପାର୍ଥରୂପ ବତ୍ସକୁ ଉପଲକ୍ଷ୍ୟ କରି ସୁଧୀସମାଜ-ଭୋଗପାଇଁ ଏହି ଦୁଗ୍ଧ ଦୋହନ କରିଥିଲେ ।

ଗୀତାରେ ଉପନିଷଦମାନଙ୍କର ଯେ କେବଳ ସାର ସଂଗୃହୀତ ହୋଇଅଛି ତାହା ନୁହେ, ଅନେକ ଉପନିଷଦର ମୂଳମନ୍ତ୍ର ମଧ୍ୟ ଏଥିରେ ଅକ୍ଷରଶଃ ଗ୍ରହଣ କରି ଯାଇଅଛି । ତେଣୁ ଗୀତା ଉପନିଷଦ୍‌ନାମରେ ଅଭିହିତ ହୁଏ । ଗୀତାର ପ୍ରତି ଅଧ୍ୟାୟ ଶେଷରେ ଅଧ୍ୟାୟସମାପ୍ତିସୂଚକ ଯେଉଁ ସଙ୍କଳ୍ପ ଅଛି, ତହିଁରେ "ଇତି ଶ୍ରୀମଦ୍ ଭଗବଦ୍‌ଗୀତା ସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନ ସଂବାଦେ ..." ଏହିପରି ଉଲ୍ଲେଖ ଅଛି । ମୂଳ ମହାଭାରତରେ ଏପରି ସଙ୍କଳ୍ପ ନ ଥିଲେ ମଧ୍ୟ ଗୀତାର ପ୍ରତ୍ୟେକ ସଂସ୍କରଣରେ ଏହି ସଙ୍କଳ୍ପ ଦେଖାଯାଏ । ଏଥିରୁ ଅନୁମିତ ହୁଏ, ଯେତେବେଳେ ନିତ୍ୟପାଠ ପାଇଁ ଗୀତାକୁ ମହାଭାରତରୁ ପୃଥକ୍ କରି ବ୍ୟବହାର କରାଗଲା, ସେତେବେଳେ ଏହି ସଙ୍କଳ୍ପ ତହିଁରେ ସଂଯୋଜିତ କରାଯାଇଅଛି । ଏହି ସଙ୍କଳ୍ପରେ ଥିବା "ଶ୍ରୀମଦ୍ ଭଗବଦ୍

ଗୀତାସୁ ଉପନିଷତ୍ସୁ" ଏହାର ଅର୍ଥ ବିଚାର କଲେ ଜଣାଯାଏ ଯେ, 'ଉପନିଷତ୍' ଶବ୍ଦ ସଂସ୍କୃତ ଭାଷାରେ ସ୍ତ୍ରୀଲିଙ୍ଗ, ତେଣୁ ତାହାର ବିଶେଷଣ-ରୂପେ "ଶ୍ରୀମଦ୍ ଭଗବଦ୍ ଗୀତାସୁ" ଅର୍ଥାତ୍ ଶ୍ରୀମାନ୍ ଭଗବାନଙ୍କଦ୍ୱାରା ଗୀତ ବା କଥିତ—ଏହା କୁହାଯାଇଅଛି । ଯେବେ ଉପନିଷତ୍ ଶବ୍ଦ ପୁଂଲିଙ୍ଗ ହୋଇଥାଆନ୍ତା ତେବେ 'ଗୀତେଷୁ' ଏହିପରି ହୋଇ ଥାଆନ୍ତା । "ଗୀତାସୁ ଉପନିଷତ୍ସୁ" ଏହା ବହୁବଚନାନ୍ତ ସପ୍ତମୀ ବିଭକ୍ତିର ପ୍ରୟୋଗ । ସମ୍ମାନାର୍ଥରେ ସଂସ୍କୃତରେ ବହୁବଚନର ପ୍ରୟୋଗ ହୁଏ । ବଚନ-ବିଭକ୍ତିଶୂନ୍ୟ ହେଲେ ଏହା 'ଭଗବଦ୍‌ଗୀତା ଉପନିଷତ୍' ଏହିପରି ହେବ । କାଳକ୍ରମେ ସଂକ୍ଷେପରେ ଏବେ ଏହା 'ଭଗବଦ୍‌ଗୀତା' ବା 'ଗୀତା' ନାମ ଧାରଣ କରିଅଛି । ତେଣୁ ବୁଝିବାକୁ ହେବ ଏହାର ବିଶେଷ୍ୟ 'ଉପନିଷଦ' ଶବ୍ଦର ଅଧ୍ୟାହାର ହୋଇଅଛି ।

'ଗୀତା' ନାମରେ ଅନେକ ପ୍ରକାର ଗୀତାର ପ୍ରଚଳନ ଅଛି । ଅବଧୂତ ଗୀତା, ଦେବୀ ଗୀତା, ପାଣ୍ଡବ ଗୀତା, ଗଣେଶ ଗୀତା ଓ ସୂର୍ଯ୍ୟ-ଗୀତା ପ୍ରଭୃତି ଏହାର ଉଦାହରଣ । ପଣ୍ଡିତମାନେ ଏହି ସମସ୍ତ ଗୀତାର ବିଷୟ ବସ୍ତୁ ଆଲୋଚନା କରି ସ୍ଥିର କରିଅଛନ୍ତି ଯେ ଶ୍ରୀମଦ୍ ଭଗବଦ୍-ଗୀତାହିଁ ମୂଳ ଗ୍ରନ୍ଥ; ପରବର୍ତ୍ତୀ କାଳରେ ଏହାର ଅନୁକରଣରେ ଅନ୍ୟାନ୍ୟ ଗୀତାସବୁ ରଚିତ ହୋଇଅଛି । ଏପରିକି ଅନେକ ପୁରାଣର ଆଧ୍ୟାତ୍ମିକ ବିଷୟ ବସ୍ତୁ ମଧ୍ୟ ଶ୍ରୀମଦ୍ ଭଗବଦ୍ ଗୀତାରୁ ଗୃହୀତ ହୋଇଅଛି । ସେହି ହେତୁରୁ ଆଜକୁ ପ୍ରାୟ ତିନିହଜାର ବର୍ଷ ହେଲା ଏହି ଗ୍ରନ୍ଥ ସମଗ୍ର ଆର୍ଯ୍ୟ ଭାରତରେ ବେଦପରି ସମ୍ମାନିତ ହୋଇ ଆସୁଅଛି ।

ଉପନିଷଦ୍ ସମୂହ ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ଋଷିଙ୍କ ଦ୍ୱାରା ରଚିତ ହୋଇଥିବାରୁ ସେମାନଙ୍କମଧ୍ୟରେ ବିଚାର-ବିଭିନ୍ନତା ଦେଖାଯାଏ । ଏହି ବିଚାର ବିରୋଧ ଦୂର କରିବା ପାଇଁ ମହର୍ଷି ବାଦରାୟଣ 'ବେଦାନ୍ତ ଦର୍ଶନ' ପ୍ରଣୟନ କରି ତହିଁରେ ପ୍ରାମାଣିକ ଉପନିଷଦ୍‌ମାନଙ୍କର ଏକବାକ୍ୟତା ପ୍ରତିପାଦନ କରିଅଛନ୍ତି । ବ୍ରହ୍ମସୂତ୍ର ଓ ଶାରୀରକସୂତ୍ର ଏହି ବେଦାନ୍ତ ଦର୍ଶନର ଅନ୍ୟ ନାମ । ଉପନିଷଦମାନଙ୍କର ମତକୁ ବେଦାନ୍ତ ଦର୍ଶନରେ ଆପ୍ତବାକ୍ୟରୂପେ ଗ୍ରହଣ କରାଯାଇଅଛି ; ମାତ୍ର ଉପନିଷଦ୍‌ମାନଙ୍କରେ ଉପଦିଷ୍ଟଜ୍ଞାନ ନିବୃତ୍ତିପର ବା ବୈରାଗ୍ୟମୂଳକ । ତେଣୁ ବେଦାନ୍ତ ଦର୍ଶନରେ ସେହି

ବୈରାଗ୍ୟ ମୂଳକ ନିବୃତ୍ତିପର ଜ୍ଞାନହିଁ ଆଲୋଚିତ ହୋଇଅଛି । ଶ୍ରୀମଦ୍ ଭଗବଦ୍ ଗୀତାରେ ନିବୃତ୍ତିପର ଧର୍ମ ସଂକ୍ଷେପରେ ଆଲୋଚିତ ହୋଇଥିଲେହେଁ ପ୍ରବୃତ୍ତିପର ଭକ୍ତିମୂଳକ ଭାଗବତ ଧର୍ମହିଁ ଏହାର ମୁଖ୍ୟ ପ୍ରତିପାଦ୍ୟ ବିଷୟ । ବୈଦିକ ଧର୍ମର ପ୍ରବୃତ୍ତିପରତାରୂପ ମୁଖ୍ୟ ଅଙ୍ଗ ଶ୍ରୀମଦ୍ ଭଗବଦ୍ ଗୀତା ପ୍ରଥମେ ପୂର୍ତ୍ତି କରିବାରୁ ଉପନିଷଦ୍ ଓ ବେଦାନ୍ତ ଦର୍ଶନ ପରି ଏହା ମଧ୍ୟ ଆର୍ଯ୍ୟଧର୍ମ ଜଗତରେ ସେମାନଙ୍କ ସଙ୍ଗେ ସମାନ ଆସନର ଅଧିକାରୀ ହୋଇ ସର୍ବମାନ୍ୟ ଓ ପ୍ରାମାଣିକ ଗ୍ରନ୍ଥରୂପରେ ଆଦର ଲାଭ କରିଅଛି । ଫଳତଃ ଉପନିଷଦ୍, ବେଦାନ୍ତ ଦର୍ଶନ ଓ ଶ୍ରୀମଦ୍ ଭଗବଦ୍ ଗୀତା—ଏହି ତିନିଗ୍ରନ୍ଥ ସନାତନ ବୈଦିକ ଧର୍ମରେ 'ପ୍ରସ୍ଥାନତ୍ରୟୀ' ନାମ ପ୍ରାପ୍ତ ହୋଇଅଛି । ପ୍ରସ୍ଥାନତ୍ରୟୀର ଅର୍ଥ ସଂସାର-ସମୁଦ୍ର ଯାତ୍ରୀ ସାଧକମାନେ ଏହି ତିନିଗୋଟି ଧ୍ରୁବତାରାକୁ ଲକ୍ଷ୍ୟକରି ମୋକ୍ଷ ପଥରେ ପ୍ରସ୍ଥାନ କରନ୍ତି । ଅନ୍ୟ କେହି କେହି କହନ୍ତି—ଏହି ତିନିଗୋଟି ଗ୍ରନ୍ଥହିଁ ବୈଦିକ ଧର୍ମର ଆଧାରଭୂତ ତିନିଗୋଟି ସୁଦୃଢ଼ ସ୍ତମ୍ଭ, ତେଣୁ ଏଗୁଡ଼ିକୁ ପ୍ରସ୍ଥାନତ୍ରୟୀ କୁହାଯାଏ ।

ଗୀତାଧର୍ମ ପ୍ରଚାରିତ ହେବା ପୂର୍ବେ ଏ ଦେଶରେ ବୈଦିକ କର୍ମମାର୍ଗ, ଜ୍ଞାନମାର୍ଗ, ଦାର୍ଶନିକମତବାଦ ପ୍ରଭୃତି ବୈଦିକ ଧର୍ମର ବିଭିନ୍ନ ଅଙ୍ଗ ପୂର୍ଣ୍ଣତା ପ୍ରାପ୍ତ ହୋଇଥିଲା । ଗୀତା ସେ ସମସ୍ତ ମତବାଦ ଆଲୋଚନା କରି ସେ ସବୁରୁ କେତେକ ଗ୍ରହଣ କରିଅଛି ଏବଂ କେତେକ ତ୍ୟାଗ କରିଅଛି ଓ ବିଚିତ୍ର କୌଶଳରେ ସେମାନଙ୍କ ମଧ୍ୟରେ ଥିବା ପରସ୍ପର ବିରୁଦ୍ଧମତର ସମନ୍ୱୟ ବିଧାନ ପୂର୍ବକ ନିଜସ୍ୱ ଧର୍ମମତ ପ୍ରଚାର କରିଅଛି । ଏ ସବୁ ଧର୍ମାଙ୍ଗର ପ୍ରକୃତ ସ୍ୱରୂପ କଅଣ ନ ବୁଝିଲେ ଗୀତାର ସତ୍ୟ ବୁଝାଯାଏ ନାହିଁ । ବିଶେଷତଃ ସ୍ଥୂଳ ଦୃଷ୍ଟିରେ ଗୀତାର କେତେକ ମତ ପରସ୍ପର ବିରୁଦ୍ଧ ଭଳି ବୋଧ ହୁଏ । ଉଦାହରଣ ଯଥା :—ଗୀତାର ଦ୍ୱିତୀୟ ଅଧ୍ୟାୟର ୪୨ଶ ରୁ ୪୫ଶ ଶ୍ଳୋକରେ ଭଗବାନ୍ ବୈଦିକ ଯଜ୍ଞର ତୀବ୍ର ବିରୋଧ କରି ଅଛନ୍ତି; କିନ୍ତୁ ୪ର୍ଥ ଅଧ୍ୟାୟର ୩୦ଶ ଶ୍ଳୋକରେ ଯଜ୍ଞାବଶିଷ୍ଟ ଭୋଜନକାରୀ ସନାତନବ୍ରହ୍ମଙ୍କୁ ପ୍ରାପ୍ତ ହୁଅନ୍ତି ଏହା କହିଅଛନ୍ତି । ସେହିପରି ଗୀତା ୨ୟ ଅଧ୍ୟାୟରେ ୪୬ଶ ଶ୍ଳୋକରେ କହି ଅଛନ୍ତି, ଚତୁର୍ଦ୍ଦିଗ ଜଳରେ ପୂର୍ଣ୍ଣ ହେଲେ କ୍ଷୁଦ୍ର ଜଳାଶୟରେ ଯେପରି କୌଣସି ପ୍ରୟୋଜନ ନ ଥାଏ, ସେହିପରି

ବେଦରେ ବ୍ରହ୍ମଜ୍ଞ ଲୋକଙ୍କର କୌଣସି ପ୍ରୟୋଜନ ସାଧିତ ହୁଏ ନାହିଁ । ଅଥଚ ପଞ୍ଚଦଶ ଅଧ୍ୟାୟ ୧୫ଶ ଶ୍ଳୋକରେ କହି ଅଛନ୍ତି ;—ଅମ୍ଭେ ସମସ୍ତ ବେଦର ଜ୍ଞାତବ୍ୟ ଏବଂ ବେଦାନ୍ତର ରଚୟିତା ଓ ବେଦାନ୍ତର ତତ୍ତ୍ୱଜ୍ଞ । ନବମ ଅଧ୍ୟାୟ ୨୯ଶ ଶ୍ଳୋକର ପ୍ରଥମାର୍ଦ୍ଧରେ କହି ଅଛନ୍ତି ଅମ୍ଭେ ସମସ୍ତଙ୍କ ପ୍ରତି ସମାନ, ଅମ୍ଭର ଶତ୍ରୁ ବା ମିତ୍ର କେହି ନାହାନ୍ତି, ସେହି ଶ୍ଳୋକର ଦ୍ୱିତୀୟାର୍ଦ୍ଧରେ ଏବଂ ୭ମ ଅଧ୍ୟାୟର ୧୭ଶ ଶ୍ଳୋକରେ କହି ଅଛନ୍ତି, "ଯେ-ଅମ୍ଭ ଭକ୍ତ ସେ ଅମ୍ଭର ପ୍ରିୟ ।" "ଜ୍ଞାନୀ ଭକ୍ତହିଁ ଶ୍ରେଷ୍ଠ । ସେ ଅମ୍ଭର ପ୍ରିୟ ଏବଂ ଅମ୍ଭେ ତାଙ୍କର ପ୍ରିୟ ଅଟୁଁ ।" ଚତୁର୍ଥ ଅଧ୍ୟାୟର ୩୭ମ ରୁ ୩୯ମ ଶ୍ଳୋକରେ କହି ଅଛନ୍ତି, 'ଜ୍ଞାନ ଅପେକ୍ଷା ପବିତ୍ର ବସ୍ତୁ ସଂସାରରେ ନାହିଁ, ଜ୍ଞାନରେହିଁ ମୁକ୍ତି ଇତ୍ୟାଦି' । ଅଷ୍ଟମ ଅଧ୍ୟାୟର ୧୪ଶ ଶ୍ଳୋକରେ ଏବଂ ୧୮ଶ ଅଧ୍ୟାୟର ୫୫ମ ଶ୍ଳୋକରେ କହିଅଛନ୍ତି, 'ଭକ୍ତି ଦ୍ୱାରାହିଁ ପରମାତ୍ମାଙ୍କୁ ଲାଭ କରାଯାଏ' ଇତ୍ୟାଦି । ଷଷ୍ଠ ଅଧ୍ୟାୟର ୧୧ଶ ରୁ ୨୭ଶ ଶ୍ଳୋକରେ ଧୀର ପ୍ରଶାନ୍ତ ଚିତ୍ତରେ ଯୋଗାସନରେ ବସି ଯୋଗୀଙ୍କୁ ନିର୍ବାଣ ଲାଭାର୍ଥ ଯୋଗସାଧନା କରିବାକୁ ଉପଦେଶ ଦେଇ ଅଛନ୍ତି ଏବଂ ଅନେକ ସ୍ଥଳରେ ସ୍ୱଧର୍ମ-ରକ୍ଷାର୍ଥ ଯୁଦ୍ଧ କରିବା ପାଇଁ ଅର୍ଜୁନଙ୍କୁ ପ୍ରୋତ୍ସାହିତ କରି ଅଛନ୍ତି । ଏହିସବୁ ପରସ୍ପର ବିରୁଦ୍ଧ ମତର ସମାଧାନ ପାଇଁ ଗୀତା ରଚନା କାଳରେ ଏ ଦେଶରେ ପ୍ରଚଳିତ ଥିବା ବିଭିନ୍ନ ଧର୍ମ ମତ ସମ୍ବନ୍ଧରେ ସ୍ଥୂଳ ଧାରଣା ରହିବା ଆବଶ୍ୟକ । ତେଣୁ ପ୍ରଥମେ ଅତି ସଂକ୍ଷେପରେ ସେ ସବୁ ଆଲୋଚନା କରି, ପରେ ଗୀତା ସେ ସବୁର କି ଭାବରେ ସମନ୍ୱୟ କରିଅଛି ତାହା ଦେଖାଇବାକୁ ଅମ୍ଭେମାନେ ଚେଷ୍ଟା କରିବୁଁ ।

ବୈଦିକ ଧର୍ମର ଐତିହାସିକ ପରମ୍ପରା ଜାଣିବା ଗୀତା ସତ୍ୟ-ଉପଲବ୍ଧିର ଆଉ ଗୋଟିଏ ଉପାୟ । ତେଣୁ ଏଠାରେ ପ୍ରଥମେ ଅମ୍ଭେମାନେ ପ୍ରତ୍ନତତ୍ତ୍ୱବିଦ୍ ଲୋକମାନ୍ୟ ତିଲକଙ୍କ ମତ ଅନୁସାରେ ଭିନ୍ନ ଭିନ୍ନ ବୈଦିକ ଧର୍ମଙ୍କର ପ୍ରଚାର କାଳ ଉଲ୍ଲେଖ କରିବୁଁ । ତିଲକଙ୍କ ମତ ଏ ଯୁଗରେ ସର୍ବଥା ଅଭ୍ରାନ୍ତ ବୋଲି ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ଅଞ୍ଚଳରେ ଗୃହୀତ ହୋଇଅଛି ।

୧ । ଋଗ୍‌ବେଦ ରଚନାକାଳ ଖ୍ରୀଷ୍ଟପୂର୍ବ ୪୫୦୦ ବର୍ଷ
୨ । ଅନ୍ୟାନ୍ୟ ବେଦ ,, ,, ୨୫୦୦ ,,
୩ । ବୃହଦାରଣ୍ୟକ ଓ ଛାନ୍ଦୋଗ୍ୟର ରଚନାକାଳ ଖ୍ରୀଷ୍ଟପୂର୍ବ ୧୬୦୦ବର୍ଷ
୪ । ସାଂଖ୍ୟ, ଯୋଗ ପ୍ରଭୃତି ଦାର୍ଶନିକ ମତ ପ୍ରଚାର ,, ୧୪୦୦ ,,
୫ । ଭକ୍ତିମାର୍ଗ, ଭାଗବତ ଧର୍ମର ପ୍ରଚାର, ମହାଭାରତ ଯୁଦ୍ଧ ଖ୍ରୀଷ୍ଟପୂର୍ବ ୧୪୦୦ ,,
୬ । ଗୀତା ଓ ମୂଳ ମହାଭାରତ ରଚନା କାଳ ,, ୯୦୦ ,,
୭ । ବୁଦ୍ଧଦେବଙ୍କ ଆବିର୍ଭାବ ,, ୫୦୦ ,,
୮ । ବ୍ରହ୍ମ ପୁରାଣ, ବିଷ୍ଣୁ ପୁରାଣ, ଶ୍ରୀମଦ୍‌ଭାଗବତ, ଦେବୀ ଭାଗବତ ପ୍ରଭୃତି ପୁରାଣମାନଙ୍କର ରଚନା ଖ୍ରୀଷ୍ଟାବ୍ଦ ୨୦୦ ବର୍ଷ ( ଦ୍ୱିତୀୟ ଶତାବ୍ଦୀ )
୯ । ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତ ମତ ପ୍ରଚାର ଖ୍ରୀଷ୍ଟାବ୍ଦ ୭୦୦ ବର୍ଷ ( ସପ୍ତମ ଶତାବ୍ଦୀ )
୧୦ । ରାମାନୁଜାଚାର୍ଯ୍ୟଙ୍କ ବିଶିଷ୍ଟାଦ୍ୱୈତ ମତ ପ୍ରଚାର ଖ୍ରୀଷ୍ଟାବ୍ଦ ୧୨୦୦ ବର୍ଷ ( ଦ୍ୱାଦଶ ଶତାବ୍ଦୀ )

---

## ବୈଦିକ ଧର୍ମର କ୍ରମ ବିକାଶ

### ଋଗ୍‌ବେଦୀୟ ଧର୍ମ

ଋଗ୍ ବେଦହିଁ ପୃଥିବୀର ପ୍ରାଚୀନତମ ଗ୍ରନ୍ଥ । ଏ ଦେଶର ଆଦିମ ଯୁଗର ଆର୍ଯ୍ୟ ଋଷିମାନେ ପ୍ରଥମେ ସୃଷ୍ଟଜଗତ୍ ଓ ସ୍ରଷ୍ଟା ପରମାତ୍ମାଙ୍କ ସମ୍ବନ୍ଧରେ ଯେଉଁ ଆଧ୍ୟାତ୍ମ ସତ୍ୟ ଉପଲବ୍ଧି କରିଥିଲେ ଏଥିରେ ତାହା ଲିପିବଦ୍ଧ ହୋଇଅଛି । ଏବେ ଆମ ଧର୍ମ 'ହିନ୍ଦୁଧର୍ମ' ନାମରେ ପରିଚିତ, ମାତ୍ର ଏ ନାମ ବିଦେଶୀଙ୍କ ଦ୍ୱାରା ପ୍ରଦତ୍ତ । ବୈଦିକ ଧର୍ମ ବା ସନାତନଧର୍ମ ଆମ ଧର୍ମର ପ୍ରକୃତ ନାମ ।

ପଞ୍ଚନଦ ପ୍ରଦେଶ ବା ଆଧୁନିକ ପଞ୍ଜାବ ଆର୍ଯ୍ୟ ଋଷିମାନଙ୍କର ଆଦିମ ବାସସ୍ଥାନ; ସେ ଅଞ୍ଚଳର ପ୍ରାକୃତିକ ଦୃଶ୍ୟ ଦେଖି ସେମାନଙ୍କ ଅନ୍ତରାତ୍ମା ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ଉଠିଥିଲା । ଜଳ, ସ୍ଥଳ, ଆକାଶ ସର୍ବତ୍ର ଏକ ବିଶ୍ୱଶକ୍ତିର ବିଚିତ୍ର କ୍ରିୟା ଦେଖି ଦେବତା ବିଶ୍ୱାସରେ ସେମାନେ ସେ ସବୁର ସ୍ତବ କରିବାକୁ ଆରମ୍ଭ କଲେ । ଋଗ୍ ବେଦର ଉକ୍

ବା ମନ୍ତ୍ରଗୁଡ଼କ ଅଗ୍ନି, ବରୁଣ, ବାୟୁ, ସୂର୍ଯ୍ୟ, ଚନ୍ଦ୍ର ପ୍ରଭୃତ ପ୍ରକୃତ ରୂପରେ ପରଦୃଷ୍ଟ ଐଶୀ ଶକ୍ତିର ସ୍ତୁତ ଭିନ୍ନ ଅନ୍ୟ କିଛି ନୁହେ। ବ୍ୟକ୍ତ ସୃଷ୍ଟିରେ ପ୍ରକାଶିତ ଏହ ଐଶୀ ଶକ୍ତିହିଁ ଦେବତା। ଏହ ଦେବତାମାନେ ଯେ ଏକ ପରମାତ୍ମାଙ୍କର ଶକ୍ତି ଏ ବିଶ୍ୱାସ ସେମାନଙ୍କର ଥିଲା। "ଏକଂ ସଦ୍ ବିପ୍ରା ବହୁଧା ବଦନ୍ତି" ( ୧।୧୬୪।୪୬ ଋକ୍ ) ଏହା ଋଗ୍ ବେଦର ଗୋଟିଏ ମନ୍ତ୍ର ବା ଋକ୍। ଏହାର ଅର୍ଥ—ଯାହା ଏକ ଶାଶ୍ୱତ ବସ୍ତୁ ତାହାକୁହିଁ ବିପ୍ରମାନେ ନାନା ପ୍ରକାର ବର୍ଣ୍ଣନା କରନ୍ତି। ଋଗ୍ ବେଦର ପ୍ରସିଦ୍ଧ 'ପୁରୁଷସୂକ୍ତ' ଅଧିକାଂଶଙ୍କର ପରିଚିତ। ଏକେଶ୍ୱରବାଦ ବିଷୟରେ ସେକାଳରେ କିପରି ଦୃଢ଼ ଧାରଣା ଥିଲା ତହିଁରୁ ସହଜରେ ଜଣାଯାଏ:—

ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍।
ସ ଭୂମିଂ ସର୍ବତଃ ସ୍ପୃତ୍ୱା ତ୍ୟତିଷ୍ଠଦ୍ଦଶାଙ୍ଗୁଳମ୍। ୧।
ପୁରୁଷ ଏ ବେଦଂ ସର୍ବଂ ଯଦ୍‌ଭୂତଂ ଯଚ୍ଚ ଭାବ୍ୟମ୍।
ଉତାମୃତତ୍ୱସେ୍ୟଶାନୋ ଯଦନ୍ନେନାତିରୋହତି। ୨।
ଏତାବାନସ୍ୟ ମହିମା ଚୋ ଜ୍ୟାୟାଂଶ୍ଚ ପୁରୁଷଃ।
ପାଦୋଽସ୍ୟ ବିଶ୍ୱାଭୂତାନି ତ୍ରିପାଦସ୍ୟାମୃତଂଦିବି। ୩।

୧। ସର୍ବ ପ୍ରାଣିସମଷ୍ଟିରୂପ ବ୍ରହ୍ମାଣ୍ଡ ଦେହ ପୁରୁଷ ଅନନ୍ତମସ୍ତକ-ବିଶିଷ୍ଟ, ଅନନ୍ତ ନେତ୍ର ବିଶିଷ୍ଟ ଓ ଅନନ୍ତ ପାଦ ବିଶିଷ୍ଟ। ସେହି ପୁରୁଷ ବ୍ରହ୍ମାଣ୍ଡକୁ ସର୍ବତୋଭାବରେ ପରିବେଷ୍ଟନ କରି ବ୍ରହ୍ମାଣ୍ଡ ବାହାରେ ମଧ୍ଯ ବ୍ୟାପ୍ତ ଅଛନ୍ତି। ( ଏଠାରେ ଦଶାଙ୍ଗୁଳ ପଦ ଦଶଦିଗର ଉପଲକ୍ଷଣ )

୨। ବର୍ତ୍ତମାନ ଜଗତ୍ ସମସ୍ତହିଁ ପୁରୁଷ ସ୍ୱରୂପ। ଅତୀତରେ ଯେଉଁ ଜଗତ୍ ଥିଲା ଏବଂ ଭବିଷ୍ୟତରେ ଯେଉଁ ଜଗତ୍ ହେବ, ସେ ସମସ୍ତହିଁ ପୁରୁଷ ସ୍ୱରୂପ। ସେ ଏକା ଦେବତ୍ୱର ନିୟନ୍ତା। ସେ ସ୍ୱକୀୟ କାରଣାବସ୍ଥା ଅତିକ୍ରମ କରି ପ୍ରାଣିଗଣଙ୍କ ଭୋଗ ନିମିତ୍ତ ପରିଦୃଶ୍ୟମାନ ଜଗତ୍ ଅବସ୍ଥା ପ୍ରାପ୍ତ ହୋଇଅଛନ୍ତି।

୩। ଏହି ପରିଦୃଶ୍ୟମାନ ଜଗତ୍ ତାଙ୍କର ମହିମାମାତ୍ର। ବସ୍ତୁତଃ ସେହି ପୁରୁଷ ଏହି ମହିମାଠାରୁ ଅତିଶୟ ଶ୍ରେଷ୍ଠ। ଏହି ସମସ୍ତ ଭୂତସୃଷ୍ଟି ତାଙ୍କର ଏକପାଦ ବା ଏକଚତୁର୍ଥାଂଶ ମାତ୍ର, ତାଙ୍କର ଅବଶିଷ୍ଟ ତିନିପାଦ ବା ତିନି ଚତୁର୍ଥାଂଶ ଅବିନାଶୀ ରୂପରେ ସ୍ୱପ୍ରକାଶ ଭାବରେ ରହିଅଛି।

ଏକେଶ୍ୱରବାଦ ଯେ ଅତି ପ୍ରାଚୀନ ବୈଦିକ ଯୁଗରୁ ଏ ଦେଶରେ ପ୍ରଚଳିତ ଅଛି ପୂର୍ବୋକ୍ତ ସୂକ୍ତମାନ ତାହାର ପ୍ରକୃଷ୍ଟ ପ୍ରମାଣ । ଜୀବ-ଜଗତର ଭୋଗ ଉଦ୍ଦେଶ୍ୟରେହିଁ ସେ ବ୍ୟକ୍ତିସୃଷ୍ଟି ରୂପରେ ପ୍ରକାଶିତ ହୋଇଅଛନ୍ତି । ପରିଦୃଶ୍ୟମାନ ଜଗତ୍ ତାଙ୍କର ଏକାଂଶ ମାତ୍ର, ଅବଶିଷ୍ଟ ତିନିଅଂଶ ଅମୃତ ରୂପରେ ବିଦ୍ୟମାନ ଅଛି ।

ଯଜୁର୍ବେଦ ଋଗ୍ ବେଦର ପରବର୍ତ୍ତୀ, ସେତେବେଳକୁ ଏକେଶ୍ୱରବାଦ ଅଧିକ ଉଜ୍ଜ୍ୱଳ ହୋଇଥିଲା ।

ବେଦାହମେତଂ ପୁରୁଷଂ ମହାନ୍ତମ୍
ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ।
ତମେବ ବିଦିତ୍ୱାତିମୃତ୍ୟୁମେତି
ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ ।

( ଶୁକ୍ଲଯଜୁର୍ବେଦ ୩୧—୧୮ )

( ଜଣେ ବ୍ରହ୍ମଜ୍ଞ ଋଷି କହୁଅଛନ୍ତି ) :—"ଆମ୍ଭେ ସେହି ବରିଷ୍ଠ ପୁରୁଷଙ୍କୁ ଜାଣୁଁ । ସୂର୍ଯ୍ୟଙ୍କ ପରି ସ୍ୱପ୍ରକାଶ ସେହି ମହାପୁରୁଷ ଅବିଦ୍ୟାରୂପ ଅନ୍ଧକାରର ଅପର ପାରରେ ବିଦ୍ୟମାନ ଅଛନ୍ତି । ତାହାଙ୍କୁ ଜାଣିଲେ ମୃତ୍ୟୁକୁ ଅତିକ୍ରମ କରାଯାଏ । ତାଙ୍କ ଭିନ୍ନ ଅମୃତତ୍ୱ ଲାଭର ଅନ୍ୟ ଉପାୟ ନାହିଁ ।"

ଏ ସବୁକୁ ଆଲୋଚନା କଲେ ଜଣାଯାଏ, ବୈଦିକ ଯୁଗରେ ଏକେଶ୍ୱର ଧାରଣା ଦୃଢ଼ୀଭୂତ ହୋଇଥିଲା । ବୈଦିକ ଋଷିମାନେ ବୁଝି-ପାରିଥିଲେ ଯେ, ସେହି ଏକ ଅଦ୍ୱିତୀୟ ତତ୍ତ୍ୱରୁ ଏହି ଜଗତ୍ ପ୍ରପଞ୍ଚର ଅଭିବ୍ୟକ୍ତି । ଦେବତା ରୂପରେ ସେମାନେ ସେହି ଏକ ପରମାତ୍ମାଙ୍କର ଅଦ୍ୱିତୀୟ ଶକ୍ତିକୁହିଁ ପୂଜା କରୁଥିଲେ । ଏହି ତତ୍ତ୍ୱହିଁ ପରବର୍ତ୍ତୀ ଉପନିଷଦ୍ ଯୁଗର ଅଦ୍ୱୈତ ବ୍ରହ୍ମଜ୍ଞାନର ମୂଳଭିତ୍ତି ।

## ବୈଦିକ କର୍ମକାଣ୍ଡ

କର୍ମକାଣ୍ଡ ଓ ଜ୍ଞାନକାଣ୍ଡ ଭେଦରେ ବେଦ ସାଧାରଣତଃ ଦୁଇ ଭାଗରେ ବିଭକ୍ତ । ବେଦର ସଂହିତା ଓ ବ୍ରାହ୍ମଣ ଅଂଶ କର୍ମକାଣ୍ଡ ମୂଳକ, ଉପନିଷଦ୍ ଓ ଆରଣ୍ୟକ ଅଂଶ ଜ୍ଞାନକାଣ୍ଡାତ୍ମକ । ଦେବତାମାନଙ୍କ

ପ୍ରୀତିସାଧନ ଉଦ୍ଦେଶ୍ୟରେ ଋଗ୍ ବେଦୀୟ ଯୁଗରୁହିଁ ଯଜ୍ଞକର୍ମ ର ପ୍ରଚଳନ ଆରମ୍ଭ ହୋଇଥିଲା । କ୍ରମେ ସେ ସବୁ ଆଦିମ ବୈଦିକ ଯୁଗର ଏକମାତ୍ର ଧର୍ମ ବୋଲି ପ୍ରଗୃହୀତ ହେଲା । ଇନ୍ଦ୍ରାଦି ଦେବତାମାନଙ୍କ ସନ୍ତୋଷ ବିଧାନ ପାଇଁ ରାଜସୂୟ, ଅଶ୍ୱମେଧ ପ୍ରଭୃତି ନାନାବିଧ ଯଜ୍ଞର ସୃଷ୍ଟି ହେଲା । ବୈଦିକ ମନ୍ତ୍ରମାନଙ୍କର ବ୍ୟାଖ୍ୟାକାରିମାନେ ପ୍ରଚାର କଲେ ଯେ, ଦେବତାମାନେ ଯଜ୍ଞଦ୍ୱାରା ସନ୍ତୁଷ୍ଟ ହୋଇ ଯଜମାନଙ୍କୁ ଇହଲୋକରେ ଧନ, ପଶୁ, ପୁତ୍ରକଳତ୍ରାଦି ସମସ୍ତ ସୁଖ ପ୍ରଦାନ କରନ୍ତି ଓ ପରଲୋକରେ ଅକ୍ଷୟ ସ୍ୱର୍ଗ ସୁଖ ମଧ୍ୟ ଦିଅନ୍ତି । ଏ ବିଶ୍ୱାସ ତତ୍କାଳୀନ ସମାଜରେ ଏପରି ଦୃଢ଼ ହୋଇଥିଲା ଯେ, ଧର୍ମଲିପ୍ସୁ ପ୍ରତ୍ୟେକ ଲୋକ ଯଜ୍ଞ ସାଧନକୁ ଜୀବନର ଏକମାତ୍ର ପୁରୁଷାର୍ଥ ବୋଲି ମନେ କରୁଥିଲେ । କ୍ରମେ ଯଜ୍ଞରେ ପଶୁବଳିର ବ୍ୟବସ୍ଥା ପ୍ରବେଶ କଲା ଏବଂ ଯଜ୍ଞ ନାମରେ ଲକ୍ଷ ଲକ୍ଷ ପଶୁଙ୍କୁ ହତ୍ୟା କରାଗଲା । ଈଶ୍ୱର ବିଶ୍ୱାସ ଆଉ ରହିଲା ନାହିଁ । ଯଜ୍ଞସବୁ କ୍ରିୟା-ବହୁଳ, ବେଦର ବ୍ରାହ୍ମଣ ଓ ସଂହିତା ଭାଗରେ ଏହିସବୁ ଯାଜ୍ଞିକ କ୍ରିୟା-କଳାପର ବିସ୍ତାରିତ ବିବରଣ ବର୍ଣ୍ଣିତ ହୋଇଅଛି । ଋକ୍, ଯଜୁଃ ଓ ସାମ—ତିନି ବେଦରେ ଏହି ଯାଗଯଜ୍ଞାଦିର ବ୍ୟବସ୍ଥା ଥିବାରୁ ଏହାକୁ 'ତ୍ରୟୀଧର୍ମ' ବା 'ବେଦବାଦ' କୁହା ଯାଉଥିଲା ।

## ମୀମାଂସା ଦର୍ଶନ

ବେଦର ବ୍ରାହ୍ମଣ ଓ ସଂହିତା ଅଂଶମାନ ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ଋଷିଙ୍କ ଦ୍ୱାରା ଲିଖିତ । ବିଭିନ୍ନ ବ୍ରାହ୍ମଣ ଓ ସଂହିତାରେ ବର୍ଣ୍ଣିତ ଯଜ୍ଞୀୟ ବିଧିସବୁ ଏକା ନୁହେ । ତେଣୁ ତନ୍ମଧ୍ୟରୁ କେଉଁ ବିଧି ଗ୍ରହଣୀୟ ଏଥିରେ ସନ୍ଦେହ ହେଲା । ମହର୍ଷି ଜୈମିନି ଏହିସବୁ ବିଧିର ବିରୋଧ ଭଞ୍ଜନ ଓ ସାମଞ୍ଜସ୍ୟ ସମ୍ପାଦନ ଉଦ୍ଦେଶ୍ୟରେ ଯେଉଁ ଦର୍ଶନ ଶାସ୍ତ୍ର ପ୍ରଣୟନ କଲେ ତାହାର ନାମ 'ମୀମାଂସା ଦର୍ଶନ ।' ବେଦର ପୂର୍ବଭାଗ ଉପରେ ଏ ଦର୍ଶନ ଶାସ୍ତ୍ର ପ୍ରଣୀତ ହୋଇଥିବାରୁ ଏହାର ଅନ୍ୟ ନାମ 'ପୂର୍ବମୀମାଂସା' । ମୀମାଂସା ଦର୍ଶନ ପରବର୍ତ୍ତୀ କାଳରେ ଲିଖିତ ହେଲେହେଁ ବୈଦିକ ଯାଗ ଯଜ୍ଞାଦି କର୍ମକାଣ୍ଡ ଅତି ପ୍ରାଚୀନ ।

ମୀମାଂସା ଦର୍ଶନ ମତରେ ବେଦର କର୍ମକାଣ୍ଡହିଁ ସାର୍ଥକ, ଜ୍ଞାନକାଣ୍ଡ ନିରର୍ଥକ ବା ଅର୍ଥବାଦ ମାତ୍ର । 'ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ', 'ତତ୍ତ୍ୱମସି', 'ସୋଽହମ୍' ଇତ୍ୟାଦି ଜ୍ଞାନାତ୍ମକ ମହାବାକ୍ୟର ଉଦ୍ଦେଶ୍ୟ

ଦେହାତରିକ୍ତ ଆତ୍ମାର ଅସ୍ତିତ୍ୱ ପ୍ରତିପାଦନ କରି ଜୀବକୁ ଅଦୃଷ୍ଟ ଫଳ ସ୍ୱର୍ଗ ସାଧନ ଯଜ୍ଞାଦି କର୍ମରେ ପ୍ରବର୍ତ୍ତିତ କରିବା ।

ବେଦ ନିତ୍ୟ ଓ ଅଭ୍ରାନ୍ତ; କୌଣସି ପୁରୁଷ କର୍ତ୍ତୃକ ଲିଖିତ ନୁହେ, ତେଣୁ ଅପୌରୁଷେୟ । ଋଷିମାନେ ମନ୍ତ୍ରଦ୍ରଷ୍ଟା ମାତ୍ର । ବେଦ ଚିରକାଳ ଅଛି ଓ ଚିରକାଳ ରହିବ । ବେଦ ଅଭ୍ରାନ୍ତ ସତ୍ୟ, ଏହାର ସତ୍ୟତା ଅନ୍ୟ ପ୍ରମାଣକୁ ଅପେକ୍ଷା କରେ ନାହିଁ । ଯୁକ୍ତି ଦ୍ୱାରା ଶବ୍ଦକୁ ନିତ୍ୟ ବା ଶାଶ୍ୱତ ବୋଲି ମୀମାଂସକମାନେ ପ୍ରମାଣ କରିଅଛନ୍ତି ।

ସେମାନଙ୍କ ମତରେ ସକାମ ଯାଗଯଜ୍ଞାଦି କର୍ମ କଲେ, ମନୁଷ୍ୟ ଇହଜୀବନରେ ଧନ, ପୁତ୍ର, ଜୟାଦି ଲାଭ କରେ ଏବଂ ପରଲୋକରେ ସର୍ବସୁଖମୟ ଅକ୍ଷୟ ସ୍ୱର୍ଗଲୋକ ପାଇ ଧନ୍ୟ ହୁଏ । ବେଦରେ ଯେଉଁ ଇନ୍ଦ୍ରାଦି ଦେବତାମାନଙ୍କ ଉଦ୍ଦେଶ୍ୟରେ ଯଜ୍ଞ କରିବାର ବ୍ୟବସ୍ଥା କରା ଯାଇଅଛି, ସେସବୁ ଦେବତା ମନ୍ତ୍ରାତ୍ମକ, ସେମାନଙ୍କର ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ । ଯେଉଁ କ୍ରମରେ ଓ ଶବ୍ଦରେ ବେଦରେ ମନ୍ତ୍ରମାନ ଗ୍ରଥିତ ହୋଇଅଛି, ତାହାର ବିପର୍ଯ୍ୟାସ ହେଲେ ମନ୍ତ୍ର ଫଳପ୍ରଦ ହୁଏ ନାହିଁ । "ଅଗ୍ନିମୀଳେ ପୁରୋହିତମ୍" ଏହି ମନ୍ତ୍ରରେ 'ଅଗ୍ନି' ସ୍ଥାନରେ ତଦର୍ଥ-ବୋଧକ 'ବହ୍ନି' ଶବ୍ଦ ଯେବେ ଦିଆଯାଏ କିମ୍ବା ଶବ୍ଦମାନଙ୍କର କ୍ରମଭଙ୍ଗ କରି 'ପୁରୋହିତଂ ଅଗ୍ନିମୀଳେ' ଏପରି କରାଯାଏ, ତାହାହେଲେ ତଦ୍ଦ୍ୱାରା ଇଷ୍ଟଲାଭ ହୁଏ ନାହିଁ ।

ମୀମାଂସା ଦର୍ଶନ ମଧ୍ୟ ନିରୀଶ୍ୱର । ବେଦ ନିତ୍ୟ ଓ ଅପୌରୁଷେୟ ବୋଲି ମୀମାଂସକମାନେ କହନ୍ତି ସତ୍ୟ, ମାତ୍ର ବେଦ ଯେ ଈଶ୍ୱର ବାକ୍ୟ ଏହା ସେମାନଙ୍କର ବିଶ୍ୱାସ ନୁହେ । ମୀମାଂସା ଦର୍ଶନରେ ଈଶ୍ୱରଙ୍କ ପ୍ରସଙ୍ଗ ମଧ୍ୟ ନାହିଁ । ପ୍ରାଚୀନ ଭାରତରେ ଏହି ଦର୍ଶନର ପ୍ରଭାବ ଅପ୍ରତିହତ ଥିଲା । ସେକାଳର ରାଜାମାନେ ଏହି ଦର୍ଶନ ପ୍ରଭାବରେ ଶତ ଶତ ରାଜସୂୟ ଯଜ୍ଞ, ଅଶ୍ୱମେଧ ଯଜ୍ଞ; ଏପରି କି ଗୋମେଧ ଯଜ୍ଞର ଅନୁଷ୍ଠାନ କରୁଥିଲେ । ଏ କାଳରେ ବୈଦିକ ଯଜ୍ଞାଦି ନାହିଁ କହିଲେ ଚଳେ, ମାତ୍ର ବୈଦିକ ମନ୍ତ୍ର ସାହାଯ୍ୟରେ ସମାଜରେ ପ୍ରତିଷ୍ଠା, ବିବାହ ଓ ଉପନୟନ ପ୍ରଭୃତି କର୍ମ ପରମ ବିଶ୍ୱାସ ସହକାରେ ସମ୍ପାଦିତ ହେଉଅଛି ।

## ସ୍ମୃତ ବା ଧର୍ମ ସଂହିତା

ବୈଦିକ କର୍ମକାଣ୍ଡର ପ୍ରଭାବ ବହୁକାଳ ଯାଏ ଏ ଦେଶରେ ଅପ୍ରତିହତ ଥିଲା । ସେତେବେଳେ ବେଦୋକ୍ତ ବିଧିବିଧାନ ଅନୁସରଣରେ କେତେକ ସୂତ୍ରଗ୍ରନ୍ଥ ପ୍ରଣୀତ ହୋଇଥିଲା । ଏଗୁଡ଼ିକୁ କଳ୍ପସୂତ୍ର କୁହାଯାଏ । କଳ୍ପସୂତ୍ର ତିନିଭାଗରେ ବିଭକ୍ତ; ଯେଉଁଭାଗରେ ଶ୍ରୌତ ଅର୍ଥାତ୍ ବୈଦିକ ଯଜ୍ଞାଦିର ବିବରଣ ଅଛି, ତାହାର ନାମ ଶ୍ରୌତ ସୂତ୍ର । ଗୃହସ୍ଥମାନଙ୍କର ଅନୁଷ୍ଠେୟ କର୍ମାଦିର ବିଧି ଯହିଁରେ ଅଛି, ତାହାର ନାମ ଗୃହ୍ୟସୂତ୍ର । ସାମାଜିକ ଓ ଧର୍ମଜୀବନର ବିଧି ବ୍ୟବସ୍ଥା ଯହିଁରେ ଅଛି ତାହାର ନାମ ଧର୍ମସୂତ୍ର । ବୈଦିକ ଯାଗଯଜ୍ଞାଦିର ଲୋପ ସଙ୍ଗେ ସଙ୍ଗେ କଳ୍ପସୂତ୍ରମାନଙ୍କର ପ୍ରଭାବ ମଧ୍ୟ ସମାଜରୁ କମିଗଲା ସତ୍ୟ ମାତ୍ର ସେ ସବୁକୁ ଭିତ୍ତିକରି, ପରବର୍ତ୍ତୀ ଯୁଗରେ ଯେଉଁ ସ୍ମୃତି ବା ଧର୍ମସଂହିତାମାନ ପ୍ରଣୀତ ହେଲା, ସେ ସବୁର ପ୍ରଭାବ ଅଦ୍ୟାପି ସମାଜରେ ଅକ୍ଷୁଣ୍ଣ ଅଛି ଏବଂ ଏବେ ସମାଜର ଧର୍ମକର୍ମାଦି ସେହି ଧର୍ମସଂହିତାମାନଙ୍କଦ୍ୱାରାହିଁ ନିୟମିତ ହେଉଅଛି । ଧର୍ମସଂହିତା ବା ସ୍ମୃତିଗ୍ରନ୍ଥ ଅନେକ । ସେମାନଙ୍କ ମଧ୍ୟରେ ମନୁ, ପରାଶର, ଯାଜ୍ଞବଲ୍‌କ୍ୟ ପ୍ରଭୃତି ପ୍ରଧାନ । ଭାରତର ବିଭିନ୍ନ ଅଞ୍ଚଳଗୋଷ୍ଠୀ ଭିନ୍ନ ଭିନ୍ନ ସ୍ମୃତିମତକୁ ଅନୁସରଣ କରି ଚଳନ୍ତି ।

ସ୍ମୃତି ଗ୍ରନ୍ଥମାନଙ୍କ ମଧ୍ୟରେ ମନୁସ୍ମୃତିହିଁ ପ୍ରାମାଣିକ ଓ ପ୍ରାଚୀନତମ । ପ୍ରାଚୀନଭାରତର ଧର୍ମଜୀବନ ଓ କର୍ମଜୀବନର ଏବଂ ସାମାଜିକ ଆଚାର ବ୍ୟବହାରାଦିର ବୈଦିକମତାନୁକୂଳବିଧି ବ୍ୟବସ୍ଥାମାନ ତହିଁରେ ପ୍ରଦତ୍ତ ହୋଇଅଛି । ମନୁସଂହିତା ଅନୁମୋଦିତ ଅନେକ ବିଧି ବ୍ୟବସ୍ଥା ଏବେ ଆଉ ଆମ ସମାଜରେ ଚଳେନାହିଁ । ପରବର୍ତ୍ତୀକାଳରେ ସାମାଜିକ ଆଚାର ବ୍ୟବହାରକୁ ସଂକଳନ କରି ଯୁଗୋଚିତ ସ୍ମୃତି ଗ୍ରନ୍ଥମାନ ପ୍ରଣୀତ ହୋଇ ତାହାର ସ୍ଥାନ ଅଧିକାର କରିଅଛି । ତେଣୁ ଜଣାଯାଉଅଛି ଆମ ସନାତନଧର୍ମ ପରିବର୍ତ୍ତନସହ; ତା ହୋଇ ନ ଥିଲେ ଶତସହସ୍ର ବାଧାବିଘ୍ନ ଘାତ ପ୍ରତିଘାତ ସହି ତାହା ଆଜିଯାଏ ତିଷ୍ଠିପାରି ନ ଥାନ୍ତା ।

ବୈଦିକ ବା ଶ୍ରୌତ ଯାଗଯଜ୍ଞାଦି କର୍ମ ଲୁପ୍ତ ପ୍ରାୟ ହୋଇଥିଲେହେଁ ସ୍ମୃତି ବା ଧର୍ମସଂହିତାମାନଙ୍କ ଅନୁଶାସନରେ ଏବେ ମଧ୍ୟ ଅନେକ

ଧର୍ମପ୍ରାଣ ଆର୍ଯ୍ୟ ଗୃହସ୍ଥ ପଞ୍ଚମହାଯଜ୍ଞର ଅନୁଷ୍ଠାନ ନ କରି ଅନ୍ନ ଗ୍ରହଣ କରନ୍ତି ନାହିଁ । ବେଦାଧ୍ୟୟନ ରୂପ ବ୍ରହ୍ମଯଜ୍ଞ, ତର୍ପଣ ଓ ବୈଶ୍ୱଦେବରୂପ ପିତୃଯଜ୍ଞ, ହୋମରୂପ ଦେବ ଯଜ୍ଞ, ଅତିଥି ସଂତର୍ପଣରୂପ ନୃଯଜ୍ଞ ଓ ବଳି ପ୍ରଦାନରୂପ ଭୂତଯଜ୍ଞ—ଏଗୁଡ଼ିକ ସ୍ମୃତି ପଞ୍ଚମହାଯଜ୍ଞ ।

## ଉପନିଷଦ୍ ଯୁଗ (ବ୍ରହ୍ମବାଦ)

ଋଗ୍‌ବେଦୀୟଯୁଗରେ ଆର୍ଯ୍ୟ ଋଷିମାନେ 'ଏକମେବାଦ୍ୱିତୀୟମ୍' ଏହି ପରମସତ୍ୟ ଉପଲବ୍ଧି କରିଥିଲେ—ଏକଥା ପୂର୍ବେ ଉଲ୍ଲେଖ କରାଯାଇ ଅଛି । ପରବର୍ତ୍ତୀ କାଳରେ ଯାଗଯଜ୍ଞାଦିର ବହୁଳ ପ୍ରଚାର ଫଳରେ ସକାମକର୍ମରେ ଲୋକମାନଙ୍କର ପ୍ରବୃତ୍ତି ବଢ଼ିବାରୁ ସେହି ପରମ ସତ୍ୟର ସମ୍ୟକ୍ ଆଲୋଚନା ହୋଇପାରି ନ ଥିଲା । ଏ ଦେଶର ମନୀଷୀମାନେ ଦେଖିଲେ ଯେ ଏହିସବୁ ସକାମକର୍ମର ସାଧନ କେବେହେଁ ମନୁଷ୍ୟକୁ ଅମୃତତ୍ତ୍ୱର ଅଧିକାରୀ କରିପାରେ ନାହିଁ । ତେଣୁ ସେମାନେ କ୍ଷୁଦ୍ର ପୁଷ୍କରିଣୀ ଜଳରେ ସନ୍ତୁଷ୍ଟ ନ ରହି ମହାସାଗରର ଅମୃତ ସନ୍ଧାନରେ ଅଗ୍ରସର ହେଲେ । ଉପନିଷଦ୍ ସବୁ ଏହି ସତ୍ୟାନୁସନ୍ଧାନର ଫଳ । ଗଭୀର ସମାଧି ସାଗରରେ ନିମଗ୍ନ ହୋଇ ସେମାନେ ସତ୍ୟର ଯେଉଁ ବିମଳମୂର୍ତ୍ତି ହୃଦୟମଧ୍ୟରେ ଅନୁଭବ କଲେ, ତାହାକୁ ବାଙ୍ମୟରୂପ ପ୍ରଦାନ କଲେ । ଯେଉଁମାନଙ୍କ ହୃଦୟ ପବିତ୍ର ଓ ପ୍ରଶାନ୍ତ ସେହିମାନେହିଁ ଏହି ଉପନିଷଦ୍‌ମାନଙ୍କ ପାଠରେ ଅନ୍ତରରେ ସତ୍ୟ ସ୍ୱରୂପ ପରମପୁରୁଷଙ୍କର ଉପଲବ୍ଧି କରି ପାରନ୍ତି । ଔପନିଷଦିକ ଜ୍ଞାନ ସୂର୍ଯ୍ୟଙ୍କ ପରି ସ୍ୱୟଂ ପ୍ରକାଶ; ଶୁଣିବା ମାତ୍ରେ ସାଧୁହୃଦୟରେ ତାହାର ସତ୍ୟତା ସ୍ୱତଃ ସମୁଦ୍ଭାସିତ ହୋଇଉଠେ । କେଉଁ ସୁଦୂର ଅତୀତରେ ଆର୍ଯ୍ୟ ଋଷି ଗାଇଥିଲେ—

"ଶୃଣ୍ୱନ୍ତୁ ସର୍ବେ ଅମୃତସ୍ୟ ପୁତ୍ରାଃ"

ଆମେ ସମସ୍ତେ ଅମୃତର ସନ୍ତାନ ।। ଏହି ପ୍ରାଣସ୍ପର୍ଶିନୀ ବାଣୀରେ କାହାର ହୃଦୟକନ୍ଦର ଆଲୋକିତ ହୋଇ ନ ଉଠିବ ?

ଯେତେବେଳେ ଆମେ ବ୍ରହ୍ମପ୍ରାପ୍ତି ପଥରେ ଅଗ୍ରସର ହେଉଁ ସେତେବେଳେ ଆର୍ଯ୍ୟ ଋଷି କଣ୍ଠ ନିଃସୃତ—

"ଉତ୍ତିଷ୍ଠତ, ଜାଗ୍ରତ, ପ୍ରାପ୍ୟବରାନ୍ ନିବୋଧତ,
କ୍ଷୁରସ୍ୟଧାରା ନିଶିତା ଦୁରତ୍ୟୟା ଦୁର୍ଗଂ ପଥସ୍ତତ୍ କବୟୋ ବଦନ୍ତି" ।

"ଉଠ, ଜାଗ, ଅଗ୍ରଜଙ୍କ ଶରଣାପନ୍ନ ହୋଇ ସତ୍ୟର ପଥ ଜାଣ, ତତ୍ତ୍ୱଦର୍ଶୀମାନେ କହନ୍ତି ସେ ପଥ କ୍ଷୁରଧାର ପରି ତୀକ୍ଷ୍ଣ ଓ ଦୁର୍ଗମ ।"

ଏହି ପୂତ ଗମ୍ଭୀର ବାଣୀ ପରଂପରା ଆମ ପ୍ରାଣତନ୍ତ୍ରୀକୁ ସ୍ୱତଃ ନିନାଦିତ କରି ଶରୀରକୁ ରୋମାଞ୍ଚିତ ଏବଂ ନୟନକୁ ପ୍ରେମାଶ୍ରୁପୂର୍ଣ୍ଣ କରେନାହିଁ କି ?

ଉପନିଷଦ୍ ମତରେ ଯାଗଯଜ୍ଞାଦି ବାହ୍ୟ ଅନୁଷ୍ଠାନ ଆତ୍ମାର ଶାନ୍ତି ସଂପାଦନ କରି ନ ପାରେ । ସତ୍ୟର ଜ୍ୟୋତି ଲାଭ କରିବାକୁ ହେଲେ କଠୋର ସାଧନ, ସଂଯମ, ଧ୍ୟାନ, ନିଦିଧ୍ୟାସନ ଓ ସମାଧି ଆବଶ୍ୟକ । କର୍ମକାଣ୍ଡାତ୍ମକ ମତ ନୀଚ । ଅଧ୍ୟାତ୍ମ ଜ୍ଞାନହିଁ ବ୍ରହ୍ମ ପ୍ରାପ୍ତିର ଏକମାତ୍ର ସାଧନ । ତେଣୁ ଔପନିଷଦିକ ଭାବଧାରା ଜ୍ଞାନକାଣ୍ଡନାମରେ ପରିଚିତ ।

ଉପନିଷଦ୍ ସଂଖ୍ୟାରେ ଅନେକ । ଏମାନଙ୍କ ମଧ୍ୟରୁ ଈଶ, କେନ, କଠ, ପ୍ରଶ୍ନ, ମୁଣ୍ଡ, ମାଣ୍ଡୁକ୍ୟ, ତୈତ୍ତିରୀୟ, ଛାନ୍ଦୋଗ୍ୟ, ବୃହଦାରଣ୍ୟକ ଏହି ଦଶଟି ପ୍ରାଚୀନ ଉପନିଷଦ୍ ପ୍ରାମାଣିକ ବୋଲି ଗୃହୀତ ହୁଏ । ଉପନିଷଦ୍ ସବୁ ଭିନ୍ନ ଭିନ୍ନ ଋଷି ଭିନ୍ନ ଭିନ୍ନ ସମୟରେ ଲେଖିଥିଲେ । ତେଣୁ ସେ ସବୁରେ ବିଚାର ବିଭିନ୍ନତା ଦେଖାଯାଏ । ବୈଦିକ ଯୁଗର ଅନ୍ତ ବା ଶେଷରେ ପ୍ରକାଶିତ ହୋଇଥିବାରୁ ଉପନିଷଦ୍‌ମାନଙ୍କୁ 'ବେଦାନ୍ତ' ମଧ୍ୟ କୁହାଯାଏ । ମହର୍ଷି ବାଦରାୟଣ ଉପନିଷଦମାନଙ୍କର ବିଭିନ୍ନ ବିଚାରର ସମନ୍ୱୟ ବିଧାନ ଉଦ୍ଦେଶ୍ୟରେ ବେଦାନ୍ତଦର୍ଶନ ନାମକ ଦର୍ଶନଶାସ୍ତ୍ର ପ୍ରଣୟନ କରିଅଛନ୍ତି । ବ୍ରହ୍ମସୂତ୍ର, ଶାରୀରକସୂତ୍ର, ଉତ୍ତରମୀମାଂସା ଓ ବ୍ୟାସସୂତ୍ର—ଏହି ବେଦାନ୍ତ ଦର୍ଶନର ଭିନ୍ନ ଭିନ୍ନ ନାମ ।

## ବେଦାନ୍ତ ଦର୍ଶନ

ଉପନିଷଦ୍ ଯୁଗରେ ଜ୍ଞାନର ଶ୍ରେଷ୍ଠତା ପ୍ରତିପାଦିତ ହେବା ପରେ ଏ ଦେଶରେ ଜ୍ଞାନମୂଳକ ଦାର୍ଶନିକ ମତମାନ ପ୍ରଚାରିତ ହେଲା । ଭାରତୀୟ ଦର୍ଶନ ଶାସ୍ତ୍ର ଛଅଗୋଟି । ୧—ପୂର୍ବମୀମାଂସା ବା ମୀମାଂସା ଦର୍ଶନ । ୨—ଉତ୍ତରମୀମାଂସା ବା ବେଦାନ୍ତ ଦର୍ଶନ । ୩—ସାଂଖ୍ୟ ଦର୍ଶନ । ୪—ଯୋଗ ଦର୍ଶନ । ୫—ନ୍ୟାୟ ଦର୍ଶନ ଓ ୬—ବୈଶେଷିକ ଦର୍ଶନ ।

ଗୀତାରେ ନ୍ୟାୟ ଓ ବୈଶେଷିକ ଦର୍ଶନର ପ୍ରସଙ୍ଗ ନାହିଁ । ମୀମାଂସା ଦର୍ଶନର ସଂକ୍ଷିପ୍ତ ବିବରଣ ପୂର୍ବେ କୁହା ଯାଇଅଛି । କେଉଁ ଦର୍ଶନର ମତ କେବେ ପ୍ରଥମେ ପ୍ରଚରିତ ହୋଇଥିଲା ତାହା ଜାଣିବାର ଉପାୟ ନାହିଁ । ବର୍ତ୍ତମାନ ଏହିସବୁ ଦର୍ଶନ ଯେଉଁ ଆକାରରେ ଦେଖାଯାଏ ଗୀତା ରଚନା ବେଳେ ସେ ଆକାର ଯେ ସେମାନଙ୍କର ନ ଥିଲା ଏହା ନିଃସନ୍ଦେହ । ବହୁ ଆଲୋଚନା ପରେ ସେ ସବୁ ବର୍ତ୍ତମାନ ଆକାର ପ୍ରାପ୍ତ ହୋଇଅଛି । ତେବେ ଏ ସବୁ ମତବାଦ ଯେ ଗୀତା ରଚନା କାଳରୁ ଏ ଦେଶର ପଣ୍ଡିତମାନଙ୍କ ମଧ୍ୟରେ ପ୍ରଚଳିତ ଥିଲା—ସହଜରେ ଜଣାଯାଏ ।

ସଂସାର ଦୁଃଖ ପୂର୍ଣ୍ଣ, କି ଉପାୟରେ ମନୁଷ୍ୟ ସେ ଦୁଃଖରୁ ଉଦ୍ଧାର ଲାଭ କରିବ—ଏହାହିଁ ପ୍ରତ୍ୟେକ ଦର୍ଶନରେ ଆଲୋଚିତ ବିଷୟ । କିନ୍ତୁ ଦୁଃଖ ଧ୍ୱଂସର କାରଣ ନିର୍ଣ୍ଣୟ କରିବାରେ ଭିନ୍ନ ଭିନ୍ନ ଦର୍ଶନ ବିଭିନ୍ନ ମତ ପ୍ରକାଶ କରି ଅଛନ୍ତି । ସାଂଖ୍ୟ ଓ ମୀମାଂସା ଦର୍ଶନ ନିରୀଶ୍ୱର । ଯୋଗ ଦର୍ଶନରେ ଈଶ୍ୱର ସ୍ୱୀକୃତ ହୋଇଥିଲେହେଁ ଈଶ୍ୱରଙ୍କ ସ୍ଥାନ ତହିଁରେ ଖୁବ୍ ଗୌଣ । ଏକ ମାତ୍ର ବେଦାନ୍ତ ଦର୍ଶନରେହିଁ ସଚ୍ଚିଦାନନ୍ଦମୟ ବ୍ରହ୍ମ ପ୍ରତିପାଦିତ ହୋଇଅଛନ୍ତି ।

ଗୀତାରେ କେବଳ ସୂକ୍ଷ୍ମ ଦାର୍ଶନିକ ତତ୍ତ୍ୱ ଆଲୋଚିତ ହୋଇନାହିଁ; ସଂସାରରେ ଯେଉଁ ଭାବରେ ଚଳିଲେ ମନୁଷ୍ୟ ଦିବ୍ୟ ଜୀବନ ଲାଭ କରି ପାରିବ, ତାହା ଜାଣିବା ପାଇଁ ଯେଉଁ ସାମାନ୍ୟ ଦାର୍ଶନିକ ଜ୍ଞାନ ଆବଶ୍ୟକ, ତାହାହିଁ ଗୀତାରେ ଆଲୋଚିତ ହୋଇଅଛି ।

ଜୀବ, ଜଗତ୍ ଓ ବ୍ରହ୍ମ—ଏହି ତିନିଗୋଟି ବିଷୟହିଁ ବେଦାନ୍ତ ଦର୍ଶନର ମୁଖ୍ୟ ପ୍ରତିପାଦ୍ୟ ବିଷୟ । ଅନ୍ୟାନ୍ୟ ଦର୍ଶନ ପରି ବେଦାନ୍ତ ଦର୍ଶନ ମଧ୍ୟ ସୂତ୍ରାକାରରେ ଗ୍ରଥିତ । ଏଥିରେ ସର୍ବମୋଟ ସୂତ୍ର ସଂଖ୍ୟା ୫୫୬ । ସୂତ୍ର ଗୁଡ଼ିକ ବହୁ ବିଚାର ପରେ ଅତି ସଂକ୍ଷିପ୍ତ ଆକାରରେ ଲିପିବଦ୍ଧ ହୋଇଅଛି । ଅତି ସହଜରେ ସେ ଗୁଡ଼ିକ ଯେପରି ସ୍ମୃତି-କୋଷରେ ଅଙ୍କିତ ହୋଇ ରହି ପାରିବ—ଏହାହିଁ ସଂକ୍ଷିପ୍ତତାର ଉଦ୍ଦେଶ୍ୟ । ମାତ୍ର ଅଳ୍ପ ଶବ୍ଦ ମଧ୍ୟରେ ଗଭୀର ଭାବ ପ୍ରକାଶ କରାଯାଇଥିବାରୁ ପରଂପରାଗତ ଟୀକା ବା ଭାଷ୍ୟର ସାହାଯ୍ୟ ବ୍ୟତୀତ ସେ ସବୁ ଅର୍ଥ-ବହୁଳ ସୂତ୍ରର ଭାବ ସହଜରେ ବୁଝି ହୁଏ ନାହିଁ, ତେଣୁ ଏହାର ପ୍ରଣେତା

ତତ୍ତ୍ୱର ପ୍ରକାଶ ପାଇଁ ଯେଉଁ ସୂତ୍ର ରଚନା କରିଅଛନ୍ତି ତାହା ଜାଣିବା ଦୁରୂହ ହୁଏ । ବେଦାନ୍ତ ଦର୍ଶନର ଭାଷ୍ୟ ଓ ଟୀକା ଅନେକ । ଅର୍ଥ ବହୁଳତା ହେତୁରୁ ବିଭିନ୍ନ ଭାଷ୍ୟ ଓ ଟୀକା ମଧ୍ୟରେ ଗୁରୁତର ମତଭେଦ ମଧ୍ୟ ଦେଖାଯାଏ । ଭାଷ୍ୟ ଓ ଟୀକାକାର ମାନଙ୍କ ମଧ୍ୟରେ ଆଚାର୍ଯ୍ୟ ଶଙ୍କର ଓ ଆଚାର୍ଯ୍ୟ ରାମାନୁଜ ପ୍ରଧାନ । ଏମାନଙ୍କ ମତ ଯଥାକ୍ରମେ ଅଦ୍ୱୈତ ଓ ବିଶିଷ୍ଟାଦ୍ୱୈତ ନାମରେ ପ୍ରସିଦ୍ଧ । ଏହି ଦୁଇ ମତବାଦ ଉପରେ ଦୁଇଟି ସମ୍ପ୍ରଦାୟର ସୃଷ୍ଟି ହୋଇଅଛି । ଏ ଦୁହିଁଙ୍କ ବ୍ୟତୀତ ବଳଦେବଙ୍କ ଗୋବିନ୍ଦ ଭାଷ୍ୟ (ବୈଷ୍ଣବ ଦାର୍ଶନିକ ମତ) ଓ ନିମ୍ବାର୍କଙ୍କ ଅଚିନ୍ତ୍ୟ ଭେଦାଭେଦାତ୍ମକ ଭାଷ୍ୟ ମଧ୍ୟ ବୈଦାନ୍ତିକ ସମାଜରେ ସୁପରିଚିତ । ବିଭିନ୍ନ ଭାଷ୍ୟକାରଙ୍କ ମଧ୍ୟରେ ବେଦାନ୍ତ ଦର୍ଶନର ବ୍ୟାଖ୍ୟାରେ ଗୁରୁତର ମତଭେଦ ଥିଲେହେଁ ଗୀତାରେ ସ୍ୱୟଂ ଭଗବାନ ଏହାର ଯେଉଁ ବ୍ୟାଖ୍ୟା ଦେଇ ଅଛନ୍ତି ତାହାହିଁ ସର୍ବଥା ଗ୍ରହଣୀୟ ।

(କ) ଅଦ୍ୱୈତ ମତ—ବୌଦ୍ଧଧର୍ମର ନିରୀଶ୍ୱରବାଦ ଯେତେବେଳେ ଏ ଦେଶରେ ପ୍ରବଳ ହୋଇ ଉଠିଥିଲା ଏବଂ ବୈଦିକ ଈଶ୍ୱର ବିଶ୍ୱାସର ବିମଳ ଜ୍ୟୋତି ଯେତେବେଳେ ଭାରତ ଗଗନରେ ମ୍ଲାନ ହୋଇ ଆସିଲା, ସେତେବେଳେ ଆଚାର୍ଯ୍ୟ ଶଙ୍କରଙ୍କର ଆବିର୍ଭାବ । ତାଙ୍କ ଭଳି ଜ୍ଞାନୀ, ତତ୍ତ୍ୱ ଦର୍ଶୀ ଅନ୍ୟ କୌଣସି ବ୍ୟକ୍ତି ଏ ପର୍ଯ୍ୟନ୍ତ ଏ ଦେଶରେ ଜନ୍ମି ନାହାନ୍ତି କହିଲେ ଚଳେ । ମାତ୍ର ତାଙ୍କ କୃତ ବ୍ରହ୍ମସୂତ୍ରର ଅଦ୍ୱୈତମତବାଦାତ୍ମକ ଭାଷ୍ୟକୁ ତାଙ୍କ ପରବର୍ତ୍ତୀ ଯୁଗର ସୁଧୀସମାଜ ନିର୍ବିବାଦରେ ଗ୍ରହଣ କରି ପାରି ନାହାନ୍ତି । କେହି କହନ୍ତି ଶଙ୍କର ବୌଦ୍ଧମତକୁ ଯୁକ୍ତି ବଳରେ ଦୂର କରିଥିଲେହେଁ ସ୍ୱୟଂ ତା ପ୍ରଭାବରୁ ମୁକ୍ତ ହୋଇ ନ ଥିଲେ । ସେ ବ୍ରହ୍ମ ଓ ମାୟା ସମ୍ବନ୍ଧରେ ଯେଉଁ ମତ ବ୍ରହ୍ମସୂତ୍ର ଭାଷ୍ୟରେ ପ୍ରଚାର କରି ଅଛନ୍ତି ତହିଁରେ ବୌଦ୍ଧ ମତର ପ୍ରଭାବ ସ୍ପଷ୍ଟ ଦେଖାଯାଏ ।

ଶାଙ୍କରଭାଷ୍ୟର କେତେକ ସିଦ୍ଧାନ୍ତରେ ସମସ୍ତଙ୍କର ମନଃପୂତ ନ ହେଲେହେଁ ଅଦ୍ୱୈତସିଦ୍ଧାନ୍ତ ସର୍ବସୁଧୀଜନସମାଦୃତ । ଜଣେ ଅଦ୍ୱୈତବାଦୀ ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତ ସିଦ୍ଧାନ୍ତ ସମ୍ବନ୍ଧରେ କହିଅଛନ୍ତି—

"ଶ୍ଲୋକାର୍ଦ୍ଧେନ ପ୍ରବକ୍ଷ୍ୟାମି ଯଦୁକ୍ତଂ ଗ୍ରନ୍ଥ କୋଟିଭିଃ,
ବ୍ରହ୍ମ ସତ୍ୟଂ ଜଗନ୍ମିଥ୍ୟା ଜୀବୋ ବ୍ରହ୍ମୈବ ନା ପରଃ ।"

"ଅସଂଖ୍ୟ ଗ୍ରନ୍ଥରେ ଯାହା କୁହାଯାଇ ଅଛି, ମୁଁ ତାହା ଅର୍ଦ୍ଧଶ୍ଳୋକରେ କହିବ । ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା, ଜୀବ ବ୍ରହ୍ମଭିନ୍ନ ଅନ୍ୟ କିଛି ନୁହେଁ ।"

ଅନ୍ୟାନ୍ୟ ଦର୍ଶନ ପରି ବେଦାନ୍ତ ଦର୍ଶନ ମଧ୍ୟ ସଂସାରକୁ ଦୁଃଖମୟ ବୋଲି କହି ଅଛନ୍ତି । ଜୀବ ଓ ବ୍ରହ୍ମର ଏକତ୍ୱ ଜ୍ଞାନ ହେଲେ ଜୀବର ମୁକ୍ତି ହୁଏ । ଅଦ୍ୱୈତ ମତରେ ଜୀବହିଁ ବ୍ରହ୍ମ । ନିତ୍ୟ ଶୁଦ୍ଧବୁଦ୍ଧ ମୁକ୍ତ ସ୍ୱଭାବ ବ୍ରହ୍ମହିଁ ଜୀବରୂପେ ଅବସ୍ଥିତ । ଯେପରି ଜ୍ୟୋତିଃ-ସ୍ୱରୂପ ସୂର୍ଯ୍ୟ ଏକ ହେଲେହେଁ ଭିନ୍ନ ଭିନ୍ନ ଜଳାଶୟରେ ବହୁରୂପରେ ପ୍ରକାଶିତ ହୁଅନ୍ତି, ସେହିପରି ଦ୍ୟୁତିମାନ୍ ଅନାଦି ପରମାତ୍ମା କ୍ଷେତ୍ର ଭେଦରେ ଅନେକ ବୋଲି ପ୍ରତୀୟମାନ ହୁଅନ୍ତି । ଜୀବ ଓ ବ୍ରହ୍ମ ଅଭିନ୍ନ, ଭେଦବୁଦ୍ଧି ନିନ୍ଦାର୍ହ । ଜୀବ ଓ ବ୍ରହ୍ମମଧ୍ୟରେ ଯେଉଁ ଭେଦ ବୋଧହୁଏ, ତାହା ଉପାଧିକୃତ, ଅର୍ଥାତ୍ ଜୀବ ବିଶେଷ ଉପାଧି ବା କୋଷରେ ଆବଦ୍ଧ ଥିବାରୁ ତାହା ବ୍ରହ୍ମଙ୍କଠାରୁ ଭିନ୍ନ ବୋଲି ବୋଧହୁଏ । ବ୍ରହ୍ମ ସ୍ୱରୂପତଃ ଉପାଧିଶୂନ୍ୟ, ବ୍ରହ୍ମ ସଚ୍ଚିଦାନନ୍ଦ; ଜୀବ ଯେତେବେଳେ ବ୍ରହ୍ମ, ସେତେବେଳେ ସେ ମଧ୍ୟ ସଚ୍ଚିଦାନନ୍ଦ । ମହାକାଶ ସଙ୍ଗରେ ଘଟାକାଶର ଯେଉଁ ପ୍ରଭେଦ, ବ୍ରହ୍ମ ସଙ୍ଗେ ଜୀବର ସେହି ପ୍ରଭେଦ । ସୁଖଦୁଃଖ, କାମକ୍ରୋଧ ପ୍ରଭୃତି ଦେହ ଓ ମନର ଧର୍ମ, ଜୀବାତ୍ମାର ଧର୍ମ ନୁହେ, ମୋହରୂପ ଉପାଧିସଂଯୋଗହେତୁରୁ ସେ ନିଜକୁ ସୁଖୀ, ଦୁଃଖୀ ମନେକରେ । ଶୁଦ୍ଧ, ବୁଦ୍ଧ ମୁକ୍ତହେଲେହେଁ ଅବିଦ୍ୟାବଶତଃ ଜୀବଠାରେ ଦେହାଦିର ଧର୍ମ ସଂକ୍ରମିତ ହୁଏ । ଅବିଦ୍ୟାର ନିବୃତ୍ତି ହେଲେ ଜୀବ ଯେ ବ୍ରହ୍ମଙ୍କଠାରୁ ଅଭିନ୍ନ ଏହି ତତ୍ତ୍ୱଜ୍ଞାନ ଦୃଢ଼ହୁଏ । ଜୀବ ଓ ବ୍ରହ୍ମଙ୍କର ଐକ୍ୟ ଜ୍ଞାନହିଁ ମୁକ୍ତିର ଉପାୟ । ଶ୍ରୋତ୍ରିୟ ବ୍ରହ୍ମନିଷ୍ଠ ଗୁରୁଙ୍କର ଶରଣାପନ୍ନ ହେଲେ ଅବିଦ୍ୟାର ନିବୃତ୍ତି ହୁଏ ।

ବେଦାନ୍ତ ବା ଉପନିଷଦରେ ବ୍ରହ୍ମଙ୍କର ଦୁଇଟି ବିଭାବ ବର୍ଣ୍ଣିତ ଅଛି । ଗୋଟିଏ ନିର୍ବିଶେଷ ବା ନିର୍ଗୁଣ ବିଭାବ, ଅନ୍ୟଟି ସବିଶେଷ ବା ସଗୁଣ ବିଭାବ । ନିର୍ଗୁଣ ବ୍ରହ୍ମଙ୍କୁ କୌଣସି ଲକ୍ଷଣରେ ଲକ୍ଷିତ କରିହୁଏ ନାହିଁ, କିମ୍ବା କୌଣସି ବିଶେଷଣରେ ବିଶେଷିତ କରିହୁଏ ନାହିଁ । ସେ ସ୍ଥୂଳ ନୁହନ୍ତି କି ସୂକ୍ଷ୍ମ ନୁହନ୍ତି, ହ୍ରସ୍ୱ ନୁହନ୍ତି ବା ଦୀର୍ଘ ନୁହନ୍ତି, ତାଙ୍କର ଶବ୍ଦନାହିଁ, ସ୍ପର୍ଶ ନାହିଁ, ରୂପ ନାହିଁ, ଗନ୍ଧ ନାହିଁ । ସେ ଅଦୃଶ୍ୟ,

ଅଗୋତ୍ର, ଅବର୍ଣ୍ଣ, ତାହାଙ୍କର ଚକ୍ଷୁକର୍ଣ୍ଣାଦି କୌଣସି ଇନ୍ଦ୍ରିୟ ନାହିଁ; କିନ୍ତୁ ସେ ଅତ୍ମପ୍ରତ୍ୟୟସିଦ୍ଧ, ଶାନ୍ତ, ଶିବ ଓ ଅଦ୍ୱୈତ । ସେ ବାକ୍ୟ, ମନ ଓ ଇନ୍ଦ୍ରିୟର ଅତୀତ, ଇତ୍ୟାଦି ।

ବେଦାନ୍ତରେ ନିର୍ବିଶେଷ ବ୍ରହ୍ମଙ୍କର ଯେପରି ବର୍ଣ୍ଣନା ଅଛି ସବିଶେଷ ବା ସଗୁଣ ବ୍ରହ୍ମଙ୍କର ମଧ୍ୟ ସେହିପରି ବର୍ଣ୍ଣନା ଅଛି; ଏହି ସଗୁଣ ଭାବ ନିର୍ଗୁଣଭାବର ବିପରୀତ । ସଗୁଣବ୍ରହ୍ମ ବିଶେଷର ବିଶେଷିତ ଓ ଲକ୍ଷଣରେ ଲକ୍ଷିତ ହୁଅନ୍ତି । ସେ ଜଗତର ସୃଷ୍ଟି ସ୍ଥିତି ଲୟର ଏକମାତ୍ର କାରଣ । ସେ ସମସ୍ତଙ୍କ ପ୍ରଭୁ, ଅଧିପତି, ତୀକ୍ଷ୍ଣ ବୁଦ୍ଧି ସାହାଯ୍ୟରେ ଲୋକ ତାହାଙ୍କୁ ହୃଦୟ ମଧ୍ୟରେ ଅନୁଭବ କରି ପାରନ୍ତି । ସେ ସର୍ବେଶ୍ୱର, ସର୍ବଜ୍ଞ, ଅନ୍ତର୍ଯାମୀ, ତାହାଙ୍କର ହସ୍ତ ନାହିଁ ଅଥଚ ଗ୍ରହଣ କରନ୍ତି, କର୍ଣ୍ଣ ନାହିଁ ଅଥଚ ଶ୍ରବଣ କରନ୍ତି, ଚକ୍ଷୁ ନାହିଁ ଅଥଚ ଦର୍ଶନ କରନ୍ତି । ତାହାଙ୍କୁହିଁ ମହାନ୍ ପରମ ପୁରୁଷ କୁହାଯାଏ । ତାଙ୍କୁ ପାପ ସ୍ପର୍ଶ କରେନାହିଁ, ସେ ଜରା ମୃତ୍ୟୁର ଅତୀତ କ୍ଷୁଧାତୃଷ୍ଣାଶୂନ୍ୟ, ସତ୍ୟକାମ ଓ ସତ୍ୟ ସଂକଳ୍ପ । ଏହି ସଗୁଣ ବ୍ରହ୍ମଙ୍କୁ ଉପନିଷଦ୍‌ରେ ଈଶ୍ୱର, ମହେଶ୍ୱର ଓ ଦେବ ବୋଲି କୁହାଯାଇ ଅଛି ।

ଶ୍ରୁତିରେ ନିର୍ଗୁଣ ଓ ସଗୁଣ ଉଭୟବିଧ ବ୍ରହ୍ମଙ୍କର ବର୍ଣ୍ଣନା ଥିଲେହେଁ ଶଙ୍କରାଚାର୍ଯ୍ୟ ନିର୍ଗୁଣ ବ୍ରହ୍ମହିଁ ଶ୍ରୁତିରେ ପ୍ରତିପାଦିତ ହୋଇ ଅଛନ୍ତି, ଏହିମତ ସ୍ଥାପିତ କରି ସଗୁଣ ବ୍ରହ୍ମଙ୍କୁ ପ୍ରତ୍ୟାଖ୍ୟାତ କରିଅଛନ୍ତି । ଶଙ୍କର କହନ୍ତି ସଗୁଣ ବ୍ରହ୍ମ ମାୟାର ବିଜୃମ୍ଭଣ ମାତ୍ର । ଏହାଙ୍କର ପାରମାର୍ଥିକ ସତ୍ତା ନାହିଁ । ଯେପରି ବ୍ରହ୍ମ ମାୟାଉପାଧିରେ ଈଶ୍ୱର ବୋଲି ପ୍ରତୀତ ହୁଅନ୍ତି, ସେହିପରି ଅବିଦ୍ୟା ଉପାଧିରେ ଜୀବ ବୋଲି ପ୍ରତୀୟମାନ ହୁଅନ୍ତି । ସଚ୍ଚିଦାନନ୍ଦ ବ୍ରହ୍ମହିଁ ବସ୍ତୁ, ଈଶ୍ୱର ଓ ଜୀବ ଉପାଧି କଳ୍ପିତ । ଉପାଧି ପରିହାର କଲେ ସଚ୍ଚିଦାନନ୍ଦ ବ୍ରହ୍ମଭିନ୍ନ ଅନ୍ୟ କିଛି ରହେନାହିଁ । ଯେପରି ଅଗ୍ନିର ଦାହିକାଶକ୍ତି, ସେହିପରି ବ୍ରହ୍ମଙ୍କର ମାୟାଶକ୍ତି । ଶକ୍ତି ଓ ଶକ୍ତିମାନ୍ ଅଭିନ୍ନ, ଅତଏବ ମାୟା ଓ ବ୍ରହ୍ମ ଅଭିନ୍ନ । ମାୟାବାଦୀମାନଙ୍କ ମତରେ ଶ୍ରୁତିରେ ବ୍ରହ୍ମଙ୍କର ସ୍ୱରୂପଲକ୍ଷଣ ଓ ତଟସ୍ଥ ଲକ୍ଷଣ—ଏହିପରି ଦ୍ୱିବିଧ ଲକ୍ଷଣ ଦେଖାଯାଏ । "ସତ୍ୟଂ ଜ୍ଞାନ ମନନ୍ତଂ ବ୍ରହ୍ମ" (ତୈତ୍ତିରୀୟ ଉପନିଷଦ୍ ୨।୧।୧), "ବିଜ୍ଞାନ ମାନନ୍ଦଂ ବ୍ରହ୍ମ" (ବୃହଦାରଣ୍ୟକ ୩।୨।୨୮) ଏସବୁ ବ୍ରହ୍ମଙ୍କର ସ୍ୱରୂପ ଲକ୍ଷଣ ।

"ଯତୋ ବା ଇମାନି ଭୂତାନି ଜାୟନ୍ତେ, ଯେନ ଜାତାନି ଜୀବନ୍ତି, ଯତ୍ ପ୍ରୟନ୍ତ୍ୟଭି ସଂବିଶନ୍ତି" (ତୈତ୍ତିରୀୟ ଉପନିଷଦ୍ ୩।୧), ଅର୍ଥାତ୍ ଯାହାଙ୍କଠାରୁ ଏହି ଭୂତ ସକଳର ଉତ୍ପତ୍ତି ହୋଇଅଛି, ଯାହାଙ୍କ ଦ୍ୱାରା ସେସବୁ ଜୀବିତ ରହିଅଛି ଓ ଶେଷରେ ଯାହାଙ୍କଠାରେ ବିଲୀନ ହେବ, ସେ ବ୍ରହ୍ମ। "ଜନ୍ମାଦ୍ୟସ୍ୟ ଯତଃ"—(ବ୍ରହ୍ମସୂତ୍ର ୧।୧।୨), ଅର୍ଥାତ୍ ଯାହାଙ୍କଠାରୁ ଏହି ଜଗତର ଉତ୍ପତ୍ତି, ସ୍ଥିତି ଓ ଲୟ—ସେ ବ୍ରହ୍ମ। ଏସବୁ ବ୍ରହ୍ମଙ୍କର ତଟସ୍ଥ ଲକ୍ଷଣ ଯାହାକୁ ମାୟାବାଦୀମାନେ ବ୍ରହ୍ମଙ୍କର ତଟସ୍ଥ ଲକ୍ଷଣ କହନ୍ତି, ତାହା ଯେ ସଗୁଣ ବ୍ରହ୍ମଙ୍କର ଲକ୍ଷଣ ଏହା କହିବା ବାହୁଲ୍ୟମାତ୍ର।

ଅଦ୍ୱୈତବାଦୀମାନେ ଜଗତର ସତ୍ୟତା ସ୍ୱୀକାର କରନ୍ତି ନାହିଁ। ସେମାନେ କହନ୍ତି ଏକମାତ୍ର ସଦ୍‌ବସ୍ତୁ ବ୍ରହ୍ମ ଭିନ୍ନ ଜଗତରେ ଆଉ କିଛି ନାହିଁ। 'ଏକମେବାଦ୍ୱିତୀୟମ୍' ଏହାର ଅର୍ଥ ଏକ ଅଦ୍ୱିତୀୟ ବ୍ରହ୍ମ ଭିନ୍ନ ଆଉ କିଛିନାହିଁ। ତେବେ ଏହି ପରିଦୃଶ୍ୟମାନ ବିଚିତ୍ର ଜଗତ୍ ଯେ ଅସତ୍ ଏହା କିପରି ଧାରଣା କରାଯିବ? ଏହାର ଉତ୍ତରରେ ଅଦ୍ୱୈତବାଦୀମାନେ କହନ୍ତି ଦଉଡ଼ିରେ ଯେପରି ସାପ ଭ୍ରମ ହୁଏ, ଶାମୁକାରେ ଯେପରି ରୂପା ଭ୍ରମ ହୁଏ, ସେହିପରି ବ୍ରହ୍ମରେ ଜଗତ୍ ଭ୍ରମ ହୁଏ। ଭ୍ରମର କାରଣ ହୋଇ ଆଧାର ଜ୍ଞାନ ହେଲେ ଭ୍ରମ ବାଧିତ ହୁଏ। ସେତେବେଳେ ଆମେ ବୁଝିପାରୁଁ ଯେ ସାପ ଓ ରୂପା—ଏହା ଭ୍ରମର ବିଜୃମ୍ଭଣ ମାତ୍ର ଏବଂ ଦଉଡ଼ି ଓ ଶାମୁକା ସତ୍ୟ ପଦାର୍ଥ। ସେହିପରି ଜୀବର ବ୍ରହ୍ମଜ୍ଞାନ ହେଲେ ସେତେବେଳେ ବ୍ରହ୍ମରେ ଅଧ୍ୟାସ୍ତ ଜଗଦ୍‌ଭ୍ରମ ବାଧିତ ହୁଏ। ସେମାନଙ୍କ ମତରେ ଏ ଭ୍ରମ ମାୟାଶକ୍ତିର ଫଳ; ଏହି ମାୟାହିଁ ଅଘଟନଘଟନପଟୀୟସୀ। ମାୟାବାଦୀମାନେ କହନ୍ତି ଏପରି ହେବା ବିଚିତ୍ର ନୁହେଁ, ଇନ୍ଦ୍ରଜାଲ କ୍ରୀଡ଼ା ବା ଭେଳିକବାଜି ଖେଳ ଏହାର ପ୍ରତ୍ୟକ୍ଷ ପ୍ରମାଣ। ଭେଳିକବାଜି ଖେଳରେ ଯାହା ଦେଖାଯାଏ ବା ଶୁଣାଯାଏ ତାହା ଯେପରି ଭ୍ରମ ସେହିପରି ଏ ଜଗତ ଭ୍ରମ ଭିନ୍ନ ଅନ୍ୟ କିଛି ନୁହେଁ। ସେମାନେ କହନ୍ତି ବ୍ରହ୍ମହିଁ ଜଗତ୍ ରୂପରେ ବିବର୍ତ୍ତିତ ହୋଇ ଅଛନ୍ତି। ଦୁଧ ଯେପରି ବିକୃତ ହୋଇ ଦହି ହୁଏ—ଏହା ସେପରି ନୁହେଁ। ବ୍ରହ୍ମଙ୍କର ନିଜ ସ୍ୱରୂପ ଅକ୍ଷୁଣ୍ଣ ଥାଏ। ସେ କୌଣସି ରୂପେ ବିକୃତ ହୁଅନ୍ତି ନାହିଁ, ଅଥଚ ସେ ଜଗତ୍ ରୂପରେ ବିବର୍ତ୍ତିତ ହୁଅନ୍ତି।

ଅଦ୍ୱୈତମତରେ ଯେତେବେଳେ ଜୀବ ଓ ବ୍ରହ୍ମ ଅଭିନ୍ନ ସେତେବେଳେ ତହିଁରେ ଭକ୍ତର ସ୍ଥାନ କାହୁଁବା ଆସିବ ? ଭକ୍ତ ଏବଂ ଭଜନୀୟ ସ୍ୱତନ୍ତ୍ର ନ ହେଲେ ଭକ୍ତିର ଉନ୍ମେଷ ହୋଇପାରେ ନାହିଁ । କିନ୍ତୁ 'ସୋଽହମ୍' ( ମୁଁ ସେହି ବ୍ରହ୍ମ ), 'ଅୟମାତ୍ମା ବ୍ରହ୍ମ' ( ଏହି ଆତ୍ମାହିଁ ବ୍ରହ୍ମ )ଏ ଭାବରେ ଉପାସନା କରିବା ରୀତି ଅଦ୍ୱୈତବାଦୀମାନଙ୍କ ମଧ୍ୟରେ ପ୍ରଚଳିତ ଅଛି । ମାତ୍ର ଏହା ଭକ୍ତର ସଗୁଣ ବ୍ରହ୍ମଙ୍କଠାରେ ଭକ୍ତି ଭଳି ନୁହେ । ଏହାକୁ ସେମାନେ 'ଅହଂଗ୍ରହ' ଉପାସନା କହନ୍ତି; ଏହା ବ୍ରହ୍ମ ଓ ଆତ୍ମାର ଐକ୍ୟ ବିଷୟରେ ଭାବନା ମାତ୍ର । ଏହି ଭାବନା ଦୃଢ଼ ହେଲେ, ଜୀବ ବ୍ରହ୍ମଙ୍କର ଅପରୋକ୍ଷ ଅନୁଭୂତି ଫଳରେ ଜୀବନ୍ମୁକ୍ତର ଅଧିକାରୀ ହୁଏ ।

ଅଦ୍ୱୈତମତରେ ନିର୍ଗୁଣ ସାଧକଙ୍କର ଦେହ ଧ୍ୱଂସ ପରେ ବିଦେହ ମୁକ୍ତି ହୁଏ, ତଦ୍ଦ୍ୱାରା ତାଙ୍କର ନାମରୂପ ଲୁପ୍ତ ହୁଏ ଓ ସେ ବ୍ରହ୍ମରେ ଲୀନ ହୋଇ ବ୍ରହ୍ମଭୂତ ହୁଅନ୍ତି । ଏ ବିଷୟରେ ଶ୍ରୁତି କହନ୍ତି :—

"ବ୍ରହ୍ମବେଦ ବ୍ରହ୍ମୈବଭବତି" ।

(ଖ) ବିଶିଷ୍ଟାଦ୍ୱୈତମତ—ଶଙ୍କରଙ୍କର ପ୍ରାୟ ପାଞ୍ଚଶହ ବର୍ଷ ପରେ ରାମାନୁଜଙ୍କ ଆବିର୍ଭାବ । ବେଦାନ୍ତ ଦର୍ଶନର ତତ୍ପ୍ରଣୀତ ଭାଷ୍ୟ 'ଶ୍ରୀଭାଷ୍ୟ' ନାମରେ ଓ ତାଙ୍କ ପ୍ରବର୍ତ୍ତିତ ମତ 'ବିଶିଷ୍ଟାଦ୍ୱୈତମତ' ନାମରେ ପ୍ରସିଦ୍ଧ । ଅନେକ ବିଷୟରେ ବିଶିଷ୍ଟାଦ୍ୱୈତମତ ଅଦ୍ୱୈତମତର ବିରୋଧୀ । ବେଦାନ୍ତ ଦର୍ଶନର ଭିନ୍ନ ଭିନ୍ନ ସୂତ୍ରର ବ୍ୟାଖ୍ୟାରେ ଦ୍ୱୈଧ ମତହିଁ ଏପରି ବିରୋଧର କାରଣ ।

ପ୍ରଥମତଃ ଅଦ୍ୱୈତମତରେ ବ୍ରହ୍ମ ନିର୍ଗୁଣ ଓ ସର୍ବ ପ୍ରକାର ବିଶେଷ ରହିତ । ମାତ୍ର ରାମାନୁଜ ଏ ମତ ଖଣ୍ଡନ କରି ବିଭିନ୍ନ ଶ୍ରୁତି ଓ ସ୍ମୃତି ଶାସ୍ତ୍ରରୁ ଉକ୍ତିମାନ ଉଦ୍ଧାର କରି ପ୍ରତିପାଦନ କରି ଅଛନ୍ତି ଯେ ବ୍ରହ୍ମ ସମସ୍ତ ଦୋଷ ରହିତ ଓ ସର୍ବବିଧ କଲ୍ୟାଣ ଗୁଣର ଆକର । ତେଣୁ ବିଶିଷ୍ଟାଦ୍ୱୈତମତରେ ନିର୍ଗୁଣ ବ୍ରହ୍ମଙ୍କ ସମ୍ବନ୍ଧରେ କୌଣସିଠାରେ ପ୍ରମାଣ ନାହିଁ, ସଗୁଣ ବ୍ରହ୍ମହିଁ ପ୍ରାମାଣିକ । ବ୍ରହ୍ମ ସର୍ବଦା ମାୟା ବିଶିଷ୍ଟ— ଏହା ସେମାନେ ସ୍ୱୀକାର କରନ୍ତି; କିନ୍ତୁ ଅଦ୍ୱୈତବାଦୀମାନଙ୍କର ମାୟା ସ୍ୱରୂପଠାରୁ ଏମାନଙ୍କ ମାୟାର ସ୍ୱରୂପ ପୃଥକ୍ । ଏମାନେ କହନ୍ତି, ମାୟା ଅନିର୍ବଚନୀୟ ଅନାଦି ଭାବରୂପ ଅଜ୍ଞାନ ନୁହେ; କିନ୍ତୁ ତାହା ବିଚିତ୍ରାର୍ଥ

ସୃଷ୍ଟିକର୍ତ୍ତ୍ରୀ ତ୍ରିଗୁଣାତ୍ମିକା ପ୍ରକୃତି । "ମାୟାଂ ତୁ ପ୍ରକୃତିଂ ବିଦ୍ୟାତ୍ ମାୟିନଂ ତୁ ମହେଶ୍ୱରମ୍" ( ମାୟାହିଁ ପ୍ରକୃତି ଏବଂ ମହେଶ୍ୱର ମାୟା ବିଶିଷ୍ଟ )— ଶ୍ୱେତାଶ୍ୱତର ଶ୍ରୁତିର ଏହି ଉକ୍ତିକୁ ବିଶିଷ୍ଟାଦ୍ୱୈତବାଦୀମାନେ ତାଙ୍କ ଯୁକ୍ତିର ପ୍ରମାଣ ରୂପେ ଉପସ୍ଥାପିତ କରନ୍ତି । ଏମାନଙ୍କ ମତରେ ସମସ୍ତ କଲ୍ୟାଣ ଗୁଣାନ୍ୱିତ ବାସୁଦେବହିଁ ପରଂବ୍ରହ୍ମ, ସେ ଭୁବନ ସମସ୍ତର ଉପାଦାନ, କର୍ତ୍ତା ଓ ଅନ୍ତର୍ଯାମିରୂପରେ ଜୀବର ନିୟାମକ, ଅର୍ଥାତ୍ ଈଶ୍ୱରହିଁ ଜଗତର ନିମିତ୍ତ କାରଣ ଓ ଉପାଦାନ କାରଣ, ତାହାଙ୍କଠାରୁ ଜଗତର ସୃଷ୍ଟି ସ୍ଥିତି ଓ ଲୟ ହୋଇଥାଏ । ସେହି ହେତୁରୁ ବାଦରାୟଣ ବ୍ରହ୍ମସୂତ୍ର ଆରମ୍ଭରେ ସୂତ୍ର କରି ଅଛନ୍ତି :—"ଜନ୍ମାଦ୍ୟସ୍ୟ ଯତଃ" ( ବ୍ରହ୍ମସୂତ୍ର ୧।୧।୨ ) ଅର୍ଥାତ୍ ଯାହାଙ୍କଠାରୁ ଜଗତର ଜନ୍ମାଦି ସିଦ୍ଧ ହୁଏ ତାହାଙ୍କୁହିଁ ବ୍ରହ୍ମ କୁହାଯାଏ । ବ୍ରହ୍ମନିର୍ଗୁଣ ହୋଇଥିଲେ ମହର୍ଷି ବାଦରାୟଣ ବେଦାନ୍ତଦର୍ଶନ ଆରମ୍ଭରେ ତାଙ୍କୁ ଏପରି ସଗୁଣ ବୋଲି ପ୍ରତିପାଦନ କରିଥାଆନ୍ତେ କି ?

ଅଦ୍ୱୈତବାଦୀ କହନ୍ତି ବ୍ରହ୍ମହିଁ ଏକମାତ୍ର ପରମାର୍ଥ; ଜୀବ ଓ ଜଗତ୍ ରଜ୍ଜୁସର୍ପପରି ଅବିଦ୍ୟାର ପରିକଳ୍ପନା ମାତ୍ର । ମାତ୍ର ଏହା ବିଶିଷ୍ଟାଦ୍ୱୈତବାଦୀମାନେ ସ୍ୱୀକାର କରନ୍ତି ନାହିଁ । ସେମାନେ କହନ୍ତି ଈଶ୍ୱର, ଜୀବ ବା ଚିତ୍, ଜଡ଼ ବା ଅଚିତ୍ (ପ୍ରକୃତି)—ଏହି ତିନିଗୋଟିହିଁ ପଦାର୍ଥ । ଏମାନଙ୍କ ମଧ୍ୟରେ ଚିତ୍ ଭୋକ୍ତା, ଅଚିତ୍ ଭୋଗ୍ୟ ଓ ଈଶ୍ୱର ନିୟାମକ; ଅର୍ଥାତ୍ ପୁରୁଷ, ପ୍ରକୃତି ଓ ପରମେଶ୍ୱର ବ୍ରହ୍ମଙ୍କର ଏହି ତିନି ଭାବ । ପ୍ରକୃତି ଓ ପୁରୁଷ ସ୍ୱତନ୍ତ୍ର ପଦାର୍ଥ ହେଲେହେଁ ବିଶିଷ୍ଟାଦ୍ୱୈତ-ମତରେ ସେମାନେ ସଂପୂର୍ଣ୍ଣରୂପେ ଈଶ୍ୱରାଧୀନ । ଈଶ୍ୱର, ପୁରୁଷ ଓ ପ୍ରକୃତି ଉଭୟ ମଧ୍ୟରେ ଅନ୍ତର୍ଯାମିରୂପରେ ଅବସ୍ଥିତ ଅଛନ୍ତି । ଏହି ଉଭୟ ତାଙ୍କର ଶରୀର । 'ଏକମେବାଦ୍ୱିତୀୟମ୍' ଏହି ଶ୍ରୁତି ବାକ୍ୟର ଏପରି ଅର୍ଥ ନୁହେ ଯେ ଜଡ଼ ଓ ଜୀବ ମିଥ୍ୟା କଳ୍ପନା ମାତ୍ର । ଏହାର ପ୍ରକୃତ ଅର୍ଥ ପ୍ରକୃତି ଓ ପୁରୁଷ ଭଗବାନଙ୍କର ପ୍ରକାର ମାତ୍ର ଅର୍ଥାତ୍ ପ୍ରଳୟରେ ପ୍ରକୃତି ଓ ପୁରୁଷ ନାମରୂପ ଭେଦ ରହିତ ହୋଇ ଯେତେବେଳେ ଅନିର୍ଦ୍ଦେଶ୍ୟ ଭାବରେ ବ୍ରହ୍ମରେ ବିଲୀନ ଥାଆନ୍ତି, ସେହି ଅବ୍ୟାକୃତ ଅବସ୍ଥାରେ ସେ "ଏକମେବାଦ୍ୱିତୀୟମ୍" । ଏହି ତତ୍ତ୍ୱକୁ ବିଶଦ କରିବା ପାଇଁ ସେମାନେ କହନ୍ତି—ପରଂବ୍ରହ୍ମଙ୍କର ଦୁଇ ଅବସ୍ଥା—କାର୍ଯ୍ୟାବସ୍ଥା ଓ କାରଣାବସ୍ଥା ।

କାରଣାବସ୍ଥାରେ ସୂକ୍ଷ୍ମଭାବାପନ୍ନ ପ୍ରକୃତି ପୁରୁଷ ତାହାଙ୍କର ଶରୀର ଏବଂ କାର୍ଯ୍ୟାବସ୍ଥାରେ ( ସୃଷ୍ଟି ଅବସ୍ଥାରେ ) ସ୍ଥୂଳଭାବ ପ୍ରାପ୍ତ ପ୍ରକୃତି-ପୁରୁଷ ତାହାଙ୍କର ଶରୀର । ତେଣୁ ସେ ସର୍ବଦା ସମସ୍ତଙ୍କର ଆତ୍ମା ରୂପରେ ଅବସ୍ଥିତ । ଅତଏବ 'ଆତ୍ମା ବା ଇଦମଗ୍ର ଆସୀତ୍' ( ପ୍ରଥମେ ଆତ୍ମାଭିନ୍ନ ଅନ୍ୟ କିଛି ନ ଥିଲା ) ଏହିପରି ଶ୍ରୁତିବାକ୍ୟ ଅଛି । ଜଗତ୍ ବିକାରଶୀଳ ଓ ପରିଣାମୀ ବୋଲି ବ୍ରହ୍ମଙ୍କ ତୁଳନାରେ ତାହାକୁ ଅବସ୍ତୁ କୁହାଯାଏ ମାତ୍ର ପ୍ରକୃତରେ ତାହା ଅବସ୍ତୁ ବା ଅସତ୍ ନୁହେ । ବ୍ରହ୍ମଙ୍କ ଶରୀର ସ୍ଥାନୀୟ ହୋଇଥିବାରୁ ତାହା ସତ୍, ମିଥ୍ୟା ନୁହେ ।

ଅଦ୍ୱୈତବାଦୀଙ୍କ ମତରେ ଜୀବ ଓ ବ୍ରହ୍ମ ସ୍ୱରୂପତଃ ଅଭିନ୍ନ ମାତ୍ର ବିଶିଷ୍ଟାଦ୍ୱୈତବାଦୀମାନେ କହନ୍ତି ଜୀବ ଓ ବ୍ରହ୍ମ ସ୍ୱତନ୍ତ୍ର ବସ୍ତୁ । 'ପତିଂ ବିଶ୍ୱସ୍ୟାତ୍ମେଶ୍ୱରଂ' (ବିଶ୍ୱର ପତି, ଆତ୍ମାର ଈଶ୍ୱର ), "ଆତ୍ମାଧାରୋଽଖିଲା-ଶ୍ରୟଃ" ( ଆତ୍ମାର ଆଧାର ଓ ଅଖିଳର ଈଶ୍ୱର )– ଇତ୍ୟାଦି ବାକ୍ୟ ଏହାର ପ୍ରମାଣ । ଜୀବ ଯେତେବେଳେ ଆଧିଭୌତିକ, ଆଧ୍ୟାତ୍ମିକ ଓ ଆଧିଦୈବିକ—ଏହି ଦୁଃଖ ତ୍ରୟର ଅଧୀନ ସେତେବେଳେ ସେ କିପରି ବ୍ରହ୍ମଙ୍କ ସଙ୍ଗରେ ଏକବସ୍ତୁ ହୋଇ ପାରେ ? ଅଧିକନ୍ତୁ ମଧ୍ୟ ସେମାନେ କହନ୍ତି—ବ୍ରହ୍ମ ଯେତେବେଳେ ଅଖଣ୍ଡ ବସ୍ତୁ, ସେତେବେଳେ ଜୀବ ବ୍ରହ୍ମଖଣ୍ଡ ହୋଇ ପାରେ ନାହିଁ । ଜୀବ ବ୍ରହ୍ମଙ୍କର ବିଭୂତି, ଯେପରି ପ୍ରଭାକୁ ଅଗ୍ନିର ଅଂଶ କୁହାଯାଏ, ଯେପରି ଦେହକୁ ଦେହୀର ଅଂଶ କୁହାଯାଏ ସେହି ଭାବରେ ଜୀବ ବ୍ରହ୍ମଙ୍କର ଅଂଶ । "ସୋଽହମ୍", 'ତତ୍ତ୍ୱମସି' ଇତ୍ୟାଦି ଶ୍ରୁତି ବାକ୍ୟର ଅର୍ଥ—ଜୀବ ବ୍ରହ୍ମଙ୍କ ଶରୀର, ବ୍ରହ୍ମାତ୍ମକ । ବିଶିଷ୍ଟାଦ୍ୱୈତମତରେ ଜୀବ ନିତ୍ୟବସ୍ତୁ, ଏହାର ଜନ୍ମ ମରଣ ନାହିଁ । ଜୀବ ଅଣୁ-ପରିମାଣ, ତେଣୁ ଏକ ଜୀବ କେବେ ହେଲେ ବହୁ ଶରୀରରେ ଅଧିଷ୍ଠିତ ହୋଇ ପାରେ ନାହିଁ । ଅତଏବ ଜୀବ ବହୁତ ଓ ପ୍ରତି ଶରୀରରେ ଭିନ୍ନ ଭିନ୍ନ । ଈଶ୍ୱରଙ୍କୁ ଲାଭ କରିବାହିଁ ଜୀବର ପୁରୁଷାର୍ଥ ଓ ପରମ ସିଦ୍ଧି, ସେ ସିଦ୍ଧି ପୁନରାବୃତ୍ତିରହିତ ଭଗବତ୍ପଦଲାଭ । ଏକମାତ୍ର ଅନନ୍ୟ ଭକ୍ତିଦ୍ୱାରା ତାହାଙ୍କୁ ଲାଭ କରାଯାଏ । ସେହି ପରମ ପୁରୁଷ ଭକ୍ତବତ୍ସଳ ଓ ପରମ କାରୁଣିକ ।

ଅଦ୍ୱୈତବାଦୀମାନଙ୍କ ମତରେ ବ୍ରହ୍ମଙ୍କ ସଙ୍ଗେ ଜୀବାତ୍ମାର ଏକୀଭୂତ ହେବାହିଁ ମୁକ୍ତି ମାତ୍ର ବିଶିଷ୍ଟାଦ୍ୱୈତବାଦୀମାନେ କହନ୍ତି ଜୀବ କେବେ-

ହେଲେ ବ୍ରହ୍ମଙ୍କ ସଙ୍ଗେ ଏକୀଭୂତ ହୋଇ ପାରେ ନାହିଁ । ମୋକ୍ଷ ଅବସ୍ଥାରେ ସେ ବ୍ରହ୍ମଙ୍କର ସ୍ୱଭାବ ଏବଂ ସର୍ବଜ୍ଞତ୍ୱ ଓ ସତ୍ୟ ସଂକଳ୍ପାଦି ଗୁଣର ଅଧିକାରୀ ମାତ୍ର ହୁଏ ।

( ଗ ) **ଦ୍ୱୈତ ମତ**—ମଧ୍ୱାଚାର୍ଯ୍ୟ ଏହାର ପ୍ରବର୍ତ୍ତକ, ସେ କହନ୍ତି ଜୀବ ଓ ଜଗତ୍ ଭଗବାନଙ୍କର ଶରୀର ନୁହନ୍ତି । ଏ ଦୁହେଁ ଭଗବାନଙ୍କଦ୍ୱାରା ସୃଷ୍ଟ, ସମ୍ପୂର୍ଣ୍ଣ ଭିନ୍ନ ଓ ପୃଥକ୍ ବସ୍ତୁ । ତେବେ ସେମାନେ ସମ୍ପୂର୍ଣ୍ଣରୂପେ ଭଗବାନଙ୍କ ଉପରେ ନିର୍ଭରଶୀଳ । ଜୀବକୁ ଯାହା ଭଗବାନଙ୍କ ଅଂଶ ବୋଲି କୁହାଯାଏ, ତାହା କେବଳ ଉପମା ମାତ୍ର । ସମଗ୍ର ବସ୍ତୁ ସଙ୍ଗେ ଅଂଶର ଯେଉଁ ସମ୍ବନ୍ଧ, ଭଗବାନଙ୍କ ସଙ୍ଗେ ଜୀବର ସମ୍ବନ୍ଧ ସେହିପରି । ଅର୍ଥାତ୍ ଭଗବାନଙ୍କ ସଙ୍ଗେ ଜୀବର କିଛି ସମ୍ବନ୍ଧ ଅଛି ଏବଂ ଜୀବ ସମ୍ପୂର୍ଣ୍ଣରୂପେ ଈଶ୍ୱରଙ୍କ ଅଧୀନ ।

( ଘ ) **ଅଚିନ୍ତ୍ୟ ଭେଦାଭେଦବାଦ**—ଶଙ୍କରଙ୍କ ମତରେ ବ୍ରହ୍ମଙ୍କ ସଙ୍ଗେ ଜୀବର ଅଭେଦହିଁ ସତ୍ୟ । ରାମାନୁଜ ଓ ମଧ୍ୱାଚାର୍ଯ୍ୟଙ୍କ ମତରେ ଭେଦହିଁ ସତ୍ୟ । ଆଚାର୍ଯ୍ୟ ନିମ୍ବାର୍କ କହନ୍ତି ଭେଦ ଓ ଅଭେଦ ଉଭୟହିଁ ସତ୍ୟ । ତାଙ୍କ ମତରେ ଜୀବ ଓ ଜଗତ୍—ଏ ସମସ୍ତ ଭଗବାନଙ୍କର ଶକ୍ତି, 'ଅଙ୍ଗୋହି ଶକ୍ତିରୂପୋ ଗ୍ରାହ୍ୟଃ' । ଅଗ୍ନି ଓ ଅଗ୍ନିର ଦାହିକା ଶକ୍ତି ଏକ ନୁହେ, ଅତଏବ ସେଠାରେ ଦ୍ୱୈତଭାବ ଅଛି । ପୁଣି ଅଗ୍ନି ଛଡ଼ା ଦାହିକା ଶକ୍ତିର କୌଣସି ସତ୍ତା ନାହିଁ, ତେଣୁ ସେଠାରେ ଅଦ୍ୱୈତଭାବ ଅଛି । ତେଣୁ ଏହାକୁ ଦ୍ୱୈତାଦ୍ୱୈତ ମୀମାଂସା ବା ଅଚିନ୍ତ୍ୟଭେଦାଭେଦ-ବାଦ ବୋଲିଯାଏ । ଶକ୍ତିମାନଙ୍କ ସଙ୍ଗେ ଶକ୍ତିର ଭେଦ ଯେପରି ଅଚିନ୍ତ୍ୟ, ଅଭେଦ ମଧ୍ୟ ସେହିପରି ଅଚିନ୍ତ୍ୟ—ଏହି ହେତୁରୁ ଏ ମତବାଦର ଏହିପରି ନାମକରଣ । ନିମ୍ବାର୍କଙ୍କ ମତରେ ରାଧା କୃଷ୍ଣ ଭକ୍ତିହିଁ ଈଶ୍ୱର ପ୍ରାପ୍ତିର ଏକମାତ୍ର ସାଧନ ।

ଏମାନଙ୍କ ଛଡ଼ା ବଲ୍ଲଭାଚାର୍ଯ୍ୟ ପ୍ରମୁଖ ଅନେକ ସାଧକ ବେଦାନ୍ତ ଦର୍ଶନ ଉପରେ ଭାଷ୍ୟ ରଚନା କରି ଗୋଟିଏ ଗୋଟିଏ ସ୍ୱତନ୍ତ୍ର ସଂପ୍ରଦାୟ ପ୍ରବର୍ତ୍ତିତ କରି ଅଛନ୍ତି । ଏମାନେ ସମସ୍ତେ ଶଙ୍କର ମତର ବିରୋଧୀ ଓ ଭକ୍ତିର ପ୍ରାଧାନ୍ୟ ସ୍ୱୀକାର କରି ଅଛନ୍ତି ।

ଏହି ଭାବରେ ପୂର୍ବୋକ୍ତ ଆଚାର୍ଯ୍ୟମାନେ ଓ ସେମାନଙ୍କ ଶିଷ୍ୟ ଓ ଅନୁଶିଷ୍ୟମାନେ ଗୀତା ଉପରେ ଭାଷ୍ୟ ଓ ଟୀକା ମଧ୍ୟ ଲେଖିଅଛନ୍ତି ।

## ସାଂଖ୍ୟଦର୍ଶନ ବା ପୁରୁଷ ପ୍ରକୃତିବାଦ

**ମହର୍ଷି କପିଳ** ଏହି ଦର୍ଶନର ପ୍ରଣେତା । ଅନେକେ କହନ୍ତି ସାଂଖ୍ୟହିଁ ଜଗତର ପ୍ରାଚୀନତମ ଦର୍ଶନ ଶାସ୍ତ୍ର । ସାଂଖ୍ୟ ମତରେ ପ୍ରକୃତି ଜଗତର ମୂଳ ଉପାଦାନ । ସଂସାରରେ କ୍ଷିତି, ଜଳ, ତେଜ, ମରୁତ୍, ବ୍ୟୋମ ପ୍ରଭୃତି ଭୂତ ସମୂହ ଏବଂ ସେମାନଙ୍କୁ ଭିତ୍ତି କରି ଯେଉଁ ପ୍ରାକୃତିକ ଘଟନା ସବୁ ଘଟୁଅଛି ଏବଂ ମନୁଷ୍ୟମାନଙ୍କ ମନୋମଧ୍ୟରେ ଇଚ୍ଛା, ଦ୍ୱେଷ, ସୁଖ, ଦୁଃଖାଦି ଯେଉଁସବୁ ମାନସିକ ବ୍ୟାପାରମାନ ଘଟୁଅଛି ସେ ସମସ୍ତ ପ୍ରକୃତିରହିଁ କାର୍ଯ୍ୟ ।

**ଅନ୍ୟାନ୍ୟ** ଦର୍ଶନ ପରି ସାଂଖ୍ୟ ଦର୍ଶନ କହେ, **ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ** ଏହି ତ୍ରିବିଧ ଦୁଃଖର ଅଭିଘାତ ଜଗତରେ ମନୁଷ୍ୟକୁ ଶରଦିନ ସହିବାକୁ ହେଉଅଛି । **ଆଧ୍ୟାତ୍ମିକ** ଦୁଃଖ ଦ୍ୱିବିଧ— ରୋଗାଦିଜନ୍ୟ ଶାରୀରିକ ଦୁଃଖ ଏବଂ କାମ କ୍ରୋଧାଦିଜନ୍ୟ ମାନସିକ ଦୁଃଖ । ମନୁଷ୍ୟ, ପଶୁ ବା ସ୍ଥାବର ବସ୍ତୁରୁ ଯେଉଁ ଦୁଃଖ ଜାତ ହୁଏ ତାହା **ଆଧିଭୌତିକ** ଦୁଃଖ । ଶୀତ, ଗ୍ରୀଷ୍ମ, ବାତ, ବର୍ଷାଦିରୁ ଯେଉଁ ଦୁଃଖ ଜାତ ହୁଏ ତାହା **ଆଧିଦୈବିକ** ଦୁଃଖ । ଏହି ତ୍ରିବିଧ ଦୁଃଖର ଆତ୍ୟନ୍ତିକ ନିବୃତ୍ତିହିଁ ପୁରୁଷାର୍ଥ, ଏକ ମାତ୍ର ଜ୍ଞାନ ଦ୍ୱାରାହିଁ ଏହି ଦୁଃଖ ଯନ୍ତ୍ରଣାରୁ ମନୁଷ୍ୟ ରକ୍ଷା ପାଏ ।

ପଞ୍ଚବିଂଶତି **ତତ୍ତ୍ୱର** ଜ୍ଞାନ, ପ୍ରକୃତି ଓ ପୁରୁଷର ପାର୍ଥକ୍ୟ ଜ୍ଞାନ ଅର୍ଥାତ୍ ଏହି ସୃଷ୍ଟି ବ୍ୟାପାର ସଙ୍ଗେ ଆତ୍ମାର ସମ୍ବନ୍ଧ କଅଣ—ଏହି ଜ୍ଞାନ ଲାଭ ନ ହେବା ଯାଏ ମନୁଷ୍ୟର ଦୁଃଖ ନିବୃତ୍ତି ହେବ ନାହିଁ । ସତ୍ତ୍ୱ, ରଜଃ ଓ ତମଃ ଏହି ତିନି ଗୁଣର ସାମ୍ୟାବସ୍ଥା ପ୍ରକୃତି । କି ଜଡ଼ ଜଗତ୍, କି ଜୀବ ଜଗତ୍, କି ମନୋଜଗତ୍ ସର୍ବତ୍ର ଯେଉଁସବୁ ସୃଷ୍ଟି, ସ୍ଥିତି, ଲୟ ଚାଲୁଅଛି—ସେ ସମସ୍ତ ସତ୍ତ୍ୱ, ରଜଃ, ତମଃ ଏହି ତିନିଗୁଣର ମିଶ୍ରଣ ବା ନ୍ୟୁନତା ବା ଆଧିକ୍ୟର ଫଳ । ପ୍ରକୃତି ଅନାଦି, ଅବ୍ୟକ୍ତ, ନିତ୍ୟ, ନିରବୟବ । ତ୍ରୈଗୁଣ୍ୟ ଓ ପ୍ରଧାନ—ପ୍ରକୃତିର ଅନ୍ୟ ନାମ । ଗୁଣ ତ୍ରୟ ପରସ୍ପର ବିରୋଧୀ । ସତ୍ତ୍ୱର ସ୍ୱଭାବ ପ୍ରକାଶ ବା ଜ୍ଞାନ, ରଜର ସ୍ୱଭାବ ପ୍ରବୃତ୍ତି ଓ ତମର ସ୍ୱଭାବ ଅପ୍ରକାଶ ବା ମୋହ । ପ୍ରଳୟ ସମୟରେ ଅବ୍ୟକ୍ତ ପ୍ରକୃତିରେ ଏହି ତିନି ଗୁଣ ସାମ୍ୟାବସ୍ଥାରେ ଥାଏ । ସୃଷ୍ଟି କ୍ରିୟା ଆରମ୍ଭ ହେଲେ ଏମାନଙ୍କର ସାମ୍ୟଭଙ୍ଗ ହୁଏ ଏବଂ ବିଷଦୃଶ ବସ୍ତୁର ଉତ୍ପତ୍ତି

ହୁଏ । ସଂସାରର ପ୍ରତ୍ୟେକ ବସ୍ତୁ ଗୁଣତ୍ରୟର ନ୍ୟୂନତା ବା ଆଧିକ୍ୟରେ ସୃଷ୍ଟ । ଜଡ଼ ବସ୍ତୁରେ ତମୋଗୁଣର ଆଧିକ୍ୟ, ମନୁଷ୍ୟ ଭିନ୍ନ ଅନ୍ୟ ଜୀବଙ୍କଠାରେ ରଜଃ ଓ ତମୋଗୁଣର ଆଧିକ୍ୟ, ସତ୍ତ୍ୱଗୁଣ ଅପ୍ରକାଶିତ ଅବସ୍ଥାରେ ଥାଏ । ମନୁଷ୍ୟଠାରେ ତିନିଗୁଣ ପରିସ୍ଫୁଟ ହେଲେହେଁ କାହାରିଠାରେ ସତ୍ତ୍ୱର ଆଧିକ୍ୟ, କାହାରିଠାରେ ରଜର ଆଧିକ୍ୟ, କାହାରିଠାରେ ବା ତମର ଆଧିକ୍ୟ ଦେଖାଯାଏ । ରଜଃ ଓ ତମୋଗୁଣକୁ ଅଭିଭୂତ କରି ସତ୍ତ୍ୱଗୁଣ ଅଧିକ ହେଲେ ମନୁଷ୍ୟ ବିବେକ ଜ୍ଞାନ ଓ ଧର୍ମର ଅଧିକାରୀ ହୁଏ । ତ୍ରିଗୁଣାତୀତ ଅବସ୍ଥାହିଁ ମୋକ୍ଷଲାଭର ସୋପାନ ।

ସୃଷ୍ଟି ଆରମ୍ଭରେ ପ୍ରକୃତି ସାମ୍ୟାବସ୍ଥାରୁ ବିଚ୍ୟୁତ ହୋଇ ପ୍ରଥମେ ମହତ୍ତତ୍ତ୍ୱରେ ପରିଣତ ହୁଏ । ଏହିମହତ୍ତତ୍ତ୍ୱର ଅନ୍ୟନାମ ବୁଦ୍ଧିତତ୍ତ୍ୱ । ମହତ୍ତତ୍ତ୍ୱର ପରିଣାମ ଅହଂକାରତତ୍ତ୍ୱ; ଅହଂକାରତତ୍ତ୍ୱର ପରିଣାମରେ ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ତ୍ୱକ୍—ଏହି ପଞ୍ଚ ଜ୍ଞାନେନ୍ଦ୍ରିୟ, ହସ୍ତ, ପଦ, ବାକ୍, ପାୟୁ ଓ ଉପସ୍ଥ-ଏହି ପଞ୍ଚ କର୍ମେନ୍ଦ୍ରିୟ ଏବଂ ଜ୍ଞାନକର୍ମାତ୍ମକ ଇନ୍ଦ୍ରିୟ ମନ—ଏହି ଏକାଦଶ ଇନ୍ଦ୍ରିୟର ସୃଷ୍ଟି ହୁଏ । ପରବର୍ତ୍ତୀ ଅବସ୍ଥାରେ ଏହି ଅହଂକାରତତ୍ତ୍ୱରୁ ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ—ଏହିପଞ୍ଚତନ୍ମାତ୍ର ଏବଂ ଏହି ପଞ୍ଚତନ୍ମାତ୍ରରୁ ଆକାଶ, ବାୟୁ, ଅଗ୍ନି, ଜଳ ଓ ପୃଥିବୀ—ଏହି ପଞ୍ଚସ୍ଥୂଳଭୂତର ଉତ୍ପତ୍ତି ହୁଏ । ସ୍ଥାବର ଜଙ୍ଗମାତ୍ମକ ଜଗତ୍ ଏହି ସ୍ଥୂଳଭୂତର ପରିଣାମ ।

ଏଥିରୁ ବୋଧ ହେଲା ମହତ୍ତତ୍ତ୍ୱ, ଅହଂକାରତତ୍ତ୍ୱ, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ, ମନ, ପଞ୍ଚତନ୍ମାତ୍ର ଓ ପଞ୍ଚସ୍ଥୂଳଭୂତ ଏହି ୨୩ ବିକାର ଓ ମୂଳପ୍ରକୃତି ଏବଂ ପୁରୁଷ—ଏହି ୨୫ ତତ୍ତ୍ୱର ଜ୍ଞାନ ସୁଦୃଢ଼ ହେଲେ ଜୀବର ଦୁଃଖ ନିବୃତ୍ତି ହୋଇ ଥାଏ । ପ୍ରକୃତି ନିଜେ ଜଡ଼ ତେଣୁ ତାହାର ପରିଣାମରେ ଜାତ ଯାବତୀୟ ବସ୍ତୁ ଜଡ଼ । ପୁରୁଷ ଚେତନ, କିନ୍ତୁ ନିର୍ବିକାର ଓ ଅକର୍ତ୍ତା । ପୁରୁଷର ସାନ୍ନିଧ୍ୟ ବଶତଃ ଜଡ଼ ପ୍ରକୃତିରେ ଚୈତନ୍ୟର ଆଭାସ ହୁଏ । ସୃଷ୍ଟିକାଳରେ ପ୍ରକୃତି ଓ ପୁରୁଷ ପରସ୍ପର ସଂଯୁକ୍ତ ଥାଆନ୍ତି । ତାହାର ଫଳରେ ଏ ଉଭୟର ଗୁଣ ପରସ୍ପର ଉପଚରିତ ହୁଏ । ସେହିହେତୁରୁ ଅଚେତନ ହେଲେହେଁ ପ୍ରକୃତି ଚେତନ ଭଳି ବୋଧ ହୁଏ ଏବଂ ଅକର୍ତ୍ତା ହେଲେ ମଧ୍ୟ ପୁରୁଷ କର୍ତ୍ତା ବୋଲି ମନେ ହୁଏ ।

ସାଂଖ୍ୟ ଦର୍ଶନ ଈଶ୍ୱର ସ୍ୱୀକାର କରେ ନାହିଁ । ତେଣୁ ପ୍ରକୃତିର ପରିଣାମସଙ୍ଗେ ଈଶ୍ୱରଙ୍କର କୌଣସି ସମ୍ବନ୍ଧ ନାହିଁ । ଏହା ସେମାନଙ୍କ ମତ । ତାଙ୍କ ମତରେ ପ୍ରକୃତି ସ୍ୱତଃ ପରିଣାମ ପ୍ରାପ୍ତ ହୁଏ ।

ସୃଷ୍ଟି କ୍ରିୟା ସମ୍ବନ୍ଧରେ ସାଂଖ୍ୟବାଦୀମାନେ କହନ୍ତି, ପୁରୁଷ ସଚେତନ ଓ ଜ୍ଞାତା ହେଲେହେଁ ନିର୍ଗୁଣ ହୋଇ ଥିବାରୁ ସୃଷ୍ଟି କରିବାର ସାମର୍ଥ୍ୟ ତାଙ୍କଠାରେ ନାହିଁ, ଅନ୍ୟପକ୍ଷରେ ପ୍ରକୃତି କର୍ମକର୍ତ୍ତ୍ରୀ ହେଲେହେଁ ଜଡ଼ ହୋଇଥିବାରୁ କର୍ମ କିପରି କରିବାକୁ ହେବ ସେ ଜାଣି ପାରେ ନାହିଁ । ତେଣୁ ସାଂଖ୍ୟବାଦୀମାନେ କହନ୍ତି ଅଚେତନ ପ୍ରକୃତି ଅନ୍ଧସ୍ଥାନୀୟ ଓ ଅକର୍ତ୍ତା ପୁରୁଷ ପଙ୍ଗୁସ୍ଥାନୀୟ; ଫଳତଃ ପ୍ରକୃତି ଓ ପୁରୁଷ ଖଞ୍ଜ ଓ ଅନ୍ଧର ଯୋଡ଼ି । ଅନ୍ଧକାନ୍ଧରେ ଖଞ୍ଜବସି ପରସ୍ପର ସହାୟତାରେ ଦୁହେଁ ଯେପରି ପଥ ଅତିକ୍ରମ କରନ୍ତି, ଜଡ଼ପ୍ରକୃତି ଓ ଚେତନ ପୁରୁଷର ମିଳନରେ ସେହିପରି ସୃଷ୍ଟିର ପ୍ରତ୍ୟେକ କର୍ମସମ୍ପାଦିତ ହୁଏ । ପୁରୁଷର ଭୋଗ ଓ ମୋକ୍ଷ ସାଧନ ସୃଷ୍ଟିର ଉଦ୍ଦେଶ୍ୟ । ଯେପରି ନାଟକ ଅଭିନୟରେ ଦର୍ଶକମାନଙ୍କର ମନୋରଞ୍ଜନ ନିମିତ୍ତ ଜଣେ ନଟୀ ଭିନ୍ନ ଭିନ୍ନ କ୍ଷଣରେ ଭିନ୍ନ ଭିନ୍ନ ରୂପଧାରଣ କରି ନୃତ୍ୟକରେ ସେହିପରି ପୁରୁଷର ଲାଭ ପାଇଁ ପୁରୁଷଠାରୁ କୌଣସି ପ୍ରତିଦାନର ଆଶା ନ ରଖି ମଧ୍ୟ ପ୍ରକୃତି ସତ୍ତ୍ୱ, ରଜଃ ଓ ତମୋଗୁଣର ନ୍ୟୂନତା ଓ ଆଧିକ୍ୟ ଅନୁସାରେ ଅନେକ ରୂପ ଗ୍ରହଣ କରି ତା ଆଗରେ ନୃତ୍ୟକରେ, ଯେପର୍ଯ୍ୟନ୍ତ ପୁରୁଷ ପ୍ରକୃତିର ନୃତ୍ୟରେ ମୋହବଶତଃ ଭୁଲି ପ୍ରକୃତିର କର୍ତ୍ତୃତ୍ୱକୁ ନିଜର କର୍ତ୍ତୃତ୍ୱ ବୋଲି ମନେକରେ ସେପର୍ଯ୍ୟନ୍ତ ତାହାର ମୋକ୍ଷ ଲାଭ ହୁଏ ନାହିଁ; କିନ୍ତୁ ଯେତେବେଳେ ପୁରୁଷର ଜ୍ଞାନ ହୁଏ ଯେ ତ୍ରିଗୁଣାତ୍ମିକା ପ୍ରକୃତି ପୃଥକ୍ ଓ ମୁଁ ପୃଥକ୍, ସେତେବେଳେ ସେ ପ୍ରକୃତିଠାରୁ ବିଯୁକ୍ତ ହୋଇ ଯାଏ, ଏପରି ଅବସ୍ଥାରେ ପୁରୁଷର ମୁକ୍ତି ହୁଏ ।

ପ୍ରକୃତି ଏକବୋଲି ସାଂଖ୍ୟ ସ୍ୱୀକାର କଲେହେଁ ପୁରୁଷ ଏକ ବୋଲି ସ୍ୱୀକାର କରେ ନାହିଁ । ସେ ମତରେ ପୁରୁଷ ବହୁ, ଅଥଚ ପ୍ରତ୍ୟେକ ପୁରୁଷ ବିଶ୍ୱବ୍ୟାପୀ, ପୁରୁଷ ବହୁ ବୋଲି ସ୍ୱୀକାର ନ କଲେ ଜନ୍ମାଦିର ବ୍ୟବସ୍ଥା ହୋଇ ପାରିବ ନାହିଁ—ଏହାହିଁ ଏପରି ମତବାଦର ଉଦ୍ଦେଶ୍ୟ; ସେମାନେ କହନ୍ତି ଯେବେ ପୁରୁଷ ବହୁ ନ ହୋଇ ଏକ ହୁଅନ୍ତେ, ତେବେ ଜଣେ ସୁଖୀ ହେଲେ ସମସ୍ତେ ସୁଖୀ ହୁଅନ୍ତେ; ଜଣେ ଦୁଃଖୀ

ହେଲେ ସମସ୍ତେ ଦୁଃଖୀ ହୁଅନ୍ତେ । ଜଣେ ଅନ୍ଧ ବା ଛୋଟା ହେଲେ ସମସ୍ତେ ସେହିପରି ଅନ୍ଧ ବା ଛୋଟା ହୁଅନ୍ତେ । ଜଣକର ଜନ୍ମ ବା ମୃତ୍ୟୁ ହେଲେ ସମସ୍ତଙ୍କର ଜନ୍ମ ବା ମୃତ୍ୟୁ ହୁଅନ୍ତା । ଯେତେବେଳେ ସଂସାରରେ ଏପରି ହୁଏ ନାହିଁ ସେତେବେଳେ ପୁରୁଷ ବହୁ—ଏହା ସିଦ୍ଧ ହେଉଅଛି ।

ନିରୀଶ୍ୱର ହେଲେହେଁ ସାଂଖ୍ୟଦର୍ଶନର ମତ ବହୁଣତାଦ୍ଧୀ ହେଲା ଭାରତୀୟ ଆର୍ଯ୍ୟ ଜୀବନକୁ ପ୍ରଭାବିତ କରି ଆସୁଅଛି । ସମଗ୍ର ହିନ୍ଦୁଦର୍ଶନ, ହିନ୍ଦୁ ସମାଜ ଗଠନ, ବର୍ଣ୍ଣାଶ୍ରମ ଧର୍ମାଦି ଏହି ସାଂଖ୍ୟ ମତ ବିଶ୍ଳେଷଣ ଉପରେ ପ୍ରତିଷ୍ଠିତ । ପୁରାଣ, ଇତିହାସ ଓ ଧର୍ମ ସଂହିତା ମାନଙ୍କରେ ସାଂଖ୍ୟମତ ନାନା ଭାବରେ ଆଲୋଚିତ ହୋଇ ଆମ ଧର୍ମ ଜୀବନ ଓ କର୍ମଜୀବନକୁ ନିୟନ୍ତ୍ରିତ କରୁଅଛି ।

## ପାତଞ୍ଜଳ ଯୋଗ

ଉପନିଷଦ୍ ଯୁଗରେ ଯେତେବେଳେ ଆର୍ଯ୍ୟ ଋଷିମାନେ ନିର୍ଣ୍ଣୟ କଲେ ଯେ ଆତ୍ମଜ୍ଞାନ ବ୍ୟତୀତ ଜୀବର ମୁକ୍ତି ନାହିଁ, ସେତେବେଳେ କି ଉପାୟରେ ଏହି ଆତ୍ମଜ୍ଞାନ ଲାଭହେବ ତାହା ନିର୍ଣ୍ଣୟ କରିବା ପାଇଁ ନାନା ଭାବରେ ଉପଦେଶ ଦିଆଗଲା । ଆତ୍ମଚିନ୍ତା ମାନସିକ ବ୍ୟାପାର, ମାତ୍ର ମନ ସ୍ୱଭାବତଃ ଚଞ୍ଚଳ, କି ଉପାୟରେ ସେହି ଚଞ୍ଚଳମନ ଧ୍ୟେୟ ବସ୍ତୁରେ ଦୃଢ଼ ରୂପେ ସଂଶ୍ଳିଷ୍ଟ ହୋଇ ରହିବ, ସେଥିପାଇଁ ଯେଉଁ ଦର୍ଶନ ଶାସ୍ତ୍ର ରଚିତ ହେଲା, ତାହା ପାତଞ୍ଜଳ ଯୋଗ ନାମରେ ପରିଚିତ । ଅଷ୍ଟାଙ୍ଗଯୋଗ, ସମାଧିଯୋଗ, ରାଜଯୋଗ ଓ ଆତ୍ମସଂସ୍ଥଯୋଗ ଏହାର ଅନ୍ୟ ନାମ । କଥିତ ଅଛି ବ୍ରହ୍ମା ଏହାର ଉଦ୍‌ଭାବକ, ପରବର୍ତ୍ତୀ କାଳରେ ପତଞ୍ଜଳି ମହର୍ଷି ଏହାକୁ ଶୃଙ୍ଖଳାବଦ୍ଧ କରି ପ୍ରଚାର କରିବାରୁ ଏହାକୁ ପାତଞ୍ଜଳ ଯୋଗ କୁହାଯାଏ । 'ଚିତ୍ତନିରୋଧ' ଏହିଦର୍ଶନର ପ୍ରଧାନ ଆଲୋଚ୍ୟ ବିଷୟ ।

ମହର୍ଷି ପତଞ୍ଜଳି ସାଂଖ୍ୟଦର୍ଶନରେ ନିର୍ଣ୍ଣୀତ ହୋଇଥିବା ୨୫ଟି ତତ୍ତ୍ୱ (ପୁରୁଷ, ପ୍ରକୃତି, ମହତ୍ତତ୍ତ୍ୱ, ଅହଂକାର ତତ୍ତ୍ୱ, ପଞ୍ଚତନ୍ମାତ୍ର, ପଞ୍ଚଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ, ମନ ଓ ପଞ୍ଚମହାଭୂତ) ସ୍ୱୀକାର କରିଅଛନ୍ତି ଏବଂ ଏହା ଉପରେ ଆଉ ଗୋଟିଏ ଅଧିକତତ୍ତ୍ୱ ପ୍ରଚାର କରିଅଛନ୍ତି । ଏହି ଷଡ଼୍‌ବିଂଶ

ତତ୍ତ୍ୱ 'ଈଶ୍ୱର' । ତେଣୁ ପାତଞ୍ଜଳ ଦର୍ଶନକୁ ସେଶ୍ୱର ସାଂଖ୍ୟ ଦର୍ଶନ ମଧ୍ୟ କୁହାଯାଏ, ବସ୍ତୁତଃ ପାତଞ୍ଜଳ ଦର୍ଶନରୁ ଈଶ୍ୱରତତ୍ତ୍ୱ ଓ ଚିତ୍ତନିରୋଧ ଏ ଦୁଇଟିକୁ ବାଦ ଦେଲେ ତାହା ଏକପ୍ରକାର ସାଂଖ୍ୟ ଦର୍ଶନ ହୋଇଯାଏ । ପତଞ୍ଜଳି ନିର୍ଣ୍ଣୟ କରିଅଛନ୍ତି ଯେ ଈଶ୍ୱର ପୁରୁଷବିଶେଷ, ସର୍ବଜ୍ଞ ଏବଂ ସାଧାରଣ ପୁରୁଷଙ୍କପରି କ୍ଳେଶ, କର୍ମ, ବିପାକ, ଆଶୟ ଯୁକ୍ତ ନୁହନ୍ତି; ସେ ଏ ସବୁ ସଂପର୍କ ଶୂନ୍ୟ, ମାତ୍ର ଏହି ୨୬ ତତ୍ତ୍ୱର ଆଲୋଚନା ଏ ଦର୍ଶନର ମୁଖ୍ୟ ବିଷୟ ନୁହେ, ଗୌଣ ପ୍ରତିପାଦ୍ୟ ମାତ୍ର ଅର୍ଥାତ୍ ଆନୁଷଙ୍ଗିକ ବା ଅବାନ୍ତର କଥା । ଯୋଗହିଁ ଏ ଦର୍ଶନର ମୁଖ୍ୟ ବିଷୟ ।

ଯୋଗ ଦର୍ଶନ ମତରେ ପ୍ରକୃତି ପୁରୁଷର ସଂଯୋଗହିଁ ସଂସାର ଦୁଃଖ ସୃଷ୍ଟି ହେବାର ହେତୁ । ପ୍ରକୃତି ଓ ପୁରୁଷ—ଏ ଉଭୟର ସ୍ଥିର ଭେଦଜ୍ଞାନ ଜାତହେଲେ ଜୀବର ମୁକ୍ତି ହୁଏ । ଯୋଗହିଁ ଏହି ଭେଦ ଜ୍ଞାନଲାଭର ଏକମାତ୍ର ଉପାୟ । ଚିତ୍ତବୃତ୍ତିର ନିରୋଧର ନାମ ଯୋଗ । "ଯୋଗଶ୍ଚିତ୍ତ ବୃତ୍ତି ନିରୋଧଃ ।" ସତ୍ତ୍ୱଗୁଣର ଆଧିକ୍ୟରୁ ଚିତ୍ତ ଯେତେବେଳେ ସ୍ଥିରଥାଏ ସେହି ଅବସ୍ଥାହିଁ ଯୋଗାରମ୍ଭର ପ୍ରକୃଷ୍ଟ ସମୟ । ଓଁ କାରାଦି ମନ୍ତ୍ର ଜପ, ମୋକ୍ଷଶାସ୍ତ୍ର ଅଧ୍ୟୟନ, ଈଶ୍ୱରଙ୍କଠାରେ ସର୍ବକର୍ମଫଳ ସମର୍ପଣ—ଏହିସବୁ କ୍ରିୟା ଯୋଗ ଦ୍ୱାରା ଚିତ୍ତ ଏକାଗ୍ର ହୁଏ । ଚିତ୍ତ ଏକାଗ୍ର ହେଲେ ସାଧକ ଯୋଗର ଅଧିକାରୀ ହୁଅନ୍ତି ।

ଅଭ୍ୟାସ ଓ ବୈରାଗ୍ୟ ସାହାଯ୍ୟରେ ଅସଂଯତ ଚିତ୍ତକୁ ନିରୁଦ୍ଧ ବା ସଂଯତ କରିବାକୁ ହେବ । ଏହି ଅଭ୍ୟାସ ଓ ବୈରାଗ୍ୟ କ୍ରମେ ଦୃଢ଼ତା ପ୍ରାପ୍ତ ହେଲେ ଯୋଗୀଙ୍କର ସମାଧି ଲାଭ ନିକଟବର୍ତ୍ତୀ ହୋଇଆସେ । ଈଶ୍ୱରଙ୍କ ଅନୁଗ୍ରହ ହେଲେ ଏହି ସମାଧିରେ ସିଦ୍ଧି ଲାଭ ମଧ୍ୟ ହୋଇଥାଏ, ଏହାଛଡ଼ା ଯୋଗ ଶାସ୍ତ୍ରରେ ଚିତ୍ତବିକ୍ଷେପ ଦୂର କରିବାର ଅନ୍ୟ କେତେକ ଉପାୟ ମଧ୍ୟ ନିରୂପିତ ହୋଇଅଛି ।

ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ, ସମାଧି—ଯୋଗର ଏହି ଅଷ୍ଟାଙ୍ଗ, ଏମାନଙ୍କ ମଧ୍ୟରୁ ପ୍ରଥମ ପାଞ୍ଚଗୋଟି ବହିରଙ୍ଗ ଓ ଶେଷ ତିନିଗୋଟି ଅନ୍ତରଙ୍ଗ ।

୧—ଅହିଂସା, ସତ୍ୟ, ଅସ୍ତେୟ (ଚୋରି ନ କରିବା), ବ୍ରହ୍ମଚର୍ଯ୍ୟ, ଅପରିଗ୍ରହ (ବିଷୟ ଗ୍ରହଣର ଅଭାବ), ଏହି ପାଞ୍ଚଗୋଟିକୁ 'ଯମ' କୁହାଯାଏ ।

୨—ଶୌଚ (ବହ୍ୟଃ ଶୁଦ୍ଧି ଓ ଅନ୍ତଃ ଶୁଦ୍ଧି), ସନ୍ତୋଷ, ତପସ୍ୟା, ସ୍ୱାଧ୍ୟାୟ ( ମୋକ୍ଷଶାସ୍ତ୍ରଅଧ୍ୟୟନ ) ଓ ଈଶ୍ୱର ପ୍ରଣିଧାନ—ଏସବୁଙ୍କର ନାମ 'ନିୟମ'।

୩—ବକ୍ଷଃ, ଗ୍ରୀବା ଓ ମସ୍ତକକୁ ସରଳରେଖାକ୍ରମରେ ରଖି ଯେଉଁ ଭାବରେ ବହୁକ୍ଷଣ ଏକସ୍ଥାନରେ ଉପବେଶନ କଲେ ଶରୀରରେ କୌଣସି ପ୍ରକାର କ୍ଳେଶ ଅନୁଭୂତ ହେବନାହିଁ ତାହାହିଁ ଆସନ ବିଶେଷ, ସ୍ୱସ୍ତିକାସନ ସବୁଠାରୁ ସହଜ, ପ୍ରତ୍ୟେକ ପ୍ରକାର ଆସନ ଅଭ୍ୟାସ-ସାପେକ୍ଷ; ପଦ୍ମାସନ, ବୀରାସନ ପ୍ରଭୃତି ନାନାବିଧ ଆସନର ବିଧି ଯୋଗ ଶାସ୍ତ୍ରରେ ବର୍ଣ୍ଣିତ ଅଛି।

୪—ପ୍ରାଣାୟାମର ଅଙ୍ଗ ତିନିଗୋଟି—ରେଚକ (ବାହାରେ ଶ୍ୱାସ ତ୍ୟାଗ), ପୂରକ (ଭିତରକୁ ଶ୍ୱାସ ନେବା), କୁମ୍ଭକ (ବାୟୁକୁ ଶରୀର ମଧ୍ୟରେ ନିରୁଦ୍ଧ କରି ରଖିବା)। ସଦ୍‌ଗୁରୁଙ୍କ ଉପଦେଶଭିନ୍ନ ପ୍ରାଣାୟାମ ଅଭ୍ୟାସ କରାଯାଏ ନାହିଁ।

୫—ବିଷୟ ସମୂହରୁ ଇନ୍ଦ୍ରିୟମାନଙ୍କୁ ବଳପୂର୍ବକ ପ୍ରତ୍ୟାକର୍ଷଣ କରିବାର ନାମ ପ୍ରତ୍ୟାହାର।

୬—ଏକବିଷୟରେ ଚିତ୍ତର ଧାରଣ ବା ଆବଦ୍ଧ ରଖିବାର ନାମ ଧାରଣା।

୭—ଯେଉଁ ବିଷୟରେ ଚିତ୍ତକୁ ଧାରଣ କରାଯାଏ ସେ ବିଷୟରେ ଅବଚ୍ଛିନ୍ନ ତୈଳଧାରା ପରି ଚିତ୍ତର ଏକତାନପ୍ରବାହର ନାମ ଧ୍ୟାନ।

୮—ଧ୍ୟାନ ପରିପକ୍ୱ ହୋଇ ଯେତେବେଳେ ଧ୍ୟେୟାକାରରେ ପରିଣତ ହୁଏ ଏବଂ ଚିତ୍ତବୃତ୍ତି ଥାଇ ମଧ୍ୟ ନଥିଲା ପରି ବୋଧ ହୁଏ ସେହି ଅବସ୍ଥାର ନାମ ସମାଧି।

## ଭକ୍ତି ମାର୍ଗ

ଋକ୍ ବେଦର କେତେକ ମନ୍ତ୍ରରେ ଜ୍ଞାନ ଓ ଭକ୍ତିର ସୂଚନା ଥିଲେହେଁ ସେ ଯୁଗର ଧର୍ମ ଯାଗ ଯଜ୍ଞାଦି କର୍ମରେହିଁ ଆବଦ୍ଧ ଥିଲା। ଏହା ବୈଦିକ ଧର୍ମର ପ୍ରଥମ ସୋପାନ। ଏହି କର୍ମକାଣ୍ଡ ଯୁଗପରେ ଜ୍ଞାନକାଣ୍ଡ ଯୁଗର ଆରମ୍ଭ। କପିଳଙ୍କ ସାଂଖ୍ୟ ଦର୍ଶନ ଜ୍ଞାନମୂଳକ ହେଲେହେଁ ତାହା ଔପନିଷଦିକ ଜ୍ଞାନଠାରୁ ପୃଥକ୍। କାରଣ କପିଳଙ୍କ ସାଂଖ୍ୟ ପ୍ରକୃତି ପୁରୁଷ ବା କ୍ଷରାକ୍ଷରବସ୍ତୁମୂଳକ, ତେଣୁ ଏହାକୁ ଦ୍ୱୈତଜ୍ଞାନ

ବୋଲଯାଏ, ମାତ୍ର ଉପନିଷଦୁକ୍ତ ଜ୍ଞାନ ଏକ ବ୍ରହ୍ମ ବିଷୟକ; ତେଣୁ ତାହା ଅଦ୍ୱୈତ ବ୍ରହ୍ମଜ୍ଞାନ; ଏ ଦୁହେଁ ପରସ୍ପର ବିରୋଧୀ ହେଲେହେଁ ଜ୍ଞାନ-ଦୃଷ୍ଟିରେ ଦେଖିଲେ ଉଭୟେ ପୂର୍ବବର୍ତ୍ତୀ ଯଜ୍ଞାଦି କର୍ମମାର୍ଗର ସମାନ-ବିରୋଧୀ କର୍ମସଙ୍ଗେ ଜ୍ଞାନର ସାମଞ୍ଜସ୍ୟ କିପରି କରାଯିବ ଏ ପ୍ରଶ୍ନ ସେ ସମୟରୁ ଉଠିଥିଲା । ବୃହଦାରଣ୍ୟକ ଉପନିଷଦ୍ ଓ ସାଂଖ୍ୟ ଦର୍ଶନ ପ୍ରଚାର କଲେ ଯେ ଜ୍ଞାନ ଓ କର୍ମ ପରସ୍ପର ବିରୁଦ୍ଧ । ଜ୍ଞାନ ହେଲାପରେ କର୍ମତ୍ୟାଗ କରିବା ଅବଶ୍ୟକ, ଈଶାବାସ୍ୟାଦି ଅନ୍ୟ ଉପନିଷଦ୍ ପ୍ରଚାର କଲେ ଯେ ଜ୍ଞାନ ହେବାପରେ କର୍ମ ଛାଡ଼ିବାକୁ ହେବନାହିଁ; ବୈରାଗ୍ୟ ଦ୍ୱାରା ବୁଦ୍ଧିକୁ ନିଷ୍କାମ କରି ଜଗତର ବ୍ୟବହାରସିଦ୍ଧିନିମିତ୍ତ କର୍ମ କରିବାକୁ ହେବ; ତେଣୁ ବୈଦିକ ଯୁଗରେ ଏହି ଭାବରେ ତିନିଗୋଟି ମାର୍ଗ ଦେଖା ଦେଇଥିଲା:—

୧—ଯଜ୍ଞାଦିକର୍ମ ମାର୍ଗ ।

୨—ଜ୍ଞାନ ବୈରାଗ୍ୟ ମୂଳକ କର୍ମସନ୍ନ୍ୟାସ ମାର୍ଗ ବା ସାଂଖ୍ୟ ମାର୍ଗ (ଜ୍ଞାନବାଦ) ।

୩—ଜ୍ଞାନଯୁକ୍ତ ବୈରାଗ୍ୟ ବୁଦ୍ଧିରେ କର୍ମକରିବା ମାର୍ଗ ବା ଜ୍ଞାନକର୍ମସମୁଚ୍ଚୟମାର୍ଗ ।

ପରବର୍ତ୍ତୀ କାଳରେ ସାଂଖ୍ୟମାର୍ଗ ବା ଜ୍ଞାନମାର୍ଗରୁ ହିଁ ଭକ୍ତିମାର୍ଗର ଉତ୍ପତ୍ତି ହେଲା । ଛାନ୍ଦୋଗ୍ୟାଦି ଉପନିଷଦ୍‌ମାନେ ସ୍ଥିର କଲେ ଯେ ବ୍ରହ୍ମବିଷୟକ ଜ୍ଞାନଲାଭନିମିତ୍ତ ବ୍ରହ୍ମ ଚିନ୍ତନ ଅବଶ୍ୟକ; ଚିତ୍ତର ଏକାଗ୍ରତା ଭିନ୍ନ ସେହି ଚିନ୍ତନ ବା ମନନ ସମ୍ଭବପର ନୁହେ; ବିଶେଷତଃ ଉପନିଷଦର ବ୍ରହ୍ମ ନିର୍ଗୁଣ, ନିଷ୍କ୍ରିୟ ଓ ଅବ୍ୟକ୍ତ । ସେହି ନିର୍ଗୁଣ ବ୍ରହ୍ମବିଷୟକ ଧାରଣା, ସାଧାରଣ ମନୁଷ୍ୟଙ୍କ କଥା ଦୂରେ ଥାଉ, ପରମର୍ଷି ମୁନିଙ୍କପକ୍ଷରେ ମଧ୍ୟ ସହଜସାଧ୍ୟ ନୁହେ । ସେହି ହେତୁରୁ ଚିତ୍ତକୁ ସ୍ଥିର ରଖିବା ଉଦ୍ଦେଶ୍ୟରେ ବ୍ରହ୍ମଙ୍କର କୌଣସି ଗୋଟିଏ ସଗୁଣ ପ୍ରତୀକ ପ୍ରଥମେ ଚକ୍ଷୁସମ୍ମୁଖରେ ରଖିବା ଅବଶ୍ୟକ ହେଲା । ସୂର୍ଯ୍ୟ, ମନ ବା ଅନ୍ନ, ଏମାନଙ୍କ ମଧ୍ୟରୁ କୌଣସି ଗୋଟିକୁ ବ୍ରହ୍ମଙ୍କର ପ୍ରତୀକରୂପେ ବ୍ୟବହାର କରି ପ୍ରଥମାବସ୍ଥାରେ ଚିତ୍ତ ସ୍ଥିର କରିବାର ବ୍ୟବସ୍ଥା ହେଲା । ପ୍ରତୀକ ଉପାସନାର ଅର୍ଥ—ଯାହା ବ୍ରହ୍ମ ନୁହେ ତାହାକୁ ବ୍ରହ୍ମରୂପେ ଭାବନା କରିବା, 'ମନୋ ବ୍ରହ୍ମ ଇତ୍ୟୁପାସୀତ',

( ମନକୁ ବ୍ରହ୍ମଭାବନାରେ ଉପାସନା କରିବ ), 'ଆଦିତ୍ୟୋ ବ୍ରହ୍ମ ଇତ୍ୟୁପାସୀତ' ( ସୂର୍ଯ୍ୟଙ୍କୁ ବ୍ରହ୍ମଭାବନାରେ ଉପାସନା କରିବ ); ପ୍ରତୀକ ଉପାସନା ସମ୍ବନ୍ଧରେ ଏହି ସବୁ ଉପଦେଶ ଉପନିଷଦ୍‌ରେ ଦେଖାଯାଏ, ଏହି ଭାବରେ ଉପାସନା କରି ଚିତ୍ତର ଯେଉଁ ଏକାଗ୍ରତା ହେଲା ତାହାକୁ ବିଶେଷ ପ୍ରାଧାନ୍ୟ ଦିଆଗଲା; ଫଳତଃ ଚିତ୍ତନିରୋଧରୂପ ଯୋଗ ଗୋଟିଏ ସ୍ୱତନ୍ତ୍ର ମାର୍ଗ ହୋଇ ଉଠିଲା । ଏହିପରି ଉପନିଷଦ୍‌ର ଜ୍ଞାନମାର୍ଗରୁ ହିଁ ଯୋଗ ପ୍ରଣାଳୀର ଉଦ୍‌ଭବ, କ୍ରମେ ଏହି ପ୍ରଣାଳୀରେ ଯମ, ନିୟମ, ଆସନାଦି ସାଧନା ସଂଯୁକ୍ତ ହୋଇ ତାହା ଧ୍ୟାନଯୋଗ, ଅଷ୍ଟାଙ୍ଗ ଯୋଗ ବା ପାତଞ୍ଜଳ ଯୋଗ ନାମରେ ପରିଚିତ ହୋଇଅଛି ।

ମାତ୍ର ସାଧାରଣ ଲୋକଙ୍କ ପକ୍ଷରେ ପ୍ରତୀକ ଉପାସନାଦ୍ୱାରା ଚିତ୍ତକୁ ଏକାଗ୍ରକରି ଯୋଗମାର୍ଗରେ ନିର୍ଗୁଣବ୍ରହ୍ମଙ୍କର ଧାରଣା କରିବା ଅସମ୍ଭବ ବ୍ୟାପାର । ସଂସାରରେ ଏପରି ଲୋକଙ୍କ ସଂଖ୍ୟା ଅଳ୍ପ ନୁହେ— ଯେଉଁମାନେ କୌଣସି ପ୍ରକାର ଜ୍ଞାନାଲୋଚନା ନ କରି ମଧ୍ୟ ହୃଦୟରେ ଦୃଢ଼ରୂପେ ଧାରଣା କରନ୍ତି ଯେ, ଏହି ପରିଦୃଶ୍ୟମାନ ସୃଷ୍ଟିର ମୂଳରେ ଏକ ସର୍ବଶକ୍ତିସମନ୍ୱିତ, ସର୍ବଜ୍ଞ, ସର୍ବବ୍ୟାପୀ ସତ୍ୟ ରହିଅଛି ଏବଂ ସେହି ଧାରଣା ଅନୁସାରେ ସେମାନେ କୌଣସି ନା କୌଣସି ଭାବରେ ତାହାର ଉପାସନା କରନ୍ତି । ଏହା ଧାରଣାର ମୂଳ ଆପ୍ତ ବଚନ ଏବଂ ହୃଦୟବିଶ୍ୱାସ । ଅଜ୍ଞଲୋକର ହୃଦୟରେ ମଧ୍ୟ ବିଶ୍ୱାସ ବା ଶ୍ରଦ୍ଧାର ଅଭାବ ନ ଥାଏ । ଏହି ବିଶ୍ୱାସ ବଳରେ ସେ ଜାଗତିକ ବହୁବିଧ କାର୍ଯ୍ୟ ସଂପାଦନ କରେ ଏବଂ ପର ତତ୍ତ୍ୱ ସମ୍ବନ୍ଧରେ ଦୃଢ଼ଧାରଣା ପୋଷଣ କରିଥାଏ । ଏଭଳି ସାଧନମାର୍ଗ ବହୁକାଳରୁ ଆମଦେଶରେ ପ୍ରଚଳିତ ଅଛି; ଏହାହିଁ ଭକ୍ତିମାର୍ଗ ।

କିନ୍ତୁ ଏ ମାର୍ଗର ପଥିକମାନେ ସେହି ଅଜ୍ଞେୟ ତତ୍ତ୍ୱକୁ ନୀରସ ବା ଶୁଷ୍କ ବୋଲି ଭାବନ୍ତି ନାହିଁ । ଈଶ୍ୱର ସଗୁଣ ଓ ସାକାର ନ ହେଲେ ଭକ୍ତିର ଉନ୍ମେଷ ହୁଏ ନାହିଁ । ହୃଦୟର ଏକାନ୍ତ ଅନୁରାଗହିଁ ଭକ୍ତି । ଏପରି ଅବସ୍ଥାରେ ନିର୍ଗୁଣ ନିରାକାର ଅବ୍ୟକ୍ତ ବ୍ରହ୍ମ ଭକ୍ତିର ପାତ୍ର ହୋଇ ପାରନ୍ତି ନାହିଁ; କାରଣ ମନର ସ୍ୱାଭାବିକ ଗଠନ ଏପରି ଯେ ଇନ୍ଦ୍ରିୟର ଅଗୋଚର କୌଣସି ନିରାକାର ବସ୍ତୁଉପରେ ପ୍ରେମ ସ୍ଥାପନ କରିବା କିଂବା ନିତ୍ୟ ଚିନ୍ତନ ଦ୍ୱାରା ମନକୁ ତହିଁରେ ସ୍ଥିର ରଖି ବୃତ୍ତିକୁ

ତଦାକାର କରିବା ମନୁଷ୍ୟ ପକ୍ଷରେ କଠିନ ଏବଂ ଦୁଃସାଧ୍ୟ । କାରଣ ମନ ସ୍ୱଭାବତଃ ଚଞ୍ଚଳ, ଇନ୍ଦ୍ରିୟଗୋଚର କୌଣସି ବସ୍ତୁ ଆଧାରରୂପେ ମନ ଆଗରେ ନ ରଖିଲେ ମନ କାହିଁରେ ସ୍ଥିର ରହିବ ?

ମନକୁ ସ୍ଥିର ରଖିବା ପାଇଁ ଭକ୍ତିମାର୍ଗରେ ଏହି ହେତୁରୁ ପ୍ରତିମା-ପୂଜାର ପ୍ରବର୍ତ୍ତନ ହୋଇଅଛି ଏବଂ ରାମଚନ୍ଦ୍ର, ଶ୍ରୀକୃଷ୍ଣ, ଦୁର୍ଗା, ଶିବ ପ୍ରଭୃତଙ୍କ ସାକାରମୂର୍ତ୍ତିର ଭଜନ ଓ ଉପାସନା ପ୍ରଚଳିତ ହୋଇଅଛି ।

ଯେପରି ଜ୍ଞାନ ମାର୍ଗରୁ ଯୋଗ ମାର୍ଗର ଉଦ୍ଭବ, ସେହିପରି ସେହି ଜ୍ଞାନମାର୍ଗରୁହିଁ ଭକ୍ତିର ଉଦ୍ଭବ । କ୍ରମେ ଯୋଗ ଓ ଭକ୍ତି ଏହି ଦୁଇ ମାର୍ଗ ପ୍ରାଧାନ୍ୟ ଲାଭ କଲେହେଁ ପୂର୍ବବର୍ତ୍ତୀ ଜ୍ଞାନମାର୍ଗର ଶ୍ରେଷ୍ଠତାରେ କିଛିମାତ୍ର ଲାଘବ ହୋଇ ନ ଥିଲା । ତେଣୁ ଯୋଗପ୍ରଧାନ ଓ ଭକ୍ତିପ୍ରଧାନ ଉପନିଷଦ୍ ମାନଙ୍କରେ ମଧ୍ୟ ବ୍ରହ୍ମଜ୍ଞାନକୁ ଯୋଗ ଓ ଭକ୍ତିର ଅନ୍ତିମ ସାଧ୍ୟ କୁହାଯାଇଅଛି । ମୈତ୍ର୍ୟୁପନିଷଦ୍, ରାମତାପିନୀ ଉପନିଷଦ୍ ଓ ଅମୃତ-ବିନ୍ଦୁ ଉପନିଷଦ୍ ପ୍ରଭୃତିରେ ବିଷ୍ଣୁ, ରୁଦ୍ର, ଅଚ୍ୟୁତ, ନାରାୟଣ, ବାସୁଦେବ ପ୍ରଭୃତଙ୍କୁ ବ୍ରହ୍ମଭାବରେ ଉପାସନା କରିବାକୁ କୁହାଯାଇଅଛି । ସାରକଥା—ବୈଦିକ ଯୁଗରେ ଆତ୍ମଜ୍ଞାନୀ ପୁରୁଷମାନେ ଯେଉଁ ସବୁ ଧର୍ମାଙ୍ଗର ପ୍ରବର୍ତ୍ତନ କରିଥିଲେ, ମୂଳବୈଦିକ ଧର୍ମସଙ୍ଗେ ସେ ସବୁର ସମନ୍ୱୟ ବିଧାନ କରିବାର ଚେଷ୍ଟା ସେହି ସମୟରୁ ଆରମ୍ଭ ହୋଇଥିଲା, ପରବର୍ତ୍ତୀ କାଳରେ ମନୁ ପ୍ରଭୃତି ସ୍ମୃତିକାରମାନେ ମଧ୍ୟ ଏହି ସମନ୍ୱୟ ବିଧାନ ପାଇଁ ନାନା ବିଧି ବ୍ୟବସ୍ଥା ପ୍ରଣୟନ କରିଥିଲେ ।

## ଭାଗବତ ଧର୍ମ

ଗୀତାର ଚତୁର୍ଥ ଅଧ୍ୟାୟର ଅଷ୍ଟମ ଶ୍ଳୋକରେ ଭଗବାନ୍ କହି-ଅଛନ୍ତି—"ଅମ୍ଭେ ଧର୍ମସଂସ୍ଥାପନ ପାଇଁ ଯୁଗେ ଯୁଗେ ଜନ୍ମ ଗ୍ରହଣ କରୁଁ ।" ଶ୍ରୀମଦ୍ ଭଗବଦ୍ ଗୀତାହିଁ ଶ୍ରୀକୃଷ୍ଣଙ୍କ ପ୍ରଚାରିତ ଧର୍ମ । ଶ୍ରୀକୃଷ୍ଣ ଏ ମତବାଦର ଆଦି ପ୍ରବର୍ତ୍ତକ ନୁହନ୍ତି. ଏ ସମ୍ବନ୍ଧରେ ଚତୁର୍ଥ ଅଧ୍ୟାୟରେ ସେ କହିଅଛନ୍ତି:—

ଇମଂ ବିବସ୍ୱତେ ଯୋଗଂ ପ୍ରୋକ୍ତବାନହମବ୍ୟୟମ୍,
ବିବସ୍ୱାନ୍ ମନବେ ପ୍ରାହ ମନୁରିକ୍ଷ୍ୱାକବେଽବ୍ରବୀତ୍ ।
ଏବଂ ପରଂପରା ପ୍ରାପ୍ତ ମିମଂ ରାଜର୍ଷୟୋ ବିଦୁଃ,
ସ କାଳେନେହ ମହତା ଯୋଗୋନଷ୍ଟଃ ପରନ୍ତପ ।

( ଗୀ ୪ । ୧—୨ )

"ଏ ଯୋଗ ଅର୍ଥାତ୍ ଗୀତାରେ କଥିତ ହୋଇଥିବା ଯୋଗ ଅମ୍ଭେ ପ୍ରଥମେ ସୂର୍ଯ୍ୟଙ୍କୁ କହିଥିଲୁଁ, ସୂର୍ଯ୍ୟ ଏହା ( ସ୍ୱପୁତ୍ର ) ମନୁଙ୍କୁ ଏବଂ ମନୁ ( ସ୍ୱପୁତ୍ର ) ଇକ୍ଷ୍ୱାକୁଙ୍କୁ ଏହା କହିଥିଲେ। ଏହି ପ୍ରକାରରେ ପରମ୍ପରା ପ୍ରାପ୍ତ ଏହି ଯୋଗ ରାଜର୍ଷିମାନେ ଜାଣିଥିଲେ; ହେ ପରନ୍ତପ, ଦୀର୍ଘକାଳବଶରେ ସେ ଯୋଗ ନଷ୍ଟ ହୋଇଅଛି।" ଏଥିରୁ ଜଣାଯାଉଅଛି ଗୀତାରେ ପ୍ରତିପାଦିତ ହୋଇଥିବା ଯୋଗଧର୍ମ ଆଗେ ଏ ଦେଶରେ ଚଳୁଥିଲା, ମାତ୍ର କାଳକ୍ରମେ ତାହା ଲୋପପ୍ରାପ୍ତ ହୋଇଯାଇ ଥିବାରୁ ଭଗବାନ୍ ଅବତାର ଗ୍ରହଣ କରି ତାହା ପୁନଃ ପ୍ରଚାର କରିଥିଲେ। ଶୁଦ୍ଧ ବ୍ରହ୍ମଜ୍ଞାନ ଆଲୋଚନା ବେଳେ ଗୀତାରେ ଉପନିଷଦର କେତେକ ଶ୍ଳୋକ ଗୃହୀତ ହୋଇ ଥିଲେହେଁ, ଗୀତା ତତ୍ତ୍ୱ କେବଳ ନିର୍ଗୁଣ ବ୍ରହ୍ମ ବିଷୟକ ନୁହେ। ତେବେ ଗୀତୋକ୍ତ ଧର୍ମର ମୂଳ କେଉଁଠାରେ ? ଚତୁର୍ଥ ଅଧ୍ୟାୟ ଆରମ୍ଭରେ ଗୀତୋକ୍ତ ଧର୍ମର କ୍ରମ ସମ୍ବନ୍ଧରେ ଭଗବାନ୍ ଯାହା କହିଅଛନ୍ତି, ମହାଭାରତ ଶାନ୍ତିପର୍ବ ନାରାୟଣୀୟ ଉପାଖ୍ୟାନରେ ଠିକ୍ ସେହି ପରଂପରା ଦେଖାଯାଏ; ଏଥିରୁ ବୁଝାଯାଏ ଗୀତୋକ୍ତ ଧର୍ମ ଓ ନାରାୟଣୀୟ ଉପାଖ୍ୟାନ ବର୍ଣ୍ଣିତ ଭାଗବତ ଧର୍ମ ଏକ। ( ମହାଭାରତ ଶାନ୍ତିପର୍ବ ୩୩୪—୩୫୧ ଅଧ୍ୟାୟ )। ସେହି ନାରାୟଣୀୟ ଧର୍ମର ବର୍ଣ୍ଣନା ପ୍ରସଙ୍ଗରେ ବୈଶମ୍ପାୟନ ଜନମେଜୟଙ୍କୁ କହୁ ଅଛନ୍ତି :—

ଏବମେଷ ମହାନ୍‌ଧର୍ମଃ ସତେପୂର୍ବଂନୃପୋତ୍ତମ
କଥିତୋହରିଗୀତାସୁ ସମାସବିଧିକଳ୍ପିତଃ।
( ଶା. ପ ୩୪୬—୧୧ )

"ହେ ନୃପଶ୍ରେଷ୍ଠ, ପୂର୍ବେ ହରିଗୀତାରେ ଏହି ଉତ୍କୃଷ୍ଟ ଧର୍ମ ସଂକ୍ଷେପରେ ବିଧି ପୂର୍ବକ ତୁମ୍ଭଙ୍କୁ କୁହା ଯାଇଅଛି।" ଏଠାରେ 'ହରିଗୀତା' ପଦ ଯେ ଭଗବଦ୍‌ଗୀତା ଅର୍ଥରେ ପ୍ରଯୁକ୍ତ ହୋଇଅଛି ଏହା ନିଃସନ୍ଦେହ। ପରବର୍ତ୍ତୀ ଅନ୍ୟ ଗୋଟିଏ ଶ୍ଳୋକରେ ଏହା ଅଧିକ ସ୍ପଷ୍ଟତର ହୋଇଅଛି। ଏହି ଧର୍ମର ମୂଳତତ୍ତ୍ୱ ଶୁଣିବାକୁ ଜନମେଜୟ ପରେ ଅଧିକ କୌତୂହଳାକ୍ରାନ୍ତ ହେବାରୁ ବୈଶମ୍ପାୟନ ମୁନି କହୁ ଅଛନ୍ତି :—

ସମୁପୋଢ଼େଷ୍ୱନୀକେଷୁ କୁରୁ ପାଣ୍ଡବୟୋର୍ମୃଧେ,
ଅର୍ଜ୍ଜୁନେ ବିମନସ୍କେ ଚ ଗୀତା ଭଗବତା ସ୍ୱୟମ୍। (୩୪୮।୮)

"କୁରୁ ପାଣ୍ଡବ ସୈନ୍ୟମାନେ ଯୁଦ୍ଧ ନିମିତ୍ତ ସଜ୍ଜିତ ହେବା ସମୟରେ ଅର୍ଜ୍ଜୁନ ଅନ୍ୟମନସ୍କ ହେବାରୁ ଭଗବାନ୍ ସ୍ୱୟଂ ତାଙ୍କୁ ଏହି ଧର୍ମୋପଦେଶ ଦେଇଥିଲେ।"

ଏଥିରୁ ବୋଧ ହେଉଅଛି ଗୀତୋକ୍ତ ଯୋଗଧର୍ମ ଓ ନାରାୟଣୀୟ ଉପାଖ୍ୟାନରେ କଥିତ ଭାଗବତ ଧର୍ମ ଏକ ଏଥିରେ ସନ୍ଦେହ ନାହିଁ । ବର୍ତ୍ତମାନ ଭାଗବତ ଧର୍ମ ବା ଭକ୍ତି ସମ୍ବନ୍ଧରେ ଯେଉଁ ସବୁ ପ୍ରାଚୀନ ଗ୍ରନ୍ଥ ମିଳେ ତନ୍ମଧ୍ୟରେ ଶାଣ୍ଡିଲ୍ୟ ସୂତ୍ର, ଶ୍ରୀମଦ୍‌ଭାଗବତ ବା ଭାଗବତ ପୁରାଣ, ନାରଦସୂତ୍ର ଓ ରାମାନୁଜାଚାର୍ଯ୍ୟଙ୍କ ପ୍ରଣୀତ ଗ୍ରନ୍ଥମାନ ପ୍ରଧାନ । ମାତ୍ର ସେ ସବୁ ମହାଭାରତର ପରବର୍ତ୍ତୀ । ତେଣୁ ସ୍ପଷ୍ଟରୂପେ ଜଣାଯାଉଅଛି ଯେ, ବାସୁଦେବ ଭକ୍ତିମୂଳକ ଏହି ଭାଗବତ ଧର୍ମ ପ୍ରଥମେ ଜ୍ଞାନମୂଳକ ଉପନିଷଦମାନଙ୍କ ପ୍ରଚାର ପରେ ବାହାରିଥିଲା । ଏହି ଧର୍ମମତ ମହାଭାରତର ଅନ୍ତର୍ଗତ, ମହାଭାରତ ଯୁଦ୍ଧ ଖ୍ରୀଷ୍ଟଜନ୍ମର ୧୪୦୦ ବର୍ଷ ପୂର୍ବେ ହୋଇଥିଲା । ତେଣୁ ବୁଦ୍ଧଦେବଙ୍କ ଜନ୍ମର ୮୦୦ ବା ୯୦୦ ବର୍ଷ ପୂର୍ବେ ଯେ ଏହି ଭକ୍ତି ମୂଳକ ଭାଗବତ ଧର୍ମର ପ୍ରଚାର ହୋଇଥିଲା, ଏହା ସହଜରେ ଅନୁମିତ ହୁଏ ।

ଏହି ଭାଗବତ ଧର୍ମର ପ୍ରଚାର ପୂର୍ବରୁ ଏ ଦେଶରେ ବୈଦିକ କର୍ମମାର୍ଗ, ଉପନିଷଦର ବ୍ରହ୍ମଜ୍ଞାନ ଓ କପିଳଙ୍କ ସାଂଖ୍ୟମତ ଉତ୍ତମରୂପେ ପ୍ରଚଳିତ ହୋଇଥିଲା; ଏପରି ଅବସ୍ଥାରେ ଶ୍ରୀକୃଷ୍ଣଙ୍କ ପରି ମହାପୁରୁଷ ସେ ସବୁକୁ ଅପେକ୍ଷା ନ କରି ହଠାତ୍ ତାଙ୍କ ନୂତନ ଧର୍ମ ମତ ପ୍ରଚାର କରିଥିବେ ଓ ତାହା ତତ୍‌କାଳୀନ ବ୍ରହ୍ମର୍ଷି ଓ ରାଜର୍ଷିମାନଙ୍କ ନିକଟରେ ଆଦର ଲାଭ କରି ସର୍ବ ସାଧାରଣରେ ପ୍ରସାର ଲାଭ କରିଥିବ ଏପରି କଳ୍ପନା କରିବା ସଙ୍ଗତ ନୁହେ । ତେଣୁ ଯାଗ ଯଜ୍ଞାଦି କର୍ମର ଫଳ, ଉପନିଷଦୁକ୍ତ ଜ୍ଞାନର ଫଳ ଏବଂ କପିଳଙ୍କ ସାଂଖ୍ୟ ଜ୍ଞାନର ପରିଣାମ ପ୍ରଭୃତି ଆଲୋଚନା ନ କରି ହଠାତ୍ ଯେ ଲୋକ ଏହି ନୂତନ ଧର୍ମ ମତ ଗ୍ରହଣ କରିଥିବେ ଏପରି ବିଶ୍ୱାସ କରାଯାଇ ନ ପାରେ । ପୂର୍ବରେ ଉକ୍ତ ହୋଇଥିବା ନାରାୟଣୀୟ ଉପାଖ୍ୟାନରେ ପ୍ରଥମେ ଭାଗବତ ଧର୍ମ ସଙ୍ଗେ ଉପନିଷଦୁକ୍ତ ବ୍ରହ୍ମଜ୍ଞାନ ଓ କପିଳଙ୍କ ସାଂଖ୍ୟ ଜ୍ଞାନର ସାମଞ୍ଜସ୍ୟ ବିଧାନ କରା ଯାଇଅଛି ।

ଭକ୍ତି ସଙ୍ଗରେ ଅନ୍ୟ ସମସ୍ତ ଧର୍ମାଙ୍ଗର ସମନ୍ୱୟ ବିଧାନ କରିବା ଭାଗବତ ଧର୍ମର ମୁଖ୍ୟ ବିଶେଷତ୍ୱ ନୁହେ । ଭକ୍ତିର ଧର୍ମତତ୍ତ୍ୱ ପ୍ରଥମେ ଭାଗବତଧର୍ମ ପ୍ରଚାର କରିନାହିଁ, ମୈତ୍ର୍ୟୁପନିଷଦରୁ ଜଣାଯାଏ ଯେ ରୁଦ୍ର ଓ ବିଷ୍ଣୁଙ୍କ ଉପାସନା ଭାଗବତଧର୍ମପ୍ରଚାରପୂର୍ବରୁ ଆରମ୍ଭ

ହୋଇଥିଲା । ଉପାସ୍ୟ ଯାହା ହୁଅନ୍ତୁ ନା କାହିଁକି ତାହା ବ୍ରହ୍ମଙ୍କର ଯେ ରୂପ ଏ ଧାରଣା ପୂର୍ବରୁ ଥିଲା । ଭାଗବତ ଧର୍ମରେ ରୁଦ୍ରାଦିଙ୍କ ସ୍ଥାନରେ ବାସୁଦେବ ଉପାସ୍ୟ ବୋଲି ଗୃହୀତ ହୋଇଥିଲେ ସତ୍ୟ, ମାତ୍ର ଯେ କୌଣସି ଦେବତାଙ୍କୁ ଭକ୍ତିକଲେ ତାହା ଯେ ଭଗବାନଙ୍କୁ କରାଯାଏ ଏହା ଗୀତା ( ୯ । ୨୩ ) ଓ ଭାଗବତ ଧର୍ମରେ ଅର୍ଥାତ ନାରାୟଣୀୟ ଉପାଖ୍ୟାନରେ ( ଶାଃ ପଃ ୩୪୧-୨୦ରୁ ୩୬ ଶ୍ଳୋକ ) ସ୍ପଷ୍ଟରୂପେ କୁହାଯାଇ ଅଛି । ଭକ୍ତିତତ୍ତ୍ୱ ସ୍ୱୀକାର କରି ବୈରାଗ୍ୟ ବୁଦ୍ଧିରେ ସଂସାର ତ୍ୟାଗକରିବା ଲୋକ ଯେ ସେତେବେଳେ ନ ଥିଲେ ଏପରି ନୁହେ । କିନ୍ତୁ ଏହା କୃଷ୍ଣପ୍ରଚାରିତ ଭାଗବତ ଧର୍ମର ମୁଖ୍ୟତତ୍ତ୍ୱ ନୁହେ । ଭକ୍ତିଦ୍ୱାରା ପରମେଶ୍ୱରଙ୍କ ଜ୍ଞାନ ଲାଭ କରିବାପରେ ସୃଷ୍ଟିରକ୍ଷା ପାଇଁ ପ୍ରତ୍ୟେକଙ୍କୁ କର୍ମ କରିବାକୁ ହେବ, ଏହାହିଁ ଶ୍ରୀକୃଷ୍ଣଙ୍କର ଉପଦେଶ । ଉପନିଷଦ୍ ଯୁଗରେ ଜନକ ପ୍ରଭୃତି ଏହା ସ୍ଥିରକରି ଥିଲେ ଯେ, ଜ୍ଞାନଲାଭପରେ ମଧ୍ୟ ନିଷ୍କାମ ବୁଦ୍ଧିରେ କର୍ମ କରାଯାଇପାରେ ମାତ୍ର ଏ ବିଧି ସେକାଳରେ ବୈକଳ୍ପିକ ଥିଲା । ମାତ୍ର ଭାଗବତ ଧର୍ମରେ ସ୍ଥିର ହେଲା ଯେ, ନିଷ୍କାମକର୍ମମୂଳକ ପ୍ରବୃତ୍ତିଧର୍ମ ଅଧିକତର ଶ୍ରେୟସ୍କର । ଏବଂ ତହିଁରେ କେବଳ ଜ୍ଞାନସଙ୍ଗେ ନୁହେ ଭକ୍ତିସଙ୍ଗେ ମଧ୍ୟ ଏହି ନିଷ୍କାମ ପ୍ରବୃତ୍ତିପର ଧର୍ମର ସାମଞ୍ଜସ୍ୟ ସ୍ଥାପିତ ହେଲା । ଏହି ଧର୍ମର ପ୍ରବର୍ତ୍ତିକ ନରନାରାୟଣ ଋଷି ଏହି ପ୍ରବୃତ୍ତିମୂଳକ ନିଷ୍କାମ କର୍ମର ଅନୁଷ୍ଠାନ କରୁଥିଲେ । ତେଣୁ ସେହି ଆଦର୍ଶକୁ ଅନୁକରଣ କରିବା ସମସ୍ତଙ୍କ ପକ୍ଷରେ ଉଚିତ ବୋଲି ମହାଭାରତରେ ମଧ୍ୟ ଉପଦେଶ ଦିଆଯାଇଅଛି । "ପ୍ରବୃତ୍ତିଲକ୍ଷଣ ଶ୍ଚୈବଧର୍ମୋ ନାରାୟଣାତ୍ମକଃ" ( ମଃ ଶାଃ ୩୪୭-୮୧ ) । ଭାଗବତ ଧର୍ମର ଏହା ଶ୍ରେଷ୍ଠଲକ୍ଷଣ ବୋଲି ସେହି ଆଖ୍ୟାନରେ କୁହାଯାଇ ଅଛି । ପରେ ସନ୍ନ୍ୟାସପ୍ରଧାନ ଜୈନ ଓ ବୌଦ୍ଧ ଧର୍ମର ପ୍ରଚାର ଫଳରେ ଏହି ପ୍ରବୃତ୍ତିପର ନିଷ୍କାମ କର୍ମର ପ୍ରାଧାନ୍ୟ କମିଗଲା ଏବଂ ତତ୍‌ପରବର୍ତ୍ତୀ ଗୀତାର ଭାଷ୍ୟ ଓ ଟୀକାକାରମାନେ ଗୀତୋକ୍ତ ଧର୍ମକୁ ସନ୍ନ୍ୟାସମୂଳକ ଧର୍ମ ବୋଲି ପ୍ରତିପାଦନ କଲେ । ଏହି ଆଲୋଚନାରୁ ଜଣାଗଲା ଯେ ପ୍ରବୃତ୍ତିପର ନିଷ୍କାମ କର୍ମହିଁ ସ୍ୱରୂପତଃ ଗୀତାରେ ପ୍ରତିପାଦିତ ହୋଇଅଛି ।

ଭାରତୀୟ ମହାଯୁଦ୍ଧ ଓ ଶ୍ରୀକୃଷ୍ଣଙ୍କର ଆବିର୍ଭାବ ଖ୍ରୀଷ୍ଟ ଜନ୍ମର ୧୪୦୦ ବର୍ଷ ପୂର୍ବେ ହୋଇଥିଲା; ଏହା ପୂର୍ବେ କୁହାଯାଇଅଛି ।

ଗୀତୋକ୍ତ ଧର୍ମ ସେହି ସମୟରେ ପ୍ରଥମେ ପ୍ରଚଳିତ ହୋଇଥିଲେହେଁ, ମହାଭାରତ ତଥା ଗୀତାର ରଚନା ତାହାର ପ୍ରାୟ ୫୦୦ ବର୍ଷ ପରେ ହୋଇଥିବ, ଏପରି ଅନୁମାନ ଅସଙ୍ଗତ ନୁହେ । କାରଣ କୌଣସି ନୂତନ ଧର୍ମମତ ପ୍ରଚଳିତ ହେଲେ ତାହା ସାଙ୍ଗେ ସାଙ୍ଗେ ଲୋକପ୍ରିୟ ହୁଏ ନାହିଁ । ସେଥିପାଇଁ ଦୀର୍ଘ ସମୟ ଅବଶ୍ୟକ ହୁଏ । ତେଣୁ ମହାଭାରତୀୟ ଯୁଦ୍ଧପରେ ମୂଳ ମହାଭାରତ ଓ ଗୀତା ଖ୍ରୀଷ୍ଟ ଜନ୍ମର ୯୦୦ ବର୍ଷ ପୂର୍ବେ ରଚିତ ହୋଇଥିବ ।

ଗୀତା ଭାଗବତଧର୍ମମୂଳକ ପ୍ରଥମ ଗ୍ରନ୍ଥ ନ ହେଲେହେଁ ଏହା ଯେ ସମ୍ପ୍ରଦାୟିକ ଗ୍ରନ୍ଥମାନଙ୍କ ମଧ୍ୟରେ ଗୋଟିଏ ମୁଖ୍ୟ ଗ୍ରନ୍ଥ, ଏଥିରେ ସନ୍ଦେହ ନାହିଁ । ତେଣୁ ତହିଁରେ ପ୍ରତିପାଦିତ ଧର୍ମ ତତ୍କାଳ ପ୍ରଚଳିତ କର୍ମକାଣ୍ଡ ସହିତ, ଔପନିଷଦିକ ଜ୍ଞାନସହିତ, ସାଂଖ୍ୟ ମତ ସହିତ, ସମାଧିଯୋଗ ସହିତ ତଥା ଭକ୍ତି ସହିତ ଯେ ଅବିରୁଦ୍ଧ—ଏହା ତହିଁରେ ପ୍ରତିପାଦିତ ହେବା ଅବଶ୍ୟକ । ଗୀତାରେ ସେହିସବୁ ଧର୍ମମତର କିପରି ସାମଞ୍ଜସ୍ୟ ବା ଅବିରୁଦ୍ଧତା ପ୍ରତିପାଦିତ ହୋଇଅଛି, ଅତଃପର ଅମ୍ଭେମାନେ ତାହାହିଁ ଦେଖାଇବାକୁ ଚେଷ୍ଟା କରିବୁଁ ।

## ଗୀତାରେ ବିଭିନ୍ନ ମତବାଦର ସମନ୍ୱୟ

(କ) **ମୀମାଂସକ ମାର୍ଗ ଓ ଗୀତା**—ଅମ୍ଭେମାନେ ପୂର୍ବେ ଦେଖିଅଛୁଁ ଆଦିମ ବୈଦିକଯୁଗରେ ଯଜ୍ଞମୂଳକ କର୍ମହିଁ ପ୍ରଧାନ ଧର୍ମ ଥିଲା । ମୀମାଂସା ଦର୍ଶନ ମତରେ ଐହିକ ଏବଂ ପାରଲୌକିକ ସର୍ବବିଧ ସୁଖର ଏକମାତ୍ର ସାଧନ—ବେଦ ବିହିତ ପ୍ରଣାଳୀରେ ସକାମ ଯଜ୍ଞାନୁଷ୍ଠାନ; ଏହି ସକାମ ଯଜ୍ଞାନୁଷ୍ଠାତାମାନଙ୍କୁ ଲକ୍ଷ୍ୟକରି ଭଗବାନ୍ ଗୀତା ଦ୍ୱିତୀୟ ଅଧ୍ୟାୟର ୪୨ ମରୁ ୪୬ ମ ଶ୍ଳୋକରେ ତୀବ୍ର କଟାକ୍ଷ କରି ଅଛନ୍ତି । ସ୍ଥୂଳ ଦୃଷ୍ଟିରେ ଦେଖିଲେ ଏହା ଏକପ୍ରକାର ବେଦନିନ୍ଦା; ମାତ୍ର ଗୀତାଭଳି ଉଦାର ଧର୍ମଗ୍ରନ୍ଥରେ ଆର୍ଯ୍ୟ ଧର୍ମର ଆଦିମଉତ୍ସ ବେଦର ନିନ୍ଦାବାଦ ଏକାନ୍ତ ଅସ୍ୱାଭାବିକ ବୋଧହୁଏ । ପରେ ଭଲକରି ବୁଝିଲେ ଜଣାଯାଏ ଯେ, ଗୀତାରେ ଭଗବାନ୍ ବେଦକୁ ସର୍ବଶ୍ରେଷ୍ଠ ସ୍ଥାନ ଦେଇଅଛନ୍ତି । ଗୀତାର ୩ୟ ଅଧ୍ୟାୟର ୧୩ଶ ଶ୍ଳୋକ ଓ ପଞ୍ଚଦଶ ଅଧ୍ୟାୟର ୨୫ ଶ ଶ୍ଳୋକ ଏହାର ପ୍ରମାଣ । ଅନ୍ୟ ଅନେକ ସ୍ଥାନରେ ମଧ୍ୟ ଗୀତା ବେଦକୁ ଯଥେଷ୍ଟ ସମ୍ମାନ ଦେଇଅଛି; ତେଣୁ

ଗୀତାର ଶିକ୍ଷା ସମ୍ପୂର୍ଣ୍ଣ ରୂପେ ହୃଦୟଙ୍ଗମ କରିବାକୁ ହେଲେ, ତାହାର ସମଗ୍ର ଅଂଶ ସହିତ ମିଳାଇ ପ୍ରକୃତ ତାତ୍ପର୍ଯ୍ୟ ଗ୍ରହଣ କରିବାକୁ ହେବ । ଗୋଟିଏ ଅଧେ ଶ୍ଳୋକ ଦେଖି ଗୀତାର ସିଦ୍ଧାନ୍ତ ସମ୍ବନ୍ଧରେ ଧାରଣା କରିବା ସମୀଚୀନ ନୁହେ ।

ଦ୍ୱିତୀୟ ଅଧ୍ୟାୟରେ ବେଦର ଯେଉଁ ନିନ୍ଦାବାଦ ଦେଖାଯାଏ, ତାହା ପ୍ରକୃତରେ ବେଦ ନିନ୍ଦା ନୁହେ । ଯେଉଁମାନେ କହନ୍ତି ବେଦରେ କେବଳ ସକାମ ଯଜ୍ଞାଦି କର୍ମହିଁ ପ୍ରତିପାଦିତ ହୋଇଅଛି, ତା ଛଡ଼ା ଆଉ କିଛି ବେଦରେ ନାହିଁ, ସେହି 'ବେଦବାଦରତାଃ, ନାନ୍ୟଦସ୍ତୀତିବାଦିନଃ' ଲୋକମାନଙ୍କୁହିଁ ନିନ୍ଦା କରାଯାଇ ଅଛି । ଗୀତା ଅବଶ୍ୟ ସକାମ ଯଜ୍ଞକର୍ମର ବିରୋଧୀ; କାରଣ ଯେଉଁ କର୍ମରେ ଫଳାଭିସନ୍ଧି ଥାଏ ତାହା କେତେବେଳେ ଚିତ୍ତର ସ୍ଥିରତା ସମ୍ପାଦନ କରି ନ ପାରେ । ଚିତ୍ତ ସ୍ଥିର ନ ହେବାଯାଏ ସମାଧି ଲଭ ବା ଈଶ୍ୱର ପ୍ରାପ୍ତି ହୁଏନାହିଁ । ଆଉ ଗୋଟିଏ କଥା ପ୍ରତି ଏଠାରେ ଦୃଷ୍ଟି ଦେବାକୁ ହେବ । ଏହିସବୁ ସକାମଯଜ୍ଞାଦି କର୍ମର ପ୍ରତିପାଦକମାନେ ଈଶ୍ୱର ବିଶ୍ୱାସ କରନ୍ତି ନାହିଁ ବା ବେଦ ଯେ ଈଶ୍ୱର ବାଣୀ ଏ ଧାରଣା ସେମାନଙ୍କର ନାହିଁ । ମାତ୍ର ଗୀତା ଈଶ୍ୱର ବିଶ୍ୱାସରେ ସମ୍ପୃକ୍ତ୍; ଏହି ହେତୁରୁ ଏହା ବେଦର ନିନ୍ଦା ନୁହେ, ବେଦର ବିକୃତ ବ୍ୟାଖ୍ୟାକାରୀଙ୍କ ନିନ୍ଦା ।

ଗୀତାରେ ଅନେକତ୍ର ଦେଖାଯାଏ, ଭଗବାନ୍ ଜୀବକୁ ଯଜ୍ଞ କରିବା ପାଇଁ ପ୍ରବର୍ତ୍ତିତ କରି ଅଛନ୍ତି । 'ଯଜ୍ଞଦାନତପଃ କର୍ମ ନତ୍ୟାଜ୍ୟଂ କାର୍ଯ୍ୟମେବ ତତ୍, ଯଜ୍ଞୋଦାନଂ ତପଶ୍ଚୈବ ପାବନାନି ମନୀଷିଣାମ' (ଗୀତା ୧୮।୫), ଇତ୍ୟାଦି ବାକ୍ୟରେ ଯଜ୍ଞ ଯେ ମନୁଷ୍ୟ ପକ୍ଷରେ ଅବଶ୍ୟ-କର୍ତ୍ତବ୍ୟ ଏହା ଗୀତାର ସ୍ପଷ୍ଟ ଉପଦେଶ; କିନ୍ତୁ ଗୀତାର ଯଜ୍ଞ ସକାମ ନୁହେ, ଈଶ୍ୱରଙ୍କ ସୃଷ୍ଟିରକ୍ଷା ଉଦ୍ଦେଶ୍ୟରେ ଏବଂ କର୍ତ୍ତବ୍ୟ ପ୍ରେରଣାରେ ନିଷ୍କାମ ହୃଦୟରେ ଯଜ୍ଞାନୁଷ୍ଠାନ କରିବାକୁ ହେବ । ଏହାହିଁ ଗୀତାର ଉପଦେଶ । ଏହି ଭାବରେ ଗୀତା ସକାମ ଯଜ୍ଞାଦି କର୍ମ ସଙ୍ଗେ ଈଶ୍ୱର ବିଶ୍ୱାସ ସଂଯୁକ୍ତ କରି ଉଭୟର ସାମଞ୍ଜସ୍ୟ ବିଧାନ କରି ଅଛି ।

(ଖ) ଉପନିଷଦ୍ ଓ ଗୀତା—ଗୀତା ଉପନିଷଦ୍‌ମାନଙ୍କର ସାରସଂଗ୍ରହ । ଉପନିଷଦ୍‌ର କୌଣସି କୌଣସି ଶ୍ଳୋକ ବା ଶ୍ଳୋକାଂଶ ଅବିକୃତଭାବରେ ଗୀତାରେ ଗୃହୀତ ହୋଇଅଛି । ଗୀତାର ଦ୍ୱିତୀୟ

ଅଧ୍ୟାୟର "ଅଶ୍ବତ୍ଥବତ୍ ପଶ୍ୟତ କଶ୍ଚିଦେନମ୍" ଏହି ଶ୍ଳୋକର ଅର୍ଥ କଠୋପନିଷଦ୍ ଦ୍ୱିତୀୟ ବଲ୍ଲୀର 'ଅଶ୍ବତ୍ଥବତ୍ୟା' ଏହି ମନ୍ତ୍ରର ଅର୍ଥ ସଙ୍ଗେ ସମାନ । "ନଜାୟତେ ମ୍ରିୟତେବା କଦାଚତ୍" (ଗୀ ୨।୨୦) ଏବଂ "ଯଦିଚ୍ଛନ୍ତୋ ବ୍ରହ୍ମଚର୍ଯ୍ୟଂ ଚରନ୍ତି" ( ଗୀ୮।୧୧ )—ଗୀତା ଓ କଠୋପନିଷଦ୍‌ରେ ଏକ । "ସର୍ବତଃ ପାଣିପାଦଂ ତତ୍" (ଗୀ ୧୩।୧୩), ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍' ( ଗୀ୮।୯ ) ଗୀତା ଓ ଶ୍ୱେତାଶ୍ୱତର ଉପନିଷଦ୍‌ରେ ଏକ । ଏହାଛଡ଼ା ଆହୁରି ଅନେକ ସ୍ଥଳରେ ଗୀତା ଓ ଉପନିଷଦ୍‌ମାନଙ୍କର ଭାବରେ ସାଦୃଶ୍ୟ ମଧ୍ୟ ଦେଖାଯାଏ । ଗୀତାର ଦ୍ୱିତୀୟ ଅଧ୍ୟାୟ ବର୍ଣ୍ଣିତ ଆତ୍ମାର ଅଶୋଚ୍ୟତ୍ୱ, ଅଷ୍ଟମ ଅଧ୍ୟାୟର ଅକ୍ଷର ବ୍ରହ୍ମ ସ୍ୱରୂପ ଏବଂ ତ୍ରୟୋଦଶ ଅଧ୍ୟାୟରେ ବର୍ଣ୍ଣିତ କ୍ଷେତ୍ର କ୍ଷେତ୍ରଜ୍ଞ ବିଚାର ଏବଂ ବିଶେଷତଃ ଜ୍ଞେୟପରବ୍ରହ୍ମସ୍ୱରୂପ ,ଉପନିଷଦ୍‌ଭିତ୍ତିରେହିଁ କଥିତ ହୋଇଅଛି; ଏଥିରୁ ଜଣାଯାଉଅଛି ଗୀତାର ସତ୍ୟ ବେଦାନ୍ତ ବା ଉପନିଷଦ୍ ଅବଲମ୍ବନରେ ପ୍ରତିପାଦିତ ହୋଇଅଛି ।

ଏହା ବୋଲି ଗୀତା ଯେ କେବଳ ଉପନିଷଦ୍‌ମାନଙ୍କର ସଂକ୍ଷିପ୍ତ ସଂକଳନ ତା ନୁହେ । ଉପନିଷଦ୍ ଓ ଦର୍ଶନଶାସ୍ତ୍ରମାନଙ୍କରୁ କେତେକ ତତ୍ତ୍ୱ ଗ୍ରହଣ କରି ଗୀତା ତହିଁରେ ନିଜସ୍ୱ ଯୋଗ ପ୍ରଣାଳୀ ସଂଯୋଜିତ କରି ଅମୃତତ୍ୱଲାଭାଭିଳାଷୀ ଜୀବଙ୍କୁ ଦିବ୍ୟଜୀବନଲାଭର ମାର୍ଗ ପ୍ରଦର୍ଶନ କରିଅଛି । ଗୀତା ଉପନିଷଦ୍‌ମାନଙ୍କ ଭଳି ପ୍ରାମାଣ୍ୟ ହେଲେହେଁ, ଉପନିଷଦ୍‌ମାନଙ୍କର ଭାବ ପ୍ରକାଶ ପ୍ରଣାଳୀ ଠାରୁ ଏହାର ପ୍ରଣାଳୀ ଭିନ୍ନ । ପ୍ରାଚୀନ ଆର୍ଯ୍ୟଋଷିମାନେ ସାଧନା ବଳରେ ଯେଉଁସବୁ ସତ୍ୟ ନିଜ ହୃଦୟ ମଧ୍ୟରେ ଅନୁଭବ କରିଥିଲେ ଉପନିଷଦ୍‌ର ମନ୍ତ୍ର ସବୁ ତାହାର ବାଙ୍ମୟୀମୂର୍ତ୍ତି । ଗୀତା ସେହି ସବୁ ସତ୍ୟର ସାର ସଂଗ୍ରହ କରି ନୂତନ ଭାବରେ ଯୁଗୋପଯୋଗୀ କରି ତାହା ପ୍ରକାଶ କରିଅଛି ଏବଂ ତଦନୁସାରେ କାର୍ଯ୍ୟତଃ ଜୀବନକୁ କି ଭାବରେ ଗଢ଼ା ଯାଇପାରେ ତାହାର ଉପଦେଶ ଦେଇଅଛି ।

ଉପନିଷଦ୍‌ମାନଙ୍କରେ ବ୍ରହ୍ମଙ୍କର ଯେଉଁ ସ୍ୱରୂପ ବର୍ଣ୍ଣିତ ହୋଇଅଛି ତାହା ନିର୍ଗୁଣ, ନିରାକାର, ବିଶ୍ୱଲୀଳାର ଅତୀତ ଓ ଅବ୍ୟକ୍ତ । ଏହି ଅକ୍ଷର ଅବ୍ୟକ୍ତବ୍ରହ୍ମଙ୍କଠାରେ ମନୋନିବେଶ କରିବା ଅତିଶୟ କଠିନ । ଉପନିଷଦ୍‌ରେ ମନ୍ତ୍ର ଦ୍ରଷ୍ଟା ଋଷି ମଧ୍ୟ 'କ୍ଷୁରସ୍ୟ ଧାରା ନିଶିତା ଦୁରତ୍ୟୟା

ଦୁର୍ଗଂ ପଥସ୍ତତ୍ କବୟୋ ବଦନ୍ତି'—ଇତ୍ୟାଦି ରୂପେ ଉପନିଷତ୍‌ରେ ଛୁଦର୍ଶିତମାର୍ଗର ଦୁର୍ଗମତ୍ୱ ସ୍ୱୟଂ ପ୍ରକାଶ କରିଅଛନ୍ତି । ସେ ମାର୍ଗରେ ପଥିକ ହୋଇ ବ୍ରହ୍ମଙ୍କ ସ୍ୱରୂପ ଉପଲବ୍ଧି କରିବାକୁ ହେଲେ ସଂସାର ତ୍ୟାଗକରି କୌଣସି ନିର୍ଜନ ଆଶ୍ରମରେ ବ୍ରହ୍ମଚର୍ଯ୍ୟ ଅବଲମ୍ବନପୂର୍ବକ ଗୁରୁଙ୍କ ଶ୍ରୀଚରଣରେ ବସି ବ୍ରହ୍ମ ଓ ଜଗତ୍ ସମ୍ବନ୍ଧରେ ଅଧ୍ୟାତ୍ମ ସତ୍ୟ ଶିକ୍ଷା କରିବାକୁ ହେବ କିମ୍ବା ନିର୍ଜନ ପର୍ବତ ଗହ୍ୱରରେ ଚକ୍ଷୁ ମୁଦ୍ରିତକରି ବସି ସମାଧି ସାଗରରେ ବୁଡ଼ି ରହିବାକୁ ପଡ଼ିବ । ଏହା ଯେ ମୁକ୍ତିର ପଥ—ଗୀତା ଏହା ଅସ୍ୱୀକାର କରିନାହିଁ ସତ୍ୟ, ମାତ୍ର ସଂସାରର ଆନନ୍ଦପୂର୍ଣ୍ଣ କର୍ମମୟ ଜୀବନ ତ୍ୟାଗକରି ଈଶ୍ୱରପ୍ରାପ୍ତି ଆଶାରେ ଏଭଳି ଦୁଃସାଧ୍ୟ ପଥରେ ପଥିକ ହେବାକୁ କାହାର ବା ପ୍ରବୃତ୍ତି ହେବ ? ତେଣୁ ଅନେକଙ୍କୁ ଈଶ୍ୱର ପ୍ରାପ୍ତି ଆଶାରେ ଜଳାଞ୍ଜଳି ଦେବାକୁ ପଡ଼ିବ । ଭଗବାନ୍ ଏହାର ସମାଧାନ କରି ଯାହା 'ସୁସୁଖଂ କର୍ତ୍ତୁମବ୍ୟୟମ୍' ସେହିପଥ ଗୀତାରେ ଦେଖାଇ ଦେଇଅଛନ୍ତି । ସେ ପଥ ସନାତନ, କାଳକ୍ରମେ ଲୋକେ ତାହା ଭୁଲି ଶାସ୍ତ୍ରମାନଙ୍କର ବିଭିନ୍ନ ମତରେ ବିଭ୍ରାନ୍ତ ହୋଇ ଯାଇଥିଲେ; ତେବେ ସେ ପଥ କଅଣ ?

ଏହି ପଥ ପ୍ରଦର୍ଶନ ପାଇଁ ଭଗବାନ୍ ଗୀତାରେ 'ପୁରୁଷୋତ୍ତମତତ୍ତ୍ୱ'ର ସନ୍ଧାନ ଦେଇ ଅଛନ୍ତି । ଉପନିଷଦ ମାନଙ୍କରେ ବ୍ରହ୍ମଙ୍କର ସଗୁଣ ଓ ନିର୍ଗୁଣ ଦୁଇ ବିଭବର ବର୍ଣ୍ଣନା ଥିଲେହେଁ ତହିଁରେ ସଗୁଣ ବିଭବ ଗୌଣ । ବିଶେଷତଃ ଉପନିଷଦ୍ ତଥା ବେଦାନ୍ତ ଦର୍ଶନର ପ୍ରସିଦ୍ଧ ଭାଷ୍ୟକାର ଆଚାର୍ଯ୍ୟ ଶଙ୍କର ତାଙ୍କ ବ୍ୟାଖ୍ୟାରେ ନିର୍ଗୁଣ ବିଭବହିଁ ପ୍ରତିପାଦିତ କରି ସଗୁଣ ବିଭବକୁ ମାୟାର ବିଜୃମ୍ଭଣ ବୋଲି ପ୍ରତ୍ୟାଖ୍ୟାନ କରିଅଛନ୍ତି । ବେଦାନ୍ତ ମତରେ ମାୟାହିଁ ବିଶ୍ୱଲୀଳାର ମୂଳ, ଏହି ମାୟାକୁ ଅତିକ୍ରମ କଲେ ବ୍ରହ୍ମସ୍ୱରୂପ ଲାଭ କରାଯାଇ ପାରିବ । ଯେଉଁଠାରେ ମାୟା ନାହିଁ ସେଠାରେ ସଂସାର ନାହିଁ । ଦେବ, ଈଶ୍ୱର, ବ୍ରହ୍ମା, ବିଷ୍ଣୁ, ଶିବ—ଏ ସବୁ ବ୍ରହ୍ମଙ୍କର ନୀଚ ଅବସ୍ଥା ଅର୍ଥାତ୍ ମାୟାଯୁକ୍ତ ଅବସ୍ଥା; ସର୍ବୋଚ୍ଚ ଅବସ୍ଥାରେ ଥିବା ବ୍ରହ୍ମ ନିର୍ଗୁଣ । କିନ୍ତୁ ଗୀତା କହେ—ଏହି ମାୟା ବା ଅଜ୍ଞାନ ଯାହା, ତ୍ରିଗୁଣମୟୀ ପ୍ରକୃତିହିଁ ତାହା । ବାସନା ବା ଅହଂକାର ଏହି ପ୍ରକୃତିର ସ୍ୱରୂପ । ମାୟା ବା ପ୍ରକୃତିକୁ ଅତିକ୍ରମ କରି ପାରିଲେ ପର ପ୍ରକୃତି ଅର୍ଥାତ୍ ଜୀବାତ୍ମାର ଖେଳା ଫୁଟି ଉଠିବ । ଲୀଳାମୟ ପୁରୁଷୋତ୍ତମହିଁ ପରବ୍ରହ୍ମ । ପରବ୍ରହ୍ମ ସମ୍ପୂର୍ଣ୍ଣ ନିର୍ଗୁଣ, କିନ୍ତୁ ପୁରୁଷୋତ୍ତମ

ନିର୍ଗୁଣ ଓ ସଗୁଣ । ସାଧନାଦ୍ୱାରା ସେହି ଲୀଳାମୟ ପୁରୁଷୋତ୍ତମଙ୍କ ସାଧର୍ମ୍ୟ ଲାଭ କରିପାରିଲେ ମନୁଷ୍ୟ ଦିବ୍ୟ ଜୀବନ ଲାଭ କରି କୃତାର୍ଥ ହେବ । ଏହି ପୁରୁଷୋତ୍ତମ ତତ୍ତ୍ୱ ଉପନିଷଦ୍‌ରେ ସ୍ପଷ୍ଟରୂପେ ପ୍ରତିପାଦିତ ହୋଇ ନ ଥିଲେହେଁ ଏହାର ଆଭାସ କୌଣସି କୌଣସି ଉପନିଷଦ୍‌ରେ ଦେଖାଯାଏ । ମୁଣ୍ଡକ ଉପନିଷଦ୍‌ରେ ଅଛି :—

"ପୁରୁଷଃ ଅକ୍ଷରାତ୍ ପରତଃ ପରଃ"

ଅକ୍ଷର ପୁରୁଷ ଶ୍ରେଷ୍ଠ ହେଲେହେଁ ତାଙ୍କ ଅପେକ୍ଷା ଅନ୍ୟ ଶ୍ରେଷ୍ଠ ପୁରୁଷ ଅଛନ୍ତି । ଏଠାରେ ସଗୁଣ ପୁରୁଷୋତ୍ତମଙ୍କୁ ଯେ ଲକ୍ଷ୍ୟ କରାଯାଇ-ଅଛି—ଏପରି ଅନୁମାନ କରାଯାଇ ପାରେ ।

ଯେ ଯାହା ହେଉ, ଏହି ପୁରୁଷୋତ୍ତମ ତତ୍ତ୍ୱହିଁ ଭାରତର ଧର୍ମ-ଜୀବନ ଉପରେ ପରବର୍ତ୍ତୀ କାଳରେ ପୂର୍ଣ୍ଣ ପ୍ରଭାବ ବିସ୍ତାର କରିଅଛି । ଅଷ୍ଟାଦଶ ପୁରାଣ ଓ ଶ୍ରୀମଦ୍ ଭାଗବତ ଆମ୍ଭମାନଙ୍କ ଧର୍ମଗ୍ରନ୍ଥମାନଙ୍କ ମଧ୍ୟରେ ପ୍ରଧାନ । ନାନା ଉପାଖ୍ୟାନ ମଧ୍ୟରେ ଭକ୍ତିର ସମୁଜ୍ଜ୍ୱଳ ଚିତ୍ର ଏହିସବୁ ଗ୍ରନ୍ଥରେ ବର୍ଣ୍ଣିତ ହୋଇ ଆମ ସମାଜର ସବୁ ଶ୍ରେଣୀର ଲୋକଙ୍କୁ ଧର୍ମ ଭାବରେ ଅନୁପ୍ରାଣିତ କରୁଅଛି । ଗୀତାର ଭକ୍ତିବାଦହିଁ ଏହି ସମସ୍ତ ଧର୍ମଗ୍ରନ୍ଥର ଜୀବନ ସ୍ୱରୂପ ।

ଏହି ଭାବରେ ଭକ୍ତି ତତ୍ତ୍ୱର ପ୍ରଚାର ଦ୍ୱାରା ଗୀତା ନିଜ ଧର୍ମ ମତକୁ ଲୋକ ପ୍ରିୟ କରିବା ସଙ୍ଗେ ସଙ୍ଗେ ଉଭୟ ମତର ସାମଞ୍ଜସ୍ୟ ବିଧାନ କରିଅଛି ।

(ଗ) ବେଦାନ୍ତ ଦର୍ଶନ ଓ ଗୀତା—ଭାରତୀୟ ଛଅଟି ଦର୍ଶନ ମଧ୍ୟରେ ବେଦାନ୍ତ ଦର୍ଶନହିଁ ସର୍ବ ପ୍ରଧାନ । ଉପନିଷଦ୍‌ମାନଙ୍କୁ ଶ୍ରୁତି ମଧ୍ୟ କୁହାଯାଏ । ପ୍ରାମାଣିକ ପ୍ରାଚୀନ ଉପନିଷଦ୍‌ମାନଙ୍କର ସିଦ୍ଧାନ୍ତକୁ ଆପ୍ତ ବଚନ ରୂପରେ ଗ୍ରହଣ କରି ମହର୍ଷି ବାଦରାୟଣ ଏହି ଦର୍ଶନ ଶାସ୍ତ୍ର ପ୍ରଣୟନ କରିଅଛନ୍ତି । ଗୀତା ମଧ୍ୟ ସେହି ଉପନିଷଦ୍‌ରେ ନିବଦ୍ଧ ସତ୍ୟକୁ ଗ୍ରହଣ କରି ତାହାର କିଛିତ୍ ପରିବର୍ତ୍ତନ ଓ ପରିବର୍ଦ୍ଧନ ସହକାରେ ନିଜସ୍ୱ ଧର୍ମ ମତ ପ୍ରବର୍ତ୍ତିତ କରିଅଛି । ଏପରି ଅବସ୍ଥାରେ ବେଦାନ୍ତ ଦର୍ଶନ ଓ ଗୀତା ମଧ୍ୟରେ ମତାନୈକ୍ୟ ଦୃଷ୍ଟ ହେବା ଅସମ୍ଭବ । ଅଧିକନ୍ତୁ ମଧ୍ୟ ଗୀତାର ଓ ବେଦାନ୍ତ ଦର୍ଶନର ପ୍ରଣେତା ଜଣେ—ବ୍ୟାସଦେବ ବା ମହର୍ଷି ବାଦରାୟଣ । ଏହା ଯେବେ ସତ୍ୟ, ତେବେ ଉଭୟ ଶାସ୍ତ୍ର ମଧ୍ୟରେ

ବିରୋଧ ରହି ନ ପାରେ । ଗୀତାର ୧୩ଶ ଅଧ୍ୟାୟର ୪ର୍ଥ ଶ୍ଳୋକରେ 'ବ୍ରହ୍ମସୂତ୍ର'ର ଉଲ୍ଲେଖ ଅଛି । ବେଦାନ୍ତ ଦର୍ଶନର ଅନ୍ୟ ନାମ ବ୍ରହ୍ମସୂତ୍ର । ବ୍ରହ୍ମସୂତ୍ରରେ 'ସ୍ମୃତି'ର ସିଦ୍ଧାନ୍ତ ବୋଲି ଅନେକ ସୂତ୍ରରେ ଯାହା ପ୍ରମାଣ ରୂପେ ଗୃହୀତ ହୋଇଅଛି ସେହି 'ସ୍ମୃତି' ଦ୍ୱାରା ଯେ ଗୀତାକୁ ଲକ୍ଷ୍ୟ କରାଯାଇଅଛି, ଏହା ନିଃସନ୍ଦେହ ବୋଲି ଏ ଯୁଗର ସମାଲୋଚକମାନେ ସ୍ଥିର କରିଅଛନ୍ତି । ତେଣୁ ବେଦାନ୍ତ ଦର୍ଶନ ଓ ଗୀତା ଦୁହେଁ ଯେ ଏକ ଯୁଗରେ ରଚିତ— ଏହା କୁହାଯାଇ ପାରେ ।

ବେଦାନ୍ତ ଦର୍ଶନର ସୂତ୍ରମାନଙ୍କର ସଂକ୍ଷିପ୍ତତା ଓ ଅର୍ଥ ବହୁଳତା ହେତୁରୁ ପରବର୍ତ୍ତୀ କାଳର ଭାଷ୍ୟକାର ଓ ଟୀକାକାରମାନଙ୍କ ମଧ୍ୟରେ ଯେଉଁସବୁ ପରସ୍ପର ବିରୁଦ୍ଧ ମତବାଦ ଦେଖାଯାଏ ତାହା ବେଦାନ୍ତ ଦର୍ଶନର ପରିଚୟ ସ୍ଥଳରେ କୁହାଯାଇ ଅଛି । ଗୀତାର ଭାବ ପ୍ରକାଶ ପ୍ରଣାଳୀ ବ୍ରହ୍ମସୂତ୍ରର ପ୍ରଣାଳୀଠାରୁ ସରଳ । ଗୀତାର ସରଳ ବ୍ୟାଖ୍ୟାରେ ସେହି ସବୁ ମତବାଦ କିପରି ନିର୍ଣ୍ଣୀତ ହୋଇଅଛି, ତାହା ବର୍ତ୍ତମାନ ଦେଖିବା ।

ସାଧାରଣତଃ ଜଗତ୍, ଜୀବ ଓ ବ୍ରହ୍ମ—ଏହି ତିନିଗୋଟି ବିଷୟ ବ୍ରହ୍ମସୂତ୍ରରେ ଆଲୋଚିତ ହୋଇଅଛି । ଆଚାର୍ଯ୍ୟ ଶଙ୍କର ଓ ଆଚାର୍ଯ୍ୟ ରାମାନୁଜ—ଏହି ଦୁଇଜଣହିଁ ବ୍ରହ୍ମସୂତ୍ରର ବିରୁଦ୍ଧମତବାଦୀ ପ୍ରଧାନ ଭାଷ୍ୟକାର । ଏ ଦୁଇଜଣଙ୍କ ମଧ୍ୟରେ ନିମ୍ନଲିଖିତ କେତେଗୋଟି ବିଷୟରେ ମାରାତ୍ମକ ମତଦ୍ୱୈଧ ପରିଲକ୍ଷିତ ହୁଏ ।

୧—ଜଗତ୍ ମିଥ୍ୟା ନା ସତ୍ୟ ?
୨—ଜୀବ ବ୍ରହ୍ମ ଏକ ନା ପୃଥକ୍ ପୃଥକ୍ ?
୩—ବ୍ରହ୍ମଙ୍କ ସ୍ୱରୂପ ସଗୁଣ ନା ନିର୍ଗୁଣ ?
୪—କି ଭାବରେ ସାଧନ କଲେ ବ୍ରହ୍ମ ପ୍ରାପ୍ତି ହୁଏ ?
୫—ମୋକ୍ଷର ସ୍ୱରୂପ କଅଣ ?

ଅଦ୍ୱୈତବାଦୀମାନେ କହନ୍ତି—ବ୍ରହ୍ମହିଁ ଏକମାତ୍ର ସଦ୍ ବସ୍ତୁ, ଜଗତ୍ ଅବସ୍ତୁ । ଦେଖା ଯାଉଥିବା ଜଗତ୍ ଅସତ୍ୟ, କାଳ୍ପନିକ ଓ ଇନ୍ଦ୍ରଜାଲପରି ମାୟାର ବିଳାସ ମାତ୍ର । ଅନ୍ୟ ପକ୍ଷରେ ବିଶିଷ୍ଟା-ଦ୍ୱୈତବାଦୀମାନେ କହନ୍ତି ଜଗତ୍ ସଦ୍ ବସ୍ତୁ, କାଳ୍ପନିକ ନୁହେ । ଜଗତ୍ ପ୍ରକୃତିର ପରିଣାମରେ ଗଠିତ ବିକାରଜନିତ ବାସ୍ତବ ପଦାର୍ଥ ।

ଗୀତା ମତରେ ଭଗବାନ୍ହିଁ ଜଗତର ବୀଜ, 'ବୀଜଂ ମାଂ ସର୍ବଭୂତାନାଂ ବିଦ୍ଧି ପାର୍ଥ ସନାତନମ୍' ୭ମ ଅଧ୍ୟାୟର ଦଶମ ଶ୍ଲୋକରେ ଏହା ଭଗବାନ୍ କହିଅଛନ୍ତି । ଅନ୍ୟତ୍ର ୯ମ ଅଧ୍ୟାୟର ୧୦ମ ଶ୍ଲୋକରେ ଭଗବାନ୍ ପୁଣି କହିଅଛନ୍ତି 'ମୟାଧ୍ୟକ୍ଷେଣ ପ୍ରକୃତିଃ ସୂୟତେ ସଚରାଚରମ୍, ହେତୁନାନେନ କୌନ୍ତେୟ ଜଗଦ୍ ବିପରିବର୍ତ୍ତତେ' । ଅର୍ଥାତ୍ ଭଗବାନଙ୍କ ଅଧିଷ୍ଠାନ ବଶତଃ ପ୍ରକୃତି ଚରାଚର ବିଶ୍ୱ ପ୍ରସବ କରେ ଏବଂ ସେହି କାରଣରୁ ଜଗତର ପରିଣାମ ସଂଘଟିତ ହୁଏ । ପରା ଓ ଅପରା ଭେଦରେ ଭଗବାନଙ୍କ ପ୍ରକୃତି ଦ୍ୱିବିଧ । କ୍ଷିତି, ଅପ୍, ତେଜଃ, ମରୁଦ୍, ବ୍ୟୋମ ଓ ମନ, ବୁଦ୍ଧି, ଅହଂକାର—ଅପରା ପ୍ରକୃତି ଏହି ଅଷ୍ଟବିଧ ଏବଂ ପରା ପ୍ରକୃତି ଜୀବଭୂତା—ଯାହା ଜଗତକୁ ଧାରଣ କରିଅଛି । (ଗୀ ୭-୪୭)

ଏ ସବୁ ଆଲୋଚନା କଲେ ଜଣାଯାଏ ଯେ ଗୀତା ମତରେ ଜଗତ୍ କାଳ୍ପନିକ ବସ୍ତୁ ନୁହେ; ଏକମାତ୍ର ବ୍ରହ୍ମହିଁ ସଦ୍‌ବସ୍ତୁ—ଏହା ଯେତେବେଳେ ସିଦ୍ଧ. ଜଗତ୍ ରୂପେ ବିପରିବର୍ତ୍ତିତ ସେ ପୁଣି କିପରି କାଳ୍ପନିକ ହେବେ ? ସେହି ଗୀତାରେ ଅନ୍ୟତ୍ର ଅଛି :—

"ନାସତୋ ବିଦ୍ୟତେ ଭାବୋ ନା ଭାବୋ ବିଦ୍ୟତେଽସତଃ (ଗୀ ୨-୧୬)

ଅର୍ଥାତ୍ ସତର ଅଭାବ ଅର୍ଥାତ୍ ବିନାଶ ହୁଏ ନାହିଁ ଏବଂ ଅସତର ଭାବ ଅର୍ଥାତ୍ ଉତ୍ପତ୍ତି ହୁଏ ନାହିଁ । ଏହାଦ୍ୱାରା ପରିଣାମ ବାଦହିଁ ସମର୍ଥିତ ହୋଇଅଛି । ଏଥିରୁ ବୋଧ ହେଉଅଛି ବିଶିଷ୍ଟାଦ୍ୱୈତ ମତାନୁରୂପ ଗୀତା ପରିଣାମବାଦ ହିଁ ଅନୁମୋଦନ କରିଅଛି, ଅଦ୍ୱୈତ ମତାନୁରୂପ ବିବର୍ତ୍ତବାଦ ସ୍ୱୀକାର କରିନାହିଁ ।

ଅଦ୍ୱୈତବାଦୀମାନେ କହନ୍ତି 'ଜୀବୋ ବ୍ରହ୍ମୈବ ନାପରଃ', ଜୀବ ବ୍ରହ୍ମଭିନ୍ନ ଅନ୍ୟ କିଛି ନୁହେ । ତେଣୁ ବ୍ରହ୍ମ ଯେପରି ନିତ୍ୟ, ଶୁଦ୍ଧ, ବୁଦ୍ଧ, ମୁକ୍ତ, ସର୍ବବ୍ୟାପୀ ଜୀବ ମଧ୍ୟ ସେହିପରି । ଏ ଦୁହିଁଙ୍କ ମଧ୍ୟରେ ଭେଦ କେବଳ ଉପାଧି କୃତ ଓ ଅବିଦ୍ୟା କଳ୍ପିତ । ମାୟା ବଶରୁ ଜୀବର ମୁକ୍ତ ଭାବ ନଷ୍ଟ ହୋଇ ବଦ୍ଧ ଭାବ ଆସେ । ବିଶିଷ୍ଟାଦ୍ୱୈତବାଦୀମାନଙ୍କ ମତରେ ଜୀବ ବ୍ରହ୍ମଙ୍କ ଠାରୁ ସ୍ୱତନ୍ତ୍ର ବସ୍ତୁ; ଜୀବ ନିୟମ୍ୟ, ବ୍ରହ୍ମ ନିୟାମକ । ବ୍ରହ୍ମ ବିଶ୍ୱବ୍ୟାପୀ ମାତ୍ର ଜୀବ ଅଣୁ ସଦୃଶ, ପ୍ରତି ଶରୀରରେ ବିଭିନ୍ନ, ଅତଏବ ଏକ ନୁହେ, ବହୁ, ଇତ୍ୟାଦି ।

ଗୀତା ଦ୍ୱିତୀୟଅଧ୍ୟାୟରେ ଆତ୍ମାର ସ୍ୱରୂପ ସମ୍ବନ୍ଧରେ ଯାହା କହିଅଛି, ତହିଁରୁ ଜଣାଯାଏ ଜୀବ ନିତ୍ୟ, ସର୍ବଗତ, ଅବ୍ୟକ୍ତ, ଅଚିନ୍ତ୍ୟ

ଇତ୍ୟାଦି (ଗୀ ୨, ୧୭, ୨୦ ଓ ୨୪) । ଏଥିରୁ ଜଣାଯାଏ ବ୍ରହ୍ମଙ୍କର ଲକ୍ଷଣ ଓ ଜୀବର ଲକ୍ଷଣ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଭଗବାନ୍ ଯେ ଆତ୍ମା ରୂପରେ ଜୀବ ଶରୀରରେ ରହିଅଛନ୍ତି ଏହା ଗୀତାର ଅନ୍ୟ ଅନେକ ସ୍ଥାନରେ କୁହାଯାଇ ଅଛି ।

"ଅହମାତ୍ମା ଗୁଡ଼ାକେଶ ସର୍ବଭୂତା ଶୟସ୍ଥିତଃ" (ଗୀ ୧୦-୨୦)

ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ (ଗୀ ୧୫-୭)

ଭଗବାନ୍ ଅବିଭକ୍ତ ଓ ଅଖଣ୍ଡ ହେଲେହେଁ ଅଂଶରୂପେ କିପରି ଜୀବ ଦେହରେ ତାଙ୍କର ଅବସ୍ଥାନ ସମ୍ଭବପର ? ଏହାର ଉତ୍ତରରେ ଗୀତାରେ କୁହାଯାଇ ଅଛି ।

ଅବିଭକ୍ତଂ ଚ ଭୂତେଷୁ ବିଭକ୍ତ ମିବ ଚ ସ୍ଥିତମ୍ (ଗୀ ୧୩—୧୭)

ଭଗବାନ୍ ପ୍ରକୃତରେ ଅବିଭକ୍ତ ହେଲେହେଁ ଉପାଧି (ଦେହାଦି) ଭେଦରେ ବିଭକ୍ତ ବୋଲି ବୋଧ ହୁଅନ୍ତି । କେବଳ ଗୀତାରେ ନୁହେଁ, ଉପନିଷଦ୍, ବେଦାନ୍ତ ଦର୍ଶନ, ଶ୍ରୀମଦ୍ଭାଗବତ ପ୍ରଭୃତି ଗ୍ରନ୍ଥରେ ଜୀବ ଓ ବ୍ରହ୍ମ ଏକ—ଏହା ନାନାଭାବରେ ପ୍ରତିପାଦିତ ହୋଇଅଛି ।

ଜୀବ ବ୍ରହ୍ମଙ୍କର ଅଂଶ ହେଲେହେଁ କର୍ମଫଳ ଭୋଗ ନିମିତ୍ତ ଶରୀରରେ ଅବଦ୍ଧ ଥିବାରୁ ଆଧ୍ୟାତ୍ମିକାଦି ଦୁଃଖତ୍ରୟ ଅନୁଭବ କରେ । ଗୀତା ମତରେ ଜୀବ ଭଗବାନଙ୍କର ପରା ପ୍ରକୃତି । ଅପରାପ୍ରକୃତି ମଧ୍ୟରେ ଆବଦ୍ଧ ଥିବାରୁ ତାହାଠାରେ ବ୍ରହ୍ମତ୍ୱ ବିକଶିତ ହୋଇପାରେ ନାହିଁ । ଯେତେବେଳେ ସେ ଅପରା ପ୍ରକୃତିରୁ ମୁକ୍ତି ଲାଭ କରିବ ସେତେବେଳେ ସେ କହି ପାରିବ 'ସୋଽହମ୍' ଅର୍ଥାତ୍ 'ମୁଁ ସେହିବ୍ରହ୍ମ' । ତ୍ରିଗୁଣମୟୀ ଅପରା ପ୍ରକୃତି ମଧ୍ୟରେ ବଦ୍ଧ ଥିବା ଯାଏ ତାହାର ଅହଂଭାବ, ବାସନା, ଦ୍ୱନ୍ଦ୍ୱ ପ୍ରଭୃତି ଚାଲୁ ଥାଏ । ଏହି ନୀଚ ଖେଳା ଘରୁ ଉପର ସ୍ତରକୁ ଉଠିଲେ ସେ ଭଗବାନଙ୍କ ସହିତ ନିଜର ଏକତ୍ୱ ଅନୁଭବ କରି ପାରିବ । ଗୀତା ମତରେ ଏହାହିଁ ଦିବ୍ୟ ଜୀବନ । ସେ ଅବସ୍ଥାକୁ ନ ଆସି ଜୀବ ଯେବେ 'ସୋଽହମ୍', 'ତତ୍ତ୍ୱମସି' ଇତ୍ୟାଦି ବାକ୍ୟ ଆବୃତ୍ତି କରି ନିଜକୁ ଶୁଦ୍ଧ, ବୁଦ୍ଧ, ମୁକ୍ତ ସଚ୍ଚିଦାନନ୍ଦ ବ୍ରହ୍ମଙ୍କ ସଙ୍ଗେ ତୁଳନା କରେ ତାହାଦ୍ୱାରା ସମାଜରେ ଘୋର ବିପ୍ଳବର ସୃଷ୍ଟି ହୁଏ । କର୍ମ ହୀନତା, ବ୍ୟଭିଚାର, ସ୍ୱାର୍ଥପରତା ପ୍ରଭୃତି ଏହି ଭ୍ରମଧାରଣାର ଫଳ । ବ୍ରହ୍ମ ଅଗ୍ନି, ଜୀବ ସ୍ଫୁଲିଙ୍ଗ ।

ଯଥାସୁଦୀପ୍ତାତ୍ ପାବକାତ୍ ବିସ୍ଫୁଲିଙ୍ଗାଃ,
ସହସ୍ରଶଃ ପ୍ରଭବନ୍ତେ ସରୂପାଃ ।
ତଥାକ୍ଷରାତ୍ ବିବିଧାଃ ସୌମ୍ୟଭାବାଃ
ପ୍ରଜାୟନ୍ତେ ତତ୍ରୈବାପି ଯାନ୍ତି । ( ମୁଣ୍ଡକୋପନିଷଦ୍ ୨।୧।୧ )

ଯେପରି ସୁଦୀପ୍ତ ଅଗ୍ନିରୁ ସମାନରୂପ ସହସ୍ର ସହସ୍ର ବିସ୍ଫୁଲିଙ୍ଗ ନିର୍ଗତ ହୁଏ, ସେହିପରି ଅକ୍ଷର ପୁରୁଷ ଭଗବାନଙ୍କଠାରୁ ବିବିଧ ଜୀବ ଉତ୍ପନ୍ନ ହୁଅନ୍ତି ଏବଂ ତାହାଙ୍କଠାରେ ବିଲୀନ ହୁଅନ୍ତି ।

ଜୀବ ଓ ବ୍ରହ୍ମଙ୍କ ମଧ୍ୟରେ ସ୍ୱରୂପଗତ ଭେଦ ନ ଥିଲେହେଁ ବ୍ରହ୍ମଙ୍କଠାରେ ସତ୍‌ଭାବ, ଚିତ୍‌ଭାବ ଓ ଆନନ୍ଦଭାବ ସୁବ୍ୟକ୍ତ । କିନ୍ତୁ ଜୀବଠାରେ ସେ ଭାବତ୍ରୟ ଅବ୍ୟକ୍ତ । ମୋଟାମୋଟି ବୁଝିଲେ ଜଣାଯିବ ଯେ ଅପରା ପ୍ରକୃତିର ନୀଚ ଲୀଳାରେ ବିମୁଗ୍ଧ ଥିବାଯାଏ ଜୀବ କେବେହେଲେ ନିଜକୁ ବ୍ରହ୍ମଙ୍କ ଅଂଶ ବୋଲି କହି ପାରେ ନାହିଁ । ସାଧନା ତଥା ଭକ୍ତିବଳରେ ସେ ନିମ୍ନସ୍ତର ଅତିକ୍ରମ କରି ପାରିଲେ ବ୍ରହ୍ମଭାବ ତାହାଠାରେ ପରିସ୍ଫୁଟ ହୋଇଉଠେ । ଗୀତାରେ ଏହି ଭାବରେ ଅଦ୍ୱୈତବାଦୀଙ୍କ ଜୀବାତ୍ମାତତ୍ତ୍ୱ ଓ ବିଶିଷ୍ଟାଦ୍ୱୈତବାଦୀଙ୍କ ଜୀବାତ୍ମାତତ୍ତ୍ୱର ସମନ୍ୱୟ କରାଯାଇ ଅଛି ।

ବ୍ରହ୍ମହିଁ ଚରମ ସତ୍ୟ; ତାହାଙ୍କୁ ଉପନିଷଦ୍‌ରେ କେଉଁଠାରେ ବ୍ରହ୍ମ, କେଉଁଠାରେ ଈଶ୍ୱର, କେଉଁଠାରେ ପୁରୁଷ, କେଉଁଠାରେ ବା ଦେବ ନାମରେ ଅଭିହିତ କରାଯାଇଅଛି । ମାତ୍ର ବେଦାନ୍ତ ଦର୍ଶନ ବା ବ୍ରହ୍ମସୂତ୍ରରେ ବ୍ରହ୍ମଭିନ୍ନ ଅନ୍ୟ ଶବ୍ଦର ବ୍ୟବହାର କରାଯାଇ ନାହିଁ । ସାଂଖ୍ୟ ପୁରୁଷଶବ୍ଦ ବ୍ୟବହାର କରିଅଛି, ଯୋଗ ଈଶ୍ୱର ଶବ୍ଦ ବ୍ୟବହାର କରିଅଛି, ମାତ୍ର ବ୍ରହ୍ମସୂତ୍ର ସେହି ଚରମ ସତ୍ୟ ଅର୍ଥରେ ଏକମାତ୍ର ବ୍ରହ୍ମ ଶବ୍ଦହିଁ ବ୍ୟବହାର କରିଅଛି । ଅଗ୍ରୁର୍ଧ ଶଙ୍କର ଦେଖାଇ ଅଛନ୍ତି ଯେ ପୁରୁଷ ଈଶ୍ୱର ବା ଦେବ—ଏମାନଙ୍କର ସ୍ଥାନ ବ୍ରହ୍ମଙ୍କ ନିମ୍ନରେ । କିନ୍ତୁ ଗୀତା ଉପନିଷଦ୍ ଅନୁସାରେ ବ୍ରହ୍ମଙ୍କୁହିଁ ପୁରୁଷ ଓ ଈଶ୍ୱର ବୋଲି ଅଭିହିତ କରିଅଛି ଏବଂ ଏହି ତିନି ଶବ୍ଦକୁ ଏକାର୍ଥକ ରୂପେ ଗ୍ରହଣ କରିଅଛି ।

ଅଦ୍ୱୈତ ମତରେ ବ୍ରହ୍ମ ନିର୍ଗୁଣ, ନିର୍ବିକଳ୍ପ, ଅଜ୍ଞେୟ ଓ ଅଚିନ୍ତ୍ୟ । ଅନ୍ୟପକ୍ଷରେ ବିଶିଷ୍ଟାଦ୍ୱୈତମତରେ ବ୍ରହ୍ମସଗୁଣ, ସମସ୍ତ

କଲ୍ୟାଣ ଗୁଣର ଆକର; ଅଜ୍ଞେୟ ବା ଅଚିନ୍ତ୍ୟ କୁହନ୍ତି । ସାଂଖ୍ୟବାଦୀମାନେ କହନ୍ତି, ପୁରୁଷ ଅକର୍ତ୍ତା ଓ ନିଷ୍କ୍ରିୟ, ପ୍ରକୃତିହିଁ ଏହି ଜଗତ୍ ସୃଷ୍ଟି କରିଅଛି । କିନ୍ତୁ ବେଦାନ୍ତ ଦର୍ଶନ ସାଂଖ୍ୟର ଏ ମତ ଖଣ୍ଡନ କରି ବ୍ରହ୍ମଙ୍କଠାରୁ ଜଗତର ଉତ୍ପତ୍ତି ବୋଲି ପ୍ରମାଣ କରି ଅଛନ୍ତି । ଉପନିଷଦ୍ ମାନଙ୍କରେ ବ୍ରହ୍ମଙ୍କର ସଗୁଣ ଓ ନିର୍ଗୁଣ ଏହି ଦୁଇଭାବର ବିବରଣ ଦେଖାଯାଏ । ସଗୁଣଭାବ ନିର୍ଦ୍ଦେଶବେଳେ ବ୍ରହ୍ମବସ୍ତୁରେ ପୁଂଲିଙ୍ଗ ପ୍ରୟୋଗ ଏବଂ ନିର୍ଗୁଣ ଭାବର ନିର୍ଦ୍ଦେଶବେଳେ କ୍ଲୀବଲିଙ୍ଗ ପ୍ରୟୋଗ ସାଧାରଣତଃ ଶ୍ରୁତିରେ ଦେଖାଯାଏ । ଶ୍ରୁତିମତରେ ସଗୁଣ ଓ ନିର୍ଗୁଣ ଏକବସ୍ତୁ, ବ୍ରହ୍ମ ଯେତେବେଳେ ମାୟାଦ୍ୱାରା ଉପହିତ ହୁଅନ୍ତି, ସେତେବେଳେ ସେ ସଗୁଣ ହୁଅନ୍ତି । ଏହି ମାୟା ଉର୍ଣ୍ଣନାଭର ଜାଲପରି, ସେ ଅବସ୍ଥାରେ ବ୍ରହ୍ମଙ୍କର ନାମ ହୁଏ ମହେଶ୍ୱର ।

ଗୀତାଶ୍ରୁତି ବା ଉପନିଷଦ୍ ମତକୁ ଅନୁସରଣ କରି ବ୍ରହ୍ମଙ୍କୁ ସଗୁଣ ଓ ନିର୍ଗୁଣ ଉଭୟ ଭାବରେ ବର୍ଣ୍ଣନା କରିଅଛି । ଗୀତାର ୧୩ଶ ଅଧ୍ୟାୟର ୧୨ଶ ଶ୍ଳୋକରେ କୁହାଯାଇ ଅଛି ।

"ଅନାଦିମତ୍ ପରଂବ୍ରହ୍ମ ନ ସତ୍ ତନ୍ନାସଦୁଚ୍ୟତେ"

ଅର୍ଥାତ୍ ବ୍ରହ୍ମ ସତ୍ କୁହନ୍ତି ବା ଅସତ୍ ମଧ୍ୟ କୁହନ୍ତି ।

ଏହିପରି ଅନ୍ୟ କେତେକ ସ୍ଥଳରେ ମଧ୍ୟ ଗୀତା ବ୍ରହ୍ମଙ୍କୁ ନିର୍ଗୁଣ ବୋଲି ନିର୍ଦ୍ଦେଶ କରିଅଛି । ପୂର୍ବେ କୁହାଯାଇଅଛି ନିର୍ଗୁଣ ବ୍ରହ୍ମଙ୍କ ଠାରେ ଭକ୍ତିର ସ୍ଥାନ ନାହିଁ । କିନ୍ତୁ ଗୀତା ସର୍ବତ୍ର ଭକ୍ତି ରସରେ ଅପ୍ଳୁତ । ତେଣୁ ବୁଝାଯାଏ ଗୀତାରେ ସଗୁଣ ବ୍ରହ୍ମହିଁ ମୁଖ୍ୟ ପ୍ରତିପାଦ୍ୟ ବିଷୟ । ଗୀତା ଦଶମ ଅଧ୍ୟାୟରେ ବିଭୂତିବର୍ଣ୍ଣନାପ୍ରସଙ୍ଗରେ ବିଶ୍ୱରୂପର ପରିଚୟ ଦେଇ ଏକାଦଶ ଅଧ୍ୟାୟରେ ବିଶ୍ୱରୂପର ଯେଉଁ ବର୍ଣ୍ଣନା ଦେଇଅଛି, ସଗୁଣ ବ୍ରହ୍ମ ବିଷୟକ ସେଭଳି ହୃଦ୍ୟ ପ୍ରାଣସ୍ପର୍ଶୀ ବର୍ଣ୍ଣନା ଅନ୍ୟତ୍ର ପ୍ରାୟ ଦେଖାଯାଏ ନାହିଁ । ଏକାନ୍ତ ଭକ୍ତିପୂର୍ଣ୍ଣ ଅନ୍ତଃକରଣରେ ଧ୍ୟାନରତ ହୋଇ ବାରଂବାର ପାଠକଲେ ତାହାର ମାଧୁରୀ କେତେକପରିମାଣରେ ହୃଦୟଙ୍ଗମ ହୁଏ । ଏହି ବିଶ୍ୱବ୍ରହ୍ମାଣ୍ଡହିଁ ଭଗବାନଙ୍କ ମୂର୍ତ୍ତି । ଭୂଃ, ଭୁବଃ, ସ୍ୱଃ, ମହଃ, ଜନ, ତପଃ, ସତ୍ୟ—ଏହି ସପ୍ତ ଊର୍ଦ୍ଧ୍ୱଲୋକ ଓ ପାତାଳାଦି ସପ୍ତ ଅଧୋଲୋକ—ଏହି ବିଶ୍ୱବ୍ରହ୍ମାଣ୍ଡର ଅନ୍ତର୍ଗତ । ସଗୁଣ ବ୍ରହ୍ମଙ୍କଠାରେ ବିନା ଏଭଳି ସମୂତି ଭାବର ଅଭିବ୍ୟକ୍ତି !! ଅନ୍ୟଥା ଏହା ସମ୍ଭବପର କି ?

ଏହିସବୁ ଆଲୋଚନାରୁ ଜଣାଯାଏ ବ୍ରହ୍ମ ସଗୁଣ ଓ ନିର୍ଗୁଣ: ଏହା ଶ୍ରୁତିସିଦ୍ଧ—ଏଥିରେ ସନ୍ଦେହ ନାହିଁ । ଜ୍ଞାନାଲୋଚନାଦ୍ୱାରା ଯେଉଁମାନଙ୍କର ଅହଂଭାବ, ବାସନାଦି ଧ୍ୱଂସପ୍ରାପ୍ତ ହୋଇଅଛି ଏବଂ ଯେଉଁମାନେ ବ୍ରହ୍ମଭୂତ ହୋଇ 'ସୋଽହମ୍' ଜ୍ଞାନର ଅଧିକାରୀ; ସେହିମାନେ ଏକା ନିର୍ଗୁଣ ବ୍ରହ୍ମଙ୍କ ଧାରଣା କରିପାରନ୍ତି । ସାଧାରଣ ଲୋକଙ୍କ ପକ୍ଷରେ ସଗୁଣ ବ୍ରହ୍ମହିଁ ଉପାସ୍ୟ, ଏହି ଭାବରେ ଗୀତା ଉଭୟ ଭାବର ସମାଧାନ କରିଅଛି ବୋଲି ମନେହୁଏ ।

ବର୍ତ୍ତମାନ ବ୍ରହ୍ମପ୍ରାପ୍ତିର ସାଧନ ବା ଉପାୟ ସମ୍ବନ୍ଧରେ ଦୁଇ ଚାରି କଥା ଆଲୋଚନା କରାଯାଉ । ନିଷ୍କାମ କର୍ମହିଁ ଈଶ୍ୱରପ୍ରାପ୍ତି-ସାଧନାର ପ୍ରଥମ ସୋପାନ । ନିଷ୍କାମ କର୍ମର ଅନୁଷ୍ଠାନ ଦ୍ୱାରା ପ୍ରଥମେ ଚିତ୍ତଶୁଦ୍ଧି କରିବାକୁ ହେବ । ଚିତ୍ତଶୁଦ୍ଧି ପରେ ଜୀବ ମଧ୍ୟରେ ଯେଉଁ ସତ୍‌ଭାବ, ଚିତ୍‌ଭାବ, ଓ ଆନନ୍ଦଭାବ ପ୍ରଚ୍ଛନ୍ନ ଭାବରେ ରହିଅଛି, ସାଧନାଦ୍ୱାରା ସେ ସବୁକୁ ସୁବ୍ୟକ୍ତ କରିପାରିଲେ ଜୀବ ବ୍ରହ୍ମଭୂତ ହେବ । ଚିତ୍ତଶୁଦ୍ଧିର ପ୍ରଧାନ ଅବଲମ୍ବନ ଯଜ୍ଞ, ଦାନ ଓ ତପସ୍ୟା; ଅଷ୍ଟାଦଶ ଅଧ୍ୟାୟର ୫ମ ଓ ୬ଷ୍ଠ ଶ୍ଳୋକରେ ଆସକ୍ତି ଓ ଫଳ କାମନା ଶୂନ୍ୟହୋଇ କର୍ତ୍ତବ୍ୟଜ୍ଞାନରେ ଏସବୁ କରିବାପାଇଁ ଭଗବାନ୍ ଦୃଢ଼ମତ ପ୍ରକାଶ କରିଅଛନ୍ତି :—

ଯଜ୍ଞଦାନ ତପଃକର୍ମ ନ ତ୍ୟାଜ୍ୟଂ କାର୍ଯ୍ୟମେବ ତତ୍,
ଯଜ୍ଞୋଦାନଂ ତପଶ୍ଚୈବ ପାବନାନି ମନୀଷିଣାମ୍ ।
ଏତାନ୍ୟପିତୁ କର୍ମାଣି ସଙ୍ଗଂତ୍ୟକ୍ତ୍ୱା ଫଳାନିଚ
କର୍ତ୍ତବ୍ୟାନୀତି ମେ ପାର୍ଥ ନିଶ୍ଚିତଂ ମତ ମୁତ୍ତମମ୍ ।

( ଗୀ: ୧୮।୫-୬ )

ଚିତ୍ତଶୁଦ୍ଧି ପରେ ଜ୍ଞାନଯୋଗ ଦ୍ୱାରା ଆତ୍ମାର ଚିତ୍‌ଭାବ, ଭକ୍ତିଯୋଗ ଦ୍ୱାରା ଆତ୍ମାର ଆନନ୍ଦଭାବ ଓ ଧ୍ୟାନଯୋଗ ଦ୍ୱାରା ଆତ୍ମାର ସତ୍‌ଭାବ ବିକାଶ କରିବାକୁ ହେବ ।

ଅଦ୍ୱୈତମତରେ ଜୀବ ଓ ବ୍ରହ୍ମ ଏକ, ସୁତରାଂ ବ୍ରହ୍ମ ଯେପରି ମୁକ୍ତ, ଜୀବ ସେହିପରି ମୁକ୍ତ । ଅବିଦ୍ୟାବଶରୁ ଜୀବର ବନ୍ଧନଦଶା ପ୍ରାପ୍ତି । ଯେତେବେଳେ ଜୀବ ଅନୁଭବ କରିବ ଯେ ସେ ବ୍ରହ୍ମଙ୍କଠାରୁ ଅଭିନ୍ନ, ସେତେବେଳେ ତାହାର ଅବିଦ୍ୟା ନିବୃତ୍ତି ହୋଇଅଛି ବୋଲି ବୁଝିବାକୁ ହେବ । ଅତଏବ ଅଦ୍ୱୈତ ମତରେ ଜୀବ ଓ ବ୍ରହ୍ମଙ୍କ ଐକ୍ୟ ଜ୍ଞାନହିଁ

ମୁକ୍ତିର ଉପାୟ । କିନ୍ତୁ ବିଶିଷ୍ଟାଦ୍ୱୈତବାଦୀମାନେ କହନ୍ତି, ଯେତେବେଳେ ସାଧକଙ୍କ ଅନ୍ତଃକରଣ ଜ୍ଞାନ ଓ କର୍ମ ଉଭୟବିଧ ଯୋଗଦ୍ୱାରା ସଂସ୍କୃତ ହୁଏ, ସେତେବେଳେ ସେ ଐକାନ୍ତିକ ଭକ୍ତିଦ୍ୱାରାହିଁ ଭଗବାନଙ୍କୁ ଲାଭ କରନ୍ତି ।

ଗୀତା ରଚନା କାଳରେ ଈଶ୍ୱରପ୍ରାପ୍ତିର ଉପାୟରୂପେ ଚାରିଗୋଟି ସାଧନ ପ୍ରଣାଳୀ ଏ ଦେଶରେ ପ୍ରଚଳିତ ଥିଲା :—

ଧ୍ୟାନେନାତ୍ମନି ପଶ୍ୟନ୍ତି କେଚିଦାତ୍ମାନ ମାତ୍ମନା,
ଅନ୍ୟେ ସାଂଖ୍ୟେନ ଯୋଗେନ କର୍ମଯୋଗେନ ଚାପରେ ।
ଅନ୍ୟେ ତ୍ୱେବ ମଜାନନ୍ତଃ ଶ୍ରୁତ୍ୱାନ୍ୟେଭ୍ୟ ଉପାସତେ,
ତେଽପିଚାତିତରନ୍ତ୍ୟେବ ମୃତ୍ୟୁଂ ଶ୍ରୁତିପରାୟଣାଃ ।
( ଗୀ: ୧୩ । ୨୪-୨୬ )

"କେହି କେହି ଧ୍ୟାନଯୋଗଦ୍ୱାରା ଆତ୍ମାସାହାଯ୍ୟରେ ଆତ୍ମାକୁ ଆତ୍ମାରେ ଦେଖନ୍ତି; କେହି କେହି ସାଂଖ୍ୟଯୋଗ ଦ୍ୱାରା, କେହି କେହି କର୍ମଯୋଗ ଦ୍ୱାରା ଆତ୍ମଦର୍ଶନ କରନ୍ତି; ଅନ୍ୟ ମାନେ କିନ୍ତୁ ଏ ସବୁ ନ ଜାଣି ଅନ୍ୟମାନଙ୍କ ଠାରୁ ଶୁଣି ଉପାସନା କରନ୍ତି । ଯେଉଁମାନେ ଶ୍ରୁତି ପରାୟଣ (ଭକ୍ତ) ସେମାନେ ମଧ୍ୟ ମୃତ୍ୟୁକୁ ଅତିକ୍ରମ କରନ୍ତି ।"

ଉକ୍ତ ଶ୍ଳୋକ ଦ୍ୱୟରେ ଭଗବାନ୍ ଧ୍ୟାନ, ସାଂଖ୍ୟଯୋଗ (ଜ୍ଞାନ), କର୍ମଯୋଗ ଓ ଭକ୍ତିଯୋଗ—ସାଧନାର ଏହି ଚାରିମାର୍ଗ ନିର୍ଦ୍ଦେଶ କଲେ । ଯେ ଯେଉଁ ମାର୍ଗରେ ବିଚରଣ କରନ୍ତୁ, ପ୍ରତ୍ୟେକ ଯେ ଭଗବାନଙ୍କୁ ଲାଭ-କରନ୍ତି—ଏହାହିଁ ଏହି ଉକ୍ତିର ଉଦ୍ଦେଶ୍ୟ । ସାଧାରଣତଃ ଧ୍ୟାନୀ, ଜ୍ଞାନୀ, କର୍ମୀ ଓ ଭକ୍ତ—ପ୍ରତ୍ୟେକ ମାର୍ଗର ସାଧକ ନିଜନିଜ ମାର୍ଗକୁ ଈଶ୍ୱର-ପ୍ରାପ୍ତିର ଏକମାତ୍ର ସାଧନ ବୋଲି କହନ୍ତି । ଭଗବାନ୍ କି କୌଶଳରେ ଏହି ଚାରି ପ୍ରକାର ସାଧନର ସମନ୍ୱୟ ବିଧାନ କରି ଅଛନ୍ତି, ଏହାହିଁ ଏଠାରେ ଆଲୋଚନା କରାଯିବ ।

କର୍ମବାଦୀମାନେ କହନ୍ତି ବେଦବିହିତ ଯଜ୍ଞାଦି କର୍ମର ଅନୁଷ୍ଠାନ କଲେ ଅକ୍ଷୟ ସ୍ୱର୍ଗସୁଖ ଲାଭ ହୁଏ; ତେଣୁ ସେମାନଙ୍କ ମତରେ ସଂସାର-ସାଗରରୁ ଉତ୍ତୀର୍ଣ୍ଣ ହୋଇ ମୋକ୍ଷଲାଭ କରିବାର ଏକମାତ୍ର ଉପାୟ କର୍ମ ।

ଅନ୍ୟପକ୍ଷରେ ଜ୍ଞାନବାଦୀମାନେ କହନ୍ତି, "କର୍ମଣା ବଧ୍ୟତେ ଜନ୍ତୁ ର୍ବିଦ୍ୟୟା ଚ ପ୍ରମୁଚ୍ୟତେ"—କର୍ମଦ୍ୱାରା ଜୀବ ବନ୍ଧନଦଶା ପ୍ରାପ୍ତ ହୁଏ, କେବଳ ବିଦ୍ୟା ବା ଜ୍ଞାନଦ୍ୱାରାହିଁ ମୋକ୍ଷଲାଭ କରିଥାଏ ।

ଗୀତାମତରେ କର୍ମସନ୍ନ୍ୟାସ ଅର୍ଥାତ୍ କର୍ମତ୍ୟାଗ କରିବା ଅପେକ୍ଷା କର୍ମ କରିବାହିଁ ଶ୍ରେୟସ୍କର । କର୍ମ ବନ୍ଧନର କାରଣ ଏହା ସତ୍ୟ, ମାତ୍ର କୌଶଳ ସହକାରେ କର୍ମକଲେ ତାହାଦ୍ୱାରା ବନ୍ଧନ ନ ହୋଇ ମୁକ୍ତି ଲାଭ ହୁଏ । ସେ କୌଶଳ ୩ ଗୋଟି । ୧—ଫଳାକାଙ୍କ୍ଷା ବର୍ଜ୍ଜନ, ୨—କର୍ତ୍ତୃତ୍ୱାଭିମାନ ପରିତ୍ୟାଗ, ୩—ଈଶ୍ୱରଙ୍କଠାରେ କର୍ମ ସମର୍ପଣ । ଏହିପରି ଭାବରେ କର୍ମକଲେ ଜ୍ଞାନୀ ଯେଉଁ ସ୍ଥାନ ଲାଭ କରନ୍ତି, କର୍ମୀ ସେହି ସ୍ଥାନହିଁ ଲାଭ କରି ଥାଆନ୍ତି (ଗୀ ୫।୪-୫) । ଏଥିରୁ ଜଣାଗଲା ଗୀତା ଜ୍ଞାନମାର୍ଗ ଓ କର୍ମମାର୍ଗ ଉଭୟଙ୍କୁ ସମାନ ସ୍ଥାନ ଦେଇ ଉଭୟର ଫଳ ସମାନ ବୋଲି କହିଅଛି । କେବଳ ଜ୍ଞାନଦ୍ୱାରା ମୋକ୍ଷ ଲାଭହୁଏ, କର୍ମଦ୍ୱାରା ହୁଏ ନାହିଁ, କିମ୍ବା କେବଳ କର୍ମଦ୍ୱାରା ମୋକ୍ଷଲାଭ ହୁଏ, ଜ୍ଞାନଦ୍ୱାରା ହୁଏନାହିଁ—ଏହି ବିରୁଦ୍ଧ ମତବାଦ ଦ୍ୱୟର କୌଣସି ଗୋଟିକୁ ଗୀତା ଅନୁମୋଦନ କଲାନାହିଁ । ଭଗବାନ୍ ଦ୍ୱିତୀୟ ଅଧ୍ୟାୟରେ କହିଅଛନ୍ତି:—

କର୍ମଜଂ ବୁଦ୍ଧିଯୁକ୍ତା ହି ଫଳଂ ତ୍ୟକ୍ତ୍ୱା ମନୀଷିଣଃ
ଜନ୍ମବନ୍ଧବିନିର୍ମୁକ୍ତାଃପଦଂ ଗଚ୍ଛନ୍ତ୍ୟନାମୟମ୍ । (ଗୀ୨—୫୧)

'ବୁଦ୍ଧିମାନ (ଜ୍ଞାନୀ) ପଣ୍ଡିତମାନେ କର୍ମଜଫଳ ତ୍ୟାଗକରି ଜନ୍ମ-ବନ୍ଧନରୁ ବିମୁକ୍ତ ହୋଇ ଉପଦ୍ରବ ଶୂନ୍ୟ ମୋକ୍ଷପଦ ପ୍ରାପ୍ତ ହୁଅନ୍ତି ।'

କର୍ମଯୋଗରେ ସିଦ୍ଧି ଲାଭ କରିବାକୁ ହେଲେ କେବଳ କର୍ମୀ ହେଲେ ଚଳିବ ନାହିଁ, କର୍ମୀକୁ ଜ୍ଞାନୀ ହେବାକୁ ହେବ ।

ଅନ୍ୟତ୍ର ଅଷ୍ଟାଦଶ ଅଧ୍ୟାୟରେ କହିଅଛନ୍ତି :—

ସର୍ବକର୍ମାଣ୍ୟପିସଦା କୁର୍ବାଣୋମଦ୍ ବ୍ୟପାଶ୍ରୟଃ,
ମତ୍ପ୍ରସାଦାଦବାପ୍ନୋତି ଶାଶ୍ୱତଂ ପଦମବ୍ୟୟମ୍ (ଗୀ ୧୮—୫୬)

'ସର୍ବଦା ସକଳ କର୍ମ ସମ୍ପାଦନ କରି ମଧ୍ୟ ମତ୍ ପରାୟଣ ବ୍ୟକ୍ତି ( ମୋ ଭକ୍ତ ) ମୋ ଅନୁଗ୍ରହରୁ ମୋକ୍ଷ ପଦ ଲାଭ କରନ୍ତି ।'

ତେଣୁ କର୍ମୀ ଭଗବଦ୍ ଭକ୍ତ ହେବା ଉଚିତ । ମୋଟ କଥା କର୍ମୀଲୋକ ଜ୍ଞାନୀ ନ ହେଲେ କର୍ତ୍ତୃତ୍ୱାଭିମାନ ତ୍ୟାଗ କରି ପାରନ୍ତି ନାହିଁ ।

ଜ୍ଞାନଦ୍ୱାରହିଁ ଜଣାଯାଏ—କର୍ମକରେ ପ୍ରକୃତ,ଅତ୍ମାର ବା ଆପଣାର ତହିଁରେ କୌଣସି ସମ୍ବନ୍ଧ ନ ଥାଏ; ଦ୍ୱିତୀୟତଃ କର୍ମଯୋଗୀ ସମସ୍ତ କର୍ମର ଫଳ ଭଗବାନଙ୍କଠାରେ ଅର୍ପଣ କରନ୍ତି । ଭକ୍ତ ନ ହେଲେ କର୍ମଫଳ ଭଗବାନଙ୍କଠାରେ କପରି ସମର୍ପଣ କରିହେବ ?

ଗୀତା ଏହିଭାବରେ ମୁକ୍ତି ସାଧନର ନାନା ଉପାୟ ଗୀତାର ବିଭିନ୍ନ ସ୍ଥାନରେ ନିର୍ଦ୍ଦେଶ କରିଅଛି । ଦ୍ୱିତୀୟ ଅଧ୍ୟାୟରେ ସ୍ଥିତପ୍ରଜ୍ଞର ଲକ୍ଷଣ, ଷୋଡ଼ଶ ଅଧ୍ୟାୟରେ ଦୈବୀସଂପଦର ବର୍ଣ୍ଣନା ଓ ଚତୁର୍ଦ୍ଦଶ ଅଧ୍ୟାୟରେ ଗୁଣାତୀତର ବର୍ଣ୍ଣନାରେ ଏହି ସବୁ ସାଧନ ପ୍ରଣାଳୀ ଉପଦିଷ୍ଟ ହୋଇଅଛି ।

ଏଠାରେ ଆଉ ଗୋଟିଏ କଥା ଲକ୍ଷ୍ୟ କରିବାକୁ ହେବ । ସାଂଖ୍ୟବାଦୀ ବା ଜ୍ଞାନବାଦୀମାନେ କହନ୍ତି ପ୍ରକୃତିପୁରୁଷର ବିବେକ ଜ୍ଞାନ ବା ପଞ୍ଚବିଂଶତି ତତ୍ତ୍ୱର ଜ୍ଞାନ ହେଲେ କୈବଲ୍ୟ ଲାଭ ହୁଏ; ମାତ୍ର ଗୀତୋକ୍ତ ଜ୍ଞାନ, ତତ୍ତ୍ୱଜ୍ଞାନ ବା ପରାବିଦ୍ୟା । ଯେଉଁ ଜ୍ଞାନବଳରେ ଜୀବ ସମସ୍ତପ୍ରାଣୀଙ୍କୁ ଆପଣାଠାରେ ଏବଂ ଶେଷରେ ପରମେଶ୍ୱରଙ୍କଠାରେ ଦର୍ଶନ କରେ ତାହାହିଁ ତତ୍ତ୍ୱଜ୍ଞାନ । ସେ ଜ୍ଞାନ ଜାତ ହେଲେ ଜ୍ଞାନୀ ସର୍ବତ୍ରସମଦର୍ଶୀ ହୁଅନ୍ତି । ସୁବର୍ଣ୍ଣ, ଲୋଷ୍ଟ୍ର, ପ୍ରସ୍ତରରେ ତାଙ୍କର ବୁଦ୍ଧି ସମାନ ରହେ, ନିନ୍ଦା ଓ ସ୍ତୁତିକୁ ସେ ସମାନ ଜ୍ଞାନ କରନ୍ତି, ଶତ୍ରୁ ମିତ୍ର ତାଙ୍କ ଦୃଷ୍ଟିରେ ଏକ ହୁଅନ୍ତି ଇତ୍ୟାଦି ।

ବହୂନାଂ ଜନ୍ମନାମନ୍ତେ ଜ୍ଞାନବାନ୍ ମାଂ ପ୍ରପଦ୍ୟତେ,
ବାସୁଦେବଃ ସର୍ବମିତି ସ ମହାତ୍ମା ସୁଦୁର୍ଲ୍ଲଭଃ । ( ଗୀ ୭—୧୯ )

ଯେ ପ୍ରକୃତ ଜ୍ଞାନୀ ସେ ସର୍ବତ୍ର 'ବାସୁଦେବ' ବିଦ୍ୟମାନ ଅଛନ୍ତି ଏ ଦୃଷ୍ଟି ଲାଭକରି କୃତାର୍ଥ ହୁଅନ୍ତି । ଅତଏବ ଜ୍ଞାନୀ ଭଗବଦ୍ ଭକ୍ତ ନ ହୋଇ ରହି ପାରନ୍ତି ନାହିଁ । ଏଥିରୁ ପ୍ରମାଣିତ ହେଉଅଛି, ଜ୍ଞାନଶୂନ୍ୟ ଭକ୍ତି ଶୂନ୍ୟଗର୍ଭା, ଜ୍ଞାନୀ ଯେ ପରମ ଭଗବଦ୍‌ଭକ୍ତ ଏହା ଅନ୍ୟତ୍ର ଭଗବାନ୍ କହିଅଛନ୍ତି:—

"ତେଷାଂ ଜ୍ଞାନୀ ନିତ୍ୟଯୁକ୍ତ ଏକଭକ୍ତି ର୍ବିଶିଷ୍ୟତେ", ( ଗୀ ୭।୧୭)

ଜ୍ଞାନୀ ଏକାନ୍ତ ଭଗବଦ୍‌ନିଷ୍ଠାରେ ଭଗବାନଙ୍କୁହିଁ ଆଶ୍ରୟ କରି ରହି ଥାଆନ୍ତି ।

ଗୀତାର ୧୨ଶ ଅଧ୍ୟାୟରେ ଭଗବଦ୍‌ଭକ୍ତଙ୍କର ଯେଉଁସବୁ ଲକ୍ଷଣ କୁହାଯାଇଅଛି, ତହିଁରୁ ଜଣାଯାଏ ଯେ ଭାବପ୍ରଧାନ ଭକ୍ତି ଗୀତାର ଲକ୍ଷ୍ୟ ନୁହେ ।

ଅଦ୍ୱେଷ୍ଟା ସର୍ବଭୂତାନାଂ ମୈତ୍ରଃ କରୁଣ ଏବ ଚ
ନିର୍ମମୋ ନିରହଂକାର ସମଦୁଃଖସୁଖଃ କ୍ଷମୀ ( ଗୀ ୧୨-୧୩ )

ଭଗବଦ୍ ଭକ୍ତର ପ୍ରଥମ ଲକ୍ଷଣ :—ଭକ୍ତ ସର୍ବଭୂତଙ୍କ ଠାରେ ଦ୍ୱେଷଶୂନ୍ୟ, ମୈତ୍ର, କୃପାଳୁ, ମମତ୍ୱଶୂନ୍ୟ, ଅହଙ୍କାରରହିତ ଓ ସୁଖ-ଦୁଃଖରେ ସମଜ୍ଞାନୀ ହେବେ, ଇତ୍ୟାଦି । ( ଗୀତା ୧୨ଶ ଅଧ୍ୟାୟର ୧୩ଶ ରୁ ୧୯ଶ ଶ୍ଳୋକ ମଧ୍ୟରେ ଭଗବଦ୍ ଭକ୍ତଙ୍କର ଅନେକ ଲକ୍ଷଣ ବର୍ଣ୍ଣିତ ଅଛି, ସେଗୁଡ଼ିକ ଦେଖ)

ଭକ୍ତ ସର୍ବଥା ଜ୍ଞାନପୂର୍ବା ହେବା ଉଚିତ । ଗୀତାର ଅନ୍ୟତ୍ର ମଧ୍ୟ ଏହା ଉକ୍ତ ହୋଇଅଛି ।

"ମୟି ଚାନନ୍ୟ ଯୋଗେନ ଭକ୍ତିରବ୍ୟଭିଚାରିଣୀ"
ଅର୍ଥାତ୍ ଯୋଗରେ ଅବ୍ୟଭିଚାରିଣୀ ଭକ୍ତିହିଁ ଜ୍ଞାନ ।

ଧ୍ୟାନଯୋଗରେ ଚିତ୍ତବୃତ୍ତି ନିରୋଧହିଁ କୈବଲ୍ୟ ଲାଭର ଏକମାତ୍ର ଉପାୟ । ପ୍ରାଣାୟାମ, ଅଭିମତ ଧ୍ୟାନ, ଈଶ୍ୱରପ୍ରଣିଧାନପ୍ରଭୃତି ଯୋଗସିଦ୍ଧିର ସାଧନ । ଯୋଗସିଦ୍ଧ ହୋଇଗଲେ ପୁରୁଷ ( ଆତ୍ମା ) କେବଳ ( ସ୍ୱତନ୍ତ୍ର ) ହୋଇ ସ୍ୱରୂପରେ ଅବସ୍ଥାନ କରନ୍ତି । ତେଣୁ ପାତଞ୍ଜଳ ଯୋଗ ( ଧ୍ୟାନଯୋଗ ) ଜୀବବ୍ରହ୍ମର ସଂଯୋଗ ନୁହେ, ପ୍ରକୃତି ପୁରୁଷର ବିୟୋଗ । ମାତ୍ର ଗୀତା ମତରେ ପରମାତ୍ମାଙ୍କଠାରେ ଆତ୍ମାର ଯୋଗହିଁ ଧ୍ୟାନଯୋଗ ।

"ମନଃ ସଂଯମ୍ୟ ମଚ୍ଚିତ୍ତୋ ଯୁକ୍ତ ଆସୀତ ମତ୍ପରଃ" (ଗୀ ୬-୧୪)

ଈଶ୍ୱରଙ୍କୁ ଛାଡ଼ିଦେଲେ ଗୀତାର ଧ୍ୟାନଯୋଗ ଅସମ୍ଭବ । ଗୀତା ମତରେ ଯୋଗୀହିଁ ପରମଭକ୍ତ :—

ଯୋଗିନାମପି ସର୍ବେଷାଂ ମଦ୍‌ଗତେନାନ୍ତରାତ୍ମନା,
ଶ୍ରଦ୍ଧାବାନ୍ ଭଜତେ ଯୋ ମାଂ ସମେ ଯୁକ୍ତତମୋ ମତଃ ।" ( ଗୀ ୬-୪୭)

ପୂର୍ବେ କୁହାଯାଇ ଅଛି, ଗୀତା ମତରେ ଜ୍ଞାନ ଓ କର୍ମ ଯେପରି ମୋକ୍ଷପ୍ରଦ, ଧ୍ୟାନଯୋଗ ମଧ୍ୟ ସେହିପରି ମୋକ୍ଷପ୍ରଦ, କିନ୍ତୁ ସେ ଧ୍ୟାନ ଈଶ୍ୱର ଭକ୍ତିପୂର୍ଣ୍ଣ ।

ଏ ଆଲୋଚନାରୁ ବୁଝାଗଲା ଭର୍ମ, ଜ୍ଞାନ ଓ ଧ୍ୟାନ ସବୁଠି ଈଶ୍ୱରଭକ୍ତି ସଂଶ୍ଳିଷ୍ଟ । ଭଗବାନ୍ ଭକ୍ତିରୂପ ସୂତ୍ରରେ ଏ ତିନିଙ୍କୁ ଏକତ୍ର ଗ୍ରଥିତକରି ବଚିତ୍ର କୌଶଳରେ ଏହିସବୁ ପରସ୍ପର ବିରୁଦ୍ଧ ମତବାଦର ସମନ୍ୱୟ ବିଧାନ କରି ଅଛନ୍ତି ।

ଗୀତା ମତରେ ଈଶ୍ୱରଙ୍କଠାରେ ଐକାନ୍ତିକୀ ଭକ୍ତି ଜ୍ଞାନର ଚରମ ନିଷ୍ଠା । ତେଣୁ ପରାଭକ୍ତି ସାଧନ ନୁହେଁ, ସାଧ୍ୟ ।

ବେଦାନ୍ତ ଦର୍ଶନରେ ଭକ୍ତିର ସ୍ଥାନ ନାହିଁ । ବାଦରାୟଣ କହନ୍ତି, ବେଦାନ୍ତ—ବିହିତ ଆତ୍ମଜ୍ଞାନରୁହିଁ ପୁରୁଷାର୍ଥସିଦ୍ଧି ହୁଏ । ଶ୍ରବଣ, ମନନ ( ଚିନ୍ତା ) ଓ ନିଦିଧ୍ୟାସନ ( ଧ୍ୟାନ ) ଦ୍ୱାରାହିଁ ଆତ୍ମସାକ୍ଷାତ୍କାର ହୁଏ ।

ବେଦାନ୍ତ ବା ଉପନିଷଦ୍ ଗୀତାର ଭିତ୍ତିହେଲେହେଁ ସେ ମତକୁ ଉପେକ୍ଷା କରି ଗୀତା ନିଜସ୍ୱ ଭକ୍ତିତତ୍ତ୍ୱର ପ୍ରତିଷ୍ଠା କରିଅଛି ।

ଶେଷରେ ମୁକ୍ତି ବା ମୋକ୍ଷର ସ୍ୱରୂପ ସମ୍ବନ୍ଧରେ ଦୁଇଗୋଟିକଥା ଆଲୋଚନା କରି ଏ ପ୍ରସଙ୍ଗର ଉପସଂହାର କରିବୁଁ । ଅଦ୍ୱୈତମତରେ ବ୍ରହ୍ମଙ୍କ ସଙ୍ଗେ ଜୀବାତ୍ମା ମୁକ୍ତ ଅବସ୍ଥାରେ ଏକହୋଇ ଯାଆନ୍ତି । ସ୍ଫୁଲିଙ୍ଗ ମୂଳଅଗ୍ନିସଙ୍ଗେ ମିଶି ସ୍ୱରୂପତଃ ଏକୀଭୂତ ହୋଇଯାଏ । ଅନ୍ୟ ପକ୍ଷରେ ବିଶିଷ୍ଟାଦ୍ୱୈତବାଦୀମାନେ କହନ୍ତି, ମୁକ୍ତ ପୁରୁଷ କେବେହେଲେ ହେଲେ ବ୍ରହ୍ମଙ୍କସଙ୍ଗେ ମିଶି ଏକହୋଇ ପାରନ୍ତି ନାହିଁ । ବ୍ରହ୍ମଙ୍କ ସ୍ୱଭାବପ୍ରାପ୍ତ ହୋଇ ବ୍ରହ୍ମୋଚିତ ଗୁଣରେ ଭୂଷିତ ହୁଅନ୍ତି ମାତ୍ର ।

ଜୀବର ଏକ ଶରୀର ତ୍ୟାଗକରି ଅନ୍ୟଶରୀରକୁ ଯିବାର ନାମ ଉତ୍କ୍ରାନ୍ତି । ଉପନିଷଦ୍ ଓ ବେଦାନ୍ତ ଦର୍ଶନରେ ଏହି ଉତ୍କ୍ରାନ୍ତିର ଦୁଇଟି ମାର୍ଗ ନିର୍ଦ୍ଦିଷ୍ଟ ହୋଇଅଛି । ୧-ଉତ୍ତରମାର୍ଗ ବା ଦେବଯାନ, ୨-ଦକ୍ଷିଣମାର୍ଗ ବା ଧୂମଯାନ । ଦେବଯାନରେ ଗଲେ ସାଧକ ବ୍ରହ୍ମଙ୍କ ସଙ୍ଗେ ମିଳି ଯାଆନ୍ତି, ଅର୍ଥାତ୍ ତାଙ୍କୁ ଆଉ ଫେରିବାକୁ ପଡ଼େ ନାହିଁ; ମାତ୍ର ଧୂମଯାନରେ ଯିବା ସାଧକ ପୁଣ୍ୟ କ୍ଷୟ ପରେ ଫେରି ଆସନ୍ତି, ଅର୍ଥାତ୍ ପୁନର୍ଜନ୍ମ ଲାଭ କରନ୍ତି । ଗୀତାର ଅଷ୍ଟମ ଅଧ୍ୟାୟରେ ପୂର୍ବୋକ୍ତ ରୀତିରେ ଏହି ଦୁଇ ମାର୍ଗର ବର୍ଣ୍ଣନାମଧ୍ୟ ଅଛି । ଏଥିରୁ ଜଣାଗଲା ମୁକ୍ତିର ସ୍ୱରୂପ ସମ୍ବନ୍ଧରେ ଅଦ୍ୱୈତମତ ଓ ଗୀତାର ମତ ବେଦାନ୍ତ ମତର ଅନୁରୂପ ।

ବଶିଷ୍ଟାଦ୍ୱୈତବାଦୀମାନେ କହନ୍ତି, ଜୀବାତ୍ମା ପରମାତ୍ମାଙ୍କର ସନାତନ ଅଂଶ, ଏହା ପଞ୍ଚଦଶ ଅଧ୍ୟାୟର ୭ମ ଶ୍ଳୋକରେ ଭଗବାନ୍ ସ୍ପଷ୍ଟ କହିଅଛନ୍ତି । ତେଣୁ ମୁକ୍ତିରେ ଜୀବ ବ୍ରହ୍ମଙ୍କ ସଙ୍ଗେ ଏକ ହୋଇ ନ ପାରେ, "ମମସାଧର୍ମ୍ୟ ମାଗତାଃ', 'ମଦ୍ଭାବ ମାଗତାଃ', ମଯ୍ୟେବ ନିବସିଷ୍ୟସି' ଇତ୍ୟାଦି ଗୀତୋକ୍ତ ମୋକ୍ଷବିଷୟକ ଉକ୍ତିର ଅର୍ଥ ବ୍ରହ୍ମଙ୍କ ସଙ୍ଗେ ମିଳିଯିବା ନୁହେ, ବ୍ରହ୍ମଙ୍କ ପରି ସମୁଚ୍ଚ ଗୁଣର ଅଧିକାରୀ ହେବା ।

(ଘ) ସାଂଖ୍ୟଦର୍ଶନ ଓ ଗୀତା—ପୂର୍ବେ କୁହାଯାଇଅଛି କପିଳଙ୍କ ସାଂଖ୍ୟମତ ଅତି ପ୍ରାଚୀନ; ଗୀତା ଆଲୋଚନାରୁ ଜଣାଯାଏ ଗୀତାର ଅନେକ ମତ ସାଂଖ୍ୟମତ ସଙ୍ଗେ ସମାନ । ତଥାପି ଗୀତା ସାଂଖ୍ୟ ମତକୁ ଅତିକ୍ରମ କରି ଅନେକ ନୂତନ ତତ୍ତ୍ୱ ପ୍ରକାଶ କରିଅଛି ଏବଂ ସାଂଖ୍ୟର ଅନେକ ମୂଳତତ୍ତ୍ୱକୁ ମଧ୍ୟ ଅସ୍ୱୀକାର କରିଅଛି । ସାଂଖ୍ୟମତସଙ୍ଗରେ ଗୀତାର କେଉଁ କେଉଁ ବିଷୟରେ ସାମଞ୍ଜସ୍ୟ ଅଛି ତାହା ପ୍ରଥମେ ଦେଖାଯାଉ ।

ସାଂଖ୍ୟ ମତରେ ପ୍ରକୃତି ଓ ପୁରୁଷ ଉଭୟ ଅନାଦି, ଗୀତାରେ ଭଗବାନ୍ ଏ ମତ ସମର୍ଥନ କରିଅଛନ୍ତି ।

ପ୍ରକୃତିଂ ପୁରୁଷଂ ଚୈବ ବିଦ୍ଧ୍ୟନାଦୀ ଉଭାବପି
ବିକାରାଂଶ୍ଚ ଗୁଣାଂଶ୍ଚୈବ ବିଦ୍ଧି ପ୍ରକୃତି ସମ୍ଭବାନ୍ (ଗୀ ୧୩-୨୦)

'ପ୍ରକୃତି ଓ ପୁରୁଷ ଉଭୟ ଅନାଦି ଏବଂ ସମସ୍ତ ବିକାର ଓ ଗୁଣ ପ୍ରକୃତିରୁ ସମୁଦ୍‌ଭୂତ ବୋଲି ଜାଣ' ।

ସାଂଖ୍ୟବାଦୀମାନେ ପ୍ରକୃତିର ୨୪ ବିକାର ଓ ୩ ଗୁଣର ଯେଉଁ ବିଶ୍ଳେଷଣ କରନ୍ତି ତାହା ମଧ୍ୟ ଏଠାରେ ଗୀତା ଅନୁମୋଦନ କରିଅଛି । ସାଂଖ୍ୟମତରେ ଜଗତ୍ ତ୍ରିଗୁଣାତ୍ମକ; ଜଗତର ପ୍ରତ୍ୟେକ ବସ୍ତୁ ଏ ତ୍ରିଗୁଣର ସମବାୟରେ ଗଠିତ, ଗୀତାରେ ଏହି ମତହିଁ ଗୃହୀତ ହୋଇଅଛି :—

ନ ତଦସ୍ତି ପୃଥିବ୍ୟାଂ ବା ଦିବି ଦେବେଷୁ ବା ପୁନଃ,
ସତ୍ତ୍ୱଂ ପ୍ରକୃତିଜୈର୍ମୁକ୍ତଂ ଯଦେଭିଃସ୍ୟାତ୍ ତ୍ରିଭିର୍ଗୁଣୈଃ (ଗୀ ୧୮-୪୦)

'ସଂସାରରେ କିଂବା ଦେବତାମାନଙ୍କ ମଧ୍ୟରେ ସ୍ୱର୍ଗରେ ଏପରି କୌଣସି ବସ୍ତୁ ନାହିଁ, ଯାହା ପ୍ରକୃତି ସମ୍ଭୂତ ଏହି ଗୁଣତ୍ରୟରୁ ମୁକ୍ତ ।'

ସାଂଖ୍ୟମତରେ ପ୍ରକୃତି ଓ ପୁରୁଷ ଦୁଇଟି ନିତ୍ୟ ଓ ସ୍ୱତନ୍ତ୍ର ସତ୍ତା । ସଂସାରରେ କ୍ଷିତି, ଜଳ, ତେଜ, ମରୁତ୍, ବ୍ୟୋମ ପ୍ରଭୃତି ଭୂତସମୂହ ଏବଂ

ସେମାନଙ୍କ ଭିତରେ ଯେଉଁ ପ୍ରାକୃତିକ ଓ ନୈସର୍ଗିକ ଘଟନା ସବୁ ଘଟୁଅଛି ଏବଂ ମନୁଷ୍ୟର ମନୋମଧ୍ୟରେ ଇଚ୍ଛା, ଦ୍ୱେଷାଦି ଯେଉଁସବୁ ମାନସିକ ବ୍ୟାପାରମାନ ଘଟୁଅଛି ସେ ସମସ୍ତ ପ୍ରକୃତିରହିଁ କାର୍ଯ୍ୟ । କି ଜଡ଼ଜଗତ୍, କି ଜୀବଜଗତ୍ କି ମନୋଜଗତ୍—ସର୍ବତ୍ର ଯେଉଁ ସବୁ ସୃଷ୍ଟି, ସ୍ଥିତି, ଲୟ ଚାଲୁଅଛି—ଏ ସମସ୍ତ ସତ୍ତ୍ୱ, ରଜଃ ଓ ତମଃ ଏହି ତିନିଗୁଣର ମିଶ୍ରଣ ବା ନ୍ୟୂନତା ବା ଆଧିକ୍ୟର ଫଳ । ପ୍ରକୃତି ଜଡ଼, ପୁରୁଷ ସଂସର୍ଗରେ ଆସିଲେ ତାହାଠାରେ ଏହି ଶକ୍ତି ସଂଚରିତ ହୁଏ ଅର୍ଥାତ୍ ଜଡ଼ ପ୍ରକୃତି ପୁରୁଷର ସାନ୍ନିଧ୍ୟ ଲାଭକଲେ ତାହାର ସାମ୍ୟାବସ୍ଥାର ବ୍ୟତ୍ୟୟ ଘଟେ ଏବଂ ତହିଁରୁ ସୃଷ୍ଟିକ୍ରିୟାର ଆରମ୍ଭ ହୁଏ ଏବଂ ପୁରୁଷ ଏହି ଗୁଣଦ୍ୱାରା ବଦ୍ଧହୁଏ, ଗୀତା ଏହି ମତ ଗ୍ରହଣ କରିଅଛି:—

ସତ୍ତ୍ୱଂ ରଜସ୍ତମ ଇତି ଗୁଣାଃ ପ୍ରକୃତିସମ୍ଭବାଃ,
ନିବଧ୍ନନ୍ତି ମହାବାହୋ ଦେହେ ଦେହିନମବ୍ୟୟମ୍ (ଗୀ ୧୪-୫)

"ସତ୍ତ୍ୱ, ରଜଃ, ତମଃ—ପ୍ରକୃତି ସଂଭୂତ ଏହି ଗୁଣତ୍ରୟ ଦେହ ମଧ୍ୟରେ ଅବ୍ୟୟ ଦେହୀ ଅର୍ଥାତ୍ ମୁକ୍ତ ଜୀବାତ୍ମାକୁ ଆବଦ୍ଧ କରନ୍ତି ।"

ସାଂଖ୍ୟର ଏହି ମୌଳିକ ଜ୍ଞାନ ଗୀତୋକ୍ତ ଯୋଗର ଭିତ୍ତି; ପ୍ରକୃତିଠାରୁ ପୁରୁଷ ସ୍ୱତନ୍ତ୍ର; ପ୍ରାକୃତିକ ଘଟନାବଳି ଓ ମନମଧ୍ୟରେ ଘଟୁଥିବା ସୁଖ, ଦୁଃଖ, କାମ, କ୍ରୋଧ, ଚିନ୍ତା, ଇଚ୍ଛାଦି—ଏ ସମସ୍ତ ପ୍ରକୃତିର ଗୁଣତ୍ରୟର କାର୍ଯ୍ୟ; ଆତ୍ମା ବା ପୁରୁଷ ଶାନ୍ତ, ନିଷ୍କ୍ରିୟ, ନିତ୍ୟ; ପ୍ରକୃତିର ଏହି ସବୁ ଲୀଳା ତାଙ୍କୁ ସ୍ପର୍ଶ କରିପାରେ ନାହିଁ—ଗୀତା ଆରମ୍ଭରୁ ଏହିଭାବରେ ପ୍ରାଥମିକ ସାଧନ ପ୍ରଣାଳୀର ଉପଦେଶ ଦେଇ ଅଛନ୍ତି । ଦ୍ୱିତୀୟ ଅଧ୍ୟାୟ ୪୫ମ ଶ୍ଳୋକରେ ଭଗବାନ୍ ଏହିକଥାହିଁ ପ୍ରଥମେ ଅର୍ଜୁନଙ୍କୁ ଉପଦେଶ ଦେଇଅଛନ୍ତି :—

"ତ୍ରୈଗୁଣ୍ୟବିଷୟା ବେଦା ନିସ୍ତ୍ରୈଗୁଣ୍ୟୋ ଭବାର୍ଜୁନ",

ସାଂଖ୍ୟବାଦୀମାନେ ପୁରୁଷ ବା ଆତ୍ମାଙ୍କୁ ଅନାଦି, ନିର୍ଗୁଣ, ନିର୍ଲେପ, ସର୍ବଗତ, ଚେତନ ବୋଲି କହନ୍ତି, ଗୀତା ଏହିମତର ଅନୁମୋଦନ କରିଅଛି :—

ଅନାଦିତ୍ୱା ନ୍ନିର୍ଗୁଣତ୍ୱାତ୍ ପରମାତ୍ମାୟ ମବ୍ୟୟଃ,
ଶରୀରସ୍ଥୋଽପିକୌନ୍ତେୟ ନ କରୋତି ନ ଲିପ୍ୟତେ । (ଗୀ ୧୩-୩୨)

'ହେ, ଅର୍ଜୁନ, ଅବିନାଶୀ ଏହି ପରମାତ୍ମା ଅନାଦି ନିର୍ଗୁଣ ଅଟନ୍ତି, ଶରୀର ସଂଯୁକ୍ତ ହୋଇ ମଧ୍ୟ ନିଷ୍କ୍ରିୟ ଓ ନିର୍ଲେପ ।'

ପ୍ରକୃତ୍ୟୈବଚକର୍ମାଣି କ୍ରିୟମାଣାନି ସର୍ବଶଃ
ଯଃ ପଶ୍ୟତି ତଥାତ୍ମାନ ମକର୍ତ୍ତାରଂ ସ ପଶ୍ୟତି । (ଗୀ୧୩-୩୦)

ପ୍ରକୃତି ସମସ୍ତ କର୍ମ କରେ, ଆତ୍ମା ଅକର୍ତ୍ତା, ଯେ ଏଭଳି ଦେଖନ୍ତି ସେ ଏକା ଯଥାର୍ଥଦର୍ଶୀ ।

ସାଂଖ୍ୟ ମତରେ ପ୍ରକୃତି ଏକ; କିନ୍ତୁ ପୁରୁଷ ଅନେକ, ଅଥଚ ପ୍ରତ୍ୟେକ ପୁରୁଷ ବିଶ୍ୱବ୍ୟାପୀ । ପୁରୁଷ ଅନେକ, ସେମାନଙ୍କର ସେ ସମ୍ବନ୍ଧରେ ଯୁକ୍ତି ଏହିପରି—ଯେବେ ପୁରୁଷ ଅନେକ ନ ହୋଇ ଏକ ବୋଲି କୁହାଯାଏ, ତେବେ ଜଣେ ସୁଖୀ ହେଲେ ସମସ୍ତେ ସୁଖୀ ହୁଅନ୍ତେ ଏବଂ ଜଣେ ଦୁଃଖୀ ହେଲେ ସମସ୍ତେ ଦୁଃଖୀ ହୁଅନ୍ତେ ଏବଂ ଜଣକର ମୃତ୍ୟୁ ହେଲେ ସମସ୍ତଙ୍କର ମୃତ୍ୟୁ ହୁଅନ୍ତା ଇତ୍ୟାଦି । ଯେତେବେଳେ ଏପରି ହୁଏନାହିଁ, ସେତେବେଳେ ପୁରୁଷ ଅନେକ ଏହା ସିଦ୍ଧହେଲା, ମାତ୍ର ଗୀତା ଏ ମତ ସ୍ୱୀକାର କରେନାହିଁ । ଗୀତା କହେ, ପ୍ରକୃତି ଏକ ଏବଂ ପୁରୁଷ ମଧ୍ୟ ଏକ । ଗୀତା ପୁରୁଷଙ୍କର ବହୁତ୍ୱ ସ୍ୱୀକାର କରେନାହିଁ । ଗୀତା ମତରେ ଯେପରି ଏକମାତ୍ର ସୂର୍ଯ୍ୟ ସମସ୍ତ ଲୋକଙ୍କୁ ପ୍ରକାଶ କରନ୍ତି, ସେହିପରି ଏକମାତ୍ର ପୁରୁଷ ସମସ୍ତ କ୍ଷେତ୍ରକୁ (ପ୍ରକୃତିର ପରିଣାମ ଶରୀରକୁ) ପ୍ରକାଶ କରନ୍ତି :—

ଯଥା ପ୍ରକାଶୟତ୍ୟେକଃ କୃତ୍ସ୍ନଂ ଲୋକ ମିମଂ ରବିଃ
କ୍ଷେତ୍ରଂ କ୍ଷେତ୍ରୀ ତଥାକୃତ୍ସ୍ନଂ ପ୍ରକାଶୟତି ଭାରତ । (ଗୀ୧୩-୩୩)
କ୍ଷେତ୍ର=ଶରୀର, କ୍ଷେତ୍ରୀ=କ୍ଷେତ୍ରଜ୍ଞ ପୁରୁଷ ।

ଭଗବାନ୍ ସର୍ବବ୍ୟାପୀ, ଅପରିଚ୍ଛିନ୍ନ ଓ ଅବିଭକ୍ତ ଅଥଚ ଉପାଧି ଭେଦରେ ସେ ବହୁ ବୋଲି ବୋଧ ହୁଅନ୍ତି ।

ଅବିଭକ୍ତଂ ଚ ଭୂତେଷୁ ବିଭକ୍ତମିବଚସ୍ଥିତମ୍ ( ଗୀ ୧୩-୧୬ ) ।

ଅନ୍ୟତ୍ର ଗୀତାରେ ଭଗବାନ୍ କହୁଅଛନ୍ତି—

ଅହମାତ୍ମା ଗୁଡ଼ାକେଶଃ ସର୍ବଭୂତାଶୟସ୍ଥିତଃ । ( ଗୀ ୧୦-୨୦ )
"ମୁଁ ସମସ୍ତଙ୍କ ହୃଦୟରେ ଅବସ୍ଥିତ ଆତ୍ମା ଅଟେଁ ।"

ସାଂଖ୍ୟମତରେ ଜ୍ଞାନରେ ମୁକ୍ତି । ଏ ଜ୍ଞାନ ପଞ୍ଚବିଂଶତି ତତ୍ତ୍ୱର ବିଚାର ଓ ପ୍ରକୃତିପୁରୁଷ ବିବେକରୁ ଉତ୍ପନ୍ନ ହୁଏ । ଗୀତା ଜ୍ଞାନର ବିରୋଧୀ ନୁହେ । ବରଂ ଭଗବାନ୍ ଗୀତାରେ ଜ୍ଞାନର ଯଥେଷ୍ଟ ପ୍ରଶଂସା କରି ଅଛନ୍ତି । 'ନହି ଜ୍ଞାନେନ ସଦୃଶଂ ପବିତ୍ରମିହ ବିଦ୍ୟତେ' (ଗୀ ୪-୩୮) "ଜ୍ଞାନପରି ପବିତ୍ର ଜଗତରେ କିଛି ନାହିଁ"; 'ସର୍ବଂ କର୍ମାଖିଳଂ ପାର୍ଥ ଜ୍ଞାନେ ପରିସମାପ୍ୟତେ' ( ୪-୩୩) ; "ଫଳ ସହିତ ସମସ୍ତ କର୍ମ ଜ୍ଞାନରେ

ପରିସମାପ୍ତ ହୁଏ"; ଜ୍ଞାନଂ ଲବ୍‌ଧ୍ୱା ପରାଂଶାନ୍ତି ମଚିରେଣାଧିଗଚ୍ଛତି (୪-୩୯); ଜ୍ଞାନଲାଭ ହେଲେ ଅଳ୍ପସମୟପରେ ପରମ ଶାନ୍ତି ମିଳେ । ଇତ୍ୟାଦି ।

କିନ୍ତୁ ଗୀତାର ଅଭିପ୍ରେତ ଜ୍ଞାନ ସାଂଖ୍ୟୋକ୍ତ ଜ୍ଞାନଠାରୁ ଭିନ୍ନ । ଗୀତାମତରେ ଯେଉଁ ଜ୍ଞାନ ବଳରେ ଜୀବ ସମସ୍ତ ପ୍ରାଣୀଙ୍କୁ ଆପଣାଠାରେ ଏବଂ ଶେଷରେ ଆପଣାକୁ ସମସ୍ତ ପ୍ରାଣୀଙ୍କଠାରେ ଦର୍ଶନ କରେ ତାହାହିଁ ତତ୍ତ୍ୱଜ୍ଞାନ ।

'ଯେନ ଭୂତାନ୍ୟଶେଷେଣ ଦ୍ରକ୍ଷ୍ୟସ୍ୟାତ୍ମନ୍ୟଥୋମୟି ।' (ଗୀ ୪-୩୫)

ଏଥିରୁ ବୁଝା ଯାଉଅଛି, ଭଗବଦ୍ ଭକ୍ତ ନ ହେଲେ ପ୍ରକୃତ ତତ୍ତ୍ୱଜ୍ଞାନ ମିଳେନାହିଁ । କିନ୍ତୁ ସାଂଖ୍ୟ ନିରୀଶ୍ୱର । ଏପରି ଅବସ୍ଥାରେ ଈଶ୍ୱରଭକ୍ତି କାହୁଁ ସାଂଖ୍ୟରେ ରହିବ ? ଗୀତା ଯେ ଈଶ୍ୱର ବିଶ୍ୱାସରେ ସମ୍ପୃକ୍ତ, ଏକଥା ଆଗରୁ କୁହାଯାଇ ଅଛି । ସାଂଖ୍ୟ ମତରେ ପ୍ରକୃତିପୁରୁଷ-ବିଷୟକ ପଞ୍ଚବିଂଶତି ତତ୍ତ୍ୱଜ୍ଞାନ ଜାତହେଲେ ଜୀବର ମୁକ୍ତି ହୁଏ । କହିବା ବାହୁଲ୍ୟ ଯେ ଈଶ୍ୱର ଏହି ୨୫ ତତ୍ତ୍ୱର ଅନ୍ତର୍ଗତ ନୁହନ୍ତି ।

ସାଂଖ୍ୟମତରେ ପ୍ରକୃତି ପୁରୁଷହିଁ ଚରମ ଦ୍ୱୈତ । ପ୍ରକୃତିଜଡ଼ ଏବଂ ପୁରୁଷ ତାହାର ବିପରୀତ ଚେତନ । ମାତ୍ର ଗୀତା ମତରେ ପ୍ରକୃତି ଓ ପୁରୁଷ ଭଗବାନଙ୍କର ଦୁଇଟି ବିଭାବ ମାତ୍ର । ଅପରା ପ୍ରକୃତି-ସାଂଖ୍ୟୋକ୍ତ ପ୍ରଧାନ ବା ପ୍ରକୃତି ଏବଂ ପରା ପ୍ରକୃତି-ସାଂଖ୍ୟୋକ୍ତ ପୁରୁଷ । ତେଣୁ ଭଗବାନହିଁ ଚରମତତ୍ତ୍ୱ । ପ୍ରକୃତିପୁରୁଷ ଚରମ ନୁହନ୍ତି । ସାଂଖ୍ୟୋକ୍ତ ଏହି ଚରମଦ୍ୱୈତ ପ୍ରଳୟକାଳରେ ପରମାତ୍ମାଙ୍କଠାରେ ବିଲୀନ ହୁଅନ୍ତି ।

ସାଂଖ୍ୟ ମତ ଓ ଗୀତା ମତରେ ଏହିପରି ଆହୁରି କେତେକ ବୈଷମ୍ୟ ଦେଖାଯାଏ ମାତ୍ର ବାହୁଲ୍ୟ ଭୟରୁ ଏହି କେତୋଟିମାତ୍ର ଏଠାରେ ପ୍ରଦର୍ଶିତ ହେଲା ।

**(ଙ) ପାତଞ୍ଜଳ ଦର୍ଶନ ଓ ଗୀତା**—'ଯୋଗ' ଶବ୍ଦ ସଂସ୍କୃତ 'ଯୁଜ୍' ଧାତୁରୁ ଘଞ୍ ପ୍ରତ୍ୟୟ ଦ୍ୱାରା ନିଷ୍ପନ୍ନ । ଏହାର ମୌଳିକ ଅର୍ଥ ଐକ୍ୟ ବା ମିଳନ । ଅସ୍ମାଙ୍କର ପରମାତ୍ମା ସଙ୍ଗେ ମିଳନକୁ ଦର୍ଶନ ଶାସ୍ତ୍ରରେ ଯୋଗ କୁହାଯାଏ । ପତଞ୍ଜଳିକୃତ ଯୋଗ ଶାସ୍ତ୍ର—ଯାହା ସାଧାରଣତଃ ରାଜଯୋଗ, ସମାଧି ଯୋଗ, ଧ୍ୟାନ ଯୋଗ ଓ ଅଷ୍ଟାଙ୍ଗ ଯୋଗ-ନାମରେ ପରିଚିତ, ତହିଁରେ ଏ ଯୋଗଶବ୍ଦର ଅର୍ଥ କିପରି ବ୍ୟବହୃତ ହୋଇଅଛି, ଏହା ପ୍ରଥମରୁ ବିଚାର କରିବା ଆବଶ୍ୟକ ।

ସାଂଖ୍ୟ ଦାର୍ଶନିକତତ୍ତ୍ୱସମୂହର ଯେଉଁ ବିଶ୍ଳେଷଣ କରିଅଛି, ତାହାହିଁ ପାତଞ୍ଜଳ ଦର୍ଶନର ଭିତ୍ତି । ସାଂଖ୍ୟ ଈଶ୍ୱର ବିଶ୍ୱାସ କରେ ନାହିଁ, କିନ୍ତୁ ପାତଞ୍ଜଳଦର୍ଶନ ଈଶ୍ୱରବିଶ୍ୱାସ କରେ, ଏତନ୍ମାତ୍ର ଉଭୟ ଦର୍ଶନ ମଧ୍ୟରେ ପ୍ରଭେଦ । ତେଣୁ କେହି କେହି ପାତଞ୍ଜଳ ଦର୍ଶନକୁ ସେଶ୍ୱର ସାଂଖ୍ୟ କହନ୍ତି । ପ୍ରକୃତି ପୁରୁଷ ପ୍ରଭୃତି ୨୫ଟି ତତ୍ତ୍ୱ ସ୍ଥାନରେ ଈଶ୍ୱରଙ୍କ ସହିତ ପାତଞ୍ଜଳରେ ୨୬ଟି ତତ୍ତ୍ୱ ସ୍ୱୀକୃତ ହୋଇଅଛି । ପତଞ୍ଜଳି 'ଈଶ୍ୱର' ସ୍ୱୀକାର କଲେହେଁ ତତ୍‌ପ୍ରଣୀତ ଦର୍ଶନରେ ଈଶ୍ୱରଙ୍କ ସ୍ଥାନ ଖୁବ୍ ଗୌଣ । ସାଂଖ୍ୟ ଓ ପାତଞ୍ଜଳ ଉଭୟଙ୍କ ଲକ୍ଷ୍ୟ ଏକ; ତତ୍ତ୍ୱଜ୍ଞାନ ଦ୍ୱାରା ପୁରୁଷ ପ୍ରକୃତିର ପାଶରୁ ବିମୁକ୍ତ ହୋଇ ଯେତେବେଳେ ନିଜର ସ୍ୱତନ୍ତ୍ର ସତ୍ତା ଅନୁଭବ କରେ ସେତେବେଳେ ତାହାର କୈବଲ୍ୟ ଲାଭ ବା ମୁକ୍ତି ହୁଏ । ସାଂଖ୍ୟ ମତରେ ବୁଦ୍ଧିଦ୍ୱାରା ବିଚାର କଲେ ତତ୍ତ୍ୱଜ୍ଞାନ ଲାଭ ହୁଏ ମାତ୍ର ପାତଞ୍ଜଳ ମତରେ ଅଷ୍ଟାଙ୍ଗ ଯୋଗ କ୍ରିୟାରେ ଚିତ୍ତକୁ ଧ୍ୟେୟବସ୍ତୁରେ ଏକାଗ୍ର କଲେ ବିବେକଖ୍ୟାତି ବା ତତ୍ତ୍ୱଜ୍ଞାନର ଉଦ୍ରେକ ହୁଏ । ଆଲୋଡ଼ିତ ଜଳରେ ଯେପରି ପ୍ରତିବିମ୍ବ ସ୍ପଷ୍ଟ ଜଣାଯାଏ ନାହିଁ, ସେହିପରି ବିକ୍ଷୁବ୍ଧ ଚିତ୍ତରେ ପ୍ରକୃତ ଜ୍ଞାନ ପ୍ରକାଶିତ ହୁଏ ନାହିଁ । ଚିତ୍ତସ୍ଥିର ହେଲେ ପ୍ରକୃତ ତତ୍ତ୍ୱ ସ୍ୱତଃ ଅବଭାସିତ ହୋଇ ଉଠିବ । ଏହି ତତ୍ତ୍ୱଜ୍ଞାନର ସ୍ୱରୂପ— ପୁରୁଷର ପ୍ରକୃତିଠାରୁ ସ୍ୱୀୟ ସ୍ୱାତନ୍ତ୍ର୍ୟ ବା ପ୍ରଭେଦର ଉପଲବ୍ଧି । ଏହାହିଁ ପାତଞ୍ଜଳ ଦର୍ଶନୋକ୍ତ ମୋକ୍ଷ । ଏଥିରୁ ଜଣାଗଲା ପାତଞ୍ଜଳ ଯୋଗର ଅର୍ଥ ସଂଯୋଗ ବା ମିଳନ ନୁହେଁ; ଏହା ବରଂ ବିଯୋଗ । ଏହି ପାର୍ଥକ୍ୟ ଜ୍ଞାନ ବା ବିଯୋଗକୁ ପାତଞ୍ଜଳ ଦର୍ଶନରେ 'ଯୋଗ' ନାମରେ ଅଭିହିତ କରାଯାଇ ଅଛି ।

ଯାଜ୍ଞବଲ୍‌କ୍ୟ କହିଛନ୍ତି :—

ସଂଯୋଗୋ ଯୋଗ ଇତ୍ୟୁକ୍ତୋ ଜୀବାତ୍ମପରମାତ୍ମନୋଃ ।

"ଜୀବାତ୍ମା ଓ ପରମାତ୍ମାଙ୍କର ଯେ ସଂଯୋଗ ତାହାକୁହିଁ ଯୋଗ ବୋଲାଯାଏ ।"

ବିଷ୍ଣୁପୁରାଣରେ ମଧ୍ୟ କୁହା ଯାଇଅଛି :—

ଆତ୍ମପ୍ରଯତ୍ନସାପେକ୍ଷା ବିଶିଷ୍ଟା ଯା ମନୋଗତିଃ,
ତସ୍ୟା ବ୍ରହ୍ମଣି ସଂଯୋଗୋ ଯୋଗ ଇତ୍ୟଭିଧୀୟତେ ।

"ଆତ୍ମାର ଚେଷ୍ଟାସାପେକ୍ଷ ଯେଉଁ ଅସାଧାରଣ ମନୋବୃତ୍ତି, ଭଗବାନଙ୍କଠାରେ ତାହାର ସଂଯୋଗକୁହିଁ ଯୋଗ କୁହାଯାଏ ।"

ଗୀତାର ଷଷ୍ଠ ଅଧ୍ୟାୟରେ ଈଶ୍ୱରଙ୍କଠାରେ ଚିତ୍ତର ଏକାଗ୍ରତା ନିମିତ୍ତ ଯେଉଁ ପାତଞ୍ଜଳ ଯୋଗ ବା ଅଷ୍ଟାଙ୍ଗ ଯୋଗ ସାଧନାର ଉପଦେଶ ଅଛି, ତାହା ମଧ୍ୟ ପରମାତ୍ମାଙ୍କଠାରେ ଆତ୍ମାର ସଂଯୋଗ ।

ମନଃ ସଂଯମ୍ୟ ମଚ୍ଚିତ୍ତୋ ଯୁକ୍ତ ଆସୀତ ମତ୍‌ପରଃ । (ଗୀ ୬।୧୪)

"ଯୋଗୀ ମନକୁ ସଂଯତ କରି ଚିତ୍ତ ଆମଠାରେ ଯୁକ୍ତକରି ଅବସ୍ଥାନ କରିବେ ।"

ପାତଞ୍ଜଳ ମତରେ ଯୋଗର ଚରମ ଅବସ୍ଥାରେ ପୁରୁଷ ସ୍ୱରୂପରେ ଅବସ୍ଥାନ କରନ୍ତି । ପୁରୁଷ ଚିତ୍ ସ୍ୱରୂପ, ଆନନ୍ଦମୟ ନୁହନ୍ତି; ତେଣୁ ସୁଖଦୁଃଖାତୀତ କୈବଲ୍ୟ ଅବସ୍ଥାହିଁ ମୁକ୍ତି, ଏଥିରେ ଦୁଃଖ ନିବୃତ୍ତି ହୁଏ ମାତ୍ର ସୁଖ ମିଳେ ନାହିଁ । କିନ୍ତୁ ଯୋଗର ଚରମାବସ୍ଥାରେ ଆତ୍ୟନ୍ତିକ ସୁଖ ମିଳେ ବୋଲି ଗୀତାରେ ସ୍ପଷ୍ଟ କୁହା ଯାଇଅଛି ।

ସୁଖ ମାତ୍ୟନ୍ତିକଂ ଯତ୍ତଦ୍ ବୁଦ୍ଧିଗ୍ରାହ୍ୟ ମତୀନ୍ଦ୍ରିୟମ୍ ,
ବେତ୍ତିଯତ୍ର ନଚୈବାୟଂ ସ୍ଥିତଶ୍ଚଳତି ତତ୍ତ୍ୱତଃ ।
ଯଂ ଲବ୍‌ଧ୍ୱା ଚାପରଂ ଲାଭଂ ମନ୍ୟତେ ନାଧିକଂ ତତଃ,
ଯସ୍ମିନ୍ ସ୍ଥିତୋ ନ ଦୁଃଖେନ ଗୁରୁଣାପି ବିଚାଲ୍ୟତେ ।
ତଂ ବିଦ୍ୟାଦ୍ ଦୁଃଖସଂଯୋଗବିୟୋଗଂ ଯୋଗସଞ୍ଜ୍ଞିତମ୍ ,
ସ ନିଶ୍ଚୟେନ ଯୋକ୍ତବ୍ୟୋ ଯୋଗୋଽନିର୍ବିଣ୍ଣଚେତସା
( ଗୀ ୬।୨୧—୨୩ )

"ଯେଉଁ ଅବସ୍ଥାରେ ବୁଦ୍ଧିଗ୍ରାହ୍ୟ, ଇନ୍ଦ୍ରିୟାତୀତ, ନିରତିଶୟ ସୁଖର ଅନୁଭବ ହୁଏ, ଯେଉଁ ଅବସ୍ଥାରେ ଅବସ୍ଥାନ କଲେ ତତ୍ତ୍ୱରୁ ଆଉ ବିଚଳିତ ହେବାକୁ ପଡ଼େ ନାହିଁ, ଯେଉଁ ଅବସ୍ଥା ଲାଭ ହେଲେ ତହିଁରୁ ଅଧିକ ଲାଭ ପାଇଁ ଆଉ ମନ ବଳେ ନାହିଁ, ଯେଉଁ ଅବସ୍ଥାରେ ଉପନୀତ ହେଲେ ଗୁରୁତର ଦୁଃଖରେ ମଧ୍ୟ ବିଚଳିତ ହେବାକୁ ପଡ଼େ ନାହିଁ, ଦୁଃଖସଂପର୍କଶୂନ୍ୟ ସେହି ଅବସ୍ଥାର ନାମ ଯୋଗ । ନିର୍ବେଦ-ଶୂନ୍ୟ ଚିତ୍ତରେ ନିଶ୍ଚୟ ସେହି ଯୋଗ ଅଭ୍ୟାସ କରିବ ।"

ପତଞ୍ଜଳି ଜୀବାତ୍ମା ଓ ପରମାତ୍ମାଙ୍କର ଏକତ୍ୱ ସ୍ୱୀକାର କରନ୍ତି ନାହିଁ । ସମାଧି ଅବସ୍ଥାରେ ଆତ୍ମା ସ୍ୱରୂପରେ ଅବସ୍ଥାନ କରନ୍ତି ମାତ୍ର ଈଶ୍ୱର ପ୍ରାପ୍ତି ହୁଏ ନାହିଁ; କିନ୍ତୁ ଗୀତା କହେ ଯୋଗର ଚରମାବସ୍ଥାରେ ଈଶ୍ୱର ଦର୍ଶନ ହୁଏ ।

ଯୁଞ୍ଜନ୍ନେବଂ ସଦାତ୍ମାନଂ ଯୋଗୀ ନିୟତମାନସଂ
ଶାନ୍ତିଂ ନିର୍ବାଣପରମାଂ ମତ୍‌ସଂସ୍ଥା ମଧିଗଚ୍ଛତି । (ଗୀ: ୬—୧୫)

"ଯୋଗୀ ସଂଯତଚିତ୍ତ ହୋଇ ଏହି ଭାବରେ ଆତ୍ମାକୁ ସମାହିତ କଲେ ଆମଠାରେ ଅବସ୍ଥାନରୂପ ମୋକ୍ଷମୂଳକ ଶାନ୍ତି ଲାଭ କରନ୍ତି ।"

ସର୍ବଭୂତସ୍ଥ ମାତ୍ମାନଂ ସର୍ବଭୂତାନି ଚାତ୍ମନି,
ଈକ୍ଷତେ ଯୋଗଯୁକ୍ତାତ୍ମା ସର୍ବତ୍ର ସମଦର୍ଶନଃ (ଗୀ ୬।୨୯)

"ସମଦୃଷ୍ଟି ସମ୍ପନ୍ନ ଯୋଗୀ ସମସ୍ତ ଭୂତରେ ଆତ୍ମାକୁ ଏବଂ ସମସ୍ତ ଭୂତଙ୍କୁ ଆତ୍ମାରେ ଦର୍ଶନ କରନ୍ତି । ସର୍ବଭୂତସ୍ଥିତ ଆତ୍ମା ପରମାତ୍ମାଙ୍କ ଭିନ୍ନ ଅନ୍ୟ କେହି ନୁହନ୍ତି ।

ପାତଞ୍ଜଳ ଦର୍ଶନରେ ଈଶ୍ୱରଙ୍କ ସ୍ଥାନ ଅତି ଗୌଣ, ଈଶ୍ୱରଙ୍କୁ ବାଦ ଦେଲେ ମଧ୍ୟ ଯୋଗସିଦ୍ଧିରେ ବାଧା ହୁଏ ନାହିଁ ।

## କର୍ମଯୋଗ

ଧର୍ମର ସୂକ୍ଷ୍ମତତ୍ତ୍ୱ ନିରୂପଣ ଉଦ୍ଦେଶ୍ୟରେ ପ୍ରାଚୀନ ଆର୍ଯ୍ୟ ଭାରତରେ ଯେତେ ଗ୍ରନ୍ଥ ପ୍ରଣୀତ ହୋଇଥିଲା, ପୃଥିବୀର ଅନ୍ୟ କୌଣସି ଦେଶରେ ସେପରି ହୋଇନାହିଁ । ବୈଦେଶିକ ଆକ୍ରମଣକାରୀଙ୍କ ଦ୍ୱାରା ସେଥିରୁ କେତେ ଯେ ନଷ୍ଟ ହୋଇ ଯାଇଅଛି ତାହା କିଏ କହିବ ? ବର୍ତ୍ତମାନ ଯାହା ମିଳୁଅଛି ତାହା ମଧ୍ୟ ଅଳ୍ପ ନୁହେ । ଚତୁର୍ବେଦ ଓ ବେଦାଙ୍ଗ, ଉପନିଷଦ୍, ଷଡ଼୍‌ଦର୍ଶନ ଓ ସେ ସବୁର ପରିପୂରକ ବ୍ୟାଖ୍ୟାଦି, ରାମାୟଣ, ମହାଭାରତ, ଅଷ୍ଟାଦଶ ପୁରାଣ, ଧର୍ମସଂହିତା, ଶ୍ରୀମଦ୍‌ଭାଗବତ ପ୍ରଭୃତି ବହୁ ଶାସ୍ତ୍ର ପ୍ରାଚୀନ ଆର୍ଯ୍ୟ ଭାରତର ଧର୍ମ ବିଷୟକ ଆଲୋଚନାର ସମୁଜ୍ଜ୍ୱଳ ନିଦର୍ଶନ ରୂପେ ଅଦ୍ୟାପି ବର୍ତ୍ତମାନ । ଅସାଧାରଣ ପ୍ରତିଭା ସମ୍ପନ୍ନ କୌଣସି ଲୋକଙ୍କ ପକ୍ଷରେ ସମଗ୍ର ଜୀବନ କାଳ ମଧ୍ୟରେ ଆମର ସମୁଦାୟ ଧର୍ମ ଗ୍ରନ୍ଥ ପଢ଼ି ପାରିବା ଅସମ୍ଭବ; ଆଲୋଚନା ମୂଳକ ଗବେଷଣା ତ ଦୂରର କଥା । ବର୍ତ୍ତମାନ ଏଠାରେ ଆଲୋଚ୍ୟ ଗୀତାତତ୍ତ୍ୱ କଥା ବିଚାର କରାଯାଉ । ପ୍ରାୟ ତିନିହଜାର ବର୍ଷ ପୂର୍ବେ ଏହା ରଚିତ ହୋଇଥିଲା । ପରବର୍ତ୍ତୀ ଦୀର୍ଘକାଳ ମଧ୍ୟରେ କେତେ ସୁଧୀ, ମନୀଷୀ, ସାଧୁ, ବ୍ରହ୍ମଚାରୀ, ତପସ୍ୱୀ, ଯତି, ସାଧକ ଯେ ଏହାର ତତ୍ତ୍ୱ ନିରୂପଣ କରି ଯାଇ ଅଛନ୍ତି ତାହାର ସଂଖ୍ୟା ନାହିଁ । ସେ ସବୁ ଆଲୋଚନା ମଧ୍ୟରୁ କେତେକ ବର୍ତ୍ତମାନ ମିଳୁଅଛି, କେତେ ବା ବନପୁଷ୍ପ ପରି କେଉଁଠାରେ ପଡ଼ି ନଷ୍ଟ ହୋଇଗଲାଣି ।

କର୍ମଯୋଗ ଯେ ଗୀତାର ମୁଖ୍ୟ ପ୍ରତିପାଦ୍ୟ ବିଷୟ—ଏ ସମ୍ବନ୍ଧରେ ପ୍ରାଚୀନ ବ୍ୟାଖ୍ୟାକାର ଓ ଆଧୁନିକ ବ୍ୟାଖ୍ୟାକାରଙ୍କ ମଧ୍ୟରେ ମତାନୈକ୍ୟ ରହିଅଛି । ଏଠାରେ ସଂକ୍ଷେପରେ ସେ କଥାର ଯତ୍କିଞ୍ଚିତ୍ ଆଲୋଚନା କରାଯାଉ ।

କୌଣସି ଗ୍ରନ୍ଥର ପ୍ରତିପାଦ୍ୟ ବିଷୟ ନିର୍ଣ୍ଣୟ କରିବାକୁ ହେଲେ ପ୍ରଥମେ ତାହାର ଆରମ୍ଭ ଓ ଉପସଂହାର ପ୍ରତି ଦୃଷ୍ଟି ଦେବାକୁ ହୁଏ । କୁରୁକ୍ଷେତ୍ର ଯୁଦ୍ଧ ଆରମ୍ଭରେ ଯୁଦ୍ଧ ଉଦ୍ଦେଶ୍ୟରେ ସମବେତ ନିଜର ଭାଇ, ବନ୍ଧୁ, କୁଟୁମ୍ବ, ଗୁରୁ, ପିତୃବ୍ୟାଦିଙ୍କୁ ଦେଖି ଅର୍ଜୁନଙ୍କ ମନରେ ତୀବ୍ର ବୈରାଗ୍ୟର ସଞ୍ଚାର ହେଲା । ଯୁଦ୍ଧରେ ସ୍ୱଜନଙ୍କର ବିନାଶ ଅନିବାର୍ଯ୍ୟ; ଶେଷରେ ଜୟ ହେଲେହେଁ ଆତ୍ମୀୟମାନଙ୍କ ରୁଧିରଲିପ୍ତ ରାଜ୍ୟଭୋଗ କରିବା ଅପେକ୍ଷା ସନ୍ନ୍ୟାସ ଅବଲମ୍ବନ କରି ଭିକ୍ଷାଦ୍ୱାରା ଜୀବନ ମାତ୍ର ଧାରଣ କରିବା ଉଚିତ । ଏହି ଭାବରେ ଉଦ୍‌ବେଳିତ ହୋଇ ଅର୍ଜୁନ ଯେତେବେଳେ ନିଜର କର୍ତ୍ତବ୍ୟ ନିର୍ଣ୍ଣୟ କରି ପାରିଲେ ନାହିଁ, ସେତେବେଳେ ସେ ଏକମାତ୍ର କାରୁଣ୍ୟପ୍ରପୀଡ଼ିତ ହୋଇ ଶ୍ରୀକୃଷ୍ଣଙ୍କୁ କହିଲେ :—

କାର୍ପଣ୍ୟଦୋଷୋପହତସ୍ୱଭାବଃ
ପୃଚ୍ଛାମି ତ୍ୱାଂ ଧର୍ମସମ୍ମୂଢ଼ଚେତାଃ,
ଯଚ୍ଛ୍ରେୟଃ ସ୍ୟାନ୍ନିଶ୍ଚିତଂ ବ୍ରୂହି ତନ୍ମେ
ଶିଷ୍ୟସ୍ତେଽହଂ ଶାଧି ମାଂ ତ୍ୱାଂ ପ୍ରପନ୍ନମ୍ । (ଗୀ ୨-୭)

"ପ୍ରଭୋ, ( ଆତ୍ମୀୟ ବିନାଶ ଜନିତ ଚିନ୍ତାରେ ) ମୁଁ ଏକାନ୍ତ ଅଭିଭୂତ ହୋଇ ପଡ଼ିଅଛି; ଧର୍ମର ପ୍ରକୃତ ତତ୍ତ୍ୱ ବୁଝି ନ ପାରି ମୁଁ ବିଚଳିତ ହୋଇ ଯାଇଛି; ଯାହା ମୋ ପକ୍ଷରେ ମଙ୍ଗଳକର ହେବ, ତାହା ମୋତେ ସ୍ଥିର କରି କହ; ମୁଁ ତୁମର ଶିଷ୍ୟ, ଶରଣାପନ୍ନ; ମୋତେ ଉପଦେଶ ଦିଅ ।"

ଜଣେ ମହାବୀରଙ୍କର ଏ ଭଳି କାତରୋକ୍ତି କେତେ ମର୍ମସ୍ପର୍ଶୀ— ଭାବୁକମାନେ ବୁଝି ପାରିବେ । କେବଳ ଅର୍ଜୁନଙ୍କର ପକ୍ଷରେ ନୁହେଁ, ଜଗତର ଅନେକ ବଡ଼ ବଡ଼ ପଣ୍ଡିତଙ୍କର ମଧ୍ୟ ଏପରି କର୍ତ୍ତବ୍ୟ ସଂଶୟ ଉପସ୍ଥିତ ହୁଏ । ଜିଜ୍ଞାସୁ ଶିଷ୍ୟର ଏ ଭଳି ଚିତ୍ତମୋହ ଦେଖି ଗୁରୁ ତାଙ୍କୁ ଯୁଦ୍ଧ ରୂପ କର୍ମ କରିବାକୁ ଉପଦେଶ ଦେଲେ । ଏହି କର୍ମ

କ୍ର ଭାବରେ କଲେ କର୍ତ୍ତାଙ୍କୁ କର୍ମର ବନ୍ଧନ ଦୋଷ ସ୍ପର୍ଶ କରିବ ନାହିଁ— ଏହା ବୁଝାଇବା ପାଇଁ ଧର୍ମର କେତେକ ନିଗୂଢ଼ ସତ୍ୟ ବ୍ୟାଖ୍ୟା କରିବା ଆବଶ୍ୟକ ହେଲା । ସେ ସବୁ ହୃଦୟଙ୍ଗମ କରି ଶେଷରେ ଗୁରୁଙ୍କ ପ୍ରଶ୍ନର ଉତ୍ତରରେ ଶିଷ୍ୟ କହିଲେ :—

'ନଷ୍ଟୋ ମୋହଃ ସ୍ମୃତିର୍ଲବ୍‌ଧା ତ୍ୱତ୍‌ପ୍ରସାଦାନ୍ମୟାଚ୍ୟୁତ,
ସ୍ଥିତୋଽସ୍ମି ଗତସନ୍ଦେହଃ କରିଷ୍ୟେ ବଚନଂ ତବ ।' (ଗୀ ୧୮-୭୩)

'ଗୁରେ, ମୋର ମୋହ ଦୂର ହେଲା, ତୁମ ଦୟାରୁ କର୍ତ୍ତବ୍ୟ ଜ୍ଞାନ ଲାଭ କଲି, ମୋର ସନ୍ଦେହ ଆଉ ନାହିଁ; ତୁମ କଥା କରିବି ଅର୍ଥାତ୍ ଯୁଦ୍ଧ କରିବି ।'

ଏହାହିଁ ଗୀତାର ଆରମ୍ଭ ଓ ଉପସଂହାର । ଏପରି ଅବସ୍ଥାରେ ଗୀତା ଯେ କର୍ମଯୋଗ ବିଷୟକ ଗ୍ରନ୍ଥ ଏଥିରେ ଆଉ ସନ୍ଦେହ କରାଯାଇ ପାରେ କି ?

'କର୍ମଯୋଗ'—ଏ ପଦର କର୍ମ ଶବ୍ଦ ଗୀତାରେ ସାଧାରଣ କର୍ମ ଅର୍ଥରେ ପ୍ରଯୁକ୍ତ ହୋଇ ଅଛି । ମୀମାଂସା ଦର୍ଶନରେ ଏହି 'କର୍ମ' ଶବ୍ଦର ଅର୍ଥ ବୈଦିକ ଯାଗଯଜ୍ଞାଦି – ଏହି ସଙ୍କୁଚିତ ଅର୍ଥହିଁ ପ୍ରକାଶ କରେ । ଏହି ଯଜ୍ଞାଦି ଶ୍ରୌତକର୍ମ ବ୍ୟତୀତ, ମନୁସଂହିତା ପ୍ରଭୃତିରେ ବ୍ରାହ୍ମଣାଦି ଚତୁର୍ବର୍ଣ୍ଣଙ୍କ ପାଇଁ ନିର୍ଦ୍ଦିଷ୍ଟ ହୋଇଥିବା କର୍ମକୁ 'ସ୍ମାର୍ତ୍ତକର୍ମ' କୁହାଯାଏ । ନିତ୍ୟ, ନୈମିତ୍ତିକ, କାମ୍ୟ ଓ ନିଷିଦ୍ଧ ଭେଦରେ ଏ ସବୁ କର୍ମ ମଧ୍ୟ ଚାରି ପ୍ରକାର ହୁଏ । ମାତ୍ର ଗୀତାରେ ପ୍ରତିପାଦିତ କର୍ମ ଏପରି ସଙ୍କୁଚିତ ଅର୍ଥ ପ୍ରକାଶକ ନୁହେ । ଖାଇବା, ଶୋଇବା, ବସିବା, ପଢ଼ିବା, ଖେଳିବା, ଧ୍ୟାନ କରିବା ପ୍ରଭୃତି ଶାରୀରିକ, ମାନସିକ, ବାଚିକ ସବୁ ବିଧ କର୍ମ 'କର୍ମ' ଶବ୍ଦର ଅନ୍ତର୍ଭୁକ୍ତ ।

'ଯୋଗ' ଶବ୍ଦ ମଧ୍ୟ ଗୀତାରେ ବହୁବାର ପ୍ରଯୁକ୍ତ ହୋଇଅଛି । ସାଧାରଣତଃ ଯୋଗ ଶବ୍ଦ ପାତଞ୍ଜଳ ଦର୍ଶନୋକ୍ତ ଚିତ୍ତନିରୋଧରୂପ ଯୋଗ ଅର୍ଥ ପ୍ରକାଶ କରେ, ମାତ୍ର ଏ ଅର୍ଥରେ ଯୋଗ ଶବ୍ଦ ଗୀତାରେ ଚାରି ପାଞ୍ଚ ଥରରୁ ବେଶି ବ୍ୟବହୃତ ହୋଇ ନାହିଁ । ଅନ୍ୟ ୫୦ । ୬୦ ଥର 'ଯୋଗ' ଶବ୍ଦ ଗୀତାରେ ଏହି ସଙ୍କୁଚିତ ଅର୍ଥ ପ୍ରକାଶ ନ କରି କର୍ମ ଯୋଗ ଅର୍ଥହିଁ ପ୍ରକାଶ କରେ । 'ଯୋଗ' ଶବ୍ଦ ସଂସ୍କୃତ ଯୁଜ୍ ଧାତୁରୁ ନିଷ୍ପନ୍ନ; ଯୁଜ୍ ଧାତୁର ଅର୍ଥ ଯୋଗ କରିବା । ତେଣୁ ଯୋଗର ଅର୍ଥ—ମିଳନ, ଐକ୍ୟ, ସଙ୍ଗତି,

ଯୋଡ଼ିବା ଇତ୍ୟାଦି ଏବଂ ଏ ଭଳି ଅବସ୍ଥା ପ୍ରାପ୍ତହେବାର ଯୁକ୍ତି ଓ କୌଶଳ ରୂପ ଯେ କର୍ମ ତାହାକୁ ମଧ୍ୟ ଯୋଗ କୁହାଯାଏ । 'ଯୋଗ କ୍ଷେମ' ପଦରେ ଯୋଗର ଅର୍ଥ ଅପ୍ରାପ୍ତ ବସ୍ତୁର ପ୍ରାପ୍ତି । ଗୀତାରେ ଭଗବାନଙ୍କୁ ଯୋଗେଶ୍ୱର ବୋଲି କୁହାଯାଇ ଅଛି; ସେଠାରେ ଯୋଗ ଶବ୍ଦ ଅସାଧାରଣ ସୃଷ୍ଟି ନିର୍ମାଣ କୌଶଳ ବା ଅଦ୍ଭୁତ ସାମର୍ଥ୍ୟ ଅର୍ଥହିଁ ପ୍ରକାଶ କରେ, କିନ୍ତୁ ଏ ଅର୍ଥ ଗୀତାରେ ମୁଖ୍ୟ ନୁହେ । ଗୀତାର ୨ୟ ଅଧ୍ୟାୟର ପଞ୍ଚମ ଶ୍ଳୋକରେ ଭଗବାନ୍ ନିଜେ କହି ଅଛନ୍ତି 'ଯୋଗଃ କର୍ମସୁ କୌଶଳମ୍' ଅର୍ଥାତ୍ 'କର୍ମ କରିବାର ବିଶେଷ କୌଶଳ, ଯୁକ୍ତି ବା ଯୁକ୍ତିହିଁ ଯୋଗ' ଏହାହିଁ ଗୀତାରେ ପ୍ରଯୁକ୍ତ ଯୋଗ ଶବ୍ଦର ମୁଖ୍ୟାର୍ଥ ।

ଆତ୍ମୀୟ ଓ ଗୁରୁଜନଙ୍କ ମୃତ୍ୟୁ ବିଚାରିକି ହିଁ ଯୁଦ୍ଧରୁ ଅର୍ଜୁନଙ୍କୁ ବିମନସ୍କ କରିଥିଲା । ଗୀତା ୨ୟ ଅଧ୍ୟାୟର ୧୧ଶ ଶ୍ଳୋକ ଠାରୁ ୩୮ଶ ଶ୍ଳୋକ ମଧ୍ୟରେ ଭଗବାନ୍ ଅର୍ଜୁନଙ୍କୁ ବୁଝାଇଦେଲେ ଯେ, ମୃତ୍ୟୁରେ ଶରୀରର ଧ୍ୱଂସ ହୁଏ ମାତ୍ର ଶରୀରୀ ଅର୍ଥାତ୍ ଆତ୍ମା ଅନ୍ୟ ଶରୀର ଆଶ୍ରୟ କରନ୍ତି; ସାଂଖ୍ୟ ଅର୍ଥାତ୍ ଜ୍ଞାନମାର୍ଗ ଅନୁସାରେ ଏହା ବୁଝାଇ ସାରି ଭଗବାନ୍ କହିଲେ, 'ଏ ସମ୍ବନ୍ଧରେ ତୁମ୍ଭଙ୍କୁ ଯୋଗମାର୍ଗର ସିଦ୍ଧାନ୍ତ କହୁଅଛୁ ।' ଯେଉଁମାନେ କାମ୍ୟ କର୍ମରେ ଆସକ୍ତ ରହନ୍ତି, ସେମାନଙ୍କର ବୁଦ୍ଧି ଚଞ୍ଚଳ ଥାଏ, ତେଣୁ ବିଷୟ ବିଶେଷରେ ସେମାନଙ୍କ ବୁଦ୍ଧି ସ୍ଥିର ହୋଇ ରହି ପାରେ ନାହିଁ, ଅତଏବ ଯୋଗସ୍ଥ ହୋଇ କର୍ମ କରିବା ଉଚିତ । ସିଦ୍ଧି ଓ ଅସିଦ୍ଧିରେ ସମବୁଦ୍ଧିହିଁ ଯୋଗ । ବୁଦ୍ଧି ସମତା ପ୍ରାପ୍ତ ହେଲେ କର୍ମର ପାପପୁଣ୍ୟ କର୍ତ୍ତାକୁ ସ୍ପର୍ଶକରେ ନାହିଁ । ଏଥିରୁ ସ୍ପଷ୍ଟ ବୁଝାଯାଇଅଛି ଯେ ଯେପରି ଭାବରେ କର୍ମକଲେ କର୍ତ୍ତାକୁ ପାପପୁଣ୍ୟ ସ୍ପର୍ଶ କରିବ ନାହିଁ; ସାମ୍ୟ ବୁଦ୍ଧିରେ ସେହି କୌଶଳ ଅବଲମ୍ବନ କରିବାହିଁ କର୍ମ ଯୋଗ ।

ବୈଦିକ ଯୁଗରୁ ଏ ଦେଶରେ ସନ୍ନ୍ୟାସ ବା ନିବୃତ୍ତିମାର୍ଗ ଏବଂ ଯୋଗ ବା ପ୍ରବୃତ୍ତି ମାର୍ଗ—ଏହି ଦୁଇ ମାର୍ଗ ପ୍ରଚଳିତ ଅଛି । ଯେଉଁମାନେ ନିବୃତ୍ତି ମାର୍ଗାବଲମ୍ବୀ ବା ଜ୍ଞାନବାଦୀ ସେମାନେ କହନ୍ତି, ପ୍ରଥମାବସ୍ଥାରେ ଚିତ୍ତଶୁଦ୍ଧି ନିମିତ୍ତ କର୍ମ କରିବା ଆବଶ୍ୟକ । ଚିତ୍ତଶୁଦ୍ଧି ହେବାପରେ ଆଉ କୌଣସି କର୍ମ କରଣୀୟ ନୁହେ । ଗୀତା କହେ ସମ୍ପୂର୍ଣ୍ଣ କର୍ମତ୍ୟାଗ ଜୀବ-ପକ୍ଷରେ କେବେହେଁ ସମ୍ଭବ ପର ନୁହେ । କର୍ମ ନ କରି ଜୀବ କ୍ଷଣକାଳ

ମଧ୍ୟ ଏ ସଂସାରରେ ରହିପାରିବ ନାହିଁ । ପ୍ରକୃତିର ଗୁଣମାନଙ୍କ ତାଡ଼ନାରେ ଅନିଚ୍ଛାରେ ମଧ୍ୟ ତାହାକୁ କର୍ମ କରିବାକୁ ହୁଏ । ( ଗୀ ୩-୫ )। ଗୀତା ମତରେ କର୍ମରେ ଆସକ୍ତି ଯେପରି ଦୋଷାବହ, ଅକର୍ମରେ ଆସକ୍ତି ମଧ୍ୟ ସେହିପରି ଦୋଷାବହ ।

'ମା କର୍ମ ଫଳହେତୁର୍ଭୂର୍ମାତେସଙ୍ଗୋଽସ୍ତ୍ୱକର୍ମଣି ( ଗୀ ୨-୪୭ )

ଫଳାକାଂକ୍ଷାରେ କର୍ମ କରନାହିଁ, କିନ୍ତୁ କର୍ମତ୍ୟାଗରେ ମଧ୍ୟ ଆସକ୍ତ ହୁଅ ନାହିଁ; ତେଣୁ ଗୀତାର ଉପଦେଶ 'ନିୟତଂ କୁରୁ କର୍ମତ୍ୱଂ କର୍ମ ଜ୍ୟାୟୋ ହ୍ୟକର୍ମଣଃ । ( ଗୀ ୩-୮ ) 'ଯେତେବେଳେ ଅକର୍ମ ଅପେକ୍ଷା କର୍ମ ଶ୍ରେଷ୍ଠ ସେତେବେଳେ ତୁମ୍ଭେ ନିୟତ କର୍ମ କର ।

ଜ୍ଞାନବାଦୀମାନେ କହନ୍ତି କର୍ମ ମାତ୍ରକେ ବନ୍ଧନର କାରଣ, ତେଣୁ କର୍ମ ତ୍ୟାଗ ନ କଲେ ଜୀବର ମୋକ୍ଷ ହୁଏ ନାହିଁ, 'କର୍ମଣା ବଧ୍ୟତେ ଜନ୍ତୁର୍ବିଦ୍ୟୟାଚ ପ୍ରମୁଚ୍ୟତେ' କର୍ମ ବନ୍ଧନର କାରଣ, ବିଦ୍ୟା ଅର୍ଥାତ୍ ଜ୍ଞାନହିଁ ମୁକ୍ତିର ହେତୁ । ଗୀତା କହେ, ଜୀବ ଯେବେ ଅହଂକାର ବୁଦ୍ଧିରେ ଫଳର ଅକାଂକ୍ଷା ରଖି କର୍ମ କରେ, ତେବେ କର୍ମ ବନ୍ଧନର କାରଣ ବା ମୁକ୍ତିର ବିରୋଧୀ ହୁଏ; କିନ୍ତୁ ଜୀବ ଯେବେ ଫଳକାମନା-ତ୍ୟାଗକରି କର୍ତ୍ତବ୍ୟ ବୁଦ୍ଧିରେ ଏବଂ ଅନାସକ୍ତ ଚିତ୍ତରେ କର୍ମକରେ ତେବେ କର୍ମ ତାକୁ ବନ୍ଧନ କରିପାରେ ନାହିଁ ।

ଅନାଶ୍ରିତଃ କର୍ମଫଳଂ କାର୍ଯ୍ୟଂ କର୍ମ କରୋତି ଯଃ
ସ ସନ୍ନ୍ୟାସୀ ଚ ଯୋଗୀ ଚ ନ ନିରଗ୍ନିର୍ନଚାକ୍ରିୟଃ । (ଗୀ ୬।୧)

"କର୍ମଫଳର ଆକାଙ୍‌କ୍ଷା ନ ରଖି କର୍ତ୍ତବ୍ୟ ପ୍ରେରଣାରେ ଯେ କର୍ମ କରେ, ତାହାକୁହିଁ ସନ୍ନ୍ୟାସୀ ଏବଂ ତାହାକୁହିଁ ଯୋଗୀ କୁହାଯାଏ । କର୍ମତ୍ୟାଗୀ, ନିରଗ୍ନି ଲୋକ ( ଅଗ୍ନି ଯଜ୍ଞ ବା କର୍ମର ତ୍ୟାଗୀ) ପ୍ରକୃତ ସନ୍ନ୍ୟାସୀ ନୁହନ୍ତି ।"

ଗୀତା ମତରେ ସନ୍ନ୍ୟାସର ଅର୍ଥ ଫଳସନ୍ନ୍ୟାସ, କର୍ମସନ୍ନ୍ୟାସ ନୁହେ ।

"ଯଂ ସନ୍ନ୍ୟାସ ମିତିପ୍ରାହୁ ର୍ଯୋଗଂ ତଂ ବିଦ୍ଧି ପାଣ୍ଡବ
ନହ୍ୟସନ୍ନ୍ୟସ୍ତ ସଙ୍କଳ୍ପୋ ଯୋଗୀ ଭବତି କଶ୍ଚନ ।" (ଗୀ ୬।୨)

"ହେ ପାଣ୍ଡବ, ଯାହାକୁ ସନ୍ନ୍ୟାସ କୁହାଯାଏ; ତାହାହିଁ ଯୋଗ, କାରଣ ସଂକଳ୍ପ ସନ୍ନ୍ୟାସ ନ କଲେ କେହି ଯୋଗୀ ହୋଇ ପାରନ୍ତି-ନାହିଁ ।"

କର୍ମ ବନ୍ଧନର କାରଣ, ଏହା ନିଃସନ୍ଦେହ; ଏଥିପାଇଁ ଏକା-ବେଳକେ କର୍ମ ତ୍ୟାଗ କଲେ, ସଂସାରରେ ଚଳିବା କିପରି ? ଜଳରେ ବା ବାୟୁରେ ଚକ୍ଷୁର ଅଗୋଚର ଶତ ଶତ କୃମି ଅଛନ୍ତି; ଏହା ବୋଲି ଜଳ ଓ ବାୟୁ ପରିତ୍ୟାଜ୍ୟ କି ? ଜଳକୁ ଅଗ୍ନିରେ ଫୁଟାଇ ନେଲେ କିମ୍ବା ବାୟୁକୁ କୌଶଳରେ ବିଶୁଦ୍ଧ କରିନେଲେ, ସେହି ସବୁ ବ୍ୟବହାରୋପଯୋଗୀ ହୁଏ । ସେହିପରି କର୍ମରୁ ଅସକ୍ତି ବା ଫଳାକାଙ୍କ୍ଷା ତ୍ୟାଗ କଲେ ତାହା ନିର୍ଦ୍ଦୋଷ ହୁଏ । ତେଣୁ ଭଗବାନଙ୍କର ଉପଦେଶ— 'ଯୋଗଃ କର୍ମସୁ କୌଶଳମ୍ ।'

କର୍ମାନୁଷ୍ଠାନ ଓ କର୍ମ ତ୍ୟାଗ ମଧ୍ୟରେ ଯେଉଁ ଶିର ବିବାଦ ଏ ଦେଶରେ ବହୁପୂର୍ବରୁ ଚଳୁଥିଲା, ଏହି ଭାବରେ ଭଗବାନ୍ ଗୀତାରେ ତାହାର ସମନ୍ୱୟ ବିଧାନ କରିଅଛନ୍ତି ।

କର୍ମଯୋଗ ଓ କର୍ମସନ୍ନ୍ୟାସ ଉଭୟ ଶ୍ରେୟଃସାଧକ—ସନ୍ଦେହ ନାହିଁ; କିନ୍ତୁ କର୍ମସନ୍ନ୍ୟାସଠାରୁ କର୍ମଯୋଗ ପ୍ରଶସ୍ତତରଃ—

ସଂନ୍ୟାସଃ କର୍ମଯୋଗଶ୍ଚ ନିଃଶ୍ରେୟସକରାବୁଭୌ
ତୟୋସ୍ତୁ କର୍ମସନ୍ନ୍ୟାସାତ୍ କର୍ମଯୋଗୋ ବିଶିଷ୍ୟତେ । (ଗୀ ୫।୨)

ଜ୍ଞାନଲାଭପରେ ଯେବେ ସଂସାରର ଉପକାର ପାଇଁ କର୍ମ କରାଯାଏ, ତେବେ ତାହା କେବେହେଁ କର୍ତ୍ତାକୁ ବନ୍ଧନ କରିପାରେ ନାହିଁ । ତାହା ନ କରି ଯେବେ ନିଜ ସ୍ୱାର୍ଥସିଦ୍ଧି ପାଇଁ କର୍ମତ୍ୟାଗ କରାଯାଏ; ଅର୍ଥାତ୍ ନିଜ ଆତ୍ମାର ମୁକ୍ତିକୁ ହିଁ ସାର କରାଯାଏ, ତେବେ ତାହା ଆଧ୍ୟାତ୍ମିକ ସ୍ୱାର୍ଥପରତା ହୁଏ ନାହିଁ କି ? ସାଧନାର ପଥ ଜଗତରେ ସମସ୍ତଙ୍କ ପାଇଁ ଉନ୍ମୁକ୍ତ, ଏପରି ଅବସ୍ଥାରେ ଅନେକେ ଯେବେ ଏହିପରି କର୍ମ ତ୍ୟାଗକରି ବସନ୍ତି; ତେବେ ଜଗତର ସ୍ଥିତି ରହିବଟି ? ଭଗବାନ୍ ନିଜେ ଶୁଦ୍ଧ, ବୁଦ୍ଧ ଓ ମୁକ୍ତ । ତାଙ୍କର ଅପ୍ରାପ୍ତ ବା ପ୍ରାପ୍ତବ୍ୟ କିଛି ନାହିଁ; ତଥାପି ସେ ଲୋକସଂଗ୍ରହ ପାଇଁ ଅବତାର ରୂପରେ ଜନ୍ମ ଗ୍ରହଣ କରନ୍ତି ଏବଂ ନିଜେ ଅନାସକ୍ତ ଭାବରେ କର୍ମକରି ଜଗଦ୍‌ବାସୀଙ୍କ ସମ୍ମୁଖରେ ନିଷ୍କାମ କର୍ମର ଆଦର୍ଶ ସ୍ଥାପନ କରନ୍ତିଃ—

ନମେ ପାର୍ଥାସ୍ତି କର୍ତ୍ତବ୍ୟଂ ତ୍ରିଷୁଲୋକେଷୁ କିଞ୍ଚନ
ନାନବାପ୍ତମବାପ୍ତବ୍ୟଂ ବର୍ତ୍ତଏବ ଚ କର୍ମଣି ।

ଯଦି ହ୍ୟହଂ ନ ବର୍ତ୍ତେୟଂ ଜାତୁ କର୍ମଣ୍ୟତନ୍ଦ୍ରିତଃ
ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ।
ଉତ୍ସୀଦେୟୁରିମେ ଲୋକା ନ କୁର୍ଯ୍ୟାଂ କର୍ମଚେଦହମ୍ ॥
( ଗୀ ୩।୨୨—୨୪ )

"ହେ ପାର୍ଥ, ତିନିଲୋକରେ ଆମ୍ଭର କୌଣସି କର୍ତ୍ତବ୍ୟ ନାହିଁ । ଆମ୍ଭେ ପାଇ ନାହୁଁ ଏବଂ ଯାହା ପାଇବା ପାଇଁ କର୍ମାନୁଷ୍ଠାନ କରିବାକୁ ହେବ—ଏପରି କୌଣସି ବସ୍ତୁ ସଂସାରରେ ନାହିଁ, ତଥାପି ଆମ୍ଭେ କର୍ମାନୁଷ୍ଠାନରେ ବ୍ୟାପୃତ ଅଛୁଁ, ଆମ୍ଭେ ଯେବେ ନିରଳସ ହୋଇ କର୍ମାନୁଷ୍ଠାନ ନ କରୁଁ, ତେବେ ମନୁଷ୍ୟମାନେ ସର୍ବଥା ଆମ୍ଭର ଅନୁସରଣ କରିବେ ଏବଂ ଫଳତଃ ସଂସାର ଉଚ୍ଛନ୍ନ ହୋଇଯିବ ।"

ସଂସାରରେ ପ୍ରତ୍ୟେକ ଜ୍ଞାନୀଙ୍କ ପକ୍ଷରେ ଏ ଆଦର୍ଶ ଗ୍ରହଣୀୟ ନୁହେ କି ?

ଏହି କର୍ମଯୋଗ ସାଧନର ଉପାୟ କଅଣ ? କର୍ମ ଯୋଗରେ ସିଦ୍ଧିଲାଭ କରିବାକୁ ହେଲେ; ୧—ଫଳାକାଙ୍କ୍ଷା ବର୍ଜନ । ୨—କର୍ତ୍ତୃତ୍ୱାଭିମାନ ପରିତ୍ୟାଗ ଓ ୩—ଈଶ୍ୱରଙ୍କଠାରେ ସମସ୍ତ କର୍ମ ସମର୍ପଣ—ଏହି ତିନି ସୋପାନ ଅତିକ୍ରମ କରିବାକୁ ହେବ; ସମଗ୍ର ଗୀତାଗ୍ରନ୍ଥରେ ମୁଖ୍ୟତଃ ଏହାହିଁ ଆଲୋଚିତ ହୋଇଅଛି ।

(କ) ଫଳାକାଙ୍କ୍ଷା ବର୍ଜନ—କର୍ମ କରିବାରେ ମନୁଷ୍ୟର ଅଧିକାର ମାତ୍ର, ଆମ ଦୃଷ୍ଟିର ଅନ୍ତରାଳରେ ଯେଉଁ ଅବ୍ୟକ୍ତ ଶକ୍ତି ନିରନ୍ତର କାର୍ଯ୍ୟ କରୁଅଛନ୍ତି, କର୍ମର ଫଳ ତାଙ୍କରି ହାତରେ । ମନୁଷ୍ୟର ବୁଦ୍ଧି ଓ ଜ୍ଞାନ ସୀମାବଦ୍ଧ, ତେଣୁ ଯେଉଁ ଫଳ ପାଇବା ଆଶାରେ ସେ କର୍ମରେ ଆସକ୍ତ ହୋଇ ପଡ଼େ, ପରିଣାମରେ ତାହାଦ୍ୱାରା ଭଲ ହେବ କି ମନ୍ଦ ହେବ ସେ ଜାଣିପାରେ ନାହିଁ । ମାତ୍ର ଯେ କର୍ମର ଫଳ ବିଧାତା, ସେ ତାହା ଜାଣନ୍ତି; ତେଣୁ ଫଳାକାଙ୍କ୍ଷା ସର୍ବଥା ତ୍ୟାଜ୍ୟ । ତେଣୁ ଗୀତା କହେ:—

କର୍ମଣ୍ୟେବାଧିକାରସ୍ତେ ମାଫଳେଷୁ କଦାଚନ । (ଗୀ ୨।୪୭)
"କର୍ମରେହିଁ ତୁମ୍ଭର ଅଧିକାର, ଫଳରେ ତୁମ୍ଭର ଅଧିକାର ନାହିଁ ।"
ତସ୍ମାଦସକ୍ତଃ ସତତଂ କାର୍ଯ୍ୟଂ କର୍ମ ସମାଚର । (ଗୀ ୩।୧୯)
"ଅତଏବ ଅନାସକ୍ତ ହୋଇ କର୍ତ୍ତବ୍ୟ ପ୍ରେରଣାରେ କର୍ମ କରଯାଅ ।"

ଯେତେବେଳେ ଫଳକାମନା ତ୍ୟାଗକରି କର୍ମଯୋଗୀ କର୍ମର ଅନୁଷ୍ଠାନ କରନ୍ତି, ସେତେବେଳେ ଲାଭ, କ୍ଷତି, ଜୟ, ପରାଜୟ ପ୍ରତି ତାଙ୍କର ଭ୍ରୂକ୍ଷେପ ନ ଥାଏ । ଏଥିପାଇଁ କର୍ମଯୋଗ ବ୍ୟାଖ୍ୟା ପୂର୍ବରୁ କୁହା ଯାଇଅଛି:—

ନେହାଭିକ୍ରମନାଶୋଽସ୍ତି ପ୍ରତ୍ୟବାୟୋ ନ ବିଦ୍ୟତେ ।
ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋ ଭୟାତ୍ । (ଗୀ ୨।୪୦)

"କର୍ମଯୋଗୀର ଆରବ୍ଧ କର୍ମ ନିଷ୍ଫଳ ହୁଏ ନାହିଁ, ତହିଁରେ ବିଘ୍ନ ମଧ୍ୟ ହୁଏ ନାହିଁ । ଏହି ଧର୍ମର ଅଳ୍ପ ଆଚରଣରେ ମଧ୍ୟ ମହାଭୟରୁ ରକ୍ଷା ମିଳେ ।" ଯେବେ ଜୀବନର ଶତ ଶତ କର୍ମ ମଧ୍ୟରୁ କୌଣସି ଗୋଟିଏ କର୍ମକୁ ନିଷ୍କାମ ଚିତ୍ତରେ ଅନୁଷ୍ଠାନ କରାଯାଏ, ତେବେ ଉପର୍ଯ୍ୟୁକ୍ତ ମତ କିପରି ଅଭ୍ରାନ୍ତ ତାହା ସହଜରେ ଜଣାଯାଏ । କେହି କେହି କହନ୍ତି, ଫଳାକାଙ୍କ୍ଷା ନ ଥିଲେ କର୍ମରେ ଆଦୌ ପ୍ରବୃତ୍ତି ରହିବ ନାହିଁ; ଏହା ଏକପ୍ରକାର ଉଦ୍ଦେଶ୍ୟବିହୀନ କର୍ମ । 'ପ୍ରୟୋଜନମନୁଦ୍ଦିଶ୍ୟ ନ ମନ୍ଦୋଽପି ପ୍ରବର୍ତ୍ତତେ' ଅର୍ଥାତ୍ ପ୍ରୟୋଜନ ବା ଉଦ୍ଦେଶ୍ୟ ନ ଥିଲେ, ମୂଢ଼ଲୋକ ମଧ୍ୟ କର୍ମ କରିବାରେ ପ୍ରବୃତ୍ତ ହେବ ନାହିଁ, ଇତ୍ୟାଦି । ମାତ୍ର ନିଷ୍କାମ କର୍ମ କେବେ ହେଲେ ଉଦ୍ଦେଶ୍ୟଶୂନ୍ୟ ନୁହେ । ନିଷ୍କାମ କର୍ମ ଓ ଉଦ୍ଦେଶ୍ୟବିହୀନ କର୍ମ—ଏକ ନୁହେ । ଜନନୀ ଶିଶୁକୁ ସ୍ତନ୍ୟ ଦାନକରି ଯେଉଁ ଆନନ୍ଦ ଅନୁଭବ କରେ; ଦାତା କ୍ଷୁଧାର୍ତ୍ତକୁ ଅନ୍ନଦାନ ଦେଇ ଯେଉଁ ଆନନ୍ଦ ଅନୁଭବ କରେ—ନିଷ୍କାମ କର୍ମ ଜନିତ ଆନନ୍ଦ ସେହିପରି ବା ତତୋଽଧିକ । ଥରେ ମାତ୍ର ଆସ୍ୱାଦନ କଲେ ଲୋକ କେବେହେଁ ଏହି ହୃଦ୍ୟ ଅମୃତ ରସ ପାନରେ ବିମୁଖ ହେବ ନାହିଁ ।

କର୍ମର ଏହି ଫଳାକାଂକ୍ଷା ବର୍ଜ୍ଜନ କର୍ମଯୋଗ ସିଦ୍ଧିର ପ୍ରଥମ ସୋପାନ ।

(ଖ) କର୍ତ୍ତୃତ୍ୱାଭିମାନ ବର୍ଜନ—ଶରୀର ତତ୍ତ୍ୱ ବିଶ୍ଳେଷଣରେ ମହର୍ଷି କପିଳହିଁ ଜଗତର ଗୁରୁ । ଗୀତା ସେହି ବିଶ୍ଳେଷଣ ପ୍ରଣାଳୀକୁ ସମ୍ପୂର୍ଣ୍ଣରୂପେ ଗ୍ରହଣ କରିଅଛି । ପ୍ରକୃତିହିଁ ସମସ୍ତ କର୍ମ କରେ, ପୁରୁଷ ନିର୍ଲିପ୍ତ, ଅକର୍ତ୍ତା, ସାକ୍ଷିମାତ୍ର । 'ମୁଁ ଏହା କଲି' ଏଠାରେ 'ମୁଁ' ଆତ୍ମା ଅର୍ଥରେହିଁ ପ୍ରଯୁକ୍ତ ହୁଏ । 'ମୁଁ' ସଂସ୍କୃତରେ 'ଅହମ୍' । ଏହି 'ମୁଁ' ଭାବ ବା ଅହଂ ଭାବ ଦ୍ୱାରା ସମସ୍ତେ ପରିଚାଳିତ ହେଉଅଛନ୍ତି, ମାତ୍ର ଯେଉଁମାନଙ୍କର ଆତ୍ମଜ୍ଞାନ ଜାତହୋଇଅଛି, ସେମାନେ ଜାଣିପାରନ୍ତି—ପ୍ରକୃତି

ସମସ୍ତ କର୍ମର କର୍ତ୍ତ୍ରୀ, ଆତ୍ମା କିଛି କରନ୍ତି ନାହିଁ । ଏହି ଅହଂଭାବ ବା ଅହଂକାର ହିଁ ଆସକ୍ତିର କାରଣ, ଏହି କାରଣରୁ କର୍ମ ଆତ୍ମାର ବନ୍ଧନରେ ପରିଣତ ହୁଏ ଏବଂ ତାହାର ଫଳ ଜୀବକୁ ଭୋଗ କରିବାକୁ ପଡ଼େ । ଯେ ବୁଝି ପାରନ୍ତି ସତ୍ତ୍ୱ, ରଜ, ତମଃ—ଏହି ଗୁଣ ତ୍ରୟର ପ୍ରେରଣାରେ ସମସ୍ତ କାର୍ଯ୍ୟ ହୋଇ ଥାଏ, ଆତ୍ମା କିଛି କରନ୍ତି ନାହିଁ—ସେହି ଏକା ନିଷ୍କାମ କର୍ମୀ ।

ପ୍ରକୃତେଃ କ୍ରିୟମାଣାନି ଗୁଣୈଃ କର୍ମାଣି ସର୍ବଶଃ,
ଅହଂକାର ବିମୂଢ଼ାତ୍ମା କର୍ତ୍ତାହମିତି ମନ୍ୟତେ । ( ଗୀ ୩ । ୨୭ )

'ପ୍ରକୃତିର ଗୁଣ ଦ୍ୱାରା ସମସ୍ତ କାର୍ଯ୍ୟ ହୁଏ, କିନ୍ତୁ ଯେ ଅହଂକାର ଦ୍ୱାରା ବିମୂଢ଼ ସେ ଏକା ଭାବେ ଯେ, ମୁଁ କର୍ତ୍ତା ।'

ତତ୍ରୈବଂ ସତି କର୍ତ୍ତାରମାତ୍ମାନଂ କେବଳଂ ତୁ ଯଃ
ପଶ୍ୟତ୍ୟକୃତବୁଦ୍ଧିତ୍ୱାନ୍ନ ସ ପଶ୍ୟତି ଦୁର୍ମତିଃ । ( ଗୀ ୧୮ । ୧୬ )

"ଏପରି ଅବସ୍ଥାରେ ଯେ ଅଜ୍ଞତା ହେତୁରୁ କେବଳ ଆତ୍ମାକୁ କର୍ତ୍ତା ବୋଲି ମନେକରେ ସେ ଦୁର୍ବୁଦ୍ଧି କିଛି ଜାଣି ପାରେ ନାହିଁ ।"

ତେଣୁ ଏହି ଅଯଥା କର୍ତ୍ତୃତ୍ୱାଭିମାନ ତ୍ୟାଗକରି ପ୍ରକୃତିକୁ ଯଥାର୍ଥ କର୍ତ୍ତ୍ରୀ ଏବଂ ଆତ୍ମାକୁ ଅକର୍ତ୍ତା ବୋଲି ମନେ କରିବାକୁ ହେବ । ଏହାହିଁ ସାଂଖ୍ୟୋକ୍ତ ଜ୍ଞାନ, ଏହି ଜ୍ଞାନ ଜାତ ହେଲେ କର୍ମର ସମସ୍ତ ଫଳ ଧ୍ୱଂସପ୍ରାପ୍ତ ହୋଇ ଯାଏ ଏବଂ ଜ୍ଞାନୀ ଇନ୍ଦ୍ରିୟ ସାହାଯ୍ୟରେ ବିଷୟ ଭୋଗ କଲେହେଁ ତାଙ୍କର ଶାନ୍ତିରେ ବ୍ୟାଘାତ ହୁଏ ନାହିଁ ।

(ଗ) କୃତକର୍ମର ଈଶ୍ୱରାର୍ପଣ :—ପୂର୍ବ ପ୍ରକରଣରେ କୁହାଯାଇଅଛି ଯେ, ମନୁଷ୍ୟ ଦୃଷ୍ଟିର ଅନ୍ତରାଳରେ କୌଣସି ଏକ ଅଜ୍ଞାତ ଶକ୍ତିର ପ୍ରେରଣାରେ ବିଶ୍ୱସୃଷ୍ଟିର ସମସ୍ତ ବ୍ୟାପାର ନିର୍ବାହିତ ହେଉଅଛି । ଏହାହିଁ ଅଧ୍ୟାତ୍ମ ଶକ୍ତି । ଏହାକୁ ଅନ୍ୟ ଭାବରେ ଈଶ୍ୱରେଚ୍ଛା ବୋଲି କୁହାଯାଏ । ଯେଉଁ ଲୋକ ତୁମ୍ଭର ପରମ ହିତାକାଂକ୍ଷୀ, ଘଟନା ଚକ୍ରରେ ସେ ତୁମ୍ଭର ପରମ ଶତ୍ରୁ ରୂପେ ଦଣ୍ଡାୟମାନ ହୁଏ—ଏପରି ଘଟନା ଜଗତରେ ଅଳ୍ପ ଘଟେ ନାହିଁ । ଏହିସବୁ ଲକ୍ଷ୍ୟକରି ମହାକବି କାଳିଦାସ କହିଅଛନ୍ତି :—

"ବିଷମପ୍ୟମୃତଂ ଭବେତ୍ କ୍ୱଚିତ୍,
ଅମୃତଂ ବା ବିଷମୀଶ୍ୱରେଚ୍ଛୟା ।"

ଈଶ୍ୱରଙ୍କ ଇଚ୍ଛାରେ କେତେବେଳେ ବିଷ ଅମୃତରେ ପରିଣତ ହୋଇଯାଏ, କେତେବେଳେ ବା ଅମୃତ ବିଷ ହୋଇ ଯାଏ ।

ସଂସାରର ଏହି ପରିସ୍ଥିତି ଅଲୋଚନା କରି ଜ୍ଞାନୀ ଜାଣି-ପାରନ୍ତି, ଲୋକ ଯେଉଁ ସବୁ କର୍ମକରେ, ସେହି ଅଜ୍ଞେୟ ଶକ୍ତିର ପ୍ରେରଣାରେହିଁ କରିଥାଏ । ତେଣୁ ସର୍ବକର୍ମର ଫଳ ସେହି ପ୍ରେରକଙ୍କଠାରେ ସମର୍ପଣ କରିବା ଶ୍ରେୟସ୍କର । ଈଶ୍ୱରହିଁ କର୍ମର ପ୍ରେରକ, ତେଣୁ ଗୀତା କହେ କର୍ମର ଫଳ ସର୍ବତୋଭାବରେ ଈଶ୍ୱରଙ୍କଠାରେ ସମର୍ପଣ କରିବାକୁ ହେବ ।

ମୟି ସର୍ବାଣି କର୍ମାଣି ସଂନ୍ୟସ୍ୟାଧ୍ୟାତ୍ମଚେତସା,
ନିରାଶୀର୍ନିର୍ମମୋ ଭୂତ୍ୱା ଯୁଧ୍ୟସ୍ୱ ବିଗତଜ୍ୱରଃ । ( ଗୀ ୩ । ୪୦ )

"ଈଶ୍ୱରହିଁ ପ୍ରେରକ, ମୁଁ ତାଙ୍କର ଭୃତ୍ୟ ଭାବରେ ଏ ସବୁ କରୁଅଛି, ଏହିଭଳି ବିବେକ ବୁଦ୍ଧି ସହକାରେ ସମସ୍ତ କର୍ମ ଆମ୍ଭଠାରେ ସମର୍ପଣକରି କାମନା ଓ ମମତାଶୂନ୍ୟ ହୋଇ ଶୋକ ପରିତ୍ୟାଗ ପୂର୍ବକ ଯୁଦ୍ଧକର ।"

ଯେ ଏଭାବରେ କର୍ମ କରନ୍ତି ସ୍ୱାର୍ଥସିଦ୍ଧି ବା ଆତ୍ମପ୍ରୀତି ତାଙ୍କର ଲକ୍ଷ୍ୟ ହୋଇ ପାରେ ନାହିଁ, ଈଶ୍ୱରଙ୍କ କାର୍ଯ୍ୟସାଧନ ତାଙ୍କର ଉଦ୍ଦେଶ୍ୟ । ସେ ନିଜଙ୍କୁ ଈଶ୍ୱରଙ୍କ କରଣ ବୋଲି ମନେ କରନ୍ତି ।

ବ୍ରହ୍ମଣ୍ୟାଧାୟ କର୍ମାଣି ସଙ୍ଗଂତ୍ୟକ୍ତ୍ୱା କରୋତି ଯଃ,
ଲିପ୍ୟତେ ନ ସ ପାପେନ ପଦ୍ମପତ୍ର ମିବାମ୍ଭସା ( ଗୀ ୫ । ୧୦ )

ଈଶ୍ୱରଙ୍କଠାରେ କର୍ମ ଅର୍ପଣ କରି ଅନାସକ୍ତ ଚିତ୍ତରେ ଯେ କର୍ମ କରି ପାରନ୍ତି, ପଦ୍ମ ପତ୍ରରେ ଯେପରି ଜଳ ଲାଗେନାହିଁ ସେହିପରି ସେ ପାପରେ ଲିପ୍ତ ହୁଅନ୍ତି ନାହିଁ ।

## ବିଭିନ୍ନ ଧର୍ମମତ ଉପରେ ଗୀତାର ପ୍ରଭାବ ।

ଅଜିକି ପ୍ରାୟ ତିନିହଜାର ବର୍ଷ ତଳେ ମହାଭାରତ ରଚିତ ହୋଇଥିଲା । ଶ୍ରୀମଦ୍ ଭଗବଦ୍ ଗୀତା ତାହାର ଏକ ଅଂଶ । ଗୀତା ରଚନା ପୂର୍ବେ ଏ ଦେଶରେ ଧର୍ମସମ୍ବନ୍ଧରେ ଯେଉଁ ସବୁ ମତ ପ୍ରଚଳିତ ହୋଇଥିଲା ଗୀତାରେ ସେ ସମସ୍ତ ଅଲୋଚିତ ହୋଇ ଗୀତୋକ୍ତ ଧର୍ମମତ ସଙ୍ଗେ ସେ ଗୁଡ଼ିକର ସମନ୍ୱୟ ବିଧାନ କରାଯାଇଅଛି । ପରବର୍ତ୍ତୀ କାଳରେ ଭାରତରେ ତଥା ଭାରତ ବାହାରେ ପୃଥିବୀର ଅନ୍ୟାନ୍ୟ ଦେଶରେ

ଯେଉଁସବୁ ଧର୍ମ ପ୍ରଚଳିତ ହୋଇଥିଲା ସେ ସମସ୍ତ ଉପରେ ଗୀତାର ପ୍ରଭାବ କିପରି ପଡ଼ିଅଛି ତାହା ସଂକ୍ଷେପରେ ବର୍ତ୍ତମାନ ଆଲୋଚନା କରାଯିବ । ଏଠାରେ ଏତିକି ମାତ୍ର ମନେ ରଖିବାକୁ ହେବ ଯେ, ଗୀତାପ୍ରବର୍ତ୍ତିତ ଧର୍ମ ମତ, ତତ୍ପୂର୍ବବର୍ତ୍ତୀ ବେଦାନ୍ତ ବା ଉପନିଷଦୁକ୍ତ ଜ୍ଞାନବାଦର ନିର୍ଯ୍ୟାସ ଏବଂ ନବ ପ୍ରବର୍ତ୍ତିତ ନିଷ୍କାମ କର୍ମବାଦ ଓ ଭକ୍ତିବାଦର ଉତ୍ସ ।

ମହାଭାରତ ରଚନା ପରେ ବହୁ ଶତାବ୍ଦୀ ଯାଏ ବୈଦିକ କର୍ମକାଣ୍ଡର ପ୍ରଭାବ ଏ ଦେଶରେ ଅପ୍ରତିହତ ଥିଲା ଏବଂ ଦେଶର ଲୋକସାଧାରଣ ସମ୍ପୂର୍ଣ୍ଣ ରୂପେ ଶ୍ରଦ୍ଧା ଓ ବିଶ୍ୱାସ ସହକାରେ ଯାଗ ଯଜ୍ଞାଦି ସକାମ କ୍ରିୟା କଳାପର ଅନୁଷ୍ଠାନ କରୁଥିଲେ । ତତ୍କାଳୀନ ସମାଜର ଯେଉଁ ଚିନ୍ତାଶୀଳ ଲୋକେ ସେ ତନ୍ତ୍ରର ଦୋଷ ପ୍ରଦର୍ଶନ କରି ଧର୍ମ ବିପ୍ଳବ ଆରମ୍ଭ କରିଥିଲେ, ସେମାନଙ୍କ ମଧ୍ୟରେ ମହାତ୍ମା ବୁଦ୍ଧଦେବ ଅଗ୍ରଗଣ୍ୟ । ବୁଦ୍ଧଙ୍କ ପ୍ରବର୍ତ୍ତିତ ନବ ଧର୍ମର ନାମ ବୌଦ୍ଧଧର୍ମ । ଏହି ବୌଦ୍ଧଧର୍ମର ଜ୍ୟୋତି ପୂର୍ବେ ବୈଦିକ ଧର୍ମର ଜ୍ୟୋତିକୁ ଏ ଦେଶରେ ସଂପୂର୍ଣ୍ଣରୂପେ ମ୍ଳାନ କରି ଦେଇଥିଲା । ବର୍ତ୍ତମାନ ଯୁଗରେ ଅବଶ୍ୟ ବୌଦ୍ଧଧର୍ମ ଏ ଦେଶରେ ଅନାଦୃତ; ମାତ୍ର ବୌଦ୍ଧମତ ଭାରତ ବାହାରେ ଅଦ୍ୟାପି କୋଟି କୋଟି ଲୋକଙ୍କର ଧର୍ମ ଜୀବନର ଆଶ୍ରୟ । ଭାରତବର୍ଷହିଁ ବୌଦ୍ଧଧର୍ମର ଉତ୍ପତ୍ତି ସ୍ଥଳ । ତା ପୂର୍ବେ ଏ ଦେଶରେ ପ୍ରଚଳିତ ଥିବା ବେଦାନ୍ତ ମତ ଓ ଗୀତା ମତ ଦ୍ୱାରା ତାହା କିପରି ପ୍ରଭାବିତ ହୋଇଥିଲା ତାହା ବର୍ତ୍ତମାନ ଦେଖିବା ।

ବୁଦ୍ଧଦେବଙ୍କ ଜୀବନ ବୃତ୍ତାନ୍ତ ଆଲୋଚନା କଲେ ଜଣାଯାଏ ଯେ, ଧର୍ମର ପ୍ରକୃତ ସ୍ୱରୂପ ଜାଣିବା ପାଇଁ ଅନ୍ୟାନ୍ୟ ଋଷିମାନଙ୍କ ପରି ସେ ପ୍ରଥମେ ଛଅବର୍ଷକାଳ କଠୋର ତପସ୍ୟା କରିଥିଲେ । ତପସ୍ୟା ଶେଷରେ ସେ ଯେଉଁ ମତ ପ୍ରଚାର କଲେ ତାହା ସମ୍ପୂର୍ଣ୍ଣ ନୂତନ ଧର୍ମ ମତ ନୁହେଁ— ପୂର୍ବରୁ ଚଳୁଥିବା ବୈଦିକ ଧର୍ମ ମତର ସଂସ୍କାର ମାତ୍ର । ସଂସ୍କାର ସାଧନର ନିୟମ ଅନୁସାରେ ସଂସ୍କୃତ ଧର୍ମରେ ପୂର୍ବ ପ୍ରଚଳିତ ଧର୍ମର କେତେକ ବିଷୟ ଅକ୍ଷୁଣ୍ଣ ରହେ ଏବଂ କେତେକ ବିଷୟ ପରିବର୍ତ୍ତିତ ହୁଏ । ତଦନୁଯାୟୀ ବୌଦ୍ଧଧର୍ମରେ ବ୍ରାହ୍ମଣ୍ୟ ଧର୍ମର କେତେକ ତତ୍ତ୍ୱ ଅବିକୃତ ରହିଲା ଏବଂ କେତେକ ପରିବର୍ତ୍ତିତ ହେଲା । ଉପନିଷଦ୍‌ମାନଙ୍କରେ ଏବଂ ତଦନୁବର୍ତ୍ତୀ ଗୀତା ଗ୍ରନ୍ଥରେ ଦ୍ରବ୍ୟମୟ ଯାଗ ଯଜ୍ଞାଦିର ଯେପରି ଲଘୁତା ବର୍ଣ୍ଣିତ ହୋଇଅଛି, ବୁଦ୍ଧ ସେହିପରି ତାଙ୍କ ଉପଦେଶରେ ସେ ସବୁର ଅନାବଶ୍ୟକତା ବର୍ଣ୍ଣନାକରି କହି ଅଛନ୍ତି ଯେ, ଯାଗ ଯଜ୍ଞାଦି କର୍ମ

ହିଂସାତ୍ମକ; ତେଣୁ ସର୍ବଥା ପରିତ୍ୟାଜ୍ୟ ଓ ନିଷିଦ୍ଧ । କର୍ମମୟ ଜଗତରେ ସେ ସମସ୍ତର ବ୍ୟବହାର ତୃଷ୍ଣା ମୂଳକ ସୁତରାଂ ଦୁଃଖମୟ, ଏହି ତୃଷ୍ଣାକୁ ତ୍ୟାଗ କଲେ ଦୁଃଖରୁ ମୁକ୍ତି ମିଳେ । ବୁଦ୍ଧଙ୍କର ଏ ସିଦ୍ଧାନ୍ତ ଯେ ପ୍ରାଚୀନ ଉପନିଷଦ୍ ଓ ଗୀତାର ନିଷ୍କାମ କର୍ମର ସିଦ୍ଧାନ୍ତ ସଙ୍ଗେ ସମାନ, ଏହା ଆଉ କହିବାକୁ ହେବ ନାହିଁ । ଦୃଶ୍ୟ ଜଗତ୍ ନଶ୍ୱର, କର୍ମ ବିପାକ ନିବନ୍ଧନ ଏହାର ବ୍ୟବହାର ଚାଲୁଅଛି—ଇତ୍ୟାଦି ବୈଦିକ ମତ ବୁଦ୍ଧ ଗ୍ରହଣ କରିଥିଲେହେଁ, ନାମରୂପାତ୍ମକ ନଶ୍ୱର ଜଗତର ମୂଳରେ ନାମ ରୂପରୁ ଅତିରିକ୍ତ ସର୍ବବ୍ୟାପୀ ନିତ୍ୟ ପରମାତ୍ମା ବିଦ୍ୟମାନ ଅଛନ୍ତି—ଉପନିଷଦ୍ ଓ ଗୀତାର ଏହି ସିଦ୍ଧାନ୍ତକୁ ବୁଦ୍ଧ ଗ୍ରହଣ କରିନାହାନ୍ତି, ଏହାହିଁ ଉଭୟ ଧର୍ମ ମଧ୍ୟରେ ଗୁରୁତର ପ୍ରଭେଦ । ଆଚାର୍ଯ୍ୟ ଶଙ୍କର ଏହି ବୌଦ୍ଧ ମତକୁ ଖଣ୍ଡନ କରି ଯୁକ୍ତିଦ୍ୱାରା ପ୍ରମାଣିତ କଲେ ଯେ, ଅନିତ୍ୟ ସୃଷ୍ଟିର ବାହାରେ ନିତ୍ୟ ଓ ଶାନ୍ତିର ଆଧାର ପରମାତ୍ମା ବିଦ୍ୟମାନ ଅଛନ୍ତି ।

ତେବେ ବୁଦ୍ଧଙ୍କ ଧର୍ମ ମତର ପ୍ରତିଷ୍ଠା କାହା ଉପରେ ? ବୁଦ୍ଧଙ୍କ ପ୍ରଚାରିତ ସତ୍ୟ ଚାରିଗୋଟି—(୧) କର୍ମବିପାକ ନିବନ୍ଧନ ନାମରୂପାତ୍ମକ ଦେହକୁ (ଆତ୍ମାକୁ ନୁହେ) ନଶ୍ୱର ଜଗତ୍ ପ୍ରପଞ୍ଚ ମଧ୍ୟରେ ପୁନଃ ପୁନଃ ଜନ୍ମ ଗ୍ରହଣ କରିବାକୁ ହୁଏ । (୨) ପୁନର୍ଜନ୍ମର ଏହି ଚକ୍ର ଦୁଃଖମୟ । (୩) ତୃଷ୍ଣା ବା କାମନା ଜଗତର ସମସ୍ତ ଦୁଃଖର ମୂଳ । ନାମରୂପାତ୍ମକ ଦେହର ଧ୍ୱଂସ ପରେ ଅବଶିଷ୍ଟ ଏହି ବାସନାତ୍ମକ କାର୍ଯ୍ୟରୁ ନାମରୂପାତ୍ମକ ଅନ୍ୟ ଦେହର ପୁନଃ ପୁନଃ ଉତ୍ପତ୍ତି ହୁଏ । (୪) ଇନ୍ଦ୍ରିୟନିଗ୍ରହ, ଧ୍ୟାନ ଓ ବୈରାଗ୍ୟ ଦ୍ୱାରା ତୃଷ୍ଣାର ସମ୍ପୂର୍ଣ୍ଣ କ୍ଷୟ କରି ସନ୍ନ୍ୟାସୀ ବା ଭିକ୍ଷୁ ହେବାଦ୍ୱାରା ଚିରନ୍ତନ ଶାନ୍ତି ଓ ନିତ୍ୟ ସୁଖ ଲାଭ କରାଯାଏ । ଏଥିରୁ ଜଣାଯାଏ, ଉପନିଷଦ୍‌ରେ ଉକ୍ତ ହୋଇଥିବା ମୋକ୍ଷ ଲାଭର ଉପାୟ ଓ ବୁଦ୍ଧଙ୍କ ନିର୍ବାଣ ପ୍ରାପ୍ତିର ଉପାୟ—ଏ ଦୁହିଁଙ୍କ ମଧ୍ୟରେ ବିଶେଷ କୌଣସି ପ୍ରଭେଦ ନାହିଁ । ବାସନା କ୍ଷୟକରି ମନକୁ ନିଷ୍କାମ କରିବା ଉଭୟର ସାଧନ ରୂପେ ବ୍ୟବସ୍ଥିତ ହୋଇଅଛି । ତେବେ ପ୍ରଭେଦ ଏତିକି, ଉପନିଷଦୁକ୍ତ ମାର୍ଗରେ ମନର ଏହି ନିଷ୍କାମ ଅବସ୍ଥା 'ଆତ୍ମନିଷ୍ଠା' ବା 'ବ୍ରହ୍ମନିର୍ବାଣ' ନାମରେ ଅଭିହିତ ହୁଏ । ପରମାତ୍ମାଙ୍କଠାରେ ଆତ୍ମାର ଲୟ ଏହି ଅବସ୍ଥାର ଲକ୍ଷ୍ୟ, ମାତ୍ର ବୁଦ୍ଧ ଅନାତ୍ମବାଦୀ ଥିବାରୁ ସେ ଅବସ୍ଥାକୁ କେବଳ 'ନିର୍ବାଣ' ବା ପ୍ରଦୀପ ଲିଭିବା ପରି ବାସନାର ଧ୍ୱଂସ— ଏହିପରି ନାମ ଦେଇ ଅଛନ୍ତି । ଏହାର ସାରକଥା ଏହି ଯେ ବୁଦ୍ଧ ଓ

ଆତ୍ମାର ଅସ୍ତିତ୍ୱ ବୁଦ୍ଧ ସ୍ୱୀକାର ନ କଲେହେଁ ମନକୁ ଶାନ୍ତ, ବିରକ୍ତ ଓ ନିଷ୍କାମ କରିବା ପ୍ରଭୃତି ମୋକ୍ଷ ଲାଭର ଯେଉଁ ସମସ୍ତ ସାଧନ ଉପନିଷଦ୍‌ରେ ବର୍ଣ୍ଣିତ ହୋଇଅଛି; ତାଙ୍କ ମତରେ ସେହି ସମସ୍ତ ସାଧନହିଁ ନିର୍ବାଣ ଲାଭ ପକ୍ଷରେ ଆବଶ୍ୟକ । ଏହି ହେତୁରୁ ବୌଦ୍ଧ ଯତି ଏବଂ ବୈଦିକ ସନ୍ନ୍ୟାସୀଙ୍କର ବର୍ଣ୍ଣନା ମାନସିକ ଅବସ୍ଥା ଦୃଷ୍ଟିରେ ଏକ; ବୈଦିକ ଧର୍ମ ବୁଦ୍ଧଙ୍କ ପୂର୍ବବର୍ତ୍ତୀ ହୋଇଥିବାରୁ ବୁଦ୍ଧ ଯେ ସେ ସମସ୍ତ ବୈଦିକ ଧର୍ମରୁ ଗ୍ରହଣ କରି ଅଛନ୍ତି—ଏହା ନିଃସନ୍ଦେହ ।

ଉପନିଷଦ୍‌ମାନଙ୍କ ପରି ବୌଦ୍ଧ ଧର୍ମଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ହୋଇଅଛି ଯେ ଗୃହସ୍ଥାଶ୍ରମୀ ମାନଙ୍କର ମୋକ୍ଷରେ ଅଧିକାର ନାହିଁ । ବୈଦିକ ଗାର୍ହସ୍ଥ୍ୟ ଧର୍ମ ମଧ୍ୟରୁ ହିଂସାତ୍ମକ ଯଜ୍ଞାଦି କର୍ମ ଓ ଚାତୁର୍ବର୍ଣ୍ଣ୍ୟ ବିଧି ବୁଦ୍ଧଦେବ ସ୍ୱୀକାର କରୁ ନ ଥିଲେ । ଏ ସବୁ ଛାଡ଼ି ବୈଦିକ ଧର୍ମର ପଞ୍ଚ ମହାଯଜ୍ଞ ଓ ନୈତିକ ଆଚରଣ ପ୍ରତ୍ୟେକ ଗୃହସ୍ଥର କର୍ତ୍ତବ୍ୟ ବୋଲି ବୁଦ୍ଧ ଉପଦେଶ ଦେଇଅଛନ୍ତି । ଏହି ଆଚରଣ ବୌଦ୍ଧଧର୍ମ ଗ୍ରନ୍ଥମାନଙ୍କରେ 'ଶୀଳ' ନାମରେ ଅଭିହିତ ହୁଏ ଏବଂ ବୌଦ୍ଧଧର୍ମାବଲମ୍ବୀ ଗୃହସ୍ଥମାନେ 'ଉପାସକ' ନାମରେ ଅଭିହିତ ହୁଅନ୍ତି । ବୁଦ୍ଧ ସ୍ପଷ୍ଟ କହିଅଛନ୍ତି ଯେ ଅହିଂସା, ସତ୍ୟ, ଅସ୍ତେୟ, ସର୍ବଭୂତଙ୍କ ପ୍ରତି ଦୟା, ଶୌଚ, ପବିତ୍ରତା ପ୍ରଭୃତି ଶୀଳ ବା ନୀତିଧର୍ମ ପ୍ରତ୍ୟେକ ଉପାସକର କର୍ତ୍ତବ୍ୟ । ଏ ଗୁଡ଼ିକ ଯେ ବୈଦିକ ସ୍ମୃତି ଗ୍ରନ୍ଥମାନଙ୍କରୁ ଗୃହୀତ ହୋଇଅଛି—ଏଥିରେ ସନ୍ଦେହ ନାହିଁ । ଜୈନଧର୍ମପ୍ରଚାରକ ମହାବୀରଙ୍କର ଉପଦେଶ ମଧ୍ୟ ଏହିପରି, ମାତ୍ର ସେ ବୁଦ୍ଧଙ୍କ ପରି ଅନାତ୍ମବାଦୀ ନ ଥିଲେ ।

ବୁଦ୍ଧ ସ୍ୱୟଂ ଯେଉଁ ଧର୍ମ ପ୍ରଚାର କରିଥିଲେ ତାହା ନିରୀଶ୍ୱର ଓ ନିବୃତ୍ତିମୂଳକ । କିନ୍ତୁ ତାଙ୍କର ମୃତ୍ୟୁପରେ ଭିକ୍ଷୁମାନଙ୍କ ମଧ୍ୟରେ ମତଭେଦ ହେଲା । ନିର୍ବାଣଆଶାରେ ସମସ୍ତ କର୍ମ ତ୍ୟାଗ କରି ଅରଣ୍ୟ ମଧ୍ୟରେ ପଡ଼ି ରହିବା ସମ୍ବନ୍ଧରେ ଅର୍ହତ ବା ବୌଦ୍ଧ ଭିକ୍ଷୁମାନେ ଏକମତ ହୋଇ ପାରିଲେ ନାହିଁ । ଫଳତଃ ନାନା ଉପପନ୍ଥାର ସୃଷ୍ଟି ହେଲା ଏବଂ ତତ୍ତ୍ୱଜ୍ଞାନ ବିଷୟରେ ମତଭେଦ ଉତ୍ପନ୍ନ ହେଲା । କ୍ରମେ ବୌଦ୍ଧ ଭିକ୍ଷୁମାନେ କର୍ମଶୂନ୍ୟ ଜୀବନ ଯାପନ ତ୍ୟାଗକରି ପରହିତକୁ ସନ୍ନ୍ୟାସାଶ୍ରମର ମୁଖ୍ୟ ବ୍ରତ ରୂପେ ଗ୍ରହଣ କଲେ । ଏହିମାର୍ଗ 'ମହାଯାନ' ନାମରେ ଅଭିହିତ ହେଲା । ବୁଦ୍ଧଙ୍କ ଜୀବଦ୍ଦଶାରେ ଯେଉଁ ନିବୃତ୍ତିମୂଳକ ମାର୍ଗ ପ୍ରଚଳିତ ଥିଲା ତାହା 'ହୀନଯାନ' ( ନିକୃଷ୍ଟ ମାର୍ଗ ) ନାମ ଧାରଣ

କଲା । ଏହି ମହାଯାନ ପନ୍ଥାର ଭିକ୍ଷୁମାନଙ୍କ ଯତ୍ନରେ ବୌଦ୍ଧଧର୍ମ ଚୀନ, ଜାପାନ, ତୁର୍କିସ୍ଥାନ ଓ ପୂର୍ବଇଉରୋପ ପର୍ଯ୍ୟନ୍ତ ବିସ୍ତୃତି ଲାଭ କରିଥିଲା । ଅଶୋକ ଏହି ମହାଯାନପନ୍ଥାବଲମ୍ବୀ ଥିଲେ । ଏ ଯୁଗର ମନୀଷୀମାନେ ନାନାଭାବରେ ପ୍ରମାଣ କରିଅଛନ୍ତି ଯେ ନିବୃତ୍ତିପର ହୀନଯାନ ଏବଂ ପରବର୍ତ୍ତୀ କାଳରେ ଉଦ୍ଭୂତ ପ୍ରବୃତ୍ତିପର ଭକ୍ତିପ୍ରଧାନ ମହାଯାନ— ଉଭୟ ମାର୍ଗ ପ୍ରାଚୀନ ବୈଦିକ ଗ୍ରନ୍ଥ ଓ ଗୀତାରୁ ଗୃହୀତ ହୋଇଅଛି । ମହାଯାନ ପନ୍ଥାର ଉତ୍ପତ୍ତି ସମ୍ବନ୍ଧରେ ସ୍ୱୟଂ ବୌଦ୍ଧଗ୍ରନ୍ଥକାରଗଣ ଶ୍ରୀକୃଷ୍ଣଙ୍କ ନାମ ସ୍ପଷ୍ଟ ନିର୍ଦ୍ଦେଶ କରି ଅଛନ୍ତି ଏବଂ ମହାଯାନ ପନ୍ଥାର ମତ ସଙ୍ଗେ ଗୀତାର ଭକ୍ତିପର ଓ ପ୍ରବୃତ୍ତିପର ତତ୍ତ୍ୱର ଅର୍ଥତଃ ଓ ଶବ୍ଦଶଃ ସାଦୃଶ୍ୟ ଅଛି ।

ବର୍ତ୍ତମାନ ଯୁଗରେ ପୃଥିବୀର ଅଧିକାଂଶ ଲୋକ ଖ୍ରୀଷ୍ଟଧର୍ମାବଲମ୍ବୀ । ଖ୍ରୀଷ୍ଟିଆନମାନଙ୍କ ଧର୍ମଗ୍ରନ୍ଥ ବାଇବେଲର ଆଧ୍ୟାତ୍ମିକ ଉପଦେଶ ସଙ୍ଗେ ଗୀତାର ଆଧ୍ୟାତ୍ମିକ ଉପଦେଶମାନଙ୍କର ସମାନତା ଦେଖି ଏ ଯୁଗର ପାଶ୍ଚାତ୍ୟ ଦେଶବାସୀ କେତେକ ଖ୍ରୀଷ୍ଟଧର୍ମାବଲମ୍ବୀ ପଣ୍ଡିତଙ୍କର ବିଶ୍ୱାସ ଥିଲା ଯେ, ଗୀତାର ଲେଖକ ବାଇବେଲରୁ ଏ ସବୁ ମତ ଗ୍ରହଣ କରିଅଛନ୍ତି । ସେତେବେଳେ ଗୀତା ଓ ବାଇବେଲ ରଚନାର ଐତିହାସିକ କାଳ ସମ୍ବନ୍ଧରେ ସେମାନଙ୍କର ଧାରଣା ନ ଥିଲା । ପରେ ଯେତେବେଳେ ସେହି ପାଶ୍ଚାତ୍ୟ ଦେଶବାସୀ ପ୍ରତ୍ନତତ୍ତ୍ୱ ବିଶାରଦମାନେ ସ୍ଥିର କଲେ ଯେ, ଖ୍ରୀଷ୍ଟଜନ୍ମର ପ୍ରାୟ ଏକ ହଜାର ବର୍ଷ ପୂର୍ବେ ଗୀତା ରଚିତ ହୋଇଥିଲା, ସେତେବେଳେ ସେମାନେ ନିଜ ନିଜ ଭ୍ରମ ବୁଝିପାରିଲେ । ସେ କାଳରେ ଯୀଶୁଙ୍କ ଧର୍ମପ୍ରଚାରକ୍ଷେତ୍ର ପଶ୍ଚିମ ଆସିଆ ଓ ଇଉରୋପ ଖଣ୍ଡ ସଙ୍ଗେ ଭାରତର ସମ୍ପର୍କ ପ୍ରତିଷ୍ଠିତ ନ ଥିଲା, ବିଶେଷତଃ ଗମନାଗମନର ପଥ ଦୁର୍ଗମ ଓ ଅଜ୍ଞାତ ଥିଲା । ଏପରି ଅବସ୍ଥାରେ ଯୀଶୁଖ୍ରୀଷ୍ଟ କି ଉପାୟରେ ଗୀତାରୁ ସେ ଭାବ ଗ୍ରହଣ କରିଥିଲେ ? ଦୁଇ ଜଣ ସୁଧୀ ସାଧକ ବା ଧର୍ମାଚାର୍ଯ୍ୟଙ୍କ ହୃଦୟରେ ବିଭିନ୍ନ କାଳରେ ଏକ ପ୍ରକାର ଭାବ ଜାତହେବା ଅସମ୍ଭବ ନୁହେଁ—ଏଭଳି ସନ୍ଦେହ ହେବା ମଧ୍ୟ ସ୍ୱାଭାବିକ । ଗୋଟିଏ ଦୁଇଟି ଭାବର ମିଳନ ସମ୍ବନ୍ଧରେ ଏପରି ସନ୍ଦେହ ହୋଇପାରେ, ମାତ୍ର ଯେତେବେଳେ ଏକ ପ୍ରସଙ୍ଗରେ ଅନେକ ଭାବ ଏକାଭଳି ଦେଖାଯାଏ, ସେତେବେଳେ ଜଣାଯାଏ ଯେ ପରବର୍ତ୍ତୀ ଲୋକ ତାଙ୍କ ପୂର୍ବବର୍ତ୍ତୀ ଲୋକଙ୍କ ରଚନାରୁ ଏ ସବୁ ଗ୍ରହଣ କରି

ଅଛନ୍ତି । ଏ ଯୁଗର ପ୍ରତ୍ନତତ୍ତ୍ୱଜ୍ଞମାନେ ନାନାପ୍ରକାରେ ଗବେଷଣା କରି ଶେଷରେ ସ୍ଥିର କରି ଅଛନ୍ତି ଯେ, ବୌଦ୍ଧଧର୍ମର ମହାଯାନ ପନ୍ଥାର ମତ ସଙ୍ଗେ ବାଇବେଲରେ ଉକ୍ତ ହୋଇଥିବା ଖ୍ରୀଷ୍ଟଧର୍ମମତର ଅନେକ ସାମଞ୍ଜସ୍ୟ ଅଛି; ଯୀଶୁଙ୍କ ଜନ୍ମର ୪୦୦।୫୦୦ ବର୍ଷ ପୂର୍ବେ ବୁଦ୍ଧଦେବ ବୌଦ୍ଧଧର୍ମ ପ୍ରଚାର କରିଥିଲେ ଏବଂ ବୁଦ୍ଧଙ୍କ ନିର୍ବାଣର ଅଳ୍ପକାଳପରେ ମହାଯାନ ପନ୍ଥାର ବୌଦ୍ଧ ଯତିମାନେ ଶ୍ରୀମଦ୍‌ଭଗବଦ୍ ଗୀତାରୁ ପ୍ରବୃତ୍ତିପର ନିଷ୍କାମ କର୍ମ ଓ ଭକ୍ତି ତତ୍ତ୍ୱ ଗ୍ରହଣ କରି ସେ ସବୁ ପ୍ରଚାର ଉଦ୍ଦେଶ୍ୟରେ ପୃଥିବୀର ଭିନ୍ନ ଭିନ୍ନ ଦେଶରେ ପ୍ରବେଶ କରିଥିଲେ । ସେମାନଙ୍କ ମଧ୍ୟରୁ କେତେକ ଯୀଶୁଙ୍କ ଜନ୍ମର ପ୍ରାୟ ତିନିଶହ ବର୍ଷ ପୂର୍ବେ ମହାରାଜ ଅଶୋକଙ୍କ ରାଜତ୍ୱକାଳରେ ( ଖ୍ରୀ. ପୂ: ପ୍ରାୟ ୨୫୦ ଅବ୍ଦ ) ଏସିଆର ପଶ୍ଚିମ ଅଞ୍ଚଳରେ ଥିବା ମେସୋପଟମିଆ, ଆଲେକ୍‌ଜାଣ୍ଡ୍ରିଆ, ମିଶର ଓ ଗ୍ରୀସ୍ ପର୍ଯ୍ୟନ୍ତ ଯାଇ ବୌଦ୍ଧଧର୍ମ ପ୍ରଚାର କରିଥିଲେ । ଏ ବିଷୟରେ ଅନେକ ଐତିହାସିକ ପ୍ରମାଣ ମଧ୍ୟ ରହିଅଛି । ଅଶୋକଙ୍କର ଗୋଟିଏ ଶିଳାଲିପିରେ ବର୍ଣ୍ଣିତ ଅଛି ଯେ, ସେ ଇହୁଦୀ ଦେଶ ଏବଂ ତାହାର ନିକଟବର୍ତ୍ତୀ ଅନ୍ୟ କେତେକ ସ୍ଥାନର ଗ୍ରୀକ୍‌ରାଜା ଆଣ୍ଟିଓକସ୍‌ଙ୍କ ସଙ୍ଗେ ସନ୍ଧି କରିଥିଲେ । ଏଥିରୁ ଜଣାଯାଉଅଛି ଯେ ଇହୁଦୀ ଧର୍ମଗୁରୁମାନେ ମହାଯାନପନ୍ଥାବଲମ୍ବୀ ବୌଦ୍ଧଧର୍ମର ଯତିମାନଙ୍କଠାରୁ ଗୀତାର ଆଧ୍ୟାତ୍ମିକ ସତ୍ୟମାନ ଗ୍ରହଣ କରିଥିଲେ । ଇହୁଦୀ ଧର୍ମହିଁ ବର୍ତ୍ତମାନର ଖ୍ରୀଷ୍ଟଧର୍ମର ପ୍ରାଚୀନରୂପ ଏବଂ ବାଇବେଲ ଇହୁଦୀମାନଙ୍କର ମଧ୍ୟ ମୂଳ ଧର୍ମଗ୍ରନ୍ଥ । ଏହି ଭାବରେ ଗୀତାର ଆଧ୍ୟାତ୍ମିକ ସତ୍ୟମାନ ଖ୍ରୀଷ୍ଟଧର୍ମ ଗ୍ରନ୍ଥରେ ପ୍ରବେଶ କରିଅଛି ।

ଗୀତା ଧର୍ମ ପ୍ରଚାରିତ ହେବାପରେ ତାହାର ପ୍ରଭାବ ଅନ୍ୟାନ୍ୟ ଧର୍ମଉପରେ କିପରି ପଡ଼ିଅଛି ତାହା ଉପର୍ଯ୍ୟୁକ୍ତ ବିବରଣରୁ ସହଜରେ ଜଣାଯିବ, ବୌଦ୍ଧଯୁଗକୁ ଧର୍ମ ବିପ୍ଳବ ଯୁଗ କୁହାଯାଏ; ମହାତ୍ମା ଶଙ୍କରଙ୍କ ଆବିର୍ଭାବ ପରେ ବୌଦ୍ଧ ଧର୍ମର ପତନ ଆରମ୍ଭ ହେଲା । ବୈଦିକ ଧର୍ମ ମତର ପୁନଃ ପ୍ରତିଷ୍ଠା ଉଦ୍ଦେଶ୍ୟରେ ଶଙ୍କର ପ୍ରଥମେ ଅଦ୍ୱୈତବାଦ ପ୍ରଚାର କରିଥିଲେ, ତତ୍‌ପରେ ବିଶିଷ୍ଟାଦ୍ୱୈତବାଦ, ଦ୍ୱୈତବାଦ, ଦ୍ୱୈତା-ଦ୍ୱୈତବାଦ ପ୍ରଭୃତି ପ୍ରଚାରିତ ହେଲା, ପ୍ରତ୍ୟେକ ମତବାଦର ଆଚାର୍ଯ୍ୟମାନେ ଗୀତା ଉପରେ ନିଜ ନିଜ ମତର ପରିପୋଷଣ ନିମିତ୍ତ ଟୀକା, ଭାଷ୍ୟ ପ୍ରଣୟନ କରିଯାଇ ଅଛନ୍ତି, କାରଣ ସେମାନେ ଜାଣିଥିଲେ ଗୀତୋକ୍ତ

ଧର୍ମମତର ଅନୁକୂଳ ନ ହେଲେ କୌଣସି ଧର୍ମମତ ଏ ଦେଶରେ ପ୍ରତିଷ୍ଠା ଲଭ କରିପାରିବ ନାହିଁ । ଏହି ହେତୁରୁ ଭିନ୍ନ ଭିନ୍ନ ଟୀକାକାର ଗୀତାର ସହଜ ବୋଧ ସରଳ ଅର୍ଥକୁ ନାନା ଭାବରେ ବିଶ୍ଳେଷଣ କରି ନିଜ ନିଜ ମତର ଅନୁକୂଳ କରିବାପାଇଁ ଟଣାଟଣି କରିଅଛନ୍ତି, ଗୀତାର କେତେକ ଶ୍ଳୋକ ଅଦ୍ୱୈତମତର ସମର୍ଥକ, କେତେକ ଶ୍ଳୋକ ଦ୍ୱୈତ-ମତର ବା ବିଶିଷ୍ଟାଦ୍ୱୈତମତର ସମର୍ଥକ, ଅଦ୍ୱୈତବାଦୀ ଟୀକାକାରମାନେ ନିଜ ମତର ପରିପୋଷକ ଶ୍ଳୋକ ଗୁଡ଼ିକର ଯଥାଯଥ ବ୍ୟାଖ୍ୟା କରି ଅନ୍ୟ ମତବାଦର ଶ୍ଳୋକମାନଙ୍କୁ ନିଜମତର ପୁଷ୍ଟିନିମିତ୍ତ ବ୍ୟାକରଣ ଓ ଶବ୍ଦାର୍ଥ ଦୃଷ୍ଟିରେ ଟଣାଟଣି କରି ବିକୃତ ବ୍ୟାଖ୍ୟା କରିଅଛନ୍ତି । ଅନ୍ୟ ମତବାଦୀ ମାନେ ମଧ୍ୟ ସେହିପରି କରିଅଛନ୍ତି । ପ୍ରକୃତରେ ବୁଝିଲେ ଜଣାଯାଏ ଯେ ସତ୍ୟ ଏକ, ଅଧିକାର ଭେଦରେ ବିଭିନ୍ନ ମତବାଦର ସୃଷ୍ଟି ହୋଇଅଛି । ଏ ସମ୍ବନ୍ଧରେ 'ମହିମ୍ନଃସ୍ତୋତ୍ର'ରେ ଗୋଟିଏ ଶ୍ଳୋକ ଅଛି :—

ତ୍ରୟୀ ସାଂଖ୍ୟଂ ଯୋଗଃ ପଶୁପତିମତଂ ବୈଷ୍ଣବମିତି,
ପ୍ରଭିନ୍ନେ ପ୍ରସ୍ଥାନେ ପରମିଦମଦଃ ପଥ୍ୟମିତି ଚ ।
ରୁଚୀନାଂ ବୈଚିତ୍ର୍ୟା ଦୃଜୁକୁଟିଳନାନାପଥଯୁଷାମ୍,
ନୃଣାମେକୋ ଗମ୍ୟସ୍ତ୍ୱମସି ପୟସାମର୍ଣ୍ଣବଇବ ।

"ବେଦତ୍ରୟୀ, ସାଂଖ୍ୟ, ଯୋଗ, ପଶୁପତିମତ ଏବଂ ବୈଷ୍ଣବ ପ୍ରଭୃତି ମତ ଭିନ୍ନ ଭିନ୍ନ; ପ୍ରତ୍ୟେକ ମତାବଲମ୍ବୀ କହନ୍ତି 'ଏହାହିଁ ଶ୍ରେଷ୍ଠ ଓ ଏହାହିଁ ମଙ୍ଗଳଜନକ'; ଏହିପରି ବୁଦ୍ଧି ଦ୍ୱାରା ଚାଳିତ ହୋଇ ଲୋକମାନେ ନିଜ ନିଜ ରୁଚିର ବିଚିତ୍ରତା ହେତୁରୁ ସରଳ ଓ ବକ୍ର ନାନା ବାଟ ପନ୍ଥା ଅବଲମ୍ବନ କରନ୍ତି, ତଥାପି ନଦୀ ମାନଙ୍କର ଯେପରି ସମୁଦ୍ରହିଁ ଏକମାତ୍ର ଗତି, ସେହିପରି ତୁମ୍ଭେ ହିଁ ସମସ୍ତଙ୍କର ଏକମାତ୍ର ଗତି ଅଟ ।"

ଏ ସବୁ ପ୍ରାଚୀନ ଯୁଗର କଥା; ପାଶ୍ଚାତ୍ୟ ଦେଶମାନଙ୍କ ସଂସ୍ରବରେ ଆସିବାପରେ ଏ ଦେଶରେ ଏକପ୍ରକାର ନବଯୁଗର ଆବିର୍ଭାବ ହୋଇଅଛି । ଏ ଦେଶରେ ବର୍ତ୍ତମାନ ଯେଉଁ ଚିନ୍ତାଶୀଳ ଦାର୍ଶନିକ ମହାମନୀଷୀମାନେ ଜନ୍ମ ଗ୍ରହଣ କରିଅଛନ୍ତି ସେମାନଙ୍କ ଚିନ୍ତା ପ୍ରାୟଶଃ ରାଜନୀତିରେ ଆବଦ୍ଧ; ସେହି ରାଜନୀତି କ୍ଷେତ୍ରରେ ଯେଉଁମାନେ ବିଶ୍ୱବିଧାତା ଅନ୍ତର୍ଯାମୀଙ୍କର ପ୍ରତ୍ୟକ୍ଷ ପ୍ରେରଣା ହୃଦୟରେ ଅନୁଭବ କରିପାରିଅଛନ୍ତି, ସେମାନେ

ଧର୍ମରାଜ୍ୟର ବିଧି ବ୍ୟବସ୍ଥା ପ୍ରତି ଅନୁକୃଷ୍ଟ ନ ହୋଇ ରହିପାରି ନାହାନ୍ତି । ଏଭଳି ରାଜନୀତିଜ୍ଞ ମନୀଷୀମାନଙ୍କ ମଧ୍ୟରେ ଲୋକମାନ୍ୟ ବାଳ ଗଙ୍ଗାଧର ତିଳକ, ମହାତ୍ମା ଗାନ୍ଧି ଓ ଯୋଗୀ ଅରବିନ୍ଦ ପ୍ରଧାନ । ହିନ୍ଦୁଧର୍ମରେ ଶତବିଧ ଦାର୍ଶନିକ ଚିନ୍ତାଧାରାପୂର୍ଣ୍ଣ ଗ୍ରନ୍ଥ ଥିଲେହେଁ, ଏମାନେ ସମସ୍ତେ ଶ୍ରୀମଦ୍ ଭଗବଦ୍ ଗୀତାକୁହିଁ ଭାରତୀୟ ଆର୍ଯ୍ୟ ଧର୍ମର ଏକମାତ୍ର ଦୀପସ୍ତମ୍ଭ ରୂପେ ଗ୍ରହଣ କରିଅଛନ୍ତି ଏବଂ ତାହାର ଆଲୋକରେ ନିଜନିଜ ଜୀବନର ଗତିପଥକୁ ଆଲୋକିତ କରି ସମସାମୟିକ ଲୋକମାନଙ୍କୁ ସେହି ପଥର ଅନୁସରଣ କରିବାକୁ ଉଦ୍‌ବୋଧିତ କରିଅଛନ୍ତି । ସେମାନଙ୍କ ଧର୍ମ କର୍ମମୟ ଜୀବନ ଉପରେ ଏହି ଭାବରେ ଗୀତାର ପ୍ରଭାବ ସ୍ପଷ୍ଟ ଦେଖାଯାଏ ।

ଲୋକମାନ୍ୟ ତିଳକଙ୍କ ପ୍ରଣୀତ 'ଗୀତାରହସ୍ୟ' ଅସାଧାରଣ ପାଣ୍ଡିତ୍ୟ ଓ ସୂକ୍ଷ୍ମ ଦାର୍ଶନିକ ଚିନ୍ତାରେ ପରିପୂର୍ଣ୍ଣ । କାଳିଦାସଙ୍କ କାବ୍ୟା-ବଳି ଉପରେ ମଲ୍ଲିନାଥ ଯେପରି ଅପ୍ରତିଦ୍ୱନ୍ଦ୍ୱୀ ଭାଷ୍ୟକାର, ମହାତ୍ମା ତିଳକ ମଧ୍ୟ ସେହିପରି ଶ୍ରୀମଦ୍ ଭଗବଦ୍‌ଗୀତାର ଅପ୍ରତିଦ୍ୱନ୍ଦ୍ୱୀ ଭାଷ୍ୟକାର । ଗୀତାର ପ୍ରାଚୀନ ଭାଷ୍ୟକାର ମାନଙ୍କ ମଧ୍ୟରୁ କେହି ଜ୍ଞାନକୁ ପ୍ରାଧାନ୍ୟ ଦେଇଅଛନ୍ତି, କେହି ଭକ୍ତିକୁ ପ୍ରାଧାନ୍ୟ ଦେଇଅଛନ୍ତି, କେହି ବା କର୍ମକୁ ପ୍ରାଧାନ୍ୟ ଦେଇ ଅଛନ୍ତି । ପ୍ରତ୍ୟେକ ଗୀତା ପାଠକ ଜାଣନ୍ତି ଗୀତା ଏ ସମସ୍ତର ସମନ୍ୱୟ । ଏ ସମନ୍ୱୟର ମୁଖ୍ୟ ତାତ୍ପର୍ଯ୍ୟଟି କଅଣ ତିଳକ ଗୀତା-ରହସ୍ୟ ମଧ୍ୟରେ ତାହାହିଁ ପ୍ରତିପାଦନ କରିଅଛନ୍ତି । ସେ ଦେଖାଇ ଅଛନ୍ତି ଯେ, କର୍ମଯୋଗହିଁ ଗୀତାର ମୁଖ୍ୟ ପ୍ରତିପାଦ୍ୟ ବିଷୟ, ଭଗବାନ୍ ଅର୍ଜୁନଙ୍କୁ ବୁଝାଇ ଅଛନ୍ତି ଜ୍ଞାନ ଓ ଭକ୍ତି କର୍ମର ପରିପନ୍ଥୀ ନୁହେ, ପରନ୍ତୁ କର୍ମର ସହାୟ ଓ ପରିପୋଷକ, ଜ୍ଞାନ ଓ ଭକ୍ତି ସାହାଯ୍ୟରେହିଁ ନିଷ୍କାମ କର୍ମାଚରଣ ପୂର୍ଣ୍ଣତା ପ୍ରାପ୍ତ ହୁଏ । ଏହି ମତର ପରିପୋଷକତା ନିମିତ୍ତ ସେ ହିନ୍ଦୁଧର୍ମର ପୁରାଣ, ଇତିହାସ, ଜ୍ୟୋତିଷ, ଦର୍ଶନ, କାବ୍ୟ ପ୍ରଭୃତି ସମଗ୍ରଶାସ୍ତ୍ରସିନ୍ଧୁ ମନ୍ଥନ କରିଅଛନ୍ତି ଏବଂ ପାଶ୍ଚାତ୍ୟ ଦେଶର ଅନେକ ଦର୍ଶନ ଓ ଶାସ୍ତ୍ରରୁ ପ୍ରମାଣ ଉଦ୍ଧାର କରିଅଛନ୍ତି । ହିନ୍ଦୁଧର୍ମର ଏତେ କଥା ପ୍ରସଙ୍ଗକ୍ରମେ ଗୀତାରହସ୍ୟ ମଧ୍ୟରେ ସ୍ଥାନପାଇଅଛି—ଯାହା ମନୋଯୋଗ ପୂର୍ବକ ଥରେ ପଢ଼ିଲେ ପାଠକ ହୃଦୟରେ ହିନ୍ଦୁଧର୍ମର ପ୍ରକୃତତତ୍ତ୍ୱ ଅବଭାସିତ ହୋଇ ଉଠିବ । ଶଙ୍କର ପ୍ରମୁଖ ଗୀତାର ପ୍ରାଚୀନ ଭାଷ୍ୟକାରମାନେ ଗୀତା ଉପରେ କର୍ମସନ୍ନ୍ୟାସମୂଳକ ଯେଉଁ ଭାଷ୍ୟଲେଖିଅଛନ୍ତି, ସୁଯୁକ୍ତି ଓ ପ୍ରମାଣ ଦ୍ୱାରା

ତଳକ ସେ ସବୁର ତୀବ୍ର ବିରୋଧ କରିଅଛନ୍ତି ଏବଂ ଅସଙ୍ଗତ ମଧ୍ୟ ଦେଖାଇଅଛନ୍ତି । ତଥାପି ତିଳକ ଆଗ୍ୟର୍ଯ ଶଙ୍କରଙ୍କ ଅସାଧାରଣ ପାଣ୍ଡିତ୍ୟ ଓ ପ୍ରତିଭାର ଭୂୟସୀ ପ୍ରଶଂସା କରି ତାଙ୍କ ପ୍ରବର୍ତ୍ତିତ ଅଦ୍ୱୈତ ସିଦ୍ଧାନ୍ତକୁ ସର୍ବାନ୍ତଃକରଣରେ ସ୍ୱୀକାର କରିଅଛନ୍ତି ।

ଯୋଗୀ ଅରବିନ୍ଦଙ୍କ ଗୀତା ବ୍ୟାଖ୍ୟା (Essays on Gita) ଏକାନ୍ତ ହୃଦୟସ୍ପର୍ଶୀ ଓ ଦାର୍ଶନିକ ଗବେଷଣା ମୂଳକ । ସେ ଦେଖାଇଅଛନ୍ତି ଜ୍ଞାନ, କର୍ମ, ଭକ୍ତି—ଏହି ତିନିଗୋଟିର ସମନ୍ୱୟରେ ଗୀତାରେ ଗୋଟିଏ ଅଭିନବ ଧର୍ମତତ୍ତ୍ୱ ବ୍ୟାଖ୍ୟାତ ହୋଇଅଛି । ଏହି ସମନ୍ୱୟହିଁ ପୂର୍ଣ୍ଣାଙ୍ଗଯୋଗ । ଏହି ଯୋଗର ଅନୁଶୀଳନରେ ମନୁଷ୍ୟ ମର୍ତ୍ତ୍ୟଲୋକରେହିଁ ଅମୃତତ୍ୱର ଆସ୍ୱାଦ ଲାଭ କରିଥାଏ । ଗୀତା କେବଳ ନିର୍ଗୁଣ ବ୍ରହ୍ମତତ୍ତ୍ୱ ଓ ମାୟାବାଦାତ୍ମକ ଗ୍ରନ୍ଥ ନୁହେ । ଯେଉଁ କର୍ମବାଦ ବା କର୍ମଯୋଗ ଗୀତାରେ ମୁଖ୍ୟ ପ୍ରତିପାଦ୍ୟ ବିଷୟ, ନିର୍ଗୁଣ ବ୍ରହ୍ମତତ୍ତ୍ୱ ଓ ମିଥ୍ୟାତ୍ୱବାଦ ଗ୍ରହଣ କଲେ ତାହାର ସମର୍ଥନ ହୋଇପାରେ ନାହିଁ । କାରଣ ମାୟାବାଦରେ କର୍ମର ସ୍ଥାନ ଅତି ଗୌଣ; ମାୟା ଯେତେବେଳେ ମିଥ୍ୟା ସେତେବେଳେ ତା ସଙ୍ଗେ ଜ୍ଞାନର ସମୁଚ୍ଚୟ ହୋଇପାରେ ନାହିଁ ଏବଂ ବ୍ରହ୍ମଙ୍କର କେବଳ ନିର୍ଗୁଣଭାବ ଅଙ୍ଗୀକାର କଲେ ତହିଁରେ ଭକ୍ତିର ସ୍ଥାନ ରହେନାହିଁ । ଗୀତାର ପଞ୍ଚଦଶ ଅଧ୍ୟାୟରେ ଯେଉଁ ପୁରୁଷୋତ୍ତମତତ୍ତ୍ୱ ବ୍ୟାଖ୍ୟାତ ହୋଇଅଛି, ତାହାକୁ ଗୀତୋକ୍ତ ପରମସତ୍ୟରୂପେ ଗ୍ରହଣ କରି ଅରବିନ୍ଦ କହିଅଛନ୍ତି, ବ୍ରହ୍ମ ନିର୍ଗୁଣ ଓ ସଗୁଣ । ସାଧକ ଯେଉଁ ଭାବରେ ଭାବିବେ, ତାଙ୍କୁ ସେ ଭାବରେ ଅନୁଭବ କରିବେ । ଅନ୍ୟଥା ଜ୍ଞାନ, ଭକ୍ତି ଓ କର୍ମର ଏକତ୍ର ସମନ୍ୱୟ ହୋଇପାରେ ନାହିଁ । ହୀରେନ୍ଦ୍ରନାଥ ଦତ୍ତ ଓ ବଙ୍କିମଚନ୍ଦ୍ର ମଧ୍ୟ ଅନେକାଂଶରେ ଏହିମତ ଅନୁସରଣ କରିଅଛନ୍ତି ।

ମହାତ୍ମାଗାନ୍ଧୀ ଅହିଂସାବାଦୀ ଗୀତାର ମଝିରେ ମଝିରେ ଯୁଦ୍ଧର ଯେଉଁ ପ୍ରେରଣା ଅଛି ସେସବୁକୁ ସେ ରୂପକର ଭାଷା ବୋଲି କହି ଅଛନ୍ତି । ତାଙ୍କ ମତରେ ଗୀତା ଐତିହାସିକ ଗ୍ରନ୍ଥ ନୁହେ । ଯେଉଁ ଯୁଦ୍ଧକୁ ଉପଲକ୍ଷ୍ୟକରି ଗୀତା ଲିଖିତ ହୋଇଅଛି ତାହା ଭୌତିକ ଯୁଦ୍ଧ ନୁହେ । ପ୍ରତ୍ୟେକ ମନୁଷ୍ୟ ହୃଦୟରେ ଦୈବୀପ୍ରବୃତ୍ତି ଓ ଅସୁରୀ ପ୍ରବୃତ୍ତି ମଧ୍ୟରେ ନିତ୍ୟ ଯେଉଁ ଯୁଦ୍ଧ ଚାଲିଅଛି ଗୀତାରେ ରୂପକ ଛଳରେ ତାହାହିଁ ବର୍ଣ୍ଣିତ ହୋଇଅଛି । କି ଉପାୟରେ ଆସୁରୀ ପ୍ରବୃତ୍ତିର ଧ୍ୱଂସହେବ ଭଗବାନ୍ ଅର୍ଜୁନଙ୍କୁ ତାହାହିଁ ଉପଦେଶ ଦେଇ ଅଛନ୍ତି, ଇତ୍ୟାଦି ।

"ତ୍ରିବିଧଂ ନରକସ୍ୟେଦଂ ଦ୍ୱାରଂ ନାଶନମାତ୍ମନଃ,
କାମଃ କ୍ରୋଧସ୍ତଥା ଲୋଭସ୍ତସ୍ମାଦେତତ୍ତ୍ରୟଂ ତ୍ୟଜେତ୍ ।" (ଗୀ ୧୬-୨୧)

ଇତ୍ୟାଦି ଗୀତୋକ୍ତ ଉପଦେଶ ପଢ଼ିଲେ ଗାନ୍ଧିଜୀଙ୍କ ଉକ୍ତିଯେ ସତ୍ୟ ଏଥିରେ ସନ୍ଦେହ ହୁଏ ନାହିଁ, ମାତ୍ର ଗୀତାର ମୂଳଗଳ୍ପ ଯେ ରୂପକ ଏବଂ ଶେଷରେ ଅର୍ଜ୍ଜୁନଙ୍କର ଯୁଦ୍ଧ କରିବାର ଅଙ୍ଗୀକାର ଯେ କାଳ୍ପନିକ, ଏକଥା ସହଜରେ ସାଧାରଣ ମାନବୀ ବୁଦ୍ଧିରେ ଗୃହୀତ ହୁଏ ନାହିଁ ।

ଦ୍ୱିତୀୟତଃ ଅହିଂସାନୀତିକୁ ଗୀତା ମଧ୍ୟ ଅନୁମୋଦନ କରିଅଛି ( ଗୀ ୧୬-୨ ଓ ୧୦-୫ ); କିନ୍ତୁ ଗୀତା ମତରେ ଅହିଂସା ବୁଦ୍ଧିରେ, କର୍ମରେ ନୁହେ । ସ୍ଥିତପ୍ରଜ୍ଞ ବା ବ୍ରହ୍ମଭୂତ ହୋଇ ମଧ୍ୟ ଲୋକ ଯୁଦ୍ଧ କରିପାରେ :—

"ଯସ୍ୟ ନାହଂକୃତୋ ଭାବୋ ବୁଦ୍ଧିର୍ଯସ୍ୟ ନ ଲିପ୍ୟତେ,
ହତ୍ୱାପି ସ ଇମାଂ ଲ୍ଲୋକାନ୍ ନ ହନ୍ତି ନ ନିବଧ୍ୟତେ" (ଗୀ ୧୮-୧୭)

ଏହାହିଁ ଗୀତୋକ୍ତ ନୀତି ।

## ଉପସଂହାର

ଉପସଂହାରରେ ସାଧାରଣତଃ ଯାହା କୁହାଯାଏ ଅମ୍ଭେମାନେ ପରିଶିଷ୍ଟର ବିଭିନ୍ନ ପ୍ରକରଣରେ ସେ ସମସ୍ତ କହିସାରିଅଛୁଁ; ତେବେ ଶେଷରେ ଏତିକିମାତ୍ର ବକ୍ତବ୍ୟ ଯେ, ଜ୍ଞାନଭକ୍ତିଯୁକ୍ତ କର୍ମଯୋଗହିଁ ଗୀତାର ସାର; ସଂପ୍ରଦାୟ ପ୍ରବର୍ତ୍ତିକ ଟୀକାକାରମାନେ କର୍ମଯୋଗକୁ ଗୌଣ କରି ଗୀତାର ଯେଉଁ ସବୁ ବ୍ୟାଖ୍ୟା କରିଯାଇଅଛନ୍ତି, ତାହା ଯଥାର୍ଥ ନୁହେ । ଉପନିଷଦ୍‌ରେ ବର୍ଣ୍ଣିତ ହୋଇଥିବା ଏକେଶ୍ୱର-ବାଦମୂଳକ ଅଦ୍ୱୈତ ମତକୁ ଭକ୍ତି ରସରେ ଆପ୍ଲୁତ କରି ତଦ୍ୱାରା ସଂସାରରେ ପ୍ରବୃତ୍ତିପର ଗୃହସ୍ଥାଶ୍ରମୀ ମାନଙ୍କୁ ଧର୍ମ ଓ ମୁକ୍ତିର ପଥ ଦେଖାଇ-ଦେବା ଗୀତାର ଉଦ୍ଦେଶ୍ୟ । କେବଳ ଯାଗଯଜ୍ଞାଦି ଶ୍ରୌତକର୍ମର ସଂପାଦନ ଦ୍ୱାରା ବୁଦ୍ଧିମାନ୍ ମନୁଷ୍ୟ କେବେହେଲେ ଶାନ୍ତି ସନ୍ତୋଷ ଲାଭ କରିପାରେ ନାହିଁ । ଅପରପକ୍ଷରେ ଉପନିଷଦୁକ୍ତ ଧର୍ମ କେବଳ ଜ୍ଞାନ ପ୍ରଧାନ ହୋଇଥିବାରୁ ଅଳ୍ପ ଜ୍ଞାନ ବିଶିଷ୍ଟ ସଂସାରୀ ଲୋକଙ୍କ ପକ୍ଷରେ ତାହାର ଅନୁଷ୍ଠାନ ସହଜସାଧ୍ୟ ନୁହେ । ତା ଛଡ଼ା ଉପନିଷଦ୍‌ର ସନ୍ନ୍ୟାସ-ଧର୍ମ ସର୍ବଜନଗ୍ରହଣୀୟ ନୁହେ । ସେପରି ହେଲେ ସୃଷ୍ଟିରକ୍ଷା ହୋଇ

ଯାଇବ ନାହିଁ । ଏହିସବୁ ବିଗ୍ଭର କରି ଭଗବାନ୍ ଗୀତାରେ ଯେଉଁ ଧର୍ମ ଅର୍ଜୁନଙ୍କୁ ଉପଦେଶ ଦେବା ଛଳରେ ପ୍ରଗ୍ଭର କରିଅଛନ୍ତି ତାହା ଜ୍ଞାନ, ପ୍ରେମ ଓ କର୍ତ୍ତବ୍ୟ କର୍ମର ସମ୍ମତ ମିଳନ । ଏହାଦ୍ୱାରା ଶେଷରେ ମୋକ୍ଷଲାଭରେ କୌଣସି ବାଧା ହେବ ନାହିଁ । ନିଷ୍କାମ ଭାବରେ କର୍ମର ଅନୁଷ୍ଠାନ ଦ୍ୱାରା ସଂସାରର ବ୍ୟବହାରରେ କୌଣସି ଅସୁବିଧା ମଧ୍ୟ ହେବ ନାହିଁ ।

ଗୀତାରେ ଉକ୍ତ ହୋଇଥିବା ନୀତି ସମ୍ବନ୍ଧରେ ଆଲୋଚନା କଲେ ଜଣାଯାଏ ଯେ, ନୀତିମତ୍ତ୍ୱ କେବଳ କର୍ମମଧ୍ୟରେ ଆବଦ୍ଧ ନ ଥାଏ; ଏହା ବୁଦ୍ଧିରେହିଁ ଥାଏ । ବୁଦ୍ଧିର ଅଭାବରୁ ବା ଅଜ୍ଞତାରୁ ଯେବେ କୌଣସି ଲୋକ ଅପରାଧ କରେ, ତେବେ ସେ କ୍ଷମାର ଯୋଗ୍ୟ ବୋଲି ବିବେଚିତ ହୁଏ । ଏଥିରୁ ଏହା ଜଣାଯାଏ ଯେ, କର୍ମାକର୍ମର ଭଲ ମନ୍ଦ ନିର୍ଣ୍ଣୟ କରିବାବେଳେ କର୍ତ୍ତାର ବୁଦ୍ଧିର ଅବସ୍ଥା ଦେଖିବାକୁ ହୁଏ । ମହାଭାରତର ଗୋଟିଏ ଉପାଖ୍ୟାନରେ ଏହି ବିଷୟଟି ସୁନ୍ଦରରୂପେ ବର୍ଣ୍ଣିତ ହୋଇଅଛି; ତାହା ଏହିପରି :—

ଯୁଧିଷ୍ଠିର ରାଜ୍ୟଲାଭ କରିବା ପରେ ଯେଉଁ ଅଶ୍ୱମେଧ ଯଜ୍ଞର ଅନୁଷ୍ଠାନ କରିଥିଲେ ତହିଁରେ ଲକ୍ଷ ଲକ୍ଷ ଲୋକଙ୍କୁ ଅନ୍ନଦାନ ଓ ଧନଦାନ କରିଥିଲେ; ତେଣୁ ରାଜ୍ୟରେ ସର୍ବତ୍ର ଲୋକେ ତାଙ୍କର ପ୍ରଶଂସା ଗାନ କରୁଥିଲେ । ଏହି ସମୟରେ ଗୋଟିଏ ନେଉଳ ଯୁଧିଷ୍ଠିରଙ୍କ ନିକଟରେ ଉପସ୍ଥିତ ହୋଇ କହିଲା, "ମହାରାଜ, ଲୋକେ ବୃଥା ତୁମ୍ଭଙ୍କୁ ଏତେ ପ୍ରଶଂସା କରୁଅଛନ୍ତି । ପୂର୍ବେ ଏହି କୁରୁକ୍ଷେତ୍ରରେ ଜଣେ ଦରିଦ୍ର ବ୍ରାହ୍ମଣ ବାସ କରୁଥିଲେ, ସେ ଖାଦ୍ୟର ଅଭାବରୁ ସ୍ତ୍ରୀ ପୁତ୍ରଙ୍କ ସଙ୍ଗେ ଏକାଦିକ୍ରମେ କେତେଦିନ ଉପବାସ ରହିଥିଲେ । ତତ୍ପରେ ଦିନେ କିଛିଖାଦ୍ୟ ସଂଗ୍ରହ କରି ସ୍ତ୍ରୀପୁତ୍ରଙ୍କ ସଙ୍ଗେ ଯେ ଭୋଜନ କରିବାକୁ ଯାଉଅଛନ୍ତି, ଏହି ସମୟରେ ଅକସ୍ମାତ୍ ଜଣେ କ୍ଷୁଧାର୍ତ୍ତ ଅତିଥି ତାଙ୍କର ଦ୍ୱାରସ୍ଥ ହୋଇ ଅନ୍ନ ଭିକ୍ଷା କଲେ । ବ୍ରାହ୍ମଣ ଆନନ୍ଦରେ ସଂଗୃହୀତ ସମସ୍ତ ଖାଦ୍ୟ ଅତିଥିଙ୍କୁ ସମର୍ପଣ କରି ତାହାଙ୍କର ଆତିଥ୍ୟ କଲେ । ମୁଁ ସେହି ଅତିଥିଙ୍କ ଉଚ୍ଛିଷ୍ଟରେ ଗଡ଼ିଥିଲି । ଦେଖନ୍ତୁ, ତଦ୍ଦ୍ୱାରା ମୋର ମୁହିଁ ଓ ଅର୍ଦ୍ଧାଙ୍ଗ ସୁନା ହୋଇଯାଇଛି, କିନ୍ତୁ ତୁମ ଯଜ୍ଞମଣ୍ଡପ ଉଚ୍ଛିଷ୍ଟରେ ମୁଁ ଗଡ଼ିଲି, ତଦ୍ଦ୍ୱାରା ମୋର ଅବଶିଷ୍ଟ ଅଙ୍ଗ ସୁନା ହେଲା ନାହିଁ ।"

ଏହି ଉପାଖ୍ୟାନରୁ ଜଣାଗଲା ଯେ, ମହାରାଜ ଯୁଧିଷ୍ଠିର ବିପୁଳ ଧନର ଅଧୀଶ୍ୱର ଥିଲେ । ଅଶ୍ୱମେଧ ଯଜ୍ଞରେ ଲକ୍ଷ ଲକ୍ଷ ଦରିଦ୍ର ଲୋକଙ୍କୁ ଅନ୍ନଦାନ ଓ ଧନଦାନ କରିବା ପାଇଁ ତାଙ୍କର ଯେଉଁ ବୁଦ୍ଧିର ଉଦ୍ରେକ ହୋଇଥିଲା, ତାହା ନିଶ୍ଚୟ ସାତ୍ତ୍ୱିକ । ମାତ୍ର ସେହି ଦରିଦ୍ର ନିଃସ୍ୱ ବହୁଦିନରୁ ଉପବାସୀ ଥିବା ବ୍ରାହ୍ମଣର ବୁଦ୍ଧିପରି ଶୁଦ୍ଧସାତ୍ତ୍ୱିକ ନୁହେ । ଅଶ୍ୱମେଧ ଯଜ୍ଞର ଅନୁଷ୍ଠାନ କଲେ ଯେଉଁ ଫଳ ଲାଭ ହୁଏ, ସେହି ଦରିଦ୍ର ବ୍ରାହ୍ମଣଙ୍କ ଭଳି ଲୋକଙ୍କର ସାମାନ୍ୟ ତ୍ୟାଗଦ୍ୱାରା ସେହି ଫଳହିଁ ଲାଭ ହୋଇଥାଏ । ଏହି ପ୍ରସଙ୍ଗରେ ମହାଭାରତକାର କହିଅଛନ୍ତି:—

ସହସ୍ରଶକ୍ତିଶ୍ଚ ଶତଂ ଶତଶକ୍ତିର୍ଦଶାପି ଚ ।
ଦଦ୍ୟାଦପଶ୍ଚ ଯଃ ଶକ୍ତ୍ୟା ସର୍ବେ ତୁଲ୍ୟଫଳାଃ ସ୍ମୃତାଃ ।

ଅର୍ଥାତ୍ ଯାହାଙ୍କର ହଜାର ଟଙ୍କା ଅଛି, ସେ ଶହେଟଙ୍କା ଦାନ କଲେ ଯେଉଁ ଫଳ ପାଆନ୍ତି, ଯାହାଙ୍କର ଶହେ ଟଙ୍କା ଅଛି ସେ ଦଶଟଙ୍କା ଦାନକଲେ ସେହି ଫଳହିଁ ପାଇଥାଆନ୍ତି ଏବଂ ଯାହାଙ୍କର କିଛି ନାହିଁ, ସେ ଶକ୍ତିଅନୁସାରେ ଟିକିଏ ଜଳଦାନ କଲେହେଁ ସେହି ଫଳର ଅଧିକାରୀ ହୋଇ ଥାଆନ୍ତି । ଭଗବାନ ଏହି ବିଷୟରେ ଗୀତାର ୯ମ ଅଧ୍ୟାୟ ୨୯ମ ଶ୍ଳୋକରେ କହିଅଛନ୍ତି:—

ପତ୍ରଂ ପୁଷ୍ପଂ ଫଳଂ ତୋୟଂ ଯୋ ମେ ଭକ୍ତ୍ୟା ପ୍ରଯଚ୍ଛତି
ତଦହଂ ଭକ୍ତ୍ୟୁପହୃତ ମଶ୍ନାମି ପ୍ରୟତାତ୍ମନଃ ।

ଧନବାନ୍ ସାତ୍ତ୍ୱିକ ବୁଦ୍ଧିଶୂନ୍ୟ ଲୋକର ଲକ୍ଷ ଲକ୍ଷ ଟଙ୍କା ମୂଲ୍ୟର ଭୋଗରେ ଭଗବାନ ଯେଉଁ ସନ୍ତୋଷ ପାଆନ୍ତି ନାହିଁ, ଗରିବର ଭକ୍ତିପୂତ ସାମାନ୍ୟ ପତ୍ର ପୁଷ୍ପ ଫଳରେ ତତୋଽଧିକ ସନ୍ତୋଷ ଲାଭ କରନ୍ତି ।

ଏହି ହେତୁରୁ ଗୀତାର ୧୮ଶ ଅଧ୍ୟାୟର ୧୭ଶ ଶ୍ଳୋକରେ ଭଗବାନ କହିଅଛନ୍ତି—"ଅହଂଭାବ ଦୂର ହୋଇଥିଲେ ଓ ବୁଦ୍ଧି ଶୁଦ୍ଧ-ସାତ୍ତ୍ୱିକ ଗୁଣଯୁକ୍ତ ହୋଇଥିଲେ ଲୋକ ସମସ୍ତଙ୍କୁ ହତ୍ୟାକରି ସୁଦ୍ଧା ପାପଭାଗୀ ହୁଏ ନାହିଁ ।"

ଗୀତାଧର୍ମର ଆଉ ଗୋଟିଏ ବିଶେଷତ୍ୱ ସାର୍ବଜନୀନ ଉଦାରତା । ୪ର୍ଥ ଅଧ୍ୟାୟର ୧୧ଶ ଶ୍ଳୋକରେ ଭଗବାନ କହିଅଛନ୍ତି—

ଯେ ଯଥାମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହଂ
ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ।

"ଯେ ଅମ୍ଭଙ୍କୁ ଯେଉଁ ଭାବରେ ଉପାସନା କରନ୍ତି, ଅମ୍ଭେ ତାଙ୍କୁ ସେହି ଭାବରେ ଫଳ ଦେଉଁ, ହେ ପାର୍ଥ, ଯେ ଯେଉଁ ବାଟରେ ଯାଉ ପଛକେ ମନୁଷ୍ୟ ସର୍ବଦା ଅମ୍ଭ ନିକଟରେହିଁ ପହଞ୍ଚେ ।"

ଯେ ଗଛରେ ସିନ୍ଦୂର ବୋଳି ତାହାକୁ ଈଶ୍ୱର ଜ୍ଞାନରେ ପୂଜା କରେ, ଯେ ଆତ୍ମାକୁ ବ୍ରହ୍ମଜ୍ଞାନ କରି 'ସୋଽହଂ' ଭାବରେ ଉପାସନା କରେ, ଯେ ନିରାକାର ଭାବରେ ଉପାସନା କରେ, ଯେ ସାକାର ଭାବରେ ଉପାସନା କରେ ସେ ସମସ୍ତେ ଈଶ୍ୱରଙ୍କୁ ଲାଭ କରିଥାଆନ୍ତି । ଧର୍ମରେ ଏହି ଅସାଂପ୍ରଦାୟିକ ଉଦାର ଭାବ ଗୀତାର ଗୋଟିଏ ବିଶିଷ୍ଟ ଶିକ୍ଷା । ଏପରି ଅବସ୍ଥାରେ ପ୍ରକୃତ ଧର୍ମପ୍ରାଣ ଲୋକପକ୍ଷରେ କୌଣସି ଧର୍ମକୁ ନିନ୍ଦା କରିବା ସମୀଚୀନ ନୁହେ । ଶୈବ, ଶାକ୍ତ, ଗାଣପତ୍ୟ, ବୈଷ୍ଣବଙ୍କର ପରସ୍ପର ନିନ୍ଦା; ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ ପ୍ରଭୃତି ବିଭିନ୍ନ ଧର୍ମାବଲମ୍ବୀଙ୍କର ପରସ୍ପର ନିନ୍ଦା ଗୀତା ଆଦୌ ସମର୍ଥନ କରେ ନାହିଁ ।

ପୂର୍ବେ କହିଅଛୁଁ ଗୀତା କର୍ମଯୋଗ ଶାସ୍ତ୍ର, ମାନବ ସମାଜ ନିତ୍ୟ କର୍ମ-ପ୍ରବଣ ନ ରହିଲେ ସୃଷ୍ଟିରକ୍ଷା ହେବ ନାହିଁ । ତୃତୀୟ ଅଧ୍ୟାୟର ଦଶମ ଶ୍ଳୋକଠାରୁ ପ୍ରଜାପତିଙ୍କ ଉକ୍ତିରୂପେ ଯଜ୍ଞ କରିବା ପାଇଁ ଯେଉଁ ଉପଦେଶ ପ୍ରଦତ୍ତ ହୋଇଅଛି ସେ ଗୁଡ଼ିକ ଯେ ସୃଷ୍ଟିରକ୍ଷା ପାଇଁ ନିଷ୍କାମ କର୍ମ କରିବାରେ ପ୍ରରୋଚନା ଏହା ତ୍ରସେଠାରେ ବିସ୍ତୃତରୂପେ ଆଲୋଚନା କରି ଯାଇଅଛି । ଏଠାରେ ଏତିକି ମାତ୍ର କହିଲେ ଯଥେଷ୍ଟ ହେବ ଯେ ଏହି ପ୍ରବୃତ୍ତି ମୂଳକ ନିଷ୍କାମ କର୍ମ ତତ୍ତ୍ୱ ପ୍ରଚାର କରିବା ଗୀତାଶାସ୍ତ୍ରର ମୁଖ୍ୟ ଉଦ୍ଦେଶ୍ୟ, ସେହି ନିଷ୍କାମକର୍ମର ସ୍ୱରୂପ କିପରି ଓ ତାହା କି ଭାବରେ ଅନୁଷ୍ଠାନ କରାଯାଏ 'କର୍ମଯୋଗ' ପ୍ରକରଣରେ ତାହା ଆଲୋଚିତ ହୋଇଅଛି; କିନ୍ତୁ ସ୍ମରଣ ରଖିବାକୁ ହେବ—ଯାହାଙ୍କର ଈଶ୍ୱରବିଶ୍ୱାସ ଦୃଢ଼ ସେହି ଏକା କର୍ମଯୋଗରେ ସିଦ୍ଧିଲାଭ କରିପାରନ୍ତି । ସଂସାରରେ ସମସ୍ତେ କର୍ମ କରନ୍ତି । ତହିଁରେ କର୍ତ୍ତୃତ୍ୱାଭିମାନ ବା ବିଷୟାସକ୍ତି ପୂର୍ଣ୍ଣ ମାତ୍ରାରେ ରହିଥାଏ, ଗୀତା ମଧ୍ୟ ନିୟତକର୍ମ କରିବାକୁ ଉପଦେଶ ଦେଉଅଛି, ମାତ୍ର ତାହା ଫଳାକାଙ୍କ୍ଷା ଶୂନ୍ୟ ଶୁଦ୍ଧ ସାତ୍ତ୍ୱିକ କର୍ମ । ଅଣାସ୍ତିମାନେ ସମସ୍ତେ ଯେ ଆଶାନୁରୂପ ଫଳ ଲାଭ କରନ୍ତି ନାହିଁ ଏହା

ସୁବିଦିତ । ଏପରି ଅବସ୍ଥାରେ କର୍ମର ପ୍ରେରକ ଅନ୍ତର୍ଯ୍ୟାମୀଙ୍କଠାରେ କର୍ମଫଳ ସମର୍ପଣ କରି କର୍ମକରିଯିବାରେ କ୍ଷତି କଅଣ ? ବାଲ୍ମୀକି, ବ୍ୟାସ, କାଳିଦାସ ପ୍ରଭୃତି କି ଆଶାରେ ଏତେ ଗ୍ରନ୍ଥ ଲେଖିଥିଲେ ? ଅନ୍ତରର ପ୍ରେରଣାରେ ଯେଉଁମାନେ କର୍ମ କରନ୍ତି, ସେହିମାନେହିଁ ନିଷ୍କାମକର୍ମୀ । ପ୍ରାଚୀନଭାରତୀୟମାନେ ଶୌର୍ଯ୍ୟବୀର୍ଯ୍ୟ, ଜ୍ଞାନବିଜ୍ଞାନ ପ୍ରଭୃତିରେ ଯେଉଁ ଆଦର୍ଶ ଦେଖାଇ ଯାଇ ଅଛନ୍ତି ସେ ସମସ୍ତ ସାତ୍ତ୍ୱିକକର୍ମ ପ୍ରେରଣାର ଫଳ । ଏ ଯୁଗରେ, ପାଶ୍ଚାତ୍ୟ ଦେଶ କର୍ମପ୍ରବଣ ମାତ୍ର ସେମାନଙ୍କର କର୍ମ ଆଧ୍ୟାତ୍ମିକତାଶୂନ୍ୟ ବା ଈଶ୍ୱରବିଶ୍ୱାସବର୍ଜିତ । ସେହି ହେତୁରୁ ସେ ଦେଶ ନିତ୍ୟ ଦ୍ୱନ୍ଦ୍ୱ, ମୋହ ଓ ଅଶାନ୍ତିର ଲୀଳାକ୍ଷେତ୍ର ହୋଇଅଛି । ମାତ୍ର ପ୍ରାଚୀନ ଭାରତ ଯେ ଶାଶ୍ୱତ ଶାନ୍ତିର ଲୀଳାକ୍ଷେତ୍ର ଥିଲା, ପ୍ରାଚୀନ ଇତିହାସହିଁ ଏହାର ସାକ୍ଷୀ । ନିଷ୍କାମକର୍ମର ଅନୁଷ୍ଠାନଦ୍ୱାରା ମନୁଷ୍ୟ ଇହଲୋକରେହିଁ ସ୍ୱର୍ଗୀୟସୁଖ ବା ଦିବ୍ୟଜୀବନର ଆସ୍ୱାଦ ଲାଭ କରିଥାଏ ।

ସଂସାରରେ ରହି ଦିବ୍ୟଜୀବନ ଲାଭ କରିବାକୁ ହେଲେ ଇନ୍ଦ୍ରିୟ ନିଗ୍ରହ ସର୍ବାଦୌ ଶିକ୍ଷଣୀୟ । ଯେଉଁମାନେ ଇନ୍ଦ୍ରିୟନିଗ୍ରହ କରିନାହାନ୍ତି ଧର୍ମରାଜ୍ୟରେ ସେମାନଙ୍କର ପ୍ରବେଶ ଅଧିକାର ନାହିଁ । କର୍ମେନ୍ଦ୍ରିୟମାନଙ୍କୁ ସଂଯତକରି ମନେମନେ ଇନ୍ଦ୍ରିୟଭୋଗ୍ୟ ବିଷୟମାନଙ୍କୁ ସ୍ମରଣକରୁଥିବା ଲୋକଙ୍କୁ ଗୀତାରେ ମିଥ୍ୟାଚାର ବା ଧର୍ମଧ୍ୱଜୀ ନାମରେ ଅଭିହିତ କରାଯାଇଅଛି ( ଗୀ ୩-୬ ) । କାମ, କ୍ରୋଧ ଓ ଲୋଭ ଇହଲୋକରେ ଦିବ୍ୟଜୀବନ ଲାଭର ପ୍ରଧାନ ଅନ୍ତରାୟ, ଏହିମାନେହିଁ ସତ୍ୟ ଏବଂ ଧର୍ମ ପଥରୁ ମନୁଷ୍ୟକୁ ବିଚ୍ୟୁତ କରି ନରକରେ ନିକ୍ଷେପ କରନ୍ତି । ତେଣୁ ସେହି ଶତ୍ରୁମାନଙ୍କୁ ପରାସ୍ତ କଲେ ଚିତ୍ତଶୁଦ୍ଧି ହୁଏ ( ଗୀ ୧୬—୨୧ ) । ଶରୀର ସୁସ୍ଥ ନ ଥିଲେ ଯେପରି କୌଣସି କର୍ମ କରିବାରେ ପ୍ରବୃତ୍ତି ହୁଏ ନାହିଁ, ମନ ପବିତ୍ର ନ ଥିଲେ ବା ଚିତ୍ତ ଶୁଦ୍ଧି ନ ଥିଲେ ସେହିପରି ଆଧ୍ୟାତ୍ମିକ କୌଣସି କର୍ମ ଫଳପ୍ରଦ ହୁଏ ନାହିଁ । ତେଣୁ ଅଧ୍ୟାତ୍ମ ରାଜ୍ୟରେ ପ୍ରବେଶ କରିବା ପୂର୍ବରୁ ଇନ୍ଦ୍ରିୟନିଗ୍ରହ ଓ ଚିତ୍ତଶୁଦ୍ଧି ଆବଶ୍ୟକ । ଚିତ୍ତଶୁଦ୍ଧି ନ ଥିଲେ ସାମ୍ୟ ବୁଦ୍ଧିର ଉଦୟ ହେବ ନାହିଁ । ବୁଦ୍ଧିର ସମତା ପ୍ରଭାବରେ ଲୋକ ଏହି ମରଜଗତରେ ଅମୃତତ୍ୱ ଲାଭ କରିପାରନ୍ତି । ଏହି ଅଭୟ ବାଣୀ ଗୀତାର ସର୍ବତ୍ର ଦେଖାଯାଏ । ମାନ, ଅପମାନ, ଶତ୍ରୁ, ମିତ୍ରରେ ସମଦୃଷ୍ଟି ସାମ୍ୟବୁଦ୍ଧି ଲାଭ ଜାତ ହୋଇପାରେ କି ? ଅଦ୍ୱୈତଭୂମିକାଙ୍କର ଅନୁଭୂତି ନ ହେଲାଯାଏ

ମନୁଷ୍ୟ କେବେହେଲେ ସାମ୍ୟବୁଦ୍ଧିର ଅଧିକାରୀ ହୋଇ ପାରେ ନାହିଁ ।
ଯେଉଁ ଏକ ଅଦୃଶ୍ୟ ଶକ୍ତି ଜଳ ସ୍ଥଳ ଆକାଶ ସର୍ବତ୍ର ବ୍ୟାପି ରହିଅଛନ୍ତି
ତାହାଙ୍କୁହିଁ ଅଦ୍ୱୈତ ବ୍ରହ୍ମ କହନ୍ତି । ଏ ଜ୍ଞାନ ହୃଦୟରେ ଦୃଢ଼ ହେଲେ
ସାଧକ ବିଦ୍ୟାବିନୟସମ୍ପନ୍ନବ୍ରାହ୍ମଣ, ଗୋ, ହସ୍ତୀ, କୁକ୍କୁର ସମସ୍ତଙ୍କୁ ସମ-
ଦୃଷ୍ଟିରେ ଦେଖନ୍ତି ( ଗୀ ୫—୧୮ ); ତାଙ୍କର ଭେଦ ବୁଦ୍ଧି ଦୂର
ହୋଇଯାଏ । ସର୍ବତ୍ର ବ୍ରହ୍ମ ସତ୍ତାର ଅନୁଭୂତହିଁ ବ୍ରହ୍ମଜ୍ଞାନ । ବ୍ରହ୍ମାନୁଭୂତ
ନ ହେବାଯାଏ ଜୀବ ପ୍ରକୃତିର ବନ୍ଧନରୁ ମୁକ୍ତ ହୋଇ ପାରେ ନାହିଁ ।
କିମ୍ବା ନିଷ୍କାମ କର୍ମ କରିବାରେ ପ୍ରବୃତ୍ତ ହୁଏ ନାହିଁ ।

ଏଠାରେ ଆଉ ଗୋଟିଏ କଥା ସ୍ମରଣ ରଖିବାକୁ ହେବ; ମାୟାବାଦୀ ଶଙ୍କରମତାବଲମ୍ବୀ ବେଦାନ୍ତୀମାନେ ବ୍ରହ୍ମଭାବର ଯେଉଁ ବ୍ୟାଖ୍ୟା କରନ୍ତି, ଗୀତୋକ୍ତ ବ୍ରହ୍ମଭାବ ଠିକ୍ ସେପରି ନୁହେ; ମାୟାବାଦୀମାନଙ୍କର ବ୍ରହ୍ମ ନିର୍ଗୁଣ ଓ ନିଷ୍କ୍ରିୟ, ଗୀତାରେ ଅବ୍ୟକ୍ତ ନିର୍ଗୁଣ ନିଷ୍କ୍ରିୟ ବ୍ରହ୍ମଙ୍କର ପ୍ରସଙ୍ଗ ଅଛି ସତ୍ୟ, ମାତ୍ର ସେ ଭାବରେ ଉପାସନା କରିବାକୁ ଭଗବାନ ଉପଦେଶ ଦେଇ ନାହାନ୍ତି (ଗୀ ୨-୫) । ସେ ଭାବରେ କର୍ମର ବା ଭକ୍ତିର ପ୍ରସଙ୍ଗ ମଧ୍ୟ ନାହିଁ । ଗୀତା ମତରେ ସର୍ବବ୍ୟାପୀ ନିତ୍ୟ ପରମାତ୍ମାଙ୍କର ବ୍ୟକ୍ତ ରୂପହିଁ ଉପାସ୍ୟ । ପରମାତ୍ମା କେବଳ ବିଶ୍ୱବ୍ୟାପୀ ନୁହନ୍ତି; ପରନ୍ତୁ ସେ ଜଗତର ସ୍ରଷ୍ଟା, ପିତା, ମାତା, ପିତାମହ, ଗତି, ଭର୍ତ୍ତା, ପ୍ରଭୁ, ସାକ୍ଷୀ, ଶରଣ ଓ ସୁହୃଦ୍ । ଏ ଭାବରେ ଉପାସନା କରିବାହିଁ ଭକ୍ତି । ସାଧକ ଯେତେବେଳେ ସର୍ବତ୍ର ଏବଂ ସର୍ବଦା ବ୍ରହ୍ମ ସତ୍ତା ଅନୁଭବ କରନ୍ତି, ଭକ୍ତିର ସ୍ରୋତ ସେତେବେଳେ ସ୍ୱତଃ ତାଙ୍କ ହୃଦୟ କନ୍ଦରରୁ ନିଃସୃତ ହୁଏ । ଭକ୍ତି ଯଥାର୍ଥତଃ ସ୍ପର୍ଶମଣି; ସ୍ପର୍ଶମଣି ସଂସର୍ଗରେ ଯେପରି ମୁହୂର୍ତ୍ତକ ମଧ୍ୟରେ ଲୁହା ସୁନାରେ ପରିଣତ ହୋଇଥାଏ, ସେହିପରି ଭକ୍ତିର ଉଦୟ ହେଲେ ଅତ୍ୟନ୍ତ ପାପିଷ୍ଠର ହୃଦୟ ମଧ୍ୟ ମୁହୂର୍ତ୍ତମଧ୍ୟରେ ପରମ ଶାନ୍ତିର ଅଧାର ହୋଇ ଉଠେ । ଏଥିପାଇଁ ଭଗବାନ୍ ନବମ ଅଧ୍ୟାୟର ୩୦ଶ ଶ୍ଲୋକରେ କହିଅଛନ୍ତି—

ଅପିଚେତ୍ ସୁଦୁରାଚାରୋ ଭଜତେମାମନନ୍ୟଭାକ୍
ସାଧୁରେବ ସ ମନ୍ତବ୍ୟଃ ସମ୍ୟଗ୍ ବ୍ୟବସିତୋ ହି ସଃ ।

"ଅତି ଦୁରାଚାର ଲୋକ ଯେବେ ଏକାନ୍ତ ଭକ୍ତିରେ ଆମ୍ଭର ଭଜନ କରେ, ତେବେ ତାହାକୁ ସାଧୁ ବୋଲି ମନେ କରିବାକୁ ହେବ ।

କାରଣ ତାଙ୍କର ନିଷ୍ଟସ୍ପୃହିକା ବୃତ୍ତି ଜାଗ୍ରତ ହୋଇଥାଏ ।" ଏହାର ତାତ୍ପର୍ଯ୍ୟ ଏହି ଯେ, ଭକ୍ତିର ଉଦୟ ହେଲେ ପାପାନ୍ଧକାରପୂର୍ଣ୍ଣ ଅନ୍ତଃକରଣ ଆଲୋକିତ ହୋଇଯାଏ, ପାପପ୍ରବୃତ୍ତି ତହିଁରେ ଆଉ ଉଦ୍ରେକ ହୋଇ ପାରେ ନାହିଁ ।

ଗୀତାରେ ମୋକ୍ଷ ବା ଈଶ୍ୱର ପ୍ରାପ୍ତିର ନାନା ଉପାୟ ଅଲୋଚିତ ହୋଇଥିଲେହେଁ ସେସବୁ ମଧ୍ୟରେ ଭକ୍ତିର ସ୍ଥାନ ସର୍ବଶ୍ରେଷ୍ଠ ବୋଲି ମନେ ହୁଏ । ଅଦ୍ୱୈତଜ୍ଞାନ କହ, ନିଷ୍କାମ କର୍ମଯୋଗ କହ, ଚିତ୍ତବୃତ୍ତି ନିରୋଧରୂପ ପାତଞ୍ଜଳ ଯୋଗ କହ—ସେସବୁ ପାଇଁ ତୀକ୍ଷ୍ଣ ମେଧା, ସମତ୍ୱଜ୍ଞାନ ଓ ନିତ୍ୟ ଅଭ୍ୟାସ ଅବଶ୍ୟକ ହୋଇଥାଏ । ମାତ୍ର ଭକ୍ତିପାଇଁ ଏକମାତ୍ର ଦୃଢ଼ବିଶ୍ୱାସ ଲୋଡ଼ା । ବିଶ୍ୱାସ ଥରେ ଦୃଢ଼ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇଗଲେ, ଭକ୍ତିର ସ୍ରୋତ ହୃଦୟରେ ଅଜୀବନ ପ୍ରବାହିତ ହେଉଥାଏ ।

ଭକ୍ତି ମାର୍ଗର ଆଉ ଗୋଟିଏ ବିଶିଷ୍ଟତା ଏହି ଯେ, ସମାଜର ପ୍ରତ୍ୟେକ ଶ୍ରେଣୀର ଲୋକ ଏହି ମାର୍ଗ ଅବଲମ୍ବନ କରି ମୁକ୍ତିର ଅଧିକାରୀ ହୁଅନ୍ତି । ବେଦୋକ୍ତ କର୍ମକାଣ୍ଡ ମାର୍ଗରେ, ଉପନିଷଦର ଜ୍ଞାନମାର୍ଗରେ ବ୍ରାହ୍ମଣାଦି ତିନିବର୍ଣ୍ଣଙ୍କରହିଁ ଅଧିକାର । ମାତ୍ର ଭକ୍ତିମାର୍ଗରେ ସମସ୍ତଙ୍କ ଅଧିକାର ସମାନ; ଏଥିପାଇଁ ଭକ୍ତିମାର୍ଗର ବର୍ଣ୍ଣନାରେ ଭଗବାନ ନବମ ଅଧ୍ୟାୟର ୩୨ଶ ଶ୍ଳୋକରେ କହିଅଛନ୍ତି—

ମାଂହି ପାର୍ଥ ବ୍ୟପାଶ୍ରିତ୍ୟ ଯେଽପି ସ୍ୟୁଃ ପାପଯୋନୟଃ
ସ୍ତ୍ରିୟୋ ବୈଶ୍ୟା ସ୍ତଥା ଶୂଦ୍ରାସ୍ତେଽପି ଯାନ୍ତି ପରାଂଗତିମ୍ ।

ଭକ୍ତିମାର୍ଗରେ ପଥିକ ହେଲେ ସ୍ତ୍ରୀ, ବୈଶ୍ୟ, ଶୂଦ୍ର ଓ ଅନ୍ତ୍ୟଜାଦି ସମସ୍ତ ଜାତି ପରମଗତି ପ୍ରାପ୍ତ ହୁଅନ୍ତି । ଏଥିରୁ ବୋଧ ହେଉଅଛି ଯେ, ଜ୍ଞାନବଳରେ ବ୍ରାହ୍ମଣାଦି ବର୍ଣ୍ଣର ଅନ୍ତଃକରଣ ଯେପରି ଶୁଦ୍ଧ ହୁଏ, ଧ୍ୟାନବଳରେ ଯୋଗୀମାନଙ୍କର ହୃଦ୍‌ବୃତ୍ତି ଯେପରି ପବିତ୍ର ହୁଏ, ଭକ୍ତି ବଳରେ ସ୍ତ୍ରୀ, ଶୂଦ୍ର, ପାପୀମାନଙ୍କର ଅନ୍ତର ମଧ୍ୟ ସେହିପରି ନିର୍ମଳ ହୋଇଥାଏ । ଗୀତୋକ୍ତ ଭକ୍ତିମାର୍ଗର ଏହି ସାମର୍ଥ୍ୟ ପ୍ରତି ଦୃଷ୍ଟି ରଖି ଭଗବାନ ଉପସଂହାରସ୍ୱରୂପ ୧୮ଶ ଅଧ୍ୟାୟରେ କହିଅଛନ୍ତି, "ସବୁ ଧର୍ମ ଛାଡ଼ି ତୁମ୍ଭେ ଏକାନ୍ତ ଭାବରେ ଆମ୍ଭର ଶରଣ ନିଅ, ଆମ୍ଭେ ତୁମ୍ଭଙ୍କୁ ସର୍ବପାପରୁ ମୁକ୍ତ କରିବୁ, ଭୀତ ହୁଅ ନାହିଁ ।" ତେଣୁ ବୋଧ

ହେଉଅଛି ଗୀତୋକ୍ତ ଧର୍ମ ଭକ୍ତି ପ୍ରଧାନ । ଭକ୍ତ ଯେତେବେଳେ ତାଙ୍କର ଶରଣାପନ୍ନ ହେବ, ସେତେବେଳେ ସିନା ସେ ନିର୍ଭୟ ହୋଇ କହି-ପାରିବ—

ଅସୁ ବ୍ୟାଘ୍ର, ଅସୁ ସର୍ପ, ଅସୁ ବା ଘାତକ
ଅନ୍ତର୍ଯ୍ୟାମୀ ସବୁଠାରେ ମୋହର ରକ୍ଷକ ।

ଏହାହିଁ ଭଗବତ୍ ଶରଣାଗତି; "ମୁଁ ତୁମ୍ଭର, ତୁମ୍ଭେ ମୋର ଏକମାତ୍ର ଗତି, ପ୍ରଭୋ ! ରକ୍ଷା କର"—ଏହି ଭାବ ଅବଲମ୍ବନ କରି ଏକାନ୍ତ ଭାବରେ ଆତ୍ମସମର୍ପଣ କରିବା ଗୀତାର ଶେଷ ଉପଦେଶ । ଏହି ଭାବ ଯେତେବେଳେ ପରିପୂର୍ଣ୍ଣ ଅବସ୍ଥାରେ ପହଞ୍ଚେ, ସେତେବେଳେ ଉପାସ୍ୟ ଓ ଉପାସକ ମଧ୍ୟରେ ଆଉ ପ୍ରଭେଦ ଜ୍ଞାନ ରହେ ନାହିଁ । ବ୍ରଜଲୀଳାରେ ଗୋପୀମାନେ ଯେତେବେଳେ କୃଷ୍ଣ-ପ୍ରେମରସରେ ବିହ୍ୱଳ ହୋଇ ପଡ଼ିଥିଲେ, ସେତେବେଳେ ସେମାନଙ୍କ ହୃଦୟରୁ ସ୍ୱତଃ ବାହାରି ପଡ଼ିଥିଲା—'ମୁଁ କୃଷ୍ଣ', 'ମୁଁ କୃଷ୍ଣ' ( କୃଷ୍ଣୋଽହ ମିତ୍ୟୁପରି ) । ଏହାହିଁ ଭକ୍ତିର ପରିଣାମ । ଏହାହିଁ ବ୍ରହ୍ମଜ୍ଞାନୀଙ୍କର 'ସୋଽହମ୍' ଉକ୍ତି ।

ଉପାସନାହିଁ ଭକ୍ତିର ପ୍ରାଣ । କି ପ୍ରଣାଳୀରେ ଉପାସନା କରିବାକୁ ହେବ—ଗୀତାର ନାନାସ୍ଥାନରେ ଏହାର ବର୍ଣ୍ଣନା ଅଛି । ଚିତ୍ତ ସ୍ଥିର ନ ହେବାଯାଏ ଉପାସନାର ପ୍ରକୃତ ମାଧୁର୍ଯ୍ୟ ଅନୁଭୂତ ହୁଏ ନାହିଁ; ତେଣୁ ଗୀତାର ଷଷ୍ଠ ଅଧ୍ୟାୟରେ ପତଞ୍ଜଳି ଯୋଗ ମାର୍ଗରେ ଚିତ୍ତକୁ ସ୍ଥିର କରିବାର ଉପାୟ ବର୍ଣ୍ଣିତ ହୋଇଅଛି । ମାତ୍ର ସେ ଭାବରେ ଚିତ୍ତ ସ୍ଥିର କରିବା ସହଜ ନୁହେ; ଅଭ୍ୟାସ ଓ ବୈରାଗ୍ୟ ଦ୍ୱାରା ସାଧକ ତହିଁରେ ସିଦ୍ଧିଲାଭ କରି ପାରନ୍ତି, ମାତ୍ର ସାଧାରଣ ଲୋକଙ୍କ ପକ୍ଷରେ ଯେଉଁ ଭାବରେ ଉପାସନା ସହଜ ଓ ସୁଗମ ତାହା ଦ୍ୱାଦଶ ଅଧ୍ୟାୟରେ ପ୍ରଦର୍ଶିତ ହୋଇଅଛି । ଶ୍ରଦ୍ଧା ବା ବିଶ୍ୱାସ ଏ ମାର୍ଗର ପ୍ରଧାନ କଥା । ବିଶ୍ୱାସପୂର୍ଣ୍ଣ ଦୃଷ୍ଟିରେ ସର୍ବତ୍ର ଭଗବତ୍‌ସତ୍ତା ଅନୁଭବ କଲେ ଯେଉଁ ଅବସ୍ଥା ଆସିବ ସେହି ଅବସ୍ଥାରେହିଁ ଉପାସନା ଆରମ୍ଭ କରିବାକୁ ହେବ, ସେ ଅବସ୍ଥାରେ ମନ ଯୁକ୍ତହୋଇ ରହିବା ଅଭ୍ୟାସସାପେକ୍ଷ । ଯେବେ ଅଭ୍ୟାସରେ ସାଧକ ଅସମର୍ଥ ହୁଅନ୍ତି ତେବେ ସେ ନିତ୍ୟ ଭଗବତ୍‌କର୍ମ କରିବେ । ଏହି ଭଗବତ୍ କର୍ମ କଅଣ ? ନିଃସ୍ୱାର୍ଥ ଚିତ୍ତରେ ଯଥାଶକ୍ତି ପରର ଉପକାର କରିବା ସର୍ବଶ୍ରେଷ୍ଠ ଭଗବତ୍ କର୍ମ । ସବୁ ଯୁଗରେ ପୃଥିବୀର ସବୁ ଧର୍ମରେ ଦାନର ଯେଉଁ ମାହାତ୍ମ୍ୟ କୀର୍ତ୍ତିତ ହୋଇଅଛି ତାହା ପରୋପକାର

ଭକ୍ତି ଅନ୍ୟ କିଛି ନୁହେ । ଏହି ପରୋପକାର ପ୍ରବୃତ୍ତି ଫଳାକାଂକ୍ଷା ଶୂନ୍ୟ, ନିଃସ୍ୱାର୍ଥ ହେଲେ ତାହାକୁହିଁ ସାତ୍ତ୍ୱିକଦାନ କୁହାଯାଏ । ସାତ୍ତ୍ୱିକ ଭାବହିଁ ଲୋକକୁ ଈଶ୍ୱରଭକ୍ତିଶୀଳ କରାଏ । ଧର୍ମଶାସ୍ତ୍ରପାଠ, ସତ୍‌ସଙ୍ଗ ମଧ୍ୟ ଭଗବତ୍‌କର୍ମର ଅନ୍ତର୍ଗତ । ସାକାର ଉପାସକ ମାନଙ୍କର ଭଗବତ୍‌କର୍ମ ନାନାବିଧ; ବିଭିନ୍ନ ଉପଚାରରେ ସାକାର ମୂର୍ତ୍ତିଙ୍କ ପୂଜା, ଧ୍ୟାନ, ଏବଂ ଉପବାସ ପ୍ରଭୃତି ସେମାନଙ୍କ ପକ୍ଷରେ ଭଗବତ୍‌କର୍ମ । ସାକାର ଉପାସକ ବା ମୂର୍ତ୍ତିପୂଜକମାନେ ସର୍ବଦା ମନେ ରଖିବେ ଯେ, ମୂର୍ତ୍ତି ପ୍ରକୃତ ଭଗବାନ୍ ନୁହନ୍ତି; ମନର ସ୍ଥିରତା ସମ୍ପାଦନ ପାଇଁ ବିଶ୍ୱବ୍ୟାପୀ ଭଗବାନଙ୍କର ଅବାଙ୍ମନସ ମୂର୍ତ୍ତିରେ ଅରୋପିତ କରାଯାଏ ମାତ୍ର । ଏ ଭାବ ନ ଆସିଲେ ସାକାର ଉପାସନା 'ପିତ୍ତଳା ପୂଜାରେ' ପରିଣତ ହୋଇଥାଏ । ସେହି ହେତୁରୁ ବୃହତ୍ ନାରଦୀୟ ପୁରାଣରେ କୁହା ଯାଇଅଛି, "ଅଜ୍ଞା ମନ୍ୟନ୍ତି ବିଶ୍ୱେଶଂ ପାଷାଣାଦିଷୁ ସର୍ବଦା" । ଭଗବାନ୍ କେବଳ ମୂର୍ତ୍ତିରେ ନ ଥାନ୍ତି; ପରନ୍ତୁ ଥାଆନ୍ତି ସକଳ ଭୂତରେ । ତେଣୁ ସର୍ବଭୂତର ଉପାସନାହିଁ ପ୍ରକୃତ ଭଗବତ୍ ଉପାସନା । ଷଷ୍ଠ ଅଧ୍ୟାୟର ୩୧ମ ଶ୍ଳୋକରେ ତେଣୁ ଭଗବାନ କହିଅଛନ୍ତି, 'ସର୍ବଭୂତସ୍ଥିତଂ ଯୋ ମାଂ ଭଜତ୍ୟେକତ୍ୱ ମାସ୍ଥିତଃ' ଅର୍ଥାତ୍ ଭଗବାନ ସର୍ବଭୂତରେ ଅଛନ୍ତି—ଏହି ଏକତ୍ୱ ଉପଲବ୍ଧିକର ଅର୍ଥାତ୍—'ସକଳ ଭୂତେ ନାରାୟଣ, ବସନ୍ତି ଅନାଦି କାରଣ' ଏହି ଜ୍ଞାନରେ ଯେ ସକଳ ଜୀବର ଉପକାର କରନ୍ତି, ସେ ସର୍ବଥା ଭଗବଦ୍ କର୍ମହିଁ କରି ଥାଆନ୍ତି । କେବଳ ଗୀତୋକ୍ତ ଧର୍ମରେ ନୁହେ; ଜୈନ ଓ ବୌଦ୍ଧ ଧର୍ମରେ ମଧ୍ୟ ଏହି ପରୋପକାର ବା 'ଜୀବେ ଦୟା' ପରମ ଧର୍ମ-କର୍ମ ବୋଲି ବିବେଚିତ ହୁଏ ।

ଏକାନ୍ତନିଷ୍ଠା ସହକାରେ କର୍ତ୍ତବ୍ୟ କର୍ମ ସମ୍ପାଦନ କରିବା ଗୀତାର ଅଭ୍ୟ ଗୋଟିଏ ବିଶିଷ୍ଟ ଶିକ୍ଷା । ଗୀତା ରଚିତ ହେବା କାଳରେ ଏ ଦେଶରେ ବର୍ଣ୍ଣାଶ୍ରମ ଧର୍ମ ପ୍ରଚଳିତ ଥିଲା । ତେଣୁ ପ୍ରତ୍ୟେକ ବର୍ଣ୍ଣର ଲୋକଙ୍କ ପାଇଁ ଗୁଣାନୁରୂପ ନିର୍ଦ୍ଦିଷ୍ଟ ହୋଇଥିବା କର୍ମକୁ 'ସ୍ୱଭାବନିୟତ କର୍ମ' କୁହା ଯାଉଥିଲା । କାଳ ପରିବର୍ତ୍ତନରେ ଏ ଦେଶରୁ ଆଶ୍ରମ ଧର୍ମର ଲୋପ ହୋଇଅଛି । ତେଣୁ ଏ କାଳରେ ଯେଉଁ ଲୋକ ସ୍ୱୀୟ ପ୍ରକୃତି ଓ ପରିସ୍ଥିତି ଅନୁସାରେ ଯେଉଁ କର୍ମକୁ ନିଜ କର୍ତ୍ତବ୍ୟରୂପେ ଗ୍ରହଣ କରିଅଛି, ତାହାହିଁ ତାହାର ସ୍ୱଭାବ ନିୟତ କର୍ମ । ଗୀତା ପୃଥିବୀର ସାର୍ବଜନୀନ ଧର୍ମଗ୍ରନ୍ଥ । ପୃଥିବୀର ଅନ୍ୟ ଧର୍ମାବଲମ୍ବୀଙ୍କ ପକ୍ଷରେ କର୍ତ୍ତବ୍ୟ

କର୍ମହିଁ ସ୍ୱଭାବନିୟତ କର୍ମ । ଏହି ସ୍ୱଭାବନିୟତକର୍ମ ବା କର୍ତ୍ତବ୍ୟକର୍ମ ନିଷ୍କାମ ଭାବରେ ଏବଂ ଏକାନ୍ତ ନିଷ୍ଠା ସହକାରେ ଅନୁଷ୍ଠିତ ନ ହେଲେ, ଲୋକସଂଗ୍ରହ ବା ସୃଷ୍ଟିବ୍ୟାପାର ରହିପାରେ ନାହିଁ । ତେଣୁ କର୍ତ୍ତବ୍ୟ ସମ୍ପାଦନହିଁ ଭଗବତ୍ କର୍ମ ଏବଂ ବିଶ୍ୱଲୀଳାର ପ୍ରବର୍ତ୍ତକ ବିଶ୍ୱେଶ୍ୱରଙ୍କର ଉପାସନା ।

ଗୀତାର ଅନେକ ସ୍ଥାନରେ ଯଜ୍ଞର ମାହାତ୍ମ୍ୟ କୀର୍ତ୍ତିତ ହୋଇଅଛି, ଏହି ଯଜ୍ଞ ଯେ ତ୍ୟାଗର ନାମାନ୍ତର ଏହା ଯଥାସ୍ଥାନରେ ଆଲୋଚିତ ହୋଇଅଛି । ଯେଉଁ ଜୀବନରେ ତ୍ୟାଗର ପ୍ରବୃତ୍ତି ନାହିଁ, ସେହି ସ୍ୱାର୍ଥପୂର୍ଣ୍ଣ ଜୀବନରେ ଈଶ୍ୱରପ୍ରୀତିର ସ୍ଥାନ ନ ଥାଏ । ଗୀତାର ତ୍ୟାଗ ଅବଶ୍ୟ କର୍ମତ୍ୟାଗ ନୁହେ, ଏହା ସ୍ୱାର୍ଥ ତ୍ୟାଗ । ଭାରତୀୟ ଧର୍ମର ଇତିହାସରେ ସ୍ୱାର୍ଥତ୍ୟାଗର ଯେଉଁ ସବୁ ସମୁଜ୍ଜ୍ୱଳ ଚିତ୍ର ଅଙ୍କିତ ହୋଇ ରହିଅଛି ଏପର୍ଯ୍ୟନ୍ତ ସେସବୁ ଆମ୍ଭମାନଙ୍କୁ ଧର୍ମଭାବରେ ଉଦ୍‌ବୁଦ୍ଧ କରୁଅଛି, ତ୍ୟାଗ ଶୂନ୍ୟ ମାନବଜୀବନ ଓ ପଶୁପକ୍ଷୀ ପ୍ରଭୃତି ଇତର ଜୀବନ ମଧ୍ୟରେ ବିଶେଷ କିଛି ପ୍ରଭେଦ ନ ଥାଏ; ତେଣୁ ନିତ୍ୟ ତ୍ୟାଗର ଅନୁଶୀଳନ ଭଗବତ୍ କର୍ମର ଅନ୍ତର୍ଗତ । କର୍ମର ଫଳତ୍ୟାଗହିଁ ନିଷ୍କାମ କର୍ମ । ତ୍ୟାଗୀ ନ ହେଲେ ଲୋକ ଭଗବଦ୍ ଭକ୍ତ ହୋଇପାରେ ନାହିଁ ।

ଗୀତାର ଅଠର ଅଧ୍ୟାୟରେ ଜ୍ଞାନ, କର୍ମ ଓ ଭକ୍ତିର ଯେଉଁ ସାମଞ୍ଜସ୍ୟ ବିଧାନ କରାଯାଇଅଛି ତାହାର ମୂଳସୂତ୍ର ଈଶ୍ୱର ବିଶ୍ୱାସ । ଏହି ଗୋଟିଏ ସୂତ୍ର ଦ୍ୱାରା ପରସ୍ପର ବିରୁଦ୍ଧ ନାନା ମତବାଦମାନଙ୍କର ବିରୋଧ ଖଣ୍ଡନ କରି ଗୀତା କେବଳ ଭାରତରେ ନୁହେ ସମଗ୍ର ପୃଥିବୀର ଧର୍ମଶାସ୍ତ୍ର ମାନଙ୍କ ମଧ୍ୟରେ ଶୀର୍ଷସ୍ଥାନ ଅଧିକାର କରିଅଛି । ମରଣଶୀଳ ଶରୀରର ଧ୍ୱଂସ ପରେ ଜୀବାତ୍ମାର ପୁନର୍ଜନ୍ମ ନ ହୋଇ ଅମୃତତ୍ୱ ଲାଭ କରିବାର ନାମ ମୁକ୍ତି ବା ମୋକ୍ଷ; ଗୀତାରେ ଏହା ସ୍ୱୀକୃତ ହୋଇଅଛି, କିନ୍ତୁ ଭଗବାନ୍ ଗୀତାରେ ଇହଲୋକରେ ଜୀବନ ତ୍ୟାଗ ପୂର୍ବରୁ ସାଧକ କିପରି ସେହି ଅମୃତର ସ୍ୱାଦ ଲାଭ କରିପାରିବ ତାହାର ଯଥେଷ୍ଟ ସୂଚନା ଦେଇଅଛନ୍ତି । ଗୀତାରେ ସର୍ବତ୍ର ସିଦ୍ଧାବସ୍ଥାର ବର୍ଣ୍ଣନା ପ୍ରସଙ୍ଗରେ 'ମଦ୍‌ଭାବ ମାଗତାଃ', 'ମଦ୍‌ଭାବାୟୋପପଦ୍ୟତେ', 'ମମସାଧର୍ମ୍ୟ ମାଗତାଃ' ଇତ୍ୟାଦି ଭଗବାନ୍ କହିଅଛନ୍ତି । ଏଥିରୁ ଜଣାଯାଏ ସାଧନା ବଳରେ ଲୋକ ଇହଜୀବନରେହିଁ ଭଗବାନଙ୍କଠାରେ ଯେଉଁ ଯେଉଁ ଗୁଣ ଅଛି, ସେସବୁ ଗୁଣର ଅଧିକାରୀ ହୋଇପାରେ । 'ଜୀବୋ ବ୍ରହ୍ମୈବ ନାପରଃ',

ଜୀବ ବ୍ରହ୍ମଭିନ୍ନ ଅନ୍ୟ କିଛି ନୁହେ, ବେଦାନ୍ତର ଏହି ସୁପ୍ରସିଦ୍ଧ ଉକ୍ତି ଏହି ମହାଭାବର ସୂଚନା । 'ସଚ୍ଚିଦାନନ୍ଦମୟଂ ବ୍ରହ୍ମ'—ସାଧନ ବଳରେ ଲୋକ ସତ୍, ଚିତ୍, ଆନନ୍ଦମୟ ହୋଇପାରେ । ବ୍ରହ୍ମଙ୍କର 'ସତ୍' ଭାବ ଦ୍ୱାରା ବିଶ୍ୱ-ବ୍ରହ୍ମାଣ୍ଡର ବିକାଶ ହୋଇଅଛି, ଚିତ୍‌ଭାବଦ୍ୱାରା ବିଶ୍ୱରେ ଚେତନାର ସଞ୍ଚାର ହୋଇଅଛି (ଯେନ ଚେତୟତେ ବିଶ୍ୱମ୍) ଏବଂ ଆନନ୍ଦଭାବଦ୍ୱାରା ଜଗତ୍-ସୃଷ୍ଟି ଆନନ୍ଦମୟ ହୋଇଅଛି । ଜୀବଠାରେ ଯେଉଁ କର୍ମଶକ୍ତି ଅଛି ତାହା 'ସତ୍'ଭାବର କ୍ରିୟା, ଯେଉଁ ଜ୍ଞାନଶକ୍ତି ଅଛି ତାହା 'ଚିତ୍'ଭାବର କ୍ରିୟା ଓ ଯେଉଁ ଇଚ୍ଛା ଶକ୍ତି ଅଛି ତାହା 'ଆନନ୍ଦ'ଭାବର କ୍ରିୟା । କର୍ମଶକ୍ତି ଚେଷ୍ଟାଦ୍ୱାରା, ଜ୍ଞାନଶକ୍ତି ଭାବନାଦ୍ୱାରା ଓ ଇଚ୍ଛାଶକ୍ତି କାମନାଦ୍ୱାରା ପ୍ରକାଶିତ ହୁଏ । ଜୀବର ଏହି ତିନିଗୋଟି ଶକ୍ତି ବ୍ରହ୍ମଙ୍କ ଶକ୍ତିର ଅନୁରୂପ, ମାତ୍ର ଜୀବଠାରେ ଏହା ଅସ୍ଫୁଟ ବା ଅପ୍ରକାଶିତ ଅବସ୍ଥାରେ ଥାଏ । ସାଧନବଳରେ ଏହି ଶକ୍ତିତ୍ରୟ ବିକାଶ ପ୍ରାପ୍ତହେଲେ ଜୀବ ଈଶ୍ୱର-ଭାବାପନ୍ନ ହୁଏ—ଏହା ନିଃସନ୍ଦେହ । ଏହି ଅବସ୍ଥାର ନାମ ଜୀବନ୍ମୁକ୍ତ ଅବସ୍ଥା; ଜୀବନ୍ମୁକ୍ତ ଭଗବଦ୍‌ଭକ୍ତର ଯେଉଁ ଆଦର୍ଶ ଚିତ୍ର ଗୀତା ପଞ୍ଚଦଶ ଅଧ୍ୟାୟର ପଞ୍ଚମ ଶ୍ଳୋକରେ ଭଗବାନ୍ ଦେଇଅଛନ୍ତି ତାହାର ଭାବ ଅନୁଧ୍ୟାନ କଲେ ପୂର୍ବୋକ୍ତ ଉକ୍ତିର ସାର୍ଥକତା ପ୍ରତିପାଦିତ ହେବ ।

ନିର୍ମାନମୋହା ଜିତସଙ୍ଗଦୋଷାଃ,
ଅଧ୍ୟାତ୍ମନିତ୍ୟା ବିନିବୃତ୍ତକାମାଃ ।
ଦ୍ୱନ୍ଦ୍ୱୈର୍ବିମୁକ୍ତାଃ ସୁଖଦୁଃଖସଂଜ୍ଞୈ-
ର୍ଗଚ୍ଛନ୍ତ୍ୟମୂଢ଼ାଃ ପଦମବ୍ୟୟଂ ତତ୍ ।

ଯେଉଁମାନଙ୍କର ଅଭିମାନ ଓ ମୋହ ନାହିଁ, ଯେଉଁମାନେ ବିଷୟ ଆସକ୍ତି ଜୟ କରିଅଛନ୍ତି, ଯେଉଁମାନେ ଅଧ୍ୟାତ୍ମ ଜ୍ଞାନରେ ସର୍ବଦା ସ୍ଥିର ଥାଆନ୍ତି, ଯେଉଁମାନେ କାମନାତ୍ୟାଗ କରିଅଛନ୍ତି ଏବଂ ଯେଉଁମାନଙ୍କୁ ସୁଖ ବା ଦୁଃଖ ଅଭିଭୂତ କରିପାରେ ନାହିଁ ସେହି ଜ୍ଞାନବାନ୍ ପୁରୁଷ ମାନେହିଁ ଅବ୍ୟୟ ପଦ ପ୍ରାପ୍ତ ହୁଅନ୍ତି ।

ଏହାହିଁ ମର୍ତ୍ତ୍ୟରେ ଦିବ୍ୟ ଜୀବନ; ଏହିମାନେହିଁ ମର୍ତ୍ତ୍ୟରେ ରହି ଅମୃତର ଆସ୍ୱାଦଲାଭ କରନ୍ତି ।

ଓଁ ତତ୍‌ସତ୍ ।

---

ଓଁ ନମଃ ପରମାତ୍ମନେ ।

## ଗୀତାର ପ୍ରାରମ୍ଭ ।

ଶ୍ରୀମଦ୍ ଭଗବଦ୍‌ଗୀତା ପ୍ରାରଭ୍ୟତେ ।

ଓଁ ଅସ୍ୟ ଶ୍ରୀ ମଦ୍ ଭଗବଦ୍ ଗୀତା ମାଲମନ୍ତ୍ରସ୍ୟ, ଶ୍ରୀ ଭଗବାନ୍ ବେଦବ୍ୟାସଃ ଋଷିଃ, ଅନୁଷ୍ଟୁପ୍ ଛନ୍ଦଃ, ଶ୍ରୀକୃଷ୍ଣଃ ପରମାତ୍ମା ଦେବତା, 'ଅଶୋଚ୍ୟାନନ୍ୱଶୋଚସ୍ତ୍ୱଂ ପ୍ରଜ୍ଞାବାଦାଂଶ୍ଚ ଭାଷସେ' ( ୨ୟ ଅଧ୍ୟାୟ ୧୧ଶ ଶ୍ଲୋକର ପ୍ରଥମାର୍ଦ୍ଧ ) ଇତିବୀଜଂ, 'ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ' ( ୧୮ଶ ଅଧ୍ୟାୟ ୬୬ ଶ୍ଲୋକର ପ୍ରଥମାର୍ଦ୍ଧ ) ଇତିଶକ୍ତିଃ, 'ଅହଂତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମାଶୁଚଃ' ( ୧୮ଶ ଅଧ୍ୟାୟ ୬୬ ଶ୍ଲୋକର ଦ୍ୱିତୀୟାର୍ଦ୍ଧ ) ଇତି କୀଳକମ୍, ଶ୍ରୀକୃଷ୍ଣ ପ୍ରୀତ୍ୟର୍ଥେ ପାଠେ ବିନିଯୋଗଃ ।

କରନ୍ୟାସଃ—'ନୈନଂଛିନ୍ଦନ୍ତି ଶସ୍ତ୍ରାଣି ନୈନଂଦହତି ପାବକଃ' ( ୨ୟ ଅଧ୍ୟାୟ ୨୩ ଶ୍ଲୋକର ପ୍ରଥମାର୍ଦ୍ଧ ) ଇତ୍ୟଙ୍ଗୁଷ୍ଠାଭ୍ୟାଂନମଃ, 'ନଚୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ' ( ୨ୟ ଅଧ୍ୟାୟ ୨୩ ଶ୍ଲୋକର ଦ୍ୱିତୀୟାର୍ଦ୍ଧ ) ଇତି ତର୍ଜନୀଭ୍ୟାଂ ନମଃ, 'ଅଚ୍ଛେଦ୍ୟୋଽୟମଦାହ୍ୟୋଽୟ ମକ୍ଲେଦ୍ୟୋଽଶୋଷ୍ୟ ଏବଚ' ( ୨ୟ ଅଧ୍ୟାୟ ୨୪ ଶ୍ଲୋକର ପ୍ରଥମାର୍ଦ୍ଧ ) ଇତି ମଧ୍ୟମାଭ୍ୟାଂ ନମଃ, 'ନିତ୍ୟଃ ସର୍ବଗତଃ ସ୍ଥାଣୁରଚଳୋଽୟଂ ସନାତନଃ' ( ୨ୟ ଅଧ୍ୟାୟ ୨୪ ଶ୍ଲୋକର ଦ୍ୱିତୀୟାର୍ଦ୍ଧ ) ଇତ୍ୟ ନାମିକାଭ୍ୟାଂ ନମଃ, 'ପଶ୍ୟ ମେ ପାର୍ଥ ରୂପାଣି ଶତଶୋଽଥ ସହସ୍ରଶଃ' ( ୧୧ଶ ଅଧ୍ୟାୟ ୫ମ ଶ୍ଲୋକର ପ୍ରଥମାର୍ଦ୍ଧ ) ଇତି କନିଷ୍ଠାଭ୍ୟାଂ ନମଃ, 'ନାନାବିଧାନି ଦିବ୍ୟାନି ନାନାବର୍ଣ୍ଣାକୃତୀନିଚ' ( ୧୧ଶ ଅଧ୍ୟାୟ ୫ମ ଶ୍ଲୋକର ଦ୍ୱିତୀୟାର୍ଦ୍ଧ )ଇତି କରତଳକରପୃଷ୍ଠାଭ୍ୟାଂ ନମଃ ଇତି କରନ୍ୟାସଃ ।

ଅଙ୍ଗନ୍ୟାସଃ—'ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ' ଇତି ହୃଦୟାୟ ନମଃ, 'ନଚୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ' ଇତି ଶିରସେ ସ୍ୱାହା, 'ଅଚ୍ଛେଦ୍ୟୋଽୟମଦାହ୍ୟୋଽୟ ମକ୍ଲେଦ୍ୟୋଽଶୋଷ୍ୟ ଏବଚ' ଇତି ଶିଖାୟୈ ବଷଟ୍, 'ନିତ୍ୟଃ ସର୍ବଗତଃ ସ୍ଥାଣୁରଚଲୋଽୟଂ ସନାତନଃ' ଇତି କବଚାୟ ହୁମ୍, 'ପଶ୍ୟ ମେ ପାର୍ଥ ରୂପାଣି ଶତଶୋଽଥ ସହସ୍ରଶଃ' ଇତି ନେତ୍ରତ୍ରୟାୟ ବୌଷଟ୍, 'ନାନାବିଧାନି ଦିବ୍ୟାନି ନାନାବର୍ଣ୍ଣାକୃତୀନି ଚ ଇତି ଅସ୍ତ୍ରାୟ ଫଟ୍ ।' ଇତି ଅଙ୍ଗନ୍ୟାସଃ ।

## ଅଥଧ୍ୟାନମ୍

ଓଁ ପାର୍ଥାୟ ପ୍ରତିବୋଧିତାଂ ଭଗବତା ନାରାୟଣେନ ସ୍ୱୟଂ,
ବ୍ୟାସେନ ଗ୍ରଥିତାଂ ପୁରାଣମୁନିନା ମଧ୍ୟେ ମହାଭାରତେ ।
ଅଦ୍ୱୈତାମୃତବର୍ଷିଣୀଂ ଭଗବତୀ ମଷ୍ଟାଦଶାଧ୍ୟାୟିନୀ—
ମମ୍ବ ତ୍ୱା ମନୁସନ୍ଦଧାମି ଭଗବଦ୍‌ଗୀତେ ଭବଦ୍ୱେଷିଣୀମ୍ । ୧ ।

ନମୋଽସ୍ତୁତେ ବ୍ୟାସ ବିଶାଳବୁଦ୍ଧେ
ଫୁଲ୍ଲାରବିନ୍ଦାୟତପତ୍ରନେତ୍ର ।
ଯେନ ତ୍ୱୟା ଭାରତତୈଳପୂର୍ଣ୍ଣଃ
ପ୍ରଜ୍ୱାଳିତୋ ଜ୍ଞାନମୟଃ ପ୍ରଦୀପଃ । ୨ ।

୧ । **ଅନ୍ୱୟାନୁରୂପ ଅର୍ଥ**—ଅମ୍ବ (ହେ ମା) ଭଗବଦ୍‌ଗୀତେ (ଭଗବଦ୍ ଗୀତା) ଭଗବତା (ଭଗବାନ୍) ନାରାୟଣେନ (ଶ୍ରୀକୃଷ୍ଣଙ୍କଦ୍ୱାରା) ସ୍ୱୟଂ ( ସାକ୍ଷାତ୍ ) ପାର୍ଥାୟ ( ଅର୍ଜୁନଙ୍କୁ ) ପ୍ରତିବୋଧିତାଂ ( ଉପଦିଷ୍ଟ ) ପୁରାଣମୁନିନା (ପ୍ରାଚୀନ ମହର୍ଷି ) ବ୍ୟାସେନ ( ବ୍ୟାସଦେବଙ୍କ କର୍ତ୍ତୃକ ) ମଧ୍ୟେ ମହାଭାରତଂ (ମହାଭାରତ ମଧ୍ୟରେ) [ମହାଭାରତ ଭୀଷ୍ମପର୍ବର ୨୫ମ ରୁ ୪୨ମ ଅଧ୍ୟାୟରେ ସାତଶହ ଶ୍ଳୋକରେ ] ଗ୍ରଥିତ ( ଅନ୍ତର୍ଭୁକ୍ତ ) ଅଦ୍ୱୈତାମୃତବର୍ଷିଣୀଂ ( ଅଦ୍ୱୈତରୂପ ଅମୃତ ବର୍ଷଣକାରିଣୀ ) ଭବଦ୍ୱେଷିଣୀମ୍ ( ପୁନର୍ଜନ୍ମନାଶକାରିଣୀ ) ଅଷ୍ଟାଦଶାଧ୍ୟାୟିନୀ ( ଅଷ୍ଟାଦଶ ଅଧ୍ୟାୟରେ ବିଭକ୍ତ ) ଭଗବତୀଂ (ଭଗବତୀ) ତ୍ୱାମ୍ ( ତୁମ୍ଭଙ୍କୁ ) ଅନୁସନ୍ଦଧାମି ( ମନେ ମନେ ଧ୍ୟାନ କରୁଅଛି ) ।

୧ । **ଅନୁବାଦ**—ହେ ମା ଭଗବଦ୍‌ଗୀତା, ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣଙ୍କ କର୍ତ୍ତୃକ ଅର୍ଜୁନଙ୍କ ପ୍ରତି ଉପଦିଷ୍ଟ, ପ୍ରାଚୀନ ମହର୍ଷି ବ୍ୟାସଦେବଙ୍କ ଦ୍ୱାରା ମହାଭାରତମଧ୍ୟରେ ଗ୍ରଥିତ, ଅଷ୍ଟାଦଶ ଅଧ୍ୟାୟାତ୍ମକ, ଅଦ୍ୱୈତ ରୂପ ଅମୃତ ବର୍ଷଣକାରିଣୀ, ପୁନର୍ଜନ୍ମନାଶକାରିଣୀ ଭଗବତୀ ତୁମ୍ଭଙ୍କୁ ମନୋମଧ୍ୟରେ ଧ୍ୟାନ କରୁଅଛି ।

୨ । **ଅନ୍ୱୟାନୁରୂପ ଅର୍ଥ**—ବିଶାଳବୁଦ୍ଧେ (ହେ ମହାମତି) ଫୁଲ୍ଲାରବିନ୍ଦାୟତପତ୍ରନେତ୍ର ( ପ୍ରସ୍ଫୁଟିତ ପଦ୍ମପତ୍ରସଦୃଶ ଚକ୍ଷୁବିଶିଷ୍ଟ ) ବ୍ୟାସ ( ବ୍ୟାସଦେବ ! ) ଯେନ ତ୍ୱୟା (ଯେଉଁ ଆପଣଙ୍କ ଦ୍ୱାରା) ଭାରତ-ତୈଳପୂର୍ଣ୍ଣଃ ( ମହାଭାରତ ରୂପ ତୈଳପୂର୍ଣ୍ଣ ) ଜ୍ଞାନମୟଃ ( ଜ୍ଞାନପୂର୍ଣ୍ଣ )

ପ୍ରପନ୍ନପାରିଜାତାୟ ତୋତ୍ରବେତ୍ରୈକପାଣୟେ
ଜ୍ଞାନମୁଦ୍ରାୟ କୃଷ୍ଣାୟ ଗୀତାମୃତଦୁହେ ନମଃ । ୩ ।

ସର୍ବୋପନିଷଦୋ ଗାବୋ ଦୋଗ୍‌ଧା ଗୋପାଳନନ୍ଦନଃ
ପାର୍ଥୋ ବତ୍ସଃ ସୁଧୀର୍ଭୋକ୍ତା ଦୁଗ୍‌ଧଂ ଗୀତାମୃତଂମହତ୍ ।୪।

ପ୍ରଦୀପଃ (ପ୍ରଦୀପ) ପ୍ରଜ୍ୱାଳିତଃ (ପ୍ରଜ୍ୱାଳିତ ହୋଇଅଛି), ତେ (ସେହି ତୁମ୍ଭଙ୍କୁ) ନମଃ (ନମସ୍କାର) ଅସ୍ତୁ (ହେଉ) ।

୨ । ଅନୁବାଦ—ପ୍ରସ୍ଫୁଟିତ ପଦ୍ମପତ୍ର ସ୍ୱରୂପ ବିଶାଳଚକ୍ଷୁ ବିଶିଷ୍ଟ ହେ ମହାମତି ବ୍ୟାସ, ତୁମ୍ଭେ ମହାଭାରତ ରୂପ ତୈଳପୂର୍ଣ୍ଣ, ଜ୍ଞାନମୟ ପ୍ରଦୀପ ପ୍ରଜ୍ୱାଳିତ କରିଅଛ । ତୁମ୍ଭଙ୍କୁ ନମସ୍କାର ।

୩ । ଅନ୍ୱୟାନୁରୂପ ଅର୍ଥ—ପ୍ରପନ୍ନ ପାରିଜାତାୟ ( ଆଶ୍ରିତ ଲୋକପକ୍ଷରେ କଳ୍ପବୃକ୍ଷସଦୃଶ ) ତୋତ୍ରବେତ୍ରୈକପାଣୟେ ( ଏକହସ୍ତରେ ଅଶ୍ୱତାଡ଼ନ ନିମିତ୍ତ ବେତ୍ର ଧାରୀ ) ଗୀତାମୃତଦୁହେ ( ଗୀତା ରୂପ ଅମୃତ ଦୋହନକାରୀ * ଜ୍ଞାନମୁଦ୍ରାୟ (ଜ୍ଞାନ ମୁଦ୍ରା ବିଶିଷ୍ଟ), କୃଷ୍ଣାୟ ନମଃ (ଶ୍ରୀକୃଷ୍ଣଙ୍କୁ ନମସ୍କାର)

୩ । ଅନୁବାଦ—ଆଶ୍ରିତ ଲୋକ ପକ୍ଷରେ କଳ୍ପବୃକ୍ଷ ତୁଲ୍ୟ, ଅଶ୍ୱ ତାଡ଼ନ ନିମିତ୍ତ ଏକ ହସ୍ତରେ ବେତ୍ରଧାରୀ, ଗୀତାରୂପ ଅମୃତ ଦୋହନକାରୀ, ଜ୍ଞାନମୁଦ୍ରା ବିଶିଷ୍ଟ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ନମସ୍କାର ।

୪ । ଅନ୍ୱୟାନୁରୂପ ଅର୍ଥ—ସର୍ବୋପନିଷଦଃ ( ସମସ୍ତ ଉପନିଷଦ୍ ) ଗାବଃ ( ଗାଭୀସଦୃଶ ), ଗୋପାଳ ନନ୍ଦନଃ ( ଗୋପାଳଙ୍କ ପୁତ୍ର ଶ୍ରୀକୃଷ୍ଣ ) ଦୋଗ୍‌ଧା ( ଦୋହନକାରୀ ), ପାର୍ଥଃ ( ଅର୍ଜୁନ ) ବତ୍ସଃ ( ବତ୍ସତୁଲ୍ୟ ), ସୁଧୀଃ ( ପଣ୍ଡିତ ) ଭୋକ୍ତା ( ପାନକାରୀ ), ଗୀତାମୃତଂ ( ଗୀତାରୂପ ଅମୃତ ) ମହଦ୍‌ଦୁଗ୍‌ଧଂ ( ମହତ୍ ଦୁଗ୍‌ଧ-ସଦୃଶ ) ।

୪ । ଅନୁବାଦ—ଉପନିଷଦ୍ ସମୂହ ଗାଭୀ, ଗୋପାଳ ନନ୍ଦନ ଶ୍ରୀକୃଷ୍ଣ ଦୋଗ୍‌ଧା, ଅର୍ଜୁନ ବତ୍ସ, ଗୀତାମୃତ ମହାଦୁଗ୍‌ଧ, ଏବଂ ପଣ୍ଡିତମାନେ ଏହି ଦୁଗ୍‌ଧର ପାନକର୍ତ୍ତା ।

---

* (ଅର୍ଜୁନଙ୍କୁ ଉପଦେଶ ଦେବା ନିମିତ୍ତ) ତର୍ଜନୀ ଓ ଅଙ୍ଗୁଷ୍ଠାଙ୍ଗୁଳି ମିଳିତ କରିବାରୂପ ମୁଦ୍ରାକୁ ଜ୍ଞାନମୁଦ୍ରା କୁହାଯାଏ ।

ବସୁଦେବସୁତଂ ଦେବଂ କଂସଚାଣୂରମର୍ଦ୍ଦନମ୍,
ଦେବକୀପରମାନନ୍ଦଂ କୃଷ୍ଣଂ ବନ୍ଦେ ଜଗଦ୍‌ଗୁରୁମ୍ ।୫।
ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା;
ଅଶ୍ୱତ୍ଥାମବିକର୍ଣ୍ଣଘୋରମକରା ଦୁର୍ଯ୍ୟୋଧନାବର୍ତ୍ତିନୀ,
ସୋତ୍ତୀର୍ଣ୍ଣା ଖଳୁ ପାଣ୍ଡବୈ ରଣନଦୀ କୈବର୍ତ୍ତକଃ କେଶବଃ ।୬।

୫ । ଅନ୍ୱୟାନୁରୂପଅର୍ଥ—ବସୁଦେବସୁତଂ ( ବସୁଦେବପୁତ୍ର ) କଂସଚାଣୂରମର୍ଦ୍ଦନଂ ( କଂସ ଏବଂ ଚାଣୂର ନାମକ ଦୈତ୍ୟଦ୍ୱୟଙ୍କର ବିନାଶକାରୀ ) ଦେବକୀ ପରମାନନ୍ଦଂ (ଦେବକୀଙ୍କର ପରମାନନ୍ଦ ଦାୟକ) ଜଗଦ୍ ଗୁରୁଂ ( ଜଗତର ଗୁରୁ ) ଦେବଂ ( ଦେବ ) କୃଷ୍ଣଂ ( ଶ୍ରୀକୃଷ୍ଣଙ୍କୁ ) ବନ୍ଦେ ( ବନ୍ଦନା କରୁଅଛି ) ।

୫।ଅନୁବାଦ—କଂସ ଏବଂ ଚାଣୂର ଦୈତ୍ୟଦ୍ୱୟଙ୍କର ବିନାଶକ, ଦେବକୀଙ୍କର ପରମାନନ୍ଦଦାତା, ବସୁଦେବପୁତ୍ର ଜଗଦ୍‌ଗୁରୁ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ବନ୍ଦନା କରୁଅଛି ।

୬ । ଅନ୍ୱୟାନୁରୂପ ଅର୍ଥ—ଭୀଷ୍ମ ଦ୍ରୋଣ ତଟା (କୁରୁକ୍ଷେତ୍ର ରଣରୂପ ନଦୀର ଭୀଷ୍ମ ଓ ଦ୍ରୋଣ ସଦୃଶ ଦୁଇତୀର ) ଜୟଦ୍ରଥଜଳା ( ଜୟଦ୍ରଥ ଜଳସ୍ୱରୂପ ), ଗାନ୍ଧାର ନୀଳୋତ୍ପଳା ( ଗାନ୍ଧାରୀଙ୍କ ପୁତ୍ରମାନେ ନୀଳପଦ୍ମ ସ୍ୱରୂପ ), ଶଲ୍ୟଗ୍ରାହବତୀ (ଶଲ୍ୟ କୁମ୍ଭୀର ସଦୃଶ) କୃପେଣ ବହନୀ ( କୃପପ୍ରବାହ ସ୍ୱରୂପ ) କର୍ଣ୍ଣେନ ବେଳାକୁଳା (କର୍ଣ୍ଣ ବେଳା ଭୂମି ସଦୃଶ), ଅଶ୍ୱତ୍ଥାମବିକର୍ଣ୍ଣଘୋରମକରା ( ଅଶ୍ୱତ୍ଥାମା ଓ ବିକର୍ଣ୍ଣ ଘୋର ମକରଦ୍ୱୟ ସ୍ୱରୂପ ) ଦୁର୍ଯ୍ୟୋଧନାବର୍ତ୍ତିନୀ ( ଦୁର୍ଯ୍ୟୋଧନ ଆବର୍ତ୍ତ ବା ଭଉଁରୀ ସଦୃଶ ) ସା ( ସେହି ) ରଣନଦୀ ( ଯୁଦ୍ଧରୂପନଦୀ ) ଖଳୁ ( ନିଶ୍ଚିତରୂପେ ) ପାଣ୍ଡବୈଃ ଉତ୍ତୀର୍ଣ୍ଣା ( ପାଣ୍ଡବମାନେ ପାରହୋଇଥିଲେ ), [ ଯହିଁରେ ] କୈବର୍ତ୍ତକଃ କେଶବଃ ( ଶ୍ରୀକୃଷ୍ଣ ନାବିକ ବା କର୍ଣ୍ଣଧାର ସ୍ୱରୂପ ହୋଇଥିଲେ ) ।

୬ । ଅନୁବାଦ—ଯେଉଁ କୁରୁକ୍ଷେତ୍ର ଯୁଦ୍ଧରୂପ ନଦୀର ଭୀଷ୍ମ ଦ୍ରୋଣ ତୀରଦ୍ୱୟସ୍ୱରୂପ, ଜୟଦ୍ରଥ ଜଳସ୍ୱରୂପ, ଗାନ୍ଧାରୀଙ୍କ ପୁତ୍ରମାନେ ନୀଳପଦ୍ମ ସ୍ୱରୂପ, ଶଲ୍ୟ କୁମ୍ଭୀର, କୃପ ପ୍ରବାହ, କର୍ଣ୍ଣ ବେଳାଭୂମି, ଅଶ୍ୱତ୍ଥାମା ଓ ବିକର୍ଣ୍ଣ ଭୟଙ୍କର ମକରଦ୍ୱୟ ଓ ଦୁର୍ଯ୍ୟୋଧନ ଆବର୍ତ୍ତ ସ୍ୱରୂପ, ସେହି ରଣ-

ପାରାଶର୍ଯ୍ୟବଚଃସରୋଜମମଲଂ ଗୀତାର୍ଥଗନ୍ଧୋତ୍କଟମ୍,
ନାନାଖ୍ୟାନକକେଶରଂ ହରିକଥାସମ୍ବୋଧନାବୋଧିତମ୍ ।
ଲୋକେ ସଜ୍ଜନ-ଷଟ୍ପଦୈ ରହରହଃ ପେପୀୟମାନଂ ମୁଦା,
ଭୂୟାଦ୍ ଭାରତପଙ୍କଜଂ କଲିମଲପ୍ରଧ୍ୱଂସି ନଃ ଶ୍ରେୟସେ । ୭ ।
ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଙ୍ଘୟତେ ଗିରିମ୍,
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦ ମାଧବମ୍ । ୮ ।

ନଦୀରୁ ପାଣ୍ଡବମାନେ ଶ୍ରୀକୃଷ୍ଣ ରୂପୀ କର୍ଣ୍ଣଧାରଙ୍କ ସାହାଯ୍ୟରେ ନିଷ୍କିତରୂପେ ଉତ୍ତୀର୍ଣ୍ଣ ହୋଇଥିଲେ ।

୭ । ଅନ୍ୱୟାନୁରୂପ ଅର୍ଥ—ଅମଲଂ ( ନିର୍ମଳ ) କଲିମଲ-ପ୍ରଧ୍ୱଂସି ( କଳିକଳୁଷ ବିନାଶକ ) ଗୀତାର୍ଥଗନ୍ଧୋତ୍କଟଂ ( ଗୀତା ଉପଦେଶ ରୂପ ସୁଗନ୍ଧଯୁକ୍ତ ) ନାନାଖ୍ୟାନକକେଶରଂ ( ନାନା ଅଖ୍ୟାନ ରୂପ କେଶର ବିଶିଷ୍ଟ ) ହରିକଥାସମ୍ବୋଧନାବୋଧିତଂ ( ଶ୍ରୀକୃଷ୍ଣଙ୍କ କଥା ଦ୍ୱାରା ପ୍ରବୋଧିତ ) ଲୋକେ ( ସଂସାରରେ ) ଅହରହଃ ( ସର୍ବଦା ) ସଜ୍ଜନଷଟ୍ପଦୈଃ ( ସଜ୍ଜନରୂପ ଭ୍ରମରମାନଙ୍କଦ୍ୱାରା ) ମୁଦା ( ସାନନ୍ଦରେ ) ପେପୀୟମାନଂ ( ପୁନଃ ପୁନଃ ପାନ କରାଯାଉଥିବା ) ପାରାଶର୍ଯ୍ୟବଚଃ-ସରୋଜଂ ( ପରାଶର ନନ୍ଦନ ବେଦବ୍ୟାସଙ୍କର ବାକ୍ୟ ରୂପ ସରୋବରରେ ଜାତ ) ଭାରତପଙ୍କଜଂ ( ମହାଭାରତ ରୂପ ପଦ୍ମ ) ନଃ ( ଅମ୍ଭମାନଙ୍କର ) ଶ୍ରେୟସେ ଭୂୟାତ୍ ( ମଙ୍ଗଳ ଜନକ ହେଉ ) ।

୭ । ଅନୁବାଦ—ନିର୍ମଳ, କଳିକଳୁଷନାଶକ, ଗୀତା ଉପଦେଶ ରୂପ ସୁଗନ୍ଧଯୁକ୍ତ, ନାନା ଅଖ୍ୟାନ ରୂପ କେଶର ବିଶିଷ୍ଟ, ଶ୍ରୀକୃଷ୍ଣଙ୍କ ବାଣୀଦ୍ୱାରା ପ୍ରବୋଧିତ, ସଂସାରରେ ଯାହା ( ମଧୁକୁ ) ସଜ୍ଜନରୂପ ଭ୍ରମରମାନେ ଆନନ୍ଦରେ ପୁନଃ ପୁନଃ ପାନ କରୁଅଛନ୍ତି, ପରାଶର ନନ୍ଦନ ବେଦବ୍ୟାସଙ୍କ ବାକ୍ୟସରୋବରଜାତ ସେହି ମହାଭାରତ ରୂପ ପଦ୍ମ ଅମ୍ଭମାନଙ୍କ ପକ୍ଷରେ କଲ୍ୟାଣକର ହେଉ ।

୮ । ଅନ୍ୱୟାନୁରୂପ ଅର୍ଥ—ଯତ୍କୃପା (ଯାହାଙ୍କର କରୁଣା) ମୂକଂ ( ମୂକକୁ ) ବାଚାଳଂ କରୋତି ( ବାଚାଳ ବା ବାକ୍ପଟୁଭାଷୀକରେ ) ପଙ୍ଗୁଂ ଗିରିଂ ଲଙ୍ଘୟତେ ( ପଙ୍ଗୁ ଲୋକକୁ ପର୍ବତ ଲଙ୍ଘନ କରାଏ ) ତଂ ( ସେହି ) ପରମାନନ୍ଦମାଧବଂ ( ପରମାନନ୍ଦ ମାଧବଙ୍କୁ ) ବନ୍ଦେ ( ମୁଁ ନମସ୍କାର କରୁଅଛି ) ।

ଯଂ ବ୍ରହ୍ମା ବରୁଣେନ୍ଦ୍ର ରୁଦ୍ର ମରୁତଃ ସ୍ତୁନ୍ୱନ୍ତି ଦିବ୍ୟୈଃ ସ୍ତବୈ,
ବେଦୈଃ ସାଙ୍ଗପଦକ୍ରମୋପନିଷଦୈର୍ଗାୟନ୍ତି ଯଂ ସାମଗାଃ ।
ଧ୍ୟାନାବସ୍ଥିତ ତଦ୍‌ଗତେନ ମନସା ପଶ୍ୟନ୍ତି ଯଂ ଯୋଗିନୋ,
ଯସ୍ୟାନ୍ତଂ ନ ବିଦୁଃ ସୁରାସୁରଗଣା ଦେବାୟ ତସ୍ମୈ ନମଃ । ୯ ।

୮ । **ଅନୁବାଦ**—ଯାହାଙ୍କ କୃପାରେ କଥା କହି ପାରୁ ନ ଥିବା ମୂକ ଲୋକ ବହୁଭାଷୀ ହୁଏ, ପାଦ ନ ଥିବା ପଙ୍ଗୁ ଲୋକ ପର୍ବତ ଅତିକ୍ରମ କରିପାରେ; ମୁଁ ସେହି ପରମାନନ୍ଦରୂପୀ ମାଧବଙ୍କୁ ନମସ୍କାର କରୁଅଛି ।

୯ । **ଅନ୍ୱୟାନୁରୂପ ଅର୍ଥ**—ବ୍ରହ୍ମା ବରୁଣେନ୍ଦ୍ର ରୁଦ୍ର ମରୁତଃ (ବ୍ରହ୍ମା, ବରୁଣ, ଇନ୍ଦ୍ର, ମରୁତ) ଦିବ୍ୟୈଃ ସ୍ତବୈଃ ( ଦିବ୍ୟ ସ୍ତବଦ୍ୱାରା ) ଯଂ (ଯାହାଙ୍କୁ) ସ୍ତୁନ୍ୱନ୍ତି (ସ୍ତବ କରନ୍ତି), ସାମଗାଃ (ସାମବେଦ ଗାନକାରୀମାନେ) ସାଙ୍ଗପଦକ୍ରମୋପନିଷଦୈଃ (ଅଙ୍ଗ, ପଦକ୍ରମ, ଉପନିଷଦ୍ ସହିତ) ବେଦୈଃ (ବେଦ ସମୂହ ଦ୍ୱାରା ) ଯଂ ଗାୟନ୍ତି ( ଯାହାଙ୍କର ସ୍ତୁତି ଗାନ କରନ୍ତି ), ଯୋଗିନଃ (ଯୋଗୀମାନେ) ଧ୍ୟାନାବସ୍ଥିତତଦ୍‌ଗତେନ ( ଧ୍ୟାନ ନିବିଷ୍ଟ ) ମନସା ( ମନଦ୍ୱାରା ) ଯଂ ପଶ୍ୟନ୍ତି ( ଯାହାଙ୍କୁ ଦେଖନ୍ତି ), ସୁରାସୁରଗଣାଃ ( ଦେବତା ଓ ଅସୁରମାନେ ) ଯସ୍ୟ ( ଯାହାଙ୍କ ) ଅନ୍ତଂ ( ଶେଷ, ସୀମା ) ନ ବିଦୁଃ ( ଜାଣନ୍ତି ନାହିଁ ), ତସ୍ମୈ ଦେବାୟ (ସେହି ପରମ ପୁରୁଷଙ୍କୁ) ନମଃ ( ନମସ୍କାର କରୁଅଛି) ।

୯ । **ଅନୁବାଦ**—ବ୍ରହ୍ମା, ବରୁଣ, ଇନ୍ଦ୍ର, ରୁଦ୍ର, ମରୁତ ପ୍ରଭୃତି ଦେବଗଣ ଦିବ୍ୟ ସ୍ତବଦ୍ୱାରା ଯାହାଙ୍କର ସ୍ତବଗାନ କରନ୍ତି; ସାମଗାନକାରୀମାନେ ଅଙ୍ଗ, ପଦକ୍ରମ, ଉପନିଷଦ୍ ସହିତ ବେଦଦ୍ୱାରା ଯାହାଙ୍କର ମହିମା ଗାନ କରନ୍ତି, ଯୋଗିଗଣ ଧ୍ୟାନରେ ତଦ୍‌ଗତ ହୋଇ ଯାହାଙ୍କର ଦର୍ଶନ କରନ୍ତି ଏବଂ ଦେବାସୁରମାନେ ଯାହାଙ୍କର ଅନ୍ତ ଅର୍ଥାତ୍ ସୀମାତତ୍ତ୍ୱ ଅବଗତ ନୁହନ୍ତି ସେହି ପରମ ପୁରୁଷଙ୍କୁ ପ୍ରଣାମ କରୁଅଛି ।

---

## ସଂକଳୟିତୁରାତ୍ମ ନିବେଦନମ୍

ଯଥା ମଧୁକରଃ ସାରଂ ନାନାକୁସୁମମଧ୍ୟଗମ୍
ଚନେ ସଂଗୃହ୍ୟ ନିର୍ମିତ ପୀୟୂଷସନ୍ନିଭଂ ମଧୁ ।୧।

ବ୍ୟାଖ୍ୟା-ଦର୍ପଣ ମାଲୋକ୍ୟ ରଚିତଂ ପୂର୍ବସୂରିଭିଃ,
ପ୍ରତିବମ୍ବନିଭଷ୍ଟାସ୍ୟ ସଂଗ୍ରହଃ କ୍ରିୟତେ ମୟା ।୨।

ମଧୁନ୍ନ ମକ୍ଷିକୋଚ୍ଛିଷ୍ଟେ ଭବତୀହ ଯଥାଦରଃ,
ଆଶଂସେଽହଂ ତଥାହ୍ୟେଷ ସନ୍ଦର୍ଭୋଽପ୍ୟାଦୃତୋ ଭବେତ୍ ।୩।

ନାମ୍ନା କୁଳମଣିସ୍ତ୍ୱାହଂ କାଶ୍ୟପୋ ଦାସସଞ୍ଜ୍ଞକଃ,
ପଶ୍ଚିମେ ବୟସି ପ୍ରାପ୍ତଃ କ୍ଷେତ୍ରଂ ଶ୍ରୀ ପୁରୁଷୋତ୍ତମମ୍ ।୪।

ବସାମି ଗୃସ୍ମିନ୍ ସମବାପ୍ତସପ୍ତତିଃ
କ୍ଷରାକ୍ଷରାଭ୍ୟାଂ ପୁରୁଷୋତ୍ତମଂ ସ୍ମରନ୍ ।
ନୟାମି କାଳଂ ପରମାର୍ଥଲିପ୍ସୟା,
ବରେଣ୍ୟଭର୍ଗଂ ସବିତୁର୍ବିଶନ୍ନୁନ୍ ।୫।

---

# ଶ୍ରୀମଦ୍ ଭଗବଦ୍ ଗୀତା

## ପ୍ରଥମୋଽଧ୍ୟାୟଃ

ଧୃତରାଷ୍ଟ୍ର ଉବାଚ,

ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ସମବେତା ଯୁଯୁତ୍ସବଃ;
ମାମକାଃ ପାଣ୍ଡବାଶ୍ଚୈବ କିମକୁର୍ବତ ସଞ୍ଜୟ । ୧ ।

୧ । **ଅନ୍ୱୟଦୀପିକା**—ଧୃତରାଷ୍ଟ୍ରଃ ଉବାଚ (ଧୃତରାଷ୍ଟ୍ର କହିଲେ)—ସଞ୍ଜୟ ! ( ହେ ସଞ୍ଜୟ ) ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ( ପୁଣ୍ୟଭୂମି କୁରୁକ୍ଷେତ୍ରରେ ) ଯୁଯୁତ୍ସବଃ ( ଯୁଦ୍ଧ କରିବାକୁ ଅଭିଳାଷୀ ) ମାମକାଃ ( ମୋ ପୁଅମାନେ ) ପାଣ୍ଡବାଃ ଚ ଏବଂ ( ଏବଂ ପାଣ୍ଡୁଙ୍କ ପୁଅମାନେ ) ସମବେତାଃ ( ମିଳିତ ହୋଇ ) [ସନ୍ତଃ] କିଂ ଅକୁର୍ବତ ( କଅଣ କଲେ ? )

**ଅନୁବାଦ**—ଧୃତରାଷ୍ଟ୍ର ପଚାରିଲେ, ହେ ସଞ୍ଜୟ, ପୁଣ୍ୟଭୂମି କୁରୁକ୍ଷେତ୍ରରେ ଦୁର୍ଯ୍ୟୋଧନ ପ୍ରଭୃତି ମୋ ପୁଅମାନେ ଏବଂ ଯୁଧିଷ୍ଠିର ପ୍ରଭୃତି ପାଣ୍ଡବମାନେ ଯୁଦ୍ଧ କରିବାପାଇଁ ସମବେତ ହୋଇ କଅଣ କଲେ ?

### ୧ । ଶ୍ରୀଧରସ୍ୱାମିକୃତ ଟୀକା

ଉପକ୍ରମଣିକା

ଶେଷାଶେଷ ମୁଖ ବ୍ୟାଖ୍ୟାଚାତୁର୍ଯ୍ୟଂ ତ୍ୱେକ ବକ୍ତ୍ରତଃ,
ଦଧାନମଦ୍ଭୁତଂ ବନ୍ଦେ ପରମାନନ୍ଦ ମାଧବମ୍ । ୧ ।
ଶ୍ରୀମାଧବଂ ପ୍ରଣମ୍ୟୋ ମାଧବଂ ବିଶ୍ୱେଶମାଦରାତ୍,
ତଦ୍ଭକ୍ତି ଯନ୍ତିତଃ କୁର୍ବେ ଗୀତାବ୍ୟାଖ୍ୟାଂ ସୁବୋଧିନୀମ୍ । ୨ ।
ଭାଷ୍ୟକାରମତଂ ସମ୍ୟକ୍ ତଦ୍ବ୍ୟାଖ୍ୟାତୃଗିରସ୍ତଥା,
ଯଥାମତି ସମାଲୋକ୍ୟ ଗୀତାବ୍ୟାଖ୍ୟାଂ ସମାରଭେ । ୩ ।
ଗୀତାବ୍ୟାଖ୍ୟାୟୁତେ ଯସ୍ୟାଃ ପାଠମାତ୍ରାଦୟତ୍ନତଃ
ସେୟଂ ସୁବୋଧିନୀଟୀକା ସଦାଧ୍ୟେୟା ମନୀଷିଭିଃ । ୪ ।

ଇହଟେତ୍ର ସକଳ ଲୋକହିତାବତାରଃ ପରମକାରୁଣିକୋ ଭଗବାନ୍ ଦେବକୀନନ୍ଦନ ସ୍ୱତ୍ତ୍ୱଜ୍ଞାନବିଜୃମ୍ଭିତଶୋକମୋହଭ୍ରଂଶିତ ବିବେକତୟା ନିଜଧର୍ମ-ପରିତ୍ୟାଗପୂର୍ବକ ପରଧର୍ମାଭିସନ୍ଧାନମର୍ଜ୍ଜୁନଂ ଧର୍ମଜ୍ଞାନ ରହସ୍ୟୋପଦେଶପ୍ଲବେନ ତସ୍ମାଚ୍ଛୋକମୋହସାଗରାଦୁଦ୍ଧାର । ତମେବ ଭଗବଦୁପଦିଷ୍ଟମର୍ଥଂ କୃଷ୍ଣଦ୍ୱୈପାୟନଃ ସପ୍ତଭିଃ ଶ୍ଲୋକଶତୈରୁପନିବବନ୍ଧ । ତତ୍ର ଚ ପ୍ରାୟଶଃ ଶ୍ରୀକୃଷ୍ଣମୁଖାଦ୍‌ବିନିଃସୃତାନେବ ଶ୍ଲୋକାନଲିଖତ୍ ; କାଂଶ୍ଚିତ୍ ତତ୍ ସଙ୍ଗତୟେ ସ୍ୱୟଂ ଚ ବ୍ୟରଚୟତ୍ । ଯଥୋକ୍ତଂ ଗୀତାମାହାତ୍ମ୍ୟେ—ଗୀତା ସୁଗୀତା କର୍ତ୍ତବ୍ୟା କିମନ୍ୟୈଃ ଶାସ୍ତ୍ରବିସ୍ତରୈଃ । ଯା ସ୍ୱୟଂ ପଦ୍ମନାଭସ୍ୟ ମୁଖପଦ୍ମାଦ୍‌ବିନିଃସୃତା ଇତି ।

ତତ୍ର ତାବଦ୍ଧର୍ମକ୍ଷେତ୍ର ଇତ୍ୟାଦିନା ବର୍ତ୍ତୀଦଲିଦମବ୍ରବୀଦିତ୍ୟନ୍ତେନ ଗ୍ରନ୍ଥେନ ଶ୍ରୀକୃଷ୍ଣାର୍ଜ୍ଜୁନସଂବାଦପ୍ରସ୍ତାବାୟ କଥା ନିରୂପ୍ୟତେ । ତତଃ ପରମ୍ ଆସମାପ୍ତେ ସ୍ତୟୋର୍ଧର୍ମଜ୍ଞାନାର୍ଥ ସଂବାଦଃ । ତତ୍ର ଧର୍ମକ୍ଷେତ୍ର ଇତ୍ୟାଦିନା ଶ୍ଲୋକେନ ଧୃତରାଷ୍ଟ୍ରେଣ ହସ୍ତିନାପୁରସ୍ଥିତଂ ସ୍ୱସାରଥିଂ ସମୀପସ୍ଥଂ ସଞ୍ଜୟଂ ପ୍ରତି କୁରୁକ୍ଷେତ୍ର ବୃତ୍ତାନ୍ତେ ପୃଷ୍ଟେ ସଞ୍ଜୟୋ ହସ୍ତିନାପୁରସ୍ଥିତୋଽପିବ୍ୟାସପ୍ରସାଦାଲ୍ଲବ୍ଧଦିବ୍ୟଚକ୍ଷୁଃ କୁରୁକ୍ଷେତ୍ରବୃତ୍ତାନ୍ତଂ ସାକ୍ଷାତ୍ ପଶ୍ୟନ୍ନିବ ଧୃତରାଷ୍ଟ୍ରାୟ ନିବେଦୟାମାସ—ଦୃଷ୍ଟ୍ୱାତୁ ପାଣ୍ଡବାନୀକମିତ୍ୟାଦିନା ।

**ସୁବୋଧିନୀ ଟୀକା**—ଧୃତରାଷ୍ଟ୍ର ଉବାଚେତି । ଧର୍ମକ୍ଷେତ୍ର ଇତି । ଭୋଃ ସଞ୍ଜୟ ଧର୍ମକ୍ଷେତ୍ରେ ଧର୍ମଭୂମୌ କୁରୁକ୍ଷେତ୍ରେ । ଧର୍ମକ୍ଷେତ୍ର ଇତି କୁରୁକ୍ଷେତ୍ର-ବିଶେଷଣମ୍ । ଏଷାମାଦିପୁରୁଷଃ କଶ୍ଚିତ୍ କୁରୁନାମା ବଭୂବ । ତସ୍ୟ କୁରୋର୍ଧର୍ମ-ସ୍ଥାନେ । ମାମକା ମତ୍ପୁତ୍ରାଃ । ପାଣ୍ଡୁପୁତ୍ରାଶ୍ଚ । ଯୁଯୁତ୍ସବୋ ଯୋଦ୍ଧୁମିଚ୍ଛନ୍ତଃ । ସମବେତାଃ ମିଳିତାଃ ସନ୍ତଃ । କିମକୁର୍ବତ କିଂ କୃତବନ୍ତଃ ।

**ବିବୃତି**—ଶ୍ରୀମଦ୍‌ଭଗବଦ୍‌ଗୀତା ମହାଭାରତ ଭୀଷ୍ମପର୍ବର ଅନ୍ତର୍ଗତ । ଭୀଷ୍ମପର୍ବର ୨୫ଶ ଅଧ୍ୟାୟରୁ ୪୨ଶ ଅଧ୍ୟାୟ ପର୍ଯ୍ୟନ୍ତ ଅଠର ଅଧ୍ୟାୟରେ ଏହି ଗୀତାହିଁ କଥିତ ହୋଇଅଛି । କିନ୍ତୁ ଭୀଷ୍ମପର୍ବର ୩ୟ ଅଧ୍ୟାୟରୁ ୪୩ଶ ଅଧ୍ୟାୟ ପର୍ଯ୍ୟନ୍ତ ଅଂଶ ଭଗବଦ୍‌ଗୀତାପର୍ବାଧ୍ୟାୟ ନାମରେ ଅଭିହିତ ହୁଏ । ଯୁଦ୍ଧ ଆରମ୍ଭ ହେବାପରେ ବ୍ୟାସଦେବ ଧୃତରାଷ୍ଟ୍ରଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ, "ଯେବେ ତୁମର ଯୁଦ୍ଧ ଦେଖିବାକୁ ଇଚ୍ଛା ହୁଏ ତେବେ ମୁଁ ତୁମ୍ଭଙ୍କୁ ଦୃଷ୍ଟିଶକ୍ତି ଦେଉଅଛି ।" ଉତ୍ତରରେ ଧୃତରାଷ୍ଟ୍ର କହିଲେ "ମୁଁ ନିଜର କୁଳକ୍ଷୟ ନିଜ ଆଖିରେ ଦେଖିବାକୁ ଇଚ୍ଛୁକ ନୁହେଁ ।" ତେଣୁ ଏହି ସ୍ଥାନରେ ବସି ଯୁଦ୍ଧର ସମଗ୍ର ଘଟନା ଜାଣିବାପାଇଁ ବ୍ୟାସଦେବ ଧୃତରାଷ୍ଟ୍ରଙ୍କର ସଞ୍ଜୟ ନାମକ ସାରଥି (ମନ୍ତ୍ରୀ) ଙ୍କୁ ଦିବ୍ୟଦୃଷ୍ଟି ପ୍ରଦାନ କଲେ । ସଞ୍ଜୟଙ୍କ ଦ୍ୱାରା ଯୁଦ୍ଧର ଅବିକଳ ବୃତ୍ତାନ୍ତ ଧୃତରାଷ୍ଟ୍ରଙ୍କୁ

ଅବଗତ କରାଇବାର ବ୍ୟବସ୍ଥା କରି ବ୍ୟାସଦେବ ଚାଲିଗଲେ । ଯେତେବେଳେ ଭୀଷ୍ମଦେବ ଯୁଦ୍ଧରେ ଆହତ ହେଲେ ଏବଂ ପୂର୍ବୋକ୍ତ ବ୍ୟବସ୍ଥା ଅନୁସାରେ ସଞ୍ଜୟ ପ୍ରଥମେ ଧୃତରାଷ୍ଟ୍ରଙ୍କୁ ସମ୍ବାଦ ଦେବାପାଇଁ ତାଙ୍କ ପାଖକୁ ଗଲେ ସେତେବେଳେ ଭୀଷ୍ମଙ୍କ ପାଇଁ ଶୋକାର୍ତ୍ତ ଧୃତରାଷ୍ଟ୍ର ଯୁଦ୍ଧର ସମଗ୍ର ବିବରଣ ଶୁଣାଇବାକୁ ସଞ୍ଜୟଙ୍କୁ ଅନୁରୋଧ କଲେ । ତଦନୁସାରେ ସଞ୍ଜୟ ପ୍ରଥମେ ଉଭୟ ପକ୍ଷର ସୈନ୍ୟମାନଙ୍କର ବର୍ଣ୍ଣନା କଲେ ଏବଂ ପୁନର୍ବାର ଧୃତରାଷ୍ଟ୍ରଙ୍କ ପ୍ରଶ୍ନର ଉତ୍ତରରେ 'ଗୀତା' କହିବାକୁ ଆରମ୍ଭ କଲେ । ପରେ ଏହି ସମସ୍ତ କଥା ବ୍ୟାସଦେବ ନିଜର ଶିଷ୍ୟମାନଙ୍କୁ କହିଲେ; ଶିଷ୍ୟମାନଙ୍କ ମଧ୍ୟରୁ ବୈଶମ୍ପାୟନ ଜନମେଜୟଙ୍କୁ ଏବଂ ଶେଷରେ ସୌତି ଶୌନକଙ୍କୁ ଶୁଣାଇଥିଲେ ।

କୁରୁକ୍ଷେତ୍ର ଗୋଟିଏ ପ୍ରକାଣ୍ଡ ପ୍ରାନ୍ତର । ବର୍ତ୍ତମାନର ଦିଲ୍ଲୀନଗର ଏହି ପ୍ରାନ୍ତରର ଏକାଂଶରେ ଅବସ୍ଥିତ । କୁରୁକ୍ଷେତ୍ର ଭାରତବର୍ଷର ସର୍ବ ପ୍ରଧାନ ଯୁଦ୍ଧକ୍ଷେତ୍ର । ଏହିଠାରେ ବହୁବାର ଭାରତର ଭାଗ୍ୟ ନିଷ୍ପତ୍ତି ହୋଇଅଛି । ମହାଭାରତ ଯୁଗରେ ଏହି କୁରୁକ୍ଷେତ୍ର ଦୀର୍ଘରେ ପାଞ୍ଚ ଯୋଜନ ଓ ପ୍ରସ୍ଥରେ ପାଞ୍ଚ ଯୋଜନ ଥିଲା; ସେହି ହେତୁରୁ ଏହାକୁ 'ସମନ୍ତ ପଞ୍ଚକ' କୁହାଯାଉଥିଲା । କୌରବ ଓ ପାଣ୍ଡବମାନଙ୍କ ପୂର୍ବପୁରୁଷ କୁରୁ ନାମକ ଜନୈକ ରାଜା ଏହି ପଡ଼ିଆରେ ବହୁକଷ୍ଟରେ ସ୍ୱହସ୍ତରେ ହଳ ଚାଳନା କରୁଥିଲେ । ସେହି ହେତୁରୁ ଏହାକୁ କ୍ଷେତ୍ର ବା କ୍ଷେତ କୁହାଯାଏ । ଯେତେବେଳେ ଇନ୍ଦ୍ର କୁରୁଙ୍କୁ ବର ପ୍ରଦାନ କଲେ ଯେ, ଯେଉଁ ବ୍ୟକ୍ତି ଏ କ୍ଷେତ୍ରରେ ତପସ୍ୟା କରିବେ ବା ଯୁଦ୍ଧରେ ପ୍ରାଣତ୍ୟାଗ କରିବେ ସେ ନିଶ୍ଚୟ ସ୍ୱର୍ଗଲୋକ ପାଇବେ, ସେତେବେଳେ ସେ ହଳ-ଚାଳନାରୁ ନିବୃତ୍ତ ହେଲେ; (ମହା-ଶଲ୍ୟପର୍ବ-୫୩ ଅଧ୍ୟାୟ) । ଇନ୍ଦ୍ରଙ୍କ ବରଦାନ ପ୍ରଭାବରୁ ଏହି କ୍ଷେତ୍ର 'ଧର୍ମକ୍ଷେତ୍ର' ନାମରେ ପରିଚିତ । ପରଶୁରାମ ୨୧ ଥର ପୃଥିବୀକୁ ନିଃକ୍ଷତ୍ରିୟ କରି ଏହିଠାରେ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ତର୍ପଣ କରିଥିଲେ । ଏବେ ମଧ୍ୟ କୁରୁକ୍ଷେତ୍ର ଭାରତବର୍ଷରେ ଧର୍ମକ୍ଷେତ୍ର ନାମରେ ପରିଚିତ ଏବଂ ଅନେକ ସାଧୁ ସନ୍ନ୍ୟାସୀ ସେଠାରେ ବିଚରଣ କରନ୍ତି ।

ମୂଳଶ୍ଳୋକରେ 'ଧର୍ମକ୍ଷେତ୍ର' ପଦ କୁରୁକ୍ଷେତ୍ରର ବିଶେଷଣ ରୂପେ ବ୍ୟବହୃତ ହୋଇଅଛି । ଏ ବିଶେଷଣର ସାର୍ଥକତା କଅଣ ? ଏହାର ଉତ୍ତର ଜାଣିବାକୁ ହେଲେ ଧୃତରାଷ୍ଟ୍ରଙ୍କ ପ୍ରଶ୍ନଭଙ୍ଗୀ ବୁଝିବା ଆବଶ୍ୟକ । ଧୃତରାଷ୍ଟ୍ର ପଚାରୁଛନ୍ତି "ପୁଣ୍ୟଭୂମି କୁରୁକ୍ଷେତ୍ରରେ ଯୁଦ୍ଧକରିବାକୁ ସମବେତ ମୋ ପୁଅମାନେ ଓ ପାଣ୍ଡବମାନେ କଅଣ କଲେ ?" ଏଭଳି ପ୍ରଶ୍ନ ଭଙ୍ଗୀରୁ ଜଣାଯାଉଅଛି ଯେ ପୁଣ୍ୟତୀର୍ଥରୂପ କୁରୁକ୍ଷେତ୍ରରେ ପଦାର୍ପଣ କରିବାରେ ଦୁର୍ବୁଦ୍ଧି ଦୁର୍ଯ୍ୟୋଧନର ଯେବେ ସୁବୁଦ୍ଧିର ଉଦୟ ହୋଇଥିବ ତେବେ ସନ୍ଧି ବା ହୋଇଥିବ । ଏହାଛଡ଼ା,

'ଧର୍ମକ୍ଷେତ୍ର' ବିଶେଷଣର ଉଦ୍ଦେଶ୍ୟ ପରି ମନେ ହୁଏ । ପ୍ରକୃତରେ ବୁଝିଲେ ଧୃତରାଷ୍ଟ୍ରଙ୍କର ଏଭଳି ପ୍ରଶ୍ନଭଙ୍ଗୀ ନିରର୍ଥକ ନୁହେ । ଘୋର ତମୋଗୁଣସମ୍ପନ୍ନ ଦୁର୍ଯ୍ୟୋଧନର ପୁଣ୍ୟତୀର୍ଥ ସଂସର୍ଗରେ ଧର୍ମଭାବ ବା ସାତ୍ତ୍ୱିକ ବୁଦ୍ଧିର ଉଦୟ ନ ହେଲେହେଁ ପବିତ୍ରାତ୍ମା ଅର୍ଜ୍ଜୁନଙ୍କ ହୃଦୟରେ ହଠାତ୍ ସାତ୍ତ୍ୱିକ ବୁଦ୍ଧିର ଉଦୟ ହେଲା; ବହୁ ପୂର୍ବରୁ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଥିଲେହେଁ ସ୍ଥାନଗୁଣରେ ଅର୍ଜ୍ଜୁନଙ୍କ ହୃଦୟ ହଠାତ୍ ପରିବର୍ତ୍ତିତ ହୋଇଗଲା । ଯୁଦ୍ଧ କରିବି କି ନାହିଁ ଏପରି ସଂଶୟରେ ତାଙ୍କ ହୃଦୟ ଆନ୍ଦୋଳିତ ହେଲା, ମୁହଁ ଶୁଖିଗଲା, ହାତରୁ ଗାଣ୍ଡୀବ ଖସି ପଡ଼ିଲା ; କର୍ତ୍ତବ୍ୟର ପଥ ଅନ୍ଧକାରମୟ ଦିଶିଲା । ଏଭଳି ବିଷମ ସନ୍ଧିକ୍ଷଣ ଆସି ନ ଥିଲେ ଗୀତା ପରି ସୂକ୍ଷ୍ମ ଧର୍ମତତ୍ତ୍ୱର ଆଲୋଚନା ଆବଶ୍ୟକ ହୋଇ ନ ଥାନ୍ତା । ଜୀବନର କୌଣସି ସାମାନ୍ୟ ବା ସାଧାରଣ ସମସ୍ୟାରେ ଏଭଳି ଧର୍ମର ମୂଳତତ୍ତ୍ୱମାନଙ୍କର ଗଭୀର ଆଲୋଚନାର ପ୍ରୟୋଜନ ହୁଏ ନାହିଁ । ତେଣୁ ଜଣାଯାଉଅଛି ଯେ ପୁଣ୍ୟଭୂମି ସଂସର୍ଗରେ ଆସିବା ହେତୁରୁ ଧର୍ମର ସୂକ୍ଷ୍ମତତ୍ତ୍ୱ ବୁଝିବାର ଶୁଭକ୍ଷଣ ଉପସ୍ଥିତ ହେଲା ।

ଅନେକେ ମନେ କରନ୍ତି ସ୍ଥାନ ପ୍ରଭାବରେ ଅର୍ଜ୍ଜୁନଙ୍କର ସତ୍ତ୍ୱଗୁଣର ଆଧିକ୍ୟ ହେବାରୁ ସେ ଯୁଦ୍ଧରୁ ନିବୃତ୍ତ ହେଉଥିଲେ, ଶ୍ରୀକୃଷ୍ଣହିଁ ତାଙ୍କୁ ଯୁଦ୍ଧରେ ନିୟୋଜିତ କଲେ; ମାତ୍ର ଏପରି ଧାରଣା ଭ୍ରମାତ୍ମକ, ଶ୍ରୀକୃଷ୍ଣ ମନୁଷ୍ୟଭାବରେ ଉଦ୍‌ବୁଦ୍ଧ ହୋଇ ମହାପ୍ରଳୟଙ୍କର କୁରୁକ୍ଷେତ୍ର ଯୁଦ୍ଧ ଯେପରି ନ ହୁଏ ସେଥିପାଇଁ ନାନାପ୍ରକାର ଚେଷ୍ଟା କରିଥିଲେ; ଶେଷରେ ତାଙ୍କର ସମସ୍ତ ଚେଷ୍ଟା ବୃଥା ହେବାରୁ ଯୁଦ୍ଧର ଦୁନ୍ଦୁଭି ବାଜିଲା । ମାତ୍ର ଯୁଦ୍ଧ ଆରମ୍ଭରେ ଯେ କୌଣସି କାରଣରୁ ହେଉ ଅର୍ଜ୍ଜୁନଙ୍କର କର୍ତ୍ତବ୍ୟ ମୋହ ଉପସ୍ଥିତ ହେଲା । ସେ ଭଗବାନଙ୍କର ଶରଣାପନ୍ନ ହୋଇ କର୍ତ୍ତବ୍ୟ ମାର୍ଗ ଦେଖାଇଦେବାକୁ ପ୍ରାର୍ଥନା କରିବାରୁ ଭଗବାନ୍ ଶ୍ରୀକୃଷ୍ଣ ଧର୍ମର ଗୂଢ଼ତତ୍ତ୍ୱର ବ୍ୟାଖ୍ୟା କରି କର୍ତ୍ତବ୍ୟ ପଥ ଦେଖାଇଦେଲେ । ଏପରି ଅବସ୍ଥାରେ ଶ୍ରୀକୃଷ୍ଣ ଯୁଦ୍ଧ ପାଇଁ ଦାୟୀ ନୁହନ୍ତି । ଯେତେବେଳେ ଅର୍ଜ୍ଜୁନଙ୍କର ବୃଥା ମୋହ ଅପସାରିତ ହେଲା ସେତେବେଳେ ସେ କହିଲେ, "ପ୍ରଭୁ, ମୋର ମୋହ ଦୂର ହୋଇଗଲା । ଆଉ ସନ୍ଦେହ ନାହିଁ, ମୁଁ ଏବେ ମୋର କର୍ତ୍ତବ୍ୟ ପାଳନକରି ଯୁଦ୍ଧ କରିବି ।" ( ଗୀତା ୧୮–୭୩ )

ସମଗ୍ର ଗୀତାରେ ଧୃତରାଷ୍ଟ୍ରଙ୍କର ଏହି ଗୋଟିଏ ପ୍ରଶ୍ନ ଛଡ଼ା ଅନ୍ୟ କୌଣସି କଥା ନାହିଁ । ଯେଉଁ ଧର୍ମତତ୍ତ୍ୱ ବୁଝାଇବା ଗୀତାର ଉଦ୍ଦେଶ୍ୟ ପ୍ରଥମ ଅଧ୍ୟାୟରେ ତାହାର କୌଣସି ସମ୍ବନ୍ଧ ନାହିଁ । କେଉଁ ପ୍ରସଙ୍ଗରେ ଧର୍ମତତ୍ତ୍ୱ ରଣଭୂମିରେ ବୁଝାଇବାକୁ ପଡ଼ିଲା, ପ୍ରଥମ ଅଧ୍ୟାୟ ଆରମ୍ଭରୁ ଦ୍ୱିତୀୟ ଅଧ୍ୟାୟ ଦଶମଶ୍ଳୋକ ଶେଷପର୍ଯ୍ୟନ୍ତ କେବଳ ସେହି ବିଷୟ ବର୍ଣ୍ଣିତ ହୋଇଅଛି ।

ସଞ୍ଜୟ ଉବାଚ

ଦୃଷ୍ଟ୍ୱା ତୁ ପାଣ୍ଡବାନୀକଂ ବ୍ୟୂଢଂ ଦୁର୍ଯୋଧନସ୍ତଦା,
ଆଚାର୍ଯ୍ୟମୁପସଙ୍ଗମ୍ୟ ରାଜା ବଚନ ମବ୍ରବୀତ୍ । ୨ ।
ପଶ୍ୟୈତାଂ ପାଣ୍ଡୁପୁତ୍ରାଣାମାଚାର୍ଯ୍ୟ ମହତୀଂ ଚମୂମ୍,
ବ୍ୟୂଢ଼ାଂ ଦ୍ରୁପଦପୁତ୍ରେଣ ତବ ଶିଷ୍ୟେଣ ଧୀମତା । ୩ ।

୨ । **ଅନ୍ୱୟଦୀପିକା**—ସଞ୍ଜୟଃ ଉବାଚ (ସଞ୍ଜୟ କହିଲେ); ତଦା ତୁ ( ସେତେବେଳେ ) ପାଣ୍ଡବାନୀକଂ ( ପାଣ୍ଡବ ସୈନ୍ୟମାନଙ୍କୁ ) ବ୍ୟୂଢ଼ଂ ( ବ୍ୟୂହ-ଆକାରରେ ଦଣ୍ଡାୟମାନ ) ଦୃଷ୍ଟ୍ୱା (ଦେଖି) ରାଜା ଦୁର୍ଯୋଧନଃ ( ରାଜା ଦୁର୍ଯୋଧନ ) ଆଚାର୍ଯ୍ୟଂ ଉପସଙ୍ଗମ୍ୟ ( ଆଚାର୍ଯ୍ୟଙ୍କ ପାଖକୁ ଯାଇ ) ବଚନଂ ଅବ୍ରବୀତ୍ ( କହିଲେ )।

**ଅନୁବାଦ**— ସଞ୍ଜୟ କହିଲେ, ପାଣ୍ଡବମାନଙ୍କର ସୈନ୍ୟମାନଙ୍କୁ ବ୍ୟୂହ ଆକାରରେ ଦଣ୍ଡାୟମାନ ଦେଖି ରାଜା ଦୁର୍ଯୋଧନ ଦ୍ରୋଣାଚାର୍ଯ୍ୟଙ୍କ ପାଖକୁ ଯାଇ ଏହି କଥା କହିଲେ ।

**ସୁଟବୋଧିନୀ ଟୀକା**— ସଞ୍ଜୟ ଉବାଚ । ଦୃଷ୍ଟ୍ୱେତ୍ୟାଦି । ପାଣ୍ଡବାନାମନୀକଂ ସୈନ୍ୟମ୍ । ବ୍ୟୂଢ଼ଂ ବ୍ୟୂହ ରଚନୟା ବ୍ୟବସ୍ଥିତମ୍ । ଦୃଷ୍ଟ୍ୱା ଦ୍ରୋଣାଚାର୍ଯ୍ୟସମୀପଂ ଗତ୍ୱା ରାଜା ଦୁର୍ଯୋଧନୋ ବକ୍ଷ୍ୟମାଣଂ ବଚନ ମୁବାଚ ।

**ବିବୃତି**—ଭରଦ୍ୱାଜ ପୁତ୍ର ଦ୍ରୋଣ ଦୁର୍ଯୋଧନ ପ୍ରଭୃତିଙ୍କର ଅସ୍ତ୍ରଗୁରୁ ଥିଲେ । ସେ ବ୍ରାହ୍ମଣ, କିନ୍ତୁ ଯୁଦ୍ଧବିଦ୍ୟାରେ ଅଦ୍ୱିତୀୟ । ପୂର୍ବକାଳରେ ଯୁଦ୍ଧ-ବିଦ୍ୟାରେ ଯେ କେବଳ କ୍ଷତ୍ରିୟମାନେ ନିପୁଣ ଥିଲେ ତାହା ନୁହେଁ । ପରଶୁରାମ, କୃପାଚାର୍ଯ୍ୟ, ଅଶ୍ୱତ୍ଥାମା—ଏମାନେ ମଧ୍ୟ ବ୍ରାହ୍ମଣ ହେଲେହେଁ କ୍ଷତ୍ରିୟମାନଙ୍କଠାରୁ ଯୁଦ୍ଧରେ ଅଧିକତର ନିପୁଣ ଥିଲେ । ଯୁଦ୍ଧାର୍ଥ ସୈନ୍ୟ ସମାବେଶକୁ ବ୍ୟୂହ କୁହାଯାଏ । ପାଣ୍ଡବମାନେ ଯୁଦ୍ଧକ୍ଷେତ୍ରରେ ନିଜ ସୈନ୍ୟଙ୍କର ଅଳ୍ପତା ଦେଖି ବଜ୍ରନାମକ ବ୍ୟୂହରଚନା କରି ସୈନ୍ୟମାନଙ୍କୁ ଠିଆ କରାଇଥିଲେ । ଏହି ବ୍ୟୂହରଚନା ପ୍ରତିଦିନ ପରିବର୍ତ୍ତିତ ହେଉଥିଲା । ପାଣ୍ଡବମାନଙ୍କର ବ୍ୟୂହ-ରଚନା କୌଶଳ ଦେଖି ଦୁର୍ଯୋଧନ ଅସ୍ତ୍ରଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ଦୃଷ୍ଟି ସେ ଆଡ଼କୁ ଆକର୍ଷଣ କରିଥିଲେ ।

୩ । **ଅନ୍ୱୟଦୀପିକା**— ଆଚାର୍ଯ୍ୟ (ହେ ଗୁରୁଦେବ) ତବ (ଆପଣଙ୍କ) ଧୀମତା (ବୁଦ୍ଧିମାନ୍) ଶିଷ୍ୟେଣ (ଶିଷ୍ୟ) ଦ୍ରୁପଦପୁତ୍ରେଣ ( ଦ୍ରୁପଦ ରାଜାଙ୍କ ପୁଅ ଧୃଷ୍ଟଦ୍ୟୁମ୍ନଙ୍କ ଦ୍ୱାରା ) ବ୍ୟୂଢ଼ାଂ (ବ୍ୟୂହାକାରରେ ସଜ୍ଜିତ) ପାଣ୍ଡୁପୁତ୍ରାଣାଂ (ପାଣ୍ଡୁ ପୁତ୍ରମାନଙ୍କର) ଏତାଂ (ଏହି) ମହତୀଂ (ବିଶାଳ) ଚମୂଂ (ସୈନ୍ୟ) ପଶ୍ୟ (ଦେଖ) ।

ଅତ୍ର ଶୂରା ମହେଷ୍ୱାସା ଭୀମାର୍ଜ୍ଜୁନସମାଯୁଧି,
ଯୁଯୁଧାନୋ ବିରାଟଶ୍ଚ ଦ୍ରୁପଦଶ୍ଚ ମହାରଥଃ । ୪ ।
ଧୃଷ୍ଟକେତୁଶ୍ଚେକିତାନଃ କାଶୀରାଜଶ୍ଚ ବୀର୍ଯ୍ୟବାନ୍,
ପୁରୁଜିତ୍ କୁନ୍ତିଭୋଜଶ୍ଚ ଶୈବ୍ୟଶ୍ଚ ନରପୁଙ୍ଗବଃ । ୫ ।
ଯୁଧାମନ୍ୟୁଶ୍ଚ ବିକ୍ରାନ୍ତ ଉତ୍ତମୌଜାଶ୍ଚ ବୀର୍ଯ୍ୟବାନ୍,
ସୌଭଦ୍ରୋ ଦ୍ରୌପଦେୟାଶ୍ଚ ସର୍ବ ଏବ ମହାରଥାଃ । ୬ ।

**ଅନୁବାଦ**—ହେ ଗୁରୁଦେବ ! ପାଣ୍ଡୁପୁତ୍ରମାନଙ୍କର ଏହି ବିଶାଳ ସେନା ଦେଖନ୍ତୁ । ଆପଣଙ୍କର ବୁଦ୍ଧିମାନ୍ ଶିଷ୍ୟ ଦ୍ରୁପଦପୁତ୍ର (ଧୃଷ୍ଟଦ୍ୟୁମ୍ନ) ଏହି ସେନାଙ୍କର ବ୍ୟୂହରଚନା କରିଅଛନ୍ତି ।

**ସୁବୋଧିନୀ ଟୀକା**—ତଦେବ ବଚନମାହ ପଶ୍ୟୈତାମିତ୍ୟାଦିଭିଃ ଶ୍ଳୋକୈଃ । ପଶ୍ୟେତ୍ୟାଦି, ହେ ଆଚାର୍ଯ୍ୟ ପାଣ୍ଡବାନାଂ ମହତୀଂ ବିତତାଂ ଚମୂଂ ସେନାଂ ପଶ୍ୟ । ତବ ଶିଷ୍ୟେଣ ଦ୍ରୁପଦପୁତ୍ରେଣ ଧୃଷ୍ଟଦ୍ୟୁମ୍ନେନ ବ୍ୟୂଢ଼ାଂ ବ୍ୟୂହ-ରଚନୟାଧିଷ୍ଠିତାମ୍ ।

**ବିବୃତି**—ଦ୍ରୁପଦପୁତ୍ର ଧୃଷ୍ଟଦ୍ୟୁମ୍ନ ପାଣ୍ଡବମାନଙ୍କର ଜଣେ ସେନାପତି । ସେ ବ୍ୟୂହ ରଚନା କରିଥିଲେ । ମହାଭାରତରେ ବର୍ଣ୍ଣିତ ଅଛି ଯେ ମହାରାଜ ଦ୍ରୁପଦ ଦ୍ରୋଣାଚାର୍ଯ୍ୟଙ୍କ ବଧ କାମନାରେ ଯଜ୍ଞ କରିଥିଲେ ଏବଂ ସେହି ଯଜ୍ଞରୁ ଧୃଷ୍ଟଦ୍ୟୁମ୍ନଙ୍କର ଜନ୍ମ ହୋଇଥିଲା । ଦ୍ରୋଣ ଧୃଷ୍ଟଦ୍ୟୁମ୍ନଙ୍କୁ ମଧ୍ୟ ଯୁଦ୍ଧବିଦ୍ୟା ଶିକ୍ଷା ଦେଇଥିଲେ । ବିଦ୍ୟାଦାନ ଆଚାର୍ଯ୍ୟଙ୍କର ଧର୍ମ, ଏହି ହେତୁରୁ ନିଜ ବଧନିମିତ୍ତ ଉତ୍ପନ୍ନ ଶତ୍ରୁକୁ ମଧ୍ୟ ଦ୍ରୋଣ ଅସ୍ତ୍ରବିଦ୍ୟା ଶିକ୍ଷା ଦେଇଥିଲେ । ଧୃଷ୍ଟଦ୍ୟୁମ୍ନ ଯେତେ ମେଧାବୀ ଓ କୌଶଳୀ ହୁଅନ୍ତୁ ନା କାହିଁକି ଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ଠାରୁ ତାହାଙ୍କର ଶିକ୍ଷା; ଏଣୁ ଧୃଷ୍ଟଦ୍ୟୁମ୍ନ ଯେଉଁ ବ୍ୟୂହ ରଚନା କରିଅଛନ୍ତି, ଦ୍ରୋଣ ତାହା ସହଜରେ ଭେଦ କରି ପାରିବେ । ଏଠାରେ ଦୁର୍ଯ୍ୟୋଧନ ତାହାର ଯେପରି ଇଙ୍ଗିତ କଲେ ।

ଦୁର୍ଯ୍ୟୋଧନ ଯଦିଚ ଜାଣିଥିଲେ ତାଙ୍କ ପକ୍ଷରେ ସୈନ୍ୟ ଓ ଶକ୍ତି ଅଧିକ ତଥାପି ଶତ୍ରୁକୁ ଛୋଟ ଭାବିବାଭଳି ବୁଦ୍ଧିହୀନ ସେ ନ ଥିଲେ । ପାଣ୍ଡବସେନା ବିଶାଳ, ସେମାନଙ୍କୁ ପୁଣି ମେଧାବୀ ଧୃଷ୍ଟଦ୍ୟୁମ୍ନ ସଜ୍ଜିତକରି ଯୁଦ୍ଧନିମିତ୍ତ ଠିଆ କରାଇ ଅଛନ୍ତି । ଅତଏବ ଶତ୍ରୁ ସାମାନ୍ୟ ନୁହେ, ଅତି ସାବଧାନତା ସହିତ ଯୁଦ୍ଧ କରିବାକୁ ହେବ, ଏହା ହିଁ ଦୁର୍ଯ୍ୟୋଧନ ଦ୍ରୋଣଙ୍କୁ ସଙ୍କେତ କଲେ ।

୪, ୫, ୬ । **ଅନ୍ୱୟଦୀପିକା**—ଅତ୍ର (ଏହି ପାଣ୍ଡବସେନା ମଧ୍ୟରେ) ଯୁଧି (ଯୁଦ୍ଧରେ) ଭୀମାର୍ଜ୍ଜୁନସମାଃ (ଭୀମ ଓ ଅର୍ଜ୍ଜୁନଙ୍କ ତୁଲ୍ୟ) ମହେଷ୍ୱାସାଃ (ମହାଧନୁର୍ଦ୍ଧର)

ଶୂରାଃ (ବୀରଗଣ) ଯୁଯୁଧାନଃ ( ସାତ୍ୟକି ) ବିରାଟଃ ଚ (ଏବଂ ବିରାଟ) ମହାରଥଃ ଦ୍ରୁପଦଃ ଚ ( ଏବଂ ମହାରଥୀ ଦ୍ରୁପଦ), ବୀର୍ଯ୍ୟବାନ୍ ଧୃଷ୍ଟକେତୁଃ (ମହାପରାକ୍ରାନ୍ତ ଧୃଷ୍ଟକେତୁ), ଚେକିତାନଃ (ଚେକିତାନ), କାଶୀରାଜଃ ( ଏବଂ କାଶୀରାଜ ), ପୁରୁଜିତ୍ କୁନ୍ତିଭୋଜଃ ଚ (ଏବଂ ପୁରୁଜିତ୍ କୁନ୍ତିଭୋଜ), ନରପୁଙ୍ଗବଃ ଶୈବ୍ୟଃ ଚ (ଓ ନରଶ୍ରେଷ୍ଠ ଶୈବ୍ୟ), ବିକ୍ରାନ୍ତଃ ଯୁଧାମନ୍ୟୁଃ ଚ (ଏବଂ ବିକ୍ରମଶାଳୀ ଯୁଧାମନ୍ୟୁ), ବୀର୍ଯ୍ୟବାନ୍ ଉତ୍ତମୌଜାଃ ଚ ( ପରାକ୍ରମଶୀଳ ଉତ୍ତମୌଜା ), ସୌଭଦ୍ରଃ ( ସୁଭଦ୍ରାଙ୍କ ପୁତ୍ର ଅଭିମନ୍ୟୁ), ଦ୍ରୌପଦେୟାଃ ଚ (ଏବଂ ଦ୍ରୌପଦୀଙ୍କ ପୁତ୍ରଗଣ) ସର୍ବେ ଏବ (ଏମାନେ ସମସ୍ତେ) ମହାରଥାଃ (ମହାରଥ) ।

**ଅନୁବାଦ**— ଏହି ପାଣ୍ଡବସେନାଙ୍କ ମଧ୍ୟରେ ଯୁଦ୍ଧରେ ଭୀମ ଓ ଅର୍ଜ୍ଜୁନଙ୍କ ଭଳି ମହାଧନୁର୍ଦ୍ଧର ବୀର ଅନେକ ରହିଅଛନ୍ତି । ସାତ୍ୟକି, ବିରାଟ ଓ ମହାରଥୀ ଦ୍ରୁପଦ, ଧୃଷ୍ଟକେତୁ, ଚେକିତାନ ଓ ବୀର୍ଯ୍ୟବାନ୍ କାଶୀରାଜ, ପୁରୁଜିତ୍ କୁନ୍ତିଭୋଜ, ନରଶ୍ରେଷ୍ଠ ଶୈବ୍ୟ, ପରାକ୍ରମଶୀଳ ଯୁଧାମନ୍ୟୁ ଓ ବୀର୍ଯ୍ୟବାନ୍ ଉତ୍ତମୌଜା ଏବଂ ସୁଭଦ୍ରାନନ୍ଦନ ଅଭିମନ୍ୟୁ ଓ ଦ୍ରୌପଦୀଙ୍କ ପାଞ୍ଚପୁଅ—ଏମାନେ ସମସ୍ତେ ମହାରଥୀ ।

**ସୁବୋଧିନୀ ଟୀକା**— ଅନେହେତ୍ୟାହ—ଅତ୍ରେତ୍ୟାଦି ତ୍ରିଭିଃ । ଇଷବୋ ବାଣା ଅସ୍ୟନ୍ତେ କ୍ଷିପ୍ୟନ୍ତେ ଏଭିରିତୀଷ୍ୱାସା ଧନୂଂଷି । ମହାନ୍ତ ଇଷ୍ୱାସା ଯେଷାଂ ତେ ମହେଷ୍ୱାସାଃ । ଭୀମାର୍ଜ୍ଜୁନୌ ତାବଦତ୍ରାତି ପ୍ରସିଦ୍ଧୌ ଯୋଦ୍ଧାରୌ । ତାଭ୍ୟାଂ ସମାଃ ଶୂରାଃ ସନ୍ତି । ତାନେବ ନାମଭିର୍ନିର୍ଦ୍ଦିଶତି । ଯୁଯୁଧାନ ଇତି । ଯୁଯୁଧାନଃ ସାତ୍ୟକିଃ ।୪। କିଞ୍ଚ—ଧୃଷ୍ଟକେତୁ ରିତି । ଚେକିତାନୋ ନାମୈକୋ ରାଜା । ନରପୁଙ୍ଗବୋ ନରଶ୍ରେଷ୍ଠଃ ଶୈବ୍ୟଃ ।୫। ଯୁଧାମନ୍ୟୁରିତି । ବିକ୍ରାନ୍ତୋ ଯୁଧାମନ୍ୟୁ ର୍ନାମୈକଃ । ସୌଭଦ୍ରୋଽଭିମନ୍ୟୁଃ । ଦ୍ରୌପଦେୟା ଦ୍ରୌପଦ୍ୟାଃ ପଞ୍ଚଭ୍ୟୋ ଯୁଧିଷ୍ଠିରାଦିଭ୍ୟୋ ଜାତାଃ ପୁତ୍ରାଃ ପ୍ରତିବିନ୍ଧ୍ୟାଦୟଃ ପଞ୍ଚ । ମହାରଥାଦୀନାଂ ଲକ୍ଷଣମ୍ ।

ଏକୋ ଦଶ ସହସ୍ରାଣି ଯୋଧୟେଦ୍ୟସ୍ତୁ ଧନ୍ୱିନାମ୍ ।
ଅସ୍ତ୍ରଶସ୍ତ୍ର ପ୍ରବୀଣଶ୍ଚ ମହାରଥ ଇତିସ୍ମୃତଃ ॥
ଅମିତାନ୍ ଯୋଧୟେଦ୍ୟସ୍ତୁ ସମ୍ପ୍ରୋକ୍ତୋଽତିରଥସ୍ତୁ ସଃ ।
ରଥୀ ଚୈକେନ ଯୋ ଯୋଦ୍ଧା ତନ୍ନ୍ୟୂନୋଽର୍ଦ୍ଧରଥୋ ମତଃ । ଇତି ।

**ବିବୃତି**—ଦଶହଜାର ଧନୁର୍ଦ୍ଧାରୀ ଯୋଦ୍ଧାଙ୍କ ସଙ୍ଗେ ଯେ ଏକାକୀ ଯୁଦ୍ଧ କରି ପାରନ୍ତି ଓ ଯେ ଅସ୍ତ୍ରଶସ୍ତ୍ରରେ ନିପୁଣ ତାହାଙ୍କୁ ମହାରଥୀ ବା ମହାରଥ ବୋଲାଯାଏ । ଯେ ଅସଂଖ୍ୟ ଯୋଦ୍ଧାଙ୍କ ସଙ୍ଗେ ଯୁଦ୍ଧ କରି ପାରନ୍ତି, ତାହାଙ୍କୁ ଅତିରଥ, ଜଣକ ସାଙ୍ଗରେ ଯୁଦ୍ଧକାରୀଙ୍କୁ ରଥୀ ଏବଂ ତହିଁରୁ କମ ଯୋଦ୍ଧାଙ୍କୁ ଅର୍ଦ୍ଧରଥ କୁହାଯାଏ ।

ଅସ୍ମାକଂ ତୁ ବିଶିଷ୍ଟା ଯେ ତାନ୍ନିବୋଧ ଦ୍ୱିଜୋତ୍ତମ
ନାୟକା ମମ ସୈନ୍ୟସ୍ୟ ସଂଜ୍ଞାର୍ଥଂ ତାନ୍ ବ୍ରବୀମି ତେ । ୭ ।
ଭବାନ୍ ଭୀଷ୍ମଶ୍ଚ କର୍ଣ୍ଣଶ୍ଚ କୃପଶ୍ଚ ସମିତଞ୍ଜୟଃ,
ଅଶ୍ୱତ୍ଥାମା ବିକର୍ଣ୍ଣଶ୍ଚ ସୌମଦତ୍ତି ର୍ଜୟଦ୍ରଥଃ । ୮ । *

ଧୃଷ୍ଟକେତୁ ଶିଶୁପାଳଙ୍କର ପୁତ୍ର । ପୁରୁଜିତ୍ କୁନ୍ତିଭୋଜ ଏକ ବ୍ୟକ୍ତିଙ୍କ ନାମ । କୁନ୍ତୀ ଯେଉଁ କୁନ୍ତିଭୋଜ ରାଜାଙ୍କ ଗୃହରେ ପାଳିତ ହୋଇଥିଲେ ପୁରୁଜିତ୍ ତାଙ୍କର ଔରସ ପୁତ୍ର ଏବଂ କୁନ୍ତିଭୋଜ ତାଙ୍କର କୌଳିକ ନାମ; ପୁରୁଜିତ୍ ଏ ସମ୍ବନ୍ଧରେ ପାଣ୍ଡବମାନଙ୍କର ମାମୁ । ଯୁଧାମନ୍ୟୁ ଓ ଉତ୍ତମୌଜା ଉଭୟେ ପାଞ୍ଚାଳ ଥିଲେ ଏବଂ ଚେକିତାନ ଯଦୁବଂଶୀୟ । ଯୁଧାମନ୍ୟୁ ଓ ଉତ୍ତମୌଜା ଉଭୟେ ଯୁଦ୍ଧରେ ଅର୍ଜ୍ଜୁନଙ୍କର ଚକ୍ରରକ୍ଷକ ଥିଲେ । ଶିବି ଦେଶର ରାଜାଙ୍କ ନାମ ଶୈବ୍ୟ ଥିଲା ।

**୭ । ଅନ୍ୱୟଦୀପିକା**—[ହେ] ଦ୍ୱିଜୋତ୍ତମ ! ଅସ୍ମାକଂ ତୁ (ଆମମାନଙ୍କ ମଧ୍ୟରେ) ଯେ (ଯେଉଁମାନେ) ବିଶିଷ୍ଟାଃ (ପ୍ରଧାନ) ମମ (ମୋ) ସୈନ୍ୟସ୍ୟ (ସୈନ୍ୟଙ୍କର) ନାୟକାଃ (ସେନାପତିମାନେ) ତାନ୍ (ସେମାନଙ୍କୁ) ନିବୋଧ (ଅବଗତ ହୁଅ), ତେ (ତୁମ୍ଭର) ସଂଜ୍ଞାର୍ଥଂ (ଗୋଚରାର୍ଥେ) ତାନ୍ ବ୍ରବୀମି (ସେମାନଙ୍କ ନାମ କହୁଅଛି ) ।

**ଅନୁବାଦ**—ହେ ବ୍ରାହ୍ମଣଶ୍ରେଷ୍ଠ ! ଆମ ସୈନ୍ୟମାନଙ୍କ ମଧ୍ୟରେ ଯେଉଁମାନେ ପ୍ରଧାନ ସେନାପତି ସେମାନଙ୍କ ନାମ ମଧ୍ୟ ମୁଁ ଆପଣଙ୍କ ଅବଗତି ନିମିତ୍ତ କହୁଅଛି, ଆପଣ ଶୁଣନ୍ତୁ ।

**ସୁବୋଧିନୀ ଟୀକା**—ଅସ୍ମାକମିତି । ନିବୋଧ ବୁଧ୍ୟସ୍ୱ । ନାୟକାଃ ନେତାରଃ, ସଂଜ୍ଞାର୍ଥଂ ସମ୍ୟକ୍ ଜ୍ଞାନାର୍ଥମିତ୍ୟର୍ଥଃ ।

**ବିବୃତି**—ପାଣ୍ଡବପକ୍ଷୀୟ ମହାରଥୀମାନଙ୍କର ନାମୋଲ୍ଲେଖ କରିବାରୁ କାଳେ ଦ୍ରୋଣ ଭାବିବେ ଯେ, ଯେବେ ତୁମେ ବିପକ୍ଷର ସେନାପତିମାନଙ୍କୁ ଦେଖି ଡରୁଛ, ତେବେ ସେମାନଙ୍କ ସଙ୍ଗେ ମିଳିଯାଅ, ଏହି ଆଶଙ୍କା ନିରାକରଣ ନିମିତ୍ତ ଦୁର୍ଯ୍ୟୋଧନ ନିଜପକ୍ଷୀୟ ସେନାପତିମାନଙ୍କର ନାମ କହୁଅଛନ୍ତି ।

**୮ । ଅନ୍ୱୟଦୀପିକା**— ଭବାନ୍ (ଆପଣ), ଭୀଷ୍ମଃ ଚ (ଏବଂ ଭୀଷ୍ମ) କର୍ଣ୍ଣଃ ଚ (ଏବଂ କର୍ଣ୍ଣ), ସମିତଞ୍ଜୟଃ(ଯୁଦ୍ଧଜୟୀ) କୃପଃ ଚ (ଏବଂ କୃପ), ଅଶ୍ୱତ୍ଥାମା

* ସୌମଦତ୍ତି ସ୍ତଥୈବଚ—ଇତି ପାଠାନ୍ତରମ୍ ।

ଅନେ୍ୟ ଚ ବହବଃ ଶୂରାଃ ମଦର୍ଥେ ତ୍ୟକ୍ତଜୀବିତାଃ,
ନାନାଶସ୍ତ୍ର ପ୍ରହରଣାଃ ସର୍ବେ ଯୁଦ୍ଧବିଶାରଦାଃ । ୯ ।
ଅପର୍ଯ୍ୟାପ୍ତଂ ତଦସ୍ମାକଂ ବଲଂ ଭୀଷ୍ମାଭିରକ୍ଷିତମ୍,
ପର୍ଯ୍ୟାପ୍ତଂ ତ୍ୱିଦମେତେଷାଂ ବଲଂ ଭୀମାଭିରକ୍ଷିତମ୍ । ୧୦ ।

(ଅଶ୍ୱତ୍ଥାମା), ବିକର୍ଣ୍ଣଃ ଚ (ଏବଂ ବିକର୍ଣ୍ଣ); ସୌମଦତ୍ତିଃ (ସୋମଦତ୍ତଙ୍କ ପୁଅ ଭୂରିଶ୍ରବାଃ), ଜୟଦ୍ରଥଃ (ଜୟଦ୍ରଥ)।

**ଅନୁବାଦ**—ଆପଣ ଏବଂ ଭୀଷ୍ମ, କର୍ଣ୍ଣ ଏବଂ ଯୁଦ୍ଧଜୟୀ କୃପ ଅଶ୍ୱତ୍ଥାମା ଏବଂ ବିକର୍ଣ୍ଣ (ଦୁର୍ଯ୍ୟୋଧନଙ୍କ ଶତଭ୍ରାତା ମଧ୍ୟରୁ ଅନ୍ୟତମ) ଏବଂ ସୋମଦତ୍ତଙ୍କ ପୁତ୍ର ଭୂରିଶ୍ରବା ଓ ଜୟଦ୍ରଥ।

**ସୁବୋଧିନୀ ଟୀକା**— ତାନେବାହ—ଭବାନିତି ଦ୍ୱାଭ୍ୟାମ୍ । ଭବାନ୍ ଦ୍ରୋଣଃ ସମିତିଂ ସଂଗ୍ରାମଂ ଜୟତୀତି ସମିତିଞ୍ଜୟଃ । ତଥା ସୌମଦତ୍ତିଃ ସୋମଦତ୍ତସ୍ୟ ପୁତ୍ରୋ ଭୂରିଶ୍ରବାଃ ।

**୯ । ଅନ୍ୱୟଦୀପିକା**— ମଦର୍ଥେ (ମୋ ପାଇଁ) ତ୍ୟକ୍ତଜୀବିତାଃ (ଜୀବନତ୍ୟାଗ କରିବାରେ କୃତସଙ୍କଳ୍ପ) ଅନେ୍ୟ ଚ (ଅନ୍ୟରମଧ୍ୟ) ବହବଃ (ଅନେକ) ନାନାଶସ୍ତ୍ର ପ୍ରହରଣାଃ (ନାନାବିଧ ଶସ୍ତ୍ରଚାଳନାରେ ନିପୁଣ), ସର୍ବେ (ସେମାନେ ସମସ୍ତେ) ଯୁଦ୍ଧବିଶାରଦାଃ (ରଣକୁଶଳ)।

**ଅନୁବାଦ**—ଏମାନଙ୍କ ଛଡ଼ା ଅନ୍ୟ ଅନେକ ଯୋଦ୍ଧା ମୋ ପାଇଁ ପ୍ରାଣ ଦେବାକୁ ପ୍ରସ୍ତୁତ ଅଛନ୍ତି ଏବଂ ସେମାନେ ସମସ୍ତେ ନାନାବିଧ ଶସ୍ତ୍ରଚାଳନାରେ ନିପୁଣ ଏବଂ ସଂଗ୍ରାମରେ ଅଭିଜ୍ଞ।

**ସୁବୋଧିନୀ ଟୀକା**—ଅନେ୍ୟଚେତି । ମଦର୍ଥେ ମତ୍ ପ୍ରୟୋଜନାର୍ଥଂ ଜୀବିତଂ ତ୍ୟକ୍ତୁଂ ଅଧ୍ୟବସିତା ଇତ୍ୟର୍ଥଃ । ନାନାନେକାନି ଶସ୍ତ୍ରାଣି ପ୍ରହରଣ ସାଧନାନି ଯେଷାଂ ତେ । ଯୁଦ୍ଧେ ବିଶାରଦା ନିପୁଣାଃ ।

**୧୦ । ଅନ୍ୱୟଦୀପିକା**— ଭୀଷ୍ମାଭିରକ୍ଷିତଂ (ଭୀଷ୍ମକର୍ତ୍ତୃକ ରକ୍ଷିତ) ଅସ୍ମାକଂ (ଆମ୍ଭମାନଙ୍କର) ତତ୍ (ସେହି) ବଲଂ (ସୈନ୍ୟ) ଅପର୍ଯ୍ୟାପ୍ତଂ (ଅପରିମିତ ବା ଅଗଣ୍ୟ)। ଏତେଷାଂ ତୁ (କିନ୍ତୁ, ଏମାନଙ୍କର) ଭୀମାଭିରକ୍ଷିତଂ (ଭୀମଙ୍କଦ୍ୱାରା ରକ୍ଷିତ) ଇଦଂ (ଏହି) ବଲଂ (ସୈନ୍ୟ) ପର୍ଯ୍ୟାପ୍ତଂ (ପରିମିତ ବା ଗଣନାର ଅଯୋଗ୍ୟ)।

**ଅନୁବାଦ**—ଭୀଷ୍ମଙ୍କଦ୍ୱାରା ରକ୍ଷିତ ଆମ୍ଭମାନଙ୍କର ଏହି ସୈନ୍ୟ ଅପର୍ଯ୍ୟାପ୍ତ ଅର୍ଥାତ୍ ଅପରିମିତ କିନ୍ତୁ ଭୀମକର୍ତ୍ତୃକ ରକ୍ଷିତ ପାଣ୍ଡବପକ୍ଷୀୟ ସୈନ୍ୟ ସଂଖ୍ୟା ଅପେକ୍ଷାକୃତ ଅଳ୍ପ।

ଅୟନେଷୁ ଚ ସର୍ବେଷୁ ଯଥାଭାଗ ମବସ୍ଥିତାଃ,
ଭୀଷ୍ମମେବାଭିରକ୍ଷନ୍ତୁ ଭବନ୍ତଃ ସର୍ବ ଏବ ହି । ୧୧ ।

**ସୁବୋଧିନୀ ଟୀକା**— ତତଃ କିମ୍ ? ଅତ ଆହ ଅପର୍ଯ୍ୟାପ୍ତ ମିତ୍ୟାଦି, ତତ୍ ତଥାଭୂତୈ ର୍ବୀରୈର୍ୟୁକ୍ତମପି ଭୀଷ୍ମେଣାଭିରକ୍ଷିତମପ୍ୟସ୍ମାକଂ ବଲଂ ସୈନ୍ୟମପର୍ଯ୍ୟାପ୍ତମ୍ । ତୈଃ ସହ ଯୋଦ୍ଧୁମସମର୍ଥଂ ଭାତି । ଇଦମେତେଷାଂ ପାଣ୍ଡବାନାଂ ବଲଂ ଭୀମାଭିରକ୍ଷିତଂ ସତ୍ ପର୍ଯ୍ୟାପ୍ତଂ ସମର୍ଥଂ ଭାତି । ଭୀଷ୍ମସ୍ୟୋଭୟପକ୍ଷପାତିତ୍ୱାଦସ୍ମଦ୍ବଲଂ ପାଣ୍ଡବସୈନ୍ୟଂ ପ୍ରତ୍ୟସମର୍ଥମ୍ । ଭୀମସ୍ୟୈକ ପକ୍ଷପାତିତ୍ୱାଦେତଦ୍ବଲମସ୍ମଦ୍ବଲଂ ପ୍ରତିସମର୍ଥଂ ଭାତି ।

**ବିବୃତି**— ଏ ଶ୍ଳୋକରେ 'ପର୍ଯ୍ୟାପ୍ତ' ଓ 'ଅପର୍ଯ୍ୟାପ୍ତ' ଶବ୍ଦଦ୍ୱୟର ଅର୍ଥ ବିଷୟରେ ଟୀକାକାରମାନଙ୍କ ମଧ୍ୟରେ ମତଭେଦ ଦେଖାଯାଏ । 'ପର୍ଯ୍ୟାପ୍ତ' ଶବ୍ଦର ସାଧାରଣ ଅର୍ଥ 'ଯଥେଷ୍ଟ' । ତେଣୁ କେହି କେହି ଅର୍ଥ କରନ୍ତି ଯେ ପାଣ୍ଡବମାନଙ୍କର ଯଥେଷ୍ଟ ସୈନ୍ୟ ଅଛନ୍ତି ଏବଂ ଆମ୍ଭମାନଙ୍କର ଯଥେଷ୍ଟ ନୁହନ୍ତି । କିନ୍ତୁ ଏଠାରେ ଏ ଅର୍ଥ ଠିକ୍ ସଙ୍ଗତ ବୋଧ ହୁଏ ନାହିଁ । କାରଣ ନିଜ ପକ୍ଷର ଦୁର୍ବଳତା ଦେଖାଇବା ଏ ସ୍ଥାନରେ ଦୁର୍ଯ୍ୟୋଧନଙ୍କ ପକ୍ଷରେ କିଛି ଆବଶ୍ୟକ ନ ଥିଲା । ପରନ୍ତୁ ଉଦ୍ଯୋଗ ପର୍ବରେ ଧୃତରାଷ୍ଟ୍ରଙ୍କ ନିକଟରେ ନିଜ ସୈନ୍ୟ ଓ ସେନାପତିମାନଙ୍କର ବର୍ଣ୍ଣନା କରିବାବେଳେ ଦୁର୍ଯ୍ୟୋଧନ କହିଅଛନ୍ତି, ଆମପକ୍ଷରେ ଯଥେଷ୍ଟ ସୈନ୍ୟ ଅଛନ୍ତି, ଏପରି ଅବସ୍ଥାରେ ଯୁଦ୍ଧରେ ଆମର ଜୟ ନିଶ୍ଚିତ । ଆମ ଓଡ଼ିଆରେ ଅନେକ ସମୟରେ 'ଅପର୍ଯ୍ୟାପ୍ତ' ଶବ୍ଦ ଅତି ବେଶି ଅର୍ଥରେ ପ୍ରଯୁକ୍ତ ହୁଏ । 'ରାମଙ୍କର ଅପର୍ଯ୍ୟାପ୍ତ ଧନ ଅଛି' ଏ ସ୍ଥଳରେ 'ଅପର୍ଯ୍ୟାପ୍ତ' ଅର୍ଥ ଅତି ବେଶି ।

ଗୀତାର ସୁପ୍ରସିଦ୍ଧ ଟୀକାକାର ପୂଜ୍ୟପାଦ ଶ୍ରୀଧରସ୍ୱାମୀ ତାଙ୍କ ଟୀକାରେ 'ପର୍ଯ୍ୟାପ୍ତ' ଶବ୍ଦ 'ସମର୍ଥ' ଅର୍ଥରେ ଓ ଅପର୍ଯ୍ୟାପ୍ତ ଶବ୍ଦ 'ଅସମର୍ଥ' ଅର୍ଥରେ ଗ୍ରହଣ କରିଅଛନ୍ତି । ତାଙ୍କ ଦୃଷ୍ଟିରେ ସେନାପତି ଭୀଷ୍ମଙ୍କ କୌରବ ଓ ପାଣ୍ଡବ ଉଭୟପକ୍ଷପାତିତ୍ୱ ଦୁର୍ଯ୍ୟୋଧନଙ୍କ ଉକ୍ତିର ଲକ୍ଷ୍ୟରୂପେ ପ୍ରତିଭାତ ହେଉଅଛି । ସେ ଭାବରେ ବିଚାରକଲେ ସ୍ୱାମୀଙ୍କ ବ୍ୟାଖ୍ୟା ଅସମୀଚୀନ ନୁହେ ।

**୧୧ । ଅନ୍ୱୟଦୀପିକା**—ଅୟନେଷୁ ଚ ସର୍ବେଷୁ ( ବ୍ୟୂହ ମଧ୍ୟରେ ପ୍ରବେଶ କରିବାର ସମସ୍ତ ପଥରେ ) ଯଥାଭାଗମ୍ ( ନିଜ ନିଜ ବିଭାଗ ଅନୁସାରେ ) ଅବସ୍ଥିତାଃ ( ଅବସ୍ଥିତ ହୋଇ ) ଭବନ୍ତଃ ( ଆପଣମାନେ ) ସର୍ବେ ଏବ ହି ( ସମସ୍ତେହିଁ ) ଭୀଷ୍ମମ୍ ଏବ ( କେବଳ ଭୀଷ୍ମଙ୍କୁ ) ଅଭିରକ୍ଷନ୍ତୁ ( ରକ୍ଷାକରନ୍ତୁ ) ।

**ଅନୁବାଦ**—ବର୍ତ୍ତମାନ ଆପଣମାନେ ନିଜ ନିଜ ନିଯୋଗ ଅନୁସାରେ ବ୍ୟୂହର ଭିନ୍ନ ଭିନ୍ନ ପ୍ରବେଶ ପଥରେ ରହି ସମସ୍ତେ ମିଳିତ ହୋଇ ଭୀଷ୍ମଙ୍କୁ ସର୍ବଥା ରକ୍ଷାକରନ୍ତୁ ।

ତସ୍ୟ ସଞ୍ଜନୟନ୍ ହର୍ଷଂ କୁରୁବୃଦ୍ଧଃ ପିତାମହଃ,
ସିଂହନାଦଂ ବିନଦ୍ୟୋଚ୍ଚୈଃ ଶଙ୍ଖଂ ଦଧ୍ମୌ ପ୍ରତାପବାନ୍ ।୧୨।

**ସୁବୋଧିନୀ ଟୀକା—** ତସ୍ମାଦ୍ ଭବଦ୍ଭିରେବଂ ବର୍ତ୍ତିତବ୍ୟ ମିତ୍ୟାହ । ଅୟନେଷ୍ୱିତି । ଅୟନେଷୁ ବ୍ୟୂହପ୍ରବେଶମାର୍ଗେଷୁ । ଯଥାଭାଗଂ ବିଭକ୍ତାଂ ସ୍ୱାଂ ସ୍ୱାଂ ରଣଭୂମିଂ ଅପରିତ୍ୟଜ୍ୟ ଅବସ୍ଥିତାଃ ସନ୍ତୋ । ଭୀଷ୍ମମେବାଭିତୋ ରକ୍ଷନ୍ତୁ ଭବନ୍ତଃ । ଯଥା ଅନ୍ୟୈର୍ୟୁଧ୍ୟମାନଃ ପୃଷ୍ଠତଃ କୈଶ୍ଚିନ୍ନହନ୍ୟେତ ତଥା ରକ୍ଷନ୍ତୁ । ଭୀଷ୍ମବଲେନୈବାସ୍ମାକଂ ଜୀବନମିତ୍ୟଭିବଃ ।

**ବିବୃତି—** ସେନାପତି ଭୀଷ୍ମ ସ୍ୱୟଂ ପରାକ୍ରାନ୍ତ ଏବଂ ଅସାଧାରଣ ରଣ-ପଣ୍ଡିତ; ଅନ୍ୟଦ୍ୱାରା ସହଜରେ ପରାସ୍ତ ହେବାର ଲୋକ ନୁହନ୍ତି । 'ସବୁଆଡ଼େ ସମସ୍ତେ ତାହାଙ୍କୁ ରକ୍ଷାକରନ୍ତୁ'—ଏପରି କହିବାର କାରଣ ସ୍ୱରୂପ ଦୁର୍ଯୋଧନ ମହାଭାରତର ଏକ ସ୍ଥାନରେ କହିଅଛନ୍ତି ଯେ—ଶିଖଣ୍ଡୀ ପ୍ରତି ଅସ୍ତ୍ରପ୍ରୟୋଗ କରିବେ ନାହିଁ ବୋଲି ଭୀଷ୍ମଦେବ ପ୍ରତିଜ୍ଞା କରିଅଛନ୍ତି । ଏଣୁ ଶିଖଣ୍ଡୀଠାରୁ ଭୀଷ୍ମଙ୍କର ନିହତ ହେବାର ସମ୍ଭାବନା ଥିଲା । ଅତଏବ ସମସ୍ତଙ୍କୁ ସାବଧାନ ରହିବାକୁ ହେବ—

ଅରକ୍ଷ୍ୟମାଣଂ ହି ବୃକୋ ହନ୍ୟାତ୍ ସିଂହଂ ମହାବଲଂ,
ମା ସିଂହଂ ଜମ୍ବୁକେନେବ ଘାତୟେଥାଃ ଶିଖଣ୍ଡିନା ।

ଅର୍ଥାତ୍—ମହାବଲବାନ ସିଂହକୁ ରକ୍ଷା ନ କଲେ ଗଧିଆବାଘ ତାକୁ ବଧ କରିବ; ଅତଏବ ଶୃଗାଳସଦୃଶ ଶିଖଣ୍ଡୀଦ୍ୱାରା ସିଂହକୁ ନିହତ କରାଅ ନାହିଁ । ଶିଖଣ୍ଡୀ ଛଡ଼ା ଅନ୍ୟ ସମସ୍ତଙ୍କୁ ଏଡ଼ିଦେବା ପାଇଁ ଭୀଷ୍ମ ସମର୍ଥ ଥିଲେ । କାହାରି ସାହାଯ୍ୟ ପାଇଁ ତାଙ୍କୁ ଅପେକ୍ଷା କରିବାକୁ ହେଉ ନ ଥିଲା ।

**୧୨ । ଅନ୍ୱୟଦୀପିକା—** ପ୍ରତାପବାନ୍ କୁରୁବୃଦ୍ଧଃ ପିତାମହଃ( ଭୀଷ୍ମ ) ତସ୍ୟ ( ତାହାଙ୍କର ଅର୍ଥାତ୍ ଦୁର୍ଯୋଧନଙ୍କର ) ହର୍ଷଂ ( ଆନନ୍ଦ ) ସଞ୍ଜନୟନ୍ (ଉତ୍ପାଦନ କରାଇ) ଉଚ୍ଚୈଃ (ଅତ୍ୟୁଚ୍ଚ) ସିଂହନାଦଂ ବିନଦ୍ୟ (ସିଂହନାଦପୂର୍ବକ) ଶଙ୍ଖଂ ଦଧ୍ମୌ ( ଶଙ୍ଖଧ୍ୱନି କଲେ ) ।

**ଅନୁବାଦ—** ପ୍ରତାପଶାଳୀ କୁରୁକୁଳବୃଦ୍ଧ ପିତାମହ ଭୀଷ୍ମଦେବ ତଦନନ୍ତର ରାଜା ଦୁର୍ଯୋଧନଙ୍କର ଆନନ୍ଦ ଜନ୍ମାଇବା ପାଇଁ ସିଂହନାଦପୂର୍ବକ ଶଙ୍ଖ ବଜାଇଲେ ।

**ସୁବୋଧିନୀ ଟୀକା—** ତଦେବଂ ବହୁମାନଯୁକ୍ତଂ ରାଜବାକ୍ୟଂ ଶ୍ରୁତ୍ୱା ଭୀଷ୍ମଃ କିଂ କୃତବାନ୍ ? ତଦାହତସ୍ୟେତ୍ୟାଦି । ତସ୍ୟ ରାଜ୍ଞୋହର୍ଷଂ ସଞ୍ଜନୟନ୍ କୁର୍ବନ୍ ପିତାମହୋ ଭୀଷ୍ମଃ ଉଚ୍ଚୈଃ ମହାନ୍ତଂ ସିଂହନାଦଂ କୃତ୍ୱା ଶଙ୍ଖଂ ଦଧ୍ମୌ ବାଦିତବାନ୍ ।

ତତଃ ଶଙ୍ଖାଶ୍ଚ ଭେର୍ଯ୍ୟଶ୍ଚ ପଣବାନକଗୋମୁଖାଃ,
ସହସୈବାଭ୍ୟହନ୍ୟନ୍ତ ସ ଶବ୍ଦସ୍ତୁମୁଲୋଽଭବତ୍ । ୧୩ ।
ତତଃ ଶ୍ୱେତୈର୍ହୟୈର୍ଯୁକ୍ତେ ମହତି ସ୍ୟନ୍ଦନେ ସ୍ଥିତୌ,
ମାଧବଃ ପାଣ୍ଡବଶ୍ଚୈବ ଦିବ୍ୟୌ ଶଙ୍ଖୌ ପ୍ରଦଧ୍ମତୁଃ । ୧୪ ।
ପାଞ୍ଚଜନ୍ୟଂ ହୃଷୀକେଶୋ ଦେବଦତ୍ତଂ ଧନଞ୍ଜୟଃ ।
ପୌଣ୍ଡ୍ରଂ ଦଧ୍ମୌ ମହାଶଙ୍ଖଂ ଭୀମକର୍ମା ବୃକୋଦରଃ । ୧୫ ।

**୧୩ । ଅନ୍ୱୟଦୀପିକା—** ତତଃ (ତା ପରେ) ଶଙ୍ଖାଶ୍ଚ ଭେର୍ଯ୍ୟଶ୍ଚ (ଶଙ୍ଖ ଓ ଭେରୀ ସମୂହ) ପଣବାନକଗୋମୁଖାଃ (ପଣବ=ମୃଦଙ୍ଗ, ଆନକ=ଢକ୍କା ବା ନାଗରା, ଗୋମୁଖ=ଶିଙ୍ଗା) ସହସା ଏବ (ହଠାତ୍ ଏକସମୟରେ) ଅଭ୍ୟହନ୍ୟନ୍ତ (ବାଜିଉଠିଲେ) । ସ ଶବ୍ଦଃ (ସେହି ଶବ୍ଦ) ତୁମୁଲଃ ଅଭବତ୍ (ଭୟାବହ ହେଲା) ।

**ଅନୁବାଦ—**ତା ପରେ ଶଙ୍ଖ, ଭେରୀ, ମୃଦଙ୍ଗ, ନାଗରା, ଶିଙ୍ଗା ପ୍ରଭୃତି ଏକସମୟରେ ହଠାତ୍ ବାଜି ଉଠିବାରୁ ଭୟଙ୍କର ଶବ୍ଦ ହେଲା ।

**ସୁବୋଧିନୀ ଟୀକା—** ତଦେବଂ ସେନାପତେର୍ଭୀଷ୍ମସ୍ୟ ଯୁଦ୍ଧୋତ୍ସବମାଲୋକ୍ୟ ସର୍ବତୋଯୁଦ୍ଧୋତ୍ସବଃ ପ୍ରବୃତ୍ତ ଇତ୍ୟାହ—ତତ ଇତ୍ୟାଦି । ପଣବା ମର୍ଦ୍ଦଲାଃ । ଆନକା ଗୋମୁଖାଶ୍ଚ ବାଦ୍ୟବିଶେଷାଃ । ସହସା ତତ୍କ୍ଷଣମେବାଭ୍ୟହନ୍ୟନ୍ତ ବାଦିତାଃ । ସ ଶବ୍ଦ ଶଙ୍ଖାଦିଶବ୍ଦ ସ୍ତୁମୁଲୋ ମହାନଭୂତ୍ (ଆଜିକାଲି ଯୁଦ୍ଧରେ ବ୍ୟୁଗଲ (bugle) ବାଜେ, ପୂର୍ବକାଳରେ ଶଙ୍ଖ ସେ କାର୍ଯ୍ୟ କରୁଥିଲା)

**୧୪ । ଅନ୍ୱୟଦୀପିକା—** ତତଃ (ତତ୍‌ପରେ) ଶ୍ୱେତୈଃ ହୟୈଃଯୁକ୍ତେ (ଶ୍ୱେତ ଅଶ୍ୱଯୁକ୍ତ) ମହତି ସ୍ୟନ୍ଦନେ (ବଡ଼ ରଥରେ) ସ୍ଥିତୌ (ଆରୂଢ଼) ମାଧବଃ ପାଣ୍ଡବଃ ଚ ଏବ (ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନ) ଦିବ୍ୟୌ ଶଙ୍ଖୌ (ଦୁଇ ଗୋଟି ଦିବ୍ୟ ଶଙ୍ଖ) ପ୍ରଦଧ୍ମତୁଃ (ବଜାଇଲେ) ।

**ଅନୁବାଦ—**ଅନନ୍ତର ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନ ଧଳାଘୋଡ଼ା ଯୋଚା ହୋଇଥିବା ଗୋଟିଏ ବଡ଼ ରଥରେ ବସି ଦିବ୍ୟ ଶଙ୍ଖ ଧ୍ୱନି କଲେ ।

**ସୁବୋଧିନୀ ଟୀକା—**ତତଃ ପାଣ୍ଡବସୈନ୍ୟେ ପ୍ରବୃତ୍ତଂ ଯୁଦ୍ଧୋତ୍ସବମାହ—ତତ ଇତ୍ୟାଦିଭିଃ ପଞ୍ଚଭିଃ । ତତଃ ପୂର୍ବସୈନ୍ୟବାଦ୍ୟକୋଲାହଲାନନ୍ତରଂ ସ୍ୟନ୍ଦନେ ରଥେ ସ୍ଥିତୌ ସନ୍ତୌ ଶ୍ରୀକୃଷ୍ଣାର୍ଜ୍ଜୁନୌ ଦିବ୍ୟୌ ଶଙ୍ଖୌ ପ୍ରକର୍ଷେଣ ଦଧ୍ମତୁ ର୍ବାଦୟାମାସତୁଃ ।

**୧୫ । ଅନ୍ୱୟଦୀପିକା—** ହୃଷୀକେଶଃ (ଶ୍ରୀକୃଷ୍ଣ) ପାଞ୍ଚଜନ୍ୟଂ (ପାଞ୍ଚଜନ୍ୟ ନାମକ ଶଙ୍ଖ), ଧନଞ୍ଜୟଃ (ଅର୍ଜ୍ଜୁନ) ଦେବଦତ୍ତଂ (ଦେବଦତ୍ତ ନାମକ ଶଙ୍ଖ), ଭୀମକର୍ମା (ସମସ୍ତ ଲୋକର ଭୀତିଉତ୍ପାଦକ କର୍ମକାରୀ) ବୃକୋଦରଃ (ଭୀମ) ପୌଣ୍ଡ୍ରଂ ମହାଶଙ୍ଖଂ (ପୌଣ୍ଡ୍ରନାମକ ମହାଶଙ୍ଖ) ଦଧ୍ମୌ (ବଜାଇଲେ) ।

ଅନନ୍ତବିଜୟଂ ରାଜା କୁନ୍ତୀପୁତ୍ରୋ ଯୁଧିଷ୍ଠିରଃ ।
ନକୁଲଃ ସହଦେବଶ୍ଚ ସୁଘୋଷମଣିପୁଷ୍ପକୌ । ୧୬ ।
କାଶ୍ୟଶ୍ଚ ପରମେଷ୍ୱାସଃ ଶିଖଣ୍ଡୀ ଚ ମହାରଥଃ ।
ଧୃଷ୍ଟଦ୍ୟୁମ୍ନୋ ବିରାଟଶ୍ଚ ସାତ୍ୟକିଶ୍ଚାପରାଜିତଃ । ୧୭ ।
ଦ୍ରୁପଦୋ ଦ୍ରୌପଦେୟାଶ୍ଚ ସର୍ବଶଃ ପୃଥିବୀପତେ
ସୌଭଦ୍ରଶ୍ଚ ମହାବାହୁଃ ଶଙ୍ଖାନ୍ ଦଧ୍ମୁଃ ପୃଥକ୍ ପୃଥକ୍ । ୧୮ ।

**ଅନୁବାଦ**— ଭଗବାନ୍ ଶ୍ରୀକୃଷ୍ଣ ପାଞ୍ଚଜନ୍ୟ ନାମକ ଶଙ୍ଖ; ଅର୍ଜୁନ ଦେବଦତ୍ତ ନାମକ ଶଙ୍ଖ ଓ ଭୀମକର୍ମା ଭୀମ ପୌଣ୍ଡ୍ରନାମକ ଶଙ୍ଖ ବଜାଇଲେ ।

**ସୁବୋଧିନୀ ଟୀକା**— ତଦେବ ... ବିସ୍ତରେଣ ଦର୍ଶୟନ୍ନାହ— ପାଞ୍ଚଜନ୍ୟମିତି । ପାଞ୍ଚଜନ୍ୟାଦୀନି ନାମାନି ଶ୍ରୀକୃଷ୍ଣାଦେ ଶଙ୍ଖାନାମ୍ । ଭୀମଂ ଘୋରଂ କର୍ମ ଯସ୍ୟ ସଃ ।

**୧୬ । ଅନ୍ୱୟଦୀପିକା**— କୁନ୍ତୀପୁତ୍ରଃ ରାଜା ଯୁଧିଷ୍ଠିରଃ ଅନନ୍ତବିଜୟଂ (କୁନ୍ତୀପୁତ୍ର ରାଜା ଯୁଧିଷ୍ଠିର ଅନନ୍ତବିଜୟ ନାମକ ଶଙ୍ଖ), ନକୁଲଃ ସହଦେବଃ ଚ ( ଏବଂ ନକୁଳ ଓ ସହଦେବ ) ସୁଘୋଷମଣିପୁଷ୍ପକୌ (ସୁଘୋଷ ଓ ମଣିପୁଷ୍ପକ ନାମକ ଶଙ୍ଖ ଦୁଇଟି [ବଜାଇଲେ] ।

**ଅନୁବାଦ**— କୁନ୍ତୀପୁତ୍ର ରାଜା ଯୁଧିଷ୍ଠିର ଅନନ୍ତବିଜୟ ନାମକ ଶଙ୍ଖ, ନକୁଳ ସୁଘୋଷ ନାମକ ଶଙ୍ଖ ଓ ସହଦେବ ମଣିପୁଷ୍ପକ ନାମକ ଶଙ୍ଖ ବଜାଇଲେ ।

**ସୁବୋଧିନୀ ଟୀକା**— ଅନନ୍ତେତି—ନକୁଲଃ ସୁଘୋଷଂ ନାମ ଶଙ୍ଖଂ ଦଧ୍ମୌ । ସହଦେବୋ ମଣିପୁଷ୍ପକଂ ନାମ ।

**୧୭, ୧୮ । ଅନ୍ୱୟଦୀପିକା**— [ହେ] ପୃଥିବୀପତେ (ହେ ମହାରାଜ ଧୃତରାଷ୍ଟ୍ର) ପରମେଷ୍ୱାସଃ (ମହାଧନୁର୍ଦ୍ଧର) କାଶ୍ୟଃ ଚ (କାଶୀରାଜ), ମହାରଥଃ ଶିଖଣ୍ଡୀ ଚ (ମହାରଥ ଶିଖଣ୍ଡୀ) ଧୃଷ୍ଟଦ୍ୟୁମ୍ନଃ ବିରାଟଃ ଚ (ଏବଂ ଧୃଷ୍ଟଦ୍ୟୁମ୍ନ ଓ ବିରାଟ-ରାଜା) ଅପରାଜିତଃ ସାତ୍ୟକିଃ ଚ (ଏବଂ ଅଜେୟ ସାତ୍ୟକି) ଦ୍ରୁପଦଃ, ଦ୍ରୌପଦେୟାଃ ଚ (ରାଜା ଦ୍ରୁପଦ ଓ ଦ୍ରୌପଦୀଙ୍କ ପୁତ୍ରଗଣ) ମହାବାହୁଃ ସୌଭଦ୍ରଃ ଚ (ମହାଯୋଦ୍ଧା ସୁଭଦ୍ରାନନ୍ଦନ ଅଭିମନ୍ୟୁ) ସର୍ବଶଃ (ସମସ୍ତେ) ପୃଥକ୍ ପୃଥକ୍ ଶଙ୍ଖାନ୍ ଦଧ୍ମୁଃ (ପୃଥକ୍ ପୃଥକ୍ ଭାବରେ ଶଙ୍ଖ ବଜାଇଲେ) ।

**ଅନୁବାଦ**—ହେ ମହାରାଜ, ମହାଧନୁର୍ଦ୍ଧର କାଶୀରାଜ, ମହାରଥୀ ଶିଖଣ୍ଡୀ, ଧୃଷ୍ଟଦ୍ୟୁମ୍ନ, ବିରାଟ ରାଜା, ଯୁଦ୍ଧରେ ଅପରାଜିତ ସାତ୍ୟକି, ଦ୍ରୁପଦ, ଦ୍ରୌପଦୀଙ୍କ ପୁତ୍ରମାନେ, ସୁଭଦ୍ରାନନ୍ଦନ ମହାବାହୁ ଅଭିମନ୍ୟୁ ପୃଥକ୍ ପୃଥକ୍ ଭାବରେ ନିଜ ନିଜ ଶଙ୍ଖ ବଜାଇଲେ ।

ସ ଘୋଷୋ ଧାର୍ତ୍ତରାଷ୍ଟ୍ରାଣାଂ ହୃଦୟାନି ବ୍ୟଦାରୟତ୍
ନଭଶ୍ଚ ପୃଥିବୀଂ ଚୈବ ତୁମୁଳୋଽଭ୍ୟନୁନାଦୟନ୍ ।୧୯ ।
ଅଥ ବ୍ୟବସ୍ଥିତାନ୍ ଦୃଷ୍ଟ୍ୱା ଧାର୍ତ୍ତରାଷ୍ଟ୍ରାନ୍ କପିଧ୍ୱଜଃ,
ପ୍ରବୃତ୍ତେ ଶସ୍ତ୍ରସମ୍ପାତେ ଧନୁରୁଦ୍ୟମ୍ୟ ପାଣ୍ଡବଃ ।୨୦।
ହୃଷୀକେଶଂ ତଦା ବାକ୍ୟମିଦମାହ ମହୀପତେ ।

ଅର୍ଜ୍ଜୁନ ଉବାଚ

ସେନୟୋରୁଭୟୋର୍ମଧ୍ୟେ ରଥଂ ସ୍ଥାପୟ ମେଽଚ୍ୟୁତ ।୨୧।

**ସୁବୋଧିନୀ ଟୀକା**—କାଶ୍ୟଶ୍ଚେତି । କାଶ୍ୟଃ କାଶିରାଜଃ । କଥଂଭୂତଃ ? ପରମଃ ଶ୍ରେଷ୍ଠଃ ଇଷ୍ୱାସଃ ଧନୁର୍ଯସ୍ୟ ସଃ । ଦ୍ରୁପଦ ଇତି । ହେ ପୃଥିବୀପତେ ଧୃତରାଷ୍ଟ୍ର ।

୧୯ । **ଅନ୍ୱୟଦୀପିକା**— ସଃ (ସେହି) ତୁମୁଳଃ (ଭୟଙ୍କର) ଘୋଷଃ (ଶଙ୍ଖଧ୍ୱନି) ନଭଃ (ଆକାଶ) ପୃଥିବୀଂ ଚ ଏବ (ଓ ପୃଥିବୀକୁ) ଅଭ୍ୟନୁନାଦୟନ୍ (ପ୍ରତିଧ୍ୱନିତ କରି) ଧାର୍ତ୍ତରାଷ୍ଟ୍ରାଣାଂ (ଧୃତରାଷ୍ଟ୍ର ପୁତ୍ରମାନଙ୍କର) ହୃଦୟାନି (ହୃଦୟ) ବ୍ୟଦାରୟତ୍ (ବିଦୀର୍ଣ୍ଣକଲା) ।

**ଅନୁବାଦ**—ସେହି ତୁମୁଳ ଶଙ୍ଖଧ୍ୱନି ଭୂମଣ୍ଡଳ ଓ ନଭୋମଣ୍ଡଳ ପ୍ରତିଧ୍ୱନିତ କରି ଧୃତରାଷ୍ଟ୍ରପୁତ୍ରମାନଙ୍କର ଓ ତାଙ୍କ ପକ୍ଷୀୟମାନଙ୍କର ହୃଦୟ ବିଦୀର୍ଣ୍ଣ କଲା ।

**ସୁବୋଧିନୀ ଟୀକା**— ସ ଚ ଶଙ୍ଖାନାଂ ନାଦ ସ୍ୱୀୟାନାଂ ମହୋତ୍ସାହଂ ଜନୟାମାସେତ୍ୟାହ—ସ ଘୋଷ ଇତ୍ୟାଦି । ଧାର୍ତ୍ତରାଷ୍ଟ୍ରାଣାଂ ତ୍ୱଦୀୟାନାଂହୃଦୟାନି ବିଦାରିତବାନ୍ । କିଂ କୁର୍ବନ୍ ? ନଭଶ୍ଚ ପୃଥିବୀଂ ଚାଭ୍ୟନୁନାଦୟନ୍ ପ୍ରତିଧ୍ୱନିଭିରାପୂରୟନ୍ ।

୨୦, ୨୧ । **ଅନ୍ୱୟଦୀପିକା**— [ହେ] ମହୀପତେ (ରାଜନ୍), ଅଥ (ଅନନ୍ତର) କପିଧ୍ୱଜଃ ପାଣ୍ଡବଃ (ଯାହାଙ୍କ ପତାକାରେ ହନୁମାନ୍‌ଙ୍କର ଚିହ୍ନ ଅଙ୍କିତ ହୋଇଅଛି ସେହି ଅର୍ଜ୍ଜୁନ) ଧାର୍ତ୍ତରାଷ୍ଟ୍ରାନ୍ (ଧୃତରାଷ୍ଟ୍ର ପକ୍ଷୀୟମାନଙ୍କୁ) ବ୍ୟବସ୍ଥିତାନ୍ (ଯୁଦ୍ଧୋଦ୍‌ଯୋଗରେ ଅବସ୍ଥିତ) ଦୃଷ୍ଟ୍ୱା (ଦେଖି) ଶସ୍ତ୍ରସମ୍ପାତେ (ଶସ୍ତ୍ରନିକ୍ଷେପ) ପ୍ରବୃତ୍ତେ (ପ୍ରବୃତ୍ତ ହୁଅନ୍ତେ) ଧନୁଃ ଉଦ୍ୟମ୍ୟ (ଧନୁକୁ ଉତ୍ତୋଳନ କରି) ତଦା (ସେତେବେଳେ) ହୃଷୀକେଶଂ (ଶ୍ରୀକୃଷ୍ଣଙ୍କୁ) ଇଦଂ (ଏହି) ବାକ୍ୟଂ (କଥା) ଆହ (କହିଲେ) । ଅର୍ଜ୍ଜୁନଃ ଉବାଚ (ଅର୍ଜ୍ଜୁନ କହିଲେ) ଅଚ୍ୟୁତ (ହେ କୃଷ୍ଣ) ଉଭୟୋଃ ସେନୟୋଃମଧ୍ୟେ (ଉଭୟ ସେନା ମଧ୍ୟରେ) ମେ (ମୋର) ରଥଂ (ରଥକୁ) ସ୍ଥାପୟ (ସ୍ଥାପନ କର) ।

ଯାବଦେତାନ୍ ନିରୀକ୍ଷେଽହଂ ଯୋଦ୍ଧୁକାମାନବସ୍ଥିତାନ୍,
କୈର୍ମୟା ସହ ଯୋଦ୍ଧବ୍ୟମସ୍ମିନ୍ ରଣସମୁଦ୍ୟମେ । ୨୨ ।
ଯୋତ୍ସ୍ୟମାନାନବେକ୍ଷେଽହଂ ଯ ଏତେଽତ୍ର ସମାଗତାଃ,
ଧାର୍ତ୍ତରାଷ୍ଟ୍ରସ୍ୟ ଦୁର୍ବୁଦ୍ଧେ ଯୁଦ୍ଧେ ପ୍ରିୟଚିକୀର୍ଷବଃ । ୨୩ ।

**ଅନୁବାଦ**—ହେ ମହାରାଜ, ତୃମ୍ଭ ପକ୍ଷୀୟ ସୈନ୍ୟମାନଙ୍କୁ ଯୁଦ୍ଧ-ଉଦ୍‌ଯୋଗରେ ଅବସ୍ଥିତ ଦେଖି ପରସ୍ପର ପ୍ରତି ଶରପ୍ରୟୋଗ, ସମୟ ଉପସ୍ଥିତ ହୁଅନ୍ତେ କପିଧ୍ୱଜ ଅର୍ଜ୍ଜୁନ ଧନୁଉତ୍ତୋଳନ କରି ଶ୍ରୀକୃଷ୍ଣଙ୍କୁ ଏହି କଥା କହିଲେ, ହେ ଅଚ୍ୟୁତ, ଉଭୟ ପକ୍ଷ ସେନାଙ୍କ ମଧ୍ୟରେ ମୋ ରଥସ୍ଥାପନ କର ।

**ସୁବୋଧିନୀ ଟୀକା**—ଏତସ୍ମିନ୍ ସମୟେ ଶ୍ରୀକୃଷ୍ଣମର୍ଜ୍ଜୁନୋ ବକ୍ଷ୍ୟମାଣମାହେତ୍ୟାହ—ଅଥେତ୍ୟାଦଭିଃ ଚତୁର୍ଭିଃ ଶ୍ଲୋକୈଃ । ଅର୍ଥେଥ । ଅଥାନନ୍ତରଂ ମହାଶବ୍ଦାନନ୍ତରଂ, ବ୍ୟବସ୍ଥିତାନ୍ ଯୁଦ୍ଧୋଦ୍‌ଯୋଗେନାବସ୍ଥିତାନ୍ । କପିଧ୍ୱଜୋଽର୍ଜ୍ଜୁନଃ । ତଦେବ ବାକ୍ୟମାହ—ସେନୟୋରିତ୍ୟାଦ ।

**୨୨,୨୩ । ଅନ୍ୱୟଦୀପିକା**— ଯାବତ୍ (ଯେତେ ସମୟ) ଅହଂ (ମୁଁ) ଏତାନ୍ (ଏହି ସମସ୍ତ) ଯୋଦ୍ଧୁକାମାନ୍ ଅବସ୍ଥିତାନ୍ (ଯୁଦ୍ଧଇଚ୍ଛାରେ ଅବସ୍ଥିତ ବୀରମାନଙ୍କୁ) ନିରୀକ୍ଷେ (ଦେଖେଁ) ଅସ୍ମିନ୍ ରଣସମୁଦ୍ୟମେ (ଏହି ଯୁଦ୍ଧ ବ୍ୟାପାରରେ) କୈଃ ସହ (କେଉଁମାନଙ୍କ ସଙ୍ଗରେ) ମୟା ଯୋଦ୍ଧବ୍ୟଂ (ମୋତେ ଯୁଦ୍ଧ କରିବାକୁ ହେବ) ।

ଅତ୍ର ଯୁଦ୍ଧେ (ଏହି ଯୁଦ୍ଧରେ) ଦୁର୍ବୁଦ୍ଧେଃ ଧାର୍ତ୍ତରାଷ୍ଟ୍ରସ୍ୟ (ଦୁଷ୍ଟବୁଦ୍ଧି ଦୁର୍ଯୋଧନର) ପ୍ରିୟଚିକୀର୍ଷବଃ (ହିତାକାଂକ୍ଷୀ) ଯେ ଏତେ (ଏହି ଯେ ସକଳରାଜା) ଅତ୍ର (ଏଠାରେ) ସମାଗତାଃ (ଉପସ୍ଥିତ ହୋଇଅଛନ୍ତି) ଯୋତ୍ସ୍ୟମାନାନ୍ ତାନ୍ (ସଂଗ୍ରାମେଚ୍ଛୁ ସେମାନଙ୍କୁ) ଅହଂ (ମୁଁ) ଅବେକ୍ଷେ (ଦେଖେଁ) ।

**ଅନୁବାଦ**— ଯୁଦ୍ଧ ଇଚ୍ଛାରେ ରଣଭୂମିରେ ଉପସ୍ଥିତ ବୀରମାନଙ୍କ ମଧ୍ୟରୁ କେଉଁମାନଙ୍କ ସଙ୍ଗେ ମୋତେ ଯୁଦ୍ଧକରିବାକୁ ପଡ଼ିବ ଏହା ଯେତେ ସମୟ ମୁଁ ଦେଖେଁ (ସେତେ ସମୟଯାଏ ତୁମେ ଉଭୟ ସେନା ମଧ୍ୟସ୍ଥଳରେ ମୋ ରଥ ସ୍ଥାପନ କର) ।

ଏହି ଯୁଦ୍ଧରେ ଦୁଷ୍ଟବୁଦ୍ଧି ଦୁର୍ଯୋଧନର ହିତଇଚ୍ଛାରେ ଯେଉଁ ଯୋଦ୍ଧାମାନେ ସମାଗତ ହୋଇଅଛନ୍ତି ମୁଁ ସେମାନଙ୍କୁ (ଥରେ ଭଲକରି) ଦେଖିନିଏଁ ।

**ସୁବୋଧିନୀ ଟୀକା**—ଯାବଦିତି । ନନୁ ତ୍ୱଂ ଯୋଦ୍ଧା, ନତୁ ଯୁଦ୍ଧ ପ୍ରେକ୍ଷକଃ । ତତ୍ରାହ—କୈର୍ମୟେତ୍ୟାଦ । କୈଃ ସହ ମୟା ଯୋଦ୍ଧବ୍ୟମ୍ ।

ସଞ୍ଜୟ ଉବାଚ

ଏବମୁକ୍ତୋ ହୃଷୀକେଶୋ ଗୁଡାକେଶେନ ଭାରତ !
ସେନୟୋରୁଭୟୋର୍ମଧ୍ୟେ ସ୍ଥାପୟିତ୍ୱା ରଥୋତ୍ତମମ୍ । ୨୪ ।
ଭୀଷ୍ମଦ୍ରୋଣ ପ୍ରମୁଖତଃ ସର୍ବେଷାଂ ଚ ମହୀକ୍ଷିତାମ୍,
ଉବାଚ ପାର୍ଥ ପଶ୍ୟୈତାନ୍ ସମବେତାନ୍ କୁରୂନିତି । ୨୫ ।

ଯୋତ୍ସ୍ୟମାନାନିତି—ଧାର୍ତ୍ତରାଷ୍ଟ୍ରସ୍ୟ ଦୁର୍ଯୋଧନସ୍ୟ ପ୍ରିୟଂ କର୍ତ୍ତୁମିଚ୍ଛନ୍ତୋ ଯ ଇହ ସମାଗତା ସ୍ତାନହଂ ଦ୍ରକ୍ଷ୍ୟାମି ଯାବତ୍ ତାବଦୁଭୟୋଃ ସେନୟୋର୍ମଧ୍ୟେ ମେ ରଥଂ ସ୍ଥାପୟେତ୍ୟନ୍ୱୟଃ !

୨୪, ୨୫ । **ଅନ୍ୱୟଦୀପିକା**— ସଞ୍ଜୟ ଉବାଚ (ସଞ୍ଜୟ କହିଲେ) । [ହେ] ଭାରତ ! (ଭରତବଂଶୀୟ ଧୃତରାଷ୍ଟ୍ର) ଗୁଡ଼ାକେଶେନ (ଅର୍ଜ୍ଜୁନଙ୍କ ଦ୍ୱାରା) ଏବ (ଏହିପ୍ରକାରରେ) ଉକ୍ତଃ (ଅଭିହିତ ହୋଇ) ହୃଷୀକେଶଃ (ଶ୍ରୀକୃଷ୍ଣ) ଉଭୟୋଃ ସେନୟୋଃ ମଧ୍ୟେ (ଉଭୟ ସେନାଙ୍କ ମଧ୍ୟରେ) ଭୀଷ୍ମଦ୍ରୋଣ ପ୍ରମୁଖତଃ ଚ ( ଭୀଷ୍ମଦ୍ରୋଣ ପ୍ରଭୃତି ) ସର୍ବେଷାଂ ( ସମସ୍ତ ) ମହୀକ୍ଷିତାଂ ( ରାଜାମାନଙ୍କର ) [ସମ୍ମୁଖରେ] ରଥୋତ୍ତମଂ (ଶ୍ରେଷ୍ଠରଥକୁ) ସ୍ଥାପୟିତ୍ୱା (ସ୍ଥାପନକରି) [ହେ] ପାର୍ଥ (ଅର୍ଜ୍ଜୁନ) ଏତାନ୍ ( ଏହି ସକଳ) ସମବେତାନ୍ (ସମ୍ମିଳିତ) କୁରୂନ୍ (କୁରୁମାନଙ୍କୁ) ପଶ୍ୟ (ଦେଖ), ଇତି (ଏହା) ଉବାଚ (କହିଥିଲେ) !

**ଅନୁବାଦ**—ସଞ୍ଜୟ କହିଲେ, ହେ ଭାରତ, ଅର୍ଜ୍ଜୁନ ଏହିପରି କହନ୍ତେ ଭଗବାନ୍ ଶ୍ରୀକୃଷ୍ଣ ଉଭୟ ସେନାଙ୍କ ମଧ୍ୟସ୍ଥଳରେ ଭୀଷ୍ମଦ୍ରୋଣ ଓ ରାଜାମାନଙ୍କ ସମ୍ମୁଖରେ ଉତ୍ତମ ରଥ ସ୍ଥାପନକରି କହିଲେ, ହେ ଅର୍ଜ୍ଜୁନ, ଏହି ସମବେତ କୌରବମାନଙ୍କୁ ଦେଖ ।

**ସୁବୋଧିନୀ ଟୀକା**—ତତଃ କିଂବୃତ୍ତ ମିତ୍ୟପେକ୍ଷାୟାଂ ସଞ୍ଜୟ ଉବାଚ—ଏବମୁକ୍ତ ଇତ୍ୟାଦି, ଗୁଡ଼ାକା ନିଦ୍ରା ତସ୍ୟା ଈଶେନ ଜିତନିଦ୍ରେଣାର୍ଜ୍ଜୁନେନ, ଏବମୁକ୍ତଃ ସନ୍, ହେ ଭାରତ, ହେ ଧୃତରାଷ୍ଟ୍ର ।

ଭୀଷ୍ମେତି । ମହୀକ୍ଷିତାଂ ରାଜ୍ଞାଂ ଚ ପ୍ରମୁଖତଃ ସମ୍ମୁଖେ ରଥଂ ସ୍ଥାପୟିତ୍ୱା ହେ ପାର୍ଥ ଏତାନ୍ କୁରୂନ୍ ପଶ୍ୟେତି ଶ୍ରୀ ଭଗବାନୁବାଚ !

**ବିବୃତି**—'ଭାରତ' ଶବ୍ଦ ଏଠାରେ ଧୃତରାଷ୍ଟ୍ରଙ୍କ ସମ୍ବୋଧନସୂଚକ, ଗୀତାରେ ଅନେକ ସ୍ଥାନରେ ଅର୍ଜ୍ଜୁନ ମଧ୍ୟ 'ଭାରତ' ନାମରେ ଅଭିହିତ ହୋଇଅଛନ୍ତି । ଦୁଷ୍ମନ୍ତଙ୍କ ଶକୁନ୍ତଳାଗର୍ଭଜାତପୁତ୍ର ଭରତଙ୍କ ବଂଶଧର ବୋଲି କୌରବ ଓ ପାଣ୍ଡବ ସମସ୍ତେ ଭାରତ ଶବ୍ଦବାଚ୍ୟ ।

ତତ୍ରାପଶ୍ୟତ୍ ସ୍ଥିତାନ୍ ପାର୍ଥଃ ପିତୃନଥ ପିତାମହାନ୍,
ଆଚାର୍ଯ୍ୟାନ୍ ମାତୁଲାନ୍ ଭ୍ରାତୃନ୍ ପୁତ୍ରାନ୍ ପୌତ୍ରାନ୍ ସଖୀଂସ୍ତଥା,
ଶ୍ୱଶୁରାନ୍ ସୁହୃଦଶ୍ଚୈବ ସେନୟୋରୁଭୟୋରପି । ୨୬ ।
ତାନ୍ ସମୀକ୍ଷ୍ୟ ସ କୌନ୍ତେୟଃ ସର୍ବାନ୍ ବନ୍ଧୂନବସ୍ଥିତାନ୍
କୃପୟା ପରୟାବିଷ୍ଟୋ ବିଷୀଦନ୍ନିଦମବ୍ରବୀତ୍ । ୨୭ ।

ଗୁଡ଼ାକେଶ—ଗୁଡ଼ାକା ଅର୍ଥ ନିଦ୍ରା ବା ଆଳସ୍ୟ, ତାହାର ଈଶ ଅର୍ଥାତ୍ ଯେ ନିଦ୍ରା ଜୟ କରିଅଛନ୍ତି, ନିଦ୍ରାଳସ୍ୟଜୟୀ ଅର୍ଜ୍ଜୁନ । ହୃଷୀକେଶ—ହୃଷୀକ ଶବ୍ଦର ଅର୍ଥ ଇନ୍ଦ୍ରିୟ, ତାହାର ଈଶ ଭଗବାନ୍ ଶ୍ରୀକୃଷ୍ଣ ।

୨୬ । **ଅନ୍ୱୟଦୀପିକା**—ପାର୍ଥଃ ( ଅର୍ଜ୍ଜୁନ ) ତତ୍ର ( ସେଠାରେ ) ଉଭୟୋଃ ସେନୟୋଃ ଅପି (ଉଭୟ ସେନା ମଧ୍ୟରେ) ସ୍ଥିତାନ୍ (ଅବସ୍ଥିତ) ପିତୃନ୍ ଅଥ ପିତାମହାନ୍ ( ପିତୃସ୍ଥାନୀୟ ଓ ପିତାମହସ୍ଥାନୀୟ ଲୋକମାନଙ୍କୁ ) ଆଚାର୍ଯ୍ୟାନ୍, ମାତୁଳାନ୍, ଭ୍ରାତୃନ୍, ପୁତ୍ରାନ୍, ପୌତ୍ରାନ୍ ତଥା ସଖୀନ୍ (ଆଚାର୍ଯ୍ୟ, ମାମୁ, ଭାଇ, ପୁଅ, ନାତି ଏବଂ ମିତ୍ରଗଣଙ୍କୁ) ଶ୍ୱଶୁରାନ୍ ଚ ଏବ ସୁହୃଦଃ (ଶ୍ୱଶୁର ଓ ସୁହୃଦ୍‌ଗଣଙ୍କୁ) ଅପଶ୍ୟତ୍ (ଦେଖିଲେ) ।

**ଅନୁବାଦ**—ଅର୍ଜ୍ଜୁନ, ପାଣ୍ଡବ ଓ କୌରବ ଉଭୟ ପକ୍ଷୀୟ ସେନାଙ୍କ ମଧ୍ୟରେ ପିତୃସ୍ଥାନୀୟ ଓ ପିତାମହସ୍ଥାନୀୟ ଲୋକମାନଙ୍କୁ ଏବଂ ଆଚାର୍ଯ୍ୟ, ମାତୁଳ, ଭ୍ରାତା, ପୁତ୍ର, ପୌତ୍ର, ମିତ୍ର, ଶ୍ୱଶୁର ଏବଂ ବନ୍ଧୁମାନଙ୍କୁ ଦେଖିଲେ ।

**ସୁବୋଧିନୀ ଟୀକା**—ତତଃ କିଂ ବୃତ୍ତମିତ୍ୟ ? ଅତ ଆହ—ଅତେ-ତ୍ୟାଦ । ପିତୃନ୍, ପିତୃବ୍ୟାନିତ୍ୟର୍ଥଃ । ପୁତ୍ରାନ୍‌ପୌତ୍ରାନିତି ଦୁର୍ଯ୍ୟୋଧନାଦୀନାଂ ଯେ ପୁତ୍ରାଃ ପୌତ୍ରାଶ୍ଚ ତାନିତ୍ୟର୍ଥଃ ସଖୀନ୍ ମିତ୍ରାଣି ।

**ବିବୃତି**—ଅର୍ଜ୍ଜୁନ ଦେଖିଲେ, କୌରବ ପକ୍ଷରେ ଯୁଦ୍ଧ କରିବା ପାଇଁ ଭୂରିଶ୍ରବା ପ୍ରଭୃତି ପିତୃବ୍ୟ ଗଣ, ଭୀଷ୍ମ, ସୋମଦତ୍ତ ପ୍ରମୁଖ ପିତାମହଗଣ, ଶଲ୍ୟ, ଶକୁନି ପ୍ରଭୃତି ମାତୁଳଗଣ, ଦ୍ରୋଣ, କୃପ ପ୍ରଭୃତି ଆଚାର୍ଯ୍ୟଗଣ, ଲକ୍ଷ୍ମଣ ପ୍ରଭୃତି ପୁତ୍ରଗଣ ଏବଂ ସେମାନଙ୍କ ଆତ୍ମୀୟଗଣ, ଅଶ୍ୱତ୍ଥାମା, ଜୟଦ୍ରଥ ଆଦି ମିତ୍ରଗଣ ଏବଂ କୃତବର୍ମା, ଭଗଦତ୍ତାଦି ସୁହୃଦ୍‌ଗଣ ସମସ୍ତେ ଉପସ୍ଥିତ ଅଛନ୍ତି । ଅର୍ଜ୍ଜୁନ ସତ୍ତ୍ୱଗୁଣ ପ୍ରଧାନ ପୁରୁଷ; ଧର୍ମଭୂମି କୁରୁକ୍ଷେତ୍ରରେ ସେହି ସତ୍ତ୍ୱଗୁଣର ଅଭିବୃଦ୍ଧି ହେବାରୁ ଶତ୍ରୁମାନେ ଏବଂ ଯୁଦ୍ଧରେ ପ୍ରାଣତ୍ୟାଗ କରିବାକୁ ଯାଉଥିବା ନିଜପକ୍ଷର ଲୋକମାନେ ସମସ୍ତେ ତାଙ୍କ ଦୃଷ୍ଟିରେ ପରମ ଆତ୍ମୀୟ ବୋଧହେଲେ ।

ଏ ଶ୍ଳୋକରେ ବ୍ୟବହୃତ ସୁହୃଦ୍ ଶବ୍ଦର ଅର୍ଥ ଶୁଭାକାଂକ୍ଷୀ ସାହାଯ୍ୟକାରୀ ଆତ୍ମୀୟ ଏବଂ ସଖା ଶବ୍ଦର ଅର୍ଥ ମିତ୍ର ବା ବୟସ୍ୟସ୍ଥାନୀୟ ଆତ୍ମୀୟ ।

୨୭ । **ଅନ୍ୱୟଦୀପିକା**—ସଃ କୌନ୍ତେୟଃ ( ସେହି ଅର୍ଜ୍ଜୁନ ) ଅବସ୍ଥିତାନ୍ ( ଯୁଦ୍ଧପାଇଁ ସଜ୍ଜିତ ) ତାନ୍ ସର୍ବାନ୍ ବନ୍ଧୂନ୍ (ସେହି ସମସ୍ତ ବନ୍ଧୁଙ୍କୁ)

ଅର୍ଜ୍ଜୁନ ଉବାଚ

ଦୃଷ୍ଟ୍ୱେମାନ୍ ସ୍ୱଜନାନ୍ କୃଷ୍ଣ ଯୁଯୁତ୍ସୂନ୍ ସମବସ୍ଥିତାନ୍
ସୀଦନ୍ତି ମମ ଗାତ୍ରାଣି ମୁଖଂ ଚ ପରିଶୁଷ୍ୟତି । ୨୮ ।
ବେପଥୁଶ୍ଚ ଶରୀରେ ମେ ରୋମହର୍ଷଶ୍ଚ ଜାୟତେ ।
ଗାଣ୍ଡୀବଂ ସ୍ରଂସତେ ହସ୍ତାତ୍ ତ୍ୱକ୍ ଚୈବ ପରିଦହ୍ୟତେ । ୨୯ ।

ସମୀକ୍ଷ୍ୟ ( ଦେଖି ) ପରୟା କୃପୟା ଆବିଷ୍ଟଃ (କରୁଣାର୍ଦ୍ରଚିତ୍ତ) ବିଷୀଦନ୍ (ବିଷଣ୍ଣ ହୋଇ) ଇଦଂ (ଏହା) ଅବ୍ରବୀତ୍ (କହିଲେ) ।

**ଅନୁବାଦ**—ତତ୍ପରେ ସେହି ଅର୍ଜ୍ଜୁନ ଯୁଦ୍ଧକରିବା ପାଇଁ ସଜ୍ଜିତହୋଇ ରହିଥିବା ସମସ୍ତ ବନ୍ଧୁଙ୍କୁ ଦେଖି ଏକାନ୍ତ କରୁଣାର୍ଦ୍ର ଓ ବିଷଣ୍ଣ ହୋଇ କହିଲେ ।

**ସୁବୋଧିନୀ ଟୀକା**—ଶ୍ୱଶୁରାନିତ୍ୟାଦି । ସୁହୃଦଃ କୃତୋପକାରାଂଶ୍ଚ ସ୍ଥାପଶ୍ୟତ୍ । ତତଃ କିଂ କୃତବାନିତି ? ଅତ ଆହ—ତାନିତି । ସେନୟୋରୁଭୟୋରେବ ସମୀକ୍ଷ୍ୟ କୃପୟା ମହତ୍ୟାବିଷ୍ଟୋ ବିଷଣ୍ଣଃ ସନ୍ନିଦମର୍ଜ୍ଜୁନୋଽବ୍ରବୀଦିତ୍ୟୁତ୍ତରସ୍ୟାର୍ଦ୍ଧଶ୍ଳୋକସ୍ୟ ବାକ୍ୟାର୍ଥଃ । ଆବିଷ୍ଟୋ ବ୍ୟାପ୍ତଃ ।

**୨୮, ୨୯ । ଅନ୍ୱୟଦୀପିକା**—ଅର୍ଜ୍ଜୁନଃ ଉବାଚ, (ଅର୍ଜ୍ଜୁନ କହିଲେ) [ହେ] **କୃଷ୍ଣ, ଯୁଯୁତ୍ସୂନ୍** (ଯୁଦ୍ଧ କରିବାକୁ ଇଚ୍ଛୁକ) ଇମାନ୍ (ଏହିସବୁ) **ସ୍ୱଜନାନ୍** (**ଆତ୍ମୀୟମାନଙ୍କୁ**) ସମବେତାନ୍ (ଅବସ୍ଥିତ) **ଦୃଷ୍ଟ୍ୱା** (ଦେଖି) ମମ ଗାତ୍ରାଣି (**ମୋର** ସମଗ୍ର ଶରୀର) ସୀଦନ୍ତି (ଅବସନ୍ନ ହେଉଅଛି), ମୁଖଂ ଚ (ଏବଂ ମୁଖ) ପରିଶୁଷ୍ୟତି (**ଶୁଖିଯାଉଛି**), **ମେ** (**ମୋ**) ଶରୀରେ (ଦେହରେ) ବେପଥୁଃ ଚ (**କମ୍ପ**) **ରୋମହର୍ଷଃ ଚ** (**ଓ ରୋମାଞ୍ଚ**) **ଜାୟତେ** (**ଜାତ ହେଉଅଛି**) । **ହସ୍ତାତ୍** (**ହାତରୁ**) **ଗାଣ୍ଡୀବଂ** (**ଗାଣ୍ଡୀବ ଧନୁ**) **ସ୍ରଂସତେ** (**ଖସି ପଡୁଛି**) **ତ୍ୱକ୍** ଚ ଏବ (ଓ ଚର୍ମ ମଧ୍ୟ) **ପରିଦହ୍ୟତେ** (**ପୋଡ଼ିଉଠୁଛି**) ।

**ଅନୁବାଦ**—ଅର୍ଜ୍ଜୁନ କହିଲେ, ହେ କୃଷ୍ଣ, **ଆତ୍ମୀୟମାନଙ୍କୁ** ସମର-**ଅଭିଳାଷରେ** ଉପସ୍ଥିତ ଦେଖି ମୋର ଅଙ୍ଗସବୁ ଅବସନ୍ନ **ଓ** ମୁହଁ **ଶୁଖିଯାଉଛି**, **ଦେହ ଥରୁଛି** ଓ ରୋମାଞ୍ଚ ଜାତ ହେଉଛି । ହାତରୁ ଗାଣ୍ଡୀବ ଖସି ପଡୁଛି **ଏବଂ ଦେହର** ଚମ ମଧ୍ୟ **ପୋଡ଼ି** ଉଠୁଛି ।

**ସୁବୋଧିନୀ ଟୀକା**—କମବ୍ରବୀଦିତ୍ୟପେକ୍ଷାୟାମାହ— ଦୃଷ୍ଟ୍ୱେମାନିତ୍ୟାଦି ଯାବଦଧ୍ୟାୟସମାପ୍ତି । ହେ କୃଷ୍ଣ, ଯୋଦ୍ଧୁମିଚ୍ଛତଃ ପୁରତଃ ସମ୍ୟଗବସ୍ଥିତାନ୍ **ସ୍ୱଜନାନ୍** ବନ୍ଧୁଜନାନ୍ ଦୃଷ୍ଟ୍ୱା ମଦୀୟାନି ଗାତ୍ରାଣି କରଚରଣାଦୀନି ସୀଦନ୍ତି ବିଶୀର୍ଯ୍ୟନ୍ତେ । କିଞ୍ଚ—ବେପଥୁଶ୍ଚେତ୍ୟାଦି, ବେପଥୁଃ କମ୍ପଃ, ରୋମହର୍ଷୋ ରୋମାଞ୍ଚଃ । **ସ୍ରଂସତେ** ନିପତତି । ପରିଦହ୍ୟତେ ସର୍ବତଃ ସନ୍ତପ୍ୟତେ ।

ନ ଚ ଶକ୍ନୋମ୍ୟବସ୍ଥାତୁଂ ଭ୍ରମତୀବ ଚ ମେ ମନଃ ।
ନିମିତ୍ତାନି ଚ ପଶ୍ୟାମି ବିପରୀତାନି କେଶବ । ୩୦ ।
ନ ଚ ଶ୍ରେୟୋଽନୁପଶ୍ୟାମି ହତ୍ୱା ସ୍ୱଜନମାହବେ ।
ନ କାଙ୍କ୍ଷେ ବିଜୟଂ କୃଷ୍ଣ ନ ଚ ରାଜ୍ୟଂ ସୁଖାନି ଚ । ୩୧ ।
କିଂ ନୋ ରାଜ୍ୟେନ ଗୋବିନ୍ଦ କିଂ ଭୋଗୈର୍ଜୀବିତେନ ବା,
ଯେଷାମର୍ଥେ କାଙ୍କ୍ଷିତଂ ନୋ ରାଜ୍ୟଂ ଭୋଗାଃ ସୁଖାନି ଚ । ୩୨ ।

୩୦ । **ଅନ୍ୱୟଦୀପିକା**—[ହେ] କେଶବ ! [ଅହଂ] (ମୁଁ) ଅବସ୍ଥାତୁଂ (ଅବସ୍ଥାନ କରିବାକୁ) ନ ଶକ୍ନୋମି (ପାରୁ ନାହିଁ), ମେ (ମୋର ମନଃ ଚ ଭ୍ରମତି ଇବ (ଏବଂ ମନ ବିହ୍ୱଳ ପରି ହେଉଛି), ଚ (ଏବଂ) [ଅହଂ] (ମୁଁ) ବିପରୀତାନି ନିମିତ୍ତାନି (ଦୁର୍ଲକ୍ଷଣସବୁ) ପଶ୍ୟାମି (ଦେଖୁଅଛି) ।

**ଅନୁବାଦ**—ହେ କେଶବ ! ମୁଁ ସ୍ଥିରହୋଇ ରହି ପାରୁ ନାହିଁ, ମୋ ମନ ବିଚଳିତ ହେଲାପରି ଜଣାଯାଉଛି । ନାନା ଦୁର୍ନିମିତ୍ତ ବା ଦୁର୍ଲକ୍ଷଣ ଦେଖୁଅଛି ।

**ସୁବୋଧିନୀ ଟୀକା**—ଅପିଚ, ନ ଚ ଶକ୍ନୋମୀତ୍ୟାଦି । ବିପରୀତାନି ନିମିତ୍ତାନ୍ୟନିଷ୍ଟସୂଚକାନି ଶକୁନାଦୀନି ପଶ୍ୟାମି ।

୩୧ । **ଅନ୍ୱୟଦୀପିକା**—[ହେ] କୃଷ୍ଣ, [ଅହଂ] (ମୁଁ) ଆହବେ (ଯୁଦ୍ଧରେ) ସ୍ୱଜନଂ (ଆତ୍ମୀୟମାନଙ୍କୁ) ହତ୍ୱା (ନିହତ କରି) ଶ୍ରେୟଃ (ମଙ୍ଗଳ) ଚ ନ ଅନୁପଶ୍ୟାମି (ଦେଖୁନାହିଁ), ବିଜୟଂ (ଜୟ) ନ କାଙ୍କ୍ଷେ (ଆକାଙ୍କ୍ଷା କରୁ ନାହିଁ); ରାଜ୍ୟଂ ଚ ସୁଖାନି ଚ (ରାଜ୍ୟ ଓ ସୁଖ ମଧ୍ୟ) ନ ଆକାଙ୍କ୍ଷେ (ଇଚ୍ଛା କରୁ ନାହିଁ) ।

**ଅନୁବାଦ**—ହେ କୃଷ୍ଣ, ଆତ୍ମୀୟମାନଙ୍କୁ ଯୁଦ୍ଧରେ ହତ୍ୟାକରି କୌଣସି ପ୍ରକାର ମଙ୍ଗଳ ହେବା ଦେଖୁ ନାହିଁ । ମୋର ଜୟ କରିବାର ଇଚ୍ଛା ନାହିଁ ଏବଂ ରାଜ୍ୟ ଓ ସୁଖଭୋଗର ଆକାଙ୍କ୍ଷା ମଧ୍ୟ ମୋର ନାହିଁ ।

**ସୁବୋଧିନୀ ଟୀକା**—କିଞ୍ଚ—ନଚେତ୍ୟାଦି । ଆହବେ ଯୁଦ୍ଧେ ସ୍ୱଜନଂ ହତ୍ୱା ଶ୍ରେୟଃ ଫଳଂ ନ ପଶ୍ୟାମି, ବିଜୟାଦିକଂ ଫଳଂ କିଂ ନ ପଶ୍ୟସୀତି ଚେତ୍ ? ତତ୍ରାହ—ନ କାଙ୍କ୍ଷ ଇତି ।

୩୨ । **ଅନ୍ୱୟଦୀପିକା**—[ହେ] ଗୋବିନ୍ଦ ! ନଃ (ଆମ୍ଭମାନଙ୍କର) ରାଜ୍ୟେନ କିଂ (ରାଜ୍ୟରେ କି ପ୍ରୟୋଜନ ?) ଭୋଗୈଃ ଜୀବିତେନ ବା (ଭୋଗରେ ଏବଂ ଜୀବନରେ) କିମ୍ (କି ପ୍ରୟୋଜନ ?) ଯେଷାମର୍ଥେ ( ଯେଉଁମାନଙ୍କ ପାଇଁ ) ନଃ (ଆମ୍ଭମାନଙ୍କର) ରାଜ୍ୟଂ ଭୋଗାଃ ସୁଖାନି ଚ (ରାଜ୍ୟ, ଭୋଗ ଓ ସୁଖ) କାଂକ୍ଷିତ (ଅଭିଷ୍ଟ ହୁଏ)—

ତ ଇମେଽବସ୍ଥିତା ଯୁଦ୍ଧେ ପ୍ରାଣାଂ ସ୍ତ୍ୟକ୍ତ୍ୱା ଧନାନି ଚ,
ଅଗୃଜ୍ଞାଃ ପିତରଃ ପୁତ୍ରାସ୍ତଥୈବ ଚ ପିତାମହାଃ । ୩୩ ।
ମାତୁଳାଃ ଶ୍ୱଶୁରାଃ ପୌତ୍ରାଃ ଶ୍ୟାଲାଃ ସମ୍ବନ୍ଧିନସ୍ତଥା
ଏତାନ୍ନ ହନ୍ତୁମିଚ୍ଛାମି ଘ୍ନତୋଽପି ମଧୁସୂଦନ । ୩୪ ।
ଅପି ତ୍ରୈଲୋକ୍ୟରାଜ୍ୟସ୍ୟ ହେତୋଃ କିଂ ନୁ ମହୀକୃତେ,
ନିହତ୍ୟ ଧାର୍ତ୍ତରାଷ୍ଟ୍ରାନ୍ନଃ କା ପ୍ରୀତିଃ ସ୍ୟାଜ୍ଜନାର୍ଦ୍ଦନ । ୩୫ ।

**ଅନୁବାଦ**—ହେ ଗୋବିନ୍ଦ, ଅମ୍ଭର ରାଜ୍ୟରେ କି ପ୍ରୟୋଜନ ? ଭୋଗରେ ବା ଜୀବନଧାରଣରେ କି ପ୍ରୟୋଜନ ? ଯେଉଁମାନଙ୍କ ସକାଶେ ରାଜ୍ୟ, ଭୋଗ ଓ ସୁଖ ଲୋକ ଇଚ୍ଛାକରେ (ସେମାନେ ସମସ୍ତେ ଯୁଦ୍ଧକ୍ଷେତ୍ରରେ ସମବେତ) ।

**ସୁବୋଧିନୀ ଟୀକା**—ଏତଦେବ ପ୍ରପଞ୍ଚୟନ୍ତି—କିଂ ନୋରାଜ୍ୟେ ନେତ୍ୟାଦିସାର୍ଦ୍ଧଶ୍ଳୋକଦ୍ୱୟେନ ।

**୩୩, ୩୪ । ଅନ୍ୱୟଦୀପିକା**—ତେ ( ସେହି ) ଇମେ ( ଏହି ) **ଅଗୃଜ୍ଞାଃ** (ଅଗୃଜ୍ଞମାନେ) ପିତରଃ (ପିତୃବ୍ୟାଦି) ପୁତ୍ରାଃ ଚ ( ଏବଂ ପୁତ୍ରଗଣ) ତଥା ଏବ (ଓ) ପିତାମହାଃ, ମାତୁଳାଃ, ଶ୍ୱଶୁରାଃ, ପୌତ୍ରାଃ, ଶ୍ୟାଲାଃ (ପିତାମହ, ମାମୁ, ଶ୍ୱଶୁର, ନାତି ଓ ଶ୍ୟାଳକମାନେ) ତଥା (ଓ) ସମ୍ବନ୍ଧିନଃ (ନିଜସମ୍ପର୍କୀୟ ସ୍ୱଜନମାନେ) ପ୍ରାଣାନ୍ (ଜୀବନ) ଧନାନି ଚ (ଓ ଧନସବୁ) ତ୍ୟକ୍ତ୍ୱା (ତ୍ୟାଗକରି) ଯୁଦ୍ଧେ (ଯୁଦ୍ଧରେ) ଅବସ୍ଥିତାଃ (ଅବସ୍ଥିତ ହୋଇଅଛନ୍ତି) । ମଧୁସୂଦନ (ହେ ମଧୁସୂଦନ) [ଅମ୍ଭମାନଙ୍କୁ] ଘ୍ନତଃ ଅପି (ହତ୍ୟାକଲେ ମଧ୍ୟ) [ମୁଁ] ଏତାନ୍ (ଏମାନଙ୍କୁ) ହନ୍ତୁଂ (ହତ୍ୟା କରିବାକୁ) ନ ଇଚ୍ଛାମି (ଇଚ୍ଛା କରୁନାହିଁ ) ।

**ଅନୁବାଦ**—ଅଗୃଜ୍ଞ, ପିତା, ପୁତ୍ର, ପିତାମହ, ମାତୁଳ, ଶ୍ୱଶୁର, ପୌତ୍ର, ଶ୍ୟାଳକ ଏବଂ ଅନ୍ୟାନ୍ୟସ୍ୱଜନମାନେ ଧନ ଓ ଜୀବନର ଆଶା ପରିତ୍ୟାଗ କରି ଯୁଦ୍ଧକ୍ଷେତ୍ରରେ ସମବେତ ହୋଇଅଛନ୍ତି । ହେ ମଧୁସୂଦନ, ଏମାନେ ଅମ୍ଭମାନଙ୍କୁ ବଧ କଲେହେଁ ମୁଁ ଏମାନଙ୍କୁ ବଧ କରିବାକୁ ଇଚ୍ଛା କରୁନାହିଁ ।

**ସୁବୋଧିନୀ ଟୀକା**—ତ ଇମ ଇତି, ଯଦର୍ଥମସ୍ମାକଂ ରାଜ୍ୟାଦିକମପେକ୍ଷିତଂ ତ ଏତେ ପ୍ରାଣଧନାଦିତ୍ୟାଗମଙ୍ଗୀକୃତ୍ୟ ଯୁଦ୍ଧାର୍ଥ ମବସ୍ଥିତାଃ । ଅତଃ କିମସ୍ମାକଂ ରାଜ୍ୟାଦିଭିଃ କୃତ୍ୟ ମିତ୍ୟର୍ଥଃ ।

ନନୁ ଯଦି କୃପୟା ତ୍ୱମେତାନ୍ନହଂସି ତର୍ହିତ୍ୱାମେତେ ରାଜ୍ୟଲୋଭେନ ହନିଷ୍ୟନ୍ତ୍ୟେବ । ଅତସ୍ତ୍ୱମେବୈତାନ୍ ହତ୍ୱା ରାଜ୍ୟଂ ଭୁଂକ୍ଷ୍ୱେତି ।

ତତ୍ରାହସାର୍ଦ୍ଧେନ—ଏତାନିତ୍ୟାଦି, ଘ୍ନତୋଽପ୍ୟସ୍ମାନ୍ ମାରୟତୋଽପ୍ୟେତାନ୍ ।

**୩୫ । ଅନ୍ୱୟଦୀପିକା**—ତ୍ରୈଲୋକ୍ୟ ରାଜ୍ୟସ୍ୟ (ତ୍ରୈଲୋକ୍ୟ ରାଜ୍ୟର) ହେତୋଃ ଅପି (ହେତୁରୁ ମଧ୍ୟ) [ସେମାନଙ୍କୁ ବଧ କରିବାକୁ ଇଚ୍ଛୁକ ନୁହେଁ] ।

ପାପମେବାଶ୍ରୟେଦସ୍ମାନ୍ ହତ୍ୱୈତାନାତତାୟିନଃ ।
ତସ୍ମାନ୍ନାର୍ହାଃ ବୟଂ ହନ୍ତୁଂ ଧାର୍ତ୍ତରାଷ୍ଟ୍ରାନ୍ ସ୍ୱବାନ୍ଧବାନ୍,
ସ୍ୱଜନଂ ହି କଥଂ ହତ୍ୱା ସୁଖିନଃ ସ୍ୟାମ ମାଧବ । ୩୭ ।

ମହୀକୃତେ (ପୃଥିବୀର ରାଜତ୍ୱ ପାଇଁ) କିଂ ନୁ (କି କଥା ?) ଜନାର୍ଦ୍ଦନ (ହେ କୃଷ୍ଣ) ଧାର୍ତ୍ତରାଷ୍ଟ୍ରାନ୍ (ଦୁର୍ଯ୍ୟୋଧନ ପ୍ରଭୃତିଙ୍କୁ) ନିହତ୍ୟ (ବଧକରି) ନଃ (ଆମର) କା ପ୍ରୀତିଃ (କି ସୁଖ) ସ୍ୟାତ୍ (ହେବ ?)

**ଅନୁବାଦ**—ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ—ତିନିଲୋକର ରାଜତ୍ୱ ପାଇଲେ ମଧ୍ୟ ଯେଉଁମାନଙ୍କୁ ବଧ କରିବାକୁ ମୁଁ ଇଚ୍ଛୁକ ନୁହେ, ତେବେ ଏହି ସାମାନ୍ୟ ଅତି ତୁଚ୍ଛ ପୃଥିବୀର ରାଜତ୍ୱ ପାଇଁ କଅଣ ସେମାନଙ୍କୁ ହତ୍ୟା କରିବି ? ହେ ଜନାର୍ଦ୍ଦନ, ଦୁର୍ଯ୍ୟୋଧନ ପ୍ରଭୃତିଙ୍କୁ ହତ୍ୟାକରି ଆମର କି ସୁଖ ବା ହେବ ?

**ସୁବୋଧିନୀ ଟୀକା**—ଅପୀତି, ତ୍ରୈଲୋକ୍ୟ ରାଜ୍ୟସ୍ୟାପି ହେତୋଃ ତତ୍ ପ୍ରାପ୍ତ୍ୟର୍ଥମପି—ହନ୍ତୁଂ ନେଚ୍ଛାମି, କିଂ ପୁନ ର୍ମହୀମାତ୍ରପ୍ରାପ୍ତୟ ଇତ୍ୟର୍ଥଃ ।

୩୭ । **ଅନ୍ୱୟଦୀପିକା**—ଆତତାୟିନଃ (ଆତତାୟୀ) ଏତାନ୍ (ଏମାନଙ୍କୁ) ହତ୍ୱା (ବଧକରି ବା ମାରି) ଅସ୍ମାନ୍ (ଆମ୍ଭମାନଙ୍କୁ) ପାପମ୍ ଏବ (ପାପହିଁ) ଆଶ୍ରୟେତ୍ (ଆଶ୍ରୟ କରିବ) । ତସ୍ମାତ୍ (ସେହି ହେତୁରୁ) ବୟଂ (ଆମ୍ଭେମାନେ) ସବାନ୍ଧବାନ୍ (ବାନ୍ଧବମାନଙ୍କ ସହିତ) ଧାର୍ତ୍ତରାଷ୍ଟ୍ରାନ୍ (ଧୃତରାଷ୍ଟ୍ର ପକ୍ଷୀୟଙ୍କୁ) ହନ୍ତୁଂ (ବଧ କରିବାକୁ) ନ ଅର୍ହାଃ (ଯୋଗ୍ୟ ନୋହୁଁ) । ମାଧବ (ହେ ମାଧବ) ହି (ଯେହେତୁ) ସ୍ୱଜନଂ (ଆତ୍ମୀୟମାନଙ୍କୁ) ହତ୍ୱା (ହତକରି) କଥଂ (କପରି) ସୁଖିନଃ (ସୁଖୀ) ସ୍ୟାମ (ହେବୁଁ) ?

**ଅନୁବାଦ**—ସେମାନେ ଆତତାୟୀ ହେଲେହେଁ (ଯଦିଚ ଆତତାୟୀ-ବଧରେ ପାପ ନାହିଁ) ସେମାନଙ୍କୁ ହତ କଲେ ଆମ୍ଭେମାନେ ପାପଭାଗୀ ହେବୁଁ । ହେ ମାଧବ ! ତେଣୁ ଦୁର୍ଯ୍ୟୋଧନାଦି ଆତ୍ମୀୟମାନଙ୍କୁ ବଧ କରିବା ଆମ୍ଭମାନଙ୍କ ପକ୍ଷରେ ଉଚିତ ନୁହେ । ସ୍ୱଜନ ହତ୍ୟାକରି ଆମର କି ସୁଖ ହେବ ?

**ସୁବୋଧିନୀ ଟୀକା**—ନନୁ ଚ—ଅଗ୍ନିଦୋଗରଦଶ୍ଚୈବ ଶସ୍ତ୍ରପାଣି-ର୍ଧନାପହଃ । କ୍ଷେତ୍ରଦାରାପହାରୀ ଚ ଷଡ଼େତେ ଆତତାୟିନଃ, ଇତି ସ୍ମରଣାଦଗ୍ନି-ଦତ୍ୱାଦିଃ ଷଡ୍‌ଭିଃ ହେତୁଭିରେତେ ତାବଦାତତାୟିନଃ, ଆତତାୟିନାଂ ଚ ବଧୋ ଯୁକ୍ତ ଏବ । ଆତତାୟିନମାୟାନ୍ତଂ ହନ୍ୟାଦେବାବିଚାରୟନ୍ । ନାତତାୟିବଧେ ଦୋଷୋହନ୍ତୁର୍ଭବତି କଶ୍ଚନ, ଇତି ବଚନାତ୍ । ତତ୍ରାହ ପାପ ମେବେତ୍ୟାଦି ସାର୍ଦ୍ଧେନ । ଆତତାୟିନମାୟାନ୍ତମିତ୍ୟାଦିକମର୍ଥଶାସ୍ତ୍ରମ୍ । ତଚ ଧର୍ମଶାସ୍ତ୍ରାତ୍ ଦୁର୍ବଳମ୍ । ଯଥୋକ୍ତଂ ଯାଜ୍ଞବଲ୍‌କ୍ୟେନ । ସ୍ମୃତ୍ୟୋର୍ବିରୋଧେ ନ୍ୟାୟସ୍ତୁ ବଳବାନ୍ ବ୍ୟବହାରତଃ । ଅର୍ଥଶାସ୍ତ୍ରାତ୍ତୁ ବଳବଦ୍ଧର୍ମଶାସ୍ତ୍ରମିତିସ୍ଥିତିରିତି । ତସ୍ମାଦାତତାୟିନାମପ୍ୟେତେଷା-

ଯଦ୍ୟପ୍ୟେତେ ନ ପଶ୍ୟନ୍ତି ଲୋଭୋପହତଚେତସଃ
କୁଲକ୍ଷୟକୃତଂ ଦୋଷଂ ମିତ୍ରଦ୍ରୋହେ ଚ ପାତକମ୍ । ୩୭ ।

ମାଧୁର୍ଯ୍ୟାଦନାଂ ବଧେଽସ୍ମାକଂ ପାପମେବ ଭବେତ୍ । ଅନ୍ୟାପ୍ୟଷ୍ଟାଦଧର୍ମିତ୍ୱା-ଚ୍ଚୈତଦ୍‌ବଧସ୍ୟ । ଅମୂନ୍ ଚେତ୍ ବା ନ ସ୍ୱଂ ସ୍ୟାଦତ୍ୟାହ । ସ୍ୱଜନଂ ହ୍ୟତ ।

**ବିବୃତି**—ଆତତାୟୀ ଶବ୍ଦର ଅର୍ଥ ଅନଷ୍ଟକାରୀ । ଶାସ୍ତ୍ରଅନୁସାରେ ଏହି ଛଅ ଜଣଙ୍କୁ ଆତତାୟୀ ବୋଲାଯାଏ । ୧—ଘରପୋଡ଼ ଦେବା ଲୋକ, ୨—ବିଷଦେବା ଲୋକ, ୩—ଶସ୍ତ୍ର ଧେନ ମାରିବାକୁ ଆସୁଥିବା ଲୋକ, ୪—ଧନହରଣ କରିବା ଲୋକ, ୫—କୌଶଳରେ ଜମିବାଡ଼ ନେଇଯିବା ଲୋକ, ୬—ସ୍ତ୍ରୀକୁ ହରଣ କରିବା ଲୋକ । ମହର୍ଷି ମନୁ କହିଅଛନ୍ତି—

ଗୁରୁଂ ବା ବାଲବୃଦ୍ଧୌ ବା ବ୍ରାହ୍ମଣଂ ବା ବହୁଶ୍ରୁତମ୍ ।
ଆତତାୟିନମାୟାନ୍ତଂ ହନ୍ୟାଦେବାବିଚାରୟନ୍ ।
ନାତତାୟିବଧେ ଦୋଷୋ ହନ୍ତୁର୍ଭବତି କଶ୍ଚନ ।

(ମନୁ ୮—୩୫୦।୩୫୧)

ଗୁରୁ ବା ବାଲକ ବା ବୃଦ୍ଧ ବା ଶାସ୍ତ୍ରଜ୍ଞ ବ୍ରାହ୍ମଣ ହୁଅନ୍ତୁ, ଯେବେ ସେ ଆତତାୟୀ ହୁଅନ୍ତି, ତେବେ କୌଣସି କଥା ବିଚାର ନ କରି ତାଙ୍କୁ ହତ୍ୟା କରିବ । ଆତତାୟୀକୁ ମାରିଲେ ହତ୍ୟାକାରୀକୁ ପାପ ଲାଗେ ନାହିଁ । ଜତୁ ଗୃହ ଦାହ, ଭୀମଙ୍କୁ ବିଷଦେବା, ଯୁଦ୍ଧରେ ହତ୍ୟା କରିବାପାଇଁ ଶସ୍ତ୍ରଧରି ଉପସ୍ଥିତ ହେବା, ପଶା ଖେଳରେ ଧନ ଓ ଭୂମି ହରଣ କରିବା ଏବଂ ଶେଷରେ ପତ୍ନୀ ଦ୍ରୌପଦୀଙ୍କୁ ଅପମାନ ଦେବା ପ୍ରଭୃତି ଦ୍ୱାରା କୌରବମାନେ ପାଣ୍ଡବମାନଙ୍କ ସଙ୍ଗେ ସବୁ ଭାବରେ ଆତତାୟିତା କରିଥିଲେ । ଅର୍ଜୁନଙ୍କ ମତରେ ଏହା ନୀତିଶାସ୍ତ୍ର ବା ଅର୍ଥ ଶାସ୍ତ୍ରର ଉପଦେଶ, ଧର୍ମଶାସ୍ତ୍ରାନୁମୋଦିତ ନୁହେ । ଧର୍ମ ଶାସ୍ତ୍ରରେ ଅଛି—'ସ ଏବ ପାପିଷ୍ଠତମୋ ଯଃ କୁର୍ଯ୍ୟାତ୍‌କୁଲନାଶନମ୍' ଅର୍ଥାତ୍ ଯେ କୁଳନାଶ କରେ ସେ ମହାପାପୀ । ପ୍ରାଣିବଧ କର୍ତ୍ତବ୍ୟ ନୁହେ । ବେଦରେ ଅଛି,—"ମାହିଂସ୍ୟାତ୍ ସର୍ବଭୂତାନ ।" ଧର୍ମ ଶାସ୍ତ୍ରର ମତ ନୀତିଶାସ୍ତ୍ରମତ ଅପେକ୍ଷା ବଳବତ୍ତର । ଏହି ହେତୁରୁ ଅର୍ଜୁନ କହିଲେ ଯେ, ଆତତାୟୀମାନଙ୍କୁ ମାରିଲେ ଆମ୍ଭମାନଙ୍କୁ ପାପ ସ୍ପର୍ଶ କରିବ ।

**୩୭ । ଅନ୍ୱୟଦୀପିକା**—ଯଦ୍ୟପି ( ଯେବେ ବି ) ଲୋଭୋପହତ-ଚେତସଃ ( ଲୋଭଅଭିଭୂତ ଚିତ୍ତ ) ଏତେ ( ଏମାନେ ) କୁଳକ୍ଷୟକୃତଂ ( କୁଳକ୍ଷୟଜନିତ ) ଦୋଷଂ ( ଦୋଷକୁ ) ଚ (ଏବଂ) ମିତ୍ରଦ୍ରୋହେ ( ମିତ୍ର-ଦ୍ରୋହରେ ) ପାତକଂ (ପାପକୁ) ନ ପଶ୍ୟନ୍ତି (ଦେଖୁନାହାନ୍ତି) ।

**ଅନୁବାଦ**—ଦୁର୍ଯ୍ୟୋଧନ ପକ୍ଷୀୟମାନେ ଯଦ୍ୟପି ଲୋଭାଭିଭୂତ ହୋଇ କୁଳକ୍ଷୟ ଓ ମିତ୍ରଦ୍ରୋହଜନିତ ପାତକରାଶି ଦେଖି ପାରୁ ନାହାନ୍ତି—

କଥଂ ନ ଜ୍ଞେୟମସ୍ମାଭିଃ ପାପାଦସ୍ମାନ୍ନିବର୍ତ୍ତିତୁମ୍ ।
କୁଳକ୍ଷୟକୃତଂ ଦୋଷଂ ପ୍ରପଶ୍ୟଦ୍‌ଭିର୍ଜନାର୍ଦ୍ଦନ । ୩୮ ।
କୁଳକ୍ଷୟେ ପ୍ରଣଶ୍ୟନ୍ତି କୁଳଧର୍ମାଃ ସନାତନାଃ,
ଧର୍ମେ ନଷ୍ଟେ କୁଳଂ କୃତ୍ସ୍ନମଧର୍ମୋଽଭିଭବତ୍ୟୁତ । ୩୯ ।

**ସୁବୋଧିନୀ ଟୀକା**—ନନୁ ତବୈତେଷାମପି ବନ୍ଧୁବଧେ ଦୋଷେ ସମାନେ ଯଥୈବେତେ ବନ୍ଧୁବଧମଙ୍ଗୀକୃତ୍ୟାପି ଯୁଦ୍ଧେ ପ୍ରବର୍ତ୍ତନ୍ତେ, ତଥୈବ ଭବାନପି ପ୍ରବର୍ତ୍ତତାମ୍ । କମନେନ ବିଷାଦେନେତ୍ୟାହ । ଯଦ୍ୟପୀତି ଦ୍ୱାଭ୍ୟାମ୍ । ରାଜ୍ୟଲୋଭେନୋପହତଂ ଭ୍ରଷ୍ଟବିବେକଂ ଚେତୋ ଯେଷାଂ ତ ଏତେ ଦୁର୍ଯ୍ୟୋଧନାଦୟୋ ଯଦ୍ୟପି ଦୋଷଂ ନ ପଶ୍ୟନ୍ତି ।

**ବିବୃତି**—କାଳେ ଶ୍ରୀକୃଷ୍ଣ ମନେ କରିବେ ଯେ; ବନ୍ଧୁବାନ୍ଧବ ହତ୍ୟାରେ ତୁମ୍ଭର କାହିଁକି ଏତେ ପାପଭୟ ଉପସ୍ଥିତ ହେଉଅଛି ? ସମ୍ମୁଖରେ ଦେଖୁଛ— ଦୁର୍ଯ୍ୟୋଧନ ଆଦି ଆତତାୟୀମାନେ ତ ବନ୍ଧୁବଧଜନିତ ପାପ ପ୍ରତି ଭ୍ରୂକ୍ଷେପ ନ କରି ଯୁଦ୍ଧ କରିବାକୁ ପ୍ରବର୍ତ୍ତିଅଛନ୍ତି, ଏପରି ଅବସ୍ଥାରେ ତୁମେ ମଧ୍ୟ ତାଙ୍କର ଅନୁକରଣ କର । ବିଷାଦ କରିବାରେ କି ପ୍ରୟୋଜନ ? ଏହା ଭାବି ଅର୍ଜ୍ଜୁନ କହୁଅଛନ୍ତି— ଏମାନଙ୍କର ଆଚରଣ ଅନୁକରଣୀୟ ନୁହେଁ, କାରଣ ଏମାନଙ୍କ ଚିତ୍ତ ଲୋଭାଭିଭୂତ; ଲୋଭାକ୍ରାନ୍ତ ଲୋକର ଆଚରଣ ଆଦୌ ଅନୁକରଣୀୟ ନୁହେ ।

୩୮ । **ଅନ୍ୱୟଦୀପିକା**—[ ତଥାପି ] ଜନାର୍ଦ୍ଦନ ! ( ହେ ଜନାର୍ଦ୍ଦନ ) କୁଳକ୍ଷୟକୃତଂ ( କୁଳକ୍ଷୟଜନିତ ) ଦୋଷଂ ( ଦୋଷକୁ ) ପ୍ରପଶ୍ୟଦ୍‌ଭିଃ ( ଦର୍ଶନକାରୀ ) ଅସ୍ମାଭିଃ ( ଆମ୍ଭମାନଙ୍କ କର୍ତ୍ତୃକ ) ଅସ୍ମାତ୍ ( ଏହି ) ପାପାତ୍ ( ପାପରୁ ) ନିବର୍ତ୍ତିତୁଂ ( ନିବୃତ୍ତ ହେବାପାଇଁ ) କଥଂ ( କେଉଁ ହେତୁରୁ ) ନ ଜ୍ଞେୟଂ ( ଜଣା ନ ହେବ ) ।

**ଅନୁବାଦ**—ହେ ଜନାର୍ଦ୍ଦନ ! ( ତଥାପି ) ବଂଶନାଶଜନିତ ଦୋଷକୁ ଜାଣୁ ଜାଣୁ ଆମ୍ଭେମାନେ କିପରି ତହିଁରୁ ନିବୃତ୍ତ ନ ହେବା ?

**ସୁବୋଧିନୀ ଟୀକା**—କଥମିତି । ତଥାପ୍ୟସ୍ମାଭିର୍ଦୋଷଂ ପ୍ରପଶ୍ୟଦ୍‌ଭିରସ୍ମାତ୍ ପାପାନ୍ନିବର୍ତ୍ତିତୁଂ କଥଂ ନ ଜ୍ଞେୟଂ ? ନିବୃତ୍ତିରେବ ବୁଦ୍ଧିଃ କର୍ତ୍ତବ୍ୟେତ୍ୟର୍ଥଃ ।

୩୯ । **ଅନ୍ୱୟଦୀପିକା**—କୁଳକ୍ଷୟେ ( କୁଳକ୍ଷୟ ହେଲେ ) ସନାତନାଃ ( ସନାତନ ) କୁଳଧର୍ମାଃ (କୁଳଧର୍ମ ସବୁ) ପ୍ରଣଶ୍ୟନ୍ତି (ବିନଷ୍ଟ ହୁଏ) ଉତ (ଓ) ଧର୍ମେ ନଷ୍ଟେ ( ଧର୍ମ ନଷ୍ଟ ହେଲେ ) ଅଧର୍ମଃ (ପାପ) କୃତ୍ସ୍ନଂ (ସମଗ୍ର) କୁଳମ୍ (କୁଳକୁ) ଅଭିଭବତି ( ବ୍ୟାପିଯାଏ) ।

ଅଧର୍ମାଭିଭବାତ୍ କୃଷ୍ଣ ପ୍ରଦୁଷ୍ୟନ୍ତି କୁଳସ୍ତ୍ରିୟଃ,
ସ୍ତ୍ରୀଷୁ ଦୁଷ୍ଟାସୁ ବାର୍ଷ୍ଣେୟ ଜାୟତେ ବର୍ଣ୍ଣସଙ୍କରଃ । ୪୦ ।
ସଙ୍କରୋ ନରକାୟୈବ କୁଳଘ୍ନାନାଂ କୁଳସ୍ୟ ଚ,
ପତନ୍ତି ପିତରୋ ହ୍ୟେଷାଂ ଲୁପ୍ତପିଣ୍ଡୋଦକକ୍ରିୟାଃ । ୪୧ ।
ଦୋଷୈରେତୈଃ କୁଳଘ୍ନାନାଂ ବର୍ଣ୍ଣସଙ୍କରକାରକୈଃ ।
ଉତ୍ସାଦ୍ୟନ୍ତେ ଜାତିଧର୍ମାଃ କୁଳଧର୍ମାଶ୍ଚ ଶାଶ୍ୱତାଃ । ୪୨ ।

**ଅନୁବାଦ**—କୁଳକ୍ଷୟ ହେଲେ କୁଳ ପରମ୍ପରାଗତ ସନାତନଧର୍ମ ବିନଷ୍ଟ ହୁଏ, ଏବଂ ଧର୍ମ ନଷ୍ଟ ହେଲେ ସମଗ୍ର ବଂଶରେ ପାପ ବ୍ୟାପିଯାଏ ।

**ସୁବୋଧିନୀ ଟୀକା**—ତମେବ ଦୋଷଂ ଦର୍ଶୟତି—କୁଳକ୍ଷୟ ଇତ୍ୟାଦି । ସନାତନାଃ ପରମ୍ପରାପ୍ରାପ୍ତାଃ । ଉତ ଅପି । ଅବଶିଷ୍ଟଂ କୃତ୍ସ୍ନମପିକୁଳମ୍ ଅଧର୍ମୋଽଭିଭବତି । ପ୍ରାପ୍ନୋତୀତ୍ୟର୍ଥଃ ।

**୪୦ । ଅନ୍ୱୟଦୀପିକା**—କୃଷ୍ଣ ( ହେ କୃଷ୍ଣ ) ଅଧର୍ମାଭିଭବାତ୍ (ଅଧର୍ମ ବ୍ୟାପିବା ହେତୁରୁ ) କୁଳସ୍ତ୍ରିୟଃ ( କୁଳସ୍ତ୍ରୀମାନେ ) ପ୍ରଦୁଷ୍ୟନ୍ତି ( ବ୍ୟଭିଚାରିଣୀ ହୁଅନ୍ତି ); ବାର୍ଷ୍ଣେୟ ( ହେ ବୃଷ୍ଣିବଂଶୋଦ୍ଭବ ) ସ୍ତ୍ରୀଷୁ ଦୁଷ୍ଟାସୁ ( ସ୍ତ୍ରୀମାନେ ଦୁଷ୍ଟ ହେଲେ ) ବର୍ଣ୍ଣସଙ୍କରଃ ଜାୟତେ ( ବର୍ଣ୍ଣସଙ୍କର ଜାତ ହୁଏ ) ।

**ଅନୁବାଦ**—ହେ କୃଷ୍ଣ ! କୁଳ ଅଧର୍ମରେ ଅଭିଭୂତ ହେଲେ କୁଳସ୍ତ୍ରୀମାନେ ବ୍ୟଭିଚାରିଣୀ ହୁଅନ୍ତି । ହେ ବୃଷ୍ଣିବଂଶଧର ! କୁଳସ୍ତ୍ରୀମାନେ ବ୍ୟଭିଚାରିଣୀ ହେଲେ ବର୍ଣ୍ଣସଙ୍କର ଜାତ ହୁଏ ।

**ସୁବୋଧିନୀ ଟୀକା**—ତତଶ୍ଚ ଅଧର୍ମାଭିଭବାଦିତ୍ୟାଦି ।

**୪୧ । ଅନ୍ୱୟଦୀପିକା**—ସଙ୍କରଃ ( ବର୍ଣ୍ଣସଙ୍କର ) କୁଳଘ୍ନାନାଂ (କୁଳନାଶକାରୀମାନଙ୍କର) କୁଳସ୍ୟ ଚ (ଏବଂ କୁଳର) ନରକାୟ ଏବ (ନରକନିମନ୍ତେ ) [ ଜନ୍ମ ହୁଏ ]; ହି ( ଯେହେତୁ ) ଏଷାଂ ( ଏମାନଙ୍କର ) ପିତରଃ ( ପିତା ଏବଂ ପିତାମହମାନେ ) ଲୁପ୍ତପିଣ୍ଡୋଦକକ୍ରିୟାଃ ( ପିଣ୍ଡ ଓ ତର୍ପଣ ଜଳ ନ ପାଇ ) ପତନ୍ତି (ପତିତ ହୁଅନ୍ତି) ।

**ଅନୁବାଦ**—ବର୍ଣ୍ଣସଙ୍କର କୁଳନାଶକାରୀମାନଙ୍କର ଏବଂ କୁଳର ନରକର କାରଣ ହୁଏ ଏବଂ ଶ୍ରାଦ୍ଧ ତର୍ପଣାଦି କ୍ରିୟାର ଲୋପ ହେବାରୁ ଏମାନଙ୍କର ପୂର୍ବପୁରୁଷମାନେ ନରକରେ ପତିତ ହୁଅନ୍ତି ।

**ସୁବୋଧିନୀ ଟୀକା**—ଏବଂ ପତି ସଙ୍କର ଇତ୍ୟାଦି । ଏଷାଂ କୁଳଘ୍ନାନାଂ ପିତରଃ ପତନ୍ତି । ହି ଯସ୍ମାଲ୍ଲୁପ୍ତାଃ ପିଣ୍ଡୋଦକକ୍ରିୟାଃ ଯେଷାଂ ତେ ତଥା ।

**୪୨ । ଅନ୍ୱୟଦୀପିକା**—କୁଳଘ୍ନାନାଂ ( କୁଳନାଶକାରୀମାନଙ୍କର ) ଏତୈଃ ( ଏହିସବୁ ) ବର୍ଣ୍ଣସଙ୍କରକାରକୈଃ ( ବର୍ଣ୍ଣସଙ୍କରକାରକ ) ଦୋଷୈଃ

ଉତ୍ସନ୍ନକୁଲଧର୍ମାଣାଂ ମନୁଷ୍ୟାଣାଂ ଜନାର୍ଦ୍ଦନ
ନରକେ ନିୟତଂ ବାସୋ ଭବତୀତ୍ୟନୁଶୁଶ୍ରୁମ । ୪୩ ।
ଅହୋବତ ମହତ୍ ପାପଂ କର୍ତ୍ତୁଂ ବ୍ୟବସିତା ବୟମ୍ ।
ଯଦ୍ରାଜ୍ୟସୁଖଲୋଭେନ ହନ୍ତୁଂ ସ୍ୱଜନମୁଦ୍ୟତାଃ । ୪୪ ।

( ଦୋଷଦ୍ୱାରା ) ଶାଶ୍ୱତାଃ ( ସନାତନ ) ଜାତିଧର୍ମାଃ କୁଳଧର୍ମାଃ ଚ ( ଜାତିଧର୍ମ କୁଳଧର୍ମାଦି ) ଉତ୍ସାଦ୍ୟନ୍ତେ ( ଲୁପ୍ତ ହୁଏ ) ।

**ଅନୁବାଦ**—କୁଳନାଶକାରୀମାନଙ୍କର ଏହି ବର୍ଣ୍ଣସଙ୍କର ଉତ୍ପତ୍ତିକାରକ ଦୋଷରେ ସନାତନ ଜାତିଧର୍ମ, କୁଳଧର୍ମ ଓ ଆଶ୍ରମଧର୍ମ ଲୁପ୍ତ ହୁଏ ।

**ସୁବୋଧିନୀ ଟୀକା**—ଉକ୍ତ ଦୋଷମୁପସଂହରତି-ଦୋଷୈରିତ୍ୟାଦିଭ୍ୟାଂ ଦ୍ୱାଭ୍ୟାମ୍, ଉତ୍ସାଦ୍ୟନ୍ତେ ଲୁପ୍ୟନ୍ତେ । ଜାତିଧର୍ମାଂ ବର୍ଣ୍ଣଧର୍ମାଃ । କୁଳଧର୍ମାଶ୍ଚେତି ଚକାରାଦାଶ୍ରମଧର୍ମାଦୟୋଽପି ଗୃହ୍ୟନ୍ତେ ।

**ବିବୃତି**—ଜାତିଧର୍ମ—ବ୍ରାହ୍ମଣର ଅଧ୍ୟାପନାଦି, କ୍ଷତ୍ରିୟର ପ୍ରଜାରକ୍ଷାଦି, ବୈଶ୍ୟର କୃଷି ବାଣିଜ୍ୟାଦି, ଶୂଦ୍ରର ପରିଚର୍ଯ୍ୟାଦି । କୁଳଧର୍ମ – କୁଳପରମ୍ପରାଗତ ଧର୍ମ ଅର୍ଥାତ୍ ଆଚାରନିୟମାଦି ଏବଂ ଉପାସନା ପଦ୍ଧତି । ଆଶ୍ରମ ଧର୍ମ—ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ, ସନ୍ନ୍ୟାସ ।

୪୩ । **ଅନ୍ୱୟଦୀପିକା**—[ହେ] ଜନାର୍ଦ୍ଦନ ! ଉତ୍ସନ୍ନ କୁଳଧର୍ମାଣାଂ (ଯେଉଁମାନଙ୍କର କୁଳଧର୍ମ ବିନଷ୍ଟ ହୁଏ) ମନୁଷ୍ୟାଣାଂ (ସେହି ମନୁଷ୍ୟମାନଙ୍କର) ନିୟତଂ (ଚିରକାଳ) ନରକେ ବାସଃ ଭବତି (ନରକରେ ବାସ ହୁଏ) ଇତି (ଏହା) ଅନୁଶୁଶ୍ରୁମ (ଆମ୍ଭେମାନେ ଶୁଣିଅଛୁଁ) ।

**ଅନୁବାଦ**—ହେ ଜନାର୍ଦ୍ଦନ, ଯେଉଁ ମନୁଷ୍ୟମାନଙ୍କର କୁଳଧର୍ମ ବିନଷ୍ଟ ହୁଏ, ସେମାନେ ଚିରକାଳ ନରକରେ ବାସକରନ୍ତି, ଏହା ଆମ୍ଭେମାନେ ଶୁଣିଅଛୁଁ ।

**ସୁବୋଧିନୀ ଟୀକା**—ଉତ୍ସନ୍ନେତି । ଉତ୍ସନ୍ନାଃ କୁଳଧର୍ମା ଯେଷାମିତି ତେଷାମ୍ । ଉତ୍ସନ୍ନଜାତିଧର୍ମାଦୀନାମପ୍ୟୁପଲକ୍ଷଣମ୍ । ଅନୁଶୁଶ୍ରୁମ ଶ୍ରୁତବନ୍ତୋ ବୟମ୍ । ପ୍ରାୟଶ୍ଚିତ୍ତମକୁର୍ବାଣାଃ ପାପେଷ୍ୱଭିରତା ନରାଃ, ଅପଶ୍ଚାତ୍ତାପିନଃ ପାପା ନିରୟାନ୍ ଯାନ୍ତି ଦାରୁଣାନ୍, ଇତ୍ୟାଦି ବଚନେଭ୍ୟଃ ।

୪୪ । **ଅନ୍ୱୟଦୀପିକା**—ଅହୋବତ (ଓହୋ କି କଷ୍ଟ) ବୟଂ (ଆମ୍ଭେମାନେ) ମହତ୍ପାପଂ କର୍ତ୍ତୁଂ (ମହାପାପ କରିବାକୁ) ବ୍ୟବସିତାଃ (ପ୍ରବୃତ୍ତ ହୋଇଅଛୁଁ); ଯତ୍ ( ଯେହେତୁ ) ରାଜ୍ୟସୁଖଲୋଭେନ ( ରାଜ୍ୟସୁଖ ଲୋଭରେ ) ସ୍ୱଜନଂ ହନ୍ତୁମ୍ ଉଦ୍ୟତାଃ (ଆତ୍ମୀୟମାନଙ୍କୁ ହତ୍ୟାକରିବାକୁ ଉଦ୍ୟତ ହୋଇଅଛୁଁ) ।

**ଅନୁବାଦ**—ଓହୋ, ଆମ୍ଭେମାନେ ରାଜ୍ୟସୁଖ ଲୋଭରେ ସ୍ୱଜନମାନଙ୍କୁ ବିନାଶ କରିବାକୁ ଉଦ୍ୟତ ହୋଇ ମହାପାପ କରିବାରେ ପ୍ରବୃତ୍ତ ହୋଇଅଛୁଁ ।

ଯଦି ମାମପ୍ରତୀକାରମଶସ୍ତ୍ରଂ ଶସ୍ତ୍ରପାଣୟଃ
ଧାର୍ତ୍ତରାଷ୍ଟ୍ରା ରଣେ ହନ୍ୟୁସ୍ତନ୍ମେ କ୍ଷେମତରଂ ଭବେତ୍ । ୪୫ ।

ସଞ୍ଜୟ ଉବାଚ

ଏବମୁକ୍ତ୍ୱାର୍ଜ୍ଜୁନଃ ସଂଖ୍ୟେ ରଥୋପସ୍ଥ ଉପାବିଶତ୍
ବିସୃଜ୍ୟ ସଶରଂ ଚାପଂ ଶୋକସଂବିଗ୍ନମାନସଃ । ୪୬ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସଂବାଦେ ଅର୍ଜ୍ଜୁନବିଷାଦଯୋଗୋ ନାମ ପ୍ରଥମୋଽଧ୍ୟାୟଃ ।

**ସୁବୋଧିନୀ ଟୀକା**—ବନ୍ଧୁବଧାଧ୍ୟବସାୟେନ ସନ୍ତପ୍ୟମାନ ଆହ । ଅହୋବତେତ୍ୟାଦି । ସ୍ୱଜନଂ ହନ୍ତୁମୁଦ୍ୟତା ଇତି ଯଦେତନ୍ମହତ୍ପାପଂ କର୍ତ୍ତୁମଧ୍ୟବସାୟଂ କୃତବନ୍ତୋ ବୟମ୍ । ଅହୋବତ ମହଦ୍‌କଷ୍ଟ ମିତ୍ୟର୍ଥଃ ।

୪୫ । **ଅନ୍ୱୟଦୀପିକା**—ଯଦି ଅପ୍ରତୀକାରମ୍ (ପ୍ରତିକାର କରିବାରୁ ବିରତ) ଅଶସ୍ତ୍ରଂ (ଶସ୍ତ୍ରହୀନ) ମାଂ (ମୋତେ) ଶସ୍ତ୍ରପାଣୟଃ (ଶସ୍ତ୍ରଧାରୀ) ଧାର୍ତ୍ତରାଷ୍ଟ୍ରାଃ (ଧୃତରାଷ୍ଟ୍ରପୁତ୍ରମାନେ) ରଣେ ହନ୍ୟୁଃ (ଯୁଦ୍ଧରେ ହତ୍ୟା କରନ୍ତି) ତତ୍ (ତାହା) ମେ (ମୋର) କ୍ଷେମତରଂ (ଅଧିକତର କଲ୍ୟାଣଜନକ) ଭବେତ୍ (ହେବ) ।

**ଅନୁବାଦ**—ମୁଁ ଶସ୍ତ୍ରତ୍ୟାଗ କରି ପ୍ରତୀକାର କରିବାରୁ ବିରତ ହେଲେ ଯେବେ ଶସ୍ତ୍ରଧାରୀ ଦୁର୍ଯ୍ୟୋଧନ ପ୍ରଭୃତି ମୋତେ ଯୁଦ୍ଧରେ ବଧ କରନ୍ତି ତାହା ମଧ୍ୟ ମୋ ପକ୍ଷରେ ଅଧିକତର କଲ୍ୟାଣଜନକ ହେବ ।

**ସୁବୋଧିନୀ ଟୀକା**—ଏବଂ ସତ୍ୟପିଃ ସନ୍ ମୃତ୍ୟୁମେବାଶଂସମାନ ଆହ —ଯଦି ମାମିତ୍ୟାଦି । ଅକୃତପ୍ରତୀକାରଂ ତୁଷ୍ଣୀମୁପବିଷ୍ଟଂ ମାଂ ଯଦି ହନିଷ୍ୟନ୍ତି, ତର୍ହି ତଦ୍ଧନନଂ ମମ କ୍ଷେମତରମ୍ ମତ୍ୟନ୍ତଂ ହିତଂ ଭବେତ୍ ପାପାନିଷ୍ପତ୍ତେଃ ।

୪୬ । **ଅନ୍ୱୟଦୀପିକା**—ସଞ୍ଜୟ ଉବାଚ ( ସଞ୍ଜୟ କହିଲେ ); ଅର୍ଜ୍ଜୁନଃ (ଅର୍ଜ୍ଜୁନ) ଏବଂ (ଏହି ପ୍ରକାର) ଉକ୍ତ୍ୱା (କହି) ସଂଖ୍ୟେ (ଯୁଦ୍ଧରେ) ସଶରଂ ( ଶରସହିତ ) ଚାପଂ ( ଧନୁକୁ ) ବିସୃଜ୍ୟ ( ତ୍ୟାଗକରି ) ଶୋକସଂବିଗ୍ନମାନସଃ (ଶୋକାକୁଳ ଚିତ୍ତ ହୋଇ) ରଥୋପସ୍ଥେ (ରଥ ଉପରେ) ଉପାବିଶତ୍ (ବସିଲେ) ।

**ଅନୁବାଦ**—ଅର୍ଜ୍ଜୁନ ଏହିପରି କହି ଶୋକାକୁଳଚିତ୍ତ ହୋଇ ଧନୁଶର ତ୍ୟାଗ କରି ରଥ ଉପରେ ବସିଲେ ।

**ସୁବୋଧିନୀ ଟୀକା**—ତତଃ କିଂ ବୃତ୍ତମିତ୍ୟପେକ୍ଷାୟାଂ ସଞ୍ଜୟ ଉବାଚ ଏବମୁକ୍ତ୍ୱେତ୍ୟାଦି । ସଂଖ୍ୟେ ସଂଗ୍ରାମେ । ରଥୋପସ୍ଥେ ରଥସ୍ୟୋପରି । ଉପାବିଶତ୍ ଉପବିବେଶ । ଶୋକେନ ସଂବିଗ୍ନଂ ପ୍ରକମ୍ପିତଂ ମାନସଂ ଚିତ୍ତଂ ଯସ୍ୟ ସଃ ତଥା ।

---

## ପ୍ରଥମ ଅଧ୍ୟାୟର ସାର ସଂକଳନ

ପ୍ରଥମ ଅଧ୍ୟାୟରେ ଗୀତୋକ୍ତ ଧର୍ମର ବ୍ୟାଖ୍ୟା ନ ଥିଲେହେଁ ପରବର୍ତ୍ତୀ ଅଧ୍ୟାୟମାନଙ୍କରେ ବର୍ଣ୍ଣିତ ଭାରତୀୟ ଆର୍ଯ୍ୟଧର୍ମର ମୂଳତତ୍ତ୍ୱ ବୁଝିବା ପାଇଁ ଏହି ଅଧ୍ୟାୟର ବିବରଣ ବିଶେଷ ପ୍ରୟୋଜନୀୟ । ଯେତେବେଳେ ଏହି ଧର୍ମତତ୍ତ୍ୱର ବ୍ୟାଖ୍ୟା ହୋଇଥିଲା, ସେତେବେଳେ ଏ ଦେଶ ଜ୍ଞାନ ଓ ଐଶ୍ୱର୍ଯ୍ୟରେ ପୃଥିବୀରେ ଅପୂର୍ବ ସୁଖଶାନ୍ତି ସମ୍ଭୋଗ କରୁଥିଲା । ସ୍ୱାଧୀନ ଭାରତରେ ସ୍ୱର୍ଗର ପୁଣ୍ୟଜ୍ୟୋତିଃ ସ୍ୱତଃ ପ୍ରସ୍ଫୁରିତ ହୋଇ ଉଠୁଥିଲା । ସତ୍ୟଧର୍ମର ପ୍ରଚାର ପାଇଁ ଭଗବାନ୍ ନର-ରୂପରେ କ୍ଷତ୍ରିୟକୁଳରେ ଜନ୍ମ ଗ୍ରହଣ କରି ଅନ୍ୟ ଜଣେ ମହାଧନୁର୍ଦ୍ଧର ତତ୍କାଳୀନ ସମାଜର ଆଦର୍ଶ କ୍ଷତ୍ରିୟ ପୁରୁଷଙ୍କୁ କ୍ଷାତ୍ରଧର୍ମାନୁଯାୟୀ ସ୍ୱକର୍ତ୍ତବ୍ୟରେ ପ୍ରବୃତ୍ତ କରାଇବା ପାଇଁ ଯେଉଁ ଉପଦେଶ ଦେଇଥିଲେ ପ୍ରଥମ ଅଧ୍ୟାୟ ତାହାର ଉପକ୍ରମଣିକା ମାତ୍ର । କେଉଁ ପ୍ରସଙ୍ଗରେ ଗୀତା-ଧର୍ମ ବ୍ୟାଖ୍ୟା କରିବା ଆବଶ୍ୟକ ହେଲା ଏ ଅଧ୍ୟାୟ ଆରମ୍ଭରେ ତାହାର ସୂଚନା ଦିଆ ଯାଇଅଛି । ଯୁଦ୍ଧର ଆରମ୍ଭରେ ଅର୍ଜୁନଙ୍କ ମନରେ ଯେଉଁ କର୍ତ୍ତବ୍ୟ ମୋହ ଜାତ ହେଲା ତାହା ପ୍ରତ୍ୟେକ ସାତ୍ତ୍ୱିକ ପ୍ରକୃତିବିଶିଷ୍ଟ ଲୋକ ପକ୍ଷରେ ସମ୍ପୂର୍ଣ୍ଣରୂପେ ସ୍ୱାଭାବିକ । ଯେତେବେଳେ ସେ ଦେଖିଲେ ଦୁର୍ଯ୍ୟୋଧନ ଅନୁରୋଧରେ ଯୁଦ୍ଧକ୍ଷେତ୍ରରେ ଯେଉଁମାନେ ଉପସ୍ଥିତ ହୋଇଅଛନ୍ତି, ସେମାନଙ୍କ ମଧ୍ୟରେ ତାଙ୍କର ପୂଜନୀୟ ପିତାମହ ଭୀଷ୍ମଦେବ, ସତ୍ୟନିଷ୍ଠ ଗୁରୁଦେବ ଦ୍ରୋଣାଚାର୍ଯ୍ୟ ଏବଂ ନିଜବଂଶର ବନ୍ଧୁ, କୁଟୁମ୍ବ, ଜ୍ଞାତି, ସ୍ୱଜନ, ସମସ୍ତେ ଅଛନ୍ତି । ଯୁଦ୍ଧାଗ୍ନିରେ ସମସ୍ତେ ନିଜକୁ ଆହୁତି ଦେବାପାଇଁ ପ୍ରସ୍ତୁତ । ସେତେବେଳେ ତାଙ୍କର ପ୍ରାଣ କାନ୍ଦି ଉଠିଲା । ସେ ଯୁଦ୍ଧକ୍ଷେତ୍ର ଛାଡ଼ି ସନ୍ନ୍ୟାସ-ଗ୍ରହଣ ପାଇଁ ଶ୍ରୀକୃଷ୍ଣଙ୍କ ନିକଟରେ ପ୍ରସ୍ତାବ କଲେ । ଅର୍ଜୁନଙ୍କ ପକ୍ଷରେ ଏହା କି ଭଳି ସଙ୍କଟକାଳ ଚିନ୍ତାଶୀଳ ବ୍ୟକ୍ତିମାନେ ତାହା ଉପଲବ୍ଧି କରିପାରିବେ । ଏକଆଡ଼େ ଯୁଦ୍ଧ କରିବା ରୂପ 'କ୍ଷାତ୍ରଧର୍ମ', ଅନ୍ୟଆଡ଼େ 'ବନ୍ଧୁପ୍ରୀତି', 'ଗୁରୁଭକ୍ତି' । ସେ ଭାବିଲେ, ଯେବେ ଯୁଦ୍ଧ କରେଁ, ତେବେ ଭୀଷ୍ମାଦି ଗୁରୁଜନଙ୍କୁ ମାରି ଘୋର ନରକକୁ ଯିବାକୁ ହେବ, ଯେବେ ନ କରେଁ ତେବେ କ୍ଷତ୍ରିୟଧର୍ମ ଲଙ୍ଘନ କରିବାରୁ ନରକଗତି ହେବ । ଅର୍ଜୁନ ମହାଯୋଦ୍ଧା ଥିଲେ ସତ୍ୟ ମାତ୍ର ଧର୍ମାଧର୍ମର ଏହି ନୈତିକ ସଙ୍କଟବେଳେ କର୍ତ୍ତବ୍ୟବିମୂଢ଼ ହୋଇ 'ଯୁଦ୍ଧ କରିବି ନାହିଁ' ଏହା ସ୍ଥିରକରି ରଥଉପରେ ଅଚଳ ହୋଇ ବସି ପଡ଼ିଲେ । ଯେତେବେଳେ ଅଗ୍ନିପ୍ରଭ ପିତା ଜମଦଗ୍ନି ପତ୍ନୀ ରେଣୁକାଚରିତ୍ରରେ ସନ୍ଦିଗ୍ଧ ହୋଇ ତାଙ୍କୁ ହତ୍ୟା କରିବା ପାଇଁ ପୁତ୍ର ପରଶୁରାମଙ୍କୁ ଆଦେଶ ଦେଲେ ସେତେବେଳେ ପରଶୁରାମ ମଧ୍ୟ ଏହିପରି କର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଥିଲେ । ପ୍ରତ୍ୟେକ ଧର୍ମପ୍ରାଣ ମନୁଷ୍ୟଜୀବନରେ ଏପରି ଘଟଣା ପ୍ରାୟଶଃ ଘଟିଥାଏ । ଏପରି

ସମୟରେ ଉପଯୁକ୍ତ ଗୁରୁଙ୍କ ଉପଦେଶହିଁ ମନୁଷ୍ୟକୁ ପ୍ରକୃତ ଧର୍ମପଥ ଦେଖାଇ ଦିଏ । ଭଗବାନ୍ ଶ୍ରୀକୃଷ୍ଣ ଏ ଅବସ୍ଥାରେ ଅର୍ଜୁନଙ୍କୁ କର୍ତ୍ତବ୍ୟର ପଥ ଦେଖାଇ ଯୁଦ୍ଧ କରିବାକୁ ଯେଉଁ ଉପଦେଶ ଦେଲେ ତାହାହିଁ 'ଗୀତାଧର୍ମ'; ଏହାର ଅନ୍ୟ ନାମ 'କର୍ମଯୋଗ', ଏହି କର୍ମଯୋଗହିଁ ଗୀତାର ପ୍ରତିପାଦ୍ୟ ବିଷୟ । ତେଣୁ ଏହା 'ପ୍ରବୃତ୍ତିପର' ଧର୍ମ । ଗୀତା ରଚନା ସମୟରେ ଏବଂ ତତ୍‌ପରବର୍ତ୍ତୀ କାଳରେ ଏ ଦେଶରେ ସାଧାରଣତଃ ନିବୃତ୍ତିମୂଳକ ଧର୍ମ ବା 'କର୍ମସନ୍ନ୍ୟାସ'ର ପ୍ରଚଳନ ଥିଲା । ତେଣୁ ଗୀତାର ଭାଷ୍ୟକାର ଓ ଟୀକାକାରମାନେ ଏହି ଅପୂର୍ବ ଧର୍ମଗ୍ରନ୍ଥ ସେହି ଦୃଷ୍ଟିରେ ବ୍ୟାଖ୍ୟା କରିଅଛନ୍ତି । କିନ୍ତୁ ଗ୍ରନ୍ଥର ଉପକ୍ରମ ଓ ଉପସଂହାର ଦେଖିଲେ ଜଣାଯାଏ ଯେ ଏହା ସମ୍ପୂର୍ଣ୍ଣରୂପେ ପ୍ରବୃତ୍ତିମୂଳକ ବା ସଂସାରୀ ଲୋକର ଅନୁସରଣୀୟ ଧର୍ମ । ଧର୍ମର ସୂକ୍ଷ୍ମତତ୍ତ୍ୱ ଆଲୋଚନା ପ୍ରସଙ୍ଗରେ ଅବଶ୍ୟ ଗୀତାରେ ନିବୃତ୍ତିପରଧର୍ମର ବିବୃତି କରାଯାଇଅଛି; କିନ୍ତୁ ତାହା ଗୀତାର ପ୍ରତିପାଦ୍ୟ ତତ୍ତ୍ୱ ନୁହେ । ଏହି ମୂଳସୂତ୍ର ସ୍ମରଣ ନ ରଖିଲେ ଗୀତାର ପ୍ରକୃତ ଅର୍ଥ ବୁଝିବାରେ ଅସୁବିଧା ହେବ ।

ବିଷାଦବଶତଃ ଅର୍ଜୁନ ପ୍ରଥମରୁ ଯୁଦ୍ଧରୂପ ସକାମ କର୍ମ କରିବା ପାଇଁ ଅନିଚ୍ଛୁକ ଥିଲେ, କିନ୍ତୁ ସେହି ବିଷାଦ ମଧ୍ୟରେ ଶାନ୍ତିଲାଭଆଶାରୂପ ନିଷ୍କାମ କର୍ମଯୋଗ ଅନ୍ତର୍ନିବିଷ୍ଟ ଥିଲା । ତେଣୁ ଏହି ବିଷାଦ 'ଯୋଗ' ନାମରେ ଅଭିହିତ ହୋଇଅଛି ।

---

# ଦ୍ୱିତୀୟୋଽଧ୍ୟାୟଃ

ସଞ୍ଜୟ ଉବାଚ

ତଂ ତଥା କୃପୟାବିଷ୍ଟମଶ୍ରୁପୂର୍ଣ୍ଣାକୁଳେକ୍ଷଣମ୍ ।
ବିଷୀଦନ୍ତମିଦଂ ବାକ୍ୟମୁବାଚ ମଧୁସୂଦନଃ । ୧ ।

ଶ୍ରୀ ଭଗବାନୁବାଚ

କୁତସ୍ତ୍ୱା କଶ୍ମଳମିଦଂ ବିଷମେ ସମୁପସ୍ଥିତମ୍,
ଅନାର୍ଯ୍ୟଜୁଷ୍ଟମସ୍ୱର୍ଗ୍ୟମକୀର୍ତ୍ତିକରମର୍ଜ୍ଜୁନ । ୨ ।

**୧ । ଅନ୍ୱୟ ଦୀପିକା**—ସଞ୍ଜୟଃ ଉବାଚ ( ସଞ୍ଜୟ କହିଲେ ) ମଧୁସୂଦନଃ ( ଶ୍ରୀକୃଷ୍ଣ ) ତଥା ( ପୂର୍ବୋକ୍ତରୂପେ ) କୃପୟା ଆବିଷ୍ଟଂ ( କୃପାବିଷ୍ଟ ) ଅଶ୍ରୁପୂର୍ଣ୍ଣାକୁଳେକ୍ଷଣଂ ( ଲୋତକଜଳପୂର୍ଣ୍ଣଲୋଚନ ) ବିଷୀଦନ୍ତଂ ( ବିଷଣ୍ଣ ) ତମ୍ ( ତାହାଙ୍କୁ ) ଇଦଂ ( ଏହି ) ବାକ୍ୟଂ ( କଥା ) ଉବାଚ ( କହିଲେ ) ।

**ଅନୁବାଦ**—ସଞ୍ଜୟ କହିଲେ—ସେତେବେଳେ ମଧୁସୂଦନ କୃପାବିଷ୍ଟ ଅଶ୍ରୁପୂର୍ଣ୍ଣ ଲୋଚନ ବିଷଣ୍ଣ ଅର୍ଜ୍ଜୁନଙ୍କୁ ଏହିପରି କହିଲେ ।

**ସୁବୋଧିନୀ ଟୀକା**—

ଦ୍ୱିତୀୟେ ଶୋକସନ୍ତପ୍ତମର୍ଜ୍ଜୁନଂ ବ୍ରହ୍ମବିଦ୍ୟୟା
ପ୍ରତିବୋଧ୍ୟ ହରିଶ୍ଚକ୍ରେ ସ୍ଥିତପ୍ରଜ୍ଞସ୍ୟ ଲକ୍ଷଣମ୍ ।

ତତଃ କିଂ ବୃତ୍ତ ମିତ୍ୟପେକ୍ଷାୟାଂ ସଞ୍ଜୟ ଉବାଚ ତଂ ତଥେତ୍ୟାଦି । ଅଶ୍ରୁଭିଃ ପୂର୍ଣ୍ଣେ ଆକୁଳେ ଈକ୍ଷଣେ ଯସ୍ୟ ତମ୍ । ତଥୋକ୍ତପ୍ରକାରେଣ ବିଷୀଦନ୍ତ-ମର୍ଜ୍ଜୁନଂ ପ୍ରତି ମଧୁସୂଦନ ଇଦଂ ବାକ୍ୟମୁବାଚ ।

**ବିବୃତି**—ଓଡ଼ିଆରେ କୃପା ଓ ଦୟା ଏକାର୍ଥକ ଶବ୍ଦ । ମାତ୍ର ଏଠାରେ 'କୃପା' ଶବ୍ଦ ଦୟା ଅର୍ଥରେ ପ୍ରଯୁକ୍ତ ହୋଇ ନାହିଁ । ଅନ୍ୟର ଦୁଃଖରେ ଦୁଃଖିତ ହେଲେ ତାହା ଦୂରକରିବାକୁ ଲୋକର ଯେଉଁ ସ୍ୱର୍ଗୀୟ ପ୍ରବୃତ୍ତି ଜାତ ହୁଏ ତାହାକୁ 'ଦୟା' ବୋଲାଯାଏ । ପରର ଦୁଃଖଶଙ୍କାରେ ବା କଷ୍ଟଦର୍ଶନରେ କାତର ହେବାକୁ 'କୃପା' ବୋଲାଯାଏ, କାତରତା 'ଦୟା' ନୁହେ । ଦୟା ବଳବାନ୍ ଲୋକର ହୃଦ୍‌ବୃତ୍ତିବିଶେଷ ମାତ୍ର କୃପା ଦୁର୍ବଳ ହୃଦୟର ଧର୍ମ ।

**୨ । ଅନ୍ୱୟଦୀପିକା**—ଶ୍ରୀ ଭଗବାନ୍ ଉବାଚ ( ଶ୍ରୀକୃଷ୍ଣ କହିଲେ ) ଅର୍ଜ୍ଜୁନ ( ହେ ଅର୍ଜ୍ଜୁନ ) ବିଷମେ ( ସଙ୍କଟକାଳରେ ) କୁତଃ ( କି ହେତୁରୁ ) ଇଦଂ ( ଏ ଭଳି ) ଅନାର୍ଯ୍ୟଜୁଷ୍ଟମ୍ ( ଅନାର୍ଯ୍ୟଜନୋଚିତ ) ଅସ୍ୱର୍ଗ୍ୟଂ ( ସ୍ୱର୍ଗଗତି-ରୋଧକ ) ଅକୀର୍ତ୍ତିକରଂ ( ଅଯଶସ୍କର ) କଶ୍ମଳମ୍ ( ମୋହ ) ତ୍ୱା ( ତୁମ୍ଭଙ୍କୁ ) ସମୁପସ୍ଥିତମ୍ ( ପ୍ରାପ୍ତ ହେଲା ) ।

କ୍ଲୈବ୍ୟଂ ମାସ୍ମଗମଃ ପାର୍ଥ ନୈତତ୍ତ୍ୱୟ୍ୟୁପପଦ୍ୟତେ,
କ୍ଷୁଦ୍ରଂ ହୃଦୟଦୌର୍ବଲ୍ୟଂ ତ୍ୟକ୍ତ୍ୱୋତ୍ତିଷ୍ଠ ପରନ୍ତପ । ୩ ।

**ଅନୁବାଦ**—ଭଗବାନ୍ କହିଲେ, ହେ ଅର୍ଜ୍ଜୁନ, ଏ ସଙ୍କଟରେ ତୁମର ଏପରି ମୋହ ଉପସ୍ଥିତ ହେଲା କାହିଁକି ? ଏହା ଅନାର୍ଯ୍ୟଜନୋଚିତ, ସ୍ୱର୍ଗଗତିରୋଧକ ଓ ଅକୀର୍ତ୍ତିକର ।

**ସୁବୋଧିନୀ ଟୀକା**—ତଦେବ ବାକ୍ୟମାହ—କୁତ ଇତି । କୁତୋ-ହେତୋସ୍ତ୍ୱା ତ୍ୱାଂ ବିଷମେ ସଙ୍କଟ ଇଦଂ କଶ୍ମଲଂ ସମୁପସ୍ଥିତଂ ମୋହଃ ପ୍ରାପ୍ତଃ । ଯତ ଅର୍ଯ୍ୟୈରସେବିତମ୍ । ଅସ୍ୱର୍ଗ୍ୟମ୍ ଅଧର୍ମ୍ୟମ୍ ଅଯଶସ୍କରଂ ଚ ।

**ବିବୃତି**—ଯାହାର ଯାହା ପ୍ରକୃତିସିଦ୍ଧ ତାହାର ବିରୁଦ୍ଧାଚରଣ କଲେ ବୁଝିବାକୁ ହେବ ଯେ, 'ତାହାର ମୋହ ଉପସ୍ଥିତ । ସେହିହେତୁରୁ ଭଗବାନ୍ ଅର୍ଜ୍ଜୁନଙ୍କର କ୍ଷତ୍ରିୟ ପ୍ରକୃତିବିରୁଦ୍ଧ ସାତ୍ତ୍ୱିକ ବ୍ରାହ୍ମଣଲକ୍ଷଣ ଦେଖି କହିଲେ, ହେ ଅର୍ଜ୍ଜୁନ ! ତୁମ୍ଭର ଏହିଳି ବର୍ଣ୍ଣାଶ୍ରମବିରୁଦ୍ଧ ବୁଦ୍ଧିର ଉଦୟ ହେଲା କାହିଁକି ? ସ୍ୱୀୟ ବର୍ଣ୍ଣାଶ୍ରମ ଧର୍ମ ନିକୃଷ୍ଟ ହେଉ ପଛକେ ତାକୁ ଛାଡ଼ି ଅନ୍ୟ ବର୍ଣ୍ଣାଶ୍ରମ ଧର୍ମ ଆଚରଣ କଲେ ସ୍ୱର୍ଗ କି କୀର୍ତ୍ତି କି ମୁକ୍ତି କିଛି ମିଳେ ନାହିଁ । ସାମୟିକ ସତ୍ତ୍ୱଗୁଣପ୍ରଭାବରେ ତୁମ୍ଭର ଏ ଯେଉଁ ବୈରାଗ୍ୟ ଜାତ ହୋଇଅଛି, ତାହା ବିବେକ ବିଚାରରୁ ଉଦ୍‌ଭୂତ ନୁହେ । ତେଣୁ ତୁମର ଏହିଳି ବୁଦ୍ଧି ମୁକ୍ତିପଥର ବିରୋଧୀ ।

ଅର୍ଜ୍ଜୁନଙ୍କର ନ୍ୟାଯ୍ୟଯୁଦ୍ଧରେ ପରାଙ୍ମୁଖତାକୁ ଏଠାରେ ଅନାର୍ଯ୍ୟ-ଜନୋଚିତ ବୋଲି କୁହାଯାଇଅଛି ।

୩ । **ଅନ୍ୱୟଦୀପିକା**—ପାର୍ଥ, ( ହେ ଅର୍ଜ୍ଜୁନ ) କ୍ଲୈବ୍ୟଂ ( କାତରତାକୁ ) ମାସ୍ମ ଗମଃ ( ପ୍ରାପ୍ତ ହୁଅ ନାହିଁ ), ଏତତ୍ ( ଏହା ) ତ୍ୱୟି (ତୁମଠାରେ) ନ ଉପପଦ୍ୟତେ (ଉପଯୁକ୍ତ ନୁହେ) । ପରନ୍ତପ (ହେ ଶତ୍ରୁତାପନ) କ୍ଷୁଦ୍ରଂ ( ତୁଚ୍ଛ ) ହୃଦୟଦୌର୍ବଲ୍ୟଂ ( ହୃଦୟର ଦୁର୍ବଳତାକୁ ) ତ୍ୟକ୍ତ୍ୱା ( ତ୍ୟାଗ କରି ) ଉତ୍ତିଷ୍ଠ ( ଉଠ ) ।

**ଅନୁବାଦ**—ହେ ଅର୍ଜ୍ଜୁନ ! କାତର ହୁଅ ନାହିଁ । ଏହା ତୁମ ପକ୍ଷରେ ଉପଯୁକ୍ତ ନୁହେ । ହେ ପରନ୍ତପ ! ତୁଚ୍ଛ ହୃଦୟ ଦୁର୍ବଳତା ତ୍ୟାଗ କରି ( ଯୁଦ୍ଧ ନିମିତ୍ତ ) ପ୍ରସ୍ତୁତ ହୋଇ ଉଠ ।

**ସୁବୋଧିନୀ ଟୀକା**—ତସ୍ମାତ୍ କ୍ଲୈବ୍ୟମିତି । ହେ ପାର୍ଥ କ୍ଲୈବ୍ୟଂ କାତର୍ଯ୍ୟଂ ମାସ୍ମ ଗମୋ ନ ପ୍ରାପ୍ନୁହି । ଯତସ୍ତ୍ୱୟ୍ୟେତନ୍ନୋପପଦ୍ୟତେ, ଯୋଗ୍ୟଂ ନ ଭବତି । କ୍ଷୁଦ୍ରଂ ତୁଚ୍ଛଂ ହୃଦୟଦୌର୍ବଲ୍ୟଂ କାତର୍ଯ୍ୟଂ ତ୍ୟକ୍ତ୍ୱା ଯୁଦ୍ଧାୟୋତ୍ତିଷ୍ଠ । ହେ ପରନ୍ତପ ଶତ୍ରୁତାପନ ।

ଅର୍ଜୁନ ଉବାଚ

କଥଂ ଭୀଷ୍ମମହଂ ସଂଖ୍ୟେ ଦ୍ରୋଣଂ ଚ ମଧୁସୂଦନ ।
ଇଷୁଭିଃ ପ୍ରତିଯୋତ୍ସ୍ୟାମି ପୂଜାର୍ହାବରିସୂଦନ । ୪ ।
ଗୁରୂନହତ୍ୱା ହି ମହାନୁଭାବାନ୍
ଶ୍ରେୟୋ ଭୋକ୍ତୁଂ ଭୈକ୍ଷ୍ୟମପୀହ ଲୋକେ;
ହତ୍ୱାର୍ଥକାମାଂସ୍ତୁ ଗୁରୂନିହୈବ,
ଭୁଞ୍ଜୀୟ ଭୋଗାନ୍ ରୁଧିରପ୍ରଦିଗ୍ଧାନ୍ । ୫ ।

୪ । **ଅନ୍ୱୟଦୀପିକା**—ଅର୍ଜୁନଃ ଉବାଚ ( ଅର୍ଜୁନ କହିଲେ ); ଅରିସୂଦନ ମଧୁସୂଦନ ! ( ହେ ଶତ୍ରୁବିନାଶକାରୀ ଶ୍ରୀକୃଷ୍ଣ ) ଅହଂ ( ମୁଁ ) ସଂଖ୍ୟେ ( ଯୁଦ୍ଧରେ ) ପୂଜାର୍ହୌ ( ପୂଜାର ଯୋଗ୍ୟ ) ଭୀଷ୍ମଂ ଦ୍ରୋଣଂ ଚ ପ୍ରତି ( ଭୀଷ୍ମ ଓ ଦ୍ରୋଣଙ୍କୁ ଲକ୍ଷ୍ୟ କରି ) ଇଷୁଭିଃ ( ବାଣସମୂହ ଦ୍ୱାରା ) କଥଂ ( କିପରି ) ଯୋତ୍ସ୍ୟାମି ( ଯୁଦ୍ଧ କରିବି ) ।

**ଅନୁବାଦ**—ହେ ଶତ୍ରୁବିନାଶକାରୀ ଶ୍ରୀକୃଷ୍ଣ ! ଯୁଦ୍ଧ ବେଳେ ପୂଜନୀୟ ଭୀଷ୍ମଦ୍ରୋଣଙ୍କୁ ଲକ୍ଷ୍ୟ କରି କିପରି ବାଣ ନିକ୍ଷେପ କରିବି ?

**ସୁବୋଧିନୀ ଟୀକା**—ନାହଂ କାତରତ୍ୱେନ ଯୁଦ୍ଧାଦୁପରତୋଽସ୍ମି । କିନ୍ତୁ ଯୁଦ୍ଧସ୍ୟାନ୍ୟାଯ୍ୟତ୍ୱାଦଧର୍ମତ୍ୱାଚ୍ଚ—ଅର୍ଜୁନ ଉବାଚ କଥମିତି, ଭୀଷ୍ମଦ୍ରୋଣୌ ପୂଜାର୍ହୌ ପୂଜାଯୋଗ୍ୟୌ ତୌ ପ୍ରତି କଥମହଂ ଯୋତ୍ସ୍ୟାମି, ତତ୍ରାପୀଷୁଭିଃ । ଯଦ୍ ବାଚାପି ଯୋତ୍ସ୍ୟାମୀତି ବକ୍ତୁଂ ନ ଶକ୍ୟତେ ତତ୍ର ବାଣୈଃ କଥଂ ଯୋତ୍ସ୍ୟାମୀତ୍ୟର୍ଥଃ ।

**ବିବୃତି**—ହେ ଅରିସୂଦନ ଶତ୍ରୁବିମର୍ଦ୍ଦନ ! ଭୀଷ୍ମ ଓ ଦ୍ରୋଣ ମୋର ପୂଜନୀୟ ଗୁରୁଦେବ । ଯେଉଁମାନଙ୍କ ସଙ୍ଗରେ ବାଗ୍‌ଯୁଦ୍ଧ ବା ତର୍କବିତର୍କ କରିବା ନୀତିଧର୍ମ ବିରୁଦ୍ଧ, ମୁଁ କିପରି ସେମାନଙ୍କୁ ଲକ୍ଷ୍ୟ କରି ଯୁଦ୍ଧରେ ଶର ନିକ୍ଷେପ କରିବି ? ମୁଁ କାତର ହୋଇ ଯୁଦ୍ଧରୁ ପରାଙ୍ମୁଖ ହେଉ ନାହିଁ; ଯୁଦ୍ଧର ଅନ୍ୟାଯ୍ୟତ୍ୱ ଓ ଅଧର୍ମତ୍ୱ ମୋର ନିବୃତ୍ତିର କାରଣ ।

୫ । **ଅନ୍ୱୟଦୀପିକା**—ଇହଲୋକେ ( ଏ ସଂସାରରେ ) ମହାନୁଭାବାନ୍ ( ମହାନୁଭବ ) ଗୁରୂନ୍ (ଗୁରୁମାନଙ୍କୁ) ଅହତ୍ୱା (ବଧ ନ କରି) ଭୈକ୍ଷ୍ୟମ୍ ଅପି (ଭିକ୍ଷାନ୍ନ ମଧ୍ୟ) ଭୋକ୍ତୁଂ (ଭୋଜନ କରିବା) ଶ୍ରେୟଃ ( ମଙ୍ଗଳକର ) । ତୁ (କିନ୍ତୁ) ଅର୍ଥକାମାନ୍ ( ଧନାଭିଳାଷୀ ) ଗୁରୂନ୍ ହତ୍ୱା ( ଗୁରୁଜନଙ୍କୁ ହତ୍ୟାକରି ) ଇହ ଏବ (ଏହି ସଂସାରରେହିଁ) ରୁଧିରପ୍ରଦିଗ୍ଧାନ୍ (ରକ୍ତଲିପ୍ତ) ଭୋଗାନ୍ (ବିଷୟ) ଭୁଞ୍ଜୀୟ (ଭୋଗକରିବାକୁ ହେବ) ।

**ଅନୁବାଦ**— ମହାତ୍ମା ଗୁରୁଜନମାନଙ୍କୁ ବଧ ନ କରି ଏ ସଂସାରରେ ଭିକ୍ଷା ମାଗି ଖାଇବା ଭଲ, କିନ୍ତୁ ଧନଲୋଭୀ (ହେଲେହେଁ) ଗୁରୁଜନମାନଙ୍କୁ ହତ୍ୟାକଲେ ରକ୍ତମିଶ୍ରିତ ବିଷୟସୁଖ ଭୋଗ କରିବାକୁ ହେବ ।

**ସୁବୋଧିନୀ ଟୀକା**—ତର୍ହି ତାନହତ୍ୱା ତବ ଦେହଯାତ୍ରାପି ନ ସ୍ୟାଦିତ୍ୟତ ଆହ ଗୁରୂନିତି, ଗୁରୂନ୍ ଦ୍ରୋଣାଚାର୍ଯ୍ୟାଦୀନ୍ । ଅହତ୍ୱା ପରଲୋକ-ବିରୁଦ୍ଧଂ ଗୁରୁବଧମକୃତ୍ୱେହଲୋକେ ଭୈକ୍ଷ୍ୟମପି ଭୋକ୍ତୁଂ ଶ୍ରେୟ ଉଚିତଂ । ବିପକ୍ଷେ ତୁ ନ କେବଳଂ ପରତ୍ର ଦୁଃଖଂ । କିନ୍ତ୍ୱିହୈବ ନରକଦୁଃଖମନୁଭବେୟମିତ୍ୟାହ ହତ୍ୱେତି । ଗୁରୂନ୍ ହତ୍ୱେହୈବ ରୁଧିରେଣ ପ୍ରଦିଗ୍ଧାନ୍ ପ୍ରକର୍ଷେଣ ଲିପ୍ତାନର୍ଥକାମାତ୍ମ-କାନ୍ ଭୋଗାନହଂ ଭୁଞ୍ଜୀୟାଶ୍ନୀୟାମ୍ । ଯଦ୍ୱା ଅର୍ଥକାମାନିତି ଗୁରୂଣାଂ ବିଶେଷଣମ୍ । ଅର୍ଥଲୁବ୍ଧା ଅପିତ୍ୱାଦେତେ ତାବଦ୍ଧ୍ୟାନ ନିବର୍ତ୍ତେରନ୍ । ତସ୍ମାତ୍ ତଦ୍‌ବଧଃ ପ୍ରସକ୍ତୋଽତିବେଦିତ୍ୟର୍ଥଃ । ତଥାଚ ଯୁଧିଷ୍ଠିରଂ ପ୍ରତି ଭୀଷ୍ମେଣୋକ୍ତମ୍—ଅର୍ଥସ୍ୟ ପୁରୁଷୋ ଦାସୋ ଦାସସ୍ତ୍ୱର୍ଥୋ ନ କସ୍ୟଚିତ୍ । ଇତି ସତ୍ୟଂ ମହାରାଜ ବଦ୍ଧୋଽ-ସ୍ମ୍ୟର୍ଥେନ କୌରବୈଃ । ଇତି ।

**ବିବୃତି**—ଏ ଶ୍ଳୋକର ପ୍ରଥମାର୍ଦ୍ଧରେ 'ଗୁରୂନହତ୍ୱା' ଅର୍ଥାତ୍ ଗୁରୁମାନଙ୍କୁ ହତ୍ୟା ନ କରି ଇହଲୋକରେ ଭିକ୍ଷାନ୍ନ ଗ୍ରହଣହିଁ ଶ୍ରେୟସ୍କର ଏହିପରି କୁହାଯାଇଅଛି । ଏହାର କାରଣ ସ୍ୱରୂପ 'ଗୁରୂନ୍' (ଗୁରୁମାନଙ୍କୁ) ଏହାର ବିଶେଷଣରୂପେ 'ମହାନୁଭବାନ୍' ଏହି ବିଶେଷଣ ପ୍ରଯୁକ୍ତ ହୋଇଅଛି । 'ମହାନୁ-ଭବ' ଶବ୍ଦର ଅର୍ଥ ଶ୍ରବଣ, ଅଧ୍ୟୟନ, ତପସ୍ୟା, ଅଗ୍ରୀବାଦି ଗୁଣରେ ବିଭୂଷିତ; ଶ୍ଳୋକର ଦ୍ୱିତୀୟ ଅର୍ଦ୍ଧରେ ଗୁରୁମାନଙ୍କୁ ଯୁଦ୍ଧରେ ମାରିଲେ ଇହଲୋକରେହିଁ ରୁଧିରଲିପ୍ତ ବିଷୟ ଭୋଗ କରିବାକୁ ହେବ—ଏହିପରି ଉକ୍ତ ହୋଇଅଛି । ଦ୍ୱିତୀୟାର୍ଦ୍ଧରେ 'ଗୁରୂନ୍' ଏହାର ବିଶେଷଣରୂପେ 'ଅର୍ଥକାମାନ୍' ଏହି ବିଶେଷଣ ପ୍ରଯୁକ୍ତ ହୋଇଅଛି । 'ଅର୍ଥକାମାନ୍' ଶବ୍ଦର ଅର୍ଥ ଅର୍ଥଲୋଭୀ ବା ଅର୍ଥଲୁବ୍ଧ । 'ଅର୍ଥକାମାନ୍' ଏଭଳି ବିଶେଷଣର ସାର୍ଥକତା ସମ୍ବନ୍ଧରେ କୁହାଯାଏ :— କୁରୁକ୍ଷେତ୍ର ଯୁଦ୍ଧ ଆରମ୍ଭ ହେବା ପୂର୍ବେ ଯେତେବେଳେ ଯୁଧିଷ୍ଠିର ରଣାଙ୍ଗନରେ ଶରୀରରୁ କବଚ ବାହାରକରି ଭୀଷ୍ମ, ଦ୍ରୋଣ, ଶଲ୍ୟ ପ୍ରଭୃତିଙ୍କ ଭଳି ଗୁରୁମାନଙ୍କର ଆଶୀର୍ବାଦ ଲାଭ ଆଶାରେ ସେମାନଙ୍କର ଚରଣ ବନ୍ଦନା କରିବାକୁ ଗଲେ ସେତେବେଳେ ସେମାନେ କି ହେତୁରୁ ଦୁର୍ଯ୍ୟୋଧନ ପକ୍ଷରେ ଯୁଦ୍ଧ କରିବାକୁ ଯାଉଅଛନ୍ତି ତାହା ଯୁଧିଷ୍ଠିରଙ୍କୁ ବୁଝାଇବାକୁ ଯାଇ ଭୀଷ୍ମଦେବ କହିଲେ:—

> "ଅର୍ଥସ୍ୟ ପୁରୁଷୋ ଦାସୋ, ଦାସସ୍ତ୍ୱର୍ଥୋ ନ କସ୍ୟଚିତ୍,
> ଇତି ସତ୍ୟଂ ମହାରାଜ ବଦ୍ଧୋଽସ୍ମ୍ୟର୍ଥେନ କୌରବୈଃ ।"

ନ ଚୈତଦ୍‌ବିଦ୍ମଃ କତରନ୍ନୋ ଗରୀୟୋ
ଯଦ୍ ବା ଜୟେମ ଯଦିବା ନୋ ଜୟେୟୁଃ ।
ଯାନେବ ହତ୍ୱା ନ ଜିଜୀବିଷାମ
ସ୍ତେଽବସ୍ଥିତାଃ ପ୍ରମୁଖେ ଧାର୍ତ୍ତରାଷ୍ଟ୍ରାଃ ।୬।

ଅର୍ଥାତ୍—"ହେ ମହାରାଜ ! ପୁରୁଷ ଅର୍ଥର ଦାସ, ଅର୍ଥ କାହାର ଦାସ ନୁହେ । କୌରବମାନେ ମୋତେ ଅର୍ଥଦ୍ୱାରା ବାନ୍ଧି ରଖିଅଛନ୍ତି ।" ଶ୍ଳୋକୋକ୍ତ 'ଅର୍ଥକାମ' ବିଶେଷଣ ଏହି ଭାବର ଦ୍ୟୋତକ । ଅର୍ଜୁନଙ୍କ କହିବାର ଉଦ୍ଦେଶ୍ୟ ଏମାନେ ଅର୍ଥଲୋଭରେ ଅନ୍ୟାୟପକ୍ଷ ଅବଲମ୍ବନ କରିଥିଲେହେଁ ମୋର ଗୁରୁ, ତେଣୁ ଯୁଦ୍ଧରେ ସେମାନଙ୍କ ବଧ ସର୍ବଥା ମୋ ପକ୍ଷରେ ଅମଙ୍ଗଳକର ।

ଯୁଦ୍ଧ କରିବାକୁ ସମବେତ ହୋଇଥିବା ଲୋକମାନଙ୍କ ମଧ୍ୟରେ ଦ୍ରୋଣାଚାର୍ଯ୍ୟଙ୍କ ଭିନ୍ନ ଅନ୍ୟ କେହି ଅର୍ଜୁନଙ୍କର ଶିକ୍ଷାଦାତା ଗୁରୁ ନ ଥିଲେ । ତେଣୁ 'ଗୁରୂନ୍' ଏହି ବହୁବଚନାନ୍ତ ପଦ ପୂଜନୀୟ ଲୋକ ବା ବୃଦ୍ଧଲୋକ ଅର୍ଥରେ ବ୍ୟବହୃତ ହୋଇଅଛି ବୁଝିବାକୁ ହେବ ।

କେହି କେହି 'ଅର୍ଥକାମାନ୍' ଏହି ବିଶେଷଣ ପଦକୁ 'ଭୋଗାନ୍' ଏହି ପଦର ବିଶେଷଣ ରୂପେ ଅନ୍ୱୟ କରି 'ଅର୍ଥକାମନାଯୁକ୍ତ ରୁଧିରଲିପ୍ତ ବିଷୟ ଭୋଗ' ଏହିପରି ଅର୍ଥ କରନ୍ତି । କିନ୍ତୁ ଏହା ଦୁରନ୍ୱୟ ଦୋଷଦୁଷ୍ଟ ଭଳି ବୋଧହୁଏ ।

**୬ । ଅନ୍ୱୟଦୀପିକା**—ଯଦ୍‌ବା ( ଯଦିବା ) ଜୟେମ ( ଆମେ ଜୟଲାଭ କରୁଁ ), ଯଦିବା (କିମ୍ବା) ନଃ (ଆମ୍ଭମାନଙ୍କୁ) [ଏତେ] ଜୟେୟୁଃ (ଏମାନେ ଜୟ କରନ୍ତି), [ ଏତୟୋର୍ମଧ୍ୟେ] [ଏ ଦୁଇଟି ମଧ୍ୟରେ ] ନଃ (ଆମ ପକ୍ଷରେ) କତରତ୍ ( କେଉଁଟି ) ଗରୀୟଃ (ଗୁରୁତର) ଏତତ୍ ଚ ( ଏହା ମଧ୍ୟ ) ନ ବିଦ୍ମଃ ( ଜାଣୁନାହିଁ ) । ଯାନ୍ ଏବ ( ଯେଉଁମାନଙ୍କୁ ) ହତ୍ୱା ( ହତ୍ୟାକରି ) ନ ଜିଜୀବିଷାମଃ ( ବଞ୍ଚି ରହିବାକୁ ଆମେ ଅନିଚ୍ଛୁକ ), ତେ ( ସେହି ) ଧାର୍ତ୍ତରାଷ୍ଟ୍ରାଃ ( ଧୃତରାଷ୍ଟ୍ର-ପକ୍ଷୀୟମାନେ ) ପ୍ରମୁଖେ ( ସମ୍ମୁଖରେ ) ଅବସ୍ଥିତାଃ ( ଅବସ୍ଥିତ ଅଛନ୍ତି ) ।

**ଅନୁବାଦ**— ଏ ଯୁଦ୍ଧରେ ଯଦିବା ଆମ୍ଭେମାନେ ଜୟକରୁଁ ଅଥବା ଆମ୍ଭମାନଙ୍କୁ ସେମାନେ ଜୟକରନ୍ତି—ଏ ଦୁଇଟି ମଧ୍ୟରେ କେଉଁଟି ଆମ ପକ୍ଷରେ ଶ୍ରେୟସ୍କର, ତାହା ଆମ୍ଭେମାନେ ବୁଝିପାରୁ ନାହୁଁ, ଯେଉଁମାନଙ୍କୁ ବଧକରି ବଞ୍ଚିରହିବାକୁ ଆମର ଇଚ୍ଛା ନୁହେ ସେହି ଧୃତରାଷ୍ଟ୍ର ପକ୍ଷୀୟମାନେ ଆମ ସମ୍ମୁଖରେ ଅବସ୍ଥିତ ଅଛନ୍ତି ।

କାର୍ପଣ୍ୟ ଦୋଷୋପହତସ୍ୱଭାବଃ,
ପୃଚ୍ଛାମି ତ୍ୱାଂ ଧର୍ମସମ୍ମୂଢ଼ଚେତାଃ ।
ଯଚ୍ଛ୍ରେୟଃ ସ୍ୟାନ୍ନିଶ୍ଚିତଂ ବ୍ରୂହି ତନ୍ମେ
ଶିଷ୍ୟସ୍ତେଽହଂ ଶାଧି ମାଂ ତ୍ୱାଂ ପ୍ରପନ୍ନମ୍ । ୭ ।

**ସୁବୋଧିନୀ ଟୀକା**—କିଞ୍ଚ ଯଦ୍ୟପ୍ୟଧର୍ମମଙ୍ଗୀକୃତ୍ୟ ଯୁଧ୍ୟାମସ୍ତଥାପି କିମସ୍ମାକଂ ଜୟଃ ପରାଜୟୋ ବା ଭବେଦିତି ନ ଜ୍ଞାୟତ ଇତ୍ୟାହ—ନ ଚୈତଦିତ୍ୟାଦି । ଏତୟୋର୍ମଧ୍ୟେ ନୋଽସ୍ମାକଂ କତରତ୍ କିଂ ନାମ ଗରୀୟୋଽଧିକତରଂ ଭବିଷ୍ୟତୀତି ନ ବିଦ୍ମଃ । ତଦେବ ଦ୍ୱୟଂ ଦର୍ଶୟତି—ଯଦ୍‌ବେତି । ଯଦ୍‌ବୈ ତାନ୍ ବୟଂ ଜୟେମ ଜେଷ୍ୟାମଃ । ଯଦ୍ୱା ନୋଽସ୍ମାନେତେ ଜୟେୟୁର୍ଜେଷ୍ୟନ୍ତୀତି । କିଞ୍ଚାସ୍ମାକଂ ଜୟୋଽପି ଫଳତଃ ପରାଜୟ ଏବେତ୍ୟାହ—ଯାନିତି । ଯାନେବହତ୍ୱା ଜୀବିତୁଂ ନେଚ୍ଛାମସ୍ତ ଏବୈତେ ସମ୍ମୁଖେଽବସ୍ଥିତାଃ ।

**ବିବୃତି**— ଭିକ୍ଷାଦ୍ୱାରା ଜୀବିକାନିର୍ବାହକରିବା କ୍ଷତ୍ରିୟଧର୍ମ ବିରୁଦ୍ଧ । କ୍ଷତ୍ରିୟର ଧର୍ମ—"ସଂଗ୍ରାମେଷ୍ୱନିବର୍ତ୍ତିତ୍ୱଂ ପ୍ରଜାନାଂ ଚୈବ ପାଳନମ୍" ( ମନୁ )— 'ଯୁଦ୍ଧରେ ବିମୁଖ ନ ହେବା ଓ ପ୍ରଜାପାଳନ କରିବା' । ଏହା ଭାବି ଅର୍ଜ୍ଜୁନ କହୁଛନ୍ତି—ଯେବେ ଯୁଦ୍ଧରେ ପରାଜୟ ହୁଏ ତେବେ ଆମ୍ଭେମାନେ ମରିବୁଁ ବା ନ ମଲେ ଭିକ୍ଷମାଗି ବଞ୍ଚିବୁଁ; ଏପରି ଅବସ୍ଥାରେ ପ୍ରଥମରୁ ଭିକ୍ଷାବୃତ୍ତି କାହିଁକି ଆଶ୍ରୟ ନ କରିବୁଁ ? ଅନ୍ୟଥା ବନ୍ଧୁମାନଙ୍କୁ ହତ୍ୟାକରି ଜୟ କଲେ ମଧ୍ୟ ତାହା ପରାଜୟରେ ପରିଣତ ହେବ । ତେଣୁ ଲୋକତଃ ଏବଂ ଧର୍ମତଃ ଆମ୍ଭମାନଙ୍କ ପରାଜୟ ଛଡ଼ା ଆଉ କିଛି ହେବ ନାହିଁ ।

ଏ ସମସ୍ତ ଯୁକ୍ତି ଦେଖାଇ ଅର୍ଜ୍ଜୁନ ଶେଷରେ କର୍ତ୍ତବ୍ୟ ପଥ ଦେଖାଇ-ଦେବାକୁ ଗୁରୁଙ୍କ ଶରଣାଗତ ହେଉଅଛନ୍ତି ।

୭ । **ଅନ୍ୱୟଦୀପିକା**—କାର୍ପଣ୍ୟଦୋଷୋପହତସ୍ୱଭାବଃ (ଅଜ୍ଞାନବଶତଃ ଦୀନତା ଦୋଷରେ କଳୁଷିତ ଚିତ୍ତ ) [ ଅହଂ ] (ମୁଁ) ଧର୍ମସମ୍ମୂଢ଼ଚେତାଃ (ଧର୍ମ-ବୁଦ୍ଧି ବିମୂଢ଼ ) [ ହୋଇ ] ତ୍ୱାଂ ( ତୁମ୍ଭଙ୍କୁ ) ପୃଚ୍ଛାମି ( ପଚାରୁଅଛି ) ମେ ( ମୋର ବା ମୋ ପକ୍ଷରେ ) ଯତ୍ (ଯାହା) ଶ୍ରେୟଃ ସ୍ୟାତ୍ (ମଙ୍ଗଳକର ହେବ) ତତ୍ ( ତାହା ) ନିଶ୍ଚିତଂ ବ୍ରୂହି ( ନିଶ୍ଚିତରୂପେ କହ ), ଅହଂ ତେ (ମୁଁ ତୁମ୍ଭର) ଶିଷ୍ୟଃ, ତ୍ୱାଂ ପ୍ରପନ୍ନଂ ( ତୁମ୍ଭର ଶରଣାଗତ ) ମାଂ ଶାଧି ( ମୋତେ ଉପଦେଶ ଦିଅ ) ।

**ଅନୁବାଦ**—( ଗୁରୁମାନଙ୍କୁ ହତ୍ୟାକରି କପରି ବଞ୍ଚି ରହିବ, ଏହି ଚିନ୍ତା ହେତୁରୁ) ଦୀନତାବଶତଃ ମୋ ଚିତ୍ତର ସ୍ୱାଭାବିକ ବୃତ୍ତି ନଷ୍ଟ ହୋଇଯାଇଛି,

ନ ହି ପ୍ରପଶ୍ୟାମି ମମାପନୁଦ୍ୟାଦ୍
ଯଚ୍ଛୋକମୁଚ୍ଛୋଷଣମିନ୍ଦ୍ରିୟାଣାମ୍ ।
ଅବାପ୍ୟ ଭୂମାବସପତ୍ନମୃଦ୍ଧଂ
ରାଜ୍ୟଂ ସୁରାଣାମପି ଚାଧିପତ୍ୟମ୍ ॥ ୮ ॥

( ମୋ ନିଜର ) ଧର୍ମ ଅର୍ଥାତ୍ କର୍ତ୍ତବ୍ୟ ସମ୍ବନ୍ଧରେ ମନ ମୋହପ୍ରାପ୍ତ ହୋଇଅଛି, ସେହି ହେତୁରୁ ମୁଁ ତୁମ୍ଭଙ୍କୁ ପଚାରୁଅଛି । ଯଥାର୍ଥରେ ଯାହାଦ୍ୱାରା ମୋର ମଙ୍ଗଳ ହେବ ତାହା ମୋତେ ନିଶ୍ଚିତରୂପେ ବୁଝାଇଦିଅ, ମୁଁ ତୁମ୍ଭର ଶିଷ୍ୟ ଓ ଶରଣାଗତ, ମୋତେ ଉପଦେଶ ଦିଅ ।

**ସୁବୋଧିନୀ ଟୀକା**— ତସ୍ମାତ୍—କାର୍ପଣ୍ୟେତ୍ୟାଦି । ଏତାନ୍ ହତ୍ୱା କଥଂ ଜୀବିଷ୍ୟାମ ଇତି କାର୍ପଣ୍ୟମ୍ । ଦୋଷସ୍ତୁ କୁଳକ୍ଷୟକୃତଃ । ତାଭ୍ୟାମୁପହତୋଽଭିଭୂତଃ ସ୍ୱଭାବଃ ଶୌର୍ଯ୍ୟାଦିଲକ୍ଷଣୋ ଯସ୍ୟ ସୋଽହଂ ତ୍ୱାଂ ପୃଚ୍ଛାମି । ତଥା ଧର୍ମେ ସମ୍ମୂଢ଼ଂ ଚେତୋ ଯସ୍ୟ ସଃ । ଯୁଦ୍ଧଂ ତ୍ୟକ୍ତ୍ୱା ଭିକ୍ଷାଟନମପି କ୍ଷତ୍ରିୟସ୍ୟ ଧର୍ମୋଽଧର୍ମୋ ବେତି ସନ୍ଦିଗ୍ଧଚିତ୍ତଃ ସନ୍ନିତ୍ୟର୍ଥଃ । ଅତୋ ମେ ଯନ୍ନିଶ୍ଚିତଂ ଶ୍ରେୟଃ ସ୍ୟାତ୍ତଦ୍ବ୍ରୂହି । କିଞ୍ଚ ତେଽହଂ ଶିଷ୍ୟଃ ଶାସନାର୍ହଃ । ଅତସ୍ତ୍ୱାଂ ପ୍ରପନ୍ନଂ ଶରଣଂ ଗତଂ ମାଂ ଶାଧି ଶିକ୍ଷୟ ।

**ବିବୃତି**—ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କର ସଖା, ଦୁଃସମୟରେ ସେ ଏ ଭାବ ଛାଡ଼ି ଭଗବାନଙ୍କର ଶରଣାପନ୍ନ ହୋଇ ଶିଷ୍ୟତ୍ୱ ସ୍ୱୀକାର କରିଅଛନ୍ତି । କାରଣ ଶିଷ୍ୟ ନ ହେଲେ ଗୁରୁ କେବେହେଁ ଧର୍ମର ଉପଦେଶ ଦିଅନ୍ତି ନାହିଁ । ଶ୍ରଦ୍ଧାସହକାରେ ସମ୍ପୂର୍ଣ୍ଣରୂପେ ଭଗବାନଙ୍କର ଶରଣାଗତ ହେବା ଗୀତାର ପ୍ରଧାନ ଶିକ୍ଷା । ଏହାକୁହିଁ ଆତ୍ମସମର୍ପଣ କହନ୍ତି । ଏହି ଭାବରେ ଅନୁଗତ ହେବାରୁ ଭଗବାନ୍ ଅର୍ଜ୍ଜୁନଙ୍କୁ ଗୀତୋକ୍ତ ସୂକ୍ଷ୍ମ ଧର୍ମତତ୍ତ୍ୱର ଉପଦେଶ ଦେଇଅଛନ୍ତି ।

୮ । **ଅନ୍ୱୟଦୀପିକା**—ଭୂମୌ ( ପୃଥିବୀରେ ) ଅସପତ୍ନଂ (ଶତ୍ରୁଶୂନ୍ୟ, ନିଷ୍କଣ୍ଟକ ) ଋଦ୍ଧଂ ( ସମୃଦ୍ଧିସମ୍ପନ୍ନ ) ରାଜ୍ୟଂ ( ରାଜ୍ୟ ) ସୁରାଣାମପି ଆଧିପତ୍ୟଂ ଚ ( ଦେବତାମାନଙ୍କର ଆଧିପତ୍ୟ ) ଅବାପ୍ୟ (ପାଇ ମଧ୍ୟ) ଯତ୍ (ଯାହା) ମମ ଇନ୍ଦ୍ରିୟାଣାମ୍ ଉଚ୍ଛୋଷଣଂ ( ମୋ ଇନ୍ଦ୍ରିୟମାନଙ୍କର ଶୋଷକ ବା ସନ୍ତାପଦାୟକ ) ଶୋକଂ (ଶୋକକୁ) ଅପନୁଦ୍ୟାତ୍ (ନିବାରଣ କରିପାରେ) [ତତ୍] ନ ହି ପ୍ରପଶ୍ୟାମି (ତାହା ଦେଖୁନାହିଁ) ।

**ଅନୁବାଦ**—ପୃଥିବୀରେ ନିଷ୍କଣ୍ଟକ ସମୃଦ୍ଧ ରାଜ୍ୟ ଏବଂ ସୁରଲୋକର ଆଧିପତ୍ୟ ପାଇଲେ ମଧ୍ୟ ଏପରି କୌଣସି ଉପାୟ ମୋ ଦୃଷ୍ଟିରେ ପଡୁନାହିଁ, ଯାହା ମୋର ଇନ୍ଦ୍ରିୟଶୋଷକ ଏହି ଶୋକ ଦୂର କରିଦେବ ।

ସଞ୍ଜୟ ଉବାଚ

ଏବମୁକ୍ତ୍ୱା ହୃଷୀକେଶଂ ଗୁଡ଼ାକେଶଃ ପରନ୍ତପଃ,
ନ ଯୋତ୍ସ୍ୟ ଇତି ଗୋବିନ୍ଦମୁକ୍ତ୍ୱା ତୂଷ୍ଣୀଂ ବଭୂବ ହ । ୯ ।
ତମୁବାଚ ହୃଷୀକେଶଃ ପ୍ରହସନ୍ନିବ ଭାରତ,
ସେନୟୋରୁଭୟୋର୍ମଧ୍ୟେ ବିଷୀଦନ୍ତମିଦଂ ବଚଃ । ୧୦ ।

**ସୁବୋଧିନୀ ଟୀକା**—ତ୍ୱମେବଂ ବିମୃଶ୍ୟ ଯଦ୍‌ଯୁକ୍ତଂ ତତ୍ କୁର୍ବିତି ଚେତ୍? ତତ୍ରାହ—ନ ହି ପ୍ରପଶ୍ୟାମୀତି । ଇନ୍ଦ୍ରିୟାଣାମୁଚ୍ଛୋଷଣମତିଶୋଷଣକରଂ ମଦୀୟଂ ଶୋକଂ ଯତ୍ କର୍ମାପନୁଦ୍ୟାଦପନୟେତ୍ ତଦହଂ ନ ପ୍ରପଶ୍ୟାମୀତି । ଯଦ୍ୟପି ଭୂମୌ ନିଷ୍କଣ୍ଟକଂ ସମୃଦ୍ଧଂ ରାଜ୍ୟଂ ପ୍ରାପ୍ସ୍ୟାମି ତଥା ସୁରେନ୍ଦ୍ରତ୍ୱମପି ଯଦି ପ୍ରାପ୍ସ୍ୟାମ୍ୟେବମପ୍ୟାଦୌ ତତ୍ତ୍ର ସର୍ବମବାଧ୍ୟାପି ଶୋକାପନୋଦନୋପାୟଂ ନ ପ୍ରପଶ୍ୟାମୀତ୍ୟନ୍ୱୟଃ ।

**ବିବୃତି**—ଅର୍ଜୁନ ଶସ୍ତ୍ର ଓ ଶାସ୍ତ୍ର ବିଦ୍ୟାରେ ସୁପଣ୍ଡିତ ଥିଲେ, ତଥାପି ନିଜର ଦୋଷ ଦୁର୍ବଳତା ଶ୍ରୀକୃଷ୍ଣଙ୍କ ନିକଟରେ ପ୍ରକାଶ କରିବାକୁ କୁଣ୍ଠିତ ହେଲେ ନାହିଁ । ପଣ୍ଡିତ ହେଲେହେଁ ଲୋକ ଯେ ଶୋକମୋହ ହସ୍ତରୁ ରକ୍ଷା ପାଇବ ଏପରି ନୁହେଁ, ତେଣୁ ଅର୍ଜୁନ ଏକାନ୍ତ ଭକ୍ତଭଦ୍‌ଗତଚିତ୍ତରେ ଏହି ଶୋକମୋହହସ୍ତରୁ ଉଦ୍ଧାର ପାଇବାପାଇଁ ଭଗବାନଙ୍କର ଶରଣାପନ୍ନ ହେଲେ ।

**୯ । ଅନ୍ୱୟଦୀପିକା**—ସଞ୍ଜୟଃ ଉବାଚ (ସଞ୍ଜୟ କହିଲେ) । ପରନ୍ତପଃ (ଶତ୍ରୁ ସନ୍ତାପକାରୀ) ଗୁଡ଼ାକେଶଃ (ଅର୍ଜୁନ) ହୃଷୀକେଶଂ (ଶ୍ରୀକୃଷ୍ଣଙ୍କୁ) ଏବମ୍ (ଏହିପରି) ଉକ୍ତ୍ୱା (କହି) 'ନ ଯୋତ୍ସ୍ୟେ' (ଯୁଦ୍ଧ କରିବ ନାହିଁ) ଇତି (ଏହି କଥା) ଗୋବିନ୍ଦଂ (ଶ୍ରୀକୃଷ୍ଣଙ୍କୁ) ଉକ୍ତ୍ୱା (କହି) ତୂଷ୍ଣୀଂ ବଭୂବ ହ (ତୁନି ହୋଇ ରହିଲେ) ।

**ଅନୁବାଦ**—ସଞ୍ଜୟ କହିଲେ; ଶତ୍ରୁ ସନ୍ତାପଦାତା ଅର୍ଜୁନ ହୃଷୀକେଶ ଗୋବିନ୍ଦଙ୍କୁ ପୂର୍ବୋକ୍ତ କଥାଗୁଡ଼ିକ କହିବା ପରେ 'ମୁଁ ଯୁଦ୍ଧ କରିବ ନାହିଁ'—ଏହିପରି ଜଣାଇ ତୁନିହୋଇ ରହିଲେ ।

**ସୁବୋଧିନୀ ଟୀକା**— ଏବମୁକ୍ତ୍ୱାର୍ଜୁନଃ କିଂ କୃତବାନିତ୍ୟପେକ୍ଷାୟାଂ ସଞ୍ଜୟ ଉବାଚ—ଏବମିତ୍ୟାଦି ।

**୧୦ । ଅନ୍ୱୟଦୀପିକା**—ଭାରତ (ହେ ଧୃତରାଷ୍ଟ୍ର) ହୃଷୀକେଶଃ (ଶ୍ରୀକୃଷ୍ଣ) ଉଭୟୋଃ ସେନୟୋଃ ମଧ୍ୟେ (ଦୁଇ ସୈନ୍ୟ ଦଳ ମଧ୍ୟରେ) ବିଷୀଦନ୍ତଂ (ବିଷାଦଗ୍ରସ୍ତ), ତମ୍ (ତାହାଙ୍କୁ) ପ୍ରହସନ୍ନିବ (ହସି ହସି) ଇଦଂ ବଚଃ (ଏହି କଥା) ଉବାଚ (କହିଲେ) ।

ଶ୍ରୀଭଗବାନୁବାଚ

ଅଶୋଚ୍ୟାନନ୍ୱଶୋଚସ୍ତ୍ୱଂ ପ୍ରଜ୍ଞାବାଦାଂଶ୍ଚ ଭାଷସେ,
ଗତାସୂନଗତାସୂଂଶ୍ଚ ନାନୁଶୋଚନ୍ତି ପଣ୍ଡିତାଃ । ୧୧ ।

**ଅନୁବାଦ**—ହେ ଭରତ (ଧୃତରାଷ୍ଟ୍ର) ସେତେବେଳେ ଶ୍ରୀକୃଷ୍ଣ ହସିଲା ପରି ହୋଇ ଉଭୟ ସୈନ୍ୟଦଳମଧ୍ୟବର୍ତ୍ତୀ ବିଷାଦଗ୍ରସ୍ତ ଅର୍ଜୁନଙ୍କୁ ଏହି କଥା କହିଲେ ।

**ସୁବୋଧିନୀ ଟୀକା**— ତତଃ କିଂ ବୃତ୍ତମିତ୍ୟାହ—ତମୁବାଚେତି । ପ୍ରହସନ୍ନିବେତି ପ୍ରସନ୍ନମୁଖଃ ସନ୍ନିତ୍ୟର୍ଥଃ ।

**ବିବୃତି**—'ପ୍ରହସନ୍ନିବେତି'—ହସିଲା ପରି ହୋଇ । ଯେତେବେଳେ ଅର୍ଜୁନ ଘୋରଦୁଃଖରେ ବିଷଣ୍ଣ ହୋଇ ବସିଲେ ସେତେବେଳେ ଶ୍ରୀକୃଷ୍ଣ ହସିଲା ପରି ହୋଇ ତାଙ୍କୁ କହିଲେ । ଅର୍ଜୁନଙ୍କର ଘୋର ଦୁଃଖ ସମୟରେ ଶ୍ରୀକୃଷ୍ଣ ହସିଲାପରି ହୋଇ କହିବାର ତାତ୍ପର୍ଯ୍ୟ ଏହି ଯେ—ଅର୍ଜୁନ ଶତ୍ରୁମାନଙ୍କୁ ବିନାଶ କରିବା ପାଇଁ ବନବାସ କାଳରେ କଠୋର ତପସ୍ୟା କରି ପାଶୁପତ ଅସ୍ତ୍ରାଦିର ପ୍ରୟୋଗ କୌଶଳ ଶିକ୍ଷା କରିଥିଲେ ଏବଂ କୁରୁକ୍ଷେତ୍ରଯୁଦ୍ଧରେ କିପରି ଜୟଲାଭ ହେବ, ସେଥିପାଇଁ ବହୁପୂର୍ବରୁ ନାନାବିଧ ଉପାୟ ଓ କୌଶଳ ଅବଲମ୍ବନ କରିଥିଲେ । ପ୍ରକୃତ ଯୁଦ୍ଧ ଆରମ୍ଭ ବେଳେ ତାଙ୍କ ଭଳି ବୀରକେଶରୀଙ୍କ ହଠାତ୍ ଏପରି ବିଷଣ୍ଣ ଓ ବୈରାଗ୍ୟପ୍ରବଣ ଦେଖି ଅନ୍ତର୍ଯ୍ୟାମୀ ଶ୍ରୀକୃଷ୍ଣ ବୁଝିପାରିଲେ ଯେ ଏହା ମାନବସ୍ୱଭାବସୁଲଭ କ୍ଷଣିକ ମୋହ । ତେଣୁ ତାଙ୍କୁ ସ୍ୱଭାବତଃ ହସମାଡ଼ିଲା । ଅର୍ଜୁନଙ୍କୁ ଲଜ୍ଜା ଦେବା ଶ୍ରୀକୃଷ୍ଣଙ୍କ ହାସ୍ୟର ଉଦ୍ଦେଶ୍ୟ ନୁହେ । ଯଥାର୍ଥରେ ତାଙ୍କର ସାମୟିକ ଶତ୍ରୁବିକୃତିଜନିତ ମୋହ ଶ୍ରୀକୃଷ୍ଣଙ୍କ ହାସ୍ୟର କାରଣ ।

**୧୧ । ଅନ୍ୱୟଦୀପିକା**—ଶ୍ରୀଭଗବାନୁବାଚ ( ଶ୍ରୀଭଗବାନ୍ କହିଲେ ) । ତ୍ୱଂ (ତୁମେ) ଅଶୋଚ୍ୟାନ୍ ( ଯେଉଁମାନଙ୍କ ପାଇଁ ଶୋକ କରିବା ଅନୁଚିତ ସେମାନଙ୍କ ପାଇଁ ) ଅନ୍ୱଶୋଚଃ (ଶୋକ କରୁଅଛ) । ପ୍ରଜ୍ଞାବାଦାନ୍ ଚ ( ଜ୍ଞାନ ବା ପାଣ୍ଡିତ୍ୟପୂର୍ଣ୍ଣ କଥା ) ଭାଷସେ (କହୁଅଛ) । ପଣ୍ଡିତାଃ ( ପଣ୍ଡିତମାନେ ) ଗତାସୂନ୍ (ମୃତ) ଅଗତାସୂନ୍ ଚ ( ଏବଂ ଜୀବିତ, କାହାରି ପାଇଁ) ନ ଅନୁଶୋଚନ୍ତି (ଶୋକ କରନ୍ତି ନାହିଁ ) ।

**ଅନୁବାଦ**—ଯାହାଙ୍କ ପାଇଁ ଶୋକ କରିବା ଉଚିତ ନୁହେଁ, ତୁମେ ସେମାନଙ୍କ ପାଇଁ ଶୋକ କରୁଅଛ ଏବଂ ଜ୍ଞାନ ବା ପାଣ୍ଡିତ୍ୟପୂର୍ଣ୍ଣ କଥା କହୁଅଛ । କାହାରି ପ୍ରାଣ ଯାଉ ବା ରହୁ—ଜ୍ଞାନୀବ୍ୟକ୍ତି ସେଥିପାଇଁ ଶୋକ କରନ୍ତି ନାହିଁ ।

**ସୁବୋଧିନୀ ଟୀକା—** ଦେହାତ୍ମାନୋରବିବେକାଦସ୍ୟୈବଂ ଶୋକୋ ଭବତୀତି ତଦ୍‌ବିବେକପ୍ରଦର୍ଶନାର୍ଥଂ ଶ୍ରୀଭଗବାନୁବାଚ—ଅଶୋଚ୍ୟାନିତ୍ୟାଦି । ଶୋକସ୍ୟାବିଷୟୀଭୂତାନେବ ବନ୍ଧୂଂସ୍ତ୍ୱମନ୍ୱଶୋଚୋଽନୁଶୋଚିତବାନସି— ଦୃଷ୍ଟ୍ୱେମାନ୍ ସ୍ୱଜନାନ୍ କୃଷ୍ଣେତ୍ୟାଦିନା ଅତ୍ର କୁତସ୍ତ୍ୱା କଶ୍ମଲମିଦଂ ବିଷମେ ସମୁପସ୍ଥିତମିତ୍ୟାଦିନା ମୟା ବୋଧିତୋଽପି ପୁନଶ୍ଚ ପ୍ରଜ୍ଞାବତାଂ ପଣ୍ଡିତାନାଂ ବାଦାନ୍ ଶବ୍ଦାନ୍ କଥଂ ଭୀଷ୍ମମହଂ ସଂଖ୍ୟେ—ଇତ୍ୟାଦୀନ୍ କେବଲଂ ଭାଷସେ । ନତୁ ପଣ୍ଡିତୋଽସି ; ଯତଃ ପଣ୍ଡିତା ବିବେକିନୋ ଗତାସୂନ୍ ଗତପ୍ରାଣାନ୍ ବନ୍ଧୂନ୍ ଅଗତାସୂଂଶ୍ଚ ଜୀବତୋଽପି—ବନ୍ଧୂନ୍ନାନ ଏତେ କଥଂ ଜୀବିଷ୍ୟନ୍ତୀତି ନାନୁଶୋଚନ୍ତି ।

**ବିବୃତି**—ଯେଉଁ ଧର୍ମୋପଦେଶ ଗୀତାଶାସ୍ତ୍ରର ପ୍ରତିପାଦ୍ୟ ଏହି ଶ୍ଳୋକରୁ ତାହାର ଆରମ୍ଭ ହୋଇଅଛି । ଗୀତା ଆରମ୍ଭରୁ ଦ୍ୱିତୀୟ ଅଧ୍ୟାୟର ଦଶମ ଶ୍ଳୋକ ଶେଷ ପର୍ଯ୍ୟନ୍ତ ଅଂଶ ଉପରେ ଶଙ୍କରାଚାର୍ଯ୍ୟଙ୍କର ଭାଷ୍ୟ ନାହିଁ । ସେ ଅଂଶ ଗ୍ରନ୍ଥର ଅବତରଣିକା ମାତ୍ର ।

ପ୍ରଥମେ ଦେଖାଯାଉ, ଅର୍ଜ୍ଜୁନଙ୍କ ମନର କିପରି ଅବସ୍ଥାରେ ଗୀତାର ଉପଦେଶ ଆରମ୍ଭ କରାଯାଇଅଛି । ଏକ ଆଡ଼େ—କ୍ଷତ୍ରିୟର ସ୍ୱଧର୍ମ ଯୁଦ୍ଧ କରିବା, ଅନ୍ୟ ଆଡ଼େ ଗୁରୁବଧ ଓ ଜ୍ଞାତିବଧ ପ୍ରଭୃତି ଦ୍ୱାରା କୁଳକ୍ଷୟଜନିତ ପାପର ଭୟ—ଏହିପରି ଉଭୟ ସଂଶୟରେ ପଡ଼ି ଯେତେବେଳେ ଅର୍ଜ୍ଜୁନ 'କ୍ଷତ୍ରିୟଧର୍ମ' ଯୁଦ୍ଧ କରିବା ଛାଡ଼ି ବ୍ରାହ୍ମଣର ଧର୍ମ ଭିକ୍ଷାବୃତ୍ତି ଅବଲମ୍ବନ କରିବାକୁ ପ୍ରସ୍ତୁତ, ସେତେବେଳେ ଭଗବାନ୍ ତାଙ୍କୁ ପ୍ରକୃତ କର୍ତ୍ତବ୍ୟର ଉପଦେଶ ଦେବାକୁ ଯାଉଅଛନ୍ତି । ଅର୍ଜ୍ଜୁନଙ୍କ ମନରେ ସଂଶୟ ଥିଲା ଯେ ଯୁଦ୍ଧପରି କଷ୍ଟକର କର୍ମଦ୍ୱାରା କେବେହେଁ ଆତ୍ମାର କଲ୍ୟାଣ ସାଧିତ ହେବ ନାହିଁ, ଏହି ହେତୁରୁ ଯେଉଁ ସବୁ ମହାପୁରୁଷମାନେ ପରବ୍ରହ୍ମଙ୍କ ଜ୍ଞାନଲାଭ କରି ଆତ୍ମାର ପ୍ରକୃତ କଲ୍ୟାଣ ସାଧନ କରି ଯାଇଅଛନ୍ତି ସେହିମାନଙ୍କ ଉଦାହରଣରୁ ପ୍ରଥମେ ଗୀତାର ଉପଦେଶ ଆରମ୍ଭ ହୋଇଅଛି । ଭଗବାନ୍ କହିଅଛନ୍ତି ସଂସାରର ଗୃତିଚଳନ ଦେଖିଲେ ଜଣାଯାଏ ଯେ, ଅନାଦିକାଳରୁ ଆତ୍ମଜ୍ଞ ପୁରୁଷମାନଙ୍କର ଜୀବନ ନିର୍ବାହର ଦୁଇପ୍ରକାର ମାର୍ଗ ଚାଲି ଆସୁଅଛି । ଆତ୍ମଜ୍ଞାନ-ଲାଭପରେ ଶୁକଦେବଙ୍କ ପରି ମହାତ୍ମାମାନେ ସଂସାର ଛାଡ଼ି ଭିକ୍ଷାବୃତ୍ତି ଅବଲମ୍ବନ କରିଅଛନ୍ତି ଏବଂ ଜନକଙ୍କ ପରି ଅନ୍ୟ ଆତ୍ମଜ୍ଞାନୀମାନେ ଜ୍ଞାନଲାଭ ପରେ ମଧ୍ୟ ସ୍ୱଧର୍ମାନୁସାରେ ଲୋକକଲ୍ୟାଣକର ଶତବିଧ କର୍ମ କରି ସମୟ ଅତିବାହିତ କରି ଯାଇଅଛନ୍ତି । ପ୍ରଥମ ମାର୍ଗକୁ ସାଙ୍ଖ୍ୟନିଷ୍ଠା ବା ଜ୍ଞାନମାର୍ଗ କହନ୍ତି ଏବଂ ଦ୍ୱିତୀୟକୁ କର୍ମଯୋଗ ବା ଯୋଗ କହନ୍ତି । ସଂସାରରେ ଏ ଉଭୟ ମାର୍ଗ ପ୍ରଚଳିତ ଥିଲେହେଁ ଏଥି ମଧ୍ୟରେ କର୍ମଯୋଗ ମାର୍ଗ ଯେ ଶ୍ରେଷ୍ଠ ଏହା ପରବର୍ତ୍ତୀ ଅଧ୍ୟାୟମାନଙ୍କରେ ଗୀତାରେ ପ୍ରତିପାଦିତ ହୋଇଅଛି । କିନ୍ତୁ ଏ ଉଭୟ ମଧ୍ୟରୁ ପ୍ରଥମେ ସାଙ୍ଖ୍ୟମାର୍ଗ

ନ ତ୍ୱେବାହଂ ଜାତୁ ନାସଂ ନ ତ୍ୱଂ ନେମେ ଜନାଧିପାଃ ।
ନଚୈବ ନ ଭବିଷ୍ୟାମଃ ସର୍ବେ ବୟମତଃପରମ୍ ।୧୨ ।

ବା ସନ୍ନ୍ୟାସ ଆଡ଼କୁ ଅର୍ଜ୍ଜୁନଙ୍କ ମନ ଆକୃଷ୍ଟ ହୋଇଅଛି, ତେଣୁ ସେହିମାର୍ଗର ତତ୍ତ୍ୱଜ୍ଞାନ ଅନୁସାରେ ଅର୍ଜ୍ଜୁନଙ୍କ ଭ୍ରମ ଭାଙ୍ଗି ବୁଝାଇ ଦେବାକୁ ଏହି ଅଧ୍ୟାୟର ୧୧ଶ ଶ୍ଳୋକରୁ ୩୮ଶ ଶ୍ଳୋକଯାଏ ଭଗବାନ୍ ସାଂଖ୍ୟ (ଜ୍ଞାନ) ମାର୍ଗର ଉପଦେଶ ଦେଇଅଛନ୍ତି । ୩୯ଶ ଶ୍ଳୋକରୁ କର୍ମଯୋଗର ପ୍ରତିପାଦନ କରାଯାଇଅଛି । ସାଂଖ୍ୟମାର୍ଗୀ ପୁରୁଷ ଜ୍ଞାନଲାଭ ପରେ କର୍ମ ନ କଲେ ମଧ୍ୟ ତାଙ୍କ ବ୍ରହ୍ମଜ୍ଞାନ ଓ କର୍ମଯୋଗର ବ୍ରହ୍ମଜ୍ଞାନ ଭିନ୍ନ ଭିନ୍ନ ନୁହେ । ସାଂଖ୍ୟନିଷ୍ଠା ଅନୁସାରେ ଦେଖିଲେ ଆତ୍ମା ଯେବେ ଅବିନାଶୀ ଓ ନିତ୍ୟ, ତେବେ 'ମୁଁ ଅମୁକଙ୍କୁ ମାରିବି' ଏହିଭଳି ଧାରଣା ବୃଥା ।

ଗୁରୁଜନବଧ, ଜ୍ଞାତିହତ୍ୟା ଓ କୁଳଧର୍ମ ନାଶ—ଏହା ଅପେକ୍ଷା ଭିକ୍ଷାବୃତ୍ତି ଭଲ—ଏସବୁ ଅର୍ଜ୍ଜୁନଙ୍କର ପାଣ୍ଡିତ୍ୟପୂର୍ଣ୍ଣ କଥା; ଏହି ସବୁ କଥାକୁ ଲକ୍ଷ୍ୟକରି ଭଗବାନ୍ କହିଅଛନ୍ତି 'ପ୍ରଜ୍ଞାବାଦାଂଶ୍ଚ ଭାଷସେ' ଅର୍ଥାତ୍ ପଣ୍ଡିତଙ୍କ ଭଳି କଥା କହୁଅଛ ।

'ଗତାସୂନଗତାସୂଂଶ୍ଚ ନାନୁଶୋଚନ୍ତି ପଣ୍ଡିତାଃ'—ପ୍ରାଣତ୍ୟାଗ କରିଥିବା ବା ପ୍ରାଣତ୍ୟାଗ କରି ନ ଥିବା ଲୋକମାନଙ୍କ ପାଇଁ ପଣ୍ଡିତମାନେ ଶୋକ କରନ୍ତି ନାହିଁ; କାରଣ ଆତ୍ମା ଅବିନାଶୀ, ଶରୀର ମାତ୍ର ନଷ୍ଟ ହୁଏ—ପଣ୍ଡିତମାନେ ମରିବା ଲୋକ ପ୍ରତି ଶୋକ କରନ୍ତି ନାହିଁ—ଏହା ବୁଝା ଗଲା ମାତ୍ର ଜୀଇ-ରହିଥିବା ଲୋକପ୍ରତି ପଣ୍ଡିତମାନେ କାହିଁକି ଶୋକ କରନ୍ତି ନାହିଁ, ଏ କଥାର ଅର୍ଥ କଅଣ ? ଏ ବିଷୟରେ ବିଭିନ୍ନ ଟୀକାକାର ନାନାମତ ବ୍ୟକ୍ତ କରି-ଅଛନ୍ତି । ଏହାର ପ୍ରକୃତ ଭାବ ଏହି ଯେ—ଜୀବିତ ଲୋକର ମରଣ ଆଶଙ୍କାରେ ପଣ୍ଡିତମାନେ ଶୋକ କରନ୍ତି ନାହିଁ ବା ବନ୍ଧୁର ମୃତ୍ୟୁରେ ଲୋକ କିପରି ଜୀବନ-ଧାରଣ କରି ରହିବ—ଏ କଥାରେ ପଣ୍ଡିତମାନେ ଉଦ୍‌ବିଗ୍ନ ହୁଅନ୍ତି ନାହିଁ । ମୋଟାମୋଟି କହିବାକୁ ହେଲେ କାହାର ଦେହଟା ନଷ୍ଟ ହେଉ ବା ରହୁ ଏ ବିଷୟରେ ପଣ୍ଡିତମାନେ ଆଦୌ ଚିନ୍ତା କରନ୍ତି ନାହିଁ । କାରଣ ପ୍ରକୃତ ପକ୍ଷରେ କେହି ମରେ ନାହିଁ; ଦେହଟା ମାତ୍ର ନଷ୍ଟ ହୁଏ, ଆତ୍ମାର ମୃତ୍ୟୁ ନାହିଁ । ଆତ୍ମା ଅବିନଶ୍ୱର । ପରବର୍ତ୍ତୀ ଶ୍ଳୋକମାନଙ୍କରେ ଏହି କଥା ନାନା ଭାବରେ ସ୍ପଷ୍ଟ କରାଯାଇଅଛି ।

୧୨ । **ଅନ୍ୱୟଦୀପିକା**—ଅହଂ (ଅମ୍ଭେ) ଜାତୁ (କଦାଚିତ୍) ନ ଆସଂ (ନ ଥିଲୁଁ), ତ୍ୱଂ ନ [ଆସୀଃ] (ତୁମେ ନ ଥିଲ), ଇମେ ଜନାଧିପାଃ (ଏହି ରାଜାମାନେ) ନ [ଆସନ୍] ନ ଥିଲେ [ଇତି] ନ ତୁ (ଏହା ନୁହେଁ); ଅତଃପରଂ ଚ (ଏହା ପରେ

ଦେହିନୋଽସ୍ମିନ୍ ଯଥା ଦେହେ କୌମାରଂ ଯୌବନଂ ଜରା ।
ତଥା ଦେହାନ୍ତରପ୍ରାପ୍ତି ର୍ଧୀରସ୍ତତ୍ର ନ ମୁହ୍ୟତି । ୧୩ ।

ମଧ୍ୟ ) ସର୍ବେ ବୟଂ ( ଆମେ ସମସ୍ତେ ) ନ ଭବିଷ୍ୟାମଃ (ନ ଥିବୁଁ) [ଇତି] ନ ଏବ (ତାହା ବି ନୁହେ) ।

**ଅନୁବାଦ**—ଆମ୍ଭେ ପୂର୍ବେ କେବେ ହେଲେ ନ ଥିଲୁଁ ବା ତୁମେ ନ ଥିଲ ବା ଏହି ରାଜାମାନେ ନ ଥିଲେ ଏପରି ନୁହେ (ଅର୍ଥାତ୍ ଆମେ ସମସ୍ତେ ଥିଲୁ ), ଏବଂ ପରେ ଆମେ ସମସ୍ତେ ନ ଥିବୁଁ ତାହା ମଧ୍ୟ ନୁହେ ଅର୍ଥାତ୍ ପରେ ମଧ୍ୟ ଆମେ ସମସ୍ତେ ରହିବୁଁ ।

**ସୁବୋଧିନୀ ଟୀକା**—ଅଶୋଚ୍ୟତ୍ୱେ ହେତୁମାହ—ନ ତ୍ୱେବାହମିତି । ଯଥାହଂ ପରମେଶ୍ୱରୋ ଜାତୁ କଦାଚିଲ୍ଲୀଳାବିଗ୍ରହସ୍ୟାବିର୍ଭାବତିରୋଭାବତୋ ନାସମିତି ତୁ ନୈବ । ଅପିତ୍ୱାସମେବ । ଅନାଦିତ୍ୱାତ୍ । ନ ଚ ତ୍ୱଂ ନାସୀର୍ନାଭୂଃ । ଅପି ତ୍ୱାସୀରେବ । ଇମେ ବା ଜନାଧିପା ନୃପା ନାସନ୍ନିତି ନ । ଅପି ତ୍ୱାସନ୍ନେବ ମଦଂଶ ତ୍ୱାତ୍ । ତଥାଽତଃପରମିତ ଊର୍ଦ୍ଧ୍ୱମପି ନ ଭବିଷ୍ୟାମୋ ନ ସ୍ଥାସ୍ୟାମ ଇତି ଚ ନୈବ । ଅପିତ୍ୱେବ ସ୍ଥାସ୍ୟାମ ଏବେତି । ଜନ୍ମମରଣଶୂନ୍ୟତ୍ୱାଦଶୋଚ୍ୟା ଇତ୍ୟର୍ଥଃ ।

**ବିବୃତି**—ଏକାଦଶ ଶ୍ଳୋକରେ କୁହାଯାଇଅଛି ଯେ ତତ୍ତ୍ୱଜ୍ଞାନୀମାନେ କାହାର ପାଇଁ ବି ଶୋକ କରନ୍ତି ନାହିଁ । ତାହାର କାରଣ ଏ ଶ୍ଳୋକରେ କୁହାଯାଉ ଅଛି । କେହି ମରନ୍ତି ନାହିଁ, ସମସ୍ତଙ୍କର ଅବଦ୍ଧ୍ୟ ଦେହଟି ମାତ୍ର ନଷ୍ଟ ହୁଏ । ଶରୀର ମଧ୍ୟରେ ଯେଉଁ ଅତ୍ମାପୁରୁଷ ବିଦ୍ୟମାନ ଅଛନ୍ତି ସେ ଅବିନାଶୀ, ତାହାଙ୍କର ନାଶ ନାହିଁ । ସେ ପୂର୍ବେ ଥିଲେ, ବର୍ତ୍ତମାନ ଅଛନ୍ତି ଓ ପରେ ରହିବେ । ଆମ୍ଭେ ବର୍ତ୍ତମାନ 'ବାସୁଦେବ' ରୂପେ ବିଦ୍ୟମାନ, ତୁମେ ମଧ୍ୟମପାଣ୍ଡବରୂପେ ଜନ୍ମଗ୍ରହଣ କରିଅଛ। ପୂର୍ବେ ଆମ୍ଭେମାନେ ଅନ୍ୟ ରୂପେ ଥିଲୁଁ, ପରେ ମଧ୍ୟ ଅନ୍ୟ ରୂପରେ ରହିବୁଁ । ସମସ୍ତେ ଏହିପରି । ମୃତ୍ୟୁ ଅର୍ଥ ଦେହର ବିନାଶ। ଆତ୍ମାର ଜନ୍ମ ନାହିଁ କି ମୃତ୍ୟୁ ନାହିଁ । ଆତ୍ମାପକ୍ଷରେ ଜନ୍ମର ଅର୍ଥ ଅନ୍ୟ ଦେହଗ୍ରହଣ, ମୃତ୍ୟୁ ଅର୍ଥ ଦେହାନ୍ତର ପ୍ରାପ୍ତି । ଏହି ଅବିନାଶୀ ଆତ୍ମା ପରମାତ୍ମାଙ୍କର ଅଂଶ ।

**୧୩ । ଅନ୍ୱୟଦୀପିକା**—ଯଥା ଦେହିନଃ ( ଯେପରି ଦେହୀର ) ଅସ୍ମିନ୍ ଦେହେ (ଏହି ଦେହରେ) କୌମାରଂ ଯୌବନଂ ଜରା (କୁମାର ଅବସ୍ଥା, ଯୁବାଅବସ୍ଥା ଓ ବୃଦ୍ଧାବସ୍ଥା) [ହୋଇଥାଏ] ତଥା (ସେହିପରି) ଦେହାନ୍ତରପ୍ରାପ୍ତିଃ (ଏକ ଦେହନାଶ ପରେ ଅନ୍ୟ ଦେହ ଲାଭ) [ହୁଏ]; ତତ୍ର (ସେ ବିଷୟରେ) ଧୀରଃ (ଜ୍ଞାନୀଲୋକ) ନ ମୁହ୍ୟତି (ମୁଗ୍ଧ ହୁଅନ୍ତି ନାହିଁ) ।

**ଅନୁବାଦ**—ଯେପରି ଦେହଧାରୀ ( ଆତ୍ମା ) ଏହି ଦେହରେହିଁ କୌମାର, ଯୌବନ ଓ ଜରା ଏହି ଅବସ୍ଥାତ୍ରୟ ( କାଳ ଗତିରେ ) ପ୍ରାପ୍ତ ହୋଇଥାଏ, ସେହିପରି (କାଳ ଗତିରେ) ତାହାର ଅନ୍ୟ ଦେହପ୍ରାପ୍ତି ମଧ୍ୟ ହୁଏ । ଧୀରଲୋକ ତହିଁରେ ମୋହପ୍ରାପ୍ତ ହୁଏ ନାହିଁ ।

**ସୁବୋଧିନୀ ଟୀକା**—ନନ୍ୱୀଶ୍ୱରସ୍ୟ ତବ ଜନ୍ମାଦ୍ୟଭାବେଽପି ସତ୍ୟମେବ । ଜୀବାନାଂ ତୁ ଜନ୍ମମରଣେ ପ୍ରସିଦ୍ଧେ । ତତ୍ରାହ—ଦେହିନ ଇତ୍ୟାଦି । ଦେହିନୋ ଦେହାଭିମାନିନୋ ଜୀବସ୍ୟ ଯଥାସ୍ମିନ୍ ସ୍ଥୂଳଦେହେ କୌମାରାଦ୍ୟବସ୍ଥା ସ୍ତଦ୍ଦେହ-ନିବନ୍ଧନା ଏବ । ନ ତୁ ସ୍ୱତଃ । ପୂର୍ବାବସ୍ଥାନାଶେଽବସ୍ଥାନ୍ତରୋତ୍ପତ୍ତାବପି ସ ଏବାହମିତି ପ୍ରତ୍ୟଭିଜ୍ଞାନାତ୍ । ତଥୈବୈତଦ୍ଦେହନାଶେ ଦେହାନ୍ତରପ୍ରାପ୍ତିରପି ଲିଙ୍ଗଦେହନିବନ୍ଧନୈବ । ନ ତାବଦାତ୍ମନୋ ନାଶଃ । ଜାତମାତ୍ରସ୍ୟ ପୂର୍ବ-ସଂସ୍କାରେଣ ସ୍ତନ୍ୟପାନାଦୌ ପ୍ରବୃତ୍ତିଦର୍ଶନାତ୍ । ଅତୋ ଧୀରୋ ଧୀମାଂସ୍ତତ୍ର ତଯୋର୍ଦେହନାଶୋତ୍ପତ୍ତ୍ୟୋ ର୍ନ ମୁହ୍ୟତି । ଆତ୍ମୈବ ମୃତୋ ଜାତଶ୍ଚେତି ନ ମନ୍ୟତେ ।

**ବିବୃତି—ଆତ୍ମାର ଅବିନାଶିତା ଓ ଜନ୍ମାନ୍ତର ବାଦ**—ଦେହ ଅଛି ଯାହାଙ୍କର ସେ 'ଦେହୀ' । ଦେହୀ ଶବ୍ଦର ଅର୍ଥ ଆତ୍ମା । 'ମୁଁ' ବା 'ଅମେ' ଶବ୍ଦ ଦ୍ୱାରା କେବଳ ଶରୀର ବୁଝାଯାଏ ନାହିଁ । ଦେହ ଓ ଆତ୍ମାର ସମୁଚ୍ଚୟ ବା ମିଳନ ବୁଝାଏ । ଏହି ଅହଂକାରରୂପରେ ବ୍ୟକ୍ତ ଆତ୍ମା ନିତ୍ୟ ଓ ଅମର । ଏହା କାଲି ଥିଲା, ଆଜି ଅଛି, ପରେ ମଧ୍ୟ ରହିବ । ସେହି ହେତୁରୁ 'ମରିବା' ବା 'ମାରିବା' ଶବ୍ଦ ଆତ୍ମା ପ୍ରତି ପ୍ରଯୁକ୍ତ ହେବା ଠିକ୍ ନୁହେଁ ଏବଂ ତାହା ପାଇଁ ଶୋକ କରିବା ଉଚିତ ନୁହେଁ । ଅମେ ଦେଖୁଥାଉଁ ଦେହ ଧ୍ୱଂସଶୀଳ ଓ ଅନିତ୍ୟ । ଦିନେ ତାହାର ଧ୍ୱଂସ ହେବହିଁ ହେବ । "ଅଦ୍ୟବାବ୍ଦ ଶତାନ୍ତେ ବା ମୃତ୍ୟୁର୍ବୈ ପ୍ରାଣିନାଂ ଧ୍ରୁବଃ" (ଭାଗବତ ୧୦ମ।୧-୩୮) । ଆତ୍ମା ଏକ ଦେହ ଛାଡ଼ିଲେ ନିଶ୍ଚୟ ଅନ୍ୟ ଦେହ ଆଶ୍ରୟ କରିବେ । ଏପରି ଅବସ୍ଥାରେ ଦେହ ବା ଆତ୍ମା କାହାର ପାଇଁ ଶୋକ କରିବା ଅନୁଚିତ ।

ଭାରତୀୟ ଧର୍ମ ଆର୍ଯ୍ୟଧର୍ମ, ସନାତନଧର୍ମ ବା ବୈଦିକଧର୍ମ ନାମରେ ପରିଚିତ । ପାଶ୍ଚାତ୍ୟ ଦେଶମାନଙ୍କ ସଂସ୍ରବରେ ଆସିବା ପରେ ଆମ୍ଭମାନଙ୍କ ଧର୍ମ 'ହିନ୍ଦୁଧର୍ମ' ନାମରେ ଅଭିହିତ ହେଉଅଛି । ବେଦ ସନାତନଧର୍ମର ଆଦିଗ୍ରନ୍ଥ । ପୃଥିବୀର ଅନ୍ୟାନ୍ୟ ଦେଶ ଯେତେବେଳେ ଅଜ୍ଞାନଅନ୍ଧକାରରେ ଆଚ୍ଛନ୍ନ ଥିଲା, ସେତେ-ବେଳେ ଭାରତୀୟ ଆର୍ଯ୍ୟଋଷିମାନେ ଧର୍ମର ଯେଉଁ ସୂକ୍ଷ୍ମତତ୍ତ୍ୱମାନ ଉଦ୍ଭାବନ କରିଥିଲେ ସେହି ସମସ୍ତହିଁ 'ବେଦ' । ଏ ଯୁଗରେ ଯେତେ ପ୍ରାଚୀନ ଗ୍ରନ୍ଥ ଆବିଷ୍କୃତ ହୋଇଅଛି 'ବେଦ' ହିଁ ସେମାନଙ୍କ ମଧ୍ୟରେ ପ୍ରାଚୀନତମ । ତେଣୁ ଏହି ବେଦଭିତ୍ତିକ ଧର୍ମ ବିଶ୍ୱାସକୁ ପୃଥିବୀର ଆଦିମ ଧର୍ମ ବିଶ୍ୱାସ ବୋଲି ସ୍ୱୀକାର କରାଯାଏ । ଆତ୍ମାର

ଅବିନାଶିତା ଓ ପୁନର୍ଜନ୍ମ ବେଦକଧର୍ମର ଦୁଇଟି ବଶିଷ୍ଟ ବିଶ୍ୱାସ । ଆଦମକାଳରୁ ଭାରତରେ ଏହି ବିଶ୍ୱାସ ଚଳି ଆସୁଅଛି ଏବଂ ଏହି ତତ୍ତ୍ୱ ଉପରେ ଅନେକ ଦର୍ଶନ-ଶାସ୍ତ୍ର ରଚିତ ହୋଇଅଛି । ଧର୍ମ ସମ୍ବନ୍ଧରେ ଏ ଦେଶରେ ଯେଉଁ ବିଭିନ୍ନ ମତ ପ୍ରଚଳିତ ଅଛି, ଏହି ମୌଳିକ ବିଶ୍ୱାସ ଉପରେ ସେ ସବୁ ମଧ୍ୟ ପ୍ରତିଷ୍ଠିତ । କେବଳ ହିନ୍ଦୁଧର୍ମରେ ଯେ ଏ ବିଶ୍ୱାସ ଅଛି ତାହା ନୁହେ, ପରବର୍ତ୍ତୀ ଖ୍ରୀଷ୍ଟଧର୍ମ ଓ ଇସଲାମ ଧର୍ମରେ ମଧ୍ୟ ଆତ୍ମାର ଅସ୍ତିତ୍ୱ ଓ ଅବିନାଶିତା ସ୍ୱୀକୃତ ହୋଇଅଛି । ଅନାତ୍ମବାଦୀ ବୌଦ୍ଧଧର୍ମ ମଧ୍ୟ ଏହି ଜନ୍ମାନ୍ତରବାଦକୁ ମୂଳତତ୍ତ୍ୱ ରୂପେ ଗ୍ରହଣ କରିଅଛି । ମାତ୍ର ଖ୍ରୀଷ୍ଟଧର୍ମ ଓ ମୁସଲମାନଧର୍ମ ଆତ୍ମାର ଅବିନାଶିତା ସ୍ୱୀକାର କଲେ ମଧ୍ୟ ଜନ୍ମାନ୍ତର ସ୍ୱୀକାର କରନ୍ତି ନାହିଁ ।

ପାଶ୍ଚାତ୍ୟ ଦେଶମାନଙ୍କରେ ଅଧିଭୌତିକବାଦ ଏ ଯୁଗରେ ପୃଥିବୀରେ ଘୋର ବିପ୍ଲବ ସୃଷ୍ଟି କରିଅଛି । ଆଧିଦୈବିକବାଦ ଓ ଆଧ୍ୟାତ୍ମିକବାଦରେ ପାଶ୍ଚାତ୍ୟ ଦେଶର ବହୁ ମନୀଷୀ ଏପର୍ଯ୍ୟନ୍ତ ବିଶ୍ୱାସ ସ୍ଥାପନ କରିନାହାନ୍ତି । ଏହି ଅଧିଭୌତିକତା ବିଜ୍ଞାନ ନାମରେ ପରିଚିତ । ପ୍ରତ୍ୟକ୍ଷ ପ୍ରମାଣ ଛଡ଼ା ବୈଜ୍ଞାନିକମାନେ ଅନ୍ୟ ପ୍ରମାଣରେ ଆସ୍ଥାହୀନ । ଆତ୍ମାର ଅସ୍ତିତ୍ୱ ସମ୍ବନ୍ଧରେ ପ୍ରତ୍ୟକ୍ଷ ପ୍ରମାଣ ନ ଥିବାରୁ ସେମାନେ ତାହାର ଅସ୍ତିତ୍ୱରେ ବିଶ୍ୱାସ କରନ୍ତି ନାହିଁ । ଏପରି ଅବସ୍ଥାରେ ଆମ୍ଭେମାନେ କାହିଁ ଆତ୍ମତତ୍ତ୍ୱ ଜାଣିବା ପାଇଁ ଯେଉଁ ଜ୍ଞାନ ବା ବୁଦ୍ଧି ଆବଶ୍ୟକ ବୈଜ୍ଞାନିକମାନେ ଏପର୍ଯ୍ୟନ୍ତ ତାହା ପାଇ ପାରିନାହାନ୍ତି ।

'ମୁଁ' ବା 'ତୁମେ' ବା 'ସେ' କହିଲେ ଯାହା ବୁଝାଯାଏ ତାହାହିଁ ଆତ୍ମା । 'ମୁଁ ଦୁଃଖୀ', 'ତୁମେ ସୁଖୀ'—ଏହା କହିବା ଦ୍ୱାରା କେବଳ ଦେହଭିନ୍ନ ଅନ୍ୟ କିଛି ବୁଝା ଯିବାପରି ସ୍ଥୂଳଦୃଷ୍ଟିରେ ଜଣାଯାଏ ନାହିଁ । କେହି ମରିଗଲେ ତାହାର ଦେହ ପଡ଼ି ରହିଥାଏ, ସେତେବେଳେ ସୁଖ ଦୁଃଖ ଭୋଗର କୌଣସି ଲକ୍ଷଣ ଦେଖାଯାଏ ନାହିଁ । କେହି ମୋତେ ଅପମାନ ଦେଲା ବା ମୁଁ କୌଣସି ପାପକାର୍ଯ୍ୟ କରି ଘୋର ଅନୁତାପ ଭୋଗକଲି—ଏପରି ସ୍ଥଳରେ ଶରୀରରେ କୌଣସି ବିକାର ଦେଖାଯାଏ ନାହିଁ କିମ୍ବା ଦେହ ଦୁଃଖ ଭୋଗ କରେ ନାହିଁ; ଯେ କରେ ସେ ସ୍ୱତନ୍ତ୍ର, ତେଣୁ ବୁଝାଯାଏ ଯେ ଆମର କେତେକ ଅଂଶ ଇନ୍ଦ୍ରିୟଗୋଚର ଓ କେତେକ ଅଂଶ ଅନୁମେୟ—ଇନ୍ଦ୍ରିୟଗୋଚର ନୁହେ ଏବଂ ସେ ଅଂଶ ସୁଖ ଦୁଃଖାଦି ଭୋଗକରେ । ଯେ ସୁଖ ଦୁଃଖ ପ୍ରଭୃତି ଭୋଗକରେ ତାହାକୁ 'ଆତ୍ମା' ବୋଲଯାଏ । ଏହା 'ପ୍ରକୃତିସ୍ଥ ଆତ୍ମା' ।

ସ୍ଥୂଳ ଦୃଷ୍ଟିରେ ଦେଖା ନ ଗଲେ ମଧ୍ୟ ସବୁ ଧର୍ମାବଲମ୍ବୀ ବିଶ୍ୱାସ କରନ୍ତି ଯେ, ଏକ ଅନାଦି ଅବିନଶ୍ୱର ଚିତ୍‌ଶକ୍ତି ବିଶ୍ୱବ୍ରହ୍ମାଣ୍ଡରେ ବ୍ୟାପ୍ତ ହୋଇ ରହିଅଛନ୍ତି । ଏହା 'ପରମାତ୍ମା' ବା 'ପରବ୍ରହ୍ମ' ନାମରେ ଅଭିହିତ ହୁଅନ୍ତି । ସମସ୍ତଙ୍କଠାରେ ଆତ୍ମା ଅଛନ୍ତି । ତୁମେ ମୋଠାରୁ ଭିନ୍ନ, ସୁତରାଂ ତୁମ ଆତ୍ମା ମୋ ଆତ୍ମାଠାରୁ ଭିନ୍ନ; କିନ୍ତୁ ସୂକ୍ଷ୍ମଭାବରେ ଆଲୋଚନା କରି ଦେଖିଲେ ଜଣାଯିବ ଯେ ଏହି ଭିନ୍ନତା

ପ୍ରକୃତ ନୁହେ । ଗୋଟିଏ ଉଦାହରଣ ଗ୍ରହଣ କରାଯାଉ:— ଏକ ସ୍ଥାନରେ ଦଶଗୋଟି ଶୂନ୍ୟ କଳସ ବା ଘଟ ରଖାଯାଇଛି, ସବୁ କଳସ ମଧ୍ୟରେ ଆକାଶ ଅଛି । ଏକ କଳସ ମଧ୍ୟରେ ଥିବା ଆକାଶ ଅନ୍ୟ କଳସ ମଧ୍ୟସ୍ଥ ଆକାଶଠାରୁ ବିଭିନ୍ନ ହେଲେହେଁ ସେହିସବୁ କଳସ ମଧ୍ୟସ୍ଥ ଆକାଶ ଜାଗତିକ ଆକାଶର ଯେ ଅଂଶ, ଏଥିରେ କୌଣସି ସନ୍ଦେହ ନାହିଁ । କଳସଗୁଡ଼ିକ ଭାଙ୍ଗିଗଲେ ସେ ସବୁ କଳସମଧ୍ୟସ୍ଥ ଆକାଶ ଜାଗତିକ ଅନନ୍ତ ଆକାଶରେ ମିଶିଯାଏ । ଏହିମତି ବିଭିନ୍ନ ଜୀବ ଦେହରେ ଅବସ୍ଥିତ ଆତ୍ମା ପରସ୍ପର ପୃଥକ୍ ହେଲେ ମଧ୍ୟ ପ୍ରତ୍ୟେକେ ବିଶ୍ୱବ୍ରହ୍ମାଣ୍ଡବ୍ୟାପୀ ସେହି ପରମାତ୍ମାଙ୍କ ଅଂଶ । ଦେହବନ୍ଧନରୁ ମୁକ୍ତ ହେଲେ ତାହା ପରମାତ୍ମାଙ୍କ ସଙ୍ଗରେ ମିଶିଯାଏ । ଯେତେଦିନ ଯାଏ ଦେହଗତ-ଆତ୍ମା ପରମାତ୍ମାଙ୍କ ଦେହରେ ବିଲୀନ ନ ହୁଅନ୍ତି ସେତେଦିନ ଯାଏ ତାହାଙ୍କୁ ଜୀବାତ୍ମା ବା ଖାଲି ଆତ୍ମା ବୋଲି କୁହାଯାଏ । ପ୍ରାଚୀନ ଆର୍ଯ୍ୟ ଋଷିଙ୍କ ଉଦ୍ଭାବିତ ଏହି ସତ୍ୟ ଜଗତରେ ଗୋଟିଏ ଅଭିନବତତ୍ତ୍ୱ । ଏହି ସତ୍ୟକୁ ବିଚାର କଲେ ଜଣାଯାଏ ଯେ ଜୀବାତ୍ମା ନଶ୍ୱର ନୁହନ୍ତି । ଯାହା ଅବିନଶ୍ୱର ପରମାତ୍ମାଙ୍କ ଅଂଶ ତାହା କେବେହେଲେ ନଶ୍ୱର ହୋଇ ନ ପାରନ୍ତି ।

ଆତ୍ମା ବା ଜୀବାତ୍ମା ଅବିନଶ୍ୱର ଏହା ପ୍ରମାଣିତ ହେଲା; ବର୍ତ୍ତମାନ ଦେଖିବା ମୃତ୍ୟୁ ପରେ ଏହାର ଗତି କିପରି ହୁଏ । ଯେଉଁମାନେ ଜୀବାତ୍ମାରେ ବିଶ୍ୱାସ କରନ୍ତି ନାହିଁ, ସେମାନଙ୍କୁ ଏ ସମ୍ବନ୍ଧରେ କୌଣସି କଥା କହିବା ଅନାବଶ୍ୟକ । ଖ୍ରୀଷ୍ଟିଆନ ଓ ମୁସଲମାନମାନେ ଆତ୍ମାର ଅବିନାଶିତା ସ୍ୱୀକାର କରନ୍ତି, ମାତ୍ର ମୃତ୍ୟୁ ପରେ ଆତ୍ମାର ଗତି ସମ୍ବନ୍ଧରେ ସେମାନଙ୍କର ବିଶ୍ୱାସ ହିନ୍ଦୁ ଧର୍ମାବଲମ୍ବୀଙ୍କ ବିଶ୍ୱାସଠାରୁ ପୃଥକ୍ । ସେମାନେ କହନ୍ତି ମୃତ୍ୟୁ ପରେ ଜୀବାତ୍ମା ଈଶ୍ୱରଙ୍କ ବିଚାରରେ ଅନନ୍ତ ସ୍ୱର୍ଗ ବା ଅନନ୍ତନର୍କରେ ରହନ୍ତି । କିନ୍ତୁ ଏହିଭଳି ବିଚାରରେ ଈଶ୍ୱରଙ୍କୁ ନ୍ୟାୟପରାୟଣ ଓ ନିରପେକ୍ଷ ବୋଲି କୁହାଯାଇପାରେ ନାହିଁ । କାରଣ ଯେଉଁମାନେ ଏ ସଂସାରରେ କୌଣସି କର୍ମ କରିବା ପୂର୍ବେ ଶୈଶବରେ ମରି ଯାଆନ୍ତି, ସେମାନେ ଅନନ୍ତ ସ୍ୱର୍ଗ ବା ଅନନ୍ତ ନରକ କାହିଁକି ଆକ୍ଷେପରେ ଭୋଗ କରନ୍ତି ? ଅଧିକ ମଧ୍ୟ କୌଣସି ମନୁଷ୍ୟ ଆଜୀବନ କେବଳ ପାପ ବା କେବଳ ପୁଣ୍ୟକର୍ମ କରେ ନାହିଁ; ଏପରି ଅବସ୍ଥାରେ ଅନନ୍ତ ସ୍ୱର୍ଗ ବା ଅନନ୍ତ ନରକ ଭୋଗକରିବାର ଆଦେଶ ନ୍ୟାୟାନୁମୋଦିତ ନୁହେ । ସେ ସମ୍ବନ୍ଧରେ ବିଶେଷ ଆଲୋଚନା କରିବା ଏଠାରେ ଅନାବଶ୍ୟକ । ଆମ ହିନ୍ଦୁଧର୍ମରେ ଏ ସମ୍ବନ୍ଧରେ ଯେଉଁ ବିଚାର ଅଛି ତାହା ସଂକ୍ଷେପରେ ଏଠାରେ ଉଲ୍ଲେଖ କରାଯାଉଅଛି ।

(୧) ଜାତ ହେବା ମାତ୍ରକେ ସ୍ତନ୍ୟପାୟୀ ଜୀବର ମାତୃସ୍ତନ୍ୟ ପାନରେ ପ୍ରବୃତ୍ତି ଦେଖାଯାଏ । ପୂର୍ବ ଜନ୍ମ ସଂସ୍କାର ନ ଥିଲେ ଏହିଭଳି ପ୍ରବୃତ୍ତି ଜାତ ହେବା ସ୍ୱାଭାବିକ ନୁହେ ।

ମାତ୍ରାସ୍ପର୍ଶାସ୍ତୁ କୌନ୍ତେୟ ଶୀତୋଷ୍ଣସୁଖଦୁଃଖଦାଃ,
ଆଗମାପାୟିନୋଽନିତ୍ୟାସ୍ତାଂସ୍ତିତିକ୍ଷସ୍ୱ ଭାରତ । ୧୪ ।

(୨) କେହି ଜନ୍ମରୁ ସୁସ୍ଥ, ସବଳ ଏବଂ ସର୍ବବିଧ ଐହିକ ସୁଖ ସୌଭାଗ୍ୟର ଅଧିକାରୀ ହୋଇଥାଏ । ଅନ୍ୟ କେହି ଜନ୍ମାନ୍ଧ, ଚିରରୁଗ୍ଣ, ଦରିଦ୍ର ବା ସେହିପରି ଅନ୍ୟ କୌଣସି ଦୁଃଖରେ ସମଗ୍ର ଜୀବନ ଅତିବାହିତ କରେ । ଏହିଭଳି ପାର୍ଥକ୍ୟ ଦେଖିଲେ ଜନ୍ମାନ୍ତରୀଣକର୍ମ ବା ଅଦୃଷ୍ଟ ଛଡ଼ା ଏହାର ଅନ୍ୟ କୌଣସି କାରଣ ମନୁଷ୍ୟ ବୁଦ୍ଧିରେ ଦେଖାଯାଏ ନାହିଁ । ଏକ ପିତା ଓ ମାତାଙ୍କଠାରୁ ଜାତ ଯମଜ ସନ୍ତାନମାନଙ୍କ ମଧ୍ୟରେ ମଧ୍ୟ ବୁଦ୍ଧି, ସ୍ୱାସ୍ଥ୍ୟ ଏବଂ ଐହିକ ସୁଖ ସୌଭାଗ୍ୟର ବୈଷମ୍ୟ ଦେଖିଲେ ଜନ୍ମାନ୍ତର ବିଶ୍ୱାସ ହୃଦୟରେ ଦୃଢ଼ ହୁଏ ।

(୩) ଯେଉଁ ଆର୍ଯ୍ୟ ଋଷିମାନେ ସମଗ୍ରଜୀବନ ଈଶ୍ୱରଚିନ୍ତାରେ ଅତିବାହିତ କରିଅଛନ୍ତି ସେମାନେ ଦିବ୍ୟ ଦୃଷ୍ଟିବଳରେ ଜୀବାତ୍ମାର ଅନ୍ୟ ଶରୀର ଗ୍ରହଣ ଜାଣିପାରି ସେମାନଙ୍କ ପ୍ରଣୀତ ଧର୍ମଗ୍ରନ୍ଥ—ଉପନିଷଦ୍‌, ଦର୍ଶନ, ପୁରାଣ ପ୍ରଭୃତିରେ ତାହାର ବର୍ଣ୍ଣନା ଦେଇଅଛନ୍ତି । ଏସବୁ ‘ଆପ୍ତପ୍ରମାଣ’ ରୂପରେ ଗୃହୀତ ହୁଏ ।

ତେଣୁ ଜନ୍ମାନ୍ତରବାଦ ଶାସ୍ତ୍ରସିଦ୍ଧ ଓ ସୂକ୍ଷ୍ମ ବିଚାର ଦ୍ୱାରା ଯୁକ୍ତିଯୁକ୍ତ ବୋଲି ପ୍ରମାଣିତ । ଆମ୍ଭେମାନେ ବିଶ୍ୱାସ କରୁଁ ମୃତ୍ୟୁ ପରେ (୧) ଜୀବାତ୍ମା କୃତକର୍ମର ଫଳଭୋଗ ପାଇଁ ସୂକ୍ଷ୍ମଶରୀର ଧରି ସ୍ୱର୍ଗ ବା ନରକ ଭୋଗକରେ, ଅଥବା (୨) ଅନ୍ୟ ସ୍ଥୂଳ ଶରୀର ଧାରଣ କରେ ବା (୩) ପରମାତ୍ମାଙ୍କଠାରେ ଲୀନ ହୁଏ ବା ମୁକ୍ତି ପ୍ରାପ୍ତ ହୁଏ ।

ଜୀବାତ୍ମା ଚିରଦିନ ନିମିତ୍ତ ସ୍ୱର୍ଗ ବା ନରକ ଭୋଗକରେ ନାହିଁ । ପୁଣ୍ୟ ଓ ପାପର ପରିମାଣ ଅନୁସାରେ ଏହି ଭୋଗର କାଳ ନିରୂପିତ ହୁଏ । ଯାହାଙ୍କଠାରୁ ଜୀବର ଉତ୍ପତ୍ତି ସେହି ପରମାତ୍ମାଙ୍କ ଠାରେ ଲୀନ ହେବା ଜୀବାତ୍ମାର ଚରମ ଲକ୍ଷ୍ୟ । ଯେ ପର୍ଯ୍ୟନ୍ତ ଜୀବାତ୍ମା ସେ ଅବସ୍ଥାର ଉପଯୋଗୀ ହୋଇ ନ ଥାଏ, ସେପର୍ଯ୍ୟନ୍ତ ସେ କୃତକର୍ମର ଫଳଭୋଗ ପାଇଁ ଭିନ୍ନ ଭିନ୍ନ ଶରୀର ଧାରଣ କରୁଥାଏ । ଜୀବର ଏହି ଜନ୍ମ ମୃତ୍ୟୁ ଚକ୍ର ପରିଭ୍ରମଣର ନାମ ହିଁ ସଂସାର । ଯେଉଁଠାରେ ଜୀବାତ୍ମା ପୁନଃ ପୁନଃ ଗତିକରେ ତାହାର ନାମ ‘ସଂସାର’ ( ସମ୍‌+ସୃ ଧାତୁ [ଗତି କରିବା] ଘଞ୍‌ ବା ଅ ପ୍ରତ୍ୟୟ; ଅଧିକରଣ ବାଚ୍ୟରେ ) । ପୁଣ୍ୟ ବା ପାପର ଫଳଭୋଗ ଶେଷରେ ସେ ପୁଣି ସ୍ଥୂଳଶରୀର ଧାରଣ କରେ; ମୋକ୍ଷ ପ୍ରାପ୍ତି ନ ହେବାଯାଏ ଜୀବାତ୍ମାର ଦେହଧାରଣ ପର୍ଯ୍ୟାୟର ନିବୃତ୍ତି ହୁଏ ନାହିଁ ।

**୧୪। ଅନ୍ୱୟ ଦୀପିକା**—କୌନ୍ତେୟ (ହେ ଅର୍ଜୁନ) ମାତ୍ରାସ୍ପର୍ଶାଃ (ଇନ୍ଦ୍ରିୟ ସଙ୍ଗେ ବିଷୟର ସଂସର୍ଗ ) ତୁ ଶୀତୋଷ୍ଣସୁଖଦୁଃଖଦାଃ (ଶୀତ ଉଷ୍ଣାଦି ସୁଖ

ବା ଦୁଃଖଦାୟୀ), ଅଗମାପାୟିନଃ (ଉତ୍ପତ୍ତିବିନାଶଶୀଳ) ଅନିତ୍ୟାଃ (ଏବଂ ଅସ୍ଥାୟୀ); [ଅତଏବ] ଭାରତ (ହେ ଭାରତ) ତାନ୍ (ସେ ସବୁକୁ) ତିତିକ୍ଷସ୍ୱ (ସହ୍ୟକର)।

**ଅନୁବାଦ**—ହେ ଅର୍ଜୁନ, ଇନ୍ଦ୍ରିୟବୃତ୍ତି ସମୂହର ବିଷୟ ସଙ୍ଗେ ସଂସର୍ଗ ହିଁ ଶୀତ ଉଷ୍ଣ ସୁଖ ଦୁଃଖାଦି ପ୍ରଦାନ କରେ; ସେ ସବୁର ଉତ୍ପତ୍ତି ହୁଏ ଏବଂ ବିନାଶ ହୁଏ, ତେଣୁ ସେ ସବୁ ଅନିତ୍ୟ ଅର୍ଥାତ୍ ବିନଶ୍ୱର। ହେ ଭାରତ, ସେସବୁ ସହ୍ୟକର।

**ସୁବୋଧିନୀ ଟୀକା**—ନନୁ ତାନଦ୍ୱଂ ନ ଶୋଚ୍ୟମ୍। କିନ୍ତୁ ତଦ୍ ବିୟୋଗାଦି ଦୁଃଖ ଭିନ୍ନଂ ମାମେବେତି ଚେତ୍? ତତ୍ରାହ—ମାତ୍ରାସ୍ପର୍ଶା ଇତି। ମୀୟନ୍ତେ ଜ୍ଞାୟନ୍ତେ ବିଷୟା ଆଭିରିତି ମାତ୍ରା ଇନ୍ଦ୍ରିୟବୃତ୍ତୟଃ ତାସାଂ ସ୍ପର୍ଶାଃ ବିଷୟୈଃ ସମ୍ବନ୍ଧାଃ। ତେ ଶୀତୋଷ୍ଣାଦିପ୍ରଦା ଭବନ୍ତି। ତେ ଆଗମାପାୟିତ୍ୱାଦ-ନିତ୍ୟା ଅସ୍ଥିରାଃ। ଅତସ୍ତାଂ ତିତିକ୍ଷସ୍ୱ ସହସ୍ୱ। ଯଥା ଜଳାତପାଦିସଂସର୍ଗାସ୍ତତ୍ତତ୍ କାଳକୃତାଃ ସ୍ୱଭାବତଃ ଶୀତୋଷ୍ଣାଦି ପ୍ରଯଚ୍ଛନ୍ତି। ଏବମିଷ୍ଟ ସଂଯୋଗ ବିୟୋଗା ଅପି ସୁଖଦୁଃଖାଦି ପ୍ରଯଚ୍ଛନ୍ତି। ତେଷାଂ ଚାସ୍ଥିରତ୍ୱାତ୍ ସହନଂ ତବ ଧୀରସ୍ୟୋଚିତଂ ନ ତୁ ତନ୍ନିମିତ୍ତ ହର୍ଷ ବିଷାଦ ପାରବଶ୍ୟମିତ୍ୟର୍ଥଃ।

• **ବିବୃତି**—ପୂର୍ବଶ୍ଳୋକରେ ଭଗବାନ୍ କହିଅଛନ୍ତି ଆତ୍ମା ଅବିନଶ୍ୱର, ତେଣୁ ତାହାର ମୃତ୍ୟୁରେ ବା ମୃତ୍ୟୁ ଅଶଙ୍କାରେ ଶୋକ କରିବା ଉଚିତ ନୁହେ। କିନ୍ତୁ ଆତ୍ମୀୟସ୍ୱଜନଙ୍କର ମୃତ୍ୟୁରେ ଯେଉଁ ଦାରୁଣ ଦୁଃଖ ଜାତ ହୁଏ ତହିଁରେ ଏସବୁ ତତ୍ତ୍ୱକଥା ହୃଦୟରେ ପ୍ରବେଶ କରେ କି ? ଏହାର ଉତ୍ତରରେ ଭଗବାନ୍ କହୁଅଛନ୍ତି—ଇନ୍ଦ୍ରିୟ ସଙ୍ଗେ ବିଷୟର ସଂସ୍ପର୍ଶ ହେତୁରୁ ଯେଉଁ ସୁଖ ଦୁଃଖ ଜାତ ହୁଏ ତାହା ଅନିତ୍ୟ ଅର୍ଥାତ୍ ଆସେ, ଯାଏ; ସ୍ଥିର ହୋଇ ରହେ ନାହିଁ। ଏହାକୁ ସହିବାକୁ ହେବ। ପୌଷମାସରେ ଦେହରେ ପାଣି ଲାଗିଲେ ଶୀତ ହୁଏ, ଏହା ଅନିତ୍ୟ ଅର୍ଥାତ୍ କେତେକ ସମୟ ପରେ ସେ ଶୀତ କମିଯାଏ। ଚୈତ୍ର ମାସରେ ଦକ୍ଷିଣା ପବନ ଦେହକୁ ସୁଖକର ବୋଧହୁଏ, ତାହା ମଧ୍ୟ ଅନିତ୍ୟ, ଅର୍ଥାତ୍ କିଛି ସମୟ ପରେ ସେ ପବନ ଆଉ ସୁଖକର ବୋଧହୁଏ ନାହିଁ। ଏସବୁ ଇନ୍ଦ୍ରିୟସଙ୍ଗେ ବିଷୟ ସଂଯୋଗରୁ ଉତ୍ପନ୍ନ। ଯେଉଁମାନେ ଅଜ୍ଞାନ ସେମାନେ ଶୀତଉଷ୍ଣ ସୁଖଦୁଃଖାଦି ବିକାରମାନଙ୍କୁ ସତ୍ୟ ମନେ କରି ଆତ୍ମାରେ ଏସବୁର ଅଧ୍ୟାରୋପ କରନ୍ତି। ସେହିହେତୁରୁ ଦୁଃଖଦ୍ୱାରା ସେମାନେ ପ୍ରପୀଡ଼ିତ ହୁଅନ୍ତି। କିନ୍ତୁ ଯେଉଁମାନେ ଜାଣନ୍ତି ଏ ସମସ୍ତ ବିକାର ପ୍ରକୃତିର, ଆତ୍ମା ଅକର୍ତ୍ତା ଓ ନିର୍ଲିପ୍ତ, ତାଙ୍କ ପାଖରେ ସୁଖ ଓ ଦୁଃଖ ସମାନ। ତେଣୁ ଭଗବାନ୍ ଅର୍ଜୁନଙ୍କୁ କହୁଅଛନ୍ତି ସ୍ୱଜନାଦିବିୟୋଗଜନିତ ଦୁଃଖ ଏହିପରି ଅନିତ୍ୟ, ତହିଁରେ ବିଚଳିତ ନ ହୋଇ ସହିବା ଉଚିତ। ଶୀତଉଷ୍ଣ, ସୁଖଦୁଃଖ,

ଯଂ ହି ନ ବ୍ୟଥୟନ୍ତ୍ୟେତେ ପୁରୁଷଂ ପୁରୁଷର୍ଷଭ
ସମଦୁଃଖସୁଖଂ ଧୀରଂ ସୋଽମୃତତ୍ୱାୟ କଳ୍ପତେ । ୧୫ ।

ମାନଅପମାନ ପ୍ରଭୃତି ସହିବାକୁ ତିତିକ୍ଷା ବୋଲଯାଏ । ଏହା ମହାଫଳପ୍ରଦ ଏବଂ ଜୀବନକୁ ମଧୁମୟ କରେ ଏବଂ ମନୁଷ୍ୟକୁ ଅମୃତତ୍ୱ ପ୍ରଦାନ କରେ । ଏ ଶ୍ଳୋକରେ ପ୍ରଯୁକ୍ତ ଶୀତୋଷ୍ଣ, ସୁଖଦୁଃଖ ପଦ ଉପଲକ୍ଷଣାତ୍ମକ । ତହିଁରେ ରାଗଦ୍ୱେଷ, ସତ୍ ଅସତ୍, ମୃତ୍ୟୁ ଅମରତ୍ୱ ପ୍ରଭୃତି, ପରସ୍ପର ବିରୁଦ୍ଧ ଦ୍ୱନ୍ଦ୍ୱସମୂହର ସମାବେଶ ହୁଏ । ଏସମସ୍ତ ମାୟାଜଗତର ଦ୍ୱନ୍ଦ୍ୱ । ଏହି ସମସ୍ତ ଦ୍ୱନ୍ଦ୍ୱକୁ ଶାନ୍ତଭାବରେ ସହ୍ୟକରି ତହିଁରୁ ବୁଦ୍ଧିକୁ ପୃଥକ୍ କରି ନ ପାରିଲେ ଜୀବାତ୍ମାର ବ୍ରହ୍ମପ୍ରାପ୍ତି ବା ମୁକ୍ତି ହୁଏ ନାହିଁ ।

ମାତ୍ରାସ୍ପର୍ଶାଃ—ମୀୟନ୍ତେ ଜ୍ଞାୟନ୍ତେ ବିଷୟା ଆଭିରିତି ମାତ୍ରା, ଇନ୍ଦ୍ରିୟଃ-ବୃତ୍ତୟଃ ତାସାଂ ସ୍ପର୍ଶାଃ ବିଷୟୈଃ ସହସମ୍ବନ୍ଧାଃ—ଯାହାଦ୍ୱାରା ବିଷୟ ଜ୍ଞାନ ହୁଏ ତାହାର ନାମ ମାତ୍ରା, ଅର୍ଥାତ୍ ଇନ୍ଦ୍ରିୟବୃତ୍ତିସମୂହ, ସେମାନଙ୍କର ବିଷୟ ସଙ୍ଗେ ସମ୍ବନ୍ଧ—ଶ୍ରୀଧରସ୍ୱାମୀ 'ମାତ୍ରାସ୍ପର୍ଶାଃ' ପଦର ଏହିପରି ବ୍ୟାଖ୍ୟା କରିଅଛନ୍ତି ।

**୧୬ । ଅନ୍ୱୟଦୀପିକା**—ପୁରୁଷର୍ଷଭ ( ହେ ପୁରୁଷଶ୍ରେଷ୍ଠ ) ଏତେ (ଏହି ସମସ୍ତ ମାତ୍ରାସ୍ପର୍ଶା ବା ଶୀତୋଷ୍ଣାଦି ) ସମଦୁଃଖସୁଖଂ ( ଦୁଃଖ ଓ ସୁଖରେ ସମଭାବାପନ୍ନ ) ଯଂ ଧୀରଂ ପୁରୁଷଂ ( ଯେଉଁ ଧୀର ପୁରୁଷକୁ ) ନ ବ୍ୟଥୟନ୍ତି (ବ୍ୟଥିତ କରେ ନାହିଁ) ସଃ ହି ( ସେ ଏକା ) ଅମୃତତ୍ୱାୟ କଳ୍ପତେ ( ଅମୃତତ୍ୱ ଲାଭର ଉପଯୋଗୀ ହୁଅନ୍ତି । )

**ଅନୁବାଦ**—ହେ ନରଶ୍ରେଷ୍ଠ, ଯେଉଁ ଜ୍ଞାନବାନ୍‌ଙ୍କ ନିକଟରେ ସୁଖଦୁଃଖ ସମାନ ଏବଂ ଯେ ଏଥିରେ ବ୍ୟଥା ପ୍ରାପ୍ତ ହୁଅନ୍ତି ନାହିଁ ସେ ଅମୃତତ୍ୱ ଲାଭର ଅର୍ଥାତ୍ ଅମୃତମୟ ବ୍ରହ୍ମ ଅବସ୍ଥା ଲାଭରେ ସମର୍ଥ ହୁଅନ୍ତି ।

**'ସୁବୋଧିନୀ ଟୀକା**—ତତ୍ ପ୍ରତୀକାର ପ୍ରଯତ୍ନାଦପି ତତ୍ ସହନ ମେବୋଚିତଂ ମହାଫଳତ୍ୱାଦିତ୍ୟାହ—ଯଂ ହୀତ୍ୟାଦି । ଏତେ ମାତ୍ରାସ୍ପର୍ଶା ଯଂ ପୁରୁଷଂ ନ ବ୍ୟଥୟନ୍ତି ନାଭିଭବନ୍ତି । ସମେ ଦୁଃଖସୁଖେ ଯସ୍ୟ ସ ତମ୍ । ତୈ ରବିକ୍ଷିପ୍ୟମାଣେ । ଧର୍ମଜ୍ଞାନଦ୍ୱାରାମୃତତ୍ୱାୟ ମୋକ୍ଷାୟ କଳ୍ପତେ ଯୋଗ୍ୟୋ ଭବତି ।

**ବିବୃତି**—୧୪ଶ ଶ୍ଳୋକରେ ଶୀତୋଷ୍ଣସୁଖଦୁଃଖାଦି ସହିବାକୁ ଭଗବାନ୍ ଉପଦେଶ ଦେଲେ । ଏ ଶ୍ଳୋକରେ ତାହାର କାରଣ ସ୍ୱରୂପ କହୁଅଛନ୍ତି—ଶୀତୋଷ୍ଣାଦି ଦ୍ୱନ୍ଦ୍ୱ ସହିବା ଲୋକ ଅମୃତତ୍ୱ ଲାଭର ଉପଯୋଗୀ ହୁଅନ୍ତି । 'ଅମୃତତ୍ୱ' ପଦର ବାଖ୍ୟାରେ ମୁକ୍ତି ବା ମୋକ୍ଷ ଅର୍ଥ ହିଁ ଟୀକାକାରମାନେ ସୂଚନା କରିଅଛନ୍ତି । ଅବସ୍ଥା ଭେଦରେ 'ଜୀବାତ୍ମା' ଏ ଶରୀର ତ୍ୟାଗକଲେ ମୋକ୍ଷର

ନାସତୋ ବିଦ୍ୟତେ ଭାବୋ ନାଭାବୋ ବିଦ୍ୟତେ ସତଃ,
ଉଭୟୋରପି ଦୃଷ୍ଟୋଽନ୍ତସ୍ତ୍ୱନୟୋସ୍ତତ୍ତ୍ୱଦର୍ଶିଭିଃ । ୧୬ ।

ଅଧିକାରୀ ହୁଅନ୍ତି ମାତ୍ର ଦୁଃଖସୁଖକୁ ସମାନ ଜ୍ଞାନ କରିବା ଲୋକ ଇହଜୀବନରେହିଁ ଜୀବନ୍ମୁକ୍ତିର ଅଧିକାରୀ ହୁଅନ୍ତି । ଶରୀର ତ୍ୟାଗ ପରେ ଯେ ତାଙ୍କର ନିର୍ଲିପ୍ତଆତ୍ମା ପରମାତ୍ମାଙ୍କଠାରେ ଲୀନ ହେବେ, ଏଥିରେ ଆଉ ସନ୍ଦେହ କଅଣ ? ଏ ସଂସାରରେ ଯେ ପର୍ଯ୍ୟନ୍ତ ମନୁଷ୍ୟର ବିଷୟସଙ୍ଗେ ସମ୍ପର୍କ ଅଛି, ସେ ପର୍ଯ୍ୟନ୍ତ ଦୁଃଖ ଓ ସୁଖକୁ ସମାନ ଜ୍ଞାନ କରିବା ସହଜସାଧ୍ୟ ନୁହେ । ତେବେ ଏଥିପାଇଁ ସଂସାର ତ୍ୟାଗକରି ସନ୍ନ୍ୟାସାଶ୍ରମ ଅବଲମ୍ବନ କରିବା ଗୀତାର ଉପଦେଶ ନୁହେ । ଗୀତା ସଂସାରାଶ୍ରମୀର ଧର୍ମଗ୍ରନ୍ଥ, କେବଳ ସନ୍ନ୍ୟାସୀଙ୍କର ନୁହେ । ସେହି ହେତୁରୁ ଭଗବାନ୍ କହୁଛନ୍ତି ସଂସାରରେ ରହି ବିଷୟ ବାସନା ବା କାମନା ତ୍ୟାଗ କରିପାରିଲେ ଲୋକ ମୋକ୍ଷର ଅଧିକାରୀ ହେବ । ସୁଖଦୁଃଖରେ ସାମ୍ୟବୁଦ୍ଧି ଆସିଲେ କାମନା ଆପଣାଛାଏଁ ଅପସାରିତ ହୋଇଯାଏ । ସେଥିପାଇଁ କର୍ମତ୍ୟାଗର ଆବଶ୍ୟକତା ନାହିଁ । ଯେତେ ଦିନଯାଏ କାମନା ଅଛି ସେତେ ଦିନଯାଏ ସାମ୍ୟବୁଦ୍ଧି ଆସେ ନାହିଁ ।

ଆତ୍ମା ଆନନ୍ଦମୟ; ଦୁଃଖସୁଖାଦିଦ୍ୱନ୍ଦ୍ୱଜନିତ କୁହେଳିକାଦ୍ୱାରା ଆତ୍ମାର ସେହି ସ୍ୱାଭାବିକ ଦିବ୍ୟଜ୍ୟୋତି ଆଚ୍ଛନ୍ନ ହୋଇ ରହିଥାଏ । ଏହି କୁହେଳିକା ଅପସାରିତ ହୋଇଗଲେ ଆତ୍ମାରେ ସ୍ୱାଭାବିକ ବିମଳ ଆନନ୍ଦ ଉଦ୍‌ଭାସିତ ହୋଇଉଠେ । ଦୁଃଖସୁଖାଦିର ସହନଶୀଳତା ଅବଶ୍ୟ ସହଜସାଧ୍ୟ ନୁହେ; ଦୀର୍ଘ ଯତ୍ନ ଓ ଅଭ୍ୟାସ ଦ୍ୱାରା ଏହା ଅଧିଗତ ହୁଏ । ଆମେ ଦିନେ ମଧ୍ୟାହ୍ନର ପ୍ରଖର ରୌଦ୍ରରେ ଗଲେ ଘୋର ଦୁଃଖଯନ୍ତ୍ରଣା ଭୋଗକରୁଁ, ମାତ୍ର ଯେଉଁ ଶ୍ରମଜୀବୀମାନେ ପ୍ରତିଦିନ ସେହି ରୌଦ୍ରରେ କର୍ମକରନ୍ତି, ସେମାନେ ସେ ଦୁଃଖ ଆଦୌ ଅନୁଭବ କରିପାରନ୍ତି ନାହିଁ । ସେହିପରି ଦୁଃଖ ସହି ହୋଇଗଲେ ମନୁଷ୍ୟ ତହିଁରେ ଆଉ ବିଚଳିତ ହୁଏ ନାହିଁ । ଏହି ସହନଶୀଳତା ବା ତିତିକ୍ଷାହିଁ ଅମୃତତ୍ୱ ଲାଭର ଛନ୍ଦା ।

**୧୬ । ଅନ୍ୱୟଦୀପିକା**—ଅସତଃ (ଅସତ୍ ପଦାର୍ଥର) ଭାବଃ (ଅସ୍ତିତ୍ୱ) ନ ବିଦ୍ୟତେ (ନ ଥାଏ), ସତଃ (ସତ୍ ପଦାର୍ଥର) ଅଭାବଃ (ନାଶ) ନ ବିଦ୍ୟତେ (ନାହିଁ), ତତ୍ତ୍ୱଦର୍ଶିଭିଃ ତୁ (ତତ୍ତ୍ୱଜ୍ଞ ପଣ୍ଡିତମାନଙ୍କ ଦ୍ୱାରା) ଅନୟୋଃ ଉଭୟୋଃ ଅପି (ଏହି ଉଭୟର) ଅନ୍ତଃ (ନିର୍ଣ୍ଣୟ) ଦୃଷ୍ଟଃ (ସ୍ଥିରୀକୃତ ହୋଇଅଛି) ।

**ଅନୁବାଦ**—ଅସତ୍ ଅର୍ଥାତ୍ ଯାହା ନାହିଁ, ତାହାର କେତେବେଳେ ହେଲେ ଅସ୍ତିତ୍ୱ ନ ଥାଏ । ସତ୍ ବସ୍ତୁର କେତେବେଳେ ହେଲେ ଅଭାବ ବା ନାଶ ହୁଏ ନାହିଁ । ତତ୍ତ୍ୱଦର୍ଶୀମାନେ ଏହି ସତ୍, ଅସତ୍ ଉଭୟର ଅନ୍ତ ଦେଖି ଅଛନ୍ତି ଅର୍ଥାତ୍ ଏ ଉଭୟର ସ୍ୱରୂପ ନିର୍ଣ୍ଣୟ କରିଅଛନ୍ତି ।

**ସୁବୋଧିନୀ ଟୀକା**—ନନୁ ତଥାପି ଶୀତୋଷ୍ଣାଦିକମତିଦୁଃସହଂ କଥଂ ସୋଢ଼ବ୍ୟମ୍ ? ଅତ୍ୟନ୍ତଂ ତତ୍‌ସହନେ ଚ କଦାଚିଦାତ୍ମନୋ ନାଶଃ ସ୍ୟାଦିତ୍ୟାଶଙ୍କ୍ୟ ତତ୍ତ୍ୱବିଚାରତଃ ସର୍ବଂ ସୋଢୁଂ ଶକ୍ୟମିତ୍ୟାଶୟେନାହ— ନାସତୋ ବିଦ୍ୟତ ଇତି । ଅସତୋ ଅନାତ୍ମଧର୍ମତ୍ୱାଦବିଦ୍ୟମାନସ୍ୟ ଶୀତୋଷ୍ଣାଦେରାତ୍ମନି ଭାବଃ ସତ୍ତା ନ ବିଦ୍ୟତେ । ତଥା ସତଃ ସତ୍‌ସ୍ୱଭାବସ୍ୟାତ୍ମନୋଽଭାବୋ ନାଶୋ ନ ବିଦ୍ୟତେ । ଏବମୁଭୟୋଃ ସଦସତୋରନ୍ତୋ ନିର୍ଣ୍ଣୟୋ ଦୃଷ୍ଟଃ । କୈଃ ? ତତ୍ତ୍ୱଦର୍ଶିଭିଃ । ବସ୍ତୁ ଯାଥାର୍ଥ୍ୟ ବେଦିଭିଃ । ଏବଂଭୂତ ବିବେକେନ ସହସ୍ୱେତ୍ୟର୍ଥଃ ।

**ବିବୃତି**—'ସତ୍' ଶବ୍ଦ ଅସ୍ ଧାତୁରୁ ନିଷ୍ପନ୍ନ; ଅସ୍ ଧାତୁର ଅର୍ଥ ବିଦ୍ୟମାନତା, ଅତଏବ ଅର୍ଥ ହେଲା ଯାହା ରହିବ ତାହା ସତ୍ ଏବଂ ଯାହା ରହିବ ନାହିଁ ତାହା ଅସତ୍ । ଆତ୍ମା ସତ୍ କାରଣ ତାହା ଚିରକାଳ ବିଦ୍ୟମାନ ଥାଏ; ଶୀତୋଷ୍ଣ ସୁଖଦୁଃଖାଦି ଅସତ୍, କାରଣ ତାହା ସବୁବେଳେ ରହେ ନାହିଁ । ନିତ୍ୟ ସ୍ୱରୂପୀ ଆତ୍ମାରେ ଏହି ଅନିତ୍ୟ ଦୁଃଖସୁଖାଦି ସ୍ଥାୟୀ ହୋଇ ପାରେ ନାହିଁ । କାରଣ ସତ୍ ଆତ୍ମାରେ ତାହାର ଧର୍ମବିରୋଧୀ ଅସତ୍ ଶୀତୋଷ୍ଣ ରହିବା ଅସ୍ୱାଭାବିକ ।

ଟୀକାକାର ଶ୍ରୀଧରସ୍ୱାମୀ କହନ୍ତି ସୁଖଦୁଃଖାଦି ଅନାତ୍ମ ଧର୍ମ । ଏହାର ଅର୍ଥ ସୁଖଦୁଃଖ ପ୍ରଭୃତି ଆତ୍ମାର ଧର୍ମ ନୁହେ, ଏସବୁ ଅନ୍ତଃକରଣର ଧର୍ମ । ମନ, ବୁଦ୍ଧି, ଅହଂକାର—ଏମାନଙ୍କ ସମଷ୍ଟିର ସାଧାରଣ ନାମ ଅନ୍ତଃକରଣ । ଏହି ଅନ୍ତଃକରଣ ବୃତ୍ତି ପ୍ରକୃତିର ପରିଣାମ, ଏହା ସଙ୍ଗେ ଆତ୍ମାର ସମ୍ବନ୍ଧ ନାହିଁ । ପ୍ରକୃତିର ସଂଯୋଗବଶତଃ ଆତ୍ମା ସୁଖଦୁଃଖାଦିର ଭୋକ୍ତା ବୋଲି ଜଣାପଡ଼ନ୍ତି । ବସ୍ତୁତଃ ଆତ୍ମା ଅକର୍ତ୍ତା ।

ପୂର୍ବୋକ୍ତ ତିନିଗୋଟି ଶ୍ଳୋକରେ ଭଗବାନ୍ ଯେଉଁ ଉପଦେଶ ଦେଲେ ତହିଁରୁ ବୁଝାଯିବ ଯେ ସଂସାରୀ ଜୀବ ପକ୍ଷରେ ଦୁଃଖ ପାଇବା ସ୍ୱାଭାବିକ କିନ୍ତୁ ଏହି ଦୁଃଖକୁ ସହିବାକୁ ହେବ; ଯେବେ ଦୁଃଖ ନିବାରଣର ଉପାୟ ଥାଏ ତେବେ ତାହା ସହିବା କାହିଁକି ? ରୋଗ ହେଲେ ଔଷଧ ଦ୍ୱାରା ତାହାର ନିବାରଣ ନ କରି ତାହାର ଯନ୍ତ୍ରଣା ସହିବା କିପରି ? ଏହାର ଉତ୍ତରରେ କୁହାଯାଏ ଯେ ଯେଉଁଠାରେ ନିବାରଣ ମନୁଷ୍ୟଶକ୍ତିର ସୀମା ମଧ୍ୟରେ ସେଠାରେ ତାହା ଅବଶ୍ୟ କରଣୀୟ; ମାତ୍ର ଯେଉଁଠାରେ ଦୁଃଖ ନିବାରଣ ମାନବୀଶକ୍ତିର ବାହାରେ ସେଠାରେ ତାହା ସହିବାକୁ ହିଁ ହେବ । 'ମୃତ୍ୟୁ' ମନୁଷ୍ୟଶକ୍ତିଦ୍ୱାରା ନିବାରିତ ହୋଇପାରେ ନାହିଁ, ସୁତରାଂ ମୃତ୍ୟୁଜନିତ ଦୁଃଖ ସହିବାକୁହିଁ ହେବ ।

ସୁଖସମ୍ବନ୍ଧରେ ସେହିପରି କୁହାଯାଇ ପାରେ ଯେ, ଇନ୍ଦ୍ରିୟଜନିତ ସୁଖ ସର୍ବଥା ପରିତ୍ୟାଜ୍ୟ । ମାତ୍ର ଯେଉଁ ସବୁ ସୁଖ ଇନ୍ଦ୍ରିୟର ଅଧୀନ ନୁହେ, ପରନ୍ତୁ, ଭକ୍ତି, ପ୍ରୀତି, ଦୟାରୁ ଜାତ ସେ ସବୁ ପରିତ୍ୟାଜ୍ୟ ନୁହେ । ମୋଟ ଉପରେ

ଅବିନାଶି ତୁ ତଦ୍‌ବିଦ୍ଧି ଯେନ ସର୍ବମିଦଂ ତତମ୍,
ବିନାଶମବ୍ୟୟସ୍ୟାସ୍ୟ ନ କଶ୍ଚିତ୍ କର୍ତ୍ତୁମର୍ହତି । ୧୭ ।
ଅନ୍ତବନ୍ତ ଇମେ ଦେହା ନିତ୍ୟସ୍ୟୋକ୍ତାଃ ଶରୀରିଣଃ,
ଅନାଶିନୋଽପ୍ରମେୟସ୍ୟ ତସ୍ମାଦ୍ ଯୁଧ୍ୟସ୍ୱ ଭାରତ । ୧୮ ।

ସ୍ୱର୍ଗ ସମ୍ବନ୍ଧରେ ଅନାସକ୍ତିହିଁ ଗୀତୋକ୍ତ ଧର୍ମର ଲକ୍ଷ୍ୟ, ସ୍ୱର୍ଗଭୋଗ ଲକ୍ଷ୍ୟ ନୁହେ । ଏହି ଅଧ୍ୟାୟର ୬୪ତମ ଶ୍ଳୋକରେ ଏହାହିଁ ଭଗବାନ୍ କହିବେ :—

ରାଗଦ୍ୱେଷ ବିମୁକ୍ତୈସ୍ତୁ ବିଷୟାନିନ୍ଦ୍ରିୟୈଶ୍ଚରନ୍,
ଆତ୍ମବଶ୍ୟୈ ର୍ବିଧେୟାତ୍ମା ପ୍ରସାଦମଧିଗଚ୍ଛତି ।
(ଯଥାସ୍ଥାନରେ ଏହି ଶ୍ଳୋକର ବିବୃତି ଦିଆଯିବ ।)

**୧୭ । ଅନ୍ୱୟଦୀପିକା**—ଯେନ ( ଯାହାଙ୍କଦ୍ୱାରା ) ଇଦଂ ସର୍ବଂ (ଏହି ସମସ୍ତ) ତତଂ (ବ୍ୟାପ୍ତ) ତତ୍ ତୁ ଏବ (ତାହାଙ୍କୁହିଁ) ଅବିନାଶି (ବିନାଶରହିତ) ବିଦ୍ଧି (ଜାଣ), କଶ୍ଚିତ୍ (କେହି ହେଲେ) ଅସ୍ୟ ଅବ୍ୟୟସ୍ୟ (ଏହି ଅବ୍ୟୟ ସ୍ୱରୂପର) ବିନାଶଂ କର୍ତ୍ତୁଂ (ବିନାଶକରିବାକୁ) ନ ଅର୍ହତି (ସମର୍ଥ ହୁଏ ନାହିଁ) ।

**ଅନୁବାଦ**—ଯେ ଏହି ସମସ୍ତ ଦୃଶ୍ୟ ଜଗତ୍ ବ୍ୟାପିକରି ରହିଅଛନ୍ତି, ତାହାଙ୍କୁ ଅବିନାଶୀ ବୋଲି ଜାଣ । କେହି ହେଲେ ଏହି ଅବ୍ୟୟ ସ୍ୱରୂପର ବିନାଶ କରିପାରେ ନାହିଁ ।

**ସୁବୋଧିନୀ ଟୀକା**—ତନ୍ନ ସତ୍‌ସ୍ୱଭାବମବିନାଶି ବସ୍ତୁ ସାମାନ୍ୟେ-ନୋକ୍ତଂ ବିଶେଷତୋ ଦର୍ଶୟତି—ଅବିନାଶି ତ୍ୱିତି । ଯେନ ସର୍ବମିଦମାଗମାପାୟ-ଧର୍ମକଂ ଦେହାଦି ତତଂ ତଦ୍ ସାକ୍ଷିତ୍ୱେନ ବ୍ୟାପ୍ତମ୍ । ତତ୍ତୁ ଆତ୍ମସ୍ୱରୂପ ମବିନାଶି ବିନାଶଶୂନ୍ୟଂ ବିଦ୍ଧି ଜାନୀହି । ଅତ୍ର ହେତୁମାହ ବିନାଶମିତି ।

**ବିବୃତି**—ପୂର୍ବେ କୁହାଯାଇଅଛି ଶରୀରସ୍ଥ ଜୀବାତ୍ମା ପରମାତ୍ମାଙ୍କର ଅଂଶ, ଏ ଶ୍ଳୋକରେ 'ଯେନ ସର୍ବମିଦଂ ତତମ୍' 'ସମଗ୍ର ଜଗତ୍ ଯାହାଙ୍କଦ୍ୱାରା ବ୍ୟାପ୍ତ' ତାହାଙ୍କୁ ଅବିନାଶୀ ବୋଲି ଜାଣ— ଏହିପରି କୁହାଯାଇଅଛି । ଶ୍ରୀଧରସ୍ୱାମୀ କହନ୍ତି— 'ସର୍ବମିଦଂ'ର ଅର୍ଥ 'ଆଗମାପାୟଧର୍ମକଂ ଶରୀରାଦି' ଅର୍ଥାତ୍ ଉତ୍ପତ୍ତି ବିନାଶଶୀଳ ଏହି ଦେହ ପ୍ରଭୃତି ସମସ୍ତ ଶରୀରସ୍ଥ ଆତ୍ମା ପରମାତ୍ମାଙ୍କର ଅଂଶ । ଏଥିରୁ ଜଣା ଯାଉଅଛି ଆତ୍ମା ଓ ପରମାତ୍ମା ଏକ ପର୍ଯ୍ୟାୟଭୁକ୍ତ ଶବ୍ଦ ।

ଆତ୍ମା କଳେବରେ ଯତ୍ନେ ସ୍ୱଭାବେ ପରମାତ୍ମନି । ଇତି ଧରଣିଃ ।

ଯେ ସର୍ବବ୍ୟାପୀ, ଅବ୍ୟୟ ଅର୍ଥାତ୍ କ୍ଷୟବୃଦ୍ଧିରହିତ କେହି ତାଙ୍କର ବିନାଶ କରିପାରେ ନାହିଁ ।

**୧୮ । ଅନ୍ୱୟଦୀପିକା**—ନିତ୍ୟସ୍ୟ ( ବିକାରଶୂନ୍ୟ ) ଅନାଶିନଃ (ଅବିନାଶୀ) ଅପ୍ରମେୟସ୍ୟ ( ପ୍ରମାଣଦ୍ୱାରା ଅନୁପଲବ୍ଧ ) ଶରୀରିଣଃ ( ଆତ୍ମାର )

ଯ ଏନଂ ବେତ୍ତି ହନ୍ତାରଂ ଯଶ୍ଚୈନଂ ମନ୍ୟତେ ହତମ୍,
ଉଭୌ ତୌ ନ ବିଜାନୀତୋ ନାୟଂ ହନ୍ତି ନ ହନ୍ୟତେ । ୧୯ ।

ଇମେ ଦେହାଃ ( ଏହି ସମସ୍ତ ଦେହ ) ଅନ୍ତବନ୍ତଃ ( ବିନାଶଶୀଳ ) ଉକ୍ତାଃ (କଥିତ ହୋଇଅଛି ), ତସ୍ମାତ୍ ( ସେହି କାରଣରୁ ) ଭାରତ ( ହେ ଅର୍ଜୁନ ) ଯୁଧ୍ୟସ୍ୱ ( ଯୁଦ୍ଧକର ) ।

**ଅନୁବାଦ**—ଶରୀରର ସ୍ୱାମୀ ଯେଉଁ ଆତ୍ମା ସେ ନିତ୍ୟ, ଅବିନାଶୀ ଓ ଅପ୍ରମେୟ ଅର୍ଥାତ୍ ସ୍ୱପ୍ରକାଶ—ଏହିପରି କୁହାଯାଇଅଛି । ସେ ଯେଉଁ ଶରୀର ଧାରଣ କରିଅଛନ୍ତି ତାହା ଅନିତ୍ୟ ବା ନଶ୍ୱର; ଅତଏବ ହେ ଅର୍ଜୁନ, ଯୁଦ୍ଧକର । ( ଆତ୍ମାର ଅବିନାଶିତା ଓ ଦେହାଦିର ନଶ୍ୱରତା ସ୍ମରଣ କରି କାତରତା ତ୍ୟାଗକରି ଓ ସ୍ୱଧର୍ମ ପାଳନ କର ) ।

**ସୁବୋଧିନୀ ଟୀକା**—ଅଗମାପାୟି ଧର୍ମକମଗ୍ରଦର୍ଶୟତି—ଅନ୍ତବନ୍ତ ଇତି । ଅନ୍ତୋ ନାଶୋ ବିଦ୍ୟତେ ଯେଷାଂ ତେ ଅନ୍ତବନ୍ତଃ । ନିତ୍ୟସ୍ୟ ସର୍ବଦୈକ-ରୂପସ୍ୟ ଶରୀରିଣଃ ଶରୀରବତଃ । ଅତଏବାନାଶିନୋ ବିନାଶରହିତସ୍ୟ । ଅପ୍ରମେୟସ୍ୟାପରିଚ୍ଛିନ୍ନସ୍ୟାତ୍ମନଃ, ଇମେ ସୁଖଦୁଃଖାଦିଧର୍ମକା ଦେହା ଉକ୍ତା-ସ୍ତତ୍ତ୍ୱଦର୍ଶିଭିଃ । ଯସ୍ମାଦେବାତ୍ମନୋ ନ ବିନାଶଃ । ନ ଚ ସୁଖଦୁଃଖାଦି ସମ୍ବନ୍ଧଃ । ତସ୍ମାନ୍ମୋହଜଂ ଶୋକଂ ତ୍ୟକ୍ତ୍ୱା ଯୁଧ୍ୟସ୍ୱ । ସ୍ୱଧର୍ମଂ ମାତ୍ୟାକ୍ଷୀ ରିତ୍ୟର୍ଥଃ ।

**ବିବୃତି**—ଏ ଶ୍ଳୋକରେ ନିତ୍ୟ ଓ ଅନାଶୀ ଏ ଦୁଇଟିପଦ ଶରୀରୀ ବା ଆତ୍ମାର ବିଶେଷଣ ରୂପେ ବ୍ୟବହୃତ ହୋଇଅଛି । ସାଧାରଣ ଭାବରେ ବିଚାର କଲେ ଏ ଦୁଇଟିର ଅର୍ଥ ଏକପରି ଜଣାଯାଏ । ସ୍ୱାମୀଜୀ କହନ୍ତି ଏଠାରେ 'ନିତ୍ୟ'ର ଅର୍ଥ ସର୍ବଦା ଏକରୂପ, ଅତଏବ ଅନାଶୀ ଅର୍ଥାତ୍ ଅବିନାଶୀ । 'ଅପ୍ରମେୟ'ର ଅର୍ଥ ପ୍ରମାଣଦ୍ୱାରା ଯାହାଙ୍କୁ ଜଣାଯାଇ ପାରେ ନାହିଁ ଅର୍ଥାତ୍ ଯେ ପ୍ରମାଣସିଦ୍ଧ ନୁହନ୍ତି; ପ୍ରମାଣଦ୍ୱାରା ଯାହାଙ୍କର ଯଥାର୍ଥତା ନିର୍ଣ୍ଣୟ ହୁଏ ନାହିଁ ।

'ଯେନେଦଂ ସର୍ବ ବିଜାନାତି ତଂ କେନ ବିଜାନୀୟାତ୍' । ଶ୍ରୁତି, ବୃ. ଉ.

ଯାହାଙ୍କଠାରୁ ସମସ୍ତଜ୍ଞାନ ଜାତ ହୋଇଅଛି, ତାହାଙ୍କୁ କେଉଁ ଜ୍ଞାନରେ ଜାଣିବ ?

୧୯ । **ଅନ୍ୱୟଦୀପିକା**—ଯଃ (ଯେ) ଏନଂ (ଏହି ଆତ୍ମାକୁ) ହନ୍ତାରଂ (ହତ୍ୟାକାରୀ) ବେତ୍ତି (ଜାଣନ୍ତି), ଯଃ ଚ ( ଏବଂ ଯେ ) ଏନଂ ହତଂ ମନ୍ୟତେ (ଏହାଙ୍କୁ ହତବୋଲି ମନେ କରନ୍ତି) ତୌ ଉଭୌ (ସେ ଦୁହେଁ) ନ ବିଜାନୀତଃ (ଜାଣନ୍ତି ନାହିଁ); ଅୟଂ ( ଏହି ଆତ୍ମା ) ନ ହନ୍ତି ( ହତ୍ୟାକରନ୍ତି ନାହିଁ , ନ ହନ୍ୟତେ ( ହତ ହୁଅନ୍ତି ନାହିଁ ) ।

ନ ଜାୟତେ ମ୍ରିୟତେ ବା କଦାଚି-
ନ୍ନାୟଂ ଭୂତ୍ୱା ଭବିତା ବା ନ ଭୂୟଃ ।
ଅଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ
ନ ହନ୍ୟତେ ହନ୍ୟମାନେ ଶରୀରେ । ୨୦ ।

**ଅନୁବାଦ**—ଯେ କହନ୍ତି ଆତ୍ମା ଅନ୍ୟକୁ ହତ୍ୟା କରନ୍ତି, ଏବଂ ଯେ କହନ୍ତି ଆତ୍ମା ଅନ୍ୟଦ୍ୱାରା ହତ ହୁଅନ୍ତି, ସେ ଦୁହେଁ ଆତ୍ମତତ୍ତ୍ୱ ଜାଣନ୍ତି ନାହିଁ । କାରଣ ଆତ୍ମା କାହାକୁ ହତ୍ୟା କରନ୍ତି ନାହିଁ ଏବଂ କାହାଦ୍ୱାରା ମଧ୍ୟ ନିହତ ହୁଅନ୍ତି ନାହିଁ ।

**ସୁବୋଧିନୀ ଟୀକା**—ତଦେବଂ ସ୍ୱଦ୍ଧାଦପ୍ଯୁତ୍ପନ୍ନମିତ୍ତଶୋକୋ ନିବାରିତଃ । ଯଚ୍ଚାତ୍ମନୋ ହନ୍ତୃତ୍ୱନିମିତ୍ତଂ ଦୁଃଖମୁକ୍ତମ୍— ଏତାନ୍ନହନ୍ତୁ ମିଚ୍ଛାମୀତ୍ୟାଦିନା— ତଦପି ତଦ୍ୱଦେବ ନିର୍ନିମିତ୍ତ ମିତ୍ୟାହ । ଯ ଏନମିତି । ଏନମାତ୍ମାନମ୍ । ଆତ୍ମନୋହନନକ୍ରିୟାୟାଃ କର୍ମତ୍ୱବତ୍ କର୍ତ୍ତୃତ୍ୱମପି ନାସ୍ତୀତ୍ୟର୍ଥଃ ତତ୍ରହେତୁଃ— ନାୟମିତି ।

**ବିବୃତି**—ପ୍ରଥମ ଅଧ୍ୟାୟ ୩୪।୩୫।୩୬ ଶ୍ଳୋକରେ ଅର୍ଜୁନ ଗୁରୁ ଏବଂ ସ୍ୱଜନମାନଙ୍କର ବଧକର୍ତ୍ତା ହେବେ ବୋଲି ଯେଉଁ ଦୁଃଖ ପ୍ରକାଶ କରିଅଛନ୍ତି ତାହାର ଉତ୍ତରରେ ଭଗବାନ୍ କହୁଅଛନ୍ତି ଯେ ଆତ୍ମା ଯେପରି କାହାରିକୁ ହତ୍ୟା କରନ୍ତି ନାହିଁ, ସେହିପରି କାହାରଦ୍ୱାରା ହତ ହୁଅନ୍ତି ନାହିଁ, କାରଣ ଆତ୍ମା ଅବିକ୍ରିୟ ( ୨୦ଶ ଶ୍ଳୋକର 'ବିବୃତି' ଦେଖ ) ।

**୨୦। ଅନ୍ୱୟଦୀପିକା**—ଅୟଂ (ଏହିଆତ୍ମା) କଦାଚିତ୍ ନ ଜାୟତେ ( କେବେହେଲେ ଜନ୍ମଗ୍ରହଣ କରନ୍ତି ନାହିଁ) । ନବାମ୍ରିୟତେ (ବା ମରନ୍ତି ନାହିଁ) । ଭୂତ୍ୱା ବା ଭୂୟଃ ନ ଭବିତା ( ଜାତ ହୋଇ ବିଦ୍ୟମାନ ରହନ୍ତି ନାହିଁ ଅର୍ଥାତ୍ ଜନ୍ମଗ୍ରହଣ ପରେ ଏହାଙ୍କର ଅସ୍ତିତ୍ୱ ହୁଏ ନାହିଁ ) । ଅୟଂ (ଏ) ଅଜଃ (ଜନ୍ମରହିତ), ନିତ୍ୟଃ (ସର୍ବଦା ଏକରୂପ) ଶାଶ୍ୱତଃ ( ବିକାରଶୂନ୍ୟ ) ପୁରାଣଃ ( ପୁରାତନ, ପରିଣାମଶୂନ୍ୟ ); ଶରୀରେ ହନ୍ୟମାନେ ( ଶରୀର ନଷ୍ଟହେଲେ ) ଅୟଂ (ଏ) ନ ହନ୍ୟତେ (ନଷ୍ଟ ହୁଅନ୍ତି ନାହିଁ) ।

**ଅନୁବାଦ**—ଏହି ଆତ୍ମା କେବେହେଲେ ଜନ୍ମନ୍ତି ନାହିଁ ବା ମରନ୍ତି ନାହିଁ । ଅନ୍ୟାନ୍ୟ ଲୌକିକ ବସ୍ତୁପରି ଜନ୍ମହୋଇ ଅସ୍ତିତ୍ୱ ଲାଭ କରନ୍ତି ନାହିଁ ଅର୍ଥାତ୍ ଏ ସଦ୍‌ରୂପରେ ନିତ୍ୟ ବିଦ୍ୟମାନ । ଏ ଜନ୍ମ ରହିତ, ସର୍ବଦା ଏକରୂପ, ଶାଶ୍ୱତ, ପୁରାତନ; ଶରୀର ନଷ୍ଟ ହେଲେ ମଧ୍ୟ ଏହାଙ୍କର ବିନାଶ ହୁଏ ନାହିଁ ।

**ସୁବୋଧିନୀ ଟୀକା**—ନ ହନ୍ୟତେ ଇତ୍ୟେତଦେବ ଷଡ୍‌ଭାବ ବିକାରଶୂନ୍ୟତ୍ୱେନ ଦ୍ରଢ଼ୟତି ନେତି । ନ ଜାୟତ ଇତି ଜନ୍ମ ପ୍ରତିଷେଧଃ । ନ

ମ୍ରିୟତ ଇତି ବିନାଶ ପ୍ରତିଷେଧଃ । ବାଶବ୍ଦଶ୍ଚାର୍ଥେ । ନାୟଂ ଭୂତ୍ୱୋତ୍ପଦ୍ୟ ଭବିତା ଭବତ୍ୟସ୍ତିତ୍ୱଂ ଭଜତେ । କିନ୍ତୁ ପ୍ରାଗେବ ସ୍ୱତଃ ସଦ୍ରୂପ ଇତି ଜନ୍ମାନନ୍ତରାସ୍ତିତ୍ୱଲକ୍ଷଣଦ୍ୱିତୀୟବିକାରପ୍ରତିଷେଧଃ । ତତ୍ର ହେତୁଃ ଯସ୍ମାଦଜଃ । ଯୋହି ଜାୟତେ ସ ହି ଜନ୍ମାନ୍ତରମସ୍ତିତ୍ୱଂ ଭଜତେ । ନତୁ ଯଃ ସ୍ୱତ ଏବାସ୍ତି ସ ଭୂୟୋଽପ୍ୟନ୍ୟଦସ୍ତିତ୍ୱଂ ଭଜତ ଇତ୍ୟର୍ଥଃ । ନିତ୍ୟଃ ସର୍ବଦୈକରୂପ ଇତି ବୃଦ୍ଧିପ୍ରତିଷେଧଃ । ଶାଶ୍ୱତଃ ଶଶ୍ୱଦ୍‌ଭବ ଇତ୍ୟପକ୍ଷୟପ୍ରତିଷେଧଃ । ପୁରାଣ ଇତି ବିପରିଣାମପ୍ରତିଷେଧଃ । ପୁରାପି ନବଏବ । ନ ତୁ ପରିଣାମତୋ ରୂପାନ୍ତରଂ ପ୍ରାପ୍ୟ ନବୋ ଭବତୀତ୍ୟର୍ଥଃ । ଯଦ୍‌ବା ନ ଭବିତେତ୍ୟସ୍ୟାନୁଷଙ୍ଗଂ କୃତ୍ୱା ଭୂୟୋଽଧିକଂ ଯଥା ଭବତି ତଥା ନ ଭବତୀତି ବୃଦ୍ଧିପ୍ରତିଷେଧଃ । ଅଜୋ ନିତ୍ୟ ଇତି ଦ୍ୱୟଂ ବୃଦ୍ଧ୍ୟଭାବେ ହେତୁରିତ୍ୟ ପୌନରୁକ୍ତ୍ୟମ୍ । ତଦେବଂ ଜାୟତେଽସ୍ତି ବର୍ଦ୍ଧତେ ବିପରିଣମତେଽପକ୍ଷୀୟତେ ବିନଶ୍ୟତୀତ୍ୟେବଂ ଯାସ୍କାଦିଭିରୁକ୍ତାଃ ଷଡ୍‌-ଭାବବିକାରା ନିରସ୍ତାଃ । ଯଦର୍ଥ ମେତେ ବିକାରା ନିରସ୍ତା ସ୍ତଂ ପ୍ରସ୍ତୁତଂ ବିନାଶାଭାବ ମୁପସଂହରତି—ନ ହନ୍ୟତେ ହନ୍ୟମାନେ ଶରୀର ଇତି ।

**ବିବୃତି**—ଆତ୍ମା କାହାକୁ ହତ୍ୟା କରନ୍ତି ନାହିଁ ବା କାହାଦ୍ୱାରା ହତ ହୁଅନ୍ତି ନାହିଁ—ଏହି ବିଷୟଟିକୁ ଭଲକରି ବୁଝାଇବା ପାଇଁ ଆତ୍ମାର ସ୍ୱରୂପ କଥିତ ହେଉଅଛି । ଜନ୍ମ, ଅସ୍ତିତ୍ୱ, ବୃଦ୍ଧି, ବିପରିଣାମ, ଅପକ୍ଷୟ ଓ ବିନାଶ—ଲୌକିକ ବସ୍ତୁର ଏହି ଛଅ ପ୍ରକାର ବିକାରହେବା ଶାସ୍ତ୍ରମାନଙ୍କରେ ଉଲ୍ଲେଖ ଅଛି । ଆତ୍ମା ଏହି ଛଅ ପ୍ରକାର ବିକାର ଶୂନ୍ୟ—ଅତଏବ ଲୌକିକ ବସ୍ତୁ ନୁହେ । 'ନ ଜାୟତେ ବା ନ ମ୍ରିୟତେ'—ଏହି ଲକ୍ଷଣ ଦ୍ୱାରା ଆତ୍ମାର ଜନ୍ମ ଏବଂ ବିନାଶ ପ୍ରତିଷିଦ୍ଧ ହେଲା । ଜନ୍ମ ପରେ ଯେଉଁ ବିଦ୍ୟମାନତା ତାହାର ନାମ 'ଅସ୍ତିତ୍ୱ'—'ନାୟଂଭୂତ୍ୱା ଭବିତା' ଅର୍ଥାତ୍ ଜନ୍ମ ହୋଇ ଅସ୍ତିତ୍ୱ ଲାଭ କରନ୍ତି ନାହିଁ—ଏହାଦ୍ୱାରା ଅସ୍ତିତ୍ୱ-ବିକାର ପ୍ରତିଷିଦ୍ଧ ହେଲା । 'ନିତ୍ୟ' ଓ 'ଶାଶ୍ୱତ'—ଯଦଦ୍ୱାରା ବୃଦ୍ଧି ଓ ଅପକ୍ଷୟ ପ୍ରତିଷିଦ୍ଧ ହେଲା । 'ପୁରାଣ' ଅର୍ଥାତ୍ ସନାତନ—ଆତ୍ମା ଯେ ଚିରନୂତନ ଭାବରେ ବିଦ୍ୟମାନ ଏଥିରୁ ଏହା ବୁଝାଗଲା—ଏହାଦ୍ୱାରା ବିପରିଣାମ ନିବାରିତ ହେଲା । ତେଣୁ ଆତ୍ମାଙ୍କଠାରେ କର୍ତ୍ତୃତ୍ୱ ଓ କର୍ମତ୍ୱ ଆରୋପିତ ହୁଏ ନାହିଁ ।

ଦ୍ୱିତୀୟ ଅଧ୍ୟାୟର ୧୯ଶ ଓ ୨୦ଶ ଶ୍ଳୋକ ଦୁଇଟି କଠୋପନିଷଦ୍ ନାମକ ଶ୍ରୁତିଗ୍ରନ୍ଥରୁ ଗୃହୀତ ହୋଇଅଛି ।

କଠୋପନିଷଦ୍ ୨ୟ ବଲ୍ଲୀର ୧୯ଶ ମନ୍ତ୍ର—

ହନ୍ତା ଚେନ୍ମନ୍ୟତେ ହନ୍ତୁଂ ହତଶ୍ଚେନ୍ମନ୍ୟତେ ହତମ୍,
ଉଭୌ ତୌ ନ ବିଜାନୀତୋ ନାୟଂ ହନ୍ତି ନ ହନ୍ୟତେ ।

'ବେଦାବିନାଶିନଂ ନିତ୍ୟଂ ଯ ଏନମଜମବ୍ୟୟମ୍,'
କଥଂ ସ ପୁରୁଷଃ ପାର୍ଥ କଂ ଘାତୟତି ହନ୍ତି କମ୍ । ୨୧ ।

**କଠୋପନିଷଦ୍ ୨ୟ ବଲ୍ଲୀର ୧୮ଶ ମନ୍ତ୍ରଃ—**

**ନ ଜାୟତେ ମ୍ରିୟତେ ବା ବିପଶ୍ଚିନ୍ନାୟଂ କୁତଶ୍ଚିନ୍ନ ବଭୂବ କଶ୍ଚିତ୍**
**ଅଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ ନ ହନ୍ୟତେ ହନ୍ୟମାନେ ଶରୀରେ ।**

ଉପନିଷଦ୍ ଅଂଶ ବେଦର ଅନ୍ତ ବା ଶେଷଭାଗ; ଏତଣୁ ସେ ସବୁକୁ ବେଦାନ୍ତ କୁହାଯାଏ । ଶ୍ରୀମଦ୍‌ଭଗବଦ୍‌ଗୀତା ଉପନିଷଦ୍‌ର ପରବର୍ତ୍ତୀ କାଳରେ ଯେ ରଚିତ ହୋଇଥିଲା ଏହା ଏଥିରୁ ସ୍ପଷ୍ଟରୂପେ ଜଣାଯାଏ । ଏହି ସବୁ ଆଲୋଚନାରୁ ଜଣାଗଲା, ଆତ୍ମା ଅବିନାଶୀ ଓ ଅକର୍ତ୍ତା, ତେଣୁ ଭୀଷ୍ମାଦିଙ୍କ ପାଇଁ ଅର୍ଜୁନଙ୍କ ଶୋକ ଏଥିରେ ନିବାରିତ ହେଲା । ଏ ସବୁ ଦାର୍ଶନିକ ବିଚାର । ମାତ୍ର ଲୌକିକ ଦୃଷ୍ଟିରେ ଦେଖିଲେ ଭୀଷ୍ମାଦିଙ୍କୁ ହତ୍ୟା କରିବା ଦ୍ୱାରା ଅର୍ଜୁନଙ୍କୁ ଯେଉଁ ପ୍ରାଣିହତ୍ୟା ବା ନରହତ୍ୟା ଦୋଷ ଲାଗିବ ସେ ପାପରୁ ହତ୍ୟାକାରୀ କିପରି ରକ୍ଷା ପାଇବେ ? ଏହାର ଉତ୍ତର ଏହି ଗୀତାର ୧୮ଶ ଅଧ୍ୟାୟରେ ଅଛି । ପ୍ରସଙ୍ଗ ଉପସ୍ଥିତ ହେବାରୁ ଏଠାରେ ତାହାର ଉଲ୍ଲେଖ ମାତ୍ର କରାଯାଉ ଅଛି ।

ପୂର୍ବେ କୁହାଯାଇ ଅଛି 'ମୁଁ' (ଅହଂ) କହିଲେ ଯାହା ବୁଝାଯାଏ ତାହାହିଁ ଆତ୍ମା । ଆତ୍ମାରେ କର୍ତ୍ତୃତ୍ୱାଭିମାନ ଜାତ ହେଲେ ଅର୍ଥାତ୍ ମୁଁ କରୁଛି, ମୁଁ ଦେଉଛି—ଏହିଳି ଅଭିମାନ ଜାତ ହେଲେ ତାହାକୁ 'ଅହଂକାର' କୁହାଯାଏ । ମନୁଷ୍ୟ ଯେତେବେଳେ ଅହଂକାରଶୂନ୍ୟ ହୋଇ କର୍ମ କରେ, ସେତେବେଳେ ତାକୁ କୌଣସି ପାପ ସ୍ପର୍ଶ କରେ ନାହିଁ ।

ତତ୍ରୈବଂ ସତି କର୍ତ୍ତାରମାତ୍ମାନଂ କେବଳଂ ତୁ ଯଃ,
ପଶ୍ୟତ୍ୟକୃତବୁଦ୍ଧିତ୍ୱାନ୍ନ ସ ପଶ୍ୟତି ଦୁର୍ମତିଃ ।
ଯସ୍ୟ ନାହଂକୃତୋ ଭାବଃ ବୁଦ୍ଧିର୍ଯସ୍ୟ ନ ଲିପ୍ୟତେ,
ହତ୍ୱାପି ସ ଇମାଁଲ୍ଲୋକାନ୍ ନ ହନ୍ତି ନ ନିବଧ୍ୟତେ । (୧୮।୧୬-୧୭)

ଯେ ନିଃସଙ୍ଗ ଆତ୍ମାକୁ କର୍ତ୍ତା ବୋଲି ମନେକରେ ତାହାର ବୁଦ୍ଧି ପରିମାର୍ଜିତ ହୋଇ ନ ଥିବାରୁ ସେ ପ୍ରକୃତତତ୍ତ୍ୱ ଜାଣିପାରେ ନାହିଁ । ଯାହାର 'ମୁଁ କରୁଛି' ଏ ଭାବ ନାହିଁ ବା ଅହଂକାର ବୁଦ୍ଧି ନାହିଁ ଏବଂ ଯାହାର ବୁଦ୍ଧି କର୍ମଫଳରେ ଆସକ୍ତ ହୁଏ ନାହିଁ, ସେ ଏ ପୃଥିବୀରେ ସମସ୍ତଙ୍କୁ ହତ୍ୟା କଲେ ସୁଦ୍ଧା କାହାରିକୁ ମାରେ ନାହିଁ ଏବଂ ତାହାର ଫଳଭାଗୀ ହୁଏ ନାହିଁ ।

**୨୧ । ଅନ୍ୱୟଦୀପିକା**—ଯଃ (ଯେଉଁଲୋକ) ଏନଂ (ଏହି ଆତ୍ମାଙ୍କୁ) ଅବିନାଶିନଂ (ଅବିନାଶୀ) ନିତ୍ୟମ୍ ଅଜମ୍ ଅବ୍ୟୟଂ ବେଦ (ନିତ୍ୟ ଏବଂ ଜନ୍ମ ଓ

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ
ନବାନି ଗୃହ୍ଣାତି ନରୋଽପରାଣି;
ତଥା ଶରୀରାଣି ବିହାୟ ଜୀର୍ଣ୍ଣା—
ନ୍ୟନ୍ୟାନି ସଂଯାତି ନବାନି ଦେହୀ । ୨୨ ।

କ୍ଷୟରହିତ ବୋଲି ଜାଣନ୍ତି) ପାର୍ଥ (ହେ ଅର୍ଜୁନ) ସଃ ପୁରୁଷଃ (ସେ ଲୋକ) କଥଂ (କିପରି) କଂ (କାହାକୁ) ଘାତୟତି (ବଧକରାନ୍ତି) [ବା] କଂ ହନ୍ତି (ବିନାଶ କରନ୍ତି)।

**ଅନୁବାଦ**—ଯେଉଁ ଲୋକ ଏହି ଆତ୍ମାକୁ ଅବିନାଶୀ, ନିତ୍ୟ, ଅଜ ଓ ଅବ୍ୟୟ ବୋଲି ଜାଣନ୍ତି, ହେ ଅର୍ଜୁନ ! ସେ ଲୋକ କିପରି କାହାକୁ ହତ୍ୟା କରାଇବେ ଏବଂ କିପରି ବା କାହାକୁ ହତ୍ୟା କରିବେ ?

**ସୁବୋଧିନୀ ଟୀକା**—ଅତଏବ ହନ୍ତୃତ୍ୱାଭିବୋଽପି ପୂର୍ବୋକ୍ତଃ ସିଦ୍ଧ ଇତ୍ୟାହ ବେଦାବିନାଶିନମିତ୍ୟାଦ । ନିତ୍ୟଂ ବୃଦ୍ଧିଶୂନ୍ୟମ୍ । ଅବ୍ୟୟମପକ୍ଷୟଶୂନ୍ୟମ୍ । ଅଜମବିନାଶିନଂ ଚ । ଯୋ ବେଦ ସ ପୁରୁଷଃ କଂ ହନ୍ତି ? କଥଂ ବା ହନ୍ତି ? ଏବଂଭୂତସ୍ୟ ବଧେ ସାଧନାଭାବାତ୍ । ତଥା ସ୍ୱୟଂ ପ୍ରୟୋଜକୋ ଭୂତ୍ୱାନ୍ୟେନ କଂ ଘାତୟତି, କଥଂ ବା ଘାତୟତି ? ନ କଞ୍ଚିଦପି, ନ କଥଞ୍ଚିଦପୀତ୍ୟର୍ଥଃ, ଅନେନ ମହ୍ୟପି ପ୍ରୟୋଜକତ୍ୱାଦୋଷଦ୍ଦୃଷ୍ଟିଂ ମା କାର୍ଷୀରିତ୍ୟୁକ୍ତଂ ଭବତି ।

**ବିବୃତି**—ଯାହାର ଜ୍ଞାନ ହୋଇଅଛି ଯେ, ଆତ୍ମା ଅବିନାଶୀ ସେ କାହାର ବିନାଶର କାରଣ ହେଲି ବୋଲି ଦୁଃଖିତ ହେବ କିପରି ? ଆତ୍ମଜ୍ଞାନ ହେଲେ ଅଜ୍ଞାନର ନିବୃତ୍ତି ହୁଏ ଏବଂ ତତ୍ପରେ 'ମୁଁ' ବା 'ମୋର' ଏଭଳି ଜ୍ଞାନର ଅଭାବ ହୋଇପଡ଼େ; ଏ ଜ୍ଞାନର ଅଭାବ ହେଲେ କାର୍ଯ୍ୟତଃ ରାଗଦ୍ୱେଷାଦିର ନିବୃତ୍ତି ହୁଏ ଏବଂ ତଦନନ୍ତର କର୍ତ୍ତୃତ୍ୱ, ଭୋକ୍ତୃତ୍ୱାଦିର ଶାନ୍ତ ହୋଇଯାଏ । ଅତଏବ ହେ ଅର୍ଜୁନ, "ତୁମେ ବଧକର୍ତ୍ତା, ଭୀଷ୍ମାଦି ବଧ୍ୟ, ମୁଁ ବଧ କାର୍ଯ୍ୟର ପ୍ରୟୋଜକ" ଏପରି ମନେକର ନାହିଁ ।

**୨୨ । ଅନ୍ୱୟଦୀପିକା**—ଯଥା (ଯେପରି) ନରଃ (ମନୁଷ୍ୟ) ଜୀର୍ଣ୍ଣାନି ( ପୁରୁଣା ) ବାସାଂସି (ବସ୍ତ୍ରସବୁ) ବିହାୟ (ପରିତ୍ୟାଗକରି) ଅପରାଣି (ଅନ୍ୟ) ନବାନି (ନୂତନ ବସ୍ତ୍ର) ଗୃହ୍ଣାତି (ଗ୍ରହଣକରନ୍ତି), ତଥା (ସେହିପରି) ଦେହୀ (ଆତ୍ମା) ଜୀର୍ଣ୍ଣାନି ଶରୀରାଣି (ଜୀର୍ଣ୍ଣ ଦେହସକଳ) ବିହାୟ (ତ୍ୟାଗକରି) ଅନ୍ୟାନି (ଅନ୍ୟ) ନବାନି (ନୂତନ ଦେହ) ସଂଯାତି (ପାଏ)।

**ଅନୁବାଦ**—ଯେପରି ମନୁଷ୍ୟ ଜୀର୍ଣ୍ଣ ବସ୍ତ୍ର ପରିତ୍ୟାଗ କରି ନୂତନ ବସ୍ତ୍ର ଗ୍ରହଣ କରେ, ସେହିପରି ଆତ୍ମା ଜୀର୍ଣ୍ଣ ଶରୀର ପରିତ୍ୟାଗ କରି ନୂତନ ଶରୀର ଧାରଣ କରେ ।

ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ,
ନ ଚୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ ॥ ୨୩ ॥

**ସୁବୋଧିନୀ ଟୀକା**—ତତ୍ତ୍ୱାତ୍ମନୋଽବିନାଶେଽପି ତଦାଶ୍ରୟ ଶରୀରନାଶଂ ପର୍ଯ୍ୟାଲୋଚ୍ୟ ଶୋଚୁମୀଚିତେତ୍, ତତ୍ରାହ । ବାସାଂସୀତ୍ୟାଦି କର୍ମନିବନ୍ଧନାନାଂ ନୂତନାନାଂ ଦେହାନାମବଶ୍ୟମ୍ଭାବିତ୍ୱାନ୍ନ ତଜ୍ଜୀର୍ଣ୍ଣଦେହନାଶେ ଶୋକାବକାଶ ଇତ୍ୟର୍ଥଃ ।

**ବିବୃତି**—ଏପର୍ଯ୍ୟନ୍ତ ଭଗବାନ୍ ଯେଉଁ ଉପଦେଶ ଦେଲେ, ଅର୍ଜ୍ଜୁନ ତହିଁରୁ ବୁଝିଲେ ଯେ ଆତ୍ମା ଅବିନାଶୀ, ଶରୀରହିଁ ନଶ୍ୱର । କିନ୍ତୁ ଭୀଷ୍ମାଦିଙ୍କର ଏହି ନଶ୍ୱରଦେହ ନାନାବିଧ ସତ୍‌କାର୍ଯ୍ୟ ଓ ସଦନୁଷ୍ଠାନର ସ୍ଥାନ—ଏପରି ଅବସ୍ଥାରେ କି ପ୍ରକାରରେ ଏ କର୍ମକ୍ଷମ ଶରୀରର ବିନାଶ କରାଯିବ ? ଏହାର ଉତ୍ତରରେ ଭଗବାନ୍ କହୁଅଛନ୍ତି, ଭୀଷ୍ମାଦି ଏ ଜୀର୍ଣ୍ଣ ଶରୀର ତ୍ୟାଗ କଲେ ପ୍ରକୃତିର ନିୟମ ଅନୁସାରେ ଅନ୍ୟ ଉତ୍କୃଷ୍ଟ ଶରୀର ଧାରଣ କରିବେ । ଶ୍ରୁତିରେ ପ୍ରମାଣ ଅଛି—

"ଅନ୍ୟନ୍ନବତରଂ କଲ୍ୟାଣତରଂ ରୂପଂ କୁରୁତେ ପିତ୍ର୍ୟଂ ବା ଗାନ୍ଧର୍ବଂ ବା ଦୈବଂ ବା ପ୍ରାଜାପତ୍ୟଂ ବା ବ୍ରାହ୍ମଂ ବା । (ବୃ. ଉ.)

ଜୀବ ପୂର୍ବ ଦେହ ପରିତ୍ୟାଗ କରି ପୁଣ୍ୟ କର୍ମ ଫଳରେ ପିତୃଲୋକ, ଗନ୍ଧର୍ବଲୋକ, ଦେବଲୋକ, ପ୍ରଜାପତିଲୋକ ବା ବ୍ରହ୍ମଲୋକରେ ଉତ୍କୃଷ୍ଟ ନୂତନ ଶରୀର ପ୍ରାପ୍ତ ହୋଇଥାଏ ।"

୨୩ । **ଅନ୍ୱୟଦୀପିକା**—ଶସ୍ତ୍ରାଣି (ଶସ୍ତ୍ରସମୂହ) ଏନଂ (ଏହି ଆତ୍ମାଙ୍କୁ) ନ ଛିନ୍ଦନ୍ତି (ଛେଦନ କରି ପାରନ୍ତି ନାହିଁ) । ପାବକଃ ( ଅଗ୍ନି ) ଏନଂ (ଏହାଙ୍କୁ) ନ ଦହତି (ଦଗ୍ଧକରି ପାରେ ନାହିଁ), ଆପଃ ଚ (ଏବଂ ଜଳ ) ଏନଂ ( ଏହାଙ୍କୁ) ନ କ୍ଲେଦୟନ୍ତି ( ଓଦା କରିପାରେ ନାହିଁ ), ମାରୁତଃ ( ବାୟୁ ) ନ ଶୋଷୟତି (ଏହାଙ୍କୁ ଶୁଷ୍କ କରିପାରେ ନାହିଁ ) ।

**ଅନୁବାଦ**—ଶସ୍ତ୍ରସମୂହ ଏହି ଆତ୍ମାଙ୍କୁ ଛେଦନ କରିବାରେ ଅକ୍ଷମ, ଅଗ୍ନି ଏହାଙ୍କୁ ଦଗ୍ଧ କରି ପାରେ ନାହିଁ, ଜଳ ଏହାଙ୍କୁ ଆର୍ଦ୍ର କରିପାରେ ନାହିଁ ଏବଂ ବାୟୁ ଏହାଙ୍କୁ ଶୁଷ୍କ କରିପାରେ ନାହିଁ ।

**ସୁବୋଧିନୀ ଟୀକା**—କଥଂ ହନ୍ତୀତ୍ୟନେନୋକ୍ତଂ ବଧସାଧନାଭାବଂ ଦର୍ଶୟନ୍ ଅବିନାଶିତ୍ୱମାତ୍ମନଃ ସ୍ଫୁଟୀକରୋତି—ନୈନମିତ୍ୟାଦି । ଆପୋ ନୈନଂ-କ୍ଲେଦୟନ୍ତି । ମୃଦୁକରଣେନ ଶିଥିଲଂ ନ କୁର୍ବନ୍ତି । ମାରୁତୋଽପ୍ୟେନଂ ନ ଶୋଷୟତି ।

ଅଚ୍ଛେଦ୍ୟୋଽୟମଦାହ୍ୟୋଽୟ ମକ୍ଲେଦ୍ୟୋଽଶୋଷ୍ୟ ଏବ ଚ,
ନିତ୍ୟଃ ସର୍ବଗତଃ ସ୍ଥାଣୁରଚଲୋଽୟଂ ସନାତନଃ । ୨୪ ।
ଅବ୍ୟକ୍ତୋଽୟ ମଚିନ୍ତ୍ୟୋଽୟମବିକାର୍ଯ୍ୟୋଽୟମୁଚ୍ୟତେ,
ତସ୍ମାଦେବଂ ବିଦିତ୍ୱୈନଂ ନାନୁଶୋଚିତୁମର୍ହସି ।୨୫।

**ବିବୃତି**—ଦେହର ଅତୀତ ଆତ୍ମାର ସ୍ୱରୂପ କେହି ହେଲେ ଭାଷାରେ ବର୍ଣ୍ଣନା କରି ପାରନ୍ତି ନାହିଁ । ଆତ୍ମା ସ୍ୱୟଂପ୍ରକାଶ । ଯାହାଙ୍କର ଅଜ୍ଞାନାବରଣ ଦୂର ହୋଇଅଛି—ସେ ଜାଣନ୍ତି ଆତ୍ମା କି ବସ୍ତୁ । ଏଠାରେ ଏତିକିମାତ୍ର କୁହାଯାଉଛି ଯେ, ଦେହର ଲକ୍ଷଣ ଆତ୍ମାରେ ନାହିଁ । ଦେହ ଛିନ୍ନ ହୁଏ, ଦଗ୍ଧ ହୁଏ, ସିକ୍ତ ହୁଏ, ଶୁଷ୍କ ହୁଏ କିନ୍ତୁ ଆତ୍ମା ଛେଦ୍ୟ ନୁହେ, ଦାହ୍ୟ ନୁହେ, କ୍ଲେଦ୍ୟ ନୁହେ, ଶୋଷ୍ୟ ନୁହେ ।

୨୪ । **ଅନ୍ୱୟଦୀପିକା**— ଅୟଂ ( ଏହି ଆତ୍ମା ) ଅଚ୍ଛେଦ୍ୟ ( ଛିନ୍ନ ହେବାର ବସ୍ତୁ ନୁହେ ), ଅୟଂ ଅଦାହ୍ୟଃ ( ଦଗ୍ଧ ହେବାର ବସ୍ତୁ ନୁହେ ), ଅକ୍ଲେଦ୍ୟଃ ( ଆର୍ଦ୍ର ହେବାର ବସ୍ତୁ ନୁହେ ), ଅଶୋଷ୍ୟଃ ଚ ଏବ ( ଏବଂ ଶୁଷ୍କ ହେବାର ବସ୍ତୁ ନୁହେ), ଅୟଂ (ଏ) ନିତ୍ୟଃ (ଅବିନାଶୀ) ସର୍ବଗତଃ (ସର୍ବବ୍ୟାପୀ) ସ୍ଥାଣୁଃ (ସ୍ଥିର), ଅଚଳଃ (ନିଶ୍ଚଳ ଅର୍ଥାତ୍ ଅପରିବର୍ତ୍ତନଶୀଳ) ସନାତନଃ (ଅନାଦି) ।

**ଅନୁବାଦ**—ଆତ୍ମା ଛିନ୍ନ ହେବାର, ଦଗ୍ଧ ହେବାର, ଆର୍ଦ୍ର ହେବାର ଅଥବା ଶୁଷ୍କହେବାର ବସ୍ତୁ ନୁହନ୍ତି । ସେ ନିତ୍ୟ, ସର୍ବବ୍ୟାପୀ, ସ୍ଥିର, ଅଚଳ ଓ ଅନାଦି ।

**ସୁବୋଧିନୀ ଟୀକା**—ତତହେତୁନାହ—ଅଚ୍ଛେଦ୍ୟ ଇତି ସାର୍ଦ୍ଧେନ, ନିରବୟବତ୍ୱାଦଚ୍ଛେଦ୍ୟୋଽୟମକ୍ଲେଦ୍ୟଶ୍ଚ, ଅମୂର୍ତ୍ତିତ୍ୱାଦଦାହ୍ୟଃ, ଦ୍ରବତ୍ୱାଭାବା- ଦଶୋଷ୍ୟ ଇତିଭାବଃ—ଇତଶ୍ଚ ଛେଦାଦି ଯୋଗ୍ୟୋ ନ ଭବତି । ଯତୋ ନିତ୍ୟୋଽ- ବିନାଶୀ । ସର୍ବଗତଃ ସର୍ବତ୍ରଗତଃ । ସ୍ଥାଣୁଃ ସ୍ଥିରସ୍ୱଭାବୋ ରୂପାନ୍ତରାପତ୍ତିଶୂନ୍ୟଃ । ଅଚଳଃ ପୂର୍ବରୂପା ପରିତ୍ୟାଗୀ, ସନାତନୋଽନାଦିଃ ।

**ବିବୃତି**—ଆତ୍ମାର ସ୍ୱରୂପ ଦୁର୍ଜ୍ଞେୟ, ତେଣୁ ଏ ବିଷୟ ସହଜରେ ବୁଝି ହୁଏ ନାହିଁ, ତେଣୁ ଏକ କଥାକୁ ଭିନ୍ନ ଭିନ୍ନ ଭାବରେ କୁହା ଯାଇଅଛି । ୨୩ଶ ଶ୍ଳୋକରେ ଯାହା କୁହାଯାଇଥିଲା ୨୪ଶ ଶ୍ଳୋକରେ ସେହି କଥାହିଁ ଭିନ୍ନଭାଷାରେ କୁହାଗଲା । ଶ୍ୱେତାଶ୍ୱେତର ଉପନିଷଦରେ ଆତ୍ମତତ୍ତ୍ୱ ଏହି ଭାଷାରେହିଁ ବର୍ଣ୍ଣିତ ହୋଇଅଛି ।

୨୫ । **ଅନ୍ୱୟଦୀପିକା**—ଅୟଂ ଅବ୍ୟକ୍ତଃ (ଇନ୍ଦ୍ରିୟଗୋଚର ନୁହନ୍ତି), ଅୟଂ ଅଚିନ୍ତ୍ୟଃ ( ଏ ଚିନ୍ତାର ବା ମନର ଅଗୋଚର ), ଅୟଂ ଅବିକାର୍ଯ୍ୟଃ (ଏ ସର୍ବବିଧ ବିକାର ରହିତ) ଉଚ୍ୟତେ (କଥିତ ହୁଅନ୍ତି) । ତସ୍ମାତ୍ (ସେହି

ଅଥଚୈନଂ ନିତ୍ୟଜାତଂ ନିତ୍ୟଂ ବା ମନ୍ୟସେ ମୃତମ୍,
ତଥାପି ତ୍ୱଂ ମହାବାହୋ ନୈବଂ ଶୋଚିତୁମର୍ହସି । ୨୬ ।

ହେତୁରୁ) ଏନଂ ( ଏହି ଅତ୍ମାଙ୍କୁ ) ଏବଂ ( ଏହି ପ୍ରକାର ) ବିଦିତ୍ୱା ( ଜାଣି ) ଅନୁଶୋଚିତୁଂ ନ ଅର୍ହସି ( ଶୋକ କରିବା ଉଚିତ ନୁହେ ) ।

**ଅନୁବାଦ**—ଅତ୍ମା ପ୍ରକୃତରେ ଅବ୍ୟକ୍ତ, ଅଚିନ୍ତ୍ୟ ଓ ବିକାରଶୂନ୍ୟ—ଏହିପରି ଉକ୍ତ ହୋଇଅଛି । ଅତଏବ ଅତ୍ମାର ଏହି ସ୍ୱରୂପ ଜାଣି ଶୋକକରିବା ତୁମ୍ଭପକ୍ଷରେ ଉଚିତ ନୁହେ ।

**ସୁବୋଧିନୀ ଟୀକା**—କିଞ୍ଚ ଅବ୍ୟକ୍ତ ଇତି, ଅବ୍ୟକ୍ତ ଶ୍ଚକ୍ଷୁରାଦ୍ୟବିଷୟଃ । ଅଚିନ୍ତ୍ୟଃ ମନସୋଽପ୍ୟବିଷୟଃ, ଅବିକାର୍ଯ୍ୟଃ କର୍ମେନ୍ଦ୍ରିୟାଣାମପ୍ୟଗୋଚର ଇତ୍ୟର୍ଥଃ । ଉଚ୍ୟତ ଇତିନିତ୍ୟତ୍ୱାଦେବମ୍ଭୂତୋଽୟଂ ପ୍ରମାଣୟତି । ଉପସଂହରତି ତସ୍ମାଦେବ ମିତ୍ୟାଦି, ତଦେବାତ୍ମନୋ ଜନ୍ମବିନାଶଶଙ୍କାଭାବାନ୍ନ ଶୋକଃ କାର୍ଯ୍ୟ ଇତ୍ୟୁକ୍ତମ୍ ।

**ବିବୃତି**—ଏ ସବୁ ଉପନିଷଦ୍‌ବିଷୟ ଓ ନିର୍ଗୁଣ ଅତ୍ମାର ବର୍ଣ୍ଣନା, ସଗୁଣର ନୁହେଁ । କାରଣ ଅବିକାର୍ଯ୍ୟ ଓ ଅଚିନ୍ତ୍ୟ ବିଶେଷଣ ସଗୁଣ ପ୍ରତି ପ୍ରଯୋଜ୍ୟ ହୋଇ ପାରେ ନାହିଁ ।

**୨୬ । ଅନ୍ୱୟଦୀପିକା**—ଅଥଚ ( ଏହାପରେ ମଧ୍ୟ ) [ଯଦି] ଏନଂ (ଏହାଙ୍କୁ) ନିତ୍ୟଜାତଂ (ନିତ୍ୟ ଜନ୍ମଗ୍ରହଣଶୀଳ) ନିତ୍ୟଂ ମୃତଂ ବା ( ଅଥବା ନିତ୍ୟ ମରଣଶୀଳ) ମନ୍ୟସେ (ମନେକର), ମହାବାହୋ (ହେ ମହାବୀର) ତଥାପି (ତାହା ହେଲେ ବି) ତ୍ୱଂ ଏନଂ (ତୁମର ଏହାଙ୍କ ଉଦ୍ଦେଶ୍ୟରେ) ଶୋଚିତୁଂ (ଶୋକ କରିବା) ନ ଅର୍ହସି (ଉଚିତ ନୁହେ) ।

**ଅନୁବାଦ**—ଅତ୍ମା ନିତ୍ୟ ଜନ୍ମ ଗ୍ରହଣ କରନ୍ତି ଏବଂ ନିତ୍ୟ ମୃତ୍ୟୁମୁଖରେ ପତିତ ହୁଅନ୍ତି, ଏପରି ଯେବେ ତୁମେ ମନେ କରୁଅଛ, ତଥାପି ତୁମର ଏହାଙ୍କ ଉଦ୍ଦେଶ୍ୟରେ ଶୋକ କରିବା ଉଚିତ ନୁହେ ।

**ସୁବୋଧିନୀ ଟୀକା**—ଇଦାନୀଂ ଦେହେନ ସହାତ୍ମନୋ ଜନ୍ମ ତଦ୍‌ବିନାଶେନ ଚ ବିନାଶମଙ୍ଗୀକୃତ୍ୟାପି ଶୋକୋ ନ କାର୍ଯ୍ୟ ଇତ୍ୟାହ—ଅଥ ଚୈନମିତ୍ୟାଦି । ଅଥଚ ଯଦ୍ୟପ୍ୟେନମାତ୍ମାନଂ ନିତ୍ୟଂ ସର୍ବଦା ତତ୍ତଦ୍ଦେହେ ଜାତେ ଜାତଂ ମନ୍ୟସେ । ତଥା ତତ୍ତଦ୍ଦେହେ ମୃତେ ଚ ମୃତଂ ମନ୍ୟସେ, ପୁଣ୍ୟ-ପାପୟୋ ସ୍ତତ୍‌ଫଲଭୂତୟୋଶ୍ଚ ଜନ୍ମମରଣୟୋରାତ୍ମଗାମିତ୍ୱାତ୍ ତଥାପି ତ୍ୱଂ ଶୋଚିତୁଂ ନାର୍ହସି ।

**ବିବୃତି**—ଏ ଶ୍ଳୋକୋକ୍ତ ଉପପତ୍ତି ଗୀତାର ସିଦ୍ଧାନ୍ତ ନୁହେ, ଏହା କେବଳ ବିରୁଦ୍ଧପକ୍ଷର ଯୁକ୍ତିର ଉତ୍ତର ମାତ୍ର । 'ଧ୍ରୁବଂ ଜନ୍ମମୃତସ୍ୟଚ'-ପରଶ୍ଳୋକରେ ଏହା କହିବାଦ୍ୱାରା ଅତ୍ମାର ଅବିନାଶିତା ମଧ୍ୟ ସୂଚିତ ହେଉଅଛି । ତେବେ

ଜାତସ୍ୟ ହି ଧ୍ରୁବୋମୃତ୍ୟୁ ଧ୍ରୁବଂ ଜନ୍ମ ମୃତସ୍ୟ ଚ
ତସ୍ମାଦପରିହାର୍ଯ୍ୟେଽର୍ଥେ ନ ତ୍ୱଂ ଶୋଚିତୁ ମର୍ହସି । ୨୭ ।
ଅବ୍ୟକ୍ତାଦୀନି ଭୂତାନି ବ୍ୟକ୍ତମଧ୍ୟାନି ଭାରତ,
ଅବ୍ୟକ୍ତନିଧନାନ୍ୟେବ ତତ୍ର କା ପରିଦେବନା । ୨୮ ।

'ଅଥବା' ଶବ୍ଦ ଦେବାଦ୍ୱାରା ଏ ଶ୍ଳୋକରେ ନୂତନତ୍ତ୍ୱ କଅଣ ରହିଲା ? ସ୍ୱାମୀଜୀ କହନ୍ତି, ଆତ୍ମା ଯେବେ ମୃତ ହୁଏ ବୋଲି ତୁମେ ମନେକର ତେବେ ତୁମ୍ଭଙ୍କୁ ପାପପୁଣ୍ୟର ଫଳଭାଗୀ ହେବାକୁ ପଡ଼ିବ ନାହିଁ । ତେବେ ଦୁଃଖ କାହିଁକି ? ଏହି ଦୁଃଖ ନ କରିବାର କାରଣ ପରଶ୍ଳୋକରେ କୁହାଯାଉଅଛି ।

**୨୭ । ଅନ୍ୱୟଦୀପିକା**—ହି ( ଯେଉଁ ହେତୁରୁ ) ଜାତସ୍ୟ (ଜନ୍ମିବା ଲୋକର) ମୃତ୍ୟୁଃ ଧ୍ରୁବଃ (ମରଣ ନିଶ୍ଚିତ) ମୃତସ୍ୟ ଚ (ମୃତବ୍ୟକ୍ତିର ମଧ୍ୟ) ଜନ୍ମ ଧ୍ରୁବଂ (ଜନ୍ମିବା ନିଶ୍ଚିତ); ତସ୍ମାତ୍ (ସେହି ହେତୁରୁ) ଅପରିହାର୍ଯ୍ୟେ ଅର୍ଥେ (ଅବଶ୍ୟମ୍ଭାବୀ ବିଷୟରେ) ତ୍ୱଂ ଶୋଚିତୁଂ ନ ଅର୍ହସି (ତୁମ ପକ୍ଷରେ ଶୋକ କରିବା ଅନୁଚିତ) ।

**ଅନୁବାଦ**—କାରଣ, ଜନ୍ମହେଲେ ମୃତ୍ୟୁ ଅବଶ୍ୟ ହେବ ଏବଂ ଯାହାର ମୃତ୍ୟୁ ହେବ ସେ ନିଶ୍ଚେ ଜନ୍ମିବ । ଏହି ଅବଶ୍ୟମ୍ଭାବୀ ବିଷୟରେ ତୁମର ଶୋକ କରିବା ଉଚିତ ନୁହେ ।

**ସୁବୋଧିନୀ ଟୀକା**—କୁତ ଇତି, ଅତ ଆହ—ଜାତସ୍ୟ ଇତ୍ୟାଦି, ହି ଯସ୍ମାଜ୍ଜାତସ୍ୟ ସ୍ୱାରମ୍ଭକକର୍ମକ୍ଷୟେ ମୃତ୍ୟୁର୍ଧ୍ରୁବୋ ନିଶ୍ଚିତଃ । ମୃତସ୍ୟ ଚ ତଦ୍ଦେହ କୃତେନ କର୍ମଣା ଜନ୍ମାପି ଧ୍ରୁବମେବ । ତସ୍ମାଦେବମପରିହାର୍ଯ୍ୟେଽର୍ଥେଽବଶ୍ୟମ୍ଭାବିନି ଜନ୍ମମରଣଲକ୍ଷଣେଽର୍ଥେ ତ୍ୱଂ ବିଦ୍ୱାନ୍ ଶୋଚିତୁଂ ନାର୍ହସି, ଶୋଚିତୁଂ ଯୋଗ୍ୟୋ ନ ଭବସି ।

**ବିବୃତି**—ସ୍ଥୂଳ ଦେହପରି ଆତ୍ମାର ଜନ୍ମମରଣ ସ୍ୱୀକାର କଲେ ମଧ୍ୟ ଶୋକ କରିବା ସର୍ବଥା ଅନୁଚିତ । କାରଣ ଜନ୍ମମୃତ୍ୟୁ ଅବଶ୍ୟମ୍ଭାବୀ । ଯାହା ନିଶ୍ଚେ ଘଟିବ, ସେ ବିଷୟରେ ଶୋକ କରିବା ମୂଢ଼ଜନୋଚିତ ।

**୨୮ । ଅନ୍ୱୟଦୀପିକା**—ଭାରତ (ହେ ଭରତବଂଶଜ ଅର୍ଜ୍ଜୁନ) ଭୂତାନି (ଭୂତସମୂହ, ପ୍ରାଣିଗଣ) ଅବ୍ୟକ୍ତାଦୀନି (ପ୍ରଥମେ ଅବ୍ୟକ୍ତ) ବ୍ୟକ୍ତମଧ୍ୟାନି (ମଧ୍ୟ ଅବସ୍ଥାରେ ବ୍ୟକ୍ତ), [ଏବଂ] ଅବ୍ୟକ୍ତନିଧନାନି (ବିନାଶ ପରେ ଅବ୍ୟକ୍ତ), ତତ୍ର କା ପରିଦେବନା (ତହିଁରେ ଶୋକ କଅଣ ?)

**ଅନୁବାଦ**—ହେ ଭାରତ, ଭୂତସମୂହ ଜନ୍ମପୂର୍ବରୁ ପ୍ରଥମେ ଅବ୍ୟକ୍ତ ଅବସ୍ଥାରେ ଥିଲେ, ମଧ୍ୟଅବସ୍ଥାରେ ବ୍ୟକ୍ତ ହୋଇଥାଆନ୍ତି ଏବଂ ବିନାଶପରେ ଅବ୍ୟକ୍ତ ଅବସ୍ଥାରେ ରହନ୍ତି, ତହିଁରେ ଶୋକ କରିବ କାହିଁକି ?

**ସୁବୋଧିନୀ ଟୀକା**—କିଞ୍ଚ ଦେହାନାଂ ସ୍ୱଭାବଂ ପର୍ଯ୍ୟାଲୋଚ୍ୟ ତଦୁପାଧିକେ ଅତ୍ମନୋ ଜନ୍ମମରଣେ ଶୋକୋ ନ କାର୍ଯ୍ୟ ଇତି । ଅତ ଆହ—

ଆଶ୍ଚର୍ଯ୍ୟବତ୍ ପଶ୍ୟତି କଶ୍ଚିଦେନ-
ମାଶ୍ଚର୍ଯ୍ୟବଦ୍‌ବଦତି ତଥୈବ ଚାନ୍ୟଃ ।
ଆଶ୍ଚର୍ଯ୍ୟବଚ୍ଚୈନମନ୍ୟଃ ଶୃଣୋତି,
ଶ୍ରୁତ୍ୱାପ୍ୟେନଂ ବେଦ ନ ଚୈବ କଶ୍ଚିତ୍ । ୨୯ ।

ଅବ୍ୟକ୍ତାଦୀନୀତ୍ୟାଦି । ଅବ୍ୟକ୍ତଂ ପ୍ରଧାନମ୍ । ତଦେବାଦଦୁତ୍ପତ୍ତେଃ ପୂର୍ବରୂପଂ ଯେଷାଂ ତାନ୍ୟବ୍ୟକ୍ତାଦୀନି । ଭୂତାନି ଶରୀରାଣି, କାରଣାତ୍ମନା ସ୍ଥିତାନାମେବୋତ୍ପତ୍ତେଃ । ତଥା ବ୍ୟକ୍ତମଭିବ୍ୟକ୍ତଂ ମଧ୍ୟଂ ଜନ୍ମମରଣାନ୍ତରାଳସ୍ଥିତିଲକ୍ଷଣଂ ଯେଷାଂ ତାନି ବ୍ୟକ୍ତମଧ୍ୟାନି । ଅବ୍ୟକ୍ତେ ନିଧନଂ ଲୟୋ ଯେଷାଂ ତାନୀମାନ୍ୟେବଂଭୂତାନ୍ୟେବ ତତ୍ର ତେଷୁ କା ପରିଦେବନା ? କଃ ଶୋକନିମିତ୍ତୋ ବିଳାପଃ ? ପ୍ରତିବୁଦ୍ଧସ୍ୟ ସ୍ୱପ୍ନଦୃଷ୍ଟବସ୍ତୁଷ୍ୱିବ ଶୋକୋ ନ ଯୁଜ୍ୟତ ଇତ୍ୟର୍ଥଃ ।

**ବିବୃତି**—'ଅବ୍ୟକ୍ତ' ଶବ୍ଦର ଅର୍ଥ ଇନ୍ଦ୍ରିୟର ଅଗୋଚର । ଜନ୍ମପୂର୍ବରୁ ଆତ୍ମା ଏପରି ଅବସ୍ଥାରେ ଥାଏ, ଯାହା ଆମ୍ଭମାନଙ୍କ ଚକ୍ଷୁରାଦି ଇନ୍ଦ୍ରିୟର ଗୋଚର ହୁଏ ନାହିଁ । ମୃତ୍ୟୁପରେ ତାହା ପୁଣି ସେହି ଅବ୍ୟକ୍ତ ଅବସ୍ଥାକୁ ଫେରିଯାଏ ଏବଂ ଯଥାକାଳରେ ବ୍ୟକ୍ତଅବସ୍ଥା ପ୍ରାପ୍ତହୁଏ ବା ଜନ୍ମଗ୍ରହଣ କରେ । ଅତଏବ ଯାହା ଜନ୍ମପୂର୍ବେ ଅଜ୍ଞାତ ଥିଲା ଏବଂ ମଝିରେ କେତେଦିନ ପାଇଁ ବ୍ୟକ୍ତ ହୁଏ ଏବଂ ବିନାଶପରେ ପୁନର୍ବାର ଅଜ୍ଞାତ ହେବ— ସେଥିପାଇଁ ଶୋକ କାହିଁକି ? ନିଜର ସ୍ତ୍ରୀ, ପୁତ୍ର, ବନ୍ଧୁମାନଙ୍କ ସଙ୍ଗରେ ପୂର୍ବେ କି ସମ୍ବନ୍ଧ ଥିଲା—ଜାଣ ନାହିଁ, ମୃତ୍ୟୁପରେ ମଧ୍ୟ ଏମାନଙ୍କ ସଙ୍ଗରେ କି ସମ୍ବନ୍ଧ ରହିବ ଜାଣ ନାହିଁ, ଏପରି ଅବସ୍ଥାରେ 'ରାତିରେ ପାନ୍ଥଶାଳାରେ ମିଳନ ଏବଂ ପ୍ରଭାତରେ ବିଭିନ୍ନ ସ୍ଥାନକୁ ଗମନ'—ପରି ସାଂସାରିକ କ୍ଷଣିକ ସମ୍ବନ୍ଧରେ ମୁଗ୍ଧହୋଇ ଶୋକ କର ନାହିଁ । ଆତ୍ମାର ଅନିତ୍ୟତା ସ୍ୱୀକାର କଲେ ମଧ୍ୟ ଶୋକ କରିବା ବ୍ୟର୍ଥ— ଏହାହିଁ ସିଦ୍ଧ ହେଲା ।

୨୯ । **ଅନ୍ୱୟଦୀପିକା**—କଶ୍ଚିତ୍ (କେହି) ଏନଂ (ଏହି ଆତ୍ମାକୁ) ଆଶ୍ଚର୍ଯ୍ୟବତ୍ ପଶ୍ୟତି (ଆଶ୍ଚର୍ଯ୍ୟରୂପେ ଦେଖନ୍ତି); ତଥୈବ ଚ (ସେହିପରି) ଅନ୍ୟଃ (ଅନ୍ୟ କେହି) ଆଶ୍ଚର୍ଯ୍ୟବତ୍ ବଦତି (ଆଶ୍ଚର୍ଯ୍ୟରୂପେ କହନ୍ତି) ଅନ୍ୟଃ ଚ (ଅନ୍ୟ କେହି) ଏନଂ (ଏହାଙ୍କୁ) ଆଶ୍ଚର୍ଯ୍ୟବତ୍ ଶୃଣୋତି (ଆଶ୍ଚର୍ଯ୍ୟଭାବରେ ଶୁଣନ୍ତି) କଶ୍ଚିତ୍ ଚ (କେହି ବା) ଶ୍ରୁତ୍ୱା ଅପି ଏବ (ଶ୍ରବଣକରି ମଧ୍ୟ) ଏନଂ ନ ବେଦ (ଏହାଙ୍କୁ ଜାଣିପାରନ୍ତି ନାହିଁ)।

**ଅନୁବାଦ**— କେହି ଏହି ଆତ୍ମାଙ୍କୁ ଆଶ୍ଚର୍ଯ୍ୟବତ୍ ଦେଖନ୍ତି, ଅନ୍ୟ କେହି ବା ଏ ଆତ୍ମାଙ୍କୁ ଆଶ୍ଚର୍ଯ୍ୟରୂପେ ବର୍ଣ୍ଣନ କରନ୍ତି, କେହି ବା ଏହି ଆତ୍ମତତ୍ତ୍ୱ ଆଶ୍ଚର୍ଯ୍ୟ ଭାବରେ ଶୁଣନ୍ତି, ଏବଂ କେହି ବା ଏ ଆତ୍ମତତ୍ତ୍ୱ ଶୁଣି ମଧ୍ୟ ଆତ୍ମାଙ୍କୁ ଜାଣି ପାରନ୍ତି ନାହିଁ ।

ଦେହୀ ନିତ୍ୟମବଧ୍ୟୋଽୟଂ ଦେହେ ସର୍ବସ୍ୟ ଭାରତ,
ତସ୍ମାତ୍ ସର୍ବାଣି ଭୂତାନି ନ ତ୍ୱଂ ଶୋଚିତୁମର୍ହସି । ୩୦ ।

**ସୁବୋଧିନୀଟୀକା**—ଭୂତସ୍ତର୍ହି ବିଦ୍ୱାଂସୋଽପି କେ ଶୋଚନ୍ତି ? **ଅ**ତ୍ମାଜ୍ଞାନାଦେବେତ୍ୟାଶୟେନାତ୍ମନୋ ଦୁର୍ବିଜ୍ଞେୟତା ମାହ—ଆଶ୍ଚର୍ଯ୍ୟ ବଦିତ୍ୟାଦି । କଶ୍ଚିଦେନ ମାତ୍ମାନଂ ଶାସ୍ତ୍ରାଚାର୍ଯ୍ୟୋପଦେଶାଭ୍ୟାଂ ପଶ୍ୟନ୍ନାଶ୍ଚର୍ଯ୍ୟବତ୍ ପଶ୍ୟତି ସର୍ବଗତସ୍ୟ ନିତ୍ୟଜ୍ଞାନାନନ୍ଦସ୍ୱଭାବସ୍ୟାତ୍ମନୋଽଲୌକିକତ୍ୱାଦୈନ୍ଦ୍ରଜାଲିକବତ୍ ଘଟମାନଂ ପଶ୍ୟନ୍ନିବ ବସ୍ତୁତୟୈନ ପଶ୍ୟତି ଅସମ୍ଭାବନାଭିଭୂତତ୍ୱାତ୍ । ତଥା— ଆଶ୍ଚର୍ଯ୍ୟବଦେବାନ୍ୟୋ ବଦତି ଚ, ଶୃଣୋତି ଚାନ୍ୟଃ । କଶ୍ଚିତ୍ ପୁନର୍ବିପରୀତ ଭାବନାଭିଭୂତଃ ଶ୍ରୁତ୍ୱାପି ନୈବବେଦ । ଚ ଶବ୍ଦାଦୁକ୍ତ୍ୱାପି ଦୃଷ୍ଟ୍ୱାପି ନ ସମ୍ୟକ୍ ବେଦେତି ଦ୍ରଷ୍ଟବ୍ୟମ୍ ।

**ବିବୃତି**— ଆତ୍ମତତ୍ତ୍ୱ ବଡ଼ ଦୁର୍ବିଜ୍ଞେୟ; ଅପୂର୍ବ ଚମତ୍କାର ମନେକରି ବଡ଼ ବଡ଼ ବିଦ୍ୱାନ୍‌ମାନେ ଆତ୍ମାବିଷୟରେ ଯେତେ ବିଚାର କରନ୍ତୁ, ତାଙ୍କର ପ୍ରକୃତ ସ୍ୱରୂପ ଜାଣିବାର ଲୋକ ଖୁବ୍ ଅଳ୍ପ । ତେଣୁ ଜ୍ଞାନୀବ୍ୟକ୍ତିମାନେ ମଧ୍ୟ ଶୋକରେ ଅଭିଭୂତ ହୋଇପଡ଼ନ୍ତି । ଆତ୍ମା ସେମାନଙ୍କ ନିକଟରେ ବିସ୍ମୟର ବିଷୟ ମାତ୍ର ।

ଆତ୍ମା ଅବିନାଶୀ ଏବଂ ଇନ୍ଦ୍ରିୟଗୋଚର ହୁଅନ୍ତି ନାହିଁ—ଏହା ପଣ୍ଡିତମାନେ ବୁଝିପାରନ୍ତି, ତେବେ ଏଠାରେ ଭଗବାନଙ୍କର କହିବାର ଉଦ୍ଦେଶ୍ୟ ଯେ—ଆତ୍ମାର ଅବିନାଶିତା ବୁଝିପାରିଲେ ମଧ୍ୟ କଥାଟା ଆମ ହୃଦୟକୁ ସ୍ପର୍ଶ କରେ ନାହିଁ । ତଦ୍‌ବିଷୟକ ବିଶ୍ୱାସ ଆମ୍ଭମାନଙ୍କ ଜୀବନକୁ ଶାସିତ କରେ ନାହିଁ ଏବଂ ଏହି ବିଶ୍ୱାସକୁ ଆମ୍ଭେମାନେ ହୃଦୟରେ ଧାରଣକରି ତଦ୍ୱାରା ଜୀବନକୁ ଅନୁପ୍ରାଣିତ କରିପାରୁ ନାହିଁ । ତେଣୁ ଏହା ଆଶ୍ଚର୍ଯ୍ୟ ପରି ବୋଧହୁଏ । ଏ ସମ୍ବନ୍ଧରେ ଶ୍ରୁତିରେ ମଧ୍ୟ ଅଛି:—

ଶ୍ରବଣାୟାପି ବହୁଭିର୍ଯୋ ନ ଲଭ୍ୟଃ ଶୃଣ୍ୱନ୍ତୋଽପି ବହବୋ ଯଂ ନ ବିଦ୍ୟୁଃ,
ଆଶ୍ଚର୍ଯ୍ୟୋ ବକ୍ତା କୁଶଳୋଽସ୍ୟ ଲବ୍ଧାଶ୍ଚର୍ଯ୍ୟୋଜ୍ଞାତା କୁଶଳାନୁଶିଷ୍ଟଃ ।
(କଠୋପନିଷଦ୍ ୨।୭)

ଅର୍ଥାତ୍—ଏ ଆତ୍ମତତ୍ତ୍ୱ ପ୍ରଥମତଃ ଅନେକଙ୍କର ଶ୍ରବଣଗୋଚର ହୁଏ ନାହିଁ, ତହିଁରେ ପୁଣି ଅନେକେ ଶୁଣି ମଧ୍ୟ ତାଙ୍କୁ ଜାଣି ପାରନ୍ତି ନାହିଁ । ଆତ୍ମତତ୍ତ୍ୱର ବକ୍ତା ଅତୀବ ଆଶ୍ଚର୍ଯ୍ୟଲୋକ । ଆତ୍ମସାକ୍ଷାତ୍‌କାର କରିଥିବା ପୁରୁଷ ପରମ କୁଶଳୀ, ବ୍ରହ୍ମବେତ୍ତା ଗୁରୁଙ୍କ ଦ୍ୱାରା ଉପଦିଷ୍ଟ ହୋଇ ଯେ ଆତ୍ମାକୁ ଜାଣନ୍ତି ସେ ମଧ୍ୟ ଆଶ୍ଚର୍ଯ୍ୟ ପୁରୁଷ । ବସ୍ତୁତଃ ବ୍ରହ୍ମଙ୍କୁ ଜାଣିବା ବଡ଼ ଆଶ୍ଚର୍ଯ୍ୟ, ବଡ଼ କଠିନ ।

୩୦ । **ଅନ୍ୱୟଦୀପିକା**—ହେ ଭାରତ (ହେ ଭରତ) ଅୟଂ ଦେହୀ (ଏହି ଆତ୍ମା) ସର୍ବସ୍ୟ (ସମସ୍ତଙ୍କ) ଦେହେ (ଦେହରେ) ନିତ୍ୟଂ (ନିତ୍ୟ) ଅବଧ୍ୟଃ

ସ୍ୱଧର୍ମମପି ଚାବେକ୍ଷ୍ୟ ନ ବିକମ୍ପିତୁମର୍ହସି,
ଧର୍ମ୍ୟାଦ୍ଧି ଯୁଦ୍ଧାଚ୍ଛ୍ରେୟୋଽନ୍ୟତ୍ କ୍ଷତ୍ରିୟସ୍ୟ ନ ବିଦ୍ୟତେ ।୩୧।

(ଅବିନାଶୀ), ତସ୍ମାତ୍ ( ସେହିହେତୁରୁ ) ତ୍ୱଂ (ତୁମେ) ସର୍ବାଣି ଭୂତାନି ( ସମସ୍ତ ପ୍ରାଣୀଙ୍କ ଉଦ୍ଦେଶ୍ୟରେ) ଶୋଚିତୁଂ (ଶୋକ କରିବାକୁ) ନ ଅର୍ହସି (ଯୋଗ୍ୟନୁହ)।

**ଅନୁବାଦ**—ହେ ଅର୍ଜ୍ଜୁନ, ସମସ୍ତଙ୍କ ଦେହରେ ଆତ୍ମା ଅବିନାଶୀ, ତେଣୁ କୌଣସି ପ୍ରାଣୀର ଦେହନାଶରେ ଶୋକ କରିବା ଉଚିତ ନୁହେ ।

**ସୁବୋଧିନୀ ଟୀକା**— ତଦେବ ମବଧ୍ୟତ୍ୱମାତ୍ମନଃ ସଂକ୍ଷେପେଣୋପଦଶନ୍‌ଶୋଚ୍ୟତ୍ୱମୁପସଂହରତି—ଦେହୀତ୍ୟାଦି । ସ୍ପଷ୍ଟୋଽର୍ଥଃ ୮

**ବିବୃତି**—ଆତ୍ମାର ଅବିନାଶିତା ବିଷୟ ଏଠାରେ ଶେଷ ହେଲା । ଆତ୍ମତତ୍ତ୍ୱ ସହଜରେ ଲୋକର ହୃଦୟକୁ ସ୍ପର୍ଶକରେ ନାହିଁ । କୌଣସି କଥା ବୁଝିବା ସହଜ ହୋଇପାରେ, ମାତ୍ର ସେ କଥା ହୃଦୟକୁ ସ୍ପର୍ଶ କରିବା ବା ଅନୁଭବରେ ଆଣିବା ସହଜ ନୁହେ । ବ୍ରହ୍ମସତ୍ତା ବିଶ୍ୱର ସର୍ବତ୍ର ବିଦ୍ୟମାନ, ଏ କଥା ଅନେ‌କେ ବେଶ୍ ବୁଝିପାରୁ ଥାଇଁ ମାତ୍ର କେତେ ଜଣ ଏହାର ଅନୁଭବ କରନ୍ତି ? ତେଣୁ ୨୯ଶ ଶ୍ଲୋକରେ 'ଆଶ୍ଚର୍ଯ୍ୟବତ୍ ପଶ୍ୟତି' ଇତ୍ୟାଦି କଥାରେ ଭଗବାନ୍ ତାହା ପ୍ରକାଶକରି ଦେଇଅଛନ୍ତି । ଆତ୍ମତତ୍ତ୍ୱ ସହଜରେ ଅନୁଭବର ବିଷୟ ହୋଇଥିଲେ ଗୀତାର ଉପଦେଶ ଏହିଠାରେ ଶେଷ ହୋଇ ଥାଆନ୍ତା; ମାତ୍ର ତାହା ସେପରି ବିଷୟ ନ ଥିବାରୁ ଅନ୍ୟଭାବରେ ଭଗବାନ୍ ଉପଦେଶ ଦେବାକୁ ଯାଉଅଛନ୍ତି ।

ଏ ପର୍ଯ୍ୟନ୍ତ ଯାହା କୁହାଗଲା ସେଥିରୁ ସିଦ୍ଧହେଲା ଯେ, ଆତ୍ମା ଅମର, ଦେହ ତ ସ୍ୱଭାବତଃ ବିନାଶଶୀଳ; ତେଣୁ କେହି ମଲେ ବା କିଏ କାହାକୁ ମାଇଲେ ସେଥିପାଇଁ ଶୋକ କରିବା ପ୍ରୟୋଜନ ନାହିଁ । କିନ୍ତୁ ଏଥିରୁ ଯେବେ କେହି ଅନୁମାନ କରେ ଯେ, କେହି କାହାକୁ ମାଇଲେ ତହିଁରେ ପାପ ହେବ ନାହିଁ—ତେବେ ଏହା ଗୁରୁତର ଭ୍ରମ ହେବ । ମନୁଷ୍ୟ ଆତ୍ମା ଓ ଦେହର ସମ୍ମିଳନ । ଆତ୍ମା ଅମର, ତେଣୁ ତତ୍‌ପ୍ରତି ମରିବା ବା ମାରିବା ଶବ୍ଦର ପ୍ରୟୋଗ ଉପଯୁକ୍ତ ନୁହେ । ଦେହ ଅନିତ୍ୟ ହେଲେହେଁ ଆତ୍ମାର ମଙ୍ଗଳ ବା ମୋକ୍ଷ ସମ୍ପାଦନ ପାଇଁ ସେ ଏକମାତ୍ର ସାଧନ— ଏହା କେହି ଅସ୍ୱୀକାର କରିବେ ନାହିଁ । ତେଣୁ ଆତ୍ମହତ୍ୟା କରିବା ବା ବିନା କାରଣରେ କାହାରିକୁ ବଧ କରିବା ଶାସ୍ତ୍ରାନୁସାରେ ମହାପାପ । ମୃତବ୍ୟକ୍ତି ପାଇଁ ଶୋକକରିବା ଅନୁଚିତ ହେଲେହେଁ ଜଣେ ଜଣକୁ କାହିଁକି ବଧ କରିବ ତାହାର ସନ୍ତୋଷଜନକ କାରଣ ଥିବା ଆବଶ୍ୟକ; ଏହାହିଁ ଧର୍ମାଧର୍ମ ବିବେକ, ଏହାହିଁ ଗୀତାରେ ନାନାଭାବରେ ପ୍ରତିପାଦିତ ହୋଇଅଛି, ଯୁଦ୍ଧକରିବା କ୍ଷତ୍ରିୟର କର୍ତ୍ତବ୍ୟ, ତେଣୁ ଭଗବାନ୍ କହୁଅଛନ୍ତି, ମରିବା ମାରିବା ପାଇଁ ଶୋକ କର ନାହିଁ, ବିଶେଷତଃ ଏହା ଧର୍ମଯୁଦ୍ଧ ।

**୩୧ । ଅନ୍ୱୟଦୀପିକା**—ସ୍ୱଧର୍ମମ୍ ଅପି ଚ ( ସ୍ୱଧର୍ମ ଅଭୁ ମଧ୍ୟ ) ଅବେକ୍ଷ୍ୟ (ଦେଖିଲେ) ବିକମ୍ପିତୁଂ ନ ଅର୍ହସି (ସାହସ ହରାଇବା ଉଚିତ ନୁହେ);

ହି (ଯେହେତୁ) ଧର୍ମ୍ୟାତ୍ ଯୁଦ୍ଧାତ୍ (ଧର୍ମଯୁଦ୍ଧ ଅପେକ୍ଷା) କ୍ଷତ୍ରିୟସ୍ୟ (କ୍ଷତ୍ରିୟପକ୍ଷରେ) ଅନ୍ୟତ୍ ଶ୍ରେୟଃ (ଅନ୍ୟ କିଛି ମଙ୍ଗଳ) ନ ବିଦ୍ୟତେ (ନାହିଁ) ।

**ଅନୁବାଦ**—ଏହାଛଡ଼ା ସ୍ୱଧର୍ମଆଡ଼ୁ ଦେଖିଲେ ମଧ୍ୟ ସାହସ ହରାଇବା ତୁମ ପକ୍ଷରେ ଉଚିତ ନୁହେ । କାରଣ ଧର୍ମଯୁଦ୍ଧ ଅପେକ୍ଷା କ୍ଷତ୍ରିୟପକ୍ଷରେ ଅନ୍ୟ ଶ୍ରେୟସ୍କର କିଛି ନାହିଁ ।

**ସୁବୋଧିନୀ ଟୀକା**—ଯଚ୍ଚୋକ୍ତ ମର୍ଜ୍ଜୁନେନ ବେପଥୁଶ୍ଚ ଶରୀରେ ମେ ଇତ୍ୟାଦି ତଦପ୍ୟଯୁକ୍ତ ମିତ୍ୟାହ—ସ୍ୱଧର୍ମମପୀତି । ଆତ୍ମାନୋ ନାଶାଭାବାଦେ-ବୈତେଷାଂ ହନନେଽପି ବିକମ୍ପିତୁଂ ନାର୍ହସି । କିଞ୍ଚ ସ୍ୱଧର୍ମମପ୍ୟବେକ୍ଷ୍ୟ ବିକମ୍ପିତୁଂ ନାର୍ହସୀତି ସମ୍ବନ୍ଧଃ । ଯଚ୍ଚୋକ୍ତଂ—ନ ଚ ଶ୍ରେୟୋଽନୁପଶ୍ୟାମି ହତ୍ୱା ସ୍ୱଜନ-ମାହବେ ଇତି ତତ୍ରାହ—ଧର୍ମ୍ୟାଦିତି—ଧର୍ମାଦନପେତାନ୍ନ୍ୟାଯ୍ୟାଦ୍ଯୁଦ୍ଧାଦନ୍ୟତ୍ ।

**ବିବୃତି**—ପ୍ରଥମଅଧ୍ୟାୟ ୨୯ଶ ଶ୍ଳୋକରେ 'ବେପଥୁଶ୍ଚ ଶରୀରେ ମେ' ଏହି ଯେଉଁ କଥା ଅର୍ଜ୍ଜୁନ କହିଥିଲେ, ଭଗବାନ୍ ଏ ଶ୍ଳୋକରେ ସେହି କଥା ପ୍ରତି ଲକ୍ଷ୍ୟ ରଖି କହୁଅଛନ୍ତି—

ଆତ୍ମୀୟଜନ ବଧଯୁଦ୍ଧଛଡ଼ା ସ୍ୱଧର୍ମ ଭାବରେ ବିଚାର କଲେ ମଧ୍ୟ ତୁମ୍ଭର ଶରୀର-କମ୍ପାଦି ଏ ସ୍ଥଳରେ ଉଚିତ ନୁହେଁ । କାରଣ ଧର୍ମଯୁଦ୍ଧରେ ପରାଙ୍ମୁଖ ନ ହେବା କ୍ଷତ୍ରିୟ ପକ୍ଷରେ ପରମ ଶ୍ରେୟସ୍କର । ଏ ସମ୍ବନ୍ଧରେ ମହର୍ଷି ମନୁ କହିଅଛନ୍ତି:—

"ସମୋତ୍ତମାଧମୈ ରାଜା ତ୍ୱାହୂତଃ ପାଳୟନ୍ ପ୍ରଜାଃ ।
ନ ନିବର୍ତ୍ତେତ ସଂଗ୍ରାମାତ୍ କ୍ଷାତ୍ରଂ ଧର୍ମ ମନୁସ୍ମରନ୍ ।
(ମ: ସ: ୭-୮୭ )

ପ୍ରଜାମାନଙ୍କୁ ପାଳନ କରୁଥିବା ରାଜା, ନିଜ ସମସ୍କନ୍ଧ, ନିଜଠାରୁ ବଳିଷ୍ଠ ବା ନିଜଠାରୁ ଦୁର୍ବଳ ଅନ୍ୟ ରାଜାଙ୍କଦ୍ୱାରା ଯୁଦ୍ଧ ପାଇଁ ଆହୂତ ହେଲେ ନିଜ କ୍ଷତ୍ରିୟଧର୍ମ ସ୍ମରଣପୂର୍ବକ ଯୁଦ୍ଧରୁ ପରାଙ୍ମୁଖ ହେବେ ନାହିଁ ।"

ଅର୍ଜ୍ଜୁନଙ୍କୁ ଯେଉଁ ଯୁଦ୍ଧ ବ୍ୟାପାରରେ ପ୍ରବର୍ତ୍ତିବାପାଇଁ ଭଗବାନ୍ ଉପଦେଶ ଦେଉଅଛନ୍ତି, ତାହା ଅର୍ଜ୍ଜୁନଙ୍କ ପକ୍ଷରେ ସମ୍ପୂର୍ଣ୍ଣରୂପେ ଧର୍ମଯୁଦ୍ଧ । ଆତ୍ମରକ୍ଷା, ସ୍ୱଜନରକ୍ଷା, ଦେଶରକ୍ଷା ବା ଧର୍ମରକ୍ଷା ପାଇଁ ଯେଉଁ ଯୁଦ୍ଧ କରାଯାଏ, ତାହାହିଁ ଧର୍ମଯୁଦ୍ଧ । ଏଥିରେ ଯୋଦ୍ଧାର ସ୍ୱଧର୍ମପାଳନ ସଙ୍ଗେ ଅନନ୍ତ ପୁଣ୍ୟ ମଧ୍ୟ ସଞ୍ଚୟ ହୁଏ । ଅର୍ଜ୍ଜୁନ ସେହି ଧର୍ମଯୁଦ୍ଧର ଦ୍ୱାର ଦେଶରେ ଉପସ୍ଥିତ, ଏଥିରେ ଅପ୍ରବୃତ୍ତି ପରମ ଅଧର୍ମ । ସ୍ୱଧର୍ମ ପରିତ୍ୟାଗରୂପ ଏହି ଘୋରତର ଅଧର୍ମରେ ପ୍ରବୃତ୍ତ ହେବାର କାରଣ କେବଳ ସ୍ୱଜନ ବଧଭୟ । ଏଭଳି ଭୟର ଯେ କୌଣସି କାରଣ ନାହିଁ, ଏହା ଭଗବାନ୍ ବୁଝାଇଦେଇ କହିଲେ ଯେ ଧର୍ମଯୁଦ୍ଧ ଭଳି ମଙ୍ଗଳମୟ ବ୍ୟାପାର କ୍ଷତ୍ରିୟ ଜୀବନରେ ସହଜରେ ମିଳେ ନାହିଁ ।

ଯଦୃଚ୍ଛୟା ଚୋପପନ୍ନଂ ସ୍ୱର୍ଗଦ୍ୱାରମପାବୃତମ୍ ।
ସୁଖିନଃ କ୍ଷତ୍ରିୟାଃ ପାର୍ଥ ଲଭନ୍ତେ ଯୁଦ୍ଧମୀଦୃଶମ୍ । ୩୨ ।
ଅଥଚେ ତ୍ୱମିମଂ ଧର୍ମ୍ୟଂ ସଂଗ୍ରାମଂ ନ କରିଷ୍ୟସି ।
ତତଃ ସ୍ୱଧର୍ମଂ କୀର୍ତ୍ତିଂ ଚ ହିତ୍ୱା ପାପମବାପ୍ସ୍ୟସି । ୩୩ ।

**୩୨ । ଅନ୍ୱୟଦୀପିକା**—ପାର୍ଥ ( ହେ ଅର୍ଜ୍ଜୁନ ), ସୁଖିନଃ କ୍ଷତ୍ରିୟାଃ ( ଭାଗ୍ୟବାନ୍ କ୍ଷତ୍ରିୟମାନେ ହିଁ ) ଯଦୃଚ୍ଛୟା ଚ ଉପପନ୍ନମ୍ ( ସ୍ୱୟଂ ଉପସ୍ଥିତ ) ଅପାବୃତଂ ( ମୁକ୍ତ ) ସ୍ୱର୍ଗଦ୍ୱାରମ୍ (ସ୍ୱର୍ଗର ଦ୍ୱାର ସ୍ୱରୂପ) ଈଦୃଶଂ ଯୁଦ୍ଧମ୍ ( ଏପରି ଯୁଦ୍ଧ ) ଲଭନ୍ତେ ( ଲାଭ କରି ଥାଆନ୍ତି ) ।

**ଅନୁବାଦ**—ହେ ପାର୍ଥ, ଏ ଯୁଦ୍ଧ ସ୍ୱୟଂ ଉପସ୍ଥିତ ହୋଇଅଛି ଏବଂ ଏହା ମୁକ୍ତ ସ୍ୱର୍ଗଦ୍ୱାର ସ୍ୱରୂପ । ଭାଗ୍ୟବାନ୍ କ୍ଷତ୍ରିୟମାନେ ହିଁ ଏପରି ଯୁଦ୍ଧ ଲାଭ କରନ୍ତି ।

**ସୁବୋଧିନୀ ଟୀକା**—କିଞ୍ଚ ମହତ୍ ଶ୍ରେୟଶ୍ଚ ସ୍ୱୟମେବୋପଗତେ ସତି କୁତୋ ବିକମ୍ପସ ଇତି ? ଅହ-ଯଦୃଚ୍ଛୟେତି । ଯଦୃଚ୍ଛୟାଽପ୍ରାର୍ଥିତମେବୋପପନ୍ନଂ ପ୍ରାପ୍ତମୀଦୃଶଂ ଯୁଦ୍ଧଂ ସଭାଗ୍ୟା ଏବ ଲଭନ୍ତେ । ଯତୋ ନିରାବରଣଂ ସ୍ୱର୍ଗଦ୍ୱାରମେବୈତତ୍ । ଯଦ୍ୱା ଯ ଏବମ୍ଭୂତଂ ଯୁଦ୍ଧଂ ଲଭନ୍ତେ ତ ଏବ ସୁଖିନ ଇତ୍ୟର୍ଥଃ । ଏତେନ ସ୍ୱଜନଂ ହି କଥଂ ହତ୍ୱା ସୁଖିନଃ ସ୍ୟାମ ମାଧବେତି ଯଦୁକ୍ତଂ ତନ୍ନିରସ୍ତଂ ଭବତି ।

**ବିବୃତି**—ହେ ଅର୍ଜ୍ଜୁନ, ତୁମେ ଇଚ୍ଛାକରି ଏ ଯୁଦ୍ଧର ଆୟୋଜନ କରି ନାହଁ, କୌରବମାନଙ୍କ ଈର୍ଷା ଓ ଦୁର୍ବୁଦ୍ଧି ହିଁ ଏ ଯୁଦ୍ଧର କାରଣ । ଏହିଳି ଧର୍ମଯୁଦ୍ଧ ଯେଉଁ କ୍ଷତ୍ରିୟଙ୍କ ଭାଗ୍ୟରେ ଜୁଟେ ସେମାନେ ପ୍ରକୃତରେ ସୁଖୀ ।

**୩୩ । ଅନ୍ୱୟଦୀପିକା**—ଅଥ (ଅନ୍ୟ ପକ୍ଷରେ) ଚେତ୍ (ଯେବେ) ତ୍ୱଂ ଇମଂ ଧର୍ମ୍ୟଂ ସଂଗ୍ରାମଂ ( ତୁମେ ଏହି ଧର୍ମଯୁଦ୍ଧ ) ନ କରିଷ୍ୟସି ( ନ କରିବ ), ତତଃ ( ତା ହେଲେ ) ସ୍ୱଧର୍ମଂ କୀର୍ତ୍ତିଂ ଚ (ସ୍ୱଧର୍ମ ଏବଂ କୀର୍ତ୍ତି) ହିତ୍ୱା (ତ୍ୟାଗକରି) ପାପମ୍ ଅବାପ୍ସ୍ୟସି ( ପାପଭୋଗ କରିବ ) ।

**ଅନୁବାଦ**—ଅନ୍ୟ ପକ୍ଷରେ, ଯେବେ ତୁମେ ଏହି ଧର୍ମଯୁଦ୍ଧ ନ କର ତେବେ ସ୍ୱଧର୍ମ ଓ କୀର୍ତ୍ତି ତ୍ୟାଗକରି ପାପଭାଗୀ ହେବ ।

**ସୁବୋଧିନୀ ଟୀକା**—ବିପକ୍ଷେ ଦୋଷମାହ—ଅଥଚେଦିତ୍ୟାଦି ।

**ବିବୃତି**—ଯୁଦ୍ଧକ୍ଷେତ୍ରରୁ ପଳାୟନ କଲେ କ୍ଷତ୍ରିୟ ଯେ କିପରି ପାପଭାଗୀ ହୁଏ ତାହା ମହର୍ଷି ମନୁଙ୍କ ଉକ୍ତିରୁ ସ୍ପଷ୍ଟ ଜଣାପଡ଼େ :—

ଯସ୍ତୁ ଭୀତଃ ପରାବୃତ୍ତଃ ସଂଗ୍ରାମେ ହନ୍ୟତେ ପରୈଃ,
ଭର୍ତ୍ତୁର୍ଯତ୍ ଦୁଷ୍କୃତଂ କିଞ୍ଚିତ୍ ତତ୍ସର୍ବଂ ପ୍ରତିପଦ୍ୟତେ ।

ଅକୀର୍ତ୍ତିଂ ଚାପି ଭୂତାନି କଥୟିଷ୍ୟନ୍ତି ତେଽବ୍ୟୟାମ୍
ସମ୍ଭାବିତସ୍ୟ ଚାକୀର୍ତ୍ତିର୍ମରଣାଦତିରିଚ୍ୟତେ । ୩୪ ।
ଭୟାଦ୍ରଣାଦୁପରତଂ ମଂସ୍ୟନ୍ତେ ତ୍ୱାଂ ମହାରଥାଃ,
ଯେଷାଂ ଚ ତ୍ୱଂ ବହୁମତୋ ଭୂତ୍ୱା ଯାସ୍ୟସି ଲାଘବମ୍ । ୩୫ ।

ଯତ୍ତାସ୍ୟ ସୁକୃତଂ କିଞ୍ଚିଦମୁତ୍ରାର୍ଥମୁପାର୍ଜ୍ଜିତମ୍ ।
ଭର୍ତ୍ତା ତତ୍ସର୍ବମାଦତ୍ତେ ପରାବୃତ୍ତ ହତସ୍ୟ ତୁ ।
( ମନୁ ୭—୯୪,୯୫ )

ଯୁଦ୍ଧରେ ଭୀତ ପଳାୟନପର ବ୍ୟକ୍ତି ଯେବେ ଶତ୍ରୁଦ୍ୱାରା ନିହତ ହୁଏ, ତେବେ ପ୍ରଭୁର ସମସ୍ତ ପାପ ତାହାକୁ ଆଶ୍ରୟ କରେ ଏବଂ ପଳାୟନପର ଲୋକର ପୂର୍ବର ସମସ୍ତ ପୁଣ୍ୟ ତାହାର ପ୍ରଭୁ ପାଆନ୍ତି ।

୩୪ । **ଅନ୍ୱୟଦୀପିକା**—ଅପି ଚ (ଅଧିକ ମଧ୍ୟ) ଭୂତାନି (ପ୍ରାଣୀମାନେ) ତେ (ତୁମର) ଅବ୍ୟୟାମ୍ (ଦୀର୍ଘକାଳ ବ୍ୟାପୀ) ଅକୀର୍ତ୍ତିଂ (ଅପଯଶ) କଥୟିଷ୍ୟନ୍ତି (କହିବୁଲିବେ) ସମ୍ଭାବିତସ୍ୟ (ପ୍ରତିଷ୍ଠା ପାଇଥିବା ପୁରୁଷର) ଅକୀର୍ତ୍ତିଃ (ଅପଯଶ) ମରଣାତ୍ ଚ (ମୃତ୍ୟୁଅପେକ୍ଷା ମଧ୍ୟ) ଅତିରିଚ୍ୟତେ (ଅଧିକ ହୋଇଥାଏ) ।

**ଅନୁବାଦ**—ଅଧିକ ମଧ୍ୟ ଦେଖ, ସମସ୍ତ ଲୋକ ଚିରକାଳ ତୁମର ଅପଯଶ ଘୋଷଣା କରି ବୁଲିବେ । ସମ୍ମାନିତ ବ୍ୟକ୍ତି ପକ୍ଷରେ ଅପଯଶ ମରଣ ଅପେକ୍ଷା ଅଧିକ ଅର୍ଥାତ୍ ଅକୀର୍ତ୍ତିଠାରୁ ମୃତ୍ୟୁ ଶ୍ରେୟସ୍କର ।

**ସୁବୋଧିନୀ ଟୀକା**—କିଞ୍ଚ—ଅକୀର୍ତ୍ତିମିତ୍ୟାଦି, ଅବ୍ୟୟାଂ ଶାଶ୍ୱତୀଂ । ସମ୍ଭାବିତସ୍ୟ ବହୁମତସ୍ୟ । ଅତିରିଚ୍ୟତେ ଅଧିକତରା ଭବତି ।

୩୫ । **ଅନ୍ୱୟଦୀପିକା**—ମହାରଥାଃ ଚ (ମହାରଥୀମାନେ ମଧ୍ୟ) ତ୍ୱାଂ (ତୁମକୁ) ଭୟାତ୍ (ଭୟବଶତଃ) ରଣାତ୍ (ଯୁଦ୍ଧରୁ) ଉପରତ (ନିବୃତ୍ତ) ମଂସ୍ୟନ୍ତେ (ମନେକରିବେ); ତ୍ୱଂ ଯେଷାଂ (ତୁମେ ଯେଉଁମାନଙ୍କର) ବହୁମତଃ (ସମ୍ମାନିତ) ଭୂତ୍ୱା ଚ (ହୋଇ ମଧ୍ୟ) [ଅଧୁନା] ଲାଘବଂ (ଲଘୁତାଂ) ଯାସ୍ୟସି (ପାଇବ) ।

**ଅନୁବାଦ**—ଯେଉଁ ମହାରଥମାନେ ତୁମକୁ ବହୁ ସମ୍ମାନ କରୁଥିଲେ ସେମାନଙ୍କ ନିକଟରେ ତୁମେ ନିତାନ୍ତ ହୀନ ବୋଲି ବିବେଚିତ ହେବ । କାରଣ ସେମାନେ ମନେ କରିବେ, ତୁମେ ଭୟରେ ଯୁଦ୍ଧରୁ ନିବୃତ୍ତ ହୋଇଅଛ ।

**ସୁବୋଧିନୀ ଟୀକା**—କିଞ୍ଚ ଭୟାଦିତି ଯେଷାଂ ବହୁଗୁଣତ୍ୱେନ ତ୍ୱଂ ପୂର୍ବଂ ସମ୍ମତୋଽଭୂସ୍ତ ଏବ ଭୟାତ୍ ସଂଗ୍ରାମାନ୍ନିବୃତ୍ତଂ ତ୍ୱାଂ ମନ୍ୟେରନ୍ । ତତଶ୍ଚ ପୂର୍ବଂ ବହୁମତୋଭୂତ୍ୱା ଲାଘବଂ ଲଘୁତାଂ ଯାସ୍ୟସି ।

ଅବାଚ୍ୟବାଦାଂଶ୍ଚ ବହୂନ୍ ବଦିଷ୍ୟନ୍ତି ତବାହିତାଃ,
ନିନ୍ଦନ୍ତସ୍ତବ ସାମର୍ଥ୍ୟଂ ତତୋ ଦୁଃଖତରଂ ନୁ କିମ୍ । ୩୬ ।
ହତୋ ବା ପ୍ରାପ୍ସ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷ୍ୟସେ ମହୀମ୍,
ତସ୍ମାଦୁତ୍ତିଷ୍ଠ କୌନ୍ତେୟ ଯୁଦ୍ଧାୟ କୃତନିଶ୍ଚୟଃ । ୩୭ ।

**୩୬ । ଅନ୍ୱୟଦୀପିକା**—ତବ (ତୁମ) ଅହିତାଃ ଚ [ଶତ୍ରୁମାନେ ମଧ୍ୟ] ତବ ସାମର୍ଥ୍ୟଂ ( ତୁମ ଶକ୍ତିକୁ ) ନିନ୍ଦନ୍ତଃ (ନିନ୍ଦାକରି) ବହୂନ୍ ଅବାଚ୍ୟବାଦାନ୍ ( ଅକଥ୍ୟ, କୁକଥା ) ବଦିଷ୍ୟନ୍ତି ( କହିବେ ), ତତଃ ( ତା ଠାରୁ ) ଦୁଃଖତରଂ ( ଅଧିକ ଦୁଃଖକର ) କିଂ ନୁ? ( ଆଉ କଅଣ ଅଛି ? )

**ଅନୁବାଦ**—ତୁମ ଶତ୍ରୁମାନେ ମଧ ତୁମ ସାମର୍ଥ୍ୟର ନିନ୍ଦାକରି ଅନେକ କୁକଥା କହିବେ । ତା ଠାରୁ ଆଉ ଅଧିକ ଦୁଃଖ କଅଣ ଅଛି ?

**ସୁବୋଧିନୀ ଟୀକା**—କିଞ୍ଚ ଅବାଚ୍ୟ ବାଦାନିତ୍ୟାଦି । ଅବାଚ୍ୟାନ୍ ବାଦାନ୍ ବଚନାନର୍ହାନ୍ ଶବ୍ଦାଂ ସ୍ତବାହିତାସ୍ତ୍ୱଚ୍ଛତ୍ରବୋ ବଦିଷ୍ୟନ୍ତି ।

**୩୭ । ଅନ୍ୱୟଦୀପିକା**—ହତଃ ବା ( ହତ ହେଲେ ) ସ୍ୱର୍ଗଂ ପ୍ରାପ୍ସ୍ୟସି ( ସ୍ୱର୍ଗ ପାଇବ ) ଜିତ୍ୱା ବା ( ଜୟଲାଭ କଲେ ) ମହୀଂ ଭୋକ୍ଷ୍ୟସେ (ପୃଥିବୀ ଭୋଗ କରିବ), କୌନ୍ତେୟ (ହେ ଅର୍ଜୁନ) ତସ୍ମାତ୍ (ସେହି ହେତୁରୁ) ଯୁଦ୍ଧାୟ କୃତନିଶ୍ଚୟଃ ( ଯୁଦ୍ଧ କରିବାକୁ ସ୍ଥିରକରି ) ଉତ୍ତିଷ୍ଠ ( ଉଠ ) ।

**ଅନୁବାଦ**—ଯୁଦ୍ଧରେ ହତ ହେଲେ ସ୍ୱର୍ଗଲାଭ ହେବ । ଜିଣିଲେ ପୃଥିବୀ ଭୋଗ କରିବ, ସୁତରାଂ ହେ ଅର୍ଜୁନ ଯୁଦ୍ଧ କରିବାପାଇଁ କୃତନିଶ୍ଚୟ ହୋଇ ଉତ୍ଥାନକର ।

**ସୁବୋଧିନୀ ଟୀକା**—ଯଦୁକ୍ତଂ ନ ଚୈତଦ୍ୱିଦ୍ମଃ କତରନ୍ନୋଗରୀୟ ଇତି ତତ୍ରାହ—ହତୋବେତ୍ୟାଦି । ପକ୍ଷଦ୍ୱୟେଽପି ତବ ଲାଭ ଏବେତ୍ୟର୍ଥଃ ।

**ବିବୃତି**—ଏହି ଅଧ୍ୟାୟର ୧୧ଶ ଠାରୁ ୩୦ଶ ଶ୍ଳୋକ ପର୍ଯ୍ୟନ୍ତ ୨୦ଟି ଶ୍ଳୋକରେ ଭଗବାନ୍ ଅର୍ଜୁନଙ୍କୁ ଆତ୍ମଜ୍ଞାନ ବିଷୟକ ଉପଦେଶ ଦେଲେ । ତତ୍ପରେ ୩୧ଶ ଶ୍ଳୋକ ଠାରୁ ୩୩ଶ ଶ୍ଳୋକ ଯାଏ ତିନିଗୋଟି ଶ୍ଳୋକରେ କ୍ଷତ୍ରିୟର କର୍ତ୍ତବ୍ୟଦୃଷ୍ଟିରେ ଯୁଦ୍ଧକରିବା ଉଚିତ, ଏହା ମଧ ବୁଝାଇଲେ । ତା ପରେ ୩୪ଶ ଶ୍ଳୋକରୁ ୩୭ଶ ଶ୍ଳୋକଯାଏ ଚାରିଗୋଟି ଶ୍ଳୋକରେ ଲୋକଦୃଷ୍ଟିରେ ଯେ ଯୁଦ୍ଧ କର୍ତ୍ତବ୍ୟ ତାହାର ଉପଦେଶ ଦେଲେ । 'ଯଦ୍ୟପି ସିଦ୍ଧଂ ଲୋକବିରୁଦ୍ଧଂ ନାଦରଣୀୟମ୍ ନାଚରଣୀୟମ୍' ଅର୍ଥାତ୍ ଯେବେ କୌଣସି କାର୍ଯ୍ୟ ଯୁକ୍ତି ବା ତର୍କ ଦ୍ୱାରା ସିଦ୍ଧହୁଏ କିନ୍ତୁ ଲୋକଦୃଷ୍ଟିରେ ବିରୁଦ୍ଧ ବୋଲି ଜଣାଯାଏ, ତେବେ ତାହା ଆଦରଣୀୟ ନୁହେ କିମ୍ବା ତଦନୁଯାୟୀ କାର୍ଯ୍ୟ କରିବା ଉଚିତ ନୁହେ । ଏହି ନୀତି

ସୁଖଦୁଃଖେ ସମେ କୃତ୍ୱା ଲାଭାଲାଭୌ ଜୟାଜୟୌ
ତତୋ ଯୁଦ୍ଧାୟ ଯୁଜ୍ୟସ୍ୱ ନୈବଂ ପାପମବାପ୍ସ୍ୟସି । ୩୮ ।

ବଳରେ ଭଗବାନ୍ ବୁଝାଇଲେ ଯେ ଲୌକିକଦୃଷ୍ଟିରେ ବିଗ୍ଭର କଲେ ମଧ୍ୟ ତୁମ୍ଭର ଯୁଦ୍ଧ କରିବା ଉଚିତ । ୩୭ଶ ଶ୍ଳୋକରେ ଭଗବାନ୍ କହିଲେ, "ହତୋ ବା ପ୍ରାପ୍ସ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷ୍ୟସେ ମହୀମ୍" ଏଥିରୁ କେହି କେହି ମନେ କରନ୍ତି ଫଳକାମନା ରଖି ଯୁଦ୍ଧ କରିବାପାଇଁ ଭଗବାନ୍ ଏଠାରେ ଉପଦେଶ ଦେଲେ । ମାତ୍ର ଉତ୍ତମରୂପେ ବିଗ୍ଭର କଲେ ଜଣାଯିବ ଯେ ଫଳକାମନା ହୃଦୟରେ ରଖି ଯୁଦ୍ଧ କରିବାକୁ ଏଠାରେ ଭଗବାନ୍ କହୁନାହାନ୍ତି । ଯୁଦ୍ଧରେ ପ୍ରବୃତ୍ତ ହେଲେ ସ୍ୱର୍ଗପ୍ରାପ୍ତି ବା ପୃଥ୍ୱୀର ଆଧିପତ୍ୟ ଲାଭ ଏହାହିଁ ପରିଣାମରେ ଘଟେ । କର୍ତ୍ତବ୍ୟ ଦୃଷ୍ଟିରେ ଯୁଦ୍ଧକଲେ ଶେଷରେ ଏହି ଦୁଇଟି ମଧ୍ୟରୁ ଗୋଟିଏ ମିଳିବ । ଏପରି ଅବସ୍ଥାରେ ଯୁଦ୍ଧରେ ପ୍ରବୃତ୍ତ ହେବା ସର୍ବଥା ଉଚିତ । ନିଷ୍କାମ କର୍ମହିଁ ଗୀତାର ମୁଖ୍ୟ ପ୍ରତିପାଦ୍ୟ ବିଷୟ । ନିଷ୍କାମ ଭାବରେ କର୍ମକଲପରେ ଯେବେ ସ୍ୱର୍ଗପ୍ରାପ୍ତି ବା ରାଜ୍ୟପ୍ରାପ୍ତି ହୁଏ, ତେବେ ତାହା ଉପେକ୍ଷା କରିବା ଗୀତାର ଉଦ୍ଦେଶ୍ୟ ନୁହେ । କିପରି ଭାବରେ ଯୁଦ୍ଧ କରିବାକୁ ହେବ ପରବର୍ତ୍ତୀ ଶ୍ଳୋକରେ ଭଗବାନ୍ ତାହାହିଁ ବୁଝାଉଅଛନ୍ତି ।

୩୮ । **ଅନ୍ୱୟଦୀପିକା**—ତତଃ ( ତେଣୁ ବା ସେହି ହେତୁରୁ ) ସୁଖଦୁଃଖେ ( ସୁଖ ଓ ଦୁଃଖକୁ ) ସମେ କୃତ୍ୱା ( ସମାନ ଜ୍ଞାନ କରି ) ଲାଭାଲାଭୌ (ଲାଭ ଓ କ୍ଷତିକୁ) ଜୟାଜୟୌ (ଜୟ ଓ ପରାଜୟକୁ) [ସମାନ ଜ୍ଞାନକରି] ଯୁଦ୍ଧାୟ ଯୁଜ୍ୟସ୍ୱ [ଯୁଦ୍ଧପାଇ ଉଦ୍‌ଯୁକ୍ତ ହୁଅ ] ଏବଂ [ ଏହିଭାବରେ ଯୁଦ୍ଧକଲେ ] ପାପଂ ନ ଅବାପ୍ସ୍ୟସି ( ପାପଭାଗୀ ହେବ ନାହିଁ )

**ଅନୁବାଦ**—ସେହି ହେତୁରୁ ସୁଖଦୁଃଖ, ଲାଭକ୍ଷତି, ଜୟ-ପରାଜୟ—ଏ ସବୁକୁ ସମାନ ଜ୍ଞାନ କରି ଯୁଦ୍ଧ ପାଇଁ ଉଦ୍‌ଯୁକ୍ତ ହୁଅ । ଏପରି କଲେ ତୁମ୍ଭକୁ ପାପଭାଗୀ ହେବାକୁ ପଡ଼ିବ ନାହିଁ ।

**ସୁବୋଧିନୀ ଟୀକା**—ଯଦପ୍ୟୁକ୍ତଂ ପାପମେବାଶ୍ରୟେଦସ୍ମାନିତି ତତ୍ରାହ— ସୁଖଦୁଃଖେ ଇତ୍ୟାଦି । ସୁଖଦୁଃଖେ ସମେ କୃତ୍ୱା । ତଥା ତୟୋଃ କାରଣଭୂତୌ ଲାଭାଲାଭାବପି, ତୟୋରପି କାରଣଭୂତୌ ଜୟାଜୟାବପି ସମୌ କୃତ୍ୱା, ଏତେଷାଂ ସମତ୍ୱେ କାରଣଂ ହର୍ଷବିଷାଦରାହିତ୍ୟମ୍ । ଯୁଜ୍ୟସ୍ୱ ସନ୍ନଦ୍ଧୋଭବ, ସୁଖାଦ୍ୟଭିଲାଷଂ ହିତ୍ୱା ସ୍ୱଧର୍ମବୁଦ୍ଧ୍ୟା ଯୁଧ୍ୟମାନଃ ପାପଂ ନ ପ୍ରାପ୍ସ୍ୟସୀତ୍ୟର୍ଥଃ ।

**ବିବୃତି**—ଆତତାୟୀ ହେଲେହେଁ ଭୀଷ୍ମଦ୍ରୋଣାଦି ଗୁରୁଜନମାନଙ୍କୁ ବଧ କରିବାଦ୍ୱାରା ନିଶ୍ଚୟ ପାପଭାଗୀ ହେବାକୁ ହେବ—ଅର୍ଜ୍ଜୁନଙ୍କର ଏହି ଆପତ୍ତିର ଉତ୍ତରରେ ଭଗବାନ୍ ପୂର୍ବରୁ ଯେଉଁ ଆତ୍ମଜ୍ଞାନତତ୍ତ୍ୱ, ସ୍ୱଧର୍ମ ତତ୍ତ୍ୱ ଓ

ଏଷା ତେଽଭିହିତା ସାଂଖ୍ୟେ ବୁଦ୍ଧିର୍ଯୋଗେ ତ୍ୱିମାଂ ଶୃଣୁ ।
ବୁଦ୍ଧ୍ୟା ଯୁକ୍ତୋ ଯୟା ପାର୍ଥ କର୍ମବନ୍ଧଂ ପ୍ରହାସ୍ୟସି । ୩୯ ।

ଲୌକିକ ବ୍ୟବହାର ପ୍ରଭୃତ ବିଷୟରେ ଉପଦେଶ ଦେଇଅଛନ୍ତି, ତଦ୍ୱାରା ଅର୍ଜ୍ଜୁନଙ୍କର ସନ୍ଦେହ ଦୂର ହୋଇ ନ ଥିବାର ଜାଣିପାର ବର୍ତ୍ତମାନ ଅନ୍ୟ ଭାବରେ ତାହା ବୁଝାଇବାକୁ ଚେଷ୍ଟା କରୁଅଛନ୍ତି । ଫଳକାମନା ଓ କର୍ତ୍ତୃତ୍ୱାଭିମାନ ତ୍ୟାଗ ନ କରି କର୍ମକରିବା ମନୁଷ୍ୟଙ୍କୁ ପାପଭାଗୀ ହେବାକୁପଡ଼େ— କର୍ମଯୋଗର ଏହି ମୂଳସୂତ୍ର ଉପରେ ଭଗବାନଙ୍କର ପରବର୍ତ୍ତୀ ଉପଦେଶ ସବୁ ପ୍ରତିଷ୍ଠିତ, ଅର୍ଥାତ୍ ଭଗବାନ୍ କହୁଛନ୍ତି—କର୍ମ କର, ଯୁଦ୍ଧକର; କର୍ମରେ ଆସକ୍ତି ନ ରଖି ଲଭଗତ, ଜୟପରାଜୟ ଏବଂ ସିଦ୍ଧିଅସିଦ୍ଧିକୁ ସମାନ ମନେକର । ସିଦ୍ଧିରେ ଆନନ୍ଦିତ ହୁଅ ନାହିଁ କିମ୍ବା ଅସିଦ୍ଧିରେ ଦୁଃଖିତ ହୁଅ ନାହିଁ । ଏଭଳି ଅବସ୍ଥାରେ କର୍ମକରିବା ଲୋକଙ୍କୁ ପାପ ସ୍ପର୍ଶ କରେ ନାହିଁ । ଏହାହିଁ ଗୀତାର ନିଷ୍କାମ କର୍ମଯୋଗ ।

୩୯ । **ଅନ୍ୱୟଦୀପିକା**—ପାର୍ଥ (ହେ ଅର୍ଜ୍ଜୁନ) ସାଂଖ୍ୟେ (ଆତ୍ମତତ୍ତ୍ୱବିଷୟରେ) ଏଷାବୁଦ୍ଧିଃ (ଏହିଜ୍ଞାନ) ତେ ଅଭିହିତା (ତୁମ୍ଭଙ୍କୁ କୁହାଗଲା), ଯୋଗେ ତୁ (କର୍ମଯୋଗ ବିଷୟରେ) ଇମାଂ ଶୃଣୁ (ଏହି ଉପଦେଶ ଶୁଣ); ଯୟା ବୁଦ୍ଧ୍ୟା ଯୁକ୍ତଃ [ସନ୍] (ଯେଉଁ ବୁଦ୍ଧିଦ୍ୱାରା ଯୁକ୍ତା ହେଲେ) କର୍ମବନ୍ଧଂ (କର୍ମବନ୍ଧନ) ପ୍ରହାସ୍ୟସି (ତ୍ୟାଗ କରିବ) ।

**ଅନୁବାଦ**—ହେ ଅର୍ଜ୍ଜୁନ, ଆତ୍ମତତ୍ତ୍ୱ ବିଷୟରେ ବା ସନ୍ନ୍ୟାସନିଷ୍ଠା ଅନୁସାରେ ତୁମ୍ଭଙ୍କୁ ଏହି ଜ୍ଞାନ ଉପଦେଶ କୁହାଗଲା । ଯେଉଁ ବୁଦ୍ଧିଦ୍ୱାରା ଯୁକ୍ତ ହେଲେ (କର୍ମ ନ ଛାଡ଼ି ମଧ୍ୟ) କର୍ମବନ୍ଧନ ଛାଡ଼ିବ, ସେହି (କର୍ମ) ଯୋଗର ବୁଦ୍ଧି ଅର୍ଥାତ୍ ଜ୍ଞାନ ତୁମ୍ଭଙ୍କୁ କହୁଅଛୁ ।

**ସୁବୋଧିନୀ ଟୀକା**—ଉପଦିଷ୍ଟଂ ଜ୍ଞାନଯୋଗମୁପସଂହରଂ ସ୍ତତ୍ ସାଧନଂ କର୍ମଯୋଗଂ ପ୍ରସ୍ତୌତି—ଏଷେତ୍ୟାଦି । ସମ୍ୟକ୍ ଖ୍ୟାୟତେ ପ୍ରକାଶ୍ୟତେ ବସ୍ତୁତତ୍ତ୍ୱ ମନୟେତି ସଖ୍ୟା ସମ୍ୟକ୍ ଜ୍ଞାନମ୍ । ତସ୍ୟାଂ ପ୍ରକାଶମାନମାତ୍ମତତ୍ତ୍ୱଂ ସାଂଖ୍ୟମ୍ ତସ୍ମିନ୍ କରଣୀୟା ବୁଦ୍ଧିରେଷା ତବାଭିହିତା । ଏବମଭିହିତାପ୍ୟାମନି ତବ ଚେଦାତ୍ମତତ୍ତ୍ୱମପରୋକ୍ଷଂ ନ ଭବତି ତର୍ହ୍ୟନ୍ତଃକରଣଶୁଦ୍ଧିଦ୍ୱାରାତ୍ମତତ୍ତ୍ୱାପରୋକ୍ଷାର୍ଥଂ କର୍ମଯୋଗେ ତ୍ୱିମାଂ ବୁଦ୍ଧିଂ ଶୃଣୁ । ଯୟା ବୁଦ୍ଧ୍ୟା ଯୁକ୍ତଃ ପରମେଶ୍ୱରାର୍ପିତ କର୍ମଯୋଗେନ ଶୁଦ୍ଧାନ୍ତଃକରଣଃ ସନ୍ତତ୍ ପ୍ରସାଦଲବ୍ଧାପରୋକ୍ଷଜ୍ଞାନେନ କର୍ମାତ୍ମକଂ ବନ୍ଧଂ ପ୍ରକର୍ଷେଣ ହାସ୍ୟସି ତ୍ୟକ୍ଷ୍ୟସି ।

**ବିବୃତି**—ଅତି ପ୍ରାଚୀନ କାଳରୁ ଭାରତବର୍ଷରେ ଦୁଇଟି ସାଧନମାର୍ଗ ବା ମୋକ୍ଷପ୍ରାପ୍ତିପଥ ପ୍ରଚଳିତ ଅଛି । ତନ୍ମଧ୍ୟରୁ ଗୋଟିଏ ସାଂଖ୍ୟ ବା ସନ୍ନ୍ୟାସ ମାର୍ଗ;

ଅନ୍ୟଟି ଯୋଗ ବା କର୍ମଯୋଗ । ସାଂଖ୍ୟମାର୍ଗକୁ ଜ୍ଞାନମାର୍ଗ ମଧ୍ଯ କୁହାଯାଏ । ଏହି ସନ୍ନ୍ୟାସମାର୍ଗର ଆଶ୍ରୟ ପ୍ରତି ଦୃଷ୍ଟି ରଖି ଅର୍ଜୁନ ଯୁଦ୍ଧ ଛାଡ଼ି ଭିକ୍ଷାବୃତ୍ତି ଅବଲମ୍ବନ କରିବାକୁ ପ୍ରସ୍ତୁତ ହୋଇଥିଲେ । ସନ୍ନ୍ୟାସ ମାର୍ଗର ତତ୍ତ୍ୱଅନୁସାରେ ଆତ୍ମାପାଇଁ ବା ଦେହପାଇଁ ଶୋକ କରିବା ଉଚିତ ନୁହେ । ଭଗବାନ୍ ବୁଝାଇ ଦେଇଛନ୍ତି ଯେ, ସୁଖ ଓ ଦୁଃଖ ସମବୁଦ୍ଧିରେ ସହିବାକୁ ହେବ ଏବଂ ସ୍ୱଧର୍ମଦୃଷ୍ଟିରୁ ଯୁଦ୍ଧ କରିବା କ୍ଷତ୍ରିୟର ପରମ କର୍ତ୍ତବ୍ୟ । ସମବୁଦ୍ଧିରେ ଯୁଦ୍ଧ କଲେ ପାପ ସ୍ପର୍ଶ କରେ ନାହିଁ । ଜ୍ଞାନାମାର୍ଗାବଲମ୍ବୀମାନେ ସମସ୍ତେ କର୍ମତ୍ୟାଗୀ ବା କର୍ମକରିବାରୁ ନିବୃତ୍ତ, ତେଣୁ ଏହାକୁ ନିବୃତ୍ତି ମାର୍ଗ ମଧ୍ୟ କହନ୍ତି । କିନ୍ତୁ କର୍ମ ମାର୍ଗର ଲୋକମାନେ ଜ୍ଞାନ ଲାଭ କରି ମଧ୍ୟ କର୍ମର ଯୋଗ ଛେଦନ କରି ପାରନ୍ତି ନାହିଁ; ଯେହି ହେତୁରୁ ଏ ମାର୍ଗକୁ ପ୍ରବୃତ୍ତି ମାର୍ଗ ବା ଯୋଗମାର୍ଗ କୁହାଯାଏ ।

''ପ୍ରବୃତ୍ତି ଲକ୍ଷଣୋ ଯୋଗୋ ଜ୍ଞାନଂ ନିବୃତ୍ତିଲକ୍ଷଣଂ' – ଅନୁଗୀତା

କର୍ମ ଦୁଇପ୍ରକାର । ସକାମ ଓ ନିଷ୍କାମ । ଯାଗଯଜ୍ଞାଦି ବୈଦିକ କାମ୍ୟକର୍ମ ଗୁଡ଼ିକ ସକାମ କର୍ମର ଅନ୍ତର୍ଗତ । ଗୀତାରେ 'ଯୋଗ' ଶବ୍ଦ ସାଧାରଣତଃ ନିଷ୍କାମ କର୍ମଯୋଗ ଅର୍ଥରେ ଏବଂ 'ସାଂଖ୍ୟ' ଶବ୍ଦ ଜ୍ଞାନମାର୍ଗ ଅର୍ଥରେ ପ୍ରଯୁକ୍ତ ହୋଇଅଛି । ମହର୍ଷି କପିଳଙ୍କ ପ୍ରଣୀତ ପ୍ରକୃତିପୁରୁଷବିବେକବିଷୟକ ସାଙ୍ଖ୍ୟ ଦର୍ଶନକୁ 'ସାଙ୍ଖ୍ୟ' ମଧ୍ୟ କୁହାଯାଏ । 'ଯୋଗ' ଶବ୍ଦ ସାଧାରଣତଃ ସମାଧିଯୋଗ ବା ଆସନପ୍ରାଣାୟାମାଦି ପାତଞ୍ଜଳ ଦର୍ଶନକୁ ବୁଝାଏ, ମାତ୍ର ଏଠାରେ 'ସାଙ୍ଖ୍ୟ' ଓ 'ଯୋଗ' ଶବ୍ଦ ସେ ଅର୍ଥରେ ବ୍ୟବହୃତ ହୋଇନାହିଁ । ଗୀତାରେ ଅବଶ୍ୟ ସାଙ୍ଖ୍ୟ ଦର୍ଶନ ଓ ସମାଧି ଯୋଗ ବିଷୟରେ ଅନେକ ତତ୍ତ୍ୱ ଅଛି; ଯଥାସ୍ଥାନରେ ସେ ସବୁ ନିର୍ଦ୍ଦେଶ କରାଯିବ ।

ସାଙ୍ଖ୍ୟନିଷ୍ଠ ବା ସନ୍ନ୍ୟାସ ମାର୍ଗାବଲମ୍ବୀମାନେ ଜୀବନରେ କର୍ମତ୍ୟାଗକୁ ଶ୍ରେଷ୍ଠ ବୋଲି ମନେ କରନ୍ତି । କାରଣ କର୍ମ ବନ୍ଧନର ମୂଳ ଏବଂ ମୁକ୍ତିର ଅନ୍ତରାୟ ବୋଲି ସେମାନଙ୍କର ବିଶ୍ୱାସ । ଆମେ ଯେଉଁ ସବୁ କର୍ମ କରୁଁ ତାହାର ଫଳ ଆମ୍ଭକୁ ଅବଶ୍ୟ ଭୋଗ କରିବାକୁ ହେବ ।

ନା ଭୁକ୍ତଂ କ୍ଷୀୟତେ କର୍ମ୍ମ କଳ୍ପକୋଟି ଶତୈରପି,
ଅବଶ୍ୟମେବ ଭୋକ୍ତବ୍ୟଂ କୃତଂ କର୍ମ ଶୁଭାଶୁଭମ୍ ।

ଅର୍ଥାତ୍ ଶତକୋଟି କଳ୍ପରେ ମଧ୍ୟ ଭୋଗ ଭିନ୍ନ କର୍ମ କ୍ଷୟ ହୁଏ ନାହିଁ, କୃତକର୍ମର ଶୁଭାଶୁଭ ଫଳ ଅବଶ୍ୟ ଭୋଗ କରିବାକୁ ହେବ । ଏହି କର୍ମଫଳ ଭୋଗପାଇଁ ଆମ୍ଭମାନଙ୍କୁ ଜନ୍ମମୃତ୍ୟୁଜରାବ୍ୟାଧିସଂକୁଳ ସଂସାରବନ୍ଧନରେ ଆବଦ୍ଧ ହେବାକୁ ପଡ଼େ । ଏହାହିଁ କର୍ମବନ୍ଧ ବା କର୍ମବନ୍ଧନ ।

ନେହାଭିକ୍ରମନାଶୋଽସ୍ତି ପ୍ରତ୍ୟବାୟୋ ନ ବିଦ୍ୟତେ,
ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋ ଭୟାତ୍ ! ୪୦ ।

କିନ୍ତୁ କର୍ମଯୋଗୀମାନେ କହନ୍ତି ଜ୍ଞାନଲାଭ ପରେ ମଧ୍ୟ ନିଷ୍କାମ ବୁଦ୍ଧିରେ ସର୍ବଦା କର୍ମ କରିବା ପ୍ରତ୍ୟେକ ଲୋକର ପ୍ରକୃତ ପୁରୁଷାର୍ଥ । କର୍ମ ବନ୍ଧନର କାରଣ ନୁହେ, କାମନା ଓ କର୍ତ୍ତୃତ୍ୱାଭିମାନହିଁ ବନ୍ଧନର କାରଣ । ଏ ସମ୍ବନ୍ଧୀୟ ସମସ୍ତ ସନ୍ଦେହ ନିରାକରଣ କରି ଏବଂ ନାନାପ୍ରକାର ଯୁକ୍ତି ପ୍ରଦର୍ଶନ କରି ଭଗବାନ୍ ଗୀତାର ଶେଷ ପର୍ଯ୍ୟନ୍ତ ନିଷ୍କାମ ଭାବରେ କର୍ମ କରିବାକୁ ଅର୍ଜ୍ଜୁନଙ୍କୁ ଉପଦେଶ ଦେଇଅଛନ୍ତି ।

**୪୦। ଅନ୍ୱୟ ଦୀପିକା**—ଇହ ( ଏହି ନିଷ୍କାମ କର୍ମଯୋଗରେ ) ଅଭିକ୍ରମନାଶଃ ( ଆରବ୍ଧ କର୍ମର ନିଷ୍ଫଳତା ) ନ ଅସ୍ତି ( ନାହିଁ ), ପ୍ରତ୍ୟବାୟଃ ( ବିଘ୍ନ ମଧ୍ୟ ) ନ ବିଦ୍ୟତେ (ହୁଏ ନାହିଁ ) ଅସ୍ୟ ଧର୍ମସ୍ୟ (ଏହି ଧର୍ମର) ସ୍ୱଳ୍ପମ୍ ଅପି ( ଅତି ଅଳ୍ପ ଆଚରଣ ମଧ୍ୟ ) ମହତୋ ଭୟାତ୍ ( ମହାଭୟରୁ ) ତ୍ରାୟତେ ( ରକ୍ଷାକରେ ) ।

**ଅନୁବାଦ**—ଏହି ନିଷ୍କାମ କର୍ମଯୋଗରେ ଆରବ୍ଧ କର୍ମର ନାଶ ହୁଏ ନାହିଁ ଏବଂ ( ତ୍ରୁଟି ବିଚ୍ୟୁତ ହେତୁରୁ ) ବିଘ୍ନ ବା ପାପ ମଧ୍ୟ ହୁଏ ନାହିଁ । ଏହି ଧର୍ମର ଅଳ୍ପ ଆଚରଣ ମଧ୍ୟ ମହାଭୟରୁ ରକ୍ଷାକରେ ।

**ସୁବୋଧିନୀ ଟୀକା**—ନନୁ କୃଷ୍ୟାଦିବତ୍ କର୍ମଣାଂ କଦାଚିଦ୍‌ବିଘ୍ନ-ବାହୁଲ୍ୟେନ ଫଳେ ବ୍ୟଭିଚାରିତ୍ୱାଦ୍ୟଙ୍ଗବୈଗୁଣ୍ୟେନ ଚ ପ୍ରତ୍ୟବାୟ-ସମ୍ଭବାତ୍ କୁତଃ କର୍ମଯୋଗେନ କର୍ମବନ୍ଧପ୍ରହାଣମ୍ ? ତତ୍ରାହନେହେତ୍ୟାଦି; ଇହ ନିଷ୍କାମକର୍ମଯୋଗେଽଭିକ୍ରମସ୍ୟ ପ୍ରାରମ୍ଭସ୍ୟ ନାଶୋ ନିଷ୍ଫଳତ୍ୱଂ ନାସ୍ତି, ପ୍ରତ୍ୟବାୟଶ୍ଚ ନ ବିଦ୍ୟତେ । ଈଶ୍ୱରୋଦ୍ଦେଶେନୈବ ବିଘ୍ନବୈଗୁଣ୍ୟାଦ୍ୟସମ୍ଭବାତ୍ । କିଞ୍ଚାସ୍ୟ ଧର୍ମସ୍ୟେଶ୍ୱରାରାଧନାର୍ଥକର୍ମଯୋଗସ୍ୟ ସ୍ୱଳ୍ପମପ୍ୟୁପକ୍ରମମାତ୍ରମପି କୃତଂ ମହତୋ ଭୟାତ୍ ସଂସାର ଲକ୍ଷଣାତ୍ ତ୍ରାୟତେ ରକ୍ଷତି । ନ ତୁ କାମ୍ୟକର୍ମବତ୍ କିଞ୍ଚିଦଙ୍ଗବୈଗୁଣ୍ୟାଦିନା ନୈଷ୍ଫଲ୍ୟମସ୍ୟେତ୍ୟର୍ଥଃ ।

**ବିବୃତି**—ଯଜ୍ଞାଦି କାମ୍ୟ କର୍ମର ଫଳ ଭୋଗ ଶେଷରେ ନଷ୍ଟ ହୋଇଯାଏ, କିନ୍ତୁ ନିଷ୍କାମ କର୍ମଯୋଗରେ ସେପରି ଆଶଙ୍କା କେବେହେଲେ ହୁଏ ନାହିଁ । ନିଷ୍କାମ କର୍ମ ଚିତ୍ତର ମଳିନତା ଦୂରକରି କର୍ମକାରୀକୁ ଈଶ୍ୱରା-ଭିମୁଖୀନ କରାଏ । ଯଜ୍ଞଦାନାଦି ସକାମ କର୍ମ ଯେବେ ଆରମ୍ଭ କରି ଶେଷ କରା ନ ଯାଏ ତାହା ନିଷ୍ଫଳ ହୁଏ ଏବଂ ଯେଉଁ ଟିକିକ କରା ହୋଇଥାଏ ତାହା ମଧ୍ୟ ବ୍ୟର୍ଥ ହୁଏ, ପୁଣି ଆଉଥରେ ନୂଆକରି ଆରମ୍ଭ କରାଯାଏ । ପୁଣି ତହିଁରେ

ବ୍ୟବସାୟାତ୍ମିକା ବୁଦ୍ଧିରେକେହ କୁରୁନନ୍ଦନ,
ବହୁଶାଖା ହ୍ୟନନ୍ତାଶ୍ଚ ବୁଦ୍ଧୟୋଽବ୍ୟବସାୟିନାମ୍ ।୪୧।

ଅଙ୍ଗହାନି ବା ନଷ୍ଟହେଲେ ପ୍ରତ୍ୟବାୟ ବା ପାପ ମଧ୍ୟ ହୁଏ । କିନ୍ତୁ ନିଷ୍କାମ କର୍ମ-ଯୋଗରେ ଏପରି କୌଣସି ଆଶଙ୍କା ନାହିଁ । ଯେ ସମସ୍ତ କର୍ମ ସ୍ୱାର୍ଥାନୁସନ୍ଧି ଓ କାମନା ତ୍ୟାଗକରି ସମ୍ପାଦନ କରନ୍ତି ତାଙ୍କର ଅଙ୍ଗହାନିଜନିତ ପାପର ଭୟ ନ ଥାଏ । ବିଶେଷତଃ ନିଷ୍କାମକର୍ମ କରିବା ବ୍ୟକ୍ତି ଯେତେବେଳେ ସମସ୍ତ କର୍ମ ଓ ତାହାର ଫଳ ଈଶ୍ୱରଙ୍କଠାରେ ସମର୍ପଣ କରନ୍ତି, ସେତେବେଳେ ତାଙ୍କର ବୁଦ୍ଧି କ୍ରମଶଃ ଶୁଦ୍ଧ ହୋଇ ଉଠେ ଏବଂ ଆତ୍ମୋନ୍ନତିର ପଥ ଅନୁକୂଳ ହେଉଥାଏ, ଏକଜନ୍ମରେ ନ ହେଉ, ଜନ୍ମାନ୍ତରରେ ମଧ୍ୟ ତାଙ୍କର ସିଦ୍ଧିଲାଭ ଘଟେ । ଫଳା-କାଙ୍‌କ୍ଷା ବା କାମନା ମୁମୁକ୍ଷୁଲୋକର ପରମ ଶତ୍ରୁ । ଏହି କାମନାକୁ ଯେ ଖର୍ବକରି ପାରନ୍ତି, ତାଙ୍କର ବୁଦ୍ଧି କ୍ରମେ ବହିର୍ମୁଖତା ତ୍ୟାଗକରି ଈଶ୍ୱରାଭିମୁଖୀ ହୁଏ । ସେତେବେଳେ ଭୟ ଆଉ ରହିପାରେ କି ? ଧୀରେ ଧୀରେ ସେ ଇହଜନ୍ମରେ ମଧ୍ୟ ପରମ ଶାନ୍ତି ଲାଭକରି ଜୀବନ୍ମୁକ୍ତିର ଅଧିକାରୀ ହୁଅନ୍ତି । ଅନ୍ୟପକ୍ଷରେ ବିବିଧ କାମନା ଦ୍ୱାରା ଯାହାଙ୍କର ଚିତ୍ତ ନିତ୍ୟ ଆନ୍ଦୋଳିତ ହେଉଥାଏ, ତାଙ୍କର ବୁଦ୍ଧି କେବେହେଁ ଈଶ୍ୱରଙ୍କଠାରେ ଏକନିଷ୍ଠ ହୁଏ ନାହିଁ ।

ଜ୍ଞାନସମ୍ବନ୍ଧରେ କିନ୍ତୁ ଏପରି କଥା କୁହାଯାଇ ପାରେ ନାହିଁ । ଅବଶ୍ୟ ଯେଉଁ-ମାନେ ପୂର୍ଣ୍ଣଜ୍ଞାନର ଅଧିକାରୀ ହୁଅନ୍ତି, ସେମାନେ କର୍ମବନ୍ଧନରୁ ଅକ୍ଳେଶରେ ମୁକ୍ତ ହୋଇ ମୋକ୍ଷପଦ ଲାଭକରନ୍ତି, ମାତ୍ର ଅଳ୍ପଜ୍ଞାନ ଲାଭ କରିଥିବା ଲୋକମାନେ ଈଶ୍ୱରାନୁସନ୍ଧାନରେ ଅକ୍ଷମ ହୋଇ ନାସ୍ତିକ ହୋଇ ଯାଆନ୍ତି । ଏହି ଅଳ୍ପଜ୍ଞ ଲୋକଙ୍କୁ ଲକ୍ଷ୍ୟକରି ଭର୍ତ୍ତୃହରି କହିଅଛନ୍ତି:—

ଅଜ୍ଞଃ ସୁଖମାରାଧ୍ୟଃ ସୁଖତରମାରାଧ୍ୟତେ ବିଶେଷଜ୍ଞଃ,
ଜ୍ଞାନଲବଦୁର୍ବିଦଗ୍ଧଂ ବ୍ରହ୍ମାପି ତଂ ନରଂ ନ ରଞ୍ଜୟତି ।”

"ଅଜ୍ଞଲୋକ ସହଜରେ କୌଣସି କଥା ବୁଝିପାରେ, ବିଶେଷ ଜ୍ଞାନ ଲାଭକରିଥିବା ଲୋକ ଆହୁରି ସହଜରେ ମଧ୍ୟ ବୁଝିପାରେ, ମାତ୍ର ଅଳ୍ପଜ୍ଞାନରେ ଯାହାଙ୍କର ଚିତ୍ତ କଳୁଷିତ, ବ୍ରହ୍ମା ମଧ୍ୟ ତାଙ୍କୁ ବୁଝାଇ ପାରନ୍ତି ନାହିଁ ।”

କିନ୍ତୁ ଯେଉଁମାନେ ଅଳ୍ପମାତ୍ରାରେ ହେଲେ ନିଷ୍କାମକର୍ମର ଅନୁଷ୍ଠାନ କରନ୍ତି ସେମାନେ କ୍ରମେ ପରମ ଶାନ୍ତି ପଥରେ ଅଗ୍ରସର ହୁଅନ୍ତି ।

**୪୧ । ଅନ୍ୱୟଦୀପିକା**—କୁରୁନନ୍ଦନ ( ହେ ଅର୍ଜ୍ଜୁନ ), ଇହ ( ଏହି ନିଷ୍କାମ କର୍ମଯୋଗରେ ) ବ୍ୟବସାୟାତ୍ମିକା ବୁଦ୍ଧିଃ ( ନିଶ୍ଚୟାତ୍ମିକା ବୁଦ୍ଧି ) ଏକା ( କେବଳ ଏକପଦାର୍ଥଗତ ବା ଏକନିଷ୍ଠ ) ଅବ୍ୟବସାୟିନାଂ (ଅସ୍ଥିର-ଚିତ୍ତ ସକାମ ଲୋକଙ୍କର ) ବୁଦ୍ଧୟଃ ( ବୁଦ୍ଧି ) ବହୁଶାଖାଃ ଅନନ୍ତାଃ ଚ ( ବହୁଶାଖାରେ ବିଭକ୍ତ ଓ ଅନନ୍ତ ରୂପ ) ।

**ଅନୁବାଦ**—ହେ କୁରୁନନ୍ଦନ, ଏହି ମାର୍ଗରେ ବ୍ୟବସାୟ ବୁଦ୍ଧି ଅର୍ଥାତ୍ କାର୍ଯ୍ୟାକାର୍ଯ୍ୟ ନିର୍ଣ୍ଣୟକାରୀ ବୁଦ୍ଧି ଏକ ଅର୍ଥାତ୍ ଏକନିଷ୍ଠ ଥାଏ ଅର୍ଥାତ୍ ନିଷ୍କାମଭାବରେ କର୍ମକଲେ ମୁଁ ନିଶ୍ଚେ ତ୍ରାଣ ପାଇବି ଏହିପରି ନିଶ୍ଚୟାତ୍ମିକା ବୁଦ୍ଧି ଏକନିଷ୍ଠ ହୋଇ ରହିଥାଏ । କିନ୍ତୁ ଅବ୍ୟବସାୟୀମାନଙ୍କର ( ଅସ୍ଥିର ଚିତ୍ତ ସକାମ ଲୋକଙ୍କର ) ବୁଦ୍ଧି ବହୁଶାଖାବିଶିଷ୍ଟ ଓ ଅନନ୍ତ ।

**ସୁବୋଧିନୀ ଟୀକା**—କୁତ ଇତ୍ୟପେକ୍ଷାୟାମୁଭୟୋର୍ବୈଷମ୍ୟମାହ-ବ୍ୟବସାୟାତ୍ମିକେତ୍ୟାଦି । ଇହେଶ୍ୱରାରାଧନାଲକ୍ଷଣେ କର୍ମଯୋଗେ ବ୍ୟବସାୟାତ୍ମିକା ପରମେଶ୍ୱରଭକ୍ତ୍ୟୈବ ଧ୍ରୁବଂ ତରିଷ୍ୟାମୀତି ନିଶ୍ଚୟାତ୍ମିକୈକୈବୈକନିଷ୍ଠୈବ ବୁଦ୍ଧିର୍ଭବତି । .ଅବ୍ୟବସାୟିନାଂ ତ୍ୱୀଶ୍ୱରାରାଧନବହିର୍ମୁଖାଣାଂ କାମିନାଂ—କାମନା ମାନନ୍ତ୍ୟାତ୍—ଅନନ୍ତାଃ । ତତ୍ରାପି ହି କର୍ମଫଲଗୁଣଫଲତ୍ୱାଦି-ପ୍ରକାରଭେଦାଦ୍‌ବହୁଶାଖାଶ୍ଚ ବୁଦ୍ଧୟୋ ଭବନ୍ତି । ଈଶ୍ୱରାରାଧନାର୍ଥଂ ହି ନିତ୍ୟଂ ନୈମିତ୍ତିକଂ ଚ କର୍ମ କିଞ୍ଚିଦଙ୍ଗବୈଗୁଣ୍ୟେଽପି ନ ନଶ୍ୟତି । ଯଥା ଶକ୍ନୁୟାତ୍ ତଥା କୁର୍ଯ୍ୟାଦିତି ହି ତଦ୍‌ବିଧୀୟତେ । ନ ଚ ବୈଗୁଣ୍ୟମପି । ଈଶ୍ୱରୋଦ୍ଦେଶେନୈବ ବୈଗୁଣ୍ୟୋପଶମାତ୍ । ନ ତୁ ତଥା କାମ୍ୟଂ କର୍ମ । ଅତୋ ମହଦ୍‌ବୈଷମ୍ୟ ମିତଭାବଃ ।

**ବିବୃତି**—ସଂସ୍କୃତ ଭାଷାରେ ବୁଦ୍ଧି ଶବ୍ଦ ନାନା ଅର୍ଥରେ ପ୍ରଯୁକ୍ତ ହୁଏ । ସାଧାରଣତଃ 'ବୋଧ' ବା 'ଜ୍ଞାନ' ଅର୍ଥ ବୁଦ୍ଧିଶବ୍ଦଦ୍ୱାରା ପ୍ରକାଶ ପାଏ । ଏ ଅଧ୍ୟାୟର ୩୯ଶ ଶ୍ଲୋକରେ ଏହି ଜ୍ଞାନଅର୍ଥରେ ବୁଦ୍ଧିଶବ୍ଦ ବ୍ୟବହୃତ ହୋଇଅଛି ; ଏ ଶ୍ଲୋକରେ 'ବୁଦ୍ଧି' ଶବ୍ଦ ନିଶ୍ଚୟାତ୍ମିକା ମନୋବୃତ୍ତି ବା ଅନ୍ତରିନ୍ଦ୍ରିୟ ଅର୍ଥରେ ପ୍ରୟୋଗ କରାଯାଇଅଛି । ଶ୍ରୀଧରସ୍ୱାମୀ କହନ୍ତି, 'ପରମେଶ୍ୱରଙ୍କୁ ଭକ୍ତି କରିବାଦ୍ୱାରା ମୁଁ ନିଶ୍ଚୟ ଉଦ୍ଧାର ପାଇବି'—ଏହାହିଁ ବ୍ୟବସାୟାତ୍ମିକା ବୁଦ୍ଧି, ଏହି ବୁଦ୍ଧିହିଁ ଏକନିଷ୍ଠ ହୁଏ ଅର୍ଥାତ୍ ନାନା ବିଷୟରେ ଧାବିତ ହୁଏ ନାହିଁ । ଏ ଶ୍ଲୋକର ଦ୍ୱିତୀୟ ପାଦରେ 'ବୁଦ୍ଧୟଃ' ଏହି ବହୁବଚନାନ୍ତ ବୁଦ୍ଧିଶବ୍ଦ ପ୍ରଯୁକ୍ତ ହୋଇଅଛି । ବୁଦ୍ଧି କିଛି ସ୍ଥିରକରି ଦେଲେ 'ମନ' ସେହି କାର୍ଯ୍ୟପ୍ରତି ଆସକ୍ତ ହୋଇ ସେହି ଆଡ଼କୁ ଧାବିତ ହୁଏ, ଏହାକୁହିଁ 'ବାସନାତ୍ମିକା ବୁଦ୍ଧି' ବା 'ବାସନା' କୁହାଯାଏ । ଦ୍ୱିତୀୟ ପାଦରେ ପ୍ରଯୁକ୍ତ 'ବୁଦ୍ଧୟଃ' ଶବ୍ଦ ଏହି ବାସନାତରଙ୍ଗ ଅର୍ଥରେ ବ୍ୟବହୃତ ହୋଇଅଛି ।

ଈଶ୍ୱରପ୍ରୀତିରିନ୍ନ ସମତ୍ୱବୁଦ୍ଧିଯୁକ୍ତ ନିଷ୍କାମ କର୍ମରେ ଅନ୍ୟ ଉଦ୍ଦେଶ୍ୟ ନ ଥାଏ, ତେଣୁ ସେ ବୁଦ୍ଧି ଏକନିଷ୍ଠ ହୋଇଥାଏ; କିନ୍ତୁ ଯେଉଁମାନେ ଅବ୍ୟବସାୟୀ ଅର୍ଥାତ୍ ଯେଉଁମାନଙ୍କର ସେପରି ନିଶ୍ଚୟାତ୍ମିକା ବୁଦ୍ଧି ନାହିଁ, ସେମାନଙ୍କର

ଯାମିମାଂ ପୁଷ୍ପିତାଂ ବାଚଂ ପ୍ରବଦନ୍ତ୍ୟବିପଶ୍ଚିତଃ ।
ବେଦବାଦରତାଃ ପାର୍ଥ ନାନ୍ୟଦସ୍ତୀତିବାଦିନଃ । ୪୨ ।
କାମାତ୍ମାନଃ ସ୍ୱର୍ଗପରାଃ ଜନ୍ମକର୍ମଫଳପ୍ରଦାମ୍ ।
କ୍ରିୟାବିଶେଷବହୁଳାଂ ଭୋଗୈଶ୍ୱର୍ଯ୍ୟଗତିଂ ପ୍ରତି । ୪୩ ।
ଭୋଗୈଶ୍ୱର୍ଯ୍ୟପ୍ରସକ୍ତାନାଂ ତୟାପହୃତଚେତସାମ୍ ।
ବ୍ୟବସାୟାତ୍ମିକା ବୁଦ୍ଧିଃ ସମାଧୌ ନ ବିଧୀୟତେ । ୪୪ ।

ବାସନାତରଙ୍ଗ ଅନନ୍ତପଥରେ ଧାବିତ ହୁଏ । ଇହ କାଳରେ ପୁତ୍ର ପାଇଁ, ଧନ ପାଇଁ, ଅଧିକାର ପାଇଁ ଏବଂ ସେହିଭଳି ଅନ୍ୟ କେତେ ପଦାର୍ଥ ପାଇଁ ଏବଂ ପରକାଳରେ ସ୍ୱର୍ଗସୁଖ ପାଇଁ ସକାମ ବ୍ୟକ୍ତିମାନଙ୍କର ବୁଦ୍ଧି ସର୍ବଦା ଚଞ୍ଚଳ ଥାଏ । ଏଥିପାଇଁ ନାନାବିଧ ଯାଗଯଜ୍ଞ କରିବାରେ ସେମାନଙ୍କର ବୁଦ୍ଧି ଅନନ୍ତ ପଥରେ ଗତିକରେ । ବେଦର କର୍ମକାଣ୍ଡରେ ମଧ୍ୟ ଏହିଭଳି ସକାମ ଯାଗଯଜ୍ଞ କରିବାର ନାନା ବିଧି ବର୍ଣ୍ଣିତ ହୋଇଅଛି । ଏହାଦ୍ୱାରା ଭଗବାନ୍ ଏ ଶ୍ଳୋକରେ ସକାମ ଓ ନିଷ୍କାମ କର୍ମୀଙ୍କର ବୁଦ୍ଧି ବିଶ୍ଳେଷଣ କରି ଦେଇ ଅଛନ୍ତି ଏବଂ ପରବର୍ତ୍ତୀ କେତେକ ଶ୍ଳୋକରେ ଏହି ସକାମ ଯଜ୍ଞାଦିର ଫଳର ଅସ୍ଥାୟିତ୍ୱ ପ୍ରତିପାଦନ କରିଅଛନ୍ତି ।

ଯେଉଁ କାଳରେ ଏ ଗୀତା ଗ୍ରନ୍ଥ ପ୍ରଣୀତ ହୋଇଥିଲା ସେତେବେଳେ ସକାମ ବୈଦିକ ଯାଗଯଜ୍ଞାଦିର ବହୁଳ ପ୍ରଚାର ଥିଲା । ସେଗୁଡ଼ିକ କର୍ମର ଅନ୍ତର୍ଗତ ହେଲେହେଁ ନିଷ୍କାମ କର୍ମଯୋଗ ତୁଳନାରେ ଯେ ନିତାନ୍ତ ଅକିଞ୍ଚିତ୍କର ତାହାହିଁ ଏହା ପରେ ଦେଖାଇ ଦିଆଯାଇଅଛି ।

**୪୨ । ୪୩ । ୪୪ । ଅନ୍ୱୟଦୀପିକା**—ପାର୍ଥ ( ହେ ଅର୍ଜ୍ଜୁନ ) ଅବିପଶ୍ଚିତଃ (ଅବିବେକୀ) ବେଦବାଦରତାଃ (ବେଦୋକ୍ତ କର୍ମକାଣ୍ଡର ପ୍ରଶଂସାରେ ଅନୁରକ୍ତ ), ଅନ୍ୟତ୍ ନ ଅସ୍ତି ଇତି ବାଦିନଃ (ତା ଛଡ଼ା ଆଉ କିଛି-ନାହିଁ ଏହି ମତବାଦୀ ) କାମାତ୍ମାନଃ (କାମନାକୁଳ ଚିତ୍ତ), ସ୍ୱର୍ଗପରାଃ (ସ୍ୱର୍ଗାଦିଲାଭହିଁ କେବଳ ଯାହାଙ୍କର ଉଦ୍ଦେଶ୍ୟ) [ ଏ ଭଳି ଲୋକମାନେ ] ଜନ୍ମକର୍ମଫଳପ୍ରଦାଂ (ଜନ୍ମରୂପ କର୍ମଫଳ ପ୍ରଦାନକାରୀ) ଭୋଗୈଶ୍ୱର୍ଯ୍ୟଗତିଂ ପ୍ରତି (ଭୋଗ ଓ ଐଶ୍ୱର୍ଯ୍ୟ ଲାଭର ଉପାୟଭୂତ ) କ୍ରିୟାବିଶେଷବହୁଳାଂ ( ବିବିଧ କ୍ରିୟାକଳାପବିଶିଷ୍ଟ ) ଯାମ୍ ଇମାଂ ପୁଷ୍ପିତାଂ ବାଚଂ (ଏହି ଯେ ପ୍ରଶଂସାସୂଚକ ବାକ୍ୟ) ପ୍ରବଦନ୍ତି (କହନ୍ତି) ତୟା (ସେହିବାକ୍ୟ ଦ୍ୱାରା) ଅପହୃତଚେତସାଂ ( ବିମୁଗ୍ଧ ଚିତ୍ତ ) ଭୋଗୈଶ୍ୱର୍ଯ୍ୟ-ପ୍ରସକ୍ତାନାଂ (ଭୋଗ ଓ ଐଶ୍ୱର୍ଯ୍ୟରେ ଆସକ୍ତ ଚିତ୍ତ ଲୋକମାନଙ୍କ) ବ୍ୟବସାୟାତ୍ମିକା ବୁଦ୍ଧିଃ (କାର୍ଯ୍ୟ ଅକାର୍ଯ୍ୟ ନିର୍ଣ୍ଣୟକାରୀ ନିଶ୍ଚୟାତ୍ମିକା ବୁଦ୍ଧି) ସମାଧୌ ନ ବିଧୀୟତେ ( ସମାଧିସ୍ଥ ହୁଏ ନାହିଁ ବା ଏକ ବିଷୟରେ ସ୍ଥିର ହୁଏ ନାହିଁ ) ।

**ଅନୁବାଦ**—ହେ ଅର୍ଜ୍ଜୁନ, ଯେଉଁ ଅଳ୍ପବୁଦ୍ଧି ଲୋକମାନେ ବେଦୋକ୍ତ କର୍ମକାଣ୍ଡର ଆପାତ ମନୋହର ସ୍ୱର୍ଗଫଳ ପ୍ରକାଶକ ବାକ୍ୟରେ ଅନୁରକ୍ତ, ସେମାନେ କହନ୍ତି ବେଦୋକ୍ତ କାମ୍ୟକର୍ମାତ୍ମକ ଧର୍ମଭିନ୍ନ ଅନ୍ୟ କିଛି ଧର୍ମ ନାହିଁ, ସେମାନଙ୍କ ଚିତ୍ତ କାମନା କଳୁଷିତ ଓ ସ୍ୱର୍ଗ ସେମାନଙ୍କର ପରମ ପୁରୁଷାର୍ଥ; ଜନ୍ମ ରୂପ କର୍ମଫଳ ପ୍ରଦାନକାରୀ ଭୋଗ ଓ ଐଶ୍ୱର୍ଯ୍ୟର ସାଧନଭୂତ ନାନାବିଧ କ୍ରିୟା ପ୍ରକାଶକ ବାକ୍ୟରେ ସେମାନେ ଅପହୃତ ଚିତ୍ତ ହୋଇଥାଆନ୍ତି । ଭୋଗ ଓ ଐଶ୍ୱର୍ଯ୍ୟରେ ଆସକ୍ତ ସେହି ବ୍ୟକ୍ତିମାନଙ୍କର କାର୍ଯ୍ୟାକାର୍ଯ୍ୟ ନିର୍ଣ୍ଣୟାତ୍ମକ ବୁଦ୍ଧି ଏକ ବିଷୟରେ ସ୍ଥିରହୋଇ ପାରେ ନାହିଁ ।

**ସୁବୋଧିନୀ ଟୀକା**—ନନୁ କାମିନୋଽପି କସ୍ମାତ୍ କାମାନ ବିହାୟ ବ୍ୟବସାୟାତ୍ମିକାମେବ ବୁଦ୍ଧି କିମିତି ନ କୁର୍ବନ୍ତି । ତତ୍ରାହ ଯାମିମାମିତ୍ୟାଦି । ଯାମିମାଂ ପୁଷ୍ପିତାଂ ବିଷଲତାବଦାପାତରମଣୀୟାଂ ପ୍ରକୃଷ୍ଟାଂପରମାର୍ଥଫଳପରାମେବ ବଦନ୍ତି ବାଚଂ ସ୍ୱର୍ଗାଦିଫଳଶ୍ରୁତିମ୍ । ତେଷାଂ ତୟା ବାଚାପହୃତଚେତସାଂ ବ୍ୟବସାୟାତ୍ମିକା ବୁଦ୍ଧିଃ । ନ ସମାଧୌ ବିଧୀୟତ ଇତି ତୃତୀୟେନାନ୍ୱୟଃ । କିମିତି ତଥା ବଦନ୍ତି ? ଯତୋ ଅବିପଶ୍ଚିତୋ ମୂଢ଼ାଃ । ତତ୍ରହେତୁଃ—ବେଦବାଦରତା ଇତି, ବେଦେ ଯେ ବାଦା ଅର୍ଥବାଦାଃ । ଅକ୍ଷୟ୍ୟଂ ହ ବୈ ଚାତୁର୍ମାସ୍ୟଯାଜିନଃ ସୁକୃତଂ ଭବତି । ତଥା—ଅପାମ ସୋମ ଅମୃତା ଅଭୂମ ଇତ୍ୟାଦୟାଃ । ତେଷ୍ୱେବରତାଃ ପ୍ରୀତାଃ । ଅତଏବାତଃ ପରମନ୍ୟଦୀଶ୍ୱରତତ୍ତ୍ୱଂ ପ୍ରାପ୍ୟଂ ନାସ୍ତୀତି ବଦନଶୀଳାଃ ।

ଅତଏବ—କାମାତ୍ମାନ ଇତି । କାମାତ୍ମାନଃ କାମାକୁଳିତ ଚିତ୍ତାଃ । ଅତଃ ସ୍ୱର୍ଗ ଏବ ପରଃ ପୁରୁଷାର୍ଥୋ ଯେଷାଂ ତେ । ଜନ୍ମ ଚ ତତ୍ରକର୍ମାଣି ଚ ତତ୍‌ଫଳାନି ଚ ପ୍ରଦଦାତୀତି ତଥା । ତାଂ ଭୋଗୈଶ୍ୱର୍ଯ୍ୟୟୋର୍ଗତିଂ ପ୍ରାପ୍ତିଂ ପ୍ରତି ସାଧନଭୂତା ଯେ କ୍ରିୟାବିଶେଷାସ୍ତେ ବହୁଳା ଯସ୍ୟାଂ ତାଂ ପ୍ରବଦନ୍ତୀତ୍ୟନୁଷଙ୍ଗଃ ।

ତତଶ୍ଚ—ଭୋଗୈଶ୍ୱର୍ଯ୍ୟପ୍ରସକ୍ତାନାମିତ୍ୟାଦି । ଭୋଗୈଶ୍ୱର୍ଯ୍ୟୟୋଃ ପ୍ରସକ୍ତାନାମଭିନିବିଷ୍ଟାନାଂ ତୟା ପୁଷ୍ପିତୟା ବାଚାପହୃତମାକୃଷ୍ଟଂ ଚେତୋ ଯେଷାଂ ତେଷାଂ । ସମାଧିଶ୍ଚିତ୍ତୈକାଗ୍ର୍ୟମ୍ । ପରମେଶ୍ୱରାଭିମୁଖତ୍ୱ ମିତି ଯାବତ୍ । ତସ୍ମିନ୍ନିଶ୍ଚୟାତ୍ମିକାବୁଦ୍ଧିସ୍ତୁ ନ ବିଧୀୟତେ । କର୍ମକର୍ତ୍ତରି ପ୍ରୟୋଗଃ । ସା ନୋତ୍‌ପଦ୍ୟତ ଇତି ଭାବଃ ।

**ବିବୃତି**—ଏହି ତିନଗୋଟି ଶ୍ଳୋକ ମିଶି ଗୋଟିଏ ବାକ୍ୟ । ତେଣୁ ଏଠାରେ ଏହି ତିନି ଶ୍ଳୋକର ଏକତ୍ର ଆଲୋଚନା କରାଯାଉଅଛି । ଏ ତିନି ଶ୍ଳୋକରେ ବେଦୋକ୍ତ କର୍ମକାଣ୍ଡର ନିନ୍ଦା କରାଯାଇଅଛି । ଗୀତାରେ ଅନେକ ସ୍ଥାନରେ ବେଦର ପ୍ରଶଂସା ମଧ୍ୟ ଅଛି । ବେଦ ସାଧାରଣତଃ ଦୁଇଭାଗରେ ବିଭକ୍ତ; ୧—କର୍ମକାଣ୍ଡ ଓ ୨—ଜ୍ଞାନକାଣ୍ଡ । ବେଦର ସଂହିତା ଓ ବ୍ରାହ୍ମଣଭାଗ

କର୍ମକାଣ୍ଡାତ୍ମକ ଏବଂ ଆରଣ୍ୟକ ଓ ଉପନିଷଦ୍‌ଭାଗ ଜ୍ଞାନକାଣ୍ଡାତ୍ମକ । କର୍ମକାଣ୍ଡାତ୍ମକ ବେଦର ବିରୋଧଭଞ୍ଜନ ଏବଂ ସାମଞ୍ଜସ୍ୟ ବିଧାନ ପାଇଁ ମହର୍ଷି ଜୈମିନି 'ପୂର୍ବମୀମାଂସା' ନାମରେ ଗୋଟିଏ ଦର୍ଶନଶାସ୍ତ୍ର ପ୍ରଣୟନ କରିଅଛନ୍ତି । ମୀମାଂସା ଦର୍ଶନମତରେ ବେଦ ନିତ୍ୟ, ଅଭ୍ରାନ୍ତ ଓ ଅପୌରୁଷେୟ । ଯାହା, କୌଣସି ପୁରୁଷ-କର୍ତ୍ତୃକ ଲିଖିତ ନୁହେ ତାହାକୁହିଁ ଅପୌରୁଷେୟ କୁହାଯାଏ । ଋଷିମାନେ ମନ୍ତ୍ର-ଦ୍ରଷ୍ଟା ମାତ୍ର । ବେଦ ଚିରଦିନ ଅଛି ଏବଂ ଚିରଦିନ ରହିବ । ବେଦର ପ୍ରାମାଣ୍ୟ ସ୍ୱତଃସିଦ୍ଧ , ବେଦର ସତ୍ୟତା ଅନ୍ୟ ପ୍ରମାଣକୁ ଅପେକ୍ଷା କରେ ନାହିଁ । ମୀମାଂସକମାନେ ନିରୀଶ୍ୱରବାଦୀ । ସେମାନେ ବେଦକୁ ନିତ୍ୟ ଏବଂ ଅଭ୍ରାନ୍ତ କହନ୍ତି ସତ୍ୟ, ମାତ୍ର ବେଦ ଯେ ଈଶ୍ୱରବାକ୍ୟ ଏହା ସେମାନେ ସ୍ୱୀକାର କରନ୍ତି ନାହିଁ । ଅନ୍ୟପକ୍ଷରେ ଜ୍ଞାନବାଦୀମାନେ କର୍ମକାଣ୍ଡର ବିରୋଧୀ । ସେମାନେ କହନ୍ତି କର୍ମଦ୍ୱାରା ଶ୍ରେୟୋଲାଭ ହୁଏ ନାହିଁ; ଯାହା କିଛି ଫଳଲାଭ ହୁଏ ତାହା ଅସ୍ଥାୟୀ । ଏସବୁ କଥାରୁ ଜଣାଯାଏ ଯେ ମହାଭାରତ ରଚିତ ହେବା ଯୁଗରେ ବେଦୋକ୍ତ କର୍ମକାଣ୍ଡବାଦୀ ଓ ଜ୍ଞାନବାଦୀମାନଙ୍କ ମଧ୍ୟରେ ଭୟଙ୍କର ମତଭେଦ ଜାତ ହୋଇ-ଥିଲା । କାମ୍ୟକର୍ମାତ୍ମକ ଉପାସନାର ସାଧାରଣ ନାମ କର୍ମ; ସେ ସମୟରେ ଏ ଭଳି କର୍ମାତ୍ମକ ଧର୍ମର ପ୍ରାଦୁର୍ଭାବ ଅତ୍ୟନ୍ତ ପ୍ରବଳ ହୋଇଥିଲା । ଯାଗଯଜ୍ଞର ପ୍ରାଧାନ୍ୟରୁ ଧର୍ମର ପ୍ରକୃତ ମର୍ମ ସମାଜରୁ ଲୁପ୍ତ ପ୍ରାୟ ହୋଇ ଯାଇଥିଲା । ଯେଉଁମାନେ ଧର୍ମର ପ୍ରକୃତ ସ୍ୱରୂପ ଜାଣିବାକୁ ଇଚ୍ଛୁକ ଥିଲେ, ସେମାନେ ଏହିସବୁ ସାଡ଼ମ୍ବର କାମ୍ୟ-କର୍ମପଦ୍ଧତିକୁ ନିତାନ୍ତ ହୀନଦୃଷ୍ଟିରେ ଦେଖି ବିଶ୍ୱସୃଷ୍ଟିର ଅନ୍ତରାଳରେ ଯେଉଁ ଅଜ୍ଞେୟ ଅନନ୍ତ ଶକ୍ତି କାର୍ଯ୍ୟ କରୁଅଛି ତାହାର ଅନୁସନ୍ଧାନରେ ଆପଣାକୁ ନିୟୋଗ କଲେ । ଉପନିଷଦ୍ ବା ବେଦାନ୍ତବାଦ ଏହି ଅନୁସନ୍ଧାନର ପରିଣାମ ।

ଯାଗ ଯଜ୍ଞାଦି କାମ୍ୟକର୍ମ ଉପରେ ଅଧ୍ୟାତ୍ମବାଦୀମାନଙ୍କର ଶ୍ରଦ୍ଧା କମିଯିବାରୁ ସମାଜରେ ଧର୍ମବିପ୍ଳବ ଉପସ୍ଥିତ ହେଲା । ଦଳେ 'ଚାର୍ବାକବାଦ' ଅବଲମ୍ବନ କରି ପ୍ରଚାର କଲେ 'ଯାବତ୍ ଜୀବେତ୍ ସୁଖଂ ଜୀବେତ୍, ଋଣଂ କୃତ୍ୱା ଘୃତଂ ପିବେତ୍', ଯେତେଦିନ ବଞ୍ଚିବା ସୁଖରେ ହିଁ ବଞ୍ଚିବା; ଖାଇ, ପିଇ, ନାଚ, କୁଦ, ଆନନ୍ଦରେ ଜୀବନ ଯାପନ କରିବା—ଏହା ସେମାନଙ୍କର ଲକ୍ଷ୍ୟ ହେଲା; ଈଶ୍ୱର ବା ପରଲୋକ ସେମାନଙ୍କ ମତରେ କବିକଳ୍ପନା ମାତ୍ର । ଦ୍ୱିତୀୟ ଦଳଙ୍କର ନେତା ହେଲେ ମହାତ୍ମା ଶାକ୍ୟସିଂହ—ସେ କହିଲେ କର୍ମର ଫଳ ଅଛି ସତ୍ୟ ମାତ୍ର କର୍ମରୁ ସମସ୍ତ ଦୁଃଖର ଉତ୍ପତ୍ତି । କାମନା ବା ତୃଷ୍ଣାପରବଶ ହୋଇ କର୍ମ କଲେ ଦୁଃଖ କବଳରୁ ମନୁଷ୍ୟ ରକ୍ଷା ପାଇ ପାରିବ ନାହିଁ । ତତ୍ପରେ ଦାର୍ଶନିକମାନଙ୍କର ଆବିର୍ଭାବ । ଦାର୍ଶନିକମାନେ ସମସ୍ତେ ଜ୍ଞାନବାଦୀ ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ 'ନିରୀଶ୍ୱରବାଦର ପ୍ରଚାରକ । ଏକମାତ୍ର ବେଦାନ୍ତ ଦର୍ଶନହିଁ

ବୃତ୍ତ ପ୍ରତିପାଦକ । ବିଶ୍ୱସୃଷ୍ଟି ଓ ମାନବ ପ୍ରକୃତିର ଅନ୍ତରତମ ପ୍ରଦେଶ ଅନ୍ୱେଷଣ କରି ବେଦାନ୍ତ ଯେଉଁ ସତ୍ୟ ପ୍ରଚାର କରିଗଲେ ପରବର୍ତ୍ତୀ କାଳରେ ତାହାଦ୍ୱାରା ଭାରତୀୟ ଧର୍ମ ରାଜ୍ୟରେ ଘୋର ବିପ୍ଳବର ସୃଷ୍ଟି ହେଲା । ଜ୍ଞାନହିଁ ଧର୍ମ, ଜ୍ଞାନହିଁ ନିଃଶ୍ରେୟସ—ଉପନିଷଦ୍ ବା ବେଦାନ୍ତବାଦୀମାନଙ୍କର ଉଦ୍ଭାବିତ ଏହି ସତ୍ୟ ଉପରେ ଅଭିନବ ଧର୍ମଜୀବନର ସୃଷ୍ଟି ହେଲା । ଭଗବାନ ଶ୍ରୀକୃଷ୍ଣ ଯେଉଁ ଧର୍ମ ପ୍ରଚାର ପାଇଁ ପୃଥିବୀରେ ଅବତୀର୍ଣ୍ଣ ହୋଇଥିଲେ, ଏହି ଗୀତା ଗ୍ରନ୍ଥରେ ହିଁ ସେ ତାହା ପ୍ରଚାର କରି ଯାଇଅଛନ୍ତି । ଜ୍ଞାନ ହିଁ ଧର୍ମର ମୂଳ, ସତ୍ୟ ମାତ୍ର ଅନ୍ୟ ଜ୍ଞାନବାଦୀମାନେ ଯାହା ଦେଖି ପାରି ନ ଥିଲେ ଅନନ୍ତ ଜ୍ଞାନର ଆଧାର ଶ୍ରୀକୃଷ୍ଣ ତାହା ଦେଖି ପାରିଥିଲେ । ଜ୍ଞାନ ସମସ୍ତଙ୍କ ପକ୍ଷରେ ସହଜ ଲଭ୍ୟ ନୁହେଁ, ତେଣୁ ଧର୍ମଜୀବନ ଲାଭର ଅନ୍ୟ ସହଜ ପଥ—ଯାହାକି ସାଧାରଣ ଲୋକଙ୍କ ପକ୍ଷରେ ସୁଖଲଭ୍ୟ,—ସେ ତାହା ଉଦ୍ଭାବନ କରି ପ୍ରଚାର କଲେ ଯେ ଜ୍ଞାନର ପଥ ଓ ଅନ୍ୟ ପଥ ପରିଣାମରେ ଏକ । ଏହି କେତୋଟି କଥାହିଁ ଗୀତାର ଆଲୋଚ୍ୟ ବିଷୟ ।

ଏହି ଶ୍ଳୋକ ତିନଗୋଟିର ଭାବ ଉପନିଷଦରେ ବର୍ଣ୍ଣିତ ଜ୍ଞାନବର୍ଜିତ କର୍ମର ନିନ୍ଦାର ଅନୁରୂପ; ମୁଣ୍ଡକ ଉପନିଷଦରେ ବର୍ଣ୍ଣିତଅଛି—

ଇଷ୍ଟାପୂର୍ତ୍ତଂ ମନ୍ୟମାନା ବରିଷ୍ଠଂ ନାନ୍ୟଚ୍ଛ୍ରେୟୋ ବେଦୟନ୍ତେ ପ୍ରମୂଢ଼ାଃ,
ନାକସ୍ୟପୃଷ୍ଠେ ତେ ସୁକୃତେଽନୁଭୂତ୍ୱେମଂ ଲୋକଂ ହୀନତରଂ ବା ବିଶନ୍ତି
[ମୁ. ଉ. ୧. ୨. ୧୦]

"ଇଷ୍ଟାପୂର୍ତ୍ତି ବା ଯଜ୍ଞକରିବା, କୂପ, ପୁଷ୍କରିଣୀ ଖୋଳାଇବା ପ୍ରଭୃତିହିଁ ଶ୍ରେଷ୍ଠ, ଅନ୍ୟ କିଛି ଶ୍ରେଷ୍ଠ ନାହିଁ—ଯେଉଁ ମୂଢ଼ ଲୋକ ଏହା ସ୍ୱୀକାର କରେ ସେ ସ୍ୱର୍ଗଲୋକରେ ପୁଣ୍ୟ ଭୋଗ କରିବାପରେ ଏହି ମନୁଷ୍ୟଲୋକକୁ ବା ଏହା ଅପେକ୍ଷା ଅନ୍ୟ ହୀନତଲୋକକୁ ଫେରିଆସେ ।" ପ୍ରକୃତ କଥା ଈଶ୍ୱର ବିଷୟକ ଜ୍ଞାନଲାଭ ନ କରି କେବଳ କର୍ମରେ ଅବଦ୍ଧ ଥିବା ଏହି ମନୁଷ୍ୟମାନେ ସ୍ୱର୍ଗାଦି ଫଳ ପାଆନ୍ତି ସତ, କିନ୍ତୁ ସେମାନଙ୍କ ବାସନା ଆଜି ଗୋଟିଏ କର୍ମରେ, କାଲି ଅନ୍ୟ କର୍ମରେ ରତ ହୋଇ ସର୍ବଦା ଏଣେତେଣେ ଦଉଡ଼ୁଥାଏ । ଏମାନେ ସ୍ୱର୍ଗଲାଭ କଲେହେଁ ମୋକ୍ଷର ଅଧିକାରୀ ହୋଇପାରନ୍ତି ନାହିଁ । ମୋକ୍ଷପ୍ରାପ୍ତି-ପାଇଁ ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କୁ ଏକାଗ୍ର ଓ ସଂଯତ କରିବାକୁ ହେବ । ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କୁ କିପରି ଏକନିଷ୍ଠ ଓ ସଂଯତ କରିବାକୁ ହେବ, ପରେ ଷଷ୍ଠଅଧ୍ୟାୟରେ ତାହା କୁହାଯିବ ।

୪୩ଶ ଶ୍ଳୋକରେ 'ଜନ୍ମକର୍ମ ଫଳପ୍ରଦାମ୍' ଏହି ବିଶେଷଣ ପଦଟିର ବ୍ୟାଖ୍ୟାରେ ଆଚାର୍ଯ୍ୟ ଶଙ୍କର କହନ୍ତି, 'କର୍ମଣଃ ଫଳଂ କର୍ମଫଳମ୍ । ଜନ୍ମୈବ କର୍ମଣଃ ଫଳଂ ଜନ୍ମକର୍ମଫଳମ୍, ତତ୍ପ୍ରଦଦାତୀତି ଜନ୍ମକର୍ମ ଫଳପ୍ରଦା, ତାଂ ।'

ତ୍ରୈଗୁଣ୍ୟବିଷୟା ବେଦା ନିସ୍ତ୍ରୈଗୁଣ୍ୟୋ ଭବାର୍ଜୁନ,
ନିର୍ଦ୍ୱନ୍ଦ୍ୱୋ ନିତ୍ୟସତ୍ତ୍ୱସ୍ଥୋ ନିର୍ଯୋଗକ୍ଷେମ ଆତ୍ମବାନ୍ । ୪୫ ।

ଅର୍ଥାତ୍ ଯେଉଁ ସକଳ ବାକ୍ୟ ଜନ୍ମରୂପ କର୍ମଫଳପ୍ରଦ ( କର୍ମକଲେ ତାହାର ଫଳ ଭୋଗ କରିବାକୁ ହିଁ ହେବ ଏବଂ ଫଳ ଭୋଗ ପାଇଁ ଜନ୍ମ ହୁଏ ସୁତରାଂ କର୍ମର ଫଳ ଜନ୍ମ ) । ଅନୁବାଦରେ ଏହି ବ୍ୟାଖ୍ୟା ଅବଲମ୍ବିତ ହୋଇଅଛି । ମାତ୍ର ଶ୍ରୀଧରସ୍ୱାମୀ କହନ୍ତି, 'ଜନ୍ମ ଚ ତତ୍ର କର୍ମାଣି ଚ, ତତ୍ ଫଳାନି ଚ ପ୍ରଦଦାତୀତି 'ତଥା' ଅର୍ଥାତ୍ କାମ୍ୟକର୍ମ ଫଳରେ ଜନ୍ମ, ଜନ୍ମିଲେ ପୁଣି କର୍ମ ଓ ତାହାର ଫଳ ଭୋଗ ।

୪୫ । **ଅନ୍ୱୟଦୀପିକା**—ଅର୍ଜୁନ ! ବେଦାଃ ( କର୍ମକାଣ୍ଡରୂପ ବେଦସମୂହ ) ତ୍ରୈଗୁଣ୍ୟବିଷୟାଃ ( ତ୍ରିଗୁଣାନ୍ୱିତ ) ତ୍ୱଂ (ତୁମେ) ନିସ୍ତ୍ରୈଗୁଣ୍ୟଃ ( ନିଷ୍କାମ ) ଭବ ( ହୁଅ ); ନିର୍ଦ୍ୱନ୍ଦ୍ୱଃ (ସୁଖଦୁଃଖାଦି ଦ୍ୱନ୍ଦ୍ୱରହିତ) ନିତ୍ୟସତ୍ତ୍ୱସ୍ଥଃ ( ନିତ୍ୟସତ୍ତ୍ୱଗୁଣାଶ୍ରିତ ) ନିର୍ଯୋଗକ୍ଷେମଃ ( ଯୋଗକ୍ଷେମରହିତ ) ଆତ୍ମବାନ୍ ( ଅପ୍ରମତ୍ତ ) ଭବ ( ହୁଅ ) ।

**ଅନୁବାଦ**—ହେ ଅର୍ଜୁନ, ବେଦସମୂହ ( କର୍ମକାଣ୍ଡାତ୍ମକ ) ତ୍ରିଗୁଣାନ୍ୱିତ । ତୁମେ ତେଣୁ ନିସ୍ତ୍ରୈଗୁଣ୍ୟ ଅର୍ଥାତ୍ ତ୍ରିଗୁଣର ଅତୀତ, ନିତ୍ୟସତ୍ତ୍ୱସ୍ଥ ଏବଂ ସୁଖଦୁଃଖାଦି ଦ୍ୱନ୍ଦ୍ୱରେ ନିର୍ଲିପ୍ତ ରହି ଏବଂ ଯୋଗକ୍ଷେମ ପ୍ରଭୃତି ସ୍ୱାର୍ଥରେ ନ ପଡ଼ି ଅପ୍ରମତ୍ତ ହୁଅ ।

**ସୁବୋଧିନୀ ଟୀକା**—ନନୁ ସ୍ୱର୍ଗାଦିକଂ ପରମଂ ଫଳଂ ଯଦି ନ ଭବତି ତର୍ହି କିମିତି ବେଦୈସ୍ତତ୍ସାଧନତୟା କର୍ମାଣି ବିଧୀୟନ୍ତେ । ତତ୍ରାହ—ତ୍ରୈଗୁଣ୍ୟବିଷୟା ଇତି । ତ୍ରିଗୁଣାତ୍ମକାଃ ସକାମା ଯେଽଧିକାରିଣସ୍ତଦ୍‌ବିଷୟାସ୍ତେଷାଂ କର୍ମଫଳ ସମ୍ବନ୍ଧ ପ୍ରତିପାଦକା ବେଦାଃ, ତ୍ୱଂ ତୁ ନିସ୍ତ୍ରୈଗୁଣ୍ୟୋ ନିଷ୍କାମୋ ଭବ । ତତ୍ରୋପାୟମାହ ନିର୍ଦ୍ୱନ୍ଦ୍ୱଃ । ସୁଖଦୁଃଖଶୀତୋଷ୍ଣାଦି ଯୁଗଳାନି ଦ୍ୱନ୍ଦ୍ୱାନି । ତଦ୍‌ରହିତୋ ଭବ । ତାନି ସହସ୍ୱେତ୍ୟର୍ଥଃ । କଥମିତି ? ଅତ ଆହ—ନିତ୍ୟସତ୍ତ୍ୱସ୍ଥଃ ସନ୍ । ଧୈର୍ଯ୍ୟମବଲମ୍ବ୍ୟେତ୍ୟର୍ଥଃ । ତଥା ନିର୍ଯୋଗକ୍ଷେମଃ ଅପ୍ରାପ୍ତସ୍ୱୀକାରୋ ଯୋଗଃ । ପ୍ରାପ୍ତପାଳନଂ କ୍ଷେମଃ । ତଦ୍‌ରହିତଃ । ଆତ୍ମବାନ୍ ଅପ୍ରମତ୍ତଃ; ନ ହି ଦ୍ୱନ୍ଦ୍ୱାକୁଳସ୍ୟ ଯୋଗକ୍ଷେମବ୍ୟାପୃତସ୍ୟ ଚ ପ୍ରମାଦିନସ୍ତ୍ରୈଗୁଣ୍ୟାତିକ୍ରମଃ ସମ୍ଭବତୀତି ।

**ବିବୃତି**—ସତ୍ତ୍ୱ, ରଜ, ତମଃ—ପ୍ରକୃତିର ଏହି ତିନିଗୋଟି ଗୁଣ; ଏହି ତିନି ଗୁଣରେ ମିଶ୍ରିତ ପ୍ରକୃତିର ସୃଷ୍ଟିକୁ ତ୍ରୈଗୁଣ୍ୟ କୁହାଯାଏ । ଏହି ସୃଷ୍ଟି ସୁଖଦୁଃଖଜନ୍ମମୃତ୍ୟୁ ପ୍ରଭୃତି ନଶ୍ୱର ଦ୍ୱନ୍ଦ୍ୱରେ ପରିପୂର୍ଣ୍ଣ । ସତ୍ୟସ୍ୱରୂପ ପରବ୍ରହ୍ମ ଏହାର ଅତୀତ । ବୈଦିକ କର୍ମକାଣ୍ଡ ଅନୁସାରେ ସଂସାରରେ ସୁଖ ପାଇବା ପାଇଁ ଲୋକେ ଯାଗ ଯଜ୍ଞାଦି କରନ୍ତି ଏବଂ ସାଂସାରିକ ବ୍ୟାପାରରେ ସର୍ବଦା ମଗ୍ନହୋଇ ରହନ୍ତି । କେହି ପୁତ୍ରଲାଭ ଆଶାରେ ଏକପ୍ରକାର ଯଜ୍ଞ କରନ୍ତି, କେହି ଜଳବର୍ଷଣ ଆଶାରେ ଅନ୍ୟ ପ୍ରକାର ଯଜ୍ଞ କରନ୍ତି; ଏହି ସମସ୍ତ କର୍ମ ସଂସାର-ବ୍ୟବହାର ପାଇଁ ଅର୍ଥାତ୍ ନିଜର ଯୋଗକ୍ଷେମ ଉଦ୍ଦେଶ୍ୟରେ କରାଯାଏ । ଅଲବ୍ଧ ବସ୍ତୁର ଉପାର୍ଜନକୁ ଯୋଗ ଓ ଲବ୍ଧ ବସ୍ତୁର ରକ୍ଷଣକୁ କ୍ଷେମ ବୋଲଯାଏ । ଏଥିରୁ ସ୍ପଷ୍ଟ ଜଣାଯାଉଅଛି ଯେ, ଯେ ମୋକ୍ଷଲାଭକରିବାକୁ ଇଚ୍ଛୁକ ସେ ବୈଦିକ କର୍ମକାଣ୍ଡର ଏହି ତ୍ରିଗୁଣାତ୍ମକ ଏବଂ କେବଳ ଯୋଗକ୍ଷେମ ସମ୍ପାଦକ କର୍ମ ଛାଡ଼ି ନିଜ ଚିତ୍ତକୁ ଏହାର ଅତୀତ ପରବ୍ରହ୍ମ ପ୍ରାପ୍ତିରେ ନିୟୋଜିତ କରିବେ । ସୁଖଦୁଃଖାଦି ପରସ୍ପର ବିରୋଧୀ ଭାବଦ୍ୱୟକୁ ଦ୍ୱନ୍ଦ୍ୱ ବୋଲଯାଏ । ମୋକ୍ଷାଭିଳାଷୀ ସେହି ହେତୁରୁ ନିର୍ଦ୍ୱନ୍ଦ୍ୱ ଓ ନିର୍ଯୋଗକ୍ଷେମ ହେବା ଉଚିତ । ଏସ୍ଥଳରେ ପ୍ରଶ୍ନ ହୋଇପାରେ, ଯେବେ ମନୁଷ୍ୟ ସଂସାରରେ ଯୋଗକ୍ଷେମ ଉଦ୍ଦେଶ୍ୟରେ ବୈଦିକ ଯାଗ ଯଜ୍ଞାଦି କର୍ମ ନ କରିବ, ତେବେ ସେ ଚଳିବ କିପରି ? ଏହାର ଉତ୍ତର ଭଗବାନ୍ ଗୀତାର ୯ମ ଅଧ୍ୟାୟ ୨୨ ଶ୍ଳୋକରେ ଦେଇଅଛନ୍ତି । ସେଠାରେ କୁହାଯାଇଅଛି ଯେ, ଭଗବାନ୍ ସ୍ୱୟଂ ଯୋଗକ୍ଷେମ ବହନ କରନ୍ତି । 'ନିତ୍ୟ ସତ୍ତ୍ୱସ୍ଥ' ଶବ୍ଦର ଅର୍ଥ ତ୍ରିଗୁଣାତୀତ । ସତ୍ତ୍ୱଗୁଣର ନିତ୍ୟ ଉତ୍କର୍ଷ ଦ୍ୱାରା ସେହି ତ୍ରିଗୁଣାତୀତ ଅବସ୍ଥା ମିଳେ, ଏହାହିଁ ପ୍ରକୃତ ସିଦ୍ଧାବସ୍ଥା ।

ଯୋଗକ୍ଷେମକାରକ ତ୍ରିଗୁଣାତ୍ମକ କାମ୍ୟକର୍ମ ଛାଡ଼ି ଏବଂ ସୁଖଦୁଃଖାଦି ଦ୍ୱନ୍ଦ୍ୱରୁ ନିର୍ମୁକ୍ତ ହୋଇ ଆତ୍ମନିଷ୍ଠ ବା ବ୍ରହ୍ମନିଷ୍ଠ ହୋଇ ରହିବା ପାଇଁ ଏଠାରେ ଭଗବାନ୍ ଉପଦେଶ ଦେଇଅଛନ୍ତି । ଆତ୍ମନିଷ୍ଠ ହେବାର ଅର୍ଥ କର୍ମ ତ୍ୟାଗ କରି ବସିବା ନୁହେ । ଏ ଶ୍ଳୋକରେ କାମ୍ୟକର୍ମର ଯେଉଁ ନ୍ୟୂନତା ପ୍ରଦର୍ଶିତ ହୋଇଅଛି, ତାହା ଯଜ୍ଞାଦି କର୍ମର ନିନ୍ଦା ନୁହେ । ଏହି କର୍ମରେ ଯେଉଁ କାମ୍ୟ ବୁଦ୍ଧି ଥାଏ—ଏହା ତାହାର ନିନ୍ଦା । କାମ୍ୟବୁଦ୍ଧି ନ ଥିଲେ ଯାଗ ଯଜ୍ଞ ଚିତ୍ତର ପବିତ୍ରତା ସମ୍ପାଦକ ଏବଂ ତ୍ୟାଜ୍ୟ ନୁହେ—ଏହା ଭଗବାନ୍ ଅଷ୍ଟାଦଶ ଅଧ୍ୟାୟରେ ସ୍ପଷ୍ଟ ରୂପେ କହିଅଛନ୍ତି । ସ୍ଥୂଳକଥା ଅମୁକ ଅମୁକ ଫଳ ପାଇବାପାଇଁ ଅମୁକ ଅମୁକ ଯଜ୍ଞ ବା କର୍ମ କରିବାକୁ ହେବ—ବେଦର ଏହି ରୋଚନାର୍ଥ ଫଳ-ଶ୍ରୁତିରେ ନ ଭୁଲି କର୍ତ୍ତବ୍ୟ ଜ୍ଞାନରେ ଯଜ୍ଞାଦି କଲେ ତଦ୍ଦ୍ୱାରା ମୋକ୍ଷପଦ ତଥା ଐହିକ ଯୋଗକ୍ଷେମ ସମସ୍ତ ମିଳିବ ।

ଯାବାନର୍ଥ ଉଦପାନେ, ସର୍ବତଃ ସଂପ୍ଳୁତୋଦକେ ।
ତାବାନ୍ ସର୍ବେଷୁ ବେଦେଷୁ, ବ୍ରାହ୍ମଣସ୍ୟ ବିଜାନତଃ ।୪୬।

**୪୬ । ଅନ୍ୱୟଦୀପିକା**—ଉଦପାନେ (କୂପାଦି କ୍ଷୁଦ୍ରଜଳାଶୟରେ) ଯାବାନ୍ (ଯେଉଁ ପରିମାଣ) ଅର୍ଥଃ (ପ୍ରୟୋଜନ) [ସିଦ୍ଧହୁଏ], ସର୍ବତଃ ସଂପ୍ଳୁତୋଦକେ (ବିସ୍ତୀର୍ଣ୍ଣ ଜଳାଶୟରେ) [ସେହି ପରିମାଣ ପ୍ରୟୋଜନ ସିଦ୍ଧହୁଏ]; [ସେହିପରି] ସର୍ବେଷୁ ବେଦେଷୁ (ସମସ୍ତ ବେଦରେ) [ଯେଉଁ ସବୁ ପ୍ରୟୋଜନ ସିଦ୍ଧ ହୁଏ] ତାବାନ୍ (ସେ ସମସ୍ତ) ବିଜାନତଃ ବ୍ରାହ୍ମଣସ୍ୟ (ବ୍ରହ୍ମନିଷ୍ଠ ପୁରୁଷର) [ଲଭହୁଏ]।

**ଅନୁବାଦ**—କୂପ ପୁଷ୍କରିଣୀ ପ୍ରଭୃତି ଖଣ୍ଡ କ୍ଷୁଦ୍ର ଜଳାଶୟରେ ଯେଉଁ ପ୍ରୟୋଜନ ସିଦ୍ଧ ହୁଏ, ଗୋଟିଏ ବିସ୍ତୀର୍ଣ୍ଣ ଜଳାଶୟରେ ସେ ସମସ୍ତ ସିଦ୍ଧ ହୁଏ । ସେହିପରି ବେଦୋକ୍ତ କାମ୍ୟକର୍ମସମ୍ବନ୍ଧରେ ଯେଉଁ ଫଳ ଲଭ ହୁଏ, ବ୍ରହ୍ମନିଷ୍ଠ ପୁରୁଷର ସେ ସମସ୍ତ ଲଭ ହୁଏ ।

**ସୁବୋଧିନୀ ଟୀକା**—ନନୁ ବେଦୋକ୍ତ ନାନାଫଳତ୍ୟାଗେନ ନିଷ୍କାମତୟେଶ୍ୱରାରାଧନବିଷୟା ବ୍ୟବସାୟାତ୍ମିକା ବୁଦ୍ଧିଃ କୁବୁଦ୍ଧିରେବେତ୍ୟା-ଶଙ୍କ୍ୟାହ—ଯାବାନିତି । ଉଦକଂ ପୀୟତେ ଯସ୍ମିଂସ୍ତଦୁଦପାନଂ ବାପୀକୂପ-ତଡ଼ାଗାଦି । ତସ୍ମିନ୍ ସ୍ୱଳ୍ପୋଦକ ଏକତ୍ର କୃତ୍ସ୍ନାର୍ଥସ୍ୟାସମ୍ଭବାତ୍ତେଷୁ ତତ୍ର ପରିଭ୍ରମଣେନ ବିଭାଗଶୋ ଯାବାନ୍ ସ୍ନାନପାନାଦିରର୍ଥଃ ପ୍ରୟୋଜନଂ ଭବତି, ତାବାନ୍ ସର୍ବୋଽପ୍ୟର୍ଥଃ ସର୍ବତଃ ସଂପ୍ଳୁତୋଦକେ ମହାହ୍ରଦେ, ଏକତ୍ରୈବ ଯଥା ଭବତି ଏବଂ ଯାବାନ ସର୍ବେଷୁ ବେଦେଷୁ ତତ୍ତତ୍ କର୍ମଫଲରୂପୋଽର୍ଥସ୍ତାବାନ୍ ସର୍ବୋଽପି ବିଜାନତୋ ବ୍ୟବସାୟାତ୍ମକ ବୁଦ୍ଧିଯୁକ୍ତସ୍ୟ ବ୍ରାହ୍ମଣସ୍ୟ ବ୍ରହ୍ମନିଷ୍ଠସ୍ୟ ଭବତ୍ୟେବ । ବ୍ରହ୍ମାନନ୍ଦେ କ୍ଷୁଦ୍ରାନନ୍ଦାନାମନ୍ତର୍ଭାବାତ୍ । ଏତସ୍ୟୈବାନନ୍ଦ-ସ୍ୟାନ୍ୟାନି ଭୂତାନି ମାତ୍ରାମୁପଜୀବନ୍ତି । ଇତି ଶ୍ରୁତେଃ । ତସ୍ମାଦିୟମେବ ବୁଦ୍ଧିଃ ସୁବୁଦ୍ଧିରିତ୍ୟର୍ଥଃ ।

**ବିବୃତି**—ଏହି ୪୬ଶ ଶ୍ଳୋକର ବ୍ୟାଖ୍ୟାରେ ପ୍ରାଚୀନ ଓ ଆଧୁନିକ ଟୀକାକାରମାନଙ୍କ ମଧ୍ୟରେ ବିଷମ ମତଦ୍ୱୈଧ ଦେଖାଯାଏ । ଅନ୍ୱୟାନୁକୂଳ ଅର୍ଥରେ ତଥା ଅନୁବାଦରେ ପୂଜ୍ୟପାଦ ଶ୍ରୀଧର ସ୍ୱାମୀଙ୍କ ବ୍ୟାଖ୍ୟା ଅନୁସରଣ କରି ଯାଇଅଛି । ଆଚାର୍ଯ୍ୟ ଶଙ୍କରଙ୍କର ବ୍ୟାଖ୍ୟା ମଧ୍ୟ ଏହିପରି । ସେଭଳି ବ୍ୟାଖ୍ୟା ଓ ଅନ୍ୱୟ ଯେ ଏକାନ୍ତ କ୍ଳିଷ୍ଟକଳ୍ପନାପ୍ରସୂତ ସଂସ୍କୃତ ଭାଷାଭିଜ୍ଞ ପ୍ରତ୍ୟେକ ଲୋକ ତାହା ବୁଝିପାରିବେ । ଏ ଯୁଗରେ ଲୋକମାନ୍ୟ ତିଳକ ଓ ବଙ୍ଗୀୟ ସାହିତ୍ୟସମ୍ରାଟ୍ ବଙ୍କିମଚନ୍ଦ୍ର ପ୍ରଭୃତି ଏହାର ଭିନ୍ନ ପ୍ରକାର

ସରଳ ଅନ୍ୱୟ ଓ ବ୍ୟାଖ୍ୟା କରିଅଛନ୍ତି । ସେମାନଙ୍କ କୃତ ଅନ୍ୱୟ ଓ ବ୍ୟାଖ୍ୟା ତଳେ ଦିଆ ଯାଉଅଛି ।

ଅନ୍ୱୟ—ସର୍ବତଃ ସଂପ୍ଲୁତୋଦକେ ( ସତି ) ଉଦପାନେ ଯାବାନ୍ ଅର୍ଥଃ, ବିଜାନତଃ ବ୍ରାହ୍ମଣସ୍ୟ ସର୍ବେଷୁ ବେଦେଷୁ ତାବାନ୍ (ଅର୍ଥଃ) [ ନ ପ୍ରୟୋଜନ ମିତ୍ୟଭିପ୍ରାୟଃ ] ଅର୍ଥାତ୍ ସକଳସ୍ଥାନ ଜଳପ୍ଲାବିତ ହେଲେ କୂପାଦି କ୍ଷୁଦ୍ର ଜଳାଶୟରେ ଯେଉଁ ପ୍ରୟୋଜନ ସାଧିତ ହୁଏ, ବ୍ରହ୍ମଜ୍ଞ ପୁରୁଷର ସମସ୍ତ ବେଦରେ ସେତିକି ମାତ୍ର ପ୍ରୟୋଜନ । ଏପରି କହିବାର ଉଦ୍ଦେଶ୍ୟ ଏହି ଯେ ସବୁଆଡ଼ ପାଣିରେ ପୂରିଗଲେ ଯେପରି କୂପ ପ୍ରଭୃତି କ୍ଷୁଦ୍ର ଜଳାଶୟର କୌଣସି ପ୍ରୟୋଜନ ହୁଏ ନାହିଁ, ସେହିପରି ବ୍ରହ୍ମଜ୍ଞ ପୁରୁଷର ବେଦରେ କୌଣସି ପ୍ରୟୋଜନ ନାହିଁ । କାରଣ ଯେ ବ୍ରହ୍ମଜ୍ଞ ସେ ଈଶ୍ୱରଙ୍କୁ ଜାଣି ଥାଆନ୍ତି, ତାଙ୍କ ପକ୍ଷରେ ଆଉ ବେଦର ପ୍ରୟୋଜନୀୟତା କଅଣ ? ନିଷ୍କାମ ଭାବରେ ବୈଦିକ କର୍ମ କରିବାରେ ମଧ୍ୟ ମୋକ୍ଷ ଲାଭ ହୁଏ ( ଗୀତା ୧୮-୬) ସତ୍ୟ, ମାତ୍ର ଯେ ପୂର୍ଣ୍ଣଜ୍ଞାନୀ ତାଙ୍କ ପକ୍ଷରେ ମଧ୍ୟ ସେ ଭଳି କର୍ମର ପ୍ରୟୋଜନୀୟତା ନାହିଁ ।

ଏପରି ଅନ୍ୱୟ ଓ ବ୍ୟାଖ୍ୟାରେ କୌଣସି କ୍ଲିଷ୍ଟକଳ୍ପନା ନାହିଁ । ତେବେ ଏଠାରେ ଏପରି ପ୍ରଶ୍ନ ହୋଇପାରେ, ଆଚାର୍ଯ୍ୟ ଶଙ୍କର ଓ ଶ୍ରୀଧର ସ୍ୱାମୀଙ୍କ ଭଳି ମହାମନୀଷୀମାନଙ୍କ ବୁଦ୍ଧିରେ କଅଣ ଏ ଭଳି ଅନ୍ୱୟ ଓ ବ୍ୟାଖ୍ୟା ଜଣାଗଲା ନାହିଁ ଯେ ସେମାନେ ପୂର୍ବୋକ୍ତରୂପେ କ୍ଲିଷ୍ଟ ଅନ୍ୱୟର ଆଶ୍ରୟ ନେଇ ଅନ୍ୟ ପ୍ରକାର ଭାବ ପ୍ରକାଶ କଲେ ? ଆମ୍ଭେମାନେ ଅନୁମାନ କରୁଁ, ଆଧୁନିକ ବ୍ୟାଖ୍ୟା ଦ୍ୱାରା ଏକପ୍ରକାର ବେଦ ନିନ୍ଦା ସୂଚିତ ହେଉଅଛି । ପୂର୍ବବର୍ତ୍ତୀ ଟୀକାକାର ପଣ୍ଡିତମାନେ ଯେପରି ବେଦ ନିନ୍ଦା ନ ହୁଏ, ସେଥିପାଇଁ ସେ ଭଳି ବ୍ୟାଖ୍ୟା ଗ୍ରହଣ କରିଅଛନ୍ତି । ପୂର୍ବରୁ କୁହା ଯାଇଅଛି ଭାରତୀୟ ଧର୍ମ ଜୀବନରେ ବେଦର ପ୍ରଭାବ ଅପ୍ରତିହତ, ଜୈମିନି କପିଳ ପ୍ରଭୃତି ଜନୈକ ଦାର୍ଶନିକମାନେ ସେମାନଙ୍କ ଦର୍ଶନ ଶାସ୍ତ୍ରମାନଙ୍କରେ ଈଶ୍ୱର ଅସ୍ୱୀକାର କରିଥିଲେହେଁ ବେଦ-ବାକ୍ୟକୁ ଅଭ୍ରାନ୍ତ ସତ୍ୟରୂପେ ଗ୍ରହଣ କରିଅଛନ୍ତି । ଏପରି ଅବସ୍ଥାରେ ଭଗବାନ୍ ଶ୍ରୀକୃଷ୍ଣ ବେଦକୁ ନିନ୍ଦା କରିବେ ଏହା ସେମାନଙ୍କ ଧାରଣାର ଅତୀତ । ମାତ୍ର ଆମ୍ଭେମାନେ ମନେକରୁଁ ଏହା ପ୍ରକୃତରେ ବେଦନିନ୍ଦା ନୁହେ, ବେଦର କର୍ମକାଣ୍ଡ ବା କାମନାଯୁକ୍ତ ବୈଦିକ ଯାଗ ଯଜ୍ଞାଦିର ନିନ୍ଦା । ଏ ଅଧ୍ୟାୟର ୪୨ଶ ଶ୍ଳୋକରୁ ଏହି ବୈଦିକ କାମ୍ୟବୁଦ୍ଧିର ନିନ୍ଦା ଏ ପର୍ଯ୍ୟନ୍ତ କରି ଯାଉଛି । ଏ ସବୁ ଦ୍ୱାପର ଯୁଗର ଶେଷ ସମୟର ଘଟନା । ସେତେବେଳେ ବୈଦିକ ଯାଗ-ଯଜ୍ଞାଦି କାମ୍ୟକର୍ମର ପ୍ରାଧାନ୍ୟ ଏ ଦେଶରେ ଖୁବ୍ ଥିଲା । କାମନାସିଦ୍ଧି

ଉଦ୍ଦେଶ୍ୟରେ ଶତ ଶତ ଅଶ୍ୱମେଧ, ଗୋମେଧ ଏପରିକି ନରମେଧ ଯଜ୍ଞର ଅନୁଷ୍ଠାନ ହେଉଥିଲା । ଧର୍ମନାମରେ ଏପରି ଲକ୍ଷ ଲକ୍ଷ ଜୀବହତ୍ୟା ହେବାରୁ ତତ୍‌କାଳୀନ ସମାଜର ଚିନ୍ତାଶୀଳ ମନୀଷୀମାନେ ବିଚଳିତ ହୋଇ ପଡ଼ିଥିଲେ । ମହାତ୍ମା ଶାକ୍ୟସିଂହ ସେହି ଚିନ୍ତାଶୀଳ ଜ୍ଞାନୀମାନଙ୍କ ମଧ୍ୟରେ ଅନ୍ୟତମ । ସେ ଅବଶ୍ୟ ଭଗବାନ୍ ଶ୍ରୀକୃଷ୍ଣଙ୍କ ପରବର୍ତ୍ତୀ ଲୋକ । ଶ୍ରୀକୃଷ୍ଣ ତତ୍‌ପୂର୍ବରୁ ଯେ ସମାଜରେ ଏଂ ଭଳି ବୀଭତ୍ସ ଦୃଶ୍ୟ ଦେଖି ତାହାର ନିନ୍ଦା କରିବେ ଏଥିରେ ସନ୍ଦେହ କଅଣ ? ତେଣୁ ଏ ସବୁ କାମ୍ୟକର୍ମାତ୍ମକ ବୈଦିକ ଯାଗ ଯଜ୍ଞାଦିର ନିନ୍ଦା, ଯଥାର୍ଥରେ ବେଦ ନିନ୍ଦା ନୁହେ । ବେଦୋକ୍ତ ଜ୍ଞାନବାଦ ଶ୍ରୀକୃଷ୍ଣଙ୍କ ଆବିର୍ଭାବ ପୂର୍ବରୁ ଉକ୍ତ ଓ ଆଲୋଚିତ ହୋଇଥିଲେହେଁ ସମାଜରେ ଶ୍ରୁତିସୁଖକର ବୈଦିକ କାମ୍ୟ କର୍ମବାଦର, ବହୁଳ ପ୍ରଚାର ଚାଲିଥିଲା । ସେ ସମସ୍ତ କିପରି ସମାଜରୁ ଲୁପ୍ତ ହେବ ସେଥିପାଇଁ ଗୀତା ଧର୍ମର ପ୍ରଚାର ।

ତେବେ ଏଠାରେ ଏପରି ପ୍ରଶ୍ନ ହୋଇପାରେ, ଯେଉଁ ବେଦ ଈଶ୍ୱରଙ୍କ ବାଣୀ ବୋଲି ଅଭ୍ରାନ୍ତ ସତ୍ୟରୂପେ ଗୃହୀତ ସେ ବେଦରେ ଅସ୍ଥାୟୀ ତ୍ରିଗୁଣାତ୍ମକ ଧର୍ମର ବ୍ୟବସ୍ଥା ରହିଲା କିପରି ? ଏହାର ଉତ୍ତରରେ କୁହା ଯାଉଅଛି ଯେ, ବ୍ରହ୍ମ ତ୍ରିଗୁଣାତୀତ କିନ୍ତୁ ତତ୍‌ସୃଷ୍ଟ ଜୀବ ଓ ସଂସାର ତ୍ରିଗୁଣାତ୍ମକ । ଏହି ତ୍ରିଗୁଣକୁ ଅତିକ୍ରମ କରି ନ ପାରିଲେ ଲୋକ ବ୍ରହ୍ମ ସାଯୁଜ୍ୟ ଲାଭ କରିପାରେ ନାହିଁ । ଏହାହିଁ ସୃଷ୍ଟିର ରହସ୍ୟ । ମନୁଷ୍ୟ ସ୍ୱଭାବତଃ କାମନା ପରବଶ; ତାହାର ଉଚ୍ଛୃଙ୍ଖଳ କାମନା ସଂଯତ ନ ହେଲେ ସୃଷ୍ଟି ରକ୍ଷା ଅସମ୍ଭବ । ସେଥିପାଇଁ ନାନାବିଧ ବିଧି ବ୍ୟବସ୍ଥା ପ୍ରଣୀତ ହୋଇଅଛି । କାମନାର ପୂରଣପାଇଁ ଯାଗ ଯଜ୍ଞର ବ୍ୟବସ୍ଥା, ଦେବତାର୍ଚ୍ଚନାର ବିଧି, ସ୍ୱର୍ଗର ନିତ୍ୟ ସୁଖ ଓ ଉର୍ବଶୀ ପାରିଜାତାଦିର ପ୍ରଲୋଭନ, ପ୍ରବୃତ୍ତିର ପ୍ରତିରୋଧ ପାଇଁ ନରକାଦିର ଭୟ ଓ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା; ଏସବୁ ନ ଥିଲେ କାମନାକୁଳ ମନୁଷ୍ୟ ସ୍ୱେଚ୍ଛାଚାରୀ ହୋଇ ସୃଷ୍ଟି ଧ୍ୱଂସର କାରଣ ହୁଅନ୍ତା । ଜ୍ଞାନଲାଭ ବଡ଼ କଠିନ ବ୍ୟାପାର । ସମସ୍ତେ ଜ୍ଞାନର ଅଧିକାରୀ ହୋଇ ପାରନ୍ତି ନାହିଁ । ତେଣୁ ଲୋକଙ୍କ ମଙ୍ଗଳ କାମନାରେ ବେଦ ଅଜ୍ଞ, ନିମ୍ନ ଅଧିକାରୀମାନଙ୍କ ପାଇଁ ଏହିସବୁ ସକାମ କର୍ମର ବ୍ୟବସ୍ଥା କରିଅଛନ୍ତି ଏବଂ ତହିଁରେ ରୁଚି ଜନ୍ମାଇବା ପାଇଁ ସ୍ୱର୍ଗର ଅମୃତ, ପାରିଜାତତରୁ, ନନ୍ଦନକାନନ ପାଇବାର ପ୍ରଲୋଭନ ଦେଖାଇ ଅଛନ୍ତି । ଶ୍ରୀମଦ୍ ଭାଗବତରେ ସେଥିପାଇଁ କୁହା ଯାଇଅଛି :—

ବେଦୋକ୍ତ ମେବକୁର୍ବାଣୋ ନିଃସଙ୍ଗୋ ଽର୍ପିତମୀଶ୍ୱରେ ।
ନୈଷ୍କର୍ମ୍ୟଂ ଲଭତେ ସିଦ୍ଧିଂ ରୋଚନାର୍ଥା ଫଲଶ୍ରୁତିଃ (ଭା ୧୧।୩।୪୬)

କର୍ମଣ୍ୟେବାଧିକାରସ୍ତେ ମା ଫଲେଷୁ କଦାଚନ ।
ମା କର୍ମଫଲହେତୁର୍ଭୂର୍ମା ତେ ସଙ୍ଗୋଽସ୍ତ୍ୱକର୍ମଣି । ୪୭ ।

ଅନାସକ୍ତ ଚିତ୍ତରେ ବେଦୋକ୍ତ କର୍ମର ଫଳ ଈଶ୍ୱରଙ୍କଠାରେ ଅର୍ପଣ କଲେ ନୈଷ୍କର୍ମ୍ୟ ସିଦ୍ଧି ଲାଭହୁଏ । କର୍ମରେ ଚିତ୍ତ ଶୁଦ୍ଧ ହେବା ହିଁ ଫଳଶ୍ରୁତି । ତେଣୁ ଭଗବାନ ଅର୍ଜୁନଙ୍କୁ ପ୍ରେୟଃ ପଥ ତ୍ୟାଗ କରି ଶ୍ରେୟଃ ପଥରେ ଗତି କରିବାକୁ ଉପଦେଶ ଦେଉଅଛନ୍ତି ।

**୪୭ । ଅନ୍ୱୟଦୀପିକା**—କର୍ମଣି ଏବ (କର୍ମରେ ହିଁ) ତେ ଅଧିକାରଃ (ତୁମର ଅଧିକାର), କଦାଚନ (କେବେହେଲେ) ଫଲେଷୁ (କର୍ମଫଳରେ) ମା (ନାହିଁ) । [ତୁମେ] କର୍ମଫଲହେତୁଃ (କର୍ମଫଳ ଆଶାରେ କର୍ମରେ ପ୍ରବୃତ୍ତ) ମା ଭୂଃ (ହୁଅ ନାହିଁ), ଅକର୍ମଣି (କର୍ମତ୍ୟାଗରେ) ତେ ସଙ୍ଗଃ (ତୁମର ପ୍ରବୃତ୍ତି) ମା ଅସ୍ତୁ (ନ ହେଉ) ।

**ଅନୁବାଦ**—କର୍ମରେ ହିଁ ତୁମର ଅଧିକାର; କର୍ମଫଳରେ କେବେ ହେଲେ ତୁମର ଅଧିକାର ନାହିଁ । କର୍ମଫଳ ଯେପରି ତୁମର କର୍ମପ୍ରବୃତ୍ତିର ହେତୁ ନ ହୁଏ । କର୍ମତ୍ୟାଗରେ ମଧ୍ୟ ତୁମର ଯେପରି ପ୍ରବୃତ୍ତି ନ ହୁଏ ।

**ସୁବୋଧିନୀ ଟୀକା**—ତର୍ହି ସର୍ବାଣି କର୍ମଫଲାନି ପରମେଶ୍ୱରାରାଧନାଦେବ ଭବିଷ୍ୟନ୍ତୀତି ଅବଧେୟ ପ୍ରବର୍ତ୍ତେତ । କିଂ କର୍ମଣା ? ଇତ୍ୟାଶଙ୍କ୍ୟ ତଦ୍‌ବାରୟନ୍ନାହ—କର୍ମଣ୍ୟେବେତି । ତେ ତବ ତତ୍ତ୍ୱଜ୍ଞାନାର୍ଥିନଃ କର୍ମଣ୍ୟେବାଧିକାରଃ । ତତ୍ଫଲେଷ୍ୱଧିକାରଃ କାମୋ ମାସ୍ତୁ । ନନୁ କର୍ମଣି କୃତେ ତତ୍ ଫଲଂ ସ୍ୟାଦେବ ଭୋଜନେ କୃତେ ତୃପ୍ତିବତ୍ । ଇତ୍ୟାଶଙ୍କ୍ୟାହ—ମେତି । ମା କର୍ମଫଲହେତୁର୍ଭୂଃ । କର୍ମଫଲଂ ପ୍ରବୃତ୍ତିହେତୁର୍ଯସ୍ୟ ସ ତଥାଭୂତୋ ମାଭୂଃ । କାମ୍ୟମାନସ୍ୟୈବ ସ୍ୱର୍ଗାଦେର୍ନିୟୋଜ୍ୟବିଶେଷଣତ୍ୱେନ ଫଲତ୍ୱାଦକାମିତଂ ଫଲଂ ନ ସମ୍ପାଦୟତି ଭାବଃ । ଅତଏବ ଫଲଂ ବନ୍ଧକଂ ଭବିଷ୍ୟତୀତି ଧିୟାଽକର୍ମଣି କର୍ମାକରଣେଽପି ତବ ସଙ୍ଗୋ ନିଷ୍ଠା ମାସ୍ତୁ ।

**ବିବୃତି**—ଏ ଶ୍ଳୋକର ଅର୍ଥ ସରଳ; ମାତ୍ର ଏହାର ଭାବ ଅତି ଗମ୍ଭୀର । ଏଠାରେ ପ୍ରଥମେ କୁହାଗଲା କର୍ମ କରିବାରେ ତୁମର ଅଧିକାର,—ତେବେ ଏଠାରେ ଯାଗ ଯଜ୍ଞାଦି ବୈଦିକ କର୍ମ ଯେ ଲକ୍ଷ୍ୟ ନୁହେ, ଏହା ବୁଝାଯାଉଅଛି । ଗୀତାର ୩ୟ ଅଧ୍ୟାୟ 'କର୍ମଯୋଗ' ନାମରେ ଅଭିହିତ ହୁଏ; ସେଠାରେ ଭଗବାନ୍ କହିଅଛନ୍ତି, 'ନହି କଶ୍ଚିତ୍ କ୍ଷଣମପି ଜାତୁ ତିଷ୍ଠତ୍ୟକର୍ମକୃତ୍, କାର୍ଯ୍ୟତେ ହ୍ୟବଶଃ ପାର୍ଥ ସର୍ବଃ ପ୍ରକୃତିଜୈର୍ଗୁଣୈଃ' ଅର୍ଥାତ୍ କେହି କେତେବେଳେ ହେଲେ କ୍ଷଣମାତ୍ର କର୍ମ ନ କରି ରହି ପାରେ ନାହିଁ, କାରଣ ସ୍ୱଭାବଗୁଣରେ ସମସ୍ତେ କର୍ମ କରିବାକୁ ବାଧ୍ୟ । ତେଣୁ ଜଣାଯାଉଅଛି ଯେ କର୍ମଯୋଗ ପ୍ରସଙ୍ଗରେ

ସର୍ବତ୍ର 'କର୍ମ' ଶବ୍ଦ ସର୍ବବିଧ କର୍ମ ଅର୍ଥରେ ବ୍ୟବହୃତ ହୋଇଅଛି । ଅତଏବ ଏ ଶ୍ଳୋକର ଭାବ ହେଲା—କର୍ମ କର, କିନ୍ତୁ ଫଳ କାମନା କର ନାହିଁ; କର୍ମଫଳ ପାଇବା ଉଦ୍ଦେଶ୍ୟରେ ହିଁ ତୁମେ କର୍ମରେ ପ୍ରବୃତ୍ତ ହେଉଅଛ—ଏହା ଯେପରି ନ ହୁଏ । ସାଧାରଣତଃ ଦେଖାଯାଏ, ଯେଉଁ କର୍ମରେ ଫଳପ୍ରାପ୍ତିର ଆଶା ନଥାଏ ସେ କର୍ମରେ ଲୋକ ପ୍ରବୃତ୍ତ ହୁଏ ନାହିଁ, ତେଣୁ ଶ୍ଳୋକର ଶେଷ ଚରଣରେ କୁହା ଯାଉଛି, ଫଳ ପାଇବ ନାହିଁ ବୋଲି ତୁମେ କର୍ମ କରିବାକୁ ବିମୁଖ ହୁଅ ନାହିଁ, ଅର୍ଥାତ୍ କର୍ତ୍ତବ୍ୟ କର୍ମ ଅବଶ୍ୟ କରିବ, ମାତ୍ର ଫଳ କାମନା କରି କର୍ମ କରିବ ନାହିଁ । ଲୋକମାନ୍ୟ ତିଳକ କହନ୍ତି, ଗୀତାର ଏହି ଶ୍ଳୋକର ଚାରି ଚରଣ କର୍ମଯୋଗର ଚତୁଃସୂତ୍ର :—

(୧) କର୍ମରେ ତୁମର ଅଧିକାର, (୨) ଫଳରେ ଅଧିକାର ନାହିଁ । (୩) ଫଳାକାଂକ୍ଷା କରି କର୍ମରେ ପ୍ରବୃତ୍ତ ହୁଅ ନାହିଁ, (୪) ଫଳାକାଂକ୍ଷା ନାହିଁ ବୋଲି କର୍ମତ୍ୟାଗରେ ତୁମର ଯେପରି ପ୍ରବୃତ୍ତି ନ ହୁଏ ।

ଅନେକେ କହନ୍ତି ନିଷ୍କାମ କର୍ମ ମନୁଷ୍ୟ ପକ୍ଷରେ ସମ୍ଭବପର ନୁହେ, କାରଣ 'ପ୍ରୟୋଜନମନୁଦ୍ଦିଶ୍ୟ ନ ମନ୍ଦୋଽପି ପ୍ରବର୍ତ୍ତତେ' । ଉଦ୍ଦେଶ୍ୟବ୍ୟତୀତ ମୂଢ଼ଲୋକ ମଧ୍ୟ କର୍ମରେ ପ୍ରବୃତ୍ତ ହୁଏ ନାହିଁ, ତେବେ ଉଦ୍ଦେଶ୍ୟହୀନତା ଓ ଉଦାସୀନତା—ଏକ କଥା ନୁହେ । ଫଳାକାଂକ୍ଷା ରଖି କର୍ମ କରିବା ନାହିଁ— ଏହା ବୋଲି କର୍ମସିଦ୍ଧିପାଇଁ ଯଥାଶକ୍ତି ଆତ୍ମନିୟୋଗ କରିବା ନାହିଁ— ଏହା ନୁହେ । କର୍ମଫଳରେ ସିଦ୍ଧି ବା ଅସିଦ୍ଧିକୁ ସମାନ ଜ୍ଞାନ କରିବା ନିଷ୍କାମ କର୍ମର ଉଦ୍ଦେଶ୍ୟ । ପ୍ରକୃତରେ ବୁଝିବାକୁ ଗଲେ, ନିଷ୍କାମକର୍ମ ଉଦ୍ଦେଶ୍ୟହୀନ ନୁହେ । ଚିତ୍ତଶୁଦ୍ଧି ହିଁ ଏହାର ଉଦ୍ଦେଶ୍ୟ, ଯେତେବେଳେ କର୍ମୀ ଏହା ବୁଝିପାରି ସମସ୍ତ କର୍ମର ଫଳ ଈଶ୍ୱରଙ୍କଠାରେ ସମର୍ପଣ କରେ, ସେତେବେଳେ କର୍ମର ଫଳ ପାଇଁ ତାହାର ବ୍ୟାକୁଳତା ଆସେ ନାହିଁ । ଅନେକ କ୍ଷେତ୍ରରେ ଦେଖାଯାଏ ସକାମ କର୍ମୀମାନେ ଯଥାଶକ୍ତି କର୍ମ କରି ମଧ୍ୟ ଫଳ ପାଆନ୍ତି ନାହିଁ । ଏଥିରୁ ବୁଝାଯାଏ, କର୍ମର ଫଳ ମନୁଷ୍ୟ ଶକ୍ତିର ବାହାରେ ଅନ୍ୟ କୌଣସି ଶକ୍ତିଦ୍ୱାରା ନିୟନ୍ତ୍ରିତ ହୁଏ । ଫଳ ନ ପାଇଲେ ଫଳାକାଂକ୍ଷୀ ଲୋକ ଘୋର ମନସ୍ତାପ ଭୋଗକରେ । ଯେବେ ସେ ଫଳାକାଂକ୍ଷା ନ ରଖି କର୍ମ କରି ଥାଆନ୍ତା ତେବେ ସେ ଦୁଃଖ ବା କଷ୍ଟ ଆଦୌ ଅନୁଭବ କରନ୍ତା ନାହିଁ । ତେଣୁ କର୍ତ୍ତବ୍ୟ ବୁଦ୍ଧିରେ କର୍ମ କରିବା ହିଁ ମନୁଷ୍ୟର ଅଧିକାର ମଧ୍ୟରେ, ଫଳ-ବିଧାତା ତାହାର ଭଲ ବା ମନ୍ଦ ଫଳ ବିଧାନ କରିବେ—ହୃଦୟ ମଧ୍ୟରେ ଏହି ଭାବ ଦୃଢ଼ରୂପେ ଅଙ୍କିତ ହେଲେ ଫଳ ପାଇବା ପାଇଁ ମନୁଷ୍ୟର ବ୍ୟାକୁଳତା ରହିବ ନାହିଁ । ପରେ ଏହି ସବୁକଥା ଅନ୍ୟଭାବରେ ଭଗବାନ ବୁଝାଉ ଅଛନ୍ତି ।

ଯୋଗସ୍ଥଃ କୁରୁ କର୍ମାଣି ସଙ୍ଗଂ ତ୍ୟକ୍ତ୍ୱା ଧନଞ୍ଜୟ ।
ସିଦ୍ଧ୍ୟସିଦ୍ଧ୍ୟୋଃ ସମୋ ଭୂତ୍ୱା ସମତ୍ୱଂ ଯୋଗ ଉଚ୍ୟତେ । ୪୮
ଦୂରେଣ ହ୍ୟବରଂ କର୍ମ ବୁଦ୍ଧିଯୋଗାଦ୍ଧନଞ୍ଜୟ ।
ବୁଦ୍ଧୌ ଶରଣମନ୍ୱିଚ୍ଛ କୃପଣାଃ ଫଳହେତବଃ । ୪୯ ।

୪୮ । **ଅନ୍ୱୟଦୀପିକା**—ଧନଞ୍ଜୟ (ହେ ଅର୍ଜୁନ) ଯୋଗସ୍ଥଃ [ସନ୍] (ଯୋଗରେ ଅବସ୍ଥିତ ହୋଇ) ସଙ୍ଗଂ ତ୍ୟକ୍ତ୍ୱା (ଫଳ କାମନା ତ୍ୟାଗ-କରି,) ସିଦ୍ଧ୍ୟସିଦ୍ଧ୍ୟୋଃ (ସିଦ୍ଧି ଅସିଦ୍ଧିରେ) ସମୋ ଭୂତ୍ୱା (ସମାନ ଅର୍ଥାତ୍ ହର୍ଷ-ବିଷାଦଶୂନ୍ୟ ହୋଇ) କର୍ମାଣି କୁରୁ (କର୍ମ କର,) [ଏହିପରି] ସମତ୍ୱଂ (ସମତା) ଯୋଗଃ ଉଚ୍ୟତେ (ଯୋଗ ବୋଲି ଉକ୍ତ ହୁଏ)

**ଅନୁବାଦ**—ହେ ଅର୍ଜୁନ, ଯୋଗସ୍ଥ ହୋଇ ଫଳକାମନାତ୍ୟାଗ-ପୂର୍ବକ ସିଦ୍ଧି ଓ ଅସିଦ୍ଧିକୁ ସମାନ ଜ୍ଞାନକରି ତୁମେ କର୍ମକର; ଏହି ଭଳି ସମତ୍ୱ ବୁଦ୍ଧିକୁ ଯୋଗ କୁହାଯାଏ ।

**ସୁବୋଧିନୀ ଟୀକା**—କଂ ତଦ୍ଧି ଯୋଗସ୍ଥ ଇତି । ଯୋଗଃ ପରମେଶ୍ୱରୈକପରତା । ତତ୍ର ସ୍ଥିତଃ କର୍ମାଣି କୁରୁ; ତଥା ସଙ୍ଗଂ କର୍ତ୍ତୃତ୍ୱାଭିନିବେଶଂ ତ୍ୟକ୍ତ୍ୱା କେବଲମୀଶ୍ୱରାଶ୍ରୟେଣୈବ କୁରୁ । ତତ୍ଫଲସ୍ୟ ଜ୍ଞାନସ୍ୟାପି ସିଦ୍ଧ୍ୟ-ସିଦ୍ଧ୍ୟୋଃ ସମୋଭୂତ୍ୱା କେବଲମୀଶ୍ୱରାର୍ପଣେନୈବ କୁରୁ । ଯତ ଏବମ୍ଭୂତଂ ସମତ୍ୱମେବ ଯୋଗ ଉଚ୍ୟତେ ସଦ୍ଭିଃ । ଚିତ୍ତସମାଧାନରୂପତ୍ୱାତ୍ ।

**ବିବୃତି**—ଏ ଶ୍ଳୋକରେ ଭଗବାନ ଯୋଗସ୍ଥ ହୋଇ କର୍ମ କରିବାକୁ ଉପଦେଶ ଦେଉଅଛନ୍ତି । 'ଯୋଗ' ଶବ୍ଦ ଗୀତାରେ ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଅର୍ଥରେ ପ୍ରଯୁକ୍ତ ହୋଇଅଛି । ଏଠାରେ ଶ୍ଳୋକର ଦ୍ୱିତୀୟାର୍ଦ୍ଧରେ 'ସିଦ୍ଧି ଓ ଅସିଦ୍ଧିକୁ ସମାନ ଜ୍ଞାନ କରିବା ହିଁ ଯୋଗ' ଏହି ବ୍ୟାଖ୍ୟା ଦ୍ୱାରା ଯୋଗ ଶବ୍ଦର ଅର୍ଥ ବୁଝାଇ ଦିଆଯାଇଅଛି । ଯେ ଫଳକାମନା ତ୍ୟାଗ କରିପାରେ, ସେହି ଏକା ସିଦ୍ଧି ଓ ଅସିଦ୍ଧିରେ ହର୍ଷବିଷାଦଶୂନ୍ୟ ହୋଇପାରେ । ସୁତରାଂ ଫଳ କାମନା ତ୍ୟାଗକରି ସିଦ୍ଧି ଓ ଅସିଦ୍ଧିକୁ ସମାନ ଜ୍ଞାନକରି କର୍ମ କର—ଏହା ହିଁ ଏ ଶ୍ଳୋକର ସାରମର୍ମ ।

ପୂଜ୍ୟପାଦ ଶ୍ରୀଧରସ୍ୱାମୀ କହନ୍ତି 'ଯୋଗ' ଶବ୍ଦର ଅର୍ଥ ପରମେଶ୍ୱରୈ-କପରତା ଏବଂ 'ସଙ୍ଗ' ଅର୍ଥ କର୍ତ୍ତୃତ୍ୱାଭିନିବେଶ । ଏ ଭଳି ବ୍ୟାଖ୍ୟା ଅସଙ୍ଗତ ନୁହେ, କାରଣ କର୍ତ୍ତୃତ୍ୱାଭିନିବେଶ ତ୍ୟାଗ ଏବଂ ଈଶ୍ୱରଙ୍କଠାରେ ସର୍ବକର୍ମ-ସମର୍ପଣ—ଏ ଦୁଇଟି କର୍ମଯୋଗର ବିଶେଷ ଲକ୍ଷଣ ।

୪୯ । **ଅନ୍ୱୟଦୀପିକା**—ଧନଞ୍ଜୟ (ହେ ଅର୍ଜୁନ,) କର୍ମ (ବାହ୍ୟ କର୍ମ ବା କାମ୍ୟକର୍ମ) ବୁଦ୍ଧି ଯୋଗାତ୍ (ସମତ୍ୱ ବୁଦ୍ଧିଯୋଗ ଅପେକ୍ଷା) ଦୂରେଣ ହି

ବୁଦ୍ଧିଯୁକ୍ତୋ ଜହାତୀହ ଉଭେ ସୁକୃତ ଦୁଷ୍କୃତେ,
ତସ୍ମାଦ୍ ଯୋଗାୟ ଯୁଜ୍ୟସ୍ୱ ଯୋଗଃ କର୍ମସୁ କୌଶଳମ୍ । ୫୦ ।

( ନିତାନ୍ତ ) ଅବରଂ ( ନିକୃଷ୍ଟ, ) ( ତେଣୁ ) ବୁଦ୍ଧୌ ( ସମତ୍ୱ ବୁଦ୍ଧିରେ ) ଶରଣମ୍ ଅନ୍ୱିଚ୍ଛ ( ଆଶ୍ରୟ ପ୍ରାର୍ଥନା କର, ) ଫଳହେତବଃ ( ଫଳାକାଙ୍‌କ୍ଷୀଗଣ ) କୃପଣାଃ ( କୃପାର ପାତ୍ର ଅର୍ଥାତ୍ ନିକୃଷ୍ଟ ଲୋକ ର ) ।

**ଅନୁବାଦ**—ହେ ଅର୍ଜୁନ, କେବଳ ବାହ୍ୟକର୍ମ ବୁଦ୍ଧିଯୋଗଅପେକ୍ଷା ନିତାନ୍ତ ନିକୃଷ୍ଟ; ଅତଏବ ତୁମେ ସମତ୍ୱ-ବୁଦ୍ଧିର ଆଶ୍ରୟ ନିଅ । ଯେଉଁମାନେ ଫଳ ଉଦ୍ଦେଶ୍ୟରେ କର୍ମ କରନ୍ତି ସେମାନେ ଦୀନ, କୃପାର ପାତ୍ର ।

**ସୁବୋଧିନୀ ଟୀକା**—କାମ୍ୟଂ ତୁ କର୍ମାତିନିକୃଷ୍ଟମିତ୍ୟାହ—ଦୂରେଣେତି । ବୁଦ୍ଧ୍ୟା ବ୍ୟବସାୟାତ୍ମିକୟା କୃତଃ କର୍ମଯୋଗୋ ବୁଦ୍ଧିସାଧନଭୂତୋ ବା । ତସ୍ମାତ୍ ସକାମାଦନ୍ୟତ୍ ସାଧନଭୂତଂ କାମ୍ୟଂ କର୍ମ ଦୂରେଣାବରମତ୍ୟନ୍ତମପକୃଷ୍ଟମ୍ । ହି ଯସ୍ମାଦେବ ତସ୍ମାଦ୍‌ବୁଦ୍ଧୌ ଯୋଗେ ଶରଣମାଶ୍ରୟଂ କର୍ମଯୋଗ ମନ୍ୱିଚ୍ଛାନୁତିଷ୍ଠ । ଯଦ୍ୱା ବୁଦ୍ଧୌ ଶରଣଂ ତ୍ରାତାରମୀଶ୍ୱରମାଶ୍ରୟେତ୍ୟର୍ଥଃ । ଫଳହେତବସ୍ତୁ ସକାମା ନରାଃ କୃପଣାଃ ଦୀନାଃ । ଯୋ ବା ଏତଦକ୍ଷରଂ ଗାର୍ଗ୍ୟ ବିଦିତ୍ୱାସ୍ମା-ଲ୍ଲୋକାତ୍ ପ୍ରୈତି ସ କୃପଣଃ । ଇତି ଶ୍ରୁତେଃ ।

**ବିବୃତି**—ଏ ଶ୍ଳୋକରେ ଭଗବାନଙ୍କ ବୁଦ୍ଧିଯୋଗଠାରୁ କର୍ମ ନିକୃଷ୍ଟ ଅର୍ଥାତ୍ କର୍ମ ଅପେକ୍ଷା ସାମ୍ୟ ବୁଦ୍ଧିହିଁ ଶ୍ରେଷ୍ଠ । ଏହାର ତାତ୍ପର୍ଯ୍ୟ ଏହି ଯେ କର୍ମର ବାହ୍ୟଫଳବିଚାର ଗୌଣ, କର୍ତ୍ତାର ବୁଦ୍ଧିବିଚାରହିଁ ମୁଖ୍ୟ । କର୍ତ୍ତାର ବୁଦ୍ଧି ଯେବେ ସମତ୍ୱପ୍ରାପ୍ତ ହୋଇଥାଏ, ତେବେ କର୍ମର ଫଳ ଯାହା ହେଉନା କାହିଁକି, ତହିଁରେ କର୍ତ୍ତାକୁ ପାପ ପୁଣ୍ୟ ସ୍ପର୍ଶ କରେ ନାହିଁ । ତେଣୁ ତୁମେ ସାମ୍ୟ ବୁଦ୍ଧିର ଆଶ୍ରୟ ନିଅ, ଫଳ ବିଷୟରେ ଅନାସକ୍ତ ହୁଅ; ଯେଉଁମାନେ କେବଳ ଫଳ ପ୍ରତି ଦୃଷ୍ଟି ରଖି କର୍ମ କରନ୍ତି, ସେମାନେ କୃପଣ ବା କୃପାର ପାତ୍ର ।

୫୦ । **ଅନ୍ୱୟଦୀପିକା**—ବୁଦ୍ଧିଯୁକ୍ତଃ (ସମତ୍ୱ ବୁଦ୍ଧିଯୁକ୍ତ କର୍ମଯୋଗୀ) ଇହ (ଏହି ଲୋକରେ ହିଁ) ଉଭେ ସୁକୃତ ଦୁଷ୍କୃତେ (ପୁଣ୍ୟ ପାପ ଉଭୟକୁହିଁ) ଜହାତି (ତ୍ୟାଗ କରନ୍ତି). ତସ୍ମାତ୍ (ସେହି ହେତୁ) ଯୋଗାୟ ଯୁଜ୍ୟସ୍ୱ (ଯୋଗ-ନିମିତ୍ତ ଯତ୍ନ କର), ଯୋଗଃ କର୍ମସୁ କୌଶଳମ୍ (କର୍ମରେ କୌଶଳହିଁ ଯୋଗ) ।

**ଅନୁବାଦ**—ସମତ୍ୱ ବୁଦ୍ଧିଯୁକ୍ତ କର୍ମଯୋଗୀ ଇହ ଲୋକରେହିଁ ପାପ ପୁଣ୍ୟ ଉଭୟକୁ ତ୍ୟାଗ କରନ୍ତି, ତେଣୁ ତୁମେ ଯୋଗପାଇଁ ଯତ୍ନ କର, କର୍ମରେ କୌଶଳହିଁ ଯୋଗ ।

**ସୁବୋଧିନୀ ଟୀକା**—ବୁଦ୍ଧିଯୋଗଯୁକ୍ତସ୍ତୁ ଶ୍ରେଷ୍ଠ ଇତ୍ୟାହ—ବୁଦ୍ଧିଯୁକ୍ତ ଇତି । ସୁକୃତଂ ସ୍ୱର୍ଗାଦିପ୍ରାପକମ୍ । ଦୁଷ୍କୃତଂ ନରକାଦିପ୍ରାପକମ୍ । ତେ

କର୍ମଜଂ ବୁଦ୍ଧିଯୁକ୍ତା ହି ଫଳଂ ତ୍ୟକ୍ତ୍ୱା ମନୀଷିଣଃ
ଜନ୍ମବନ୍ଧବିନିର୍ମୁକ୍ତାଃ ପଦଂ ଗଚ୍ଛନ୍ତ୍ୟନାମୟମ୍ । ୫୧ ।

ଉଭେ ଇହୈବ ଜନ୍ମନି ପରମେଶ୍ୱରପ୍ରସାଦେନ ତ୍ୟଜତି । ତସ୍ମାଦ୍ ଯୋଗାୟ ତଦର୍ଥାୟ କର୍ମଯୋଗାୟ ଯୁଜ୍ୟସ୍ୱ । ଯତଃ କର୍ମସୁ ଯତ୍ କୌଶଳଂ—ବନ୍ଧକାନାମପି ତେଷାମୀଶ୍ୱରାରାଧନେନ ମୋକ୍ଷପରତ୍ୱସମ୍ପାଦକଚାତୁର୍ଯ୍ୟଂ ସ ଏବ ଯୋଗଃ ।

**ବିବୃତି**—ଯେଉଁ ସବୁ କର୍ମର ଫଳ ସ୍ୱର୍ଗାଦି ସେସବୁ ସୁକୃତ ବା ପୁଣ୍ୟକର୍ମ ଏବଂ ଯେଉଁ ସବୁ କର୍ମର ଫଳ ନରକାଦି ତାହା ଦୁଷ୍କୃତ ବା ପାପ କର୍ମ । ଯେଉଁ ଲୋକ ସମତ୍ୱବୁଦ୍ଧିଯୁକ୍ତ ସେ ସ୍ୱର୍ଗାଦି ବା ନରକାଦି ପ୍ରାପ୍ତି ସମ୍ବନ୍ଧରେ ହିଁ ଏ ସେ ଉଭୟବିଧ କର୍ମ ପରିତ୍ୟାଗ କରନ୍ତି, କାରଣ ଉଭୟବିଧ କର୍ମ ବନ୍ଧନର କାରଣ; ତେବେ ସେ ଯେ ସତ୍ ଅସତ୍ ସବୁପ୍ରକାର କର୍ମ ତ୍ୟାଗକରି ଥାଆନ୍ତି—ଏହା ଏଥିରୁ ବୁଝିବାକୁ ହେବ ନାହିଁ । ଏହା କହିବାର ତାତ୍ପର୍ଯ୍ୟ ଏହି ଯେ, ସେ ସ୍ୱର୍ଗାଦି କାମନାରେ ବା ନରକାଦି ଭୟରେ କୌଣସି କର୍ମ କରନ୍ତି ନାହିଁ, ଯାହା କରନ୍ତି ତାହା କର୍ତ୍ତବ୍ୟ ଜ୍ଞାନରେ ହିଁ କରିଥାଆନ୍ତି । ସୁତରାଂ ତୁମେ କର୍ମର କୌଶଳ ଶିକ୍ଷାକର । ସମତ୍ୱବୁଦ୍ଧିଯୁକ୍ତ ହୋଇ କର୍ମ କରିବାକୁ କର୍ମର କୌଶଳ ବୋଲାଯାଏ । କର୍ମ ସମସ୍ତେ କରନ୍ତି କିନ୍ତୁ ଯେ ସମତ୍ୱ ବୁଦ୍ଧିରେ କର୍ମ କରନ୍ତି ସେ କୌଶଳୀ; କାରଣ ସେ କର୍ମ କରି ମଧ୍ୟ କର୍ମର ଫଳ ବନ୍ଧନରୁ ମୁକ୍ତ ହୁଅନ୍ତି । ପାଣିକୁ ଗୋଳିଆ ଦେଖି ପାଣି ପିଇବା ଛାଡ଼ିଦେଲେ ଚଳିବ ନାହିଁ, କୌଶଳରେ ଗୋଳିଆ ପାଣିକୁ ନିର୍ମଳ କରି ପିଇବାକୁ ହେବ । ଏହାହିଁ ବୁଦ୍ଧିମାନ ଲୋକର କାର୍ଯ୍ୟ ।

**୫୧ । ଅନ୍ୱୟଦୀପିକା**—ବୁଦ୍ଧିଯୁକ୍ତାଃ (ସମତ୍ୱବୁଦ୍ଧିଯୁକ୍ତ) ମନୀଷିଣଃ (ଜ୍ଞାନୀମାନେ) କର୍ମଜଂ ଫଳଂ (କର୍ମଜନିତ ଫଳ) ତ୍ୟକ୍ତ୍ୱା (ତ୍ୟାଗକରି) ଜନ୍ମବନ୍ଧବିନିର୍ମୁକ୍ତାଃ [ସନ୍ତଃ] (ଜନ୍ମରୂପ ବନ୍ଧନରୁ ମୁକ୍ତହୋଇ) ଅନାମୟଂ (ସର୍ବୋପଦ୍ରବରହିତ) ପଦଂ (ପରମପଦ) ଗଚ୍ଛନ୍ତି ହି (ଲାଭକରନ୍ତି) ।

**ଅନୁବାଦ**—ସମତ୍ୱ ବୁଦ୍ଧିଯୁକ୍ତ ଜ୍ଞାନୀମାନେ କର୍ମ କରି ମଧ୍ୟ କର୍ମଜନିତ ଫଳରେ ଆବଦ୍ଧ ହୁଅନ୍ତି ନାହିଁ । ତେଣୁ ସେମାନେ ଜନ୍ମରୂପ ବନ୍ଧନ ଅର୍ଥାତ୍ ସଂସାରବନ୍ଧନରୁ ମୁକ୍ତହୋଇ ସର୍ବ ପ୍ରକାର ଉପଦ୍ରବରହିତ ପରମପଦ ବା ମୋକ୍ଷ ପ୍ରାପ୍ତ ହୁଅନ୍ତି ।

**ସୁବୋଧିନୀ ଟୀକା**—କର୍ମଣାଂ ମୋକ୍ଷସାଧନତ୍ୱପ୍ରକାରମାହ—କର୍ମଜମିତି । କର୍ମଜଂ ଫଳଂ ତ୍ୟକ୍ତ୍ୱା କେବଳମୀଶ୍ୱରାରାଧନାର୍ଥଂ କର୍ମ କୁର୍ୱାଣା ମନୀଷିଣୋ ଜ୍ଞାନିନୋ ଭୂତ୍ୱା ଜନ୍ମରୂପେଣ ବନ୍ଧେନ ବିନିର୍ମୁକ୍ତାଃ ସନ୍ତୋଽନାମୟଂ ସର୍ବୋପଦ୍ରବରହିତଂ ବିଷ୍ଣୋଃ ପଦଂ ମୋକ୍ଷାଖ୍ୟଂ ଗଚ୍ଛନ୍ତି ।

ଯଦାତେ ମୋହକଲିଲଂ ବୁଦ୍ଧିର୍ବ୍ୟତିତରିଷ୍ୟତି
ତଦା ଗନ୍ତାସି ନିର୍ବେଦଂ ଶ୍ରୋତବ୍ୟସ୍ୟ ଶ୍ରୁତସ୍ୟ ଚ । ୫୨ ।

**ବିବୃତି**—ସୁନା ଶିକୁଳିରେ ବନ୍ଧା ହେଲେ ଯେଉଁ ଦୁଃଖ ହୁଏ, ଲୁହା ଶିକୁଳିରେ ବନ୍ଧା ହେଲେ ସେହି ଦୁଃଖହିଁ ହୋଇଥାଏ; ତେଣୁ ସ୍ୱର୍ଗପ୍ରାପକ ଯାଗଯଜ୍ଞାଦି କର୍ମ ହେଉ ବା ନରକପ୍ରଦ ଚୌର୍ଯ୍ୟାଦି କର୍ମ ହେଉ, ମୁମୁକ୍ଷୁ ପକ୍ଷରେ ଉଭୟ ସମାନ । ସ୍ୱର୍ଗପ୍ରାପ୍ତିରୂପ ଫଳ ଅସ୍ଥାୟୀ, ପୁଣ୍ୟର ଫଳ ଶେଷ ହେଲେ ତହିଁରୁ ପତନ ଅନିବାର୍ଯ୍ୟ କିନ୍ତୁ ନିଷ୍କାମ କର୍ମୀ ସମତ୍ୱ ବୁଦ୍ଧିରେ କର୍ମ କରୁଥିବାରୁ କର୍ମର ଫଳ ଯେ ଜନ୍ମବନ୍ଧନ ବା ସଂସାରବନ୍ଧନ ତହିଁରେ ବଦ୍ଧ ହୁଅନ୍ତି ନାହିଁ, ତାଙ୍କର ବରଂ ପରମପଦ ବୈକୁଣ୍ଠପ୍ରାପ୍ତି ବା ମୋକ୍ଷପ୍ରାପ୍ତି ହୁଏ । କାରଣ କାମନାହିଁ ବନ୍ଧନର କାରଣ, ସେ କାମନାଶୂନ୍ୟ ହୋଇଥିବାରୁ ତାଙ୍କୁ ବନ୍ଧନ ସ୍ପର୍ଶ କରିପାରେ ନାହିଁ ।

୫୨ । **ଅନ୍ୱୟଦୀପିକା**— ଯଦା (ଯେତେବେଳେ) ତେ ବୁଦ୍ଧିଃ (ତୁମର ବୁଦ୍ଧି) ମୋହକଲିଲଂ (ଅବିବେକରୂପ କର୍ଦ୍ଦମ ବା ଅଜ୍ଞାନ ରୂପ ଗହନ କାନନ) ବ୍ୟତିତରିଷ୍ୟତି (ପରିତ୍ୟାଗ କରିବ), ତଦା (ସେତେବେଳେ) ଶ୍ରୋତବ୍ୟସ୍ୟ ଶ୍ରୁତସ୍ୟ ଚ (ଶ୍ରୋତବ୍ୟ ଓ ଶ୍ରୁତବିଷୟରେ) ନିର୍ବେଦଂ (ବୈରାଗ୍ୟ) ଗନ୍ତାସି (ପ୍ରାପ୍ତ ହେବ) ।

**ଅନୁବାଦ**—ଯେତେବେଳେ ତୁମ ବୁଦ୍ଧି ମୋହରୂପ ଗହନ କାନନ ବା ମୋହରୂପ ପଙ୍କିଳ ଆବରଣ ଅତିକ୍ରମ କରିବ ସେତେବେଳେ ତୁମେ ଶ୍ରୋତବ୍ୟ ଓ ଶ୍ରୁତ ବିଷୟରେ ବୈରାଗ୍ୟ ପ୍ରାପ୍ତ ହେବ ।

**ସୁବୋଧିନୀ ଟୀକା**—କଦାହଂ ତତ୍‌ପଦଂ ପ୍ରାପ୍ସ୍ୟାମି ଇତ୍ୟପେକ୍ଷାୟାମାହ—ଯଦେତି ଦ୍ୱାଭ୍ୟାମ୍ । ମୋହୋ ଦେହାଦିଷୁ ଆତ୍ମବୁଦ୍ଧିଃ । ତଦେବ କଲିଲଂ ଗହନମ୍ । କଲିଲଂ ଗହନଂ ବିଦୁରିତ୍ୟଭିଧାନକୋଷସ୍ମୃତେଃ । ତତଶ୍ଚାୟମର୍ଥଃ—ଏବଂ ପରମେଶ୍ୱରାରାଧନେ କ୍ରିୟମାଣେ ଯଦା ତତ୍ ପ୍ରସାଦେନ ତବ ବୁଦ୍ଧିର୍ଦେହାଭିମାନଲକ୍ଷଣଂ ମୋହମୟଂ ଗହନଂ ଦୁର୍ଗଂ ବିଶେଷେଣାତିତରିଷ୍ୟତି, ତଦା ଶ୍ରୋତବ୍ୟସ୍ୟ ଶ୍ରୁତସ୍ୟ ଚାର୍ଥସ୍ୟ ନିର୍ବେଦଂ ବୈରାଗ୍ୟଂ ଗନ୍ତାସି ପ୍ରାପ୍ସ୍ୟସି । ତୟୋରନୁପାଦେୟତ୍ୱେନ ଜିଜ୍ଞାସାଂ ନ କରିଷ୍ୟସୀତ୍ୟର୍ଥଃ ।

**ବିବୃତି**—ନିଷ୍କାମ କର୍ମ କଲେ କେବେ ମୋକ୍ଷ ମିଳିବ ? ଏହାର ଉତ୍ତର ସ୍ୱରୂପ ଭଗବାନ୍ କହୁଅଛନ୍ତି—ନିଷ୍କାମ କର୍ମ କରୁ କରୁ ଯେତେବେଳେ ତୁମ ମନରେ 'ମୁଁ' ଏବଂ 'ମୋର' ଏହି ଅଭିମାନରୂପ ଅବିବେକାନ୍ଧକାର ନ ରହିବ ଅର୍ଥାତ୍ ରଜଃ ଓ ତମୋଗୁଣର କାଳିମା ତୁମ ମନରୁ ଅନ୍ତର୍ହିତ ହୋଇ ଶୁଦ୍ଧସତ୍ତ୍ୱଭାବର ଉଦୟ ହେବ, ସେତେବେଳେ କର୍ମଫଳପ୍ରତି ତୁମର

ଶ୍ରୁତିବିପ୍ରତିପନ୍ନା ତେ ଯଦା ସ୍ଥାସ୍ୟତି ନିଶ୍ଚଳା ।
ସମାଧାବଚଳା ବୁଦ୍ଧି ସ୍ତଦା ଯୋଗମବାପ୍‌ସ୍ୟସି ॥ ୫୩ ॥

ବିତୃଷ୍ଣା ଜାତହେବ । ଅଶୁଦ୍ଧ ଅନ୍ତଃକରଣରୁ ବିଷୟତୃଷ୍ଣା କେବେହେଁ ତିରୋହିତ ହୁଏ ନାହିଁ । ସ୍ୱର୍ଗଲାଭ, ରାଜ୍ୟଭୋଗ ପ୍ରଭୃତି ପୁଣ୍ୟକର୍ମଫଳ ବୋଲି ସର୍ବଶାସ୍ତ୍ରରେ ଶୁଣାଯାଏ, ମାତ୍ର ସେ ସବୁ ମୋକ୍ଷଶାସ୍ତ୍ର ନୁହେଁ; ଯେତେବେଳେ ତୁମ ବୁଦ୍ଧି ଦୁସ୍ତର ମୋହ ଅତିକ୍ରମ କରିବ ସେତେବେଳେ ତୁମେ ସ୍ୱର୍ଗଫଳାଦି ବିଷୟରେ ଯାହା ଶୁଣିଅଛ ଏବଂ ଯାହା ଶୁଣିବ ସେ ସବୁକୁ ତୁଚ୍ଛ ମନେକରିବ ଏବଂ କାମ୍ୟକର୍ମପ୍ରତି ବିତୃଷ୍ଣ ହେବ ।

୫୩ । **ଅନ୍ୱୟଦୀପିକା**—ଯଦା (ଯେତେବେଳେ) ଶ୍ରୁତିବିପ୍ରତିପନ୍ନା (ନାନା ଫଳ ଶ୍ରୁତିଦ୍ୱାରା ବିକ୍ଷିପ୍ତ) ତେ ବୁଦ୍ଧିଃ (ତୁମ ବୁଦ୍ଧି) ସମାଧୌ (ସମାଧିରେ) ନିଶ୍ଚଳା (ନିଶ୍ଚଳ ହୋଇ) ଅଚଳା ସ୍ଥାସ୍ୟତି (ସ୍ଥିରହୋଇ ରହିବ) ତଦା (ସେତେବେଳେ) ଯୋଗମ୍ ଅବାପ୍‌ସ୍ୟସି (ଯୋଗପ୍ରାପ୍ତ ହେବ) ।

**ଅନୁବାଦ**—ଏଥିପୂର୍ବରୁ ଲୌକିକ, ବୈଦିକ ନାନା ଫଳ କଥା ଶୁଣି ତୁମ ବୁଦ୍ଧି ବିକ୍ଷିପ୍ତ ହୋଇଅଛି, ସେ ବୁଦ୍ଧି ଯେତେବେଳେ ସମାଧିରେ ଅର୍ଥାତ୍ ଧ୍ୟେୟବସ୍ତୁ ପରମେଶ୍ୱରଙ୍କଠାରେ ନିଶ୍ଚଳ ହୋଇ ରହିବ, ସେତେବେଳେ ତୁମେ (ସାମ୍ୟବୁଦ୍ଧିରୂପ) ଯୋଗ ପ୍ରାପ୍ତ ହେବ ।

**ସୁବୋଧିନୀ ଟୀକା**—ତତଶ୍ଚ—ଶ୍ରୁତୀତି । ଶ୍ରୁତିଭିର୍ନାନାଲୌକିକ-ବୈଦିକାର୍ଥଶ୍ରବଣୈର୍ବିପ୍ରତିପନ୍ନା ଇତଃ ପୂର୍ବଂ ବିକ୍ଷିପ୍ତା ସତୀ ତବ ବୁଦ୍ଧି ର୍ୟଦା ସମାଧୌ ସ୍ଥାସ୍ୟତି । ସମାଧୀୟତେ ଚିତ୍ତମସ୍ମିନ୍ନିତି ସମାଧିଃ ପରମେଶ୍ୱରଃ । ତସ୍ମିନ୍ନି-ଶ୍ଚଳା ବିଷୟାନ୍ତରୈରନାକୃଷ୍ଟା । ଅତଏବାଚଳା । ଅଭ୍ୟାସପାଟବେନ ତତ୍ରୈବ-ସ୍ଥିରା ଚ ସତୀ ଯୋଗଂ ଯୋଗଫଳଂ ତତ୍ତ୍ୱଜ୍ଞାନମବାପ୍‌ସ୍ୟସି ।

**ବିବୃତି**—'ଶ୍ରୁତିବିପ୍ରତିପନ୍ନା' ପଦର ଅର୍ଥରେ ଦୁଇପ୍ରକାର ମତ ଦେଖାଯାଏ । 'ଶ୍ରୁତି' ଶବ୍ଦର ଅର୍ଥ ୧—ବେଦ ଓ ୨—ଶ୍ରବଣ ବା ଶୁଣିବା । ତେଣୁ କେହି କେହି ଅର୍ଥ କରିଛନ୍ତି—ବେଦରେ କାମ୍ୟ କର୍ମ ଓ ସ୍ୱର୍ଗଫଳାଦିର ଯେଉଁ ସବୁ କଥା ଅଛି ତାହାଦ୍ୱାରା ବିପ୍ରତିପନ୍ନା ଅର୍ଥାତ୍ ବିକ୍ଷିପ୍ତା । ଶ୍ରୀଧରସ୍ୱାମୀ ଏହାର ବ୍ୟାଖ୍ୟାରେ କହନ୍ତି 'ନାନାଲୌକିକବୈଦିକାର୍ଥଶ୍ରବଣୈଃ' ଅନୁବାଦରେ ଏହି ଅର୍ଥହିଁ ଗ୍ରହଣ କରାଯାଇଅଛି । 'ନିଶ୍ଚଳା' ଓ 'ଅଚଳା' ଶବ୍ଦଦ୍ୱୟର ଅର୍ଥରେ ପାର୍ଥକ୍ୟ ଏହି ଯେ, ନିଶ୍ଚଳା ଅର୍ଥ—ବିଷୟାନ୍ତରୈରନାକୃଷ୍ଟା, ଅତଏବ ଅଚଳା ଅଭ୍ୟାସପାଟବେନ ତତ୍ରୈବସ୍ଥିରା (ଶ୍ରୀଧରଃ) ଅର୍ଥାତ୍ ଯେତେବେଳେ ବୁଦ୍ଧି ବିଭିନ୍ନ ବିଷୟରେ ଆକୃଷ୍ଟ ନ ହୁଏ ସେତେବେଳେ ତାହା 'ନିଶ୍ଚଳା' ଏବଂ ପୁନଃ-ପୁନଃ ଅଭ୍ୟାସହେତୁରୁ ଧ୍ୟେୟ ବସ୍ତୁରେ ସ୍ଥିର ହେଲେ ତାହା 'ଅଚଳା' ।

ଅର୍ଜୁନ ଉବାଚ

ସ୍ଥିତପ୍ରଜ୍ଞସ୍ୟ କା ଭାଷା ସମାଧିସ୍ଥସ୍ୟ କେଶବ ।
ସ୍ଥିତଧୀଃ କିଂ ପ୍ରଭାଷେତ କିମାସୀତ ବ୍ରଜେତ କିମ୍ । ୫୪ ।

ଶ୍ରୀଧର, ଶଙ୍କର ପ୍ରମୁଖ ଟୀକାକାରମାନେ 'ସମାଧି' ଶବ୍ଦର ଅର୍ଥ ଅତ୍ମା ବା ଈଶ୍ବର ବୋଲି କହିଅଛନ୍ତି ( ସମାଧୀୟତେ ଚିତ୍ତ ଯସ୍ମିନ୍‌, ଅର୍ଥାତ୍ ଯେଉଁଠାରେ ଚିତ୍ତ ଅଚଳ ଅବସ୍ଥାରେ ରହେ ) । ମାତ୍ର ଯେଉଁ ଅବସ୍ଥାରେ ଚିତ୍ତ ସମାହିତ ହୁଏ ସେ ଅବସ୍ଥାକୁ ଅଟେ ସମାଧି କହୁଁ । ଏ ସାଧାରଣ ଅର୍ଥ ମଧ୍ୟ ଏଠାରେ ଗ୍ରହଣ କରାଯାଇ ପାରେ ।

୫୪ । **ଅନ୍ୱୟ ଦୀପିକା**—ଅର୍ଜୁନ ଉବାଚ (ଅର୍ଜୁନ କହିଲେ), କେଶବ (ହେ କେଶବ, ସମାଧିସ୍ଥସ୍ୟ ସ୍ଥିତପ୍ରଜ୍ଞସ୍ୟ (ସମାଧିସ୍ଥ ସ୍ଥିତପ୍ରଜ୍ଞଙ୍କର) କା ଭାଷା ( ଲକ୍ଷଣ କଅଣ ) ? ସ୍ଥିତଧୀଃ ( ସ୍ଥିତପ୍ରଜ୍ଞ ) କିଂ ପ୍ରଭାଷେତ ( କିପରି କଥା କହନ୍ତି ) ? କିମ୍ ଆସୀତ ( କିପରି ଭାବରେ ଅବସ୍ଥିତ ) ? କିଂ ବ୍ରଜେତ ( କିପରି ଭାବରେ ବିଚରଣ କରନ୍ତି ) ?

**ଅନୁବାଦ**—ଅର୍ଜୁନ ପଚାରିଲେ, ହେ କେଶବ, ଯେଉଁ ଲୋକ ସମାଧିସ୍ଥ ହୋଇ ସ୍ଥିତପ୍ରଜ୍ଞ ହୋଇଅଛନ୍ତି ତାଙ୍କର ଲକ୍ଷଣ କଅଣ ? ସେହି ସ୍ଥିତପ୍ରଜ୍ଞ ବ୍ୟକ୍ତି କିପରି କଥାବାର୍ତ୍ତା କହନ୍ତି ? କିପରି ଅବସ୍ଥାନ କରନ୍ତି ? କିପରି ବା ଚଳନ୍ତି ?

**ସୁବୋଧିନୀ ଟୀକା**—ପୂର୍ବଶ୍ଳୋକୋକ୍ତସ୍ୟ ସ୍ଥିତପ୍ରଜ୍ଞସ୍ୟ ଲକ୍ଷଣଂ ପୃଚ୍ଛନ୍ନର୍ଜୁନ ଉବାଚ—ସ୍ଥିତପ୍ରଜ୍ଞସ୍ୟେତି, ସ୍ଥିତା ପ୍ରଜ୍ଞା ଯସ୍ୟ, ସମାଧୌ ସ୍ଥିତସ୍ୟ । ଅତଏବ ସ୍ଥିରା ନିଶ୍ଚଳା ପ୍ରଜ୍ଞା ବୁଦ୍ଧିର୍ଯସ୍ୟ ତସ୍ୟ ଭାଷା କା ? ଭାଷ୍ୟତେ ଅନୟେତି ଭାଷା, ଲକ୍ଷଣମିତି ଯାବତ୍ । ସ କେନ ଲକ୍ଷଣେନ ସ୍ଥିତପ୍ରଜ୍ଞ ଉଚ୍ୟତେ ଇତ୍ୟର୍ଥଃ । ତଥା ସ୍ଥିତଧୀଃ କିଂ କଥଂ ଭାଷଣମାସନଂ ବ୍ରଜନଂ ଚ କୁର୍ଯାଦିତ୍ୟର୍ଥଃ ।

**ବିବୃତି**—ପୂର୍ବ ଶ୍ଳୋକରେ ଭଗବାନ୍ କହିଅଛନ୍ତି, ଲୌକିକ ବୈଦିକ ବାକ୍ୟ ଶ୍ରବଣରେ ତୁମ୍ଭର ବୁଦ୍ଧି ବିକ୍ଷିପ୍ତ ହୋଇଅଛି; ସେହି ବିକ୍ଷିପ୍ତ ବୁଦ୍ଧି ସମାହିତ ନ ହେଲେ ଅର୍ଥାତ୍ ଈଶ୍ବରଙ୍କଠାରେ ଏକାଗ୍ର ନ ହେଲେ ତୁମେ ଯୋଗଯୁକ୍ତ ହୋଇ ପାରିବ ନାହିଁ । ତେଣୁ ଅର୍ଜୁନ ସେହି ସମାଧିସ୍ଥ ସ୍ଥିତପ୍ରଜ୍ଞ ବ୍ୟକ୍ତିଙ୍କର ଲକ୍ଷଣାଦି ଜାଣିବାପାଇଁ ଏଠାରେ ପ୍ରଶ୍ନ କରୁଅଛନ୍ତି ।

ପ୍ରକୃତ କଥା—ଏଥି ପୂର୍ବରୁ କର୍ମଯୋଗ ସମ୍ବନ୍ଧରେ ଭଗବାନ୍ ଯେଉଁସବୁ ଉପଦେଶ ସାଧାରଣ ଭାବରେ ଦେଇଅଛନ୍ତି, ବ୍ୟକ୍ତିଗତ ଜୀବନରେ ସେସବୁ କିପରି ପ୍ରତିଫଳିତ ହୁଏ, ତାହାହିଁ ପରବର୍ତ୍ତୀ କେତେ ଗୋଟି ଶ୍ଳୋକରେ ବ୍ୟାଖ୍ୟା କରିବେ ।

ଶ୍ରୀ ଭଗବାନୁବାଚ

ପ୍ରଜହାତି ଯଦା କାମାନ୍ ସର୍ବାନ୍ ପାର୍ଥ ମନୋଗତାନ୍ ।
ଆତ୍ମନ୍ୟେବାତ୍ମନା ତୁଷ୍ଟଃ ସ୍ଥିତପ୍ରଜ୍ଞସ୍ତଦୋଚ୍ୟତେ । ୫୫ ।

୫୫ । ଅନ୍ୱୟ ଦର୍ପଣ—ଶ୍ରୀ ଭଗବାନୁବାଚ ( ଶ୍ରୀଭଗବାନ କହିଲେ), ପାର୍ଥ (ହେ ଅର୍ଜୁନ), ଆତ୍ମନି ଏବ (ଆପଣାଠାରେ) ଆତ୍ମନା ( ନିଜେ ) ତୁଷ୍ଟଃ (ସଂତୁଷ୍ଟ ହୋଇ), ଯଦା ( ଯେତେବେଳେ) ସର୍ବାନ (ସକଳ) ମନୋଗତାନ୍ ( ମନୋଗତ ) କାମାନ୍ ( କାମନାସମୂହ ) ପ୍ରଜହାତି ( ପରିତ୍ୟାଗ କରନ୍ତି ) ତଦା ( ସେତେବେଳେ [ ସେ ] ସ୍ଥିତପ୍ରଜ୍ଞଃ ଉଚ୍ୟତେ ( ସ୍ଥିତପ୍ରଜ୍ଞ ବୋଲି କଥିତ ହୁଅନ୍ତି ) ।

ଅନୁବାଦ—ଭଗବାନ ଉତ୍ତରରେ କହିଲେ, ହେ ଅର୍ଜୁନ, ଯେତେବେଳେ କେହି ସକଳ ମନୋଗତ କାମନା ପରିତ୍ୟାଗ କରି ଆପେ ଆପଣାଠାରେ ସଂତୁଷ୍ଟ ରହନ୍ତି, ସେତେବେଳେ ସେ ସ୍ଥିତପ୍ରଜ୍ଞ ବୋଲି କଥିତ ହୁଅନ୍ତି ।

ସୁବୋଧିନୀ ଟୀକା—ଅତ୍ର ଚ ଯାନି ସାଧକସ୍ୟ ଜ୍ଞାନସାଧନାନି ତାନ୍ୟେବ ସ୍ୱାଭାବିକାନି ସିଦ୍ଧସ୍ୟ ଲକ୍ଷଣାନି । ଅତଃ ସିଦ୍ଧସ୍ୟ ଲକ୍ଷଣସ୍ୟ ଲକ୍ଷଣାନି କଥୟନ୍ନେବାନ୍ତରଙ୍ଗାନି ଜ୍ଞାନସାଧନାନ୍ୟାହ ଯାବଦଧ୍ୟାୟସମାପ୍ତେ । ତତ୍ର ପ୍ରଥମ ପ୍ରଶ୍ନସ୍ୟୋତ୍ତରମାହ—ପ୍ରଜହାତୀତି ଦ୍ୱାଭ୍ୟାମ୍ । ମନସି ସ୍ଥିତାନ୍ କାମାନ୍ ଯଦା ପ୍ରକର୍ଷେଣ ଜହାତି । ତ୍ୟାଗେ ହେତୁମାହ—ଆତ୍ମନୀତି । ଆତ୍ମନ୍ୟେବ ସ୍ୱସ୍ମିନ୍ନେବ ପରମାନନ୍ଦରୂପେ ଆତ୍ମନା ସ୍ୱୟମେବ ତୁଷ୍ଟଃ ଇତ୍ୟାତ୍ମାରାମଃ ସନ୍ ଯଦା କ୍ଷୁଦ୍ରବିଷୟାଭିଲାଷାଂ ସ୍ତ୍ୟଜତି ତଦା ତେନ ଲକ୍ଷଣେନ ମୁନିଃ ସ୍ଥିତପ୍ରଜ୍ଞ ଉଚ୍ୟତେ ।

ବିବୃତି—ଯେତେବେଳେ ଲୋକ ପରମାନନ୍ଦ ସ୍ୱରୂପ ଆତ୍ମାରେ ନିଜେ ସଂତୁଷ୍ଟ ରହନ୍ତି ସେତେବେଳେ ତାହାଙ୍କୁ 'ଆତ୍ମାରାମ' କୁହାଯାଏ । ଏହି ଦୁର୍ଲଭ ଅବସ୍ଥା ଲାଭ କରିବାକୁ ହେଲେ ସମସ୍ତ କାମନା ବର୍ଜନ କରିବାକୁ ହୁଏ । କେହି କେହି କହନ୍ତି କାମନା ବା ବାସନା ଆତ୍ମାର ଧର୍ମ । ଏହା ଆତ୍ମାର ଧର୍ମ ହୋଇଥିଲେ ଅଗ୍ନିର ଉଷ୍ଣତା ପରି ଏହା ନିତ୍ୟ ବିଦ୍ୟମାନ ଥାଆନ୍ତା; ସମାଧି ଅବସ୍ଥାରେ ମନର ବିଲୟ ହୁଏ ଏବଂ ତା ସାଙ୍ଗେ ସାଙ୍ଗେ ମନର ଧର୍ମ 'କାମନା'ର ମଧ୍ୟ ବିଲୟ ହୁଏ । କାମନାର ବିନାଶ ହେବାରୁ ଆତ୍ମ ରାମ ପୁରୁଷ ସର୍ବଦା ପ୍ରସନ୍ନ ଦେଖାଯାଆନ୍ତି । ଶ୍ରୁତିରେ ଅଛି:—

ଯଦା ସର୍ବେ ପ୍ରମୁଚ୍ୟନ୍ତେ କାମା ଯେଽସ୍ୟ ହୃଦିଶ୍ରିତାଃ ।
ଅଥ ମର୍ତ୍ତ୍ୟୋଽମୃତୋ ଭବତ୍ୟତ୍ର ବ୍ରହ୍ମ ସମଶ୍ନୁତେ । (କ. ଉ. ୬।୧୪)

ଯେତେବେଳେ କାମ ସଂକଳ୍ପାଦି ହୃଦୟରୁ ସଂପୂର୍ଣ୍ଣରୂପେ ନିବୃତ୍ତ ହୋଇଯାଏ, ସେହି ସମୟରେ ଜୀବ ଅମୃତତ୍ୱ ପ୍ରାପ୍ତହୁଏ ଏବଂ ଏହି ମର୍ତ୍ତ୍ୟଦେହରେ

ଦୁଃଖେଷ୍ୱନୁଦ୍‌ବିଗ୍ନମନାଃ ସୁଖେଷୁ ବିଗତସ୍ପୃହଃ;
ବୀତରାଗଭୟକ୍ରୋଧଃ ସ୍ଥିତଧୀର୍ମୁନିରୁଚ୍ୟତେ । ୫୬ ।

ଆନନ୍ଦସ୍ୱରୂପ ବ୍ରହ୍ମଙ୍କୁ ଅନୁଭବ କରେ । ଅତଏବ କାମନାର ସମ୍ପୂର୍ଣ୍ଣ ଅଭାବ ଓ ଆତ୍ମାନନ୍ଦ ଉପଭୋଗହିଁ ସମାଧିସ୍ଥ ସ୍ଥିତପ୍ରଜ୍ଞ ପୁରୁଷଙ୍କର ଲକ୍ଷଣ ।

**୫୬ । ଅନ୍ୱୟଦୀପିକା**—ଦୁଃଖେଷୁ (ଦୁଃଖ ସମୂହରେ) ଅନୁଦ୍‌ବିଗ୍ନମନାଃ ( ଉଦ୍‌ବେଗଶୂନ୍ୟଚିତ୍ତ ) ସୁଖେଷୁ ( ସୁଖରେ ) ବିଗତସ୍ପୃହଃ ( ସ୍ପୃହାଶୂନ୍ୟ ) ବୀତରାଗଭୟକ୍ରୋଧଃ ( ଅନୁରାଗ, ଭୟ ଓ କ୍ରୋଧଶୂନ୍ୟ ) ମୁନିଃ ( ପୁରୁଷ ) ସ୍ଥିତଧୀଃ ଉଚ୍ୟତେ ( ସ୍ଥିତପ୍ରଜ୍ଞ ବୋଲି କଥିତ ହୁଅନ୍ତି ) ।

**ଅନୁବାଦ**—ଯେ ଦୁଃଖରେ ଉଦ୍‌ବେଗ ଶୂନ୍ୟ, ସୁଖରେ ନିଃସ୍ପୃହ, ଯାହାଙ୍କର ଅନୁରାଗ, ଭୟ ଓ କ୍ରୋଧ ନିବୃତ୍ତ ହୋଇଅଛି, ସେହି ପୁରୁଷଙ୍କୁ ସ୍ଥିତପ୍ରଜ୍ଞ ବୋଲାଯାଏ ।

**ସୁବୋଧିନୀ ଟୀକା**—କିଞ୍ଚ ଦୁଃଖେଷ୍ୱିତି—ଦୁଃଖେଷୁ ପ୍ରାପ୍ତେଷ୍ୱପ୍ୟନୁଦ୍‌ବିଗ୍ନମକ୍ଷୁଭିତଂ ମନୋ ଯସ୍ୟ ସଃ । ସୁଖେଷୁ ବିଗତା ସ୍ପୃହା ଯସ୍ୟ ସଃ । ତତ୍ର ହେତୁଃ—ବୀତା ଅପଗତା ରାଗଭୟକ୍ରୋଧା ଯସ୍ମାତ୍ । ତତ୍ର ରାଗଃ ପ୍ରୀତିଃ ସ ମୁନିଃ ସ୍ଥିତଧୀରୁଚ୍ୟତେ ।

**ବିବୃତି**—ରାଗ ଶବ୍ଦର ଅର୍ଥ ଅନୁରାଗ ବା ପ୍ରୀତି; ଭୟର ଅର୍ଥ ବିଷୟନାଶର ଆଶଙ୍କା; ବିଷୟ ବାସନା ପ୍ରତିହତ ହେଲେ ଯେଉଁ ଜ୍ୱଳନାତ୍ମକଚିତ୍ତବିକାର ପ୍ରତୀକାର ପାଇଁ ଜାଗ୍ରତ ହୋଇଉଠେ ତାହାକୁ କ୍ରୋଧ ବୋଲାଯାଏ । କାମନା ଏ ସମସ୍ତର ମୂଳ । ଯେ କାମନା ତ୍ୟାଗକରିଅଛନ୍ତି ତାହାଙ୍କୁହିଁ ସ୍ଥିତଧୀ ବୁଝାଯାଏ ।

ଦୁଃଖରେ ଯେ କାତର ହୁଏ ସେ ଦୁଃଖୀ; ପ୍ରକୃତ କଥା ବୁଝିଲେ ଦୁଃଖରେ ଯାହାର ଚିତ୍ତ ବିକୃତ ହୁଏ ନାହିଁ ସେ ଦୁଃଖଜୟୀ; ସୁତରାଂ ଦୁଃଖ କେବେହେଁ ତାହାକୁ ଅଭିଭୂତ କରିପାରେ ନାହିଁ । ସୁଖରେ ଯାହାର ସ୍ପୃହା ଥାଏ ସେ ମଧ୍ୟ ଦୁଃଖୀ; ସ୍ରକ୍-ଚନ୍ଦନ-ବନିତାଦି ଯେ ଅନ୍ତରରେ ଖୋଜୁଥାଏ ସବୁବେଳେ ତାହାର ଆଶା ଫଳବତୀ ହୁଏ ନାହିଁ, ଏପରି ଅବସ୍ଥାରେ ତାହାର ସୁଖସ୍ପୃହା ଦୁଃଖରେହିଁ ପରିଣତ ହୁଏ । ଅତଏବ ସୁଖସ୍ପୃହା ଦୁଃଖବୃଦ୍ଧିର କାରଣ । ରାଗ ବା ପ୍ରୀତିଶବ୍ଦଦ୍ୱାରା ସର୍ବବିଧ ପ୍ରୀତି ବୁଝିବାକୁ ହେବ ନାହିଁ । ସର୍ବବିଧ ପ୍ରୀତି ଛାଡ଼ିବାକୁ ହେଲେ ଈଶ୍ୱର ପ୍ରୀତି ବା ଈଶ୍ୱରାନୁରାଗ ମଧ୍ୟ ଛାଡ଼ିବାକୁ ପଡ଼ିବ । ତେଣୁ 'ରାଗ' ଶବ୍ଦଦ୍ୱାରା ବିଷୟାନୁରାଗହିଁ ବୁଝିବାକୁ ହେବ । ବିଷୟ ବା ଇନ୍ଦ୍ରିୟ ଭୋଗ୍ୟାଦି ବସ୍ତୁରେ ଅନୁରାଗ ଯେ ଦୁଃଖର କାରଣ—ଏହା ଆଉ କହିବାକୁ ହେବ ନାହିଁ । ସୁଖର ସ୍ପୃହା ବର୍ଜ୍ଜନୀୟ

ଯଃ ସର୍ବତ୍ରାନଭିସ୍ନେହସ୍ତତ୍ତତ୍ ପ୍ରାପ୍ୟ ଶୁଭାଶୁଭମ୍ ।
ନାଭିନନ୍ଦତି ନ ଦ୍ୱେଷ୍ଟି ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୫୭ ।
ଯଦା ସଂହରତେ ଚାୟଂ କୂର୍ମୋଽଙ୍ଗାନୀବ ସର୍ବଶଃ ।
ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଭ୍ୟସ୍ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୫୮ ।

ମାତ୍ର ନିଷ୍ଠ ହୋଇ କର୍ତ୍ତବ୍ୟକର୍ମର ଅନୁଷ୍ଠାନ କଲେ ଯେଉଁ ସୁଖ ସ୍ୱତଃ ଆସି ଉପସ୍ଥିତ ହେବ ତାହା କେବେହେଁ ତ୍ୟାଗକରାଯାଇ ପାରିବ କି ? ପରମାତ୍ମା ଅନନ୍ତ ସୁଖର ଆଧାର ମାତ୍ର ତାଙ୍କର ସ୍ପୃହା ନାହିଁ ।

**୫୭ । ଅନ୍ୱୟଦୀପିକା**—ଯଃ (ଯେ) ସର୍ବତ୍ର (ସବୁବିଷୟରେ) ଅନଭିସ୍ନେହଃ (ସ୍ନେହଶୂନ୍ୟ ବା ମମତାହୀନ) ତତ୍ ତତ୍ (ସେହି ସେହି) ଶୁଭାଶୁଭଂ (ପ୍ରିୟ ବା ଅପ୍ରିୟ ବିଷୟ) ପ୍ରାପ୍ୟ (ପାଇ) ନ ଅଭିନନ୍ଦତି (ଆନନ୍ଦ କରୁଅଛନ୍ତି ନାହିଁ) ନ ଦ୍ୱେଷ୍ଟି (ଦ୍ୱେଷ ମଧ୍ୟ କରନ୍ତି ନାହିଁ) ତସ୍ୟ ପ୍ରଜ୍ଞା (ବୁଦ୍ଧିଜ୍ଞାନ) ପ୍ରତିଷ୍ଠିତା (ପ୍ରତିଷ୍ଠିତ ହୋଇଅଛି) ।

**ଅନୁବାଦ**—ଯେ ଦେହଜୀବନାଦି ଓ ପୁତ୍ରମିତ୍ରାଦି ସବୁବିଷୟରେ ମମତାଶୂନ୍ୟ, ତତ୍ତତ୍ ବିଷୟରେ ଶୁଭପ୍ରାପ୍ତିରେ ଆନନ୍ଦିତ ବା ଅଶୁଭ ପ୍ରାପ୍ତିରେ ବିଦ୍ୱେଷଯୁକ୍ତ ହୁଅନ୍ତି ନାହିଁ, ସେ ସ୍ଥିତପ୍ରଜ୍ଞ ।

**ସୁବୋଧିନୀ ଟୀକା**—କଥଂ ଭାଷେତ ଇତସ୍ୟୋତ୍ତର ମାହ—ଯ ଇତି । ଯଃ ସର୍ବତ୍ର ପୁତ୍ରମିତ୍ରାଦିଷ୍ୱପ୍ୟନଭିସ୍ନେହଃ ସ୍ନେହଶୂନ୍ୟଃ । ଅତଏବ ବାଧିତାନୁବୃତ୍ତ୍ୟା ତତ୍ତତ୍କୁଭଂ ଶୁଭଂ ପ୍ରାପ୍ୟ ନାଭିନନ୍ଦତି ନ ପ୍ରଶଂସତି, ଅଶୁଭଂ ପ୍ରତିକୂଳଂ ପ୍ରାପ୍ୟ ନ ଦ୍ୱେଷ୍ଟି ନ ନିନ୍ଦତି, କିନ୍ତୁ କେବଳମୁଦାସୀନ ଏବ ଭାଷତେ । ତସ୍ୟପ୍ରଜ୍ଞା ପ୍ରତିଷ୍ଠିତେତ୍ୟର୍ଥଃ ।

**ବିବୃତି**—ଯେ ଆତ୍ମାରାମ ଅର୍ଥାତ୍ ସର୍ବଦା ଆତ୍ମାରେ ଆନନ୍ଦ ଅନୁଭବ କରନ୍ତି ସେ ନିଜ ଦେହ ବା ପୁତ୍ରମିତ୍ରାଦିଙ୍କର ଦେହ ପ୍ରଭୃତି ଅନାତ୍ମବସ୍ତୁରେ ସ୍ନେହଯୁକ୍ତ ହୁଅନ୍ତି ନାହିଁ, ଦେହର ସଂଯୋଗ ବିଯୋଗରେ—ଜନ୍ମ ବା ମରଣରେ ତାହାଙ୍କର ହର୍ଷ ବା ବିଷାଦର ସମ୍ଭାବନା ନ ଥାଏ । କେହି ତାଙ୍କୁ ସମ୍ମାନ ସହକାରେ ପାନଭୋଜନାଦି ଦେଲେ ସେ ସନ୍ତୁଷ୍ଟହୋଇ ଦାତାଙ୍କୁ ଆଶୀର୍ବାଦ କରନ୍ତି ନାହିଁ ବା କେହି ତାଙ୍କୁ ପ୍ରହାର ତିରସ୍କାର ପ୍ରଭୃତି କଲେ ସେ ତାଙ୍କୁ ଅଭିଶାପ ଦିଅନ୍ତି ନାହିଁ । ସଂପୂର୍ଣ୍ଣ ଉଦାସୀନ ଭାବରେ କଥା କହନ୍ତି । ଏ ଶ୍ଳୋକରେ 'ସ୍ଥିତପ୍ରଜ୍ଞ କିପରି କଥାବାର୍ତ୍ତା କରନ୍ତି', ଏ ପ୍ରଶ୍ନର ଉତ୍ତର ଦିଆଗଲା ।

**୫୮ । ଅନ୍ୱୟଦୀପିକା**—କୂର୍ମଃ ଅଙ୍ଗାନି ଇବ (କଚ୍ଛପ ବା କଇଁଚ ଯେପରି ତାହାର ଅଙ୍ଗ ସବୁକୁ ଆକର୍ଷଣ କରେ ସେହିପରି) ଯଦା (ଯେତେବେଳେ) ଅୟଂ (ଏହି ସ୍ଥିତପ୍ରଜ୍ଞଯୋଗୀ) ଇନ୍ଦ୍ରିୟାଣି (ଇନ୍ଦ୍ରିୟମାନଙ୍କୁ) ଇନ୍ଦ୍ରିୟାର୍ଥେଭ୍ୟଃ

ବିଷୟା ବିନିବର୍ତ୍ତନ୍ତେ ନିରାହାରସ୍ୟ ଦେହିନଃ ।
ରସବର୍ଜଂ ରସୋଽପ୍ୟସ୍ୟ ପରଂ ଦୃଷ୍ଟ୍ୱା ନିବର୍ତ୍ତତେ । ୫୯ ।

(ଶବ୍ଦାଦି ଇନ୍ଦ୍ରିୟ ବିଷୟରୁ) ସର୍ବଶଃ ସଂହରତି (ସମ୍ପୂର୍ଣ୍ଣଭାବରେ ସଂହରଣ କରନ୍ତି) [ସେତେବେଳେ] ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା (ତାଙ୍କର ପ୍ରଜ୍ଞା ପ୍ରତିଷ୍ଠିତ ହୁଏ) ।

**ଅନୁବାଦ**—କଚ୍ଛପ ଯେପରି ତାହାର ଶିରଃ ପାଦ ପ୍ରଭୃତି ଅଙ୍ଗମାନଙ୍କୁ ସଙ୍କୁଚିତ କରି ରଖେ, ସେହିପରି ଯେଉଁ ଲୋକ ନିଜ ଇନ୍ଦ୍ରିୟମାନଙ୍କୁ ରୂପରସାଦି ବିଷୟରୁ ସଂହରଣ କରି ରଖନ୍ତି ସେ ସ୍ଥିତପ୍ରଜ୍ଞ ଅଟନ୍ତି ।

**ସୁବୋଧିନୀ ଟୀକା**—କିଞ୍ଚ ଯଦେତି । ଯଦା ଶ୍ୱୟଂ ଯୋଗୀନ୍ଦ୍ରିୟାର୍ଥେଭ୍ୟଃ ଶବ୍ଦାଦିଭ୍ୟଃ ସର୍ବାଣୀନ୍ଦ୍ରିୟାଣି ସଂହରତେ ପ୍ରତ୍ୟାହରତ୍ୟେନାୟାସେନ । ସଂହାରେ ଦୃଷ୍ଟାନ୍ତ ମାହ—କୂର୍ମ ଇତି । ଅଙ୍ଗାନି କରଚରଣାଦୀନି କୂର୍ମୋ ଯଥା ସ୍ୱଭାବେନୈବା-କର୍ଷତି ତଦ୍ୱତ୍ ।

**ବିବୃତି**—ଅଧ୍ୟାତ୍ମ ପୁରୁଷଙ୍କର ମନ ଅନ୍ତର୍ମୁଖୀନ ହୋଇଥାଏ । ମନ ଅନ୍ତର୍ମୁଖ ଥିଲେ ଇନ୍ଦ୍ରିୟମାନେ ରୂପରସାଦି ଗ୍ରହଣକରି ପାରନ୍ତି ନାହିଁ । କାରଣ ମନର ସାହାଯ୍ୟବ୍ୟତୀତ ଇନ୍ଦ୍ରିୟମାନେ ସ୍ୱୟଂ କାର୍ଯ୍ୟ କରିବାକୁ ଅସମର୍ଥ । ଯଥାର୍ଥରେ ଇନ୍ଦ୍ରିୟସଂଯମବିନା କୌଣସି ପ୍ରକାର ଧର୍ମାଚରଣ ହୁଏ ନାହିଁ—ସବୁ ଧର୍ମରେ ଏହାହିଁ ମୂଳକଥା । ଏ ଶ୍ଳୋକର କଚ୍ଛପର ଉପମା ପ୍ରତି ବିଶେଷ ମନୋଯୋଗ ଦେବା ଉଚିତ । କୂର୍ମ ତାହାର କରଚରଣାଦି ସଙ୍କୁଚିତ କରି ରଖେ, ଧ୍ୱଂସ କରିଦିଏ ନାହିଁ, ଏବଂ ପ୍ରୟୋଜନ ଉପସ୍ଥିତ ହେଲେ ତଦ୍ଦ୍ୱାରା ଜୀବନର କାର୍ଯ୍ୟ ନିର୍ବାହ କରେ । ଇନ୍ଦ୍ରିୟ ସମ୍ବନ୍ଧରେ ତାହାହିଁ କରିବାକୁ ହେବ ।

୫୯ । **ଅନ୍ୱୟଦୀପିକା**—ନିରାହାରସ୍ୟ (ଇନ୍ଦ୍ରିୟଦ୍ୱାରା ବିଷୟୋ-ପଭୋଗରେ ଅପ୍ରବୃତ୍ତ) ଦେହିନଃ (ଲୋକର) ବିଷୟାଃ ବିନିବର୍ତ୍ତନ୍ତେ (ବିଷୟର ଉପଭୋଗ ନିବୃତ୍ତ ହୁଏ) [କିନ୍ତୁ] ରସବର୍ଜଂ (ଅଭିଳାଷ ବର୍ଜିତ, ଅର୍ଥାତ୍ ବିଷୟ-ତୃଷ୍ଣା ନିବୃତ୍ତ ହୁଏ ନାହିଁ); ପରଂ (ପରମ ପୁରୁଷଙ୍କୁ) ଦୃଷ୍ଟ୍ୱା (ଦେଖି, ଅର୍ଥାତ୍ ହୃଦୟରେ ଅନୁଭବ କରି) ଅସ୍ୟ (ଏହି ସ୍ଥିତପ୍ରଜ୍ଞ ବ୍ୟକ୍ତିଙ୍କର) ରସଃ ଅପି (ଅଭିଳାଷ ମଧ୍ୟ) ନିବର୍ତ୍ତତେ (ନିବୃତ୍ତ ହୁଏ) ।

**ଅନୁବାଦ**—ଇନ୍ଦ୍ରିୟଦ୍ୱାରା ବିଷୟ ଗ୍ରହଣରେ ଅପ୍ରବୃତ୍ତ ଲୋକର ବିଷୟର ଉପଭୋଗ ନିବୃତ୍ତ ହୁଏ ସତ୍ୟ, ମାତ୍ର ବିଷୟତୃଷ୍ଣା ନିବୃତ୍ତ ହୁଏ ନାହିଁ । କିନ୍ତୁ ପରମପୁରୁଷଙ୍କୁ ଦେଖି ଅର୍ଥାତ୍ ହୃଦୟରେ ଅନୁଭବକରି ସ୍ଥିତପ୍ରଜ୍ଞ ବ୍ୟକ୍ତିର ବିଷୟ ବାସନା ମଧ୍ୟ ନିବୃତ୍ତ ହୁଏ ।

**ସୁବୋଧିନୀ ଟୀକା**—ନନ୍ୱିନ୍ଦ୍ରିୟାଣାଂ ବିଷୟେଭ୍ୟଃ ସଂହରଣଂ ସ୍ଥିତପ୍ରଜ୍ଞସ୍ୟ ଲକ୍ଷଣଂ ଭବିତୁମର୍ହତି, ଇନ୍ଦ୍ରିୟାଣାମାହରଣାନ୍ମୁପବାସପରାଣାଂ ଚ

ଯତତୋ ହ୍ୟପି କୌନ୍ତେୟ ପୁରୁଷସ୍ୟ ବିପଶ୍ଚିତଃ,
ଇନ୍ଦ୍ରିୟାଣି ପ୍ରମାଥୀନି ହରନ୍ତି ପ୍ରସଭଂ ମନଃ । ୬୦ ।

ବିଷୟେଷ୍ୱପ୍ରବୃତ୍ତେରେବ ନୈଷ୍ଠ୍ୟାତ୍ । ତଦାହ—ବିଷୟା ଇତି । ଇନ୍ଦ୍ରିୟୈ ର୍ବିଷୟାଣା-ମାହରଣଂ ଗ୍ରହଣମାହାରଃ । ନିରାହାରସ୍ୟେନ୍ଦ୍ରିୟୈ ର୍ବିଷୟଗ୍ରହଣମକୁର୍ବତୋ ଦେହିନୋ ଦେହାଭିମାନିନୋଽଜ୍ଞସ୍ୟ ବିଷୟାଃ ପ୍ରାୟଶୋ ବିନିବର୍ତ୍ତନ୍ତେ । ତଦନୁଭବୋ ନିବର୍ତ୍ତତ ଇତ୍ୟର୍ଥଃ । କିନ୍ତୁ ରସୋ ରାଗୋଽଭିଲାଷଃ । ତଦ୍‌ବର୍ଜ୍ଜମ୍, ଅଭିଲାଷସ୍ତୁ ନ ନିବର୍ତ୍ତତ ଇତ୍ୟର୍ଥଃ । ରସୋଽପି ରାଗୋଽପି ପରଂ ପରମାତ୍ମାନଂ ଦୃଷ୍ଟ୍ୱାଽସ୍ୟ ସ୍ଥିତପ୍ରଜ୍ଞସ୍ୟ ସ୍ୱତୋ ନିବର୍ତ୍ତତେ । ନଶ୍ୟତୀତ୍ୟର୍ଥଃ । ଯଦ୍ୱା ନିରାହାର-ସ୍ୟୋପବାସପରସ୍ୟ ବିଷୟାଃ ପ୍ରାୟଶୋ ବିନିବର୍ତ୍ତନ୍ତେ । କ୍ଷୁଧାସନ୍ତପ୍ତସ୍ୟ ଶବ୍ଦସ୍ପର୍ଶାଦ୍ୟପେକ୍ଷାଽଭାବାତ୍ । କିନ୍ତୁ ରସବର୍ଜ୍ଜମ୍ । ରସାପେକ୍ଷା ତୁ ନ ନିବର୍ତ୍ତତ ଇତ୍ୟର୍ଥଃ, ଶେଷଂ ସମାନମ୍ ।

**ବିବୃତି**—ଇନ୍ଦ୍ରିୟଦ୍ୱାର ଯେଉଁମାନେ ବିଷୟ ଉପଭୋଗ କରିପାରନ୍ତି ନାହିଁ ସେମାନେ ଜିତେନ୍ଦ୍ରିୟ ହୁଅନ୍ତି ନାହିଁ କିମ୍ବା ସ୍ଥିତପ୍ରଜ୍ଞ ହୁଅନ୍ତି ନାହିଁ । ଜରାଗ୍ରସ୍ତ, ରୁଗ୍ଣ ଓ ବିକଳେନ୍ଦ୍ରିୟ ବ୍ୟକ୍ତିମାନେ ଉପଭୋଗରେ ଅସମର୍ଥ, ସେମାନେ ସ୍ଥିତପ୍ରଜ୍ଞ ନୁହନ୍ତି । ସଂସାରରେ ଆମ୍ଭେ ସାଧାରଣତଃ ଦେଖୁଁ, ଅନେକେ ଲୋକନିନ୍ଦାଭୟରେ ବା ପବିତ୍ର ଚରିତ୍ରବନ୍ତ ଦେଖାଇବା ପାଇଁ ସନ୍ନ୍ୟାସାଦି ଦୀକ୍ଷା ଗ୍ରହଣକରି ଉପଭୋଗ ତ୍ୟାଗ କରନ୍ତି ମାତ୍ର ବାସନା ତ୍ୟାଗ କରି ପାରନ୍ତି ନାହିଁ । ଏଭଳି ଲୋକ ସଙ୍ଗରେ ଉପଭୋଗରତ ଲୋକଙ୍କ ପ୍ରଭେଦ ଅତ୍ୟଳ୍ପ, ଈଶ୍ୱରଙ୍କଠାରେ ଅନୁରାଗ ଜାତ ହେଲେ ଏ ଅବସ୍ଥା ଦୂରୀଭୂତ ହୁଏ ।

ପୂଜ୍ୟପାଦ ଶ୍ରୀଧରସ୍ୱାମୀ ଏ ଶ୍ଳୋକର ଟୀକାର ଶେଷାଂଶରେ ଯେଉଁ ସୂଚନା ଦେଇଅଛନ୍ତି । ତାହାର ଅନୁସରଣରେ ଲୋକମାନେ ଉକ୍ତ କହନ୍ତି:—

ଅନ୍ନଦ୍ୱାରା ଇନ୍ଦ୍ରିୟପୋଷଣ ହୁଏ । ଅତଏବ ନିରାହାର ବା ଉପବାସ କଲେ ଇନ୍ଦ୍ରିୟମାନେ ଅଶକ୍ତ ହୋଇ ନିଜ ନିଜ ବିଷୟସମୂହ ସେବନ କରିବାକୁ ଅସମର୍ଥ ହୁଅନ୍ତି । ଏହିବାଟରେ ବିଷୟଭୋଗ ଦୂରହେବା ଜଣାପଡ଼େ, ଅର୍ଥାତ୍ ତାର ବାହ୍ୟକ୍ରିୟା ହେଲା । ଏହାଦ୍ୱାରା ମନର ବିଷୟ ବାସନା ( ରସ ) କିଛି କମିଯାଏ ନାହିଁ । ତେଣୁ ଏହି ବିଷୟବାସନା ଯାହାଦ୍ୱାରା ନଷ୍ଟ ହେବ ସେହି ବ୍ରହ୍ମଜ୍ଞାନ ଲାଭ କରିବାକୁ ହେବ । ଏହି ପ୍ରକାରେ ବ୍ରହ୍ମାନୁଭୂତ ହେଲେ ମନ ଏବଂ ତା ସଙ୍ଗେ ସଙ୍ଗେ ଇନ୍ଦ୍ରିୟମାନେ ମଧ୍ୟ ଅଳ୍ପେ ଅଳ୍ପେ ଅଯୁକ୍ତ ହୋଇଥାନ୍ତି । ଇନ୍ଦ୍ରିୟମାନଙ୍କୁ ଅଯୁକ୍ତ ରଖିବାପାଇଁ ଉପବାସ ପ୍ରଭୃତି ଉପାୟ ଆବଶ୍ୟକ ନୁହେ । ଏହାହିଁ ଏ ଶ୍ଳୋକର ଭାବାର୍ଥ ।

୬୦ । **ଅନ୍ୱୟଦୀପିକା**—କୌନ୍ତେୟ ( ହେ ଅର୍ଜ୍ଜୁନ ), ପ୍ରମାଥୀନି ( କ୍ଷୋଭବିକ୍ଷେପକାରୀ ) ଇନ୍ଦ୍ରିୟାଣି ( ଇନ୍ଦ୍ରିୟମାନେ ) ଯତତଃ ( ଯତ୍ନଶୀଳ )

ତାନି ସର୍ବାଣି ସଂଯମ୍ୟ ଯୁକ୍ତ ଆସୀତ ମତ୍ପରଃ ।
ବଶେ ହି ଯସ୍ୟେନ୍ଦ୍ରିୟାଣି ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୬୧ ।

ବିପଶ୍ଚିତଃ ( ବିବେକୀ ) ପୁରୁଷସ୍ୟ ଅପି ( ପୁରୁଷର ମଧ୍ୟ ) ମନଃ ( ମନକୁ ) ପ୍ରସଭଂ ( ବଳପୂର୍ବକ ) ହରନ୍ତି ହି ( ଆକର୍ଷଣ କରନ୍ତି ) ।

**ଅନୁବାଦ**—ହେ କୌନ୍ତେୟ, ଚିତ୍ତବିକ୍ଷେପକାରୀ ପ୍ରବଳ ଇନ୍ଦ୍ରିୟମାନେ ଯତ୍ନକରୁଥିବା ବିବେକୀ ପୁରୁଷଙ୍କର ମଧ୍ୟ ଚିତ୍ତକୁ ବଳପୂର୍ବକ ଆକର୍ଷଣ କରନ୍ତି ।

**ସୁବୋଧିନୀ ଟୀକା**—ଇନ୍ଦ୍ରିୟସଂଯମଂ ବିନା ସ୍ଥିତପ୍ରଜ୍ଞତା ନ ସମ୍ଭବତି । ଅତଃ ସାଧକାବସ୍ଥାୟାଂ ତତ୍ର ମହାନ୍ ପ୍ରଯତ୍ନଃ କର୍ତ୍ତବ୍ୟ ଇତ୍ୟାହ । ଯତତୋହ୍ୟପୀତି ଦ୍ୱାଭ୍ୟାମ୍ । ଯତତୋ ମୋକ୍ଷାର୍ଥଂ ପ୍ରଯତମାନସ୍ୟ । ବିପଶ୍ଚିତୋ ବିବେକିନୋଽପି ମନ ଇନ୍ଦ୍ରିୟାଣି ପ୍ରସଭଂ ବଳାଦ୍ଧରନ୍ତି । ଯତଃ ପ୍ରମାଥୀନି ପ୍ରମଥନଶୀଳାନି କ୍ଷୋଭକାଣୀତ୍ୟର୍ଥଃ ।

**ବିବୃତି**—ବିବେକୀମାନେ ସର୍ବଦା ବିଷୟର ଦୋଷ ଦର୍ଶନଦ୍ୱାରା ଇନ୍ଦ୍ରିୟମାନଙ୍କୁ ବିଷୟରୁ ନିବୃତ୍ତ କରିବାପାଇଁ ଯତ୍ନ କରନ୍ତି; ତଥାପି ଇନ୍ଦ୍ରିୟମାନଙ୍କ ଶକ୍ତି ଏତେ ପ୍ରବଳ ଯେ ସେମାନେ ବିବେକଶକ୍ତିକୁ ପରାସ୍ତକରି ମନକୁ ବିକୃତ କରିପକାନ୍ତି । ଯେଉଁମାନେ ବିବେକଶୂନ୍ୟ ସେମାନଙ୍କ ଉପରେ ଇନ୍ଦ୍ରିୟମାନଙ୍କ ପ୍ରଭାବ ଯେ କି ଭଳି ଭୟଙ୍କର ଏଥିରୁ ସହଜରେ ଅନୁମାନ କରାଯାଇପାରେ ।

**୬୧ । ଅନ୍ୱୟଦୀପିକା**—ତାନି ସର୍ବାଣି (ସେହି ସମସ୍ତ ଇନ୍ଦ୍ରିୟକୁ) ସଂଯମ୍ୟ (ସଂଯତ କରି) ଯୁକ୍ତଃ (ସମାହିତ ହୋଇ) ମତ୍ପରଃ (ଆମ୍ଭ ଶରଣାଗତ) [ଲୋକ] ଆସୀତ (ଅବସ୍ଥାନ କରନ୍ତି) । ହି (ଯେହେତୁ) ଯସ୍ୟ (ଯାହାଙ୍କର) ଇନ୍ଦ୍ରିୟାଣି ବଶେ (ଇନ୍ଦ୍ରିୟମାନେ ବଶୀଭୂତ) ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା (ତାହାଙ୍କର ପ୍ରଜ୍ଞା ପ୍ରତିଷ୍ଠିତ ହୋଇଅଛି) ।

**ଅନୁବାଦ**—ଯେ ଆମ୍ଭର ଏକାନ୍ତ ଶରଣାଗତ ଭକ୍ତ ସେ ଏହି ସମସ୍ତ ଇନ୍ଦ୍ରିୟକୁ ସଂଯତ କରି ଏବଂ ଆମ୍ଭଠାରେ ଚିତ୍ତ ସମାହିତ କରି ଅବସ୍ଥାନ କରନ୍ତି । ଯାହାଙ୍କର ଚିତ୍ତ ସମାହିତ ହୋଇଅଛି ତାଦୃଶ ବ୍ୟକ୍ତିଙ୍କର ଇନ୍ଦ୍ରିୟସମୂହ ବଶୀଭୂତ; ତାହାଙ୍କୁହିଁ ସ୍ଥିତପ୍ରଜ୍ଞ କୁହାଯାଏ ।

**ସୁବୋଧିନୀ ଟୀକା**—ଯସ୍ମାଦେବଂ ତସ୍ମାତ୍—ତାନୀତି । ଯୁକ୍ତୋ ଯୋଗୀ ତାନୀନ୍ଦ୍ରିୟାଣି ସଂଯମ୍ୟ ମତ୍ପରଃ ସନ୍ନାସୀତ ଯସ୍ୟ ବଶେ ବଶବର୍ତ୍ତୀନୀନ୍ଦ୍ରିୟାଣି । ଏତେନ ଚ କଥମାସୀତେତି ପ୍ରଶ୍ନସ୍ୟ—ବଶୀକୃତେନ୍ଦ୍ରିୟଃ ସନ୍ନାସୀତେତି—ଉତ୍ତରଂ ଭବତି ।

ଧ୍ୟାୟତୋ ବିଷୟାନ୍ ପୁଂସଃ ସଙ୍ଗସ୍ତେଷୂପଜାୟତେ ।
ସଙ୍ଗାତ୍ ସଂଜାୟତେ କାମଃ କାମାତ୍ କ୍ରୋଧୋଽଭିଜାୟତେ ।୬୨।
କ୍ରୋଧାଦ୍‌ଭବତି ସମ୍ମୋହଃ ସମ୍ମୋହାତ୍ ସ୍ମୃତିବିଭ୍ରମଃ ।
ସ୍ମୃତିଭ୍ରଂଶାଦ୍ ବୁଦ୍ଧିନାଶୋ ବୁଦ୍ଧିନାଶାତ୍ ପ୍ରଣଶ୍ୟତି ।୬୩।

**ବିବୃତି**—ଯେଉଁ ଲୋକ ସର୍ବଭୂତାନ୍ତରାତ୍ମା ଭଗବାନଙ୍କର ଏକାନ୍ତ ଶରଣାଗତ, ବଳବାନ୍ ଓ ଦୁର୍ଜୟ ଇନ୍ଦ୍ରିୟମାନଙ୍କୁ ସେହିଁ ଏକା ବଶୀଭୂତ କରିବାରେ ସମର୍ଥ । ଅନ୍ୟଥା ଇନ୍ଦ୍ରିୟ ଜୟ ସମ୍ଭବରେ ହୁଏ ନାହିଁ । ସାଧୁ ତୁଳସୀ ଦାସ ଯଥାର୍ଥରେ ଗାଇଅଛନ୍ତି:—

"ଜୋ ଜାକୋ ଶରଣ ଲିୟୋ ସୋ ରାଖେ ତାକୋ ଲାଜ
ଉଲଟି ଜଲେ ମଛଲି ଚଲେ ବହିଯାୟ ଗଜରାଜ ॥"

ଯେ ଯାହାଙ୍କର ଶରଣାଗତ ସେ ତାଙ୍କୁ ଲଜ୍ଜାରୁ ରକ୍ଷା କରନ୍ତି । ଦେଖ—ନଦୀଜଳରେ ଆଶ୍ରୟ କରି ରହିଥିବା ଛୋଟ ଛୋଟ ମାଛଗୁଡ଼ିକ ସ୍ରୋତର ବିପରୀତ ଦିଗରେ ଉଜାଣି ଉଠି ଚାଲିଯାଆନ୍ତି । ମାତ୍ର ଅସାଧାରଣ ବଳଶାଳୀ ହାତୀମାନେ ନଦୀପାରି ହେଲାବେଳେ ସ୍ରୋତରେ ଅନେକ ଦୂରଯାଏ ଭାସିଯାଆନ୍ତି । ବସ୍ତୁତଃ ଭଗବଦ୍‌ଭକ୍ତିର ବଳ ଅସାଧାରଣ । ଚିତ୍ତସଂଯମର ଉପାୟ ସମ୍ବନ୍ଧରେ ଶ୍ରୀମଦ୍-ଭାଗବତରେ ଲିଖିତ ଅଛି:—

ବିଦ୍ୟାତପଃପ୍ରାଣନିରୋଧମୈତ୍ରୀତୀର୍ଥାଭିଷେକବ୍ରତଦାନଜପ୍ୟୈଃ ।
ନାତ୍ୟନ୍ତଶୁଦ୍ଧିଂ ଲଭତେଽନ୍ତରାତ୍ମା ଯଥା ହୃଦିସ୍ଥେ ଭଗବତ୍ୟନନ୍ତେ ।
(ଭାଃ ୧୨।୩।୪୮)

ଭଗବାନଙ୍କୁ ହୃଦୟରେ ଧାରଣ କରିପାରିଲେ ଅନ୍ତରାତ୍ମା ଯେପରି ଶୁଦ୍ଧ ଓ ପବିତ୍ର ହୁଅନ୍ତି, ବିଦ୍ୟା, ତପସ୍ୟା, ବାୟୁ ନିରୋଧ ଯୋଗ, ମୈତ୍ରୀ, ତୀର୍ଥସ୍ନାନ, ବ୍ରତ, ଦାନ ଓ ଜପ ଦ୍ୱାରା ସେପରି ହୁଅନ୍ତି ନାହିଁ ।

୬୨।୬୩ । **ଅନ୍ୱୟଦୀପିକା**—ବିଷୟାନ୍ (ବିଷୟ ସକଳ) ଧ୍ୟାୟତଃ (ଚିନ୍ତା କରୁ କରୁଁ) ପୁଂସଃ (ମନୁଷ୍ୟର) ତେଷୁ (ତହିଁରେ) ସଙ୍ଗଃ (ଆସକ୍ତି) ଉପଜାୟତେ (ଜାତ ହୁଏ) । ସଙ୍ଗାତ୍ (ଆସକ୍ତିରୁ) କାମଃ (କାମନା) ସଂଜାୟତେ (ଉତ୍ପନ୍ନ ହୁଏ), କାମାତ୍ (କାମନାରୁ) କ୍ରୋଧଃ ଅଭିଜାୟତେ (କ୍ରୋଧ ଜନ୍ମେ), କ୍ରୋଧାତ୍ (କ୍ରୋଧରୁ) ସମ୍ମୋହ (ଅବିବେକ) ଭବତି (ହୁଏ); ସମ୍ମୋହାତ୍ (ମୋହରୁ) ସ୍ମୃତିବିଭ୍ରମଃ (ସ୍ମୃତି ଶକ୍ତିର ବ୍ୟତିକ୍ରମ), ସ୍ମୃତିଭ୍ରଂଶାତ୍ (ସ୍ମୃତିବିଭ୍ରମରୁ) ବୁଦ୍ଧିନାଶଃ (ବୁଦ୍ଧିନାଶ) [ଜନ୍ମେ] । ବୁଦ୍ଧିନାଶାତ୍ (ବୁଦ୍ଧିନାଶରୁ) [ଲୋକ] ପ୍ରଣଶ୍ୟତି (ବିନଷ୍ଟ ହୁଏ) ।

ରାଗଦ୍ୱେଷ ବିମୁକ୍ତୈସ୍ତୁ ବିଷୟାନିନ୍ଦ୍ରିୟୈଶ୍ଚରନ୍
ଆତ୍ମବଶ୍ୟୈର୍ବିଧେୟାତ୍ମା ପ୍ରସାଦମଧିଗଚ୍ଛତି । ୬୪ ।

**ଅନୁବାଦ**—ଯେଉଁମାନଙ୍କ ବିଷୟ ଚିନ୍ତା କରୁଁ କରୁଁ ମନୁଷ୍ୟର ତହିଁରେ ଆସକ୍ତି ଜାତ ହୁଏ, ଆସକ୍ତିରୁ କାମନା ଓ କାମନାରୁ କ୍ରୋଧର ଉଦୟ ହୁଏ। କ୍ରୋଧରୁ ମୋହ ଏବଂ ମୋହରୁ ସ୍ମୃତିବିଭ୍ରମ ଜାତ ହୁଏ । ସ୍ମୃତିଭ୍ରଂଶ ହେଲେ ବୁଦ୍ଧିନାଶ ହୁଏ ଏବଂ ବୁଦ୍ଧିନାଶ ହେଲେ ମନୁଷ୍ୟର ବିନାଶ ଉପସ୍ଥିତ ହୁଏ ।

**ସୁବୋଧିନୀ ଟୀକା**— ବାହ୍ୟେନ୍ଦ୍ରିୟସଂଯମାଭାବେ ଦୋଷମୁକ୍ତ୍ୱା ମନଃ ସଂଯମାଭାବେ ଦୋଷମାହ—ଧ୍ୟାୟତ ଇତି ଦ୍ୱାଭ୍ୟାମ୍ । ଗୁଣବୁଦ୍ଧ୍ୟା ବିଷୟାନ୍ ଧ୍ୟାୟତଃ ପୁଂସସ୍ତେଷୁ ସଙ୍ଗ ଆସକ୍ତିର୍ଭବତି । ଆସକ୍ତ୍ୟା ଚ ତୈଷ୍ୱଧିକଃ କାମୋ ଭବତି । କାମାତ କେନଚିତ୍ ପ୍ରତିହତାତ୍ କ୍ରୋଧୋ ଭବତି ।

କିଞ୍ଚ କ୍ରୋଧାଦିତି—କ୍ରୋଧାତ୍ ସମ୍ମୋହଃ କାର୍ଯ୍ୟାକାର୍ଯ୍ୟବିବେକାଭାବଃ, ତତଃ ଶାସ୍ତ୍ରାଚାର୍ଯ୍ୟୋପଦିଷ୍ଟାର୍ଥସ୍ମୃତେ ର୍ବିଭ୍ରମୋ ବିଚଲନଂ ଭ୍ରଂଶଃ । ତତୋ ବୁଦ୍ଧେ ଶ୍ଚେତନାୟା ନାଶଃ, ବୃକ୍ଷାଦିଷ୍ୱିବାଭିଭବଃ । ତତଃ ପ୍ରଣଶ୍ୟତି ମୃତତୁଲ୍ୟୋ ଭବତି ।

**ବିବୃତି**—ବିଷୟ ଚିନ୍ତା ସମସ୍ତ ଅନର୍ଥର ମୂଳ; ଗୋଟାଏ ବିଷୟ ସର୍ବଦା ଭାବିଲେ ତହିଁରେ ଆସକ୍ତି ବା ତାହାକୁ ପାଇବାର ଇଚ୍ଛା ଅତିଶୟ ବଳବତୀ ହୋଇଉଠେ । ଏହାହିଁ କାମନା; ଏହି କାମନା କୌଣସି କାରଣରୁ ପ୍ରତିହତ ହେଲେ କ୍ରୋଧର ଉତ୍ପତ୍ତି ହୁଏ । କ୍ରୁଦ୍ଧବ୍ୟକ୍ତିର କାର୍ଯ୍ୟାକାର୍ଯ୍ୟ-ବୋଧ ରହେ ନାହିଁ; ଏହି କାର୍ଯ୍ୟାକାର୍ଯ୍ୟ ବୋଧର ଅଭାବହିଁ ମୋହ; ମୋହାଚ୍ଛନ୍ନ ପୁରୁଷର ଗୁରୁ ବା ଶାସ୍ତ୍ରୋପଦେଶ ବିଷୟକ ସ୍ମରଣ ଶକ୍ତିର ଲୋପହୁଏ, ସ୍ମରଣଶକ୍ତି ଲୋପରେ କର୍ତ୍ତବ୍ୟାକର୍ତ୍ତବ୍ୟ ନିର୍ଣ୍ଣୟର କ୍ଷମତା ରହେ ନାହିଁ । ଯେ କର୍ତ୍ତବ୍ୟା-କର୍ତ୍ତବ୍ୟନିର୍ଣ୍ଣୟରେ ଅକ୍ଷମ ସେ ମନୁଷ୍ୟତ୍ୱ ହରାଇ ପଶୁତ୍ୱ ପ୍ରାପ୍ତ ହୁଏ, ଏହାହିଁ ବିନାଶ । ମନ ଏବଂ ଇନ୍ଦ୍ରିୟ ଉଭୟକୁ ନିଗ୍ରହକରି ନ ପାରିଲେ ମନୁଷ୍ୟର ପ୍ରଜ୍ଞା ପ୍ରତିଷ୍ଠିତ ହୋଇପାରେ ନାହିଁ ।

**୬୪ । ଅନ୍ୱୟଦୀପିକା**—ରାଗଦ୍ୱେଷ ବିମୁକ୍ତୈଃ ତୁ ( ଅନୁରାଗ ଓ ବିଦ୍ୱେଷରୁ ବିମୁକ୍ତ) ଆତ୍ମବଶ୍ୟୈଃ (ଆତ୍ମବଶୀଭୂତ) ଇନ୍ଦ୍ରିୟୈଃ (ଇନ୍ଦ୍ରିୟଗଣଦ୍ୱାରା) ବିଷୟାନ୍ ଚରନ୍ (ବିଷୟସବୁ ଉପଭୋଗ କରି) ବିଧେୟାତ୍ମା (ସଂଯତମନା ପୁରୁଷ) ପ୍ରସାଦଂ ଅଧିଗଚ୍ଛତି (ଆତ୍ମପ୍ରସାଦ ଲାଭ କରନ୍ତି) ।

**ଅନୁବାଦ**—କିନ୍ତୁ ଯେ ବିଧେୟାତ୍ମା ଅର୍ଥାତ୍ ଯାହାଙ୍କର ମନ ନିଜ ବଶବର୍ତ୍ତୀ ସେ ଅନୁରାଗ ଓ ବିଦ୍ୱେଷରୁ ବିମୁକ୍ତ ଆତ୍ମବଶୀଭୂତ ଇନ୍ଦ୍ରିୟଗଣଦ୍ୱାରା ବିଷୟ ଉପଭୋଗ କରି ଆତ୍ମପ୍ରସାଦ ଲାଭକରନ୍ତି ।

ପ୍ରସାଦେ ସର୍ବଦୁଃଖାନାଂ ହାନିରସ୍ୟୋପଜାୟତେ,
ପ୍ରସନ୍ନଚେତସୋହ୍ୟାଶୁ ବୁଦ୍ଧିଃ ପର୍ଯ୍ୟବତିଷ୍ଠତେ । ୬୫ ।

**ସୁବୋଧିନୀ ଟୀକା**—ନନ୍ୱିନ୍ଦ୍ରିୟାଣାଂ ବିଷୟପ୍ରବଣସ୍ୱଭାବାନାଂ ନିରୋଦ୍ଧୁମଶକ୍ୟତ୍ୱାଦୟଂ ଦୋଷୋ ଦୁଷ୍ପରିହର ଇତି ସ୍ଥିତପ୍ରଜ୍ଞତ୍ୱଂ କଥଂ ସ୍ୟାତ୍ ? ଇତ୍ୟାଶଙ୍କ୍ୟାହ—ରାଗଦ୍ୱେଷ ଇତି ଦ୍ୱାଭ୍ୟାମ୍ । ରାଗଦ୍ୱେଷରହିତୈର୍ବିଗତଦର୍ପୈ-ରିନ୍ଦ୍ରିୟୈର୍ବିଷୟାଂଶ୍ଚରନ୍ନୁପଭୁଞ୍ଜାନୋଽପି ପ୍ରସାଦଂ ଶାନ୍ତିଂ ପ୍ରାପ୍ନୋତି । ରାଗଦ୍ୱେଷ-ରାହିତ୍ୟ ମେବାହ—ଆତ୍ମେତି, ଆତ୍ମନୋ ମନସୋ ବଶ୍ୟୈରିନ୍ଦ୍ରିୟୈ ର୍ବିଧେୟୋ ବଶବର୍ତ୍ତ୍ୟାତ୍ମା ମନୋ ଯସ୍ୟେତି । ଅନେନୈବ କଥଂ ବ୍ରଜେତେତ୍ୟସ୍ୟ ଚତୁର୍ଥ ପ୍ରଶ୍ନସ୍ୟ ସ୍ୱାଧୀନୈରିନ୍ଦ୍ରିୟୈ ର୍ବିଷୟାନ୍ ଗଚ୍ଛତୀତ୍ୟୁତ୍ତର ମୁକ୍ତଂ ଭବତି ।

**ବିବୃତି**—ଏ ଶ୍ଳୋକଟି ପ୍ରବୃତ୍ତିପର ଗୀତାଧର୍ମ ବୁଝିବାରେ ବଡ଼ ଉପାଦେୟ । ସନ୍ୟାସମାର୍ଗ ଅବଲମ୍ବନ ନ କରି ଅର୍ଥାତ୍ କର୍ମତ୍ୟାଗ ନ କରି ସଂସାରୀ ଲୋକ ପୂର୍ଣ୍ଣ ଶାନ୍ତିଲାଭ କରିପାରେ, ଏହି ଶ୍ଳୋକରେ ଭଗବାନ୍ ତାହା ବୁଝାଇଅଛନ୍ତି । 'ବିଧେୟାତ୍ମା' ପଦର ଅର୍ଥ ଯାହାର ମନ ନିଜର ଅଧୀନ; ମନ ନିଜ ଅଧୀନତାରେ ରହିଲେ ଇନ୍ଦ୍ରିୟମାନେ କାର୍ଯ୍ୟତଃ ଆତ୍ମାଧୀନ ହୋଇ ରହନ୍ତି । ଏପରି ଅବସ୍ଥାରେ ଇନ୍ଦ୍ରିୟମାନେ ଭୋଗ୍ୟବିଷୟ ପ୍ରତି ଅନୁରକ୍ତ ବା ବିଦ୍ୱେଷଯୁକ୍ତ ନ ରହି ତାହା ଭୋଗକରନ୍ତି ଏବଂ ତଦ୍ଦ୍ୱାରା ଶାନ୍ତି ବା ଆତ୍ମପ୍ରସାଦ ଲାଭହୁଏ ।

କିନ୍ତୁ ଭଗବାନଙ୍କଠାରେ ସମ୍ପୂର୍ଣ୍ଣ ଆସକ୍ତ ନ ହୋଇଲେ ଅର୍ଥାତ୍ ତାଙ୍କଠାରେ ସମ୍ପୂର୍ଣ୍ଣ ନିର୍ଭରଶୀଳତା ନ ରହିଲେ ଅନାସକ୍ତ ଭାବରେ ବିଷୟ ଭୋଗ କରି ହୁଏ ନାହିଁ । ସଂସାରୀ ଲୋକ ଏହି ଭାବରେ ଈଶ୍ୱରନିର୍ଭରଶୀଳ ହୋଇ ଅନାସକ୍ତ ଚିତ୍ତରେ ବିଷୟ ଭୋଗକଲେ ଶେଷରେ ମୁକ୍ତିର ଅଧିକାରୀ ହେବ— ଏହାହିଁ ଗୀତୋକ୍ତ ଧର୍ମ । ସଂସାର ତ୍ୟାଗକରି କର୍ମଶୂନ୍ୟ ଜୀବନ ଯାପନ କରିବାରେ ପ୍ରୟୋଜନ ନାହିଁ । ସମସ୍ତେ କର୍ମ ତ୍ୟାଗକରି ସନ୍ୟାସୀ ହେଲେ ସୃଷ୍ଟିରକ୍ଷା ହେବ କି ?

୬୫ । **ଅନ୍ୱୟଦୀପିକା**—ପ୍ରସାଦେ (ଆତ୍ମପ୍ରସାଦ ଲାଭ କରି ପାରିଲେ) ଅସ୍ୟ (ଏହାର) ସର୍ବ ଦୁଃଖାନାଂ ହାନିଃ (ସମସ୍ତ ପ୍ରକାର ଦୁଃଖ ବିନାଶ) ଉପଜାୟତେ (ହୁଏ) । ହି (ଯେହେତୁ) ପ୍ରସନ୍ନ ଚେତସଃ (ପ୍ରସନ୍ନ ଚିତ୍ତ ଲୋକର) ବୁଦ୍ଧିଃ (ପ୍ରଜ୍ଞା) ଆଶୁ (ଶୀଘ୍ର) ପର୍ଯ୍ୟବତିଷ୍ଠତେ (ପ୍ରତିଷ୍ଠିତ ହୁଏ, ଉପାସ୍ୟଙ୍କଠାରେ ସ୍ଥିତିଲାଭ କରେ) ।

**ଅନୁବାଦ**—ଚିତ୍ତପ୍ରସାଦ ଜାତହେଲେ ଏହି ଲୋକର ସମସ୍ତ ଦୁଃଖର ନିବୃତ୍ତି ହୁଏ । ଯେହେତୁ ପ୍ରସନ୍ନଚିତ୍ତ ବ୍ୟକ୍ତିର ବୁଦ୍ଧି ଶୀଘ୍ର ଉପାସ୍ୟ ବସ୍ତୁରେ ସ୍ଥିତି ଲାଭକରେ ।

ନାସ୍ତି ବୁଦ୍ଧିରଯୁକ୍ତସ୍ୟ ନ ଚାଯୁକ୍ତସ୍ୟ ଭାବନା,
ନ ଚାଭାବୟତଃ ଶାନ୍ତିରଶାନ୍ତସ୍ୟ କୁତଃ ସୁଖମ୍ । ୬୬ ।

**ସୁବୋଧିନୀ ଟୀକା**—ପ୍ରସାଦେ ସତି କିଂ ସ୍ୟାଦତ ? ଅତ୍ରାହ ପ୍ରସାଦ ଇତି । ପ୍ରସାଦେ ସତି ସର୍ବଦୁଃଖନାଶଃ । ତତଶ୍ଚ ପ୍ରସନ୍ନଚେତସୋ ବୁଦ୍ଧିଃ ପ୍ରତିଷ୍ଠିତା ଭବତୀତ୍ୟର୍ଥଃ ।

**ବିବୃତି**—ପୂର୍ବ ଶ୍ଳୋକରେ କୁହାଯାଇଅଛି ଯେ ବିଷୟ ଉପଭୋଗକର ମଧ୍ୟ ଯେ ଅନାସକ୍ତ, ସଂଯତଚିତ୍ତ ଓ ରାଗଦ୍ୱେଷଶୂନ୍ୟ ସେ ଆତ୍ମପ୍ରସାଦ ଲାଭ କରନ୍ତି । ଏହି ଚିତ୍ତ ପ୍ରସାଦ ଜାତ ହେଲେ କୌଣସି ପ୍ରକାର ଦୁଃଖ ତାଙ୍କୁ ବିଚଳିତ କରି ପାରେ ନାହିଁ । ତାଙ୍କର ବୁଦ୍ଧି ଏକମାତ୍ର ଈଶ୍ୱରଙ୍କଠାରେହିଁ ସ୍ଥିରହୋଇ ରହିଥାଏ । ଚିତ୍ତ ନିର୍ମଳ ଓ ପ୍ରସନ୍ନ ଥିଲେ ବ୍ରହ୍ମଜ୍ୟୋତି ତହିଁରେ ସହଜରେ ପ୍ରତିବିମ୍ବିତ ହୋଇଉଠେ ।

ଅନ୍ୟପକ୍ଷରେ ଯାହାଙ୍କର ଚିତ୍ତ ମଳିନ ସେ ଅନେକ ସମୟରେ ଦୁଃଖକର ବିଷୟକୁ ସୁଖଜନକ ହେବ ବୋଲି ଭାବି ତାହା ଗ୍ରହଣ କରନ୍ତି ଏବଂ ପରିଣାମରେ ଘୋରଦୁଃଖ ଅନୁଭବ କରନ୍ତି ।

**୬୬ । ଅନ୍ୱୟ ଦୀପିକା**—ଅଯୁକ୍ତସ୍ୟ (ଅଜିତେନ୍ଦ୍ରିୟ ମନୁଷ୍ୟର) ବୁଦ୍ଧିଃ (ପ୍ରଜ୍ଞା) ନାସ୍ତି (ନାହିଁ) । ଅଯୁକ୍ତସ୍ୟ ଭାବନା ଚ ନ (ସେହି ଅଜିତେନ୍ଦ୍ରିୟ ଲୋକର ଭାବନା ବା ଈଶ୍ୱରଚିନ୍ତା ମଧ୍ୟ ନ ଥାଏ) । ଅଭାବୟତଃ (ଯାହାର ଆତ୍ମଚିନ୍ତା ବା ଈଶ୍ୱରଚିନ୍ତା ନ ଥାଏ ତାହାର) ଶାନ୍ତିଃ ନ (ଶାନ୍ତି ନାହିଁ) ଅଶାନ୍ତସ୍ୟ (ଅଶାନ୍ତ ଚିତ୍ତ ବ୍ୟକ୍ତିର) ସୁଖଂ କୁତଃ (ସୁଖ କେଉଁଠାରେ) ?

**ଅନୁବାଦ**—ଯେ ନିଜ ଇନ୍ଦ୍ରିୟମାନଙ୍କୁ ଜୟକରି ଚିତ୍ତ ସମାହିତ କରି ପାରି ନାହାନ୍ତି ତାହାଙ୍କର ବୁଦ୍ଧି ନ ଥାଏ କିମ୍ବା ଈଶ୍ୱରବିଷୟକ ଭାବନା ମଧ୍ୟ ନ ଥାଏ । ଯାହାଙ୍କର ସେହିଭଳି ଚିନ୍ତା ବା ଭାବନା ନ ଥାଏ ସେ ଶାନ୍ତି ପାଆନ୍ତି ନାହିଁ । ଯାହାଙ୍କର ଶାନ୍ତି ନାହିଁ ତାଙ୍କର ସୁଖ କେଉଁଠାରେ ?

**ସୁବୋଧିନୀ ଟୀକା**— ଇନ୍ଦ୍ରିୟନିଗ୍ରହସ୍ୟ ସ୍ଥିତପ୍ରଜ୍ଞତାସାଧନତ୍ୱଂ ବ୍ୟତିରେକମୁଖେନୋପପାଦୟତି—ନାସ୍ତୀତି । ଅଯୁକ୍ତସ୍ୟାବଶୀକୃତେନ୍ଦ୍ରିୟସ୍ୟ ନାସ୍ତିବୁଦ୍ଧିଃ ଶାସ୍ତ୍ରାଚାର୍ଯ୍ୟୋପଦେଶାଭ୍ୟାମାତ୍ମବିଷୟାବୁଦ୍ଧିଃ ପ୍ରଜ୍ଞୈବ ନୋତ୍ପଦ୍ୟତେ କୁତସ୍ତସ୍ୟାଃ ପ୍ରତିଷ୍ଠାବାର୍ତ୍ତେତି ? ତଦାହ ନ ଚେତି । ନ ଚାଯୁକ୍ତସ୍ୟ ଭାବନା ଧ୍ୟାନମ୍ । ଭାବନୟା ହି ବୁଦ୍ଧେରାତ୍ମନି ପ୍ରତିଷ୍ଠା ଭବତି । ସା ଚାଯୁକ୍ତସ୍ୟ ଯତୋ ନାସ୍ତି । ନ ଚାଭାବୟତ ଆତ୍ମଧ୍ୟାନମକୁର୍ବତଃ ଶାନ୍ତିରାତ୍ମନି ଚିତ୍ତୋପରମଃ । ଅଶାନ୍ତସ୍ୟ କୁତଃ ସୁଖମ୍ ? ମୋକ୍ଷାନନ୍ଦ ଇତ୍ୟର୍ଥଃ ।

ଇନ୍ଦ୍ରିୟାଣାଂ ହି ଚରତାଂ ଯନ୍ମନୋଽନୁବିଧୀୟତେ,
ତଦସ୍ୟ ହରତି ପ୍ରଜ୍ଞାଂ ବାୟୁର୍ନାବମିବାମ୍ଭସି । ୬୭ ।

**ବିବୃତି**—ଇନ୍ଦ୍ରିୟ ଜୟକର ନ ପାରିଲେ ଆତ୍ମବିଷୟକ ବୁଦ୍ଧିର ଉଦୟ ହୁଏ ନାହିଁ । ସେ କ୍ଷେତ୍ରରେ ଶାସ୍ତ୍ର ଉପଦେଶ ଓ ଗୁରୁଙ୍କ ଉପଦେଶ ବୃଥା ହୁଏ ମାତ୍ର । ଆତ୍ମବିଷୟକ ବୁଦ୍ଧି ବା ପ୍ରଜ୍ଞା ଅଭାବରୁ ଧ୍ୟାନ ବା ଈଶ୍ୱରଚିନ୍ତା ମଧ୍ୟ ହୋଇପାରେ ନାହିଁ, କାରଣ ଭାବନା ଦ୍ୱାରାହିଁ ବୁଦ୍ଧି ଆତ୍ମାରେ ପ୍ରତିଷ୍ଠିତ ହୁଏ । ଆତ୍ମଚିନ୍ତା ନ କଲେ ଶାନ୍ତି ମିଳେ ନାହିଁ । ଅଶାନ୍ତ ଲୋକ କେବେହେଁ ମୋକ୍ଷାନନ୍ଦର ଅଧିକାରୀ ହୋଇପାରେ ନାହିଁ ।

**୬୭ । ଅନ୍ୱୟଦୀପିକା**—ହି (ଯେହେତୁ) ମନଃ (ମନ) ଚରତାଂ (ବିଷୟରେ ବିଚରଣ କରୁଥିବା) ଇନ୍ଦ୍ରିୟାଣାଂ (ଇନ୍ଦ୍ରିୟମାନଙ୍କ ମଧ୍ୟରୁ) ଯତ୍ (ଯେଉଁ ଗୋଟିକୁ) ଅନୁବିଧୀୟତେ (ଅନୁବର୍ତ୍ତନ କରେ) ତତ୍ (ସେହି ଇନ୍ଦ୍ରିୟ) ବାୟୁଃ ଅମ୍ଭସି ନାବମ୍ ଇବ (ବାୟୁ ଯେପରି ଜଳ ଉପରେ ନୌକାକୁ ଚାଳିତ କରେ ସେହିପରି) ଅସ୍ୟ (ମନର ବା ପୁରୁଷର) ପ୍ରଜ୍ଞାଂ (ବୁଦ୍ଧିକୁ) ହରତି (ହରଣକରେ) ।

**ଅନୁବାଦ**—ମନ ବିଷୟଭୋଗରେ ଲିପ୍ତ ଥିବା ଇନ୍ଦ୍ରିୟମାନଙ୍କ ମଧ୍ୟରୁ ଯେଉଁ ଗୋଟିକୁ ଅନୁବର୍ତ୍ତନ କରେ ବାୟୁ ଯେପରି ଜଳ ଉପରେ ନୌକାକୁ ବିଚାଳିତ କରେ, ସେହି ଗୋଟିଏ ଇନ୍ଦ୍ରିୟ ତାହାର ପ୍ରଜ୍ଞାକୁ ହରଣକରେ ବା ବିଷୟରେ ବିକ୍ଷିପ୍ତ କରେ ।

**ସୁବୋଧିନୀ ଟୀକା**—ନାସ୍ତି ବୁଦ୍ଧିରଯୁକ୍ତସ୍ୟେତ୍ୟତ୍ର ହେତୁମାହ— ଇନ୍ଦ୍ରିୟାଣାମିତି । ଇନ୍ଦ୍ରିୟାଣାମବଶୀକୃତାନାଂ ସ୍ୱୈରଂ ବିଷୟେଷୁ ଚରତାଂ ମଧ୍ୟେ ଯଦୈବୈକମିନ୍ଦ୍ରିୟଂ ମନୋଽନୁବିଧୀୟତେଽବଶୀକୃତଂ ସଦିନ୍ଦ୍ରିୟେଣ ସହ ଗଚ୍ଛତି । ତଦୈବୈକମିନ୍ଦ୍ରିୟମସ୍ୟ ମନସଃ ପୁରୁଷସ୍ୟ ବା ପ୍ରଜ୍ଞାଂ ବୁଦ୍ଧିଂ ହରତି ବିଷୟବିକ୍ଷିପ୍ତାଂ କରୋତି । କିମୁତ ବକ୍ତବ୍ୟଂ ବହୂନି ପ୍ରଜ୍ଞାଂ ହରନ୍ତୀତି । ଯଥା ପ୍ରମତ୍ତସ୍ୟ କର୍ଣ୍ଣଧାରସ୍ୟ ନାବଂ ବାୟୁଃ ସର୍ବତ୍ର ପରିଭ୍ରମୟତି ତଦ୍ୱଦିତି ।

**ବିବୃତି**—ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ତ୍ୱକ୍—ଏହି ପାଞ୍ଚଗୋଟି ଜ୍ଞାନେନ୍ଦ୍ରିୟର ବିଷୟ ଯଥାକ୍ରମେ, ରୂପ, ଶବ୍ଦ, ଗନ୍ଧ, ରସ ଓ ସ୍ପର୍ଶ । ମନ ଏହି ପାଞ୍ଚଇନ୍ଦ୍ରିୟ ମଧ୍ୟରୁ ଯେକୌଣସି ଗୋଟିଏ ଇନ୍ଦ୍ରିୟଦ୍ୱାରା ଆକୃଷ୍ଟ ହୋଇ ତହିଁରେ ଆସକ୍ତ ହୁଏ, ତେବେ ତାହାର ବିବେକ ବୁଦ୍ଧି ଲୋପ ପାଏ । ପାଞ୍ଚଗୋଟି ଇନ୍ଦ୍ରିୟଦ୍ୱାରା ଯଦି ମନ ଆକୃଷ୍ଟ ହୁଏ, ତେବେ ତାହାର ଅବସ୍ଥା କିପରି ଶୋଚନୀୟ ହେବ, ଏଥିରୁ ସହଜରେ ଅନୁମାନ କରିଯାଇ ପାରେ । ଏ ସମ୍ବନ୍ଧରେ ତଳେ ଲେଖାଯାଇଥିବା ସଂସ୍କୃତ ଶ୍ଳୋକଟିର ଭାବ ଆଲୋଚନୀୟ:—

ତସ୍ମାଦ୍ ଯସ୍ୟ ମହାବାହୋ ନିଗୃହୀତାନି ସର୍ବଶଃ ।
ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଭ୍ୟ ସ୍ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୬୮ ।

କୁରଙ୍ଗମାତଙ୍ଗପତଙ୍ଗମୀନଭୃଙ୍ଗା ହତାଃ ପଞ୍ଚଭିରେବପଞ୍ଚ,
ଏକଃ ପ୍ରମାଦୀ ସ କଥଂ ନ ହନ୍ୟତେ ଯଃ ସେବତେ ପଞ୍ଚଭିରେବପଞ୍ଚ ।

କୁରଙ୍ଗ (ହରିଣ), ମାତଙ୍ଗ (ହାତୀ), ପତଙ୍ଗ, ମୀନ, ଭୃଙ୍ଗ—ଏହି ପାଞ୍ଚ ଗୋଟି ପ୍ରାଣୀ ପ୍ରତ୍ୟେକେ ଗୋଟିଏ ଗୋଟିଏ ଇନ୍ଦ୍ରିୟଦ୍ୱାରା ଆକୃଷ୍ଟ ହୋଇ ପ୍ରାଣତ୍ୟାଗ କରନ୍ତି । ହରିଣକୁ ବଂଶୀର ସ୍ୱର (ଶବ୍ଦ) ଦ୍ୱାରା ମୋହିତକରି ଶିକାରୀ ମାରିପକାଏ; ହାତୀଶିକାରୀମାନେ ଗାତଭିତରେ ଗୋଟାଏ ପୋଷା ମାଈହାତୀ ପକାଇ ବଣୁଆ ହାତୀକୁ ସେଠାକୁ ତଡ଼ିଆଣନ୍ତି, ସ୍ପର୍ଶସୁଖ ଲାଳସାରେ ବଣୁଆହାତୀ ସେ ଗାତରେ ପଡ଼ି ମରେ । ପତଙ୍ଗ ଅଗ୍ନି (ରୂପ)ରେ, ମୀନ ବା ମାଛ ବନଶୀରେ ଦିଆ ଯାଇଥିବା ଖାଦ୍ୟ (ରସ)ରେ, ଭୃଙ୍ଗ ବା ଭ୍ରମର ପୁଷ୍ପର ଗନ୍ଧରେ ଆକୃଷ୍ଟ ହୋଇ ମରେ । ମନୁଷ୍ୟ ଯେବେ ଯୁଗପତ୍ ପାଞ୍ଚଗୋଟି ଇନ୍ଦ୍ରିୟଦ୍ୱାରା ଆକୃଷ୍ଟ ହୁଏ ତେବେ ତାହାର ଦଶା କିପରି ହେବ ଟି ?

**୬୮ । ଅନ୍ୱୟଦୀପିକା**—ହେ ମହାବାହୋ ! ତସ୍ମାତ୍ (ସେହିହେତୁରୁ) ଯସ୍ୟ ଇନ୍ଦ୍ରିୟାଣି (ଯାହାଙ୍କର ଇନ୍ଦ୍ରିୟମାନେ) ଇନ୍ଦ୍ରିୟାର୍ଥେଭ୍ୟଃ (ବିଷୟ ସମୂହରୁ) ସର୍ବଶଃ (ସବୁ ପ୍ରକାରେ) ନିଗୃହୀତାନି (ନିବୃତ୍ତ ହୋଇଅଛନ୍ତି) ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା (ତାହାଙ୍କର ହିଁ ପ୍ରଜ୍ଞା ପ୍ରତିଷ୍ଠିତ ହୋଇଅଛି ) ।

**ଅନୁବାଦ**—ହେ ମହାବାହୋ, ଯାହାଙ୍କର ସମସ୍ତ ଇନ୍ଦ୍ରିୟ ନିଜ ନିଜ ବିଷୟରୁ ନିବୃତ୍ତ ହୋଇଥାଆନ୍ତି, ତାହାଙ୍କରହିଁ ପ୍ରଜ୍ଞା ସ୍ଥିର ହୋଇଥାଏ ।

**ସୁବୋଧିନୀ ଟୀକା**—ଇନ୍ଦ୍ରିୟସଂଯମସ୍ୟ ସ୍ଥିତପ୍ରଜ୍ଞତ୍ୱେ ସାଧନତ୍ୱଂ ଲକ୍ଷଣତ୍ୱଂ ଚୋକ୍ତମୁପସଂହରତି—ତସ୍ମାଦିତି । ସାଧନତ୍ୱୋପସଂହାରେ ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ଭବତ୍ୟେତ୍ୟର୍ଥଃ । ମହାବାହୋ ଇତି ସମ୍ବୋଧନମ୍ ବୈରିନିଗ୍ରହେ ସମର୍ଥସ୍ୟ ତବାତ୍ରାପି ସାମର୍ଥ୍ୟଂ ଭବେଦିତି ସୂଚୟିତି ।

**ବିବୃତି**—ଯେତେବେଳଯାଏ ଇନ୍ଦ୍ରିୟମାନେ ବହିର୍ମୁଖ ଥାଆନ୍ତି, ସେତେବେଳଯାଏ ପ୍ରଜ୍ଞା ମଧ୍ୟ ଚଞ୍ଚଳ ଓ ବହିର୍ମୁଖୀ ଥାଏ । ଯାହାଙ୍କର ମନ ଓ ଇନ୍ଦ୍ରିୟମାନେ ନିଗୃହୀତ ହୋଇଅଛନ୍ତି ସେହି ସିଦ୍ଧ ପୁରୁଷଙ୍କର ପ୍ରଜ୍ଞା ସ୍ଥିର ହୋଇଥାଏ । ଶ୍ରୀଧରସ୍ୱାମୀ କହନ୍ତି, ଏ ଶ୍ଳୋକରେ 'ମହାବାହୋ' ଏହି ସମ୍ବୋଧନ ପଦ ଦ୍ୱାରା ଭଗବାନ୍ ଅର୍ଜୁନଙ୍କୁ ଇଙ୍ଗିତ କରିଅଛନ୍ତି ଯେ, ଯେପରି ତୁମେ ବୈରିଦମନରେ ସମର୍ଥ ସେପରି ଦୁର୍ଜୟ ଇନ୍ଦ୍ରିୟଦମନରେ ମଧ୍ୟ ତୁମର ସାମର୍ଥ୍ୟ ଅଛି ।

ଯା ନିଶା ସର୍ବ ଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ,
ଯସ୍ୟାଂ ଜାଗ୍ରତି ଭୂତାନି ସା ନିଶା ପଶ୍ୟତୋ ମୁନେଃ । ୬୯ ।

୬୯ । **ଅନ୍ୱୟଦୀପିକା**—ସର୍ବଭୂତାନାଂ (ସାଧାରଣ ଲୋକମାନଙ୍କ ପକ୍ଷରେ) ଯା ନିଶା (ଯାହା ରାତ୍ରିସ୍ୱରୂପ), ତସ୍ୟାଂ (ସେହି ରାତ୍ରିରେ) ସଂଯମୀ (ଜିତେନ୍ଦ୍ରିୟ ପୁରୁଷ) ଜାଗର୍ତ୍ତି (ଜାଗ୍ରତ ରହନ୍ତି), ଯସ୍ୟାଂ (ଯହିଁରେ) ଭୂତାନି (ସାଧାରଣ ବ୍ୟକ୍ତିମାନେ) ଜାଗ୍ରତି (ଜାଗ୍ରତ ହୋଇ ଥାଆନ୍ତି) ପଶ୍ୟତଃ ମୁନେଃ (ଆତ୍ମଦୃଷ୍ଟିସମ୍ପନ୍ନ ମୁନିଙ୍କ ପକ୍ଷରେ) ସା ନିଶା (ତାହା ରାତ୍ରିସ୍ୱରୂପ) ।

**ଅନୁବାଦ**—ସାଧାରଣ ଲୋକଙ୍କ ପକ୍ଷରେ ଯାହା ରାତ୍ରିସ୍ୱରୂପ, ତହିଁରେ ସ୍ଥିତପ୍ରଜ୍ଞ ବା ଜିତେନ୍ଦ୍ରିୟ ପୁରୁଷ ଜାଗ୍ରତ ଥାଆନ୍ତି ଏବଂ ଯେତେବେଳେ ସମସ୍ତ ଲୋକ ଜାଗରିତ ରହନ୍ତି, ଜ୍ଞାନବାନ୍ ପୁରୁଷ ତାହାକୁ ରାତ୍ରି ବୋଲି ମନେ କରନ୍ତି ।

**ସୁବୋଧିନୀ ଟୀକା**—ନନୁ ନ କଶ୍ଚିଦପି ପ୍ରସୁପ୍ତ ଇବ ଦର୍ଶନାଦିବ୍ୟାପାରଶୂନ୍ୟଃ ସର୍ବାତ୍ମନା ନିଗୃହୀତେନ୍ଦ୍ରିୟୋ ଲୋକେ ଦୃଶ୍ୟତେ । ଅତୋଽସମ୍ଭାବିତମିଦଂ ଲକ୍ଷଣମିତ୍ୟାଶଙ୍କ୍ୟାହ—ଯା ନିଶେତି, ସର୍ବେଷାଂ ଭୂତାନାଂ ଯା ନିଶା । ନିଶେବ ନିଶାତ୍ମନିଷ୍ଠା, ଅଜ୍ଞାନାନ୍ଧାନ୍ତାବୃତମତୀନାଂ ତସ୍ୟାଂ ଦର୍ଶନାଦିବ୍ୟାପାରାଭାବାତ୍ । ତସ୍ୟାଂ ଆତ୍ମନିଷ୍ଠାୟାଂ ସଂଯମୀ ନିଗୃହୀତେନ୍ଦ୍ରିୟୋ ଜାଗର୍ତ୍ତି ପ୍ରବୁଧ୍ୟତେ । ଯସ୍ୟାଂ ତୁ ବିଷୟନିଷ୍ଠାୟାଂ ଭୂତାନି ଜାଗ୍ରତି ପ୍ରବୁଧ୍ୟନ୍ତେ ସାତ୍ମତତ୍ତ୍ୱଂ ପଶ୍ୟତୋ-ମୁନେର୍ନିଶା । ତସ୍ୟାଂ ଦର୍ଶନାଦିବ୍ୟାପାରସ୍ତସ୍ୟ ନାସ୍ତୀତ୍ୟର୍ଥଃ । ଏତଦୁକ୍ତଂ ଭବତି—ଯଥା ଦିବାନ୍ଧାନାମୁଲୂକାଦୀନାଂ ରାତ୍ରାବେବ ଦର୍ଶନଂ ନ ତୁ ଦିବସେ । ଏବଂ ବ୍ରହ୍ମଜ୍ଞସ୍ୟାଲୌକିକତାତ୍ତ୍ୱସ୍ୟାପି ବ୍ରହ୍ମଣ୍ୟେବଦୃଷ୍ଟିଃ । ନ ତୁ ବିଷୟେଷୁ, ଅତୋ ନାସମ୍ଭାବିତମିଦଂ ଲକ୍ଷଣମିତି ।

**ବିବୃତି**—ଅଜ୍ଞ ଲୋକମାନେ ଆତ୍ମନିଷ୍ଠାରେ ନିଦ୍ରିତ, ବିଷୟରେ ଜାଗ୍ରତ । ସଂଯମୀ ଯୋଗୀପୁରୁଷ ଆତ୍ମନିଷ୍ଠାରେ ଜାଗ୍ରତ, ବିଷୟରେ ନିଦ୍ରିତ; ଅର୍ଥାତ୍ ଅଜ୍ଞବ୍ୟକ୍ତିମାନେ ବିଷୟ ଚିନ୍ତାରେ ବ୍ରତ ଏବଂ ଆତ୍ମଚିନ୍ତାରେ ବିରତ ଥାଆନ୍ତି, କିନ୍ତୁ ସଂଯମୀ ବିଷୟରେ ବିରତ ରହି ଆତ୍ମଚିନ୍ତାରେ ନିରତ ରହନ୍ତି ।

ଏହି ବିରୋଧାଭାସାତ୍ମକ ବର୍ଣ୍ଣନା ଅଳଂକାରିକ । ଅଜ୍ଞାନକୁ ଅନ୍ଧକାର ଓ ଜ୍ଞାନକୁ ପ୍ରକାଶ ବୋଲାଯାଏ । ଅତଏବ ଏ ଶ୍ଳୋକର ତାତ୍ପର୍ଯ୍ୟ ଏହି ଯେ ଅଜ୍ଞାନ ଲୋକ ନିକଟରେ ଯେଉଁ ବସ୍ତୁ ଅନାବଶ୍ୟକ ବୋଧହୁଏ, ଅର୍ଥାତ୍ ସେମାନଙ୍କ ନିକଟରେ ଯାହା ଅନ୍ଧକାର, ତାହାହିଁ ଜ୍ଞାନୀ ଲୋକଙ୍କ ପକ୍ଷରେ ଆବଶ୍ୟକ । ଯହିଁରେ ଅଜ୍ଞାନୀଲୋକ ମଗ୍ନ ଥାଆନ୍ତି ଅର୍ଥାତ୍ ସେମାନଙ୍କ ନିକଟରେ ଯାହା ଉଜ୍ଜ୍ୱଳ ଆଲୋକ ସେହିଠାରେ ଜ୍ଞାନୀଲୋକ ଅନ୍ଧକାର ଦେଖନ୍ତି । ଜ୍ଞା-

ଆପୂର୍ଯ୍ୟମାଣମଚଳପ୍ରତିଷ୍ଠଂ
ସମୁଦ୍ରମାପଃ ପ୍ରବିଶନ୍ତି ଯଦ୍‌ବତ୍ ।
ତଦ୍‌ବତ୍ କାମା ଯଂ ପ୍ରବିଶନ୍ତି ସର୍ବେ
ସ ଶାନ୍ତିମାପ୍ନୋତି ନ କାମକାମୀ । ୭୦ ।

ବ୍ୟକ୍ତି କାମ୍ୟକର୍ମକୁ ତୁଚ୍ଛ ମନେ କରନ୍ତି କିନ୍ତୁ ସାଧାରଣଲୋକ ତହିଁରେ ବୁଡ଼ି ରହିଥାଆନ୍ତି ଏବଂ ସଂଯମୀବ୍ୟକ୍ତି ଯେଉଁ ନିଷ୍କାମକର୍ମ ଇଚ୍ଛାକରନ୍ତି, ସାଧାରଣ ଲୋକ ତାହା ମୋଟେ ଇଚ୍ଛା କରନ୍ତି ନାହିଁ ।

୭୦ । **ଅନ୍ୱୟଦୀପିକା**—ଯଦ୍‌ବତ୍ ( ଯେପରି ) ଅପଃ (ବାରିରାଶି) ଆପୂର୍ଯ୍ୟମାଣମ୍ ( ପରିପୂର୍ଣ୍ଣ ) ଅଚଳପ୍ରତିଷ୍ଠମ୍ ( ସ୍ଥିରଭାବରେ ଅବସ୍ଥିତ ) ସମୁଦ୍ରଂ ପ୍ରବିଶନ୍ତି ( ସମୁଦ୍ରରେ ପ୍ରବେଶକରେ ), ତଦ୍‌ବତ୍ ( ସେହିପରି ) ସର୍ବେକାମାଃ ( ସମସ୍ତ ବିଷୟରାଶି ) ଯଂ ପୁରୁଷଂ ( ଯେଉଁ ପୁରୁଷଠାରେ ) ପ୍ରବିଶନ୍ତି ( ପ୍ରବେଶ କରେ ) ସଃ ଶାନ୍ତିମ୍ ଆପ୍ନୋତି ( ସେ ଶାନ୍ତି ପ୍ରାପ୍ତ ହୁଅନ୍ତି ) କାମକାମୀ ( ବିଷୟକାମୀ ପୁରୁଷ ) ନ ( ଶାନ୍ତି ପାଆନ୍ତି ନାହିଁ ) ।

**ଅନୁବାଦ**—ଯେପରି ସର୍ବଦା ଜଳ ପରିପୂର୍ଣ୍ଣ ସ୍ଥିର ପ୍ରଶାନ୍ତ ସମୁଦ୍ରରେ ନଦ ନଦୀର ଜଳ ଓ ବୃଷ୍ଟିର ବାରିଧାରା ପ୍ରବେଶ କଲେହେଁ ତହିଁରେ ବିକ୍ଷୋଭ ଦେଖାଯାଏ ନାହିଁ, ସେହିପରି ଯାହାଙ୍କ ଚିତ୍ତରେ ନାନାବିଧ କାମନାମୂଳକ ବିଷୟସମୂହ ପ୍ରବେଶ କଲେହେଁ ଚିତ୍ତବିକ୍ଷୋଭ ଜାତ ହୁଏ ନାହିଁ, ଅର୍ଥାତ୍ ଯେ ସର୍ବଦା ସ୍ଥିର ଓ ପ୍ରଶାନ୍ତ ଭାବରେ ଅବସ୍ଥାନ କରନ୍ତି ସେ କେବଳ ସର୍ବଦୁଃଖ ନିବୃତ୍ତି ରୂପ ପରମ ଶାନ୍ତି ଲାଭ କରନ୍ତି । କିନ୍ତୁ ଯେ ସର୍ବଦା ଭୋଗକାମନାରେ ବ୍ୟାକୁଳ ସେ ଶାନ୍ତି ପାଆନ୍ତି ନାହିଁ ।

**ସୁବୋଧିନୀ ଟୀକା**—ନନୁ 'ବିଷୟେଷୁ ଦୃଷ୍ଟ୍ୟାଭାବେ କଥମସୌ ତାନ୍ ଭୁଙ୍‌କ୍ତେ ଇତ୍ୟପେକ୍ଷାୟାମାହ—ଆପୂର୍ଯ୍ୟମାଣ ମିତି । ନାନା ନଦନଦୀଭିରାପୂର୍ଯ୍ୟ-ମାଣମପ୍ୟଚଳପ୍ରତିଷ୍ଠମନତିକ୍ରାନ୍ତମର୍ଯ୍ୟାଦମେବ ସମୁଦ୍ରଂ ପୁନରପ୍ୟନ୍ୟା ଅପୋ ଯଥା ପ୍ରବିଶନ୍ତି ତଥା କାମା ବିଷୟା ଯଂ ମୁନିମନ୍ତର୍ଦୃଷ୍ଟିଂ ଭୋଗୈରବିକ୍ରିୟମାଣମେବ ପ୍ରାରବ୍ଧକର୍ମଭିରାକ୍ଷିପ୍ତାଃ ସନ୍ତଃ ପ୍ରବିଶନ୍ତି ସ ଶାନ୍ତିଂ କୈବଲ୍ୟଂ ପ୍ରାପ୍ନୋତି । ନତୁ କାମକାମୀ ଭୋଗକାମନାଶୀଳଃ ।

**ବିବୃତି**—ସମୁଦ୍ର ସର୍ବଦା ଜଳରେ ପୂର୍ଣ୍ଣ ଥାଏ, ସେ ନଦନଦୀର ଜଳ ବା ବୃଷ୍ଟି ଜଳକୁ ଅନ୍ୱେଷଣ କରୁ ନ ଥାଏ । କିନ୍ତୁ ସେସବୁ ଜଳ ସ୍ୱତଃ ସମୁଦ୍ରରେ ପ୍ରବେଶ କରେ, ତଦ୍ଦ୍ୱାରା ସମୁଦ୍ରର ବୃଦ୍ଧି ବା ବିକ୍ଷୋଭ ଦେଖାଯାଏ ନାହିଁ; ସେହିପରି ଇନ୍ଦ୍ରିୟମାନେ ଯାହାଙ୍କର ବଶବର୍ତ୍ତୀ, ଭୋଗସୁଖ ନିଜେ ନିଜେ ଆସି ତାଙ୍କ ନିକଟରେ ଉପସ୍ଥିତ ହୁଏ, ତେଣୁ ସେ ତହିଁରେ ବିକ୍ଷୁବ୍ଧ ନ ହୋଇ ପୂର୍ବପରି ସ୍ଥିର

ବିହାୟ କାମାନ୍ ଯଃ ସର୍ବାନ୍ ପୁମାଂଶ୍ଚରତି ନିସ୍ପୃହଃ ।
ନିର୍ମମୋ ନିରହଂକାରଃ ସଶାନ୍ତିମଧିଗଚ୍ଛତି ॥ ୭୧ ।
ଏଷା ବ୍ରାହ୍ମୀସ୍ଥିତିଃ ପାର୍ଥ ନୈନାଂ ପ୍ରାପ୍ୟ ବିମୁହ୍ୟତି ।
ସ୍ଥିତ୍ୱାସ୍ୟାମନ୍ତକାଲେଽପି ବ୍ରହ୍ମନିର୍ବାଣମୃଚ୍ଛତି । ୭୨ ।

ଇତି ଶ୍ରୀ ମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀ ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ସାଂଖ୍ୟଯୋଗୋ ନାମ ଦ୍ୱିତୀୟୋଽଧ୍ୟାୟଃ ।

ଓ ପ୍ରଶାନ୍ତ ରହନ୍ତି । କିନ୍ତୁ ଯେ ଇନ୍ଦ୍ରିୟପରବଶ ଓ କାମନା ପରତନ୍ତ୍ର ସେ କଦାପି ଶାନ୍ତିଲାଭ କରି ପାରନ୍ତି ନାହିଁ ।

**୭୧ । ଅନ୍ୱୟ୍‌ଦୀପିକା**—ଯଃ ପୁମାନ୍ (ଯେଉଁ ପୁରୁଷ) ସର୍ବାନ୍ କାମାନ୍ ବିହାୟ ( ସମସ୍ତ କାମନା ତ୍ୟାଗକରି ) ନିସ୍ପୃହଃ, ନିର୍ମମଃ, **ନିରହଂକାରଃ** ( ସ୍ପୃହାଶୂନ୍ୟ, ମମତାଶୂନ୍ୟ ଓ ଅହଂକାରଶୂନ୍ୟ ହୋଇ ) ଚରତି ( ବିଚରଣ କରନ୍ତି) ସଃ ଶାନ୍ତିମ୍ (ଶାନ୍ତିକୁ) ଅଧିଗଚ୍ଛତି (ପ୍ରାପ୍ତହୁଅନ୍ତି) ।

**ଅନୁବାଦ**—ଯେଉଁ ପୁରୁଷ ସମସ୍ତ କାମନା ତ୍ୟାଗକରି ଅପ୍ରାପ୍ତ ବସ୍ତୁରେ ସ୍ପୃହାହୀନ, ଅହଂକାରଶୂନ୍ୟ ଓ ପ୍ରାପ୍ତବସ୍ତୁରେ ମମତାଶୂନ୍ୟ ହୋଇ ବିଚରଣ କରନ୍ତି ସେହି ଏକା ଶାନ୍ତିଲାଭ କରନ୍ତି ।

**ସୁବୋଧିନୀ ଟୀକା**—ଯସ୍ମାଦେବଂ ତସ୍ମାତ୍—ବିହାୟେତି, ପ୍ରାପ୍ତାନ୍ କାମାନ୍ ବିହାୟତ୍ୟକ୍ତ୍ୱୋପେକ୍ଷ୍ୟାପ୍ରାପ୍ତେଷୁ ଚ ନିସ୍ପୃହଃ। ଯତୋ ନିରହଂକାରୋଽତ- ଏବ ତଦ୍‌ଭୋଗସାଧନେଷୁ ନିର୍ମମଃ ସନ୍ନନ୍ତର୍ଦୃଷ୍ଟିର୍ଭୂତ୍ୱା ଯଶ୍ଚରତି ପ୍ରାରବ୍ଧବଶେନ ଭୋଗାନ୍ ଭୁଙ୍‌କ୍ତେ । ଯତ୍ରକୁତ୍ରାପି ଗଚ୍ଛତି ବା, ସ ଶାନ୍ତିଂ ପ୍ରାପ୍ନୋତି ।

**ବିବୃତି**—ଅପ୍ରାପ୍ତବସ୍ତୁ ପାଇବାରେ ଯାହାର ଆକାଙ୍‌କ୍ଷା ନ ଥାଏ ତାହାକୁ ନିସ୍ପୃହ କୁହାଯାଏ । ମୋର ଦେହ, ମୋର ଘର, ମୋର ଧନ ଇତ୍ୟାଦି ମମତା ଯାହାର ନ ଥାଏ ସେ ନିର୍ମମ । ମୁଁ ବିଦ୍ୱାନ୍, ମୁଁ ଧନୀ ଇତ୍ୟାଦି 'ମୁଁ' ଜ୍ଞାନ ଯାହାର ନ ଥାଏ ସେ ନିରହଂକାରଃ । 'ଚରତି'—ପଦର ଅର୍ଥ ବିଚରଣ କରିବା ବା ବୁଲିବା । କର୍ମଯୋଗୀଙ୍କ ପକ୍ଷରେ ବିଷୟରେ ବିଚରଣ କରିବା ଅର୍ଥହିଁ ଗ୍ରହଣ କରିବାକୁ ହେବ ।

ଯେତେବେଳେ ପୁରୁଷ ଆତ୍ମାରାମ ଅବସ୍ଥାରେ ରହନ୍ତି ଅର୍ଥାତ୍ ଆତ୍ମସତ୍ତା ହୃଦୟରେ ଅନୁଭବ କରିପାରନ୍ତି, ସେତେବେଳେ ଏକା ସେ ନିସ୍ପୃହ, ନିର୍ମମ ଓ ନିରହଂକାରି ହୋଇ ପାରନ୍ତି ।

**୭୨ । ଅନ୍ୱୟ୍‌ଦୀପିକା**—ହେ ପାର୍ଥ ( ହେ ଅର୍ଜୁନ ), ଏଷା ବ୍ରାହ୍ମୀ ସ୍ଥିତିଃ ( ଏହାହିଁ ବ୍ରହ୍ମନିଷ୍ଠ ଅବସ୍ଥାରେ ଅବସ୍ଥାନ ) । ଏନାଂ ପ୍ରାପ୍ୟ ( ଏହାକୁ

ପାଇ ) ନ ବିମୁହ୍ୟତି ( କେହି ସଂସାରମୋହ ପ୍ରାପ୍ତ ହୁଅନ୍ତି ନାହିଁ ) ଅନ୍ତକାଳେ ଅପି ( ମୃତ୍ୟୁକାଳରେ ମଧ୍ୟ ) ଅସ୍ୟାଂ ସ୍ଥିତ୍ୱା (ଏହି ଅବସ୍ଥାରେ ରହି) ବ୍ରହ୍ମନିର୍ବାଣଂ ଋଚ୍ଛତି ( ବ୍ରହ୍ମନିର୍ବାଣ ଲାଭ କରନ୍ତି ) ।

**ଅନୁବାଦ**—ହେ ଅର୍ଜ୍ଜୁନ, ଏହାହିଁ ବ୍ରାହ୍ମୀସ୍ଥିତି ବା ବ୍ରହ୍ମନିଷ୍ଠାରେ ଅବସ୍ଥାନ । ଏ ଅବସ୍ଥା ପ୍ରାପ୍ତ ହେଲେ ଜୀବର୍ ଆଉ ମୋହ ରହେ ନାହିଁ । ମୃତ୍ୟୁକାଳରେ ମଧ୍ୟ ଏହି ଅବସ୍ଥାରେ ରହି ଲୋକ ବ୍ରହ୍ମରେ ମିଳନରୂପ ମୋକ୍ଷ ଲାଭ କରନ୍ତି ।

**ସୁବୋଧିନୀ ଟୀକା**—ଉକ୍ତାଂ ଜ୍ଞାନନିଷ୍ଠାଂ ସ୍ତୁବନ୍ନୁପସଂହରତି—ଏଷେତି । ବ୍ରାହ୍ମୀସ୍ଥିତି ର୍ବ୍ରହ୍ମଜ୍ଞାନନିଷ୍ଠା । ଏଷୈବମ୍ଭୂତା । ଏନାଂ ପରମେଶ୍ୱରାରାଧନେନ ବିଶୁଦ୍ଧାନ୍ତଃକରଣଃ ପୁମାନ୍ ପ୍ରାପ୍ୟ ନ ବିମୁହ୍ୟତି ପୁନଃ ସଂସାରମୋହଂ ନ ପ୍ରାପ୍ନୋତି । ଯତୋଽନ୍ତକାଳେ ମୃତ୍ୟୁସମୟେଽପ୍ୟସ୍ୟାଂ କ୍ଷଣମାତ୍ରମପି ସ୍ଥିତ୍ୱା ବ୍ରହ୍ମନିର୍ବାଣଂ ବ୍ରହ୍ମଣି ନିର୍ବାଣଂ ଲୟମୃଚ୍ଛତି ପ୍ରାପ୍ନୋତି । କିଂ ପୁନର୍ବକ୍ତବ୍ୟଂ ବାଲ୍ୟମାରଭ୍ୟ ସ୍ଥିତ୍ୱା ପ୍ରାପ୍ନୋତୀତି ।

ଶୋକପଙ୍କନିମଗ୍ନଂ ଯଃ ସାଙ୍ଖ୍ୟଯୋଗୋପଦେଶତଃ,
ଉଜ୍ଜହାରାର୍ଜ୍ଜୁନଂ ଭକ୍ତଂ ସ କୃଷ୍ଣଃ ଶରଣଂ ମମ ।

ଇତି ଶ୍ରୀ ଶ୍ରୀଧରସ୍ୱାମିକୃତାୟାଂ ଭଗବଦ୍‌ଗୀତାଟୀକାୟାଂ ସୁବୋଧିନ୍ୟାଂ ଦ୍ୱିତୀୟୋଽଧ୍ୟାୟଃ ।

**ବିବୃତି**—ବ୍ରାହ୍ମୀସ୍ଥିତିର ଅର୍ଥ ସମସ୍ତ କାମନା ତ୍ୟାଗପୂର୍ବକ ଇନ୍ଦ୍ରିୟସଂଯମକରି ନିର୍ମମ ଓ ନିସ୍ପୃହ ହୋଇ ଈଶ୍ୱରଚିନ୍ତାରେ ଏକନିଷ୍ଠ ହେବା । ଏ ଅବସ୍ଥାରେ ଉପସ୍ଥିତ ହେଲେ ଆଉ ସଂସାର ମୋହ ରହେ ନାହିଁ । କ୍ଷଣକାଳ ପାଇଁ ଏ ଅବସ୍ଥା ଆସିଲେ ତଦ୍ଦ୍ୱାରା ବିଶେଷ କିଛି ଲାଭ ହୁଏ ନାହିଁ । ମୃତ୍ୟୁ ସମୟରେ ଏହି ଅବସ୍ଥା ରହିବା ନିତାନ୍ତ ଆବଶ୍ୟକ । କାରଣ ମୃତ୍ୟୁ ସମୟରେ ମନୁଷ୍ୟ ବାସନାଶୂନ୍ୟ ହୋଇ ନ ପାରିଲେ ପୁନର୍ଜନ୍ମ ନିଶ୍ଚିତ । ବାଲ୍ୟକାଳରୁ ଯାହାଙ୍କର ଏହି ବାସନାତ୍ୟାଗ ଅଭ୍ୟାସ ନ ଥିବ, ମରଣ କାଳରେ ହଠାତ୍ ସେ ଭାବ ଜାତ ହେବା ସହଜ ନୁହେ । ତେଣୁ ବାଲ୍ୟକାଳରୁ ଏଥିପାଇଁ ଚେଷ୍ଟା କରିବାକୁ ହେବ । କେବଳ ଆମ ବୈଦିକ ଧର୍ମରେ ମୃତ୍ୟୁକାଳରେ ବାସନାଶୂନ୍ୟ ରହିବା ପାଇଁ ଉପଦେଶ ଦିଆଯାଏ ନାହିଁ, ଅନ୍ୟାନ୍ୟ ଧର୍ମରେ ମଧ୍ୟ ଏହିପରି ଉପଦେଶ ଦିଆହୁଏ ।

---

## ଦ୍ୱିତୀୟ ଅଧ୍ୟାୟର ସାର ସଂକଳନ

ଏ ଅଧ୍ୟାୟର ୧୦ମ ଶ୍ଳୋକଯାଏ ପ୍ରଥମ ଅଧ୍ୟାୟରେ ବର୍ଣ୍ଣିତ ହୋଇଥିବା ଅର୍ଜ୍ଜୁନଙ୍କ ବିଷାଦର ସମ୍ପ୍ରସାରଣ କରାଯାଇଅଛି ଏବଂ ୧୧ଶ ଶ୍ଳୋକଠାରୁ ଧର୍ମତତ୍ତ୍ୱ ଆଲୋଚିତ ହୋଇଅଛି । ଯଥାର୍ଥରେ ଏହି ଅଧ୍ୟାୟର ଏକାଦଶ ଶ୍ଳୋକରୁ ଗୀତାର ଆରମ୍ଭ । ଭୀଷ୍ମ, ଦ୍ରୋଣ ପ୍ରମୁଖ ଗୁରୁଜନଙ୍କର ତଥା ଯୁଦ୍ଧରେ ଉପସ୍ଥିତ ହୋଇଥିବା ଅନ୍ୟାନ୍ୟ ଆତ୍ମୀୟ ସ୍ୱଜନଙ୍କର ବିନାଶ ଆଶଙ୍କା ଅର୍ଜ୍ଜୁନଙ୍କ ବିଷାଦର ମୁଖ୍ୟ କାରଣ । ସେହି ହେତୁରୁ ପ୍ରଥମେ ଭଗବାନ୍ ଅର୍ଜ୍ଜୁନଙ୍କୁ କହୁଅଛନ୍ତି, ଆତ୍ମତତ୍ତ୍ୱଜ୍ଞ ପଣ୍ଡିତମାନେ ମୃତ୍ୟୁକୁ ଭୟ କରନ୍ତି ନାହିଁ; କାରଣ ପ୍ରକୃତରେ କେହି ମରନ୍ତି ନାହିଁ; ବାଲ୍ୟ, ଯୌବନ, ବାର୍ଦ୍ଧକ୍ୟ ଯେପରି ମନୁଷ୍ୟର ବିଭିନ୍ନ ଅବସ୍ଥା ମୃତ୍ୟୁ ସେହିପରି ଗୋଟିଏ ଅବସ୍ଥା ଅର୍ଥାତ୍ ଦେହାନ୍ତରପ୍ରାପ୍ତିମାତ୍ର । ଏପରି ଅବସ୍ଥାରେ ଗୁରୁ ଏବଂ ଆତ୍ମୀୟ ସ୍ୱଜନଙ୍କର ବିନାଶ ଆଶଙ୍କାରେ ଶୋକ କରିବା ଉଚିତ ନୁହେ । ୧୧ଶ ଶ୍ଳୋକରୁ ୩୦ଶ ଶ୍ଳୋକଯାଏ ଦେହର ନଶ୍ୱରତା ଏବଂ ଆତ୍ମାର ଅବିନାଶିତା ବର୍ଣ୍ଣିତ ହୋଇଅଛି । ତାପରେ ୩୧ଶ ଶ୍ଳୋକଠାରୁ ୩୭ ଶ୍ଳୋକ ଯାଏ ୭ଗୋଟି ଶ୍ଳୋକରେ କ୍ଷତ୍ରିୟର ଧର୍ମଯୁଦ୍ଧ କର୍ତ୍ତବ୍ୟ, ଯୁଦ୍ଧରେ ପରାଙ୍ମୁଖ ହେବା ଭୀରୁତା ବା କାପୁରୁଷତା, ବିଶେଷତଃ ଯେ କୌଣସି କୀର୍ତ୍ତିଶାଳୀ କ୍ଷତ୍ରିୟ ଯୋଦ୍ଧା ପକ୍ଷରେ ଘୋର ନିନ୍ଦାଜନକ ଓ ଅକୀର୍ତ୍ତିକର—ଲୌକିକ ଧର୍ମଶାସ୍ତ୍ର ଦୃଷ୍ଟିରେ ଏହା ବୁଝାଇ ଦିଆଯାଇଅଛି । ଭଗବାନ୍ ଜାଣିପାରିଲେ ଏହି ଜନନୁକୂଳ ଉପଦେଶ ଓ ଲୋକନିନ୍ଦାଭୟ ଅର୍ଜ୍ଜୁନଙ୍କର ବିଷାଦମ୍ଳାନ ଅନ୍ତଃକରଣକୁ ନିର୍ମଳ କରିପାରିଲା ନାହିଁ । ଅର୍ଜ୍ଜୁନଙ୍କର ସଂଶୟ—ଆତ୍ମା ଅବିନାଶୀ ହେଲେହେଁ ନରହତ୍ୟାରେ କଅଣ ପାପ ନାହିଁ ? ଯୁଦ୍ଧ କରିବା କ୍ଷତ୍ରିୟର କର୍ତ୍ତବ୍ୟ ବୋଲି କଅଣ ସେଥିରେ ଗୁରୁବଧ କରିବାକୁ ହେବ ? ଅନ୍ତର୍ଯ୍ୟାମୀ ଭଗବାନ୍ ଅର୍ଜ୍ଜୁନଙ୍କର ଏଭଳି ମନୋଭାବ ବୁଝିପାରି ଅପୂର୍ବ କର୍ମଯୋଗର ବ୍ୟାଖ୍ୟା ଆରମ୍ଭ କଲେ । ଭଗବାନ୍ କହିଲେ, ଅର୍ଜ୍ଜୁନ, ତୁମେ ଯେବେ ରାଜ୍ୟଲୋଭ-କାମନାରେ ଯୁଦ୍ଧରେ ପ୍ରବୃତ୍ତ ହୁଅ ତେବେ ନିଶ୍ଚୟ ପାପଭାଗୀ ହେବ ବା କର୍ମର ଫଳ ଭୋଗ କରିବ, କିନ୍ତୁ ତୁମେ ଯେବେ ଯୋଗସ୍ଥ ହୋଇ ଜୟ ପରାଜୟ, ଲାଭକ୍ଷତି ପ୍ରତି ଅପେକ୍ଷା ନ ରଖି କର୍ତ୍ତବ୍ୟ ବୁଦ୍ଧିରେ ଯୁଦ୍ଧକର ତେବେ ପାପ ତୁମ୍ଭକୁ ସ୍ପର୍ଶ କରିପାରିବ ନାହିଁ, ଏହି ସାମ୍ୟ ବୁଦ୍ଧିଯୁକ୍ତ କର୍ମହିଁ ନିଷ୍କାମକର୍ମ, ପାପ ପୁଣ୍ୟ, ସ୍ୱର୍ଗ ନରକ ସକାମ କର୍ମର ଫଳ । ଯେ ସାମ୍ୟବୁଦ୍ଧିଯୁକ୍ତ ହୋଇ ହୃଦୟରେ ଫଳାକାଙ୍କ୍ଷା ନ କରି କର୍ତ୍ତବ୍ୟଜ୍ଞାନରେ କର୍ମ କରନ୍ତି ସେ ପାପପୁଣ୍ୟ ପରିତ୍ୟାଗ କରି ନିଷ୍କାମକର୍ମୀଙ୍କର ପ୍ରାପ୍ୟ ମୋକ୍ଷପଦ ପ୍ରାପ୍ତ ହୁଅନ୍ତି । କାମ୍ୟକର୍ମର ଫଳକଥା ଶୁଣି ବୁଦ୍ଧି ବିକ୍ଷିପ୍ତ ହୋଇଥାଏ ମାତ୍ର ସେହି ବିକ୍ଷିପ୍ତବୁଦ୍ଧି ଯେତେବେଳେ ପରମାତ୍ମାଙ୍କଠାରେ ଏକନିଷ୍ଠ ହୋଇ ରହେ ସେତେବେଳେ ବିଷୟାସକ୍ତି ଦୂରୀ

ହୋଇଯାଏ ଓ ପ୍ରଜ୍ଞା ସ୍ଥିର ହୁଏ । ଅତଏବ ତୁମେ ସଂଯତେନ୍ଦ୍ରିୟ ହୋଇ କାମନାସମୂହ ଓ ମମତ୍ୱବୁଦ୍ଧି ତ୍ୟାଗକରି ପରମାତ୍ମାଙ୍କଠାରେ ଶରଣାପନ୍ନ ହୁଅ । ତାହାହେଲେ ତୁମେ ସ୍ଥିତପ୍ରଜ୍ଞ ହେବ । ସ୍ଥିତପ୍ରଜ୍ଞ ବ୍ୟକ୍ତି ଆତ୍ମବଶୀଭୂତ ଇନ୍ଦ୍ରିୟାଦିଦ୍ୱାରା କର୍ମ କଲେହେଁ କର୍ମଫଳରେ ଆବଦ୍ଧ ହୁଅନ୍ତି ନାହିଁ । ଏହାର ନାମ ବ୍ରାହ୍ମୀସ୍ଥିତି । ସାଧକ ଏହି ଅବସ୍ଥା ପ୍ରାପ୍ତହେଲେ ଅନ୍ତକାଳରେ ବ୍ରହ୍ମନିର୍ବାଣ ବା ମୁକ୍ତିର ଅଧିକାରୀ ହୁଅନ୍ତି ।

ପ୍ରାଚୀନଭାରତରେ ବୈଦିକ କର୍ମଯୋଗ ଖୁବ୍ ପ୍ରବଳ ଥିଲା; ଅଶ୍ୱମେଧ, ରାଜସୂୟାଦି ଯଜ୍ଞ କାମ୍ୟକର୍ମରୂପେ ଅନୁଷ୍ଠିତ ହେଉଥିଲା । ପରବର୍ତ୍ତୀକାଳରେ ବେଦାନ୍ତ ବା ଉପନିଷଦ୍‌ଯୁଗରେ ଜ୍ଞାନାଲୋଚନା ଦ୍ୱାରା କାମ୍ୟକର୍ମର ଅସାରତା ପ୍ରତିପାଦିତ ହେଲା । ତେଣୁ ସକାମକର୍ମବାଦୀ ଓ ଜ୍ଞାନବାଦୀଙ୍କ ମଧ୍ୟରେ ମତର ଅସାମଞ୍ଜସ୍ୟ ଓ ବିରୋଧ ବହୁଦିନରୁ ଚାଲିଆସୁଥିଲା । ଏ ଅଧ୍ୟାୟରେ ପୂର୍ବୋକ୍ତ ଜ୍ଞାନବାଦ ଓ କର୍ମବାଦର ବିରୋଧରେ ସାମଞ୍ଜସ୍ୟ ଆଣିବାପାଇଁ ଅଧ୍ୟାତ୍ମ ଉପଦେଶ ଆରମ୍ଭ ହୋଇଅଛି । କି ବୈଦିକ କର୍ମଯୋଗ ଓ କି ବୈଦାନ୍ତିକ ଜ୍ଞାନଯୋଗ କାହିଁରେ ଭଗବଦ୍‌ଭକ୍ତିର ସ୍ଥାନ ନାହିଁ । ଭଗବାନ୍ ଏହି ମତଦ୍ୱୟ ମଧ୍ୟରେ ସାମଞ୍ଜସ୍ୟ ବିଧାନ ପାଇଁ ଯେଉଁ ଭଗବଦ୍‌ଭକ୍ତିକୁ ମୂଳସୂତ୍ରରୂପେ ଗ୍ରହଣ କରିଅଛନ୍ତି ତାହା ଏହି ଅଧ୍ୟାୟର ୬୧ ଶ୍ଳୋକରେ 'ଯୁକ୍ତ ଆସୀତ ମତ୍ପରଃ' ଏହି ଗୋଟିଏ କଥାରେହିଁ ସୂଚିତ ହୋଇଅଛି ଏବଂ ପରବର୍ତ୍ତୀ ଅଧ୍ୟାୟ-ମାନଙ୍କରେ ଏହାର ବିସ୍ତାରିତ ଆଲୋଚନା ନାନାପ୍ରସଙ୍ଗରେ କରାଯାଇଅଛି ।

ଆତ୍ମତତ୍ତ୍ୱ ବିଷୟକ ଜ୍ଞାନହିଁ ଏ ଅଧ୍ୟାୟର ପ୍ରଧାନ ଆଲୋଚ୍ୟ ବିଷୟ । ତେଣୁ ଏହା ସାଂଖ୍ୟଯୋଗ ନାମରେ ଅଭିହିତ ହୋଇଅଛି । କର୍ମ, ଜ୍ଞାନ ଓ ଭକ୍ତି ମଧ୍ୟରେ ଯେଉଁ ସାମଞ୍ଜସ୍ୟ ବିଧାନ କରିବା ଭଗବଦ୍‌ଗୀତାର ଲକ୍ଷ୍ୟ, ଏ ଅଧ୍ୟାୟରେ ସେସବୁର ଇଙ୍ଗିତ ଥିବାରୁ ଏହାକୁ 'ଗୀତାର୍ଥସୂତ୍ର' କୁହାଯାଏ ।

---

# ତୃତୀୟୋଽଧ୍ୟାୟଃ

ଅର୍ଜୁନ ଉବାଚ

ଜ୍ୟାୟସୀ ଚେତ୍ କର୍ମଣସ୍ତେ ମତା ବୁଦ୍ଧିର୍ଜନାର୍ଦ୍ଦନ ।
ତତ୍ କିଂ କର୍ମଣି ଘୋରେ ମାଂ ନିୟୋଜୟସି କେଶବ । ୧ ।

୧ । **ଅନ୍ୱୟଦୀପିକା**—ଅର୍ଜୁନଃ ଉବାଚ ( ଅର୍ଜୁନ କହିଲେ ), ହେ ଜନାର୍ଦ୍ଦନ ! ଚେତ୍ ( ଯଦି ) କର୍ମଣଃ (କର୍ମ ଅପେକ୍ଷା ) ବୁଦ୍ଧିଃ (ଜ୍ଞାନ) ଜ୍ୟାୟସୀ ( ଶ୍ରେଷ୍ଠ ) ତେ ମତା (ତୁମ୍ଭର ମତ ଅଟେ ), ତତ୍ (ତା ହେଲେ) ହେ କେଶବ, କିଂ (କି ହେତୁରୁ) ଘୋରେ କର୍ମଣି ( ହିଂସାତ୍ମକ ଯୁଦ୍ଧ କାର୍ଯ୍ୟରେ ) ମାଂ ( ମୋତେ ) ନିୟୋଜୟସି (ନିୟୋଜିତ କରୁଅଛ ) ।

**ଅନୁବାଦ**—ଅର୍ଜୁନ କହିଲେ, ହେ ଜନାର୍ଦ୍ଦନ ! ଯେବେ ତୁମ ମତରେ କର୍ମ ଅପେକ୍ଷା ବୁଦ୍ଧି ଶ୍ରେଷ୍ଠ, ତେବେ ହେ କେଶବ, କି ହେତୁରୁ ଘୋର ହିଂସାତ୍ମକ କର୍ମ କରିବାପାଇଁ ମୋତେ ପ୍ରେରଣା ଦେଉଅଛ ?

**ସୁବୋଧିନୀ ଟୀକା**—ଏବଂ ତାବଦଶୋଚ୍ୟାନନ୍ୱଶୋଚସ୍ତ୍ୱମିତ୍ୟାଦିନା ପ୍ରଥମଂ ମୋକ୍ଷସାଧନତ୍ୱେନ ଦେହାତ୍ମବିବେକବୁଦ୍ଧିରୁକ୍ତା । ତଦନନ୍ତର ମେଷା ତେଽଭିହିତା ସାଙ୍ଖ୍ୟେବୁଦ୍ଧି ର୍ଯୋଗେତ୍ୱିମାଂ ଶୃଣ୍ୱିତ୍ୟାଦିନା କର୍ମ ଚୋକ୍ତମ୍ । ନ ଚ ତୟୋ ର୍ଗୁଣପ୍ରଧାନଭାବଃ ସ୍ପଷ୍ଟଂ ଦର୍ଶିତଃ । ତତ୍ର ବୁଦ୍ଧିଯୁକ୍ତସ୍ୟ ସ୍ଥିତପ୍ରଜ୍ଞସ୍ୟ ନିଷ୍କାମତ୍ୱନିୟତେନ୍ଦ୍ରିୟତ୍ୱନିରହଙ୍କାରତ୍ୱାଦିଭିଧାନାଦେଷା ବ୍ରାହ୍ମୀସ୍ଥିତିଃ ପାର୍ଥେତି ପ୍ରଶଂସନାଚ୍ଚ ବୁଦ୍ଧିକର୍ମଣୋର୍ମଧ୍ୟେ ବୁଦ୍ଧେଃ ଶ୍ରେଷ୍ଠତ୍ୱଂ ଭଗବତୋଽଭିପ୍ରେତଂ ମନ୍ୱାନୋଽର୍ଜୁନ ଉବାଚ—ଜ୍ୟାୟସୀ ଚେଦିତି । କର୍ମଣଃ ସକାଶାନ୍ମୋକ୍ଷାନ୍ତରଙ୍ଗତ୍ୱେନ ବୁଦ୍ଧିର୍ଜ୍ୟାୟସ୍ୟଧିକତରା ଶ୍ରେଷ୍ଠା ଚେତ୍ତବ ସମ୍ମତା ତର୍ହି କିମର୍ଥଂ ତସ୍ମାଦ୍ୟୁଧ୍ୟସ୍ୱେତି ତସ୍ମାଦୁତିଷ୍ଠେତି ଚ ବାରଂବାରଂ ବଦନ୍ ଘୋରେ ହିଂସାତ୍ମକେ କର୍ମଣି ମାଂ ନିୟୋଜୟସି ପ୍ରବର୍ତ୍ତୟସି ।

**ବିବୃତି**—ଗୀତାତତ୍ତ୍ୱ ଆରମ୍ଭରେ ପ୍ରଥମେ ଭଗବାନ୍ 'ଅଶୋଚ୍ୟାନନ୍ୱଶୋଚସ୍ତ୍ୱଂ' ଇତ୍ୟାଦି ଶ୍ଳୋକରେ ଆତ୍ମାର ନିତ୍ୟତା ଓ ଅଶୋଚ୍ୟତ୍ୱ ପ୍ରଭୃତିଦ୍ୱାରା ସିଦ୍ଧକଲେ ଯେ ଭୀଷ୍ମଦ୍ରୋଣ ପ୍ରଭୃତିଙ୍କୁ ମାରିବା ଭୟ ବୃଥା; ତତ୍ପରେ ସ୍ୱଧର୍ମ ପାଳନ ସମ୍ବନ୍ଧରେ ସାମାନ୍ୟ ଆଲୋଚନା କରି ସେହି ଦ୍ୱିତୀୟ ଅଧ୍ୟାୟରେହିଁ ଗୀତାର ମୁଖ୍ୟ ପ୍ରତିପାଦ୍ୟ ବିଷୟ କର୍ମଯୋଗ ସମ୍ବନ୍ଧରେ ଉପଦେଶ ଆରମ୍ଭ କଲେ ଏବଂ ତହିଁରେ ପ୍ରକାଶ କଲେ ଯେ କର୍ମକଲେ ମଧ୍ୟ ତାହାର ପାପ ପୁଣ୍ୟରୁ ରକ୍ଷା ପାଇବା ପାଇଁ ସେହି କର୍ମ ସାମ୍ୟବୁଦ୍ଧିରେ କରିବାକୁ ହେବ ଏବଂ ୪୯ ଶ୍ଳୋକରେ

ବ୍ୟାମିଶ୍ରେଣେବ ବାକ୍ୟେନ ବୁଦ୍ଧିଂ ମୋହୟସୀବ ମେ ।
ତଦେକଂ ବଦ ନିଶ୍ଚିତ୍ୟ ଯେନ ଶ୍ରେୟୋଽହମାପ୍ନୁୟାମ୍ । ୨ ।

ପୁଣି କହିଲେ 'ଦୂରେଣ ହ୍ୟବରଂ କର୍ମ ବୁଦ୍ଧି ଯୋଗାତ୍ ଧନଞ୍ଜୟ'—ଅର୍ଥାତ୍ ବୁଦ୍ଧି ଯୋଗଠାରୁ (ଜ୍ଞାନରୁ) କର୍ମ ବହୁଗୁଣରେ ନିକୃଷ୍ଟ । କୌଣସି କାର୍ଯ୍ୟ ସମବୁଦ୍ଧିରେ କଲେ କର୍ମକର୍ତ୍ତାକୁ ପାପ ସ୍ପର୍ଶକରେ ନାହିଁ--ଏହା ସତ୍ୟ; କିନ୍ତୁ ଯେତେବେଳେ କର୍ମଠାରୁ ସାମ୍ୟବୁଦ୍ଧି ଶ୍ରେଷ୍ଠ—ଏହା ନିଃସନ୍ଦେହରେ କୁହାଗଲା, ସେତେବେଳେ ତହିଁରୁ ଜଣାଗଲା ନାହିଁ ଯେ କର୍ମ କରିବାକୁହିଁ ହେବ । ଏଥିରେ ଅର୍ଜୁନଙ୍କର ସନ୍ଦେହ ଜାତ ହେବା ସ୍ୱାଭାବିକ । ତେଣୁ ଭଗବାନ୍ ଏ ଅଧ୍ୟାୟରେ ଏବଂ ପରବର୍ତ୍ତୀ ଅଧ୍ୟାୟରେ 'କର୍ମ କରିବାକୁ ହେବ' ଏହା ପ୍ରତିପନ୍ନ କରିଅଛନ୍ତି ।

ଯାହାହେଉ, ଜ୍ଞାନ କର୍ମର ଗୁଣପ୍ରାଧାନ୍ୟ ସମ୍ବନ୍ଧରେ ଭଗବାନ୍ ଦ୍ୱିତୀୟ ଅଧ୍ୟାୟରେ ଯାହା କହିଅଛନ୍ତି ତାହା ଟିକିଏ ଗୋଳମାଳିଆ । ବୋଧହୁଏ ଭଗବାନ୍ ଇଚ୍ଛାକରି ତାଙ୍କର ମତ ସେଠାରେ ପରିସ୍ଫୁଟ କରି ନାହାନ୍ତି ଏବଂ ଅର୍ଜୁନଙ୍କର ବିଗୃର ବୁଦ୍ଧିକୁ ଅପେକ୍ଷା କରି ସତେ ଯେପରି ଏହି ବ୍ୟାମିଶ୍ର ଉକ୍ତି କରିଅଛନ୍ତି । ତେଣୁ ତୃତୀୟ ଅଧ୍ୟାୟ ଆରମ୍ଭରେ ଅର୍ଜୁନ ଯେଉଁ ପ୍ରଶ୍ନ କରୁଅଛନ୍ତି ତାହାର ଉତ୍ତର ଉପଲକ୍ଷ୍ୟରେ ଏବେ ଭଗବାନ୍ ଏହି ସନ୍ଦେହ ନିରାକରଣ କରିବାକୁ ଯାଇ ଜ୍ଞାନ କର୍ମର ତାରତମ୍ୟ ଓ ପରସ୍ପର ସମ୍ବନ୍ଧ ବିଷୟରେ ସୁନ୍ଦର ମୀମାଂସା କରିଅଛନ୍ତି । ଏହି ସାମଞ୍ଜସ୍ୟ ବିଧାନ ଏପରି ବିଚିତ୍ର କୌଶଳରେ କରାଯାଇଅଛି, ଯାହା ପୃଥିବୀସ୍ଥ ମାନବଜାତି ପକ୍ଷରେ ଏକାନ୍ତ କଲ୍ୟାଣକର ଏବଂ ଅଧ୍ୟାତ୍ମବିଗୃରର ସାରତତ୍ତ୍ୱ ।

୨ । **ଅନ୍ୱୟଦୀପିକା**—ବ୍ୟାମିଶ୍ରେଣ ଇବ ବାକ୍ୟେନ (ବ୍ୟାମିଶ୍ର ବା ମିଶାମିଶି କଥାଦ୍ୱାରା) ମେ ବୁଦ୍ଧିଂ (ମୋ ବୁଦ୍ଧିକୁ) ମୋହୟସି ଇବ (ସତେ ଯେପରି ମୋହିତ କରୁଅଛ), ଯେନ (ଯାହାଦ୍ୱାରା) ଅହଂ ଶ୍ରେୟଃ (ମୁଁ ମଙ୍ଗଳ) ଆପ୍ନୁୟାଂ (ଲାଭକରି ପାରିବି) ତତ୍ (ସେହି) ଏକଂ ନିଶ୍ଚିତ୍ୟ (ଗୋଟିଏ ନିଶ୍ଚୟ କରି) ବଦ (କହ) ।

**ଅନୁବାଦ**—ବ୍ୟାମିଶ୍ର ବା ମିଶାମିଶି କଥାଦ୍ୱାରା ସତେ ଯେପରି ମୋ ବୁଦ୍ଧିକୁ ମୋହିତ କରୁଅଛ । ଯାହାଦ୍ୱାରା ମୁଁ ମଙ୍ଗଳ ଲାଭକରି ପାରିବି ସେହି ଗୋଟିଏ କଥା ମୋତେ ନିଶ୍ଚୟକରି କହ ।

**ସୁବୋଧିନୀ ଟୀକା**—ନନୁ ଧର୍ମ୍ୟାଦ୍ଧି ଯୁଦ୍ଧାଚ୍ଛ୍ରେୟୋଽନ୍ୟତ୍ କ୍ଷତ୍ରିୟସ୍ୟ ନ ବିଦ୍ୟତ ଇତ୍ୟାଦିନା କର୍ମଣୋଽପି ଶ୍ରେଷ୍ଠତ୍ୱମୁକ୍ତମେବେତ୍ୟାଶଙ୍କ୍ୟାହ —ବ୍ୟାମିଶ୍ରେଣେତି, କ୍ୱଚିତ୍ କର୍ମପ୍ରଶଂସା କ୍ୱଚିତ୍ ଜ୍ଞାନପ୍ରଶଂସେତ୍ୟେବଂ ବ୍ୟାମିଶ୍ରଂ ସନ୍ଦେହୋତ୍ପାଦକମିବ ଯଦ୍‌ବାକ୍ୟଂ ତେନ ମେ ମମ ବୁଦ୍ଧିଂ ମତିମୁଭୟତ୍ର

ଶ୍ରୀ ଭଗବାନୁବାଚ
ଲୋକେଽସ୍ମିନ୍ ଦ୍ୱିବିଧା ନିଷ୍ଠା ପୁରାପ୍ରୋକ୍ତା ମୟାନଘ ।
ଜ୍ଞାନଯୋଗେନ ସାଂଖ୍ୟାନାଂ କର୍ମଯୋଗେନ ଯୋଗିନାମ୍ । ୩ ।

ଦୋଲାୟିତାଂ ବୁଦ୍ଧିଂ ମୋହୟସୀବ । ପରସ୍ପରନିରପେକ୍ଷମେବ ମୋହକତ୍ୱଂ ନାସ୍ତ୍ୟେବ । ତଥାପି ଭ୍ରାନ୍ତ୍ୟା ମମୈବ ଭଗବାନୁବାଚ ଦୋଷୋଲ୍ଲାସନ୍ । ଅତ ଉଭୟୋର୍ମଧ୍ୟେ ଯଦ୍ ଭଦ୍ରଂ ତଦେକଂ ନିଶ୍ଚିତ୍ୟ ବଦେତି । ଯଦ୍ୱା—ଇଦମେବ ଶ୍ରେୟଃ ସାଧନମିତି ନିଶ୍ଚିତ୍ୟ ଯେନାନୁଷ୍ଠିତେନ ଶ୍ରେୟୋ ମୋକ୍ଷମହମାପ୍ନୁୟାଂ ପ୍ରାପ୍ସ୍ୟାମି ତଦେକମେବ ନିଶ୍ଚିତ୍ୟ ବଦେତ୍ୟର୍ଥଃ ।

**ବିବୃତି**—ଏ ଶ୍ଳୋକର ବିବୃତି ଏ ଅଧ୍ୟାୟର ପ୍ରଥମ ଶ୍ଳୋକ ବିବୃତିରେ କୁହାଯାଇଅଛି ।

**୩ । ଅନ୍ୱୟଦୀପିକା**—ଶ୍ରୀ ଭଗବାନ୍ ଉବାଚ (ଶ୍ରୀ ଭଗବାନ୍ କହିଲେ), ହେ ଅନଘ (ନିଷ୍ପାପ ଅର୍ଜୁନ) ଅସ୍ମିନ୍ ଲୋକେ (ଏ ସଂସାରରେ) ଦ୍ୱିବିଧା ନିଷ୍ଠା (ଦୁଇ ପ୍ରକାର ନିଷ୍ଠା ବା ମୋକ୍ଷ ପ୍ରାପ୍ତିର ମାର୍ଗ) ମୟା (ଆମ ଦ୍ୱାରା) ପୁରା ପ୍ରୋକ୍ତା (ପୂର୍ବେ କଥିତ ହୋଇଅଛି) । ଜ୍ଞାନଯୋଗେନ (ଅମୂଳକ ଯୋଗଦ୍ୱାରା) ସାଂଖ୍ୟାନାଂ (ସାଙ୍ଖ୍ୟବାଦୀମାନଙ୍କର), କର୍ମଯୋଗେନ ଯୋଗିନାଂ (ନିଷ୍କାମ କର୍ମଯୋଗଦ୍ୱାରା କର୍ମୀମାନଙ୍କର ନିଷ୍ଠା କଥିତ ହୋଇଅଛି) ।

**ଅନୁବାଦ**—ଶ୍ରୀ ଭଗବାନ୍ କହିଲେ, ହେ ନିଷ୍ପାପ ଅର୍ଜୁନ, ଆମ୍ଭେ ପୂର୍ବେ କହିଅଛୁଁ ଏ ସଂସାରରେ ଦୁଇ ପ୍ରକାର ନିଷ୍ଠା ବା ମୋକ୍ଷ ପାଇବାର ମାର୍ଗ ଅଛି । ସାଂଖ୍ୟମାନଙ୍କ ପାଇଁ ଜ୍ଞାନଯୋଗ ଓ କର୍ମୀମାନଙ୍କ ପାଇଁ କର୍ମଯୋଗ ।

**ସୁବୋଧିନୀ ଟୀକା**—ଅତୋତ୍ତରଂ ଶ୍ରୀ ଭଗବାନୁବାଚ—ଲୋକେଽସ୍ମିନ୍ନିତି । ଅୟମର୍ଥଃ—ଯଦ ମୟା ପରସ୍ପରନିରପେକ୍ଷଂ ମୋକ୍ଷସାଧନତ୍ୱେନ କର୍ମଜ୍ଞାନଯୋଗରୂପଂ ନିଷ୍ଠାଦ୍ୱୟମୁକ୍ତଂ ସ୍ୟାତର୍ହି ଦ୍ୱୟୋର୍ମଧ୍ୟେ ଯଦ୍ଭଦ୍ରଂ ସ୍ୟାତ୍ତଦେକଂ ବଦେତି ତ୍ୱଦୀୟଃ ପ୍ରଶ୍ନଃ ସଂଗଚ୍ଛତେ । ନ ତୁ ମୟା ତଥୋକ୍ତମ୍ । କିନ୍ତୁ ଦ୍ୱାଭ୍ୟା ମେକୈବ ବ୍ରହ୍ମନିଷ୍ଠୋକ୍ତା । ଗୁଣପ୍ରଧାନଭୂତୟୋସ୍ତୟୋଃ ସ୍ୱାତନ୍ତ୍ର୍ୟାନୁପପତ୍ତେଃ । ଏକସ୍ୟା ଏବ ତୁ ପ୍ରକାରଭେଦମାତ୍ରମଧିକାରିଭେଦେନୋକ୍ତମିତି, ଅସ୍ମିନ୍ ଶୁଦ୍ଧାଶୁଦ୍ଧାନ୍ତଃକରଣତୟା ଦ୍ୱିବିଧେ ଲୋକେଽଧିକାରିଜନେ—ଦ୍ୱେ ବିଧେ ପ୍ରକାରୌ ଯସ୍ୟାଃ ସା— ଦ୍ୱିବିଧା ନିଷ୍ଠା ମୋକ୍ଷପରତା ପୂର୍ବାଧ୍ୟାୟେ ମୟା ସର୍ବଜ୍ଞେନ ପ୍ରୋକ୍ତା ସ୍ପଷ୍ଟମେବୋକ୍ତା, ପ୍ରକାରଦ୍ୱୟମେବ ନିର୍ଦ୍ଦିଶତି ଜ୍ଞାନଯୋଗେନେତ୍ୟାଦି । ସାଂଖ୍ୟାନାଂ ଶୁଦ୍ଧାନ୍ତଃକରଣାନାଂ ଜ୍ଞାନଭୂମିକାମାରୂଢାନାଂ ଜ୍ଞାନପରିପାକାର୍ଥଂ ଜ୍ଞାନଯୋଗେନ ଧ୍ୟାନାଦିନା ନିଷ୍ଠା ବ୍ରହ୍ମପରତୋକ୍ତା—ତାନି ସର୍ବାଣି ସଂଯମ୍ୟ ଯୁକ୍ତ ଆସୀତ ମତ୍ପର ଇତ୍ୟାଦିନା । ସାଙ୍ଖ୍ୟଭୂମିକାମାରୁରୁକ୍ଷୁଣାଂ ତ୍ୱନ୍ତଃକରଣଶୁଦ୍ଧିଦ୍ୱାରା ତଦାରୋହଣାର୍ଥଂ

ନ କର୍ମଣାମନାରମ୍ଭାନ୍ନୈଷ୍କର୍ମ୍ୟଂ ପୁରୁଷୋଽଶ୍ନୁତେ ।
ନ ଚ ସନ୍ନ୍ୟସନାଦେବ ସିଦ୍ଧିଂ ସମଧିଗଚ୍ଛତି ॥ ୪ ॥

ତଦୁପାୟଭୂତକର୍ମଯୋଗାଧିକାରଣାଂ ଯୋଗିନାଂ କର୍ମଯୋଗେନ ନିଷ୍ଠୋକ୍ତା—ଧର୍ମ୍ୟାଙ୍କି ଯୁକ୍ତାନ୍ଭ୍ରେୟୋଽନ୍ୟତ୍ କ୍ଷତ୍ରିୟସ୍ୟ ନ ବିଦ୍ୟତ ଇତ୍ୟାଦିନା । ଅତଏବ ତବ ଚିତ୍ତଶୁଦ୍ଧ୍ୟଶୁଦ୍ଧି ରୂପାବସ୍ଥାଭେଦେନ ଦ୍ୱିବିଧାପି ନିଷ୍ଠୋକ୍ତା—ଏଷାତେଽଭିହିତା ସାଂଖ୍ୟେ ବୁଦ୍ଧିର୍ଯୋଗେତ୍ୱିମାଂ ଶୃଣ୍ୱିତି ।

**ବିବୃତି**—କର୍ମଯୋଗ ପ୍ରବୃତ୍ତିପର ଓ ଜ୍ଞାନଯୋଗ ନିବୃତ୍ତିପର । ଅତି ପୂର୍ବକାଳରୁ ମୋକ୍ଷଲାଭର ଏ ଦୁଇ ମାର୍ଗ ପ୍ରଚଳିତ ଥିଲା । 'ପୁରା' ଏହି ଶବ୍ଦ ଦ୍ୱାରା ପୂର୍ବଅଧ୍ୟାୟ ବା ଦ୍ୱିତୀୟଅଧ୍ୟାୟ ଅର୍ଥ ଗ୍ରହଣ ନ କରି ପୂର୍ବକାଳରେ ଏହିଭଳି ଅର୍ଥଗ୍ରହଣ କରିବା ସମୀଚୀନ । ମହାଭାରତ ଶାନ୍ତିପର୍ବରେ 'ପ୍ରବୃତ୍ତିଲକ୍ଷଣଂ ଧର୍ମଂ ଋଷିର୍ନାରାୟଣୋବ୍ରବୀତ୍' ଏହିପରି ଲକ୍ଷିତ ଅଛି । ତେଣୁ ପ୍ରବୃତ୍ତିପର ନିଷ୍କାମ କର୍ମଯୋଗ ବହୁପ୍ରାଚୀନକାଳରୁ ଏ ଦେଶରେ ପ୍ରଚଳିତ ଥିଲା; ଏଥିରୁ ଏହା ସ୍ପଷ୍ଟରୂପେ ଜଣାଯାଏ । ତେଣୁ କେତେକ ମୋକ୍ଷସାଧନଉଦ୍ଦେଶ୍ୟରେ ସନ୍ନ୍ୟାସ ଗ୍ରହଣ କରି ଆଜୀବନ କର୍ମଶୂନ୍ୟ ହୋଇ କେବଳ ଜ୍ଞାନ ଆଲୋଚନା କରୁଥିଲେ ଏବଂ ଅନ୍ୟ କେତେକ ଗୃହସ୍ଥାଶ୍ରମରେ ରହି ନିଷ୍କାମ କର୍ମ କରି ଜୀବନ ଅତିବାହିତ କରୁଥିଲେ । ଗୀତାରେ କୁହାଯାଇଛି ଜ୍ଞାନବାଦୀମାନେ ସନ୍ନ୍ୟାସରେ ଯେଉଁ ସ୍ଥାନ ଲାଭ କରନ୍ତି, କର୍ମଯୋଗୀମାନେ ସେହି ସ୍ଥାନହିଁ ପାଆନ୍ତି । ଲକ୍ଷ୍ୟ ଏକ, ମାତ୍ର ମାର୍ଗ ଭିନ୍ନ ଭିନ୍ନ । ତେଣୁ କର୍ମତ୍ୟାଗ ନ କରି ନିଷ୍କାମ ଚିତ୍ତରେ ଆଜୀବନ କର୍ମ କରିବା ଦ୍ୱାରା ମୋକ୍ଷାଖ୍ୟ ପରମପଦ ଲାଭ କରାଯାଏ ।

୪ । **ଅନ୍ୱୟଦୀପିକା**— କର୍ମଣାମନାରମ୍ଭାତ୍ ( କର୍ମ ଆରମ୍ଭ ନ କଲେ) ପୁରୁଷଃ ( ପୁରୁଷ ) ନୈଷ୍କର୍ମ୍ୟଂ ( ନିଷ୍କ୍ରିୟଭାବ ) ନ ଅଶ୍ନୁତେ (ପ୍ରାପ୍ତ ହୁଏ ନାହିଁ)। ସନ୍ନ୍ୟସନାତ୍ ଏବ ଚ ( ସନ୍ନ୍ୟାସ ଗ୍ରହଣ ଅର୍ଥାତ୍ କର୍ମତ୍ୟାଗ କରିଦେଲେ ) ସିଦ୍ଧିଂ ( ସିଦ୍ଧି ) ନ ସମଧିଗଚ୍ଛତି ( ପାଏ ନାହିଁ ) ।

**ଅନୁବାଦ**—କର୍ମଚେଷ୍ଟା ନ କଲେ ଯେ ପୁରୁଷ ନୈଷ୍କର୍ମ୍ୟ ଲାଭ କରିପାରେ—ଏହା ନୁହେ । (କାମନା ତ୍ୟାଗ ନ କରି) କେବଳ ସନ୍ନ୍ୟାସ ଗ୍ରହଣ କରିଦେଲେହିଁ ଯେ ସିଦ୍ଧିଲାଭ ହୁଏ—ଏପରି ମଧ୍ୟ ନୁହେ ।

**ସୁବୋଧିନୀ ଟୀକା**—ଅତଃ ସମ୍ୟକ୍‌ଚିତ୍ତଶୁଦ୍ଧ୍ୟା ଜ୍ଞାନୋତ୍ପତ୍ତି-ପର୍ଯ୍ୟନ୍ତଂ ବର୍ଣ୍ଣାଶ୍ରମୋଚିତାନି କର୍ମାଣି କର୍ତ୍ତବ୍ୟାନି । ଅନ୍ୟଥା ଚିତ୍ତଶୁଦ୍ଧ୍ୟଭାବେନ ଜ୍ଞାନାନୁତ୍ପତ୍ତେରିତ୍ୟାହ । ନ କର୍ମଣା ମିତି । କର୍ମଣା ମନାରମ୍ଭାଦନନୁଷ୍ଠାନା-ନ୍ନୈଷ୍କର୍ମ୍ୟଂ ଜ୍ଞାନଂ ନାଶ୍ନୁତେ ନ ପ୍ରାପ୍ନୋତି । ନନୁ ଚୈତମେବ ପ୍ରବ୍ରାଜିନୋ

ନ ହି କଶ୍ଚିତ୍ କ୍ଷଣମପି ଜାତୁ ତିଷ୍ଠତ୍ୟକର୍ମକୃତ୍,
କାର୍ଯ୍ୟତେ ହ୍ୟବଶଃ କର୍ମ ସର୍ବଃ ପ୍ରକୃତିଜୈର୍ଗୁଣୈଃ । ୫ ।

ନୈବମିତ୍ୟାହଃ ପ୍ରବ୍ରଜନ୍ତୀତି ଶ୍ରୁତ୍ୟା ସନ୍ନ୍ୟାସସ୍ୟ ମୋକ୍ଷାଙ୍ଗତ୍ୱଶ୍ରୁତେଃ ସନ୍ନ୍ୟାସାଦେବ ମୋକ୍ଷୋ ଭବିଷ୍ୟତି । କିଂ କର୍ମଭିଃ ? ଇତ୍ୟାଶଙ୍କ୍ୟୋକ୍ତଂ—ନ ଚେତି । ଚିତ୍ତଶୁଦ୍ଧିଂ ବିନାକୃତାତ୍ ସନ୍ନ୍ୟସନାଦେବ ଜ୍ଞାନଶୂନ୍ୟାତ୍ ସିଦ୍ଧିଂ ମୋକ୍ଷଂ ନ ସମଧିଗଚ୍ଛତି ନ ପ୍ରାପ୍ନୋତି ।

**ବିବୃତି**—କର୍ମଯୋଗୀ କର୍ମକୁହିଁ ସିଦ୍ଧିଲାଭର ଉପାୟରୂପେ ଗ୍ରହଣ କରିଥାଆନ୍ତି । କିନ୍ତୁ ଜ୍ଞାନଯୋଗୀ କର୍ମକୁ ସିଦ୍ଧିଲାଭର ଅନ୍ତରାୟ ବୋଲି ବର୍ଜନ କରନ୍ତି ଏବଂ ଅନ୍ୟର କହନ୍ତି କର୍ମଦ୍ୱାରା ମୁକ୍ତି ଲାଭ ହୁଏ ନାହିଁ । ଏ ଶ୍ଳୋକରେ ଭଗବାନ କହୁଅଛନ୍ତି, କର୍ମ ନ କଲେ ଯେ ନୈଷ୍କର୍ମ୍ୟ ସିଦ୍ଧି ଲାଭ ହୁଏ ଏହା ଭ୍ରମ ଧାରଣା ଏବଂ ସନ୍ନ୍ୟାସ ଗ୍ରହଣ କଲେ ଯେ ସିଦ୍ଧିଲାଭ ହେବ ଏହା ମଧ୍ୟ ଠିକ ନୁହେଁ । ନୈଷ୍କର୍ମ୍ୟସିଦ୍ଧିଦ୍ୱାରା ମୋକ୍ଷ ଲାଭ ହୁଏ ସତ୍ୟ ମାତ୍ର ଏହାର କାରଣ କର୍ମଶୂନ୍ୟତା ନୁହେ । ଜ୍ଞାନହିଁ ଏହାର କାରଣ । ଏହି ନୈଷ୍କର୍ମ୍ୟସିଦ୍ଧିଲାଭ୍ କରିବାକୁ ହେଲେ କର୍ମତ୍ୟାଗ କରିବାକୁ ହେବ ନାହିଁ । ଯେଉଁ ଆସକ୍ତି ଓ ଅହଂକାର କର୍ମର ବନ୍ଧନର କାରଣ ତାହାକୁହିଁ ତ୍ୟାଗ କରି କର୍ମକଲେ ନୈଷ୍କର୍ମ୍ୟ ଲାଭ-ହେବ । କର୍ମତ୍ୟାଗ କରି ନିଶ୍ଚେଷ୍ଟ ଭାବରେ ବସି ରହିଲେ ମଧ୍ୟ ପ୍ରକୃତି ପୁରୁଷକୁ ନିଶ୍ଚୟ କର୍ମରେ ପ୍ରବର୍ତ୍ତିତ କରିବ । ପରବର୍ତ୍ତୀ ଶ୍ଳୋକରେ ଏହାହିଁ ଭଗବାନ୍ ବୁଝାଇବେ । ଯେପରି ପାରଦକୁ ଔଷଧରେ ପ୍ରୟୋଗ କରିବା ପୂର୍ବରୁ ବୈଦ୍ୟମାନେ ମାରଣଦ୍ୱାରା ତାହାର ଦୋଷାଂଶ ନଷ୍ଟକରି ଦିଅନ୍ତି ସେହିପରି କର୍ମ କରିବା ପୂର୍ବରୁ କର୍ମର ଦୋଷ—ଆସକ୍ତି ଓ ଅହଂକାର ତ୍ୟାଗକଲେ, ସେହି କର୍ମ ଦ୍ୱାରା ମନୁଷ୍ୟ ମୋକ୍ଷର ଅଧିକାରୀ ହେବ ।

ଶ୍ରୀଧରସ୍ୱାମି କହନ୍ତି—ଚିତ୍ତଶୁଦ୍ଧି ନିମିତ୍ତ କର୍ମ ପ୍ରଥମାବସ୍ଥାରେ କର୍ତ୍ତବ୍ୟ । ଚିତ୍ତଶୁଦ୍ଧିଦ୍ୱାରା ଜ୍ଞାନଲାଭ ହୋଇଗଲେ କର୍ମତ୍ୟାଗ କରିବା ଏ ଶ୍ଳୋକର ତାତ୍ପର୍ଯ୍ୟ; ମାତ୍ର ଏ ଭାବ ସନ୍ନ୍ୟାସମାର୍ଗୀୟ, କର୍ମଯୋଗ ମାର୍ଗର ନୁହେ ।

୫ । **ଅନ୍ୱୟଦୀପିକା**—ଜାତୁ ( କେବେହେଲେ) କଶ୍ଚିତ୍ (କେହି) କ୍ଷଣଂ ଅପି (କ୍ଷଣକ ପାଇଁ ମଧ୍ୟ) ଅକର୍ମକୃତ୍ (କର୍ମ ନ କରି) ନ ତିଷ୍ଠତି (ରହିପାରେ ନାହିଁ ) । ପ୍ରକୃତିଜୈଃ ଗୁଣୈଃ ( ପ୍ରକୃତି ଜାତ ଗୁଣମାନଙ୍କଦ୍ୱାରା ) ଅବଶଃ ( ଅବଶ ହୋଇ ) ସର୍ବଃ (ସମସ୍ତେ) କର୍ମ କାର୍ଯ୍ୟତେ (କର୍ମ କରିବାକୁ ବାଧ୍ୟ ହୁଅନ୍ତି) ।

**ଅନୁବାଦ**—କେହି କେତେବେଳେ ହେଲେ କ୍ଷଣକ ପାଇଁ ମଧ୍ୟ କର୍ମ ନ କରି ରହି ପାରନ୍ତି ନାହିଁ, କାହିଁକ ନା ପ୍ରକୃତିର ଗୁଣରେ ଅବଶ ହୋଇ ସମସ୍ତେ କର୍ମ କରିବାକୁ ବାଧ୍ୟ ।

କର୍ମେନ୍ଦ୍ରିୟାଣି ସଂଯମ୍ୟ ଯ ଆସ୍ତେ ମନସାସ୍ମରନ୍ ।
ଇନ୍ଦ୍ରିୟାର୍ଥାନ୍ ବିମୂଢ଼ାତ୍ମା ମିଥ୍ୟାଚାରଃ ସ ଉଚ୍ୟତେ । ୬ ।

**ସୁବୋଧିନୀ ଟୀକା**—କର୍ମଣାଂ ଚ ସନ୍ନ୍ୟାସ ସ୍ତେଷ୍ୱନାସକ୍ତିମାତ୍ରମ୍ । ନତୁ ସ୍ୱରୂପେଣ । ଅଶକ୍ୟତ୍ୱାଦିତି । ଅତ—ନହି କଶ୍ଚିଦିତି । ଜାତୁ କସ୍ୟାଂଚିଦପ୍ୟ-ବସ୍ଥାୟାଂ କ୍ଷଣମାତ୍ରମପି କଶ୍ଚିଦପି ଜ୍ଞାନ୍ୟଜ୍ଞୋ ବା ଅକର୍ମକୃତ୍ କର୍ମାଣ୍ୟକୁର୍ବାଣୋ ନ ତିଷ୍ଠତି । ଅତ୍ରହେତୁଃ—ପ୍ରକୃତିଜୈଃ ସ୍ୱଭାବପ୍ରଭବୈ ରାଗଦ୍ୱେଷାଦିଭିର୍ଗୁଣୈଃ ସର୍ବୋଽପି ଜନଃ କର୍ମ କାର୍ଯ୍ୟତେ, କର୍ମଣି ପ୍ରବର୍ତ୍ତ୍ୟତେ । ଅବଶୋଽସ୍ୱତନ୍ତ୍ରଃ ସନ୍ ।

**ବିବୃତି**—ଗୀତା ଏ ଶ୍ଳୋକରେ ସ୍ପଷ୍ଟ ନିର୍ଦ୍ଦେଶ କରୁଅଛନ୍ତି ଯେ କୌଣସି ଦେହଧାରୀ ମନୁଷ୍ୟ ପକ୍ଷରେ କର୍ମତ୍ୟାଗର ପ୍ରୟୋଜନୀୟତା ତ ଦୂରର କଥା, କ୍ଷଣକ ପାଇଁ ମଧ୍ୟ କର୍ମତ୍ୟାଗ ସମ୍ଭବପର ନୁହେ । ପ୍ରକୃତିର ପ୍ରେରଣାରେ ମନୁଷ୍ୟ କର୍ମ କରିବାକୁ ବାଧ୍ୟ । କେହି ଶରୀରକୁ ଜଡ଼ପିଣ୍ଡ ପରି ପକାଇ ରଖିଲେ ବି ମାନସିକ କର୍ମ ବନ୍ଦ କରି ପାରେ ନାହିଁ । କର୍ମ ହିସାବରେ ଚିନ୍ତା, ଭାବ, ଇଚ୍ଛା ପ୍ରଭୃତି ମାନସିକ ବ୍ୟାପାରର ସ୍ଥାନ ଖୁବ ଉଚ୍ଚରେ । ବଞ୍ଚିରହିବାଟା ମଧ୍ୟ ଗୋଟାଏ କର୍ମ । ସମଗ୍ର ବିଶ୍ୱ ଭଗବାନଙ୍କର କର୍ମଲୀଳା, ଆମ୍ଭମାନଙ୍କ ବଞ୍ଚିରହିବାଟା, ସେହି ବିଶ୍ୱଲୀଳାର ଏକାଂଶ ନୁହେ କି ? ଏସବୁ ବିଚାର କରି ଶ୍ରୀଧରସ୍ୱାମୀ ଏ ଶ୍ଳୋକର ଟୀକାର ଉପକ୍ରମରେ କହୁଅଛନ୍ତି—କର୍ମତ୍ୟାଗର ଅର୍ଥ କର୍ମରେ ଅନାସକ୍ତି ମାତ୍ର ସ୍ୱରୂପତଃ ତ୍ୟାଗ ନୁହେ । କାରଣ କେହି କର୍ମତ୍ୟାଗ କରି ବଞ୍ଚି ରହିପାରିବ ନାହିଁ ।

ଉପନିଷଦରେ ମଧ୍ୟ କର୍ମ କରିବା ପାଇଁ ସ୍ପଷ୍ଟ ନିର୍ଦ୍ଦେଶ ଅଛି । ଈଶୋପନିଷଦ୍ ସର୍ବାପେକ୍ଷା ପ୍ରାଚୀନ ଓ ପ୍ରାମାଣ୍ୟ ଗ୍ରନ୍ଥ । ତହିଁରେ ଉଲ୍ଲିଖିତ ଅଛି:—

କୁର୍ବନ୍ନେବେହକର୍ମାଣି ଜିଜୀବିଷେତ୍ ଶତଂ ସମାଃ ।
ଅର୍ଥାତ୍ ଏ ସଂସାରରେ କର୍ମକରି ଶତବର୍ଷ ବଞ୍ଚିରହିବାକୁ ଇଚ୍ଛା କରିବ ।

୬ । **ଅନ୍ୱୟଦୀପିକା**—ଯଃ (ଯେଉଁ) ବିମୂଢ଼ାତ୍ମା (ମୂଢ଼ଲୋକ) ମନସା (ମନଦ୍ୱାରା) ଇନ୍ଦ୍ରିୟାର୍ଥାନ୍ (ଇନ୍ଦ୍ରିୟର ବିଷୟ ସମୂହ) ସ୍ମରନ୍ (ସ୍ମରଣ କରି), କର୍ମେନ୍ଦ୍ରିୟାଣି (କର୍ମେନ୍ଦ୍ରିୟମାନଙ୍କୁ) ସଂଯମ୍ୟ (ସଂଯତ କରି) ଆସ୍ତେ (ଅବସ୍ଥିତ କରେ ) ସଃ ( ସେ ଲୋକ ) ମିଥ୍ୟାଚାରଃ ( କପଟାଚାରୀ ) ଉଚ୍ୟତେ ( କଥିତ ହୁଏ ) ।

**ଅନୁବାଦ**—ଯେଉଁ ମୂଢ଼ଲୋକ ହସ୍ତପଦାଦି କର୍ମେନ୍ଦ୍ରିୟମାନଙ୍କୁ ସଂଯତ କରି ଅବସ୍ଥାନ କରେ ଅଥଚ ମନେ ମନେ ଇନ୍ଦ୍ରିୟବିଷୟ ସମସ୍ତ ସ୍ମରଣ କରେ ସେ ମିଥ୍ୟାଚାରୀ ବୋଲି କଥିତ ହୁଏ ।

ଯସ୍ତ୍ୱିନ୍ଦ୍ରିୟାଣି ମନସା ନିୟମ୍ୟାରଭତେଽର୍ଜୁନ,
କର୍ମେନ୍ଦ୍ରିୟୈଃ କର୍ମଯୋଗମସକ୍ତଃ ସ ବିଶିଷ୍ୟତେ । ୭ ।

**ସୁବୋଧିନୀ ଟୀକା**—ଅତୋଽଜ୍ଞଂ କର୍ମତ୍ୟାଗିନଂ ନିନ୍ଦତି । କର୍ମେନ୍ଦ୍ରିୟାଣୀତି । ବାକ୍ପାଣ୍ୟାଦୀନି କର୍ମେନ୍ଦ୍ରିୟାଣି ସଂଯମ୍ୟ ନିଗୃହ୍ୟ ଯୋ ମନସା ଭଗବଦ୍ଧ୍ୟାନଚ୍ଛଲେନେନ୍ଦ୍ରିୟାର୍ଥାନ୍ ବିଷୟାନ୍ ସ୍ମରନ୍ନାସ୍ତେ ଅବିଶୁଦ୍ଧତୟା ମନସ ଆତ୍ମନି ସ୍ଥୈର୍ଯ୍ୟାଭାବାତ୍ ସ ମିଥ୍ୟାଚାରଃ କପଟାଚାରୋ ଦାମ୍ଭିକ ଉଚ୍ୟତେ ଇତ୍ୟର୍ଥଃ ।

**ବିବୃତି**—ବାକ୍, ପାଣି, ପାଦ, ପାୟୁ ( ଗୁହ୍ୟଦ୍ୱାର ), ଉପସ୍ଥ (ଜନନେନ୍ଦ୍ରିୟ)—ଏହି ପାଞ୍ଚଟି କର୍ମେନ୍ଦ୍ରିୟ କୁହାଯାଏ । ସଂସାରରେ ଏପରି ଅନେକ ଲୋକ ଅଛନ୍ତି ଯେଉଁମାନେ ହସ୍ତପଦ ପ୍ରଭୃତି ସଂଯତ କରି ମାଳା ଧରି ଧ୍ୟାନରେ ବସିଯାଆନ୍ତି । ମାତ୍ର ଇନ୍ଦ୍ରିୟସଂଯମ ଅଭାବରୁ ସେମାନଙ୍କର ମନ ସେତେବେଳେ ଇଷ୍ଟଚିନ୍ତା ପରିବର୍ତ୍ତେ ବିଷୟ ଚିନ୍ତାରେହିଁ ମଗ୍ନ ରହେ । ଏଭଳି ଲୋକଙ୍କୁ କପଟାଚାର (ଧର୍ମଧ୍ୱଜୀ ବୋଲି) କୁହାଯାଇଥାଏ ।

ପ୍ରକୃତରେ ବୁଝିଲେ ବାସନା ଓ ଅହଂକାରତ୍ୟାଗହିଁ ପ୍ରକୃତ ତ୍ୟାଗ ଓ ସଂଯମ । ଯେଉଁଠାରେ ଭିତରେ ଏ ତ୍ୟାଗ ନାହିଁ ସେଠାରେ ବାହାରେ କର୍ମତ୍ୟାଗ ମିଥ୍ୟା ଓ ନିଷ୍ଫଳ ।

**୭ । ଅନ୍ୱୟଦୀପିକା**—ଅର୍ଜୁନ, ଯଃ ତୁ ( କିନ୍ତୁ ଯେଉଁ ଲୋକ ) ଇନ୍ଦ୍ରିୟାଣି ( ଇନ୍ଦ୍ରିୟମାନଙ୍କୁ ) ମନସା ( ମନଦ୍ୱାରା ) ନିୟମ୍ୟ ( ସଂଯତ କରି ) ଅସକ୍ତଃ ( ଅନାସକ୍ତ ହୋଇ ) କର୍ମେନ୍ଦ୍ରିୟୈଃ ( କର୍ମେନ୍ଦ୍ରିୟମାନଙ୍କ ଦ୍ୱାରା ) କର୍ମ ଯୋଗମ୍ ( କର୍ମ ଯୋଗକୁ ) ଆରଭତେ ( ଅନୁଷ୍ଠାନ କରନ୍ତି ) ସଃ ( ସେ ) ବିଶିଷ୍ୟତେ ( ବିଶିଷ୍ଟ ବ୍ୟକ୍ତି ବୋଲି କଥିତ ହୁଅନ୍ତି ) ।

**ଅନୁବାଦ**—କିନ୍ତୁ ଯେଉଁ ଲୋକ ଜ୍ଞାନେନ୍ଦ୍ରିୟମାନଙ୍କୁ ସଂଯତ କରି ଅନାସକ୍ତ ହୋଇ କର୍ମେନ୍ଦ୍ରିୟ ଦ୍ୱାରା କର୍ମଯୋଗ ଆରମ୍ଭ କରନ୍ତି ସେହି ବ୍ୟକ୍ତିହିଁ ବିଶିଷ୍ଟ ବୋଲି କଥିତ ହୁଅନ୍ତି ।

**ସୁବୋଧିନୀ ଟୀକା**—ଏତଦ୍ ବିପରୀତଃ କର୍ମକର୍ତ୍ତା ତୁ ଶ୍ରେଷ୍ଠ ଇତ୍ୟାହ—ଯସ୍ତ୍ୱିନ୍ଦ୍ରିୟାଣୀତି । ଯସ୍ତୁ ଜ୍ଞାନେନ୍ଦ୍ରିୟାଣି ମନସା ନିୟମ୍ୟେଶ୍ୱରପରାଣି କୃତ୍ୱା କର୍ମେନ୍ଦ୍ରିୟୈଃ କର୍ମରୂପଂ ଯୋଗମୁପାୟମାରଭତେଽନୁତିଷ୍ଠତି । ଅସକ୍ତଃ ଫଳାଭିଲାଷରହିତଃ ସନ୍ ସ ବିଶିଷ୍ୟତେ ବିଶିଷ୍ଟୋ ଭବତି । ଚିତ୍ତଶୁଦ୍ଧ୍ୟା ଜ୍ଞାନବାନ ଭବତୀତ୍ୟର୍ଥଃ ।

**ବିବୃତି**—ଚକ୍ଷୁଃ, କର୍ଣ୍ଣ, ନାସିକା, ଜିହ୍ୱା ଓ ତ୍ୱକ୍—ଏହି ପାଞ୍ଚଟି ଜ୍ଞାନେନ୍ଦ୍ରିୟ । ଏହି ଜ୍ଞାନେନ୍ଦ୍ରିୟମାନଙ୍କୁ ଈଶ୍ୱରାଭିମୁଖୀନ କରି ଫଳାକାଙ୍କ୍ଷା-

ନିୟତଂ କୁରୁ କର୍ମ ତ୍ୱଂ କର୍ମ ଜ୍ୟାୟୋ ହ୍ୟକର୍ମଣଃ
ଶରୀରଯାତ୍ରାପି ଚ ତେ ନ ପ୍ରସିଦ୍ଧ୍ୟେଦକର୍ମଣଃ ।୮।

ରହିତ ହୋଇ କର୍ମ କରିବାକୁ 'କର୍ମଯୋଗ' କହନ୍ତି । ଶ୍ରୀଧରସ୍ୱାମୀ କହନ୍ତି ଷଷ୍ଠ ଶ୍ଳୋକରେ ମିଥ୍ୟାଚାରର ଯେଉଁ ଲକ୍ଷଣ କୁହାଯାଇଛି, ତାହାକୁ ଓଲଟାଇ ଦେଲେ ଯାହା ହେବ ତାହାହିଁ କର୍ମଯୋଗୀର ଲକ୍ଷଣ । ଯେ ହସ୍ତପଦାଦି ସଂଯତ କରି ଈଶ୍ୱରଚିନ୍ତା କରିବାକୁ ବସେ ମାତ୍ର ତାହାର ମନ ବିଷୟରେ ଭ୍ରମଣ କରେ ସେ 'ମିଥ୍ୟାଚାର' । ଏହି ଅବସ୍ଥାକୁ ଓଲଟାଇ ଦେଲେ ହେବ— ଯେ ହସ୍ତପଦାଦି କର୍ମେନ୍ଦ୍ରିୟ ଦ୍ୱାରା କର୍ତ୍ତବ୍ୟବୋଧରେ କର୍ମ କରେ କିନ୍ତୁ ତାହାର ମନ ଈଶ୍ୱରଙ୍କଠାରେ ଅଭିନିବିଷ୍ଟ ଥାଏ ଏବଂ ଫଳାକାଂକ୍ଷା ଓ ଆସକ୍ତି ଯାହାର ଅନ୍ତରେ ନ ଥାଏ ସେ କର୍ମଯୋଗୀ ।

୮ । **ଅନ୍ୱୟ ଦୀପିକା**—ତ୍ୱଂ (ତୁମେ) ନିୟତଂ କର୍ମ (ନିୟତ କର୍ମ) କୁରୁ (କର), ହି (ଯେହେତୁ) ଅକର୍ମଣଃ (କର୍ମ ନ କରିବା ଅପେକ୍ଷା) କର୍ମ (କର୍ମ କରିବା) ଜ୍ୟାୟଃ (ଶ୍ରେଷ୍ଠ) । ଅକର୍ମଣଃ (କର୍ମ ନ କଲେ) ତେ (ତୁମର) ଶରୀରଯାତ୍ରା ଅପି ଚ (ଶରୀର ଧାରଣ ବ୍ୟାପାର ମଧ୍ୟ) ନ ପ୍ରସିଦ୍ଧ୍ୟେତ୍ (ନିର୍ବାହିତ ହେବ ନାହିଁ) ।

**ଅନୁବାଦ**—ତୁମେ ନିୟତ କର୍ମ କର । କର୍ମ ନ କରିବା ଅପେକ୍ଷା କର୍ମ କରିବା ଶ୍ରେଷ୍ଠ, କର୍ମ ନ କଲେ ତୁମର ଦେହଯାତ୍ରା ମଧ୍ୟ ନିର୍ବାହିତ ହେବ ନାହିଁ ।

**ସୁବୋଧିନୀ ଟୀକା**—ନିୟତମିତି । ଯସ୍ମାଦେବଂ ତସ୍ମାନ୍ନିୟତଂ ନିତ୍ୟଂ କର୍ମ ସନ୍ଧ୍ୟୋପାସନାଦି କୁରୁ । ହି ଯସ୍ମାଦକର୍ମଣଃ ସର୍ବକର୍ମଣୋଽକରଣାତ୍ ସକାଶାତ୍ କର୍ମକରଣଂ ଜ୍ୟାୟୋଽଧିକତରମ୍ । ଅନ୍ୟଥା ଅକର୍ମଣଃ ସର୍ବକର୍ମଶୂନ୍ୟସ୍ୟ ତବ ଶରୀରଯାତ୍ରା ଶରୀରନିର୍ବାହୋଽପି ନ ପ୍ରସିଦ୍ଧ୍ୟେନ୍ନ ଭବେତ୍ ।

**ବିବୃତି**—ଏ ଶ୍ଳୋକରେ 'ନିୟତଂ' ଏହି ପଦଟି 'କର୍ମ' ପଦର ବିଶେଷଣ ରୂପେ ବ୍ୟବହୃତ ହୋଇଅଛି । ପ୍ରାଚୀନ ଟୀକାକାରମାନେ କହନ୍ତି 'ନିୟତକର୍ମ'ର ଅର୍ଥ ସନ୍ଧ୍ୟା ଉପାସନାଦି ନିତ୍ୟକର୍ମ ଓ ଶ୍ରାଦ୍ଧାଦି ନୈମିତ୍ତିକ କର୍ମ । ମାତ୍ର ଏ ଯୁଗର ଟୀକାକାର ଲୋକମାନ୍ୟ ତିଲକ ଓ ଅରବିନ୍ଦ କହନ୍ତି ନିୟତ କର୍ମର ଅର୍ଥ ଶାସ୍ତ୍ରବିହିତ କର୍ତ୍ତବ୍ୟ କର୍ମ । ଏହି ଅର୍ଥହିଁ ଅଧିକତର ସଙ୍ଗତ ବୋଧହୁଏ । କାରଣ ଗୀତା ଗୋଟିଏ ସାର୍ବଜନୀନ ଧର୍ମଗ୍ରନ୍ଥ । କେବଳ ହିନ୍ଦୁ-ସମାଜ ପ୍ରତି ଏହାର ମତ ପ୍ରଯୋଜ୍ୟ ନୁହେ । ଅହିନ୍ଦୁ ପ୍ରତ୍ୟେକ ଧର୍ମାବଲମ୍ବୀଙ୍କର ଧର୍ମଶାସ୍ତ୍ର ଅଛି । ଉଚ୍ଛୃଙ୍ଖଳତା ଓ ସ୍ୱେଚ୍ଛାଚାରିତା ନିବାରଣ କରି ସମାଜକୁ ବିହିତ ଧର୍ମମାର୍ଗରେ ପରିଚାଳିତ କରାଇବା ପ୍ରତ୍ୟେକ ଧର୍ମଶାସ୍ତ୍ରର ଉଦ୍ଦେଶ୍ୟ । ତେଣୁ

ଯଜ୍ଞାର୍ଥାତ୍ କର୍ମଣୋଽନ୍ୟତ୍ର ଲୋକୋଽୟଂ କର୍ମବନ୍ଧନଃ,
ତଦର୍ଥଂ କର୍ମ କୌନ୍ତେୟ ମୁକ୍ତସଙ୍ଗଃ ସମାଚର । ୯ ।

ଶାସ୍ତ୍ରବିହିତ କର୍ମହିଁ ନିୟତକର୍ମ । ଗୀତାର ୧୬ଶ ଅଧ୍ୟାୟ ୨୪ ଶ୍ଳୋକରେ ଭଗବାନ୍ ଏହା ଅର୍ଜୁନଙ୍କୁ କହି ଅଛନ୍ତି:—

ତସ୍ମାଚ୍ଛାସ୍ତ୍ରଂ ପ୍ରମାଣଂ ତେ କାର୍ଯ୍ୟାକାର୍ଯ୍ୟବ୍ୟବସ୍ଥିତୌ
ଜ୍ଞାତ୍ୱା ଶାସ୍ତ୍ରବିଧାନୋକ୍ତଂ କର୍ମ କର୍ତ୍ତୁମିହାର୍ହସି ।

ହିନ୍ଦୁଜାତିର ଧର୍ମଜୀବନରେ ଓ କର୍ମ ଜୀବନରେ ପାର୍ଥକ୍ୟ ନାହିଁ, ତେଣୁ ହିନ୍ଦୁର ସାଂସାରିକ କର୍ମନିୟନ୍ତ୍ରଣ ଶାସ୍ତ୍ର ମଧ୍ୟ ଧର୍ମଶାସ୍ତ୍ରର ଅନ୍ତର୍ଗତ । 'ମନୁସଂହିତା' ଏହାର ଉଦାହରଣ । କିନ୍ତୁ ଯେଉଁ ଧର୍ମଶାସ୍ତ୍ର ହଜାର ହଜାର ବର୍ଷ ପୂର୍ବେ ରଚିତ ହୋଇଥିଲା, ତାହା ସେକାଳର ସମାଜର ଅବସ୍ଥା ଉପରେ ବିଧି ବିଧାନ ପ୍ରଣୟନ କରି ଥିଲା, ଯେବେ ବର୍ତ୍ତମାନ ଯୁଗରେ ଅବସ୍ଥାର ପରିବର୍ତ୍ତନରେ ସେ ସବୁ ବିଧି-ବ୍ୟବସ୍ଥା ସମାଜରକ୍ଷାର ପ୍ରତିକୂଳ ହୁଏ, ତେବେ ସେ ସବୁ ସର୍ବଥା ପରିତ୍ୟାଜ୍ୟ । କାରଣ ନିଜ ବିଚାରବୁଦ୍ଧି ପ୍ରୟୋଗ ନ କରି ଗତାନୁଗତିକ ଭାବରେ ଶାସ୍ତ୍ର ଅନୁସରଣ କଲେ ଧର୍ମ ହାନି ହୁଏ ।

କେବଳଂ ଶାସ୍ତ୍ରମାଶ୍ରିତ୍ୟ ନ କର୍ତ୍ତବ୍ୟୋ ବିନିର୍ଣ୍ଣୟଃ,
ଯୁକ୍ତିହୀନ ବିଚାରେଣ ଧର୍ମହାନିଃ ପ୍ରଜାୟତେ । (ବୃହସ୍ପତିଃ)
ଅନ୍ୟଂ ତୃଣମିବତ୍ୟାଜ୍ୟ ମପ୍ୟୁକ୍ତଂ ପଦ୍ମଜନ୍ମନା । (ବଶିଷ୍ଠଃ)

"କେବଳ ଶାସ୍ତ୍ର-ବିଧିକୁ ଆଶ୍ରୟ କଲେ କର୍ତ୍ତବ୍ୟ ନିର୍ଣ୍ଣୟ ହୁଏ ନାହିଁ । ଯେଉଁ ବିଚାର ଯୁକ୍ତିଉପରେ ପ୍ରତିଷ୍ଠିତ ନୁହେ ତଦ୍ୱାରା ଧର୍ମହାନି ହୋଇଥାଏ ।"

"ସ୍ୱୟଂ ବ୍ରହ୍ମା ଯେବେ ଅଯୌକ୍ତିକ କଥା କହନ୍ତି, ତେବେ ତାହାକୁ ତୃଣବତ୍ ପରିତ୍ୟାଗ କରିବ ।"

ପରବର୍ତ୍ତୀ ଶ୍ଳୋକମାନଙ୍କରେ ଏହିସବୁ ବିଷୟ ବିସ୍ତାରିତ ରୂପେ ଆଲୋଚିତ ହେବ ।

**୯ । ଅନ୍ୱୟଦୀପିକା**—ଯଜ୍ଞାର୍ଥାତ୍ କର୍ମଣଃ ( ଯଜ୍ଞାର୍ଥରେ ସମ୍ପାଦିତ କର୍ମଭିନ୍ନ ) ଅନ୍ୟତ୍ର (ଅନ୍ୟ କର୍ମାନୁଷ୍ଠାନରେ) ଅୟଂ ଲୋକଃ (ମନୁଷ୍ୟମାନେ) କର୍ମବନ୍ଧନଃ (ବନ୍ଧନଦଶାଗ୍ରସ୍ତହୁଅନ୍ତି) । କୌନ୍ତେୟ (ହେ କୌନ୍ତେୟ) ମୁକ୍ତସଙ୍ଗଃ ( ତୁମେ ନିଷ୍କାମ ହୋଇ ), ତଦର୍ଥଂ ( ସେହି ଯଜ୍ଞନିମିତ୍ତ ) କର୍ମ ସମାଚର (କର୍ମକର) ।

**ଅନୁବାଦ**—ଯଜ୍ଞନିମିତ୍ତ ଯେଉଁ କର୍ମ କରାଯାଏ ତଦ୍‌ଭିନ୍ନ ଅନ୍ୟ କର୍ମ ମନୁଷ୍ୟମାନଙ୍କ ପକ୍ଷରେ ବନ୍ଧନର କାରଣ ହୁଏ । ହେ କୌନ୍ତେୟ, ସେହି ଯଜ୍ଞ ଉଦ୍ଦେଶ୍ୟରେ ଅନାସକ୍ତ ହୋଇ ତୁମେ କର୍ମ କର ।

**ସୁବୋଧିନୀ ଟୀକା**—ଯଜ୍ଞୋ ବିଷ୍ଣୁଃ ସର୍ବମପି କର୍ମ ବନ୍ଧକତ୍ୱାନ୍ନ କାର୍ଯ୍ୟମିତି ମତମପାକୃର୍ବନ୍ନାହ । ଯଜ୍ଞାର୍ଥାଦିତି । ଯଜ୍ଞୋ ବୈ ବିଷ୍ଣୁରିତି ଶ୍ରୁତେଃ । ତଦାରାଧନାର୍ଥାତ୍ କର୍ମଣୋଽନ୍ୟତ୍ର ତଦେବଂ ବିନା ଲୋକୋଽୟଂ କର୍ମବନ୍ଧନଃ କର୍ମଭିର୍ବଧ୍ୟତେ । ନତ୍ୱୀଶ୍ୱରାରାଧନାର୍ଥେନ କର୍ମଣା । ଅତସ୍ତଦର୍ଥଂ ବିଷ୍ଣୁପ୍ରୀତ୍ୟର୍ଥଂ ମୁକ୍ତସଙ୍ଗୋ ନିଷ୍କାମଃ ସନ୍ କର୍ମ ସମାଚର ।

**ବିବୃତି**—ଏହି ଶ୍ଳୋକରୁ ଗୀତାର 'ଯଜ୍ଞଚକ୍ର' ପ୍ରକରଣ ଆରମ୍ଭ ହୋଇଅଛି । ଆଚାର୍ଯ୍ୟ ଶଙ୍କର ଓ ସ୍ୱାମୀ ଶ୍ରୀଧର ପ୍ରଭୃତି ପ୍ରାଚୀନଭାରତର ମହାପୁରୁଷମାନେ ସ୍ୱ ସ୍ୱ ବ୍ୟାଖ୍ୟାରେ 'ଯଜ୍ଞ' ଶବ୍ଦର ଅର୍ଥ 'ବିଷ୍ଣୁ' ବା ଈଶ୍ୱର ବୋଲି କହିଅଛନ୍ତି । ସେମାନଙ୍କ ମତରେ ଏ ଶ୍ଳୋକର ଅର୍ଥ—ଈଶ୍ୱରୋଦ୍ଦେଶ୍ୟରେ ଯେଉଁ ସବୁ କର୍ମ କରାଯାଏ ତାହାଛଡ଼ା ଅନ୍ୟ ସମସ୍ତ କର୍ମ ବନ୍ଧନର କାରଣ ହୁଏ ଅର୍ଥାତ୍ ମୁକ୍ତିର ପ୍ରତିକୂଳ ହୁଏ । ତେଣୁ ନିଷ୍କାମ ଭାବରେ ସବୁକର୍ମ ଈଶ୍ୱରଙ୍କ ପ୍ରୀତିଉଦ୍ଦେଶ୍ୟରେ କରିବାକୁ ହେବ । ମାତ୍ର ଏ ଯୁଗର ମହାମନୀଷୀ ଲୋକମାନ୍ୟ ତିଳକ କହନ୍ତି 'ଯଜ୍ଞ' ଶବ୍ଦର ବିଷ୍ଣୁ ବା ଈଶ୍ୱର ଅର୍ଥ ଗୌଣ, କାରଣ ଏହି ଯଜ୍ଞ ପ୍ରକରଣରେ 'ଯଜ୍ଞ' ଶବ୍ଦ ବହୁବାର ପ୍ରଯୁକ୍ତ ହୋଇଅଛି । ଅନ୍ୟଠାରେ ଏହା ସାଧାରଣ ଅର୍ଥରେ ବ୍ୟବହୃତ ହୋଇଥିବା ସ୍ଥଳେ ଏଠାରେ ଗୌଣଅର୍ଥରେ ପ୍ରଯୁକ୍ତ ହୋଇଥିବା ସଙ୍ଗତ ନୁହେ । ତେଣୁ ସେ କହନ୍ତି ଏ ଶ୍ଳୋକରେ ମଧ୍ୟ ଯଜ୍ଞଶବ୍ଦ ସାଧାରଣ ଅର୍ଥରେ ବ୍ୟବହୃତ ହୋଇଅଛି । ତିଳକଙ୍କ ବ୍ୟାଖ୍ୟା ଏହିପରି—ମୀମାଂସକମାନଙ୍କ ମତରେ (ଶ୍ଳୋକର ପ୍ରଥମ ପଂକ୍ତି) ଯଜ୍ଞ ଭିନ୍ନ ଅନ୍ୟ ଉଦ୍ଦେଶ୍ୟରେ ଯେତେ କର୍ମ କରାଯାଏ ସେ ସମସ୍ତ ବନ୍ଧନର କାରଣ ହୁଏ; ଗୀତାକାରଙ୍କ ମତରେ (ଶ୍ଳୋକର ଦ୍ୱିତୀୟ ପଂକ୍ତି) ଯଜ୍ଞ ଉଦ୍ଦେଶ୍ୟରେ ସମସ୍ତ କର୍ମ ନିଷ୍କାମଭାବରେ କର । ତାହାହେଲେ ଗୀତାର ଏହି ଅଧ୍ୟାୟର ୧୯ଶ ଶ୍ଳୋକ ଓ ଚତୁର୍ଥ ଅଧ୍ୟାୟର ୨୩ଶ ଶ୍ଳୋକ ସଙ୍ଗେ ଏ ଅର୍ଥର ସମ୍ପୂର୍ଣ୍ଣ ସାମଞ୍ଜସ୍ୟ ରକ୍ଷା ହେବ । ଯଜ୍ଞ ନିଷ୍କାମ ଭାବରେ କରାହେଲେ ତାହା ସ୍ୱର୍ଗ ପ୍ରାପ୍ତି ରୂପ ଫଳ ପ୍ରସବ ନ କରି ଅର୍ଥାତ୍ ମୁକ୍ତିର ପ୍ରତିକୂଳ ନ ହୋଇ ତାହାର ଅନୁକୂଳ ହୁଏ । ଯଜ୍ଞଚକ୍ର ବ୍ୟତୀତ ଜଗତର ବ୍ୟବହାର ଅକ୍ଷୁଣ୍ଣ ରହିପାରେ ନାହିଁ । ଏହା ପରବର୍ତ୍ତୀ ଶ୍ଳୋକମାନଙ୍କରେ ଉକ୍ତ ହୋଇଅଛି । କିନ୍ତୁ ମନେରଖିବାକୁ ହେବ ଯେ 'ଯଜ୍ଞ' ଶବ୍ଦ ଏଠାରେ କେବଳ ଶ୍ରୌତଯଜ୍ଞ ଅର୍ଥାତ୍ ଅଶ୍ୱମେଧ, ରାଜସୂୟଯଜ୍ଞ ପ୍ରଭୃତି ଅର୍ଥରେ ପ୍ରଯୁକ୍ତ ହୋଇ ନାହିଁ । ଏଥିରେ ସ୍ମାର୍ତ୍ତଯଜ୍ଞ ଅର୍ଥାତ୍ ବ୍ରହ୍ମଯଜ୍ଞ, ଭୂତଯଜ୍ଞ ପ୍ରଭୃତି ଏବଂ ବ୍ରାହ୍ମଣାଦି ଚତୁର୍ବର୍ଣ୍ଣର ସମସ୍ତ ବ୍ୟାବହାରିକ କର୍ମର ସମାବେଶ ହୋଇଅଛି । ବସ୍ତୁତଃ ଏହି ଯଜ୍ଞଚକ୍ର ପରବର୍ତ୍ତୀ ୨୦ଶ ଶ୍ଳୋକରେ ବର୍ଣ୍ଣିତ 'ଲୋକ ସଂଗ୍ରହ'ର ଅନ୍ୟରୂପ ।

ପ୍ରକୃତ କଥା ବୁଝିଲେ ଜଣାଯାଏ ଯେ 'ଯଜ୍ଞ' ଶବ୍ଦର ମୂଳଅର୍ଥ ତ୍ୟାଗ । ପରହିତ, ସମାଜରକ୍ଷା ନିମିତ୍ତ ଏବଂ ଈଶ୍ୱରଙ୍କ ସୃଷ୍ଟିରକ୍ଷା ନିମିତ୍ତ ଆତ୍ମୋତ୍ସର୍ଗ ବା

ସହଯଜ୍ଞାଃ ପ୍ରଜାଃ ସୃଷ୍ଟ୍ୱା ପୁରୋବାଚ ପ୍ରଜାପତିଃ ।
ଅନେନ ପ୍ରସବିଷ୍ୟଧ୍ୱମେଷ ବୋଽସ୍ତ୍ୱିଷ୍ଟକାମଧୁକ୍ । ୧୦ ।

ତ୍ୟାଗହିଁ 'ଯଜ୍ଞ'ର ପ୍ରକୃତ ତାତ୍ପର୍ଯ୍ୟ । ପ୍ରାଚୀନଭାରତୀୟ ଗ୍ରନ୍ଥମାନଙ୍କରେ ଯଜ୍ଞର ଯେଉଁ ସବୁ ବର୍ଣ୍ଣନା ଅଛି ତହିଁରୁ ସ୍ପଷ୍ଟ ଜଣାଯାଏ ଯେ ଦକ୍ଷିଣା ଓ ଦାନହିଁ ଯଜ୍ଞର ବିଶିଷ୍ଟ ଅଙ୍ଗ, ଜଣେ ଜଣେ ରାଜା ଯଜ୍ଞରେ ଦୀକ୍ଷିତ ହୋଇ ରାଜକୋଷରେ ସଞ୍ଚୟ କରିଥିବା ସମଗ୍ର ଅର୍ଥରାଶି ଅକୁଣ୍ଠିତ ଚିତ୍ତରେ ଦାନ କରୁଥିଲେ । ମହାକବି କାଳିଦାସ ରଘୁବଂଶରେ ଯେଉଁ ସର୍ବସ୍ୱଦକ୍ଷିଣ ଯଜ୍ଞର ଚିତ୍ର ଅଙ୍କନ କରିଅଛନ୍ତି ଏହା ତହିଁର ଗୋଟିଏ ସୁନ୍ଦର ଉଦାହରଣ ।

୧୦ । **ଅନ୍ୱୟଦୀପିକା**—ପୁରା (ପୂର୍ବେ; ସୃଷ୍ଟି ଆରମ୍ଭରେ) ପ୍ରଜାପତିଃ ( ବ୍ରହ୍ମା ) ସହଯଜ୍ଞାଃ ( ଯଜ୍ଞ ସହିତ ) ପ୍ରଜାଃ ( ପ୍ରଜାମାନଙ୍କୁ ) ସୃଷ୍ଟ୍ୱା (ସୃଷ୍ଟିକରି) ଉବାଚ ( କହିଥିଲେ ),—ଅନେନ ( ଏହି ଯଜ୍ଞଦ୍ୱାରା ) ପ୍ରସବିଷ୍ୟଧ୍ୱଂ ( ବୃଦ୍ଧି-ପ୍ରାପ୍ତ ହୁଅ ), ଏଷଃ ( ଏହି ଯଜ୍ଞ ) ବଃ ( ତୁମ୍ଭମାନଙ୍କର ) ଇଷ୍ଟକାମଧୁକ୍ ( ଅଭୀଷ୍ଟ ଭୋଗପ୍ରଦ ) ଅସ୍ତୁ ( ହେଉ ) ।

**ଅନୁବାଦ**—ସୃଷ୍ଟି ଆରମ୍ଭରେ ପ୍ରଜାପତି ଯଜ୍ଞସହିତ ପ୍ରଜାମାନଙ୍କୁ ସୃଷ୍ଟିକରି କହିଥିଲେ, ଏହି ଯଜ୍ଞଦ୍ୱାରା ତୁମ୍ଭେମାନେ ବୃଦ୍ଧିପ୍ରାପ୍ତ ହୁଅ । ଏହି ଯଜ୍ଞହିଁ ତୁମ୍ଭମାନଙ୍କର ଅଭୀଷ୍ଟଫଳ ପ୍ରଦାନ କରୁ ।

**ସୁବୋଧିନୀ ଟୀକା**—ପ୍ରଜାପତିବଚନାଦପି କର୍ମକର୍ତ୍ତୈବ ଶ୍ରେଷ୍ଠ ଇତ୍ୟାହ—ସହଯଜ୍ଞା ଇତି ଚତୁର୍ଭିଃ । ଯଜ୍ଞେନ ସହ ବର୍ତ୍ତନ୍ତ ଇତି ସହଯଜ୍ଞାଃ ଯଜ୍ଞାଧିକୃତା ବ୍ରାହ୍ମଣାଦ୍ୟାଃ ପ୍ରଜାଃ ପୁରା ସର୍ଗାଦୌ ସୃଷ୍ଟ୍ୱେଦ ମୁବାଚ ବ୍ରହ୍ମା—ଅନେନ ଯଜ୍ଞେନ ପ୍ରସବିଷ୍ୟଧ୍ୱମ୍ । ପ୍ରସବୋ ହି ବୃଦ୍ଧିଃ । ଉତ୍ତରୋତ୍ତରାଭିବୃଦ୍ଧିଂ ଲଭଧ୍ୱ-ମିତ୍ୟର୍ଥଃ । ଅତହେତୁଃ ଏଷ ଯଜ୍ଞୋ ବୋ ଯୁଷ୍ମାକମିଷ୍ଟକାମଧୁକ୍ । ଇଷ୍ଟାନ୍ ଦୋଗ୍ଧୀତି ତଥା । ଅଭୀଷ୍ଟଭୋଗପ୍ରଦୋଽସ୍ତ୍ୱିତ୍ୟର୍ଥଃ । ଅତ୍ର ଚ ଯଜ୍ଞଗ୍ରହଣ-ମାବଶ୍ୟକକର୍ମୋପଲକ୍ଷଣାର୍ଥମ୍ । କାମ୍ୟକର୍ମପ୍ରଶଂସା ତୁ ପ୍ରକରଣେ ଅସଙ୍ଗତାପି ସାମାନ୍ୟତୋଽକର୍ମଣଃ କର୍ମଶ୍ରେଷ୍ଠ ମିତ୍ୟେତଦର୍ଥେତ୍ୟଦୋଷଃ ।

**ବିବୃତି**—ଭଗବାନଙ୍କର ଯେଉଁ ଶକ୍ତିଦ୍ୱାରା ଏ ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି ହୋଇଅଛି, ସେହି ଶକ୍ତିକୁ ଆମ ଧର୍ମଶାସ୍ତ୍ରରେ ପ୍ରଜାପତି ବା ବ୍ରହ୍ମା ନାମରେ ଅଭିହିତ କରାଯାଏ । ଯେତେବେଳେ ପ୍ରଜାପତି ବା ବ୍ରହ୍ମା ଦେବଲୋକାଦି ସମସ୍ତ ଲୋକ ସୃଷ୍ଟିକଲେ ସେତେବେଳେ ସୃଷ୍ଟଲୋକ ସକଳର ଧାରଣପୋଷଣ ନିମିତ୍ତ ଚିରସ୍ଥାୟୀ ଉପାୟ ନିର୍ଦ୍ଧାରଣ କରିବାପାଇଁ ସେ ଭଗବାନଙ୍କୁ ଧ୍ୟାନ କଲେ ଏବଂ ତାଙ୍କଠାରୁ ପ୍ରେରଣା ପାଇ କର୍ମରୀତି ବା ପ୍ରବୃତ୍ତି ପ୍ରଧାନ ଯଜ୍ଞଚକ୍ର ଉତ୍ପନ୍ନ

ଦେବାନ୍ ଭାବୟତାନେନ ତେ ଦେବା ଭାବୟନ୍ତୁ ବଃ
ପରସ୍ପରଂ ଭାବୟନ୍ତଃ ଶ୍ରେୟଃ ପରମବାପ୍‌ସ୍ୟଥ । ୧୧ ।

କଲେ; ମହାଭାରତ ଶାନ୍ତିପର୍ବରେ ଏହିପରି ବର୍ଣ୍ଣିତ ଅଛି ଏବଂ ଏ ଶ୍ଳୋକରେ ବ୍ରହ୍ମାଙ୍କ ଉକ୍ତିରୂପରେ ସେହି କଥାହିଁ ଭଗବାନ୍ କହୁଅଛନ୍ତି ।

କର୍ମ ଯେ ସୃଷ୍ଟିରକ୍ଷାର ଏକମାତ୍ର ଉପାୟ ଏହା କାହାରିକୁ କହିବାକୁ ହେବ ନାହିଁ । ଶ୍ରୀଧରସ୍ୱାମୀ ଏ ଶ୍ଳୋକର ଟୀକାରେ 'ଯଜ୍ଞ' ଶବ୍ଦ ସାଧାରଣ ଅବଶ୍ୟକ କର୍ମ ଅର୍ଥରେ ପ୍ରଯୁକ୍ତ ହୋଇଥିବା କଥା ସ୍ପଷ୍ଟରୂପେ ଉଲ୍ଲେଖ କରି ଅଛନ୍ତି । ତେଣୁ ଏଠାରେ ବ୍ରହ୍ମା ଲୋକ ସୃଷ୍ଟିକରି ସେମାନଙ୍କର ଉପଯୋଗୀ କର୍ମଗତ ନିର୍ଦ୍ଦେଶ କରି ଦେଇଥିଲେ—ଏହାହିଁ ଏ ଶ୍ଳୋକର ତାତ୍ପର୍ଯ୍ୟ । ଯେଉଁମାନେ କହନ୍ତି, କେବଳ ଚିତ୍ତଶୁଦ୍ଧି ପର୍ଯ୍ୟନ୍ତ ନିଷ୍କାମକର୍ମ କରାଯାଏ, ଚିତ୍ତଶୁଦ୍ଧି ପରେ କର୍ମକରିବା ଅନାବଶ୍ୟକ, ସେମାନେ ଏଥିରୁ ବୁଝିବେ—ପ୍ରବୃତ୍ତି-ପର ନିଷ୍କାମ କର୍ମହିଁ ଗୀତାର ପ୍ରତିପାଦ୍ୟ ବିଷୟ ।

**୧୧ । ଅନ୍ୱୟଦୀପିକା**—ଅନେନ (ଏହି ଯଜ୍ଞଦ୍ୱାରା) ଦେବାନ୍ (ଦେବତାମାନଙ୍କୁ) ଭାବୟତ (ତୁମ୍ଭେମାନେ ସନ୍ତୁଷ୍ଟ କରାଅ); ତେ ଦେବାଃ (ସେହି ଦେବତାମାନେ) ବଃ (ତୁମ୍ଭମାନଙ୍କୁ) ଭାବୟନ୍ତୁ (ସନ୍ତୁଷ୍ଟ କରନ୍ତୁ); (ଏହିପରି) ପରସ୍ପରଂ ଭାବୟନ୍ତଃ (ପରସ୍ପର ସନ୍ତୋଷ ବିଧାନଦ୍ୱାରା) ପରଂ ଶ୍ରେୟଃ (ପରମ ମଙ୍ଗଳ) ଅବାପ୍‌ସ୍ୟଥ (ତୁମ୍ଭେମାନେ ଲାଭ କରିବ) ।

**ଅନୁବାଦ**—ଏହି ଯଜ୍ଞଦ୍ୱାରା ତୁମ୍ଭେମାନେ ଦେବତାମାନଙ୍କୁ ସନ୍ତୁଷ୍ଟ କରଅ ଓ ଦେବତାମାନେ ମଧ୍ୟ ତୁମ୍ଭମାନଙ୍କୁ ସନ୍ତୁଷ୍ଟ କରନ୍ତୁ । ଏହିପରି ପରସ୍ପର ସନ୍ତୋଷ ବିଧାନଦ୍ୱାରା ତୁମ୍ଭେମାନେ ପରମ ମଙ୍ଗଳ ଲାଭ କରିବ ।

**ସୁବୋଧିନୀ ଟୀକା**—କଥମିଷ୍ଟ 'କାମଦୋଗ୍ଧା ଯଜ୍ଞୋ ଭବେଦତ ?' ଅତାହ—ଦେବାନିତି, ଅନେନ ଯଜ୍ଞେନ ଯୂୟଂ ଦେବାନ୍ ଭାବୟତ ହବିର୍ଭାଗୈଃ ସମ୍ବର୍ଦ୍ଧୟତ । ତେ ଚ ଦେବା ବୋ ଯୁଷ୍ମାନ୍ ସମ୍ବର୍ଦ୍ଧୟନ୍ତୁ ବୃଷ୍ଟ୍ୟାଦିନାନ୍ନୋତ୍ପତ୍ତି-ଦ୍ୱାରେଣ । ଏବମନ୍ୟୋଽନ୍ୟଂ ସମ୍ବର୍ଦ୍ଧୟନ୍ତୋ ଦେବାଶ୍ଚ ଯୂୟଂ ଚ ପରସ୍ପରଂ ଶ୍ରେୟୋଽଭୀଷ୍ଟମର୍ଥ ମବାପ୍‌ସ୍ୟଥ ପ୍ରାପ୍‌ସ୍ୟଥ ।

**ବିବୃତି**—ଅସ୍ମାର ଅବିନଶ୍ୱରତା ଓ ପୁନର୍ଜନ୍ମବାଦପରି ଦେବତା ବିଶ୍ୱାସ-ମଧ୍ୟ ହିନ୍ଦୁଧର୍ମର ଗୋଟିଏ ବିଶିଷ୍ଟମତ । ପ୍ରକୃତିରେ ନିହିତ ଈଶ୍ୱରଙ୍କର ବିଭିନ୍ନ କାର୍ଯ୍ୟକାରିଣୀ ଶକ୍ତିକୁ ବୈଦିକ ଆର୍ଯ୍ୟଋଷିମାନେ ଦେବତା ଜ୍ଞାନରେ ପୂଜା କରୁଥିଲେ । ଭକ୍ତକବି ମଧୁସୂଦନ ଯଥାର୍ଥରେ ଗାଇ ଅଛନ୍ତି—

"ପୂଜିଲେ ଭକ୍ତିରେ ଯାର ପୂର୍ବ ଋଷିଗଣ,
ମହାଭୂତଚୟେ ଦେଖି ଶକ୍ତି ନିଦର୍ଶନ;

ଇଷ୍ଟାନ୍ ଭୋଗାନ୍ ହି ବୋ ଦେବା ଦାସ୍ୟନ୍ତେ ଯଜ୍ଞଭାବିତାଃ ।
ତୈର୍ଦତ୍ତାନପ୍ରଦାୟୈଭ୍ୟୋ ଯୋ ଭୁଙ୍କ୍ତେ ସ୍ତେନ ଏବ ସଃ । ୧୨ ।

ସେହି ଭୂତଶକ୍ତିଚୟ୍ ଧରି ଏକାଧାରେ,
କେ ହେ ଶକ୍ତିକତ ତୁମ୍ଭେ ନିଜ ମହିମାରେ ।"

ଇଷ୍ଟିପ୍ରାଣେ ଦେବାବତରଣ ।

ବ୍ରହ୍ମାଙ୍କ ନିର୍ଦ୍ଦେଶ ଅନୁସାରେ ମନୁଷ୍ୟମାନେ ଘୃତାହୁତି ପ୍ରଦାନଦ୍ୱାରା ଦେବତାମାନଙ୍କୁ ସନ୍ତୁଷ୍ଟ କରନ୍ତି ଓ ହବିର୍ଭୋଜୀ ଦେବତାମାନେ ନିଜମୟରେ ବୃଷ୍ଟ୍ୟାଦିଦ୍ୱାରା ପୃଥିବୀକୁ ଶସ୍ୟଶାଳିନୀ କରନ୍ତି । ଏହିପରି ସୃଷ୍ଟି ରଚନାହୁଏ । ତେଣୁ ଯଜ୍ଞଦ୍ୱାରା ଦେବତାମାନଙ୍କୁ ସଂବର୍ଦ୍ଧିତ କରିବା ଉଚିତ । ଗୀତାର ୧୮ଶ ଅଧ୍ୟାୟର ପଞ୍ଚମ ଶ୍ଳୋକରେ ଏହି ଯଜ୍ଞାଦି କର୍ମ ଯେ ତ୍ୟାଜ୍ୟ ନୁହେ ଭଗବାନ୍ ଏହା ସ୍ପଷ୍ଟରୂପେ ନିର୍ଦ୍ଦେଶ କରିଦେଇଅଛନ୍ତି ।

ଏଠାରେ ଗୋଟିଏ ପ୍ରଶ୍ନ ସ୍ୱତଃ ମନରେ ଉଦିତ ହୁଏ—ଗୀତାରେ ଏହି ନିଷ୍କାମ କର୍ମ ପ୍ରକରଣରେ ସକାମ କର୍ମ ପ୍ରସଙ୍ଗ କିପରି ସଂଗତ ? ଶ୍ରୀଧରସ୍ୱାମୀ ମଧ୍ୟ ଏହି ପ୍ରଶ୍ନ ଉଠାଇ ତାହାର ଉତ୍ତରରେ କହିଅଛନ୍ତି କର୍ମ ନ କରିବା ଅପେକ୍ଷା କର୍ମ ଶ୍ରେଷ୍ଠ—ତେଣୁ ଏ ପ୍ରସଙ୍ଗ ଦୋଷଦୁଷ୍ଟ ନୁହେ । ଏ କଥାକୁ ଅନ୍ୟଭାବରେ ଆଲୋଚନା କଲେ ଆମ୍ଭେମାନେ ଦେଖିବୁଁ ପ୍ରକୃତରେ କାମ୍ୟକର୍ମ ପ୍ରସଙ୍ଗ ଏଠାରେ ଅପ୍ରାସଙ୍ଗିକ ନୁହେ । ବ୍ରହ୍ମାଙ୍କ ଉକ୍ତିରୁ ବୁଝାଯାଏ—ପ୍ରତ୍ୟେକ ଲୋକଙ୍କୁ କର୍ତ୍ତବ୍ୟ ଅନୁରୋଧରେ କର୍ମକରିବାକୁ ହେବ । କାମନା ରଖି ଫଳପ୍ରାପ୍ତି ଉଦ୍ଦେଶ୍ୟରେ କର୍ମ କରିବାକୁ ହେବ,—ଏକଥା ବ୍ରହ୍ମା କହି ନାହାନ୍ତି । ଗୋଟିଏ ଉଦାହରଣ ଗ୍ରହଣ କରାଯାଉ; କର୍ତ୍ତବ୍ୟ ଅନୁରୋଧରେ ମୁଁ ଗୋଟିଏ ଆମ୍ବଗଛ ଲଗାଇଲି, ଏଥିରୁ ଉତ୍ପନ୍ନ ଫଳଦ୍ୱାରା ମୁଁ ଉଦର ପୂରଣ କରିବି—ଗଛ ଲଗାଇବାବେଳେ ଏ କାମନା ମୋର ନ ଥିଲା; ପ୍ରକୃତିଗୁଣରେ ବୃକ୍ଷଟି ଯଥାକାଳରେ ସୁନ୍ଦର ଫଳ ଗୁଚ୍ଛଏ ପ୍ରସବ କଲା । ତାହାର ଛାୟା, ବକୁଳର ସୁବାସ ଓ ସୁମିଷ୍ଟ ଫଳ ମୁଁ ଉପଭୋଗ କଲି । ନିଷ୍କାମ ଭାବରେ କର୍ମର ଅନୁଷ୍ଠାନ କଲେ ଯେବେ ସ୍ୱତଃ ସ୍ୱଭାବଗୁଣରେ ଫଳ ଆସି ଉପସ୍ଥିତ ହୁଏ—ତାହା ତ୍ୟାଗ କରିବା ନିଷ୍କାମ କର୍ମର ଉଦ୍ଦେଶ୍ୟ ନୁହେ । ଏହାହିଁ ଏ ଶ୍ଳୋକରେ ବ୍ରହ୍ମାଙ୍କ ଉକ୍ତିର ତାତ୍ପର୍ଯ୍ୟ ବୋଲି ମନେ ହୁଏ ।

**୧୨ । ଅନ୍ୱୟଦୀପିକା**—ହି ( ଯେହେତୁ ) ଦେବାଃ ( ଦେବତାମାନେ ) ଯଜ୍ଞଭାବିତାଃ ( ଯଜ୍ଞଦ୍ୱାରା ସନ୍ତୁଷ୍ଟ ହୋଇ ) ବଃ ( ତୁମ୍ଭମାନଙ୍କୁ ) ଇଷ୍ଟାନ୍ ଭୋଗାନ୍ ( ଅଭୀଷ୍ଟ ଭୋଗ୍ୟ ବସ୍ତୁସକଳ ) ଦାସ୍ୟନ୍ତେ ( ଦେବେ ); ତୈଃ ଦତ୍ତାନ୍ [ ଭୋଗାନ୍ ] ( ସେମାନଙ୍କ ଦ୍ୱାରା ପ୍ରଦତ୍ତ ଭୋଗ ) ଏଭ୍ୟଃ ( ସେମାନଙ୍କୁ ) ଅପ୍ରଦାୟ ( ନ ଦେଇ ) ଯଃ ଭୁଙ୍କ୍ତେ ( ଯେ ଭୋଗକରେ ) ସଃ ( ସେ ) ସ୍ତେନଃ ଏବ ( ନିଶ୍ଚୟ ଚୋର ) ।

ଯଜ୍ଞଶିଷ୍ଟାଶିନଃ ସନ୍ତୋ ମୁଚ୍ୟନ୍ତେ ସର୍ବକିଲ୍ବିଷୈଃ,
ଭୁଞ୍ଜତେ ତେ ତ୍ୱଘଂ ପାପା ଯେ ପଚନ୍ତ୍ୟାତ୍ମକାରଣାତ୍ । ୧୩ ।

**ଅନୁବାଦ**—ଦେବତାମାନେ ଯଜ୍ଞଦ୍ୱାରା ସମ୍ବର୍ଦ୍ଧିତ ହୋଇ ଅଭୀଷ୍ଟ ଭୋଗ୍ୟ ବିଷୟ ପ୍ରଦାନ କରନ୍ତି, ତେଣୁ ସେମାନଙ୍କ ଦତ୍ତ ଭୋଗ୍ୟବସ୍ତୁ ଯଜ୍ଞଦ୍ୱାରା ସେମାନଙ୍କୁ ପ୍ରଦାନ ନ କରି ଯେ ଭୋଗକରେ ସେ ନିଶ୍ଚୟ ଚୋର ।

**ସୁବୋଧିନୀ ଟୀକା**—ଏତଦେବ ସ୍ପଷ୍ଟୀକୁର୍ବନ୍ କର୍ମାକରଣେ ଦୋଷ-ମାହ—ଇଷ୍ଟାନିତି । ଯଜ୍ଞୈର୍ଵର୍ଦ୍ଧିତାଃ ସନ୍ତୋ ଦେବା ବୃଷ୍ଟ୍ୟାଦିଦ୍ୱାରେଣ ବୋ ଯୁଷ୍ମଭ୍ୟଂ ଭୋଗାନ୍ ଦାସ୍ୟନ୍ତେ ହି । ଅତୋ ଦେବୈର୍ଦତ୍ତାନନ୍ନାଦୀନେଭ୍ୟୋ ଦେବେଭ୍ୟଃ ପଞ୍ଚଯଜ୍ଞାଦିଭିରଦତ୍ତ୍ୱା ଯୋ ଭୁଙ୍କ୍ତେ ସ ଭୁ ସ୍ତେନ ଚୌର ଏବ ମନ୍ତବ୍ୟଃ ।

**ବୃତ୍ତି**—ଦେବତାମାନେ ଋଣୀଟିକ । ସେମାନେ ସନ୍ତୁଷ୍ଟ ହୋଇ ଭୋଗ କରିବାପାଇଁ ଅନ୍ନ, ବସ୍ତ୍ର, ସୁବର୍ଣ୍ଣ, ପଶୁ ପ୍ରଭୃତି ସମସ୍ତ ବସ୍ତୁ ଆମ୍ଭମାନଙ୍କୁ ପ୍ରଦାନ କରିଅଛନ୍ତି । ଏଗୁଡ଼ିକ ଦେବଦତ୍ତ ଋଣସ୍ୱରୂପ । ଏହି ଋଣରୁ ମୁକ୍ତ ହେବା ପାଇଁ ଦେବୋଦ୍ଦେଶ୍ୟରେ ପ୍ରତ୍ୟହ କିଛି କିଛି ତ୍ୟାଗକରିବା ଉଚିତ । ସେଥିପାଇଁ ଶାସ୍ତ୍ରମାନଙ୍କରେ ବ୍ରୀହି ଯବାଦିଦ୍ୱାରା ବୈଶ୍ୱଦେବ, ଅଗ୍ନିହୋତ୍ର, ଜ୍ୟୋତିଷ୍ଟୋ-ପ୍ରଭୃତି ଯାଗ କରିବାର ବିଧି ଅଛି । ଯେଉଁ ଲୋକ କୌଣସି ପ୍ରକାର ତ୍ୟାଗ ନ କରି ସ୍ୱାର୍ଥପର ହୋଇ ନିଜେ କେବଳ ଭୋଗକରେ ସେ ଦେବସ୍ୱାପହାରୀ ଚୋର ଛଡ଼ା ଅଉ କଅଣ ହୋଇପାରେ ?

ସନ୍ନ୍ୟାସୀମାନେ ସମସ୍ତ ଭୋଗାକାଂକ୍ଷା ବର୍ଜନ କରି ଅନାହାରକ୍ଲିଷ୍ଟ ହୋଇ ଅରଣ୍ୟରେ ତପସ୍ୟା କରନ୍ତି । ମାତ୍ର ଗୀତାରେ ଏପରି ଉପଦେଶ ଆଦୌ ନାହିଁ । ତେଣୁ ଗୀତା ପ୍ରବୃତ୍ତିପର ଗୃହସ୍ଥାଶ୍ରମୀର ଧର୍ମଶାସ୍ତ୍ର—ଏଥିରେ ସନ୍ଦେହର ଅବକାଶ ନାହିଁ ।

**୧୩ । ଅନ୍ୱୟଦୀପିକା**— ଯଜ୍ଞଶିଷ୍ଟାଶିନଃ (ଯଜ୍ଞାବଶେଷଭୋଜୀ) ସନ୍ତଃ (ସଜ୍ଜନ ଗଣ) ସର୍ବକିଲ୍ବିଷୈଃ ମୁଚ୍ୟନ୍ତେ (ସର୍ବପାପରୁ ମୁକ୍ତ ହୁଅନ୍ତି); ତୁ ଯେ (କିନ୍ତୁ ଯେଉଁମାନେ) ଆତ୍ମକାରଣାତ୍ (କେବଳ ନିଜପାଇଁ) ପଚନ୍ତି (ପାକକରନ୍ତି) ତେ ପାପାଃ (ସେ ପାପୀମାନେ) ଅଘଂ ଭୁଞ୍ଜତେ (ପାପ ଭୋଜନ କରନ୍ତି) ।

**ଅନୁବାଦ**—ଯେଉଁ ସଜ୍ଜନମାନେ ଯଜ୍ଞାବଶେଷ ଅନ୍ନ ଭୋଜନ କରନ୍ତି ଅର୍ଥାତ୍ ଦେବତା ଅତିଥିମାନଙ୍କୁ ଦେଇସାରି ଅବଶିଷ୍ଟ ଭୋଜନ କରନ୍ତି ସେମାନେ ସର୍ବବିଧ ପାପରୁ ମୁକ୍ତ ହୁଅନ୍ତି । ଯେଉଁ ପାପିଷ୍ଠମାନେ କେବଳ ନିଜ ଉଦରପୂରଣ-ପାଇଁ ଅନ୍ନାଦି ପାକ କରନ୍ତି ସେମାନେ ପାପହିଁ ଭୋଜନ କରନ୍ତି ।

**ସୁବୋଧିନୀ ଟୀକା**—ଅତଶ୍ଚ ଯଜନ୍ତ ଏବ ଶ୍ରେଷ୍ଠାଃ । ନେତର ଇତ୍ୟାହ—ଯଜ୍ଞଶିଷ୍ଟାଶିନ ଇତି । ବୈଶ୍ୱଦେବାଦିଯଜ୍ଞାବଶିଷ୍ଟଂ ୟେଽଶ୍ନନ୍ତି ତେ

ପଞ୍ଚସୂନାକୃତୈଃ ସର୍ବୈଃ କଲ୍ମିଷୈ ର୍ମୁଚ୍ୟନ୍ତେ । ପଞ୍ଚସୂନାସ୍ତୁ ସ୍ମୃତାବୁକ୍ତାଃ—କଣ୍ଡନୀ ପେଷଣୀ ଚୁଲ୍ଲୀ ଉଦକୁମ୍ଭୀ ଚ ମାର୍ଜନୀ । ପଞ୍ଚସୂନା ଗୃହସ୍ଥସ୍ୟ ତାଭିଃ ସ୍ୱର୍ଗଂ ନ ଗଚ୍ଛତି । ଇତି । ଯେ ତ୍ୱାତ୍ମନୋ ଭୋଜନାର୍ଥ ମେବ ପଚନ୍ତି—ନ ତୁ ବୈଶ୍ୱଦେବାଦ୍ୟର୍ଥଂ—ତେ ପାପା ଦୁର୍ବୃତ୍ତା ଅଘମେବ ଭୁଞ୍ଜତେ ।

**ବିବୃତି**—ଋକ୍‌ବେଦ ଅସ୍ମାନଙ୍କର ପ୍ରାଚୀନତମ ଧର୍ମଶାସ୍ତ୍ର । ତହିଁରେ ଲିଖିତ ଅଛି:—

"ନାର୍ଯ୍ୟମଣଂ ପୁଷ୍ୟତି ନୋସଖାୟଂ କେବଳାଘୋ ଭବତି କେବଳାଦୀ"

"ଯେଉଁ ଲୋକ ଅର୍ଯ୍ୟମା ଅର୍ଥାତ୍ ମହାଙ୍କର ପୋଷଣ ନ କରି ଏକାକୀ ଭୋଜନକରେ ତାହାକୁ କେବଳ ପାପୀ ବୋଲି ବୁଝିବାକୁ ହେବ ।"

ମନୁସଂହିତାରେ ଉକ୍ତ ଅଛି—

ଅଘଂ ସ କେବଳଂ ଭୁଂକ୍ତେ ଯଃ ପଚତ୍ୟାତ୍ମକାରଣାତ୍,
ଯଜ୍ଞଶିଷ୍ଟାଶନଂ ହ୍ୟେତତ୍ ସତାମନ୍ନଂ ବିଧୀୟତେ । ୩ । ୧୧୮

"ଯେଉଁଲୋକ ନିଜପାଇଁ ପାକକରେ, ସେ କେବଳ ପାପ ଭକ୍ଷଣ କରେ, ଯଜ୍ଞ କରିବା ପରେ ଯାହା ଅବଶିଷ୍ଟ ରହେ ତାହାହିଁ ସାଧୁମାନଙ୍କର ଅନ୍ନ ବା ଜୀବନଧାରଣର ଉପଯୋଗୀ ଖାଦ୍ୟ" ।

ମନୁ ଅନ୍ୟତ୍ର କହିଅଛନ୍ତି—

ବିଘସାଶୀ ଭବେନ୍ନିତ୍ୟଂ ନିତ୍ୟଂ ବାମୃତଭୋଜନଃ
ବିଘସୋ ଭୁକ୍ତଶେଷନ୍ତୁ ଯଜ୍ଞଶେଷଂ ତଥାମୃତମ୍ । ୩।୨୮୫

ପ୍ରତ୍ୟହ 'ବିଘସ' ବା 'ଅମୃତ' ଭୋଜନ କରିବ । ବ୍ରାହ୍ମଣାଦିଙ୍କୁ ଦେବା-ପରେ ଯାହା ଅବଶିଷ୍ଟ ରହେ ତାହାକୁ 'ବିଘସ' ଏବଂ ଯଜ୍ଞ ଶେଷରେ ଯାହା ଅବଶିଷ୍ଟ ରହେ ତାହାକୁ 'ଅମୃତ' ବୋଲିଯାଏ । ପ୍ରାଚୀନ ଟୀକାକାରମାନେ କହନ୍ତି—ଏ ସ୍ଥଳରେ ହିନ୍ଦୁଗୃହସ୍ଥ ନିତ୍ୟ କରିବ୍ୟ ପଞ୍ଚଯଜ୍ଞର ଅନୁଷ୍ଠାନଦ୍ୱାରା ପଞ୍ଚସୂନାକୃତ ପାପରୁ ନିଷ୍କୃତି ଲାଭକରେ । 'ସୂନା' ଶବ୍ଦର ଅର୍ଥ ପ୍ରାଣିବଧ ସ୍ଥାନ । ଅନିଚ୍ଛାସତ୍ତ୍ୱେ ଗୃହସ୍ଥ ନିତ୍ୟ ପଞ୍ଚ ସ୍ଥାନରେ ପ୍ରାଣିବଧ କରେ । ପଞ୍ଚସୂନା ଯଥା:—

"କଣ୍ଡନୀ ପେଷଣୀ ଚୁଲ୍ଲୀ ଉଦକୁମ୍ଭୀ ଚ ମାର୍ଜନୀ,
ପଞ୍ଚସୂନା ଗୃହସ୍ଥସ୍ୟ ତସ୍ମାତ୍ ସ୍ୱର୍ଗଂ ନ ଗଚ୍ଛତି,
ପଞ୍ଚସୂନାକୃତଂ ପାପଂ ପଞ୍ଚଯଜ୍ଞୈ ର୍ବ୍ୟପୋହତି ।"

"ଢିଙ୍କି, ପେଷଣୀ ବା ଚକି, ଚୁଲି, କୁମ୍ଭ ବା ମାଠିଆ ଓ ଝାଡୁ ବା ଝାଡୁଣୀ—ଏହି ପାଞ୍ଚ ସ୍ଥାନରେ ଗୃହସ୍ଥର ଜୀବବଧ ହୁଏ, ତେଣୁ ତାହାର ସ୍ୱର୍ଗ ପ୍ରାପ୍ତି ହୁଏ ନାହିଁ । ପଞ୍ଚ ଯଜ୍ଞର ଅନୁଷ୍ଠାନଦ୍ୱାରା ଏହି ପଞ୍ଚ ପାପର ନିବୃତ୍ତି ହୁଏ ।"

ଅନ୍ନାଦ୍‌ଭବନ୍ତି ଭୂତାନି ପର୍ଜନ୍ୟାଦନ୍ନସମ୍ଭବଃ,
ଯଜ୍ଞାଦ୍‌ଭବତି ପର୍ଜନ୍ୟୋ ଯଜ୍ଞଃ କର୍ମସମୁଦ୍‌ଭବଃ । ୧୪ ।

ଋଷିଯଜ୍ଞଂ ଦେବଯଜ୍ଞଂ ଭୂତଯଜ୍ଞଂ ଚ ସର୍ବଦା
ନୃଯଜ୍ଞଂ ପିତୃଯଜ୍ଞଂ ଚ ଯଥାଶକ୍ତି ନ ହାପୟେତ୍ । ମନୁ ୪।୨୧

ବେଦାଧ୍ୟୟନ, ସନ୍ଧ୍ୟା ଉପାସନା ପ୍ରଭୃତି ଋଷିଯଜ୍ଞ, ହୋମାଦି ଦେବଯଜ୍ଞ, କାକାଦି ଜୀବଜନ୍ତୁଙ୍କୁ ଖାଦ୍ୟ ପ୍ରଦାନ କରିବା ଭୂତଯଜ୍ଞ, ଅତିଥି ସତ୍କାର ନୃଯଜ୍ଞ ଓ ଶ୍ରାଦ୍ଧତର୍ପଣାଦି ପିତୃଯଜ୍ଞ ।

ପ୍ରକୃତରେ ବୁଝିଲେ ଏସବୁ ଯଜ୍ଞ ବିଶ୍ୱହିତାକାଂକ୍ଷାର ଉପଲକ୍ଷଣ ମାତ୍ର । ଈଶ୍ୱରଙ୍କ ସୃଷ୍ଟିରକ୍ଷା କରିବା ପାଇଁ ମନୁଷ୍ୟ ସର୍ବଥା ତ୍ୟାଗବ୍ରତରେ ବ୍ରତୀ ହେବ— ଏହାହିଁ ଉଦ୍ଦେଶ୍ୟ । ଏପରି ମହତ୍ ଓ ଉଦାର ଆଦର୍ଶଦ୍ୱାରା ଯେ କର୍ତ୍ତବ୍ୟ ଅନୁପ୍ରାଣିତ ହୁଏ ଇହଲୋକରେହିଁ ସେ ଜୀବନ୍ମୁକ୍ତିର ଅଧିକାରୀ ହୁଏ । ଆମେ ଆପଣାକୁ ଆର୍ଯ୍ୟ ବଂଶଧର କହି ଗର୍ବ ଅନୁଭବ କରୁଁ, ମାତ୍ର ଏପରି ବିଶ୍ୱହିତବ୍ରତରେ ଆମ ଭିତରୁ କେତେ ଜଣ ବ୍ରତୀ ?

**୧୪ । ଅନ୍ୱୟଦୀପିକା**—ଅନ୍ନାତ୍ (ଅନ୍ନରୁ) ଭୂତାନି (ପ୍ରାଣିଗଣ) ଭବନ୍ତି (ଜନ୍ମନ୍ତି) ପର୍ଜନ୍ୟାତ୍ (ମେଘରୁ) ଅନ୍ନସମ୍ଭବଃ (ଅନ୍ନର ଉତ୍ପତ୍ତି ହୁଏ), ଯଜ୍ଞାତ୍ (ଯଜ୍ଞରୁ) ପର୍ଜନ୍ୟଃ (ମେଘ) ଭବତି (ଉତ୍ପନ୍ନ ହୁଏ), ଯଜ୍ଞଃ (ଯଜ୍ଞ) କର୍ମସମୁଦ୍‌ଭବଃ (କର୍ମରୁ ଉତ୍ପନ୍ନ ହୁଏ) ।

**ଅନୁବାଦ**—ପ୍ରାଣୀମାନେ ଅନ୍ନରୁ ଉତ୍ପନ୍ନ ହୁଅନ୍ତି, ମେଘରୁ ଅନ୍ନର ଉତ୍ପତ୍ତି ହୁଏ, ଯଜ୍ଞରୁ ମେଘ ଜନ୍ମେ, ଏବଂ କର୍ମରୁ ଯଜ୍ଞର ଉତ୍ପତ୍ତି ହୋଇଥାଏ ।

**ସୁବୋଧିନୀ ଟୀକା**—ଜଗଚ୍ଚକ୍ରପ୍ରବୃତ୍ତିହେତୁତ୍ୱାଦପି କର୍ମ କର୍ତ୍ତବ୍ୟମିତ୍ୟାହ—ଅନ୍ନାଦିତି ତ୍ରିଭିଃ । ଅନ୍ନାତ୍ ଶୁକ୍ରଶୋଣିତରୂପେଣ ପରିଣତାଦ୍ ଭୂତାନ୍ୟୁତ୍ପଦ୍ୟନ୍ତେ । ଅନ୍ନସ୍ୟ ଚ ସମ୍ଭବଃ ପର୍ଜନ୍ୟାଦ୍ ବୃଷ୍ଟେଃ । ସ ଚ ପର୍ଜନ୍ୟୋ ଯଜ୍ଞାଦ୍ ଭବତି । ସ ଚ ଯଜ୍ଞଃ କର୍ମସମୁଦ୍ଭବଃ । କର୍ମଣା ଯଜମାନାଦିବ୍ୟାପାରେଣ ସମ୍ୟକ୍ ନିଷ୍ପାଦ୍ୟତ ଇତ୍ୟର୍ଥଃ । ଅଗ୍ନୌ ପ୍ରାସ୍ତାହୁତିଃ ସମ୍ୟଗାଦିତ୍ୟ ମୁପତିଷ୍ଠତେ, ଆଦିତ୍ୟାଜ୍ଜାୟତେ ବୃଷ୍ଟି ର୍ବୃଷ୍ଟେରନ୍ନଂ ତତଃ ପ୍ରଜାଃ ।

**ବିବୃତି**—ଈଶ୍ୱର ପ୍ରବର୍ତ୍ତିତ ଜଗତ୍‌ଚକ୍ର ବା ସଂସାରଚକ୍ରର ମୂଳ କର୍ମପ୍ରବୃତ୍ତି । ଏ ଭାବରେ ବିଚାର କରି ଦେଖିଲେ ପ୍ରତ୍ୟେକ ଲୋକପକ୍ଷରେ କର୍ମ ସର୍ବଥା କର୍ତ୍ତବ୍ୟ—ଏହାହିଁ ଏ ଶ୍ଳୋକରେ ଆଲୋଚିତ ହୋଇଅଛି । ଏହି ଜଗତ୍‌ଚକ୍ର କିପରି ଅବର୍ତ୍ତିତ ହେଉଅଛି ? ପ୍ରଥମେ ଜୀବଜଗତ୍ ପ୍ରତି ଦୃଷ୍ଟି ଦିଆଯାଉ, ଜୀବର ଶରୀର ଅନ୍ନରୁ ଉତ୍ପନ୍ନ ହୁଏ । ଶୁକ୍ରଶୋଣିତ ରୂପରେ ପରିଣତ ଅନ୍ନହିଁ ଜୀବୋତ୍ପତ୍ତିର କାରଣ । ଏହି ଅନ୍ନ ( ଖାଦ୍ୟଶସ୍ୟ ) ବୃଷ୍ଟିଜଳରୁ ( ମେଘରୁ )

କର୍ମ ବ୍ରହ୍ମୋଦ୍‌ଭବଂ ବିଦ୍ଧି ବ୍ରହ୍ମାକ୍ଷର ସମୁଦ୍‌ଭବମ୍,
ତସ୍ମାତ୍ ସର୍ବଗତଂ ବ୍ରହ୍ମ ନିତ୍ୟଂ ଯଜ୍ଞେ ପ୍ରତିଷ୍ଠିତମ୍ । ୧୫ ।

ଉତ୍ପନ୍ନ ହୁଏ । ଯଜ୍ଞଧୂମରୁ ମେଘର ଉତ୍ପତ୍ତି । ଋତ୍ୱିକ୍ ଯଜମାନଙ୍କର କର୍ମ ବିଶେଷହିଁ ଯଜ୍ଞ । ସୁତରାଂ ଯଜ୍ଞ କର୍ମରୁ ହିଁ ଉତ୍ପନ୍ନ । ତେଣୁ ଜଣାଯାଉଅଛି କର୍ମ ନ କଲେ ଏହି ଜଗତ୍-ଚକ୍ର ବା ସୃଷ୍ଟି ପରଂପରା ନଷ୍ଟ ହୋଇଯିବ ।

ଯଜ୍ଞର ଧୂମରୁ ମେଘର ଉତ୍ପତ୍ତି ହୁଏ ବୋଲି ଯାହା କୁହାଯାଉଅଛି, ତାହା ଏ ଯୁଗରେ ବୈଜ୍ଞାନିକ ସତ୍ୟ ରୂପେ ଅଙ୍ଗୀକାର ପ୍ରତିପାଦିତ ହୋଇ ନାହିଁ । କିନ୍ତୁ ପ୍ରାଚୀନ ଯୁଗରେ ଏପରି ଧାରଣା ଶିକ୍ଷିତସମାଜରେ ପ୍ରଚଳିତ ଥିଲା । ମନୁସ୍ମୃତିରେ ଏହିକଥାର ବର୍ଣ୍ଣନା ମଧ୍ୟ ଦେଖାଯାଏ—

ଅଗ୍ନୌ ପ୍ରାସ୍ତାହୁତିଃ ସମ୍ୟଗାଦିତ୍ୟ ମୁପତିଷ୍ଠତେ
ଆଦିତ୍ୟାଜ୍ଜାୟତେ ବୃଷ୍ଟି ର୍ବୃଷ୍ଟେରନ୍ନଂ ତତଃ ପ୍ରଜାଃ । ୩।୭୬

"ଅଗ୍ନିରେ ଯେଉଁ ଆହୁତି ପ୍ରଦତ୍ତ ହୁଏ ତାହା ସୂର୍ଯ୍ୟଙ୍କ ନିକଟରେ ଉପସ୍ଥିତ ହୁଏ, ସେହି ସୂର୍ଯ୍ୟଙ୍କଠାରୁ ( ସୁତରାଂ ପରମ୍ପରା ସୂତ୍ରରେ ଯଜ୍ଞରୁ ) ବୃଷ୍ଟି, ବୃଷ୍ଟିରୁ ଅନ୍ନ ଏବଂ ଅନ୍ନରୁ ପ୍ରଜାମାନଙ୍କର ସୃଷ୍ଟି ହୁଏ ।"

• ମହାଭାରତ ଶାନ୍ତି ପର୍ବରେ ମଧ୍ୟ ଏହି ଶ୍ଲୋକଟି ରହିଅଛି ।

ଯଜ୍ଞାଦି କଲେ ସ୍ୱର୍ଗଲାଭ ହୁଏ କିନ୍ତୁ ଏହା ମୋକ୍ଷପ୍ରଦ ନୁହେ । ଗୀତା-ମତରେ ମୋକ୍ଷଲାଭହିଁ ମନୁଷ୍ୟର ଚରମ ଲକ୍ଷ୍ୟ ବା ପୁରୁଷାର୍ଥ, ତେଣୁ ସକାମ ଯଜ୍ଞ ଗୀତା ଅନୁମୋଦନ କରେ ନାହିଁ । କିନ୍ତୁ ଏହି ଅଧ୍ୟାୟର ୧୦ମରୁ ୧୬ଶ ଶ୍ଲୋକ-ଯାଏ ଗୀତାରେ ବୈଦିକଯଜ୍ଞାଦି କର୍ତ୍ତବ୍ୟ ବୋଲି ଉକ୍ତ ହୋଇଅଛି । ଅନ୍ୟ କେତେକ ସ୍ଥାନରେ ମଧ୍ୟ ଗୀତାରେ ଯଜ୍ଞର ପ୍ରଶଂସା ଦେଖାଯାଏ । ଏ ସବୁ ଆପାତତଃ ବିରୁଦ୍ଧ ପରି ଜଣାଗଲେହେଁ ବସ୍ତୁତଃ ସେପରି ନୁହେ । ଗୀତା ସକାମ ଯଜ୍ଞର ବିରୋଧୀ, ନିଷ୍କାମ ଭାବରେ ଏ ସବୁ ଅନୁଷ୍ଠାନ କଲେ ପରିଣାମରେ ଯେ ମୋକ୍ଷଫଳ ପ୍ରସବ କରିବ ଏହା ଏ ସବୁ ଉକ୍ତିରୁ ବୁଝାଯାଏ । ଗୀତାର ୧୮ଶ ଅଧ୍ୟାୟର ୫ମ ଓ ୬ଷ୍ଠ ଶ୍ଲୋକରେ ଭଗବାନ୍ ସ୍ପଷ୍ଟ ରୂପେ ନିର୍ଦ୍ଦେଶ କରିଅଛନ୍ତି— ଯଜ୍ଞ, ଦାନ ଓ ତପସ୍ୟା ଚିତ୍ତଶୁଦ୍ଧିକର, ତେଣୁ ଏହା ମନୁଷ୍ୟର ଅବଶ୍ୟ କର୍ତ୍ତବ୍ୟ । ଗୃହସ୍ଥର କର୍ତ୍ତବ୍ୟ ପଞ୍ଚଯଜ୍ଞାଦି ସର୍ବଥା ତ୍ୟାଗମୂଳକ ଏଥିରେ କାମନାର ସମ୍ବନ୍ଧ ନ ଥାଏ, ତେଣୁ ସେ ସବୁ ମଧ୍ୟ ଗୀତୋକ୍ତ ଧର୍ମର ବିରୋଧୀ ନୁହେ ।

**୧୫ । ଅନ୍ୱୟଦୀପିକା**—କର୍ମ ବ୍ରହ୍ମୋଦ୍‌ଭବମ୍ ( କର୍ମ ବେଦରୁ ଉତ୍ପନ୍ନ) ବିଦ୍ଧି (ଜାଣ); ବ୍ରହ୍ମ ( ବେଦ ) ଅକ୍ଷରସମୁଦ୍‌ଭବଂ (ପରମାତ୍ମାଙ୍କଠାରୁ ଉତ୍ପନ୍ନ) ତସ୍ମାତ୍ (ସେହିହେତୁରୁ) ସର୍ବଗତଂ (ସର୍ବତ୍ରଅବସ୍ଥିତ) ବ୍ରହ୍ମ (ପରବ୍ରହ୍ମ) ନିତ୍ୟଂ (ସର୍ବଦା) ଯଜ୍ଞେ (ଯଜ୍ଞରେ) ପ୍ରତିଷ୍ଠିତମ୍ (ପ୍ରତିଷ୍ଠିତ ଅଛନ୍ତି) ।

**ଅନୁବାଦ**—କର୍ମ ବେଦରୁ ଉତ୍ପନ୍ନ ବୋଲି ଜାଣ; ବେଦ ପରବ୍ରହ୍ମଙ୍କଠାରୁ ଉତ୍ପନ୍ନ, ସେହି ହେତୁରୁ ସର୍ବବ୍ୟାପୀ ପରବ୍ରହ୍ମ ସର୍ବଦା ଯଜ୍ଞରେ ପ୍ରତିଷ୍ଠିତ ଅଛନ୍ତି ।

**ସୁବୋଧିନୀ ଟୀକା**—ତଥା-କର୍ମେତି । ତଚ୍ଚ ଯଜମାନାଦିବ୍ୟାପାରରୂପଂ କର୍ମ ବ୍ରହ୍ମୋଦ୍ଭବଂ ବିଦ୍ଧି । ବ୍ରହ୍ମ ବେଦଃ ୍ୟ ତସ୍ମାତ୍ ପ୍ରବୃତ୍ତଂ ଜାନୀହି । ତଚ୍ଚ ବେଦାଖ୍ୟଂ ବ୍ରହ୍ମାକ୍ଷରାତ୍ ପରବ୍ରହ୍ମଣଃ ସମୁଦ୍ଭୂତଂ ଜାନୀହି । ଅସ୍ୟ ମହତୋ ଭୂତସ୍ୟ ନିଃଶ୍ୱସିତ ମେତଦ୍ୟଦୃଗ୍‌ବେଦୋ ଯଜୁର୍ବେଦଃ ସାମବେଦ ଇତି ଶ୍ରୁତେଃ । ଯତ ଏବମକ୍ଷରାଦେବ ଯଜ୍ଞପ୍ରବୃତ୍ତି ସ୍ତତୋ ନ ତ୍ୱୟୋପେକ୍ଷିତୋ ଯଜ୍ଞଃ—ତସ୍ମାତ୍ ସର୍ବଗତମପ୍ୟକ୍ଷରଂ ବ୍ରହ୍ମ ନିତ୍ୟଂ ସର୍ବଦା ଯଜ୍ଞେ ପ୍ରତିଷ୍ଠିତମ୍ । ଯଜ୍ଞେନୋପାୟଭୂତେନ ପ୍ରାପ୍ୟତ ଇତି ଯଜ୍ଞେ ପ୍ରତିଷ୍ଠିତ ମୁଚ୍ୟତେ ଇତି । ଉଦାସ୍ୟସ୍ତୁ ସଦା ଲଙ୍ଘିତବତ୍ । ଯଦ୍ୱା ନନ୍ୱଙ୍କଗଚ୍ଛନ୍ତସ୍ୟ ନୂନଂ କର୍ମ ତସ୍ମାତ୍ ସର୍ବଗତଂ ମନ୍ତ୍ରାର୍ଥବାଦୈଃ ସର୍ବୈରପି ସିଦ୍ଧାର୍ଥପ୍ରତିପାଦକୈସ୍ତୁ ଭୂତାର୍ଥାଖ୍ୟାନାଦ୍ୱାରା ଗତଂ ସ୍ଥିତମପି ବେଦାଖ୍ୟଂ ବ୍ରହ୍ମ ସର୍ବଦା ତାତ୍ପର୍ଯ୍ୟରୂପେଣ ପ୍ରତିଷ୍ଠିତମ୍ । ଅତୋ ଯଜ୍ଞାଦିକର୍ମ କର୍ତ୍ତବ୍ୟ ମିତ୍ୟର୍ଥଃ ।

**ବିବୃତି**—ପୂର୍ବ ଶ୍ଲୋକରେ କୁହାଯାଇ ଅଛି—କର୍ମରୁ ଯଜ୍ଞର ଉତ୍ପତ୍ତି; ଏ ଶ୍ଲୋକରେ କୁହାଯାଉଛି କର୍ମର ଉତ୍ପତ୍ତି ବେଦରୁ ଏବଂ ବେଦ ପରବ୍ରହ୍ମଙ୍କଠାରୁ ଉତ୍ପନ୍ନ ହୋଇଅଛି । ଆଚାର୍ଯ୍ୟ ଶଙ୍କର ଓ ଶ୍ରୀଧରସ୍ୱାମୀ ଉଭୟେ ସେମାନଙ୍କ ଭାଷ୍ୟ ଓ ଟୀକାରେ ଯେଉଁ ଭାବରେ ବ୍ୟାଖ୍ୟା କରିଅଛନ୍ତି—ଏ ଶ୍ଲୋକର ଅନୁବାଦରେ ତାହାହିଁ ଅବଲମ୍ବନ କରାଯାଇଅଛି ।

ରାମାନୁଜାଚାର୍ଯ୍ୟଙ୍କ ଭାଷ୍ୟ ଅବଲମ୍ବନ କରି ଲୋକମାନ୍ୟ ତିଳକ କହନ୍ତି—ଏ ଶ୍ଲୋକରେ ବ୍ରହ୍ମ ଶବ୍ଦ ପ୍ରକୃତି ଅର୍ଥରେ ପ୍ରଯୁକ୍ତ ହୋଇଅଛି । ତାହାହେଲେ ଅର୍ଥ ହେବ "ପ୍ରକୃତିରୁ କର୍ମର ଉତ୍ପତ୍ତି, ପ୍ରକୃତି ଅକ୍ଷର ବ୍ରହ୍ମଙ୍କଠାରୁ ଜାତ । ସେହିହେତୁରୁ ସର୍ବବ୍ୟାପୀ ପ୍ରକୃତି ନିତ୍ୟ ଯଜ୍ଞରେ ପ୍ରତିଷ୍ଠିତ ଅଛନ୍ତି ।" ବ୍ରହ୍ମଶବ୍ଦ ପ୍ରକୃତି ଅର୍ଥରେ ଗୀତାର ୧୪ଶ ଅଧ୍ୟାୟର ୩ୟ ଶ୍ଲୋକରେ ବର୍ଣ୍ଣିତ ହୋଇଅଛି । ('ମମ ଯୋନି ର୍ମହଦ୍‌ବ୍ରହ୍ମ' ଇତ୍ୟାଦି ) ତେଣୁ ଏ ଅର୍ଥ ଗ୍ରହଣ କଲେ "ତସ୍ମାତ୍ ସର୍ବଗତଂ ବ୍ରହ୍ମ ନିତ୍ୟଂ ଯଜ୍ଞେ ପ୍ରତିଷ୍ଠିତମ୍" ଏହି ଦ୍ୱିତୀୟ ପଙ୍‌କ୍ତିର ଅର୍ଥ ଯଥାଯଥ ଭାବରେ ଲାଗିଯାଏ, "ତସ୍ମାତ୍" ପଦ ପ୍ରୟୋଗରୁ ଜଣାଯାଏ ପ୍ରଥମ ପଙ୍‌କ୍ତିରେ 'ବ୍ରହ୍ମ' ଶବ୍ଦ ଯେଉଁ ଅର୍ଥରେ ପ୍ରଯୁକ୍ତ ହୋଇଅଛି ଦ୍ୱିତୀୟ ପଙ୍‌କ୍ତିରେ ଠିକ୍ ସେହି ଅର୍ଥରେହିଁ ପ୍ରଯୁକ୍ତ । ପ୍ରକୃତି ବ୍ରହ୍ମଙ୍କର ବାହ୍ୟବିଶେଷ । କ୍ରିୟାଶୀଳ ସଗୁଣ ବ୍ରହ୍ମହିଁ ପ୍ରକୃତିର ଅଧିଷ୍ଠାତା । 'ଅନୁଯଜ୍ଞଂ ଜଗତ୍ ସର୍ବଂ ଯଜ୍ଞଶ୍ଚାନୁଜଗତ୍ ସଦା" ( ମହାଭାରତ ଶାନ୍ତି ୨୬୭-୩୪ ) ଅର୍ଥାତ୍ ଯଜ୍ଞର ପଶ୍ଚାତ୍‌ରେ ଜଗତ୍ ଓ ଜଗତ୍‌ର ପଶ୍ଚାତ୍‌ରେ ଯଜ୍ଞ । ଋଗ୍‌ବେଦ ପୁରୁଷସୂକ୍ତ ମନ୍ତ୍ରରେ ମଧ୍ୟ

ଏବଂ ପ୍ରବର୍ତ୍ତିତଂ ଚକ୍ରଂ ନାନୁବର୍ତ୍ତୟତୀହ ଯଃ
ଅଘାୟୁରିନ୍ଦ୍ରିୟାରାମୋ ମୋଘଂ ପାର୍ଥ ସ ଜୀବତି । ୧୬ ।

ସୃଷ୍ଟିକ୍ରିୟାର ଯେଉଁ ସୂଚନା ଦିଆଯାଇଅଛି ତହିଁରୁ ଜଣାଯାଏ ଯେ ଦେବତାମାନେ ପ୍ରଥମେ ଯଜ୍ଞ କରି ସୃଷ୍ଟି ନିର୍ମାଣ କରିଅଛନ୍ତି ।

ଜଗତର ସମସ୍ତ କ୍ରିୟାହିଁ ପ୍ରକୃତ ଅର୍ଥରେ ଯଜ୍ଞ ପଦବାଚ୍ୟ, ସ୍ୱୟଂ ଭଗବାନ୍ ଏହି ଯଜ୍ଞର ଭୋକ୍ତା । ଯଜ୍ଞର ପ୍ରଧାନ ଉପାଦାନ ତ୍ୟାଗ । ଜଗତ୍-ସୃଷ୍ଟିରୂପ ମହାଯଜ୍ଞ—ଜୀବର ମଙ୍ଗଳ ନିମିତ୍ତ ଭଗବାନଙ୍କର ବିପୁଳ ଆତ୍ମତ୍ୟାଗ । ସେହିପରି ଜଗତର ଧାରଣପୋଷଣ ନିମିତ୍ତ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଯେଉଁ ତ୍ୟାଗ କରାଯାଏ ତାହାହିଁ ଯଜ୍ଞ ନାମରେ ଅଭିହିତ ।

**୧୬ । ଅନ୍ୱୟଦୀପିକା**—ପାର୍ଥ, ( ହେ ଅର୍ଜୁନ ) ଇହ ( ଏହି ସଂସାରରେ ) ଏବଂ ପ୍ରବର୍ତ୍ତିତଂ ( ଏହି ଭାବରେ ପ୍ରବର୍ତ୍ତିତ ) ଚକ୍ରଂ ( କର୍ମଚକ୍ର ବା ଜଗତ୍ ଚକ୍ରକୁ ) ଯଃ ( ଯେଉଁ ଲୋକ ) ନ ଅନୁବର୍ତ୍ତୟତି ( ଅନୁବର୍ତ୍ତନ ନ କରେ ) ସଃ ଅଘାୟୁଃ ( ସେହି ପାପାତ୍ମା ) ଇନ୍ଦ୍ରିୟାରାମଃ ( ଇନ୍ଦ୍ରିୟ ସୁଖରେ ଆସକ୍ତ ଲୋକ ) ମୋଘଂ ଜୀବତି ( ବୃଥା ଜୀବନ ଧାରଣ କରେ ) ।

**ଅନୁବାଦ**—ହେ ଅର୍ଜୁନ, ଯେଉଁ ଲୋକ ଏହିପରି ପ୍ରବର୍ତ୍ତିତ କର୍ମଚକ୍ର ବା ଯଜ୍ଞଚକ୍ରର ଅନୁବର୍ତ୍ତନ ନ କରେ ଅର୍ଥାତ୍ ଯଜ୍ଞାଦିକର୍ମଦ୍ୱାରା ସଂସାରଚକ୍ର ପରିଚାଳନାରେ ସହାୟତା ନ କରେ ସେହି ଇନ୍ଦ୍ରିୟସୁଖାସକ୍ତ ପାପିଷ୍ଠର ଜୀବନ-ଧାରଣ ବୃଥା ।

**ସୁବୋଧିନୀ ଟୀକା**—ଯସ୍ମାଦେବଂ ପରମେଶ୍ୱରେଣୈବ ଭୂତାନାଂ ପୁରୁଷାର୍ଥସିଦ୍ଧୟେ କର୍ମାଦିଚକ୍ରଂ ପ୍ରବର୍ତ୍ତିତଂ ତସ୍ମାତ୍ତଦକୁର୍ବତୋ ବୃଥୈବ ଜୀବିତ ମିତ୍ୟାହ-ଏବମିତି । ପରମେଶ୍ୱରବାକ୍ୟଭୂତାଦ୍‌ବେଦାଖ୍ୟାଦ୍‌ବ୍ରହ୍ମଣଃ ପୁରୁଷାଣାଂ କର୍ମଣି ପ୍ରବୃତ୍ତିଃ । ତତଃ କର୍ମନିଷ୍ପତ୍ତିଃ । ତତଃ ପର୍ଜ୍ଜନ୍ୟଃ । ତତୋଽନ୍ନମ୍ ତତୋଭୂତାନି । ଭୂତାନାଂ ପୁନସ୍ତଥୈବ କର୍ମପ୍ରବୃତ୍ତିରିତି, ଏବଂ ପ୍ରବର୍ତ୍ତିତଂ ଚକ୍ରଂ ଯୋ ନାନୁବର୍ତ୍ତୟତି ନାନୁତିଷ୍ଠତି ସୋଽଘାୟୁଃ, ଅଘଂ ପାପରୂପମାୟୁର୍ଯସ୍ୟ ସଃ । ଯତ ଇନ୍ଦ୍ରିୟୈର୍ବିଷୟେଷ୍ୱେବାରମତି । ନତ୍ୱୀଶ୍ୱରାରାଧନାର୍ଥେ କର୍ମଣି । ଅତୋ ମୋଘଂ ବ୍ୟର୍ଥଂ ସ ଜୀବତି ।

**ବିବୃତି**—ସ୍ୱୟଂ ସୃଷ୍ଟିକର୍ତ୍ତା ବ୍ରହ୍ମା ଲୋକମାନଙ୍କର ଧାରଣପୋଷଣ ପାଇଁ ଯଜ୍ଞମୟ କର୍ମ ବା ସ୍ୱଧର୍ମବର୍ଣ୍ଣ୍ୟ ବୃତ୍ତି ଉତ୍ପନ୍ନ କରିଅଛନ୍ତି । ଏହି ସୃଷ୍ଟିକ୍ରମ-ରକ୍ଷା ପାଇଁ ଏବଂ ନିଜର ଜୀବନ ରକ୍ଷାକରିବାପାଇଁ କର୍ମର ଅନୁଷ୍ଠାନ ସର୍ବଥା ପ୍ରୟୋଜନୀୟ । ଯେଉଁ ଲୋକ ଏହି କର୍ମର ଅନୁଷ୍ଠାନ ନ କରି ବିଷୟାସକ୍ତ ଓ ଇନ୍ଦ୍ରିୟ ସେବାରେ ନିଯୁକ୍ତ ରହେ, ସେହି ପାପିଷ୍ଠର ଜୀବନ ଧାରଣ କରି ରହିବା

ଯସ୍ତ୍ୱାତ୍ମରତିରେବ ସ୍ୟାଦାତ୍ମତୃପ୍ତଶ୍ଚ ମାନବଃ ।
ଆତ୍ମନ୍ୟେବ ଚ ସନ୍ତୁଷ୍ଟସ୍ତସ୍ୟ କାର୍ଯ୍ୟଂ ନ ବିଦ୍ୟତେ ।୧୭।
ନୈବ ତସ୍ୟ କୃତେନାର୍ଥୋ ନାକୃତେନେହ କଶ୍ଚନ,
ନଚାସ୍ୟ ସର୍ବଭୂତେଷୁ କଶ୍ଚିଦର୍ଥବ୍ୟପାଶ୍ରୟଃ ।୧୮।

କୃଥା । ବେଦୋକ୍ତ କର୍ମକାଣ୍ଡୀୟ ସକାମ ଯଜ୍ଞ ଓ ଗୀତୋକ୍ତ ନିଷ୍କାମ କର୍ମମୟ ଯଜ୍ଞ—ଏ ଦୁହିଙ୍କ ମଧ୍ୟରେ ପ୍ରଭେଦ ଏଥିରୁ ସ୍ପଷ୍ଟ ଜଣାଯିବ ।

**୧୭ । ଅନ୍ୱୟଦୀପିକା**—ତୁ ଯଃ ମାନବଃ ( କିନ୍ତୁ ଯେଉଁ ଲୋକ ) **ଆତ୍ମରତଃ** (ଆତ୍ମାରେହିଁ ପ୍ରୀତ) **ଆତ୍ମତୃପ୍ତଃ** ( ଆତ୍ମାରେ ପରିତୃପ୍ତ ), **ଆତ୍ମନି ଏବ ଚ ସନ୍ତୁଷ୍ଟଃ** ( ଆତ୍ମାରେ ହିଁ ସନ୍ତୁଷ୍ଟ ) ସ୍ୟାତ୍ ( ହୁଅନ୍ତି ) ତସ୍ୟ କାର୍ଯ୍ୟଂ ନ ବିଦ୍ୟତେ ( ତାହାଙ୍କର କୌଣସି କର୍ତ୍ତବ୍ୟ ନ ଥାଏ ) ।

**ଅନୁବାଦ**—ଯାହାଙ୍କର ଆତ୍ମାରେହିଁ ରତି, ଆତ୍ମାରେହିଁ ତୃପ୍ତି ଓ ଆତ୍ମାରେହିଁ ସନ୍ତୋଷ ତାଙ୍କର ନିଜର କୌଣସି ପ୍ରକାର କର୍ତ୍ତବ୍ୟ ନାହିଁ ।

**ସୁବୋଧିନୀ ଟୀକା**—ତଦେବଂ ନ କର୍ମଣା ମନାଚମ୍ଭାଦତ୍ୟାଦିନା ଅଜ୍ଞସ୍ୟାନ୍ତଃକରଣଶୁଦ୍ଧ୍ୟର୍ଥଂ କର୍ମଯୋଗମୁକ୍ତ୍ୱା ଜ୍ଞାନିନଃ କର୍ମାନୁପଯୋଗମାହ— ଯସ୍ତ୍ୱିତି ଦ୍ୱାଭ୍ୟାମ୍ । ଆତ୍ମନ୍ୟେବ ରତିଃ ପ୍ରୀତିର୍ଯସ୍ୟ ସଃ । ତତଶ୍ଚାତ୍ମନ୍ୟେବ ତୃପ୍ତଃ ସ୍ୱାନନ୍ଦାନୁଭବେନ ନିର୍ବୃତ୍ତଃ । ଅତ ଏବାତ୍ମନ୍ୟେବ ସନ୍ତୁଷ୍ଟୋ ଭୋଗାପେକ୍ଷା ରହିତୋ ଯସ୍ତସ୍ୟ କର୍ତ୍ତବ୍ୟଂ କର୍ମ ନାସ୍ତୀତି ।

**ବିବୃତି**—ଅନାସକ୍ତ ଭାବରେ ଜଗତ୍-ଚକ୍ର ରକ୍ଷାପାଇଁ ଯେଉଁମାନେ କର୍ମ କରନ୍ତି ସେମାନେ କ୍ରମେ 'ଆତ୍ମାରାମ' ପଦବାଚ୍ୟ ହୁଅନ୍ତି । **ଆତ୍ମତୃପ୍ତି ଓ ଆତ୍ମସନ୍ତୋଷ**—ସେମାନଙ୍କୁ ଜୀବନ୍ମୁକ୍ତିର ଅଧିକାରୀ କରିଥାଏ—ଏପରି ଅବସ୍ଥାରେ ଆଉ କର୍ମକରିବାରେ ସେମାନଙ୍କର ପ୍ରୟୋଜନ ନ ଥାଏ ।

**୧୮ । ଅନ୍ୱୟଦୀପିକା**—ଇହ ( ଏ ସଂସାରରେ ) କୃତେନ ( କର୍ମାନୁଷ୍ଠାନ ଦ୍ୱାରା ) ତସ୍ୟ ( ତାହାଙ୍କର ) ଅର୍ଥଃ ନ ( ପ୍ରୟୋଜନ ନାହିଁ ) ଅକୃତେନ ଚ ( କର୍ମ ନ କରିବା ଦ୍ୱାରା ) କଶ୍ଚନ ନ ( କୌଣସି ଅର୍ଥ ବା ପ୍ରୟୋଜନ ନାହିଁ ) । ସର୍ବଭୂତେଷୁ ( ସବୁ ପ୍ରାଣୀଙ୍କଠାରେ ) ତସ୍ୟ କଶ୍ଚିତ୍ ( ତାଙ୍କର କୌଣସି ) ଅର୍ଥବ୍ୟପାଶ୍ରୟଃ ନ ( ପ୍ରୟୋଜନ ସମ୍ବନ୍ଧ ନ ଥାଏ ) ।

**ଅନୁବାଦ**—ଯେ ଆତ୍ମାରାମ ତାଙ୍କର କର୍ମ ଅନୁଷ୍ଠାନରେ କୌଣସି ପ୍ରୟୋଜନ ନ ଥାଏ କିମ୍ବା କର୍ମରୁ ବିରତ ରହିବାରେ ବା କୌଣସି ଅବଶ୍ୟକତା ନ ଥାଏ । କୌଣସି ପ୍ରାଣୀଠାରେ ତାଙ୍କର କିଛି ହେଲେ ପ୍ରୟୋଜନ-ସମ୍ବନ୍ଧ ନ ଥାଏ ।

ତସ୍ମାଦସକ୍ତଃ ସତତଂ କାର୍ଯ୍ୟଂ କର୍ମ ସମାଚର
ଅସକ୍ତୋ ହ୍ୟାଚରନ୍ କର୍ମ ପରମାପ୍ନୋତି ପୂରୁଷଃ । ୧୯ ।

**ସୁବୋଧିନୀ ଟୀକା**—ତସ୍ମାଦ୍‌ଧେତୋ—ନୈବେତି, କୃତେନ କର୍ମଣା ତସ୍ୟାର୍ଥଃ ପୁଣ୍ୟଂ ନୈବାସ୍ତି । ନାକୃତେନ କଶ୍ଚନ କୋଽପି ପ୍ରତ୍ୟବାୟୋଽସ୍ତି । ନିରହଂକାରତ୍ୱେନ ବିଧିନିଷେଧାତୀତତ୍ୱାତ୍ । ତଥାପି—ତନ୍ମାଦେଷାଂ ତନ୍ନପ୍ରିୟଂ ଯଦେତନ୍ମନୁଷ୍ୟା ବିଦ୍ୟୁରିତି ଶ୍ରୁତେର୍ମୋକ୍ଷେ ଦେବକୃତବିଘ୍ନସମ୍ଭବାତ୍ ତତ୍-ପରିହାରାର୍ଥଂ କର୍ମଭିର୍ଦେବାଃ ସେବ୍ୟା ଇତ୍ୟାଶଙ୍କ୍ୟୋକ୍ତଂ । ସର୍ବଭୂତେଷୁ ବ୍ରହ୍ମାଦି ସ୍ଥାବରାନ୍ତେଷୁ ନ କଶ୍ଚିଦର୍ଥବ୍ୟପାଶ୍ରୟଃ । ଆଶ୍ରୟ ଏବ ବ୍ୟପାଶ୍ରୟଃ । ଅର୍ଥୋ ଆଶ୍ରୟଣୀୟୋଽସ୍ୟ ନାସ୍ତୀତ୍ୟର୍ଥଃ । ବିଘ୍ନାଭାବସ୍ୟ ଶ୍ରୁତ୍ୟୈବୋକ୍ତତ୍ୱାତ୍, ତଥାଚ ଶ୍ରୁତିଃ—ତସ୍ୟ ହ ନ ଦେବାଶ୍ଚନାଭୂତ୍ୟା ଈଶତେ । ଆତ୍ମା ହ୍ୟେଷାଂ ସ ଭବତୀତି । ହ ନୈବତ୍ୟବ୍ୟୟମପ୍ୟର୍ଥେ, ଦେବା ଅପି ତସ୍ୟାତ୍ମତତ୍ତ୍ୱଜ୍ଞସ୍ୟାଭୂତ୍ୟୈ ବ୍ରହ୍ମଭାବ-ପ୍ରତିବନ୍ଧାୟ ନେଶତେ ନ ଶକ୍ନୁବନ୍ତୀତି ଶ୍ରୁତେରର୍ଥଃ । ଦେବକୃତାସ୍ତୁ ବିଘ୍ନାଃ ସମ୍ୟଗ୍‌ଜ୍ଞାନୋତ୍ପତ୍ତେଃ ପ୍ରାଗେବ । ଯଦେତଦ୍ ବ୍ରହ୍ମ ମନୁଷ୍ୟା ବିଦ୍ୟୁସ୍ତଦେଷାଂ ଦେବାନାଂ ନପ୍ରିୟମିତି ବ୍ରହ୍ମଜ୍ଞାନସ୍ୟୈବାପ୍ରିୟତ୍ୱୋକ୍ତ୍ୟା ତଦୈବ ବିଘ୍ନକର୍ତ୍ତୃତ୍ୱସ୍ୟ ସୂଚିତତ୍ୱାତ୍ ।

**ବିବୃତି**— ଆତ୍ମାରାମ ପୁରୁଷମାନଙ୍କ ପକ୍ଷରେ କର୍ମ କରିବା ନ କରିବା ସବୁ ସମାନ, ତେଣୁ ଯଦି କୌଣସି କର୍ମ ଉପସ୍ଥିତ ହୁଏ, ତେବେ ସେ ସ୍ୱାର୍ଥ ଶୂନ୍ୟ ହୋଇ ତାହା ସମ୍ପାଦନ କରନ୍ତି । ବ୍ରହ୍ମାଙ୍କଠାରୁ ଆରମ୍ଭ କରି ସ୍ଥାବର ପର୍ଯ୍ୟନ୍ତ କୌଣସି ବସ୍ତୁରେ ତାଙ୍କର କୌଣସି ପ୍ରକାର ସମ୍ବନ୍ଧ ନ ଥାଏ ।

**୧୯ । ଅନ୍ୱୟଦୀପିକା**—ତସ୍ମାତ୍ ( ଅତଏବ ) ଅସକ୍ତଃ ( ଅନାସକ୍ତ ହୋଇ ) ସତତଂ ( ସର୍ବଦା ) କାର୍ଯ୍ୟଂ କର୍ମ ( କର୍ତ୍ତବ୍ୟ କର୍ମ ) ସମାଚର (•ଅନୁଷ୍ଠାନକର ); ହି ( ଯେହେତୁ ) ପୂରୁଷଃ ( ଲୋକଃ ) ଅସକ୍ତଃ ( ନିଷ୍କାମ ହୋଇ ) କର୍ମ ଆଚରନ୍ ( କର୍ମ ଅନୁଷ୍ଠାନ କଲେ ) ପରଂ ( ପରମ ପଦ ଅର୍ଥାତ୍ ମୋକ୍ଷ ) ଆପ୍ନୋତି ( ପାଏ ) ।

**ଅନୁବାଦ**—ଅତଏବ ତୁମେ ଆସକ୍ତିଶୂନ୍ୟ ହୋଇ ସର୍ବଦା କର୍ତ୍ତବ୍ୟ କର୍ମ କରୁଥାଅ । କାରଣ ଆସକ୍ତି ତ୍ୟାଗ କରି ଯେଉଁ ବ୍ୟକ୍ତି କର୍ମ କରେ, ତାହାର ପରମଗତି ଲାଭହୁଏ ।

**ସୁବୋଧିନୀ ଟୀକା**—ଯସ୍ମାଦେବଂଭୂତସ୍ୟ ଜ୍ଞାନିନ ଏବ କର୍ମାନୁ-ପଯୋଗୋ ନାନ୍ୟସ୍ୟ ତସ୍ମାତ୍ତ୍ୱଂ କର୍ମ କୁର୍ବିତ୍ୟାହ—ତସ୍ମାଦିତି । ଅସକ୍ତଃ ଫଳସଙ୍ଗ-ରହିତଃ ସନ୍ କାର୍ଯ୍ୟମବଶ୍ୟକର୍ତ୍ତବ୍ୟତୟା ବିହିତଂ ନିତ୍ୟଂ ନୈମିତ୍ତିକଂ କର୍ମ

ସମାଚର । ହ୍ୟସକ୍ତଃ କର୍ମାଚରନ୍ ପୂରୁଷଃ ପରଂ ମୋକ୍ଷଂ ଚିତ୍ତଶୁଦ୍ଧି-ଜ୍ଞାନଦ୍ୱାରା ପ୍ରାପ୍ନୋତି ।

**ବିବୃତି**—୨୦ରୁ ୧୯ ପର୍ଯ୍ୟନ୍ତ ତିନିଗୋଟି ଶ୍ଳୋକ ମିଶି ହେଉଛି ଅନୁମାନଯୁକ୍ତ ଗୋଟିଏ ବାକ୍ୟ । ଗୀତା ଉପରେ ଯେତେ ଟୀକାକାର ଭାଷ୍ୟ ଓ ଟୀକା ଲେଖିଅଛନ୍ତି ସେମାନଙ୍କ ମଧ୍ୟରେ ଆଚାର୍ଯ୍ୟ ଶଙ୍କରଙ୍କ ଭାଷ୍ୟହିଁ ସର୍ବାପେକ୍ଷା ପ୍ରାଚୀନ । ଶ୍ରୀଧରସ୍ୱାମୀଙ୍କ ଟୀକା ଏ ଦେଶରେ ବେଶି ଲୋକପ୍ରିୟ ଏବଂ ବ୍ୟାଖ୍ୟା କାର୍ଯ୍ୟରେ ତାଙ୍କର ସ୍ୱାଧୀନମତ ଅନେକ ସ୍ଥଳରେ ପାଠକର ହୃଦୟରେ ସତ୍ୟର ଜ୍ୟୋତିରେ ଉଦଭାସିତ କରିଦିଏ । ମାତ୍ର ସେ ମଧ୍ୟ ଶଙ୍କରଙ୍କ ମତର ଅନୁଗାମୀ । ଶଙ୍କର ଗୋଟିଏ ବିଶିଷ୍ଟ ସନ୍ନ୍ୟାସି-ସମ୍ପ୍ରଦାୟର ପ୍ରବର୍ତ୍ତକ । ତେଣୁ ଗୀତାର ବ୍ୟାଖ୍ୟାରେ ସେ ତାଙ୍କର ଅସାଧାରଣ ପାଣ୍ଡିତ୍ୟ-ବଳରେ ପ୍ରମାଣ କରିବାକୁ ଚେଷ୍ଟା କରିଅଛନ୍ତି—ଗୀତା ସନ୍ନ୍ୟାସି-ସମ୍ପ୍ରଦାୟର ମତର ଅନୁକୂଳ ଗ୍ରନ୍ଥ । ସନ୍ନ୍ୟାସୀ ବା ଜ୍ଞାନଯୋଗୀମାନେ କହନ୍ତି—ଚିତ୍ତଶୁଦ୍ଧି ପର୍ଯ୍ୟନ୍ତ କର୍ମ କରିବାକୁ ହେବ, ଚିତ୍ତ ଶୁଦ୍ଧି ହୋଇଗଲେ ଚିତ୍ତରେ ସ୍ୱତଃ ଜ୍ଞାନୋଦୟ ହୁଏ, ସେତେବେଳେ ଆଉ କର୍ମର ପ୍ରୟୋଜନ ହୁଏ ନାହିଁ । କର୍ମହିଁ ସଂସାର ବନ୍ଧନ ବା ପୁନର୍ଜନ୍ମର କାରଣ । ତେଣୁ କର୍ମ ତ୍ୟାଗ ନ କଲେ କୌଣସି ସାଧକ ମୋକ୍ଷର ଅଧିକାରୀ ହୁଏ ନାହିଁ—ଇତ୍ୟାଦି । ମାତ୍ର ଗୀତା କର୍ମଯୋଗଶାସ୍ତ୍ର । ଅର୍ଜୁନଙ୍କୁ ଯୁଦ୍ଧରୂପ କର୍ମରେ ପ୍ରବର୍ତ୍ତିତ କରିବାପାଇଁ ଭଗବାନ୍ ଉପଦେଶ ଦେଉଅଛନ୍ତି । ଆସକ୍ତି ବା ଫଳାଭିଳାଷ ତ୍ୟାଗ କରି କର୍ମ କଲେ ଜ୍ଞାନବାଦୀମାନେ ଶେଷରେ ଯେଉଁ ମୋକ୍ଷ ପଦର ଅଧିକାରୀ ହୁଅନ୍ତି କର୍ମଯୋଗୀମାନେ ତାହାହିଁ ଲାଭକରନ୍ତି, ଏ କଥା ଭଗବାନ୍ ନାନାଭାବରେ ଏଥିରେ ବୁଝାଇ ଥିଲେହେଁ ସନ୍ନ୍ୟାସୀ ଟୀକାକାରମାନେ ତାହା ସ୍ୱୀକାର ନ କରି ନିଜର ପାଣ୍ଡିତ୍ୟ ପ୍ରକର୍ଷରେ ଜ୍ଞାନହିଁ ମୋକ୍ଷଲାଭର ଏକମାତ୍ର ପନ୍ଥା ବୋଲି ବୁଝାଇ ଅଛନ୍ତି । ଏହି ତିନିଗୋଟି ଶ୍ଳୋକର ବ୍ୟାଖ୍ୟା ଆଲୋଚନା କଲେ ଏ କଥା ସ୍ପଷ୍ଟ ଜଣାଯାଏ ।

ସପ୍ତଦଶ ଓ ଅଷ୍ଟାଦଶ ଶ୍ଳୋକରେ ଜ୍ଞାନୀ ପୁରୁଷଙ୍କ ପକ୍ଷରେ କର୍ମର ଅନାବଶ୍ୟକତା ବିଷୟରେ ଭଗବାନ୍ ଉପଦେଶ ଦେଇ ୧୯ଶ ଶ୍ଳୋକରେ 'ତସ୍ମାତ୍' ଶବ୍ଦ ପ୍ରୟୋଗଦ୍ୱାରା ପୂର୍ବୋକ୍ତ ଶ୍ଳୋକ ଦ୍ୱୟରୁ ଯେଉଁ ଅନୁମାନ ବାହାରିଲା ତାହା ବ୍ୟକ୍ତ କରିଅଛନ୍ତି । ଏ ସଂସାରରେ କର୍ମ ନ କରି କେହି ବଞ୍ଚି ରହି ପାରିବେ ନାହିଁ; ଶୋଇବା, ବସିବା, ଉଠିବା, ଏପରିକି ନିଃଶ୍ୱାସ ପ୍ରଶ୍ୱାସ ମଧ୍ୟ କର୍ମର ଅନ୍ତର୍ଗତ, ତେଣୁ କର୍ମତ୍ୟାଗ ମନୁଷ୍ୟ ପକ୍ଷରେ ଅସମ୍ଭବ । ଏ ଅଧ୍ୟାୟର ୪ର୍ଥ ଓ ୫ମ ଶ୍ଳୋକରେ ଏ କଥା ସ୍ପଷ୍ଟରୂପେ କୁହାଯାଇଛି । "ନୈଷ୍କର୍ମ୍ୟସିଦ୍ଧି" ସନ୍ନ୍ୟାସି-ସମ୍ପ୍ରଦାୟର ମୋକ୍ଷର ସାଧନ । କର୍ମ ନ କଲେ ନୈଷ୍କର୍ମ୍ୟସିଦ୍ଧି ମଧ୍ୟ ଲାଭ କରିଯାଇ ପାରିବ ନାହିଁ । ଏହା ମଧ୍ୟ ଏ ଅଧ୍ୟାୟର ୪ର୍ଥ ଶ୍ଳୋକରେ କୁହାଯାଇଅଛି ।

ଏହାର ଉତ୍ତରରେ ସନ୍ନ୍ୟାସମାର୍ଗୀମାନେ କହନ୍ତି, "ସିଦ୍ଧିଲାଭ ପାଇଁ କର୍ମତ୍ୟାଗ କରାଯାଏ ନାହିଁ । ମନୁଷ୍ୟ ଜୀବନର ଲକ୍ଷ୍ୟ ସିଦ୍ଧାବସ୍ଥା ବା ମୋକ୍ଷ । କେବଳ ଜ୍ଞାନ-ସାହାଯ୍ୟରେ ସେ ଅବସ୍ଥା ଲାଭ କରାଯାଏ, ସେହି ହେତୁରୁ ଜ୍ଞାନଲାଭପରେ ଜ୍ଞାନୀଙ୍କ ପକ୍ଷରେ କର୍ମ କରିବାର ପ୍ରୟୋଜନ ନାହିଁ । ଏହାହିଁ ୧୭ଶ ଶ୍ଳୋକରେ ବୁଝା ଯାଇଅଛି । ସେ ଅବସ୍ଥାରେ କର୍ମ କରିବା ବା ନ କରିବା ତାଙ୍କର ଇଚ୍ଛାଧୀନ. ଯେବେ କହ—ଲୋକରକ୍ଷା ପାଇଁ ଜ୍ଞାନୀଙ୍କ ପକ୍ଷରେ କର୍ମ ପ୍ରୟୋଜନୀୟ, ତେଣୁ ୧୮ଶ ଶ୍ଳୋକରେ ବୁଝାଯାଇଛି—ଲୋକମାନଙ୍କ ସଙ୍ଗରେ ଜ୍ଞାନୀଙ୍କର କୌଣସି ପ୍ରୟୋଜନସମ୍ବନ୍ଧ ନ ଥାଏ ।" ଏହାର ଉତ୍ତରରେ କର୍ମଯୋଗୀ କହନ୍ତି—କର୍ମ କରିବା ନ କରିବା ଯେବେ ଜ୍ଞାନୀଙ୍କର ଇଚ୍ଛାଧୀନ, ତେବେ କର୍ମ ନ କରିବା ପାଇଁ ଏତେ ଜିଦ୍ କାହିଁକି ? ଯାହା ଯେତେବେଳେ ଆସିବ, ଅନାସକ୍ତ ଭାବରେ ସେ ସବୁ କରିଯିବା ଉଚିତ । ୧୯ଶ ଶ୍ଳୋକରେ 'ତସ୍ମାତ୍' ପଦ ପ୍ରୟୋଗଦ୍ୱାରା ଅର୍ଜୁନଙ୍କୁ ଏହି ଉପଦେଶହିଁ ପ୍ରଦତ୍ତ ହୋଇଅଛି ଏବଂ ଏହି କଥାକୁ ପ୍ରମାଣିତ କରିବା ପାଇଁ ୨୦ଶ ଓ ତତ୍ପରବର୍ତ୍ତୀ ଶ୍ଳୋକମାନଙ୍କରେ ଭଗବାନ୍ ରାଜର୍ଷି ଜନକଙ୍କର ଏବଂ ଶେଷରେ ନିଜର ଉଦାହରଣ ଦେଇଅଛନ୍ତି । ଭଗବାନ୍ ସ୍ୱୟଂ ସର୍ବଶ୍ରେଷ୍ଠ ଜ୍ଞାନୀ, ତାଙ୍କର ନିଜର କର୍ତ୍ତବ୍ୟ ନ ଥିଲେହେଁ ସେ କର୍ମ କରନ୍ତି । ଏଥିରୁ ବୁଝାଯାଉଛି ଯେ, ଜ୍ଞାନୀଙ୍କ ପକ୍ଷରେ କର୍ମତ୍ୟାଗ କରିବାଠାରୁ ନିଷ୍କାମଭାବରେ କର୍ମର ଅନୁଷ୍ଠାନ କରିବା ବାଞ୍ଛନୀୟ ।

କିନ୍ତୁ ସନ୍ନ୍ୟାସପନ୍ଥୀ ଟୀକାକାରମାନେ ପୂର୍ବୋକ୍ତ ଯୁକ୍ତି ଓ ତର୍କକୁ ଗ୍ରହଣ ନ କରି ଏହି ଶ୍ଳୋକ ତିନି ଗୋଟିକୁ ପୃଥକ୍ ରୂପେ ବ୍ୟାଖ୍ୟାକରି କହନ୍ତି ଯେ ଜ୍ଞାନୀ ପୁରୁଷଙ୍କର କୌଣସି କର୍ତ୍ତବ୍ୟ ନାହିଁ, ଏହାହିଁ ଗୀତାର ଚରମ ସିଦ୍ଧାନ୍ତ । ଅର୍ଜୁନ ଅଜ୍ଞାନ, ତେଣୁ ୧୯ଶ ଶ୍ଳୋକରେ ତାଙ୍କୁ ଚିତ୍ତ ଶୁଦ୍ଧି ପାଇଁ ନିଷ୍କାମ କର୍ମ କରିବାକୁ ଉପଦେଶ ଦିଆଯାଇ ଅଛି । ଏପରି କଲେହେଁ ୧୯ଶ ଶ୍ଳୋକୋକ୍ତ 'ତସ୍ମାତ୍' ପଦ ନିରର୍ଥକ ହୋଇଯାଏ । "ଜ୍ଞାନୀମାନେ କର୍ମ କରନ୍ତି ନାହିଁ, ତୁମେ ଅଜ୍ଞାନ, ସେହି ହେତୁରୁ (ତସ୍ମାତ୍) ତୁମେ ନିଷ୍କାମଭାବରେ କର୍ମ କର" ଏପରି ଯେବେ ଭଗବାନଙ୍କ ଉଦ୍ଦେଶ୍ୟ ଥାଆନ୍ତା ତେବେ ସେ ଏଠାରେ 'ତୁମେ ଅଜ୍ଞାନ' ଏହିପରିଭାବରେ ୧୯ଶ ଶ୍ଳୋକ ଅରମ୍ଭ କରିଥାଆନ୍ତେ ।

ଲୋକମାନ୍ୟ ତିଲକ ତାଙ୍କ ପ୍ରଣୀତ ଗୀତାର ବ୍ୟାଖ୍ୟାରେ ଏ ସମ୍ବନ୍ଧରେ ବିସ୍ତାରିତ ଆଲୋଚନା କରି ଅଛନ୍ତି ଏବଂ ନାନା ପ୍ରାଚୀନ ଗ୍ରନ୍ଥରୁ ବଚନିଆ ଉଦ୍ଧାରମାନ ଉଦ୍ଧାର କରି ପ୍ରମାଣ କରିଅଛନ୍ତି ଯେ ସନ୍ନ୍ୟାସବାଦୀମାନଙ୍କର ବ୍ୟାଖ୍ୟା ଭ୍ରମାତ୍ମକ । ୧୮ଶ ଶ୍ଳୋକଟି 'ଯୋଗବାଶିଷ୍ଠ' ରେ ଟିକିଏ ପରିବର୍ତ୍ତିତ ଅବସ୍ଥାରେ ଏହିପରି ବୁଝାଯାଇଅଛି :—

କର୍ମଣୈବ ହି ସଂସିଦ୍ଧି ମାସ୍ଥିତା ଜନକାଦୟଃ ।
ଲୋକସଂଗ୍ରହ ମେବାପି ସଂପଶ୍ୟନ୍ କର୍ତ୍ତୁମର୍ହସି ।୨୦।

ମମ ନାସ୍ତି କୃତେନାର୍ଥୋ ନାକୃତେନେହ କଶ୍ଚନ ।
ଯଥାପ୍ରାପ୍ତେନ ତୁଷ୍ଟାସ୍ମି ଅକର୍ମଣି କ ଆଗ୍ରହଃ ?

"କର୍ମ କରିବା ନ କରିବା ମୋ ପକ୍ଷରେ ସମାନ, ଯେତେବେଳେ ଉଭୟ ଏକ, ସେତେବେଳେ କର୍ମ ନ କରିବାରେ ଆଗ୍ରହ କାହିଁକି ? ଶାସ୍ତ୍ର-ଅନୁସାରେ ଯାହା ପାଏଁ ତାହା କରଥାଏଁ ।"

ଏଠାରେ ଆଉ ଗୋଟିଏ କଥା ଦେଖିବାକୁ ହୁଏ, ଏ ଅଧ୍ୟାୟଟିରେ କେବଳ କର୍ମଯୋଗର ବର୍ଣ୍ଣନା । ୨ୟ ଅଧ୍ୟାୟ ୩୯ଶ ଶ୍ଳୋକରୁ ଏହାର ଆରମ୍ଭ । କର୍ମ ଯୋଗ ଅନୁସରଣରେ କର୍ମ କଲେ ବି ତାହା ବନ୍ଧନର କାରଣ ହୁଏ ନାହିଁ, ୩ୟ ଅଧ୍ୟାୟ ଶେଷଯାଏ ଏହି କଥା; ଏପରି ଅବସ୍ଥାରେ ମଝିରେ 'କର୍ମ ନ କରିବା ଭଲ' ଏପରି ଅପ୍ରାସଙ୍ଗିକ ବର୍ଣ୍ଣନା ଭଗବାନଙ୍କ ପକ୍ଷରେ ସମୀଚୀନ ହେବକି ?

୨୦ । ଅନ୍ୱୟ ଦୀପିକା—ଜନକାଦୟଃ ( ଜନକ ପ୍ରଭୃତି ମହାତ୍ମାମାନେ ) କର୍ମଣା ଏବ ହି ( କେବଳ କର୍ମାନୁଷ୍ଠାନ ଦ୍ୱାରା ) ସଂସିଦ୍ଧିମ୍ ଆସ୍ଥିତାଃ ( ସିଦ୍ଧିଲାଭ କରିଥିଲେ ) ଲୋକସଂଗ୍ରହମ୍ ଏବ ଅପି ( ଲୋକରକ୍ଷା ପ୍ରତି ମଧ୍ୟ ) ସଂପଶ୍ୟନ୍ ( ଦୃଷ୍ଟି ଦେଇ ) କର୍ତ୍ତୁମ୍ ଅର୍ହସି ( ତୁମ୍ଭର କର୍ମ କରିବା ଉଚିତ ) ।

ଅନୁବାଦ—ଜନକ ପ୍ରଭୃତି ମହାତ୍ମାମାନେ କର୍ମାନୁଷ୍ଠାନଦ୍ୱାରାହିଁ ସିଦ୍ଧିଲାଭ କରିଥିଲେ, ଲୋକ ରକ୍ଷାପ୍ରତି ମଧ୍ୟ ଦୃଷ୍ଟି ରଖି ତୁମ୍ଭର କର୍ମ କରିବା ଉଚିତ ।

ସୁବୋଧିନୀ ଟୀକା—ଅତ୍ର ସଦାଚାରଂ ପ୍ରମାଣୟତି—କର୍ମଣୈବେତି । କର୍ମଣୈବ ଶୁଦ୍ଧସତ୍ତ୍ୱାଃ ସନ୍ତଃ ସଂସିଦ୍ଧିଂ ସମ୍ୟଗ୍‌ଜ୍ଞାନଂ ପ୍ରାପ୍ତା ଇତ୍ୟର୍ଥଃ । ଯଦ୍ୟପିତ୍ୱଂ ସମ୍ୟଗ୍‌ଜ୍ଞାନିନ ମେବ ଆତ୍ମାନଂ ମନ୍ୟସେ ତଥାପି କର୍ମାଚରଣଂ ଭଦ୍ରମେବେତ୍ୟାହ—ଲୋକସଂଗ୍ରହମିତ୍ୟାଦି । ଲୋକସ୍ୟ ସଂଗ୍ରହଃ ସ୍ୱଧର୍ମେ ପ୍ରବର୍ତ୍ତନମ୍, ମୟା କର୍ମଣି କୃତେ ଜନଃ ସର୍ବୋଽପି କରିଷ୍ୟତି । ଅନ୍ୟଥା ଜ୍ଞାନି-ଦୃଷ୍ଟାନ୍ତେନାଜ୍ଞୋ ନିଜଧର୍ମଂ ନିତ୍ୟଂକର୍ମ ତ୍ୟଜନ୍ ପତେତ୍ । ଇତ୍ୟେବଂ ଲୋକ ରକ୍ଷଣ ମପି ତାବତ୍ ପ୍ରୟୋଜନଂ ସଂପଶ୍ୟନ୍ କର୍ମ କର୍ତ୍ତୁମେବାର୍ହସି, ନ ତ୍ୟକ୍ତୁମିତ୍ୟର୍ଥଃ ।

ବିବୃତ—ମିଥିଳାର ଅଧିପତି ଜନକ ବୈଦିକ ଯୁଗରେ ଜଣେ ଜ୍ଞାନବାନ୍ ରାଜର୍ଷି ଥିଲେ । "ମିଥିଲାୟାଂ ପ୍ରଦଗ୍ଧାୟାଂ ନ ମେ [illegible] ନ ମେ [illegible]" ତାଙ୍କର

ଯଦ୍ ଯଦା ଚରତି ଶ୍ରେଷ୍ଠସ୍ତତ୍ତଦେବେତରୋ ଜନଃ ।
ସ ଯତ୍ ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ । ୨୧ ।

ଏହି ଉକ୍ତି ଅଦ୍ୟାପି ସମାଜରେ ପ୍ରଚଳିତ ଅଛି, ଏହାର ଅର୍ଥ ( ରାଜଧାନୀ ) "ମିଥିଳା ନଗର ଯେବେ ପୋଡ଼ି ଭସ୍ମୀଭୂତ ହୋଇଯାଏ, ତେବେ ତହିଁରେ ମୋର ଲାଭହାନି ବା କ୍ଷତି ନାହିଁ" କର୍ମଯୋଗୀଙ୍କର ଏହାହିଁ ମନୋଗତ ଭାବ, ତାଙ୍କଭଳି ପରମ ଆତ୍ମତତ୍ତ୍ୱଜ୍ଞ ଯେତେବେଳେ ନିଷ୍କାମ କର୍ମର ଅନୁଷ୍ଠାନ କରି ଶେଷରେ ମୋକ୍ଷଲାଭ କରିଅଛନ୍ତି, ସେତେବେଳେ ତୁମ ପକ୍ଷରେ କର୍ମାନୁଷ୍ଠାନ କପରି ପ୍ରୟୋଜନୀୟ ବୁଝି ପାରିବ । 'ଜନକାଦୟଃ'—ଏଠାରେ ଆଦି ପଦଦ୍ୱାରା ଭଗୀରଥ, ଅଜାତଶତ୍ରୁ, ଅଶ୍ୱପତି ପ୍ରଭୃତିଙ୍କୁ ଲକ୍ଷ୍ୟ କରା ଯାଇଅଛି ।

ଶ୍ଲୋକର ପ୍ରଥମ ଚରଣରେ ଜ୍ଞାନୀ ପୁରୁଷଙ୍କର ନିଷ୍କାମ କର୍ମ କରିବାର ଉଦାହରଣ ଦେଇ ଦ୍ୱିତୀୟ ଚରଣରେ 'ଲୋକସଂଗ୍ରହ' ନିମିତ୍ତ କର୍ମ କରିବା ଯେ ନିତାନ୍ତ ଅବଶ୍ୟକ ତାହା କହି ଅଛନ୍ତି । 'ଲୋକ ସଂଗ୍ରହ'ର ଅର୍ଥ ଲୋକରକ୍ଷା ବା ସୃଷ୍ଟିରକ୍ଷା । ସିଦ୍ଧମୁକ୍ତ ପୁରୁଷମାନଙ୍କ ପକ୍ଷରେ ମଧ୍ୟ ଲୋକରକ୍ଷା ଉଦ୍ଦେଶ୍ୟରେ କର୍ମ କରିବା ଉଚିତ । 'ଲୋକ ରକ୍ଷା' ପଦରେ ଲୋକ ଶବ୍ଦ ବ୍ୟାପକ ଅର୍ଥରେ ବ୍ୟବହୃତ ହୋଇ ଅଛି । କେବଳ ମନୁଷ୍ୟ ଲୋକ ନୁହେ, ଦେବାଦି ସମସ୍ତ ଲୋକର ଧାରଣ ପୋଷଣ ଦ୍ୱାରା ପରସ୍ପର ଶ୍ରେୟଃ ସମ୍ପାଦିତ ହେବ—ଏହି ଅର୍ଥରେ 'ଲୋକ ସଂଗ୍ରହ' ପଦ ଗୀତାରେ ପ୍ରଯୁକ୍ତ ।

୨୧ । ଅନ୍ୱୟ ଦୀପିକା—ଶ୍ରେଷ୍ଠଃ ଜନଃ ( ଶ୍ରେଷ୍ଠ ବ୍ୟକ୍ତି ) ଯତ୍ ଯତ୍ ( ଯାହା ଯାହା ) ଆଚରତି ( ଅନୁଷ୍ଠାନ କରନ୍ତି ), ଇତରଃ ( ଅନ୍ୟ ସାଧାରଣ ଲୋକ ) ତତ୍ ତତ୍ ଏବ ( ତାହାହିଁ ) [ ଅନୁସରଣ କରେ ] ସଃ ( ସେହି ଶ୍ରେଷ୍ଠ ବ୍ୟକ୍ତି ) ଯତ୍ ( ଯାହା ) ପ୍ରମାଣଂ କୁରୁତେ ( ପ୍ରମାଣିତ କରନ୍ତି ) ଲୋକଃ ( ଅନ୍ୟାନ୍ୟ ଲୋକ ) ତତ୍ ( ତାହାହିଁ ) ଅନୁବର୍ତ୍ତତେ ( ଅନୁସରଣ କରନ୍ତି ) ।

ଅନୁବାଦ—ଶ୍ରେଷ୍ଠ ବ୍ୟକ୍ତି ଯେପରି କର୍ମର ଅନୁଷ୍ଠାନ କରନ୍ତି, ଅପର ସାଧାରଣ ଲୋକ ସେହିପରି କରନ୍ତି । ସେ ଯାହାକୁ ପ୍ରାମାଣିକ ବୋଲି ସ୍ୱୀକାର କରନ୍ତି ଲୋକେ ତାହାକୁହିଁ ଅନୁସରଣ କରନ୍ତି ।

ସୁବୋଧିନୀ ଟୀକା—କର୍ମକରଣେ ଲୋକସଂଗ୍ରହୋ ଯଥା ସ୍ୟାତ୍ତଦାହ—ଯଦ୍ୟଦିତି । ଇତରଃ ପ୍ରାକୃତୋଽପି ଜନଃ ତତ୍ତଦେବା ଚରତି । ସ ଶ୍ରେଷ୍ଠୋ ଜନଃ କର୍ମଶାସ୍ତ୍ରଂ ନିବୃତ୍ତିଶାସ୍ତ୍ରଂ ବା ଯତ୍ ପ୍ରମାଣଂ ମନ୍ୟତେ ତଦେବ ଲୋକୋଽପ୍ୟନୁସରତି ।

ନ ମେ ପାର୍ଥାସ୍ତି କର୍ତ୍ତବ୍ୟଂ ତ୍ରିଷୁ ଲୋକେଷୁ କିଞ୍ଚନ ।
ନାନବାପ୍ତ ମବାପ୍ତବ୍ୟଂ ବର୍ତ୍ତଏବ ଚ କର୍ମଣି । ୨୨ ।
ଯଦି ହ୍ୟହଂ ନ ବର୍ତ୍ତେୟଂ ଜାତୁ କର୍ମଣ୍ୟତନ୍ଦ୍ରିତଃ ।
ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ । ୨୩ ।

ବିବୃତି—ସବୁ ଯୁଗରେ ସବୁ ସମାଜରେ ଜଣେ ଜଣେ ଶ୍ରେଷ୍ଠ ଲୋକଥାଆନ୍ତି । ସେ ସମସ୍ତ ଜଗତର ଚକ୍ଷୁଃସ୍ୱରୂପ । ସେ ଯେପରି ଆଚରଣ କରନ୍ତି ସାଧାରଣ ଲୋକେ ତାହାହିଁ ଅନୁକରଣ କରନ୍ତି ଏବଂ ସେ ଯାହା ପ୍ରାମାଣ୍ୟ ବୋଲି ଗ୍ରହଣ କରନ୍ତି ପ୍ରାକୃତ ଲୋକସାଧାରଣ ତାହାର ଅନୁସରଣ କରନ୍ତି, ଅର୍ଜୁନ ତତ୍କାଳୀନ ସମାଜର ଜଣେ ଶ୍ରେଷ୍ଠ ବ୍ୟକ୍ତି । ସେ ଯେବେ କର୍ତ୍ତବ୍ୟ କର୍ମ ଛାଡ଼ି ସନ୍ନ୍ୟାସ ଗ୍ରହଣ କରନ୍ତି, ଇତର ସାଧାରଣ ତାହାର ଅନୁସରଣ କରି କର୍ମ ଛାଡ଼ି ସନ୍ନ୍ୟାସୀ ହୋଇବେ । ଏଠାରେ ଭଗବାନ୍ ଦୃଷ୍ଟାନ୍ତ ଦେଖାଇ ଏ କଥା ବୁଝାଇ କହୁଅଛନ୍ତି ଯେ, ଅମ୍ଭପରି ବ୍ୟକ୍ତିଙ୍କର ସ୍ୱାର୍ଥବୁଦ୍ଧି ନ ଥିଲେ ମଧ୍ୟ ଲୋକହିତକର କର୍ମ ସେ ଛାଡ଼ନ୍ତି ନାହିଁ ।

୨୨ । ଅନ୍ୱୟଦୀପିକା—[ହେ] ପାର୍ଥ ! ତ୍ରିଷୁ ଲୋକେଷୁ (ତ୍ରିଲୋକ ମଧ୍ୟରେ) ମେ (ଅମ୍ଭର) କିଞ୍ଚନ କର୍ତ୍ତବ୍ୟଂ ନାସ୍ତି (କୌଣସି କର୍ତ୍ତବ୍ୟ ନାହିଁ) । ଅନବାପ୍ତଂ (ଅପ୍ରାପ୍ତ) ଅବାପ୍ତବ୍ୟମ୍ (ଅପ୍ରାପ୍ୟ) ନ (କିଛିନାହିଁ) ତଥାପି (ତେବେ ମଧ୍ୟ)[ଅହଂ]କର୍ମଣି ବର୍ତ୍ତେ (ଅମ୍ଭେ କର୍ମାନୁଷ୍ଠାନରେ ବ୍ୟାପୃତ ଅଛୁଁ) ।

ଅନୁବାଦ—ହେ ଅର୍ଜୁନ, ତିନିଲୋକମଧ୍ୟରେ ଅମ୍ଭର କୌଣସି କର୍ତ୍ତବ୍ୟ ନାହିଁ । ଅମ୍ଭର ଅପ୍ରାପ୍ତ ବା ପ୍ରାପ୍ତବ୍ୟ କିଛି ନାହିଁ । ତଥାପି ଅମ୍ଭେ କର୍ମ ଅନୁଷ୍ଠାନରେ ବ୍ୟାପୃତ ଅଛୁଁ ।

ସୁବୋଧିନୀ ଟୀକା—ଅତ୍ରୈବହମେବ ଦୃଷ୍ଟାନ୍ତ ଇତ୍ୟାହ । ନ ମ ଇତି ତ୍ରିଭିଃ । ହେ ପାର୍ଥ, ମେ କର୍ତ୍ତବ୍ୟଂ ନାସ୍ତି । ଯତସ୍ତ୍ରିଷ୍ୱପି ଲୋକେଷ୍ୱ-ନବାପ୍ତମପ୍ରାପ୍ତଂ ସଦବାପ୍ତବ୍ୟଂ ପ୍ରାପ୍ୟଂ ନାସ୍ତି । ତଥାପି କର୍ମଣି ବର୍ତ୍ତଏବ । କର୍ମ କରୋମ୍ୟେବେତ୍ୟର୍ଥଃ ।

ବିବୃତି—ଲୋକ ସଂଗ୍ରହ ନିମିତ୍ତ କର୍ମାନୁଷ୍ଠାନନିତାନ୍ତ ପ୍ରୟୋଜନୀୟ । ପୂର୍ବେ ଜନକାଦିଙ୍କର କର୍ମକରିବା କଥା କହିଅଛନ୍ତି । ବର୍ତ୍ତମାନ ନିଜ ଦୃଷ୍ଟାନ୍ତ ଦ୍ୱାରା ସେହି ସତ୍ୟକୁ ଦୃଢ଼ କରୁଅଛନ୍ତି ।

୨୩ । ଅନ୍ୱୟଦୀପିକା—ହେ ପାର୍ଥ, ଯଦି ଅହଂ ଜାତୁ (ଯଦି ଅମ୍ଭେ କଦାଚିତ୍) ଅତନ୍ଦ୍ରିତଃ (ନିରଳସ ହୋଇ) କର୍ମଣି ନ ବର୍ତ୍ତେୟ (କର୍ମାନୁଷ୍ଠାନ ନ କରୁଁ) [ତା ହେଲେ] ମନୁଷ୍ୟାଃ (ମନୁଷ୍ୟମାନେ) ମମ ବର୍ତ୍ମ (ମମ ଅନୁସୃତ ପଥକୁହିଁ) ସର୍ବଶଃ (ସବୁ ପ୍ରକାରେ) ଅନୁବର୍ତ୍ତନ୍ତେ (ଅନୁସରଣ କରନ୍ତେ) ।

ଉତ୍ସୀଦେୟୁରିମେ ଲୋକା ନ କୁର୍ଯ୍ୟାଂ କର୍ମ ଚେଦହମ୍ ।
ସଙ୍କରସ୍ୟ ଚ କର୍ତ୍ତା ସ୍ୟାମୁପହନ୍ୟାମିମାଃ ପ୍ରଜାଃ । ୨୪ ।
ସକ୍ତାଃ କର୍ମଣ୍ୟବିଦ୍ୱାଂସୋ ଯଥା କୁର୍ବନ୍ତି ଭାରତ ।
କୁର୍ଯ୍ୟାଦ୍ ବିଦ୍ୱାଂସ୍ତଥାସକ୍ତଶ୍ଚିକୀର୍ଷୁର୍ଲୋକସଂଗ୍ରହମ୍ । ୨୫ ।

ଅନୁବାଦ—ହେ ପାର୍ଥ, ଯେବେ ନିରଳସ ହୋଇ ଆମ୍ଭେ କର୍ମାନୁଷ୍ଠାନ ନ କରୁଁ, ତେବେ ମନୁଷ୍ୟମାନେ ସର୍ବଥା ମମ ପଥର ଅନୁବର୍ତ୍ତୀ ହେବେ ଅର୍ଥାତ୍ କେହି କର୍ମ କରିବେ ନାହିଁ ।

ସୁବୋଧିନୀ ଟୀକା—ଅକରଣେ ଲୋକସ୍ୟ ନାଶଂ ଦର୍ଶୟତି—ଯଦି ହ୍ୟହମିତି, ଜାତୁ କଦାଚିଦତନ୍ଦ୍ରିତୋଽନଲସଃ ସନ୍ ଯଦି କର୍ମଣି ନ ବର୍ତ୍ତେୟ କର୍ମ ନାନୁତିଷ୍ଠେୟମ୍ । ତର୍ହି ମମୈବ ବର୍ତ୍ମ ମାର୍ଗଂ ମନୁଷ୍ୟା ଅନୁବର୍ତ୍ତନ୍ତେ । ଅନୁବର୍ତ୍ତେରନ୍ନିତ୍ୟର୍ଥଃ ।

୨୪ । ଅନ୍ୱୟଦୀପିକା—ଚେତ୍ (ଯଦି) ଅହଂ (ଆମ୍ଭେ) କର୍ମ ନ କୁର୍ଯ୍ୟାମ୍ (କର୍ମ ନ କରୁଁ) [ତେବେ] ଇମେ ଲୋକାଃ (ଏହି ସମସ୍ତ ଲୋକ) ଉତ୍ସୀଦେୟୁଃ (ଉତ୍ସନ୍ନ ହୋଇଯିବେ), [ଆମ୍ଭେ] ସଙ୍କରସ୍ୟ କର୍ତ୍ତା ସ୍ୟାମ୍ (ସଙ୍କରର କର୍ତ୍ତା ହେବୁଁ), ଚ ଇମାଃ ପ୍ରଜାଃ (ଏବଂ ଏହି ପ୍ରଜାମାନଙ୍କୁ) ଉପହନ୍ୟାମ୍ (ବିନାଶ କରିବୁଁ) ।

ଅନୁବାଦ—ଆମ୍ଭେ ଯେବେ କର୍ମ ନ କରୁଁ, ତେବେ ଏ ସମସ୍ତ ଲୋକ ଉଚ୍ଛନ୍ନ ହୋଇଯିବେ ଏବଂ ଆମ୍ଭେ ସଙ୍କରର ଅର୍ଥାତ୍ ସାମାଜିକ ବିଶୃଙ୍ଖଳାର କାରଣ ହେବୁଁ ଏବଂ ଏହି ପ୍ରଜାମାନଙ୍କୁ ବିନାଶ କରିବୁଁ ।

ସୁବୋଧିନୀ ଟୀକା—ତତଃ କିମ୍? ଅତ ଆହ— ଉତ୍ସୀଦେୟୁରିତି । ଉତ୍ସୀଦେୟୁର୍ଧର୍ମଲୋପେନ ନଶ୍ୟେୟୁଃ । ତତଶ୍ଚ ଯୋ ବର୍ଣ୍ଣସଙ୍କରୋ ଭବେତ୍ ତସ୍ୟାପ୍ୟହମେବ କର୍ତ୍ତା ସ୍ୟାଂ ଭବେୟମ୍ । ଏବମହମେବ ପ୍ରଜା ଉପହନ୍ୟାଂ ମଲିନୀକୁର୍ଯ୍ୟାମିତି ।

ବିବୃତି—ପୂର୍ବଶ୍ଳୋକରେ ଭଗବାନ୍ କହିଅଛନ୍ତି, କର୍ମ କରିବାର ଆଦର୍ଶ ସେ ନିଜେ ନ ଦେଖାଇଲେ ଲୋକମାନେ କେହି କର୍ମ କରିବେ ନାହିଁ । ଲୋକେ କର୍ମ ନ କଲେ ସମାଜର ଶୃଙ୍ଖଳା ଭାଙ୍ଗିଯିବ । କାର୍ଯ୍ୟତଃ ଅତ୍ୟାଗ୍ରହ ଓ ବ୍ୟଭିଚାରଦ୍ୱାରା ସମାଜ ନଷ୍ଟ ହୋଇଯିବ । ଏହା ହିଁ ଏ ଶ୍ଳୋକର ଭାବ ।

୨୫ । ଅନ୍ୱୟଦୀପିକା—ଭାରତ ! (ହେ ଭାରତ) ଅବିଦ୍ୱାଂସଃ (ଅଜ୍ଞାନ ପୁରୁଷମାନେ) କର୍ମଣି ସକ୍ତାଃ (କର୍ମରେ ଆସକ୍ତ ହୋଇ) ଯଥା (ଯେପରି) କୁର୍ବନ୍ତି (ଅନୁଷ୍ଠାନ କରନ୍ତି) ବିଦ୍ୱାନ୍ (ଜ୍ଞାନୀଲୋକ) ଅସକ୍ତଃ (ଅନାସକ୍ତ ହୋଇ) ଲୋକସଂଗ୍ରହଂ ଚିକୀର୍ଷୁଃ (ଲୋକରକ୍ଷା ନିମିତ୍ତ) ତଥା (ସେହିପରି) କୁର୍ଯ୍ୟାତ୍ (ଅନୁଷ୍ଠାନ କରିବେ) ।

ଅନୁବାଦ—ହେ ଭାରତ, ଅଜ୍ଞଲୋକମାନେ କର୍ମରେ ଆସକ୍ତ ହୋଇ ଯେପରି କର୍ମ କରନ୍ତି, ଜ୍ଞାନୀଲୋକମାନେ ଅନାସକ୍ତ ଚିତ୍ତରେ ଲୋକରକ୍ଷା ଉଦ୍ଦେଶ୍ୟରେ ସେହିପରି କର୍ମ କରିବେ ।

ସୁବୋଧିନୀ ଟୀକା—ତସ୍ମାଦାତ୍ମବିଦାପି ଲୋକସଂଗ୍ରହାର୍ଥଂ ତତ୍କୃପୟା କର୍ମ କାର୍ଯ୍ୟମେବେତ୍ୟୁପସଂହରତି । ସକ୍ତା ଇତି । କର୍ମଣି ସକ୍ତା ଅଭିନିବିଷ୍ଟାଃ ସନ୍ତୋ ଯଥାଜ୍ଞାଃ କର୍ମାଣି କୁର୍ବନ୍ତି, ଅସକ୍ତଃ ସନ୍ ବିଦ୍ୱାନପି ତଥୈବ କୁର୍ଯ୍ୟାଲ୍ଲୋକସଂଗ୍ରହଂ କର୍ତ୍ତୁମିଚ୍ଛୁଃ ।

ବିବୃତି—ଜ୍ଞାନମାର୍ଗ ଓ କର୍ମମାର୍ଗମଧ୍ୟରେ ପ୍ରଭେଦ ଏହି ଯେ ଜ୍ଞାନୀ ବ୍ୟକ୍ତି ସମସ୍ତ କର୍ମ ଛାଡ଼ି ଦିଅନ୍ତି, କର୍ମ ଛାଡ଼ିଦେବା ଦ୍ୱାରା ଜଗତର ରକ୍ଷା ବା ନଷ୍ଟ ହେଉ ସେ ବିଷୟ ବିନ୍ଦୁମାତ୍ର ଚିନ୍ତା କରନ୍ତି ନାହିଁ । କିନ୍ତୁ କର୍ମଯୋଗୀ ନିଜପାଇଁ ଆବଶ୍ୟକ ନହେଲେ ମଧ୍ୟ ଲୋକସଂଗ୍ରହକୁ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ମନେକରି ସେଥିପାଇଁ ନିଜ ଧର୍ମାନୁସାରେ ସମସ୍ତ କାର୍ଯ୍ୟର ଅନୁଷ୍ଠାନ କରନ୍ତି । ଲୋକସଂଗ୍ରହ ନିଷ୍କାମ କର୍ମଯୋଗର ଗୋଟିଏ ବିଶିଷ୍ଟ ଉଦ୍ଦେଶ୍ୟ । ନିଷ୍କାମଭାବରେ କର୍ମକରିବାଦ୍ୱାରା ଯେପରି ଚିତ୍ତପ୍ରସାଦ ଓ ଭଗବଦର୍ଚ୍ଚନା ଦ୍ୱାରା ବା ଈଶ୍ୱରଙ୍କଠାରେ ସର୍ବକର୍ମ ସମର୍ପଣ କରିବାଦ୍ୱାରା ଈଶ୍ୱରବିଶ୍ୱାସ ବଦ୍ଧମୂଳ ହୁଏ, ସେହିପରି ସୃଷ୍ଟିରକ୍ଷା କାର୍ଯ୍ୟରେ ସହାୟତା କରାଯାଏ । ଏହି ପରିଦୃଶ୍ୟମାନ ସୃଷ୍ଟି ପ୍ରକୃତିର ଲୀଳା, ପ୍ରକୃତି ଈଶ୍ୱରଙ୍କ ସର୍ଜନ ଶକ୍ତି ଭିନ୍ନ ଆଉ କିଛି ନୁହେଁ । ଅନ୍ୟ ଭାବରେ କହିଲେ ଭଗବାନଙ୍କର କାର୍ଯ୍ୟ କାରିଣୀ ଶକ୍ତିହିଁ ପ୍ରକୃତି । ତେଣୁ କର୍ମହିଁ ସୃଷ୍ଟି ଏବଂ କର୍ମଦ୍ୱାରା ସୃଷ୍ଟିରକ୍ଷା, ତେଣୁ ପ୍ରକୃତିର ବଶବର୍ତ୍ତୀ ସୂର୍ଯ୍ୟ ଚନ୍ଦ୍ରାଦି ଜ୍ୟୋତିଷ୍କମାନଙ୍କଠାରୁ ଆରମ୍ଭ କରି କ୍ଷୁଦ୍ର ଜୀବ ପିପୀଲିକା ପର୍ଯ୍ୟନ୍ତ ସମସ୍ତେ ନିରନ୍ତର ସ୍ୱ ସ୍ୱ କର୍ମରେ ଲାଗିଅଛନ୍ତି । ଏପରି ଅବସ୍ଥାରେ ଜ୍ଞାନୀ ବ୍ୟକ୍ତିଙ୍କର ଯେ କୌଣସି ଅବସ୍ଥାରେ କର୍ମ ଛାଡ଼ିବା ଉଚିତ କି ? କର୍ମ ଛାଡ଼ିଲେ ଅଜ୍ଞାନମାନଙ୍କର ଉଦ୍ଧାରର ଉପାୟ କଅଣ ହେବ ? ଯେଉଁ ତପସ୍ୱୀମାନେ କେବଳ ନିଜ ଆତ୍ମାର ମୁକ୍ତି ପାଇଁ ସଂସାର ଛାଡ଼ି ଅରଣ୍ୟରେ ବାସ କରନ୍ତି, ସେମାନଙ୍କୁ ସ୍ୱାର୍ଥପର ଛଡ଼ା ଆଉ କଅଣ କୁହାଯାଇପାରେ ? ସଂସାରରେ ରହି ନିଷ୍କାମ କର୍ମ କରିବାଦ୍ୱାରା ଅଜ୍ଞମାନେ ସେମାନଙ୍କ ସାହଚର୍ଯ୍ୟରେ ସଂସାର ବନ୍ଧନରୁ ମୁକ୍ତ ହୋଇ ପାରନ୍ତେ ତ ?

ଲୋକସଂଗ୍ରହର ଅର୍ଥ ବ୍ୟାପକ । ନିଜର ଆଦର୍ଶଦ୍ୱାରା କର୍ମରେ ଅସକ୍ତ ଅଜ୍ଞମାନଙ୍କୁ ସତ୍ୟର ମାର୍ଗ ଦେଖାଇବା ଯେପରି ଏହାର ମୁଖ୍ୟମାର୍ଗ, ଦୁଃସ୍ଥର ସେବା, ଅତିଥି, ଅଭ୍ୟାଗତ, ପୀଡ଼ିତର ସହାୟତା କରିବା ସେହିପରି ଏହାର ଗୌଣମାର୍ଗ । ଏଥିପାଇଁ ଭଗବାନ୍ କହୁଅଛନ୍ତି—ମହାଜ୍ଞାନୀ ମଧ୍ୟ ଲୋକସଂଗ୍ରହ ପାଇଁ ନିଷ୍କାମବୁଦ୍ଧିରେ ସର୍ବଦା କର୍ମରେ ଲାଗି ରହିବ ।

ନ ବୁଦ୍ଧିଭେଦଂ ଜନୟେଦଜ୍ଞାନାଂ କର୍ମସଙ୍ଗିନାମ୍ ।
ଯୋଜୟେତ୍ * ସର୍ବକର୍ମାଣି ବିଦ୍ୱାନ୍ ଯୁକ୍ତଃ ସମାଚରନ୍ । ୨୬ ।

୨୬ । ଅନ୍ୱୟଦୀପିକା—କର୍ମସଙ୍ଗିନାମ୍ (କର୍ମରେ ଆସକ୍ତ) ଅଜ୍ଞାନାମ୍ ବୁଦ୍ଧିଭେଦଂ ନ ଜନୟେତ୍ (ଅଜ୍ଞମାନଙ୍କର ବୁଦ୍ଧିଭେଦ ଜନ୍ମାଇବ ନାହିଁ) ବିଦ୍ୱାନ୍ (ଜ୍ଞାନବାନ୍) ଯୁକ୍ତଃ (ଅବହିତ ହୋଇ) ସର୍ବକର୍ମାଣି (ସମସ୍ତ କର୍ମ) ସମାଚରନ୍ (ସମ୍ୟକ୍ ଅନୁଷ୍ଠାନ କରି) ଯୋଜୟେତ୍ (ସେମାନଙ୍କୁ କର୍ମରେ ନିଯୁକ୍ତ ରଖିବେ) ।

ଅନୁବାଦ—ଜ୍ଞାନୀମାନେ କର୍ମରେ ଆସକ୍ତ ଥିବା ଅଜ୍ଞମାନଙ୍କର ବୁଦ୍ଧିଭେଦ ଜନ୍ମାଇବେ ନାହିଁ । ବରଂ ନିଜେ ଅବହିତ ହୋଇ କର୍ମର ଅନୁଷ୍ଠାନ କରି ସେମାନଙ୍କୁ କର୍ମରେ ନିଯୁକ୍ତ ରଖିବେ ।

ସୁବୋଧିନୀ ଟୀକା—ନନୁ କୃପୟା ତତ୍ତ୍ୱଜ୍ଞାନ ମେବୋପଦେଷ୍ଟୁଂ ଯୁକ୍ତମ୍ । ନେତ୍ୟାହ—ଅଜ୍ଞାନାମତଏବ କର୍ମସଙ୍ଗିନାଂ କର୍ମସକ୍ତାନା ମକର୍ତ୍ତ୍ରାତ୍ମୋପଦେଶେନ ବୁଦ୍ଧେର୍ଭେଦମନ୍ୟଥାତ୍ୱଂ ନ ଜନୟେତ୍ । କର୍ମଣଃ ସକାଶାଦ୍ ବୁଦ୍ଧି ବିଚାଳନଂ ନକୁର୍ଯ୍ୟାତ୍ । ଅପିତୁ ଜୋଷୟେତ୍ ସେବୟେତ୍ । ଅଜ୍ଞାନ୍ କର୍ମାଣିକାରୟେଦିତ୍ୟର୍ଥଃ, କଥମ୍? ଯୁକ୍ତୋଽବହିତୋଭୂତ୍ୱା ସ୍ୱୟମାଚରନ୍ ସନ୍ । ବୁଦ୍ଧିବିଚାଳନେ କୃତେ ସତି କର୍ମସୁ ଶ୍ରଦ୍ଧାନିବୃତ୍ତେ ର୍ଜ୍ଞାନସ୍ୟ ଚାନୁତ୍ପତ୍ତେ ସ୍ତେଷା ମୁଭୟ ଭ୍ରଂଶଃ ସ୍ୟାଦିତିଭାବଃ ।

ବିବୃତି—ଯଦି କେହି କହନ୍ତି ଯେ—ଲୋକ ସଂଗ୍ରହ ପାଇଁ ନିଷ୍କାମ କର୍ମର ଅନୁଷ୍ଠାନ ନ କରି ଯେବେ ମୌଖିକ ଉପଦେଶ ଦିଆଯାଏ ନେବେ ତହିଁରେ କ୍ଷତି କଅଣ? ଏହାର ଉତ୍ତରରେ ଭଗବାନ୍ କହୁଅଛନ୍ତି ଯେ— ଫଳ କାମନାରେ ଯେଉଁମାନେ କର୍ମ କରନ୍ତି ସେମାନଙ୍କୁ ଯଦି ଉପଦେଶ ଦିଆଯାଏ ଯେ—ତୁମେ (ଆତ୍ମା) ଅକର୍ତ୍ତା, ଅଭୋକ୍ତା ଏବଂ କର୍ମ ତ୍ୟାଗହିଁ ଶ୍ରେୟଃ ପଥ, ତାହା ହେଲେ ଏହାର ଫଳ ବିପରୀତ ହୁଏ । ଏହାଦ୍ୱାରା ଅଜ୍ଞମାନେ କର୍ମ ଓ ଜ୍ଞାନ ଉଭୟ ପଥରୁ ଭ୍ରଷ୍ଟ ହୋଇ ପଡ଼ନ୍ତି ଏବଂ ଫଳତଃ ସେମାନେ କର୍ମ ଓ ଭୋଗ ଉଭୟରୁ ବଞ୍ଚିତ ହୁଅନ୍ତି । ଅତଏବ ଏପରି ଉପଦେଶ ନ ଦେଇ ନିଜେ ନିଷ୍କାମ କର୍ମର ଅନୁଷ୍ଠାନ କରିବା ଦ୍ୱାରା ଅଜ୍ଞମାନଙ୍କୁ ସେହିପରି କରିବାକୁ ଆଦର୍ଶ ଦେଖାଇବା ଉଚିତ ।

ଏ ଯୁଗରେ କର୍ମତ୍ୟାଗୀମାନେ କହନ୍ତି ବୁଦ୍ଧ ଶଙ୍କର ପ୍ରଭୃତି ଧର୍ମ ଗୁରୁମାନେ କର୍ମଭୂମି ଭାରତ ଖଣ୍ଡରେ କର୍ମଶୂନ୍ୟତା ପ୍ରଚାର କରିବା ଦ୍ୱାରା ଏ ଦେଶବାସୀଙ୍କୁ ଅଳସ ଓ କର୍ମବିମୁଖ କରିଯାଇ ଅଛନ୍ତି । ଯେତେବେଳେ ଲୋକେ ଗୀତାର କର୍ମଯୋଗମାର୍ଗ ଅବଲମ୍ବନ କରିବେ ସେତେବେଳେ ଏ ଦେଶ ପୁଣି ଉନ୍ନତିର ସମୁଚ୍ଚ ସୋପାନରେ ଆରୂଢ଼ ହେବ ।

* ଜୋଷୟେଦିତି—ଶ୍ରୀଧରସ୍ୱାମି ଧୃତଃ ପାଠଃ ।

ପ୍ରକୃତେଃ କ୍ରିୟମାଣାନି ଗୁଣୈଃ କର୍ମାଣି ସର୍ବଶଃ ।
ଅହଙ୍କାରବିମୂଢ଼ାତ୍ମା କର୍ତ୍ତାହମିତି ମନ୍ୟତେ । ୨୭ ।

୨୭ । ଅନ୍ୱୟ ଦୀପିକା—ପ୍ରକୃତେଃ ଗୁଣୈଃ (ପ୍ରକୃତିର ଗୁଣମାନଙ୍କ-ଦ୍ୱାରା) ସର୍ବଶଃ ( ସବୁପ୍ରକାରେ ) କର୍ମାଣି ( କର୍ମ ସମସ୍ତ ) କ୍ରିୟମାଣାନି (ସମ୍ପନ୍ନ ହେଉଅଛି ), [ କିନ୍ତୁ ] ଅହଂକାରବିମୂଢ଼ାତ୍ମା ( ଯାହାର ବୁଦ୍ଧି ଅହଂକାରରେ ବିମୁଗ୍ଧ ସେ) ଅହଂ କର୍ତ୍ତା (ମୁଁ କର୍ତ୍ତା) ଇତି ମନ୍ୟତେ (ଏହା ମନେ କରେ) ।

ଅନୁବାଦ—ପ୍ରକୃତିର ଗୁଣସମୂହ ଦ୍ୱାରା କର୍ମ ସବୁ ସମ୍ପନ୍ନ ହୁଏ ଅର୍ଥାତ୍ ପ୍ରକୃତିର ଗୁଣ ସବୁ କର୍ମ କରେ, କିନ୍ତୁ ଯେ ଅହଂକାରରେ ମୁଗ୍ଧଚିତ୍ତ ସେ ମନେ କରେ ମୁଁ ସବୁ କର୍ମର କର୍ତ୍ତା ।

ସୁବୋଧିନୀ ଟୀକା—ନନୁ ବିଦୁଷାପି ଚେତ୍ କର୍ମ କର୍ତ୍ତବ୍ୟଂ ତର୍ହି ବିଦ୍ୱଦବିଦୁଷୋଃ କୋ ବିଶେଷଃ ? ଇତ୍ୟାଶଂକ୍ୟୋଭୟୋର୍ବିଶେଷଂ ଦର୍ଶୟତି—ପ୍ରକୃତେରିତି ଦ୍ୱାଭ୍ୟାମ୍ । ପ୍ରକୃତେର୍ଗୁଣୈଃ ପ୍ରକୃତିକାର୍ଯୈ୍ୟରିନ୍ଦ୍ରିୟୈଃ ସର୍ବ-ପ୍ରକାରେଣ କ୍ରିୟମାଣାନି କର୍ମାଣି । ତାନ୍ୟହମେବ କର୍ତ୍ତା କରୋମୀତି ମନ୍ୟତେ । ଅତ୍ରହେତୁଃ—ଅହଂକାରେତି । ଅହଙ୍କାରେଣେନ୍ଦ୍ରିୟାଦିଷ୍ୱାତ୍ମାଧ୍ୟାସେନ ବିମୂଢ଼ବୁଦ୍ଧିଃ ସନ୍ ।

ବିବୃତି—ବର୍ତ୍ତମାନ ଏପରି ସଂଶୟ ହୋଇପାରେ, ଯେବେ ଆତ୍ମଜ୍ଞ ବ୍ୟକ୍ତି ଲୋକ ସଂଗ୍ରହ ପାଇଁ ସଂସାରୀମାନଙ୍କ ପରି କର୍ମ କରିବେ ତେବେ ସେ ମଧ୍ୟ ସଂସାରୀଙ୍କପରି ଅଜ୍ଞ ହୋଇଯିବେ । ମହର୍ଷି କପିଳଙ୍କ ପ୍ରଣୀତ ସାଂଖ୍ୟଦର୍ଶନ ଅନୁସାରେ ଭଗବାନ୍ ଏହାର ଉତ୍ତର ଦେଉ ଅଛନ୍ତି । ଅଜ୍ଞାନ ଲୋକ ମନେ-କରେ, ଆତ୍ମା ବା ସେ ନିଜେ କର୍ମର କର୍ତ୍ତା, କିନ୍ତୁ ଜ୍ଞାନୀ ମନେ କରନ୍ତି କର୍ମ କରେ ପ୍ରକୃତି । ଜଗତର ନିର୍ବିଶେଷ ଅପରିଚ୍ଛିନ୍ନ ମୂଳ ଉପାଦାନହିଁ ପ୍ରକୃତି, ଏହି ପ୍ରକୃତି ତ୍ରିଗୁଣମୟୀ; ସତ୍ତ୍ୱ, ରଜଃ ଓ ତମଃ ଏହି ତ୍ରିଗୁଣର ସାମ୍ୟାବସ୍ଥାହିଁ ପ୍ରକୃତି, ପ୍ରକୃତିର ବୈଷମ୍ୟାବସ୍ଥା ତ୍ରିଗୁଣ । ଏ ଚରାଚର ଜଗତ୍ ପ୍ରକୃତିର ପରିଣାମ ଏବଂ ମନ, ବୁଦ୍ଧି, ଦେହ, ଇନ୍ଦ୍ରିୟ ପ୍ରଭୃତି ମଧ୍ୟ ପ୍ରକୃତିର ପରିଣାମ । ବିଷୟ ସଙ୍ଗେ ମନବୁଦ୍ଧି ଇନ୍ଦ୍ରିୟାଦିର ସଂଯୋଗରେ କର୍ମର ଉତ୍ପତ୍ତି, ସମସ୍ତ କର୍ମ ପ୍ରକୃତି ଦ୍ୱାରାହିଁ ନିଷ୍ପନ୍ନ ହୁଏ । ପୁରୁଷ ବା ଆତ୍ମା ପ୍ରକୃତିଠାରୁ ଭିନ୍ନ, ସେ ନିଷ୍କ୍ରିୟ ଓ ଅକର୍ତ୍ତା । ଯେ ଆତ୍ମାକୁ ପ୍ରକୃତିଠାରୁ ଭିନ୍ନ ବୋଲି ଜାଣନ୍ତି ସେ ତତ୍ତ୍ୱବିତ୍ । କିନ୍ତୁ ଯେ ପ୍ରକୃତିକୁ ଆତ୍ମା ବୋଲି ମନେ କରେ, ସେ ମୂଢ଼ । ଏହି ପ୍ରକୃତିରେ ଅର୍ଥାତ୍ ଦେହ, ମନ, ଇନ୍ଦ୍ରିୟାଦିରେ ଯେଉଁ ଆତ୍ମାଭିମାନ ତାହାହିଁ ଅହଂକାର । ଯେ ଅହଂକାରରେ ମୂଢ଼ଚିତ୍ତ ସେ ମନେ କରେ ମୁଁ (ଆତ୍ମା) କର୍ତ୍ତ କରେଁ ।

ତତ୍ତ୍ୱବିତ୍ତୁ ମହାବାହୋ ଗୁଣକର୍ମବିଭାଗୟୋଃ ।
ଗୁଣା ଗୁଣେଷୁ ବର୍ତ୍ତନ୍ତ ଇତି ମତ୍ୱା ନ ସଜ୍ଜତେ । ୨୮ ।

ଜ୍ଞାନୀ ଓ କର୍ମୀ ଦୁହେଁ କର୍ମ କରନ୍ତି । ଜ୍ଞାନୀ ମନେ କରନ୍ତି କର୍ମ କରେ ପ୍ରକୃତି କିନ୍ତୁ ଅଜ୍ଞାନ ମନେ କରେ କର୍ମ କରେ ମୁଁ (ଆତ୍ମା) । ଏପରି ଅବସ୍ଥାରେ ଜ୍ଞାନୀ ବ୍ୟକ୍ତିଙ୍କର ଅହଂ ଜ୍ଞାନ ନ ଥିବାରୁ କର୍ମରେ ଆସକ୍ତି ବା ଫଳାକାଂକ୍ଷା ନ ଥାଏ । ଅଜ୍ଞାନ କର୍ମକୁ ନିଜର ବୋଲି ମନେ କରିବାରୁ ଫଳରେ ଆସକ୍ତ ହୋଇ ପଡ଼େ । ତେଣୁ ଅଜ୍ଞାନର କର୍ମ-ଭୋଗ, ଜ୍ଞାନୀର କର୍ମ-ଯୋଗ । କର୍ତ୍ତୃତ୍ୱାଭିମାନ ନ ଯିବା ଯାଏ କର୍ମ ଯୋଗରେ ପରିଣତ ହୁଏ ନାହିଁ । ଏହିପରି ଭାବରେ ଗୀତା ଜ୍ଞାନ ଓ କର୍ମର ସମନ୍ୱୟ କରିଅଛି ।

୨୮ । ଅନ୍ୱୟଦୀପିକା—ତୁ (କିନ୍ତୁ) ମହାବାହୋ, (ହେ ମହାବାହୁ) ଗୁଣକର୍ମବିଭାଗୟୋଃ ( ଗୁଣ ବିଭାଗର ଓ କର୍ମ ବିଭାଗର ) ତତ୍ତ୍ୱବିତ୍ ( ଯଥାର୍ଥ-ତତ୍ତ୍ୱଜ୍ଞ ) ଗୁଣାଃ ( ସତ୍ତ୍ୱ, ରଜଃ ଓ ତମୋଗୁଣ ଏବଂ ଏ ସବୁର ପରିଣାମ ଇନ୍ଦ୍ରିୟାଦି) ଗୁଣେଷୁ (ଗୁଣ ବିଷୟରେ ଅର୍ଥାତ୍ ରୂପ ରସାଦି ଇନ୍ଦ୍ରିୟ ବିଷୟରେ) ବର୍ତ୍ତନ୍ତେ (ପ୍ରବୃତ୍ତ ହୋଇଅଛନ୍ତି) ଇତି (ଏହିପରି) ମତ୍ୱା ( ଜାଣି ବା ମନେ କରି ) ନ ସଜ୍ଜତେ (କର୍ତ୍ତୃତ୍ୱାଭିମାନ କରନ୍ତି ନାହିଁ) ।

ଅନୁବାଦ—ହେ ମହାବାହୁ ! କିନ୍ତୁ ଯେଉଁ ତତ୍ତ୍ୱଜ୍ଞ ପୁରୁଷ ସତ୍ତ୍ୱ, ରଜଃ ଓ ତମୋଗୁଣ ଏବଂ ମନଃ, ବୁଦ୍ଧି ଓ ଇନ୍ଦ୍ରିୟାଦି ବିଭାଗର ଓ ସେମାନଙ୍କର ପୃଥକ୍ ପୃଥକ୍ କର୍ମ ବିଭାଗର ତତ୍ତ୍ୱ ଜାଣନ୍ତି, ସେ ମନେ କରନ୍ତି ଇନ୍ଦ୍ରିୟାଦି ନିଜ ନିଜ ବିଷୟରେ ପ୍ରବୃତ୍ତ ଅଛନ୍ତି, ତେଣୁ ସେ କର୍ମରେ ଆସକ୍ତ ହୁଅନ୍ତି ନାହିଁ କିମ୍ବା କର୍ତ୍ତୃତ୍ୱାଭିମାନ କରନ୍ତି ନାହିଁ ।

ସୁବୋଧିନୀ ଟୀକା—ବିଦ୍ୱାଂସ୍ତୁ ନ ତଥା ମନ୍ୟତ ଇତ୍ୟାହ—ତତ୍ତ୍ୱବିଦିତି, ନାହଂ ଗୁଣାତ୍ମକ ଇତି ଗୁଣେଭ୍ୟ ଆତ୍ମନୋ ବିଭାଗଃ ନ ମେ କର୍ମାଣୀତି କର୍ମଭ୍ୟୋଽପ୍ୟାତ୍ମନୋ ବିଭାଗଃ, ତୟୋର୍ଗୁଣକର୍ମବିଭାଗୟୋ ର୍ଯସ୍ତତ୍ତ୍ୱଂ ବେତ୍ତି ସ ତୁ ନ ସଜ୍ଜତେ, କର୍ତ୍ତୃତ୍ୱାଭିନିବେଶଂ ନ କରୋତି, ତତ୍ର ହେତୁଃ—ଗୁଣା ଇତି । ଗୁଣା ଇନ୍ଦ୍ରିୟାଣି ଗୁଣେଷୁ ବିଷୟେଷୁ ବର୍ତ୍ତନ୍ତେ, ନାହ ମିତି ମତ୍ୱା ।

ବିବୃତି—ଗୁଣ କହିଲେ ସତ୍ତ୍ୱ, ରଜଃ ଓ ତମଃ—ଏହି ତିନିଗୋଟିକୁ ବୁଝାଏ ଏବଂ ପ୍ରକୃତିର ପରିଣାମ ଦେହ, ମନ ଓ ଇନ୍ଦ୍ରିୟାଦିକୁ ଓ ରୂପ ରସାଦି ଇନ୍ଦ୍ରିୟବିଷୟକୁ ମଧ୍ୟ ବୁଝାଏ । ଇନ୍ଦ୍ରିୟାଦି ସହିତ ଇନ୍ଦ୍ରିୟ ଭୋଗ୍ୟ ବିଷୟର ଅର୍ଥାତ୍ ରୂପ ରସାଦିର ଯେ ସଂଯୋଗ ତାହାହିଁ କର୍ମ । ଆତ୍ମଜ୍ଞାନୀ ଜାଣନ୍ତି ଯେ ଆତ୍ମା ନିଷ୍କ୍ରିୟ, ସେ (ମୁଁ) କିଛି କରନ୍ତି ନାହିଁ, ପ୍ରକୃତି ଅର୍ଥାତ୍ ଇନ୍ଦ୍ରିୟାଦିହିଁ କର୍ମ

ପ୍ରକୃତେର୍ଗୁଣସମ୍ମୂଢ଼ାଃ ସଜ୍ଜନ୍ତେ ଗୁଣକର୍ମସୁ ।
ତାନକୃତ୍ସ୍ନବିଦୋ ମନ୍ଦାନ୍ କୃତ୍ସ୍ନବିନ୍ନ ବିଚାଳୟେତ୍ । ୨୯ ।
ମୟି ସର୍ବାଣି କର୍ମାଣି ସନ୍ନ୍ୟସ୍ୟାଧ୍ୟାତ୍ମଚେତସା ।
ନିରାଶୀର୍ନିର୍ମମୋ ଭୂତ୍ୱା ଯୁଧ୍ୟସ୍ୱ ବିଗତଜ୍ୱରଃ । ୩୦ ।

କରନ୍ତି, ଯେ ଅଜ୍ଞ ହୁଅନ୍ତି ସେ ମନେ କରନ୍ତି 'ମୁଁ' କର୍ମ କରେଁ, ମୁଁ ଏହାର ଫଳଭୋଗକାରୀ, କିନ୍ତୁ ଅଜ୍ଞଙ୍କ ବ୍ୟକ୍ତି, ଗୁଣମାନେ ନିଜ ନିଜ କାର୍ଯ୍ୟରେ ଲାଗିଛନ୍ତି—ଏହା ଜାଣିପାରି ଅସକ୍ତ ହୁଅନ୍ତି ନାହିଁ ।

୨୯ । ଅନ୍ୱୟଦୀପିକା—ପ୍ରକୃତେଃ ( ପ୍ରକୃତିର ) ଗୁଣ ସମ୍ମୂଢ଼ାଃ ( ଗୁଣରେ ବିମୋହିତ ବ୍ୟକ୍ତିମାନେ ) ଗୁଣ କର୍ମସୁ ( ଗୁଣର କର୍ମରେ ଅର୍ଥାତ୍ ଦେହେନ୍ଦ୍ରିୟାଦିକର୍ମରେ ) ସଜ୍ଜନ୍ତେ ( ଅସକ୍ତ ହୁଅନ୍ତି ) କୃତ୍ସ୍ନବିତ୍ ( ସର୍ବଜ୍ଞ ବ୍ୟକ୍ତି ) ତାନ୍ ଅକୃତ୍ସ୍ନବିଦଃ ମନ୍ଦାନ୍ ( ସେହି ଅଲ୍ପଜ୍ଞ ମନ୍ଦମତି ଲୋକଙ୍କୁ ) ନ ବିଚାଳୟେତ୍ ( ବିଚଳିତ କରିବେ ନାହିଁ ) ।

ଅନୁବାଦ—ଯେଉଁମାନେ ପ୍ରକୃତିର ଗୁଣରେ ମୋହିତ, ସେମାନେ ଦେହେନ୍ଦ୍ରିୟାଦି କର୍ମରେ ଅସକ୍ତ ହୁଅନ୍ତି । ସର୍ବଜ୍ଞ ବ୍ୟକ୍ତି ସେହି ଅଲ୍ପବୁଦ୍ଧି ମନ୍ଦଲୋକମାନଙ୍କୁ କର୍ମରୁ ବିଚଳିତ କରିବେ ନାହିଁ ।

ସୁବୋଧିନୀ ଟୀକା—ନ ବୁଦ୍ଧିଭେଦମିତ୍ୟୁପସଂହରତି ପ୍ରକୃତେରିତି, ଯେ ପ୍ରକୃତେର୍ଗୁଣୈଃ ସତ୍ତ୍ୱାଦିଭିଃ ସମ୍ମୂଢ଼ାଃ ସନ୍ତଃ । ଗୁଣେନ୍ଦ୍ରିୟେଷୁ ତତ୍କର୍ମସୁ ଚ ସଜ୍ଜନ୍ତେ । ତାନକୃତ୍ସ୍ନବିଦୋମନ୍ଦାନ୍ ମନ୍ଦମତୀନ୍ କୃତ୍ସ୍ନବିତ୍ ସର୍ବଜ୍ଞୋ ନ ବିଚାଳୟେତ୍ ।

ବିବୃତି—ଏ ଅଧ୍ୟାୟର ୨୬ଶ ଶ୍ଳୋକରେ ଯାହା କୁହା ଯାଇଅଛି ଏ ଶ୍ଳୋକରେ ସେହି କଥାହିଁ ଭିନ୍ନ ପ୍ରକାରେ ପ୍ରକାଶ କରି ଯାଉଅଛି । ପ୍ରକୃତିର ଗୁଣରେ ମୋହିତ ହୋଇ ଯେଉଁ ଅଜ୍ଞ ଲୋକମାନେ ବିଷୟରେ ଆସକ୍ତ ରହି କର୍ମ କରନ୍ତି ସେମାନଙ୍କୁ କର୍ମତ୍ୟାଗର ଉପଦେଶ ଦେବା ଉଚିତ ନୁହେ । ଯେତେବେଳଯାଏ ଚିତ୍ତ ଈଶ୍ୱରଙ୍କଠାରେ ଅବିଚଳିତ ହୋଇନାହିଁ ସେତେବେଳଯାଏ ବିଷୟାସକ୍ତି କୌଣସିମତେ ଦୂର ହେବ ନାହିଁ, ସୁତରାଂ କର୍ମତ୍ୟାଗ କରିବାକୁ ଉପଦେଶ ଦେବା ଦ୍ୱାରା କେବଳ ଅକର୍ମା, ମିଥ୍ୟାଚାରୀ ଲୋକର ସୃଷ୍ଟି ହୁଏ ।

୩୦ । ଅନ୍ୱୟଦୀପିକା—ମୟି ( ଆମ୍ଭଠାରେ ) ସର୍ବାଣି କର୍ମାଣି ( ସମସ୍ତ କର୍ମ ) ଅଧ୍ୟାତ୍ମଚେତସା ( ବିବେକ ବୁଦ୍ଧି ଦ୍ୱାରା ) ସନ୍ନ୍ୟସ୍ୟ ( ସମର୍ପଣ କରି ) ନିରାଶୀଃ ( ନିଷ୍କାମ ) ନିର୍ମମଃ (ମମତାଶୂନ୍ୟ) ବିଗତଜ୍ୱରଃ (ଶୋକଶୂନ୍ୟ) ଭୂତ୍ୱା ( ହୋଇ ) ଯୁଧ୍ୟସ୍ୱ ( ଯୁଦ୍ଧକର ) ।

ଅନୁବାଦ—(ଈଶ୍ୱରହିଁ କର୍ତ୍ତା, ତାଙ୍କ ଇଚ୍ଛାରେ ମୁଁ କର୍ମ କରୁଅଛି—ଏପରି) ବିବେକ ବୁଦ୍ଧି ସହକାରେ ସମସ୍ତ କର୍ମ ଆମଠାରେ ସମର୍ପଣ କରି ନିଷ୍କାମ ଓ ମମତାଶୂନ୍ୟ ହୋଇ ଶୋକ ତ୍ୟାଗପୂର୍ବକ ତୁମେ ଯୁଦ୍ଧ କର ।

ସୁବୋଧିନୀ ଟୀକା—ଜ୍ଞାନବତୋଽପି କର୍ମ କର୍ତ୍ତବ୍ୟମ୍ । ତ୍ୱଂ ତୁ ନାଦ୍ୟାପି ତତ୍ତ୍ୱବିତ୍ । ଅତଃ କର୍ମୈବ କର୍ତ୍ତବ୍ୟମିତ୍ୟାହ-ମୟୀତି । ସର୍ବାଣି କର୍ମାଣି ମୟି ସନ୍ନ୍ୟସ୍ୟ ସମର୍ପ୍ୟ ଅଧ୍ୟାତ୍ମଚେତସା ଅନ୍ତର୍ଯ୍ୟାମ୍ୟଧୀନୋଽହଂ କରୋମୀତି ଦୃଷ୍ଟ୍ୟା । ନିରାଶୀ ନିଷ୍କାମଃ । ଅତଏବ ମତ୍‌ଫଳସାଧନଂ ମଦର୍ଥ ମିଦଂ କର୍ମେତ୍ୟେବଂ ମମତାଶୂନ୍ୟଶ୍ଚ ଭୂତ୍ୱା ବିଗତଜ୍ୱରସ୍ତ୍ୟକ୍ତଶୋକଶ୍ଚ ଭୂତ୍ୱା, ଯୁଧ୍ୟସ୍ୱ ।

ବିବୃତ—ଜ୍ଞାନୀଙ୍କ ପକ୍ଷରେ ମଧ୍ୟ କର୍ମ କରିବା ଉଚିତ—ପୂର୍ବେ ଏହି ମର୍ମରେ ଯେଉଁସବୁ ଉପଦେଶ ଦିଆ ଯାଇଅଛି, ସେ ସବୁର ସାରମର୍ମ ଏହି ଶ୍ଳୋକରେ ପ୍ରକାଶ କରୁ ଅଛନ୍ତି । ଆତ୍ମତତ୍ତ୍ୱ ପ୍ରତିପାଦକ ଉପନିଷଦ୍ ଓ ବେଦାନ୍ତାଦି ଶାସ୍ତ୍ରର ନାମ ଅଧ୍ୟାତ୍ମ ଶାସ୍ତ୍ର । ସେହି ସମସ୍ତ ଶାସ୍ତ୍ରର ବିଚାରରେ ଯେଉଁ ଚିତ୍ତ ଅଭ୍ୟସ୍ତ ତାହା ଅଧ୍ୟାତ୍ମଚେତ, ଏତଦ୍ଦ୍ୱାରା ଆତ୍ମଜ୍ଞାନର ଉଦୟ ହୁଏ । କୌଣସି କର୍ମ କଲାବେଳେ "ମୁଁ ଏ କର୍ମର କର୍ତ୍ତା ନୁହେଁ, ଈଶ୍ୱରହିଁ ମୋ ହୃଦୟରେ ଅନ୍ତର୍ଯ୍ୟାମିରୂପରେ ରହି ମୋ ଦ୍ୱାରା ଏ କାମ କରାଉ ଅଛନ୍ତି, ସୁତରାଂ ଈଶ୍ୱରହିଁ କର୍ତ୍ତା, ମୁଁ ତାଙ୍କର ଭୃତ୍ୟ ଭାବରେ କର୍ମ କରୁଅଛି"—ଏହିଭଳି ବିବେକ ବୁଦ୍ଧି ସାହାଯ୍ୟରେ ସମସ୍ତ କର୍ମ ଆମଠାରେ ସମର୍ପଣ କରି ନିଷ୍କାମ ଓ ମମତାଶୂନ୍ୟ ହୋଇ ଶୋକତ୍ୟାଗପୂର୍ବକ ଯୁଦ୍ଧ କର । ଏହାହିଁ ଏ ଶ୍ଳୋକର ତାତ୍ପର୍ଯ୍ୟ ।

ଏହି ଗୋଟିଏ ଶ୍ଳୋକରେ ଭଗବାନ୍ କର୍ମଯୋଗର ସାର ସଙ୍କଳନ କରି ଅଛନ୍ତି ଏବଂ ଜ୍ଞାନ, କର୍ମ, ଭକ୍ତି—ଈଶ୍ୱର ପ୍ରାପ୍ତିର ଏହି ତ୍ରିବିଧ ସାଧନର ସମନ୍ୱୟ ବିଧାନ କରିଅଛନ୍ତି । ନିଷ୍କାମ କର୍ମର ଲକ୍ଷଣ ତିନିଗୋଟି (୧) ଫଳାକାଂକ୍ଷା ବର୍ଜ୍ଜନ—'ନିରାଶୀଃ' ଶବ୍ଦଦ୍ୱାରା ତାହା ପ୍ରକାଶିତ ହୋଇଅଛି । (୨) କର୍ତ୍ତୃତ୍ୱାଭିମାନ ତ୍ୟାଗ—'ଅଧ୍ୟାତ୍ମଚେତସା' ଓ 'ନିର୍ମମଃ' ଶବ୍ଦଦ୍ୱାରା ବୁଝାଗଲା । 'ମୁଁ' ବା 'ମୋର'—ଏ ଜ୍ଞାନ ଥିବାଯାଏ କେହି 'ନିର୍ମମ' ହୋଇ ପାରେ ନାହିଁ । (୩) ଈଶ୍ୱରଙ୍କଠାରେ କର୍ମଫଳ ସମର୍ପଣ—'ମୟି ସର୍ବାଣି କର୍ମାଣି ସନ୍ନ୍ୟସ୍ୟ'—ଏ କଥାରେ ତାହାହିଁ ପ୍ରକାଶିତ ହୋଇଅଛି । ଯେ ଅଭିମାନ ତ୍ୟାଗ କରି ଥାଆନ୍ତି ସେ ପରମ ଜ୍ଞାନୀ, ଯେ ବିବେକ ବୁଦ୍ଧିଦ୍ୱାରା ଈଶ୍ୱରଙ୍କଠାରେ ସବୁ କର୍ମ ସମର୍ପଣ କରନ୍ତି ଓ ତାଙ୍କ ଭୃତ୍ୟ ଭାବରେ କର୍ମ କରନ୍ତି ସେ ପରମ ଭକ୍ତ । ତେଣୁ କର୍ମଯୋଗରେ ଜ୍ଞାନ ଓ ଭକ୍ତି ଉଭୟେ ସମନ୍ୱିତ ହୋଇଅଛନ୍ତି ।

ଯେ ମେ ମତମିଦଂ ନିତ୍ୟମନୁତିଷ୍ଠନ୍ତି ମାନବାଃ ।
ଶ୍ରଦ୍ଧାବନ୍ତୋଽନସୂୟନ୍ତୋ ମୁଚ୍ୟନ୍ତେ ତେଽପି କର୍ମଭିଃ । ୩୧।
ଯେ ତ୍ୱେତଦଭ୍ୟସୂୟନ୍ତୋ ନାନୁତିଷ୍ଠନ୍ତି ମେ ମତମ୍ ।
ସର୍ବଜ୍ଞାନବିମୂଢ଼ାଂସ୍ତାନ୍ ବିଦ୍ଧି ନଷ୍ଟାନଚେତସଃ । ୩୨ ।

୩୧ । ଅନ୍ୱୟଦୀପିକା—ଯେ ମାନବାଃ ( ଯେଉଁ ମନୁଷ୍ୟମାନେ) ଶ୍ରଦ୍ଧାବନ୍ତଃ ( ଶ୍ରଦ୍ଧାବାନ୍ ) ଅନସୂୟନ୍ତଃ ( ଅସୂୟା ବର୍ଜିତଃ ) [ହୋଇ] ମେ ( ଆମ୍ଭର ) ଇଦଂ ମତଂ ( ଏହି ମତକୁ ) ନିତ୍ୟଂ ( ସର୍ବଦା ) ଅନୁତିଷ୍ଠନ୍ତି ( ଅନୁସରଣ କରନ୍ତି ) ତେ ଅପି ( ସେମାନେ ମଧ୍ୟ ) କର୍ମଭିଃ ମୁଚ୍ୟନ୍ତେ ( କର୍ମ ବନ୍ଧନରୁ ମୁକ୍ତ ହୁଅନ୍ତି ) ।

ଅନୁବାଦ—ଯେଉଁ ଲୋକମାନେ ଶ୍ରଦ୍ଧାବାନ୍ ଓ ଅସୂୟାଶୂନ୍ୟ ହୋଇ ଆମ୍ଭର ଏହିମତକୁ ଅନୁସରଣ କରନ୍ତି ସେମାନେ ମଧ୍ୟ କର୍ମ ବନ୍ଧନରୁ ମୁକ୍ତ ହୁଅନ୍ତି ।

ସୁବୋଧିନୀ ଟୀକା—ଏବଂ କର୍ମାନୁଷ୍ଠାନେ ଗୁଣମାହ—ଯେ ମ ଇତି । ମଦ୍‌ବାକ୍ୟେ ଶ୍ରଦ୍ଧାବନ୍ତୋଽନସୂୟନ୍ତଃ ଦୁଃଖାତ୍ମକେ କର୍ମଣି ପ୍ରବର୍ତ୍ତୟତି— ଦୋଷଦୃଷ୍ଟିଂ ମକୁର୍ବନ୍ତଶ୍ଚ ଯେ ମଦୀୟ ମିଦଂ ମତମନୁତିଷ୍ଠନ୍ତି ତେଽପି ଶନୈଃ କର୍ମ କୁର୍ବାଣାଃ ସମ୍ୟଗ୍‌ଜ୍ଞାନବନ୍ତଃ କର୍ମଭିର୍ମୁଚ୍ୟନ୍ତେ ।

ବିବୃତି— ଗୁଣ ମଧ୍ୟରୁ ଦୋଷ ବାହାର କରିବାକୁ 'ଅସୂୟା' କହନ୍ତି । 'ଅନସୂୟନ୍ତଃ'—ଏ ପଦଟି ଅସୂୟାଶୂନ୍ୟ ଅର୍ଥରେ ପ୍ରଯୁକ୍ତ ହୋଇଅଛି । ଏଥିରୁ ବୁଝା ଯାଉଅଛି, କର୍ମ ତ୍ୟାଗ ନ କଲେ ମୋକ୍ଷ ମିଳେ ନାହିଁ । କାରଣ କର୍ମବନ୍ଧନର କାରଣ—ଏହି ମତବାଦୀ ସନ୍ନ୍ୟାସି-ସମ୍ପ୍ରଦାୟଙ୍କ ମତକୁ ଭଗବାନ ଏଠାରେ ଲକ୍ଷ୍ୟ କରି ଅଛନ୍ତି । ଏଠାରେ ଭଗବାନଙ୍କର ଉଦ୍ଦେଶ୍ୟ ଜ୍ଞାନୀମାନେ କର୍ମ ତ୍ୟାଗକରି ଯେଉଁ ମୁକ୍ତିର ଅଧିକାରୀ ହୁଅନ୍ତି, କର୍ମଯୋଗୀମାନେ ନିଷ୍କାମକର୍ମ କରି ମଧ୍ୟ ତାହା ଲାଭ କରନ୍ତି । ତେଣୁ କର୍ମ ପରିତ୍ୟାଜ୍ୟ ନୁହେ । ଏହି ହେତୁରୁ କୁହା ଯାଇଛି 'ତେଽପି' ଅର୍ଥାତ୍ 'ସେମାନେ ମଧ୍ୟ' ।

୩୨ । ଅନ୍ୱୟଦୀପିକା – ଯେ ତୁ ( କିନ୍ତୁ ଯେଉଁମାନେ ) ମେ ( ଆମର ) ଏତନ୍ମତଂ ( ଏହି ମତକୁ ) ଅଭ୍ୟସୂୟନ୍ତଃ (ଅସୂୟା ଯୁକ୍ତ ହୋଇ) ନ ଅନୁତିଷ୍ଠନ୍ତି ( ଅନୁସରଣ ନ କରନ୍ତି ) ତାନ୍ ( ସେମାନଙ୍କୁ ) ସର୍ବଜ୍ଞାନ-ବିମୂଢ଼ାନ୍ ( ସର୍ବଜ୍ଞାନବିମୂଢ଼ ) ଅଚେତସଃ (ବିବେକଶୂନ୍ୟ) ନଷ୍ଟାନ୍ (ପଥଭ୍ରଷ୍ଟ ) ବିଦ୍ଧି ( ବୋଲି, ଜାଣ )

ଅନୁବାଦ—କିନ୍ତୁ ଯେଉଁମାନେ ଅସୂୟା ପରବଶ ହୋଇ ଆମ୍ଭର ପୂର୍ବୋକ୍ତ ମତର ଅନୁସରଣ ନ କରନ୍ତି ସେମାନଙ୍କୁ ସର୍ବଜ୍ଞାନ ବିମୂଢ଼, ଅବିବେକଶୂନ୍ୟ ଓ ପଥଭ୍ରଷ୍ଟ ବୋଲି ଜାଣ ।

ସଦୃଶଂ ଚେଷ୍ଟତେ ସ୍ୱସ୍ୟାଃ ପ୍ରକୃତେର୍ଜ୍ଞାନବାନପି ।
ପ୍ରକୃତିଂ ଯାନ୍ତି ଭୂତାନି ନିଗ୍ରହଃ କିଂ କରିଷ୍ୟତି । ୩୩ ।

ସୁବୋଧିନୀ ଟୀକା—ବିପକ୍ଷେ ଦୋଷମାହ—ଯେ ତ୍ୱେତଦିତି । ଯେ ତୁ ନାନୁତିଷ୍ଠନ୍ତି ତାନଚେତସୋ ବିବେକଶୂନ୍ୟାନ୍ । ଅତଏବ ସର୍ବସ୍ମିନ୍ କର୍ମଣି ବ୍ରହ୍ମବିଷୟେ ଚ ଯଜ୍ଜ୍ଞାନଂ ତତ୍ର ବିମୂଢ଼ାନ୍ ନଷ୍ଟାନ୍ ବିଦ୍ଧି ।

ବିବୃତି—କର୍ମଯୋଗ ଯେ ଗୀତାର ପ୍ରତିପାଦ୍ୟ—ଏହି ଫଳଶ୍ରୁତି ତାହାର ଅନ୍ୟତମ ପ୍ରମାଣ ।

୩୩ । ଅନ୍ୱୟ ଦୀପିକା—ଜ୍ଞାନବାନପି (ଜ୍ଞାନବାନ୍ ଲୋକ ମଧ୍ୟ) ସ୍ୱସ୍ୟାଃ ପ୍ରକୃତେଃ ( ନିଜ ପ୍ରକୃତିର ) ସଦୃଶଂ ( ଅନୁରୂପ ) ଚେଷ୍ଟତେ ( କାର୍ଯ୍ୟକରେ ) । ଭୂତାନି ( ପ୍ରାଣି-ଗଣ ) ପ୍ରକୃତିଂ ଯାନ୍ତି ( ପ୍ରକୃତିର ଅନୁସରଣ କରନ୍ତି ) ନିଗ୍ରହଃ ( ନିରୋଧ, ଇନ୍ଦ୍ରିୟ ନିରୋଧ ) କିଂ କରିଷ୍ୟତି ( କଅଣ କରିବ ? )

ଅନୁବାଦ—ଜ୍ଞାନବାନ୍ ଲୋକ ମଧ୍ୟ ନିଜ ପ୍ରକୃତି ଅନୁରୂପ କର୍ମ କରି ଥାଆନ୍ତି । ପ୍ରାଣୀମାନେ ପ୍ରକୃତିରହିଁ ଅନୁସରଣ କରନ୍ତି । ( ଏପରି ଅବସ୍ଥାରେ ) ଇନ୍ଦ୍ରିୟ-ନିଗ୍ରହ କଅଣ କରିପାରେ ?

ସୁବୋଧିନୀ ଟୀକା—ନନ୍ୱେତନ୍ମହାଫଳତ୍ୱାଦିନ୍ଦ୍ରିୟାଣି ନିଗୃହ୍ୟ ନିଷ୍କାମାଃ ସନ୍ତଃ ସର୍ବେଽପି ସ୍ୱଧର୍ମମେବ କିଂ ନାନୁତିଷ୍ଠନ୍ତି ତତ୍ରାହ ସଦୃଶମିତି । ପ୍ରକୃତିଃ ପ୍ରାଚୀନକର୍ମସଂସ୍କାରାଧୀନଃ ସ୍ୱଭାବଃ ସ୍ୱସ୍ୟାଃ ସ୍ୱକୀୟାୟାଃ ପ୍ରକୃତେଃ ସ୍ୱଭାବସ୍ୟ ସଦୃଶମନୁରୂପମେବ ଗୁଣଦୋଷଂ ଜ୍ଞାନବାନପି ଚେଷ୍ଟତେ କିଂ ପୁନର୍ବକ୍ତବ୍ୟମଜ୍ଞଶ୍ଚେଷ୍ଟତ ଇତି, ଯସ୍ମାଦ୍ଭୂତାନି ସର୍ବେଽପି ପ୍ରାଣିନଃ ପ୍ରକୃତିଂ ଯାନ୍ତି ଅନୁବର୍ତ୍ତନ୍ତେ ଏବଂ ଚ ସତୀନ୍ଦ୍ରିୟନିଗ୍ରହଃ କିଂ କରିଷ୍ୟତି ପ୍ରକୃତେର୍ବଳୀୟସ୍ତ୍ୱାଦିତ୍ୟର୍ଥଃ

ବିବୃତି—କର୍ମଯୋଗ ସାଧନର ପ୍ରଧାନ କଥା ଇନ୍ଦ୍ରିୟ ନିଗ୍ରହ, ତେବେ ସମସ୍ତେ କାହିଁକି ଇନ୍ଦ୍ରିୟ ନିଗ୍ରହ କରି ନିଷ୍କାମ କର୍ମ ଯୋଗର ଅନୁଷ୍ଠାନ ନ କରନ୍ତି ? ଏହାର ଉତ୍ତରରେ ଭଗବାନ୍ କହୁଅଛନ୍ତି—ଜୀବମାନେ ପୂର୍ବଜନ୍ମର ସଂସ୍କାର ବଶରୁ ଭିନ୍ନ ଭିନ୍ନ ସ୍ୱଭାବ ପାଇଥାଆନ୍ତି । ସତ୍ତ୍ୱ, ରଜଃ, ତମୋ ଗୁଣମୟୀ ପ୍ରକୃତିର ପ୍ରେରଣାରେ ଜୀବକର୍ମ କରିଥାଏ । ଏହି ପ୍ରକୃତିହିଁ ସ୍ୱଭାବ । ଯାହା ସ୍ୱଭାବରେ ସତ୍ତ୍ୱଗୁଣର ଆଧିକ୍ୟ ସେ ସାତ୍ତ୍ୱିକ, ରଜୋଗୁଣର ଆଧିକ୍ୟରେ ରାଜସିକ ଓ ତମୋଗୁଣର ଆଧିକ୍ୟରେ ତାମସିକ ହୁଅନ୍ତି । ଏହି ଗୁଣମାନଙ୍କ ମିଶ୍ରଣରେ ମଧ୍ୟ ସତ୍ତ୍ୱ-ରାଜସିକ, ରାଜସ୍-ତାମସିକ ପ୍ରଭୃତି ବିଭିନ୍ନ ମିଶ୍ର ପ୍ରକୃତିବିଶିଷ୍ଟ ଲୋକ ମଧ୍ୟ ଥାଆନ୍ତି । ଏହାହିଁ ସ୍ୱଭାବଜ କର୍ମ, ଜୀବର ପ୍ରବୃତ୍ତି ସ୍ୱଭାବର ଅନୁସରଣ କରେ

ଇନ୍ଦ୍ରିୟସ୍ୟେନ୍ଦ୍ରିୟସ୍ୟାର୍ଥେ ରାଗଦ୍ୱେଷୌ ବ୍ୟବସ୍ଥିତୌ ।
ତୟୋର୍ନ ବଶମାଗଚ୍ଛେତ୍ ତୌ ହ୍ୟସ୍ୟ ପରିପନ୍ଥିନୌ ॥ ୩୪ ॥

ଏପରି ଅବସ୍ଥାରେ ଇନ୍ଦ୍ରିୟ ନିଗ୍ରହ ବା ଶାସ୍ତ୍ରାନୁଶାସନ ଦ୍ୱାରା କୌଣସି ଫଳ ହୁଏ ନାହିଁ । କାରଣ ସ୍ୱଭାବର ଶକ୍ତି ଅସାଧାରଣ ।

ଯେବେ ଏହା ପରମ ସତ୍ୟ ତେବେ ଜୀବର ଆତ୍ମୋନ୍ନତିର କୌଣସି ଆଶା ନାହିଁ ? ପରଶ୍ଳୋକରେ ତାହାର ଉତ୍ତର ଦିଆ ହେଉଅଛି ।

୩୪ । ଅନ୍ୱୟ ଦୀପିକା—ଇନ୍ଦ୍ରିୟସ୍ୟ ଇନ୍ଦ୍ରିୟସ୍ୟ ଅର୍ଥେ (ପ୍ରତ୍ୟେକ ଇନ୍ଦ୍ରିୟର ସ୍ୱ ସ୍ୱ ବିଷୟରେ ) ରାଗ ଦ୍ୱେଷୌ ( ଅନୁରାଗ ଓ ବିଦ୍ୱେଷ ) ବ୍ୟବସ୍ଥିତୌ ( ଅବଶ୍ୟମ୍ଭାବୀ ); ତୟୋଃ ( ସେ ଦୁହିଙ୍କର ) ବଶଂ ନ ଆଗଚ୍ଛେତ୍ ( ବଶୀଭୂତ ହେବ ନାହିଁ ), ହି ( ଯେହେତୁ ) ତୌ ( ସେ ଦୁହେଁ ) ଅସ୍ୟ ( ଜୀବର ବା ଶ୍ରେୟୋମାର୍ଗର ) ପରିପନ୍ଥିନୌ ( ପରମ ଶତ୍ରୁ ) ।

ଅନୁବାଦ—ପ୍ରତ୍ୟେକ ଇନ୍ଦ୍ରିୟର ସ୍ୱ ସ୍ୱ ବିଷୟର ଅନୁକୂଳରେ ଅନୁରାଗ ଓ ପ୍ରତିକୂଳରେ ବିଦ୍ୱେଷ ଅବଶ୍ୟମ୍ଭାବୀ । ସେହି ରାଗଦ୍ୱେଷର ବଶୀଭୂତ ହେବ ନାହିଁ । କାରଣ ସେମାନେ ଜୀବର ବା ଶ୍ରେୟଃ ପଥର ବିଘ୍ନକାରକ ।

ସୁବୋଧିନୀ ଟୀକା—ନନ୍ୱେବଂ ପ୍ରକୃତ୍ୟଧୀନୈବ ଚେତ୍ ପୁରୁଷସ୍ୟ ପ୍ରବୃତ୍ତିସ୍ତର୍ହି ବିଧିନିଷେଧଶାସ୍ତ୍ରସ୍ୟ ବୈୟର୍ଥ୍ୟଂ ପ୍ରାପ୍ତମିତ୍ୟାଶଙ୍କ୍ୟାହ—ଇନ୍ଦ୍ରିୟସ୍ୟେତି । ଇନ୍ଦ୍ରିୟସ୍ୟେନ୍ଦ୍ରିୟସ୍ୟେତି ବୀପ୍ସୟା ସର୍ବେଷାମିନ୍ଦ୍ରିୟାଣାଂ ପ୍ରତ୍ୟେକମିତ୍ୟୁକ୍ତମ୍ । ଅର୍ଥେ ସ୍ୱ ସ୍ୱ ବିଷୟେଽନୁକୂଳେ ରାଗଃ ପ୍ରତିକୂଳେ ଦ୍ୱେଷ ଇତ୍ୟେବଂ ରାଗଦ୍ୱେଷୌ ବ୍ୟବସ୍ଥିତାବବଶ୍ୟଂଭାବିନୌ, ତତଶ୍ଚ ତଦନୁରୂପା ପ୍ରବୃତ୍ତିରିତି ଭୂତାନାଂ ପ୍ରକୃତିଃ । ତଥାପି ତୟୋର୍ବଶବର୍ତ୍ତୀ ନ ଭବେଦିତି ଶାସ୍ତ୍ରେଣ ନିୟମ୍ୟତେ । ହି ଯସ୍ମାଦସ୍ୟ ମୁମୁକ୍ଷୋ ସ୍ତୌ ପରିପନ୍ଥିନୌ ପ୍ରତିପକ୍ଷୌ । ଅୟଂ ଭାବଃ—ବିଷୟସ୍ମରଣାଦିନା ରାଗଦ୍ୱେଷାଭ୍ୟାମୁତ୍ପାଦ୍ୟାନବହିତଂ ପୁରୁଷମନର୍ଥେଽତିଗମ୍ଭୀରେ ସ୍ରୋତସୀବ ପ୍ରକୃତିର୍ବଲାତ୍ ପ୍ରବର୍ତ୍ତୟତି । ଶାସ୍ତ୍ରଂ ତୁ ତତଃ ପ୍ରାଗେବ ବିଷୟେଷୁ ରାଗଦ୍ୱେଷପ୍ରତିବନ୍ଧକେ ପରମେଶ୍ୱରଭଜନାଦୌ ତଂ ପ୍ରବର୍ତ୍ତୟତି, ତତଶ୍ଚ ଗମ୍ଭୀରସ୍ରୋତଃପାତାତ୍ ପୂର୍ବମେବ ନାବମାଶ୍ରିତଇବ ନାନର୍ଥଂ ପ୍ରାପ୍ନୋତି । ତଦେବଂ ସ୍ୱାଭାବିକୀଂ ପଶ୍ୱାଦିସଦୃଶୀଂ ପ୍ରବୃତ୍ତିଂ ତ୍ୟକ୍ତ୍ୱା ଧର୍ମେ ପ୍ରବର୍ତ୍ତିତବ୍ୟମିତ୍ୟୁକ୍ତମ୍ ।

ବିବୃତି—ପୂର୍ବ ଶ୍ଳୋକରେ 'ନିଗ୍ରହ' ଶବ୍ଦର ଅର୍ଥ ଜୋରଜବରଦସ୍ତି କରାଇ ରଖିବା । ଇନ୍ଦ୍ରିୟ ସଂଯମ ଅବଶ୍ୟ ଗୀତାର ଲକ୍ଷ୍ୟ, କିନ୍ତୁ ଜବରଦସ୍ତି ଇନ୍ଦ୍ରିୟ ସମୂହର ସ୍ୱାଭାବିକ ବୃତ୍ତିକୁ ଏକାବେଳେକେ ନଷ୍ଟ କରିଦେବା ସମ୍ଭବପର ନୁହେଁ । ଉପଯୁକ୍ତ ସଂଯମ ଦ୍ୱାରା ସେମାନଙ୍କୁ ବଶୀଭୂତ କରିରଖି

ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ ସ୍ୱନୁଷ୍ଠିତାତ୍ ।
ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ ॥ ୩୫ ॥

ଲୋକସଂଗ୍ରହାର୍ଥ ପ୍ରୟୋଗ କରିବା ଉଚିତ । ସ୍ୱସ୍ୱବିଷୟରେ ଅନୁରାଗ ବା ବିଦ୍ୱେଷ ଇନ୍ଦ୍ରିୟମାନଙ୍କ ପକ୍ଷରେ ସ୍ୱାଭାବିକ, ମାତ୍ର ସେହି ଅନୁରାଗ ଓ ବିଦ୍ୱେଷର ବଶବର୍ତ୍ତୀ ହେବା ଲୋକର ଉଚିତ ନୁହେ । ଯେ ଅନୁରାଗ ବା ବିଦ୍ୱେଷର ବଶବର୍ତ୍ତୀ ନୁହେ ଇନ୍ଦ୍ରିୟମାନେ ତାହାର ଅଧୀନ । ଏହିଭାବରେ ଆତ୍ମବଶୀଭୂତ ଇନ୍ଦ୍ରିୟମାନଙ୍କ ଦ୍ୱାରା କର୍ତ୍ତବ୍ୟ ସମ୍ପାଦନ କଲେ ଆତ୍ମୋନ୍ନତିର ପଥ ଉନ୍ମୁକ୍ତ ହୋଇ ଉଠେ । ଇନ୍ଦ୍ରିୟଗଣ ବଶୀଭୂତ ନ ହେଲେ ଲୋକେ ଆପାତମନୋରମ ପରଧର୍ମର ଅନୁସରଣ କରିଥାଆନ୍ତି ।

୩୫ । ଅନ୍ୱୟ ଦୀପିକା—ସ୍ୱନୁଷ୍ଠିତାତ୍ ( ଉତ୍ତମରୂପେ ଅନୁଷ୍ଠିତ ) ପରଧର୍ମାତ୍ ( ପରଧର୍ମଠାରୁ ) ବିଗୁଣଃ ( ଅଙ୍ଗହୀନ ) ସ୍ୱଧର୍ମଃ ( ନିଜଧର୍ମ ) ଶ୍ରେୟାନ୍ (ଶ୍ରେଷ୍ଠ) ସ୍ୱଧର୍ମେ (ସ୍ୱକର୍ତ୍ତବ୍ୟ ପାଳନରେ) ନିଧନଂ ( ମୃତ୍ୟୁ ) ଶ୍ରେୟଃ ( କଲ୍ୟାଣ କର ); ପରଧର୍ମଃ ( ପରର ଧର୍ମ ) ଭୟାବହଃ ( ଭୟସଙ୍କୁଳ ),

ଅନୁବାଦ—ସ୍ୱଧର୍ମ କିଞ୍ଚିତ୍ ଦୋଷ ବିଶିଷ୍ଟ ହେଲେ ମଧ୍ୟ ଉତ୍ତମରୂପେ ଅନୁଷ୍ଠିତ ପରଧର୍ମ ଅପେକ୍ଷା ତାହା ଶ୍ରେଷ୍ଠ । ସ୍ୱଧର୍ମପାଳନରେ ମୃତ୍ୟୁ ମଧ୍ୟ କଲ୍ୟାଣକର କିନ୍ତୁ ପରଧର୍ମ ଭୟସଙ୍କୁଳ ଅଟେ ।

ସୁବୋଧିନୀ ଟୀକା—ତର୍ହି ସ୍ୱଧର୍ମସ୍ୟ ଯୁଦ୍ଧାଦେ ର୍ଦୁଃଖରୂପସ୍ୟ ଯଥାବତ୍ କର୍ତ୍ତୁମଶକ୍ୟତ୍ୱାତ୍ ପରଧର୍ମସ୍ୟ ଚାହିଂସାଦେଃ ସୁକରତ୍ୱାଦ୍ଧର୍ମତ୍ୱାବିଶେଷାଚ୍ଚ ତତ୍ର ପ୍ରବର୍ତ୍ତିତୁ ମିଚ୍ଛନ୍ତଂ ପ୍ରତ୍ୟାହ—ଶ୍ରେୟାନିତି । କିଞ୍ଚିଦଙ୍ଗହୀନୋଽପି ସ୍ୱଧର୍ମଃ ଶ୍ରେୟାନ୍ ପ୍ରଶସ୍ୟତରଃ, ସ୍ୱନୁଷ୍ଠିତାତ୍ ସକଳାଙ୍ଗସମ୍ପତ୍ତ୍ୟା କୃତାଦପି ପରଧର୍ମାତ୍ ସକାଶାତ୍ । ତତ୍ର ହେତୁଃ—ସ୍ୱଧର୍ମେ ଯୁଦ୍ଧାଦୌ ପ୍ରବର୍ତ୍ତମାନସ୍ୟ ନିଧନଂ ମରଣମପି ଶ୍ରେଷ୍ଠଂ ସ୍ୱର୍ଗାଦିପ୍ରାପକତ୍ୱାତ୍ ପରଧର୍ମସ୍ତୁ ପରସ୍ୟ ଭୟାବହୋ ନିଷିଦ୍ଧତ୍ୱେନ ନରକପ୍ରାପକତ୍ୱାତ୍ ।

ବିବୃତି—ଯୁଦ୍ଧାଦି ହିଂସାତ୍ମକ କର୍ମ ନ କରି ଯଦି କୌଣସି କ୍ଷତ୍ରିୟ କୃଷି ବାଣିଜ୍ୟାଦି ନିର୍ଦ୍ଦୋଷ ବୃତ୍ତି ଅବଲମ୍ବନ କରନ୍ତି ତାହା କଅଣ ଶ୍ରେୟସ୍କର ହେବ ନାହିଁ ? ଅର୍ଜ୍ଜୁନଙ୍କର ଏହି ସଂଶୟର ଉତ୍ତରରେ ଭଗବାନ୍ ସ୍ୱଧର୍ମ ଅନୁଷ୍ଠାନର ଶ୍ରେୟସ୍କରତା ବୁଝାଉ ଅଛନ୍ତି ।

ଗୀତା ରଚିତ ହେବା କାଳରେ ହିନ୍ଦୁ ସମାଜରେ ବର୍ଣ୍ଣାଶ୍ରମ ଧର୍ମ ଅକ୍ଷୁଣ୍ଣ ଥିଲା, ତେଣୁ ଭଗବାନ୍ ସେହି ଅର୍ଥରେ ସ୍ୱଧର୍ମ, ସହଜକର୍ମ ଓ ସ୍ୱଭାବ ନିୟତକର୍ମ ପ୍ରଭୃତି ଶବ୍ଦ ପ୍ରୟୋଗ କରି ଅଛନ୍ତି । ଗୀତାର ଅଷ୍ଟାଦଶ ଅଧ୍ୟାୟରେ ୪୧ ରୁ ୪୮ ଶ୍ଳୋକ ମଧ୍ୟରେ ବ୍ରାହ୍ମଣାଦି ଚତୁର୍ବର୍ଣ୍ଣର ସ୍ୱଭାବନିୟତକର୍ମ ବା

## ଅର୍ଜ୍ଜୁନ ଉବାଚ

ଅଥକେନ ପ୍ରଯୁକ୍ତୋଽୟଂ ପାପଂ ଚରତି ପୁରୁଷଃ ।
ଅନିଚ୍ଛନ୍ନପି ବାର୍ଷ୍ଣେୟ ବଳାଦିବ ନିୟୋଜିତଃ । ୩୬ ।

ସ୍ୱଧର୍ମର ବର୍ଣ୍ଣନା ଅଛି । ଏବଂ ଏହି ଶ୍ଳୋକଟି କିଞ୍ଚିତ୍ ପରିବର୍ତ୍ତିତ ଆକାରରେ ୪୭ମ ଶ୍ଳୋକରେ ପୁନରୁକ୍ତ ହୋଇଅଛି । ତେଣୁ ଅର୍ଜ୍ଜୁନଙ୍କ ପକ୍ଷରେ ସ୍ୱଧର୍ମ ଅର୍ଥ ଏଠାରେ ଯୁଦ୍ଧାଦି କ୍ଷତ୍ରିୟୋଚିତ କର୍ମ ଓ ପରଧର୍ମ ଅର୍ଥ—ଭିକ୍ଷାବୃତ୍ତି ବା କୃଷିବାଣିଜ୍ୟାଦି କର୍ମ ।

ଏଥିମଧ୍ୟରେ ଗୀତା ରଚନା ପରେ ପ୍ରାୟ ତିନି ହଜାର ବର୍ଷରୁ ଅଧିକ କାଳ ଅତିବାହିତ ହୋଇ ଗଲାଣି, ଏବେ ଆଉ ହିନ୍ଦୁ ସମାଜରେ ବର୍ଣ୍ଣାଶ୍ରମ ଧର୍ମ ଅକ୍ଷୁର୍ଣ୍ଣ ନାହିଁ । ବ୍ରାହ୍ମଣ ଶୂଦ୍ରର କର୍ମ ଓ ଶୂଦ୍ର ବ୍ରାହ୍ମଣର କର୍ମ କଲାଣି ଏବଂ ଅନ୍ୟାନ୍ୟ ବର୍ଣ୍ଣର ଲୋକମାନେ ମଧ୍ୟ ସ୍ୱଧର୍ମ ତ୍ୟାଗ କରି ପରଧର୍ମ ଗ୍ରହଣ ପୂର୍ବକ ଜୀବିକା ନିର୍ବାହ କରୁଅଛନ୍ତି । ଏପରି ଅବସ୍ଥାରେ ବର୍ତ୍ତମାନ ସ୍ୱଧର୍ମର ଅର୍ଥ କର୍ତ୍ତବ୍ୟ କର୍ମ ବୋଲି ବୁଝିବାକୁ ହେବ, ତେଣୁ ଯେଉଁ ଲୋକ ଯେଉଁ କର୍ମକୁ ନିଜର କର୍ତ୍ତବ୍ୟ ବୋଲି ଗ୍ରହଣ କରି ଅଛନ୍ତି ତାହାହିଁ ତାଙ୍କର ସ୍ୱଧର୍ମ, ଅନ୍ୟର କର୍ତ୍ତବ୍ୟ କରିବାକୁ ଯାଇ ଅନେକ ସମୟରେ ମନୁଷ୍ୟ ବିଫଳ ହୋଇଥାଏ । ତେଣୁ ନିଜକର୍ତ୍ତବ୍ୟରେ ଅବହିତ ରହିବା ମନୁଷ୍ୟ ପକ୍ଷରେ କଲ୍ୟାଣକର । ଏହାହିଁ ଏ ଶ୍ଳୋକର ତାତ୍ପର୍ଯ୍ୟ ।

୩୬ । ଅନ୍ୱୟଦୀପିକା—ଅର୍ଜ୍ଜୁନ ଉବାଚ (ଅର୍ଜ୍ଜୁନ କହିଲେ) ବାର୍ଷ୍ଣେୟ, (ହେ ବୃଷ୍ଣିବଂଶୀୟ କୃଷ୍ଣ) ଅଥ (ତେବେ) କେନପ୍ରଯୁକ୍ତଃ (କାହାଦ୍ୱାରା ପ୍ରେରିତ ହୋଇ) ଅୟଂ ପୁରୁଷଃ (ଏହିମନୁଷ୍ୟ) ଅନିଚ୍ଛନ୍ ଅପି (ଇଚ୍ଛା ନ କଲେ ମଧ୍ୟ) ବଳାତ୍ ନିୟୋଜିତ ଇବ (ଯେପରି ବଳ ପୂର୍ବକ ନିଯୁକ୍ତ ହୋଇ) ପାପଂ ଚରତି (ପାପାଚରଣକରେ) ।

ଅନୁବାଦ—ଅର୍ଜ୍ଜୁନ କହିଲେ, ହେ କୃଷ୍ଣ, ମନୁଷ୍ୟର ପାପକର୍ମ କରିବାରେ ପ୍ରବୃତ୍ତି ନ ଥିଲେହେଁ କିଏ ତାକୁ ବଳପୂର୍ବକ ପାପରେ ନିୟୋଜିତ କରେ ?

ସୁବୋଧିନୀ ଟୀକା—ତୟୋର୍ନିବଣ ମାଗଚ୍ଛେନ୍ଦିତ୍ୟୁକ୍ତମ୍ । ତଦେ-ତଦେଶକ୍ୟଂ ମନ୍ୱାନୋଽର୍ଜ୍ଜୁନ ଉବାଚ— ଅଥେତି । ବୃଷ୍ଣେର୍ବଂଶେ ଅବତୀର୍ଣ୍ଣୋ ବାର୍ଷ୍ଣେୟଃ । ହେ ବାର୍ଷ୍ଣେୟ, ଅନର୍ଥ ରୂପଂ ପାପଂ କର୍ତ୍ତୁମନିଚ୍ଛନ୍ନପି କେନ ନିଯୁକ୍ତଃ ପ୍ରେରିତୋଽୟଂ ପୁରୁଷଃ ପାପଂ ଚରତି ? କାମକ୍ରୋଧୌ ବିବେକବଲେନ ନିରୁଦ୍ଧତୋଽପି ପୁରୁଷସ୍ୟ ପୁନଃ ପାପେ ପ୍ରବୃତ୍ତିଦର୍ଶନାତ୍ । ଅନ୍ୟୋଽପି ତୟୋର୍ମୂଲଭୂତଃ କଶ୍ଚିତ୍ ପ୍ରବର୍ତ୍ତକୋ ଭବେଦିତି ସମ୍ଭାବନୟା ପୃଚ୍ଛତି ।

ଶ୍ରୀ ଭଗବାନୁବାଚ

କାମ ଏଷ କ୍ରୋଧ ଏଷ ରଜୋଗୁଣସମୁଦ୍ଭବଃ,
ମହାଶନୋ ମହାପାପ୍ମା ବିଦ୍ଧ୍ୟେନମିହ ବୈରିଣମ୍ । ୩୭ ।

ବକ୍ତବ୍ୟ—ପୂର୍ବବର୍ତ୍ତୀ ୩୪ଶ ଶ୍ଳୋକରେ ଭଗବାନ୍ କହିଅଛନ୍ତି, 'ପ୍ରତ୍ୟେକ ଇନ୍ଦ୍ରିୟର ଅନୁକୂଳରେ ଅନୁରାଗ ଓ ପ୍ରତିକୂଳରେ ବିଦ୍ୱେଷ ଅବଶ୍ୟମ୍ଭାବୀ, ତାହାର ଅଧୀନ ହେବା ଉଚିତ ନୁହେଁ'—ଏକଥାରେ ଅର୍ଜ୍ଜୁନଙ୍କ ମନରେ ଯେଉଁ ସନ୍ଦେହ ହେଲା ତାହା ସେ ଏ ଶ୍ଳୋକରେ କୃଷ୍ଣଙ୍କୁ ପଚାରୁଅଛନ୍ତି; ପରଦାରାଭିଗମନପ୍ରଭୃତି ପାପକରିବାକୁ ମନୁଷ୍ୟର ପ୍ରବୃତ୍ତି ନ ଥିଲେ ସୁଦ୍ଧା କେତେବେଳେ ମନୁଷ୍ୟ କାହାଦ୍ୱାରା ପ୍ରେରିତ ହୋଇ ତହିଁରେ ପ୍ରବୃତ୍ତ ହୁଏ ? କିଏ ବା ମନୁଷ୍ୟକୁ ସ୍ୱଧର୍ମଚ୍ୟୁତ କରାଇ ଇନ୍ଦ୍ରିୟର ଅଧୀନ କରାଏ ?

୩୭ । ଅନ୍ୱୟଦୀପିକା—ଶ୍ରୀ ଭଗବାନ୍ ଉବାଚ ( ଶ୍ରୀ ଭଗବାନ୍ କହିଲେ), ରଜୋଗୁଣସମୁଦ୍ଭବଃ (ରଜୋଗୁଣରୁ ଉତ୍ପନ୍ନ) ମହାଶନଃ (ଦୁଷ୍ପୂରଣୀୟ) ମହାପାପ୍ମା (ଅତିଶୟ ଉଗ୍ର) ଏଷଃ କାମଃ (ଏହିକାମ) ଏଷଃ କ୍ରୋଧଃ (ଏହିକ୍ରୋଧ), ଇହ (ଏ ସଂସାରରେ) ଏନଂ (ଏହାଙ୍କୁ) ବୈରିଣଂ ବିଦ୍ଧି (ଶତ୍ରୁବୋଲି ଜାଣ) ।

ଅନୁବାଦ—ଭଗବାନ୍ କହିଲେ—ଏହା କାମ, ଏହାହିଁ କ୍ରୋଧ; ରଜୋଗୁଣରୁ ଏହାର ଉତ୍ପତ୍ତି, ଏହା ଦୁଷ୍ପୂରଣୀୟ ଓ ଅତ୍ୟନ୍ତ ଉଗ୍ର । ଏହାକୁ ସଂସାରରେ ଶତ୍ରୁ ବୋଲି ଜାଣ ।

ସୁବୋଧିନୀ ଟୀକା—ଅତ୍ରୋତ୍ତରଂ ଭଗବାନୁବାଚ । କାମ ଏଷ କ୍ରୋଧ ଏଷ ଇତ୍ୟାଦି । ଯସ୍ତ୍ୱୟା ପୃଷ୍ଟୋ ହେତୁରେଷ କାମଏବ । ନନୁ କ୍ରୋଧୋଽପି ପୂର୍ବଂ ତ୍ୱୟୋକ୍ତ ଇନ୍ଦ୍ରିୟସ୍ୟେନ୍ଦ୍ରିୟସ୍ୟାର୍ଥେ ଇତ୍ୟତ୍ର । ସତ୍ୟମ୍, ନାସୌ ତତଃ ପୃଥକ୍ । କିନ୍ତୁ କ୍ରୋଧୋଽପ୍ୟେଷଃ । କାମ ଏବହି କେନଚିତ୍ ପ୍ରତିହତଃ କ୍ରୋଧାତ୍ମନା ପରିଣମତେ । ପୂର୍ବଂ ପୃଥକ୍ତ୍ୱେନୋକ୍ତୋଽପି କ୍ରୋଧଃ କାମଜ ଏବେତ୍ୟେବମଭିପ୍ରାୟେଣୈକୀକୃତ୍ୟୋଚ୍ୟତେ । ରଜୋଗୁଣାତ୍ ସମୁଦ୍ଭବତୀତି ତଥା । ଅନେନ ସତ୍ତ୍ୱବୃଦ୍ଧ୍ୟା ରଜସି କ୍ଷୟଂଗତେ ସତି କାମୋ ନ ଜାୟତ ଇତି ସୂଚିତମ୍ । ଏନଂ କାମମିହ ମୋକ୍ଷମାର୍ଗେ ବୈରିଣଂ ବିଦ୍ଧି । ଅୟଂ ଚ ବକ୍ଷ୍ୟମାଣକ୍ରମେଣ ହନ୍ତବ୍ୟ ଏବ । ଯତୋ ନାସୌ ଦାନେନ ସନ୍ଧାତୁଂ ଶକ୍ୟ ଇତ୍ୟାହ—ମହାଶନଃ, ମହଦଶନଂ ଯସ୍ୟ ସ ଦୁଷ୍ପୂର ଇତ୍ୟର୍ଥଃ । ନଚ ସାମ୍ନା ସନ୍ଧାତୁଂ ଶକ୍ୟଃ । ଯତୋ ମହାପାପାତ୍ମୁଗ୍ରଃ ।

ଧୂମେନାବ୍ରିୟତେ ବହ୍ନିର୍ଯଥାଦର୍ଶୋ ମଲେନଚ ।
ଯଥୋଲ୍ବେନାବୃତୋ ଗର୍ଭସ୍ତଥା ତେନେଦ ମାବୃତମ୍ ।୩୮।

ବିବୃତି—କାମ ଶବ୍ଦର ସାଧାରଣ ଅର୍ଥ କାମନା । ଇନ୍ଦ୍ରିୟବୃତ୍ତି-ଚରିତାର୍ଥରୂପେ ଉପୁକ୍ତଶେଷ ମଧ୍ୟ 'କାମ' ଶବ୍ଦଦ୍ୱାରା ଅଭିହିତ ହୁଏ । ମାତ୍ର ଏଠାରେ ସାଧାରଣ ଅର୍ଥରେ ତାହାର ପ୍ରୟୋଗ ହୋଇଅଛି । ଉପୁକ୍ତଶେଷରୂପ ସ୍ୱଙ୍ଗଣ୍ଡ ଅର୍ଥ ଏହି ସାଧାରଣ ଅର୍ଥର ଅନ୍ତର୍ଗତ । 'ମହାଶନ'ର ଅର୍ଥ ଯେ ବେଶି ଖାଏ, ଯେହେତୁ; କାମନାର କେବେହେଁ ପୂରଣ ହୋଇପାରେ ନାହିଁ, ତେଣୁ ଏହା ଦୁଷ୍ପୂରଣୀୟ । ମହାପାପ୍ମା—ଘୋର ପାପୀ ଅର୍ଥାତ୍ ଅତ୍ୟୁଗ୍ର ।

କାମ ପ୍ରତିହତ ହେଲେ କ୍ରୋଧରେ ପରିଣତ ହୁଏ—ସୁତରାଂ କାମ ଓ କ୍ରୋଧ ଏକ । ସୁତରାଂ କାମନାହିଁ ସକଳ ଅନର୍ଥର ମୂଳ । କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ—ଏ ସବୁ କାମନାର ଭିନ୍ନ ବିକାଶ ମାତ୍ର ।

୩୮ । ଅନ୍ୱୟଦୀପିକା—ଯଥା ( ଯେପରି ) ବହ୍ନିଃ ( ଅଗ୍ନି ) ଧୂମେନ ( ଧୂଆଁଦ୍ୱାରା ) ଅବ୍ରିୟତେ ( ଆବୃତ ହୁଏ ), ଯଥା ( ଯେପରି ) ଆଦର୍ଶଃ ( ଦର୍ପଣ ) ମଲେନ ( ମଇଳାଦ୍ୱାରା ) [ ଆବୃତ ହୁଏ ], ଯଥା ( ଯେପରି ) ଉଲ୍ବେନ ( ଜରାୟୁଦ୍ୱାରା ) ଗର୍ଭଃ ( ଗର୍ଭ ) ଆବୃତ ( ଆବୃତଥାଏ ) ତଥା ( ସେହିପରି ) ତେନ ( କାମଦ୍ୱାରା ) ଇଦମ୍ ( ଏହି ଜ୍ଞାନ ) ଆବୃତମ୍ ( ଆବୃତ ହୁଏ ) ।

ଅନୁବାଦ—ଯେପରି ଧୂମ ଅଗ୍ନିକୁ ଆବୃତ କରି ରଖିଥାଏ, ଯେପରି ଦର୍ପଣ ଧୂଳି ପ୍ରଭୃତି ମଳଦ୍ୱାରା ଆବୃତ ହୋଇ ରହିଥାଏ, ଯେପରି ଜରାୟୁ ବା ଗର୍ଭବେଷ୍ଟନ ଚର୍ମଦ୍ୱାରା ଗର୍ଭ ଆବୃତ ହୋଇ ରହିଥାଏ ସେହିପରି ଏହି କାମନା ଜ୍ଞାନକୁ ଆବୃତ କରି ରଖିଥାଏ ।

ସୁବୋଧିନୀ ଟୀକା—କାମସ୍ୟ ବୈରିତ୍ୱଂ ଦର୍ଶୟତି—ଧୂମେନେତି । ଧୂମେନ ସହଜେନ ଯଥା ବହ୍ନିରାବ୍ରିୟତେ ଆଚ୍ଛାଦ୍ୟତେ । ଯଥା ଚାଦର୍ଶୋ ମଲେନାଗନ୍ତୁକେନ । ଯଥା ଚୋଲ୍ବେନ ଗର୍ଭବେଷ୍ଟନଚର୍ମଣା ଗର୍ଭଃ ସର୍ବତୋ ନିରୁଦ୍ଧ ଆବୃତଃ । ତଥା ପ୍ରକାରତ୍ରୟେଣାପି ତେନ କାମେନାବୃତମିଦମ୍ ।

ବିବୃତି—କାମନା ବା ବିଷୟବାସନା ଥିଲେ ଆଉ ଜ୍ଞାନର ଉଦୟ ହୁଏ ନାହିଁ । ଧୂଆଁ ଗୁଳଗଲେ ଯେପରି ଅଗ୍ନି ପ୍ରକାଶିତ ହୁଏ, ଧୂଳି ଅପସାରିତ ହେଲେ ଯେପରି ଦର୍ପଣ ସ୍ୱଚ୍ଛ ଦେଖାଯାଏ, ପ୍ରସବ ବେଳେ ଜରାୟୁ ଅପସାରିତ ହେଲେ ଯେପରି ଜୀବର ସ୍ୱରୂପ ଦେଖାଯାଏ, ସେହିପରି ବିଷୟ-ବାସନା ଅପସାରିତ ହେଲେ ତତ୍ତ୍ୱଜ୍ଞାନର ଉଦୟ ହୁଏ ।

ଆବୃତଂ ଜ୍ଞାନମେତେନ ଜ୍ଞାନିନୋ ନିତ୍ୟବୈରିଣା ।
କାମରୂପେଣ କୌନ୍ତେୟ ଦୁଷ୍ପୂରେଣାନଲେନ ଚ ॥ ୩୯ ॥

୩୯ । ଅନ୍ୱୟଦୀପିକା—କୌନ୍ତେୟ ! (ହେ ଅର୍ଜୁନ) ଜ୍ଞାନିନଃ (ଜ୍ଞାନୀଙ୍କର) ନିତ୍ୟବୈରିଣା (ଚିରଶତ୍ରୁ) ଏତେନ (ଏହି) କାମରୂପେଣ (କାମରୂପ) ଦୁଷ୍ପୂରେଣ (ଦୁଷ୍ପୂରଣୀୟ) ଅନଲେନ (ଅଗ୍ନିଦ୍ୱାରା) ଜ୍ଞାନମ୍ (ଜ୍ଞାନ) ଆବୃତମ୍ (ଆବୃତ ହୋଇଥାଏ) ।

ଅନୁବାଦ—ହେ ଅର୍ଜୁନ, ଜ୍ଞାନୀମାନଙ୍କର ନିତ୍ୟଶତ୍ରୁ, ଦୁଷ୍ପୂରଣୀୟ ଅଗ୍ନିତୁଲ୍ୟ କାମ ଜ୍ଞାନକୁ ଆବୃତ କରି ରଖେ ।

ସୁବୋଧିନୀ ଟୀକା—ଇଦଂଶବ୍ଦନିର୍ଦ୍ଦିଷ୍ଟଂ ଦର୍ଶୟନ୍ ବୈରିତ୍ୱଂ ସ୍ଫୁଟୟତି—ଆବୃତମିତି । ଇଦଂ ବିବେକଜ୍ଞାନମେତେନାବୃତମ୍ । ଅଜ୍ଞସ୍ୟ ହି ଭୋଗ ସମୟେ କାମଃ ସୁଖ ହେତୁରେବ । ପରିଣାମେ ତୁ ବୈରିତ୍ୱଂ ପ୍ରତିପଦ୍ୟତେ । ଜ୍ଞାନିନଃ ପୁନସ୍ତତ୍କାଳମପ୍ୟନର୍ଥାନୁସନ୍ଧାନାଦ୍ଦୁଃଖହେତୁରେବେତି ନିତ୍ୟ ବୈରିଣେତ୍ୟୁକ୍ତମ୍ । କିଞ୍ଚ ବିଷୟୈଃ ପୂର୍ଯ୍ୟମାଣୋଽପି ଯୋ ଦୁଷ୍ପୂରଃ । ଅପୂର୍ଯ୍ୟମାଣସ୍ତୁ ଶୋକସନ୍ତାପହେତୁତ୍ୱାଦନଲତୁଲ୍ୟଃ । ଅନେନ ସର୍ବାନ୍ ପ୍ରତି ନିତ୍ୟବୈରିତ୍ୱ ମୁକ୍ତମ୍ ।

ବିବୃତି—କାମନାକୁ ଏଠାରେ ଜ୍ଞାନୀମାନଙ୍କର ନିତ୍ୟ ବୈରୀ ବୋଲି କୁହାଯାଇ ଅଛି । ପ୍ରକୃତରେ କାମ ବିବେକ ଶକ୍ତିକୁ ପ୍ରକାଶିତ କରିବାକୁ ଦିଏ ନାହିଁ । ଅଜ୍ଞାନମାନେ କାମକୁ ବିଷୟଭୋଗ ସମୟରେ ମିତ୍ର ବୋଲି ମନେ କରନ୍ତି ସତ୍ୟ ମାତ୍ର ପରିଣାମରେ ସେଥିପାଇଁ ଦୁଃଖ ଭୋଗ କରନ୍ତି । ଜ୍ଞାନୀମାନେ କାମର ଏହି ପରିଣାମବିରସ ପ୍ରକୃତି ଜାଣି ନିତ୍ୟ ବୈରୀ ବୋଲି ତାକୁ ମନେ କରନ୍ତି । ଏହି କାମ ଇଚ୍ଛା ବା ତୃଷ୍ଣାରୂପେ ଜୀବକୁ ଶତ୍ରୁପରି ସର୍ବଦା ଉଦ୍ବେଜିତ କରୁଥାଏ । ମନୁ ସଂହିତା ଓ ମହାଭାରତରେ ଏହିକାମସମ୍ବନ୍ଧରେ କୁହାଯାଇଅଛି—

ନ ଜାତୁ କାମଃ କାମାନା ମୁପଭୋଗେନ ଶାମ୍ୟତି ।
ହବିଷା କୃଷ୍ଣବର୍ତ୍ମେବ ଭୂୟ ଏବାଭିବର୍ଦ୍ଧତେ ॥
ଯତ୍ ପୃଥିବ୍ୟାଂ ବ୍ରୀହିଯବଂ ହିରଣ୍ୟଂ ପଶବଃ ସ୍ତ୍ରିୟଃ
ନାଲମେକସ୍ୟ ତତ୍ସର୍ବମିତିମତ୍ୱା ଶମଂ ବ୍ରଜେତ୍ ।

ଭୋଗଦ୍ୱାରା କାମର ଶାନ୍ତି ହୁଏ ନାହିଁ, ଅଗ୍ନିରେ ଯେପରି ଘୃତକାଷ୍ଠ ଦିଆଯାଏ, ତଦ୍ଦ୍ୱାରା ଅଗ୍ନିର ଶିଖା ନ କମି ଯେପରି ବୃଦ୍ଧିପ୍ରାପ୍ତ ହୋଇଥାଏ, ବହୁ ପଦାର୍ଥ ଭୋଗରେ କାମ ମଧ୍ୟ ସେହିପରି ବଢ଼େ । ଯଦି ପୃଥିବୀର ସମସ୍ତ ବ୍ରୀହିଯବାଦି ଶସ୍ୟ, ସୁବର୍ଣ୍ଣାଦିଧନ, ଗୋ ଅଶ୍ୱାଦି ପଶୁ, ପରମ ସୁନ୍ଦରୀ ସ୍ତ୍ରୀ କାହାରିକୁ ପ୍ରାପ୍ତ ହୁଏ, ତେବେ ତାହାର ତୃପ୍ତି ଲାଭ ହୁଏ

ଇନ୍ଦ୍ରିୟାଣି ମନୋବୁଦ୍ଧିରସ୍ୟାଧିଷ୍ଠାନମୁଚ୍ୟତେ ।
ଏତୈର୍ବିମୋହୟତ୍ୟେଷ ଜ୍ଞାନମାବୃତ୍ୟଦେହିନମ୍ । ୪୦ ।

ନାହିଁ । ତେବେ ଅଳ୍ପ ବେଗରେ କପର ଶାନ୍ତ ହେବ ? ଏହି ସବୁ କଥା ଈଶ୍ବର କର କାମନା ପରିତ୍ୟାଗ କରିବ । କାମହିଁ ସମସ୍ତ ଦୁଃଖର ପ୍ରବର୍ତ୍ତକ ।

କାମ ଜୟ କରିବାର ଉପାୟ ସମ୍ବନ୍ଧରେ ଶଙ୍କରାଚାର୍ଯ୍ୟ 'ସର୍ବବେଦାନ୍ତ-ସିଦ୍ଧାନ୍ତସାରସଂଗ୍ରହ'ରେ କହି ଅଛନ୍ତି :—

ସଂକଳ୍ପାନୁଦୟେ ହେତୁ ର୍ୟଥା ଭୂତାର୍ଥ ଦର୍ଶନମ୍
ଅନର୍ଥଚିନ୍ତନଂ ଚୃଭ୍ୟାଂ ନାବକାଶୋଽସ୍ୟ ବିଦ୍ୟତେ ।

ବସ୍ତୁର ପ୍ରକୃତ ସ୍ୱରୂପବୋଧ ଏବଂ ତହିଁରୁ ଅନିଷ୍ଟପାତର ଚିନ୍ତା— ଏହି ଦୁଇଟି ଜ୍ଞାନ ବିଦ୍ୟମାନଥିଲେ ମନରେ କାମ ସଂକଳ୍ପର ଉଦୟ ହୋଇପାରେ ନାହିଁ ।

୪୦ । ଅନ୍ୱୟଦୀପିକା—ଇନ୍ଦ୍ରିୟାଣି (ଇନ୍ଦ୍ରିୟସକଳ) ମନଃ, ବୁଦ୍ଧିଃ ( ମନ ଓ ବୁଦ୍ଧି ) ଅସ୍ୟ ( ଏହି କାମର ) ଅଧିଷ୍ଠାନଂ ( ଆଶ୍ରୟ ) ଉଚ୍ୟତେ ( କଥିତ ହୁଏ ) । ଏଷଃ ( ଏହିକାମ ) ଏତୈଃ ( ଏମାନଙ୍କ ଦ୍ୱାରା ) ଜ୍ଞାନଂ ( ଜ୍ଞାନକୁ ) ଆବୃତ୍ୟ ( ଆବୃତ କରି ) ଦେହିନଂ ( ଦେହାଭିମାନୀ ଜୀବକୁ ) ବିମୋହୟତି ( ମୋହାଭିଭୂତ କରେ ) ।

ଅନୁବାଦ—ଇନ୍ଦ୍ରିୟ ସକଳ, ମନ ଓ ବୁଦ୍ଧି—ଏହି ତିନିଗୋଟି କାମର ଆଶ୍ରୟସ୍ଥଳ । ଏମାନଙ୍କଦ୍ୱାରା କାମ ଜ୍ଞାନକୁ ଆବୃତକରି ଦେହାଭିମାନୀ ଜୀବକୁ ମୋହାଭିଭୂତକରେ ।

ସୁବୋଧିନୀ ଟୀକା—ଇଦାନୀଂ ତସ୍ୟାଧିଷ୍ଠାନଂ କଥୟନ୍ ଜୟୋପାୟମାହ । ଇନ୍ଦ୍ରିୟାଣୀତିଦ୍ୱାଭ୍ୟାମ୍ । ବିଷୟଦର୍ଶନଶ୍ରବଣାଦିଭିଃ ସଂକଳ୍ପେନାଧ୍ୟବସାୟେନ ଚ । କାମସ୍ୟାବିର୍ଭାବାଦିନ୍ଦ୍ରିୟାଣି ଚ ମନଶ୍ଚ ବୁଦ୍ଧିଶ୍ଚାସ୍ୟାଧିଷ୍ଠାନ ମୁଚ୍ୟତେ । ଏତୈ ରିନ୍ଦ୍ରିୟାଦିଭିର୍ଦର୍ଶନାଦିବ୍ୟାପାରବଦ୍ଭି-ରାଶ୍ରୟଭୂତୈ ର୍ବିବେକ-ଜ୍ଞାନମାବୃତ୍ୟ ଦେହିନଂ ବିମୋହୟତି ।

ବିବୃତି—ସଂକଳ୍ପ ବିକଳ୍ପାତ୍ମିକା ଅନ୍ତଃକରଣ ବୃତ୍ତିବିଶେଷକୁ ମନ କୁହାଯାଏ ଏବଂ ନିଶ୍ଚୟାତ୍ମିକା ଅନ୍ତଃକରଣ ବୃତ୍ତିବିଶେଷର ନାମ ବୁଦ୍ଧି । ତେଣୁ ମନ ନାନାପ୍ରକାର ସଂକଳ୍ପ ବିକଳ୍ପ କରେ ଏବଂ ବୁଦ୍ଧି ତହିଁରୁ ଗୋଟିକୁ ନିଶ୍ଚୟ କରେ । ଇନ୍ଦ୍ରିୟ, ମନ ଓ ବୁଦ୍ଧି—ଏହି ତିନିଗୋଟି କାମନାର ଆଶ୍ରୟସ୍ଥଳ । ମନ ଅତି ଓ ପ୍ରଧାନ ଇନ୍ଦ୍ରିୟ । ଚକ୍ଷୁକର୍ଣ୍ଣାଦି ପଞ୍ଚଜ୍ଞାନେନ୍ଦ୍ରିୟ ଦ୍ୱାରା ମନ-

ତସ୍ମାତ୍ ତ୍ୱମିନ୍ଦ୍ରିୟାଣ୍ୟାଦୌ ନିୟମ୍ୟ ଭରତର୍ଷଭ ।
ପାପ୍ମାନଂ ପ୍ରଜହି ହ୍ୟେନଂ ଜ୍ଞାନବିଜ୍ଞାନ ନାଶନମ୍ । ୪୧ ।

ବାହ୍ୟବସ୍ତୁର ସ୍ପର୍ଶ ଗ୍ରହଣ କରେ । ଏହିଭଳିଭାବରେ ମନରେ ବାହ୍ୟଜଗତ୍ ସମ୍ବନ୍ଧରେ ନାନାବିଧ ଜ୍ଞାନ ଜନ୍ମେ । ଏହି ଜ୍ଞାନମଧ୍ୟରୁ କେଉଁଟି ଗ୍ରାହ୍ୟ, କେଉଁଟି ତ୍ୟାଜ୍ୟ-ମନରେ ଏହିପରି ସଙ୍କଳ୍ପ ବିକଳ୍ପ ଉପସ୍ଥିତ ହୁଏ; ସେତେବେଳେ ବୁଦ୍ଧି ବିଚାରକରି କର୍ତ୍ତବ୍ୟାକର୍ତ୍ତବ୍ୟ ନିଷ୍ପତ୍ତି କରିଦିଏ । ବୁଦ୍ଧିର ନିର୍ଣ୍ଣୟ ଅନୁସାରେ ମନ ହସ୍ତପଦାଦି କର୍ମେନ୍ଦ୍ରିୟଦ୍ୱାରା ନାନାପ୍ରାଣକ୍ରିୟା ସମ୍ପନ୍ନ କରେ । ଏହି ଭାବରେ ମନ ଓ ବୁଦ୍ଧି ସାହାଯ୍ୟରେ ଇନ୍ଦ୍ରିୟ ପୁରୁଷକୁ ବିଷୟରେ ଲିପ୍ତକରି ମୋହାଚ୍ଛନ୍ନ କରେ । ତେଣୁ ତାଙ୍କଠାରେ ଆତ୍ମଜ୍ଞାନର ପ୍ରକାଶ ହୋଇପାରେ ନାହିଁ ।

୪୧ । ଅନ୍ୱୟଦୀପିକା—ହେ ଭରତର୍ଷଭ ! (ହେ ଭରତଶ୍ରେଷ୍ଠ) ତସ୍ମାତ୍ (ସେହିହେତୁରୁ) ତ୍ୱଂ (ତୁମେ) ଆଦୌ (ପ୍ରଥମେ) ଇନ୍ଦ୍ରିୟାଣି (ଇନ୍ଦ୍ରିୟମାନଙ୍କୁ) ନିୟମ୍ୟ (ସଂଯତ କରି) ଜ୍ଞାନବିଜ୍ଞାନନାଶନଂ (ଜ୍ଞାନ ଓ ବିଜ୍ଞାନ ନାଶକାରୀ) ପାପ୍ମାନଂ ଏନଂ (ପାପରୂପୀ ଏହି କାମକୁ) ହି ପ୍ରଜହି (ଭଲକରି ବିନାଶ କର) ।

ଅନୁବାଦ—ହେ ଭରତ ଶ୍ରେଷ୍ଠ, ସେହି ହେତୁରୁ ତୁମେ ପ୍ରଥମେ ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରି ଜ୍ଞାନବିଜ୍ଞାନ ନାଶକାରୀ ପାପରୂପୀ ଏହି କାମକୁ ସମୂଳରେ ବିନଷ୍ଟକର ।

ସୁବୋଧିନୀ ଟୀକା—ଯସ୍ମାଦେବଂ ତସ୍ମାଦିତି । ତସ୍ମାଦାଦୌ ବିମୋହାତ୍ ପୂର୍ବମେବେନ୍ଦ୍ରିୟାଣି ମନୋବୁଦ୍ଧିଂ ଚ ନିୟମ୍ୟ । ପାପ୍ମାନଂ ପାପରୂପମେନଂ କାମଂ ହି ସ୍ଫୁଟଂ ପ୍ରଜହି ଘାତୟ । ଯଦ୍ୱା ପ୍ରଜହିହି ପରିତ୍ୟଜ । ଜ୍ଞାନମାତ୍ମବିଷୟମ୍ । ବିଜ୍ଞାନଂ ଶାସ୍ତ୍ରୀୟମ୍ । ତୟୋର୍ନାଶନମ୍ । ଯଦ୍ୱା ଜ୍ଞାନଂ ଶାସ୍ତ୍ରାଚାର୍ଯ୍ୟୋପଦେଶଜମ୍ । ବିଜ୍ଞାନଂ ନିଦିଧ୍ୟାସନଜମ୍ । ତମେବ ଧୀରୋ ବିଜ୍ଞାୟ ପ୍ରଜ୍ଞାଂ କୁର୍ବୀତେତି ଶ୍ରୁତେଃ ।

ବିବୃତି—ଶାସ୍ତ୍ରାଲୋଚନା ଦ୍ୱାରା ଓ ଗୁରୁଙ୍କ ଉପଦେଶ ଦ୍ୱାରା ଆତ୍ମା-ସମ୍ବନ୍ଧରେ ଯେଉଁ ବୋଧ ଜନ୍ମେ ତାହାକୁ ଜ୍ଞାନ କହନ୍ତି । ଧ୍ୟାନାଦି ଦ୍ୱାରା ଆତ୍ମାର ଯେ ଅନୁଭବ ତାହାକୁ ବିଜ୍ଞାନ ବୋଲଯାଏ । 'ପ୍ରଜହିହ୍ୟେନଂ' ଏଠାରେ ଶଙ୍କରାଚାର୍ଯ୍ୟ କହନ୍ତି—ପ୍ରଜହିହି+ଏନଂ=ଏହାକୁ ତ୍ୟାଗକର (ହା ଧାତୁ) । ଶ୍ରୀଧର ସ୍ୱାମୀ କହନ୍ତି—ପ୍ରଜହି+ଏନଂ, ହି=ଏହାକୁ ଭଲକରି (ହି) ବିନାଶକର (ହନ୍ ଧାତୁ) ।

ଇନ୍ଦ୍ରିୟାଣି ପରାଣ୍ୟାହୁ ରିନ୍ଦ୍ରିୟେଭ୍ୟ ପରଂ ମନଃ;
ମନସସ୍ତୁ ପରାବୁଦ୍ଧି ର୍ୟୋ ବୁଦ୍ଧେଃ ପରତସ୍ତୁସଃ । ୪୨ ।

ଯେପରି ରାଜାମାନେ ପର୍ବତାଦିରେ ଦୁର୍ଗନିର୍ମାଣ କରି ତାହା ଆଶ୍ରୟରେ ରହିଥାନ୍ତି, ସେହିପରି କାମନା ବା କାମର ଅଶ୍ରୟ ସ୍ଥଳ ଇନ୍ଦ୍ରିୟାଦି; ତେଣୁ ପ୍ରଥମେ କାମର ଅଶ୍ରୟସ୍ଥଳ ବା ଦୁର୍ଗସ୍ୱରୂପ ଇନ୍ଦ୍ରିୟମାନଙ୍କୁ ଜୟକଲେ କାମଜୟ ସହଜ ହୋଇଉଠେ । ଇନ୍ଦ୍ରିୟମାନେ ବଶୀଭୂତ ହେଲେ ମନ ଓ ବୁଦ୍ଧି କ୍ରମେ ବଶୀଭୂତ ହୋଇ ଯାଆନ୍ତି, କାରଣ ଇନ୍ଦ୍ରିୟମାନଙ୍କ ଦ୍ୱାରା ବିଷୟରସ ଗୃହୀତ ହୋଇ ମନ ଓ ବୁଦ୍ଧିକୁ ମଳିନ କରି ପକାନ୍ତି । କାମ ହିଁ ଜ୍ଞାନବିଜ୍ଞାନର ପଥରୁଦ୍ଧ କରି ପାପବୃତ୍ତିର ସୂଚନା କରେ । ତେଣୁ ସମସ୍ତ ଅନର୍ଥର ମୂଳ କାମକୁ ପ୍ରଥମେ ବିନାଶ କରିବା ଉଚିତ ।

୪୨ । ଅନ୍ୱୟ ଦୀପିକା—ଇନ୍ଦ୍ରିୟାଣି (ଇନ୍ଦ୍ରିୟମାନଙ୍କୁ) ପରାଣି (ଶ୍ରେଷ୍ଠ ବୋଲି) ଅହୁଃ (ପଣ୍ଡିତମାନେ କହନ୍ତି); ଇନ୍ଦ୍ରିୟେଭ୍ୟଃ (ଇନ୍ଦ୍ରିୟମାନଙ୍କଠାରୁ) ମନଃ ପରଂ (ମନ ଶ୍ରେଷ୍ଠ); ମନସଃ ତୁ (ମନଠାରୁ କିନ୍ତୁ) ବୁଦ୍ଧିଃ ପରା (ବୁଦ୍ଧି ଶ୍ରେଷ୍ଠ); ଯଃ ତୁ (କିନ୍ତୁ ଯେ) ବୁଦ୍ଧେଃ (ବୁଦ୍ଧିର) ପରତଃ (ଉପରେ) ସଃ (ସେ ଅତ୍ମା) ।

ଅନୁବାଦ—(ସ୍ଥୂଳ ଶରୀରଠାରୁ) ଇନ୍ଦ୍ରିୟମାନେ ଶ୍ରେଷ୍ଠ । ଇନ୍ଦ୍ରିୟମାନଙ୍କଠାରୁ ମନ ଏବଂ ମନଠାରୁ ବୁଦ୍ଧି ଶ୍ରେଷ୍ଠ ଏବଂ ବୁଦ୍ଧିଠାରୁ ଯେ ଶ୍ରେଷ୍ଠ ସେ ଅତ୍ମା ।

ସୁବୋଧିନୀ ଟୀକା—ଯତ୍ର ଶକ୍ତପ୍ରଣିଧାନେନେନ୍ଦ୍ରିୟାଣି ନିୟନ୍ତୁଂ ଶକ୍ୟନ୍ତେ ତଦାତ୍ମସ୍ୱରୂପଂ ଦେହାଦିଭ୍ୟୋ ବିବିଚ୍ୟ ଦର୍ଶୟତି-ଇନ୍ଦ୍ରିୟାଣୀତି । ଇନ୍ଦ୍ରିୟାଣି ଦେହାଦିଭ୍ୟୋ ଗ୍ରାହ୍ୟେଭ୍ୟଃ ପରାଣି ଶ୍ରେଷ୍ଠାନ୍ୟାହୁଃ । ସୂକ୍ଷ୍ମତ୍ୱାତ୍ ପ୍ରକାଶକତ୍ୱାଚ୍ଚ । ଅତଏବ ତଦ୍‌ବ୍ୟତିରିକ୍ତତ୍ୱମପ୍ୟର୍ଥାଦୁକ୍ତଂ ଭବତି । ଇନ୍ଦ୍ରିୟେଭ୍ୟଶ୍ଚ ସଙ୍କଳ୍ପାତ୍ମକଂ ମନଃ ପରମ୍ । ତତ୍ପ୍ରବର୍ତ୍ତକତ୍ୱାତ୍ । ମନସସ୍ତୁ ନିଶ୍ଚୟାତ୍ମିକା ବୁଦ୍ଧିଃ ପରା । ନିଶ୍ଚୟପୂର୍ବକତ୍ୱାତ୍ ସଙ୍କଳ୍ପସ୍ୟ । ଯସ୍ତୁ ବୁଦ୍ଧେଃ ପରତସ୍ତତ୍‌ସାକ୍ଷିତ୍ୱେନାବସ୍ଥିତଃ ସର୍ବାନ୍ତରଃ ସ ଆତ୍ମା । ତଂ ବିମୋହୟତି ଦେହିନମିତି ଦେହିଶବ୍ଦୋକ୍ତ ଆତ୍ମା ସ ଇତି ପରାମୃଶ୍ୟତେ ।

ବିବୃତି—ଇନ୍ଦ୍ରିୟମାନଙ୍କ ଚେଷ୍ଟାବ୍ୟତୀତ ଶରୀର କୌଣସି କାର୍ଯ୍ୟ କରିପାରେ ନାହିଁ । ତେଣୁ ଇନ୍ଦ୍ରିୟମାନେ ଶରୀରଠାରୁ ଶ୍ରେଷ୍ଠ । ମନର ପ୍ରେରଣା ନ ଥିଲେ ଇନ୍ଦ୍ରିୟମାନଙ୍କର କାର୍ଯ୍ୟଚେଷ୍ଟା ହୁଏ ନାହିଁ । ତେଣୁ ଇନ୍ଦ୍ରିୟମାନଙ୍କଠାରୁ ମନ ଶ୍ରେଷ୍ଠ । ବୁଦ୍ଧିର ବିନା ସାହାଯ୍ୟରେ ମନର ସଙ୍କଳ୍ପାତ୍ମକ ଧର୍ମ ଉତ୍ପନ୍ନ ହୋଇ ପାରେ ନାହିଁ; କାରଣ ସଙ୍କଳ୍ପ ନିଶ୍ଚୟାତ୍ମକ, ତେଣୁ ମନଠାରୁ

ଏବଂ ବୁଦ୍ଧେଃ ପରଂ ବୁଦ୍ଧ୍ୱା ସଂସ୍ତଭ୍ୟାତ୍ମାନମାତ୍ମନା,
ଜହି ଶତ୍ରୁଂ ମହାବାହୋ କାମରୂପଂ ଦୁରାସଦମ୍ । ୪୩ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍ ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନ ସଂବାଦେ କର୍ମଯୋଗୋ ନାମ ତୃତୀୟୋଽଧ୍ୟାୟଃ ।

ବୁଦ୍ଧି ଶ୍ରେଷ୍ଠ । ଅତ୍ମାଙ୍କର ସତ୍ତ୍ୱ ଓ ପ୍ରକାଶ ଶକ୍ତି ବୁଦ୍ଧି ବକଶିତ ହୋଇ ପାରେ ନାହିଁ, ତେଣୁ ଅତ୍ମାହିଁ ବୁଦ୍ଧିଠାରୁ ଶ୍ରେଷ୍ଠ ।

୪୩ । ଅନ୍ୱୟଦୀପିକା—ମହାବାହୋ, (ହେ ମହାବାହୁ) ଏବଂ (ଏହିପ୍ରକାରେ) ବୁଦ୍ଧେଃ ପରଂ ( ବୁଦ୍ଧିଠାରୁ ଶ୍ରେଷ୍ଠ ଅତ୍ମାଙ୍କୁ ) ବୁଦ୍ଧ୍ୱା (ବୁଝି,ଜାଣି) ଅତ୍ମାନଂ ଅତ୍ମନା ସଂସ୍ତଭ୍ୟ ( ନଜେ ନଜକୁ ସଂଯତ କରି ) କାମରୂପଂ ଶତ୍ରୁଂ ଜହି ( କାମରୂପ ଦୁର୍ଜ୍ଜୟ ଶତ୍ରୁକୁ ବନାଶ କର ) ।

ଅନୁବାଦ—ହେ ମହାବାହୁ, ତୁମ୍ଭେ ଏହି ପ୍ରକାରେ ବୁଦ୍ଧି ଠାରୁ ଶ୍ରେଷ୍ଠ ଅତ୍ମାକୁ ଜାଣିପାରି ନଜେହିଁ ନଜକୁ ସଂଯତ କରି କାମରୂପ ଦୁର୍ଜ୍ଜୟ ଶତ୍ରୁକୁ ବନାଶ କର ।

ସୁବୋଧିନୀ ଟୀକା—ଉପସଂହରତି—ଏବମିତି । ବୁଦ୍ଧେରେବ ବଷୟେନ୍ଦ୍ରିୟାଦିଜନ୍ୟାଃ କାମାଦିବିକ୍ରିୟାଃ । ଅତ୍ମାତୁ ନର୍ବିକାରସ୍ତତ୍‌ସାକ୍ଷୀତ୍ୟେବଂ ବୁଦ୍ଧେଃ ପରମାତ୍ମାନଂ ବୁଦ୍ଧ୍ୱାତ୍ମନୈବଂଭୂତୟା ନଶ୍ଚୟାତ୍ମିକୟା ବୁଦ୍ଧ୍ୟାତ୍ମାନଂ ମନଃ ସଂସ୍ତଭ୍ୟ ନଶ୍ଚଳଂ କୃତ୍ୱା କାମରୂପିଣଂ ଶତ୍ରୁଂ ଜହି ମାରୟ । ଦୁଃଖେନାସାଦନୀୟଂ ଦୁର୍ବିଜ୍ଞେୟମିତ୍ୟର୍ଥଃ ।

ସ୍ୱଧର୍ମେଣ ଯମାରାଧ୍ୟ ଭକ୍ତ୍ୟା ମୁକ୍ତିମିତା ବୁଧାଃ ।
ତଂ କୃଷ୍ଣଂ ପରମାନନ୍ଦଂ ତୋଷୟେତ୍ ସର୍ବକର୍ମଭିଃ ।

ଇତି ଶ୍ରୀଧରସ୍ୱାମିକୃତାୟାଂ ଭଗବଦ୍‌ଗୀତା ଟୀକାୟାଂସୁବୋଧିନ୍ୟାଂ 'କର୍ମଯୋଗୋ ନାମ ତୃତୀୟୋଽଧ୍ୟାୟଃ ।

ବକ୍ତବ୍ୟ—'ଅତ୍ମାକୁ ଅତ୍ମାଦ୍ୱାରା ସଂଯତ କରି'—ମୂଳରେ ଏହିପରି ଅଛି, ଶ୍ରୀଧରସ୍ୱାମୀ କହନ୍ତି—ଏଠାରେ 'ଅତ୍ମନା' ଅର୍ଥ ନଶ୍ଚୟାତ୍ମିକା ବୁଦ୍ଧି ଓ ଅତ୍ମାନଂ ଅର୍ଥ ମନ, ତେବେ ଅର୍ଥହେବ ବୁଦ୍ଧିଦ୍ୱାରା ମନକୁ ସଂଯତ କର, ଅନୁବାଦରେ ଲୋକମାନ୍ୟ ତିଲକଙ୍କ ମତ ଗୃହୀତ ହୋଇଅଛି । ମୋଟକଥା ନର୍ମଳ ବୁଦ୍ଧିଦ୍ୱାରା ମନକୁ ପ୍ରଥମେ ସ୍ଥିର କରିବାକୁ ହେବ । ମନ ସ୍ଥିର ହେଲେ, ବୁଦ୍ଧିରୁ ଶ୍ରେଷ୍ଠ ଅତ୍ମାଙ୍କ ଠାରେ ତାହା ସମାହିତ ହୁଏ ଏବଂ ତଦ୍ୱାରା ବଷୟ ବାସନା ଦୂରୀଭୂତ ହୁଏ ଏବଂ ସହଜରେ କାମ ଜୟ ହୁଏ ।

---

## ତୃତୀୟ ଅଧ୍ୟାୟର ସାରସଂକଳନ

ତୃତୀୟ ଅଧ୍ୟାୟଟି କର୍ମଯୋଗ ନାମରେ ପରିଚିତ, ଦ୍ୱିତୀୟ ଅଧ୍ୟାୟରେ ଜ୍ଞାନ ଓ କର୍ମର ଶ୍ରେଷ୍ଠତା ସମ୍ବନ୍ଧରେ ଭଗବଦୁକ୍ତି କିଞ୍ଚିତ୍ ବ୍ୟାମିଶ୍ର ବା ଗୋଳମାଳିଆ ଦେଖି ଅର୍ଜୁନ ପ୍ରଥମରୁ ପ୍ରଶ୍ନ କରିଥିଲେ—ଯେବେ ଜ୍ଞାନ ଅପେକ୍ଷା କର୍ମ ନିକୃଷ୍ଟ ତେବେ ହିଂସାତ୍ମକ ଯୁଦ୍ଧକର୍ମରେ ନିୟୋଜିତ ହେବି କାହିଁକି ? ଅର୍ଜୁନଙ୍କ ଏହି ସନ୍ଦେହ ଦୂର କରିବା ପାଇଁ ଭଗବାନ୍ ଏ ଅଧ୍ୟାୟରେ କହୁଅଛନ୍ତି—ଏ ସଂସାରରେ ମୋକ୍ଷ ଲାଭର ଦୁଇଟି ମାର୍ଗ ପ୍ରସିଦ୍ଧ ଅଛି । ପ୍ରଥମଟି ସାଂଖ୍ୟମାର୍ଗ ବା ଜ୍ଞାନମାର୍ଗ, ଦ୍ୱିତୀୟଟି କର୍ମଯୋଗମାର୍ଗ । ଜ୍ଞାନବାଦୀ ସନ୍ନ୍ୟାସୀମାନଙ୍କ ମତରେ ଜ୍ଞାନ ଲାଭପରେ ଆଉ କର୍ମ କରିବା ଅନୁଚିତ । ତାହାହେଲେ 'ନୈଷ୍କର୍ମ୍ୟ ସିଦ୍ଧି' ଲାଭ ହୁଏ, ଏହାହିଁ ମୁକ୍ତିପଥ । ମାତ୍ର ଭଗବାନ୍ କହୁଅଛନ୍ତି, ଜ୍ଞାନବାଦୀମାନେ ଯେଉଁ ମୁକ୍ତିର ଅଧିକାରୀ ହୁଅନ୍ତି ତାହା ଜ୍ଞାନ ଫଳରେ ହୋଇଥାଏ, କର୍ମତ୍ୟାଗ ଫଳରେ ନୁହେଁ; କର୍ମଯୋଗ ମାର୍ଗରେ ଯେଉଁ ସିଦ୍ଧି ବା ମୁକ୍ତିଲାଭ ହୁଏ, ତାହା ସମତ୍ୱଜ୍ଞାନଫଳରେ; ଏହି ସମତ୍ୱଜ୍ଞାନଛଡ଼ା କର୍ମ ନିଷ୍କାମ ହୁଏ ନାହିଁ । ମୋକ୍ଷ ସାଧନରେ ଜ୍ଞାନର ଶ୍ରେଷ୍ଠତା ଥିଲେହେଁ, ପ୍ରକୃତିର ନିୟମ ଅନୁସାରେ ମନୁଷ୍ୟ କର୍ମ ନ କରି ରହିପାରେ ନାହିଁ । ହସ୍ତପଦପ୍ରଭୃତି କର୍ମ କରିବାର ଇନ୍ଦ୍ରିୟ, ଯେଉଁମାନେ କର୍ମେନ୍ଦ୍ରିୟମାନଙ୍କୁ ସଂଯତକରି ମନେ ମନେ ବିଷୟ ଚିନ୍ତା କରନ୍ତି, ସେମାନେ ମିଥ୍ୟାଚାର, କିନ୍ତୁ ଯେଉଁମାନେ କର୍ତ୍ତବ୍ୟଜ୍ଞାନରେ ନିରନ୍ତର କର୍ମରେ ବ୍ୟାପୃତ ରହନ୍ତି ସେମାନେ ଶ୍ରେଷ୍ଠ । କର୍ତ୍ତବ୍ୟକର୍ମସବୁ ଅନାସକ୍ତଚିତ୍ତରେ କରିବାକୁ ହୁଏ; ଆସକ୍ତି ବା ଫଳାକାଙ୍କ୍ଷା ଥିଲେ କର୍ମ ମୋକ୍ଷପ୍ରଦ ହୁଏ ନାହିଁ । ଅତଏବ କର୍ମକରିବାରେ ମନୁଷ୍ୟର ଅଧିକାର, ଫଳରେ ମନୁଷ୍ୟର ଅଧିକାର ନ ଥାଏ । ଅନାସକ୍ତ ଭାବରେ କର୍ମ କଲେ ତାହା ବନ୍ଧନର ବା ପୁନର୍ଜନ୍ମର କାରଣ ହୁଏ ନାହିଁ; ଯାହା ମନୁଷ୍ୟର ଅବଶ୍ୟ କର୍ତ୍ତବ୍ୟ କର୍ମ ତାହାହିଁ ତାପକ୍ଷରେ ଯଜ୍ଞସ୍ୱରୂପ । କର୍ତ୍ତବ୍ୟ କର୍ମ ନ କଲେ ସୃଷ୍ଟିରକ୍ଷା ହୋଇ ପାରିବ ନାହିଁ । ସୃଷ୍ଟି ଆରମ୍ଭରେ ପ୍ରଜାପତି ସ୍ୱ ସ୍ୱ କର୍ତ୍ତବ୍ୟ କର୍ମ କରିବାକୁ ମାନବସମାଜକୁ ଯେଉଁ ପ୍ରେରଣା ଦେଇ ଅଛନ୍ତି ତାହା ସର୍ବଦା ସ୍ମରଣୀୟ । ଯଜ୍ଞର ମୌଳିକତା ତ୍ୟାଗ ଉପରେ ପ୍ରତିଷ୍ଠିତ । ଯେଉଁମାନେ ସୃଷ୍ଟି ରକ୍ଷା କାର୍ଯ୍ୟରେ ଏହି ତ୍ୟାଗର ମାହାତ୍ମ୍ୟ ବୁଝନ୍ତି ନାହିଁ; ସେହି ଅସୁରମାନେ ଚୌରପଦ ବାଚ୍ୟ ।

ବିଶ୍ୱସୃଷ୍ଟିର ଅନ୍ତରାଳରେ ଯେଉଁ ଚିନ୍ମୟ ବ୍ରହ୍ମସତ୍ତା ବିରାଜିତ, ପ୍ରତ୍ୟେକ ମନୁଷ୍ୟର କର୍ମରେ ତାଙ୍କର ଅପ୍ରତିହତ ଦୃଷ୍ଟି ଅକ୍ଷୁଣ୍ଣ ରହିଅଛି, ସେହି ଶକ୍ତିହିଁ କର୍ମର ଫଳବିଧାତା । ତେଣୁ କର୍ମଫଳପ୍ରାପ୍ତିରେ ଆଶା ନ ରଖି ସେହି ଚିନ୍ମୟ

ଶକ୍ତିଠାରେ ସମସ୍ତ କର୍ମର ଫଳ ସମର୍ପଣ କରିଦେବା ଉଚିତ । ମନୁଷ୍ୟ ଯେଉଁ ସମସ୍ତ କର୍ମକରେ, ସେ ସବୁ ସେହି ଶକ୍ତିର ପ୍ରେରଣା, ତେଣୁ ମୁଁ ଅମୁକ କର୍ମ କଲି ବା ମୁଁ ଅମୁକ କର୍ମ କରିବି, ଅମୁକ ଫଳ ପାଇବି—ଏ ଭଳି ଅଭିମାନ ସର୍ବଥା ତ୍ୟାଗକରିବାକୁ ହେବ । ଏହାହିଁ ନିଷ୍କାମ କର୍ମର ମୌଳିକ ନୀତି । ପୂର୍ବ ଜ୍ଞାନୀମାନେ ଏପରିକି ସ୍ୱୟଂ ଭଗବାନ୍ ମଧ୍ୟ ଏହିପରି ନିଷ୍କାମ କର୍ମ କରି ଲୋକସମାଜକୁ ଆଦର୍ଶ ଦ୍ୱାରା ଅନୁପ୍ରାଣିତ କରିଅଛନ୍ତି । ଏପରି ଅବସ୍ଥାରେ ଅନାସକ୍ତ ଚିତ୍ତରେ ଓ କର୍ତ୍ତୃତ୍ୱାଭିମାନ ତ୍ୟାଗ କରି କର୍ମ କରିବାକୁ ହେବ, କର୍ମର ଫଳରେ ଆଶା ରଖିବାଦ୍ୱାରା ପରିଣାମରେ ମନୁଷ୍ୟ ଦୁଃଖହିଁ ଭୋଗକରେ, ତେଣୁ ଫଳ ଲାଭରେ ଉଦାସୀନ ରହିବା ଉଚିତ । ଗାଈ କି ଫଳଲାଭ ଆଶାରେ ବାଛୁରିକୁ ଦୁଧ ପିଆଇବା ପାଇଁ ଗୋଠରୁ ହମ୍ବାରଡ଼ିକରି ଦଉଡ଼ି ଆସେ ? ଏହା ଗୋଟିଏ ନିଷ୍କାମ କର୍ମର ଉଦାହରଣ । ଏହି ଭାବରେ ପ୍ରତ୍ୟେକ କର୍ମ ନିଷ୍କାମ ଚିତ୍ତରେ କଲେ ମନରେ ସର୍ବଦା ଚିରଶାନ୍ତି ବିରାଜିତ ରହେ ।

ଇନ୍ଦ୍ରିୟ ମାନଙ୍କର ଅଧୀନ ହେଲେ ସେମାନେ ମନୁଷ୍ୟକୁ ବିପଥକୁ ନେଇ ଯାଆନ୍ତି । ସେମାନଙ୍କୁ ବଶୀଭୂତ କରି ରଖିବା ଆତ୍ମୋନ୍ନତିର ପ୍ରଥମ ସୋପାନ । ଯାହାଙ୍କର ଇନ୍ଦ୍ରିୟମାନେ ଅଧୀନ ସେହି ଏକା ସ୍ୱଧର୍ମ ବା ସ୍ୱୀୟ ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ ସମ୍ପାଦନ କରି ପାରନ୍ତି । ସ୍ୱଧର୍ମପାଳନ ଜୀବନର ସର୍ବ ଶ୍ରେଷ୍ଠ କର୍ତ୍ତବ୍ୟ, ବିଭିନ୍ନ କାମନାର ବଶୀଭୂତ ହେଲେ ଲୋକ ସ୍ୱଧର୍ମ ବା ସ୍ୱ କର୍ତ୍ତବ୍ୟରୁ ଭ୍ରଷ୍ଟ ହୁଏ । ମନ, ବୁଦ୍ଧି ଓ ଇନ୍ଦ୍ରିୟ କାମନା ବା ବାସନାର ଆଶ୍ରୟ ସ୍ଥାନ । ଏହି ସବୁ କାମନା-କବଳରୁ ରକ୍ଷା ପାଇବାର ଏକମାତ୍ର ଉପାୟ—ସର୍ବଶକ୍ତିମାନ୍ ପରମାତ୍ମାଙ୍କ ଶରଣାପନ୍ନ ହେବା ।

ଏ ଅଧ୍ୟାୟରେ ଜ୍ଞାନ ଓ କର୍ମର ସମନ୍ୱୟ ବିଧାନ କରାଯାଇ ଅଛି । କର୍ମଯୋଗୀ ଜ୍ଞାନପୂର୍ଣ୍ଣ ଦୃଷ୍ଟିରେ କର୍ମର ଫଳ ପରମାତ୍ମାଙ୍କଠାରେ ସମର୍ପଣ କରି କର୍ମ କରିବେ ଓ ଜ୍ଞାନଯୋଗୀ ଲୋକସଂଗ୍ରହପାଇଁ ସର୍ବଦା ନିଷ୍କାମ କର୍ମର ଅନୁଷ୍ଠାନ କରିବେ । ଅଜ୍ଞାନ କର୍ମାସକ୍ତମାନଙ୍କୁ କର୍ମରୁ ନିବୃତ୍ତ କରିବା କେବେହେଁ ଉଚିତ ନୁହେ ।

---

# ଚତୁର୍ଥୋଽଧ୍ୟାୟଃ

## ଶ୍ରୀ ଭଗବାନୁବାଚ

ଇମଂ ବିବସ୍ୱତେ ଯୋଗଂ ପ୍ରୋକ୍ତବାନହମବ୍ୟୟମ୍ ।
ବିବସ୍ୱାନ୍ ମନବେ ପ୍ରାହ ମନୁରିକ୍ଷ୍ୱାକବେଽବ୍ରବୀତ୍ । ୧ ।

୧ । **ଅନ୍ୱୟଦୀପିକା—ଶ୍ରୀ** ଭଗବାନ୍ ଉବାଚ ( ଶ୍ରୀ ଭଗବାନ୍ କହିଲେ), ଅହଂ (ଅମ୍ଭେ) ଇମଂ ଅବ୍ୟୟଂ ଯୋଗଂ (ଏହି ଅବ୍ୟୟ ଯୋଗକୁ) ବିବସ୍ୱତେ (ସୂର୍ଯ୍ୟଙ୍କୁ) ପ୍ରୋକ୍ତବାନ୍ (କହିଥିଲୁଁ) । ବିବସ୍ୱାନ୍ (ସୂର୍ଯ୍ୟ) ମନବେ (ମନୁଙ୍କୁ) ପ୍ରୋବାଚ (କହିଥିଲେ), ମନୁଃ (ମନୁ) ଇକ୍ଷ୍ୱାକବେ (ଇକ୍ଷ୍ୱାକୁଙ୍କୁ) କହିଥିଲେ ।

**ଅନୁବାଦ—**ଶ୍ରୀ ଭଗବାନ୍ କହିଲେ, ଏହି ଅବ୍ୟୟ ଯୋଗ ଅମ୍ଭେ ସୂର୍ଯ୍ୟଙ୍କୁ କହିଥିଲୁଁ, ସୂର୍ଯ୍ୟ ମନୁଙ୍କୁ ଏବଂ ମନୁ ଇକ୍ଷ୍ୱାକୁଙ୍କୁ କହିଥିଲେ ।

**ସୁବୋଧିନୀ ଟୀକା—**

ଅବର୍ତ୍ତାବତରେଶ୍ୱରାବାବିଷ୍କୁର୍ବନ୍ ସ୍ୱୟଂ ହରିଃ ।
ତତ୍ତ୍ୱଂ ପଦବିବେକାର୍ଥଂ କର୍ମଯୋଗଂ ପ୍ରଶଂସତି ।

ଏବଂ ତାବଦଧ୍ୟାୟଦ୍ୱୟେନ କର୍ମଯୋଗୋପାୟକଜ୍ଞାନଯୋଗୋ ମୋକ୍ଷସାଧନତ୍ୱେନୋକ୍ତଃ । ତମେବ ବ୍ରହ୍ମାର୍ପଣାଦିଗୁଣବିଧାନେନ ତତ୍ତ୍ୱପଦାର୍ଥ ବିବେକାଦିନା ଚ ପ୍ରପଞ୍ଚୟିଷ୍ୟନ୍ ପ୍ରଥମଂ ତାବତ୍ ପରମ୍ପରାପ୍ରାପ୍ତତ୍ୱେନ ସ୍ତୁବନ୍ ଭଗବାନୁବାଚ—ଇମମିତି ତ୍ରିଭିଃ, ଅବ୍ୟୟଫଳତ୍ୱାଦବ୍ୟୟମ୍ । ଇମଂ ଯୋଗଂ ପୂର୍ବମହଂ ବିବସ୍ୱତ ଆଦିତ୍ୟାୟ କଥିତବାନ୍ । ସ ଚ ସ୍ୱପୁତ୍ରାୟ ମନବେ ଶ୍ରାଦ୍ଧଦେବାୟ ପ୍ରାହ । ସ ଚ ମନୁଃ ସ୍ୱପୁତ୍ରାୟେକ୍ଷ୍ୱାକବେଽବ୍ରବୀତ୍ ।

ବକ୍ତବ୍ୟ—ଏ ଶ୍ଳୋକରେ ପ୍ରଥମରୁ ଭଗବାନ୍ କହୁଅଛନ୍ତି—ଏହି ଯୋଗଟିକୁ ଅମ୍ଭେ ପ୍ରଥମେ ସୂର୍ଯ୍ୟଙ୍କୁ କହିଥିଲୁଁ । 'ଏହିଯୋଗ' ଦ୍ୱାରା ପୂର୍ବୋକ୍ତ ଦୁଇ ଅଧ୍ୟାୟରେ କୁହାଯାଇଥିବା ତତ୍ତ୍ୱକୁ ଲକ୍ଷ୍ୟ କରା ଯାଇଅଛି । ଏହା ଅବଶ୍ୟ କର୍ମଯୋଗ । ଗୀତାରେ ୩ୟ ଅଧ୍ୟାୟର ନାମ କର୍ମଯୋଗ । ଗୀତାର କର୍ମଯୋଗ ଯେ ଜ୍ଞାନଭକ୍ତିବିମିଶ୍ର, ଭଗବାନ ସେହି ଅଧ୍ୟାୟରେ ସ୍ପଷ୍ଟ ଏହାର ସୂଚନା ଦେଇ ଅଛନ୍ତି (୩ୟ ଅଧ୍ୟାୟ ୩୦ମ ଶ୍ଳୋକର ବିବୃତି ଦ୍ରଷ୍ଟବ୍ୟ) ।

କେହି ମନେ କରି ପାରନ୍ତି, ଶ୍ରୀକୃଷ୍ଣ କୁରୁକ୍ଷେତ୍ର ଯୁଦ୍ଧରେ ଅର୍ଜୁନଙ୍କୁ ନିୟୋଜିତ କରିବା ପାଇଁ ଏହିପରି ଗୋଟିଏ ନୂତନ ଯୋଗର ବ୍ୟାଖ୍ୟା କରୁଅଛନ୍ତି, ମାତ୍ର

ଏବଂ ପରମ୍ପରାପ୍ରାପ୍ତମିମଂ ରାଜର୍ଷୟୋ ବିଦୁଃ ।
ସ କାଳେନେହ ମହତା ଯୋଗୋ ନଷ୍ଟଃ ପରନ୍ତପ । ୨ ।

ଏହା ତାହା ନୁହେ । ଏ କର୍ମଯୋଗ ବହୁ ପ୍ରାଚୀନକାଳରୁ ପ୍ରଚଳିତ ଅଛି; ଭଗବାନ୍ ଏହା ସୂର୍ଯ୍ୟଙ୍କୁ କହିଥିଲେ, ସୂର୍ଯ୍ୟ ମାନବଜାତିର ପିତା ସ୍ୱପୁତ୍ର ମନୁଙ୍କୁ ଏବଂ ମନୁ ସ୍ୱପୁତ୍ର ଇକ୍ଷ୍ୱାକୁଙ୍କୁ କହିଥିଲେ । ଇକ୍ଷ୍ୱାକୁବଂଶୀୟ ରାଜାମାନଙ୍କୁ ସୂର୍ଯ୍ୟବଂଶୀୟ କୁହାଯାଏ । ଇକ୍ଷ୍ୱାକୁ ସୂର୍ଯ୍ୟବଂଶ ପ୍ରବର୍ତ୍ତିକ ଆଦି ରାଜା । ଏହି ବଂଶରେ ଦିଲୀପ, ରଘୁ ଏବଂ ଭଗବାନ୍ ରାମଚନ୍ଦ୍ର ଜନ୍ମ ଗ୍ରହଣ କରିଥିଲେ । ରାମଚନ୍ଦ୍ର ଇକ୍ଷ୍ୱାକୁଙ୍କ ବଂଶର ୬୮ମ ଅଧସ୍ତନ ପୁରୁଷ । ସୁତରାଂ ଅତି ପ୍ରାଚୀନ କାଳରୁ ଏ ଯୋଗ ମାନବସମାଜରେ ପ୍ରଚଳିତ ଥିଲା । ଏହି ଯୋଗତତ୍ତ୍ୱ ପ୍ରତିକଳ୍ପରେ ପ୍ରକାଶିତ ହୁଏ । ଯେତେବେଳେ ଏହା ଅଦୃଶ୍ୟ ହୋଇଯାଏ ଭଗବାନ୍ ସ୍ୱୟଂ ମାନବଶରୀର ଧାରଣ କରି ତାହାର ପୁନଃ ପ୍ରଚାର କରନ୍ତି । ଶ୍ରୀକୃଷ୍ଣ-ଅବତାରର ଏହାହିଁ ଅନ୍ୟତମ କାରଣ । ମନୁ, ଇକ୍ଷ୍ୱାକୁ ଏମାନେ କ୍ଷତ୍ରିୟ ରାଜା, ଏଥିରୁ ବୁଝାଯାଉଅଛି ଯେ ସଂସାରତ୍ୟାଗୀ ସନ୍ନ୍ୟାସୀମାନଙ୍କ ଉଦ୍ଦେଶ୍ୟରେ ଏ ଧର୍ମ କଥିତ ହୋଇନାହିଁ ।

ସୂର୍ଯ୍ୟ ଈଶ୍ୱରଙ୍କ କର୍ମମୟ ସୃଷ୍ଟିର ଅଦଶ ବା ପ୍ରତୀକ । କି ଜୀବଜଗତ୍ କି ଉଦ୍‌ଭିଦ୍ ଜଗତ୍ ସୂର୍ଯ୍ୟଙ୍କଠାରୁହିଁ ଜାତ । ସୂର୍ଯ୍ୟଙ୍କୁ ଏହି ଯୋଗ ପ୍ରଥମେ କୁହା ଯାଇଥିଲା—ଏପରି କହିବାର ଉଦ୍ଦେଶ୍ୟ ଏହି ଯେ, ସୃଷ୍ଟିର ସତତ ନିୟତ-କର୍ମ-ପ୍ରବଣ ସୂର୍ଯ୍ୟହିଁ ଏ ଯୋଗର ପ୍ରଥମ ଶିଷ୍ୟ ।

୨ । ଅନ୍ୱୟଦୀପିକା—ଏବଂ ପରମ୍ପରାପ୍ରାପ୍ତଂ (ଏହିପରି ପରମ୍ପରା-ସୂତ୍ରରେ ପ୍ରାପ୍ତ) ଇମଂ (ଏହି ଯୋଗକୁ) ରାଜର୍ଷୟଃ (ରାଜର୍ଷିମାନେ) ବିଦୁଃ (ଜାଣିଥିଲେ), ହେ ପରନ୍ତପ, ଇହ (ଏହି ସଂସାରରେ) ସଃ ଯୋଗଃ (ସେହି ଯୋଗ) ମହତା କାଳେନ (ଦୀର୍ଘକାଳବଶରେ) ନଷ୍ଟଃ (ନଷ୍ଟ ହୋଇଅଛି) ।

ଅନୁବାଦ—ଏହିପରି ଗୁରୁଶିଷ୍ୟପରମ୍ପରାସୂତ୍ରରେ ପ୍ରାପ୍ତ ଏହି ଯୋଗକୁ ରାଜର୍ଷିମାନେ ଜାଣିଥିଲେ । ହେ ପରନ୍ତପ ଅର୍ଜ୍ଜୁନ, ଇହଲୋକରେ ସେହି ଯୋଗ କାଳକ୍ରମେ ନଷ୍ଟ ହୋଇଅଛି ।

ସୁବୋଧିନୀ ଟୀକା—ଏବମିତି-ଏବଂ ରାଜାନସ୍ତ ତ ଉପଯୁକ୍ତେତି । ଅନ୍ୟେଽପି ରାଜର୍ଷୟୋ ନିମିପ୍ରମୁଖାଃ ସ୍ୱପିତାଦିଭିରିକ୍ଷ୍ୱାକୁପ୍ରମୁଖୈଃ ପ୍ରୋକ୍ତମିମଂ ଯୋଗଂ ବିଦୁଃଜାନନ୍ତିସ୍ମ । ଅଦ୍ୟତନାନାଙ୍କନେ କାରଣ ମାହ— ହେ ପରନ୍ତପ ଶତ୍ରୁତାପନ, ସ ଯୋଗଃ କାଳବଶାଦିହ ଲୋକେ ନଷ୍ଟୋ ବିଚ୍ଛିନ୍ନଃ ।

ସ ଏବାୟଂ ମୟା ତେଽଦ୍ୟ ଯୋଗଃ ପ୍ରୋକ୍ତଃ ପୁରାତନଃ ।
ଭକ୍ତୋଽସି ମେ ସଖା ଚେତି ରହସ୍ୟଂ ହ୍ୟେତଦୁତ୍ତମମ୍ । ୩ ।

ଅର୍ଜୁନ ଉବାଚ

ଅପରଂ ଭବତୋ ଜନ୍ମ ପରଂ ଜନ୍ମ ବିବସ୍ୱତଃ ।
କଥମେତଦ୍‌ବିଜାନୀୟାଂ ତ୍ୱମାଦୌ ପ୍ରୋକ୍ତବାନିତି । ୪ ।

ବିବୃତି—'ରାଜର୍ଷି' ପଦର ଅର୍ଥ—ରାଜା ହୋଇ ଯେ ଋଷିଙ୍କ ପରି ଜୀବନ-ଯାପନ କରନ୍ତି । ପରମ୍ପରା ସୂତ୍ରରେ ଏହି ଯୋଗକୁ ରାଜର୍ଷିମାନେ ଜାଣିଥିଲେ । 'ରାଜର୍ଷି' ପଦରୁ ବୁଝାଯାଏ ଯେ ଏ ଯୋଗ କେବଳ ଜ୍ଞାନବାଦୀ ଋଷିମାନେ ଅନୁଷ୍ଠାନ କରୁ ନ ଥିଲେ, ଯେଉଁମାନେ ଜ୍ଞାନଯୁକ୍ତ କର୍ମର ଅନୁଷ୍ଠାତା ସେହିମାନେହିଁ ଏ ଯୋଗର ଅଧିକାରୀ ଥିଲେ ।

୩ । ଅନ୍ୱୟଦୀପିକା—[ତୁମେ] ମେ (ଆମର) ଭକ୍ତଃ ସଖା ଚ ଅସି (ଭକ୍ତ ଏବଂ ମିତ୍ର ଅଛ), ଇତି (ଏହି ହେତୁରୁ) ଅୟଂ (ଏହି) ସଃ (ସେହି) ପୁରାତନଃ ଯୋଗଃ (ପୁରାତନ ଯୋଗ) ଅଦ୍ୟ (ଆଜି) ମୟା (ଆମ୍ଭ ଦ୍ୱାରା) ତେ ଏବ (ତୁମ ନିକଟରେହିଁ) ପ୍ରୋକ୍ତଃ (କଥିତ ହେଲା ; ହି (ଯେହେତୁ) ଏତତ୍ (ଏହା) ଉତ୍ତମଂ ରହସ୍ୟମ୍ (ଗୁହ୍ୟ ତତ୍ତ୍ୱ) ।

ଅନୁବାଦ—ତୁମେ ଆମ୍ଭର ଭକ୍ତ ଓ ସଖା, ସେହି ହେତୁରୁ ଏହି ପୁରାତନ ଯୋଗ ଆଜି ତୁମକୁ କହିଲୁଁ ; ଏହା ଅତି ଗୁହ୍ୟ ତତ୍ତ୍ୱ ।

ସୁବୋଧିନୀ ଟୀକା—ସ ଏବାୟମିତି । ସ ଏବାୟଂ ଯୋଗୋଽଦ୍ୟ ବିଚ୍ଛିନ୍ନେ ସମ୍ପ୍ରଦାୟେ ସତି ପୁନସ୍ତୁମୟା ତେ ତୁଭ୍ୟଂ ପ୍ରୋକ୍ତଃ । ଯତଃ ତ୍ୱଂ ମମ ଭକ୍ତୋଽସି ସଖା ଚ । ଅନ୍ୟସ୍ମୈ ମୟା ନୋଚ୍ୟତେ । ହି ଯସ୍ମାଦେତଦୁତ୍ତମଂ ରହସ୍ୟମ୍ ।

ବିବୃତି—ଅନଧିକାରୀକୁ ଗୋପନୀୟ ଅମୃତତତ୍ତ୍ୱ କୁହାଯାଏ ନାହିଁ । ଏକଥା ଆମ ଦେଶରେ ବହୁକାଳରୁ ପ୍ରଚଳିତ ଅଛି । ତଦ୍ୱାରା ଅନଧିକାରୀ ବିପଥଗାମୀ ହୁଏ ଏବଂ ତତ୍ତ୍ୱର ମହତ୍ତ୍ୱ କମିଯାଏ । ସେହି ହେତୁରୁ ଆମ ଦେଶରେ କଥିତ ଅଛି—"ସ୍ତ୍ରୀଶୂଦ୍ରଦ୍ୱିଜବନ୍ଧୂନାଂ ତ୍ରୟୀ ନ ଶ୍ରୁତିଗୋଚରା ।" ସ୍ତ୍ରୀ, ଶୂଦ୍ର ଓ ଅଧମ ବ୍ରାହ୍ମଣମାନଙ୍କୁ ବେଦ ଶୁଣାଇବ ନାହିଁ, କିନ୍ତୁ ଏଠାରେ ଅର୍ଜୁନ ଉପଯୁକ୍ତ ପାତ୍ର ଓ ଭକ୍ତବନ୍ଧୁ, ତେଣୁ ଗୋପନୀୟ ହେଲେହେଁ ସେ ଯୋଗତତ୍ତ୍ୱ ଶୁଣିବାର ସମ୍ପୂର୍ଣ୍ଣ ଅଧିକାରୀ ।

୪ । ଅନ୍ୱୟଦୀପିକା—ଅର୍ଜୁନଃ ଉବାଚ ( ଅର୍ଜୁନ ପଚାରିଲେ ) ଭବତଃ ( ଆପଣଙ୍କର ) ଜନ୍ମ ଅପରଂ ( ଜନ୍ମ ପରବର୍ତ୍ତୀ ) ବିବସ୍ୱତଃ ଜନ୍ମ ପରଂ ( ସୂର୍ଯ୍ୟଙ୍କର ଜନ୍ମ ପୂର୍ବବର୍ତ୍ତୀ ) ତ୍ୱଂ ( ତୁମେ ) ଆଦୌ ( ପ୍ରଥମେ ) ପ୍ରୋକ୍ତବାନ୍ ( କହିଥିଲ ), ଏତତ୍ ( ଏହା ) କଥଂ ବିଜାନୀୟାମ୍ ( କିପରି ଜାଣିବି ? )

ଶ୍ରୀଭଗବାନୁବାଚ

ବହୂନି ମେ ବ୍ୟତୀତାନି ଜନ୍ମାନି ତବ ଚାର୍ଜ୍ଜୁନ ।
ତାନ୍ୟହଂ ବେଦସର୍ବାଣି ନ ତ୍ୱଂ ବେତ୍ଥ ପରନ୍ତପ । ୫ ।

**ଅନୁବାଦ—ଅର୍ଜ୍ଜୁନ ପଚାରିଲେ ଆପଣଙ୍କ ଜନ୍ମ ପରବର୍ତ୍ତୀ କାଳରେ, ସୂର୍ଯ୍ୟଙ୍କର ଜନ୍ମ ଅନେକ ପୂର୍ବରେ, ତେଣୁ ଆପଣ ଯେ ପୂର୍ବେ ଏ କଥା କହିଥିଲେ ଏହା କିପରି ଜାଣିବି ?**

**ସୁବୋଧିନୀ ଟୀକା**—ଭଗବତୋ ଭବତ୍ତ୍ୱଂ ପ୍ରତି ଯୋଗୋପଦେଶାସମ୍ଭବଂ ପଶ୍ୟନ୍ନର୍ଜ୍ଜୁନ ଉବାଚ—ଅପରମିତି । ଅପରମର୍ବାଚୀନଂ ତବଜନ୍ମ, ପରଂ ପ୍ରାକ୍‌କାଳୀନଂ ବିବସ୍ୱତୋଜନ୍ମ ତସ୍ମାତ୍‌ବାଧୁନାତନସ୍ତ୍ୱଂ ଚିରନ୍ତନାୟ ବିବସ୍ୱତେ ତ୍ୱମାଦୌ ଯୋଗଂ ପ୍ରୋକ୍ତବାନିତି—ଏତତ୍ କଥମହଂ ଜାନୀୟାଂ ଜ୍ଞାତୁଂ ଶକ୍ନୁୟାମ୍ ।

ବକ୍ତବ୍ୟ—ଶ୍ରୀକୃଷ୍ଣଙ୍କୁ ବସୁଦେବସୁତ ବୋଲି ମନେ କରି ଅର୍ଜ୍ଜୁନ ଏପରି ପ୍ରଶ୍ନ ପଚାରିଅଛନ୍ତି । ଏଥିରୁ ବୁଝାଯାଉଅଛି ଯେ ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କୁ ସର୍ବ ଶକ୍ତିମାନ୍ ଭଗବାନ୍ ବୋଲି ଏ ପର୍ଯ୍ୟନ୍ତ ଜାଣି ନାହାନ୍ତି । ଅବଶ୍ୟ ସେ ଶ୍ରୀକୃଷ୍ଣଙ୍କୁ ସର୍ବଜ୍ଞ ଗୁରୁ ରୂପରେ ଭକ୍ତି କରୁଥିଲେ, 'ଶିଷ୍ୟସ୍ତେଽହଂଶାଧି ମାଂ ତ୍ୱାଂ ପ୍ରପନ୍ନମ୍' ଦ୍ୱିତୀୟ ଅଧ୍ୟାୟର ୭ମ ଶ୍ଳୋକରେ ଏହି ଉକ୍ତିରୁ ଏ କଥା ବୁଝାଯାଏ । ଶ୍ରୀକୃଷ୍ଣ ଅବତାରରୂପରେ ସେତେବେଳେ ଅବତୀର୍ଣ୍ଣ ହୋଇଥିଲେହେଁ ଆତ୍ମଗୋପନ କରି ମନୁଷ୍ୟଭାବରେ ଲୀଳାବିସ୍ତାର କରୁଥିଲେ । ଭୀଷ୍ମ, ବିଦୁର ପ୍ରଭୃତି ମହାପୁରୁଷମାନେ ତାଙ୍କୁ ସାକ୍ଷାତ୍ ଭଗବାନ୍ ବୋଲି ଜାଣି ପାରିଥିଲେହେଁ ସାଧାରଣ ଲୋକେ ତାଙ୍କୁ ଈଶ୍ୱର ଦୃଷ୍ଟିରେ ଦେଖୁ ନ ଥିଲେ । ସେହି ହେତୁରୁ ଭଗବାନ୍ ଗୀତା ୯ମ ଅଧ୍ୟାୟ ଏକାଦଶ ଶ୍ଳୋକରେ କହିଅଛନ୍ତି :—

ଅବଜାନନ୍ତି ମାଂ ମୂଢ଼ା ମାନୁଷୀଂ ତନୁମାଶ୍ରିତମ୍ ।
ପରଂଭାବ ମଜାନନ୍ତୋ ମମଭୂତମହେଶ୍ୱରମ୍ ।

ପ୍ରକୃତରେ ଐଶ୍ୱର୍ଯ୍ୟ ପ୍ରକାଶରେ ଲୀଳାର ପୁଷ୍ଟି ହୁଏ ନାହିଁ । ତାଙ୍କର ଆତ୍ମୀୟ ସ୍ୱଜନମାନେ ତାଙ୍କର ଈଶ୍ୱରତ୍ୱ ଜାଣି ପାରୁଥିଲେହେଁ ମାୟାଧୀନ ଥିବାରୁ ତାହା ପ୍ରାୟଶଃ ଭୁଲି ଯାଉଥିଲେ ।

୫ । **ଅନ୍ୱୟଦୀପିକା**—ଶ୍ରୀ ଭଗବାନ୍‌ଉବାଚ (ଶ୍ରୀଭଗବାନ୍ କହିଲେ) ହେ ଅର୍ଜ୍ଜୁନ ! ମେ ତବ ଚ ବହୂନି ଜନ୍ମାନି ( ଆମ୍ଭର ଏବଂ ତୁମ୍ଭର ଅନେକ ଜନ୍ମ ) ବ୍ୟତୀତାନି ( ଅତୀତ ହୋଇଅଛି ), ଅହଂ ( ଆମ୍ଭେ ) ତାନି ସର୍ବାଣି ( ସେ ସମସ୍ତ ) ବେଦ ( ଜାଣୁଁ ) । [ କିନ୍ତୁ ] [ ହେ ] ପରନ୍ତପ ! ତ୍ୱଂ (ତୁମ୍ଭେ) ନ ବେତ୍ଥ ( ଜାଣନାହିଁ ) ।

ଅଜୋଽପି ସନ୍ନବ୍ୟୟାତ୍ମା ଭୂତାନାମୀଶ୍ୱରୋଽପି ସନ୍ ।
ପ୍ରକୃତିଂ ସ୍ୱାମଧିଷ୍ଠାୟ ସମ୍ଭବାମ୍ୟାତ୍ମମାୟୟା ।୬।

**ଅନୁବାଦ**—ହେ ଅର୍ଜ୍ଜୁନ, ଆମ୍ଭର ଏବଂ ତୁମ୍ଭର ବହୁଜନ୍ମ ଅତୀତ ହୋଇଅଛି । ଆମ୍ଭେ ସେ ସମସ୍ତ ଜାଣୁଁ ମାତ୍ର ହେ ପରନ୍ତପ, ତୁମେ କିନ୍ତୁ ତାହା ଜାଣ ନାହିଁ ।

**ସୁବୋଧିନୀ ଟୀକା**— ଭୂପାନ୍ତରେଣୋପଦେଷ୍ଟୃତ୍ୱାନତ୍ୟଭିପ୍ରାୟେ-ଣୋତ୍ତରଂ ଶ୍ରୀ ଭଗବାନୁବାଚ—ବହୂନୀତି । ତାନ୍ୟହଂ ବେଦ ବେଦ୍ମି । ଅଲ୍ପ-ତିଦ୍ୟାଶକ୍ତିତ୍ୱାତ୍ । ତ୍ୱଂ ତୁ ନ ବେତ୍ଥ ନ ବେତ୍ସି ଅବିଦ୍ୟାବୃତତ୍ୱାତ୍ ।

**ବିବୃତି**— ନିଜର ସର୍ବଜ୍ଞତ୍ୱ ଓ ଈଶ୍ୱରତ୍ୱ ସମ୍ବନ୍ଧରେ ଅର୍ଜ୍ଜୁନଙ୍କୁ ଦୃଢ଼ ଧାରଣା ଦେବାପାଇଁ ଭଗବାନ ଏଠାରେ ସ୍ୱକୀୟ ଅବତାରପ୍ରସଙ୍ଗବର୍ଣ୍ଣନାର ଉପକ୍ରମ କରୁ ଅଛନ୍ତି । ସାଧାରଣ ଲୋକେ ଦେହ ଧାରଣ କଲେ ଅବିଦ୍ୟାଦ୍ୱାରା ଆବୃତ ହୁଅନ୍ତି, ତଦ୍ୱାରା ଜ୍ଞାନ-ସୂର୍ଯ୍ୟ ଲୁପ୍ତ ହୋଇଯାଏ; ତେଣୁ ପୂର୍ବଜନ୍ମ କଥା ସେମାନଙ୍କର ସ୍ମରଣ ରହେ ନାହିଁ । କିନ୍ତୁ ଭଗବାନ୍ ଦେହଧାରଣ କଲେ ଅବିଦ୍ୟା ଓ ଅଜ୍ଞାନ ତାଙ୍କୁ ସ୍ପର୍ଶକରି ପାରେ ନାହିଁ । ତେଣୁ ତାଙ୍କର ସର୍ବଜ୍ଞତା ଲୋପ ହୁଏ ନାହିଁ ।

୬ । **ଅନ୍ୱୟଦୀପିକା**—[ଅହଂ] ଅଜଃ ସନ୍ ଅପି ( ଜନ୍ମ ରହିତ ହୋଇ ମଧ୍ୟ ), ଅବ୍ୟୟାତ୍ମା (ଅବିନଶ୍ୱର ସ୍ୱଭାବ) [ହୋଇ ମଧ୍ୟ], ଈଶ୍ୱରଃ ସନ୍ ଅପି (ସମସ୍ତ ପ୍ରାଣୀଙ୍କର ଅଧୀଶ୍ୱର) [ହୋଇମଧ୍ୟ], ସ୍ୱାଂ ପ୍ରକୃତିଂ (ନିଜପ୍ରକୃତିକୁ) ଅଧିଷ୍ଠାୟ ( ନିୟନ୍ତ୍ରିତ କରି ) ଆତ୍ମମାୟୟା ( ନିଜମାୟାଦ୍ୱାରା ) ସମ୍ଭବାମି ( ଜନ୍ମ ଗ୍ରହଣ କରୁଁ ) ।

**ଅନୁବାଦ**—ଆମ୍ଭେ ଜନ୍ମରହିତ, ଅବିନଶ୍ୱର ଓ ସର୍ବଭୂତର ଅଧୀଶ୍ୱର ହୋଇ ମଧ୍ୟ ସ୍ୱୀୟ ପ୍ରକୃତିକୁ ନିୟନ୍ତ୍ରିତ କରି ଆତ୍ମମାୟାରେ ଜନ୍ମଗ୍ରହଣ କରୁଁ ।

**ସୁବୋଧିନୀ ଟୀକା**—ନନ୍ୱନାଦେସ୍ତବ କୁତୋ ଜନ୍ମ ? ଅବିନାଶିନଶ୍ଚ କଥଂ ପୁନର୍ଜନ୍ମ—ଯେନ ବହୂନି ମେ ବ୍ୟତୀତାନୀତ୍ୟୁଚ୍ୟତେ ? ଈଶ୍ୱରସ୍ୟ ତବ ପୁଣ୍ୟପାପବିହୀନସ୍ୟ କଥଂ ଜୀବବଜ୍ଜନ୍ମେତି ? ଅତଆହ— ଅଜୋଽପୀତି । ସତ୍ୟମେବମ୍ । ତଥାପ୍ୟଜୋଽପି ଜନ୍ମଶୂନ୍ୟୋଽପି ସନ୍ନହଂ ତଥା ଅବ୍ୟୟାତ୍ମା ଅନଶ୍ୱରସ୍ୱଭାବୋଽପିସନ୍ । ତଥା—ଈଶ୍ୱରୋଽପି କର୍ମପାରତନ୍ତ୍ର୍ୟ-ରହିତୋଽପି ସନ୍ ସ୍ୱମାୟୟା ସମ୍ଭବାମି ସମ୍ୟଗପ୍ରଚ୍ୟୁତଜ୍ଞାନବଲବୀର୍ଯ୍ୟାଦିଶକ୍ତ୍ୟୈବ ଭବାମି । ନନ୍ୱ ତଥାପି ଷୋଡ଼ଶକଲାତ୍ମକଲିଙ୍ଗଦେହ ଶୂନ୍ୟସ୍ୟ ଚ ତବ କୁତୋ ଜନ୍ମେତି ? ଅତ ଉକ୍ତଂ— ସ୍ୱାଂ ଶୁଦ୍ଧସତ୍ତ୍ୱାତ୍ମିକାଂ ପ୍ରକୃତିମଧିଷ୍ଠାୟ ସ୍ୱୀକୃତ୍ୟ । ବିଶୁଦ୍ଧୋର୍ଜିତସତ୍ତ୍ୱମୂର୍ତ୍ତ୍ୟା ସ୍ୱେଚ୍ଛୟାଽବତରାମୀତ୍ୟର୍ଥଃ ।

ବିବୃତ—ଏ ଶ୍ଲୋକରେ ଭଗବାନଙ୍କର ମନୁଷ୍ୟ ଲୋକରେ ମର୍ତ୍ତ୍ୟ-ଶରୀର ଧାରଣ ରହସ୍ୟ ଆଲୋଚିତ ହୋଇ ଅଛି । 'ଅହଂ' ( ଭଗବାନ୍ )—ଏହି ପଦଟିର ବିଶେଷଣ ରୂପେ ଶ୍ଲୋକର ପ୍ରଥମାର୍ଦ୍ଧରେ 'ଅଜ', 'ଅବ୍ୟୟାତ୍ମା', 'ସର୍ବ ଭୂତର ଅଧୀଶ୍ୱର' ଏହି ତିନିଗୋଟି ପଦ ବ୍ୟବହୃତ ହୋଇଅଛି । ଅଜ ଶବ୍ଦର ଅର୍ଥ ଜନ୍ମରହିତ । ଭଗବାନ୍ ଜନ୍ମରହିତ, ତଥାପି ଜନ୍ମଗ୍ରହଣ କରନ୍ତି । ଅବ୍ୟୟାତ୍ମାର ଅର୍ଥ ଯାହାଙ୍କ ଆତ୍ମାର କୌଣସି ବିକାର ହୁଏ ନାହିଁ; ଶ୍ରୀଧର ସ୍ୱାମୀ ଏହାର ଅର୍ଥ କରନ୍ତି 'ଅନଶ୍ୱର ସ୍ୱଭାବ'; ଭୂତମାନଙ୍କର ଈଶ୍ୱର ବା ଅଧୀଶ୍ୱର କହିଲେ କର୍ମପାରତନ୍ତ୍ର୍ୟ ରହିତ ବୁଝାଯାଏ । ସାଧାରଣତଃ ଧର୍ମାଧର୍ମ କର୍ମ-ବଶତଃ ଜୀବର ଜନ୍ମ ହୁଏ, ମାତ୍ର ଈଶ୍ୱର କର୍ମବନ୍ଧନରୁ ମୁକ୍ତ, ତେଣୁ ତାଙ୍କର ଜନ୍ମ କର୍ମନିବନ୍ଧନ ହୁଏ ନାହିଁ ।

ଶ୍ଲୋକର ଦ୍ୱିତୀୟାର୍ଦ୍ଧ ଆଲୋଚନା କରାଯାଉ; ସାଂଖ୍ୟମତାବଲମ୍ବୀମାନେ ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର କରନ୍ତି ନାହିଁ । ସେମାନେ କହନ୍ତି ପ୍ରକୃତି ନିଜେ ସୃଷ୍ଟି ରଚନା କରେ । ମାତ୍ର ବେଦାନ୍ତବାଦୀଙ୍କ ମତରେ ପ୍ରକୃତି ଈଶ୍ୱରଙ୍କ ସ୍ୱରୂପ-ବିଶେଷ, ପ୍ରକୃତିରେ ପରମେଶ୍ୱର ଅଧିଷ୍ଠିତ ହେଲେ ପ୍ରକୃତିରୁ ବ୍ୟକ୍ତ ସୃଷ୍ଟିର ଉତ୍ପତ୍ତି ହୁଏ । ନିଜର ଅବ୍ୟକ୍ତ ସ୍ୱରୂପରୁ ଯେଉଁ ଅଚିନ୍ତ୍ୟ ଶକ୍ତିବଳରେ ପରମେଶ୍ୱର ସମସ୍ତ ଜଗତ୍ ନିର୍ମାଣ କରନ୍ତି, ସେହି ଶକ୍ତିର ନାମ 'ମାୟା' । ଶ୍ୱେତାଶ୍ୱେତର ଉପନିଷଦରେ ପ୍ରକୃତିକୁ ମାୟା ବୋଲାଯାଇଅଛି । "ମାୟାଂ ତୁ ପ୍ରକୃତିଂ ବିଦ୍ୟାଦ୍ ମାୟିନଂ ତୁ ମହେଶ୍ୱରମ୍ ।"

ଅତଏବ ଶ୍ଲୋକର ତାତ୍ପର୍ଯ୍ୟ :—( ଶାଙ୍କରଭାଷ୍ୟ ଅନୁରୂପ ) ଭଗବାନ୍ କହୁଅଛନ୍ତି, "ଆମ୍ଭର ଯାହା ସ୍ୱପ୍ରକୃତି—ସତ୍ତ୍ୱ, ରଜଃ, ତମଃ ଏହି ତ୍ରିଗୁଣାତ୍ମିକା ବୈଷ୍ଣବୀମାୟା, ସମସ୍ତ ଜଗତ୍ ଯାହାର ବଶବର୍ତ୍ତୀ, ସେହି ପ୍ରକୃତିକୁ ବଶୀଭୂତ ବା ନିୟନ୍ତ୍ରିତ କରି ଆମ୍ଭେ ଜନ୍ମଗ୍ରହଣ କରୁଁ ।" ଏଥିରୁ ଜଣାଗଲା ଈଶ୍ୱରଙ୍କ ଶରୀର ଧାରଣ ସାଧାରଣ ଲୋକଙ୍କ ପରି କର୍ମନିବନ୍ଧନ ନୁହେଁ ।

( ଶ୍ରୀଧରଙ୍କ ଟୀକା ଅନୁରୂପ ) "ଆମ୍ଭେ ନିଜର ଶୁଦ୍ଧସତ୍ତ୍ୱାତ୍ମିକା ପ୍ରକୃତିକୁ ସ୍ୱୀକାର କରି ବିଶୁଦ୍ଧ ଉଜ୍ଜ୍ୱଳ ସତ୍ତ୍ୱମୂର୍ତ୍ତି ଦ୍ୱାରା ସ୍ୱେଚ୍ଛାକ୍ରମେ ଅବତୀର୍ଣ୍ଣ ହେଉଁ ।"

**ଅବତାରବାଦ**—ଅବତାରବାଦ ହିନ୍ଦୁଧର୍ମର ଗୋଟିଏ ବିଶିଷ୍ଟ ଅଂଶ । 'ଅବତାର' ଶବ୍ଦର ଅର୍ଥ ଅବତରଣ ବା ଓହ୍ଲାଇବା । ମାତ୍ର ଏ ଶବ୍ଦଟି କେବଳ ଈଶ୍ୱରଙ୍କ ଓହ୍ଲାଇବା ଅର୍ଥରେ ପ୍ରଯୁକ୍ତ ହୁଏ । ଅପ୍ରପଞ୍ଚରୁ ପ୍ରପଞ୍ଚରେ ଅବତୀର୍ଣ୍ଣ ହେବାର ନାମ ଅବତାର । କ୍ଷିତି, ଅପ୍, ତେଜଃ ମରୁତ୍, ବ୍ୟୋମ—ପଞ୍ଚମହାଭୂତର ବିକାରରେ ନିର୍ମିତ ପ୍ରାକୃତ ଜଗତକୁ ପ୍ରପଞ୍ଚ ବୋଲାଯାଏ । ଏହି ପଞ୍ଚମହାଭୂତରୁ ଅତୀତ ଯେଉଁ ପରବ୍ୟୋମ—ଯାହା ବୈକୁଣ୍ଠ ଧାମ ନାମରେ

ପଟ୍ଟଗତ ଏବଂ ଯେଉଁଠାରେ ପରମପୁରୁଷ ପୁରୁଷୋତ୍ତମଙ୍କ ସଙ୍ଗରେ ମୁକ୍ତ ପୁରୁଷମାନେ ବିହାର କରନ୍ତି, ତାହା ଅପ୍ରପଞ୍ଚ ନାମରେ କଥିତ ହୁଏ। ସେହି ଅପ୍ରପଞ୍ଚରୁ ପ୍ରପଞ୍ଚଧାମରେ ଭଗବାନଙ୍କର ଅବତରଣକୁ ଅବତାର କୁହାଯାଏ।

କେବଳ ହିନ୍ଦୁ ଧର୍ମରେ ନୁହେଁ, ପୃଥିବୀର ଅନ୍ୟ ପ୍ରସିଦ୍ଧ ଧର୍ମମାନଙ୍କରେ ମଧ୍ୟ ଏହି ଅବତାରବାଦ ଭିନ୍ନ ଭାବରେ ଗୃହୀତ ହୋଇଅଛି। ବୁଦ୍ଧ, ଖ୍ରୀଷ୍ଟ ପ୍ରଭୃତି ଆମ ଦୃଷ୍ଟିରେ ମଧ୍ୟ ସେହିପରି ଅବତାର। କିନ୍ତୁ ସେହି ସେହି ଧର୍ମର ଅନୁଷ୍ଠାତାମାନେ ସେମାନଙ୍କୁ ଅବତାର ଭାବରେ ସ୍ୱୀକାର ନ କରି ମହାପୁରୁଷ ବା ଈଶ୍ୱରପ୍ରେରିତ ଦୂତରୂପରେ ବିଶ୍ୱାସ କରନ୍ତି। ସେମାନେ କହନ୍ତି, ଯେ ସର୍ବଶକ୍ତିମାନ୍ ଏବଂ ଯାହାଙ୍କର ଇଚ୍ଛାରେ କୋଟିବିଶ୍ୱ, କୋଟିସୂର୍ଯ୍ୟ, କୋଟି ଚନ୍ଦ୍ର ତାହାଙ୍କର ସୃଷ୍ଟି ଏବଂ ପ୍ରଳୟ ସମାହିତ ହେଉଅଛି, ସେ ଯେ କୌଣସି ବିଶେଷ ଉଦ୍ଦେଶ୍ୟ ସାଧନ ପାଇଁ ନରଦେହ ଧାରଣ କରନ୍ତି ଏହା ଯୁକ୍ତିସିଦ୍ଧ ନୁହେ। ମାତ୍ର ଏହା କହିବା ଦ୍ୱାରା ଭଗବାନଙ୍କର ସର୍ବଶକ୍ତିମତ୍ତା ଯେ କ୍ଷୁଣ୍ଣ ହେଉଅଛି, ଏହା ସେମାନେ ଅସ୍ୱୀକାର କରିବେ ନାହିଁ।

ଅନ୍ୟ ଭାବରେ ଆଲୋଚନା କଲେ ଜଣାଯାଏ ଯେ, ଯେଉଁ ଉଦ୍ଦେଶ୍ୟ-ସାଧନପାଇଁ ଭଗବାନ୍ ମର୍ତ୍ତ୍ୟଲୋକରେ ଶରୀର ପରିଗ୍ରହ କରନ୍ତି, ଯଦିଚ ତାଙ୍କର ସଙ୍କଳ୍ପମାତ୍ରକେ ତାହା ସମ୍ପନ୍ନ ହୋଇପାରେ, ତଥାପି ତାଙ୍କ ସୃଷ୍ଟ ଏହି ମନୁଷ୍ୟ ସମାଜର ଶିକ୍ଷା, ବିଶ୍ୱାସ ତହିଁରେ ଦୃଢ଼ ହୋଇ ପାରିବ କି? ପୂର୍ଣ୍ଣ ଆଦର୍ଶ ବ୍ୟତୀତ ତାହା କେବେହେଲେ ପୂର୍ଣ୍ଣତା ପ୍ରାପ୍ତ ହେବ ନାହିଁ। ସାଧୁ, ଚରିତ୍ରବାନ୍, ସଂଯତେନ୍ଦ୍ରିୟ ହେବାକୁ ଆମ୍ଭେମାନେ କେତେ ଶାସ୍ତ୍ରମୁଖରେ ଏବଂ ଜ୍ଞାନୀପୁରୁଷମାନଙ୍କ ମୁଖରେ ଉପଦେଶ ପାଉଅଛୁଁ। କିନ୍ତୁ ପୂର୍ଣ୍ଣ ଆଦର୍ଶର ଅଭାବରୁ ସେ ସବୁ ଉପଦେଶ ଫଳୋପଧାୟକ ହେଉନାହିଁ। ତେଣୁ ମନୁଷ୍ୟଲୋକରେ ଆଦର୍ଶ ଦେଖାଇବା ପାଇଁ ଆଦର୍ଶ ମନୁଷ୍ୟ ରୂପରେ ତାଙ୍କର ଅବତୀର୍ଣ୍ଣ ହେବା ଅବଶ୍ୟକ। ଅନ୍ୟଥା ତାଙ୍କ ସୃଷ୍ଟି ଏହି ମନୁଷ୍ୟ ଲୋକ ଅପୂର୍ଣ୍ଣ ରହିବ। ମହର୍ଷି ବାଲ୍ମୀକି ରାମାୟଣରେ ରାମଚନ୍ଦ୍ରଙ୍କୁ ସର୍ବଗୁଣସମ୍ପନ୍ନ ଏହିପରି ଗୋଟିଏ ଆଦର୍ଶ ମନୁଷ୍ୟ ବୋଲି ଚିତ୍ରିତ କରି ଅଛନ୍ତି। ରାମଚନ୍ଦ୍ର ଭଗବାନଙ୍କର ଅବତାର—ଏହା ଆମ୍ଭେ ବିଶ୍ୱାସ କରୁଁ, ମାତ୍ର ମନୁଷ୍ୟଲୋକରେ କର୍ଣ୍ଣମନରସାୟନ ସେହି ପୁଣ୍ୟ ରାମଚରିତ୍ରର ଆଦ୍ୟଶିଳ୍ପୀ ବାଲ୍ମୀକି ତାଙ୍କୁ ଅବତାର ବୋଲି କୌଣସିଠାରେ କହି ନାହାନ୍ତି। ସମଗ୍ର ରାମାୟଣର ଯେଉଁ ସଂକ୍ଷିପ୍ତ ସୂଚନା ରାମାୟଣର ପ୍ରଥମ-ସର୍ଗରେ ପ୍ରଦତ୍ତ ହୋଇଅଛି, ତହିଁରୁ ଏ ସତ୍ୟହିଁ ସ୍ପଷ୍ଟରୂପେ ପ୍ରତିଭାତ ହୁଏ।

ପାଶ୍ଚାତ୍ୟ ଜଗତରେ ଯେଉଁମାନେ ଅବତାରବାଦରେ ବିଶ୍ୱାସ କରନ୍ତି, ସେମାନେ କହନ୍ତି—ସୂର୍ଯ୍ୟ ପୃଥିବୀର ପ୍ରାଣ, ପୃଥିବୀସ୍ଥ ଜୀବଜଗତ୍ କି ଉଦ୍ଭିଦ-ଜଗତ୍ ସୂର୍ଯ୍ୟରଶ୍ମି ଦ୍ୱାରା ପୁଷ୍ଟ, ବର୍ଦ୍ଧିତ ଓ ଜୀବିତ ଅଛି। ଯେବେ ସେହି ସୂର୍ଯ୍ୟ

ଯେବେ ପ୍ରଚଣ୍ଡ ମାର୍ତ୍ତଣ୍ଡ ମୂର୍ତ୍ତିରେ ଆକାଶରେ ଅବତୀର୍ଣ୍ଣ ହୁଅନ୍ତି ତେବେ ପୃଥିବୀସ୍ଥ ସମସ୍ତ ମନୁଷ୍ୟ, ଜୀବଜନ୍ତୁ, ନଦୀ, ସାଗର, ଅରଣ୍ୟ ମୁହୂର୍ତ୍ତକ ମଧ୍ୟରେ ଭସ୍ମରେ ପରିଣତ ହୋଇଯିବ । ସୂର୍ଯ୍ୟରଶ୍ମି ବାୟୁସ୍ତରରେ ପ୍ରଶମିତ ହୋଇ ସହୃତ ମୂର୍ତ୍ତିରେ ପୃଥିବୀକୁ ଆସୁଥିବାରୁ ଆମ୍ଭେମାନେ ପୃଥିବୀରେ ଜୀବନ୍ତ ରହୁଅଛୁଁ । ଈଶ୍ୱରଙ୍କ ସମ୍ବନ୍ଧରେ ଠିକ୍ ସେହିକଥା । ଈଶ୍ୱରଙ୍କର ମହତ୍ ଐଶ୍ୱର୍ଯ୍ୟ ଏବଂ ପ୍ରଭାବ ଏପରି ପ୍ରଚଣ୍ଡ ଏବଂ ଏପରି ବିରାଟ ଯେ ସାଧାରଣ ମନୁଷ୍ୟ କଥା ଦୂରେ ଥାଉ, ପରମସାଧକ ମହାଯୋଗୀମାନେ ମଧ୍ୟ ସେହି ଅନାବୃତ ଐଶ୍ୱର୍ଯ୍ୟ ଓ ପ୍ରକଟିତ ମହିମାକୁ ଧାରଣ କରିପାରିବେ ନାହିଁ. ସେହି ହେତୁରୁ ଅବତାରରୂପେ ସେ ନିଜର ତେଜ ପ୍ରଶମିତ କରି ଜୀବରାଜ୍ୟରେ ପ୍ରକାଶିତ ହୁଅନ୍ତି ।

ତେବେ ଏଠାରେ ପ୍ରଶ୍ନ ହୋଇପାରେ, ଭଗବାନ୍ ଯେଉଁ ଶରୀର ଧରି ପୃଥିବୀରେ ଅବତୀର୍ଣ୍ଣ ହୁଅନ୍ତି ତାହା କିପରି ଶରୀର ? ଆଚାର୍ଯ୍ୟ ଶଙ୍କର ତାଙ୍କ ଭାଷ୍ୟରେ କହନ୍ତି, ଭଗବାନ୍ ତ୍ରିଗୁଣାତ୍ମିକା ପ୍ରକୃତିକୁ ବଶୀଭୂତ କରି ଅର୍ଥାତ୍ ନିଜ ଅଧୀନ କରି ମାୟାଦ୍ୱାରା ଦେହୀ ହୋଇ ଜନ୍ମଗ୍ରହଣ କରନ୍ତି । ସୁତରାଂ ତାଙ୍କ ମତରେ ଭଗବାନଙ୍କ ଶରୀର ମାୟାଦ୍ୱାରା ନିର୍ମିତ, କିନ୍ତୁ ଶ୍ରୀଧର ସ୍ୱାମୀ କହନ୍ତି, ଭଗବାନ୍ ନିଜର ଶୁଦ୍ଧସତ୍ତ୍ୱାତ୍ମିକା ପ୍ରକୃତିରେ ଅଧିଷ୍ଠାନ କରି ବିଶୁଦ୍ଧ ଊର୍ଜ୍ଜିତ ସତ୍ତ୍ୱ ମୂର୍ତ୍ତିରେ ନିଜ ଇଚ୍ଛାରେ ଅବତୀର୍ଣ୍ଣ ହୁଅନ୍ତି । ଶଙ୍କର ମାୟାବାଦୀ, ସୁତରାଂ ସେ ତାଙ୍କ ସ୍ୱଭାବରେ ଭଗବାନଙ୍କ ମୂର୍ତ୍ତିକୁ ମାୟାମୂର୍ତ୍ତି କହିବା ସ୍ୱାଭାବିକ; କିନ୍ତୁ ଶ୍ରୀଧର ଭକ୍ତାଗ୍ରଣୀ, ତେଣୁ ସେ ଭଗବାନଙ୍କ ମୂର୍ତ୍ତିକୁ ଶୁଦ୍ଧସତ୍ତ୍ୱନିର୍ମିତ ବୋଲି କହିବା ସଙ୍ଗତ । ସେହି ହେତୁରୁ କଥିତ ଅଛି :—

“ଯାଦୃଶୀ ଭାବନା ଯସ୍ୟ ସିଦ୍ଧିର୍ଭବତି ତାଦୃଶୀ”

ଭଗବାନ୍ ମର୍ତ୍ତ୍ୟମଣ୍ଡଳରେ ଯେଉଁ ଶରୀର ପରିଗ୍ରହ କରନ୍ତି ତାହା ମରଣଶୀଳ ଶରୀର— ଏଥିରେ ଦ୍ୱିରୁକ୍ତି ନାହିଁ । ସେ ଶରୀର ସାଧାରଣ ଜୀବ-ଶରୀର ଠାରୁ ଭିନ୍ନ ନୁହେଁ; ତେଣୁ ସାଧାରଣ ଜୀବଭାବରେ ସେ ଏଠାରେ କ୍ରୀଡ଼ା କରନ୍ତି । ପ୍ରୟୋଜନବେଳେ ତାଙ୍କର ସେହି ଶରୀରରେ ଐଶୀଶକ୍ତିର ସମାବେଶ ହୁଏ । ଆମ ଦେଶରେ ‘କାଳସୀ ଲାଗିବା’ କଥା ଅନେକେ ଜାଣନ୍ତି, ଏହାର ପ୍ରକୃତ ତତ୍ତ୍ୱ ବ୍ୟକ୍ତିର ଶରୀରରେ ଐଶୀଶକ୍ତିର ସାମୟିକ ଆବେଶ; ଅବତାରବାଦ ଠିକ୍ ଏହିପରି କଥା ।

ଋଗ୍‌ବେଦର ଦଶମମଣ୍ଡଳରେ ଅମ୍ଭୃଣ ଋଷିଙ୍କ ବାକ୍-ନାମ୍ନୀ ମନ୍ତ୍ରଦ୍ରଷ୍ଟ୍ରୀ କନ୍ୟାଙ୍କର ଯେଉଁ ଉକ୍ତି ଦେଖାଯାଏ ତାହା ‘ଦେବୀସୂକ୍ତ’ ନାମରେ ପରିଚିତ । ଐଶୀଶକ୍ତିର ଆବେଶରେ ସେ ନିଜକୁ ସର୍ବ ଶକ୍ତିମୟୀ ବୋଲି ପରିଚିତ କରାଇ ଅଛନ୍ତି । ତେଣୁ ବୈଦିକ ଯୁଗରୁ ମାନବ ଶରୀରରେ ଐଶୀଶକ୍ତିର ଆବେଶ ଦେଖାଯାଏ । ଏହା କାଳକ୍ରମେ ଏ ଯୁଗରେ ‘କାଳସୀ’ ଭାବରେ ପ୍ରଚଳିତ ।

ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ ।
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ । ୭ ।
ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍ ।
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ । ୮ ।

ଭଗବାନ୍ ଶ୍ରୀକୃଷ୍ଣଙ୍କ ସମ୍ବନ୍ଧରେ ଏହି କଥା ହିଁ ପ୍ରଯୋଜ୍ୟ । ସେ ସାଧାରଣ ମନୁଷ୍ୟ ରୂପରେ ଅବତୀର୍ଣ୍ଣ ହୋଇଥିଲେ; ପ୍ରୟୋଜନ ବେଳେ ଈଶ୍ୱରତ୍ୱ ପ୍ରକାଶ କରୁଥିଲେ ।

୭ । ଅନ୍ୱୟ ଦୀପିକା—[ ହେ ] ଭାରତ ! ଯଦା ଯଦା ( ଯେଉଁ ଯେଉଁ ସମୟରେ ) ଧର୍ମସ୍ୟ ( ଧର୍ମର ), ଗ୍ଲାନିଃ (ହାନି), [ ଏବଂ ] ଅଧର୍ମସ୍ୟ ( ଅଧର୍ମର ) ଅଭ୍ୟୁତ୍ଥାନଂ ( ପ୍ରାଦୁର୍ଭାବ ) ଭବତି ( ହୁଏ ), ତଦା ( ସେହି ସମୟରେ ) ଅହଂ ( ଅମ୍ଭେ ) ଆତ୍ମାନଂ ( ନିଜକୁ, ଆପଣାକୁ ) ସୃଜାମି ( ସୃଷ୍ଟି କରୁଁ ) ।

ଅନୁବାଦ—ହେ ଭାରତ ( ଅର୍ଜୁନ ), ଯେଉଁ ଯେଉଁ ସମୟରେ ଧର୍ମର ଗ୍ଲାନି ହୁଏ ଏବଂ ଅଧର୍ମର ପ୍ରାଦୁର୍ଭାବ ହୁଏ, ସେହି ସମୟରେ ଅମ୍ଭେ ଆପଣାକୁ ସୃଷ୍ଟି କରୁଁ ଅର୍ଥାତ୍ ଦେହ ଧାରଣ କରି ଜନ୍ମଗ୍ରହଣ କରୁଁ ।

ସୁବୋଧିନୀ ଟୀକା—କଦା ସମ୍ଭବସୀତ୍ୟପେକ୍ଷାୟାମାହ—ଯଦା ଯଦେତି । ଗ୍ଲାନିର୍ହାନିଃ । ଅଭ୍ୟୁତ୍ଥାନମାଧିକ୍ୟମ୍ ।

୮ । ଅନ୍ୱୟ ଦୀପିକା—ସାଧୂନାଂ ( ସାଧୁଲୋକମାନଙ୍କର ) ପରିତ୍ରାଣାୟ ( ରକ୍ଷା ପାଇଁ ), ଦୁଷ୍କୃତାଂ ( ଦୁଷ୍ଟମାନଙ୍କର ) ବିନାଶାୟ ( ବିନାଶ ନିମିତ୍ତ ), ଧର୍ମସଂସ୍ଥାପନାର୍ଥାୟ ( ଧର୍ମ ସଂସ୍ଥାପନ ପାଇଁ ) ଯୁଗେ ଯୁଗେ ସମ୍ଭବାମି ( ଯୁଗେ ଯୁଗେ ଅବତୀର୍ଣ୍ଣ ହୋଇ ଥାଉଁ ) ।

ଅନୁବାଦ—ସାଧୁମାନଙ୍କ ରକ୍ଷା କରିବା ପାଇଁ, ଦୁଷ୍ଟମାନଙ୍କୁ ବିନାଶ-କରିବା ପାଇଁ ଏବଂ ଧର୍ମସଂସ୍ଥାପନ କରିବା ପାଇଁ ଅମ୍ଭେ ଯୁଗେ ଯୁଗେ ଅବତାର ଗ୍ରହଣ କରୁଁ ।

ସୁବୋଧିନୀ ଟୀକା—କିମର୍ଥମିତ୍ୟପେକ୍ଷାୟାମାହ—ପରିତ୍ରାଣାୟେତି-ସାଧୂନାଂ ସ୍ୱଧର୍ମବର୍ତ୍ତିନାଂ ରକ୍ଷଣାୟ । ଦୁଷ୍ଟଂ କର୍ମ କୁର୍ବନ୍ତୀତି ଦୁଷ୍କୃତଃ । ତେଷାଂ ବଧାୟ ଚ । ଏବଂ ଧର୍ମସଂସ୍ଥାପନାର୍ଥାୟ ସାଧୁରକ୍ଷଣେନ ଦୁଷ୍ଟବଧେନ ଚ ଧର୍ମଂ ସ୍ଥିରୀକର୍ତ୍ତୁମ୍ । ଯୁଗେ ଯୁଗେ ତତ୍ତଦବସରେ ସମ୍ଭବାମୀତ୍ୟର୍ଥଃ, ନ ଚୈବଂ ଦୁଷ୍ଟନିଗ୍ରହଂ କୁର୍ବତୋଽପି ନୈର୍ଘୃଣ୍ୟଂ ଶଙ୍କନୀୟମ୍ । ଯଥାହୁଃ—ଲାଳନେ ତାଡନେ ମାତୁର୍ନାକାରୁଣ୍ୟଂ ଯଥାର୍ଭକେ, ତଦ୍ବଦେବ ମହେଶସ୍ୟ ନିୟନ୍ତୁ-ର୍ଗୁଣଦୋଷୟୋଃ ।

ବିବୃତି—ଅବତାର ତତ୍ତ୍ୱ—ଏହି ଦୁଇଟି ଶ୍ଳୋକରେ ଭଗବାନଙ୍କ ଅବତାର ଗ୍ରହଣର କାଳ ଓ ଉଦ୍ଦେଶ୍ୟ ବିଷୟ କୁହାଯାଇଅଛି । "ବହୂନି ମେ-ବ୍ୟତୀତାନି···" ଇତ୍ୟାଦି ଶ୍ଳୋକରେ ଭଗବାନ୍ ନିଜର ଅନେକ ଅବତାରର ସୂଚନା ଦେଇଅଛନ୍ତି । ପୌରାଣିକ ଯୁଗରେହିଁ ଏହିସବୁ ଅବତାରର ପ୍ରଚାର । ବୈଦିକ ସାହିତ୍ୟରେ ମତ୍ସ୍ୟ, କୂର୍ମ, ବରାହ, ବାମନ—ଏହି ଚାରିଗୋଟି ଅବତାରର ବର୍ଣ୍ଣନା ଦେଖାଯାଏ । ମହାଭାରତର ନାରାୟଣୀୟ ପର୍ବାଧ୍ୟାୟରେ ଯେଉଁ ଦଶଅବତାରର ବର୍ଣ୍ଣନା ଅଛି, ସେଥିରେ ବୁଦ୍ଧ ଅବତାରର ନାମ ନାହିଁ । ତେଣୁ ମନେହୁଏ ମହାଭାରତ ରଚନାର ପରବର୍ତ୍ତୀକାଳରେ ବୁଦ୍ଧଙ୍କ ଅବତାର । ଗୀତଗୋବିନ୍ଦ ପ୍ରଭୃତି ପରବର୍ତ୍ତୀକାଳର ଗ୍ରନ୍ଥମାନଙ୍କରେ ବୁଦ୍ଧଦେବଙ୍କ ସହିତ ଦଶଅବତାରର ବର୍ଣ୍ଣନା ଦେଖାଯାଏ । ଶ୍ରୀମଦ୍‌ଭାଗବତରେ ଅଛି— 'ଅବତାରା ହ୍ୟସଂଖ୍ୟେୟାଃ'—ଅବତାର ଅନେକ । କପିଳ, ଦତ୍ତାତ୍ରେୟ, ଋଷଭଦେବ, ବ୍ୟାସ ପ୍ରଭୃତିଙ୍କୁ ମଧ୍ୟ ଅବତାର ମଧ୍ୟରେ ଗଣନା କରାଯାଇଅଛି । ଏ ପ୍ରସଙ୍ଗରେ ଭାଗବତକାର ପୁଣି କହିଅଛନ୍ତି:—

"ଏତେ ଚାଂଶକଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ୍ ସ୍ୱୟମ୍" । ଅନ୍ୟ ଅବତାରମାନେ ପରମପୁରୁଷଙ୍କର ଅଂଶ ଓ କଳା, କିନ୍ତୁ କୃଷ୍ଣ ସ୍ୱୟଂ ପରମପୁରୁଷ ।

'ଧର୍ମର ଗ୍ଲାନି ଓ ଅଧର୍ମର ବୃଦ୍ଧି ହେଲେ ଭଗବାନ୍ ଅବତାର ଗ୍ରହଣ କରନ୍ତି । ଏଠାରେ 'ଧର୍ମ' ଶବ୍ଦର ଅର୍ଥ କେବଳ ପାରଲୌକିକ ସଦ୍‌ଗତି ବା ଈଶ୍ୱରପ୍ରାପ୍ତିର ସାଧନ ନ ବୁଝି ମନୁଷ୍ୟର କର୍ତ୍ତବ୍ୟ, ନ୍ୟାୟ ଓ ନୀତି ପ୍ରଭୃତି ସମସ୍ତ ବୁଝିବାକୁ ହେବ । ଅତଏବ ଶ୍ଳୋକ ଦୁଇଟିର ତାତ୍ପର୍ଯ୍ୟ—ଜଗତରେ ଯେତେବେଳେ ଅନ୍ୟାୟ, ଦୁର୍ନୀତି ପ୍ରବଳ ହେବାରୁ ସାଧୁଲୋକମାନେ ଦାରୁଣ ଯାତନା ଭୋଗ କରନ୍ତି ଏବଂ ଦୁଷ୍ଟଲୋକମାନେ ନାନାପ୍ରକାର ଅତ୍ୟାଚାରଦ୍ୱାରା ସତ୍ୟର ଜ୍ୟୋତିକୁ ମ୍ଳାନ କରି ଦିଅନ୍ତି ସେତେବେଳେ ସୁରକ୍ଷିତ ଜଗତର ସୃଷ୍ଟିକୁ ଅକ୍ଷୁଣ୍ଣ ରଖିବାପାଇଁ ଭଗବାନ୍ ତେଜସ୍ୱୀ ପୁରୁଷରୂପରେ ଅବତାର ଗ୍ରହଣକରି ସମାଜର ବିଶୃଙ୍ଖଳ ଅବସ୍ଥାକୁ ସୁଶୃଙ୍ଖଳ କରି ଦିଅନ୍ତି । ଏହାହିଁ ତୃତୀୟ ଅଧ୍ୟାୟରେ ଉକ୍ତ ହୋଇଥିବା 'ଲୋକସଂଗ୍ରହ' । 'ଯୁଗେଯୁଗେ'—ଏହାର ବ୍ୟାଖ୍ୟାରେ ଶ୍ରୀଧର ସ୍ୱାମୀ କହନ୍ତି 'ତତ୍ତଦବସରେ' ଅର୍ଥାତ୍ ସେହିସେହି ସମୟରେ, ଏଥିରୁ ବୁଝାଯାଏ, ଏକଯୁଗରେ ମଧ୍ୟ ଏକାଧିକ ଅବତାର ହୋଇପାରେ ।

ପୁରାଣମାନଙ୍କରେ ବର୍ଣ୍ଣିତ ଦଶଅବତାର ମଧ୍ୟରୁ ଶ୍ରୀରାମ, କୃଷ୍ଣ ଓ ବୁଦ୍ଧ ଅବତାରମାନଙ୍କରେ ଭଗବାନ୍ ମାନବୋଚିତ ଆଦର୍ଶ ପ୍ରଦର୍ଶନ କରି ଯାଇଅଛନ୍ତି । ପାପୀମାନଙ୍କର ବିନାଶ ଏବଂ ବିଶେଷତଃ ସାଧୁମାନଙ୍କର ରକ୍ଷା— ଶ୍ରୀରାମ ଅବତାରର ମୁଖ୍ୟକାର୍ଯ୍ୟ । ସତ୍ୟଧର୍ମର ଉପଦେଶଦ୍ୱାରା ମାନବାତ୍ମାକୁ

ଜନ୍ମ କର୍ମ ଚ ମେ ଦିବ୍ୟମେବଂ ଯୋ ବେତ୍ତି ତତ୍ତ୍ୱତଃ ।
ତ୍ୟକ୍ତ୍ୱା ଦେହଂ ପୁନର୍ଜନ୍ମ ନୈତି ମାମେତି ସୋଽର୍ଜୁନ । ୯ ।

ଦିବ୍ୟଭାବରେ ପ୍ରଣୋଦିତ କରିବା ବୁଦ୍ଧ ଅବତାରର କାର୍ଯ୍ୟ । ଅନ୍ୟାନ୍ୟ ଅବତାରରେ ଅସୁର ବା ପାପୀମାନଙ୍କ ବିନାଶ ଛଡ଼ା ଅନ୍ୟ କାର୍ଯ୍ୟ ଦେଖା ଯାଏନାହିଁ । କିନ୍ତୁ ଶ୍ରୀକୃଷ୍ଣ ଅବତାରରେ (୧) ସାଧୁମାନଙ୍କର ରକ୍ଷା (୨) ପାପୀମାନଙ୍କର ବିନାଶ ଓ (୩) ଧର୍ମ ସଂସ୍ଥାପନ—ସମସ୍ତକାର୍ଯ୍ୟର ମାନବୋଚିତ ଆଦର୍ଶ ପ୍ରଦର୍ଶିତ ହୋଇଅଛି ।

ଦ୍ୱାପରଯୁଗର ଶେଷରେ ଶ୍ରୀକୃଷ୍ଣଙ୍କ ଅବତାର, ସେତେବେଳେ କଂସ, ଜରାସନ୍ଧ, ଶିଶୁପାଳ, ଦୁର୍ଯ୍ୟୋଧନ ପ୍ରଭୃତି ମଦଦୃପ୍ତ ଦୁରନ୍ତ କ୍ଷତ୍ରିୟମାନେ ଭାରତଭୂମିରେ ଘୋର ଅତ୍ୟାଚାର କରୁଥିଲେ । ନାନା କୌଶଳପୂର୍ଣ୍ଣ ମାନବୀ ବୁଦ୍ଧିରେ ଭଗବାନ୍ ଏମାନଙ୍କର ବିନାଶ ସାଧନ କରି ଶାନ୍ତିର ବୈଜୟନ୍ତୀ ଏ ଦେଶର ଆକାଶରେ ଉଡ଼ାଇଥିଲେ । ଏପରିକି ଭବିଷ୍ୟତ୍ ଅଶାନ୍ତି ଆଶଙ୍କାରେ କେଉଁ ଯେଉଁ ଯଦୁବଂଶରେ ଅବତୀର୍ଣ୍ଣ ହୋଇଥିଲେ, ସେହି ବଂଶର ଉଦ୍ଧତ ବୀରମାନଙ୍କର ମଧ୍ୟ ବିନାଶ ସାଧନ କରିଥିଲେ । ବିଶାଳ ସାମ୍ରାଜ୍ୟ ପ୍ରତିଷ୍ଠା ବିନା କୌଣସି ଦେଶରେ ସ୍ଥାୟୀ ଚିରଶାନ୍ତି ପ୍ରତିଷ୍ଠିତ ହୋଇପାରେ ନାହିଁ । ସେତେବେଳେ ଭାରତରେ ଅନେକ କ୍ଷୁଦ୍ର ରାଜ୍ୟଥିଲା, ଶ୍ରୀକୃଷ୍ଣ ସେ ସମସ୍ତ କ୍ଷୁଦ୍ର ରାଜ୍ୟ ଲୋପ କରାଇବା ଉଦ୍ଦେଶ୍ୟରେ ଯୁଧିଷ୍ଠିରଙ୍କ ଦ୍ୱାରା ରାଜସୂୟଯଜ୍ଞର ଆୟୋଜନ କରାଇଥିଲେ । ପ୍ରାଚୀନଯୁଗର ଏହି ରାଜସୂୟ ଯଜ୍ଞ ଏକଛତ୍ର ପ୍ରତୀକ-ସାମ୍ରାଜ୍ୟପ୍ରତିଷ୍ଠାଭିନ୍ନ ଅନ୍ୟ କିଛି ନ ଥିଲା । 'ଧର୍ମରାଜ୍ୟରେ' ଶାନ୍ତିର ସ୍ଥାୟିତ୍ୱ ହୃଦୟଙ୍ଗମ କରି ଶେଷରେ ସେ ତାଙ୍କ ଅବତାରର ଶ୍ରେଷ୍ଠ କର୍ତ୍ତବ୍ୟ ସନାତନ ଧର୍ମର ପୁନଃ ସଂସ୍ଥାପନ କରି ଯିବା ପାଇଁ ଏହି ଗୀତାଧର୍ମ ପ୍ରଚାର କରିଗଲେ; ପ୍ରାୟ ପାଞ୍ଚ ହଜାର ବର୍ଷ ହେଲା ଏହି ସାର୍ବଜନୀନ ଧର୍ମର ଅମ୍ଳାନଜ୍ୟୋତି ଏ ଦେଶର ମନୀଷୀମାନଙ୍କ ହୃଦୟକୁ ଆଲୋକିତ କରୁ ଅଛି ।

୯ । ଅନ୍ୱୟଦୀପିକା—ଅର୍ଜ୍ଜୁନ ! ( ହେ ଅର୍ଜ୍ଜୁନ ), ଯଃ ( ଯେ ) ମେ ( ଆମର ) ଏବଂ ( ଏହିପରି ) ଦିବ୍ୟଂ ଜନ୍ମ କର୍ମ ଚ ( ଅଲୌକିକ ଜନ୍ମ ଓ କର୍ମ ) ତତ୍ତ୍ୱତଃ ( ସ୍ୱରୂପତଃ ) ବେତ୍ତି ( ଜାଣନ୍ତି ), ସଃ ( ସେ ) ଦେହଂ ତ୍ୟକ୍ତ୍ୱା ( ଶରୀର ତ୍ୟାଗକରି ) ପୁନଃ ଜନ୍ମ ( ପୁନର୍ବାର ଜନ୍ମ ) ନ ଏତି ( ପ୍ରାପ୍ତ ହୁଅନ୍ତି ନାହିଁ ); [ କିନ୍ତୁ ] ମାମ୍ ( ଆମ୍ଭଙ୍କୁହିଁ ) ଏତି ( ପ୍ରାପ୍ତହୁଅନ୍ତି ) ।

ଅନୁବାଦ—ହେ ଅର୍ଜ୍ଜୁନ ! ଆମ୍ଭର ଏହି ଦିବ୍ୟ ଜନ୍ମ ଓ ଅଲୌକିକ କର୍ମର ବିବରଣ ଯେ ତତ୍ତ୍ୱତଃ ଜାଣନ୍ତି, ସେ ଦେହତ୍ୟାଗ କରି ଆଉ ପୁନର୍ଜନ୍ମ ପ୍ରାପ୍ତ ହୁଅନ୍ତି ନାହିଁ, କିନ୍ତୁ ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି ।

ବୀତରାଗଭୟକ୍ରୋଧା ମନ୍ମୟା ମାମୁପାଶ୍ରିତାଃ ।
ବହବୋ ଜ୍ଞାନତପସା ପୂତା ମଦ୍ଭାବମାଗତାଃ । ୧୦ ।

ସୁବୋଧିନୀ ଟୀକା—ଏବଂବିଧାନାମୀଶ୍ୱରଜନ୍ମକର୍ମଣାଂ ଜ୍ଞାନେ ଫଲମାହ—ଜନ୍ମେତି । ସ୍ୱେଚ୍ଛୟାକୃତଂ ମମ ଜନ୍ମ କର୍ମ ଚ ଧର୍ମପାଳନରୂପଂ ଦିବ୍ୟମଲୌକିକଂ ତତ୍ତ୍ୱତଃ ପରାନୁଗ୍ରହାର୍ଥମେବେତି ଯୋ ବେତ୍ତି । ସ ଦେହାଭିମାନଂ ତ୍ୟକ୍ତ୍ୱା ପୁନର୍ଜନ୍ମ ସଂସାରଂ ନୈତି ନ ପ୍ରାପ୍ନୋତି, କିନ୍ତୁ ମାମେବ ପ୍ରାପ୍ନୋତି ।

ବକ୍ତବ୍ୟ—ସାଧାରଣତଃ ପ୍ରାକୃତ ଲୋକମାନଙ୍କର ଜନ୍ମ କର୍ମ-ଫଳରେ ହୁଏ, କିନ୍ତୁ ଭଗବାନଙ୍କର ଜନ୍ମ ନିଜ ଇଚ୍ଛାରେ, ତେଣୁ ତାହା ଅପ୍ରାକୃତ । ସେ ଅଜ ଅର୍ଥାତ୍ ଜନ୍ମରହିତ ହୋଇ ମଧ୍ୟ ଲୋକମାନଙ୍କର କଲ୍ୟାଣକାମନାରେ ଦେହ ଧାରଣ କରନ୍ତି ଓ କର୍ମ କରନ୍ତି—ଏହି ତତ୍ତ୍ୱ ବିଶ୍ୱାସପୂର୍ବକ ଜାଣିପାରିଲେ ମନୁଷ୍ୟର ପରମଗତି ଲାଭ ହୁଏ ।

( ପରବର୍ତ୍ତୀ ଶ୍ଳୋକର ବକ୍ତବ୍ୟ ଦ୍ରଷ୍ଟବ୍ୟ )

୧୦ । ଅନ୍ୱୟଦୀପିକା—ବୀତରାଗଭୟକ୍ରୋଧାଃ ( ଯାହାଙ୍କର ବିଷୟରେ ଅନୁରାଗ, ଭୟ ଏବଂ କ୍ରୋଧ ଦୂର ହୋଇଅଛି ) ମନ୍ମୟାଃ ( ଯେଉଁମାନେ ଆମ୍ଭଠାରେ ଚିତ୍ତସମର୍ପଣ କରି ଥାଆନ୍ତି ), [ ଏପରି ] ବହବଃ ( ବହୁଲୋକ ) ମାମ୍ ଉପାଶ୍ରିତାଃ ( ଆମ୍ଭଙ୍କୁ ଆଶ୍ରୟ କରି ) ଜ୍ଞାନତପସା ପୂତାଃ ( ଜ୍ଞାନରୂପ ତପସ୍ୟା ଦ୍ୱାରା ପବିତ୍ର ହୋଇ ) ମଦ୍ଭାବମ୍ ଆଗତାଃ ( ଆମ୍ଭ ପ୍ରକୃତି ବା ଭଗବତ୍‌ପ୍ରକୃତି ) ପ୍ରାପ୍ତାଃ ( ଲାଭ କରି ଅଛନ୍ତି ) ।

ଅନୁବାଦ—ବିଷୟାନୁରାଗ, ଭୟ ଏବଂ କ୍ରୋଧ ବର୍ଜନ କରି ଆମ୍ଭଠାରେ ଏକାଗ୍ରଚିତ୍ତ ଓ ଆମ୍ଭର ଶରଣାପନ୍ନ ହୋଇ ଏବଂ ଆମ୍ଭର ଜନ୍ମ-କର୍ମର ତତ୍ତ୍ୱ ଆଲୋଚନାରୂପ ଜ୍ଞାନମୟ ତପସ୍ୟା ଦ୍ୱାରା ପବିତ୍ର ହୋଇ ଅନେକ ଲୋକ ଆମ୍ଭ ପ୍ରକୃତି ଲାଭ କରିଅଛନ୍ତି ବା ଆମ୍ଭ ସ୍ୱରୂପରେ ଆସି ମିଳିତ ହୋଇ ଅଛନ୍ତି ।

ସୁବୋଧିନୀ ଟୀକା—କଥଂ ଜନ୍ମକର୍ମଜ୍ଞାନେନ ତ୍ୱତ୍ପ୍ରାପ୍ତିଃ ସ୍ୟାଦିତି ? ଅତ ଆହ ବୀତରାଗେତି—ଅହଂ ଶୁଦ୍ଧସତ୍ତ୍ୱାବତାରୈର୍ଧର୍ମପାଳନଂ କରୋମୀତି ମଦୀୟଂ ପରମକାରୁଣିକତ୍ୱଂ ଜ୍ଞାତ୍ୱା । ବୀତା ବିଗତା ରାଗଭୟକ୍ରୋଧା ଯେଭ୍ୟସ୍ତେ । ଚିତ୍ତବିକ୍ଷେପାଭାବାନ୍ମନ୍ମୟା ମଦେକଚିତ୍ତା ଭୂତ୍ୱା ମାମେବୋପାଶ୍ରିତାଃ ସନ୍ତଃ । ମତ୍ ପ୍ରସାଦଲବ୍ଧଂ ଯଦାତ୍ମଜ୍ଞାନଂ ଚ ତପଶ୍ଚ । ତତ୍ପରିପାକହେତୁଃ ସ୍ୱଧର୍ମଃ, ତୟୋର୍ଦ୍ୱନ୍ଦ୍ୱୈକବଦ୍ଭାବଃ, ତେନ ଜ୍ଞାନତପସା ପୂତାଃ ଶୁଦ୍ଧା ନିରସ୍ତାଜ୍ଞାନତତ୍କାର୍ଯ୍ୟମଲାଃ । ମଦ୍ଭାବଂ ମତ୍ସାଯୁଜ୍ୟଂ ପ୍ରାପ୍ତା ବହବଃ । ନ ତ୍ୱଧୁନୈବ

ପ୍ରବୃତ୍ତୋଽୟଂ  ମଦ୍‌ଭକ୍ତିମାର୍ଗଃ ଇତ୍ୟର୍ଥଃ । ତଦେବଂ ତା ନ୍ୟସ୍ତଂ ବେଦ ସର୍ବାଣୀ-ତ୍ୟାଦିନା ବିଦ୍ୟାବିଦ୍ୟୋପାଧିଭ୍ୟାଂ ତତ୍ତ୍ୱଂ ପଦାର୍ଥାବୀଶ୍ୱରଜୀବୌ ପ୍ରଦର୍ଶ୍ୟେଶ୍ୱରସ୍ୟ ଜୀବସ୍ୟାଭେଦେନ ନିତ୍ୟଶୁଦ୍ଧତ୍ୱାଦ୍ଦୀବସ୍ୟ ଚେଶ୍ୱର ପ୍ରସାଦଲବ୍ଧଜ୍ଞାନେନାଜ୍ଞାନ ନିବୃତ୍ତେଃ ଶୁଦ୍ଧସ୍ୟ ସଚ୍ଚିଦଂଶେନ ତଦୈକ୍ୟମୁକ୍ତମିତି ଦ୍ରଷ୍ଟବ୍ୟମ୍ ।

ବିବୃତି—ନବମ ଓ ଦଶମ-ଏହି ଦୁଇ ଶ୍ଳୋକରେ 'ଭଗବାନ୍ କହୁଅଛନ୍ତି—ଯେଉଁମାନେ ଆମ୍ଭ ଜନ୍ମ ଏବଂ କର୍ମର ତତ୍ତ୍ୱ ଉତ୍ତମରୂପେ ବୁଝିଅଛନ୍ତି, ସେମାନେ 'ଆମ୍ଭଠାରେ ଏକାଗ୍ରଚିତ୍ତ ହୋଇ ଶେଷରେ ଆମ୍ଭର ସାଯୁଜ୍ୟ ଲାଭ କରନ୍ତି ବା ମୁକ୍ତିର ଅଧିକାରୀ ହୁଅନ୍ତି । ଭଗବାନଙ୍କର ଜନ୍ମ ଓ କର୍ମର ତତ୍ତ୍ୱ ଜାଣିଲେ କାହିଁକି ମନୁଷ୍ୟ ଭଗବତ୍‌ପଦାରବିନ୍ଦ ଲାଭକରେ ? ଏହି ପ୍ରଶ୍ନର ଉତ୍ତର ଏ ଦୁଇ ଶ୍ଳୋକରେ ଦିଆ ଯାଇଅଛି । ତୃତୀୟ ଅଧ୍ୟାୟରୁ ଏପର୍ଯ୍ୟନ୍ତ ଭଗବାନ୍ ନିଷ୍କାମ କର୍ମଯୋଗସମ୍ବନ୍ଧରେ ଉପଦେଶ ଦେଉ ଅଛନ୍ତି । ଏଥି ମଧ୍ୟରେ ଏ ଅବତାରତତ୍ତ୍ୱର ଅବତାରଣା ବା କାହିଁକି ? ସହସ୍ର ଉପଦେଶ ଶୁଣିଲେ ମନୁଷ୍ୟର ଯେଉଁ ଜ୍ଞାନ ହୁଏ ନାହିଁ, ଗୋଟିଏ ଆଦର୍ଶ ଦେଖିଲେ ତାଠାରୁ ଅଧିକ ଜ୍ଞାନ ଲାଭ ହୁଏ । ଭଗବାନ୍ ଜନ୍ମରହିତ, ନିତ୍ୟ, ଅବ୍ୟକ୍ତ ହେଲେହେଁ ଲୋକକଲ୍ୟାଣକାମନାରେ ମରଣଶୀଳ ଶରୀର ଧାରଣ କରି ଯେଉଁ ଆଦର୍ଶ ପ୍ରଦର୍ଶନ କରନ୍ତି, ତତ୍ତ୍ୱଦୃଷ୍ଟିରେ ଏହା ଜାଣି ପାରିଲେ, ମନୁଷ୍ୟର ଅଧ୍ୟାତ୍ମଜ୍ଞାନ ପୂର୍ଣ୍ଣତା ପ୍ରାପ୍ତ ହୁଏ । ଏହି ଅଧ୍ୟାତ୍ମଜ୍ଞାନବଳରେ ମନୁଷ୍ୟର ଚିତ୍ତ ଭଗବାନଙ୍କଠାରେ ଏକାଗ୍ର ହୁଏ, ତେଣୁ କାର୍ଯ୍ୟତଃ ତାହାର ବିଷୟାସକ୍ତି, ଭୟ ଓ କ୍ରୋଧ ଦୂର ହୋଇଯାଏ ଏବଂ ପରିଣାମରେ ସେ ମୁକ୍ତିର ଅଧିକାରୀ ହୁଏ । ଈଶ୍ୱରପରାୟଣତା ଦୃଢ଼ ନ ହେଲେ ନିଷ୍କାମ କର୍ମଯୋଗର ଅନୁଷ୍ଠାନ ହୋଇପାରେ ନାହିଁ । ଭଗବାନ୍ ଯେଉଁ ଯେଉଁ କର୍ମ କରନ୍ତି ସେ ସବୁ ନିଷ୍କାମ; ତତ୍ତ୍ୱଦୃଷ୍ଟିରେ ସେ ସବୁ ଆଲୋଚନା କଲେ ମନୁଷ୍ୟର ନିର୍ଲିପ୍ତ ଭାବରେ କର୍ମ କରିବାର ପ୍ରବୃତ୍ତି ଉଦ୍‌ବୁଦ୍ଧ ହୋଇ ଉଠେ ଏବଂ ନିଜମଧ୍ୟରେ ସେ ଦିବ୍ୟ ପ୍ରେରଣା ଅନୁଭବ କରି ଜୀବନକୁ ଦେବଭାବରେ ଗଠନ କରିବାରେ ଲାଗିଯାଏ । ମୋଟରେ ବୁଝିଲେ ଲୋକସଂଗ୍ରହହିଁ ଭଗବାନଙ୍କର ଅବତାର ଧାରଣର ଅନ୍ୟତମ ହେତୁ । ସେହି ଲୋକସଂଗ୍ରହ ବା ଲୋକଶିକ୍ଷା ପାଇଁ ସଂସାରରେ କି ଆତ୍ମଜ୍ଞାନୀ କି ଯୋଗୀ ସମସ୍ତଙ୍କୁ ନିର୍ଲିପ୍ତ ଭାବରେ କର୍ମ କରିବାକୁ ହେବ ।

ଏହି ଜନ୍ମ କର୍ମର ତତ୍ତ୍ୱ ବୁଝି ପାରିଲେ ମନୁଷ୍ୟ ଭଗବତ ଜୀବନ ଲାଭକରି କୃତାର୍ଥ ହୋଇଯାଏ । ଅନ୍ୟ ସାଧନା ତା ପକ୍ଷରେ ପ୍ରୟୋଜନୀୟ ହୁଏ ନାହିଁ ।

. ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍ ।
ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ । ୧୧ ।

୧୧ । ଅନ୍ୱୟଦୀପିକା—ପାର୍ଥ (ହେ ଅର୍ଜୁନ) ଯେ (ଯେଉଁମାନେ) ଯଥା (ଯେଉଁଭାବରେ) ମାଂ ପ୍ରପଦ୍ୟନ୍ତେ (ଆମ୍ଭର ଉପାସନା କରନ୍ତି), ଅହଂ (ଆମ୍ଭେ) ତାନ୍ (ସେମାନଙ୍କୁ) ତଥାଏବ (ସେହିଭାବରେହିଁ) ଭଜାମି (ଅନୁଗ୍ରହ କରୁଁ) । ମନୁଷ୍ୟାଃ (ମନୁଷ୍ୟମାନେ) ସର୍ବଶଃ (ସବୁପ୍ରକାରେ) ମମ ବର୍ତ୍ମ (ଅମ୍ଭ ମାର୍ଗକୁ) ଅନୁବର୍ତ୍ତନ୍ତେ (ଅନୁସରଣ କରନ୍ତି) ।

ଅନୁବାଦ—ହେ ପାର୍ଥ । ଯେଉଁମାନେ ଅମ୍ଭଙ୍କୁ ଯେଉଁଭାବରେ ଉପାସନା କରନ୍ତି, ଅମ୍ଭେ ତାଙ୍କୁ ସେହି ଭାବରେହିଁ ଅନୁଗ୍ରହ କରିଥାଉଁ । ମନୁଷ୍ୟମାନେ ସବୁପ୍ରକାରେ ଅମ୍ଭ ପଥରହିଁ ଅନୁସରଣ କରି ଥାଆନ୍ତି ଅର୍ଥାତ୍ ମନୁଷ୍ୟମାନେ ଯେ କୌଣସି ପଥ ଅନୁସରଣ କରନ୍ତୁ, ସବୁ ପଥରେ ଅମ ପାଖରେ ପହଞ୍ଚନ୍ତି ।

ସୁବୋଧିନୀ ଟୀକା—ନନୁ ତର୍ହି କିଂ ତ୍ୱୟ୍ୟପି ବୈଷମ୍ୟମସ୍ତି ? ଯସ୍ମାଦେବଂ ତ୍ୱଦେକଶରଣାନାମେବାତ୍ମଭାବଂ ଦଦାସି । ନାନ୍ୟେଷାଂ ସକାମାନାମିତି । ଅତ ଆହ—ଯ ଇତି । ଯଥା ଯେନ ପ୍ରକାରେଣ ସକାମତୟା ନିଷ୍କାମତୟା ବା ଯେ ମାଂ ଭଜନ୍ତେ । ତାନହଂ ତଥୈବ ତଦପେକ୍ଷିତଫଲଦାନେନ, ଭଜାମ୍ୟନୁଗୃହ୍ଣାମି । ନ ତୁ ସକାମା ମାଂ ବିହାୟେନ୍ଦ୍ରାଦୀନେବ ଯେ ଭଜନ୍ତେ ତାନହମୁପେକ୍ଷ ଇତି ମନ୍ତବ୍ୟମ୍ । ଯତଃ ସର୍ବଶଃ ସର୍ବପ୍ରକାରୈରିନ୍ଦ୍ରାଦିସେବକା ଅପି ମମୈବ ବର୍ତ୍ମ ଭଜନମାର୍ଗମନୁବର୍ତ୍ତନ୍ତେ ଇନ୍ଦ୍ରାଦିରୂପେଣାପି ମମୈବ ସେବ୍ୟତ୍ୱାତ୍ ।

ବକ୍ତବ୍ୟ—ଏପର୍ଯ୍ୟନ୍ତ ଭଗବାନ୍ ନାନାଭାବରେ ନିଷ୍କାମକର୍ମୀମାନଙ୍କୁ ପ୍ରଶଂସା କରି କହିଅଛନ୍ତି ଯେ, ସେମାନେ ଅମ୍ଭର ସମ୍ପୂର୍ଣ୍ଣ ଅନୁଗ୍ରହ ଲାଭକରି ଶେଷରେ ମୁକ୍ତିର ଅଧିକାରୀ ହୁଅନ୍ତି; ସକାମକର୍ମୀମାନଙ୍କ ସମ୍ବନ୍ଧରେ କିଛିମାତ୍ର କହି ନାହାନ୍ତି । କିନ୍ତୁ ସଂସାରରେ ଲୋକେ ନାନାଭାବରେ ଉପାସନା କରନ୍ତି । କେହି ସକାମଭାବରେ, କେହି ନିଷ୍କାମଭାବରେ, କେହି ସାକାରଭାବରେ, କେହି ନିରାକାରଭାବରେ ଈଶ୍ୱରଙ୍କୁ ଡାକନ୍ତି । କେହି ଏକମାତ୍ର ଈଶ୍ୱରଙ୍କ ଉପାସନା କରନ୍ତି, କେହି ବିଭିନ୍ନ ଦେବତାଙ୍କର ଉପାସନା କରନ୍ତି । କୌଣସି କୌଣସି ଜାତି ଭୂତପ୍ରେତଙ୍କର, କେହି ବା ପିତୃପୁରୁଷଙ୍କର ଉପାସନା କରନ୍ତି । କେହି ବୃକ୍ଷର କେହି ବା ପ୍ରସ୍ତରଖଣ୍ଡର ଉପାସନା କରନ୍ତି । ଏପରି ଅବସ୍ଥାରେ ଭଗବାନ୍ କେବଳ ନିଷ୍କାମକର୍ମୀମାନଙ୍କୁ ଅନୁଗ୍ରହ କରନ୍ତି—ଏହା କହିଲେ ଭଗବାନଙ୍କଠାରେ ପକ୍ଷପାତିତା ଦୋଷ ଆରୋପିତ ହୁଏ । ସେଥିପାଇଁ ଭଗବାନ୍

କାଂକ୍ଷନ୍ତଃ କର୍ମଣାଂ ସିଦ୍ଧିଂ ଯଜନ୍ତ ଇହ ଦେବତାଃ ।
କ୍ଷିପ୍ରଂ ହି ମାନୁଷେ ଲୋକେ ସିଦ୍ଧିର୍ଭବତି କର୍ମଜା । ୧୨ ।

ଏ ଶ୍ଳୋକରେ କହୁଅଛନ୍ତି, ଯେ ଅମ୍ଭଙ୍କୁ ଯେଉଁଭାବରେ ଉପାସନା କରନ୍ତି, ଅମ୍ଭେ ତାଙ୍କୁ ସେହିଭାବରେ ସନ୍ତୁଷ୍ଟ କରଉଁ । ଅନ୍ତଃକରଣରୁ ଶୁଦ୍ଧଚିତ୍ତ ଏକନିଷ୍ଠଭାବରେ ଉପାସନା କଲେ ସବୁ ଅବସ୍ଥାରେ ମନୁଷ୍ୟ ଯେ ତାଙ୍କର ଅନୁଗ୍ରହ ଲାଭ କରିପାରିବ, ଏହାହିଁ ଏ ଶ୍ଳୋକର ଭାବ । ସେ ଭକ୍ତବାଞ୍ଛାକଳ୍ପତରୁ, କରୁଣାମୟ, ଭାବଗ୍ରାହୀ—ଏହା ଯଦି ସତ୍ୟ, ତେବେ ସର୍ବଭାବରେ ସେ ଭକ୍ତର ବାଞ୍ଛା ପୂର୍ଣ୍ଣ କରନ୍ତି—ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ଏହି ଭାବାତ୍ମକ ଅନେକ କଥା ପରବର୍ତ୍ତୀ ଅଧ୍ୟାୟମାନଙ୍କରେ ଭଗବାନଙ୍କ ଶ୍ରୀମୁଖରୁ ନିଃସୃତ ହୋଇଅଛି ।

ପୃଥିବୀରେ ନାନାବିଧ ଧର୍ମମତ ପ୍ରଚଳିତ ଅଛି । ପ୍ରତ୍ୟେକ ଧର୍ମାବଲମ୍ବୀ ନିଜ ନିଜ ଧର୍ମକୁ ଏକମାତ୍ର ଈଶ୍ୱର ପ୍ରାପ୍ତିର ସାଧନ ମନେକରି ଅନ୍ୟ ଧର୍ମକୁ ନିନ୍ଦା କରନ୍ତି; ଏପରିକି ଆମ ହିନ୍ଦୁଧର୍ମରେ ଶୈବ, ଶାକ୍ତ, ଗାଣପତ୍ୟ, ବୈଷ୍ଣବ-ପ୍ରଭୃତି ଧର୍ମମତମାନଙ୍କର ଓ ଅଦ୍ୱୈତ, ଦ୍ୱୈତ, ବିଶିଷ୍ଟାଦ୍ୱୈତ, ସାଂଖ୍ୟପ୍ରଭୃତି ଦାର୍ଶନିକ ମତବାଦମାନଙ୍କର ପରସ୍ପର ନିନ୍ଦା. ସେହି ସେହି ମତବାଦୀମାନଙ୍କର ଅଜ୍ଞିମତ୍ତାଗତ ପରି ମନେହୁଏ; କିନ୍ତୁ ଭଗବାନ୍ ଏହି ଗୋଟିଏ ଶ୍ଳୋକରେ ସେ ସମସ୍ତର ସାମଞ୍ଜସ୍ୟ ବିଧାନ କରି ଅଛନ୍ତି; ଏହାହିଁ ହିନ୍ଦୁଧର୍ମର ପ୍ରକୃତ ତତ୍ତ୍ୱ । ସମୁଦ୍ରହିଁ ସମସ୍ତ ନଦୀର ଆଶ୍ରୟ ସ୍ଥଳ; କୌଣସି ନଦୀ ସରଳ ପଥରେ ଯାଇ ସମୁଦ୍ରରେ ମିଶିଅଛି, କୌଣସି ନଦୀ କୁଟିଳ ପଥରେ ସମୁଦ୍ରରେ ମିଶିଅଛି—ଏତିକି ମାତ୍ର ପ୍ରଭେଦ । ତେଣୁ ଏହି ଗୀତୋକ୍ତ ଧର୍ମପରି ଉଦାର ଧର୍ମ ପୃଥିବୀରେ ଅନ୍ୟତ୍ର ନାହିଁ ଏବଂ ଏହି ଶ୍ଳୋକଟି ପରି ଉଦାର ମହାବାକ୍ୟ ଅନ୍ୟ ଧର୍ମରେ ନାହିଁ ।

୧୨ । ଅନ୍ୱୟଦୀପିକା—ଇହ (ଏହି ସଂସାରରେ) କର୍ମଣାଂ (କର୍ମମାନଙ୍କର) ସିଦ୍ଧିଂ (ସିଦ୍ଧି) କାଙ୍କ୍ଷନ୍ତଃ (ଆକାଙ୍କ୍ଷାକାରୀ ଲୋକମାନେ) ଦେବତାଃ (ଦେବତାମାନଙ୍କୁ) ଯଜନ୍ତେ (ପୂଜା କରନ୍ତି) । ହି (ଯେହେତୁ) ମାନୁଷେ ଲୋକେ (ମନୁଷ୍ୟଲୋକରେ) କର୍ମଜା ସିଦ୍ଧି (କର୍ମଜନିତ ସିଦ୍ଧିଲାଭ ବା ଫଳପ୍ରାପ୍ତି) କ୍ଷିପ୍ରଂ ଭବତି (ଶୀଘ୍ରହୁଏ) ।

ଅନୁବାଦ—ଏ ସଂସାରରେ ଯେଉଁମାନେ କର୍ମର ଫଳ କାମନା କରନ୍ତି, ସେମାନେ ଦେବତାମାନଙ୍କର ପୂଜା କରନ୍ତି, କାରଣ କର୍ମଜନିତ ଫଳଲାଭ ଶୀଘ୍ର ମିଳେ ।

ଚାତୁର୍ବର୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମବିଭାଗଶଃ ।
ତସ୍ୟ କର୍ତ୍ତାରମପି ମାଂ ବିଦ୍ଧ୍ୟକର୍ତ୍ତାରମବ୍ୟୟମ୍ । ୧୩ ।

**ସୁବୋଧିନୀ ଟୀକା**—ତର୍ହି ମୋକ୍ଷାର୍ଥମେବ କିମିତି ସର୍ବେ ତ୍ୱାଂ ନ ଭଜନ୍ତୀତି ? ଅତ ଆହ—କାଙ୍କ୍ଷନ୍ତ ଇତି । କର୍ମଣାଂ ସିଦ୍ଧିଂ କର୍ମଫଳଂ କାଙ୍କ୍ଷନ୍ତଃ ପ୍ରାୟେଣେହ ମନୁଷ୍ୟଲୋକେ ଇନ୍ଦ୍ରାଦିଦେବତା ଏବ ଯଜନ୍ତେ । ନ ତୁ ସାକ୍ଷାନ୍ମାମେବ । ହି ଯସ୍ମାତ୍ କର୍ମଜା ସିଦ୍ଧିଃ କର୍ମଜଂ ଫଳଂ ଶୀଘ୍ରଂ ଭବତି । ନ ତୁ ଜ୍ଞାନଫଳଂ କୈବଲ୍ୟମ୍ । ଦୁଷ୍ପ୍ରାପ୍ୟତ୍ୱାଜ୍ଜ୍ଞାନସ୍ୟ ।

**ବିବୃତି**—ଭଗବାନ୍ ସର୍ବଦେବମୟ ଏବଂ ସର୍ବେଶ୍ୱର । ଏପରି ଅବସ୍ଥାରେ ଲୋକେ ତାଙ୍କର ପୂଜା ନ କରି କାହିଁକି ଅନ୍ୟଦେବତାମାନଙ୍କର ପୂଜା କରନ୍ତି ? ପରମେଶ୍ୱରଙ୍କ ଉପାସନାର ପ୍ରକୃତ ଫଳ ମୋକ୍ଷ, ଦୀର୍ଘ ଚେଷ୍ଟା ଓ ଏକାନ୍ତ ଉପାସନା ଫଳରେ କର୍ମବନ୍ଧନ ସମ୍ପୂର୍ଣ୍ଣ ନଷ୍ଟ ନ ହେଲେ ମୋକ୍ଷପ୍ରାପ୍ତି ହୁଏନାହିଁ, କିନ୍ତୁ ଏହିଳି ଧୈର୍ଯ୍ୟଶୀଳ ଲୋକ ସଂସାରରେ ଅଳ୍ପ । ସାଧାରଣ ଲୋକେ ଭୋଗବାସନାରେ ନିରନ୍ତର ବ୍ୟାକୁଳ । ପୁତ୍ରପ୍ରାପ୍ତି, ଧନପ୍ରାପ୍ତି ଓ ଶତ୍ରୁବିନାଶପାଇଁ ଲୋକେ ଏ ସଂସାରରେ ଯାଗଯଜ୍ଞାଦି ସକାମକର୍ମ କରିବାରେ ସର୍ବଦା ଚେଷ୍ଟା କରନ୍ତି ଏବଂ ସାଙ୍ଗେ ସାଙ୍ଗେ ତାହାର ଫଳ ମଧ୍ୟ ଲାଭ କରନ୍ତି । ଯାହା ସହଜଲଭ୍ୟ ତାହାହିଁ ସମସ୍ତେ ଇଚ୍ଛା କରନ୍ତି । ନିଷ୍କାମକର୍ମର ଫଳ ସ୍ଥାୟୀ, କିନ୍ତୁ ସକାମକର୍ମର ଫଳ ଅସ୍ଥାୟୀ—ଏହାପରେ ସପ୍ତମ ଅଧ୍ୟାୟରେ ଆଲୋଚିତ ହେବ । ଏହିପରି ସକାମକର୍ମ ମଧ୍ୟ ପରୋକ୍ଷଭାବରେ ଈଶ୍ୱରଙ୍କ ପୂଜା; ଏହି ସକାମପୂଜା କ୍ରମେ ନିଷ୍କାମ ଭକ୍ତିରେ ପରିଣତ ହୋଇ ମୋକ୍ଷପ୍ରଦ ହୁଏ ।

୧୩ । **ଅନ୍ୱୟଦୀପିକା**—ମୟା (ଆମ୍ଭଦ୍ୱାରା) ଗୁଣକର୍ମବିଭାଗଶଃ (ଗୁଣକର୍ମବିଭାଗ ଅନୁସାରେ) ଚାତୁର୍ବର୍ଣ୍ୟଂ (ଚାରିବର୍ଣ୍ଣ) ସୃଷ୍ଟଂ (ସୃଷ୍ଟ ହୋଇଅଛି), ତସ୍ୟ (ତାହାର) କର୍ତ୍ତାରମ୍ ଅପି (କର୍ତ୍ତା ହେଲେ ମଧ୍ୟ) ଅବ୍ୟୟଂ (ଅବିକାରୀ) ଅକର୍ତ୍ତାରଂ (ଅକର୍ତ୍ତା) [ବୋଲି] ମାଂ (ଆମ୍ଭକୁ) ବିଦ୍ଧି (ଜାଣ) ।

**ଅନୁବାଦ**—(ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର) ଏହି ଚାରିବର୍ଣ୍ଣକୁ ଆମ୍ଭେ ଗୁଣକର୍ମ ବିଭାଗ ଅନୁସାରେ ସୃଷ୍ଟି କରିଅଛୁଁ । ଆମ୍ଭେ ଏ ସବୁର ସୃଷ୍ଟିକର୍ତ୍ତା ହେଲେହେଁ ଆମ୍ଭକୁ ଅକର୍ତ୍ତା ଓ ବିକାରରହିତ ବୋଲି ଜାଣ ।

**ସୁବୋଧିନୀ ଟୀକା**—ନନୁ କେଚିତ୍ ସକାମତୟା ପ୍ରବର୍ତ୍ତନ୍ତେ, କେଚିନ୍ନିଷ୍କାମତୟା । ଇତି କର୍ମବୈଚିତ୍ର୍ୟମ୍ । ତତ୍କର୍ତ୍ତୄଣାଂ ଚ ବ୍ରାହ୍ମଣାଦୀନାମୁତ୍ତମମଧ୍ୟମାଦିବୈଚିତ୍ର୍ୟଂ କୁର୍ବତସ୍ତବ କଥଂ ବୈଷମ୍ୟଂ ନାସ୍ତି ? ଇତ୍ୟାଶଙ୍କ୍ୟାହ ଚାତୁର୍ବର୍ଣ୍ୟମିତି । ଚତ୍ୱାରୋ ବର୍ଣ୍ଣା ଏବେତି ଚାତୁର୍ବର୍ଣ୍ୟମ୍ । ସ୍ୱାର୍ଥେ ଷ୍ୟଞ୍ପ୍ରତ୍ୟୟଃ

**ଅନ୍ୱୟାର୍ଥଃ**—ସତ୍ତ୍ୱପ୍ରଧାନାଃ ବ୍ରାହ୍ମଣାଃ । ତେଷାଂ ଶମଦମାଦୀନି କର୍ମାଣି । ସତ୍ତ୍ୱରଜଃ-ପ୍ରଧାନାଃ କ୍ଷତ୍ରିୟାଃ, ତେଷାଂ ଶୌର୍ଯ୍ୟତେଜଆଦୀନି କର୍ମାଣି । ରଜସ୍ତମପ୍ରଧାନାଃ ବୈଶ୍ୟାଃ । ତେଷାଂ କୃଷିବାଣିଜ୍ୟାଦୀନି କର୍ମାଣି । ତମଃପ୍ରଧାନାଃ ଶୂଦ୍ରାଃ । ତେଷାଂ ତ୍ରୈବର୍ଣ୍ଣିକଶୁଶ୍ରୂଷାଦୀନି କର୍ମାଣି । ଇତ୍ୟେବଂ ଗୁଣାନାଂ କର୍ମଣାଂ ଚ ବିଭାଗେ-ଶାତୁର୍ବର୍ଣ୍ଣ୍ୟଂ ମୟୈବସୃଷ୍ଟମିତି ସତ୍ୟମ୍ । ତଥାପ୍ୟେବଂ ତସ୍ୟ କର୍ତ୍ତାରମପି ଫଳତୋଽକର୍ତ୍ତାରମେବ ମାଂ ବିଦ୍ଧି । ତତ୍ରହେତୁଃ—ଅବ୍ୟୟମ୍ ଆସକ୍ତିରହିତତ୍ୱେନ ଶ୍ରମରହିତମ୍ ।

ବିବୃତି—ବର୍ଣ୍ଣାଶ୍ରମଭେଦ—କେହି ସକାମ ଭାବରେ, କେହିବା ନିଷ୍କାମ ଭାବରେ ଉପାସନା କରନ୍ତି । ଏପରି କର୍ମବୈଚିତ୍ର୍ୟ କାହିଁକି ? ଏପରି କର୍ମ କରୁଥିବା ବ୍ରାହ୍ମଣାଦି ବିଭିନ୍ନ ବର୍ଣ୍ଣର କର୍ତ୍ତା ତୁମେ ? ଏଭଳି ଅବସ୍ଥାରେ ତୁମଠାରେ ପକ୍ଷପାତିତା ନାହିଁ—ଏହା କିପରି ଜଣାଯିବ ? ଏହି ସନ୍ଦେହର ଉତ୍ତରରେ ଭଗବାନ୍ କହୁଅଛନ୍ତି—ପ୍ରକୃତିଭେଦ ଅନୁସାରେ ବର୍ଣ୍ଣଭେଦ ଓ କର୍ମଭେଦ ଆମ୍ଭେ କରିଅଛୁଁ, ଏହା ସତ୍ୟ ମାତ୍ର ଆମ୍ଭେ ଏହାର କର୍ତ୍ତା ହେଲେହେଁ ତହିଁରେ ଲିପ୍ତ ହେଉନାହିଁ, ତେଣୁ ଆମ୍ଭେ ଅକର୍ତ୍ତା ଏବଂ ଅବ୍ୟୟ ଅର୍ଥାତ୍ ଏସବୁ କଲେହେଁ ଆମ୍ଭର କୌଣସି ବିକାର ହୁଏନାହିଁ ।

ଏଠାରେ ଭଗବାନ୍ କହିଲେ—ଗୁଣ ଓ କର୍ମର ବିଭାଗ ଅନୁସାରେ ଆମ୍ଭେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହି ଚାରିବର୍ଣ୍ଣ ସୃଷ୍ଟି କରିଅଛୁଁ ; ସତ୍ତ୍ୱ, ରଜଃ ଓ ତମଃ—ପ୍ରକୃତିର ଏହି ତିନୋଟି ଗୁଣ । ସତ୍ତ୍ୱଗୁଣ ପ୍ରଧାନ ବ୍ରାହ୍ମଣ—ଶମ, ଦମ, ତପସ୍ୟା, ଇନ୍ଦ୍ରିୟନିଗ୍ରହ, ଅଧ୍ୟୟନ, ଅଧ୍ୟାପନ ପ୍ରଭୃତି ତାଙ୍କର କର୍ମ । ସତ୍ତ୍ୱ ଓ ରଜଃପ୍ରଧାନ କ୍ଷତ୍ରିୟ—ଶୌର୍ଯ୍ୟ, ତେଜଃ ପ୍ରଭୃତି ତାଙ୍କର କର୍ମ । ରଜଃ ଓ ତମୋଗୁଣପ୍ରଧାନ ବୈଶ୍ୟ—କୃଷି ବାଣିଜ୍ୟ ପ୍ରଭୃତି ତାଙ୍କର କର୍ମ । ତମୋଗୁଣପ୍ରଧାନ ଶୂଦ୍ର—ପୂର୍ବୋକ୍ତ ତିନିବର୍ଣ୍ଣର ସେବା ତାଙ୍କର କର୍ମ ।

ବର୍ଣ୍ଣଭେଦ ଅନାଦିକାଳରୁ ଏ ଦେଶରେ ପ୍ରଚଳିତ ଅଛି । ବୈଦିକଯୁଗରେ ଏ ଦେଶରେ ବ୍ରାହ୍ମଣାଦିବର୍ଣ୍ଣବିଭାଗ ଥିଲା—ଏହା ଋଗ୍‌ବେଦର ପୁରୁଷସୂକ୍ତ ମନ୍ତ୍ରରୁ ଜଣାଯାଏ । ସେ ଋକ୍ ବା ମନ୍ତ୍ରଟି ଏହିପରି :—

ବ୍ରାହ୍ମଣୋଽସ୍ୟ ମୁଖମାସୀଦ୍ ବାହୂ ରାଜନ୍ୟଃ କୃତଃ ।
ଊରୂତଦସ୍ୟ ଯଦ୍ ବୈଶ୍ୟଃ ପଦ୍ଭ୍ୟାଂଶୂଦ୍ରୋଽଜାୟତ ।

"ବ୍ରାହ୍ମଣ ଏହାଙ୍କର (ସୃଷ୍ଟିକର୍ତ୍ତା ପୁରୁଷଙ୍କର) ମୁଖ ହେଲେ, କ୍ଷତ୍ରିୟଙ୍କୁ ବାହୁ କରାଗଲା, ବୈଶ୍ୟ ଏହାଙ୍କର ଊରୁ, ପାଦରୁ ଶୂଦ୍ର ଜାତହେଲେ" ଏଥିରୁ ବୁଝିବାକୁ ହେବନାହିଁ ଯେ ମନୁଷ୍ୟସୃଷ୍ଟିର ଆରମ୍ଭରୁ ଏପରି ବିଭିନ୍ନ ବର୍ଣ୍ଣର ସୃଷ୍ଟି ହୋଇଅଛି । ବୈଦିକ ମନ୍ତ୍ରସବୁ ଅନେକ ସ୍ଥଳରେ ରୂପକ ଆକାରରେ ଲିଖିତ ହୋଇଅଛି । ବିଶେଷତଃ ଏହି 'ପୁରୁଷସୂକ୍ତ' ସମ୍ପୂର୍ଣ୍ଣରୂପେ ରୂପକ, ଏହାର

ପ୍ରଥମ ଋକ୍ "ଓଁ ସହସ୍ରଶୀର୍ଷାଃ ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍—ଇତ୍ୟାଦ ।" ଅର୍ଥାତ୍ ପୁରୁଷଙ୍କର ଅସଂଖ୍ୟ ଶିରଃ, ଅସଂଖ୍ୟ ଚକ୍ଷୁ ଓ ଅସଂଖ୍ୟପାଦ—ବ୍ରହ୍ମାଣ୍ଡ-ବ୍ୟାପୀ ଅସଂଖ୍ୟ ଲୋକଙ୍କ ସମଷ୍ଟିକୁ ଯେ ପୁରୁଷରୂପେ କଳ୍ପନା କରା ଯାଇଅଛି—ଏହା ଏଥିରୁ ସହଜରେ ଅନୁମିତ ହୁଏ । ସେହିପରି ଏ ସୂକ୍ତର ପରବର୍ତ୍ତୀ ଋକ୍‌ମାନଙ୍କରେ ଯଜ୍ଞଚ୍ଛଳରେ ଯେଉଁ ଯେଉଁ ସୃଷ୍ଟି ପ୍ରକ୍ରିୟା ବର୍ଣ୍ଣିତ ହୋଇଅଛି, ତାହା ଯେ ରୂପକ ଏଥିରେ ଅଣୁମାତ୍ର ସନ୍ଦେହର ଅବକାଶ ନାହିଁ । ତେଣୁ 'ବ୍ରାହ୍ମଣୋଽସ୍ୟ ମୁଖମାସୀତ୍' ଇତ୍ୟାଦି ଋକ୍‌ର ଅର୍ଥ—ସମାଜର ଯେଉଁମାନେ ମୁଖସ୍ୱରୂପ ସେମାନେ ବ୍ରାହ୍ମଣ, ଯେଉଁମାନେ ବାହୁସ୍ୱରୂପ ସେମାନେ କ୍ଷତ୍ରିୟ, ଯେଉଁମାନେ ଊରୁସ୍ୱରୂପ ସେମାନେ ବୈଶ୍ୟ ଓ ଯେଉଁମାନେ ପାଦସ୍ୱରୂପ, ସେମାନେ ଶୂଦ୍ର । ମୁଖ, ବାହୁ, ଊରୁ, ପାଦ—ଏହି ଚାରି ଅବୟବବ୍ୟତୀତ ଯେପରି କୌଣସି ଲୋକର ଅବସ୍ଥିତି ଅସମ୍ଭବ, ସେହିପରି ଏହି ଚାରି ବର୍ଣ୍ଣର ଅଭାବରେ ସମାଜର ବା ମାନବଜାତିର ଅବସ୍ଥିତି ଅସମ୍ଭବ । ଏହାବୋଲି ମନୁଷ୍ୟଜାତିର ସୃଷ୍ଟି ଆରମ୍ଭରେ ଭଗବାନ୍ ତାଙ୍କର ବିଶିଷ୍ଟ ଅବୟବମାନଙ୍କରୁ ବ୍ରାହ୍ମଣାଦି ଚାରିବର୍ଣ୍ଣଙ୍କର ଉତ୍ପତ୍ତି କରିଥିଲେ—ଏପରି କଳ୍ପନା ଅସମ୍ଭବ ଏବଂ ବିବେକବିରୁଦ୍ଧ । ଏହି ବର୍ଣ୍ଣବିଭାଗ ଏକା ଆମ ଭାରତବର୍ଷରେ ନାହିଁ, ପୃଥିବୀର ସବୁଦେଶରେ ଏହାର ପ୍ରଚଳନ ଅଛି । ପ୍ରତ୍ୟେକ ଦେଶରେ କେତେକ ଜ୍ଞାନନିଷ୍ଠ ଈଶ୍ୱରଭକ୍ତିପରାୟଣ ସାଧୁ ଅଛନ୍ତି, କେତେକ ଦେଶରକ୍ଷକ ବୀର ଅଛନ୍ତି, କେତେକ ବ୍ୟବସାୟୀ, କୃଷିଜୀବୀ ଓ ପଶୁପାଳକ ଅଛନ୍ତି ଏବଂ କେତେକ ଶ୍ରମଜୀବୀ ଭୃତ୍ୟଶ୍ରେଣୀର ଲୋକ ଅଛନ୍ତି. ଏ ଚାରିଶ୍ରେଣୀର ଲୋକ ନ ଥିଲେ ମାନବସମାଜ ତିଷ୍ଠି ପାରେନାହିଁ । ଏହି ହିଁ ଉପରିଉକ୍ତ ଋକ୍‌ର ଭାବ ।

ପ୍ରଥମେ ଏହି ଶ୍ରେଣୀ ବିଭାଗ—ଗୁଣ ଓ କର୍ମ ଉପରେ ପ୍ରତିଷ୍ଠିତ ଥିଲା; ପରବର୍ତ୍ତୀ କାଳରେ ଏହା ବଂଶଗତ ହେବାରୁ ଜାତିବିଭାଗ ଆରମ୍ଭ ହେଲା । ତେଣୁ ସମାଜ ବିଶୃଙ୍ଖଳ ହୋଇଗଲା । ଏବେ ସୁଦ୍ଧା ଦେଖାଯାଏ ବ୍ରାହ୍ମଣର ପୁତ୍ର ଶୂଦ୍ରର କର୍ମ କଲେହେଁ ସେ ବ୍ରାହ୍ମଣ ରୂପରେ ପରିଚିତ ହେଉଅଛି । ଶୂଦ୍ର ବ୍ରାହ୍ମଣୋଚିତ ଜ୍ଞାନ କର୍ମର ଅନୁଷ୍ଠାନ କଲେହେଁ ସେ ଶୂଦ୍ରଭାବରେ ସମାଜରେ ଉପେକ୍ଷିତ ହେଉଅଛି । ଏହାହିଁ ସମାଜର ଅବନତିର କାରଣ ।

ଏ ଶ୍ଳୋକରେ ଭଗବାନ୍ କହୁଅଛନ୍ତି, ଗୁଣ କର୍ମର ବିଭାଗ ଅନୁସାରେ ଆମ୍ଭେ ଚାରିବର୍ଣ୍ଣର ସୃଷ୍ଟି କରିଅଛୁଁ । ପ୍ରଥମେ 'କର୍ମ'କଥା ବିଚାର କରାଯାଉ, ଜନ୍ମପରେ ମନୁଷ୍ୟ କର୍ମକରେ, ତେଣୁ କର୍ମ ଯଦି ବର୍ଣ୍ଣ ବିଭାଗର କାରଣ ହୁଏ, ତେବେ ତାହା ଜନ୍ମର ପରବର୍ତ୍ତୀ, ଯେ ଯେପରି କର୍ମକରେ ସେ ସେପରି ବର୍ଣ୍ଣରେ ପରିଣତ ହୁଏ । ପରେ 'ଗୁଣ' କଥା ବିଚାର କଲେ ଜଣା ଯାଏ, ଗୁଣ ଜନ୍ମଗତସଂସ୍କାର । କୌଣସି ଜ୍ଞାନକାଣ୍ଡ ବିଦ୍ୱାନ୍, ଜିତେନ୍ଦ୍ରିୟ ବ୍ରାହ୍ମଣଙ୍କର

ନ ମାଂ କର୍ମାଣି ଲିମ୍ପନ୍ତି ନମେ କର୍ମଫଳେ ସ୍ପୃହା ।
ଇତି ମାଂ ଯୋଽଭିଜାନାତି କର୍ମଭିର୍ନ ସ ବଧ୍ୟତେ । ୧୪ ।

ଔରସରେ ମୂର୍ଖ, ଅସଚ୍ଚରିତ୍ର ପୁତ୍ରର ଜନ୍ମ ହେବାର ଦୃଷ୍ଟାନ୍ତ ଏ ସଂସାରରେ ଅନେକ । ସେହିପରି ଗଣ୍ଡମୂର୍ଖ, ଅସଚ୍ଚରିତ୍ର ଲୋକ ଔରସରେ ଚରିତ୍ରବାନ୍ ଜ୍ଞାନବାନ୍ ପୁତ୍ରର ଜନ୍ମର ଦୃଷ୍ଟାନ୍ତ ଏ ସଂସାରରେ ଅଳ୍ପ ଦେଖାଯାଏ ନାହିଁ, ଏପରି ଅବସ୍ଥାରେ ଗୁଣ ଓ କର୍ମ ଅନୁସାରେ ଚାତୁର୍ବର୍ଣ୍ଣର ସୃଷ୍ଟିକଥା-ଯାହା ଭଗବାନ୍ କହିଅଛନ୍ତି ତାହା ଜନ୍ମର ପରବର୍ତ୍ତୀ କାର୍ଯ୍ୟ ।

ବୈଦିକଗ୍ରନ୍ଥାଦି ଆଲୋଚନା କରି ଏ ଯୁଗର ପଣ୍ଡିତମାନେ ସ୍ଥିର କରି-ଅଛନ୍ତି ଯେ, ଅତି ପ୍ରାଚୀନ ଯୁଗରେ ବର୍ଣ୍ଣ ବିଭାଗ ଥିଲା ମାତ୍ର ଏପରି ଜାତି ବିଭାଗ ସମାଜରେ ନ ଥିଲା । ସମସ୍ତେ ଏକଜାତି ଥିଲେ, ବ୍ୟବସାୟଭେଦରେ ପରବର୍ତ୍ତୀ କାଳରେ ଜାତିବିଭାଗ ସମାଜରେ ପ୍ରବର୍ତ୍ତିତ ହେଲା ଏବଂ କାଳକ୍ରମେ ଏହା ବଂଶଗତ ହେଲା । ଏ ମତ ଏ ଯୁଗର ପଣ୍ଡିତମାନଙ୍କର କପୋଳକଳ୍ପିତ ନୁହେ; ଗୌତମ ସଂହିତାରେ ଏ ସମ୍ବନ୍ଧରେ ଲିଖିତ ଅଛି:—

ଅଗ୍ନିହୋତ୍ରବ୍ରତପରାନ୍ ସ୍ୱାଧ୍ୟାୟନିରତାନ୍ ଶୁଚୀନ୍ ।
ଉପବାସରତାନ୍ ଦାନ୍ତାଂ ସ୍ତାନ୍ ଦେବା ବ୍ରାହ୍ମଣାନ୍ ବିଦୁଃ ।
ନ ଜାତିଃ ପୂଜ୍ୟତେ ରାଜନ୍ ଗୁଣାଃ କଲ୍ୟାଣକାରକାଃ ।
ଚଣ୍ଡାଳ ମପି ବୃତ୍ତସ୍ଥଂ ତଂ ଦେବା ବ୍ରାହ୍ମଣଂ ବିଦୁଃ ।

ଯେଉଁମାନେ ଅଗ୍ନିହୋତ୍ରବ୍ରତପରାୟଣ, ବେଦାଧ୍ୟୟନନିରତ, ଶୁଚି, ଉପବାସ ରତ ଓ ଜିତେନ୍ଦ୍ରିୟ ତାହାଙ୍କୁ ଦେବତାମାନେ ବ୍ରାହ୍ମଣ କହନ୍ତି, ହେ ରାଜନ୍ ! ଜାତି ପୂଜ୍ୟ ନୁହେ, ଗୁଣହିଁ କଲ୍ୟାଣକର । ଚଣ୍ଡାଳ ଯଦି ବୃତ୍ତସ୍ଥ ଅର୍ଥାତ୍ ନିଷ୍ପାପ ହୁଏ ତାହାଙ୍କୁ ଦେବତାମାନେ ବ୍ରାହ୍ମଣ ବୋଲି କହନ୍ତି । ପୁନଶ୍ଚ:—

କ୍ଷାନ୍ତଂ ଦାନ୍ତଂ ଜିତକ୍ରୋଧଂ ଜିତାତ୍ମାନଂ ଜିତେନ୍ଦ୍ରିୟମ୍ ।
ତମେବ ବ୍ରାହ୍ମଣଂ ମନ୍ୟେ ଶେଷାଃ ଶୂଦ୍ରା ଇତି ସ୍ମୃତାଃ ।

କ୍ଷମାଶୀଳ, ସଂଯତେନ୍ଦ୍ରିୟ, ଜିତକ୍ରୋଧ, ଜିତାତ୍ମା ଓ ଜିତେନ୍ଦ୍ରିୟ ଲୋକଙ୍କୁ ବ୍ରାହ୍ମଣ ବୋଲି ମନେ କରାଯାଏ; ଅନ୍ୟ ସମସ୍ତେ ଶୂଦ୍ର ।

୧୪ । ଅନ୍ୱୟଦୀପିକା—କର୍ମାଣି ( କର୍ମସକଳ ) ମାଂ ନ ଲିମ୍ପନ୍ତି ( ଆମ୍ଭକୁ ଲିପ୍ତ କରନ୍ତି ନାହିଁ ), କର୍ମଫଳେ ମେ ସ୍ପୃହା ନ ( କର୍ମଫଳରେ ଆମ୍ଭର ସ୍ପୃହା ନାହିଁ ), ଇତି ( ଏହିଭଳିରେ ) ଯଃ ( ଯେ ) ମାଂ ( ଆମ୍ଭଙ୍କୁ ) ଅଭିଜାନାତି ( ଜାଣନ୍ତି ) ସଃ ( ସେ ) କର୍ମଭିଃ ( କର୍ମ ସମୂହଦ୍ୱାରା ) ନ ବଧ୍ୟତେ ( ଆବଦ୍ଧ ହୁଅନ୍ତି ନାହିଁ ) ।

ଏବଂ ଜ୍ଞାତ୍ୱା କୃତଂ କର୍ମ ପୂର୍ବୈରପି ମୁମୁକ୍ଷୁଭିଃ
କୁରୁ କର୍ମୈବ ତସ୍ମାତ୍ତ୍ୱଂ ପୂର୍ବୈଃ ପୂର୍ବତରଂ କୃତମ୍ । ୧୫ ।

ଅନୁବାଦ—କର୍ମ ସମୂହ ଆମ୍ଭକୁ ଲିପ୍ତ କରିପାରେ ନାହିଁ, ଆଉ ମଧ୍ୟ କର୍ମଫଳରେ ଆମ୍ଭର ସ୍ପୃହା ନ ଥାଏ, ଏହି ଭାବରେ ଯେ ଆମ୍ଭକୁ ଜାଣନ୍ତି ସେ କର୍ମଦ୍ୱାରା ଅବଦ୍ଧ ହୁଅନ୍ତି ନାହିଁ ।

ସୁବୋଧିନୀ ଟୀକା—ତଦେବ ଦର୍ଶୟନ୍ନାହ—ନ ମାମିତି । କର୍ମାଣି ବିଶ୍ୱସୃଷ୍ଟ୍ୟାଦୀନ୍ୟପି ମାଂ ନ ଲିମ୍ପନ୍ତ୍ୟାସକ୍ତଂ ନ କୁର୍ବନ୍ତି । ନିରହଂକାରତ୍ୱାତ୍ ମମ କର୍ମଫଳେ ସ୍ପୃହାଭାବାଚ । ମାଂ ନ ଲିମ୍ପନ୍ତୀତି କିଂ ବକ୍ତବ୍ୟମ୍ ? ଯତଃ କର୍ମ-ଲେପରହିତତ୍ୱେନ ମାଂ ଯୋଽଭିଜାନାତି ସୋଽପି କର୍ମଭିର୍ନ ବଧ୍ୟତେ । ମମ କର୍ଲେପଭ୍ୱେ କାରଣଂ ନିରଂହକାରତ୍ୱନିଃସ୍ପୃହତ୍ୱାଦିକଂ ଜାନତସ୍ତସ୍ୟା-ପ୍ୟହଂକାରାଦି ଶୈଥିଲ୍ୟାତ୍ ।

ବିବୃତି—ଏ ଅଧ୍ୟାୟର ନବମ ଶ୍ଳୋକରେ ଭଗବାନ୍ କହିଅଛନ୍ତି ଯେ, "ଆମ୍ଭ ଜନ୍ମ ଓ କର୍ମର ତତ୍ତ୍ୱ ଯେ ଜାଣନ୍ତି ସେ ଆଉ ପୁନର୍ଜନ୍ମ ପ୍ରାପ୍ତ ହୁଅନ୍ତି ନାହିଁ ।" ଏଠାରେ ସେହି କର୍ମତତ୍ତ୍ୱ ସ୍ପଷ୍ଟରୂପେ ବୁଝାଇ ଅଛନ୍ତି । ପୂର୍ବେ କୁହାଯାଇଅଛି ଶତଉପଦେଶ ଦ୍ୱାରା ଯେଉଁ କାର୍ଯ୍ୟହୁଏ ନାହିଁ, ଏକ ଆଦର୍ଶ ଦ୍ୱାରା ସେ କାର୍ଯ୍ୟ ସାଧିତ ହୁଏ । ଭଗବାନ୍ ଆଦର୍ଶ କର୍ମଯୋଗୀ । ଏହା ଯେଉଁ ଲୋକ ଜାଣନ୍ତି ଅର୍ଥାତ୍ ଏ କଥା ଜାଣି ତଦନୁରୂପ କର୍ମ କରନ୍ତି ସେ କର୍ମରେ ଆବଦ୍ଧ ହୁଅନ୍ତି ନାହିଁ । ଭଗବାନ୍ ଆପ୍ତକାମ, ଫଳାଶା ରଖି ସେ କୌଣସି କର୍ମ କରନ୍ତି ନାହିଁ । ଯେ ଫଳାଶା ନ ରଖି କର୍ମ କରନ୍ତି, କର୍ମ ତାଙ୍କୁ କୌଣସିମତେ ସ୍ପର୍ଶକରିପାରେ ନାହିଁ । ଭଗବାନଙ୍କ କର୍ମର ଏହିତତ୍ତ୍ୱ ଜାଣିପାରିଲେ ଲୋକ ନିଷ୍କାମକର୍ମ କରି ଭବବନ୍ଧମୁକ୍ତ ହୋଇ ଯାଆନ୍ତି ।

୧୫ । ଅନ୍ୱୟଦୀପିକା—ଏବଂ (ଏହିପରି) ଜ୍ଞାତ୍ୱା (ଜାଣି) ପୂର୍ବୈଃ (ପ୍ରାଚୀନ) ମୁମୁକ୍ଷୁଭିଃ ଅପି (ମୁକ୍ତିକାମୀମାନଙ୍କଦ୍ୱାରା ମଧ୍ୟ) କର୍ମ କୃତଂ (କର୍ମ ଅନୁଷ୍ଠିତ ହୋଇଅଛି), ତସ୍ମାତ୍ (ସେହି ହେତୁରୁ) ତ୍ୱଂ (ତୁମେ) ପୂର୍ବୈଃ (ପ୍ରାଚୀନମାନଙ୍କ ଦ୍ୱାରା) ପୂର୍ବତରଂ (ପୂର୍ବ କାଳରେ) କୃତଂ (ଅନୁଷ୍ଠିତ) କର୍ମ ଏବ କୁରୁ (କର୍ମର ଅନୁଷ୍ଠାନ କର) ।

ଅନୁବାଦ—(ଅସ୍ମା ଅକର୍ତ୍ତା ଓ ଅଲେପ୍ତା)—ଏହା ଜାଣି ପ୍ରାଚୀନ ମୋକ୍ଷକାମୀମାନେ କର୍ମ କରି ଅଛନ୍ତି, ସେହି ହେତୁରୁ ପୂର୍ବକାଳୀନ ଲୋକମାନେ ପୂର୍ବେ ଯେଉଁ କର୍ମ କରିଥିଲେ, ତୁମେ ସେହି କର୍ମର ଅନୁଷ୍ଠାନ କର ।

ସୁବୋଧିନୀ ଟୀକା—ଯେ ଯଥା ମାମିତ୍ୟାଦି ଚତୁର୍ଭିଃ ଶ୍ଳୋକୈଃ ପ୍ରାସଙ୍ଗିକମୀଶ୍ୱରସ୍ୟ ବୈଷମ୍ୟଂ ପରିହୃତ୍ୟ ପୂର୍ବୋକ୍ତମେବ କର୍ମଯୋଗଂ ପ୍ରପଞ୍ଚୟିତୁ-

କିଂ କର୍ମ କିମକର୍ମେତି କବୟୋଽପ୍ୟତ୍ର ମୋହିତାଃ ।
ତତ୍ତେ କର୍ମ ପ୍ରବକ୍ଷ୍ୟାମି ଯଜ୍ଜ୍ଞାତ୍ୱା ମୋକ୍ଷ୍ୟସେଽଶୁଭାତ୍ ।୧୬।

ମନୁସ୍ମାରୟତି, ଏବମିତି । ଅହଂକାରାଦିରହିତେନ କୃତଂ କର୍ମ ବନ୍ଧକଂ ନ ଭବତି । ଇତ୍ୟେବଂ ଜ୍ଞାତ୍ୱା ପୂର୍ବୈର୍ଜନକାଦିଭିରପି ମୁମୁକ୍ଷୁଭିଃ ସତ୍ତ୍ୱଶୁଦ୍ଧ୍ୟର୍ଥଂ ପୂର୍ବତରଂ ଯୁଗାନ୍ତରେଷ୍ୱପି କୃତମ୍, ତସ୍ମାତ୍ ତ୍ୱମପି ପ୍ରଥମଂ କର୍ମୈବ କୁରୁ ।

ବିବୃତି—ଏ ଶ୍ଲୋକରୁ ବେଶ୍ ବୁଝା ଯାଉଅଛି ଯେ ପୂର୍ବକାଳରେ ଜନକାଦି ରାଜର୍ଷିମାନେ କର୍ତ୍ତୃତ୍ୱାଭିମାନ ଶୂନ୍ୟ ହୋଇ ନିର୍ଲିପ୍ତ ଭାବରେ କର୍ମ କରି ମୋକ୍ଷଲାଭ କରିଅଛନ୍ତି । ତେଣୁ ତୁମେ କର୍ତ୍ତୃତାଭିମାନ ତ୍ୟାଗ କରି ନିର୍ଲିପ୍ତ ଭାବରେ କର୍ମ କର ।

୧୬ । **ଅନ୍ୱୟଦୀପିକା**—କର୍ମ କିମ୍ ( କର୍ମ କଅଣ ), ଅକର୍ମ କିମ୍ ( କର୍ମଶୂନ୍ୟତା ବା କଅଣ ) ଇତି ଅତ୍ର ( ଏ ବିଷୟରେ ) କବୟଃ ଅପି ( ଜ୍ଞାନବାନ୍ ଲୋକମାନେ ମଧ୍ୟ ) ମୋହିତାଃ ( ମୋହପ୍ରାପ୍ତ ହୁଅନ୍ତି ବା ତତ୍ତ୍ୱ ନିର୍ଣ୍ଣୟରେ ଅକ୍ଷମ ହୁଅନ୍ତି ); ତତ୍ ( ସେହି ହେତୁରୁ ) ତେ ( ତୁମ୍ଭଙ୍କୁ ) କର୍ମ ପ୍ରବକ୍ଷ୍ୟାମି ( କର୍ମ କଅଣ କହିବି ), ଯଦ୍ ( ଯାହା ) ଜ୍ଞାତ୍ୱା ( ଜାଣି ) ଅଶୁଭାତ୍ (ଅଶୁଭରୁ ବା ଅମଙ୍ଗଳ ପୂର୍ଣ୍ଣ ସଂସାରରୁ) ମୋକ୍ଷ୍ୟସେ (ମୁକ୍ତ ହେବ)

ଅନୁବାଦ—କର୍ମ କଅଣ, କର୍ମଶୂନ୍ୟତା ବା କଅଣ—ଏ ବିଷୟରେ ପଣ୍ଡିତମାନେ ମଧ୍ୟ ମୋହପ୍ରାପ୍ତ ହୁଅନ୍ତି, ଅର୍ଥାତ୍ ଏହାର ପ୍ରକୃତ ତତ୍ତ୍ୱ ବୁଝି ପାରନ୍ତି ନାହିଁ । ଅତଏବ କର୍ମ କଅଣ ( ଏବଂ ଅକର୍ମ କଅଣ ) ତାହା ତୁମ୍ଭଙ୍କୁ କହୁଅଛି, ଯାହା ଜାଣିଲେ ଅଶୁଭରୁ ( ଅମଙ୍ଗଳପୂର୍ଣ୍ଣ ସଂସାରବନ୍ଧନରୁ ) ମୁକ୍ତ ହେବ ।

ସୁବୋଧିନୀ ଟୀକା—ତଚ୍ଚ ତତ୍ତ୍ୱବିଦ୍ଭିଃ ସହ ବିମୃଶ୍ୟ କର୍ତ୍ତବ୍ୟମ୍, ନ ଲୋକପରମ୍ପରାମାତ୍ରେଣେତି । ଆହ କିଂ କର୍ମେତି, କିଂ କର୍ମ ? କୀଦୃଶଂ କର୍ମକରଣମ୍ ? କିମକର୍ମ ? କୀଦୃଶଂ କର୍ମାକରଣମ୍ ? ଇତ୍ୟସ୍ମିନ୍ନର୍ଥେ ବିବେକିନୋଽପି ମୋହିତାଃ । ଅତୋ ଯଜ୍ଜ୍ଞାତ୍ୱା ଯଦନୁଷ୍ଠାୟାଶୁଭାତ୍ ସଂସାରାନ୍ମୋକ୍ଷ୍ୟସେ ମୁକ୍ତୋ ଭବିଷ୍ୟସି, ତତ୍ କର୍ମାକର୍ମଚ ତୁଭ୍ୟମହଂ ପ୍ରବକ୍ଷ୍ୟାମି ତଚ୍ଛୃଣୁ ।

ବିବୃତି—'ଅକର୍ମ' ଶବ୍ଦର ଅର୍ଥ ( ନ+କର୍ମ ) ନଞ୍ ତତ୍ପୁରୁଷ ସମାସ ଅନୁସାରେ କର୍ମର ଅଭାବ ଓ ଅପ୍ରଶସ୍ତ କର୍ମ ବା ଅପକର୍ମ ହୋଇପାରେ. ମାତ୍ର ପରବର୍ତ୍ତୀ ଶ୍ଲୋକରେ ଅପକର୍ମ ଅର୍ଥ ବୁଝାଇବା ପାଇଁ 'ବିକର୍ମ' ଶବ୍ଦର ପ୍ରୟୋଗ ହୋଇ ଥିବାରୁ ଏଠାରେ ଅକର୍ମ ଶବ୍ଦର ଅର୍ଥ କର୍ମ ନ କରିବା—ବୁଝିବାକୁ ହେବ । ସୁତରାଂ ଏଠାରେ ଏବଂ ଗୀତାର ଅନ୍ୟସ୍ଥାନମାନଙ୍କରେ 'ଅକର୍ମ' ଶବ୍ଦ କର୍ମଶୂନ୍ୟତା ଅର୍ଥରେ ବ୍ୟବହୃତ ହୋଇଅଛି । ଏକାବେଳକେ

କର୍ମଣୋ ହ୍ୟପି ବୋଦ୍ଧବ୍ୟଂ ବୋଦ୍ଧବ୍ୟଂ ଚ ବିକର୍ମଣଃ ।
ଅକର୍ମଣଶ୍ଚ ବୋଦ୍ଧବ୍ୟଂ ଗହନା କର୍ମଣୋ ଗତିଃ ।୧୭।

ସବୁ କର୍ମ ତ୍ୟାଗ ନ କଲେ ମୁକ୍ତି ମିଳେ ନାହିଁ—ସନ୍ନ୍ୟାସମାର୍ଗୀମାନଙ୍କର ଏହି ମତହିଁ 'ଅକର୍ମ' ଶବ୍ଦଦ୍ୱାରା ବିବକ୍ଷିତ ।

୧୭ । ଅନ୍ୱୟ ଦୀପିକା—କର୍ମଣ ଅପି ( ବିହିତ କର୍ମର ମଧ୍ୟ ) ବୋଦ୍ଧବ୍ୟଂ ( ଜ୍ଞାତବ୍ୟ ତତ୍ତ୍ୱ ଅଛି ) ବିକର୍ମଣଃ ଚ ( ନିଷିଦ୍ଧ କର୍ମର ମଧ୍ୟ ) ବୋଦ୍ଧବ୍ୟଂ ( ଜ୍ଞାତବ୍ୟ ତତ୍ତ୍ୱ ଅଛି ) ଅକର୍ମଣଃ ଚ ( କର୍ମଶୂନ୍ୟତା ବା କର୍ମ-ତ୍ୟାଗର ମଧ୍ୟ ) ବୋଦ୍ଧବ୍ୟଂ ( ଜ୍ଞାତବ୍ୟ ତତ୍ତ୍ୱ ଅଛି ), ହି ( କାରଣ ) କର୍ମଣଃ ଗତିଃ ( ତତ୍ତ୍ୱ ) ଗହନା ( ଦୁର୍ଜ୍ଞେୟ ) ।

ଅନୁବାଦ—ବିହିତ କର୍ମ ସମ୍ବନ୍ଧରେ ମଧ୍ୟ ବୁଝିବାର ତତ୍ତ୍ୱ ଅଛି, ବିକର୍ମ ଅର୍ଥାତ୍ ଅବିହିତ କର୍ମ ସମ୍ବନ୍ଧରେ ମଧ୍ୟ ବୁଝିବାର ତତ୍ତ୍ୱ ଅଛି, ଅକର୍ମ ବା କର୍ମତ୍ୟାଗ ସମ୍ବନ୍ଧରେ ମଧ୍ୟ ବୁଝିବାର ତତ୍ତ୍ୱ ଅଛି; କାରଣ କର୍ମର ଗତି ଅର୍ଥାତ୍ ପ୍ରକୃତ ମର୍ମ ଦୁର୍ଜ୍ଞେୟ ।

ସୁବୋଧିନୀ ଟୀକା—ନନୁ ଲୋକପ୍ରସିଦ୍ଧମେବ କର୍ମ ଦେହାଦି ବ୍ୟାପାରାତ୍ମକମ୍ । ଅକର୍ମ ତଦବ୍ୟାପାରାତ୍ମକମ୍ । ଅତଃ କଥମୁଚ୍ୟତେ କବୟୋଽପ୍ୟତ୍ର ମୋହଂ ପ୍ରାପ୍ତା ଇତି ? ତତ୍ରାହ-କର୍ମଣ ଇତି । କର୍ମଣୋ ବିହିତବ୍ୟାପାରସ୍ୟାପି ତତ୍ତ୍ୱଂ ବୋଦ୍ଧବ୍ୟମସ୍ତି । ନତୁ ଲୋକପ୍ରସିଦ୍ଧିମାତ୍ରମେବ, ଅକର୍ମଣୋଽବିହିତ-ସ୍ୟାପି ତତ୍ତ୍ୱଂ ବୋଦ୍ଧବ୍ୟମସ୍ତି । ବିକର୍ମଣୋ ନିଷିଦ୍ଧବ୍ୟାପାରସ୍ୟାପି ତତ୍ତ୍ୱଂ ବୋଦ୍ଧବ୍ୟ ମସ୍ତି । ଯତଃ କର୍ମଣୋ ଗତିର୍ଗହନା, କର୍ମଣ ଇତ୍ୟୁପଲକ୍ଷଣାର୍ଥମ୍ । କର୍ମାକର୍ମବିକର୍ମଣାଂ ତତ୍ତ୍ୱଂ ଦୁର୍ବିଜ୍ଞେୟ ମିତ୍ୟର୍ଥଃ ।

ବିବୃତି—ଶାସ୍ତ୍ରୋକ୍ତ ବିହିତାର୍ଥର ନାମ କର୍ମ ଅର୍ଥାତ୍ ଶାସ୍ତ୍ରମାନଙ୍କରେ ଯାହା ଯାହା କରିବା ପାଇଁ ଉପଦେଶ ଦିଆଯାଇଅଛି, ତାହାହିଁ କର୍ମ ଏବଂ ଯାହା ନ କରିବାକୁ ଉପଦେଶ ଦିଆଯାଇଛି ତାହା ବିକର୍ମ, ସମ୍ପୂର୍ଣ୍ଣ ରୂପେ କର୍ମ ତ୍ୟାଗକରି ତୁନି ହୋଇ ବସି ରହିବାର ନାମ ଅକର୍ମ । କର୍ମ ସମ୍ବନ୍ଧରେ ଜ୍ଞାତବ୍ୟ ତତ୍ତ୍ୱ ଜଣାଗଲେ 'ବିକର୍ମ' ଓ 'ଅକର୍ମ' ସମ୍ବନ୍ଧୀୟ ତତ୍ତ୍ୱ ସହଜରେ ଜଣାପଡ଼େ । ସେହି ହେତୁରୁ ଭଗବାନ୍ ଏ ଶ୍ଳୋକର ଶେଷରେ କହି ଅଛନ୍ତି, 'ଗହନା କର୍ମଣୋଗତିଃ' । ଅର୍ଥାତ୍ କର୍ମର ପ୍ରକୃତ ତତ୍ତ୍ୱ ବଡ଼ ଦୁର୍ଜ୍ଞେୟ । ଏ ସମ୍ବନ୍ଧରେ ଲୋକମାନ୍ୟ ତିଳକ 'ଗୀତାରହସ୍ୟରେ' ସୁନ୍ଦରରୂପେ ଆଲୋଚନା କରିଅଛନ୍ତି । ଅତି ସଂକ୍ଷେପରେ ତହିଁରୁ କେତୋଟି କଥା ମାତ୍ର ଏଠାରେ ଲେଖା ଯାଉଅଛି ।

ଅହିଂସା, ସତ୍ୟକଥନ ପ୍ରଭୃତିକୁ ପରମ ଧର୍ମ ବା ଶ୍ରେଷ୍ଠକର୍ମରୂପେ ମନୁ ପ୍ରଭୃତି ଧର୍ମଶାସ୍ତ୍ରପ୍ରଣେତାମାନେ ନିର୍ଦ୍ଦେଶ କରିଯାଇ ଅଛନ୍ତି । କେବଳ ଆମ ଧର୍ମରେ ବା ଭାରତରେ ନୁହେଁ, ଅନ୍ୟାନ୍ୟ ଧର୍ମରେ ଓ ଅନ୍ୟ ଦେଶମାନଙ୍କରେ ମଧ୍ୟ ଏହିହେବୁ ପ୍ରତ୍ୟେକ ଲୋକପକ୍ଷରେ ଅବଶ୍ୟ କର୍ତ୍ତବ୍ୟ କର୍ମରୂପେ ନିର୍ଦ୍ଦେଶ କରାପାଇଅଛି । 'ଅହିଂସା ପରମୋ ଧର୍ମଃ' ମହାଭାରତର ଏହି ପ୍ରସିଦ୍ଧ ଉକ୍ତିକୁ ଆମେ ସମସ୍ତେ ଜୀବନର ଶ୍ରେଷ୍ଠ କର୍ମ ବୋଲି ଗ୍ରହଣ କରୁଁ । ଅନେକେ କହନ୍ତି 'ଅହିଂସା' ପ୍ରଚାର ଉଦ୍ଦେଶ୍ୟରେହିଁ ଭଗବାନ୍ ବୁଦ୍ଧରୂପ ଧାରଣ କରିଥିଲେ । କେବଳ ଜୀବହତ୍ୟାକୁ ହିଂସା କୁହାଯାଏ ନାହିଁ, କୌଣସି ସଚେତନ ପ୍ରାଣୀକୁ କୌଣସି ପ୍ରକାର ଦୁଃଖ ଦେବା ମଧ୍ୟ ହିଂସା ବୋଲି ଧରାଯାଏ । କିନ୍ତୁ ଏହି ଅହିଂସା କର୍ମ ସର୍ବଦା ପାଳନ କରାଯାଇ ପାରିବ କି ? ସର୍ପ, ସିଂହ, ବ୍ୟାଘ୍ର ପ୍ରଭୃତି ହିଂସ୍ର ପ୍ରାଣୀମାନଙ୍କୁ ହିଂସା ନ କଲେ ମାନବ ସମାଜର ଅସ୍ତିତ୍ୱ ନିରାପଦ ହେବ ନାହିଁ । ଅଧିକର ମଧ୍ୟ ବିଚାର କରି ଦେଖିଲେ ଜଣାଯିବ ଯେ, ଯଦି କୌଣସି ଦୁଷ୍ଟଲୋକ ମୋତେ ହତ୍ୟା କରିବା ପାଇଁ ବା ମୋ ସ୍ତ୍ରୀ କନ୍ୟାଙ୍କ ଉପରେ ବଳାତ୍କାର କରିବାପାଇଁ ବା ମୋ ଘରେ ନିଆଁ ଲଗାଇବାପାଇଁ ବା ମୋର ସ୍ଥାବର ଅସ୍ଥାବର ସମସ୍ତ ସମ୍ପତ୍ତି ହରଣ କରିବାକୁ ଚକ୍ରାନ୍ତ କରୁଥାଏ, ତେବେ ଏପରି ଆତତାୟୀ ଲୋକକୁ କଅଣ 'ଅହିଂସା ପରମୋ ଧର୍ମଃ' ଏହି ଉପଦେଶ ଅନୁସାରେ ଉପେକ୍ଷା କରିବାକୁ କର୍ତ୍ତବ୍ୟ କର୍ମ କୁହାଯିବ ? ମହର୍ଷି ମନୁ ମଧ୍ୟ ଏ ସମ୍ବନ୍ଧରେ କହି ଅଛନ୍ତି :—

ଗୁରୁଂ ବା ବାଲବୃଦ୍ଧୌ ବା ବ୍ରାହ୍ମଣଂ ବା ବହୁଶ୍ରୁତମ୍ ।
ଆତତାୟିନ ମାୟାନ୍ତଂ ହନ୍ୟାଦେବାବିଚାରୟନ୍ ॥

ସେ ଗୁରୁ ହୁଅନ୍ତୁ, ପିଲା ହୁଅନ୍ତୁ, ବୁଢ଼ା ହୁଅନ୍ତୁ, ନାନାଶାସ୍ତ୍ରନିପୁଣ ବ୍ରାହ୍ମଣ ହୁଅନ୍ତୁ—ଆତତାୟୀ ଦୁଷ୍ଟଲୋକକୁ କୌଣସି କଥା ବିଚାର ନ କରି ହତ୍ୟା କରିବ । ଏପରି ଅବସ୍ଥାରେ ହତ୍ୟାଜନିତ ପାପ ହତ୍ୟାକାରୀକୁ ସ୍ପର୍ଶ କରେ ନାହିଁ । ଏହାହିଁ ଶାସ୍ତ୍ରର ଉପଦେଶ । ସଂସାରରେ କିଏ କାହାକୁ ହିଂସା ନ କରେ ? 'ଜୀବୋ ଜୀବସ୍ୟଜୀବନମ୍' – ( ଭା ୧.୧୩,୪୭) ଏ ବ୍ୟବହାର ଏବେ ମଧ୍ୟ ସମାଜରେ ଚଳୁଅଛି । 'ପ୍ରାଣସ୍ୟାନ୍ନ ମିଦଂସର୍ବମ୍'—ଏହା କେବଳ ସ୍ମୃତିକାରମାନେ କହି ନାହାନ୍ତି ( ମନୁ-୫-୨୮ ), ଉପନିଷଦ ମଧ୍ୟରେ ବି ଏହା ସ୍ପଷ୍ଟରୂପେ କଥିତ ହୋଇଅଛି (ଛା ୫.୨.୧) (ବୃ ୬.୧. ୧୪) ।

ସମସ୍ତେ ହିଂସା ଛାଡ଼ିଦେଲେ କ୍ଷାତ୍ରଧର୍ମ ସଂସାରରୁ ଲୁପ୍ତ ହେବ ସିନା ? ମାତ୍ର ମାନବଜାତିର ଇତିହାସରେ ଏପରି କେବେହେଲେ ହୋଇଥିଲା ବୋଲି ପ୍ରମାଣ ନାହିଁ । ସାଧୁକଥା-ନୀତିର ସାଧାରଣ ନିୟମଦ୍ୱାରା ସବୁ ସମୟରେ କର୍ମର ବିଚାର ହୋଇପାରେ ନାହିଁ ।

ସେହିପରି କ୍ଷମା ଗୋଟିଏ ଅସାଧାରଣ ଗୁଣ ବୋଲି ଶାସ୍ତ୍ରରେ କଥିତ ହୋଇଅଛି । ନିତ୍ୟ କ୍ଷମାଶୀଳ ଲୋକର ସ୍ତ୍ରୀ କନ୍ୟାମାନଙ୍କୁ ଯେ ଦୁଷ୍ଟଲୋକମାନେ ହରଣ କରିବେ—ଏଥିରେ ସନ୍ଦେହ ନାହିଁ । ଏ ସମ୍ବନ୍ଧରେ ପ୍ରହ୍ଲାଦ ନିଜର ନାତି ବଳିରାଜାଙ୍କୁ କହି ଅଛନ୍ତି—

ନ ଶ୍ରେୟଃ ସତତଂ ତେଜୋ ନ ନିତ୍ୟଂ ଶ୍ରେୟସୀ କ୍ଷମା ।
× ×
ତସ୍ମାନ୍ନିତ୍ୟଂ କ୍ଷମା ତାତ ପଣ୍ଡିତୈରପବାଦିତା ।
( ମହା. ବନ. ୨୮୬.୮. )

ଅର୍ଥାତ୍ ନିୟତ ତେଜସ୍ୱିତା ଓ ନିୟତ କ୍ଷମା ଶ୍ରେୟସ୍କର ହୁଏ ନାହିଁ । ଏହି ହେତୁରୁ ହେ ବତ୍ସ, ଜ୍ଞାନୀମାନେ କ୍ଷମାର ଅପବାଦ କରିଅଛନ୍ତି ।

ଏହାପରେ 'ସତ୍ୟ' ବିଷୟ ଆଲୋଚନା କରିଯାଉ । ସବୁ ଯୁଗରେ ସବୁ ଧର୍ମରେ ସତ୍ୟକଥନଅପେକ୍ଷା ପରମଧର୍ମ ଆଉ କିଛି ନାହିଁ—ଏପରି କଥିତ ହୋଇଅଛି । ମହାଭାରତରେ ଲିଖିତ ଅଛି :—

ଅଶ୍ୱମେଧସହସ୍ରଂ ଚ ସତ୍ୟଂ ଚ ତୁଳୟାଧୃତମ୍ ।
ଅଶ୍ୱମେଧସହସ୍ରାଦ୍ଧି ସତ୍ୟମେବ ବିଶିଷ୍ୟତେ ।

ସହସ୍ର ଅଶ୍ୱମେଧର ଫଳ ଓ ସତ୍ୟ କଥନର ଫଳକୁ ତରାଜୁରେ ତଉଲିଲେ ସତ୍ୟର ଫଳର ଗୁରୁତ୍ୱ ବେଶି ହୁଏ । ମହର୍ଷି ମନୁ ସତ୍ୟସମ୍ବନ୍ଧରେ ବିଶେଷ ଭାବରେ କହନ୍ତି :—

ବାଚ୍ୟର୍ଥା ନିୟତାଃ ସର୍ବେ ବାଙ୍ମୂଳା ବାଗ୍‌ବିନିଃସୃତାଃ
ତାଂ ତୁ ଯଃ ସ୍ତେନୟେଦ୍ ବାଚଂ ସ ସର୍ବସ୍ତେୟକୃନ୍ନରଃ ।

"ବାକ୍ୟଦ୍ୱାରା ପ୍ରତ୍ୟେକ ମନୁଷ୍ୟର ବ୍ୟବହାର ପରିଗୃହୀତ ହୁଏ, ପରସ୍ପରର ବିଷୟର ଆଲୋଚନା ପରସ୍ପରକୁ ଜଣାଇବା ପାଇଁ ତାହିଁ ଏକମାତ୍ର ସାଧନ, ଯେଉଁ ଲୋକ ସମସ୍ତ ବ୍ୟବହାରର ମୂଳ ଉହାକୁ କଳୁଷିତ କରେ ସେ ବ୍ୟକ୍ତି ସର୍ବଚୋରର ବ୍ୟତୀତ ଅନ୍ୟ କିଛି ନୁହେ ।" ତେଣୁ ମନୁ କହୁଅଛନ୍ତି, "ସତ୍ୟପୂତାଂ ବଦେତ୍ ବାଚମ୍ ।" ଅର୍ଥାତ୍ ସତ୍ୟପୂତ ବାକ୍ୟହିଁ କହିବ । ଉପନିଷଦରେ ମଧ୍ୟ 'ସତ୍ୟଂବଦ', 'ଧର୍ମଂଚର' ଇତ୍ୟାଦି ଉପଦେଶ ଅନେକ ସ୍ଥଳରେ ପ୍ରଦତ୍ତ ହୋଇଅଛି ।

ଏ ଭଳି ଅବସ୍ଥାରେ ସତ୍ୟର କୌଣସି ଅପବାଦ ହୋଇପାରେ, ଏହା କେହି କେତେବେଳେ କଳ୍ପନା କରି ପାରେ କି ? କିନ୍ତୁ ଦୁର୍ଜନପୂର୍ଣ୍ଣ ଏ ସଂସାରରେ ମନୁଷ୍ୟର ବ୍ୟବହାର ବଡ଼ କଠିନ । ମନେକର ଜଣେ ନିରୀହଲୋକ ଡକାୟତଙ୍କ କବଳରୁ ଖସିଆସି ଭ୍ରମ ଜାଣିବାରେ ବନ ମଧ୍ୟରେ ଲୁଚି ଅଛି,

କର୍ମଣ୍ୟକର୍ମ ଯଃ ପଶ୍ୟେଦକର୍ମଣି ଚ କର୍ମ ଯଃ
ସ ବୁଦ୍ଧିମାନ୍ ମନୁଷ୍ୟେଷୁ ସ ଯୁକ୍ତଃ କୃତ୍ସ୍ନକର୍ମକୃତ୍ ।୧୮।

ଯରେ ସେହି ଡକାୟିତ ଖଡ୍‌ଗହସ୍ତରେ ତୁମ ପାଖରେ ପହଞ୍ଚି ଯଦି ପଚାରେ, 'ସେ ଲୋକ କାହିଁ ?' ସେତେବେଳେ ତୁମେ ସେ ନିରପରାଧ ଲୋକକୁ ଧରାଇ ଦେବ ନା ମିଛ କହିବ ? ନିରପରାଧ ଲୋକର ଜୀବନରକ୍ଷା କରିବା ମଧ୍ୟ ସତ୍ୟପରି ପୁଣ୍ୟକର୍ମ । ମହାଭାରତରେ ଏହି ସବୁ ବିଷୟ ଉତ୍ତମରୂପେ ଆଲୋଚିତ ହୋଇଅଛି ଏବଂ ସମସ୍ତ ଧର୍ମ କର୍ମର ରହସ୍ୟଜ୍ଞ ଭଗବାନ୍ ଶ୍ରୀକୃଷ୍ଣ କର୍ଣ୍ଣପର୍ବରେ ଅର୍ଜ୍ଜୁନଙ୍କୁ କହିଅଛନ୍ତି :—

ଅକୂଜନେନ ଚେନ୍ମୋକ୍ଷୋ ନାବକୂଜେତ୍ କଥଂଚନ
ଅବଶ୍ୟଂ କୂଜିତବ୍ୟେ ବା ଶଙ୍କେରନ୍ ବାପ୍ୟକୂଜନାତ୍ ।
ଶ୍ରେୟସ୍ତତ୍ରାନୃତଂ ବକ୍ତୁଂ ସତ୍ୟାଦିତି ବିଚାରିତମ୍ ॥

"କିଛି ନ କହିଲେ ଯେବେ ମୁକ୍ତିର ସମ୍ଭାବନା ଥାଏ, ତେବେ କୌଣସି କଥା କହିବ ନାହିଁ, କହିବା ଯେବେ ନିତାନ୍ତ ଅବଶ୍ୟକ ହୁଏ କିମ୍ବା କିଛି ନ କହିବା ଦ୍ୱାରା ଯେବେ ବିପଦର ଅଶଙ୍କା ଥାଏ ତେବେ ସେତେବେଳେ ମିଥ୍ୟା କହିବା ଅଧିକତର ପ୍ରଶସ୍ତ, ବିଚାରରେ ଏହିପରି ସ୍ଥିର ହୋଇଅଛି" ଶାନ୍ତିପର୍ବରେ କୁହାଯାଇ ଅଛି :—

ସତ୍ୟସ୍ୟ ବଚନଂ ଶ୍ରେୟଃ ସତ୍ୟାଦପି ହିତଂ ବଦେତ୍ ।
ଯଦ୍‌ଭୂତହିତମତ୍ୟନ୍ତଂ ଏତତ୍ ସତ୍ୟଂ ମତଂ ମମ ।

"ସତ୍ୟ କହିବା ଅବଶ୍ୟ ପ୍ରଶସ୍ତ କିନ୍ତୁ ସତ୍ୟ ଅପେକ୍ଷା ଯହିଁରେ ସର୍ବଭୂତଙ୍କର ହିତ ହେବ, ସେହିପରି କଥାହିଁ କହିବ; କାରଣ ସର୍ବଭୂତଙ୍କର ଯହିଁରେ ହିତ ହେବ—ତାହାହିଁ ମୋ ମତରେ ପ୍ରକୃତ ସତ୍ୟ ।"

ଏହିପରି ବିସ୍ତୃତ କରି ଦେଖିଲେ ଜଣାଯାଏ ଯେ କର୍ମର ପ୍ରକୃତ ତତ୍ତ୍ୱ ବଡ଼ କଠିନ । ପରବର୍ତ୍ତୀ ଶ୍ଳୋକରେ ଏହି ତତ୍ତ୍ୱକୁ ଅନ୍ୟ ଭାବରେ ବ୍ୟାଖ୍ୟା କରାଯାଉ ଅଛି ।

୧୮ । ଅନ୍ୱୟଦୀପିକା—ଯଃ (ଯେ) କର୍ମଣି ( କର୍ମରେ ) ଅକର୍ମ (କର୍ମାଭାବ), ଅକର୍ମଣି ଚ ( ଏବଂ ଅକର୍ମରେ ) ଯଃ ( ଯେ ) କର୍ମ ପଶ୍ୟେତ୍ ( କର୍ମ ଦର୍ଶନ କରନ୍ତି ), ସଃ ( ସେ ) ମନୁଷ୍ୟେଷୁ ( ମନୁଷ୍ୟମାନଙ୍କ ମଧ୍ୟରେ ) ବୁଦ୍ଧିମାନ୍; ସଃ (ସେ) ଯୁକ୍ତଃ (ଯୋଗଯୁକ୍ତ); [ଏବଂ] କୃତ୍ସ୍ନକର୍ମକୃତ୍ ( ସର୍ବ କର୍ମର ଅନୁଷ୍ଠାନକାରୀ ) ।

ଅନୁବାଦ—ଯେ କର୍ମ ମଧ୍ୟରେ ଅକର୍ମ ଓ ଅକର୍ମ ମଧ୍ୟରେ କର୍ମ ଦେଖନ୍ତି, ସେହି ଏକା ମନୁଷ୍ୟମାନଙ୍କ ମଧ୍ୟରେ ବୁଦ୍ଧିମାନ୍, ସେ ଯୋଗଯୁକ୍ତ ଓ ସେ ସର୍ବକର୍ମର ଅନୁଷ୍ଠାନକାରୀ ।

**ସୁବୋଧିନୀ ଟୀକା**—ତଦେବ କର୍ମାଦୀନାଂ ଦୁର୍ବିଜ୍ଞେୟତ୍ୱଂ ଦର୍ଶୟନ୍ନାହ—କର୍ମଣୀତି । ପରମେଶ୍ୱରାରାଧନଲକ୍ଷଣେ କର୍ମଣି କର୍ମଭିନ୍ନତ୍ୱେ ଅକର୍ମ କର୍ମେଦଂ ନ ଭବତୀତି ଯଃ ପଶ୍ୟେତ୍ । ତସ୍ୟ ଜ୍ଞାନହେତୁତ୍ୱେନ ବନ୍ଧକତ୍ୱାଭାବାତ୍ । ଅକର୍ମଣି ଚ ବିହିତାକରଣେ କର୍ମ ଯଃ ପଶ୍ୟେତ୍ ପ୍ରତ୍ୟବାୟୋତ୍ପାଦକତ୍ୱେନ ବନ୍ଧହେତୁତ୍ୱାତ୍ । ମନୁଷ୍ୟେଷୁ କର୍ମ କୁର୍ବାଣେଷୁ ସ ବୁଦ୍ଧିମାନ୍ ବ୍ୟବସାୟାତ୍ମକବୁଦ୍ଧିମତ୍ତ୍ୱାଚ୍ଛ୍ରେଷ୍ଠଃ । ତଂ ସ୍ତୌତି—ସ ଯୁକ୍ତୋ ଯୋଗୀ । ତେନ କର୍ମଣା ଜ୍ଞାନଯୋଗାବାପ୍ତେଃ । ସ ଏବ କୃତ୍ସ୍ନକର୍ମକର୍ତ୍ତା ଚ । ସର୍ବତଃ ସମ୍ପ୍ଲୁତୋଦକସ୍ଥାନୀୟେ ଚ ତସ୍ମିନ୍ କର୍ମଣି ସର୍ବକର୍ମଫଲାନାମନ୍ତର୍ଭାବାତ୍ । ତଦେବମାରୁରୁକ୍ଷୋଃ କର୍ମଯୋଗାଧିକାରାବସ୍ଥାୟାଂ—ନ କର୍ମଣାମନାରମ୍ଭାଦିତ୍ୟାଦିନୋକ୍ତ ଏବ କର୍ମଯୋଗଃ ସ୍ପଷ୍ଟୀକୃତଃ । ତତ୍ପ୍ରପଞ୍ଚରୂପତ୍ୱାଚ୍ଚାସ୍ୟ ପ୍ରକରଣସ୍ୟ ନ ପୌନରୁକ୍ତ୍ୟଦୋଷଃ । ଅନେନୈବ ଯୋଗାରୂଢ଼ାବସ୍ଥାୟାଂ ଯସ୍ତ୍ୱାତ୍ମରତିରେବ ସ୍ୟାଦିତ୍ୟାଦିନା ଯଃ କର୍ମାନୁପଯୋଗ ଉକ୍ତସ୍ତସ୍ୟାପ୍ୟର୍ଥାତ୍ ପ୍ରପଞ୍ଚଃ କୃତୋ ବେଦିତବ୍ୟଃ, ଯଦାରୁରୁକ୍ଷୋରପି କର୍ମ ବନ୍ଧକଂ ନ ଭବତି ତଦାରୂଢ଼ସ୍ୟ କୁତୋବନ୍ଧକଂ ସ୍ୟାତ୍—ଇତ୍ୟନେନାପି ଶ୍ଳୋକୋ ଯୁଜ୍ୟତେ । ଯଦ୍ୱା କର୍ମଣି ଦେହେନ୍ଦ୍ରିୟାଦିବ୍ୟାପାରେ ବର୍ତ୍ତମାନେଽପ୍ୟାତ୍ମନୋ ଦେହାଦିବ୍ୟତିରେକାନୁଭବେନାକର୍ମ ସ୍ୱାଭାବିକ ନୈଷ୍କର୍ମ୍ୟମେବ ଯଃ ପଶ୍ୟେତ୍ ତଥାକର୍ମଣି ଚ ଜ୍ଞାନରହିତେ ଦୁଃଖବୁଦ୍ଧ୍ୟା କର୍ମଣାଂ ତ୍ୟାଗେ କର୍ମ ଯଃ ପଶ୍ୟେତ୍ତସ୍ୟ ପ୍ରଯତ୍ନସାଧ୍ୟତ୍ୱେନ ମିଥ୍ୟାଗୁରତ୍ୱାତ୍ । ତଦୁକ୍ତଂ କର୍ମେନ୍ଦ୍ରିୟାଣି ସଂଯମ୍ୟେତ୍ୟାଦିନା । ଯ ଏବଂଭୂତଃ ସ ତୁ ସର୍ବେଷୁ ମନୁଷ୍ୟେଷୁ ବୁଦ୍ଧିମାନ୍ ପଣ୍ଡିତଃ । ତତ୍ରହେତୁଃ—ଯତଃ କୃତ୍ସ୍ନାନି ସର୍ବାଣି ଯଦୃଚ୍ଛୟା ପ୍ରାପ୍ତାନ୍ୟାହାରାଦୀନି କର୍ମାଣି କୁର୍ବନ୍ନପି ସ ଯୁକ୍ତ ଏବ । ଅକର୍ତ୍ତ୍ରାତ୍ମଜ୍ଞାନେନ ସମାଧିସ୍ଥ ଏବେତ୍ୟର୍ଥଃ । ଅନେନୈବ ଜ୍ଞାନିନଃ ସ୍ୱଭାବାଦାପନ୍ନଂ କଲଞ୍ଜଭକ୍ଷଣାଦିକଂ ନ ଦୋଷାୟ, ଅଜ୍ଞସ୍ୟତୁ ରାଗତଃ କୃତଂ ଦୋଷାୟେତି ବିକର୍ମଣୋଽପି ତତ୍ତ୍ୱଂ ନିରୂପିତଂ ଦ୍ରଷ୍ଟବ୍ୟମ୍ ।

**ବକ୍ତବ୍ୟ**—କର୍ମଗତି କପର ଦୁର୍ଜ୍ଞେୟ ୧୭ଶ ଓ ଗତି ଶାସ୍ତ୍ରଦୃଷ୍ଟିରେ ପୂର୍ବଶ୍ଳୋକର ବକ୍ତବ୍ୟରେ ତାହାର ବ୍ୟାଖ୍ୟା କରାଯାଇଅଛି । ଏ ଶ୍ଳୋକରେ କର୍ମ, ଅକର୍ମ ଓ ବିକର୍ମର ସ୍ୱରୂପ ତତ୍ତ୍ୱ ଦାର୍ଶନିକ ଦୃଷ୍ଟିରେ ଭଗବାନ୍ ବୁଝାଉ ଅଛନ୍ତି । 'ଅକର୍ମ' ଶବ୍ଦର ଅର୍ଥ କର୍ମଶୂନ୍ୟତା ଏବଂ 'ବିକର୍ମ' ଶବ୍ଦର ଅର୍ଥ କୁକର୍ମ ବା ଶାସ୍ତ୍ରନିଷିଦ୍ଧ କର୍ମ । ଅକର୍ମ ଶବ୍ଦର କର୍ମଶୂନ୍ୟତା ଅର୍ଥ ( ଯାହା ସନ୍ନ୍ୟାସମାର୍ଗୀମାନଙ୍କର ଅଭିପ୍ରେତ ) ଗୀତା ଦୃଷ୍ଟିରେ ପୃଥକ୍ । ତୃତୀୟ ଅଧ୍ୟାୟର ୫ମ ଓ ୧୮ଶ ଅଧ୍ୟାୟର ୧୧ଶ ଶ୍ଳୋକରେ ସ୍ପଷ୍ଟରୂପେ କୁହାଯାଇଅଛି ଯେ, ମନୁଷ୍ୟ କେତେବେଳେ ହେଲେ କର୍ମଶୂନ୍ୟହୋଇ ରହିପାରେ ନାହିଁ ; ଶୋଇବା, ଉଠିବା, ବସିବା, ଏପରିକି ବଞ୍ଚିରହିବା ପର୍ଯ୍ୟନ୍ତ ସମସ୍ତ ପ୍ରକୃତିସିଦ୍ଧ କର୍ମ ଦେହହେଲେ

ଯସ୍ୟ ସର୍ବେ ସମାରମ୍ଭାଃ କାମସଙ୍କଳ୍ପବର୍ଜିତାଃ ।
ଜ୍ଞାନାଗ୍ନିଦଗ୍ଧକର୍ମାଣଂ ତମାହୁଃ ପଣ୍ଡିତଂ ବୁଧାଃ । ୧୯ ।

ଏତତ୍ପରେ ନାହିଁ, ତେଣୁ ଗୀତାମତରେ କର୍ମର ଅର୍ଥ କେବଳ କ୍ରିୟାପ୍ରବଣତା ନ ବୁଝି, ଯାହାଦ୍ୱାରା କର୍ମର ପରିଣାମ ଶୁଭପ୍ରଦ ବା ଅଶୁଭପ୍ରଦ ହୁଏ, ତହିଁରୁ କର୍ମ ଓ ଅକର୍ମର ତତ୍ତ୍ୱ ବୁଝିବାକୁ ହୁଏ । କର୍ମ ବନ୍ଧନର କାରଣ, ତେଣୁ ଯେଉଁ ଭଳି ଭାବରେ କର୍ମକଲେ ତାହାର ବନ୍ଧକତ୍ୱ ନଷ୍ଟହେବ, ତାହା ତୃତୀୟ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । ଫଳାକାଙ୍କ୍ଷା ବର୍ଜନ, ଈଶ୍ୱରଙ୍କଠାରେ କର୍ମଫଳ ସମର୍ପଣ ଓ କର୍ତ୍ତୃତ୍ୱାଭିମାନବର୍ଜନ ଯୋଗ ଦ୍ୱାରା କର୍ମର ବନ୍ଧକତ୍ୱ ନଷ୍ଟ ହୁଏ । ଏହି ବନ୍ଧକତ୍ୱହୀନ କର୍ମ ହିଁ ଅକର୍ମ । ଅକର୍ମର ସାଧାରଣ ଅର୍ଥ କର୍ମଶୂନ୍ୟତା, ଏହା ଠିକ୍. ମାତ୍ର ଦାର୍ଶନିକ ଦୃଷ୍ଟିରେ ବିଚାର କଲେ ଏ ଅର୍ଥ ସମୀଚୀନ ବୋଧହୁଏ ନାହିଁ । ଗୋଟିଏ ଉଦାହରଣ ଗ୍ରହଣ କରାଯାଉ—ମୋ ଆଗରେ ଜଣେ ଲୋକ କାହାର ପିତାମାତାଙ୍କୁ ପ୍ରହାର କରୁଅଛି, ମୁଁ ଯେବେ ତହିଁରେ ବାଧା ନ ଦେଇ ଚୁପ୍ ହୋଇ ବସି ରହେଁ ତେବେ ମୋର ସେହି ଅକର୍ମ ବା କର୍ମଶୂନ୍ୟତା ପରିଣାମରେ କର୍ମ ଏପରିକି ବିକର୍ମରେ ପରିଣତ ହୁଏ । ଏହାର ଅଶୁଭ ପରିଣାମର ଫଳ ମୋତେ ଅବଶ୍ୟ ଭୋଗକରିବାକୁ ପଡ଼େ । ତେଣୁ ଏଠାରେ ଭଗବାନ୍ କହୁ ଅଛନ୍ତି, ଯେଉଁ ଲୋକ କର୍ମରେ ଅକର୍ମ ଦେଖନ୍ତି ଏବଂ ଅକର୍ମରେ କର୍ମ ଦେଖନ୍ତି, ସେହି ଏକା ଜ୍ଞାନୀ ଓ ବୁଦ୍ଧିମାନ୍ । ଫଳାଶା ତ୍ୟାଗ କରି ନିଃସଙ୍ଗ-ବୁଦ୍ଧିରେ ଯେଉଁ କର୍ମ କରାଯାଏ, ତାହା ହିଁ ପ୍ରକୃତ 'ଅକର୍ମ' । କାରଣ ଏହାର କର୍ମତ୍ୱ ଅର୍ଥାତ୍ ବନ୍ଧକତ୍ୱ ନଷ୍ଟହୋଇ ଥାଏ । ମନୁଷ୍ୟ ଯେଉଁ ସବୁ କର୍ମ କରେ ତହିଁରୁ ସାତ୍ତ୍ୱିକ କର୍ମ ବା ଅକର୍ମ ବାଦ୍ ଦେଲେ ବାକି ଯାହା ରହେ ତାହା ରାଜସ ଓ ତାମସ ଭେଦରେ ଦ୍ୱିବିଧ । ତାମସ କର୍ମ ମୋହ ଏବଂ ଅଜ୍ଞାନରୁ ଉତ୍ପନ୍ନ ହୁଏ. ତେଣୁ ତାହା 'ବିକର୍ମ' ଏବଂ ଯଦି କୌଣସି କର୍ମ ଆଳସ୍ୟ ବା ମୋହବଶତଃ ତ୍ୟାଗ କରାଯାଏ ( ଯଥା ସନ୍ଧ୍ୟା, ଉପାସନାଦି ), ତାହା ମଧ୍ୟ ବିକର୍ମ ହୁଏ, ଅକର୍ମ ନୁହେ । ଗୀତାର ୧୮ଶ ଅଧ୍ୟାୟରେ ଯାହା ରାଜସକର୍ମ ବୋଲି ବର୍ଣ୍ଣିତ ହୋଇ ଅଛି, ତାହା 'କର୍ମ' ନାମରେ ଅଭିହିତ ହୋଇ ପାରେ । ଗୀତାର 'ସାତ୍ତ୍ୱିକ' କର୍ମହିଁ ଅକର୍ମ ପଦବାଚ୍ୟ ।

୧୯ । **ଅନ୍ୱୟଦୀପିକା**—ଯସ୍ୟ ( ଯାହାର ) ସର୍ବେ ( ସମସ୍ତ ) ସମାରମ୍ଭାଃ ( ଉଦ୍‌ଯୋଗ ) କାମସଙ୍କଳ୍ପବର୍ଜିତାଃ ( ଫଳକାମନା ଓ କର୍ତ୍ତୃତ୍ୱାଭିମାନବର୍ଜିତ ), ବୁଧାଃ ( ଜ୍ଞାନୀଗଣ ) ଜ୍ଞାନାଗ୍ନିଦଗ୍ଧକର୍ମାଣଂ ( ଜ୍ଞାନରୂପ ଅଗ୍ନିଦ୍ୱାରା ଯାହାଙ୍କର କର୍ମ ସବୁ ଦଗ୍ଧହୋଇ ଥାଏ ) ତଂ ( ତାହାଙ୍କୁ ) ପଣ୍ଡିତଂ ଆହୁଃ ( ପଣ୍ଡିତ କହନ୍ତି ) ।

ତ୍ୟକ୍ତ୍ୱା କର୍ମଫଳାସଙ୍ଗଂ ନିତ୍ୟତୃପ୍ତୋ ନିରାଶ୍ରୟଃ ।
କର୍ମଣ୍ୟଭିପ୍ରବୃତ୍ତୋଽପି ନୈବ କିଞ୍ଚିତ୍ କରୋତି ସଃ । ୨୦ ।

**ଅନୁବାଦ**—ଯାହାଙ୍କର ସମସ୍ତ ଉଦ୍‌ଯୋଗ ବା କର୍ମଚେଷ୍ଟା ଫଳକାମନା ଓ କର୍ତ୍ତୃତ୍ୱାଭିମାନ ରହିତ ଏବଂ ଯାହାଙ୍କର କର୍ମ ଜ୍ଞାନରୂପ ଅଗ୍ନି ଦ୍ୱାରା ଦଗ୍ଧ ହୋଇଅଛି ସେହିଭଳି ଲୋକଙ୍କୁ ଜ୍ଞାନୀମାନେ ପଣ୍ଡିତ ବୋଲନ୍ତି ।

ସୁବୋଧିନୀ ଟୀକା—କର୍ମଣ୍ୟକର୍ମ ଯଃ ପଶ୍ୟେଦିତ୍ୟନେନ ଶ୍ରୁତ୍ୟର୍ଥାପତ୍ତିଭ୍ୟାଂ ଯଦୁକ୍ତମର୍ଥଦ୍ୱୟଂ ତଦେବ ସ୍ପଷ୍ଟୟତି—ଯସ୍ୟେତି ପଞ୍ଚଭିଃ । ସମ୍ୟଗାରଭ୍ୟନ୍ତ ଇତି ସମାରମ୍ଭାଃ କର୍ମାଣି, କାମ୍ୟତ ଇତି କାମଃ ଫଳମ୍ । ତତ୍ ସଙ୍କଳ୍ପେନ ବର୍ଜିତା ଯସ୍ୟ ଭବନ୍ତି ତଂ ପଣ୍ଡିତମାହୁଃ । ତତ୍ରହେତୁଃ ଯତସ୍ତୈଃ ସମାରମ୍ଭୈଃ ଶୁଦ୍ଧେ ଚିତ୍ତେ ସତି ଜାତେନ ଜ୍ଞାନାଗ୍ନିନା ଦଗ୍ଧାନ୍ୟ-କର୍ମତାଂ ଗତାନି କର୍ମାଣି ଯସ୍ୟ ତମ୍ । ଅନୁଚାବସ୍ଥାୟାଂ ତୁ କାମଃ ଫଳହେତୁ-ସ୍ତୃଷ୍ଣା । ତଦର୍ଥମିଦଂ କର୍ତ୍ତବ୍ୟମିତି କର୍ତ୍ତବ୍ୟତାଧ୍ୟବସାୟଃ ସଙ୍କଳ୍ପଃ । ତାଭ୍ୟାଂ ବର୍ଜିତାଃ । ଶେଷଂ ସ୍ପଷ୍ଟମ୍ ।

ବିବୃତି—ପୂର୍ବ ଶ୍ଳୋକରେ କର୍ମ ଓ ଅକର୍ମ ସମ୍ବନ୍ଧରେ ଯେଉଁ ତତ୍ତ୍ୱ ବର୍ଣ୍ଣିତ ହୋଇଅଛି, ଏଠାରୁ ପାଞ୍ଚଗୋଟି ଶ୍ଳୋକରେ ସେହି ତତ୍ତ୍ୱକୁ ସ୍ପଷ୍ଟ କରା ଯାଉଅଛି । ଏ ଶ୍ଳୋକରେ "କାମସଙ୍କଳ୍ପବର୍ଜିତାଃ" ଏହି ସମସ୍ତ ପଦର ଅର୍ଥ—'କାମ'ର ଅର୍ଥ ଫଳକାମନା ଓ 'ସଙ୍କଳ୍ପ'ର ଅର୍ଥ ମୁଁ କରୁଛି, ଏହି କର୍ତ୍ତୃତ୍ୱାଭିମାନ—ଏହି ଉଭୟ ତ୍ୟାଗ ସୂଚିତ ହୋଇଅଛି । 'ଜ୍ଞାନାଗ୍ନି—ଦଗ୍ଧକର୍ମାଣମ୍'—କର୍ମରେ ଅକର୍ମ ଦର୍ଶନ ରୂପ ଜ୍ଞାନଦ୍ୱାରା ଯାହାର ଶୁଭାଶୁଭ କର୍ମଫଳ ଦଗ୍ଧ ହୋଇଅଛି ଅର୍ଥାତ୍ କର୍ମର ଫଳଭୋଗେଚ୍ଛା ନଷ୍ଟ ହୋଇ ଅଛି ।

ଫଳ କାମନା ଓ କର୍ତ୍ତୃତ୍ୱାଭିମାନ ତ୍ୟାଗ—କର୍ମଯୋଗର ମୂଳମନ୍ତ୍ର । ହୃଦୟରେ ଜ୍ଞାନ ନ ଆସିବାଯାଏ ଲୋକ କର୍ମରେ କର୍ତ୍ତୃତ୍ୱାଭିମାନ ତ୍ୟାଗ କରିପାରେ ନାହିଁ । ଯେତେବେଳେ କର୍ମର ଦୋଷଭାଗ ବା ବନ୍ଧକତ୍ୱ ଜ୍ଞାନରୂପ ଅଗ୍ନିରେ ପୋଡ଼ିଯାଏ, ସେତେବେଳେ 'କର୍ମ' ଅକର୍ମରେ ପରିଣତ ହୁଏ । ପ୍ରକୃତରେ 'ଅହଂବୁଦ୍ଧି ତ୍ୟାଗ'ହିଁ ପ୍ରକୃତ ଜ୍ଞାନ । ୧୨ଶ ଅଧ୍ୟାୟ ୧୬ଶ ଶ୍ଳୋକରେ ଭଗବାନ୍ ଏହି ଭାବରେହିଁ "ସର୍ବାରମ୍ଭପରିତ୍ୟାଗୀ" ପଦ ପ୍ରୟୋଗ କରିଅଛନ୍ତି ।

୨୦ । ଅନ୍ୱୟଦୀପିକା—ସଃ (ସେ) କର୍ମଫଳାସଙ୍ଗଂ ତ୍ୟକ୍ତ୍ୱା (କର୍ମ ଓ କର୍ମଫଳରେ ଆସକ୍ତି ତ୍ୟାଗ କରି) ନିତ୍ୟତୃପ୍ତଃ (ସଦାତୃପ୍ତ), ନିରାଶ୍ରୟଃ (ନିରବଲମ୍ବ) [ହୋଇ] କର୍ମଣି (କର୍ମରେ) ଅଭିପ୍ରବୃତ୍ତଃ ଅପି (ସମ୍ୟକ୍‌ରୂପେ ପ୍ରବୃତ୍ତ ଥିଲେ ମଧ୍ୟ) କିଞ୍ଚିତ୍ ଏବ (କିଛି ବି) ନ କରୋତି (କରନ୍ତି ନାହିଁ) ।

ନିରାଶୀର୍ଯତଚିତ୍ତାତ୍ମା ତ୍ୟକ୍ତସର୍ବପରିଗ୍ରହଃ ।
ଶାରୀରଂ କେବଳଂ କର୍ମ କୁର୍ବନ୍ନାପ୍ନୋତି କିଲ୍‌ବିଷଂ । ୨୧ ।

**ଅନୁବାଦ**—ଯେ କର୍ମରେ ଓ କର୍ମଫଳରେ ଅସକ୍ତ ରହି ସର୍ବଦା ତୃପ୍ତ ଏବଂ ଯେ କୌଣସି ପ୍ରୟୋଜନରେ କାହାର ଆଶ୍ରୟ ଗ୍ରହଣ କରନ୍ତି ନାହିଁ, ସେ କର୍ମରେ ସମ୍ପୂର୍ଣ୍ଣରୂପେ ପ୍ରବୃତ୍ତ ହେଲେ ମଧ୍ୟ କିଛି କରନ୍ତି ନାହିଁ ।

**ସୁବୋଧିନୀ ଟୀକା**—କିଂଚ ତ୍ୟକ୍ତ୍ୱେତି । କର୍ମଣି ତତ୍ଫଳେ ଚାସଙ୍ଗଂ ତ୍ୟକ୍ତ୍ୱା ନିତ୍ୟେନ ନିଜାନନ୍ଦେନ ତୃପ୍ତଃ ଅତଏବ ଯୋଗକ୍ଷେମାର୍ଥମାଶ୍ରୟଣୀୟରହିତଃ । ଏବମ୍ଭୂତୋ ଯଃ ସ୍ୱାଭାବିକେ ବୈହିକେ ବା କର୍ମଣ୍ୟଭିତଃ ପ୍ରବୃତ୍ତୋଽପି କିଞ୍ଚିଦପି ନୈବ କରୋତି । ତସ୍ୟ କର୍ମାକର୍ମତାମାପଦ୍ୟତ ଇତ୍ୟର୍ଥଃ ।

**ବିବୃତି**—କର୍ମର ଅନୁଷ୍ଠାନ ସମୟରେ ଯେଉଁ କର୍ତ୍ତୃତ୍ୱାଭିମାନ ଜାତ ହୁଏ ତାହାର ନାମ 'କର୍ମାସଙ୍ଗ' ଏବଂ ସେଥିପାଇଁ ଫଳ କାମନାର ନାମ **'ଫଳାସଙ୍ଗ'** । ଯେ ନିତ୍ୟାନନ୍ଦରେ ପରିତୃପ୍ତ ଓ ବିଷୟରେ ନିରାକାଂକ୍ଷ ଏବଂ ଯେ ଯୋଗକ୍ଷେମନିମିତ୍ତ ଅର୍ଥାତ୍ ଅଲବ୍ଧ ବସ୍ତୁର ଲାଭ ଓ ଲବ୍ଧ ବସ୍ତୁର ରକ୍ଷାପାଇଁ କାହାର ଆଶ୍ରୟ ଗ୍ରହଣ କରନ୍ତି ନାହିଁ, ସେ ସର୍ବଦା କର୍ମରେ ପ୍ରବୃତ୍ତ ହେଲେ ବି କିଛି କରନ୍ତି ନାହିଁ ବୋଲି ଜାଣିବାକୁ ହେବ; ଅର୍ଥାତ୍ ତାହାଙ୍କର କର୍ମ ଅକର୍ମରେ ପରିଣତ ହୁଏ । ( ଏ ଅଧ୍ୟାୟର ୧୮ଶ ଶ୍ଳୋକର ବିବୃତି ଦେଖ ) ।

୨୧ । **ଅନ୍ୱୟଦୀପିକା**—ନିରାଶୀଃ ( ନିଷ୍କାମ ), ଯତଚିତ୍ତାତ୍ମା ( ସଂଯତଚିତ୍ତ ), ତ୍ୟକ୍ତସର୍ବପରିଗ୍ରହଃ ( ସବୁ ପ୍ରକାର ଉପଭୋଗ୍ୟ ପରିତ୍ୟାଗକାରୀ ବ୍ୟକ୍ତି ) କେବଳଂ ( କେବଳମାତ୍ର ) ଶାରୀରଂ କର୍ମ କୁର୍ବନ୍ ( ଶରୀରଦ୍ୱାରା କର୍ମକରି) କିଲ୍‌ବିଷମ୍ (ବନ୍ଧନ ବା ପାପ) କୁ ଆପ୍ନୋତି (ପ୍ରାପ୍ତ ହୁଅନ୍ତି ନାହିଁ) ।

**ଅନୁବାଦ**—ଯେ କାମନା ତ୍ୟାଗ କରିଅଛନ୍ତି, ଯାହାଙ୍କର ଚିତ୍ତ ଓ ଇନ୍ଦ୍ରିୟ ସଂଯତ ଏବଂ ଯେ ସର୍ବ ପ୍ରକାର ପରିଗ୍ରହ ବା ଉପଭୋଗ୍ୟ ଗ୍ରହଣ ବର୍ଜନ କରିଅଛନ୍ତି, ସେପରି ଲୋକ କେବଳ ଶରୀରଦ୍ୱାରା କର୍ମାନୁଷ୍ଠାନ କରି ମଧ୍ୟ ପାପଭାଗୀ ହୁଅନ୍ତି ନାହିଁ ବା ବନ୍ଧନରେ ପଡ଼ନ୍ତି ନାହିଁ ।

**ସୁବୋଧିନୀ ଟୀକା**—କିଞ୍ଚ—ନିରାଶୀରିତି । ନିର୍ଗତା ଆଶିଷଃ କାମନା ଯସ୍ମାତ୍ । ଯତଂ ନିୟତଂ ଚିତ୍ତଂ ଆତ୍ମା ଶରୀରଂ ଚ ଯସ୍ୟ । ତ୍ୟକ୍ତାଃ ସର୍ବେ ପରିଗ୍ରହା ଯେନ । ସ ଶାରୀରଂ ଶରୀରମାତ୍ରନିର୍ବର୍ତ୍ତ୍ୟଂ କର୍ତ୍ତୃତ୍ୱାଭିନିବେଶରହିତଂ କୁର୍ବନ୍ନପି କିଲ୍‌ବିଷଂ ବନ୍ଧନଂ ନ ପ୍ରାପ୍ନୋତି ।

**ବିବୃତି**—କର୍ମଯୋଗର ପ୍ରଧାନସାଧନ କାମନାତ୍ୟାଗ । ଯେ ନିରାଶୀ ଅର୍ଥାତ୍ କର୍ମ ଫଳର କାମନା ତ୍ୟାଗ କରିଅଛନ୍ତି, ଯାହାଙ୍କର ଚିତ୍ତ ଓ

' ଯଦୃଚ୍ଛାଲାଭସନ୍ତୁଷ୍ଟୋ ଦ୍ୱନ୍ଦ୍ୱାତୀତୋ ବିମତ୍ସରଃ ।
ସମଃ ସିଦ୍ଧାବସିଦ୍ଧୌ ଚ କୃତ୍ୱାପି ନ ନିବଧ୍ୟତେ ।। ୨୨ ।।

ଦେହେନ୍ଦ୍ରିୟାଦି ହେଉ ଏବଂ ଯେ କୌଣସି ଅବସ୍ଥାରେ ମଧ୍ୟ ନିଜ ଭୋଗପାଇଁ ଦାନ ବା ଉପହାରାଦି ଗ୍ରହଣ କରନ୍ତି ନାହିଁ, ସେ କର୍ତ୍ତୃତ୍ୱାଭିମାନ ଶୂନ୍ୟ ହୋଇ ଶରୀରଦ୍ୱାରା କର୍ମ କଲେହେଁ ପାପଭାଗୀ ହୁଅନ୍ତି ନାହିଁ । ଶ୍ରୀଧର ସ୍ୱାମୀ କିଲ୍ବିଷ ଶବ୍ଦର 'ବନ୍ଧନ' ଅର୍ଥ କରି ଅଛନ୍ତି । ତାହାହେଲେ 'କିଲ୍‌ବିଷଂ ନ ଆପ୍ନୋତି'ର ଅର୍ଥ ହେବ ବନ୍ଧନ ଗ୍ରସ୍ତ ହୁଅନ୍ତି ନାହିଁ ବା ଜନ୍ମ ବନ୍ଧନରୁ ମୁକ୍ତ ହୁଅନ୍ତି ।

୨୨ । ଅନ୍ୱୟଦୀପିକା—ଯଦୃଚ୍ଛାଲାଭସନ୍ତୁଷ୍ଟଃ (ବିନା ପ୍ରାର୍ଥନା ବା ଉଦ୍‌ଯୋଗରେ ଯାହା ମିଳେ ତହିଁରେ ଯେ ସନ୍ତୁଷ୍ଟ), ଦ୍ୱନ୍ଦ୍ୱାତୀତଃ (ସୁଖ ଦୁଃଖାଦିରେ ଯାହାଙ୍କର ସମାନ ଜ୍ଞାନ), ବିମତ୍ସରଃ (ଯେ ପରର ସୁଖ ଦେଖିଲେ ଈର୍ଷାନ୍ୱିତ ହୁଅନ୍ତି ନାହିଁ) ସିଦ୍ଧୌ ଅସିଦ୍ଧୌ ଚ ସମଃ (ସିଦ୍ଧି ଓ ଅସିଦ୍ଧିରେ ସମବୁଦ୍ଧି ହୁଅନ୍ତି) [ପୁରୁଷ] କୃତ୍ୱାପି (କର୍ମକରି ମଧ୍ୟ) ନ ନିବଧ୍ୟତେ (ବନ୍ଧନପ୍ରାପ୍ତ ହୁଅନ୍ତି ନାହିଁ) ।

ଅନୁବାଦ—ପ୍ରାର୍ଥନା ଓ ଉଦ୍‌ଯୋଗ ନ କରି ଯାହା ମିଳେ ତହିଁରେ ଯେ ସନ୍ତୁଷ୍ଟ ରହନ୍ତି, ଯେ ସୁଖ ଦୁଃଖରେ ସମଜ୍ଞାନ ହୁଅନ୍ତି, ପରର ଶ୍ରୀ ଦେଖି ଯେ ବ୍ୟଥିତ ହୁଅନ୍ତି ନାହିଁ, ସିଦ୍ଧି ଓ ଅସିଦ୍ଧିକୁ ଯେ ସମାନ ଜ୍ଞାନ କରନ୍ତି, ସେ କର୍ମ କରି ମଧ୍ୟ କର୍ମଫଳରେ ଆବଦ୍ଧ ହୁଅନ୍ତି ନାହିଁ ।

ସୁବୋଧିନୀ ଟୀକା—କିଞ୍ଚ ଯଦୃଚ୍ଛାଲାଭେତି—ଅପ୍ରାର୍ଥିତୋପସ୍ଥିତୋ ଲାଭଃ ଯଦୃଚ୍ଛାଲାଭଃ, ତେନ ସନ୍ତୁଷ୍ଟଃ, ଦ୍ୱନ୍ଦ୍ୱାନି ଶୀତୋଷ୍ଣାଦୀନ୍ୟତୀତୋଽତିକ୍ରାନ୍ତଃ । ତତ୍‌ସହନଶୀଳ ଇତ୍ୟର୍ଥଃ । ବିମତ୍ସରୋ ନିର୍ବୈରଃ ଯଦୃଚ୍ଛାଲାଭସ୍ୟାପି ସିଦ୍ଧାବସିଦ୍ଧୌ ଚ ସମୋ ହର୍ଷବିଷାଦରହିତଃ । ଯ ଏବମ୍ଭୂତଃ ସ ପୂର୍ବୋତ୍ତରଭୂମିକୟୋର୍ଯଥାଯଥଂ ବିହିତଂ ସ୍ୱାଭାବିକଂ ବା କର୍ମ କୃତ୍ୱାପି ବନ୍ଧଂ ନ ପ୍ରାପ୍ନୋତି ।

ବିବୃତି—ପ୍ରାର୍ଥନା ଓ ଉଦ୍ୟମ ବ୍ୟତୀତ ଯାହା ମିଳେ ତହିଁରେ ଯେ ସନ୍ତୁଷ୍ଟ ରହନ୍ତି, ଯେ କ୍ଷୁଧା, ପିପାସା, ଶୀତ, ଉଷ୍ଣ, ବାତ, ବର୍ଷାଆଦି ସମାନଭାବରେ ସହନ୍ତି, ସଂସାରରେ ଯେ ବୈରି ବା ଶତ୍ରୁଶୂନ୍ୟ ଏବଂ ପରର ଉନ୍ନତି ଦେଖିଲେ, ଯାହାଙ୍କର ଚିତ୍ତ ବିକୃତ ହୁଏନାହିଁ, କାର୍ଯ୍ୟର ଫଳ ଲାଭରେ ବା ଫଳର ଅଲାଭରେ ଯେ ସମଭାବରେ ଅବସ୍ଥାନ କରନ୍ତି, କର୍ମର ଅନୁଷ୍ଠାନ କଲେ ମଧ୍ୟ ସେ ବନ୍ଧନଦଶାଗ୍ରସ୍ତ ହୁଅନ୍ତି ନାହିଁ । (ଦ୍ୱିତୀୟ ଅଧ୍ୟାୟର ୪୮ଶ ଶ୍ଳୋକ ଦେଖ ) ।

ଗତସଙ୍ଗସ୍ୟ ମୁକ୍ତସ୍ୟ ଜ୍ଞାନାବସ୍ଥିତଚେତସଃ ।
ଯଜ୍ଞାୟାଚରତଃ କର୍ମ ସମଗ୍ରଂ ପ୍ରବିଲୀୟତେ । ୨୩ ।

୨୩ । ଅନ୍ୱୟଦୀପିକା—ଗତସଙ୍ଗସ୍ୟ (ଫଳାସକ୍ତିବର୍ଜିତ) ମୁକ୍ତସ୍ୟ (ରାଗଦ୍ୱେଷ ରହିତ), ଜ୍ଞାନାବସ୍ଥିତଚେତସଃ (ଜ୍ଞାନରେ ଅବଚଳିତଚିତ୍ତ) ଯଜ୍ଞାୟ କର୍ମ ଆଚରତଃ (ଯଜ୍ଞନିମିତ୍ତ କର୍ମ ଅନୁଷ୍ଠାନକାରୀ ବ୍ୟକ୍ତିଙ୍କର) ସମଗ୍ରଂ (ସମସ୍ତ କର୍ମ) ପ୍ରବିଲୀୟତେ (ବିନଷ୍ଟ ହୁଏ) ।

ଅନୁବାଦ—ଯେଉଁ ଲୋକ ଫଳାକାଙ୍କ୍ଷାବର୍ଜିତ, ରାଗଦ୍ୱେଷାଦିରୁ ମୁକ୍ତ, ଯାହାଙ୍କର ଚିତ୍ତ ଆତ୍ମବିଷୟକ ଜ୍ଞାନରେ ନିବିଷ୍ଟ, ଯେ ଯଜ୍ଞାର୍ଥ କର୍ମ କରନ୍ତି ଅର୍ଥାତ୍ ଈଶ୍ୱରପ୍ରୀତି ପାଇଁ ଯଜ୍ଞସ୍ୱରୂପ କର୍ମ କରନ୍ତି, ତାହାଙ୍କର ସମସ୍ତ କର୍ମ ଫଳସହିତ ନଷ୍ଟ ହୋଇଯାଏ ଅର୍ଥାତ୍ ଏ କର୍ମର କୌଣସି ସଂସ୍କାର ରହେନାହିଁ ।

ସୁବୋଧିନୀ ଟୀକା—କିଞ୍ଚ ଗତସଙ୍ଗସ୍ୟେତି—ଗତସଙ୍ଗସ୍ୟ ନିଷ୍କାମସ୍ୟ ରାଗାଦିଭିର୍ମୁକ୍ତସ୍ୟ ଜ୍ଞାନେଽବସ୍ଥିତଂ ଚେତୋ ଯସ୍ୟ ତସ୍ୟ ଯଜ୍ଞାୟ ପରମେଶ୍ୱରାର୍ଥଂ କର୍ମାଚରତଃ ସତଃ ସମଗ୍ରଂ ସବାସନଂ କର୍ମ ପ୍ରବିଲୀୟତେ । ଅକର୍ମଭାବମାପଦ୍ୟତେ । ଆରୁରୁକ୍ଷୋଯୋଗପକ୍ଷେ—ଯଜ୍ଞାୟେତି । ଯଜ୍ଞାୟ ଯଜ୍ଞରକ୍ଷଣାର୍ଥଂ ଲୋକସଂଗ୍ରହାର୍ଥମେବ କର୍ମ କୁର୍ବତ ଇତ୍ୟର୍ଥଃ ।

ବିବୃତି—ଯଜ୍ଞରତତ୍ତ୍ୱ ତୃତୀୟ ଅଧ୍ୟାୟର ବିବୃତିରେ ବିସ୍ତାରିତ ରୂପେ ଆଲୋଚିତ ହୋଇଅଛି । ଈଶ୍ୱରପ୍ରୀତି ଉଦ୍ଦେଶ୍ୟରେ ତ୍ୟାଗମୂଳକ ଯେଉଁସବୁ କର୍ମ କରାଯାଏ, ସେଗୁଡ଼ିକୁ ଯଜ୍ଞନାମରେ ଅଭିହିତ କରାଯାଏ । ସ୍ୱର୍ଗାଦି ଲାଭ ଉଦ୍ଦେଶ୍ୟରେ ଯେଉଁସବୁ ସକାମ କର୍ମ କରାଯାଏ, ସେ ସବୁ ବନ୍ଧନର କାରଣ, ନିଷ୍କାମ ଭାବରେ ଅହଂଭାବତ୍ୟାଗପୂର୍ବକ ସଂସାରଚକ୍ରର ସଂରକ୍ଷଣ ପାଇଁ ଯେଉଁସବୁ କର୍ମ କରାଯାଏ, ତଦ୍ୱାରା ପରମପୁରୁଷଙ୍କରହିଁ ଯଜନ କରାଯାଏ । ଆତ୍ମଜ୍ଞାନ ଅଭାବରେ ଏହା ହୋଇପାରେ ନାହିଁ । ତେଣୁ ଏ ଶ୍ଲୋକରେ 'ଜ୍ଞାନାବସ୍ଥିତ ଚେତସଃ' ପଦର ପ୍ରୟୋଗ ହୋଇଅଛି ।

ବୈଦିକଯୁଗରେ ସକାମଯଜ୍ଞ ପରମଧର୍ମରୂପେ ଗୃହୀତ ହେଉଥିଲା । କାଳକ୍ରମେ ଯଜ୍ଞ ଶବ୍ଦର ଅର୍ଥ ସମ୍ପ୍ରସାରିତ ହୋଇ ବ୍ରାହ୍ମଣାଦି ଚତୁର୍ବର୍ଣ୍ଣର କର୍ତ୍ତବ୍ୟକୁ ଯଜ୍ଞ ବୁଝାଗଲା । (ମନୁ ୧।୮୭), ପରେ ଜ୍ଞାନବାଦୀମାନଙ୍କର ପ୍ରଭାବ ବୃଦ୍ଧିହେବାରୁ ବୈଦିକ ସକାମ ଯଜ୍ଞ ଗୌଣ ବୋଲି ବିବେଚିତ ହେଲା ଏବଂ ବ୍ରହ୍ମଚିନ୍ତାହିଁ ଶ୍ରେଷ୍ଠ ଯଜ୍ଞ ରୂପେ ନିର୍ଦ୍ଧାରିତ ହେଲା । ଏହାର ନାମ ବ୍ରହ୍ମଯଜ୍ଞ ବା ଜ୍ଞାନଯଜ୍ଞ । ଏହି ୪ର୍ଥ ଅଧ୍ୟାୟର ୩୩ଶ ଶ୍ଲୋକରେ ଦ୍ରବ୍ୟ ଯଜ୍ଞଠାରୁ ଜ୍ଞାନଯଜ୍ଞ ଯେ ଶ୍ରେଷ୍ଠ, ଏହା ଭଗବାନ୍ ସ୍ୱୟଂ ନିର୍ଦ୍ଦେଶ କରିଦେଇ ଅଛନ୍ତି । ଭାଗବତ ଧର୍ମ

ବ୍ରହ୍ମାର୍ପଣଂ ବ୍ରହ୍ମ ହବିର୍ବ୍ରହ୍ମାଗ୍ନୌ ବ୍ରହ୍ମଣା ହୁତଂ ।
ବ୍ରହ୍ମୈବ ତେନ ଗନ୍ତବ୍ୟଂ ବ୍ରହ୍ମକର୍ମସମାଧିନା । ୨୪ ।

ବା ଭକ୍ତିମାର୍ଗ ପରବର୍ତ୍ତୀକାଳୀନ, ତହିଁରେ ଜପ ଯଜ୍ଞରହିଁ ପ୍ରାଧାନ୍ୟ । ବିଭୂତି ବର୍ଣ୍ଣନା ପ୍ରସଙ୍ଗରେ ୧୦ମ ଅଧ୍ୟାୟ ୨୫ଶ ଶ୍ଳୋକରେ ଭଗବାନ୍ କହୁଅଛନ୍ତି, 'ଯଜ୍ଞାନାଂ ଜପଯଜ୍ଞୋଽସ୍ମି' ଅର୍ଥାତ୍ ଯଜ୍ଞମାନଙ୍କମଧ୍ୟରେ ଆମ୍ଭେ ଜପଯଜ୍ଞ, ଯଜ୍ଞଶବ୍ଦର ଅର୍ଥ କ୍ରମେ କିପରି ସୁପ୍ରସାରିତ ହୋଇଅଛି—ଏଥିରୁ ସହଜରେ ବୁଝିହେବ । ତୃତୀୟ ଅଧ୍ୟାୟରେ ୯ମ ଶ୍ଳୋକରୁ ୧୬ଶ ଶ୍ଳୋକ ମଧ୍ୟରେ ନିଷ୍କାମଭାବରେ ଶ୍ରୌତ ଓ ସ୍ମାର୍ତ୍ତକର୍ମମାନ କଲେ ତାହା ମୋକ୍ଷପ୍ରଦ ହୁଏ ବୋଲି କୁହାଯାଇଅଛି । ଏ ଅଧ୍ୟାୟରେ ଅଗ୍ନିରେ ଘୃତ ତଣ୍ଡୁଳାଦି ଅର୍ପଣକୁ କେବଳ ଯଜ୍ଞ ନ କହି, ଯଜ୍ଞ ଶବ୍ଦର ଲାକ୍ଷଣିକ ଅର୍ଥ ଗ୍ରହଣପୂର୍ବକ ଯୋଗ, ତପସ୍ୟା ପ୍ରଭୃତିକୁ ତଦନ୍ତର୍ଗତ କରି ତନ୍ମଧ୍ୟରେ ଜ୍ଞାନଯଜ୍ଞର ଶ୍ରେଷ୍ଠତା ପ୍ରଦର୍ଶିତ ହୋଇଅଛି ।

୨୪ । **ଅନ୍ୱୟଦୀପିକା**—ଅର୍ପଣଂ (ସ୍ରୁବାଦିଯଜ୍ଞପାତ୍ର ବା ଅର୍ପିତ ଦାନ କ୍ରିୟା) ବ୍ରହ୍ମ, ହବିଃ (ଘୃତ) ବ୍ରହ୍ମ, ବ୍ରହ୍ମାଗ୍ନୌ (ବ୍ରହ୍ମରୂପ ଅଗ୍ନିରେ) ବ୍ରହ୍ମଣା (ବ୍ରହ୍ମରୂପ ହୋତାଙ୍କ କର୍ତ୍ତୃକ) ହୁତଂ (ହୋମ ହେଉଅଛି), [ଏହିପରି ଯେ ଦେଖନ୍ତି] ତେନ (ସେହି) ବ୍ରହ୍ମକର୍ମସମାଧିନା (କର୍ମରେ ବ୍ରହ୍ମବୁଦ୍ଧି-ପରାୟଣ ବ୍ୟକ୍ତିଙ୍କଦ୍ୱାରା) ବ୍ରହ୍ମ ଏବ (ବ୍ରହ୍ମହିଁ) ଗନ୍ତବ୍ୟମ୍ (ଲବ୍ଧ ହୁଅନ୍ତି) ।

**ଅନୁବାଦ**—ଅର୍ପଣ (ସ୍ରୁବାଦି ଯଜ୍ଞପାତ୍ର ବା ଅର୍ପଣ ଦେବା କ୍ରିୟା) ବ୍ରହ୍ମ, ଘୃତାଦି ବ୍ରହ୍ମ, ଯେ ହୋମ କରନ୍ତି ସେ ମଧ୍ୟ ବ୍ରହ୍ମ, ଏହିପରି କର୍ମରେ ଯାହାଙ୍କର ବ୍ରହ୍ମବୁଦ୍ଧି, ଏକାଗ୍ରଚିତ୍ତ ସେ ବ୍ରହ୍ମକୁହିଁ ଲାଭ କରନ୍ତି ।

**ସୁବୋଧିନୀ ଟୀକା**—ତଦେବଂ ପରମେଶ୍ୱରାରାଧନଲକ୍ଷଣଂ କର୍ମ ଜ୍ଞାନହେତୁତ୍ୱେନ ବନ୍ଧକତ୍ୱାଭାବାଦକର୍ମୈବ । ଆରୂଢ଼ାବସ୍ଥାୟାଂ ତୁ କର୍ତ୍ତୃତ୍ୱାଦ୍ୟ-ଜ୍ଞାନେନ ବାଧିତତ୍ୱାତ୍ ସ୍ୱାଭାବିକମପି କର୍ମାକର୍ମୈବେତି । କର୍ମଣ୍ୟକର୍ମ ଯଃ ପଶ୍ୟେ-ଦିତ୍ୟନେନୋକ୍ତଃ କର୍ମପ୍ରବିଲୟଃ ପ୍ରପଞ୍ଚିତଃ । ଇଦାନୀଂ କର୍ମଣି ତଦଙ୍ଗେଷୁ ବ୍ରହ୍ମୈବାନୁସ୍ୟୂତଂ ପଶ୍ୟତଃ କର୍ମପ୍ରବିଲୟମାହ ବ୍ରହ୍ମାର୍ପଣମିତି । ଅର୍ପ୍ୟତେଽନେନେତ୍ୟର୍ପଣଂ ସ୍ରୁବାଦି, ତଦପି ବ୍ରହ୍ମୈବ । ଅର୍ପ୍ୟମାଣଂ ହବିରପି ଘୃତାଦିକଂ ବ୍ରହ୍ମୈବ । ବ୍ରହ୍ମୈବାଗ୍ନିଃ, ତସ୍ମିନ୍ ବ୍ରହ୍ମଣା କର୍ତ୍ରା ହୁତଂ ହୋମଃ । ଅଗ୍ନିଶ୍ଚ କର୍ତ୍ତା ଚ କ୍ରିୟା ଚ ବ୍ରହ୍ମୈବେତ୍ୟର୍ଥଃ । ଏବଂ ବ୍ରହ୍ମଣ୍ୟେବ କର୍ମାତ୍ମକେ ସମାଧିଶ୍ଚିତ୍ତୈକାଗ୍ର୍ୟଂ ଯସ୍ୟ ତେନ ବ୍ରହ୍ମୈବ ଗନ୍ତବ୍ୟଂ ପ୍ରାପ୍ୟମ୍ । ନ ତୁ ଫଳାନ୍ତରମିତ୍ୟର୍ଥଃ ।

ଦୈବମେବାପରେ ଯଜ୍ଞଂ ଯୋଗିନଃ ପର୍ଯ୍ୟୁପାସତେ ।
ବ୍ରହ୍ମାଗ୍ନାବପରେ ଯଜ୍ଞଂ ଯଜ୍ଞେନୈବୋପଜୁହ୍ୱତି । ୨୫ ।

ବକ୍ତବ୍ୟ—ଯେଉଁ ଲୋକ କର୍ମରେ ଏବଂ କର୍ମର ସକଳ ଅଙ୍ଗରେ କେବଳ ବ୍ରହ୍ମଦର୍ଶନ କରନ୍ତି, ସେ ବ୍ରହ୍ମକୁହିଁ ପ୍ରାପ୍ତ ହୁଅନ୍ତି—ଏହାହିଁ ଏ ଶ୍ଳୋକର ତାତ୍ପର୍ଯ୍ୟ । ଇନ୍ଦ୍ରାଦି ଦେବତାଙ୍କ ଉଦ୍ଦେଶ୍ୟରେ ଘୃତାଦି ତ୍ୟାଗର ନାମ 'ଯାଗ' । ହୋତା ଅର୍ଥାତ୍ ଯେ ହୋମ କରନ୍ତି ସେ କର୍ତ୍ତା, ଘୃତାଦି କର୍ମ, ସ୍ରୁବାଦି କରଣ, ଇନ୍ଦ୍ରାଦି ଦେବତା ସମ୍ପ୍ରଦାନ, ଅଗ୍ନି ଅର୍ଥାତ୍ ଯହିଁରେ ହବିଃ ଅର୍ପିତ ହୁଏ ତାହା ଅଧିକରଣ । ସୁତରାଂ କର୍ତ୍ତା, କର୍ମ, କରଣ, ସମ୍ପ୍ରଦାନ ଓ ଅଧିକରଣ ସବୁ କର୍ମରେ ବ୍ରହ୍ମଦୃଷ୍ଟି ରୂପ ସମାଧିହେଲେ ଅନୁଷ୍ଠାତା ବ୍ରହ୍ମତ୍ୱ ପ୍ରାପ୍ତ ହୁଅନ୍ତି । ଏହିଭଳି ଦୃଷ୍ଟିରେ ଅସତ୍ୟର ଧ୍ୱଂସ ହୁଏ । ସୁତରାଂ ଏହା ନିଷ୍କାମ ବୁଦ୍ଧିରେ ଯଜ୍ଞକରିବା ଲୋକର ବର୍ଣ୍ଣନା । ଏହା କର୍ମଯୋଗର ଶେଷକଥା, ଏ ଅବସ୍ଥାରେ କର୍ମ ଜ୍ଞାନରେ ପରିସମାପ୍ତ ହୁଏ । ଏ ଅଧ୍ୟାୟ ୩୩ ଶ୍ଳୋକରେ (ସର୍ବଂ କର୍ମାଖିଳଂ ପାର୍ଥ ଜ୍ଞାନେ ପରିସମାପ୍ୟତେ) ଏହାହିଁ କୁହାଯାଇଅଛି । 'ସର୍ବଂ ଖଳ୍ୱିଦଂ ବ୍ରହ୍ମ' ଅର୍ଥାତ୍ ସବୁ ବ୍ରହ୍ମ ବସ୍ତୁଜଗତ, ଏହି ସତ୍ୟ ଉପଲବ୍ଧି କରି ପାରିଲେ କର୍ମଯୋଗୀଙ୍କର ସାଧନା ପୂର୍ଣ୍ଣତା ପ୍ରାପ୍ତ ହୁଏ, ସେତେବେଳେ ଜ୍ଞାତା, ଜ୍ଞେୟ, ଉପାସ୍ୟ, ଉପାସକ, କର୍ତ୍ତା, କର୍ମ, କରଣ ପ୍ରଭୃତି ଭେଦବୁଦ୍ଧି ରହେନାହିଁ । ସବୁ ଏକତତ୍ତ୍ୱ—ଏହି ବୁଦ୍ଧିହିଁ ଜାତହୁଏ ।

୨୫ । ଅନ୍ୱୟଦୀପିକା—ଅପରେ ( ଅନ୍ୟ ) ଯୋଗିନଃ ( କର୍ମଯୋଗୀମାନେ ) ଦୈବମ୍ ଏବ ଯଜ୍ଞଂ ( ଦୈବଯଜ୍ଞହିଁ ) ପର୍ଯ୍ୟୁପାସତେ ( ଅନୁଷ୍ଠାନ କରନ୍ତି ) । ଅପରେ ( ଅନ୍ୟ କେହି କେହି ) ବ୍ରହ୍ମାଗ୍ନୌ ( ବ୍ରହ୍ମରୂପ ଅଗ୍ନିରେ ) ଯଜ୍ଞେନ ଏବ ( ଯଜ୍ଞ ଦ୍ୱାରାହିଁ ) ଯଜ୍ଞଂ ଉପଜୁହ୍ୱତି ( ଯଜ୍ଞର ଯଜନ କରନ୍ତି ) ।

ଅନୁବାଦ—କୌଣସି କୌଣସି କର୍ମଯୋଗୀ (ବ୍ରହ୍ମ ବୁଦ୍ଧି ବଦଳରେ) ଦେବତା ପ୍ରଭୃତିଙ୍କ ଉଦ୍ଦେଶ୍ୟରେ ଯଜ୍ଞ କରନ୍ତି । ଅନ୍ୟ କେହି କେହି ବ୍ରହ୍ମରୂପ ଅଗ୍ନିରେ ଯଜ୍ଞଦ୍ୱାରାହିଁ ଯଜ୍ଞର ଯଜନ କରନ୍ତି ।

ସୁବୋଧିନୀ ଟୀକା—ଏତଦେବ ଯଜ୍ଞତ୍ୱେନ ସମ୍ପାଦିତଂ ସର୍ବ ବ୍ରହ୍ମଦର୍ଶନଲକ୍ଷଣଂ ଜ୍ଞାନଂ ସର୍ବଯଜ୍ଞୋପାୟପ୍ରାପ୍ୟତ୍ୱାତ୍ ସର୍ବଯଜ୍ଞେଭ୍ୟଃ ଶ୍ରେଷ୍ଠମିତ୍ୟେବ ସ୍ତୋତୁମଧିକାରଭେଦେନ ଜ୍ଞାନୋପାୟଭୂତାନ୍ ବହୂନ୍ ଯଜ୍ଞାନାହ—ଦୈବମିତ୍ୟାଦିଭିରଷ୍ଟଭିଃ । ଦେବା ଇନ୍ଦ୍ରବରୁଣାଦୟ ଇଜ୍ୟନ୍ତେ ଯସ୍ମିନ୍ । ଏବକାରେଣେନ୍ଦ୍ରାଦିଷୁ ବ୍ରହ୍ମବୁଦ୍ଧିରାହିତ୍ୟଂ ଦର୍ଶିତମ୍ । ତଂ ଦୈବମେବ ଯଜ୍ଞମପରେ କର୍ମଯୋଗିନଃ ପର୍ଯ୍ୟୁପାସତେ ଶ୍ରଦ୍ଧୟାନୁତିଷ୍ଠନ୍ତି । ଅପରେ ତୁ ଜ୍ଞାନଯୋଗିନୋ

ଶ୍ରୋତ୍ରାଦୀନୀନ୍ଦ୍ରିୟାଣ୍ୟନ୍ୟେ ସଂଯମାଗ୍ନିଷୁ ଜୁହ୍ୱତି ।
ଶବ୍ଦାଦୀନ୍ ବିଷୟାନନ୍ୟ ଇନ୍ଦ୍ରିୟାଗ୍ନିଷୁ ଜୁହ୍ୱତି ।୨୬।

ବ୍ରହ୍ମରୂପେଽଗ୍ନୌ ଯଜ୍ଞେନୈବୋପାୟେନ ବ୍ରହ୍ମାର୍ପଣମିତ୍ୟାଦ୍ୟୁକ୍ତପ୍ରକାରେଣ ଯଜ୍ଞମୁପଜୁହ୍ୱତି, ଯଜ୍ଞଶବ୍ଦସର୍ବକର୍ମାଣି ପ୍ରବିଲାପୟନ୍ତୀତ୍ୟର୍ଥଃ, ସୋଽୟଂ ଜ୍ଞାନଯଜ୍ଞଃ ।

ବିବୃତି—'ଯଜ୍ଞେନ ଯଜ୍ଞମଯଜନ୍ତ ଦେବାଃ' ଋଗ୍‌ବେଦାନ୍ତର୍ଗତ ପୁରୁଷସୂକ୍ତର ଏହି ମନ୍ତ୍ରର ଅର୍ଥକୁ ଲକ୍ଷ୍ୟକରି ଶ୍ଳୋକର ଶେଷାର୍ଦ୍ଧରେ 'ଯଜ୍ଞଂ ଯଜ୍ଞେନୈବୋପଜୁହ୍ୱତି', ଏହା ଉକ୍ତ ହୋଇଅଛି । ସୃଷ୍ଟିର ସକଳ ପଦାର୍ଥରେ ବ୍ରହ୍ମ ସର୍ବଦା ପରିପୂର୍ଣ୍ଣ ଭାବରେ ରହି ଅଛନ୍ତି, ଏହି ହେତୁରୁ ନିଷ୍କାମ ବୁଦ୍ଧିରେ ସମସ୍ତ କର୍ମ କଲେ ବ୍ରହ୍ମଙ୍କ ଦ୍ୱାରା ସର୍ବଦା ବ୍ରହ୍ମଙ୍କରହିଁ ଯଜନ ହୁଏ, ଏହାହିଁ ଉତ୍ତରାର୍ଦ୍ଧର ସାର କଥା, ଏହାକୁ 'ଜ୍ଞାନଯଜ୍ଞ' କୁହାଯାଏ ।

ଶ୍ଳୋକର ପ୍ରଥମାର୍ଦ୍ଧରେ ଯେଉଁ ଯଜ୍ଞ କଥା କୁହା ଯାଇଅଛି, ତାହା 'ଦୈବଯଜ୍ଞ' । ଏଥିରେ କର୍ମଯୋଗୀ ଭଗବାନଙ୍କର ବିଭିନ୍ନ ଶକ୍ତିର ଉପାସନା କରି ବିଭିନ୍ନ ଧର୍ମକର୍ମାନୁଷ୍ଠାନଦ୍ୱାରା ତାହାଙ୍କୁ ଲାଭ କରିବାକୁ ଇଚ୍ଛା କରନ୍ତି ।

୨୬ । ଅନ୍ୱୟଦୀପିକା—ଅନ୍ୟେ (ଅନ୍ୟ ଲୋକମାନେ) ଶ୍ରୋତ୍ରାଦୀନି ଇନ୍ଦ୍ରିୟାଣି ( ଚକ୍ଷୁ କର୍ଣ୍ଣାଦି ଇନ୍ଦ୍ରିୟମାନଙ୍କୁ ) ସଂଯମାଗ୍ନିଷୁ (ସଂଯମ ରୂପ ଅଗ୍ନିରେ) ଜୁହ୍ୱତି ( ଆହୁତି ଦିଅନ୍ତି ), ଅନ୍ୟେ ( ଆଉ କେତେକ ଲୋକ ) ଇନ୍ଦ୍ରିୟାଗ୍ନିଷୁ ( ଇନ୍ଦ୍ରିୟରୂପ ଅଗ୍ନିରେ ) ଶବ୍ଦାଦୀନ୍ ( ଶବ୍ଦାଦି ) ବିଷୟାନ୍ ( ବିଷୟମାନଙ୍କୁ ) ଜୁହ୍ୱତି ( ଆହୁତି ଦିଅନ୍ତି ) ।

ଅନୁବାଦ—କେତେକ ଲୋକ ଚକ୍ଷୁକର୍ଣ୍ଣପ୍ରଭୃତି ଇନ୍ଦ୍ରିୟମାନଙ୍କୁ ସଂଯମରୂପ ଅଗ୍ନିରେ ଏବଂ ଅନ୍ୟ କେତେକ ଲୋକ ଶବ୍ଦାଦି ବିଷୟ ରାଶିକୁ ଇନ୍ଦ୍ରିୟ ରୂପ ଅଗ୍ନିରେ ଆହୁତି କରନ୍ତି ।

ସୁବୋଧିନୀ ଟୀକା—ଶ୍ରୋତ୍ରାଦୀନୀତି. ଅନ୍ୟେ ନୈଷ୍ଠିକା ବ୍ରହ୍ମଚାରିଣସ୍ତତ୍ତଦିନ୍ଦ୍ରିୟସଂଯମରୂପେଷ୍ୱଗ୍ନିଷୁ ଶ୍ରୋତ୍ରାଦୀନି ଜୁହ୍ୱତି ପ୍ରବିଲାପୟନ୍ତି; ଇନ୍ଦ୍ରିୟାଣି ନିରୁଧ୍ୟ ସଂଯମପ୍ରଧାନାସ୍ତିଷ୍ଠନ୍ତୀତ୍ୟର୍ଥଃ । ଇନ୍ଦ୍ରିୟାଣ୍ୟେବାଗ୍ନୟଃ, ତେଷୁ ଶବ୍ଦାଦୀନନ୍ୟେ ଗୃହସ୍ଥା ଜୁହ୍ୱତି, ବିଷୟଭୋଗସମୟେଽପ୍ୟନାସକ୍ତାଃ ସନ୍ତୋଽଗ୍ନିତ୍ୱେନ ଭାବିତେଷ୍ୱିନ୍ଦ୍ରିୟେଷୁ ହବିଷ୍ଟ୍ୱେନ ଭାବିତାନ୍ ଶବ୍ଦାଦୀନ୍ ପ୍ରକ୍ଷିପନ୍ତୀତ୍ୟର୍ଥଃ ।

ବିବୃତି—୨୫ଶ ଶ୍ଳୋକରେ ଏବଂ ପରବର୍ତ୍ତୀ ଶ୍ଳୋକ ସମୂହରେ ନାନାବିଧ ଯଜ୍ଞ କଥା କୁହାଯାଇଅଛି । ଏ ଶ୍ଳୋକ ମାନଙ୍କରେ 'ଯଜ୍ଞ' ଶବ୍ଦ ଲାକ୍ଷଣିକ ବା ରୂପକାର୍ଥରେ ବ୍ୟବହୃତ ହୋଇଅଛି । ଯଜ୍ଞ ଶବ୍ଦର ମୂଳ ଅର୍ଥ—ଦ୍ରବ୍ୟାତ୍ମକ ଯଜ୍ଞକୁ ଲକ୍ଷଣାଦ୍ୱାରା ବିସ୍ତୃତ ଓ ବ୍ୟାପକ କରି ବ୍ରହ୍ମଚର୍ଯ୍ୟ, ତପସ୍ୟା, ସନ୍ନ୍ୟାସ, ସମାଧି, ପ୍ରାଣାୟାମ ପ୍ରଭୃତି ଭଗବତ୍ ପ୍ରାପ୍ତିର ସର୍ବପ୍ରକାର ସାଧନକୁ

ସର୍ବାଣୀନ୍ଦ୍ରିୟକର୍ମାଣି ପ୍ରାଣକର୍ମାଣି ଚାପରେ ।
ଆତ୍ମସଂଯମଯୋଗାଗ୍ନୌ ଜୁହ୍ୱତି ଜ୍ଞାନଦୀପିତେ । ୨୭ ।

ଏହ 'ଯଜ୍ଞ' ନାମରେ ସମାବେଶ କରାଯାଇଅଛି । ମନୁସ୍ମୃତିରେ ମଧ୍ୟ ଏହି ଅର୍ଥରେ ଭୂତଯଜ୍ଞ, ମନୁଷ୍ୟ ଯଜ୍ଞ, ପିତୃଯଜ୍ଞ ପ୍ରଭୃତିର ପ୍ରୟୋଗ ହୋଇଅଛି । ଏଥିରୁ ବୁଝାଯାଉଅଛି ଯେ ବେଦରେ ଇନ୍ଦ୍ର, ବରୁଣାଦି ଦେବତାମାନଙ୍କ ଉଦ୍ଦେଶ୍ୟରେ ଦ୍ରବ୍ୟଯଜ୍ଞ କରିବାର ଯେଉଁ ବିଧି ବର୍ଣ୍ଣିତ ହୋଇଅଛି, ପରବର୍ତ୍ତୀ କାଳରେ କ୍ରମେ ସେ ସବୁ କମି ଯାଇଥିଲା ଏବଂ ପାତଞ୍ଜଳଯୋଗ, ସନ୍ନ୍ୟାସ, ଆଧ୍ୟାତ୍ମିକତା ପ୍ରଭୃତି ଈଶ୍ୱର ପ୍ରାପ୍ତିର ମାର୍ଗ ବୋଲି ବିଶେଷ ଭାବରେ ପ୍ରଚଳିତ ହେଲା । ଯଜ୍ଞ ଶବ୍ଦର ଅର୍ଥକୁ ବିସ୍ତୃତ କରି ମୋକ୍ଷର ସମସ୍ତ ଉପାୟକୁ ଲକ୍ଷଣା-ଦ୍ୱାରା ତହିଁରେ ସମାବେଶ କରାଗଲା ।

ଏ ଶ୍ଳୋକରେ ସଂଯମ ଯଜ୍ଞ ବା ବ୍ରହ୍ମଚର୍ଯ୍ୟ ଯଜ୍ଞ କଥା କୁହା ଯାଇଅଛି । ସଂଯମରୂପ ଅଗ୍ନିରେ ଚକ୍ଷୁକର୍ଣ୍ଣାଦି ଇନ୍ଦ୍ରିୟମାନଙ୍କୁ ହୋମ କରିବାର ଅର୍ଥ ଇନ୍ଦ୍ରିୟ-ମାନଙ୍କୁ ରୂପରସାଦି ବିଷୟରୁ ପ୍ରତ୍ୟାହାର କରି ସଂଯତେନ୍ଦ୍ରିୟ ହୋଇ ଅବସ୍ଥାନ କରିବା । ଶ୍ଳୋକର ଉତ୍ତରାର୍ଦ୍ଧରେ ଯେଉଁ ଯଜ୍ଞ କଥା କୁହାଯାଇଅଛି ତାହାର ନାମ 'ଇନ୍ଦ୍ରିୟ ଯଜ୍ଞ' । କେହି କେହି ଇନ୍ଦ୍ରିୟରୂପ ଅଗ୍ନିରେ ଶବ୍ଦାଦି ବିଷୟ-ସମୂହକୁ ଆହୁତି ଦିଅନ୍ତି—ଏହାର ଅର୍ଥ ଇନ୍ଦ୍ରିୟମାନେ ଶବ୍ଦାଦି ବିଷୟମାନଙ୍କୁ ଗ୍ରହଣ କରନ୍ତି—ଏହା ଜାଣି ସଂଯମୀ ଗୃହସ୍ଥ ରାଗଦ୍ୱେଷଶୂନ୍ୟଚିତ୍ତରେ ଅନାସକ୍ତ-ଭାବରେ ଅବସ୍ଥାନ କରନ୍ତି । ଏହି 'ଅସକ୍ତଭୋଗ'ହିଁ ବିଷୟାହୁତି ।

୨୭ । ଅନ୍ୱୟଦୀପିକା—ଅପରେ ' ( ଅନ୍ୟ କେହି କେହି ) ସର୍ବାଣି ( ସମସ୍ତ ) ଇନ୍ଦ୍ରିୟ କର୍ମାଣି ( ଇନ୍ଦ୍ରିୟ ମାନଙ୍କର କର୍ମକୁ ), ପ୍ରାଣକର୍ମାଣି ଚ ( ପ୍ରାଣାଦି ବାୟୁର କର୍ମ ସମୂହକୁ ) ଜ୍ଞାନଦୀପିତେ ( ଜ୍ଞାନଦ୍ୱାରା ଉଦ୍ଦୀପିତ ) ଆତ୍ମସଂଯମଯୋଗାଗ୍ନୌ ( ଆତ୍ମସଂଯମଯୋଗରୂପ ଅଗ୍ନିରେ ) ଜୁହ୍ୱତି ( ହୋମ କରନ୍ତି ) ।

ଅନୁବାଦ—ଅନ୍ୟ କୌଣସି କୌଣସି ଯୋଗୀ ଇନ୍ଦ୍ରିୟମାନଙ୍କର କର୍ମ ଓ ପ୍ରାଣମାନଙ୍କର କର୍ମଗୁଡ଼ିକୁ ଜ୍ଞାନଦ୍ୱାରା ଉଦ୍ଦୀପିତ ଆତ୍ମସଂଯମ ଯୋଗରୂପ ଅଗ୍ନିରେ ହୋମ କରନ୍ତି ।

ସୁବୋଧିନୀ ଟୀକା—କିଞ୍ଚ ସର୍ବାଣୀତି । ଅପରେ ଧ୍ୟାନନିଷ୍ଠା ବୁଦ୍ଧୀନ୍ଦ୍ରିୟାଣାଂ ଶ୍ରୋତ୍ରାଦୀନାଂ କର୍ମାଣି ଶ୍ରବଣଦର୍ଶନାଦୀନି, କର୍ମେନ୍ଦ୍ରିୟାଣାଂ ବାକ୍-ପାଣ୍ୟାଦୀନାଂ କର୍ମାଣି ବଚନୋପାଦାନାଦୀନି, ପ୍ରାଣାନାଂ ଚ ଦଶାନାଂ କର୍ମାଣି, ପ୍ରାଣସ୍ୟ ବହିର୍ଗମନମ୍, ଅପାନସ୍ୟାଧୋଗମନମ୍, ବ୍ୟାନସ୍ୟ ବ୍ୟାନୟନମାକୁଞ୍ଚନ-ପ୍ରସାରଣାଦି; ସମାନସ୍ୟାଶିତପୀତାଦୀନାଂ ସମୁନ୍ନୟନମ୍, ଉଦାନସ୍ୟୋର୍ଦ୍ଧ୍ୱ-

ନୟନମ୍ । ଉଦ୍‌ଗାରେ ନାଗ ଆଖ୍ୟାତଃ କୂର୍ମ ଉନ୍ମୀଲନେ ସ୍ମୃତଃ, କୃକରଃ କ୍ଷୁତ୍‌କରେ ଜ୍ଞେୟୋ ଦେବଦତ୍ତୋ ବିଜୃମ୍ଭଣେ, ନ ଜହାତି ମୃତଂ ଚାପି ସର୍ବବ୍ୟାପୀ ଧନଞ୍ଜୟଃ । ଇତ୍ୟେବଂ ରୂପାଣି ଜୁହ୍ୱତି, ଆତ୍ମନି ସଂଯମୋ ଧ୍ୟାନୈକାଗ୍ର୍ୟମ୍ । ସ ଏବ ଯୋଗଃ । ସ ଏବାଗ୍ନିଃ ତସ୍ମିନ୍; ଜ୍ଞାନେନ ଧ୍ୟେୟବିଷୟେଣ ଦୀପିତେ ପ୍ରଜ୍ୱଳିତେ ଧ୍ୟେୟଂ ସମ୍ୟକ୍ ଜ୍ଞାତ୍ୱା ତସ୍ମିନ୍ ମନଃ ସଂଯମ୍ୟ ତାନି ସର୍ବାଣି କର୍ମାଣ୍ୟୁପରମୟନ୍ତୀତ୍ୟର୍ଥଃ ।

ବିବୃତି—ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା, ଓ ତ୍ୱକ୍—ଏହି ପାଞ୍ଚଗୋଟି ଜ୍ଞାନେନ୍ଦ୍ରିୟ; ଏମାନଙ୍କର କାର୍ଯ୍ୟ ଯଥାକ୍ରମେ ଦର୍ଶନ, ଶ୍ରବଣ, ଘ୍ରାଣ, ଆସ୍ୱାଦନ ଓ ସ୍ପର୍ଶ । ବାକ୍, ପାଣି, ପାଦ, ପାୟୁ, ଉପସ୍ଥ—ଏ ପାଞ୍ଚଗୋଟି କର୍ମେନ୍ଦ୍ରିୟ, ଏମାନଙ୍କର କାର୍ଯ୍ୟ ଯଥାକ୍ରମେ ବଚନ, ଦାନ ଓ ଗ୍ରହଣ, ଗମନ, ମଳତ୍ୟାଗ ଓ ମୈଥୁନ; ଇନ୍ଦ୍ରିୟ କର୍ମ ଏହି ଦଶ ପ୍ରକାର ।

ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ—ମନୁଷ୍ୟ ଶରୀରରେ ଏହି ପ୍ରଧାନ ପାଞ୍ଚ ପ୍ରକାର ବାୟୁ ଅଛି । ପ୍ରାଣ ବାୟୁର କର୍ମ ବହିର୍ଗମନ ( ପ୍ରଶ୍ୱାସ ), ଅପାନ ବାୟୁର କର୍ମ ଅଧୋଗମନ ବା ଅନ୍ତର୍ଗମନ ( ନିଶ୍ୱାସ ), ବ୍ୟାନ ବାୟୁର କର୍ମ ଆକୁଞ୍ଚନପ୍ରସାରଣାଦି, ସମାନ ବାୟୁର କାର୍ଯ୍ୟ ଭୁକ୍ତ ଦ୍ରବ୍ୟର ପରିପାକ, ଉଦାନ ବାୟୁର କର୍ମ ଊର୍ଦ୍ଧ୍ୱନୟନ (ଊର୍ଦ୍ଧ୍ୱଶ୍ୱାସ, ହିକ୍କା ପ୍ରଭୃତି) ।

ଏ ଶ୍ଳୋକରେ କୁହାଯାଉଅଛି—କୌଣସି କୌଣସି ଧ୍ୟାନନିଷ୍ଠ ବ୍ୟକ୍ତି ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ ଏବଂ ପ୍ରାଣାଦି ବାୟୁର କର୍ମକୁ ବ୍ରହ୍ମଜ୍ଞାନରେ ପ୍ରଦୀପିତ ଆତ୍ମସଂଯମ ବା ସମାଧିରୂପ ଯୋଗାଗ୍ନିରେ ହୋମ କରନ୍ତି ଅର୍ଥାତ୍ ପଞ୍ଚଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ ଏବଂ ପଞ୍ଚପ୍ରାଣ ଏମାନଙ୍କର ସମସ୍ତ କର୍ମ ନିରୋଧ କରି ଆତ୍ମାନନ୍ଦ ସୁଖ ଉପଭୋଗ କରନ୍ତି । ଏହା 'ସମାଧି ଯୋଗ'; ଏହି ଯୋଗରେ ଧ୍ୟାନନିଷ୍ଠ ବ୍ୟକ୍ତି ଯେଉଁ ସତ୍ତ୍ୱରୂପର ଧ୍ୟାନ କରନ୍ତି, ତଦ୍ୱାରା ତାଙ୍କର ଆତ୍ମଜ୍ଞାନରୂପ ଅଗ୍ନି ଉଦ୍ଦୀପିତ ହୁଏ ଏବଂ ସେହି ଅଗ୍ନିରେ ସେ କର୍ମେନ୍ଦ୍ରିୟ, ଜ୍ଞାନେନ୍ଦ୍ରିୟ ଓ ପ୍ରାଣାଦି ବାୟୁମାନଙ୍କର କର୍ମକୁ ଆହୁତି ରୂପେ ପ୍ରଦାନ କରନ୍ତି ।

"ଆତ୍ମ ସଂଯମ ଯୋଗାଗ୍ନୌ"—ଏହାର ଅର୍ଥ ଆତ୍ମାରେ ଚିତ୍ତକୁ ଏକାଗ୍ର କରିବା । ଧାରଣା, ଧ୍ୟାନ, ସମାଧି—ଏହି ତିନଗୋଟି ଏକବସ୍ତୁ ସମ୍ବନ୍ଧରେ ପ୍ରଯୁକ୍ତ ହେଲେ ତାହାକୁ ସଂଯମ କୁହାଯାଏ । ଯେଉଁ ଯୋଗରେ ଧାରଣା, ଧ୍ୟାନାଦି ଆତ୍ମା ସମ୍ବନ୍ଧରେ ପ୍ରଯୁକ୍ତ ହୁଏ ତାହା ଆତ୍ମସଂଯମ ଯୋଗ । ଏହା ଜ୍ଞାନ-ଦୀପିତ ଅର୍ଥାତ୍ ଆତ୍ମଜ୍ଞାନଦ୍ୱାରା ପ୍ରଜ୍ୱଳିତ ।

ଦ୍ରବ୍ୟଯଜ୍ଞାସ୍ତପୋଯଜ୍ଞା ଯୋଗଯଜ୍ଞାସ୍ତଥାପରେ ।
ସ୍ୱାଧ୍ୟାୟଜ୍ଞାନଯଜ୍ଞାଶ୍ଚ ଯତୟଃ ସଂଶିତବ୍ରତାଃ । ୨୮ ।

୨୮ । ଅନ୍ୱୟଦୀପିକା—[କେହି କେହି] ଦ୍ରବ୍ୟଯଜ୍ଞାଃ (ଦ୍ରବ୍ୟ-ଯଜ୍ଞପରାୟଣ) [କେହି କେହି] ତପୋଯଜ୍ଞାଃ (ତପୋଯଜ୍ଞ ପରାୟଣ), [କେହି କେହି] ଯୋଗଯଜ୍ଞାଃ (ଯୋଗଯଜ୍ଞ ପରାୟଣ), ତଥା ଅପରେ (ଅନ୍ୟ କେହି କେହି) ସଂଶିତବ୍ରତାଃ (ଦୃଢ଼ବ୍ରତ) ଯତୟଃ (ଯତ୍ନଶୀଳ) ସ୍ୱାଧ୍ୟାୟଜ୍ଞାନ-ଯଜ୍ଞାଃ ଚ (ଏବଂ ବେଦାଭ୍ୟାସ ଓ ଜ୍ଞାନଯଜ୍ଞ ପରାୟଣ) [ଭବନ୍ତି] ।

ଅନୁବାଦ—କେହି କେହି ଦ୍ରବ୍ୟତ୍ୟାଗରୂପ ଯଜ୍ଞ କରନ୍ତି, କେହି କେହି ତପସ୍ୟାରୂପ ଯଜ୍ଞ, କେହି କେହି ଯୋଗରୂପ ଯଜ୍ଞ, କୌଣସି କୌଣସି ଦୃଢ଼ବ୍ରତ ଯତି ବେଦାଭ୍ୟାସରୂପ ଯଜ୍ଞ, ଏବଂ କୌଣସି କୌଣସି ବ୍ୟକ୍ତି ଜ୍ଞାନରୂପ ଯଜ୍ଞ ସମ୍ପାଦନ କରନ୍ତି ।

ସୁବୋଧିନୀ ଟୀକା—କିଞ୍ଚ ଦ୍ରବ୍ୟଯଜ୍ଞା ଇତ୍ୟାଦି—ଦ୍ରବ୍ୟଦାନ-ମେବ ଯଜ୍ଞୋ ଯେଷାଂ ତେ ଦ୍ରବ୍ୟଯଜ୍ଞାଃ । କୃଚ୍ଛ୍ରଚାନ୍ଦ୍ରାୟଣାଦି ତପ ଏବ ଯଜ୍ଞୋ ଯେଷାଂ ତେ ତପୋଯଜ୍ଞାଃ । ଯୋଗଶ୍ଚିତ୍ତବୃତ୍ତିନିରୋଧଲକ୍ଷଣଃ ସମାଧିଃ । ସ ଏବ ଯଜ୍ଞୋ ଯେଷାଂ ତେ ଯୋଗଯଜ୍ଞାଃ । ସ୍ୱାଧ୍ୟାୟେନ ବେଦେନ ଶ୍ରବଣମନନାଦିନା ଯଦର୍ଥଜ୍ଞାନଂ ତଦେବ ଯଜ୍ଞୋ ଯେଷାଂ ତେ ସ୍ୱାଧ୍ୟାୟଜ୍ଞାନଯଜ୍ଞାଃ । ଯଦ୍ୱା ବେଦପାଠଯଜ୍ଞାସ୍ତଦର୍ଥଜ୍ଞାନଯଜ୍ଞାଶ୍ଚେତି ଦ୍ୱିବିଧାଃ । ଯତୟଃ ପ୍ରଯତ୍ନଶୀଳାଃ । ସମ୍ୟକ୍ ଶିତଂ ତୀକ୍ଷ୍ଣୀକୃତଂ ବ୍ରତଂ ଯେଷାଂ ତେ ।

ବକ୍ତବ୍ୟ—୨୫ଶ ଶ୍ଲୋକରେ ଯେଉଁ ଦୈବଯଜ୍ଞ ବିଷୟ କୁହାଯାଇଅଛି ତାହା ଦ୍ରବ୍ୟଯଜ୍ଞ, ଏହା ଶ୍ରୌତକର୍ମ । କୂପତଡ଼ାଗଖନନ, ଦେବମନ୍ଦିରନିର୍ମାଣ, ଧର୍ମଶାଳାନିର୍ମାଣ, ଅନ୍ନସତ୍ରପ୍ରତିଷ୍ଠା ମଧ୍ୟ ଦ୍ରବ୍ୟଯଜ୍ଞ, ଏ ଗୁଡ଼ିକ ସ୍ମାର୍ତ୍ତକର୍ମ । କୃଚ୍ଛ୍ରଚାନ୍ଦ୍ରାୟଣାଦିସାଧନ ଓ କ୍ଷୁଧା ତୃଷ୍ଣା ଶୀତ ଉଷ୍ଣ ସହିଷ୍ଣୁତାର ନାମ ତପୋଯଜ୍ଞ । ଯୋଗ ଶବ୍ଦର ସାଧାରଣ ଅର୍ଥ ଚିତ୍ତବୃତ୍ତିନିରୋଧ; ଏହା ଅଷ୍ଟାଙ୍ଗଯୋଗ ବା ରାଜଯୋଗ ନାମରେ ପରିଚିତ । ଅଷ୍ଟାଙ୍ଗ ଯଥା—ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି । ବ୍ରହ୍ମଚର୍ଯ୍ୟ ଅବଲମ୍ବନପୂର୍ବକ ଶ୍ରଦ୍ଧା ସହକାରେ ବେଦପାଠ କରିବାକୁ ସ୍ୱାଧ୍ୟାୟ ଯଜ୍ଞ କୁହାଯାଏ । ଯୁକ୍ତିଦ୍ୱାରା ବେଦର ଅର୍ଥକୁ ନିଶ୍ଚୟ କରି ହୃଦ୍‌ବୋଧ କରିବାର ନାମ ଜ୍ଞାନଯଜ୍ଞ ।

ଅପାନେ ଜୁହ୍ୱତି ପ୍ରାଣଂ ପ୍ରାଣେଽପାନଂ ତଥାପରେ ।
ପ୍ରାଣାପାନଗତୀରୁଦ୍ଧ୍ୱା ପ୍ରାଣାୟାମପରାୟଣାଃ । ୨୯ ।

୨୯ । **ଅନ୍ୱୟଦୀପିକା**—ତଥା ( ପୁଣି ) ଅପରେ ( ଅନ୍ୟ ଯୋଗିଗଣ ) ପ୍ରାଣାୟାମ ପରାୟଣାଃ ( ପ୍ରାଣାୟାମରେ ନିଯୁକ୍ତ ହୋଇ ) ପ୍ରାଣାପାନଗତୀରୁଦ୍ଧ୍ୱା ( ପ୍ରାଣ ଓ ଅପାନ ବାୟୁର ଗତି ରୋଧ କରି ) ଅପାନେ ( ଅପାନ ବାୟୁରେ ) ପ୍ରାଣଂ ( ପ୍ରାଣବାୟୁକୁ ), ପ୍ରାଣେ ( ପ୍ରାଣବାୟୁରେ ଅପାନଂ ( ଅପାନ ବାୟୁକୁ ) ଜୁହ୍ୱତି ( ହୋମ କରନ୍ତି ) ।

ଅନୁବାଦ—ଅନ୍ୟ କୌଣସି କୌଣସି ଯୋଗୀ ପ୍ରାଣାୟାମରେ ତତ୍ପର ହୋଇ ପ୍ରାଣ ଓ ଅପାନ ବାୟୁର ଗତି ରୋଧ କରି ପ୍ରାଣ ବାୟୁକୁ ଅପାନରେ ହୋମ କରନ୍ତି ଓ ଅପାନ ବାୟୁକୁ ପ୍ରାଣବାୟୁରେ ହୋମ କରନ୍ତି ।

ସୁବୋଧିନୀ ଟୀକା—କିଞ୍ଚ—ଅପାନ ଇତି । ଅପାନେ ଅଧୋବୃତ୍ତୌ ପ୍ରାଣ ମୂର୍ଦ୍ଧ୍ୱବୃତ୍ତିଂ ପୂରକେଣ ଜୁହ୍ୱତି । ପୂରକକାଳେ ପ୍ରାଣମପାନେନ-ନୈକୀକୁର୍ବନ୍ତି । ତଥା କୁମ୍ଭକେନ ପ୍ରାଣାପାନୟୋରୂର୍ଦ୍ଧ୍ୱାଧୋଗତୀ ରୁଦ୍ଧ୍ୱା ରେଚକ-କାଳେଽପାନଂ ପ୍ରାଣେ ଜୁହ୍ୱତି । ଏବଂ ପୂରକକୁମ୍ଭକରେଚକୈଃ ପ୍ରାଣାୟାମ-ପରାୟଣା ଅପର ଇତ୍ୟର୍ଥଃ ।

ବକ୍ତବ୍ୟ—ପାତଞ୍ଜଳ ଯୋଗ ଅନୁସାରେ ପ୍ରାଣାୟାମ କରିବା ମଧ୍ୟ ଏକ ପ୍ରକାର ଯଜ୍ଞ । 'ପ୍ରାଣାୟାମ' ଶବ୍ଦର ଅର୍ଥ—ପ୍ରାଣ ଅର୍ଥାତ୍ ପ୍ରାଣବାୟୁର ଆୟାମ ଅର୍ଥାତ୍ ନିରୋଧ । ଏହି ପ୍ରାଣାୟାମ ପୂରକ, କୁମ୍ଭକ ଓ ରେଚକ ଭେଦରେ ତ୍ରିବିଧ । ଏ ଶ୍ଳୋକର ସେହି ତ୍ରିବିଧ ପ୍ରାଣାୟାମ କଥା କୁହା ଯାଇଅଛି ।

ଶରୀରସ୍ଥ ବାୟୁ ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ ଭେଦରେ ପାଞ୍ଚପ୍ରକାର । ଯେଉଁ ବାୟୁ ଦେହ ମଧ୍ୟରୁ ମୁଖ ଓ ନାସିକାଦ୍ୱାର ବାହାରକୁ ଆସେ ତାହାର ନାମ 'ପ୍ରାଣ' ବାୟୁ; ଯାହା ବାହାରରୁ ଦେହର ଅଭ୍ୟନ୍ତରରେ ପ୍ରବେଶ କରେ ତାହାର ନାମ 'ଅପାନ' ବାୟୁ ; ସୁତରାଂ ପ୍ରାଣ ନିଃଶ୍ୱାସ ବାୟୁ ଓ ଅପାନ ପ୍ରଶ୍ୱାସ ବାୟୁ । 'ବ୍ୟାନ' ନାମକ ବାୟୁ ପ୍ରାଣ ଓ ଅପାନର ସନ୍ଧିସ୍ଥଳରେ ଥାଏ । କୌଣସି ଗୁରୁବସ୍ତୁ ଉଠାଇବା ସମୟରେ ଓ ଧନୁ ଗୁଣ ଟାଣିବା ବେଳେ ଏହି ବାୟୁର କାର୍ଯ୍ୟ ବ୍ୟକ୍ତ ହୁଏ । ମୃତ୍ୟୁ ସମୟରେ ଯେଉଁ ବାୟୁ ବାହାରିଯାଏ ତା ନାମ 'ଉଦାନ' । ଶରୀରର ସମସ୍ତ ଅଂଶକୁ ଯେଉଁ ବାୟୁ ଅନ୍ନରସ ନେଇଯାଏ ତାହାର ନାମ 'ସମାନ' ।

କେହି କେହି ପ୍ରାଣବାୟୁକୁ ଅପାନରେ ହୋମ କରନ୍ତି । ଏହାର ଅର୍ଥ—ପ୍ରଶ୍ୱାସ ଦ୍ୱାରା ବାହାରର ବାୟୁକୁ ଅର୍ଥାତ୍ ଅପାନ ବାୟୁକୁ ଶରୀର ମଧ୍ୟରେ ପ୍ରବେଶ କରାଇଲେ ପ୍ରାଣବାୟୁ ଅର୍ଥାତ୍ ଶରୀର ମଧ୍ୟରୁ ଆସୁଥିବା ନିଃଶ୍ୱାସ

ଅପରେ ନିୟତାହାରାଃ ପ୍ରାଣାନ୍ ପ୍ରାଣେଷୁ ଜୁହ୍ୱତି ।
ସର୍ବେଽପ୍ୟେତେ ଯଜ୍ଞବିଦୋ ଯଜ୍ଞକ୍ଷପିତକଳ୍ମଷାଃ ॥ ୩୦ ॥

ବାୟୁର ଗତି ରୁଦ୍ଧ ହୁଏ । ଏହାହିଁ ଅପାନରେ ପ୍ରାଣର ଆହୁତି ବା ହୋମ; ଏହାଦ୍ୱାରା ଶରୀରର ଅଭ୍ୟନ୍ତର ବାୟୁରେ ପୂର୍ଣ୍ଣ ହୁଏ ବୋଲି ଏହାର ନାମ 'ପୂରକ ପ୍ରାଣାୟାମ' ।

ଅପାନ ବାୟୁକୁ ପ୍ରାଣବାୟୁରେ ହୋମ କରନ୍ତି ଅର୍ଥାତ୍ ପ୍ରାଣବାୟୁକୁ ହୃଦୟରୁ ବାହାର କରିଦେଲେ ଅପାନ ବାୟୁର ଅନ୍ତଃ ପ୍ରବେଶ ରୂପ ଗତି ରୁଦ୍ଧ ହୁଏ ଅର୍ଥାତ୍ ବାହାରର ବାୟୁ ଭିତରକୁ ପ୍ରବେଶ କରି ପାରେ ନାହିଁ, ଏଥିରେ ଅଭ୍ୟନ୍ତର ଭାଗ ବାୟୁ ଶୂନ୍ୟ ହୁଏ, ଏହାର ନାମ 'ରେଚକ' ପ୍ରାଣାୟାମ ।

ପ୍ରାଣ ଓ ଅପାନର ଗତି ରୋଧ କରି ପ୍ରାଣାୟାମ ପରାୟଣ ହେବା ଅର୍ଥାତ୍ ରେଚକ ଓ ପୂରକ ପରିତ୍ୟାଗ ପୂର୍ବକ ବାୟୁକୁ ଶରୀର ମଧ୍ୟରେ ନିରୁଦ୍ଧ କରି ଅବସ୍ଥାନ କରିବା । ଏହାର ନାମ 'କୁମ୍ଭକ ପ୍ରାଣାୟାମ' ।

ପ୍ରଥମେ ବାମ ନାସାପୁଟରେ ପୂରକ, ଉଭୟ ନାସାପୁଟ ରୁଦ୍ଧ କରି କୁମ୍ଭକ ଓ ଦକ୍ଷିଣ ନାସା ପୁଟରେ ରେଚକ କରାଯାଏ । ପରେ ବିପରୀତ ଭାବରେ ଅର୍ଥାତ୍ ଦକ୍ଷିଣ ନାସାପୁଟରେ ପୂରକ ଓ ବାମ ନାସାପୁଟରେ ରେଚକ କରାଯାଏ । ପୂରକ ବେଳେ ଉଭୟ ନାସାପୁଟ ରୁଦ୍ଧ ଅବସ୍ଥାରେ ରଖାଯାଏ । ପୂରକ, କୁମ୍ଭକ ଓ ରେଚକ କରିବାର ନିର୍ଦ୍ଦିଷ୍ଟ କାଳ ବା ସଂଖ୍ୟା ଅଛି । ହ୍ରୀଁ, କ୍ଲୀଁ ବା ଓଁ ଅଥବା ସେହିପରି ଦୀର୍ଘ ଉଚ୍ଚାରଣଯୋଗ୍ୟ କୌଣସି ମନ୍ତ୍ର ମନେ ମନେ ୩୨ ବାର ଉଚ୍ଚାରଣ କରିବାଯାଏ ପୂରକ, ୬୪ ଥର ଉଚ୍ଚାରଣ କରିବାଯାଏ କୁମ୍ଭକ ଓ ୧୬ ଥର ଉଚ୍ଚାରଣ କରିବାଯାଏ ରେଚକ କରିବାକୁ ହୁଏ । ସ୍ୱଭାବ ଚଞ୍ଚଳ ମନକୁ ସ୍ଥିର କରିବା ପାଇଁ ପ୍ରାଣାୟାମ ସର୍ବଥା ଆବଶ୍ୟକ ମାତ୍ର ସଦ୍‌ଗୁରୁଙ୍କ ସାହାଯ୍ୟ ବ୍ୟତୀତ ଏହା କରାଯାଏ ନାହିଁ । କେବଳ ପୁସ୍ତକ ପାଠ କରି ପ୍ରାଣାୟାମ କରିବା ଅନୁଚିତ । ତଦ୍ୱାରା ନାନା ରୋଗୋତ୍ପତ୍ତିର ସମ୍ଭାବନା ।

୩୦ । ଅନ୍ୱୟଦୀପିକା—ଅପରେ ( ଅନ୍ୟ କେହି କେହି ) ନିୟତାହାରାଃ ( ପରିମିତ ଆହାର ଗ୍ରହଣ କରି ) ପ୍ରାଣାନ୍ ପ୍ରାଣେଷୁ ଜୁହ୍ୱତି ( ପ୍ରାଣକୁ ପ୍ରାଣରେ ଆହୁତି କରନ୍ତି ଅର୍ଥାତ୍ ଇନ୍ଦ୍ରିୟମାନଙ୍କୁ ପ୍ରାଣ ସମୂହରେ ଆହୁତି ଦିଅନ୍ତି ) । ଏତେ ସର୍ବେ ଅପି ( ଏମାନେ ସମସ୍ତେ ) ଯଜ୍ଞବିଦଃ ( ଯଜ୍ଞତତ୍ତ୍ୱଜ୍ଞ ), ଯଜ୍ଞକ୍ଷପିତକଳ୍ମଷାଃ (ଯଜ୍ଞଦ୍ୱାରା ନିଷ୍ପାପ ହୁଅନ୍ତି) ।

ଅନୁବାଦ—ଅନ୍ୟ କେହି କେହି ନିୟମିତ ଆହାର ଗ୍ରହଣ ପୂର୍ବରୁ ପ୍ରାଣବାୟୁରେ ପ୍ରାଣବାୟୁକୁ ହୋମ କରନ୍ତି ଅର୍ଥାତ୍ ଇନ୍ଦ୍ରିୟମାନଙ୍କୁ ପ୍ରାଣରେ ଆହୁତି ଦିଅନ୍ତି । ଏମାନେ ସମସ୍ତେ ଯଜ୍ଞତତ୍ତ୍ୱଜ୍ଞ ଏବଂ ଯଜ୍ଞଦ୍ୱାରା ନିଷ୍ପାପ ହୋଇ ଥାଆନ୍ତି ।

ସୁବୋଧିନୀ ଟୀକା—କିଞ୍ଚ—ଅପରେ ଇତି । ଅପରେତ୍ୱାହାରସଙ୍କୋଚମଭ୍ୟସ୍ୟନ୍ତଃ ସ୍ୱୟମେବ କ୍ଷୀୟମାଣେଷ୍ୱିନ୍ଦ୍ରିୟେଷୁ ତତ୍ତଦିନ୍ଦ୍ରିୟବୃତ୍ତିଲକ୍ଷଣଂ ହୋମଂ ଭାବୟନ୍ତୀତ୍ୟର୍ଥଃ । ଯଦ୍ୱା ଅପାନେଜୁହ୍ୱତି ପ୍ରାଣଂ ପ୍ରାଣେଽପାନଂ ତଥାପର ଇତ୍ୟନେନ ପୂରକରେଚକୟୋରାବର୍ତ୍ୟମାନୟୋର୍ହଂସଃ ସୋଽହମିତ୍ୟନୁଲୋମତଃ ପ୍ରତିଲୋମତଶ୍ଚାଭିବ୍ୟଜ୍ୟମାନେନାଜପାମନ୍ତ୍ରେଣ ତତ୍ତ୍ୱଂପଦାର୍ଥୈକ୍ୟଂବ୍ୟଗୀଦ୍ୱାରେଣ ଭାବୟନ୍ତୀତ୍ୟର୍ଥଃ । ତଦୁକ୍ତଂ ଯୋଗଶାସ୍ତ୍ରେ—ସକାରେଣ ବହିର୍ଯାତି ହଂକାରେଣ ବିଶେତ୍ ପୁନଃ । ପ୍ରାଣସ୍ତତ୍ର ସ ଏବାହଂ ହଂସ ଇତ୍ୟନୁଚିନ୍ତୟେତ୍ । ଇତି । ପ୍ରାଣାପାନଗତୀ ରୁଦ୍ଧ୍ୱେତ୍ୟନେନ ତୁ ଶ୍ଲୋକେନ ପ୍ରାଣାୟାମପରାଃ ଅପରୈଃ କଥ୍ୟନ୍ତେ । ତତ୍ରାୟମର୍ଥଃ ଦ୍ୱୌଭାଗୌ ପୂରୟେଦନ୍ନୈର୍ଜଲେନୈକଂ ପ୍ରପୂରୟେତ୍ । ମାରୁତସ୍ୟ ପ୍ରଚାରାର୍ଥଂ ଚତୁର୍ଥମବଶେଷୟେତ୍ । ଇତି । ଏବମାଦିବଚନୋକ୍ତୋ ନିୟତ ଆହାରୋ ଯେଷାଂ ତେ କୁମ୍ଭକେନ ପ୍ରାଣାପାନଗତୀ ରୁଦ୍ଧ୍ୱା ପ୍ରାଣାୟାମପରାୟଣା ସନ୍ତଃ ପ୍ରାଣାନିନ୍ଦ୍ରିୟାଣି ପ୍ରାଣେଷୁ ଜୁହ୍ୱତି । କୁମ୍ଭକେ ହି ସର୍ବେ ପ୍ରାଣାଃ ଏକୀଭବନ୍ତୀତି ତତ୍ରୈବ ଲୀୟମାନେଷ୍ୱିନ୍ଦ୍ରିୟେଷୁ ହୋମଂ ଭାବୟନ୍ତୀତ୍ୟର୍ଥଃ । ତଦୁକ୍ତଂ ଯୋଗଶାସ୍ତ୍ରେ—ଯଥା ଯଥା ସଦାଭ୍ୟାସାନ୍ମନସଃ ସ୍ଥିରତା ଭବେତ୍ । ବାୟୁବାକ୍କାୟଦୃଷ୍ଟୀନାଂ ସ୍ଥିରତା ଚ ତଥା ତଥା । ଇତି ।

ତଦେବମୁକ୍ତାନାଂ ଦ୍ୱାଦଶାନାଂ ଯଜ୍ଞବିଦାଂ ଫଳମାହ ସର୍ବ ଇତି । ଯଜ୍ଞାନ୍ ବିଦନ୍ତି ଲଭନ୍ତେ ଇତି ଯଜ୍ଞବିଦଃ । ଯଜ୍ଞାଞ୍ଚ ଇତି ବା, ଯଜ୍ଞୈଃ କ୍ଷପିତଂ ନାଶିତଂ କଲ୍ମଷଂ ଯୈସ୍ତେ ।

ବିବୃତି—ପ୍ରାଣାୟାମ ଯଜ୍ଞରେ ମିତାହାର ପ୍ରୟୋଜନୀୟ । ପରିମିତାହାରୀମାନେ ଉଦରର ୪ଭାଗରୁ ୨ଭାଗ ଅର୍ଥାତ୍ ଅର୍ଦ୍ଧେକ ଖାଦ୍ୟ ବସ୍ତୁଦ୍ୱାରା ପୂର୍ଣ୍ଣ କରନ୍ତି, ଜଳଦ୍ୱାରା ଅନ୍ୟ ଏକଭାଗ ପୂର୍ଣ୍ଣକରି ଅବଶିଷ୍ଟ ଏକଭାଗକୁ ବାୟୁ ଗମନାଗମନ ପାଇଁ ଶୂନ୍ୟ ରଖନ୍ତି । ଏହିଭାବରେ ଯେଉଁମାନେ କୁମ୍ଭକ ପ୍ରାଣାୟାମ କରନ୍ତି, ସେମାନେ ତଦ୍ୱାରା ସମସ୍ତ ପ୍ରାଣକୁ ପ୍ରାଣରେ ମିଶ୍ରିତ କରନ୍ତି । ଶ୍ରୀଧର ସ୍ୱାମୀ ଏହି ଶ୍ଳୋକର ବ୍ୟାଖ୍ୟାରେ କହନ୍ତି, ସେମାନେ ପ୍ରାଣମାନଙ୍କୁ ଅର୍ଥାତ୍ ଇନ୍ଦ୍ରିୟମାନଙ୍କୁ ପ୍ରାଣାଦି ବାୟୁରେ ଲୟ କରନ୍ତି । (୨୯ମ ଓ ୩୦ମ ଶ୍ଳୋକର ପ୍ରଥମ ଚରଣକୁ କେହି କେହି ଏକତ୍ର କରି ମଧ୍ୟ ବ୍ୟାଖ୍ୟା କରନ୍ତି; ଶ୍ରୀଧର ସ୍ୱାମୀ ମଧ୍ୟ 'ଯଦ୍ୱା' ଶବ୍ଦଦ୍ୱାରା ପରେ ଏହିପରି ବ୍ୟାଖ୍ୟା କରି ଅଛନ୍ତି । ଅନ୍ୟମାନେ ତାଙ୍କଙ୍କ ବ୍ୟାଖ୍ୟା ଅବଲମ୍ବନ କରିଅଛନ୍ତି ।)

ଯଜ୍ଞଶିଷ୍ଟାମୃତଭୁଜୋ ଯାନ୍ତି ବ୍ରହ୍ମ ସନାତନମ୍ ।
ନାୟଂ ଲୋକୋଽସ୍ତ୍ୟଯଜ୍ଞସ୍ୟ କୁତୋଽନ୍ୟଃ କୁରୁସତ୍ତମ । ୩୧ ।

୩୧ । ଅନ୍ୱୟଦୀପିକା—ଯଜ୍ଞଶିଷ୍ଟାମୃତଭୁଜଃ (ଯେଉଁମାନେ ଅମୃତସ୍ୱରୂପ ଯଜ୍ଞର ଅବଶିଷ୍ଟ ଅଂଶ ଭୋଜନ କରନ୍ତି, ସେମାନେ) ସନାତନଂ ବ୍ରହ୍ମ ଯାନ୍ତି (ସନାତନ ବ୍ରହ୍ମ ଲାଭ କରନ୍ତି) । ହେ କୁରୁସତ୍ତମ (କୁରୁଶ୍ରେଷ୍ଠ) ଅଯଜ୍ଞସ୍ୟ (ଯଜ୍ଞାନୁଷ୍ଠାନ କରୁ ନ ଥିବା ଲୋକର) ଅୟଂ ଲୋକଃ (ଇହ ଲୋକ) ନ ଅସ୍ତି (ନାହିଁ) ଅନ୍ୟଃ କୁତଃ (ଅନ୍ୟଲୋକ କେଉଁଠାରେ ? ) ।

ଅନୁବାଦ—ଯେଉଁମାନେ ଅମୃତ ସ୍ୱରୂପ ଯଜ୍ଞର ଅବଶିଷ୍ଟ ଅନ୍ନ ଭୋଜନ କରନ୍ତି, ସେମାନେ ସନାତନ ବ୍ରହ୍ମପଦ ଲାଭ କରନ୍ତି । ହେ କୁରୁଶ୍ରେଷ୍ଠ ଅର୍ଜୁନ, ଯେଉଁ ଲୋକ କୌଣସି ପ୍ରକାର ଯଜ୍ଞର ଅନୁଷ୍ଠାନ ନ କରନ୍ତି ଇହଲୋକରେ ତାଙ୍କର କୌଣସି ସଫଳତା ହୁଏନାହିଁ । ତାଙ୍କର ପର ଲୋକରେ ବା ଅଉ କ'ଣ ଅଛି ?

ସୁବୋଧିନୀ ଟୀକା—ଯଜ୍ଞଶିଷ୍ଟାମୃତଭୁଜ ଇତି—ଯଜ୍ଞାନ୍ କୃତ୍ୱାଽବଶିଷ୍ଟେ କାଲେଽନ୍ନମିଷ୍ଟମନ୍ନମମୃତରୂପଂ ଭୁଞ୍ଜତ ଇତି ତଥା । ତେ ସନାତନଂ ନିତ୍ୟଂ ବ୍ରହ୍ମ ଜ୍ଞାନଦ୍ୱାରେଣ ପ୍ରାପ୍ନୁବନ୍ତି । ତଦକରଣେ ଦୋଷମାହ—ନାୟମିତି । ଅୟମଳ୍ପସୁଖୋଽପି ମନୁଷ୍ୟଲୋକୋଽଯଜ୍ଞସ୍ୟ ଯଜ୍ଞାନୁଷ୍ଠାନରହିତସ୍ୟ ନାସ୍ତି । କୁତୋଽନ୍ୟୋ ବହୁସୁଖଃ ପରଲୋକଃ । ଅତୋ ଯଜ୍ଞାଃ ସର୍ବଥା କର୍ତ୍ତବ୍ୟା ଇତ୍ୟର୍ଥଃ ।

ବକ୍ତବ୍ୟ—ପୂର୍ବେ ଯେଉଁ ୧୨ପ୍ରକାର ଯଜ୍ଞକଥା କୁହାଗଲା ସେସବୁ ଅବଶ୍ୟ କର୍ତ୍ତବ୍ୟ ବୋଲି ବୁଝିବାକୁ ହେବ । ଯଜ୍ଞଶବ୍ଦର ପ୍ରକୃତ ଅର୍ଥ ତ୍ୟାଗ—ଏହା ପୂର୍ବେ କୁହା ଯାଇଅଛି; ତ୍ୟାଗଦ୍ୱାରାହିଁ ପରସ୍ପର ଅଦାନପ୍ରଦାନରେ ଜଗତର ଅବସ୍ଥିତି । ତୃତୀୟ ଅଧ୍ୟାୟରେ ଏହା ସ୍ପଷ୍ଟରୂପେ ବର୍ଣ୍ଣିତ ହୋଇଅଛି । ସାରକଥା—ପ୍ରାଣାୟାମ କର, ତପସ୍ୟା କର, ବେଦାଧ୍ୟୟନ କର, ତିଳତଣ୍ଡୁଳ ଅଥବା ଘିଅଦ୍ୱାରା ହୋମ କର, ପୂଜାପାଠ କର, ନୈବେଦ୍ୟ ବୈଶ୍ୱଦେବ ପ୍ରଭୃତି ପଞ୍ଚଗୃହ ଯଜ୍ଞ କର—ଫଳାସକ୍ତି ବା ସ୍ୱାର୍ଥବୁଦ୍ଧି ଦୂରହେଲେ ଏହା ଯଜ୍ଞ ନାମରେହିଁ ଅଭିହିତ ହେବ । ଯଜ୍ଞାର୍ଥ କରାଯିବା କର୍ମ ବନ୍ଧକ ହୁଏନାହିଁ—ଏହା ପୂର୍ବେ ୩ୟ ଅଧ୍ୟାୟର ନବମ ଶ୍ଳୋକରେ କୁହା ଯାଇଅଛି । ଏଠାରେ କୁହାଯାଉଅଛି-ଯଜ୍ଞାବଶିଷ୍ଟ ଅନ୍ନ ଭୋଜନ ଦ୍ୱାରା ସନାତନ ବ୍ରହ୍ମପଦ ଲାଭହୁଏ ।

ମନୁପ୍ରଭୃତି ଧର୍ମଶାସ୍ତ୍ରପ୍ରଣେତା ମହର୍ଷିମାନେ କହିଯାଇଅଛନ୍ତି ଯେ—ପ୍ରତ୍ୟେକ ଗୃହସ୍ଥ ପଞ୍ଚମହାଯଜ୍ଞପରେ ଅତିଥିପ୍ରଭୃତିଙ୍କୁ ଭୋଜନ କରାଇ ସାରିଲେ ପରିବାର ସହ ନିଜେ ଭୋଜନ କରିବେ ।

"ବିଘସ ଭୁକ୍ତଶେଷଂ ତୁ ଯଜ୍ଞଶେଷ ମଥାମୃତମ୍" । (ମନୁ ୩. ୨୮୫)

ଏବଂ ବହୁବିଧା ଯଜ୍ଞା ବିତତା ବ୍ରହ୍ମଣୋମୁଖେ ।
କର୍ମଜାନ୍ ବିଦ୍ଧି ତାନ୍ ସର୍ବାନ୍ ଏବଂ ଜ୍ଞାତ୍ୱା ବିମୋକ୍ଷ୍ୟସେ । ୩୨ ।

ଅତଏବ ପ୍ରତ୍ୟେକଙ୍କର ଭୋଜନ ଶେଷହେଲେ ଯାହା ଅବଶିଷ୍ଟ ରହେ ତାହାର ନାମ 'ବିଘସ' ଏବଂ ଯଜ୍ଞାନ୍ତେ ଯାହା ଅବଶିଷ୍ଟ ରହେ, ତାହା 'ଅମୃତ' । ଗୃହସ୍ଥ ପକ୍ଷରେ ନିତ୍ୟ "ବିଘସାଶୀ' ଓ 'ଅମୃତାଶୀ' ହେବା ଉଚିତ—ପ୍ରତ୍ୟେକ ଧର୍ମଶାସ୍ତ୍ର ପ୍ରଣେତା ଏହିପରି କହିଅଛନ୍ତି । ଏଠାରେ ଭଗବାନ୍ କହିଅଛନ୍ତି—ସାଧାରଣ ଗୃହଯଜ୍ଞର ଉପଯୋଗୀ ଏହି ସିଦ୍ଧାନ୍ତ ଅନ୍ୟ ସମସ୍ତ ପ୍ରକାର ଯଜ୍ଞର ଉପଯୋଗୀ ହୁଏ । ଯଜ୍ଞାର୍ଥକୃତ କର୍ମ ବନ୍ଧକ ହୁଏନାହିଁ, କେବଳ ଏତିକି ନୁହେ; କିନ୍ତୁ କର୍ମ ସମୂହ ମଧ୍ୟରୁ ଅବଶିଷ୍ଟ କର୍ମ ଯେବେ ନିଜର ଉପଯୋଗରେ ଆସେ ତାହା ମଧ୍ୟ ବନ୍ଧକ ହୁଏନାହିଁ । 'ଯଜ୍ଞ ବିନା ଇହଲୋକ ସଫଳ ହୁଏନାହିଁ'—ଏପରି କହିବାର ତାତ୍ପର୍ଯ୍ୟ ଏହି ଯେ, ଯେତେବେଳଯାଏ ମନୁଷ୍ୟ ପରପାଇଁ ସ୍ୱାର୍ଥ ତ୍ୟାଗ କରିବାକୁ ନ ଶିଖେ ଅର୍ଥାତ୍ ନିଜ ସ୍ୱତନ୍ତ୍ରତାର କୌଣସି ଅଂଶର ଯଜ୍ଞ ନ କରେ, ସେପର୍ଯ୍ୟନ୍ତ ଏହି ସଂସାରର ବ୍ୟବହାର ଚଳିପାରେ ନାହିଁ । ଏହି ପ୍ରକାର ବ୍ୟାପକ ଅର୍ଥ ଦ୍ୱାରା ଯେତେବେଳେ ସ୍ଥିର ହେଲା ଯେ ଯଜ୍ଞହିଁ ସମସ୍ତ ସମାଜରଚନାର ମୂଳ ସେତେବେଳେ କହିବାକୁ ହେବ, ଯେ, କେବଳ କର୍ତ୍ତବ୍ୟ ଦୃଷ୍ଟିରେ ଯଜ୍ଞ କରିବାକୁ ଯେତେବେଳଯାଏ ମନୁଷ୍ୟ ନ ଶିଖିଛି, ସେପର୍ଯ୍ୟନ୍ତ ସମାଜର ବ୍ୟବସ୍ଥା ଠିକ୍ ରହିବନାହିଁ ।

୩୨ । ଅନ୍ୱୟଦୀପିକା—ବ୍ରହ୍ମଣଃ ମୁଖେ (ବ୍ରହ୍ମମୁଖରେ) ଏବଂ ବହୁବିଧାଃ ଯଜ୍ଞାଃ (ଏଭଳି ନାନା ପ୍ରକାର ଯଜ୍ଞ) ବିତତାଃ (ବିସ୍ତୃତ ବା ବିହିତ ହୋଇଅଛି), ତାନ୍ ସର୍ବାନ୍ (ସେ ସମସ୍ତଙ୍କୁ) କର୍ମଜାନ୍ ବିଦ୍ଧି (କର୍ମସମ୍ଭବ ବୋଲି ଜାଣ) ଏବଂ ଜ୍ଞାତ୍ୱା ବିମୋକ୍ଷ୍ୟସେ (ଏହିପରି ଜାଣିପାରିଲେ ମୁକ୍ତି ଲାଭ କରିବ) ।

ଅନୁବାଦ—ବ୍ରହ୍ମମୁଖରେ ଏହିପରି ନାନାପ୍ରକାର ଯଜ୍ଞ ବିଷୟ ବିସ୍ତୃତ ବା ବିହିତ ହୋଇଅଛି । ସେ ସମସ୍ତହିଁ କର୍ମଜ ଅର୍ଥାତ୍ କର୍ମରୁ ସମ୍ଭୂତ ବୋଲି ଜାଣ । ଏହିଜ୍ଞାନ ହେଲେ ତୁମେ ମୁକ୍ତ ହୋଇଯିବ ।

ସୁବୋଧିନୀ ଟୀକା—ଜ୍ଞାନଯଜ୍ଞଂ ସ୍ତୋତୁ ମୁକ୍ତାନ୍ ଯଜ୍ଞାନୁପସଂହରତି—ଏବଂ ବହୁବିଧା ଇତି । ବ୍ରହ୍ମଣୋ ବେଦସ୍ୟ ମୁଖେ ବିତତାଃ । ବେଦେନ ସାକ୍ଷାତ୍ ବିହିତା ଇତ୍ୟର୍ଥଃ । ତଥାପି ତାନ୍ ସର୍ବାନ୍ ବାଙ୍ମନଃକାୟକର୍ମଜନିତାନାତ୍ମସ୍ୱରୂପସଂସ୍ପର୍ଶରହିତାନ୍ ବିଦ୍ଧି ଜାନୀହି । ଆତ୍ମନଃ କର୍ମାଗୋଚରତ୍ୱାତ୍ । ଏବଂ ଜ୍ଞାତ୍ୱା ଜ୍ଞାନନିଷ୍ଠଃ ସନ୍ ସଂସାରାଦ୍ ବିମୁକ୍ତୋ ଭବିଷ୍ୟସି ।

ଶ୍ରେୟାନ୍ ଦ୍ରବ୍ୟମୟାଦ୍ୟଜ୍ଞାଜ୍ ଜ୍ଞାନଯଜ୍ଞଃ ପରନ୍ତପ ।
ସର୍ବଂ କର୍ମାଖିଳଂ ପାର୍ଥ ଜ୍ଞାନେ ପରିସମାପ୍ୟତେ । ୩୩ ।

ବିବୃତି—ଜ୍ୟୋତିଷ୍ଟୋମାଦି ଦ୍ରବ୍ୟମୟ ଶ୍ରୌତଯଜ୍ଞ ଅଗ୍ନିରେ ହୋମକରି କରାଯାଏ ଏବଂ ଶାସ୍ତ୍ରରେ ଉକ୍ତ ହୋଇଅଛି ଯେ, ଅଗ୍ନି ଦେବତାମାନଙ୍କର ମୁଖ, ତେଣୁ ଅଗ୍ନିରେ ଆହୁତି ଦେଲେ ଦେବତାମାନେ ତାହା ପ୍ରାପ୍ତ ହୁଅନ୍ତି କିନ୍ତୁ ଉପରେ ଯେଉଁ ସବୁ ଯଜ୍ଞ କଥା ଭଗବାନ୍ କହିଲେ ଅର୍ଥାତ୍ ତପୋଯଜ୍ଞ, ଯୋଗଯଜ୍ଞ, ସ୍ୱାଧ୍ୟାୟଯଜ୍ଞ ପ୍ରଭୃତି, ସେସବୁ ଅଗ୍ନି ସାହାଯ୍ୟରେ ହୁଏ ନାହିଁ । ତେଣୁ ଏ ସବୁ ଲକ୍ଷଣିକ ଯଜ୍ଞଦ୍ୱାରା ଶ୍ରେୟଃ-ପ୍ରାପ୍ତି କିପରି ହେବ ? ଏହି ସନ୍ଦେହ ଦୂର କରିବା ପାଇଁ ଭଗବାନ୍ ଏ ଶ୍ଳୋକରେ କହୁ ଅଛନ୍ତି, ଏ ସମସ୍ତ ଯଜ୍ଞ ଅଗ୍ନି ମୁଖରେ ହୁଏ ନାହିଁ କିନ୍ତୁ ସାକ୍ଷାତ୍ ବ୍ରହ୍ମଙ୍କ ମୁଖରେ ବିସ୍ତୃତ ହୁଏ ଅର୍ଥାତ୍ ବ୍ରହ୍ମଙ୍କ ଉଦ୍ଦେଶ୍ୟରେହିଁ ସମ୍ପାଦିତ ହୁଏ ବା ବ୍ରହ୍ମଙ୍କଠାରେହିଁ ଅର୍ପିତ ହୁଏ । ପ୍ରତ୍ୟେକ ଯଜ୍ଞ ବ୍ରହ୍ମଙ୍କ ଉଦ୍ଦେଶ୍ୟରେ ହିଁ କରାଯାଏ । ଶଙ୍କର ପ୍ରମୁଖ ପ୍ରାଚୀନ ଟୀକାକାରମାନେ ଏଠାରେ ବ୍ରହ୍ମ ଅର୍ଥ ବେଦ ବୋଲି କହି ଅଛନ୍ତି, ଅର୍ଥାତ୍ ଏ ସବୁ ବେଦରେ ବିହିତ ହୋଇଅଛି । ପୂର୍ବେ ଯେଉଁ ନାନାବିଧ ଲକ୍ଷଣିକ ଯଜ୍ଞ କଥା କୁହା ଯାଇଅଛି ସେ ସମସ୍ତର ବିବରଣ ବେଦରେ ମିଳେ ନାହିଁ, ତେଣୁ ବେଦର ଗୌରବ ପ୍ରଖ୍ୟାପନ ପାଇଁ ଏପରି କୁହାଯାଇଅଛି । ମହାଭାରତରେ ଓ କେତେକ ସ୍ଥାନରେ ସ୍ପଷ୍ଟ ଲିଖିତ ଅଛି ଯେ ସକଳ ଧର୍ମତତ୍ତ୍ୱ ବେଦରେ ନାହିଁ । ବେଦୋକ୍ତ ଜ୍ୟୋତିଷ୍ଟୋମାଦି ଯଜ୍ଞର ସମ୍ପ୍ରସାରଣ କରି ବ୍ୟାପକ ଅର୍ଥରେ ବ୍ରହ୍ମାର୍ପଣବୁଦ୍ଧିରେ କୃତକର୍ମମାତ୍ରକେ ଗୀତାରେ ଯଜ୍ଞ ନାମରେ ଅଭିହିତ ହୋଇଅଛି । 'ତସ୍ମାତ୍ ସର୍ବଗତଂ ବ୍ରହ୍ମ ନିତ୍ୟଂ ଯଜ୍ଞେ ପ୍ରତିଷ୍ଠିତମ୍' ଏ ଅଧ୍ୟାୟର ୧୫ଶ ଶ୍ଳୋକରେ ଏହା ସ୍ପଷ୍ଟରୂପେ କୁହାଯାଇଅଛି । ବ୍ରହ୍ମହିଁ ବିଶ୍ୱମୟ ଅଶେଷ କର୍ମ ମଧ୍ୟରେ ନିଜକୁ ଅଭିବ୍ୟକ୍ତ କରୁ ଅଛନ୍ତି । ତେଣୁ ବିଶ୍ୱର ସମସ୍ତ କର୍ମହିଁ ଯଜ୍ଞସ୍ୱରୂପ ।

କର୍ମହିଁ ବ୍ରହ୍ମଙ୍କର ଶକ୍ତି, କର୍ମ ବିନା ଜ୍ଞାନ ଲାଭ ହୁଏ ନାହିଁ, ତେଣୁ ଜ୍ଞାନ ମଧ୍ୟ କର୍ମଜ । ମନୁଷ୍ୟ ଏହା ଜାଣି ପାରିଲେ ଅର୍ଥାତ୍ ବ୍ରହ୍ମାର୍ପଣବୁଦ୍ଧିରେ କର୍ମ କଲେ ବ୍ରହ୍ମଙ୍କ ସ୍ୱରୂପ ଜାଣିପାରେ; ତେଣୁ ତା ପକ୍ଷରେ ମୁକ୍ତିଲାଭ ଅନାୟାସସାଧ୍ୟ ହୁଏ ।

୩୩ । ଅନ୍ୱୟଦୀପିକା—ହେ, ପରନ୍ତପ ! ( ହେ ଶତ୍ରୁବିନାଶକାରୀ ) ଦ୍ରବ୍ୟମୟାତ୍ ( ଦ୍ରବ୍ୟସାଧ୍ୟ ) ଯଜ୍ଞାତ୍ ( ଯଜ୍ଞଠାରୁ ) ଜ୍ଞାନଯଜ୍ଞଃ ( ଜ୍ଞାନଯଜ୍ଞ ) ଶ୍ରେୟାନ୍ ( ଶ୍ରେଷ୍ଠ ), ପାର୍ଥ ! ( ହେ ଅର୍ଜୁନ ) ସର୍ବମ୍ ଅଖିଳଂ କର୍ମ ( ସମସ୍ତ ନିରବଶେଷ କର୍ମ ) ଜ୍ଞାନେ ( ଜ୍ଞାନରେ ) ପରିସମାପ୍ୟତେ ( ପର୍ଯ୍ୟବସିତ ହୁଏ ) ।

ତଦ୍‌ବିଦ୍ଧି ପ୍ରଣିପାତେନ ପରିପ୍ରଶ୍ନେନ ସେବୟା ।
ଉପଦେକ୍ଷ୍ୟନ୍ତି ତେ ଜ୍ଞାନଂ ଜ୍ଞାନିନସ୍ତତ୍ତ୍ୱଦର୍ଶିନଃ । ୩୪ ।

ଅନୁବାଦ—ହେ ପରନ୍ତପ, ଦ୍ରବ୍ୟସାଧ୍ୟ ଦୈବଯଜ୍ଞାଦିଠାରୁ ଜ୍ଞାନ ଯଜ୍ଞ ଶ୍ରେଷ୍ଠ, କାରଣ ଫଳ ସହିତ ସମସ୍ତ କର୍ମ ଜ୍ଞାନରେ ନିଃଶେଷରୂପେ ପରିସମାପ୍ତ ହୁଏ ।

ସୁବୋଧିନୀ ଟୀକା—କର୍ମଯଜ୍ଞାଜ୍‌ଜ୍ଞାନଯଜ୍ଞସ୍ତୁ ଶ୍ରେଷ୍ଠ ଇତ୍ୟାହ—ଶ୍ରେୟାନିତି । ଦ୍ରବ୍ୟମୟାଦନାତ୍ମବ୍ୟାପାରଜନ୍ୟାଦ୍ଦୈବାଦଯଜ୍ଞାତ୍ ଜ୍ଞାନଯଜ୍ଞଃ ଶ୍ରେୟାନ୍ ଶ୍ରେଷ୍ଠଃ । ଯଦ୍ୟପି ଜ୍ଞାନଯଜ୍ଞସ୍ୟାପି ମନୋବ୍ୟାପାରାଧୀନତ୍ୱମସ୍ତ୍ୟେବ ତଥାପ୍ୟାତ୍ମସ୍ୱରୂପସ୍ୟ ଜ୍ଞାନସ୍ୟ ମନଃ ପରିଣାମେଽଭିବ୍ୟକ୍ତିମାତ୍ରମ୍ । ନ ତଜ୍ଜନ୍ୟତ୍ୱମିତି ଦ୍ରବ୍ୟମୟାଦ୍ ବିଶେଷଃ । ଶ୍ରେଷ୍ଠତ୍ୱେହେତୁଃ—ସର୍ବଂ କର୍ମାଖିଳଂ ଫଳସହିତଂ ଜ୍ଞାନେ ପରିସମାପ୍ୟତେ । ଅନ୍ତର୍ଭବତୀତ୍ୟର୍ଥଃ । ସର୍ବଂସଦଭିସମେତି ଯତ୍ କିଞ୍ଚ ପ୍ରଜାଃ ସାଧୁ କୁର୍ବନ୍ତୀତି ଶ୍ରୁତେଃ ।

ବିବୃତି—ଦ୍ରବ୍ୟ ସାହାଯ୍ୟରେ ଯେଉଁ ସବୁ ଯଜ୍ଞ କରାଯାଏ ତାହା ଦ୍ରବ୍ୟମୟ ଯଜ୍ଞ । ନୃ ଯଜ୍ଞ, ଦୈବଯଜ୍ଞ, ଦାନଯଜ୍ଞ ପ୍ରଭୃତି ଦ୍ରବ୍ୟସାଧ୍ୟ, ତେଣୁ ଏ ସବୁ ଦ୍ରବ୍ୟମୟ ଯଜ୍ଞ । ଈଶ୍ୱରଙ୍କୁ ପାଇବା ପାଇଁ ସବୁ ଯଜ୍ଞ କରାଯାଏ ମାତ୍ର ଈଶ୍ୱରଙ୍କ ସ୍ୱରୂପ ଜ୍ଞାନ ବ୍ୟତୀତ ଈଶ୍ୱରପ୍ରାପ୍ତି ହୁଏ ନାହିଁ । ଦ୍ରବ୍ୟମୟ ଯଜ୍ଞରେ ସ୍ୱର୍ଗ ପ୍ରାପ୍ତି ହୋଇପାରେ; କିନ୍ତୁ ଜ୍ଞାନହିଁ ଈଶ୍ୱରପ୍ରାପ୍ତିର ପରମ ସାଧନ । ଜ୍ଞାନ ମାନସ ଓ ବୁଦ୍ଧିସାଧ୍ୟ । ଅତଏବ ଦ୍ରବ୍ୟମୟ ଯଜ୍ଞ ଅପେକ୍ଷା ଜ୍ଞାନର ମାହାତ୍ମ୍ୟ ଅଧିକ । ମୋକ୍ଷ ଲାଭ ବିଷୟରେ ଏହି ଜ୍ଞାନହିଁ ମୁଖ୍ୟ ଏବଂ ଏହି ଜ୍ଞାନ ଦ୍ୱାରା ହିଁ ସମସ୍ତ କର୍ମର କ୍ଷୟ ହୁଏ । ପରମେଶ୍ୱରଜ୍ଞାନବ୍ୟତୀତ ମୋକ୍ଷଲାଭ ହୁଏ ନାହିଁ—ଏହା ଗୀତାର ସିଦ୍ଧାନ୍ତ । ଜ୍ଞାନଲାଭ ହେଲେ କର୍ମ ଛାଡ଼ି ଦେବାକୁ ହେବ—ଏହା ଗୀତାରେ ପ୍ରତିପାଦିତ ହୋଇନାହିଁ ।

ଏଠାରେ ପ୍ରଶ୍ନ ହୋଇପାରେ, ମୋକ୍ଷ ମାର୍ଗରେ ତେବେ କର୍ମ ଯୋଗର ଯୋଗ୍ୟତା କେଉଁଠାରେ ? ନିଷ୍କାମ କର୍ମଯୋଗରେ ଅହଂବୁଦ୍ଧି କ୍ରମଶଃ ଲୋପ ହୋଇଯାଏ, ତେଣୁ ବୁଦ୍ଧି ସମତାରେ ପ୍ରତିଷ୍ଠିତ ହୋଇ ସର୍ବତ୍ର ବ୍ରହ୍ମ ଦର୍ଶନ କରେ । ବୁଦ୍ଧିର ଏହି ସମୁନ୍ନତ ଅବସ୍ଥାହିଁ ଜ୍ଞାନ । କର୍ମଯୋଗର ସିଦ୍ଧାବସ୍ଥାରେ ଏହି ଆତ୍ମଜ୍ଞାନ ଲାଭ ହୁଏ, ତେଣୁ ଏ ଶ୍ଳୋକରେ କୁହାଯାଇଅଛି ଯେ "ଜ୍ଞାନରେ ସମସ୍ତ କର୍ମର ପରିସମାପ୍ତି" ।

୩୪ । ଅନ୍ୱୟଦୀପିକା—ପ୍ରଣିପାତେନ (ଦଣ୍ଡବତ୍ ପ୍ରଣାମ ଦ୍ୱାରା) ପରିପ୍ରଶ୍ନେନ ( ପ୍ରଶ୍ନ ଦ୍ୱାରା ) ସେବୟା ( ସେବାଦ୍ୱାରା ) ତତ୍ ( ସେହି ଜ୍ଞାନ ) ବିଦ୍ଧି ( ଲାଭକର ); ତତ୍ତ୍ୱଦର୍ଶିନଃ ( ତତ୍ତ୍ୱଦର୍ଶୀ ) ଜ୍ଞାନିନଃ ( ଜ୍ଞାନୀମାନେ ) ତେ ( ତୁମ୍ଭକୁ ) ଜ୍ଞାନଂ ( ଜ୍ଞାନ ) ଉପଦେକ୍ଷ୍ୟନ୍ତି ( ଉପଦେଶ ଦେବେ ) ।

ଯଜ୍‌ଜ୍ଞାତ୍ୱା ନ ପୁନର୍ମୋହମେବଂ ଯାସ୍ୟସି ପାଣ୍ଡବ ।
ଯେନ ଭୂତାନ୍ୟଶେଷେଣ ଦ୍ରକ୍ଷ୍ୟସ୍ୟାତ୍ମନ୍ୟଥୋ ମୟି । ୩୫ ।

ଅନୁବାଦ—ବ୍ରହ୍ମବେତ୍ତା ଗୁରୁଙ୍କ ଚରଣରେ ଦଣ୍ଡବତ୍ ପ୍ରଣାମ କରି ପ୍ରଶ୍ନ ଓ ସେବା କରିବା ଦ୍ୱାରା ଆତ୍ମଜ୍ଞାନ ଶିକ୍ଷା କର । ଜ୍ଞାନୀ ଓ ତତ୍ତ୍ୱଦର୍ଶୀ ଗୁରୁ ତୁମ୍ଭକୁ ସେହି ଉପଦେଶ ଦେବେ ।

ସୁବୋଧିନୀ ଟୀକା—ଏବଂ ଭୂତାତ୍ମଜ୍ଞାନେ ସାଧନମାହ—ତଦିତି । ତଜ୍ଜ୍ଞାନଂ ଵିଦ୍ଧି ଜାନୀହି ପ୍ରାପ୍ନୁହୀତ୍ୟର୍ଥଃ, ଜ୍ଞାନିନାଂ ପ୍ରଣିପାତେନ ଦଣ୍ଡବନ୍ନମସ୍କାରେଣ, ତତଃ ପରିପ୍ରଶ୍ନେନ, କୁତୋଽୟଂ ମମ ସଂସାରଃ ? କଥଂ ବା ନିବର୍ତ୍ତେତ ? ଇତି ପରିପ୍ରଶ୍ନେନ । ସେବୟା ଗୁରୁଶୁଶ୍ରୂଷୟା ଚ, ଜ୍ଞାନିନଃ ଶାସ୍ତ୍ରଜ୍ଞାଃ ତତ୍ତ୍ୱଦର୍ଶିନୋଽପରୋକ୍ଷାନୁଭବସମ୍ପନ୍ନାଶ୍ଚ, ତେ ତୁଭ୍ୟଂ ଜ୍ଞାନମୁପଦେଶେନ ସମ୍ପାଦୟିଷ୍ୟନ୍ତି ।

ବକ୍ତବ୍ୟ—କେବଳ ଗ୍ରନ୍ଥ ପାଠକରି କେହି ଗୁରୁ ହୋଇ ପାରନ୍ତି ନାହିଁ । ଯେ ଅପରୋକ୍ଷ ଅନୁଭୂତି ସମ୍ପନ୍ନ ଅର୍ଥାତ୍ ଯାହାଙ୍କର ଆତ୍ମସାକ୍ଷାତ୍‌କାର ହୋଇଅଛି ସେହି ଏକା ଗୁରୁପଦବାଚ୍ୟ । ତାଙ୍କ ଶ୍ରୀଚରଣରେ ଦଣ୍ଡବତ୍ ପ୍ରଣାମ କରି ଓ ଯଥାଶକ୍ତି ତାଙ୍କର ସେବା କରି ତାଙ୍କୁ ପ୍ରଶ୍ନ କରିବାକୁ ହେବ । ମୁଁ କିଏ ? କାହିଁକି ଏ ସଂସାରରେ ବନ୍ଧନ ଅବସ୍ଥାରେ ପଡ଼ିଅଛି ? କି ଉପାୟରେ ତହିଁରୁ ମୁକ୍ତିଲାଭ କରିବି ? ଏହିପରି ପ୍ରଶ୍ନ ଗୁରୁଙ୍କୁ ପଚାରିଲେ ସେ ତୁମ୍ଭକୁ ଯଥାର୍ଥ ଉତ୍ତର ଦେବେ ।

୩୫ । ଅନ୍ୱୟଦୀପିକା—ପାଣ୍ଡବ, ( ହେ ପାଣ୍ଡବ ) ଯତ୍ ଜ୍ଞାତ୍ୱା ( ଯାହା ଜାଣି ) ପୁନଃ ( ପୁଣି ) ଏବଂ ମୋହଂ ( ଏପରି ମୋହ ) ନ ଯାସ୍ୟସି ( ପ୍ରାପ୍ତହେବ ନାହିଁ ), ଯେନ ( ଯାହାଦ୍ୱାରା ) ଭୂତାନି ( ପ୍ରାଣୀମାନଙ୍କୁ ) ଅଶେଷେଣ ( ଅଶେଷ ପ୍ରକାରରେ ) ଆତ୍ମନି ( ଆତ୍ମାରେ ) ଅଥୋ ( ଅନନ୍ତର ) ମୟି ( ମୋଠାରେ ) ଦ୍ରକ୍ଷ୍ୟସି ( ଦେଖିବ ) ।

ଅନୁବାଦ—ହେ ପାଣ୍ଡବ, ଯାହା ଜାଣିଲେ ପୁନର୍ବାର ଏପରି ମୋହ ପ୍ରାପ୍ତ ହେବନାହିଁ, ଯେଉଁଜ୍ଞାନ ଦ୍ୱାରା ସମସ୍ତ ପ୍ରାଣୀଙ୍କୁ ଅଭିନ୍ନ ରୂପରେ ସ୍ୱୀୟ ଆତ୍ମାରେ ଏବଂ ତତ୍ପରେ ମୋଠାରେ ଦେଖି ପାରିବ ।

ସୁବୋଧିନୀ ଟୀକା—ଜ୍ଞାନଫଳମାହ—ଯଜ୍‌ଜ୍ଞାତ୍ୱେତି ସାର୍ଦ୍ଧୈସ୍ତ୍ରିଭିଃ । ଯଜ୍ଜ୍ଞାନଂ ଜ୍ଞାତ୍ୱା ପ୍ରାପ୍ୟ ପୁନର୍ବନ୍ଧୁବଧାଦିନିମିତ୍ତଂ ମୋହଂ ନ ପ୍ରାପ୍ସ୍ୟସି, ତତ୍ର ହେତୁଃ—ଯେନ ଜ୍ଞାନେନ ଭୂତାନି ପିତାପୁତ୍ରାଦୀନି ସ୍ୱାବିଦ୍ୟାଵିଜୃମ୍ଭିତାନି ସ୍ୱାତ୍ମନ୍ୟେବାଭେଦେନ ଦ୍ରକ୍ଷ୍ୟସି । ଅଥୋ ଅନନ୍ତରମାତ୍ମାନଂ ମୟି ପରମାତ୍ମନ୍ୟଭେଦେନ ଦ୍ରକ୍ଷ୍ୟସୀତ୍ୟର୍ଥଃ ।

ଅପି ଚେଦସି ପାପେଭ୍ୟଃ ସର୍ବେଭ୍ୟଃ ପାପକୃତ୍ତମଃ ।
ସର୍ବଂ ଜ୍ଞାନପ୍ଲବେନୈବ ବୃଜିନଂ ସନ୍ତରିଷ୍ୟସି । ୩୬ ।
ଯଥୈଧାଂସି ସମିଦ୍ଧୋଽଗ୍ନି ର୍ଭସ୍ମସାତ୍ କୁରୁତେଽର୍ଜୁନ ।
ଜ୍ଞାନାଗ୍ନିଃ ସର୍ବକର୍ମାଣି ଭସ୍ମସାତ୍ କୁରୁତେ ତଥା । ୩୭ ।

ବକ୍ତବ୍ୟ—ଏତେ ପରିଶ୍ରମ କରି ଜ୍ଞାନ ଲାଭ କଲେ କି ଲାଭହେବ ? ଅର୍ଜୁନଙ୍କ ମନର ଏହି ସନ୍ଦେହ ଦୂର କରିବା ପାଇଁ ଭଗବାନ୍ କହୁଅଛନ୍ତି— ଗୁରୁଙ୍କଠାରୁ ଆତ୍ମୋପଦେଶ ଲାଭ କଲେ ଦେଖିବ ଯେ ବ୍ରହ୍ମାଙ୍କଠାରୁ କୀଟପର୍ଯ୍ୟନ୍ତ ସମସ୍ତ ପ୍ରାଣୀ ହିଁ ଏକ ଆତ୍ମାର ଭିନ୍ନ ଭିନ୍ନ ଲୀଳାମୟ ବିକାଶ ମାତ୍ର । ଅନ୍ୟସମସ୍ତେ ଏବଂ ତୁମ୍ଭେ ମୋର ନିତ୍ୟ ସତ୍ତାରେ ବିଦ୍ୟମାନ । ଏହାଦ୍ୱାରା ତୁମ୍ଭଙ୍କ ବନ୍ଧୁବଧାଦି ନିମିତ୍ତ ବୃଥା ପାପ ଭୟରେ ଭୀତ ଓ ମୋହିତ ହେବାକୁ ପଡ଼ିବ ନାହିଁ ।

୩୬ । ଅନ୍ୱୟ ଦୀପିକା—ଚେତ୍ ( ଯଦି ) ସର୍ବେଭ୍ୟଃ ( ସକଳ ) ପାପେଭ୍ୟଃ ( ପାପୀମାନଙ୍କ ମଧ୍ୟରେ ) ପାପକୃତ୍ତମଃ ( ଅତିପାପିଷ୍ଠ ) ଅସି ( ତୁମେ ହୋଇଥାଅ ) [ ତଥାପି ] ସର୍ବଂ ବୃଜିନଂ ( ସକଳ ପାପ ) ଜ୍ଞାନ ପ୍ଲବେନୈବ ( ଜ୍ଞାନରୂପ ଭେଳାଦ୍ୱାରା ) ସନ୍ତରିଷ୍ୟସି ( ଉତ୍ତୀର୍ଣ୍ଣ ହେବ ) ।

ଅନୁବାଦ—ଯେବେ ତୁମେ ସମସ୍ତ ପାପୀଙ୍କ ମଧ୍ୟରେ ଅଧିକ ପାପିଷ୍ଠ ହୋଇଥାଅ ତେବେ ସେହି ପାପ ସମୁଦ୍ରକୁ ଜ୍ଞାନରୂପ ନୌକାଦ୍ୱାରା ଅକ୍ଳେଶରେ ପାରହୋଇ ପାରିବ ।

ସୁବୋଧିନୀ ଟୀକା—କିଞ୍ଚ ଅପିଚେଦସି--ସର୍ବେଭ୍ୟଃ ପାପକାରିଭ୍ୟୋ ଯଦ୍ୟପ୍ୟତିଶୟେନ ପାପକାରୀ ତ୍ୱମସି ତଥାପି ସର୍ବଂ ପାପସମୁଦ୍ରଂ ଜ୍ଞାନପ୍ଲବେନୈବ ଜ୍ଞାନପୋତେନୈବ ସମ୍ୟଗନାୟାସେନ ତରିଷ୍ୟସି ।

ବକ୍ତବ୍ୟ—ନିଷ୍ପାପ ନ ହେଲେ ଆତ୍ମଜ୍ଞାନ ଲାଭର ପ୍ରବୃତ୍ତି ହୁଏ ନାହିଁ । ସାତ୍ତ୍ୱିକ ବୁଦ୍ଧିରେହିଁ ବୈରାଗ୍ୟ ଓ ମୁକ୍ତିର ଇଚ୍ଛା ଜାତ ହୁଏ । ସୁତରାଂ ଆତ୍ମଜ୍ଞାନଦ୍ୱାରା ଆତ୍ମାର ଅକର୍ତ୍ତୃତ୍ୱାଦି ନିଶ୍ଚିତ ହେଲେ ପାପ କୌଣସିମତେ ଅନ୍ତଃକରଣକୁ ସ୍ପର୍ଶକରିପାରେ ନାହିଁ । ଯେତେବେଳେ ଆତ୍ମା ଅପରୋକ୍ଷ ଜ୍ଞାନର ଅଧିକାରୀ ହୁଏ, ସେତେବେଳେ ପାପର ପ୍ରବୃତ୍ତି ରହିପାରେ କି ?

୩୭ । ଅନ୍ୱୟ ଦୀପିକା—ଅର୍ଜୁନ ! ( ହେ ଅର୍ଜୁନ ) ଯଥା ( ଯେପରି ) ସମିଦ୍ଧଃ ( ପ୍ରଜ୍ୱଳିତ ) ଅଗ୍ନିଃ ( ବହ୍ନି ) ଏଧାଂସି ( କାଷ୍ଠରାଶିକୁ ) ଭସ୍ମସାତ୍ ( ଭସ୍ମୀଭୂତ ) କୁରୁତେ ( କରେ ), ତଥା ( ସେହିପରି ) ଜ୍ଞାନାଗ୍ନିଃ ( ଜ୍ଞାନରୂପ ଅଗ୍ନି ) ସର୍ବ କର୍ମାଣି ( କର୍ମସମୂହକୁ ) ଭସ୍ମସାତ୍ କୁରୁତେ ( ଭସ୍ମୀଭୂତ କରେ ) ।

ନହି ଜ୍ଞାନେନ ସଦୃଶଂ ପବିତ୍ରମିହ ବିଦ୍ୟତେ ।
ତତ୍ସ୍ୱୟଂ ଯୋଗସଂସିଦ୍ଧଃ କାଳେନାତ୍ମନି ବିନ୍ଦତି । ୩୮ ।

ଅନୁବାଦ—ହେ ଅର୍ଜୁନ, ଯେପରି ପ୍ରଜ୍ୱଳିତ ଅଗ୍ନି କାଷ୍ଠରାଶିକୁ ଭସ୍ମୀଭୂତ କରେ ସେହିପରି ଜ୍ଞାନରୂପ ଅଗ୍ନି କର୍ମରାଶିକୁ ଭସ୍ମୀଭୂତ କରେ ।

ସୁବୋଧିନୀ ଟୀକା—ସମୁଦ୍ରବତ୍ ସ୍ଥିତସ୍ୟୈବ ପାପସ୍ୟାତିଲଂଘନମାତ୍ରମ୍ । ନତୁ ପାପସ୍ୟ ନାଶଃ-ଇତି ଭ୍ରାନ୍ତିଂ ଦୃଷ୍ଟାନ୍ତେନ ବାରୟନ୍ନାହ—ଯଥୈଧାଂସୀତି, ଏଧାଂସି କାଷ୍ଠାନି ପ୍ରଦୀପ୍ତୋଽଗ୍ନିର୍ଯଥା ଭସ୍ମୀଭାବଂ ନୟତି ତଥାତ୍ମଜ୍ଞାନସ୍ୱରୂପୋଽଗ୍ନିଃ ପ୍ରାରବ୍ଧକର୍ମଫଳବ୍ୟତିରିକ୍ତାନି ସର୍ବାଣି କର୍ମାଣି ଭସ୍ମୀକରୋତୀତ୍ୟର୍ଥଃ ।

ବିବୃତି—ଯାହାଙ୍କର ଆତ୍ମଜ୍ଞାନ ଜାତ ହୁଏ ସେ ପାପସମୁଦ୍ରରୁ ଉତ୍ତୀର୍ଣ୍ଣ ହୁଅନ୍ତି ସତ ମାତ୍ର ତଦ୍ଦ୍ୱାରା ପାପସମୁଦ୍ର ତ ଶୁଷ୍କ ବା ନଷ୍ଟ ହୁଏ ନାହିଁ; ଅର୍ଜୁନଙ୍କର ଏ ଭଳି ସନ୍ଦେହ ନିବାରଣ ପାଇଁ ଭଗବାନ କହୁ ଅଛନ୍ତି :—ଆତ୍ମଜ୍ଞାନ ଜାତହେଲେ ତୁମେ ପାପସାଗରରୁ ଉତ୍ତୀର୍ଣ୍ଣ ହୋଇଯିବ—ଏଥିରେ ସନ୍ଦେହ ନାହିଁ, ଅଧିକ ମଧ୍ୟ ଜଳନ୍ତା ଅଗ୍ନି ଯେପରି କାଠଗୁଡ଼ିକୁ ପାଉଁଶ କରିଦିଏ, ସେହିପରି ଆତ୍ମଜ୍ଞାନ ପୂର୍ବସଞ୍ଚିତ କର୍ମରାଶିକୁ ମଧ୍ୟ ସାଙ୍ଗେ ସାଙ୍ଗେ ଦଗ୍ଧ କରି ଦେବ । ଏ ଶ୍ଳୋକର ଶେଷାର୍ଦ୍ଧରେ 'କର୍ମ'ର ଅର୍ଥ କର୍ମବନ୍ଧନ; କର୍ମତ୍ୟାଗ ନୁହେ, ଆତ୍ମଜ୍ଞାନ କଅଣ ଏହା ୩୫ମ ଶ୍ଳୋକର ବିବୃତିରେ କୁହାଯାଇ ଅଛି । ସର୍ବଭୂତ ଏବଂ ଆତ୍ମା ଏକ ବା ଅଭିନ୍ନ ଏବଂ ଆତ୍ମାହିଁ ଭଗବତ୍‌ସତ୍ତା ଏବଂ ବିଶ୍ୱ ବ୍ରହ୍ମାଣ୍ଡହିଁ ସେହିବ୍ରହ୍ମଙ୍କ ଅଭିବ୍ୟକ୍ତି—ଏହା ବୁଝିପାରିଲେ ଆତ୍ମଜ୍ଞାନ ଜାତ ହୋଇଅଛି ବୁଝିବାକୁ ହେବ ।

୩୮ । ଅନ୍ୱୟ ଦୀପିକା—ଇହ ( ସଂସାରରେ ) ଜ୍ଞାନେନ ସଦୃଶଂ ( ଜ୍ଞାନପରି ) ପବିତ୍ରଂ ନହି ବିଦ୍ୟତେ ( ପବିତ୍ର ଅନ୍ୟ କିଛି ନାହିଁ ); ତତ୍ ( ସେହିଜ୍ଞାନ ) ଯୋଗସଂସିଦ୍ଧଃ ( କର୍ମଯୋଗରେ ସିଦ୍ଧ ପୁରୁଷ ) କାଳେନ ( କାଳକ୍ରମେ ) ଆତ୍ମନି ସ୍ୱୟଂ ବିନ୍ଦତି ( ସ୍ୱୟଂ ଅନ୍ତଃକରଣରେ ଲାଭକରନ୍ତି ) ।

ଅନୁବାଦ—ଏ ସଂସାରରେ ଜ୍ଞାନପରି ଅନ୍ୟ କିଛି ପବିତ୍ର ନୁହେ । କର୍ମଯୋଗରେ ସିଦ୍ଧପୁରୁଷ ସେ ଜ୍ଞାନ କାଳକ୍ରମେ ନିଜ ଅନ୍ତରରେ ଲାଭ କରନ୍ତି ।

ସୁବୋଧିନୀ ଟୀକା—ତତ୍ରହେତୁମାହ—ନହୀତି । ପବିତ୍ରଂ ଶୁଦ୍ଧିକରମ୍ । ଇହ ତପୋଯୋଗାଦିଷୁମଧ୍ୟେ ଜ୍ଞାନତୁଲ୍ୟଂ ନାସ୍ତ୍ୟେବ । ତର୍ହି ସର୍ବୋଽପି କର୍ମତ୍ୟାତ୍ମଜ୍ଞାନମେବ କାଭ୍ୟସନ୍ତି ଇତି ? ଅତ ଆହ—ତତ୍ ସ୍ୱୟମିତି ସାର୍ଦ୍ଧେନ । ତଦାତ୍ମନି ବିଷୟେ ଜ୍ଞାନଂ କାଳେନ ମହତା କର୍ମଯୋଗେନ ସଂସିଦ୍ଧୋ ଯୋଗ୍ୟତାଂ ପ୍ରାପ୍ତଃ ସନ୍ ସ୍ୱୟମେବାନାୟାସେନ ଲଭତେ । ନ ତୁ କର୍ମଯୋଗଂ ବିନେତ୍ୟର୍ଥଃ ।

ଶ୍ରଦ୍ଧାବାଁଲ୍ଲଭତେ ଜ୍ଞାନଂ ତତ୍ପରଃ ସଂଯତେନ୍ଦ୍ରିୟଃ ।
ଜ୍ଞାନଂ ଲବ୍‌ଧ୍ୱା ପରାଂ ଶାନ୍ତିମଚିରେଣାଧିଗଚ୍ଛତି । ୩୯ ।

ବିବୃତି—କି ଉପାୟରେ ଜ୍ଞାନଲାଭ କରାଯାଏ, ତାହା ଏ ଶ୍ଳୋକର ଶେଷାର୍ଦ୍ଧରେ ଏବଂ ପରବର୍ତ୍ତୀ ଶ୍ଳୋକରେ କୁହାଯାଉଅଛି । ନିଜ ବୁଦ୍ଧିରେ ଅରବ୍‌ଧ ନିଷ୍କାମ କର୍ମର ଅନୁଷ୍ଠାନ ଦ୍ୱାରା ଜ୍ଞାନଲାଭ କରିବା ଜ୍ଞାନ ପ୍ରାପ୍ତିର ମୁଖ୍ୟମାର୍ଗ । କିନ୍ତୁ ଏହି ଜ୍ଞାନ ସଦ୍ୟୋଲାଭ ହୁଏ ନାହିଁ, ସାଧନାକୁ ଅପେକ୍ଷା କରେ, ନିଷ୍କାମ କର୍ମ ଯୋଗର ଅନ୍ୟ ନାମ ସମାଧିଯୋଗ ବା ଭକ୍ତିଯୋଗ, କାରଣ ଈଶ୍ୱରଙ୍କଠାରେ ଚିତ୍ତ ସମାହିତ ନ ହେଲେ କର୍ମ ଯୋଗରେ ସିଦ୍ଧିଲାଭ ହୁଏ ନାହିଁ । ଆତ୍ମଜ୍ଞାନ ସ୍ୱପ୍ରକାଶ, ସାଧକ କାଳସହକାରେ ଦୃଢ଼ ସାଧନାଦ୍ୱାରା ନିଜ ଅନ୍ତଃକରଣରେ ତାହା ଲାଭ କରନ୍ତି ।

୩୯ । ଅନ୍ୱୟ ଦୀପିକା—ଶ୍ରଦ୍ଧାବାନ୍ ( ଶ୍ରଦ୍ଧାଯୁକ୍ତ ), ତତ୍ପରଃ ( ଏକନିଷ୍ଠ, ନିରଳସ ) ସଂଯତେନ୍ଦ୍ରିୟଃ ( ଜିତେନ୍ଦ୍ରିୟ ଲୋକ ) ଜ୍ଞାନଂ ଲଭତେ ( ଜ୍ଞାନଲାଭ କରନ୍ତି ); ଜ୍ଞାନଂ ଲବ୍‌ଧ୍ୱା ( ଜ୍ଞାନଲାଭ କରି ) ଅଚିରେଣ ( ଶୀଘ୍ର ) ପରାଂ ଶାନ୍ତିଂ ( ପରମଶାନ୍ତି ) ଅଧିଗଚ୍ଛତି ( ପ୍ରାପ୍ତହୁଅନ୍ତି ) ।

ଅନୁବାଦ—ଯେଉଁ ଲୋକ ଶ୍ରଦ୍ଧାବାନ୍, ଏକନିଷ୍ଠ ଏବଂ ଜିତେନ୍ଦ୍ରିୟ ସେହିଲୋକହିଁ ଜ୍ଞାନଲାଭ କରନ୍ତି ଏବଂ ଜ୍ଞାନଲାଭ କରି ଅନତିବିଳମ୍ବରେ ପରମ ଶାନ୍ତି ଲାଭ କରନ୍ତି ।

ସୁବୋଧିନୀ ଟୀକା—କିଞ୍ଚ—ଶ୍ରଦ୍ଧାବାନିତି । ଶ୍ରଦ୍ଧାବାନ୍ ଗୁରୂପଦିଷ୍ଟେଽର୍ଥେ ଆସ୍ତିକ୍ୟବୁଦ୍ଧିମାନ୍, ତନ୍ନିଷ୍ଠ ସ୍ତଦେକନିଷ୍ଠଃ । ସଂଯତେନ୍ଦ୍ରିୟଶ୍ଚ । ତଜ୍ଜ୍ଞାନଂ ଲଭତେ । ନାନ୍ୟଃ । ଅତଃ ଶ୍ରଦ୍ଧାଦିସମ୍ପତ୍ତ୍ୟା ଜ୍ଞାନଲାଭାତ୍ ପ୍ରାକ୍ କର୍ମଯୋଗ ଏବ ଶୁଦ୍ଧ୍ୟର୍ଥମନୁଷ୍ଠେୟଃ । ଜ୍ଞାନଲାଭାନନ୍ତରଂ ତୁ ନ ତସ୍ୟ କିଞ୍ଚିତ୍ କର୍ତ୍ତବ୍ୟମ୍—ଇତ୍ୟାହ ଜ୍ଞାନଂ ଲବ୍‌ଧ୍ୱା ତୁ ମୋକ୍ଷ ମଚିରେଣ ପ୍ରାପ୍ନୋତି ।

ବିବୃତି—ପୂର୍ବ ଶ୍ଳୋକ ବିବୃତିରେ କୁହା ଯାଇଅଛି ବୁଦ୍ଧି ସାହାଯ୍ୟରେ ଜ୍ଞାନଲାଭ କରାଯାଏ । ଏଠାରେ କୁହାଯାଇଅଛି ଶ୍ରଦ୍ଧାଦ୍ୱାରା ମଧ୍ୟ ଜ୍ଞାନ ଲାଭ ହୁଏ । ଗୁରୁଙ୍କ ଉପଦେଶ ଓ ଆଧ୍ୟାତ୍ମିକ ଶାସ୍ତ୍ରରେ ଦୃଢ଼ବିଶ୍ୱାସକୁ ଏଠାରେ ଶ୍ରଦ୍ଧା କୁହାଯାଇଅଛି । କେବଳ ଶ୍ରଦ୍ଧାଥିଲେ ଜ୍ଞାନଲାଭ ହୁଏ ନାହିଁ, ସେଥିପାଇଁ ସାଧନା ଆବଶ୍ୟକ । ତେଣୁ ସାଧକ ତତ୍ପର ଅର୍ଥାତ୍ ଏକନିଷ୍ଠ ହେବା ଆବଶ୍ୟକ । ଶ୍ରଦ୍ଧାଳୁ ଓ ଏକନିଷ୍ଠ ହେଲେହେଁ ଇନ୍ଦ୍ରିୟସଂଯମର ଅଭାବରୁ ଜ୍ଞାନ ଲାଭ ହୁଏନାହିଁ, ତେଣୁ ସାଧକଙ୍କ ପକ୍ଷରେ ଇନ୍ଦ୍ରିୟସଂଯମ ସର୍ବଥା ଲୋଡ଼ା ।

ଅଜ୍ଞଶ୍ଚାଶ୍ରଦ୍ଦଧାନଶ୍ଚ ସଂଶୟାତ୍ମା ବିନଶ୍ୟତି ।
ନାୟଂ ଲୋକୋଽସ୍ତି ନ ପରୋ ନ ସୁଖଂ ସଂଶୟାତ୍ମନଃ । ୪୦ ।

ପୂର୍ବ ୩୪ଶ ଶ୍ଳୋକରେ ପ୍ରଣାମ, ପ୍ରଶ୍ନ ଓ ସେବା ଜ୍ଞାନଲାଭର ଉପାୟରୂପେ ନିର୍ଦ୍ଦିଷ୍ଟ ହୋଇ ଅଛି; ସେଗୁଡ଼ିକ ବହିରଙ୍ଗ ସାଧନା, ଏଠାରେ ଉକ୍ତ ହୋଇଥିବା ଶ୍ରଦ୍ଧା, ଏକନିଷ୍ଠା ଓ ଇନ୍ଦ୍ରିୟସଂଯମ ଏ ସବୁ ଜ୍ଞାନପ୍ରାପ୍ତିର ଅନ୍ତରଙ୍ଗ ସାଧନା ।

୪୦ । ଅନ୍ୱୟ ଦୀପିକା—ଅଜ୍ଞଃ ( ଅଜ୍ଞାନ ) ଅଶ୍ରଦ୍ଦଧାନଃ ( ଶ୍ରଦ୍ଧାହୀନ ) ସଂଶୟାତ୍ମା ( ସନ୍ଦେହୀ ଲୋକ ) ବିନଶ୍ୟତି ( ବିନଷ୍ଟ ହୁଏ ) । ସଂଶୟାତ୍ମନଃ ( ସନ୍ଦେହୀ ଲୋକର ) ଅୟଂଲୋକଃ ( ଇହଲୋକ ) ନ ଅସ୍ତି ( ନାହିଁ ), ନ ପରଃ ( ପରଲୋକ ନାହିଁ ), ନ ସୁଖଂ ( ସୁଖ ମଧ୍ୟ ନାହିଁ ) ।

ଅନୁବାଦ—ଅଜ୍ଞାନ, ଶ୍ରଦ୍ଧାହୀନ, ସନ୍ଦେହୀ ଲୋକ ବିନାଶ ପ୍ରାପ୍ତ ହୁଏ । ଯେ ସଂଶୟାତ୍ମା ତାହାର ଇହଲୋକ ନାହିଁ, ପରଲୋକ ନାହିଁ, ସୁଖ ମଧ୍ୟ ନାହିଁ ।

ସୁବୋଧିନୀ ଟୀକା—ଜ୍ଞାନାଧିକାରିଣମୁକ୍ତ୍ୱା ତଦ୍‌ବିପରୀତମନଧିକାରିଣମାହ—ଅଜ୍ଞଶ୍ଚେତି । ଅଜ୍ଞୋ ଗୁରୂପଦିଷ୍ଟାର୍ଥାନଭିଜ୍ଞଃ । କଥଞ୍ଚିଜ୍ଜ୍ଞାନେ ଜାତେଽପି ତତ୍ରାଶ୍ରଦ୍ଦଧାନଶ୍ଚ । ଜାତାୟାମପି ଶ୍ରଦ୍ଧାୟାଂ ମମେଦଂ ସିଧ୍ୟେନ୍ନବେତି ସଂଶୟାକ୍ରାନ୍ତଚିତ୍ତଶ୍ଚ ବିନଶ୍ୟତି । ସ୍ୱାର୍ଥାଦ୍ ଭ୍ରଶ୍ୟତି, ଏତେଷୁ ତ୍ରିଷ୍ୱପି ସଂଶୟାତ୍ମା ସର୍ବଥା ନଶ୍ୟତି । ଯତସ୍ତସ୍ୟାୟଂ ଲୋକୋ ନାସ୍ତି, ଧନାର୍ଜ୍ଜନବିବାହାଦ୍ୟସିଦ୍ଧେଃ । ନ ଚ ପରଲୋକୋ ଧର୍ମସ୍ୟାନିଷ୍ପତ୍ତେଃ । ନ ଚ ସୁଖଂ ସଂଶୟେନୈବ ଭୋଗସ୍ୟାପ୍ୟସମ୍ଭବାତ୍ ।

ବିବୃତି—ଯେଉଁଲୋକ ଗୁରୁଙ୍କଠାରୁ ବା ଶାସ୍ତ୍ରଅଧ୍ୟୟନଦ୍ୱାରା ଆତ୍ମଜ୍ଞାନ ସମ୍ବନ୍ଧରେ ଉପଦେଶ ପାଇ ନାହିଁ ସେ ଅଜ୍ଞ । ଯେ ସାମାନ୍ୟ ଜ୍ଞାନଲାଭ କରି ଥାଏ, ମାତ୍ର ତହିଁରେ ଶ୍ରଦ୍ଧା ବା ବିଶ୍ୱାସ କରେ ନାହିଁ ସେ ଶ୍ରଦ୍ଧାହୀନ । ଶ୍ରଦ୍ଧା ଜାତହେଲେହେଁ—ମୋର ଏହା ସିଦ୍ଧ ହେବ କି ନାହିଁ—ଯାହାର ଚିତ୍ତରେ ଏ ପରି ସନ୍ଦେହ ଥାଏ ସେ ସଂଶୟାତ୍ମା, ଏପରି ଲୋକମାନଙ୍କର ଅଭ୍ୟୋନ୍ନତି ଅସମ୍ଭବ ।

ଜ୍ଞାନ ଦ୍ୱିବିଧ; ଚକ୍ଷୁ କର୍ଣ୍ଣାଦି ଇନ୍ଦ୍ରିୟ ସାହାଯ୍ୟରେ ଯେଉଁ ଜ୍ଞାନ ଲାଭ କରାଯାଏ ତାହା ଲୌକିକ ବା ପ୍ରାକୃତ ଜ୍ଞାନ, ଏହି ଲୌକିକ ଜ୍ଞାନ ଅନେକ ସମୟରେ ସଂଶୟ ମିଶ୍ରିତ ରହେ । ତେଣୁ ତାହାକୁ ପରୀକ୍ଷା କରି ତହିଁରୁ ଯଥାର୍ଥ ତତ୍ତ୍ୱ ଗ୍ରହଣ କରିବାକୁ ପଡ଼େ, ଏଥିରେ ଶ୍ରଦ୍ଧାର ପ୍ରୟୋଜନ ହୁଏ ନାହିଁ । ମାତ୍ର

ଯୋଗସନ୍ନ୍ୟସ୍ତକର୍ମାଣଂ ଜ୍ଞାନସଂଛିନ୍ନସଂଶୟମ୍ ।
ଆତ୍ମବନ୍ତଂ ନ କର୍ମାଣି ନିବଧ୍ନନ୍ତି ଧନଞ୍ଜୟ । ୪୧ ।

ଯାହା ସମ୍ପୂର୍ଣ୍ଣସତ୍ୟ ତାହିରେ ମିଥ୍ୟାର ସମ୍ଭବ ନ ଥାଏ, ତେଣୁ ତାହା ବିଗ୍ରହ ବା ଯୁକ୍ତିକୁ ଅପେକ୍ଷା କରେ ନାହିଁ । ପରମ ସତ୍ୟ ସମ୍ବନ୍ଧରେ ତର୍କ କରିବା ମଧ୍ୟ ଶାସ୍ତ୍ରରେ ନିଷିଦ୍ଧ ଅଛି :—

'ଅଚିନ୍ତ୍ୟାଃ ଖଲୁ ଯେ ଭାବା ନ ତାଂସ୍ତର୍କେଣ ସାଧୟେତ୍' (ମହାଭାରତ ଭୀ. ପ. ୫।୧୨) ଯେଉଁ ତତ୍ତ୍ୱ ଅଚିନ୍ତନୀୟ, ତର୍କଦ୍ୱାରା ତାହାକୁ ଲାଭ କରିଯାଏ ନାହିଁ । ତେଣୁ ସେ ତତ୍ତ୍ୱକୁ ତର୍କର ବିଷୟୀଭୂତ କରିବା ଉଚିତ ନୁହେ । ଚୈତନ୍ୟଦେବ ମଧ୍ୟ କହି ଯାଇଛନ୍ତି :—

"ବିଶ୍ୱାସେ ପାଇବେ କୃଷ୍ଣ ତର୍କେ ବହୁ ଦୂର" ।

କଠୋପନିଷଦରେ ଅଛି :—

"ନୈଷା ତର୍କେଣ ମତିରାପନେୟା" ( କ. ଉ. ୧।୨।୯ )

ଆସ୍ତିକ୍ୟ ବୁଦ୍ଧିକୁ ତର୍କଦ୍ୱାରା ଦୂର କରିବ ନାହିଁ । ଯାହା ପରମ ସତ୍ୟ, ସେ ସମ୍ବନ୍ଧରେ ଯୁକ୍ତିତର୍କ କଲେ ଅନେକ ସମୟରେ ବିଶ୍ୱାସ ଶିଥିଳ ହୋଇଯାଏ, ବୁଦ୍ଧିଭ୍ରମ ଉପସ୍ଥିତ ହୁଏ । ସାଧନା, ସଂଯମ ଓ ଦୃଢ଼ ବିଶ୍ୱାସ ଦ୍ୱାରା ଚିତ୍ତ ନିର୍ମଳ ହେଲେ ସେ ଜ୍ଞାନ ହୃଦୟରେ ସ୍ୱତଃ ସମୁଦ୍‌ଭାସିତ ହୋଇ ଉଠେ । ଏହି ପରିଦୃଶ୍ୟମାନ ସ୍ଥୂଳ ଜଗତର ଅନ୍ତରାଳରେ କୌଣସି ଅଚିନ୍ତ୍ୟ ତତ୍ତ୍ୱ ଅଛି, ଏହି ବିଷୟାନନ୍ଦ ଅପେକ୍ଷା ଅନ୍ୟ କୌଣସି ଉଚ୍ଚତର ଭୂମାନନ୍ଦ ଅଛି, ଇହଲୋକ ପରେ ଅନ୍ୟ କୌଣସି ଦିବ୍ୟାନନ୍ଦମୟ ଜୀବନ ଯାପନର ସ୍ଥାନ ଅଛି—ଶ୍ରଦ୍ଧାସହକାରେ ଏଥିରେ ବିଶ୍ୱାସ ସ୍ଥାପନ କରିବାକୁ ହେବ—ଏହାହିଁ ଆସ୍ତିକ୍ୟ ବୁଦ୍ଧି । ସଂଶୟ ସମ୍ପନ୍ନ ଲୋକର ଏପରି ଅବସ୍ଥାରେ ପରଲୋକ ଲାଭ ହେବ କିପରି ?

ସଂଶୟାତ୍ମା ଲୋକର ଇହଲୋକରେ ମଧ୍ୟ ସୁଖ ନ ଥାଏ । ଯେଉଁ ଲୋକର କୌଣସି ଗୋଟିଏ ବିଷୟରେ ଲକ୍ଷ୍ୟ ସ୍ଥିର ନ ଥାଏ ସଂସାରରେ ସେ କୌଣସି ଉନ୍ନତି କରିପାରେ ନାହିଁ । ସଂସାରରେ ସୁଖରେ ଚଳିବା ପାଇଁ ଧନ ଆବଶ୍ୟକ, ମାତ୍ର ସେଥିପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ମାର୍ଗ ଗ୍ରହଣ କରିବା ଉଚିତ । ଯେଉଁ ଲୋକ ସନ୍ଦେହରେ ସେ କିଛିଦିନ କୃଷି, କିଛିଦିନ ବାଣିଜ୍ୟ, କିଛିଦିନ ଭୃତ୍ୟବୃତ୍ତି କରି କୌଣସି ଗୋଟିକରେ ମଧ୍ୟ ସ୍ୱାର୍ଥସିଦ୍ଧି କରିପାରେ ନାହିଁ । ତେଣୁ ସଂଶୟାତ୍ମାର ଐହିକ ବା ପାରତ୍ରିକ କୌଣସି ଲୋକରେ ସୁଖ ହୁଏନାହିଁ ।

୪୧ । ଅନ୍ୱୟଦୀପିକା—ଧନଞ୍ଜୟ ! ଯୋଗସନ୍ନ୍ୟସ୍ତକର୍ମାଣଂ (ହେ ଧନଞ୍ଜୟ, ଯେ ଯୋଗଦ୍ୱାରା ସମସ୍ତ କର୍ମ ଈଶ୍ୱରଙ୍କଠାରେ ଅର୍ପଣ କରି ଅଛନ୍ତି), ଜ୍ଞାନସଂଛିନ୍ନସଂଶୟମ୍ (ଆତ୍ମଜ୍ଞାନ ଦ୍ୱାରା ଯାହାଙ୍କର ସମସ୍ତ ସଂଶୟ

ତସ୍ମାଦଜ୍ଞାନସମ୍ଭୂତଂ ହୃତ୍ସ୍ଥଂ ଜ୍ଞାନାସିନାତ୍ମନଃ ।
ଛିତ୍ତ୍ୱୈନଂ ସଂଶୟଂ ଯୋଗମାତିଷ୍ଠୋତ୍ତିଷ୍ଠ ଭାରତ ।୪୨।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସଂବାଦେ ଜ୍ଞାନକର୍ମସନ୍ନ୍ୟାସଯୋଗୋ ନାମ ଚତୁର୍ଥୋଽଧ୍ୟାୟଃ ।

ଛିନ୍ନ ହୋଇଅଛି ) ଆତ୍ମବନ୍ତଂ ( ଏପରି ଆତ୍ମଜ୍ଞାନସମ୍ପନ୍ନବ୍ୟକ୍ତିଙ୍କୁ ) କର୍ମାଣି (କର୍ମ ସକଳ) ନ ନିବଧ୍ନନ୍ତି (ଆବଦ୍ଧ କରିପାରେ ନାହିଁ) ।

ଅନୁବାଦ—ହେ ଧନଞ୍ଜୟ, ନିଷ୍କାମକର୍ମରୂପ ଯୋଗଦ୍ୱାରା ଯେ ସମସ୍ତ କର୍ମ ଈଶ୍ୱରଙ୍କଠାରେ ସମର୍ପଣ କରିଅଛନ୍ତି, ଆତ୍ମଦର୍ଶନଦ୍ୱାରା ଯାହାଙ୍କର ସମସ୍ତ ସଂଶୟ ଛିନ୍ନ ହୋଇଅଛି, ଏଭଳି ଆତ୍ମଜ୍ଞ ପୁରୁଷଙ୍କୁ କର୍ମରାଶି ଆବଦ୍ଧ କରିପାରେ ନାହିଁ ।

ସୁବୋଧିନୀ ଟୀକା—ଅଧ୍ୟାୟଦ୍ୱୟୋକ୍ତାଂ ପୂର୍ବାପରଭୂମିକାଭେଦେନ କର୍ମଜ୍ଞାନମୟୀଂ ଦ୍ୱିବିଧାଂ ବ୍ରହ୍ମନିଷ୍ଠାମୁପସଂହରତି– ଯୋଗେତିଦ୍ୱାଭ୍ୟାମ୍ । ଯୋଗେନ ପରମେଶ୍ୱରାରାଧନରୂପେଣ ତସ୍ମିନ୍ ସନ୍ନ୍ୟସ୍ତାନି କର୍ମାଣି ଯେନ ତଂ କର୍ମାଣି ସ୍ୱଫଲୈର୍ନ ନିବଧ୍ନନ୍ତି ତତଶ୍ଚ ଜ୍ଞାନେନାବିର୍ଭୂତାତ୍ମବୋଧେନ ଛିନ୍ନଃ ସଂଶୟୋ ଦେହାଦ୍ୟଭିମାନଲକ୍ଷଣୋ ଯସ୍ୟ ତମ୍, ଆତ୍ମବନ୍ତମ୍ ଅପ୍ରମାଦିନମ୍ । କର୍ମାଣି ଲୋକସଂଗ୍ରହାର୍ଥାନି ସ୍ୱାଭାବିକାନି ବା ନ ନିବଧ୍ନନ୍ତି ।

ବିବୃତି—'ଯୋଗ' ଶବ୍ଦ ଗୀତାରେ ସାଧାରଣତଃ ନିଷ୍କାମକର୍ମଯୋଗ ଅର୍ଥରେ ବ୍ୟବହୃତ ହୋଇଅଛି । ସୁତରାଂ 'ଯୋଗସନ୍ନ୍ୟସ୍ତ କର୍ମାଣଂ' ପଦର ଅର୍ଥ ନିଷ୍କାମକର୍ମ ଯୋଗର ଆଚରଣ ଦ୍ୱାରା ଯାହାଙ୍କର ସମସ୍ତ କର୍ମ ଈଶ୍ୱରଙ୍କଠାରେ ସମର୍ପିତ ହୋଇଅଛି । 'ଜ୍ଞାନ ସଞ୍ଛିନ୍ନ ସଂଶୟଂ' ମୁଁ କିଏ ? ଆତ୍ମା କର୍ତ୍ତା ନା ଅକର୍ତ୍ତା ? ଏପରି ସଂଶୟ ଯାହାଙ୍କର ଛିନ୍ନ ହୋଇଅଛି ତାହାଙ୍କୁହିଁ ଜ୍ଞାନ ସଞ୍ଛିନ୍ନ ସଂଶୟ କୁହାଯାଏ । ଜ୍ଞାନୀ କର୍ମ କଲେ ମଧ୍ୟ କର୍ମଫଳରେ ଆବଦ୍ଧ ହୁଅନ୍ତି ନାହିଁ, ଏହାହିଁ ଏ ଶ୍ଳୋକର ତାତ୍ପର୍ଯ୍ୟ ।

୪୨ । ଅନ୍ୱୟଦୀପିକା—ଭାରତ (ହେ ଭରତବଂଶୀୟ ଅର୍ଜ୍ଜୁନ) ତସ୍ମାତ୍ (ସେହି ହେତୁରୁ) ଅଜ୍ଞାନସମ୍ଭୂତଂ (ଅଜ୍ଞାନଜାତ) ହୃତ୍ସ୍ଥଂ (ହୃଦୟସ୍ଥିତ) ଏନଂ (ଏହି) ସଂଶୟଂ (ସଂଶୟକୁ) ଜ୍ଞାନାସିନା (ଆତ୍ମଜ୍ଞାନରୂପ ଖଡ୍ଗଦ୍ୱାରା) ଛିତ୍ତ୍ୱା (ଛେଦନ କରି) ଯୋଗଂ (କର୍ମଯୋଗ) ଆତିଷ୍ଠ (ଅବଲମ୍ବନକର), ଉତ୍ତିଷ୍ଠ (ଯୁଦ୍ଧ ନିମିତ୍ତ ଦଣ୍ଡାୟମାନ ହୁଅ) ।

ଅନୁବାଦ—ଅତଏବ ହେ ଭାରତ, ତୁମେ ଜ୍ଞାନରୂପ ଖଡ୍ଗଦ୍ୱାରା ହୃଦୟସ୍ଥିତ ଅଜ୍ଞାନଜାତ ସଂଶୟକୁ ଛେଦନ କରି ନିଷ୍କାମ କର୍ମଯୋଗ ଆଶ୍ରୟକର ଓ ଯୁଦ୍ଧକର ।

ସୁବୋଧିନୀ ଟୀକା—ତସ୍ମାଦିତି । ଯସ୍ମାଦେବ ତସ୍ମାଦାତ୍ମନୋଽଜ୍ଞାନେନ ସମ୍ଭୂତଂ ହୃଦସ୍ଥିତମେନଂ ସଂଶୟଂ ଶୋକାଦିନିମିତ୍ତମ୍ । ଦେହାତ୍ମବିବେକଜ୍ଞାନଖଡ୍ଗେନ ଛିତ୍ତ୍ୱା ପରମାତ୍ମଜ୍ଞାନୋପାୟଭୂତଂ କର୍ମଯୋଗମାତିଷ୍ଠାଶ୍ରୟ । ତତଶ୍ଚ ପ୍ରଥମଂ ପ୍ରସ୍ତୁତାୟ ଯୁଦ୍ଧାୟୋତ୍ତିଷ୍ଠ । ହେ ଭାରତେତି କ୍ଷତ୍ରିୟତ୍ୱେନ ଯୁଦ୍ଧସ୍ୟ ଧର୍ମ୍ୟତ୍ୱଂ ଦର୍ଶିତମ୍ ।

ପୁମବସ୍ଥାଦଭେଦେନ କର୍ମଜ୍ଞାନମୟୀ ଦ୍ୱିଧା
ନିଷ୍ଠୋକ୍ତା ଯେନ ତଂ ବନ୍ଦେ ଶୌରିଂ ସଂଶୟଚ୍ଛିଦମ୍ ।

ଇତି ଶ୍ରୀ ଶ୍ରୀଧରସ୍ୱାମିକୃତାୟାଂ ଭଗବଦ୍‌ଗୀତାଟୀକାୟାଂ ସୁବୋଧିନ୍ୟାଂ ଜ୍ଞାନଯୋଗୋ ନାମ ଚତୁର୍ଥୋଽଧ୍ୟାୟଃ ।

ବକ୍ତବ୍ୟ—ଯେଉଁ ଅବସ୍ଥାରେ ଭଗବାନ୍ ଅର୍ଜୁନଙ୍କୁ ଉପଦେଶ ଦେଇ ଅଛନ୍ତି ସେ ଅବସ୍ଥାକୁ ସ୍ମରଣ କରିବାକୁ ହେବ । ଆତ୍ମୀୟ ସ୍ୱଜନବଧରେ ଆତ୍ମାକୁ ପାପ ସ୍ପର୍ଶ କରିବ ଓ ପରଲୋକରେ ନରକ ବାସ ହେବ । ତେଣୁ ଏପରି ଅବସ୍ଥାରେ ଯୁଦ୍ଧ ମୋ ପକ୍ଷରେ କରଣୀୟ କି ? ଏହାହିଁ ଅର୍ଜୁନଙ୍କ ସଂଶୟ । ଏହି ସଂଶୟ ଦୂର କରିବା ପାଇଁ ଭଗବାନ୍ ଅର୍ଜୁନଙ୍କୁ ଯେଉଁ ଉପଦେଶ ଦେଇ ଅଛନ୍ତି, ଚତୁର୍ଥ ଅଧ୍ୟାୟର ଶେଷ ଦୁଇ ଶ୍ଳୋକ ତାହାର ସାର ସଂକଳନ ।

ଏହି ଦୁଇ ଶ୍ଳୋକର ତାତ୍ପର୍ଯ୍ୟ ଏହି ଯେ ନିଷ୍କାମ କର୍ମଯୋଗର ଅନୁଷ୍ଠାନ ଦ୍ୱାରା କର୍ମର ଫଳ ଈଶ୍ୱରଙ୍କଠାରେ ଅର୍ପଣ କଲେ କର୍ମ କେବେହେଁ ବନ୍ଧନର କାରଣ ହୁଏନାହିଁ ବା ମୋକ୍ଷଲାଭର ପ୍ରତିବନ୍ଧକ ହୁଏନାହିଁ; କିନ୍ତୁ ଏଥିପାଇଁ ଆତ୍ମଜ୍ଞାନ ଆବଶ୍ୟକ । ଆତ୍ମଜ୍ଞାନ ଜାତ ନ ହେଲେ ମନ ନିଷ୍କାମ କର୍ମ ଯୋଗମାର୍ଗରେ ଅଗ୍ରସର ହୋଇପାରେ ନାହିଁ । ତେଣୁ ବାର୍ଯ୍ୟତଃ ମନ ସଂଶୟ ଦୋଳାରେ ଆନ୍ଦୋଳିତ ହେଉଥାଏ । ଆତ୍ମଜ୍ଞାନର ଉଦୟରେ ଦେହାତ୍ମବୋଧ ଓ କର୍ତ୍ତୃତ୍ୱାଭିମାନ ଦୂରୀଭୂତ ହୋଇଯାଏ; କେବଳ ଜ୍ଞାନ ବା କେବଳ କର୍ମଦ୍ୱାରା ଏହା ହୋଇପାରେ ନାହିଁ । ଅତଏବ ଜ୍ଞାନକର୍ମ ସମୁଚ୍ଚୟ ଦ୍ୱାରା କର୍ମଯୋଗ ଆଶ୍ରୟ କରି ଯୁଦ୍ଧକର । ଏହାହିଁ ଭଗବାନଙ୍କ ଉପଦେଶ ।

ସନ୍ନ୍ୟାସବାଦୀମାନେ ଏହି ଜ୍ଞାନକର୍ମର ସମୁଚ୍ଚୟ ସ୍ୱୀକାର କରନ୍ତି ନାହିଁ । ସେମାନେ କହନ୍ତି ଯେଉଁ ଜ୍ଞାନବାଦୀମାନେ ପୂର୍ଣ୍ଣାନନ୍ଦମୟ-ନିବାତନିଷ୍କମ୍ପ ପ୍ରଦୀପ ପରି ସ୍ଥିର ଅଚଳ ଏବଂ "ସୋଽହମ୍" ଏହି ଅଦ୍ୱୈତ ଜ୍ଞାନବଳରେ ଆପଣାକୁ ନିର୍ବିଶେଷ ବ୍ରହ୍ମବୋଲି ମନେ କରନ୍ତି ତାଙ୍କର ଆଉ କର୍ମ କଅଣ ? ସେପରି

ଅବସ୍ଥାରେ ଜ୍ଞାନ ଓ କର୍ମର ଏକତ୍ର ଅବସ୍ଥିତି ଅଲୋକ ଓ ଅନ୍ଧକାରର ଏକତ୍ରାବସ୍ଥିତିପରି ଅସମ୍ଭବ କଳ୍ପନା । ତୃତୀୟ ଅଧ୍ୟାୟରେ 'ନ ମେ ପାର୍ଥାସ୍ତି କର୍ତ୍ତବ୍ୟମ୍' ଇତ୍ୟାଦି ଶ୍ଳୋକରେ ଭଗବାନ୍ ଏ କଥାର ମୀମାଂସା କରିଦେଇ ଅଛନ୍ତି । ଭଗବାନ୍ ନିଜେ ଯେତେବେଳେ ଲୋକହିତାର୍ଥ ନିମିତ୍ତ କର୍ମ କରନ୍ତି, ସେତେବେଳେ 'ସୋଽହମ୍' ଜ୍ଞାନ ହେଉଥିବା ସନ୍ନ୍ୟାସୀମାନଙ୍କ ପକ୍ଷରେ କର୍ମ ଯେ ସର୍ବଥା କରଣୀୟ ଏଥିରେ ଅଉ ସନ୍ଦେହର ଅବକାଶ କାହିଁ ? ଫଳାକାଙ୍କ୍ଷା-ବର୍ଜନ, କର୍ତ୍ତୃତ୍ୱାଭିମାନତ୍ୟାଗ ଓ ଈଶ୍ୱରୋଦ୍ଦେଶ୍ୟରେ କର୍ମଫଳ ସମର୍ପଣ— ଏହାହିଁ ନିଷ୍କାମ କର୍ମଯୋଗ । ଏପରି ଅବସ୍ଥାରେ କର୍ମେନ୍ଦ୍ରିୟଯୁକ୍ତ ଅମୁକ ସନ୍ନ୍ୟାସୀଙ୍କ ପକ୍ଷରେ ଲୋକ ସଂଗ୍ରହାର୍ଥେ କର୍ମ କରିବା ଯେ ଅନାବଶ୍ୟକ ଏହା କିପରି ବୁଝାଯିବ ?

---

## ଚତୁର୍ଥ ଅଧ୍ୟାୟର ସାରସଂକଳନ

ଗୀତାର ମୁଖ୍ୟ ପ୍ରତିପାଦ୍ୟ ବିଷୟ ନିଷ୍କାମ କର୍ମଯୋଗ; ତୃତୀୟ ଅଧ୍ୟାୟରେ ଏହାର ବର୍ଣ୍ଣନା କରି ଚତୁର୍ଥ ଅଧ୍ୟାୟ ଆରମ୍ଭରେ ଭଗବାନ୍ ଅର୍ଜୁନଙ୍କୁ କହିଲେ, ଏହି ନିଷ୍କାମ କର୍ମଯୋଗ ନୂତନ ନୁହେ । ପୂର୍ବକାଳରେ ଏହାର ପ୍ରଚଳନ ଥିଲା, କାଳକ୍ରମେ ଏହାର ଲୋପ ହୋଇଅଛି । ଏହି ପ୍ରସଙ୍ଗରେ ଭଗବାନ୍ ନିଜର ଅବତାର ଗ୍ରହଣର ପ୍ରୟୋଜନୀୟତା ପ୍ରକାଶ କରି କହିଲେ ଯେ, ଏହି ନିଷ୍କାମ କର୍ମଯୋଗ ପ୍ରଭୁର ଅବତାର ଗ୍ରହଣର ଅନ୍ୟତମ କାର୍ଯ୍ୟ । ଯେଉଁମାନେ ଏହା ବୁଝି ତଦନୁରୂପ କର୍ମାନୁଷ୍ଠାନ କରନ୍ତି ସେମାନେ ମୁକ୍ତିର ଅଧିକାରୀ ହୁଅନ୍ତି ।

ଅବସ୍ଥାଭେଦରେ ମାନବସମାଜରେ ନାନାବିଧ ଉପାସନା ପ୍ରଣାଳୀ ପ୍ରଚଳିତ ଅଛି । ସମସ୍ତେ ଯେ ନିଷ୍କାମକର୍ମର ଅନୁଷ୍ଠାନ କରନ୍ତି ତାହା ନୁହେ; ସକାମ ଉପାସନାରେ ମଧ୍ୟ ଅନେକେ ସିଦ୍ଧିଲାଭ କରନ୍ତି । ମୋଟ ଉପରେ ଜ୍ଞାନୀ, କର୍ମୀ ଓ ଭକ୍ତ—ଏହି ତ୍ରିବିଧ ଉପାସକଙ୍କ ମଧ୍ୟରୁ ଯେଉଁ ଲୋକ ଯେ ଭାବରେ ଉପାସନା କରନ୍ତି, ଭଗବାନ୍ ସେମାନଙ୍କୁ ସେ ଭାବରେ ଅନୁଗ୍ରହ କରି ଥାଆନ୍ତି । ପ୍ରକୃତିଭେଦ ବଶତଃ ସଂସାରରେ କର୍ମର ବୈଚିତ୍ର୍ୟ ଓ ଉପାସନା ପ୍ରଣାଳୀର ବିଭିନ୍ନତା ପରିଦୃଷ୍ଟ ହୁଏ ।

ମାନବ ସମାଜମଧ୍ୟରେ ଗୁଣ ଓ କର୍ମର ବିଭିନ୍ନତା ସ୍ୱାଭାବିକ । ବର୍ଣ୍ଣ-ଭେଦ ଏହି ଗୁଣ କର୍ମର ବିଭିନ୍ନତା ଉପରେ ପ୍ରତିଷ୍ଠିତ, ଭଗବାନ୍ ଏହାର କର୍ତ୍ତା ହେଲେହେଁ ଏଥିରେ ନିର୍ଲିପ୍ତ, ତେଣୁ ଅକର୍ତ୍ତା; ଭଗବାନଙ୍କର ଏହି ନିର୍ଲେପ ଭାବ ଓ ସ୍ପୃହାଶୂନ୍ୟତା ବୁଝିପାରିଲେ ମନୁଷ୍ୟ ନିଷ୍କାମ କର୍ମର ମର୍ମ

ବୁଝିପାରେ । ଜନକାଦି ରାଜର୍ଷିମାନେ କର୍ତ୍ତୃତ୍ୱାଭିମାନ ଶୂନ୍ୟ ହୋଇ ନିର୍ଲିପ୍ତ-ଭାବରେ କର୍ମାନୁଷ୍ଠାନ କରି ଯାଇ ଅଛନ୍ତି । ତେଣୁ ଫଳକାମନା ବର୍ଜନ କରି ନିଜର କର୍ତ୍ତବ୍ୟ ପାଳନ କରିବା ଉଚିତ । କର୍ମର ତତ୍ତ୍ୱ ବଡ଼ ଦୁରୂହ । କର୍ମ, ଅକର୍ମ ଓ ବିକର୍ମ—ସୂକ୍ଷ୍ମରୂପେ ଏ ସବୁର ତତ୍ତ୍ୱ ଆଲୋଚନା କରିବା ଉଚିତ । ଯେଉଁମାନେ ଆଳସ୍ୟ ବଶତଃ କର୍ମ ତ୍ୟାଗ କରନ୍ତି ସେମାନେ କର୍ମ ବନ୍ଧନରୁ କଦାପି ମୁକ୍ତ ହୋଇ ପାରନ୍ତି ନାହିଁ; କାରଣ କର୍ତ୍ତୃତ୍ୱାଭିନିବେଶତ୍ୟାଗ, ଫଳକାମନା ବର୍ଜନ ବ୍ୟତୀତ କର୍ମବନ୍ଧନରୁ ମୁକ୍ତି ମିଳେ ନାହିଁ ।

ତ୍ୟାଗ ମୂଳକ କର୍ମହିଁ ଯଜ୍ଞ ନାମରେ ଅଭିହିତ ହୁଏ । ସର୍ବଗତ ବ୍ରହ୍ମ ନିତ୍ୟ ଯଜ୍ଞରେ ପ୍ରତିଷ୍ଠିତ ଅଛନ୍ତି—ଏ ଭାବରେ ଅନୁପ୍ରାଣିତ ହେଲେ ନିଷ୍କାମ କର୍ମର ପ୍ରକୃତ ମହତ୍ତ୍ୱ ଉପଲବ୍ଧି ହୁଏ; ସ୍ରୁବ ଘୃତାଦି ଯଜ୍ଞୀୟ ଉପକରଣ ବ୍ରହ୍ମମୟ—ସାଧକ ପୁରୁଷ ଯେତେବେଳେ ଏହା ବୁଝିପାରନ୍ତି ସେତେବେଳେ ତାଙ୍କ ପକ୍ଷରେ ବ୍ରହ୍ମପ୍ରାପ୍ତି ସହଜଲଭ୍ୟ ହୁଏ; ଏହାହିଁ ନିଷ୍କାମ କର୍ମଯୋଗର ଶେଷ କଥା ।

ଦ୍ରବ୍ୟସାଧ୍ୟ ଯଜ୍ଞ ଅପେକ୍ଷା ଜ୍ଞାନଯଜ୍ଞ ଯେ ଶ୍ରେଷ୍ଠ ଏଥିରେ ସନ୍ଦେହ ନାହିଁ । ପ୍ରକୃତ ଜ୍ଞାନଲବ୍ଧ ହେଲେ କର୍ମ ସଙ୍ଗେ ଜ୍ଞାନର ପାର୍ଥକ୍ୟ ଜଣାଯାଏ ନାହିଁ, ଜ୍ଞାନଲାଭ କରିବା ପାଇଁ ତତ୍ତ୍ୱଜ୍ଞ ଗୁରୁଙ୍କର ଆଶ୍ରୟ ନେବା ଆବଶ୍ୟକ । ଚରଣରେ ନମସ୍କାର, ଆତ୍ମତତ୍ତ୍ୱ ବିଷୟକ ପ୍ରଶ୍ନ ଓ ସେବାଦ୍ୱାରା ଗୁରୁ ପ୍ରସନ୍ନ ହୋଇ ତତ୍ତ୍ୱର ଉପଦେଶ ଦିଅନ୍ତି । ଏଗୁଡ଼ିକ ଜ୍ଞାନ ଲାଭର ବହିରଙ୍ଗ ସାଧନ; ଶ୍ରଦ୍ଧା, ନିଷ୍ଠା ଓ ସଂଯମ ଏଗୁଡ଼ିକ ଅନ୍ତରଙ୍ଗ ସାଧନ । ସଂଶୟ ସମସ୍ତ ଅନର୍ଥର ମୂଳ । ଗୁରୁ ଓ ବେଦାନ୍ତ ବାକ୍ୟାଦିରେ ଦୃଢ଼ ବିଶ୍ୱାସ ନ ଥିଲେ ସଂଶୟ-ଶୂନ୍ୟ ପ୍ରକୃତ ଜ୍ଞାନ ଲାଭ ହୁଏ ନାହିଁ । ହୃଦୟରୁ ସମସ୍ତ ସଂଶୟ ଦୂର କରି ଏବଂ କର୍ମର ଫଳ ଈଶ୍ୱରଙ୍କଠାରେ ସମର୍ପଣ କରି ସାଧକ ପୁରୁଷ ଇହଲୋକରେ ମୁକ୍ତିର ସ୍ୱାଦ ଅନୁଭବ କରନ୍ତି ।

---

# ପଞ୍ଚମୋଽଧ୍ୟାୟଃ

## ଅର୍ଜ୍ଜୁନ ଉବାଚ

ସନ୍ନ୍ୟାସଂ କର୍ମଣାଂ କୃଷ୍ଣ ପୁନର୍ଯୋଗଂ ଚ ଶଂସସି ।
ଯଚ୍ଛ୍ରେୟ ଏତୟୋରେକଂ ତନ୍ମେ ବ୍ରୂହି ସୁନିଶ୍ଚିତମ୍ ।୧।

୧ । ଅନ୍ୱୟଦୀପିକା—ଅର୍ଜ୍ଜୁନ ଉବାଚ (ଅର୍ଜ୍ଜୁନ କହିଲେ), କୃଷ୍ଣ (ହେ କୃଷ୍ଣ) କର୍ମଣାଂ (କର୍ମ ସମୂହର) ସନ୍ନ୍ୟାସ (ତ୍ୟାଗ) ପୁନଃ (ପୁଣି) ଯୋଗଂ ଚ (କର୍ମଯୋଗ) ଶଂସସି (କହୁଅଛ), ଏତୟୋଃ (ଏହି ଦୁହିଙ୍କ ମଧ୍ୟରେ) ଯତ୍ (ଯାହା) ମେ (ମୋ ପକ୍ଷରେ) ଶ୍ରେୟଃ (ମଙ୍ଗଳକର) ତତ୍ ଏକଂ (ସେହି ଗୋଟିଏ) ସୁନିଶ୍ଚିତଂ (ନିଶ୍ଚୟ କରି) ବ୍ରୂହି (କହ) ।

ଅନୁବାଦ—ଅର୍ଜ୍ଜୁନ କହିଲେ, ହେ କୃଷ୍ଣ ! ତୁମେ କର୍ମଯୋଗ ଓ କର୍ମସନ୍ନ୍ୟାସ ଉଭୟ କଥା କହୁଅଛ । ଏହି ଉଭୟ ମଧ୍ୟରେ ମୋ ପକ୍ଷରେ ଯାହା ମଙ୍ଗଳକର ତାହା ନିଶ୍ଚୟ କରି କହ ।

ସୁବୋଧିନୀ ଟୀକା—

ନିବାର୍ଯ୍ୟ ସଂଶୟଂ ଜିଷ୍ଣୋଃ କର୍ମସନ୍ନ୍ୟାସଯୋଗୟୋଃ ।
ଜିତେନ୍ଦ୍ରିୟସ୍ୟ ଚ ଯତେଃ ପଞ୍ଚମେ ମୁକ୍ତିମବ୍ରବୀତ୍ ॥

ଅଜ୍ଞାନସମ୍ଭୂତଂ ସଂଶୟଂ ଜ୍ଞାନାସିନା ଛିତ୍ତ୍ୱା କର୍ମଯୋଗମାତିଷ୍ଠେତ୍ୟୁକ୍ତମ୍ । ତତ୍ର ପୂର୍ବାପରବିରୋଧଂ ମନ୍ୱାନୋଽର୍ଜ୍ଜୁନ ଉବାଚ—ସନ୍ନ୍ୟାସ ମିତି । ଯସ୍ତ୍ୱାତ୍ମରତିରେବ ସ୍ୟାଦିତ୍ୟାଦିନା ସର୍ବଂ କର୍ମାଖିଳଂ ପାର୍ଥେତ୍ୟାଦିନା ଚ ଜ୍ଞାନିନଃ କର୍ମସନ୍ନ୍ୟାସଂ କଥୟସି । ଜ୍ଞାନାସିନା ସଂଶୟଂ ଛିତ୍ତ୍ୱା ଯୋଗମାତିଷ୍ଠେତି ପୁନର୍ଯୋଗଂ ଚ କଥୟସି । ନ ଚ କର୍ମସନ୍ନ୍ୟାସଃ କର୍ମଯୋଗଶ୍ଚୈକସ୍ୟୈକଦୈବ ସମ୍ଭବତଃ । ବିରୁଦ୍ଧସ୍ୱରୂପତ୍ୱାତ୍ । ତସ୍ମାଦେତୟୋର୍ମଧ୍ୟେ ଏକସ୍ମିନ୍ନନୁଷ୍ଠାତବ୍ୟେ ସତି ମମ ଯଚ୍ଛ୍ରେୟଃ ସୁନିଶ୍ଚିତଂ ତଦେକଂ ବ୍ରୂହି ।

ବିବୃତି—ଚତୁର୍ଥ ଅଧ୍ୟାୟରେ କର୍ମଯୋଗର ଉପଦେଶ ଦେବା ପ୍ରସଙ୍ଗରେ ଭଗବାନ୍ ଅନେକ ସ୍ଥାନରେ ଜ୍ଞାନର ଅର୍ଥାତ୍ କର୍ମତ୍ୟାଗର ପ୍ରଶଂସା ମଧ୍ୟ କରିଅଛନ୍ତି । 'ସର୍ବଂ କର୍ମାଖିଳଂ ପାର୍ଥ ଜ୍ଞାନେ ପରିସମାପ୍ୟତେ' ସମସ୍ତ କର୍ମର ପର୍ଯ୍ୟବସାନ ଜ୍ଞାନରେ ହୁଏ, 'ଜ୍ଞାନାଗ୍ନିଃ ସର୍ବକର୍ମାଣି ଭସ୍ମସାତ୍ କୁରୁତେ

ଶ୍ରୀଭଗବାନୁବାଚ
ସନ୍ନ୍ୟାସଃ କର୍ମଯୋଗଶ୍ଚ ନିଃଶ୍ରେୟସକରାବୁଭୌ ।
ତୟୋସ୍ତୁ କର୍ମସନ୍ନ୍ୟାସାତ୍ କର୍ମଯୋଗୋ ବିଶିଷ୍ୟତେ ॥ ୨ ॥

ତଥା,' ଜ୍ଞାନଦ୍ୱାରା ସମସ୍ତ କର୍ମ ଭସ୍ମୀଭୂତ ହୋଇଯାଏ—ଯେବେ ଏହାହିଁ ଭଗବାନଙ୍କର ସିଦ୍ଧାନ୍ତ, ତେବେ ଚତୁର୍ଥ ଅଧ୍ୟାୟର ଶେଷ ଶ୍ଳୋକରେ ପୁଣି କିପରି କହିଲେ ଯେ; 'ଅତଏବ ତୁମେ କର୍ମଯୋଗର ଆଶ୍ରୟ କର ଯୁଦ୍ଧପାଇଁ ଉଠ ।' ତେଣୁ ଅର୍ଜୁନଙ୍କ ମନରେ ପୂର୍ବାପର ବିରୋଧରେ ସନ୍ଦେହ ଜାତ ହେବା ସ୍ୱାଭାବିକ ।

ଏହି ସନ୍ଦେହ ଭଞ୍ଜନ ପାଇଁ ପଞ୍ଚମ ଅଧ୍ୟାୟ ଆରମ୍ଭରେ ଅର୍ଜୁନ ପଚାରୁଅଛନ୍ତି—ମୋ ପକ୍ଷରେ କର୍ମ ତ୍ୟାଗକରି ସନ୍ନ୍ୟାସ ଗ୍ରହଣ ବାଞ୍ଛନୀୟ କି କର୍ମ କରିବା ବାଞ୍ଛନୀୟ, ଦୟାକରି ଏହା ମୋତେ ସ୍ପଷ୍ଟରୂପେ କହ ।

୨ । ଅନ୍ୱୟଦୀପିକା—ଶ୍ରୀ ଭଗବାନ୍ ଉବାଚ ( ଭଗବାନ୍ କହିଲେ ), ସନ୍ନ୍ୟାସଃ ( ସନ୍ନ୍ୟାସ ) କର୍ମଯୋଗଃ ଚ ( ଏବଂ କର୍ମଯୋଗ ) ଉଭୌ ( ଦୁହେଁ ) ନିଃଶ୍ରେୟସକରୌ ( ମୁକ୍ତିର ହେତୁ ); ତୟୋଃ ତୁ ( କିନ୍ତୁ ଏ ଉଭୟ ମଧ୍ୟରେ ) କର୍ମସନ୍ନ୍ୟାସାତ୍ ( କର୍ମତ୍ୟାଗଠାରୁ ) କର୍ମଯୋଗଃ ( କର୍ମଯୋଗ ) ବିଶିଷ୍ୟତେ ( ଶ୍ରେଷ୍ଠ ଅଟେ ) ।

ଅନୁବାଦ—ଭଗବାନ୍ କହିଲେ, ସନ୍ନ୍ୟାସ ଓ କର୍ମଯୋଗ ଦୁହେଁ ମୋକ୍ଷପ୍ରଦ; କିନ୍ତୁ ଉଭୟ ମଧ୍ୟରେ କର୍ମସନ୍ନ୍ୟାସଠାରୁ କର୍ମଯୋଗ ହିଁ ଶ୍ରେଷ୍ଠ ।

ସୁବୋଧିନୀ ଟୀକା—ଅତ୍ରୋତ୍ତରଂ ଶ୍ରୀଭଗବାନୁବାଚ ସନ୍ନ୍ୟାସ ଇତି । ଅୟଂଭାବଃ—ନ ହି ବେଦାନ୍ତବେଦ୍ୟାତ୍ମତତ୍ତ୍ୱଜ୍ଞଂ ପ୍ରତି କର୍ମଯୋଗମହଂ ବ୍ରବୀମି । ଯତଃ ପୂର୍ବୋକ୍ତେନ ସନ୍ନ୍ୟାସେନ ବିରୋଧଃ ସ୍ୟାତ୍ । ଅପି ତୁ ଦେହାତ୍ମାଭିମାନିନଂ ତ୍ୱାଂ ବନ୍ଧୁବଧାଦିନିମିତ୍ତଶୋକମୋହାଦିକୃତମେନଂ ସଂଶୟଂ ଦେହାତ୍ମବିବେକଜ୍ଞାନାସିନା ଛିତ୍ତ୍ୱା ପରମାତ୍ମଜ୍ଞାନୋପାୟଭୂତଂ କର୍ମଯୋଗମାତିଷ୍ଠେତି ବ୍ରବୀମି । କର୍ମଯୋଗେନ ଶୁଦ୍ଧଚିତ୍ତସ୍ୟାତ୍ମତତ୍ତ୍ୱଜ୍ଞାନେ ଜାତେ ସତି ତତ୍ପରିପାକାର୍ଥଂ ଜ୍ଞାନନିଷ୍ଠାଙ୍ଗତ୍ୱେନ ସନ୍ନ୍ୟାସଃ ପୂର୍ବମୁକ୍ତଃ, ଏବଂ ସତ୍ୟଙ୍ଗପ୍ରଧାନୟୋର୍ବିକଳ୍ପାଯୋଗାତ୍ ସନ୍ନ୍ୟାସଃ କର୍ମଯୋଗଶ୍ଚେତ୍ୟେତାବୁଭାବପି ଭୂମିକାଭେଦେନ ସମୁଚ୍ଚିତାବେବ ନିଃଶ୍ରେୟସଂ ସାଧୟତଃ ତଥାପି ତୟୋର୍ମଧ୍ୟେ କର୍ମସନ୍ନ୍ୟାସାତ୍ ସକାଶାତ୍ କର୍ମଯୋଗୋ ବିଶିଷ୍ଟୋ ଭବତୀତି ।

ବିବୃତି—ଏ ଶ୍ଳୋକରେ ଭଗବାନ୍ ସ୍ପଷ୍ଟରୂପେ ବୁଝାଇ ଦେଲେ ଯେ, କର୍ମତ୍ୟାଗ ଓ କର୍ମଯୋଗ ଏ ଦୁହେଁ ମୋକ୍ଷପ୍ରଦ । ଏମାନଙ୍କ ମଧ୍ୟରେ କର୍ମଯୋଗହିଁ ଶ୍ରେଷ୍ଠ; କିନ୍ତୁ କର୍ମତ୍ୟାଗୀ ସନ୍ନ୍ୟାସ ମାର୍ଗର ପଣ୍ଡିତମାନେ ଏଥିରେ

ଜ୍ଞେୟଃ ସ ନିତ୍ୟସନ୍ନ୍ୟାସୀ ଯୋ ନ ଦ୍ୱେଷ୍ଟି ନ କାଙ୍‌କ୍ଷତି ।
ନିର୍ଦ୍ୱନ୍ଦ୍ୱୋହି ମହାବାହୋ ସୁଖଂବନ୍ଧାତ୍ ପ୍ରମୁଚ୍ୟତେ । ୩ ।
ସାଂଖ୍ୟଯୋଗୌ ପୃଥଗ୍ ବାଲାଃ ପ୍ରବଦନ୍ତି ନ ପଣ୍ଡିତାଃ ।
ଏକମପ୍ୟାସ୍ଥିତଃ ସମ୍ୟଗୁଭୟୋର୍ବିନ୍ଦତେ ଫଳମ୍ । ୪ ।

ସନ୍ତୁଷ୍ଟ ନ ହୋଇ କହନ୍ତି ଅମୃତତ୍ତ୍ୱଙ୍କ ସନ୍ନ୍ୟାସୀମାନେ କର୍ମତ୍ୟାଗ କରିବେ, ଅଥଚ ଯାହାଙ୍କର ଅନ୍ତଃକରଣ ଶୁଦ୍ଧ ହୋଇ ନାହିଁ, ସେମାନେ କର୍ମଯୋଗ ଅବଲମ୍ବନ କରିବେ । ଏ ବ୍ୟାଖ୍ୟା ଶ୍ଳୋକର ଶବ୍ଦ ବିନ୍ୟାସରୁ ଆଦୌ ବୁଝାଯାଏ ନାହିଁ ।

୩ । ଅନ୍ୱୟଦୀପିକା—ମହାବାହୋ (ହେ ମହାବାହୁ) ଯଃ ନ ଦ୍ୱେଷ୍ଟି (ଯେ ଦ୍ୱେଷ କରନ୍ତି ନାହିଁ) ନ କାଙ୍‌କ୍ଷତି (ଆକାଙ୍‌କ୍ଷା କରନ୍ତି ନାହିଁ) ସଃ ନିତ୍ୟସନ୍ନ୍ୟାସୀ ଜ୍ଞେୟଃ (ତାହାଙ୍କୁ ନିତ୍ୟସନ୍ନ୍ୟାସୀ ବୋଲି ମନେ କରିବ) ନିର୍ଦ୍ୱନ୍ଦ୍ୱଃ ହି (ସେହି ରାଗଦ୍ୱେଷାଦିଦ୍ୱନ୍ଦ୍ୱରହିତ ପୁରୁଷହିଁ) ସୁଖଂ (ଅନାୟାସରେ) ବନ୍ଧାତ୍ (ବନ୍ଧନରୁ) ପ୍ରମୁଚ୍ୟତେ (ମୁକ୍ତି ଲାଭ କରନ୍ତି) ।

ଅନୁବାଦ—ହେ ମହାବାହୁ, ଯେ କାହାରିପ୍ରତି ଦ୍ୱେଷ କରନ୍ତି ନାହିଁ ଓ କିଛି ପାଇବାକୁ ଆକାଙ୍‌କ୍ଷା କରନ୍ତି ନାହିଁ, (କର୍ମ କଲେହେଁ) ତାହାଙ୍କୁହିଁ ନିତ୍ୟ ସନ୍ନ୍ୟାସୀ ବୋଲି ବୁଝିବାକୁ ହେବ । କାରଣ ଯେ ସୁଖ ଦୁଃଖାଦି ଦ୍ୱନ୍ଦ୍ୱରୁ ମୁକ୍ତହୋଇ ଥାଆନ୍ତି, ସେ ଅନାୟାସରେ (କର୍ମର) ବନ୍ଧନରୁ ମୁକ୍ତିଲାଭ କରନ୍ତି ।

ସୁବୋଧିନୀ ଟୀକା—କୁତ ଇତ୍ୟପେକ୍ଷାୟାଂ ସନ୍ନ୍ୟାସିତ୍ୱେନ କର୍ମଯୋଗିନଂ ସ୍ତୁବନ୍ ତସ୍ୟ ଶ୍ରେଷ୍ଠତ୍ୱଂ ଦର୍ଶୟତି ଜ୍ଞେୟ ଇତି । ରାଗଦ୍ୱେଷାଦିରହିତତ୍ୱେନ ପରମେଶ୍ୱରାର୍ଥଂ କର୍ମାଣି ଯୋଽନୁତିଷ୍ଠତି ସ ନିତ୍ୟଂ କର୍ମାନୁଷ୍ଠାନକାଲେଽପି ସନ୍ନ୍ୟାସୀତ୍ୟେବ ଜ୍ଞେୟଃ । ତତ୍ର ହେତୁଃ ନିର୍ଦ୍ୱନ୍ଦ୍ୱୋ ରାଗଦ୍ୱେଷାଦିଦ୍ୱନ୍ଦ୍ୱଶୂନ୍ୟୋହି ଶୁଦ୍ଧଚିତ୍ତୋ ଜ୍ଞାନଦ୍ୱାରା ସୁଖମନାୟାସେନୈବ ବନ୍ଧାତ୍ ସଂସାରାତ୍ ପ୍ରମୁଚ୍ୟତେ ।

ବିବୃତି—ବେଶ ଭୂଷା ଓ ଆଶ୍ରମ ତ୍ୟାଗ କଲେ, ସନ୍ନ୍ୟାସୀ ହେବାକୁ ହୁଏ—ଏପରି ଧାରଣା ଭ୍ରମାତ୍ମକ; ଯେଉଁ ଲୋକ ସଂସାରାଶ୍ରମରେ ରହି ସମସ୍ତ କର୍ମଫଳ ଭଗବାନଙ୍କଠାରେ ଅର୍ପଣ କରିଥାଆନ୍ତି ଓ ରାଗ ଦ୍ୱେଷ ତ୍ୟାଗକରି ନିଷ୍କାମ ଭାବରେ କର୍ମ କରନ୍ତି, ସେ ଏକା ପ୍ରକୃତ ସନ୍ନ୍ୟାସୀ । ଏହାହିଁ ଏ ଶ୍ଳୋକର ତାତ୍ପର୍ଯ୍ୟ ।

୪ । ଅନ୍ୱୟଦୀପିକା—ବାଲାଃ (ଅଜ୍ଞ ବ୍ୟକ୍ତିମାନେ) ସାଂଖ୍ୟଯୋଗୌ (ସନ୍ନ୍ୟାସ ଓ କର୍ମଯୋଗକୁ) ପୃଥକ୍ ପ୍ରବଦନ୍ତି (ଭିନ୍ନ ଭିନ୍ନ ବୋଲି କହନ୍ତି), [କିନ୍ତୁ] ପଣ୍ଡିତାଃ ନ (କିନ୍ତୁ ପଣ୍ଡିତମାନେ ସେପରି କହନ୍ତି ନାହିଁ) ।

ଯତ୍ ସାଂଖ୍ୟୈଃ ପ୍ରାପ୍ୟତେ ସ୍ଥାନଂ ତଦ୍ ଯୋଗୈରପି ଗମ୍ୟତେ
ଏକଂ ସାଂଖ୍ୟଂ ଚ ଯୋଗଂ ଚ ଯଃ ପଶ୍ୟତି ସ ପଶ୍ୟତି । ୫ ।

ଏକମ୍ ଅପି ସମ୍ୟକ୍ ଅସ୍ଥିତଃ ( ଏଥିମଧ୍ୟରୁ ଗୋଟିକର ମଧ୍ୟ ସମ୍ୟକ୍ ଅନୁଶୀଳନ କଲେ ) ଉଭୟୋଃ ଫଳଂ ବିନ୍ଦତେ ( ଉଭୟର ଫଳଲାଭ ହୋଇଥାଏ ) ।

**ଅନୁବାଦ**—ଅଜ୍ଞ ଲୋକମାନେ ସନ୍ନ୍ୟାସ ଓ କର୍ମଯୋଗକୁ ପୃଥକ୍ ମନେ କରନ୍ତି । କିନ୍ତୁ ପଣ୍ଡିତମାନେ ଏପରି କହନ୍ତି ନାହିଁ । ଏଥି ମଧ୍ୟରୁ ଗୋଟିଏ ସମ୍ୟକ୍ ରୂପେ ଅନୁଷ୍ଠିତ ହେଲେ ଉଭୟର ଫଳ ( ମୋକ୍ଷ ) ଲାଭ ହୁଏ ।

**ସୁବୋଧିନୀ ଟୀକା**—ଯସ୍ମାଦେବାଙ୍ଗପ୍ରଧାନତ୍ୱେନୋଭୟୋର-ବସ୍ଥାଭେଦେନ କ୍ରମସମୁଚ୍ଚୟଃ—ଅତୋ ବିକଳ୍ପ-ମଙ୍ଗୀକୃତ୍ୟୋଭୟୋଃ କଃ ଶ୍ରେଷ୍ଠ, ଇତି ପ୍ରଶ୍ନୋଽଜ୍ଞାନନାମେବୋଚିତଃ । ନ ବିବେକିନାମିତ୍ୟାହ—ସାଂଖ୍ୟଯୋଗାବିତି । ସାଂଖ୍ୟଶବ୍ଦେନ ଜ୍ଞାନନିଷ୍ଠାବାଚିନା ତଦଙ୍ଗଂ ସନ୍ନ୍ୟାସଂ ଲକ୍ଷୟତି । ସନ୍ନ୍ୟାସକର୍ମଯୋଗାବେକଫଲୌ ସନ୍ତୌ ପୃଥକ୍ ସ୍ୱତନ୍ତ୍ରାବିତି ବାଲା ଅଜ୍ଞା ଏବ ପ୍ରବଦନ୍ତି । ନତୁ ପଣ୍ଡିତାଃ, ଅତ୍ରହେତୁଃ—ଅନୟୋ ରେକମପି ସମ୍ୟାଗାସ୍ଥିତ ଆଶ୍ରିତବାନୁଭୟୋରପି ଫଳମାପ୍ନୋତି । ତଥାହି କର୍ମଯୋଗଂ ସମ୍ୟଗନୁତିଷ୍ଠନ୍ ଶୁଦ୍ଧଚିତ୍ତଃ ସନ୍ ଜ୍ଞାନଦ୍ୱାରା ଯଦୁଭୟୋଃ ଫଳଂ କୈବଲ୍ୟଂ ତଦ୍ବିନ୍ଦତି । ସନ୍ନ୍ୟାସଂ ସମ୍ୟଗାସ୍ଥିତୋଽପି ପୂର୍ବମନୁଷ୍ଠିତସ୍ୟ କର୍ମ-ଯୋଗସ୍ୟାପି ପରମ୍ପରୟା ଜ୍ଞାନଦ୍ୱାରା ଯଦୁଭୟୋଃ ଫଳଂ କୈବଲ୍ୟଂ ତଦ୍ବିନ୍ଦତୀତି ନ ପୃଥକ୍ଫଲତ୍ୱମନୟୋରିତ୍ୟର୍ଥଃ ।

ବିବୃତି—ସନ୍ନ୍ୟାସୀମାନେ କହନ୍ତି କର୍ମତ୍ୟାଗ ନ କଲେ ମନୁଷ୍ୟର ମୋକ୍ଷପ୍ରାପ୍ତି ହୁଏ ନାହିଁ । ମୋକ୍ଷଲାଭ ପାଇଁ ଏକମାତ୍ର ଜ୍ଞାନ ଆବଶ୍ୟକ । ଭଗବାନ୍ ଏ ଶ୍ଳୋକରେ ସେହି ବିବାଦ ମୀମାଂସା କରିବା ଉଦ୍ଦେଶ୍ୟରେ କହୁଅଛନ୍ତି—ଏହି ଦୁଇମାର୍ଗ ମଧ୍ୟରୁ କୌଣସି ଗୋଟିଏ ମାର୍ଗରେ ପଥିକ ହେଲେ ମୋକ୍ଷପ୍ରାପ୍ତି ହୁଏ । ନିଷ୍କାମ କର୍ମଯୋଗ ଓ କର୍ମସନ୍ନ୍ୟାସ—ଏକ ଜିନିଷ ।

୫ । **ଅନ୍ୱୟଦୀପିକା**—ସାଂଖ୍ୟୈଃ (ଜ୍ଞାନନିଷ୍ଠ ସନ୍ନ୍ୟାସୀ ମାନଙ୍କ-ଦ୍ୱାରା ) ଯତ୍ ସ୍ଥାନଂ ( ଯେଉଁସ୍ଥାନ ) ପ୍ରାପ୍ୟତେ ( ଲାଭ କରାଯାଏ ) ଯୋଗୈଃ ଅପି ( କର୍ମ ଯୋଗୀମାନଙ୍କ ଦ୍ୱାରା ମଧ୍ୟ ) ତତ୍ ( ସେହିସ୍ଥାନ ) ଗମ୍ୟତେ ( ଲାଭକରା ହୋଇଥାଏ ); ଯଃ ( ଯେ ) ସାଂଖ୍ୟଂ ଚ ( ସନ୍ନ୍ୟାସ ) ଯୋଗଂ ଚ ( ଓ କର୍ମ ଯୋଗକୁ ) ଏକଂ ( ଏକ ରୂପରେ ) ପଶ୍ୟତି ( ଦେଖନ୍ତି ) ସଃ ପଶ୍ୟତି ( ସେ ଯଥାର୍ଥ ଦର୍ଶନ କରନ୍ତି ) ।

ସନ୍ନ୍ୟାସସ୍ତୁ ମହାବାହୋ ଦୁଃଖମାପ୍ତୁମଯୋଗତଃ
ଯୋଗଯୁକ୍ତୋ ମୁନିର୍ବ୍ରହ୍ମ ନ ଚିରେଣାଧିଗଚ୍ଛତି । ୬ ।

**ଅନୁବାଦ**—ଜ୍ଞାନବାଦୀ ସାଂଖ୍ୟ ପୁରୁଷଗଣ ଯେଉଁସ୍ଥାନ ଲାଭ କରନ୍ତି, କର୍ମଯୋଗୀମାନେ ମଧ୍ୟ ସେହିସ୍ଥାନ ଲାଭ କରନ୍ତି । ଯେ ସନ୍ନ୍ୟାସ ଓ କର୍ମଯୋଗକୁ ଏକ ରୂପରେ ଦର୍ଶନ କରନ୍ତି ସେ ଯଥାର୍ଥଦର୍ଶୀ ।

**ସୁବୋଧିନୀ ଟୀକା**—ଏତଦେବ ସ୍ଫୁଟୟତି—ଯତ୍ ସାଂଖ୍ୟୈରିତି ସାଂଖ୍ୟୈ ର୍ଜ୍ଞାନନିଷ୍ଠୈଃ ସନ୍ନ୍ୟାସିଭିର୍ୟତ୍ ସ୍ଥାନଂ ମୋକ୍ଷାଖ୍ୟଂ ପ୍ରକର୍ଷେଣ ସାକ୍ଷାଦବାପ୍ୟତେ । ଯୋଗୈରିତ୍ୟର୍ଷଆଦିତ୍ୱାନ୍ମତ୍ୱର୍ଥୀୟୋଽଚ୍‌ପ୍ରତ୍ୟୟୋ ଦ୍ରଷ୍ଟବ୍ୟଃ । କର୍ମଯୋଗିଭିରପି ତଦେବ ଜ୍ଞାନଦ୍ୱାରେଣ ଗମ୍ୟତେଽବାପ୍ୟତେ । ଅତଃ ସାଂଖ୍ୟଂ ଚ ଯୋଗଂଚୈକଫଲତ୍ୱେନୈକଂ ଯଃ ପଶ୍ୟତି ସ ଏବ ସମ୍ୟକ୍ ପଶ୍ୟତି ।

**ବିବୃତି**—ପୂର୍ବ ଶ୍ଳୋକରେ ଯେଉଁ କଥା କୁହାଯାଇଅଛି ତାହାକୁହିଁ ଭଗବାନ୍ ଏ ଶ୍ଳୋକରେ ପରିସ୍ଫୁଟ କରିଦେଇ ଅଛନ୍ତି । ଶରୀର ତ୍ୟାଗପରେ ଜ୍ଞାନବାଦୀ ସନ୍ନ୍ୟାସୀମାନେ ଯେଉଁ ସ୍ଥାନ ଲାଭ କରନ୍ତି, କର୍ମଯୋଗୀମାନେ ମଧ୍ୟ ସେହି ମୋକ୍ଷାଖ୍ୟସ୍ଥାନ ଲାଭ କରନ୍ତି । ଏପରି ଅବସ୍ଥାରେ ଯେତେବେଳେ ଉଭୟର ପରିଣାମ ଏକ, ସେତେବେଳେ ଗୋଟିଏ ବଡ଼, ଅନ୍ୟଟି ସାନ—ଏପରି ଭାବିବା ଉଚିତ ନୁହେଁ ।

୬ । **ଅନ୍ୱୟଦୀପିକା**—[ ହେ ] ମହାବାହୋ, ଅଯୋଗତଃ ( କର୍ମଯୋଗ ବ୍ୟତୀତ ) ସନ୍ନ୍ୟାସଃ ତୁ ( କେବଳ କର୍ମତ୍ୟାଗ ) ଦୁଃଖମ୍ ଆପ୍ତୁଂ ( ଦୁଃଖ ପାଇବାପାଇଁ ହୁଏ ), ଯୋଗଯୁକ୍ତଃ ମୁନିଃ ( କର୍ମଯୋଗୀ ) ନ ଚିରେଣ ( ଶୀଘ୍ରହିଁ ) ବ୍ରହ୍ମ ଅଧିଗଚ୍ଛତି ( ବ୍ରହ୍ମ ଲାଭକରନ୍ତି ) ।

**ଅନୁବାଦ**—କର୍ମଯୋଗ ବ୍ୟତୀତ ସନ୍ନ୍ୟାସ ଗ୍ରହଣ କରିବା କେବଳ ଦୁଃଖଜନକ, କିନ୍ତୁ କର୍ମଯୋଗୀ ଶୀଘ୍ର ବ୍ରହ୍ମ ସାକ୍ଷାତ୍କାର ଲାଭ କରନ୍ତି ।

**ସୁବୋଧିନୀ ଟୀକା**—ଯଦକର୍ମଯୋଗିନୋଽପ୍ୟନ୍ତତଃ ସନ୍ନ୍ୟାସେ-ନୈବ ଜ୍ଞାନନିଷ୍ଠା ତର୍ହ୍ୟାଦିତ ଏବ ସନ୍ନ୍ୟାସଃ କର୍ତ୍ତୁଂଯୁକ୍ତ ଇତି ମନ୍ୱାନଂ ପ୍ରତ୍ୟାହ—ସନ୍ନ୍ୟାସ ଇତି । ଅଯୋଗତଃ କର୍ମଯୋଗଂ ବିନା ସନ୍ନ୍ୟାସଃ ପ୍ରାପ୍ତୁଂ ଦୁଃଖଂ ଦୁଃଖହେତୁଃ, ଅଶକ୍ୟ ଇତ୍ୟର୍ଥ । ଚିତ୍ତଶୁଦ୍ଧ୍ୟଭାବେନ ଜ୍ଞାନନିଷ୍ଠାୟା ଅସମ୍ଭବାତ୍ । ଯୋଗଯୁକ୍ତସ୍ତୁ ଶୁଦ୍ଧଚିତ୍ତତୟା ମୁନିଃ ସନ୍ନ୍ୟାସୀ ଭୂତ୍ୱା ଅଚିରେଣୈବ ବ୍ରହ୍ମାଧିଗଚ୍ଛତି । ଅପରେଷଂ ଜାନାତି, ଅତଶ୍ଚିତ୍ତଶୁଦ୍ଧେଃ ପ୍ରାକ୍ କର୍ମଯୋଗ ଏବ ସନ୍ନ୍ୟାସାଦ୍ ବିଶିଷ୍ୟତ ଇତି ପୂର୍ବୋକ୍ତଂ ସିଦ୍ଧମ୍ । ତଦୁକ୍ତଂ ବାର୍ତ୍ତିକକୃଦ୍‌ଭିଃ-ପ୍ରମାଦିନୋ ବହିଶ୍ଚିତ୍ତାଃ ପିଶୁନାଃ କଲହୋତ୍ସୁକାଃ, ସନ୍ନ୍ୟାସିନୋଽପି ଦୃଶ୍ୟନ୍ତେ ଦୈବସନ୍ଦୂଷିତାଶୟାଃ । ଇତି ।

ଯୋଗଯୁକ୍ତୋ ବିଶୁଦ୍ଧାତ୍ମା ବିଜିତାତ୍ମା ଜିତେନ୍ଦ୍ରିୟଃ ।
ସର୍ବଭୂତାତ୍ମଭୂତାତ୍ମା କୁର୍ବନ୍ନପି ନ ଲିପ୍ୟତେ । ୭ ।

ବିବୃତି—ଏ ଶ୍ଳୋକର ଭାବାର୍ଥରୁ ଜଣାଯାଏ ଯେ, କର୍ମ ନ କରି ସନ୍ନ୍ୟାସ ଗ୍ରହଣ କରିବା ଦୁଃଖଜନକ । କିନ୍ତୁ ଜ୍ଞାନବାଦୀ ଟୀକାକାରମାନେ କହନ୍ତି ଜ୍ଞାନଜାତ ହେବାପାଇଁ ବା ଅନ୍ତଃକରଣ ଶୁଦ୍ଧ ହେବାପାଇଁ ପ୍ରଥମେ କର୍ମ କରିବା ବିଧେୟ । ତା ନ କଲେ ମଳିନ ଅନ୍ତଃକରଣରେ ଜ୍ଞାନର ଉଦୟ ଅସମ୍ଭବ । ଜ୍ଞାନ ଜାତ ହେଲେ ଆଉ କର୍ମ କରିବା ଅନାବଶ୍ୟକ; କାରଣ କର୍ମହିଁ ବନ୍ଧନର କାରଣ, କର୍ମ ତ୍ୟାଗ ନ କଲେ ମୋକ୍ଷଲାଭ ହୋଇ ପାରେ ନାହିଁ । ଜ୍ଞାନଦ୍ୱାରା ମୋକ୍ଷଲାଭ ହୁଏ—ଏହା ଅବଶ୍ୟ ସ୍ୱୀକାର କରିବାକୁ ହେବ, ମାତ୍ର ଜ୍ଞାନଲାଭ ପରେ ଯେ କର୍ମ ତ୍ୟାଗ କରିବାକୁ ହେବ ଗୀତାର ଏହା ଉପଦେଶ ନୁହେ । ଏହି ଶ୍ଳୋକର ଦ୍ୱିତୀୟାର୍ଦ୍ଧର ବ୍ୟାଖ୍ୟାରୁ ଏହା ସ୍ପଷ୍ଟ ବୁଝାଯାଏ । ଦ୍ୱିତୀୟାର୍ଦ୍ଧରେ ସ୍ପଷ୍ଟ କୁହାଯାଇ ଅଛି—କର୍ମଯୋଗଯୁକ୍ତ ସାଧକ ଶୀଘ୍ର ମୋକ୍ଷର ଅଧିକାରୀ ହୁଅନ୍ତି । ଏ କର୍ମ ଅବଶ୍ୟ ଜ୍ଞାନମୂଳକ, ଏଥିରେ ସନ୍ଦେହ ନାହିଁ । ଗୀତାରେ ସର୍ବତ୍ର ଏହି ଭାବରେ ଜ୍ଞାନକର୍ମର ସମୁଚ୍ଚୟ ବିଧାନ କରାଯାଇଅଛି ।

ପ୍ରକୃତ କଥା—ସନ୍ନ୍ୟାସ ଓ କର୍ମଯୋଗ ଉଭୟେ ମୋକ୍ଷପ୍ରଦ । ସନ୍ନ୍ୟାସ ମାର୍ଗରେ ଜ୍ଞାନକୁ ପ୍ରଧାନ ମାନିଲେ ବି, କର୍ମ ନ କଲେ ଯେ ଜ୍ଞାନମାର୍ଗରେ ସିଦ୍ଧିଲାଭ ଅସମ୍ଭବ—ଏହା ସନ୍ନ୍ୟାସମାର୍ଗୀମାନେ ସ୍ୱୀକାର କରନ୍ତି । ଅପର ପକ୍ଷରେ କର୍ମଯୋଗୀମାନେ କହନ୍ତି, ସମସ୍ତକର୍ମ ଜ୍ଞାନପୂର୍ବକ କରିବାକୁ ହେବ । ଏପରି ଅବସ୍ଥାରେ ଏହି ଦୁଇ ମାର୍ଗ ଭିନ୍ନ ଭିନ୍ନ ବୋଲି ବିବାଦ କରିବା ସର୍ବଥା ଅନୁଚିତ ।

ଅତି ପ୍ରାଚୀନ କାଳରେ ସ୍ୱର୍ଗଲାଭ ଆଶାରେ ଲୋକେ ସକାମ କର୍ମ କରୁଥିଲେ । ବୈଦିକ ଯାଗଯଜ୍ଞାଦି ଏହି ସକାମ କର୍ମ; ପରେ ଉପନିଷଦ୍-ଯୁଗରେ କେବଳ ଜ୍ଞାନହିଁ ମୋକ୍ଷର ଏକମାତ୍ର ସାଧନ ବୋଲି ଅର୍ଥଋଷିମାନେ ପ୍ରଚାର କଲେ । ମାତ୍ର ଗୀତାଶାସ୍ତ୍ରରେ ଭଗବାନ୍ କର୍ମ କରିବାକୁ ଯେଉଁ ଉପଦେଶ ଦେଲେ, ତାହା ନିଷ୍କାମକର୍ମ ଏବଂ ତାହା ଜ୍ଞାନପୂର୍ବକ କରିବାହିଁ ଭଗବାନଙ୍କର ଅଭିପ୍ରେତ । ଏହି ଭାବରେ ଗୀତାରେ ବହୁକାଳରୁ ଜ୍ଞାନବାଦୀ ଓ କର୍ମବାଦୀମାନଙ୍କ ମଧ୍ୟରେ ଥିବା ବିବାଦ ନିଷ୍ପତ୍ତି କରାଯାଇ ଅଛି । କର୍ମ ତ୍ୟାଗକଲେ ସୃଷ୍ଟିରକ୍ଷା ଯେ ଅସମ୍ଭବ, ଏହା ଜ୍ଞାନବାଦୀ ସନ୍ନ୍ୟାସ ପନ୍ଥୀମାନେ ଅସ୍ୱୀକାର କରି ପାରିବେ କି ?

୭ । ଅନ୍ୱୟଦୀପିକା—ଯୋଗଯୁକ୍ତଃ ( ନିଷ୍କାମ କର୍ମଯୋଗୀ ), ବିଶୁଦ୍ଧାତ୍ମା (ଶୁଦ୍ଧଚିତ୍ତ), ବିଜିତାତ୍ମା ( ଯେ ନିଜ ଶରୀରକୁ ଜୟକରି ଅଛନ୍ତି),

ନୈବ କିଞ୍ଚିତ୍ କରୋମୀତି ଯୁକ୍ତୋ ମନ୍ୟେତ ତତ୍ତ୍ୱବିତ୍ ।
ପଶ୍ୟନ୍ ଶୃଣ୍ୱନ୍ ସ୍ପୃଶନ୍ ଜିଘ୍ରନ୍ନଶ୍ନନ୍ ଗଚ୍ଛନ୍ ସ୍ୱପନ୍ ଶ୍ୱସନ୍ । ୮ ।
ପ୍ରଲପନ୍ ବିସୃଜନ୍ ଗୃହ୍ଣନ୍ନୁନ୍ମିଷନ୍ନିମିଷନ୍ନପି
ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଷୁ ବର୍ତ୍ତନ୍ତ ଇତି ଧାରୟନ୍ । ୯ ।

**ଜିତେନ୍ଦ୍ରିୟଃ** (ଯେ ଇନ୍ଦ୍ରିୟମାନଙ୍କୁ ଜୟ କରି ଅଛନ୍ତି), **ସର୍ବଭୂତାତ୍ମଭୂତାତ୍ମା** (ସର୍ବଭୂତଙ୍କ ଆତ୍ମାରେ ଯେ ଆତ୍ମଭାବ ଦର୍ଶନ କରନ୍ତି), [ସେ] **କୁର୍ବନ୍ ଅପି** (କର୍ମକରି ମଧ୍ୟ), **ନ ଲିପ୍ୟତେ** (ଲିପ୍ତ ହୁଅନ୍ତି ନାହିଁ) ।

**ଅନୁବାଦ**—ଯେଉଁଲୋକ ନିଷ୍କାମକର୍ମଯୋଗର ଅନୁଷ୍ଠାନ କରନ୍ତି, ଯାହାଙ୍କର ଚିତ୍ତ ପବିତ୍ର, ଯେ ଫଳତ ଦେହ ଓ ଇନ୍ଦ୍ରିୟ ଜୟକାରୀ ଏବଂ ଯାହାଙ୍କର ଆତ୍ମା ସର୍ବଭୂତଙ୍କ ଆତ୍ମଭୂତ ହୋଇଅଛି ଅର୍ଥାତ୍ ଯେ ବୁଝିପାରନ୍ତି ଯେ, ଏକ ଆତ୍ମା ସର୍ବଭୂତରେ ଏବଂ ତାଙ୍କ ନିଜଠାରେ ଅଛନ୍ତି, ସେହି ଲୋକ କର୍ମକଲେ ମଧ୍ୟ କର୍ମରେ ଆବଦ୍ଧ ହୁଅନ୍ତି ନାହିଁ ।

**ସୁବୋଧିନୀ ଟୀକା**—କର୍ମଯୋଗାଦକ୍ରମେଣ ବ୍ରହ୍ମାଧିଗମେ ସତ୍ୟପି ତଦୁପରିତନେନ କର୍ମଣା ବନ୍ଧଃ ସ୍ୟାଦିତ୍ୟାଶଙ୍କ୍ୟାହ—ଯୋଗଯୁକ୍ତ ଇତି । ଯୋଗେନ ଯୁକ୍ତଃ, ଅତଏବ ବିଶୁଦ୍ଧ ଆତ୍ମା ଚିତ୍ତଂ ଯସ୍ୟ, ଅତଏବ ବିଜିତ ଆତ୍ମା ଶରୀରଂ ଯେନ, ଅତଏବ ଜିତାନୀନ୍ଦ୍ରିୟାଣି ଯେନ । ତତଶ୍ଚ ସର୍ବେଷାଂ ଭୂତାନାମାତ୍ମଭୂତ ଆତ୍ମା ଯସ୍ୟ ସ ଲୋକସଂଗ୍ରହାର୍ଥଂ ସ୍ୱାଭାବିକଂ ବା କର୍ମ କୁର୍ବନ୍ନପି ନ ଲିପ୍ୟତେ, ତୈର୍ନବଧ୍ୟତେ ।

**ବକ୍ତବ୍ୟ**—କର୍ମ ବନ୍ଧନର କାରଣ, ଏପରି ଅବସ୍ଥାରେ କର୍ମଯୋଗୀ କିପରି ବ୍ରହ୍ମସାକ୍ଷାତ୍କାର ଲାଭ କରିବେ ? ଏହି ଆଶଙ୍କା ଦୂର କରିବାପାଇଁ ଭଗବାନ୍ କହୁଅଛନ୍ତି—ଯେ ନିଷ୍କାମ କର୍ମ ଯୋଗର ଅନୁଷ୍ଠାନ କରନ୍ତି, ତାଙ୍କ ଅନ୍ତଃକରଣରୁ ରଜୋଗୁଣ ଓ ତମୋଗୁଣ କ୍ରମେ ଦୂରୀଭୂତ ହୋଇଯାଏ, ତାଙ୍କର ଶରୀର ବଶୀଭୂତ ହୁଏ, ଇନ୍ଦ୍ରିୟମାନେ ତାଙ୍କର ବଶୀଭୂତ ହୁଅନ୍ତି, ବ୍ରହ୍ମାଙ୍କ ଠାରୁ କ୍ଷୁଦ୍ରତୃଣ ପର୍ଯ୍ୟନ୍ତ ସମସ୍ତଙ୍କଠାରେ ଏକ ଆତ୍ମା ବିରାଜିତ ଅଛନ୍ତି—ଏହା ସେ ଦେଖି ପାରନ୍ତି । ଏପରି କର୍ମଯୋଗୀ କର୍ତ୍ତୃତ୍ୱାଭିମାନଶୂନ୍ୟ ହୋଇ-ଥିବାରୁ କର୍ମ ତାଙ୍କୁ ସ୍ପର୍ଶ କରିପାରେ ନାହିଁ, ଅତଏବ କର୍ମ ବନ୍ଧନର କାରଣ ହେଲେହେଁ, ନିଷ୍କାମ କର୍ମଯୋଗୀଙ୍କୁ ତାହା ବନ୍ଧନ କରିପାରେ ନାହିଁ ।

୮-୯ । **ଅନ୍ୱୟଦୀପିକା**—**ଯୁକ୍ତଃ** (କର୍ମଯୋଗ ଯୁକ୍ତ), **ତତ୍ତ୍ୱବିତ୍** (ପରମାର୍ଥ ତତ୍ତ୍ୱଜ୍ଞ ପୁରୁଷ), **ପଶ୍ୟନ୍** (ଦର୍ଶନ କରି) **ଶୃଣ୍ୱନ୍** (ଶ୍ରବଣ କରି) **ସ୍ପୃଶନ୍** (ସ୍ପର୍ଶକରି) **ଜିଘ୍ରନ୍** (ଆଘ୍ରାଣକରି) **ଅଶ୍ନନ୍** (ଭୋଜନକରି) **ଗଚ୍ଛନ୍** (ଗମନକରି) **ସ୍ୱପନ୍** (ଶୟନକରି) **ଶ୍ୱସନ୍** (ନିଃଶ୍ୱାସ ଗ୍ରହଣକରି) **ପ୍ରଲପନ୍** (କଥା କହି)

ବିସୃଜନ୍ (ତ୍ୟାଗକରି) ଗୃହ୍ଣନ୍ (ଗ୍ରହଣ କରି) ଉନ୍ମିଷନ୍ (ଉନ୍ମେଷ କରି) ନିମିଷନ୍ ଅପି (ନିମେଷ କରି ମଧ୍ୟ) ଇନ୍ଦ୍ରିୟାଣି (ଇନ୍ଦ୍ରିୟ ସମୂହ) ଇନ୍ଦ୍ରିୟାର୍ଥେଷୁ (ଇନ୍ଦ୍ରିୟ ବିଷୟରେ) ବର୍ତ୍ତନ୍ତେ (ପ୍ରବର୍ତ୍ତିତ ହେଉଅଛନ୍ତି) ଇତି ଧାରୟନ୍ (ଏହା ଧାରଣା କରି) କିଞ୍ଚିତ୍ ନ କରୋମି (ମୁଁ କିଛି କରୁନାହିଁ) ଇତି (ଏହା) ମନ୍ୟେତ (ମନେ କରନ୍ତି) ।

**ଅନୁବାଦ**—କର୍ମଯୋଗୀ ତତ୍ତ୍ୱବେତ୍ତା ପୁରୁଷ ଦର୍ଶନ, ଶ୍ରବଣ, ସ୍ପର୍ଶ, ଘ୍ରାଣ, ଭୋଜନ, ଗମନ, ଶୟନ, ନିଃଶ୍ୱାସଗ୍ରହଣ, କଥନ, ତ୍ୟାଗ, ଗ୍ରହଣ, ଉନ୍ମେଷ ଓ ନିମେଷ ପ୍ରଭୃତି କାର୍ଯ୍ୟ କରି ମଧ୍ୟ ମନେ କରନ୍ତି ଯେ, ଇନ୍ଦ୍ରିୟମାନେ ଇନ୍ଦ୍ରିୟ ବିଷୟରେ ପ୍ରବୃତ୍ତ ହେଉଅଛନ୍ତି, ମୁଁ କିଛି କରୁନାହିଁ ।

**ସୁବୋଧିନୀ** ଟୀକା—କର୍ମ କୁର୍ବନ୍ନପି ନ ଲିପ୍ୟତ ଇତ୍ୟେତଦ୍ ବିରୁଦ୍ଧମିତ୍ୟାଶଙ୍କ୍ୟ କର୍ତ୍ତୃତ୍ୱାଭିମାନାଭାବାନ୍ନ ବିରୁଦ୍ଧମିତ୍ୟାହ ନୈବେତି-ଦ୍ୱାଭ୍ୟାମ୍ । କର୍ମଯୋଗେନ ଯୁକ୍ତଃ କ୍ରମେଣ ତତ୍ତ୍ୱବିଦ୍ ଭୂତ୍ୱା ଦର୍ଶନଶ୍ରବଣାଦୀନି କୁର୍ବନ୍ନପୀନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଷୁ ବର୍ତ୍ତନ୍ତ ଇତି ଧାରୟନ୍ ବୁଦ୍ଧ୍ୟା ନିଶ୍ଚିନ୍ୱନ୍ କିଞ୍ଚିଦପ୍ୟହଂ ନ କରୋମୀତି ମନ୍ୟେତ ମନ୍ୟତେ, ତତ୍ର ଦର୍ଶନଶ୍ରବଣସ୍ପର୍ଶନାଘ୍ରାଣାଶନାନି ଚକ୍ଷୁରାଦିଜ୍ଞାନେନ୍ଦ୍ରିୟବ୍ୟାପାରାଃ । ଗତିଃ ପାଦୟୋଃ, ସ୍ୱାପୋ ବୁଦ୍ଧେଃ, ଶ୍ୱାସଃ ପ୍ରାଣସ୍ୟ । ପ୍ରଲପନଂ ବାଗିନ୍ଦ୍ରିୟସ୍ୟ । ବିସର୍ଗଃ ପାୟୂପସ୍ଥୟୋଃ । ଗ୍ରହଣଂ ହସ୍ତୟୋଃ । ଉନ୍ମେଷଣନିମେଷଣେ କୂର୍ମାଖ୍ୟ ପ୍ରାଣସ୍ୟେତି ବିବେକଃ । ଏତାନି କର୍ମାଣି କୁର୍ବନ୍ନପ୍ୟଭିମାନାଭାବାଦ୍ ବ୍ରହ୍ମବିଦ୍ ନ ଲିପ୍ୟତେ ତଥାଚ ପାରମର୍ଷଂ ସୂତ୍ରଂ—ତଦଧିଗମ ଉତ୍ତରପୂର୍ବାଘୟୋରଶ୍ଳେଷବିନାଶୌ ତଦ୍ବ୍ୟପଦେଶାଦିତି ।

ବିବୃତି—ପ୍ରକୃତିହିଁ ସମସ୍ତ କରନ୍ତି, ଆତ୍ମା ଅକର୍ତ୍ତା—ତୃତୀୟ ଅଧ୍ୟାୟର ୨୭ଶ ଓ ୨୮ଶ ଶ୍ଳୋକରେ ଏହି ଯେଉଁ ତତ୍ତ୍ୱ ବିବୃତ ହୋଇଅଛି ଏଠାରେ ତାହାହିଁ ସ୍ପଷ୍ଟ କରାଯାଇଅଛି । ଇନ୍ଦ୍ରିୟମାନେ କର୍ମ କରନ୍ତି, କର୍ତ୍ତୃତ୍ୱାଭିମାନ ଅଭାବରୁ ଆତ୍ମାଙ୍କର କର୍ମବନ୍ଧନ ହୁଏନାହିଁ—ଏହା ଶ୍ଳୋକର ତାତ୍ପର୍ଯ୍ୟ । ମୂଳ ଶ୍ଳୋକରେ ଯେଉଁ କେତେଗୋଟି କର୍ମର ଉଲ୍ଲେଖ କରାଯାଇଅଛି, ସେଗୁଡ଼ିକ ଜ୍ଞାନେନ୍ଦ୍ରିୟ, କର୍ମେନ୍ଦ୍ରିୟ, ପ୍ରାଣ ଓ ଅନ୍ତଃକରଣର କାର୍ଯ୍ୟ, ତନ୍ମଧ୍ୟରୁ ଦର୍ଶନ, ଶ୍ରବଣ, ସ୍ପର୍ଶ, ଘ୍ରାଣ ଓ ଭୋଜନ—ଏହି ପାଞ୍ଚଗୋଟି ଚକ୍ଷୁ ପ୍ରଭୃତି ପଞ୍ଚଜ୍ଞାନେନ୍ଦ୍ରିୟର କର୍ମ; ଗମନ, ଗ୍ରହଣ, କଥନ, ବିସର୍ଗ (ମଳମୂତ୍ରାଦିତ୍ୟାଗ) ଏ ଗୁଡ଼ିକ ପାଦ ପ୍ରଭୃତି ପଞ୍ଚ କର୍ମେନ୍ଦ୍ରିୟର କର୍ମ; ଶ୍ୱାସ, ଉନ୍ମେଷ, ନିମେଷ, ଏହା ପ୍ରାଣବାୟୁର କର୍ମ ଏବଂ ସ୍ୱପ୍ନ ବା ନିଦ୍ରା ଅନ୍ତଃକରଣର କର୍ମ । ଏହି କେତେଗୋଟି କ୍ରିୟାଦ୍ୱାରା ସର୍ବବିଧ କର୍ମକୁ ଲକ୍ଷ୍ୟ କରାଯାଇଅଛି । ଇନ୍ଦ୍ରିୟ, ମନ, ବୁଦ୍ଧି ପ୍ରଭୃତି ପ୍ରକୃତିର ପରିଣାମ, ଏଥିରେ ଆତ୍ମା ଲିପ୍ତ ହୁଅନ୍ତି ନାହିଁ ।

ବ୍ରହ୍ମଣ୍ୟାଧାୟ କର୍ମାଣି ସଙ୍ଗଂ ତ୍ୟକ୍ତ୍ୱା କରୋତି ଯଃ ।
ଲିପ୍ୟତେ ନ ସ ପାପେନ ପଦ୍ମପତ୍ରମିବାମ୍ଭସା । ୧୦ ।

୧୦ । ଅନ୍ୱୟଦୀପିକା—ଯଃ (ଯେ) ବ୍ରହ୍ମଣି (ବ୍ରହ୍ମଙ୍କଠାରେ) ଆଧାୟ (ସମର୍ପଣ କରି) ସଙ୍ଗଂ (ଫଳାସକ୍ତି ଓ କର୍ତ୍ତୃତ୍ୱାଭିମାନ) ତ୍ୟକ୍ତ୍ୱା (ତ୍ୟାଗକରି) କର୍ମାଣି କରୋତି (କର୍ମ କରନ୍ତି) ସଃ (ସେ) ଅମ୍ଭସା (ଜଳଦ୍ୱାରା) ପଦ୍ମପତ୍ରମ୍ ଇବ (ପଦ୍ମପତ୍ରପରି) ପାପେନ (ପାପଦ୍ୱାରା) ନ ଲିପ୍ୟତେ (ଲିପ୍ତ ହୁଅନ୍ତି ନାହିଁ) ।

ଅନୁବାଦ—ଯେ ବ୍ରହ୍ମଙ୍କଠାରେ ସମର୍ପଣକରି ଅସକ୍ତ ରହିତ ହୋଇ କର୍ମ କରନ୍ତି, ପଦ୍ମ ପତ୍ରରେ ଜଳ ଯେପରି ଲାଗେ ନାହିଁ, ସେହିପରି ପାପ ତାଙ୍କଠାରେ ଲାଗେ ନାହିଁ ଅର୍ଥାତ୍ ସେ ପାପରେ ଲିପ୍ତ ହୁଅନ୍ତି ନାହିଁ ।

ସୁବୋଧିନୀ ଟୀକା—ତର୍ହି ଯସ୍ୟ କର୍ତ୍ତୃତ୍ୱାଭିମାନୋଽସ୍ତି ତସ୍ୟ କର୍ମଲେପୋ ଦୁର୍ବାରଃ । ତଥା ଅବଶୁଦ୍ଧ ଚିତ୍ତତ୍ୱାତ୍ ସନ୍ନ୍ୟାସୋଽପି ନାସ୍ତୀତି ମହତ୍ ସଙ୍କଟ ମାପନ୍ନ ମିତ୍ୟାଶଙ୍କ୍ୟାହ—ବ୍ରହ୍ମଣୀତି । ବ୍ରହ୍ମଣ୍ୟାଧାୟ ପରମେଶ୍ୱରେ ସମର୍ପ୍ୟ । ତତ୍ଫଳେ ଚ ସଙ୍ଗଂ ତ୍ୟକ୍ତ୍ୱା ଯଃ କର୍ମାଣି କରୋତି । ଅସୌ ପାପେନ ବନ୍ଧହେତୁତୟା ପାପିଷ୍ଠେନ ପୁଣ୍ୟପାପାତ୍ମକେନ କର୍ମଣା ନ ଲିପ୍ୟତେ । ଯଥା ପଦ୍ମପତ୍ରମମ୍ଭସି ସ୍ଥିତମପି ତେନାମ୍ଭସା ନ ଲିପ୍ୟତେ ତଦ୍ୱତ୍ ।

ବିବୃତି—ସାଧାରଣ ଲୋକେ ମନେ କରନ୍ତି, ମୁଁ ଅର୍ଥାତ୍ ଆତ୍ମା କର୍ମକରେ; କିନ୍ତୁ ଆତ୍ମା କୌଣସି କର୍ମ କରନ୍ତି ନାହିଁ, ସମସ୍ତ କର୍ମ ପ୍ରକୃତି କରେ । ଏହାହିଁ ପ୍ରକୃତ ଜ୍ଞାନ, ଯେତେବେଳେ ଲୋକ ଏହି ଜ୍ଞାନ ଲାଭକରେ, ସେତେବେଳେ ତାହାର 'ମୁଁ ଭାବ' ଅର୍ଥାତ୍ ଅହଂଜ୍ଞାନ ଦୂର ହୋଇଯାଏ । ଅହଂଜ୍ଞାନ ଦୂରହେଲେ ମନ ସ୍ଥିରହୁଏ; କିନ୍ତୁ ପ୍ରକୃତିର କ୍ରିୟା ବନ୍ଦ ରହେନାହିଁ । ଶରୀର ଥିବାଯାଏ ପ୍ରକୃତିର କର୍ମ ଚାଲିଥାଏ । ସେ ଅବସ୍ଥାରେ ସମସ୍ତ କର୍ମ ଈଶ୍ୱରଙ୍କଠାରେ ସ୍ୱତଃ ଅର୍ପିତ ହୁଏ । କର୍ତ୍ତାକୁ ପାପପୁଣ୍ୟର ଫଳ ଭୋଗିବାକୁ ପଡ଼େନାହିଁ । ଏହାକୁହିଁ ଫଳ ବା ଆସକ୍ତି ତ୍ୟାଗ କୁହାଯାଏ ।

ଜଳ ସବୁପଦାର୍ଥକୁ ଆର୍ଦ୍ର କରେ ମାତ୍ର ପଦ୍ମପତ୍ରରେ ଜଳର ସେ ଶକ୍ତି କାର୍ଯ୍ୟ କରେନାହିଁ; ସେହିପରି କର୍ମ ପ୍ରତ୍ୟେକ ଲୋକକୁ ବନ୍ଧନ କରେ ମାତ୍ର ଫଳାକାଙ୍କ୍ଷାବର୍ଜ୍ଜିତକାରୀ କର୍ମଯୋଗୀଙ୍କୁ କୌଣସି କର୍ମ ବନ୍ଧନ କରିପାରେ ନାହିଁ ।

କାୟେନ ମନସା ବୁଦ୍ଧ୍ୟା କେବଳୈରିନ୍ଦ୍ରିୟୈରପି
ଯୋଗିନଃ କର୍ମ କୁର୍ବନ୍ତି ସଙ୍ଗଂ ତ୍ୟକ୍ତ୍ୱାତ୍ମଶୁଦ୍ଧୟେ । ୧୧
ଯୁକ୍ତଃ କର୍ମଫଳଂ ତ୍ୟକ୍ତ୍ୱା ଶାନ୍ତିମାପ୍ନୋତି ନୈଷ୍ଠିକୀମ୍,
ଅଯୁକ୍ତଃ କାମକାରେଣ ଫଳେ ସକ୍ତୋ ନିବଧ୍ୟତେ । ୧୨ ।

୧୧ । **ଅନ୍ୱୟଦୀପିକା**—ଯୋଗିନଃ (କର୍ମଯୋଗୀମାନେ) ସଙ୍ଗଂ (ଫଳାଶକ୍ତି ଓ କର୍ତ୍ତୃତ୍ୱାଭିନିବେଶ) ତ୍ୟକ୍ତ୍ୱା (ତ୍ୟାଗକରି) ଆତ୍ମଶୁଦ୍ଧୟେ (ଆତ୍ମଶୁଦ୍ଧି ପାଇଁ) କାୟେନ (ଶରୀର ଦ୍ୱାରା), ମନସା (ମନଦ୍ୱାରା), ବୁଦ୍ଧ୍ୟା (ବୁଦ୍ଧିଦ୍ୱାରା) କେବଳୈଃ (କେବଳ) ଇନ୍ଦ୍ରିୟୈଃ ଅପି (ଇନ୍ଦ୍ରିୟଗଣ ଦ୍ୱାରା) କର୍ମ କୁର୍ବନ୍ତି (କର୍ମ କରି ଥାଆନ୍ତି) ।

**ଅନୁବାଦ**—କର୍ମଯୋଗୀମାନେ (ମୁଁ କରୁଛି ଏପରି ଅହଂକାର ବୁଦ୍ଧି ନ ରଖି କେବଳ) ଶରୀର ଦ୍ୱାରା, (କେବଳ) ମନଦ୍ୱାରା, (କେବଳ) ବୁଦ୍ଧିଦ୍ୱାରା ଏବଂ କେବଳ ଇନ୍ଦ୍ରିୟମାନଙ୍କଦ୍ୱାରା ମଧ୍ୟ ଆସକ୍ତି ଛାଡ଼ି ଆତ୍ମଶୁଦ୍ଧିପାଇଁ କର୍ମ କରନ୍ତି ।

**ସୁବୋଧିନୀ ଟୀକା**—ବନ୍ଧକତ୍ୱାଭାବମୁକ୍ତ୍ୱା ମୋକ୍ଷହେତୁତ୍ୱଂ ସଦାଚାରେଣ ଦର୍ଶୟତି—କାୟେନେତି । କାୟେନ ସ୍ନାନାଦି, ମନସା ଧ୍ୟାନାଦି ବୁଦ୍ଧ୍ୟା ତତ୍ତ୍ୱନିଶ୍ଚୟାଦି । କେବଳୈଃ କର୍ମାଭିନିବେଶରହିତୈରିନ୍ଦ୍ରିୟୈଃ ଶ୍ରବଣକୀର୍ତ୍ତନାଦିଲକ୍ଷଣଂ କର୍ମଫଳସଙ୍ଗଂ ତ୍ୟକ୍ତ୍ୱା ଚିତ୍ତଶୁଦ୍ଧୟେ କର୍ମଯୋଗିନଃ କର୍ମ କୁର୍ବନ୍ତି ।

**ବକ୍ତବ୍ୟ**—ଏ ଶ୍ଳୋକରେ କାୟ, ମନ ଓ ବୁଦ୍ଧି ଏ ଶବ୍ଦମାନଙ୍କଦ୍ୱାରା କାୟିକ, ବାଚିକ ଓ ମାନସିକ କର୍ମମାନଙ୍କର ପ୍ରଭେଦ ଲକ୍ଷ୍ୟ କରାଯାଇଅଛି । ମୂଳରେ 'କେବଳୈଃ' ପଦ 'ଇନ୍ଦ୍ରିୟୈଃ' ପଦ ପୂର୍ବରେ ଅଛି, ତଥାପି ଏହା ଶରୀର, ମନ ଓ ବୁଦ୍ଧି ପ୍ରତି ମଧ୍ୟ ପ୍ରଯୋଜ୍ୟ । ଅଷ୍ଟମ ଓ ନବମ ଶ୍ଳୋକରେ ଯେପରି ଉକ୍ତ ହୋଇଅଛି, ଏଠାରେ ମଧ୍ୟ ସେହିପରି ଉକ୍ତ ହୋଇଅଛି ଯେ, ଅହଂକାର-ବୁଦ୍ଧି ଓ ଫଳାଶା ଛାଡ଼ି କେବଳ କାୟିକ, କେବଳ ବାଚିକ ଓ କେବଳ ମାନସିକ ଯେ କୌଣସି କର୍ମ କଲେ କର୍ତ୍ତାକୁ ତାହାର ଦୋଷ ସ୍ପର୍ଶ କରେନାହିଁ । ଅହଂକାର ନ ଥାଇ ଯେଉଁ କର୍ମ କରାଯାଏ, ତାହା କେବଳ ଇନ୍ଦ୍ରିୟମାନଙ୍କ କର୍ମ, ମନ ପ୍ରଭୃତି ସମସ୍ତ ଇନ୍ଦ୍ରିୟ, ପ୍ରକୃତିର ବିକାର । ଅତଏବ ଏ ପ୍ରକାର କର୍ମ କର୍ତ୍ତାର ବନ୍ଧନର କାରଣ ହୁଏନାହିଁ ।

୧୨ । **ଅନ୍ୱୟଦୀପିକା**—ଯୁକ୍ତଃ (କର୍ମଯୋଗୀ) କର୍ମଫଳଂ ତ୍ୟକ୍ତ୍ୱା (କର୍ମଫଳ ପରିତ୍ୟାଗ କରି) ନୈଷ୍ଠିକୀମ୍ ଶାନ୍ତିମ୍ (ମୋକ୍ଷ, ସ୍ଥିର ଶାନ୍ତି) ଆପ୍ନୋତି (ଲାଭ କରନ୍ତି), ଅଯୁକ୍ତଃ (ଯେ କର୍ମଯୋଗୀ ନୁହନ୍ତି ଅର୍ଥାତ୍ କାମନାଯୁକ୍ତ)

ସର୍ବ କର୍ମାଣି ମନସା ସନ୍ନ୍ୟସ୍ୟାସ୍ତେ ସୁଖଂ ବଶୀ
ନବଦ୍ୱାରେ ପୁରେ ଦେହୀ ନୈବକୁର୍ବନ୍ ନ କାରୟନ୍ । ୧୩ ।

କାମ କାରେଣ (କାମନା ବଶତଃ) ଫଳେ (ଫଳଲାଭରେ) ସକ୍ତଃ (ଅସକ୍ତ ହୋଇ) ନିବଧ୍ୟତେ (ବନ୍ଧନଦଶା ପ୍ରାପ୍ତ ହୁଅନ୍ତି) ।

ଅନୁବାଦ—କର୍ମଯୋଗୀ କର୍ମଫଳ ତ୍ୟାଗକରି ମୋକ୍ଷ-ରୂପ ସ୍ଥିର-ଶାନ୍ତି ଲାଭ କରନ୍ତି ଏବଂ କର୍ମଯୋଗ ଅବଲମ୍ବନ କରିନଥିବା ସକାମଲୋକ କାମନାବଶତଃ ଫଳରେ ଅସକ୍ତ ହୋଇ ବନ୍ଧନ ଦଶା ପ୍ରାପ୍ତ ହୁଅନ୍ତି ।

ସୁବୋଧିନୀ ଟୀକା— ନନୁ କଥମ୍ ତେନୈବ କର୍ମଣା କଶ୍ଚିନ୍ମୁଚ୍ୟତେ କଶ୍ଚିଦ୍ ବଧ୍ୟତ ଇତ୍ୟବସ୍ଥା ? ଅତ ଆହ ଯୁକ୍ତ ଇତି । ଯୁକ୍ତଃ ପରମେଶ୍ୱରୈକନିଷ୍ଠଃ ସନ୍ କର୍ମଣାଂ ଫଳଂ ତ୍ୟକ୍ତ୍ୱା କର୍ମାଣି କୁର୍ବନ୍ନାତ୍ୟନ୍ତିକୀଂ ଶାନ୍ତିଂ ମୋକ୍ଷଂ ପ୍ରାପ୍ନୋତି । ଅଯୁକ୍ତସ୍ତୁ ବହିର୍ମୁଖଃ କାମକାରେଣ କାମତଃ ପ୍ରବୃତ୍ତ୍ୟା ଫଳ ଅସକ୍ତୋ ନିତରାଂ ବନ୍ଧଂ ପ୍ରାପ୍ନୋତି ।

ବକ୍ତବ୍ୟ—ଶାନ୍ତି ଜୀବନର ଏକମାତ୍ର ଲକ୍ଷ୍ୟ । ଯୋଉଁ ଲୋକ କର୍ମଫଳରେ ଅସକ୍ତ ନ ଥାନ୍ତି, ସେ ସେହି ଶାନ୍ତି ଲାଭ କରନ୍ତି । ଏହାକୁହିଁ ଜୀବନ୍ମୁକ୍ତି କୁହାଯାଏ । ମୂଳ ଶ୍ଳୋକରେ ଯାହାକୁ 'ନୈଷ୍ଠିକୀଶାନ୍ତି' ବୋଲି କୁହା ଯାଇଅଛି, ଈଶ୍ୱରନିଷ୍ଠାରୁ ତାହାର ଉତ୍ପତ୍ତି । ଇହ ଜୀବନରେ ତାହା ଲାଭକରି ପାରିଲେ ପର ଜୀବନରେ କର୍ମଯୋଗୀର ମୋକ୍ଷ ସହଜଲଭ୍ୟ ହୁଏ । କାମନାପରବଶ ଲୋକର ଜୀବନରେ ଶାନ୍ତି ଦୁର୍ଲଭ, ତେଣୁ ମୋକ୍ଷଲାଭ ତା ପକ୍ଷରେ ଦୁର୍ଲଭ କୁହେ କି ? ଫଳତଃ ଫଳାଭିଳାଷୀ ବ୍ୟକ୍ତି ବନ୍ଧନ ଦଶା ବା ଜନ୍ମମରଣ ଯନ୍ତ୍ରଣାରୁ ରକ୍ଷା ପାଏନାହିଁ ।

୧୩ । ଅନ୍ୱୟଦୀପିକା—ବଶୀ (ଜିତେନ୍ଦ୍ରିୟ) ଦେହୀ (ପୁରୁଷ) ମନସା (ମନଦ୍ୱାରା) ସର୍ବକର୍ମାଣି (ସମସ୍ତ କର୍ମ) ସନ୍ନ୍ୟସ୍ୟ (ପରିତ୍ୟାଗ ପୂର୍ବକ) ନବଦ୍ୱାରେ (ନବଦ୍ୱାର ଯୁକ୍ତ) ପୁରେ (ଦେହରେ) ନ ଏବ କୁର୍ବନ୍ (କିଛି ନ କରି) ନ ଏବ କାରୟନ୍ (ଅନ୍ୟକୁ କିଛି ନ କରାଇ) ସୁଖମ୍ (ସୁଖରେ) ଅସ୍ତେ (ଅବସ୍ଥାନ କରନ୍ତି) ।

ଅନୁବାଦ—ଜିତେନ୍ଦ୍ରିୟ ପୁରୁଷ (କର୍ମଯୋଗୀ) ମନେ ମନେ ସମସ୍ତ କର୍ମ ପରିତ୍ୟାଗ କରି ନବଦ୍ୱାର ଯୁକ୍ତ (ଦେହରୂପ) ନଗରରେ ଅନନ୍ଦରେ ପଡ଼ି ରହି ଥାଅନ୍ତି ।

ସୁବୋଧିନୀ ଟୀକା—ଏବଂ ତାବଚ୍ଚିତ୍ତଶୁଦ୍ଧିଶୂନ୍ୟସ୍ୟ ସନ୍ନ୍ୟାସାତ୍ କର୍ମଯୋଗୋ ବଶିଷ୍ୟତ ଇତ୍ୟେତତ୍ ପ୍ରପଞ୍ଚିତମ୍ । ଇଦାନୀଂ ଶୁଦ୍ଧଚିତ୍ତସ୍ୟ ସନ୍ନ୍ୟାସଃ ଶ୍ରେଷ୍ଠ ଇତ୍ୟାହ ସର୍ବକର୍ମାଣୀତି । ବଶୀ ଯତଚିତ୍ତଃ ସର୍ବାଣି କର୍ମାଣି

ନ କର୍ତ୍ତୃତ୍ୱଂ ନ କର୍ମାଣି ଲୋକସ୍ୟ ସୃଜତି ପ୍ରଭୁଃ ।
ନ କର୍ମଫଳସଂଯୋଗଂ ସ୍ୱଭାବସ୍ତୁ ପ୍ରବର୍ତ୍ତତେ ।୧୪।

ବିକ୍ଷେପକାଣି ମନସା ବିବେକଯୁକ୍ତେନ ସନ୍ନ୍ୟସ୍ୟ ସୁଖଂ ଯଥା ଭବତ୍ୟେବଂ ଜ୍ଞାନନିଷ୍ଠଃ ସନ୍ନାସ୍ତେ । କ୍ୱାସ୍ତେ ଇତି ? ଅତଆହ ନବଦ୍ୱାରେ, ନେତ୍ରେ ନାସିକେ କର୍ଣ୍ଣୌ ମୁଖଂ ଚେତି ସପ୍ତ ଶିରୋଗତାନ୍ୟଧୋଗତେ ଦ୍ୱେ ପାୟୂପସ୍ଥରୂପେ ଇତି ଏବଂ ନବଦ୍ୱାରାଣି ଯସ୍ମିଂସ୍ତସ୍ମିନ୍ ପୁରେ ପୁରବଦହଂକାରଶୂନ୍ୟେ ଦେହେ ଦେହ୍ୟବତିଷ୍ଠତେ । ଅହଂକାରାଭାବାଦେବ ସ୍ୱୟଂ ତେନ ଦେହେନ ନୈବ କୁର୍ବନ୍, ମମକାରାଭାବାତ୍ ନୈବ କାରୟନ୍—ଇତ୍ୟବିଶୁଦ୍ଧବିଷୟବ୍ୟାବୃତ୍ତିରୁକ୍ତା, ଅଶୁଦ୍ଧବିଷୟେ ହି ସନ୍ନ୍ୟସ୍ୟ ପୁନଃ କରୋତି କାରୟତି ଚ, ନ ତ୍ୱୟଂ ତଥା । ଅତଃ ସୁଖମାସ୍ତ ଇତ୍ୟର୍ଥଃ ।

ବିବୃତି—କର୍ମଯୋଗୀ କିପରି ଶାନ୍ତିମୟ ଅବସ୍ଥା ଉପଭୋଗ କରନ୍ତି, ଏ ଶ୍ଳୋକରେ ତାହାହିଁ ବର୍ଣ୍ଣିତ ହୋଇଅଛି । ସେ ଜାଣନ୍ତି ଆତ୍ମା ଅକର୍ତ୍ତା, ସମସ୍ତ ଖେଳ ପ୍ରକୃତିର । ଏହା ବୁଝିପାରି ସେ ଆନନ୍ଦରେ ରହିଥାଆନ୍ତି । ଦୁଇ ଚକ୍ଷୁ, ଦୁଇ କର୍ଣ୍ଣ, ଦୁଇ ନାସାରନ୍ଧ୍ର, ମୁଖ, ପାୟୁ ଓ ଉପସ୍ଥ—ଦେହର ଏହି ନବଦ୍ୱାର । ଏହି ନବଦ୍ୱାର ଯୁକ୍ତ ଦେହରୂପ ନଗର ମଧ୍ୟରେ ମନେ ମନେ (କାର୍ଯ୍ୟରେ ନୁହେ) ସମସ୍ତ କାର୍ଯ୍ୟ ତ୍ୟାଗକରି ସେ ପଡ଼ି ରହିଥାନ୍ତି ।

୧୪ । ଅନ୍ୱୟଦୀପିକା—ପ୍ରଭୁଃ ( ଆତ୍ମା ) ଲୋକସ୍ୟ ( ଲୋକର ) କର୍ତ୍ତୃତ୍ୱଂ ନ ସୃଜତି ( କର୍ତ୍ତୃତ୍ୱ ସୃଷ୍ଟି କରନ୍ତି ନାହିଁ ), କର୍ମାଣି ନ ( କର୍ମ ସମୂହ ସୃଷ୍ଟି କରନ୍ତି ନାହିଁ ) କର୍ମଫଳସଂଯୋଗଂ ନ ( କର୍ମଫଳରେ ସମ୍ବନ୍ଧ ସୃଷ୍ଟି କରନ୍ତି ନାହିଁ ), ସ୍ୱଭାବଃ ତୁ ପ୍ରବର୍ତ୍ତତେ ( ପ୍ରକୃତିହିଁ ପ୍ରବୃତ୍ତ ହୋଇଥାଏ ) ।

ଅନୁବାଦ—ଆତ୍ମା ଲୋକର କର୍ତ୍ତୃତ୍ୱ ସୃଷ୍ଟି କରନ୍ତି ନାହିଁ, କର୍ମ ସୃଷ୍ଟି କରନ୍ତି ନାହିଁ, ସୁଖ ଦୁଃଖ ରୂପ କର୍ମଫଳ ସଂଯୋଗ ମଧ୍ୟ ସୃଷ୍ଟି କରନ୍ତି ନାହିଁ, ସ୍ୱଭାବ ଅର୍ଥାତ୍ ପ୍ରକୃତି ହିଁ ସବୁ କର୍ମ କରେ ।

ସୁବୋଧିନୀ ଟୀକା—ନନ୍ୱେଷ ହ୍ୟେବୈନଂ ସାଧୁକର୍ମ କାରୟତି ତଂ ଯମେଭ୍ୟୋ ଲୋକେଭ୍ୟ ଉନ୍ନିନୀଷତେ । ଏଷ ଏବାସାଧୁ କର୍ମ କାରୟତି ଯମଧୋ ନିନୀଷତେ । ଇତ୍ୟାଦି ଶ୍ରୁତେଃ ପରମେଶ୍ୱରେଣୈବ ଶୁଭାଶୁଭଫଳେଷୁ କର୍ମସୁ କର୍ତ୍ତୃତ୍ୱେନ ପ୍ରଯୁଜ୍ୟମାନୋଽସ୍ୱତନ୍ତ୍ରଃ ପୁରୁଷଃ କଥଂ ତାନି କର୍ମାଣି ତ୍ୟଜେତ୍ ? ଈଶ୍ୱରେଣୈବ ଜ୍ଞାନମାର୍ଗେ ପ୍ରଯୁଜ୍ୟମାନଃ ଶୁଭାନ୍ୟଶୁଭାନି ଚ ତ୍ୟକ୍ଷ୍ୟତୀତି ଚେତ୍ ? ଏବଂ ସତି ବୈଷମ୍ୟନୈର୍ଘୃଣ୍ୟାଭ୍ୟାମୀଶ୍ୱରସ୍ୟାପି ପ୍ରୟୋଜକ-କର୍ତ୍ତୃତ୍ୱାତ୍ ପୁଣ୍ୟପାପସମ୍ବନ୍ଧଃ ସ୍ୟାଦିତ୍ୟାଶଙ୍କ୍ୟାହ—ନ କର୍ତ୍ତୃତ୍ୱମିତିଦ୍ୱାଭ୍ୟାମ୍ । ପ୍ରଭୁରୀଶ୍ୱରୋ ଜୀବଲୋକସ୍ୟ କର୍ତ୍ତୃତ୍ୱାଦିକଂ ନ ସୃଜତି । କିନ୍ତୁ ଜୀବସ୍ୟ

ସ୍ୱଭାବୋଽବିଦ୍ୟୈବ କର୍ତ୍ତୃତ୍ୱାଦିରୂପେଣ ପ୍ରବର୍ତ୍ତତେ । ଅନାଦ୍ୟବିଦ୍ୟାକାମବଶାତ୍ ପ୍ରବୃତ୍ତିସ୍ୱଭାବଂ ଜୀବଲୋକମୀଶ୍ୱରଃ କର୍ମସୁ ନିଯୁଙ୍‌କ୍ତେ ନତୁ ସ୍ୱୟମେବ କର୍ତ୍ତୃତ୍ୱାଦିକ-ମୁତ୍ପାଦୟତୀତ୍ୟର୍ଥଃ ।

ବକ୍ତବ୍ୟ—ଏ ଶ୍ଳୋକରେ 'ସ୍ୱଭାବ' ଶବ୍ଦ ପ୍ରକୃତି ଅର୍ଥରେ ପ୍ରଯୁକ୍ତ ହୋଇଅଛି । ( ତୃତୀୟ ଅଧ୍ୟାୟ ୨୭ଶ ଓ ୩୩ଶ ଶ୍ଳୋକ ଦେଖ ) । ବେଦରେ ଉକ୍ତ ଅଛି ଯେ ଈଶ୍ୱରହିଁ ଲୋକକୁ ପାପ ବା ପୁଣ୍ୟରେ ପ୍ରବର୍ତ୍ତିତ କରନ୍ତି । ଜୀବାତ୍ମା ପରମାତ୍ମାଙ୍କର ଅଂଶ ( ଗୀତା ୧୫।୭ ), ତେଣୁ ଜୀବାତ୍ମାହିଁ ପାପପୁଣ୍ୟର ପ୍ରବର୍ତ୍ତକ—ଏହିପରି ସନ୍ଦେହ ହେବା ସ୍ୱାଭାବିକ । ତେଣୁ ଏ ଶ୍ଳୋକ ଏବଂ ଏହାର ପରବର୍ତ୍ତୀ ୧୫ଶ ଶ୍ଳୋକରେ ଭଗବାନ୍ ସାଂଖ୍ୟଦର୍ଶନର ତତ୍ତ୍ୱ ଅନୁସାରେ ଅର୍ଜୁନଙ୍କୁ ବୁଝାଉ ଅଛନ୍ତି ଯେ—ଆତ୍ମା ଅକର୍ତ୍ତା, ପ୍ରକୃତିହିଁ ସବୁ କାର୍ଯ୍ୟ କରେ, ତେଣୁ ଏଠାରେ ସାଂଖ୍ୟଦର୍ଶନର ତତ୍ତ୍ୱ ସଂକ୍ଷେପରେ ଉକ୍ତ ହେଉଅଛି :—

ସାଂଖ୍ୟମତରେ ଜୀବ ଚୈତନ୍ୟ ଅକର୍ତ୍ତା, ପ୍ରକୃତି ଜଡ଼ା । ପୁରୁଷ ଓ ପ୍ରକୃତିର ସଂଯୋଗବଶତଃ ପୁରୁଷର ଧର୍ମ ପ୍ରକୃତିରେ ଏବଂ ପ୍ରକୃତିର ଧର୍ମ ପୁରୁଷରେ ଉପଚରିତ ହୁଏ; ଏହି ହେତୁରୁ ପ୍ରକୃତି ଜଡ଼ା ହେଲେହେଁ ତାହା ସଚେତନ ପରି ବୋଧ ହୁଏ ଏବଂ ଆତ୍ମା ଅକର୍ତ୍ତା ହେଲେହେଁ ତାହାଙ୍କୁ କର୍ତ୍ତା ବୋଲି ମନେ କରାଯାଏ । ସାଂଖ୍ୟଦର୍ଶନ, ପୁରୁଷ ଭିନ୍ନ ପରମ ପୁରୁଷ ବା ପରମେଶ୍ୱରଙ୍କର ଅସ୍ତିତ୍ୱ ସ୍ୱୀକାର କରେ ନାହିଁ, ତେଣୁ ସାଂଖ୍ୟବାଦୀମାନେ ନିରୀଶ୍ୱର । ଏ ଶ୍ଳୋକରେ ଯେଉଁ 'ପ୍ରଭୁ' ଶବ୍ଦର ପ୍ରୟୋଗ ହୋଇଅଛି, ସାଂଖ୍ୟମତରେ ତାହା ଦେହ ଓ ଇନ୍ଦ୍ରିୟାଦିର ଅଧିପତି ପୁରୁଷ ବା ଆତ୍ମା । ବେଦାନ୍ତବାଦୀମାନେ ଏହାର ଅର୍ଥ 'ପରମେଶ୍ୱର' ବୋଲି କହନ୍ତି । ସେ ଯାହା ହେଉ ଉଭୟତଃ ଜୀବାତ୍ମା ବା ପରମାତ୍ମାଙ୍କଠାରେ କର୍ତ୍ତୃତ୍ୱ ଆରୋପିତ ହୁଏ ନାହିଁ । ସାଂଖ୍ୟବାଦୀମାନେ ପୁରୁଷ ଓ ପ୍ରକୃତିକୁ ପଙ୍ଗୁ ଓ ଅନ୍ଧ ସଙ୍ଗେ ତୁଳନା କରିଅଛନ୍ତି । ପଙ୍ଗୁ ଚାଲିପାରେ ନାହିଁ, ଅନ୍ଧ ଦେଖି ପାରେ ନାହିଁ, କିନ୍ତୁ ଉଭୟେ ନିକଟବର୍ତ୍ତୀ ହେଲେ, ପଙ୍ଗୁ ଅନ୍ଧର କାନ୍ଧ ଉପରକୁ ଉଠେ । ସେତେବେଳେ ଉଭୟଙ୍କ ସାହାଯ୍ୟରେ ଗମନ କାର୍ଯ୍ୟ ହୁଏ । ସାଂଖ୍ୟମତରେ ପୁରୁଷ ଓ ପ୍ରକୃତି ସଂଯୋଗରେ ଏହି ଭାବରେ ସୃଷ୍ଟିକ୍ରିୟା ହୋଇଥାଏ । 'ପଙ୍ଗ୍ୱନ୍ଧବତ୍ ଉଭୟୋରପି ସଂଯୋଗ ସ୍ତତ୍କୃତଃ ସର୍ଗଃ' - ସାଂଖ୍ୟକାରିକାରେ ଏହିପରି ଉକ୍ତ ହୋଇଅଛି । ଅନାଦିକାଳରୁ ଏହିପରି ସୃଷ୍ଟିଚକ୍ର ଚାଲି ଆସୁଅଛି । ଏହା ପ୍ରକୃତିରହିଁ ଲୀଳା । ଗୀତା ମତରେ ପ୍ରକୃତି ଓ ପୁରୁଷ ଉଭୟହିଁ ପରମାତ୍ମାଙ୍କର ଅଂଶ ( ଗୀତା ୭।୪-୫ ) । ଏପରି ଅବସ୍ଥାରେ ପ୍ରତ୍ୟକ୍ଷରେ ନ ହେଲେ ମଧ୍ୟ ପରୋକ୍ଷରେ ପରମାତ୍ମାହିଁ ଜୀବର କର୍ମପ୍ରବର୍ତ୍ତକ । ( ଗୀତା ୧୮-୬୧ )

ନାଦତ୍ତେ କସ୍ୟଚିତ୍ ପାପଂ ନ ଚୈବ ସୁକୃତଂ ବିଭୁଃ ।
ଅଜ୍ଞାନେନାବୃତଂ ଜ୍ଞାନଂ ତେନ ମୁହ୍ୟନ୍ତି ଜନ୍ତବଃ । ୧୫ ।

୧୫ । ଅନ୍ୱୟଦୀପିକା—ବିଭୁଃ ( ବିଶ୍ୱବ୍ୟାପୀ ଆତ୍ମା ) କସ୍ୟଚିତ୍ ( କାହାର ମଧ୍ୟ ) ପାପଂ ( ପାପକୁ ) ନ ଆଦତ୍ତେ ( ଗ୍ରହଣ କରନ୍ତି ନାହିଁ ); ସୁକୃତଂ ଚ ଏବ ( ଏବଂ ପୁଣ୍ୟମଧ୍ୟ ) ନ ( ଗ୍ରହଣ କରନ୍ତି ନାହିଁ ); ଅଜ୍ଞାନେନ ( ଅଜ୍ଞାନ ଦ୍ୱାରା ) ଜ୍ଞାନମ୍ ( ଜ୍ଞାନ ) ଆବୃତଂ ( ଆବୃତ ) । ତେନ ( ସେହି ହେତୁରୁ ) ଜନ୍ତବଃ ( ଜୀବଗଣ ) ମୁହ୍ୟନ୍ତି ( ମୋହ ପ୍ରାପ୍ତ ହୁଅନ୍ତି ) ।

**ଅନୁବାଦ**—ବିଶ୍ୱବ୍ୟାପୀ ଆତ୍ମା କୌଣସି ଜୀବର ପାପ ବା ପୁଣ୍ୟ ଗ୍ରହଣ କରନ୍ତି ନାହିଁ, ଅଜ୍ଞାନ ଦ୍ୱାରା ଜ୍ଞାନ ଆବୃତ ଥାଏ ବୋଲି ଜୀବଗଣ ମୋହପ୍ରାପ୍ତ ହୁଅନ୍ତି ।

ସୁବୋଧିନୀ ଟୀକା—ଯସ୍ମାଦେବଂ ତସ୍ମାତ୍-ନାଦତ୍ତ ଇତି । ପ୍ରଯୋଜକୋଽପି ସନ୍ ପ୍ରଭୁଃ କସ୍ୟଚିତ୍ ପାପଂ ସୁକୃତଂ ଚ ନୈବାଦତ୍ତେ ନ ଭଜତେ, ତତ୍ର ହେତୁଃ-ବିଭୁଃ ପରିପୂର୍ଣ୍ଣଃ ଆପ୍ତକାମ ଇତ୍ୟର୍ଥଃ । ଯଦି ସ୍ୱାର୍ଥକାମୟା କାରୟେତ୍ତର୍ହି ତଥାସ୍ୟାତ୍ । ନ ତ୍ୱେତଦସ୍ତି, ଆପ୍ତକାମସ୍ୟୈବାଚିନ୍ତ୍ୟନିଜମାୟୟା ତତ୍ତତ୍ପୂର୍ବକର୍ମାନୁସାରେଣ ପ୍ରବର୍ତ୍ତକତ୍ୱାତ୍ । ନନୁ ଭକ୍ତାନନୁଗୃହ୍ଣତୋଽଭକ୍ତାନ୍ନିଗୃହ୍ଣତଶ୍ଚ ବୈଷମ୍ୟୋପଲମ୍ଭାତ୍ କଥମାପ୍ତକାମତ୍ୱମିତି । ଅତଆହ-ଅଜ୍ଞାନେନେତି । ନିଗ୍ରହୋଽପି ଦଣ୍ଡରୂପୋଽନୁଗ୍ରହ ଏବେତି । ଏବମଜ୍ଞାନେନ ସର୍ବତ୍ର ସମଃ ପରମେଶ୍ୱର ଇତ୍ୟେବଂ ଭୂତଂ ଜ୍ଞାନମାବୃତମ୍ । ତେନ ହେତୁନା ଜନ୍ତବୋ ଜୀବା ମୁହ୍ୟନ୍ତି । ଭଗବତି ବୈଷମ୍ୟଂ ମନ୍ୟନ୍ତେ ଇତ୍ୟର୍ଥଃ ।

ବିବୃତି—ଈଶ୍ୱରଙ୍କ ନିକଟରେ ପାପପୁଣ୍ୟ ବା ସୁଖ ଦୁଃଖ ନାହିଁ । କାରଣ ସେ ଆପ୍ତକାମ ଅର୍ଥାତ୍ ତାଙ୍କର କୌଣସି ବସ୍ତୁ ପାଇବାର ଆକାଙ୍କ୍ଷା ନ ଥାଏ । ଯେବେ ସେ ସ୍ୱାର୍ଥପର ହୋଇଥାଆନ୍ତେ, ତେବେ ଜୀବର ପାପପୁଣ୍ୟ ଗ୍ରହଣ କରନ୍ତେ । ଜୀବ ପରମାତ୍ମାଙ୍କର ଅଂଶ, ତେଣୁ ସେ ମଧ୍ୟ ଆପ୍ତକାମ, ଦ୍ୱନ୍ଦ୍ୱାତୀତ, ସମ ଏବଂ ନିର୍ଦ୍ଦୋଷ । ମାୟା ବା ଅଜ୍ଞାନବଶତଃ ଜୀବ ମୋହିତ ହୋଇ ରହିଅଛି, ତେଣୁ ସେ ନିଜକୁ କର୍ମର କର୍ତ୍ତା ବୋଲି ମନେ କରେ । ଯେତେବେଳେ ତାହାର ଏହି ଅହଂଭାବ ଦୂର ହୋଇଯାଏ, ସେତେବେଳେ ସେ ପାପ ପୁଣ୍ୟର ଫଳଭୋଗୀ ହୁଏ ନାହିଁ । ଏହାହିଁ ଭଗବାନ୍ ଗୀତାର ଅଷ୍ଟାଦଶ ଅଧ୍ୟାୟର ୧୭ଶ ଶ୍ଳୋକରେ ସ୍ପଷ୍ଟ କହିଅଛନ୍ତି ।

ଆତ୍ମା ଅକର୍ତ୍ତା ହେଲେହେଁ ଦେହୋପାଧିବଶତଃ କର୍ତ୍ତା ବୋଲି ପ୍ରତୀୟମାନ ହୁଅନ୍ତି ଏବଂ ଏହି କର୍ତ୍ତୃତ୍ୱ ସ୍ୱୀକାର ନ କଲେ ଧର୍ମାଧର୍ମ, ପାପ ପୁଣ୍ୟ ଓ ବିଧି ନିଷେଧର କୌଣସି ଅର୍ଥ ରହେ ନାହିଁ । ଏହି ହେତୁରୁ ଜୀବର କର୍ତ୍ତୃତ୍ୱ ସ୍ୱୀକାର

ଜ୍ଞାନେନ ତୁ ତଦଜ୍ଞାନଂ ଯେଷାଂ ନାଶିତମାତ୍ମନଃ ।
ତେଷାମାଦିତ୍ୟବଜ୍‌ଜ୍ଞାନଂ ପ୍ରକାଶୟତି ତତ୍ ପରମ୍ । ୧୬ ।

କରିପାଏ; କିନ୍ତୁ ମାୟା ବା ଅଜ୍ଞାନ ଦୂରୀଭୂତ ହୋଇଗଲେ ଏ କର୍ତ୍ତୃତ୍ୱ ଅଭିମାନ ରହେ ନାହିଁ । ଏହି ମାୟା ବା ଅଜ୍ଞାନ ଦୂର କରିବା ପାଇଁ ଲୋକ ଆଜୀବନ ଚେଷ୍ଟା କରିବ—ତେବେ ମୋକ୍ଷପ୍ରାପ୍ତିର ଉପଯୁକ୍ତ ହେବ ।

ଏହା ସାଙ୍ଖ୍ୟଦର୍ଶନର ତତ୍ତ୍ୱ, ବେଦାନ୍ତ ଦର୍ଶନରେ ବ୍ରହ୍ମ ସଗୁଣ ଓ ନିର୍ଗୁଣ ଉଭୟ ଭାବରେ ବର୍ଣ୍ଣିତ ହୋଇ ଅଛନ୍ତି । ନିର୍ଗୁଣ ବ୍ରହ୍ମହିଁ ସମ, ଶାନ୍ତ, ନିଷ୍କ୍ରିୟ, ନିର୍ବିକାର ମାତ୍ର ଜଗତ୍ ପ୍ରପଞ୍ଚର ସ୍ରଷ୍ଟା ରୂପରେ ସେ ସଗୁଣ, କର୍ମ ଫଳଦାତା, ଜୀବର ଗତି, ଭର୍ତ୍ତା, ପ୍ରଭୁ, ସାକ୍ଷୀ, ଶରଣ ଏବଂ ସୁହୃଦ୍ ( ଗୀତା ୯।୧୭-୧୮ ) । ପରଂବ୍ରହ୍ମ ଯେବେ ନିର୍ଗୁଣ ଓ ନିଷ୍କ୍ରିୟ ହୁଅନ୍ତି ତେବେ ଜୀବର ତାଙ୍କ ସଙ୍ଗେ ସମ୍ବନ୍ଧ କଅଣ ? ଏହି ହେତୁରୁ ଗୀତାରେ ନିର୍ଗୁଣ ବ୍ରହ୍ମଙ୍କର ଉଲ୍ଲେଖ ଥିଲେହେଁ ସଗୁଣ ବ୍ରହ୍ମ ଯେ ଜୀବର ଉପାସ୍ୟ ଓ ଗତିମୁକ୍ତି ବିଧାତା ଏହା ସ୍ପଷ୍ଟରୂପେ ଉକ୍ତ ହୋଇଅଛି । ସର୍ବ ଲୋକର ନିୟନ୍ତା ଭଗବାନଙ୍କଠାରେ ଆତ୍ମସମର୍ପଣ କରି ସର୍ବଭୂତ ହିତ ନିମିତ୍ତ ନିଷ୍କାମ କର୍ମଦ୍ୱାରା ତାହାଙ୍କର ଉପାସନା କରିବା ଗୀତାର ଶେଷ ଉପଦେଶ ।

୧୬ । ଅନ୍ୱୟଦୀପିକା—ତୁ ( କିନ୍ତୁ ) ଯେଷାଂ ( ଯେଉଁମାନଙ୍କର ) ତତ୍ ଅଜ୍ଞାନଂ (ସେହି ଅଜ୍ଞାନ ) ଆତ୍ମନଃ ଜ୍ଞାନେନ ( ଆତ୍ମବିଷୟର ଦ୍ୱାରା ବା ଆତ୍ମଜ୍ଞାନ ଦ୍ୱାରା ) ନାଶିତଂ ( ବିନଷ୍ଟ ହୋଇଅଛି ) ତେଷାଂ ( ସେମାନଙ୍କର ) ତତ୍ ଜ୍ଞାନଂ ( ସେହି ଆତ୍ମଜ୍ଞାନ ) ଆଦିତ୍ୟବତ୍ ( ସୂର୍ଯ୍ୟଙ୍କ ପରି ) ପରଂ ( ପର ବ୍ରହ୍ମଙ୍କୁ ) ପ୍ରକାଶୟତି ( ପ୍ରକାଶ କରେ ) ।

ଅନୁବାଦ—କିନ୍ତୁ ଯେଉଁମାନଙ୍କର ଆତ୍ମବିଷୟକ ଜ୍ଞାନଦ୍ୱାରା ସେହି ଅଜ୍ଞାନ ବିନଷ୍ଟ ହୋଇଅଛି, ସେମାନଙ୍କର ସେହି ଆତ୍ମଜ୍ଞାନ ସୂର୍ଯ୍ୟଙ୍କ ପରି ସେହି ପରମତତ୍ତ୍ୱକୁ ପ୍ରକାଶ କରିଦିଏ ।

ସୁବୋଧିନୀ ଟୀକା—ଜ୍ଞାନନନ୍ତୁ ନ ମୁହ୍ୟନ୍ତୀତ୍ୟାହ । ଜ୍ଞାନେନେତି । ଭଗବତୋ ଜ୍ଞାନେନ ଯେଷାଂ ତଦ୍‌ବୈଷମ୍ୟୋପଲମ୍ଭକମଜ୍ଞାନଂ ନାଶିତମ୍ । ତଜ୍ଜ୍ଞାନଂ ନାଶୟିତ୍ୱା ତତ୍ ପରଂ ପରିପୂର୍ଣ୍ଣମୀଶ୍ୱରସ୍ୱରୂପଂ ପ୍ରକାଶୟତି । ଯଥାଦିତ୍ୟସ୍ତମୋନିରସ୍ୟ ସମସ୍ତଂ ବସ୍ତୁଜାତଂ ପ୍ରକାଶୟତି ତଦ୍‌ବତ୍ ।

ବକ୍ତବ୍ୟ—ସୂର୍ଯ୍ୟ ଯେପରି ଅନ୍ଧକାର ନାଶକରି ସମସ୍ତବସ୍ତୁ ପ୍ରକାଶିତ କରନ୍ତି ସେହିପରି ଆତ୍ମଜ୍ଞାନ ଜୀବର ସମସ୍ତ ମୋହ ଦୂରକରି ପରମ ପୁରୁଷଙ୍କୁ ପ୍ରକାଶ କରିଦିଏ । ଏହା କର୍ମଯୋଗୀଙ୍କ ଅବସ୍ଥା, ଅଜ୍ଞାନ ହେତୁରୁ ସାଧାରଣ ଲୋକେ ଯେଉଁ ବିଷୟ ଜାଣି ପାରନ୍ତି ନାହିଁ କର୍ମଯୋଗୀ ଆତ୍ମଜ୍ଞାନ ବଳରେ

ତଦ୍‌ବୁଦ୍ଧୟସ୍ତଦାତ୍ମାନସ୍ତନ୍ନିଷ୍ଠାସ୍ତତ୍‌ପରାୟଣାଃ ।
ଗଚ୍ଛନ୍ତ୍ୟପୁନରାବୃତ୍ତିଂ ଜ୍ଞାନନିର୍ଧୂତକଳ୍ମଷାଃ । ୧୭ ।
ବିଦ୍ୟାବିନୟସମ୍ପନ୍ନେ ବ୍ରାହ୍ମଣେ ଗବି ହସ୍ତିନି
ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ । ୧୮ ।

ନିଜର କର୍ତ୍ତୃତ୍ୱ ଓ ଅକର୍ତ୍ତୃତ୍ୱ ଜାଣି ପାରନ୍ତି ଏବଂ ଶେଷରେ ପରମ ପୁରୁଷଙ୍କ ସ୍ୱରୂପ ଅବଗତ ହୋଇ କୃତାର୍ଥ ହୁଅନ୍ତି ।

୧୭ । ଅନ୍ୱୟଦୀପିକା—ତଦ୍‌ବୁଦ୍ଧୟଃ ( ଯାହାଙ୍କର ବୁଦ୍ଧି ତାହାଙ୍କଠାରେ ଅର୍ଥାତ୍ ପରବ୍ରହ୍ମରେ ନିବଦ୍ଧ ), ତଦାତ୍ମାନଃ ( ତାଙ୍କଠାରେ ଅର୍ଥାତ୍ ପରବ୍ରହ୍ମରେ ଯାହାଙ୍କର ଆତ୍ମଭାବ ) ତନ୍ନିଷ୍ଠାଃ ( ତାହାଙ୍କଠାରେ ଅର୍ଥାତ୍ ବ୍ରହ୍ମରେ ଯାହାଙ୍କର ନିଷ୍ଠା ), ତତ୍‌ପରାୟଣାଃ ( ସେ ଅର୍ଥାତ୍ ବ୍ରହ୍ମହିଁ ଯାହାଙ୍କର ପରମଗତି ), ଜ୍ଞାନନିର୍ଧୂତକଳ୍ମଷାଃ ( ଜ୍ଞାନଦ୍ୱାରା ଯାହାଙ୍କର ପାପ ନିବୃତ୍ତ ହୋଇଅଛି ), [ସେହିପରି ଲୋକମାନେହିଁ] ଅପୁନରାବୃତ୍ତିଂ ଗଚ୍ଛନ୍ତି ( ପୁନର୍ଜନ୍ମ ପ୍ରାପ୍ତ ହୁଅନ୍ତି ନାହିଁ ଅର୍ଥାତ୍ ମୋକ୍ଷର ଅଧିକାରୀ ହୁଅନ୍ତି ) ।

ଅନୁବାଦ—ଯାହାଙ୍କର ସ୍ଥିରବୁଦ୍ଧି ସେହି ପରମ ପୁରୁଷଙ୍କଠାରେ ନିବଦ୍ଧ ହୋଇଅଛି, ପରବ୍ରହ୍ମରେ ଯାହାଙ୍କର ଆତ୍ମଭାବ, ଯେଉଁମାନେ ବ୍ରହ୍ମ-ନିଷ୍ଠାଯୁକ୍ତ, ବ୍ରହ୍ମହିଁ ଯାହାଙ୍କର ପରମଗତି, ଜ୍ଞାନଦ୍ୱାରା ଯାହାଙ୍କର ଅଜ୍ଞାନ ବିଦୂରିତ ହୋଇଅଛି, ତାହାଙ୍କୁ ଆଉ ପୁନର୍ବାର ଦେହଧାରଣ କରିବାକୁ ପଡ଼େ ନାହିଁ ।

ସୁବୋଧିନୀ ଟୀକା—ଏବଂଭୂତେଶ୍ୱରୋପାସକାନାଂ ଫଳମାହ-ତଦ୍‌ବୁଦ୍ଧୟ ଇତି । ତସ୍ମିନ୍ନେବ ବୁଦ୍ଧି ର୍ନିଶ୍ଚୟାତ୍ମିକା ଯେଷାମ୍ । ତସ୍ମିନ୍ନେବାତ୍ମା ମନୋ ଯେଷାମ୍ । ତସ୍ମିନ୍ନେବନିଷ୍ଠା ତାତ୍‌ପର୍ଯ୍ୟଂ ଯେଷାମ୍ । ତଦେବ ପରମଯ୍ୟ-ନମାଶ୍ରୟୋ ଯେଷାମ୍ । ତତଶ୍ଚ ତତ୍ ପ୍ରସାଦଲବ୍‌ଧେନାତ୍ମଜ୍ଞାନେନ ନିର୍ଦ୍ଧୂତଂ ନିରସ୍ତଂ କଳ୍ମଷଂ ଯେଷାମ୍ । ତେଽପୁନରାବୃତ୍ତିଂ ମୁକ୍ତିଂ ଯାନ୍ତି ।

ବିବୃତି—ଯେଉଁମାନଙ୍କର ଆତ୍ମଜ୍ଞାନ ଜାତ ହୁଏ, ସେମାନଙ୍କର ବୁଦ୍ଧି ବହିର୍ବିଷୟ ତ୍ୟାଗ କରି ଅନ୍ତରଭିମୁଖୀନ ହୋଇଯାଏ—ସେମାନେ ନିରନ୍ତର-ତନ୍ମନସ୍କ ରହନ୍ତି ଏବଂ ତନ୍ନିଷ୍ଠ ହୋଇ ବ୍ରହ୍ମକୁହିଁ ପରମଗତି ରୂପେ ଗ୍ରହଣ କରନ୍ତି । ଏପରି ଅବସ୍ଥା ଆସିଲେ ଆତ୍ମଜ୍ଞାନଦ୍ୱାରା ସଂସାରମୋହ ବିଦୂରିତ ହୋଇଯାଏ । ସଂସାର ମୋହ ଅପସାରିତ ହେଲେ ଆଉ ପୁନର୍ଜନ୍ମ ହୁଏ ନାହିଁ ।

୧୮ । ଅନ୍ୱୟଦୀପିକା—ପଣ୍ଡିତାଃ (ଆତ୍ମତତ୍ତ୍ୱ ଜାଣିଥିବା ଲୋକମାନେ) ବିଦ୍ୟାବିନୟସମ୍ପନ୍ନେ ( ବିଦ୍ୟା ବିନୟ ଯୁକ୍ତ ) ବ୍ରାହ୍ମଣେ (ବ୍ରାହ୍ମଣ ଠାରେ), ଗବି (ଗୋରୁଠାରେ) ହସ୍ତିନି (ହାତୀଠାରେ), ଶୁନି

ଇହୈବ ତୈର୍ଜିତଃ ସର୍ଗୋ ଯେଷାଂ ସାମ୍ୟେ ସ୍ଥିତଂ ମନଃ ।
ନିର୍ଦ୍ଦୋଷଂ ହି ସମଂ ବ୍ରହ୍ମ ତସ୍ମାଦ୍ ବ୍ରହ୍ମଣି ତେ ସ୍ଥିତାଃ । ୧୯ ।

(କୁକୁର ଠାରେ) ଶ୍ୱପାକେ ଚ ଏବ (ଏବଂ ଚଣ୍ଡାଳଠାରେ) ସମଦର୍ଶିନଃ (ସମଦର୍ଶୀ) [ହୁଅନ୍ତି] ।

ଅନୁବାଦ—ଆତ୍ମତତ୍ତ୍ୱ ଜାଣିଥିବା ଜ୍ଞାନୀମାନେ ବିଦ୍ୟାବିନୟଯୁକ୍ତ ବ୍ରାହ୍ମଣଠାରେ, ଗୋରୁଠାରେ, ହାତୀଠାରେ, କୁକୁରଠାରେ ଓ ଚଣ୍ଡାଳଠାରେ ସମଦୃଷ୍ଟିସମ୍ପନ୍ନ ହୋଇ ଥାଆନ୍ତି ।

ସୁବୋଧିନୀ ଟୀକା—ଶାସ୍ତ୍ରଶାସ୍ତ୍ରେ ଜ୍ଞାନିନୋ ଯେ(ଽ)ପୁନରାବୃତ୍ତିଂ ଗଚ୍ଛନ୍ତୀତ୍ୟପେକ୍ଷାୟାମାହ—ବିଦ୍ୟାବିନୟସମ୍ପନ୍ନ ଇତି । ବିଷମେଷ୍ୱପି ସମଂ ବ୍ରହ୍ମୈବ ଦ୍ରଷ୍ଟୁଂ ଶୀଳଂ ଯେଷାଂ ତେ ପଣ୍ଡିତାଃ । ଜ୍ଞାନିନ ଇତ୍ୟର୍ଥଃ । ତତ୍ର ବିଦ୍ୟାବିନୟାଭ୍ୟାଂ ଯୁକ୍ତେ ବ୍ରାହ୍ମଣେ ଚ । ଶୁନୋ ଯଃ ପଚତି ତସ୍ମିନ୍ ଶ୍ୱପାକେ ଚେତି କର୍ମଣା ବୈଷମ୍ୟମ୍ । ଗବି ହସ୍ତିନି ଶୁନି ଚେତି ଜାତିତୋ ବୈଷମ୍ୟଂ ଦର୍ଶିତମ୍ ।

ବିବୃତି—ନଦୀ, କୂପ, ପୁଷ୍କରିଣୀ ଜଳରେ ପ୍ରତିବିମ୍ବିତ ସୂର୍ଯ୍ୟ ଯେପରି ଚକ୍ଷୁଷ୍ମାନ୍ ବ୍ୟକ୍ତିଙ୍କ ନିକଟରେ ଏକବୋଲି ପ୍ରତୀତ ହୁଅନ୍ତି, ସେହିପରି ଆତ୍ମଜ୍ଞାନସମ୍ପନ୍ନ ଜ୍ଞାନୀ ସର୍ବତ୍ର ଏକ ବ୍ରହ୍ମହିଁ ଦର୍ଶନ କରନ୍ତି । ଏହାହିଁ ଏ ଶ୍ଳୋକର ତାତ୍ପର୍ଯ୍ୟ । ଆତ୍ମଜ୍ଞାନର ଫଳ ସମତ୍ୱ । ତ୍ରିଗୁଣାତୀତ ପରବ୍ରହ୍ମ 'ସମ'; ଶ୍ଳୋକରେ ବିଦ୍ୟାବିନୟଯୁକ୍ତ ବ୍ରାହ୍ମଣ ସାତ୍ତ୍ୱିକ, ଗୋରୁ ରାଜସିକ ଏବଂ ହାତୀ, କୁକୁର ଚଣ୍ଡାଳ ପ୍ରଭୃତି ତାମସିକ, ଏପ୍ରକାରରେ ବିଭିନ୍ନ ଗୁଣଯୁକ୍ତ ପ୍ରାଣୀମାନଙ୍କୁ ଲକ୍ଷ୍ୟ କରି ଯାଇଅଛି ।

୧୯ । ଅନ୍ୱୟଦୀପିକା—ଯେଷାଂ (ଯେଉଁମାନଙ୍କର) ମନଃ (ମନ) ସାମ୍ୟେ ସ୍ଥିତଂ (ସମତାରେ ଅବସ୍ଥିତ), ଇହ ଏବ (ଏହି ଲୋକରେହିଁ) ତୈଃ (ସେମାନଙ୍କ ଦ୍ୱାରା) ସର୍ଗଃ (ସଂସାର) ଜିତଃ (ଜିତହୁଏ) । ହି (ଯେହେତୁ) ବ୍ରହ୍ମ (ବ୍ରହ୍ମ) ସମଂ ନିର୍ଦ୍ଦୋଷଂ ଚ (ସମ ଏବଂ ନିର୍ଦ୍ଦୋଷ), ତସ୍ମାତ୍ (ସେହି ହେତୁରୁ) ତେ (ସମଦର୍ଶୀ ପୁରୁଷମାନେ) ବ୍ରହ୍ମଣି ଏବ (ବ୍ରହ୍ମରେହିଁ) ସ୍ଥିତାଃ (ଅବସ୍ଥାନ କରନ୍ତି) ।

ଅନୁବାଦ—ଯେଉଁମାନଙ୍କ ମନ ସାମ୍ୟ ଭାବରେ ଅବସ୍ଥିତ ଅର୍ଥାତ୍ ସବୁ ବିଷୟରେ ବୈଷମ୍ୟ ରହିତ, ସେମାନେ ଇହଲୋକରେ ଥାଇ ସଂସାରକୁ ଅର୍ଥାତ୍ ମୃତ୍ୟୁଲୋକକୁ ଜୟ କରନ୍ତି; କାରଣ ବ୍ରହ୍ମ ନିର୍ଦ୍ଦୋଷ ଓ ସମ, ସୁତରାଂ ସେହି ସମଦର୍ଶୀ ପୁରୁଷମାନେ ବ୍ରହ୍ମରେହିଁ ଅବସ୍ଥାନ କରନ୍ତି ଅର୍ଥାତ୍ ବ୍ରହ୍ମଭାବ ପ୍ରାପ୍ତ ହୁଅନ୍ତି ।

ନ ପ୍ରହୃଷ୍ୟେତ୍ ପ୍ରିୟଂ ପ୍ରାପ୍ୟ ନୋଦ୍ୱିଜେତ୍ ପ୍ରାପ୍ୟ ଚାପ୍ରିୟମ୍ ।
ସ୍ଥିରବୁଦ୍ଧିରସଂମୂଢ଼ୋ ବ୍ରହ୍ମବିଦ୍ ବ୍ରହ୍ମଣି ସ୍ଥିତଃ । ୨୦ ।

**ସୁବୋଧିନୀ ଟୀକା**—ନନୁ ବିଷମେଷୁ ସମଦର୍ଶନଂ କଷ୍ଟଙ୍କୃତଂ ଭୁଞ୍ଜନ୍ତୋଽପି କଥଂ ତେ ପଣ୍ଡିତାଃ ?, ଯଥାହ ଗୌତମଃ—ସମାସମାଭ୍ୟାଂ ବିଷମେ ସମେ ପୂଜାତ ଇତି । ଅସ୍ୟାର୍ଥଃ ସମାୟ ପୂଜାୟାଂ ବିଷମେ ପ୍ରକାରେ କୃତେ ସତି ବିଷମାୟ ଚ ସମେ ପ୍ରକାରେ କୃତେ ସତି ସ ପୂଜକ ଇହଲୋକାତ୍ ପରଲୋକାଚ୍ଚ ହୀୟତ ଇତି । ତତ୍ରାହ ଇହୈବେତି । ଇହୈବ ଜୀବଦ୍ଭିରେବ ତୈଃ ସର୍ଗୋ ଜିତଃ ସଂସାରଃ, କିନ୍ତୁ ନିରସ୍ତଃ । କୈଃ ? ଯେଷାଂମନଃସାମ୍ୟେ ସମତ୍ୱେ ସ୍ଥିତମ୍ । ତତ୍ର ହେତୁଃ—ହି ଯସ୍ମାତ୍ ବ୍ରହ୍ମ ସମଂ ନିର୍ଦୋଷଂ ଚ । ତସ୍ମାତ୍ତେ ସମଦର୍ଶିନୋ ବ୍ରହ୍ମଣ୍ୟେବ ସ୍ଥିତାଃ । ବ୍ରହ୍ମଭାବଂ ପ୍ରାପ୍ତା ଇତ୍ୟର୍ଥଃ । ଗୌତମୋକ୍ତସ୍ତୁ ଦୋଷୋ ବ୍ରହ୍ମଭାବପ୍ରାପ୍ତେଃ ପୂର୍ବମେବ । ପୂଜାତ ଇତି ପୂଜକାବସ୍ଥାଶ୍ରବଣାତ୍ ।

**ବିବୃତ**—ଯେଉଁମାନେ ସର୍ବତ୍ର ବ୍ରହ୍ମ ଦର୍ଶନ କରନ୍ତି ସେମାନଙ୍କର ଭେଦବୁଦ୍ଧିଃ ରହେନାହିଁ । ଏହି ହେତୁରୁ ଜୀବନ କାଳ ମଧ୍ୟରେ ହିଁ ସେମାନେ ମାୟାମୁକ୍ତ ହୋଇ ବ୍ରହ୍ମଭୂତ ହୋଇ ଯାଆନ୍ତି । ସେପରି ଅବସ୍ଥା ନ ଆସିବା ଯାଏ ଲୋକର ଦ୍ୱୈତବୁଦ୍ଧି ରହେ । ଏହି ଦ୍ୱୈତ ବୁଦ୍ଧି ବା ବୈଷମ୍ୟଜ୍ଞାନ କେବଳ ଅଜ୍ଞତା ବା ବ୍ରହ୍ମଜ୍ଞାନ ଅଭାବର ପରିଚାୟକ ।

୨୦ । **ଅନ୍ୱୟ ଦୀପିକା**—ବ୍ରହ୍ମଣି (ବ୍ରହ୍ମରେ) ସ୍ଥିତଃ (ଅବସ୍ଥିତ) ସ୍ଥିରବୁଦ୍ଧିଃ (ସ୍ଥିରବୁଦ୍ଧି) ଅସମ୍ମୂଢ଼ଃ (ମୋହବର୍ଜିତ) ବ୍ରହ୍ମବିତ୍ (ବ୍ରହ୍ମଜ୍ଞ) [ବ୍ୟକ୍ତି] ପ୍ରିୟଂ (ପ୍ରିୟବସ୍ତୁ) ପ୍ରାପ୍ୟ (ପାଇ) ନ ପ୍ରହୃଷ୍ୟେତ୍ (ଆନନ୍ଦିତ ହୁଅନ୍ତି ନାହିଁ), ଅପ୍ରିୟଂ ଚ ପ୍ରାପ୍ୟ (ଅପ୍ରିୟବସ୍ତୁ ପାଇ ମଧ୍ୟ) ନ ଉଦ୍‌ବିଜେତ୍ (ଉଦ୍‌ବିଗ୍ନ ହୁଅନ୍ତି ନାହିଁ) ।

**ଅନୁବାଦ**—ଏପରି ବ୍ରହ୍ମଜ୍ଞ ବ୍ୟକ୍ତି ସ୍ଥିରବୁଦ୍ଧି, ସର୍ବପ୍ରକାର ମୋହ ବର୍ଜିତ ଏବଂ ବ୍ରହ୍ମରେ ଅବସ୍ଥିତ ସୁତରାଂ ସେ ପ୍ରିୟବସ୍ତୁ ପାଇ ହୃଷ୍ଟ ହୁଅନ୍ତି ନାହିଁ ବା ଅପ୍ରିୟ ସମାଗମରେ ଉଦ୍‌ବିଗ୍ନ ହୁଅନ୍ତି ନାହିଁ ।

**ସୁବୋଧିନୀ ଟୀକା**—ବ୍ରହ୍ମପ୍ରାପ୍ତସ୍ୟ ଲକ୍ଷଣମାହ—ନ ପ୍ରହୃଷ୍ୟେଦିତି । ବ୍ରହ୍ମବିଦ୍‌ଭୂତ୍ୱା ବ୍ରହ୍ମଣ୍ୟେବ ଯଃ ସ୍ଥିତଃ ସ ପ୍ରିୟଂ ପ୍ରାପ୍ୟ ନ ପ୍ରହୃଷ୍ୟେତ୍ ପ୍ରହୃଷ୍ଟ-ହର୍ଷବାନ୍ ସ୍ୟାତ୍ । ଅପ୍ରିୟଂ ପ୍ରାପ୍ୟ ଚ ନୋଦ୍ୱିଜେତ୍ । ନ ବିଷୀଦେଦିତ୍ୟର୍ଥଃ । ଯତଃ ସ୍ଥିରବୁଦ୍ଧିଃ । ସ୍ଥିରା ନିଶ୍ଚଳା ବୁଦ୍ଧିର୍ଯସ୍ୟ । ତତ୍ କୁତଃ ? ଯତୋଽସମ୍ମୂଢ଼ୋ ନିବୃତ୍ତ ମୋହଃ ।

ବାହ୍ୟସ୍ପର୍ଶେଷ୍ୱସକ୍ତାତ୍ମା ବିନ୍ଦତ୍ୟାତ୍ମନି ଯତ୍ ସୁଖମ୍ ।
ସ ବ୍ରହ୍ମଯୋଗଯୁକ୍ତାତ୍ମା ସୁଖମକ୍ଷୟମଶ୍ନୁତେ । ୨୧ ।

**ବିବୃତି—ବ୍ରହ୍ମଜ୍ଞ ବ୍ୟକ୍ତିଙ୍କୁ ଚିହ୍ନିବାର ଉପାୟ କଅଣ ? ପ୍ରିୟବସ୍ତୁ ଲାଭରେ ଯେ ଅନନ୍ଦିତ ହୁଅନ୍ତି ନାହିଁ ବା ଅପ୍ରିୟ ସମାଗମରେ ଯାହାଙ୍କର ଉଦ୍‌ବେଗ ହୁଏ ନାହିଁ ସେ ଏକା ସ୍ଥିରବୁଦ୍ଧି ବା ବ୍ରହ୍ମଜ୍ଞ । ତାହାଙ୍କରହିଁ ବିଷୟ ମୋହ ଅପସାରିତ ହୋଇଥାଏ । ସମ୍ଭିତ ସ୍ତରରେ ଉପନୀତ ନ ହେଲେ ସାଧକ ଏ ଅବସ୍ଥା ଲାଭ କରିପାରନ୍ତି ନାହିଁ ।**

୨୧ । **ଅନ୍ୱୟଦୀପିକା—ବାହ୍ୟସ୍ପର୍ଶେଷୁ ( ବାହ୍ୟବିଷୟସମୂହରେ ) ଅସକ୍ତାତ୍ମା ( ଅସକ୍ତଶୂନ୍ୟବ୍ୟକ୍ତି ) ଆତ୍ମନି ( ଅନ୍ତଃକରଣରେ ) ଯତ୍ସୁଖଂ ( ଯେଉଁ ସୁଖ ) ବିନ୍ଦତି ( ଲାଭ କରନ୍ତି ), ସଃ ବ୍ରହ୍ମଯୋଗଯୁକ୍ତାତ୍ମା ( ସେହି ବ୍ରହ୍ମଯୋଗଯୁକ୍ତ ବ୍ୟକ୍ତି ) ଅକ୍ଷୟଂ ସୁଖଂ ( ଅକ୍ଷୟ ସୁଖ ) ଅଶ୍ନୁତେ ( ଲାଭ କରନ୍ତି ) ।**

**ଅନୁବାଦ—ବାହ୍ୟ ପଦାର୍ଥ ସଂଯୋଗରେ ଅର୍ଥାତ୍ ବିଷୟ ଭୋଗରେ ଯାହାଙ୍କର ମନ ଅସକ୍ତ ନୁହେ, ତାହାଙ୍କର ହିଁ ଆତ୍ମସୁଖ ଲାଭ ହୁଏ ଏବଂ ବ୍ରହ୍ମରେ ସମାହିତ ସେହି ପୁରୁଷ ଅକ୍ଷୟ ସୁଖ ଲାଭ କରନ୍ତି ।**

**ସୁବୋଧିନୀ ଟୀକା—ମୋହ ନିବୃତ୍ତ୍ୟା ବୁଦ୍ଧିସ୍ଥୈର୍ଯ୍ୟେ ହେତୁମାହ—ବାହ୍ୟସ୍ପର୍ଶେଷ୍ୱିତି, ଇନ୍ଦ୍ରିୟୈଃ ସ୍ପୃଶ୍ୟନ୍ତ ଇତି ସ୍ପର୍ଶା ବିଷୟାଃ । ବାହ୍ୟେନ୍ଦ୍ରିୟବିଷୟେଷ୍ୱସକ୍ତାତ୍ମାଽନାସକ୍ତଚିତ୍ତ ଆତ୍ମନି ଅନ୍ତଃକରଣେ ଯଦୁପଶମାତ୍ମକଂ ସାତ୍ତ୍ୱିକଂ ସୁଖଂ ତଦ୍ ବିନ୍ଦତି ଲଭତେ । ସ ଚୈ୍ୱପଶମସୁଖଂ ଲବ୍ଧ୍ୱା ବ୍ରହ୍ମଣି ଯୋଗେନ ସମାଧିନାଯୁକ୍ତ ସ୍ତଦୈକ୍ୟଂପ୍ରାପ୍ତ ଆତ୍ମା ଯସ୍ୟ ସୋଽକ୍ଷୟଂ ସୁଖ ମଶ୍ନୁତେ ପ୍ରାପ୍ନୋତି ।**

ବିବୃତି—ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ—ଏଗୁଡ଼ିକ ଇନ୍ଦ୍ରିୟ ଗ୍ରାହ୍ୟ ବିଷୟ; ଏସବୁ ବାହ୍ୟ ବିଷୟରେ ଆସକ୍ତ ରହିଲେ, ଚିତ୍ତ ସର୍ବଦା ବିଚଳିତ ଓ ବହିର୍ମୁଖ ରହେ । ଯେତେବେଳେ ଚିତ୍ତ ବାହ୍ୟ ବିଷୟ ସୁଖରେ ଅନାସକ୍ତ ହୋଇ ନିଶ୍ଚଳ ରହେ, ସେତେବେଳେ ତାହାର ଶାନ୍ତ ସୁଖର ସୀମା ରହେ ନାହିଁ । କାରଣ ଯେତେବେଳ ଯାଏ କାମନା ଥାଏ, ସେତେବେଳ ଯାଏ ସୁଖ ଦୂରରେ ରହେ । ନିଷ୍କାମ ଚିତ୍ତହିଁ ସୁଖର ପରାକାଷ୍ଠା ଲାଭ କରେ । ଚିତ୍ତ ନିଷ୍କାମ ହେଲେ, ବ୍ରହ୍ମରେ ଚିତ୍ତ ସମାହିତ ହୁଏ ଏବଂ ସେ ଅବସ୍ଥାରେ କର୍ମଯୋଗୀ ବିମଳ ଆନନ୍ଦ ଉପଭୋଗ କରନ୍ତି ।

ଯେ ହି ସଂସ୍ପର୍ଶଜା ଭୋଗା ଦୁଃଖଯୋନୟ ଏବ ତେ ।
ଆଦ୍ୟନ୍ତବନ୍ତଃ କୌନ୍ତେୟ ନ ତେଷୁ ରମତେ ବୁଧଃ ।୨୨।
ଶକ୍ନୋତୀହୈବ ଯଃ ସୋଢୁଂ ପ୍ରାକ୍ଶରୀରବିମୋକ୍ଷଣାତ୍ ।
କାମକ୍ରୋଧୋଦ୍ଭବଂ ବେଗଂ ସ ଯୁକ୍ତଃ ସ ସୁଖୀ ନରଃ । ୨୩ ।

୨୨ । **ଅନ୍ୱୟଦୀପିକା**—[ ହେ ] କୌନ୍ତେୟ, ଯେ ଭୋଗାଃ ( ଯେଉଁସବୁ ସୁଖ ଭୋଗ ) ସଂସ୍ପର୍ଶଜାଃ ( ଇନ୍ଦ୍ରିୟ ବିଷୟରୁ ଉତ୍ପନ୍ନ ) ତେ ( ସେ ସବୁ ) ଦୁଃଖଯୋନୟଃ ଏବ (କଷ୍ଟର ଦୁଃଖର କାରଣ), ଆଦ୍ୟନ୍ତବନ୍ତଃ (ଆଦି ଓ ଅନ୍ତଯୁକ୍ତ), ତେଷୁ (ସେ ସବୁରେ) ବୁଧଃ (ପଣ୍ଡିତ ଲୋକ) ନ ରମତେ ( ପ୍ରୀତିଲାଭ କରନ୍ତି ନାହିଁ । )

ସୁବୋଧିନୀ ଟୀକା—ନ ହି ପ୍ରିୟବିଷୟଭୋଗାନାମପି କର୍ତ୍ତୃତ୍ୱେ କଥଂ ମୋକ୍ଷଃ ପୁରୁଷାର୍ଥଃସ୍ୟାତ୍ ? ତତ୍ରାହ—ଯେହୀତି । ସଂସ୍ପର୍ଶା ବିଷୟାଃ । ତେଭ୍ୟୋଜାତା ଯେ ଭୋଗାଃ ସୁଖାନି । ତେ ହି ବର୍ତ୍ତମାନକାଳେଽପି ସ୍ପର୍ଦ୍ଧା-ସୂୟାଦି ବ୍ୟାପ୍ତତ୍ୱାଦ୍ ଦୁଃଖସ୍ୟୈବଯୋନୟଃ କାରଣଭୂତାଃ । ତଥାଦ୍ୟନ୍ତୋଽନ୍ତବନ୍ତଶ୍ଚ । ଅତୋ ବିବେକୀ ତେଷୁ ନ ରମତେ ।

ବିବୃତ—ବିଷୟ ଭୋଗ ଜନିତ ସୁଖମାନଙ୍କେ କ୍ଷଣସ୍ଥାୟୀ । ବିଷୟ ଭୋଗରେ ବାଧା ଜାତ ହେଲେ, ତାହା ସବୁ ଦୁଃଖର କାରଣ ହୁଏ । ଏଥିରୁ ବୁଝାଯାଏ, ବିଷୟପ୍ରତି ଅନୁରାଗହିଁ ଦୁଃଖର କାରଣ ଏବଂ ସେହି ଅନୁରାଗର ନିବୃତ୍ତିହିଁ ପରମ ସୁଖ । ବିଷୟ ଭୋଗରେ ଲିପ୍ତ ହେଲେ, କ୍ରମେ ଭୋଗ ପିପାସା ବଢ଼େ, ତେଣୁ କାର୍ଯ୍ୟତଃ ଦୁଃଖର ସ୍ରୋତ ମଧ୍ୟ ବଢ଼ିଥାଏ । ତେଣୁ ପଣ୍ଡିତ ଲୋକ ଏହି ଦୁଃଖମୟ ବିଷୟ ରାଜ୍ୟରେ ପ୍ରବେଶ କରନ୍ତି ନାହିଁ ।

୨୩ । **ଅନ୍ୱୟଦୀପିକା**—ଯଃ ( ଯେ ) ଶରୀରବିମୋକ୍ଷଣାତ୍ପ୍ରାକ୍ (ଦେହ ତ୍ୟାଗ କରିବାର ପୂର୍ବେ) କାମକ୍ରୋଧୋଦ୍ଭବଂ (କାମ ଓ କ୍ରୋଧରୁ ଉତ୍ପନ୍ନ ବେଗକୁ ) ଇହୈବ ( ଇହଲୋକରେହିଁ ) ସୋଢୁଂ ( ସହିବାକୁ ) ଶକ୍ନୋତି ( ସମର୍ଥ ହୁଅନ୍ତି ) ସ ଯୁକ୍ତଃ ( ସେ ଏକା ଯୋଗୀ ) ସ ନରଃ ସୁଖୀ ( ସେହି ଲୋକହିଁ ସୁଖୀ ) ।

ଅନୁବାଦ—ଏ ସଂସାରରେ ଯେଉଁ ଲୋକ ଦେହ ତ୍ୟାଗ କରିବା ପୂର୍ବେ ଅର୍ଥାତ୍ ଆମରଣ କାମ କ୍ରୋଧାଦିର ବେଗ ପ୍ରତିରୋଧ କରି ପାରନ୍ତି, ସେ ଏକା ଯୋଗୀ ଏବଂ ସୁଖୀ ।

ସୁବୋଧିନୀ ଟୀକା—ତସ୍ମାନ୍ମୋକ୍ଷ ଏବ ପରମଃ ପୁରୁଷାର୍ଥଃ । ତସ୍ୟ ଚ କାମକ୍ରୋଧବେଗୋଽତିପ୍ରତିପକ୍ଷଃ । ଅତ ସ୍ତତ୍ ସହନସମର୍ଥ ଏବ ମୋକ୍ଷଭାଗିତ୍ୟାହ—ଶକ୍ନୋତୀତି । କାମାତ୍ କ୍ରୋଧାଚୋଦ୍ଭବତି ଯୋ

ଯୋଽନ୍ତଃସୁଖୋଽନ୍ତରାରାମସ୍ତଥାନ୍ତର୍ଜ୍ୟୋତିରେବ ଯଃ ।
ସ ଯୋଗୀ ବ୍ରହ୍ମନିର୍ବାଣଂ ବ୍ରହ୍ମଭୂତୋଽଧିଗଚ୍ଛତି । ୨୪ ।

ବେଗୋ ମନୋନେତ୍ରାଦିକ୍ଷୋଭଲକ୍ଷଣଃ । ତମିହୈବ ତଦୁଦ୍ଭବ ସମୟ ଏବ ଯୋ ନରଃ ସୋଢ଼ୁଂ ପ୍ରତିରୋଦ୍ଧୁଂ ଶକ୍ନୋତି । ତଦପି ନ କ୍ଷଣମାତ୍ରମ୍ । କିନ୍ତୁ ଶରୀର-ବିମୋକ୍ଷଣାତ୍ ପ୍ରାକ୍ । ଯାବତ୍ ଦେହପାତମିତ୍ୟର୍ଥଃ । ଯଃ ଏବଂଭୂତ ଏବ ଯୁକ୍ତଃ ସମାହିତଃ ସୁଖୀ ଚ ଭବତି । ନାନ୍ୟଃ । ଯଦ୍ୱା ମରଣାଦୂର୍ଦ୍ଧ୍ୱଂ ବିଲପନ୍ତୀଭିର୍ଯୁ-ବତୀଭିରାଲିଙ୍ଗ୍ୟମାନୋଽପି ପୁତ୍ରାଦିଭିର୍ଦହ୍ୟମାନୋଽପି ଯଥା ପ୍ରାଣଶୂନ୍ୟଃ କାମକ୍ରୋଧବେଗଂ ସହତେ ତଥା ମରଣାତ୍ ପ୍ରାଗପି ଜୀବନ୍ନେବ ଯଃ ସହତେ ସ ଏବଂଯୁକ୍ତଃ ସୁଖୀତ୍ୟର୍ଥଃ । ତଦୁକ୍ତଂ ବଶିଷ୍ଠେନ—ପ୍ରାଣେ ଗତେ ଯଥା ଦେହଃ ସୁଖଂ ଦୁଃଖଂ ନ ବିନ୍ଦତି । ତଥା ଚେତ୍ ପ୍ରାଣଯୁକ୍ତୋଽପି ସ କୈବଲ୍ୟାଶ୍ରୟୋ ଭବେଦିତି ।

ବିବୃତି—ଦ୍ୱିତୀୟ ଅଧ୍ୟାୟରେ ସୁଖ ଦୁଃଖ ସହିବା ପାଇଁ ଯେଉଁ ଉପଦେଶ ଦିଆ ଯାଇଅଛି, ଏହା ତାହାରହିଁ ବିସ୍ତାର । ଇନ୍ଦ୍ରିୟ ଗ୍ରାହ୍ୟ ପଦାର୍ଥ-ସମୂହ ଲାଭ କରିବା ପାଇଁ ଯେଉଁ ତୀବ୍ର ତୃଷ୍ଣାର ଉଦୟ ହୁଏ, ତାହାର ନାମ 'କାମ ।' ଏହି କାମ ପୂର୍ତ୍ତିରେ ବାଧା ଜାତ ହେଲେ, ମନରେ ଯେଉଁ ଉତ୍ତେଜନା ହୁଏ, ତାହାର ନାମ 'କ୍ରୋଧ ।' ଏହି ଦୁଇ ବୃତ୍ତିର ବେଗ ଜ୍ଞାନର ପ୍ରତିକୂଳ ଓ ନିତାନ୍ତ ଦୁର୍ନିବାର୍ଯ୍ୟ । ମନୋବେଗ ଇନ୍ଦ୍ରିୟ ଶକ୍ତିରେ ସଞ୍ଚାରିତ ହେବା ପୂର୍ବେ ଯେ ସେହି ବେଗ ସମ୍ବରଣ କରି ପାରନ୍ତି, ଅର୍ଥାତ୍ ଇନ୍ଦ୍ରିୟାଭିମୁଖ ଗତିକୁ ଆତ୍ମା ଆଡ଼କୁ ଫେରାଇ ଆଣି ପାରନ୍ତି, ସେହି ଏକା ଯୋଗଯୁକ୍ତ ଓ ସୁଖୀ ।

ଏ ଶ୍ଲୋକରେ 'ଶରୀର ବିମୋକ୍ଷଣାତ୍ ପ୍ରାକ୍' ଏହାର ଅର୍ଥ ଶରୀର ତ୍ୟାଗ ପୂର୍ବେ; ଶ୍ରୀଧର ସ୍ୱାମୀ ଯୋଗବାଶିଷ୍ଠ ରାମାୟଣରୁ ଗୋଟିଏ ଶ୍ଲୋକ ଉଦ୍ଧାର କରି କଥାଟିକୁ ଏହିପରି ବୁଝାଇ ଅଛନ୍ତି; ମୃତ୍ୟୁ ପରେ ବିକଳ କ୍ରନ୍ଦନ କରୁଥିବା ଯୁବତୀମାନଙ୍କ ଦ୍ୱାରା ମୃତବ୍ୟକ୍ତି ଆଲିଙ୍ଗିତ ଏବଂ ପୁତ୍ର ପ୍ରଭୃତିଙ୍କଦ୍ୱାରା ଦଗ୍ଧ-ହେଲେହେଁ ଯେପରି କାମ କ୍ରୋଧର ବେଗକୁ ସହେ, ସେହିପରି ମୃତ୍ୟୁ ପୂର୍ବେ ଯେ ସହିପାରେ ସେହି ଏକା ଯୋଗୀ ଓ ସୁଖୀ ।

[ ସ୍ୱାମୀଙ୍କ ଟୀକାରେ ଶ୍ଲୋକ ଦେଖ ]

୨୪ । ଅନ୍ୱୟଦୀପିକା—ଯଃ ଅନ୍ତଃସୁଖଃ ( ଆତ୍ମାରେ ଯାହାଙ୍କର ସୁଖ ), ଅନ୍ତରାରାମଃ ( ଆତ୍ମାରେ ଯେ ପ୍ରୀତି ଅନୁଭବ କରନ୍ତି ), ତଥା ଯଃ ଅନ୍ତର୍ଜ୍ୟୋତିଃ ଏବ ( ଏବଂ ଅନ୍ତରରେ ଯାହାଙ୍କର ଆଲୋକ ), ସଃ ଯୋଗୀ ( ସେହି କର୍ମଯୋଗୀ ) ବ୍ରହ୍ମଭୂତଃ ( ବ୍ରହ୍ମଭାବ ପ୍ରାପ୍ତହୋଇ ) ବ୍ରହ୍ମ-ନିର୍ବାଣଂ ( ବ୍ରହ୍ମରେ ଲୟ ବା ମୋକ୍ଷ ) ଅଧିଗଚ୍ଛତି ( ପ୍ରାପ୍ତ ହୁଅନ୍ତି ) ।

ଲଭନ୍ତେ ବ୍ରହ୍ମ ନିର୍ବାଣ ମୃଷୟଃ କ୍ଷୀଣକଲ୍ମଷାଃ ।
ଛିନ୍ନଦ୍ୱୈଧା ଯତାତ୍ମାନଃ ସର୍ବଭୂତହିତେରତାଃ । ୨୫ ।

**ଅନୁବାଦ**—ଯାହାଙ୍କର ଅନ୍ତରରେ ଅର୍ଥାତ୍ ଆତ୍ମାରେହିଁ ସୁଖ, ଯାହାଙ୍କର ଅନ୍ତରରେ ଅର୍ଥାତ୍ ଆତ୍ମାରେହିଁ ଆରାମ ବା ଶାନ୍ତି, ଯାହାଙ୍କର ଅନ୍ତର ପ୍ରକାଶମୟ, ସେହି କର୍ମଯୋଗୀ ବ୍ରହ୍ମଜ୍ଞାନ ପ୍ରାପ୍ତହୋଇ ବ୍ରହ୍ମରେ ନିର୍ବାଣପ୍ରାପ୍ତ ହୁଅନ୍ତି ।

**ସୁବୋଧିନୀ ଟୀକା**—ନ କେବଳଂ କାମକ୍ରୋଧବେଗସହନମାତ୍ରେଣ ମୋକ୍ଷଂ ପ୍ରାପ୍ନୋତି । ଅପିତୁ ଯୋଽନ୍ତଃସୁଖ ଇତି; ଅନ୍ତରାତ୍ମନ୍ୟେବ ସୁଖଂ ଯସ୍ୟ, ନ ବିଷୟେଷୁ ଅନ୍ତରେବାରାମ ଆକ୍ରୀଡ଼ା ଯସ୍ୟ, ନ ବହିଃ । ଅନ୍ତରେବ ଜ୍ୟୋତିର୍ଦ୍ଦୃଷ୍ଟିର୍ଯସ୍ୟ । ନ ଗୀତନୃତ୍ୟାଦିଷୁ । ସ ଏବଂ ବ୍ରହ୍ମଣି ଭୂତଃ ସ୍ଥିତଃ ସନ୍ ବ୍ରହ୍ମଣି ନିର୍ବାଣଂ ଲୟଂ ଅଧିଗଚ୍ଛତି ପ୍ରାପ୍ନୋତି ।

**ବିବୃତି**—ଯେ ବାହ୍ୟ ବିଷୟକୁ ଅପେକ୍ଷା ନ କରି ଅନ୍ତରରେ ସୁଖ ଅନୁଭବ କରନ୍ତି; ଯେ ବାହ୍ୟ ବିଷୟ ସୁଖ ଅର୍ଥାତ୍ ସ୍ତ୍ରୀ ପୁତ୍ରାଦିରେ ନ ଭୁଲି ଅନ୍ତରରେ ଆରାମ ଲାଭ କରନ୍ତି, ଯେ ଗୀତ ବାଦ୍ୟ ନୃତ୍ୟାଦିରେ ଦୃଷ୍ଟି ନ ରଖି ଆତ୍ମଦୃଷ୍ଟି ସମ୍ପନ୍ନ, ସେହି କର୍ମଯୋଗୀ ଏକା ବ୍ରହ୍ମରେ ଲୀନ ହୁଅନ୍ତି ଅର୍ଥାତ୍ ତାଙ୍କର ମାୟାଧୀନ ଜୀବଚୈତନ୍ୟ ପରମାତ୍ମାଙ୍କଠାରେ ଲୟ ପ୍ରାପ୍ତ ହୁଅନ୍ତି ।

୨୫ । **ଅନ୍ୱୟ ଦୀପିକା**—କ୍ଷୀଣକଲ୍ମଷାଃ (ନିଷ୍ପାପ) ଛିନ୍ନଦ୍ୱୈଧାଃ (ସଂଶୟବର୍ଜିତ) ଯତାତ୍ମାନଃ (ସମାହିତଚିତ୍ତ) ସର୍ବଭୂତ ହିତେରତାଃ (ସକଳ ପ୍ରାଣୀଙ୍କର ମଙ୍ଗଳରେ ଅଭିନିବିଷ୍ଟ) ଋଷୟଃ (ଋଷିମାନେ) ବ୍ରହ୍ମନିର୍ବାଣଂ ଲଭନ୍ତେ (ମୋକ୍ଷ ପ୍ରାପ୍ତ ହୁଅନ୍ତି) ।

**ଅନୁବାଦ**—ଯେଉଁ ଋଷି ଅର୍ଥାତ୍ ସମ୍ୟଗ୍‌ଦର୍ଶୀ ମାନଙ୍କର ଦ୍ୱନ୍ଦ୍ୱବୁଦ୍ଧି ବିଦୂରିତ ହୋଇଅଛି ଅର୍ଥାତ୍ ଯେଉଁମାନେ ଜାଣିପାରି ଅଛନ୍ତି ଯେ ଏକ ପରମେଶ୍ୱର ସର୍ବତ୍ର ଅଛନ୍ତି, ଯାହାଙ୍କର ପାପ ନଷ୍ଟ ହୋଇଅଛି, ଯେ ଆତ୍ମସଂଯମ ଦ୍ୱାରା ସକଳ ପ୍ରାଣୀଙ୍କ ହିତ ସାଧନରେ ରତ ହୋଇ ଅଛନ୍ତି, ସେହିମାନେହିଁ ବ୍ରହ୍ମନିର୍ବାଣରୂପ ମୋକ୍ଷଲାଭ କରନ୍ତି ।

**ସୁବୋଧିନୀ ଟୀକା**—କିଞ୍ଚ ଲଭନ୍ତ ଇତି । ଋଷୟଃ ସମ୍ୟଗ୍‌ଦର୍ଶିନଃ । କ୍ଷୀଣଂ କଲ୍ମଷଂ ଯେଷାମ୍, ଛିନ୍ନଂ ଦ୍ୱୈଧଂ ସଂଶୟୋ ଯେଷାମ୍, ଯତଃ ସଂଯତ ଆତ୍ମା ଚିତ୍ତଂ ଯେଷାମ୍, ସର୍ବେଷାଂ ଭୂତାନାଂ ହିତେ ରତାଃ କୃପାଳବଃ, ତେ ବ୍ରହ୍ମନିର୍ବାଣଂ ମୋକ୍ଷଂ ଲଭନ୍ତେ ।

**ବିବୃତି**—ଏ ଶ୍ଳୋକରେ ଯେଉଁ ବ୍ରହ୍ମନିର୍ବାଣ କଥା କୁହାଯାଇଅଛି, ତାହା ଗଭୀର ସମାଧିର ଅବସ୍ଥା ନୁହେ । ଶ୍ରୀଧର ସ୍ୱାମୀଙ୍କ ଟୀକା ଅନୁସାରେ

କାମକ୍ରୋଧ ବିଯୁକ୍ତାନାଂ ଯତୀନାଂ ଯତଚେତସାମ୍ ।
ଅଭିତୋ ବ୍ରହ୍ମନିର୍ବାଣଂ ବର୍ତ୍ତତେ ବିଦିତାତ୍ମନାମ୍ । ୨୬ ।
ସ୍ପର୍ଶାନ୍ କୃତ୍ୱା ବହିର୍ବାହ୍ୟାଂଶ୍ଚକ୍ଷୁଶ୍ଚୈବାନ୍ତରେ ଭ୍ରୁବୋଃ ।
ପ୍ରାଣାପାନୌ ସମୌ କୃତ୍ୱା ନାସାଭ୍ୟନ୍ତରଚାରିଣୌ । ୨୭ ।
ଯତେନ୍ଦ୍ରିୟ ମନୋବୁଦ୍ଧିର୍ମୁନିର୍ମୋକ୍ଷପରାୟଣଃ ।
ବିଗତେଚ୍ଛାଭୟକ୍ରୋଧୋ ଯଃ ସଦା ମୁକ୍ତଏବ ସଃ । ୨୮ ।

'ଋଷି' ଶବ୍ଦ ସମ୍ୟଗ୍ଦର୍ଶୀ ଅର୍ଥରେ ଗ୍ରହଣ କରାଯାଇଅଛି । ତେଣୁ ଏଥିରୁ ସ୍ପଷ୍ଟ ବୁଝାଯାଏ, ଏହା ମୁକ୍ତ କର୍ମଯୋଗୀଙ୍କ ଅବସ୍ଥା, ସନ୍ନ୍ୟାସପନ୍ଥୀମାନେ କର୍ମତ୍ୟାଗ ନ କଲେ ନିର୍ବାଣ ଲାଭ ହୁଏନାହିଁ ବୋଲି କହନ୍ତି, ମାତ୍ର ଏଠାରେ ଋଷିମାନେ ଚରାଚର ସର୍ବ ପ୍ରାଣୀଙ୍କର ହିତ ସାଧନରେ ରତ ଥାଆନ୍ତି ବୋଲି ଭଗବାନ୍ ଯେଉଁ ସଙ୍କେତ କଲେ ସେଥିରୁ ବୁଝିବାକୁ ହେବ ଯେ, ଏହା କର୍ମଯୋଗୀଙ୍କର ଅବସ୍ଥା ବିଶେଷ ।

୨୬ । ଅନ୍ୱୟଦୀପିକା—କାମକ୍ରୋଧ ବିମୁକ୍ତାନାଂ (କାମ କ୍ରୋଧାଦିରୁ ବିମୁକ୍ତ), ଯତଚେତସାଂ (ସଂଯତଚିତ୍ତ), ବିଦିତାତ୍ମନାଂ (ଆତ୍ମଜ୍ଞ) ଯତୀନାଂ (ଯତିମାନଙ୍କର) ଅଭିତଃ (ନିକଟରେ ବା ଚତୁର୍ଦ୍ଦିଗରେ) ବ୍ରହ୍ମନିର୍ବାଣଂ (ନିର୍ବାଣପଦ) ବର୍ତ୍ତତେ (ଥାଏ) ।

ଅନୁବାଦ—କାମକ୍ରୋଧବିମୁକ୍ତ ସଂଯତଚିତ୍ତ ଆତ୍ମଦର୍ଶୀ ଯତିମାନଙ୍କର ବ୍ରହ୍ମନିର୍ବାଣ ନିକଟରେ ( ଚତୁର୍ଦ୍ଦିଗରେ ) ବିଦ୍ୟମାନ, ଅର୍ଥାତ୍ ସେମାନେ ବ୍ରହ୍ମନିର୍ବାଣ ମଧ୍ୟରେହିଁ ଅବସ୍ଥାନ କରନ୍ତି ।

ସୁବୋଧିନୀ ଟୀକା—କିଞ୍ଚ—କାମେତ୍ୟାଦି । କାମକ୍ରୋଧାଭ୍ୟାଂ ବିଯୁକ୍ତାନାଂ ଯତୀନାଂ ସନ୍ନ୍ୟାସିନାଂ ସଂଯତ ଚିତ୍ତାନାଂ ଜ୍ଞାତାତ୍ମତତ୍ତ୍ୱାନାମଭିତ ଉଭୟତୋ ଜୀବତାଂ ମୃତାନାଂ ଚ, ନ ଦେହାନ୍ତ ଏବ ତେଷାଂ ବ୍ରହ୍ମଣି ଲୟଃ । ଅପିତୁ ଜୀବତାମପି ବର୍ତ୍ତତ ଇତ୍ୟର୍ଥଃ ।

ବିବୃତି—ଏ ଶ୍ଳୋକରେ 'ଅଭିତଃ' ଶବ୍ଦ 'ନିକଟବର୍ତ୍ତୀ ଚତୁର୍ଦ୍ଦିଗରେ' ଏହି ଅର୍ଥରେ ଗ୍ରହଣ କରାଯାଇ ଅଛି । ଶ୍ରୀଧର ଓ ଶଙ୍କର ପ୍ରଭୃତି ବ୍ୟାଖ୍ୟାକାରମାନେ 'ଅଭିତଃ' ଅର୍ଥ 'ଉଭୟତଃ' ଅର୍ଥାତ୍ ଜୀବନକାଳରେ ବା ମୃତ୍ୟୁପରେ ଏହିପରି ଅର୍ଥ କରିଅଛନ୍ତି । ବ୍ରହ୍ମନିର୍ବାଣ ବା ମୁକ୍ତି ସେମାନଙ୍କ କରସ୍ଥିତ । ଏହାହିଁ ଏଥିରୁ ବୁଝିବାକୁ ହେବ ।

୨୭-୨୮ । ଅନ୍ୱୟଦୀପିକା—ବାହ୍ୟାନ୍ (ବାହ୍ୟ) ସ୍ପର୍ଶାନ୍ (ବିଷୟସମୂହ) ବହିଃକୃତ୍ୱା (ମନରୁ ବହିଷ୍କୃତକରି), ଚକ୍ଷୁଃ (ଚକ୍ଷୁକୁ) ଭ୍ରୁବୋଃ (ଭ୍ରୂଦ୍ୱୟଙ୍କ) ଅନ୍ତରେ ଏବ (ମଧ୍ୟରେ) [ସଂସ୍ଥାପନ କରି] ପ୍ରାଣାପାନୌ ( ପ୍ରାଣ ଓ ଅପାନ ବାୟୁକୁ ) ନାସାଭ୍ୟନ୍ତରଚାରିଣୌ ସମୌ କୃତ୍ୱା (ନାସିକା

ମଧ୍ୟରେ ସ୍ଥିରକରି) ଯତେନ୍ଦ୍ରିୟ ମନୋବୁଦ୍ଧିଃ (ଇନ୍ଦ୍ରିୟ, ମନ ଓ ବୁଦ୍ଧିର ସଂଯମପୂର୍ବକ) ବିଗତେଚ୍ଛାଭୟକ୍ରୋଧଃ (ଇଚ୍ଛା, ଭୟ ଓ କ୍ରୋଧକୁ ବଶୀଭୂତ କରି) ଯଃ (ଯେ) ମୋକ୍ଷ ପରାୟଣଃ (ବିଷୟ ବିରାଗୀ) ମୁନିଃ (ମନନଶୀଳ ପୁରୁଷ), ସଃ (ସେ) ସଦା (ସର୍ବଦା) ମୁକ୍ତଃ ଏବ (ମୋକ୍ଷପ୍ରାପ୍ତ) ।

**ଅନୁବାଦ**—ମନରୁ ବାହ୍ୟ ବିଷୟଚିନ୍ତା ସବୁ ବହିଷ୍କୃତ କରି ଦୁଇ ଚକ୍ଷୁକୁ ଭ୍ରୂମଧ୍ୟରେ ସଂସ୍ଥାପନପୂର୍ବକ ପ୍ରାଣ ଓ ଅପାନ ବାୟୁର ଊର୍ଦ୍ଧ୍ୱ ଓ ଅଧୋଗତିକୁ ସମାନ କରି ଏବଂ ନାସିକା ମଧ୍ୟରେ ରଖି ଯେ ଇନ୍ଦ୍ରିୟ, ମନ ଓ ବୁଦ୍ଧିକୁ ସଂଯତ କରି ଅଛନ୍ତି ଏବଂ ଯେ ମୋକ୍ଷ ପରାୟଣ, ଇଚ୍ଛା ଭୟ ଓ କ୍ରୋଧ ବର୍ଜିତ ଏବଂ ଅସ୍ଥ ମନନଶୀଳ—ସେ ସର୍ବଦା ମୁକ୍ତ ।

**ସୁବୋଧିନୀ ଟୀକା**—ସ ଯୋଗୀ ବ୍ରହ୍ମନିର୍ବାଣ ମିତ୍ୟାଦିଭିଃ ଯୋଗୀ ମୋକ୍ଷ ମବାପ୍ନୋତୀତ୍ୟୁକ୍ତମ୍ । ତମେବ ଯୋଗଂ ସଂକ୍ଷେପେଣାହ— ସ୍ପର୍ଶାନିତିଦ୍ୱାଭ୍ୟାମ୍, ବାହ୍ୟା ଏବ ସ୍ପର୍ଶା ରୂପରସାଦୟୋ ବିଷୟା ଶ୍ଚିନ୍ତିତାଃ ସନ୍ତୋଽନ୍ତଃ ପ୍ରବିଶନ୍ତି । ତାଂ ସ୍ତଚ୍ଚିନ୍ତାତ୍ୟାଗେନ ବହିରେବକୃତ୍ୱା ଚକ୍ଷୁର୍ଭ୍ରୁବୋରନ୍ତରେ ଭ୍ରୂମଧ୍ୟଏବ କୃତ୍ୱାଽତ୍ୟନ୍ତଂ ନେତ୍ରୟୋର୍ନିମୀଲନେ ନିଦ୍ରୟା ମନୋଲୟସ୍ୟାତେ, ଉନ୍ମୀଲନେ ଚ ବହିଃ ପ୍ରସରତି । ତଦୁଭୟଦୋଷ ପରିହାରାର୍ଥମର୍ଦ୍ଧନିମୀଲନେନ ଭ୍ରୂମଧ୍ୟେଦୃଷ୍ଟିଂ ନିଧାୟେତ୍ୟର୍ଥଃ । ଉଚ୍ଛ୍ୱାସନିଃଶ୍ୱାସରୂପେଣ ନାସିକୟୋରଭ୍ୟନ୍ତରେ ଚରନ୍ତୌ ପ୍ରାଣାପାନାବୁର୍ଦ୍ଧ୍ୱାଧୋଗତିନିରୋଧେନ ସମୌକୃତ୍ୱା, କୁମ୍ଭକଂ କୃତ୍ୱେତ୍ୟର୍ଥଃ । ଯଦ୍ୱା ପ୍ରାଣୋଽୟଂ ଯଥା ନ ବହିର୍ନିର୍ଯାତି, ଯଥା ଚାପାନୋଽନ୍ତର୍ନପ୍ରବିଶତି, କିନ୍ତୁ ନାସା ମଧ୍ୟଏବ ଦ୍ୱାବପି ଯଥାଚରତ ସ୍ତଥା ମନ୍ଦାଭ୍ୟାମୁଚ୍ଛ୍ୱାସନିଃଶ୍ୱାସାଭ୍ୟାଂ ସମୌ କୃତ୍ୱେତି । ୨୭ ।

ଯତେତି, ଅନେନୋପାୟେନ ଯତାଃ ସଂଯତା ଇନ୍ଦ୍ରିୟ ମନୋବୁଦ୍ଧୟୋ ଯସ୍ୟ, ମୋକ୍ଷ ଏବ ପରମୟନଂ ପ୍ରାପ୍ୟଂ ଯସ୍ୟ, ଅତଏବ ବିଗତା ଇଚ୍ଛାଭୟକ୍ରୋଧା ଯସ୍ୟ, ଏବଂଭୂତୋ ଯୋ ମୁନିଃ ସ ସଦା ଜୀବନ୍ନପି ମୁକ୍ତ ଏବେତ୍ୟର୍ଥଃ । ୨୮ ।

**ବିବୃତି**—ପରବର୍ତ୍ତୀ ଅଧ୍ୟାୟରେ ଯେଉଁ ଧ୍ୟାନଯୋଗ ବିସ୍ତାରିତଭାବରେ ବର୍ଣ୍ଣିତ ହେବ, ଏଠାରେ ସଂକ୍ଷେପରେ ତାହାରହିଁ ସୂଚନା କରାଯାଇ ଅଛି । ଏହାହିଁ ରାଜଯୋଗ ବା ଚିତ୍ତନିରୋଧ ଯୋଗ । ବହିର୍ମୁଖୀ ମନକୁ ସଂଯତ କରିବାର ଏହା ଗୋଟିଏ ବିଶିଷ୍ଟ ଉପାୟ ।

ଇନ୍ଦ୍ରିୟମାନେ ସ୍ୱଭାବତଃ ବାହ୍ୟବ୍ୟାପାରନିରତ । ଇନ୍ଦ୍ରିୟମାନଙ୍କ ଦ୍ୱାରହିଁ ବାହ୍ୟବିଷୟ ମନୋମଧ୍ୟରେ ପ୍ରବେଶ କରେ; ତେଣୁ ଅପ୍ରକ୍ଷନ ସହଜରେ ଜାତ ହୁଏନାହିଁ । ଏହି ହେତୁରୁ ମୁକ୍ତିଲାଭର ଉପାୟ ସ୍ୱରୂପ ଧ୍ୟାନଯୋଗର ଅବତାରଣା କରାଯାଇ ଅଛି । ଊର୍ଦ୍ଧ୍ୱନେତ୍ରରେ ସ୍ଥିରଦୃଷ୍ଟିରେ ଦୁଇଭ୍ରୂର

ଭୋକ୍ତାରଂ ଯଜ୍ଞତପସାଂ ସର୍ବଲୋକମହେଶ୍ୱରମ୍ ।
ସୁହୃଦଂ ସର୍ବଭୂତାନାଂ ଜ୍ଞାତ୍ୱା ମାଂ ଶାନ୍ତିମୃଚ୍ଛତି । ୨୯ ।

ଇତି ଶ୍ରୀ ମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି
ଶ୍ରୀମଦ୍ ଭଗବଦ୍ ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ
ଶ୍ରୀକୃଷ୍ଣାର୍ଜୁନ ସଂବାଦେ ସନ୍ନ୍ୟାସଯୋଗୋ
ନାମ ପଞ୍ଚମୋଽଧ୍ୟାୟଃ ।

ସଙ୍କଟସ୍ଥଳରେ ଦୃଷ୍ଟି ସ୍ଥିର କରି ପାରିଲେ ଅନେକ ପରିମାଣରେ ଚିତ୍ତର ଏକାଗ୍ରତା ସାଧିତ ହୁଏ ଏବଂ ଏହି ଅବସ୍ଥାରେ କୁମ୍ଭକ ଅଭ୍ୟାସ କରି ବାୟୁର ସମତା ସାଧନ କରି ପାରିଲେ ଚିତ୍ତ ସଂଯତ ହୁଏ ଏବଂ କ୍ରମେ କ୍ରମେ ସାଧକଙ୍କର ଇଚ୍ଛା, ଭୟ, କ୍ରୋଧ ତିରୋହିତ ହୋଇଯାଏ । ଏପରି ହେଲେ ମୁକ୍ତିର ପଥ ସୁଗମ ହୋଇ ଉଠେ ।

୨୯ । **ଅନ୍ୱୟଦୀପିକା**—[ଯୋଗୀ] ମାଂ (ଆମ୍ଭଙ୍କୁ) ଯଜ୍ଞ ତପସାଂ (ଯଜ୍ଞ ଓ ତପସ୍ୟାର) ଭୋକ୍ତାରଂ (ଭୋକ୍ତା) ସର୍ବଲୋକମହେଶ୍ୱରଂ (ସର୍ବଲୋକର ମହେଶ୍ୱର) ସର୍ବଭୂତାନାଂ (ସବୁ ପ୍ରାଣୀଙ୍କର) ସୁହୃଦଂ (ମିତ୍ର) ଜ୍ଞାତ୍ୱା (ଜାଣିପାରି) ଶାନ୍ତିଂ (ଶାନ୍ତି) ଋଚ୍ଛତି (ଲାଭ କରନ୍ତି) ।

**ଅନୁବାଦ**—ଯୋଗୀ ପୁରୁଷ ଆମ୍ଭଙ୍କୁ ଯଜ୍ଞ ଓ ତପସ୍ୟାର ଭୋକ୍ତା, ସର୍ବଲୋକ ମହେଶ୍ୱର ଏବଂ ସମସ୍ତଙ୍କର ବନ୍ଧୁ ଜାଣି ଶାନ୍ତିଲାଭ କରନ୍ତି ।

**ସୁବୋଧିନୀ ଟୀକା**—ନନ୍ୱେବମିନ୍ଦ୍ରିୟାଦିସଂଯମମାତ୍ରେଣ କଥଂ ମୁକ୍ତିଃ ସ୍ୟାତ୍, ନତାବନ୍ମାତ୍ରେଣ, କିନ୍ତୁ ଜ୍ଞାନଦ୍ୱାରେଣେତ୍ୟାହ— ଭୋକ୍ତାର ମିତି, ଯଜ୍ଞାନାଂ ତପସାଂ ଚୈବ—ମଦ୍ଭକ୍ତୈଃ ସମର୍ପିତାନାଂ— ଯଦୃଚ୍ଛୟା ଭୋକ୍ତାରଂ ପାଳକମିତି ବା । ସର୍ବେଷାଂ ଲୋକାନାଂ ମହାନ୍ତମୀଶ୍ୱରମ୍ । ସର୍ବଭୂତାନାଂ ସୁହୃଦଂ ନିରପେକ୍ଷୋପକାରିଣମ୍, ଅନ୍ତର୍ଯ୍ୟାମିନଂ ମାଂ ଜ୍ଞାତ୍ୱା ମତ୍ ପ୍ରସାଦେନ ଶାନ୍ତିଂ ମୋକ୍ଷ ମୃଚ୍ଛତି ପ୍ରାପ୍ନୋତି ।

ବିକଳ୍ପଶଙ୍କାଽପୋହେନ ଯେନୈବଂ ସାଂଖ୍ୟଯୋଗୟୋଃ
ସମୁଚ୍ଚୟଃ କ୍ରମେଣୋକ୍ତଃ ସର୍ବଜ୍ଞଂ ନୌମି ତଂ ହରିମ୍ ।

ଇତି ଶ୍ରୀ ଶ୍ରୀଧର ସ୍ୱାମିକୃତାୟାଂ ଭଗବଦ୍ ଗୀତା ଟୀକାୟାଂ ସୁବୋଧିନ୍ୟାଂ ସନ୍ନ୍ୟାସଯୋଗୋ ନାମ ପଞ୍ଚମୋଽଧ୍ୟାୟଃ ।

**ବିବୃତି**—ଏ ଅଧ୍ୟାୟର ୧୪ଶ ଓ ୧୫ଶ ଶ୍ଳୋକରେ ଭଗବାନ୍ ସାଂଖ୍ୟ ଦର୍ଶନତତ୍ତ୍ୱ ଅନୁସାରେ କହି ଅଛନ୍ତି ସର୍ବବ୍ୟାପୀ ପରମାତ୍ମା କାହାର ପାପ ବା ପୁଣ୍ୟ ଗ୍ରହଣ କରନ୍ତି ନାହିଁ ଇତ୍ୟାଦି । ମାତ୍ର ଏଠାରେ କହୁଅଛନ୍ତି

ଅମ୍ଭେ ଯଜ୍ଞ ଓ ତପସ୍ୟାର ଭୋକ୍ତା ଓ ସର୍ବଲୋକର ବନ୍ଧୁ ଓ ମହେଶ୍ୱର ଇତ୍ୟାଦି । ଏ ଦୁଇ କଥା ପରସ୍ପର ବିରୁଦ୍ଧ ବୋଧ ହେଲେହେଁ ପ୍ରକୃତରେ ବିରୁଦ୍ଧ ନୁହେ । ଗୀତା ଉପନିଷଦ୍ ସମୂହର ସାର ସଙ୍କଳନ । ଉପନିଷଦରେ ବ୍ରହ୍ମଙ୍କର ଦୁଇ ବିଭବ ଅର୍ଥାତ୍ ସଗୁଣ ବ୍ରହ୍ମ ଓ ନିର୍ଗୁଣ ବ୍ରହ୍ମ ଉଭୟର ବର୍ଣ୍ଣନା ଅଛି । ଆଚାର୍ଯ୍ୟ ଶଙ୍କର ଏହା ସ୍ପଷ୍ଟରୂପେ ସ୍ୱୀକାର କରିଅଛନ୍ତି । "ଅସ୍ତି ଉଭୟ ଲିଙ୍ଗାଃ ଶ୍ରୁତୟୋ ବ୍ରହ୍ମବିଷୟାଃ" (ଶଙ୍କର)-ବ୍ରହ୍ମ ବିଷୟରେ ସବିଶେଷ ଲିଙ୍ଗ ଅର୍ଥାତ୍ ସଗୁଣ ଓ ନିର୍ବିଶେଷ ଲିଙ୍ଗ ଅର୍ଥାତ୍ ନିର୍ଗୁଣ—ଏହି ଦୁଇ ପ୍ରକାର ଶ୍ରୁତି ଦେଖାଯାଏ । ଏଥିରୁ ବୁଝାଯାଏ ବ୍ରହ୍ମତତ୍ତ୍ୱ ଯଥାର୍ଥରେ ଅତି ନିଗୂଢ଼ । ସାଧକ ନିଜ ଜ୍ଞାନ ବା ଧାରଣା ଅନୁସାରେ ବ୍ରହ୍ମଙ୍କୁ ସଗୁଣ ବା ନିର୍ଗୁଣ—ଯେ କୌଣସି ଭାବରେ ଗ୍ରହଣ କରି ଥାଆନ୍ତି । ନିର୍ଗୁଣ ବ୍ରହ୍ମ କିନ୍ତୁ ଜୀବର ଉପାସ୍ୟ ହୋଇ ପାରନ୍ତି ନାହିଁ ଏବଂ ନିର୍ଗୁଣ ବ୍ରହ୍ମଙ୍କ ଧାରଣା ସାଧାରଣ ମନୁଷ୍ୟପକ୍ଷରେ ଅତ୍ୟନ୍ତ ଦୁରୁହ । ଏକଥା ଭଗବାନ୍ ଗୀତାର ୧୨ଶ ଅଧ୍ୟାୟର ୫ମ ଶ୍ଳୋକରେ ସ୍ପଷ୍ଟ କହି ଅଛନ୍ତି :—

 କ୍ଲେଶୋଽଧିକତରସ୍ତେଷାମବ୍ୟକ୍ତାସକ୍ତଚେତସାମ୍ ।
ଅବ୍ୟକ୍ତା ହି ଗତିର୍ଦୁଃଖଂ ଦେହବଦ୍‌ଭିରବାପ୍ୟତେ ।

ପ୍ରାୟ ତିନିହଜାର ବର୍ଷ ପୂର୍ବେ ଏ ଗୀତା ଗ୍ରନ୍ଥ ରଚିତ ହୋଇଥିଲା । ସେତେବେଳେ ସମାଜରେ ଯେତେପ୍ରକାର ଧର୍ମ ମତ ପ୍ରଚଳିତ ହୋଇଥିଲା ସେ ସମସ୍ତହିଁ ଗୀତାରେ ଆଲୋଚିତ ହୋଇଅଛି ଏବଂ ସେ ସମସ୍ତର ଆଲୋଚନା କରି ଭଗବାନ୍ ଧର୍ମର ପ୍ରକୃତ ସ୍ୱରୂପ ଏଥିରେ ନିର୍ଦ୍ଦେଶ କରି ଦେଇ ଅଛନ୍ତି । ମୋଟରେ ବୁଝିବାକୁ ଗଲେ ଭକ୍ତସୁଲଭ ସଗୁଣ ବ୍ରହ୍ମ ବା ପୁରୁଷୋତ୍ତମହିଁ ଗୀତାରେ ପ୍ରତିପାଦିତ ହୋଇ ଅଛନ୍ତି । କର୍ମଯୋଗ ଦ୍ୱାରା ସେହି ପୁରୁଷୋତ୍ତମଙ୍କ ସହ ଜୀବାତ୍ମାର ମିଳନ ହିଁ ଗୀତାର ସମ୍ପୂର୍ଣ୍ଣ ଶିକ୍ଷା । ଜ୍ଞାନ ଓ ଭକ୍ତି ବିନା କର୍ମଯୋଗୀ ସିଦ୍ଧି ଲାଭକରି ପାରନ୍ତି ନାହିଁ, ତେଣୁ ଗୀତା ଗ୍ରନ୍ଥରେ ଜ୍ଞାନ, କର୍ମ ଓ ଭକ୍ତିର ସମନ୍ୱୟ କରାଯାଇ ଅଛି ।

## ପଞ୍ଚମ ଅଧ୍ୟାୟର ସାର ସଂକଳନ

ଏ ଅଧ୍ୟାୟ ସାଧାରଣତଃ ସନ୍ନ୍ୟାସଯୋଗ ରୂପରେ ପରିଚିତ । ଏଥିପୂର୍ବେ ନିଷ୍କାମ କର୍ମଯୋଗର ଉପଦେଶ ଦେଇ ଭଗବାନ୍ ମଝିରେ ମଝିରେ ଜ୍ଞାନର-ପ୍ରଶଂସା ମଧ୍ୟ କରିଥିଲେ । ତେଣୁ ଅଧ୍ୟାୟ ଆରମ୍ଭରେ ଅର୍ଜୁନ ପ୍ରଶ୍ନକଲେ କର୍ମ ତ୍ୟାଗ ଓ ସନ୍ନ୍ୟାସ ଗ୍ରହଣ ପୂର୍ବକ ଜ୍ଞାନଯୋଗର ଅନୁଶୀଳନ ଶ୍ରେଷ୍ଠ ନା ନିଷ୍କାମ କର୍ମଯୋଗର ଅନୁଶୀଳନ ଶ୍ରେଷ୍ଠ ? ଉତ୍ତରରେ ଭଗବାନ୍ କହିଲେ ଯେ, ସନ୍ନ୍ୟାସ ଓ କର୍ମଯୋଗ ଉଭୟ ମୋକ୍ଷପ୍ରଦ । ତନ୍ମଧ୍ୟରେ କର୍ମଯୋଗହିଁ ଶ୍ରେଷ୍ଠ ।

କାରଣ ଫଳ ଲାଭର ଆଶା ତ୍ୟାଗକରି କର୍ମକଲେ ସନ୍ନ୍ୟାସର ଫଳ ମିଳେ। ବିଶେଷତଃ କର୍ମ ତ୍ୟାଗ କରି ସନ୍ନ୍ୟାସ ଗ୍ରହଣ କଲେ ବିଶ୍ୱକର୍ମ ଚଳି ପାରିବ ନାହିଁ ବା ସୃଷ୍ଟି ରକ୍ଷା ହେବନାହିଁ। କର୍ମ ବନ୍ଧନର କାରଣ ନୁହେ, ଫଳାସକ୍ତିହିଁ ଲୋକକୁ ମୋକ୍ଷ ଲାଭରୁ ବଞ୍ଚିତ କରେ, ତେଣୁ ଫଳସନ୍ନ୍ୟାସ ହିଁ ପ୍ରକୃତ ସନ୍ନ୍ୟାସ, ଆସକ୍ତିତ୍ୟାଗ କଲେ ଲୋକ ମୁକ୍ତି ପଥର ପଥିକ ହୁଏ। କର୍ମଯୋଗ ବ୍ୟତୀତ ସନ୍ନ୍ୟାସ କେବଳ ଦୁଃଖର କାରଣ ହୋଇଥାଏ। ଈଶ୍ୱରଙ୍କଠାରେ କର୍ମର ଫଳ ସମର୍ପଣ କରି କର୍ତ୍ତୃତ୍ୱାଭିମାନତ୍ୟାଗପୂର୍ବକ ନିଷ୍କାମଭାବରେ ବିଶ୍ୱ କର୍ମ ସମ୍ପନ୍ନ କରିବାହିଁ କର୍ମଯୋଗ। କର୍ମଯୋଗୀ କର୍ତ୍ତୃତ୍ୱାଭିମାନ ତ୍ୟାଗକରି କର୍ମ କରିବାରୁ କର୍ମର ବିଷମୟ ଫଳ ବନ୍ଧନରେ ପଡ଼ନ୍ତି ନାହିଁ। ତାଙ୍କର ଶରୀର କର୍ମ କରେ ମାତ୍ର ଆତ୍ମା ନିର୍ଲିପ୍ତ, ସେ କର୍ତ୍ତୃତ୍ୱ ବା ସୁଖ ଦୁଃଖାଦି କର୍ମଫଳ ସୃଷ୍ଟି କରନ୍ତି ନାହିଁ ବା କାହାର ପାପ ପୁଣ୍ୟ ମଧ୍ୟ ଗ୍ରହଣ କରନ୍ତି ନାହିଁ। ଅଜ୍ଞାନବଶତଃ ଜୀବ କର୍ମ ସଙ୍ଗରେ ଅହଂ ବୁଦ୍ଧି ଯୁକ୍ତ କରି ପାପପୁଣ୍ୟ ଭୋଗକରେ। ପ୍ରକୃତି ହିଁ ସବୁ କରେ ମାତ୍ର ଅହଙ୍କାର ବିମୂଢ଼ ହୋଇ ଜୀବ ଆପଣାକୁ କର୍ମର କର୍ତ୍ତା ବୋଲି ମନେ କରି ବନ୍ଧନରେ ପଡ଼େ। ଅହଂବୁଦ୍ଧିହିଁ ଅଜ୍ଞାନ, ଏହା ବିଦୂରିତ ହେଲେ ଆତ୍ମ ସ୍ୱରୂପ ପ୍ରତିଭାତ ହୁଏ। ଆତ୍ମ ସ୍ୱରୂପ ପ୍ରତିଭାତ ହେଲେ ସ୍ୱତଃ ସମତ୍ୱବୁଦ୍ଧି ଜାତ ହୁଏ ଏବଂ ଜୀବ ଜଗତକୁ ବ୍ରହ୍ମମୟ ଦେଖେ। ଏପରି ଅବସ୍ଥାରେ ଉପସ୍ଥିତ ହେଲେ ସାଧକ ବ୍ରହ୍ମନିର୍ବାଣ ଲାଭ କରନ୍ତି, ଏହାହିଁ ଜୀବନ୍ମୁକ୍ତି।

ପ୍ରକୃତିର ବନ୍ଧନରୁ ମୁକ୍ତ ହୋଇ ବ୍ରହ୍ମଭାବ ଲାଭ କରିବାକୁ ହେଲେ, ମନକୁ ବାହ୍ୟ ବିଷୟରୁ ପ୍ରତ୍ୟାହାର କରି ଆତ୍ମସ୍ଥ କରିବା ଆବଶ୍ୟକ। ମନ ଆତ୍ମସ୍ଥ ହେଲେ ଭଗବାନଙ୍କର ପ୍ରକୃତ ସ୍ୱରୂପ ହୃଦୟରେ ପ୍ରତିଭାତ ହୋଇ ଉଠେ ଏବଂ ସାଧକ ଭଗବାନଙ୍କୁ ସର୍ବଲୋକର ବନ୍ଧୁ ଓ ସର୍ବଲୋକର ମହେଶ୍ୱର ବୋଲି ଜାଣିପାରି ପରମ ଶାନ୍ତି ଉପଭୋଗ କରେ।

---

# ଷଷ୍ଠୋଽଧ୍ୟାୟଃ

ଶ୍ରୀ ଭଗବାନୁବାଚ

ଅନାଶ୍ରିତଃ କର୍ମଫଳଂ କାର୍ଯ୍ୟଂ କର୍ମ କରୋତି ଯଃ
ସ ସନ୍ନ୍ୟାସୀ ଚ ଯୋଗୀ ଚ ନ ନିରଗ୍ନିର୍ନଚାକ୍ରିୟଃ । ୧ ।

୧ । **ଅନ୍ୱୟଦୀପିକା**—ଶ୍ରୀ ଭଗବାନ୍ ଉବାଚ ( ଶ୍ରୀ ଭଗବାନ୍ କହିଲେ ) । ଯଃ ( ଯେଉଁ ଲୋକ ) କର୍ମଫଳମ୍ ଅନାଶ୍ରିତଃ ( କର୍ମଫଳର ଆଶ୍ରୟ ନ କରି ) କାର୍ଯ୍ୟଂ ( କର୍ତ୍ତବ୍ୟ ) କର୍ମ ( କର୍ମ ) କରୋତି ( କରନ୍ତି ) ସଃ ସନ୍ନ୍ୟାସୀ ( ସେହି ଏକା ସନ୍ନ୍ୟାସୀ ), ଯୋଗୀ ଚ ( ଏବଂ ସେହି ଏକା ଯୋଗୀ ); ନ ନିରଗ୍ନିଃ ( ଅଗ୍ନିହୋତ୍ରାଦି ଶ୍ରୌତକର୍ମ ତ୍ୟାଗୀ ନୁହେଁ ) ନ ଚ ଅକ୍ରିୟଃ ( ସର୍ବବିଧ ଶାସ୍ତ୍ରୀୟ କର୍ମ ତ୍ୟାଗକାରୀ ମଧ୍ୟ ନୁହେଁ ) ।

**ଅନୁବାଦ**—ଶ୍ରୀ ଭଗବାନ୍ କହିଲେ - କର୍ମଫଳକୁ ଆଶ୍ରୟ ନ କରି ଅର୍ଥାତ୍ କର୍ମଫଳର ଆଶା ନ ରଖି ଯେ କର୍ତ୍ତବ୍ୟ କର୍ମ କରନ୍ତି ସେହି ଏକା ସନ୍ନ୍ୟାସୀ ଏବଂ ସେହି ଏକା ଯୋଗୀ । ଯେ ଅଗ୍ନିହୋତ୍ରାଦି ଶ୍ରୌତକର୍ମ ତ୍ୟାଗ କରିଅଛନ୍ତି କିମ୍ବା କୌଣସି ପ୍ରକାର କର୍ମ ନ କରି କେବଳ ବସି ରହି ଥାଆନ୍ତି ସେ ( ସନ୍ନ୍ୟାସୀ ବା ଯୋଗୀ ) ନୁହନ୍ତି ।

**ସୁବୋଧିନୀ ଟୀକା**—

ଚିତ୍ତେ ଶୁଦ୍ଧେଽପି ନ ଧ୍ୟାନଂ ବିନା ସନ୍ନ୍ୟାସମାତ୍ରତଃ
ମୁକ୍ତିଃ ସ୍ୟାଦତ ଷଷ୍ଠେଽସ୍ମିନ୍ ଧ୍ୟାନ ଯୋଗଂ ବିତନ୍ୟତେ ।

ପୂର୍ବାଧ୍ୟାୟାନ୍ତେ ସଂକ୍ଷେପେଣୋକ୍ତଂ ଯୋଗଂ ପ୍ରପଞ୍ଚୟିତୁଂ ଷଷ୍ଠାଧ୍ୟାୟାରମ୍ଭଃ । ତତ୍ରତାବତ୍ ସର୍ବକର୍ମାଣି ମନସା ସନ୍ନ୍ୟସ୍ୟେତ୍ୟାରଭ୍ୟ ସନ୍ନ୍ୟାସ ପୂର୍ବିକାୟା ଜ୍ଞାନନିଷ୍ଠାୟାସ୍ତାତ୍ପର୍ଯ୍ୟେଣାଭିଧାନାତ୍ ଦୁଃଖରୂପତ୍ୱାଚ କର୍ମଣଃ ସହସା ସନ୍ନ୍ୟାସାତିପ୍ରସଙ୍ଗଂ ପ୍ରାପ୍ତଂ ବାରୟିତୁଂ ସନ୍ନ୍ୟାସାଦପି ଶ୍ରେଷ୍ଠତ୍ୱେନ କର୍ମଯୋଗଂ ସ୍ତୌତି—ଅନାଶ୍ରିତ ଇତି ଦ୍ୱାଭ୍ୟାମ୍ । କର୍ମଫଳ ମନାଶ୍ରିତୋଽନପେକ୍ଷମାଣଃ ସନ୍ନବଶ୍ୟଂ କାର୍ଯ୍ୟତୟା ବିହିତଂ କର୍ମ ଯଃ କରୋତି ସ ଏବ ସନ୍ନ୍ୟାସୀ ଯୋଗୀ ଚ । ନତୁ ନିରଗ୍ନିରଗ୍ନିସାଧ୍ୟେଷ୍ଟାଖ୍ୟକର୍ମତ୍ୟାଗୀ ନଚାକ୍ରିୟୋଽନଗ୍ନିସାଧ୍ୟ-ପୂର୍ତ୍ତାଖ୍ୟକର୍ମତ୍ୟାଗୀ ।

ବିବୃତ—ଗୃହସ୍ଥାଶ୍ରମରେ ଅଗ୍ନିହୋତ୍ର ରଖି ଯାଗାଦି କର୍ମ କରିବାକୁ ହୁଏ । ମାତ୍ର ଯେ ସନ୍ନ୍ୟାସ ଗ୍ରହଣ କରନ୍ତି ତାଙ୍କ ପକ୍ଷରେ ଅଗ୍ନି ରକ୍ଷା

ଯଂ ସନ୍ନ୍ୟାସ ମିତି ପ୍ରାହୁର୍ଯୋଗଂ ତଂ ବିଦ୍ଧି ପାଣ୍ଡବ,
ନ ହ୍ୟସନ୍ନ୍ୟସ୍ତ ସଙ୍କଳ୍ପୋ ଯୋଗୀ ଭବତି କଶ୍ଚନ । ୨ ।

କରିବା ଆବଶ୍ୟକ ହୁଏ ନାହିଁ—ମନୁସ୍ମୃତିରେ ଏହିପରି ଉକ୍ତ ହୋଇଅଛି । ଏହି କାରଣରୁ ସେ ନିରଗ୍ନି ହୋଇ ଯାଆନ୍ତି ଏବଂ ଅରଣ୍ୟରେ ରହି ଭିକ୍ଷାଦ୍ୱାରା ଉଦର ପୂର୍ତ୍ତି କରନ୍ତି । ତାଙ୍କ ସମ୍ବନ୍ଧରେ ଭଗବାନ୍ କହୁଅଛନ୍ତି ନିରଗ୍ନି ଓ ନିଷ୍କ୍ରିୟ ହେବା ପ୍ରକୃତ ସନ୍ନ୍ୟାସର ଲକ୍ଷଣ ନୁହେ । କାମ୍ୟବୁଦ୍ଧି ବା ଫଳାଶା ତ୍ୟାଗ କରିବାହିଁ ପ୍ରକୃତ ସନ୍ନ୍ୟାସ, ସନ୍ନ୍ୟାସ ବୁଦ୍ଧିରେ, ଅଗ୍ନିତ୍ୟାଗ ବା କର୍ମତ୍ୟାଗ ପ୍ରଭୃତି ବାହ୍ୟ କ୍ରିୟାରେ ନୁହେ । ଅତଏବ ଫଳାଶା ଅଥବା ସଙ୍କଳ୍ପତ୍ୟାଗ କରି କର୍ତ୍ତବ୍ୟ କର୍ମ ଯେ କରନ୍ତି ତାହାଙ୍କୁହିଁ ପ୍ରକୃତ ସନ୍ନ୍ୟାସୀ କହିବା ଉଚିତ ।

ପଞ୍ଚମ ଅଧ୍ୟାୟ ଶେଷରେ ଧ୍ୟାନ ଯୋଗର ଯେଉଁ ସଂକ୍ଷିପ୍ତ ସୂଚନା କରାଯାଇ ଅଛି ଏ ଅଧ୍ୟାୟର ପରେ ସେହି ଧ୍ୟାନ ଯୋଗର ଆଲୋଚନା କରାଯିବ । ଧ୍ୟାନଯୋଗ କର୍ମଯୋଗର ଅଙ୍ଗସ୍ୱରୂପ । ସେହି ହେତୁରୁ ଏ ଅଧ୍ୟାୟର ପ୍ରଥମ କେତେକ ଶ୍ଳୋକରେ କର୍ମଯୋଗର ମୁଖ୍ୟ କଥା ଫଳସନ୍ନ୍ୟାସ, କାମନାତ୍ୟାଗ ଏବଂ ତଜ୍ଜନିତ ସମଚିତ୍ତତା ବର୍ଣ୍ଣିତ ହୋଇ ଅଛି ଏବଂ ପରେ ତାହା ସିଦ୍ଧିର ଉପାୟ ରୂପରେ ଧ୍ୟାନଯୋଗ ବା ସମାଧି ଯୋଗର ବର୍ଣ୍ଣନା ହୋଇ ଅଛି ।

୨ । ଅନ୍ୱୟଦୀପିକା—ହେ ପାଣ୍ଡବ, [ ପଣ୍ଡିତମାନେ ] ଯଂ ( ଯାହାକୁ ) ସନ୍ନ୍ୟାସମ୍ ଇତି ( ସନ୍ନ୍ୟାସ ବୋଲି ) ପ୍ରାହୁଃ ( କହନ୍ତି ) ତଂ ( ତାହାକୁ ) ଯୋଗଂ ( ଯୋଗବୋଲି ) ବିଦ୍ଧି ( ଜାଣ ), ହି ( କାରଣ ) ଅସନ୍ନ୍ୟସ୍ତ ସଙ୍କଳ୍ପଃ ( ସଙ୍କଳ୍ପ ତ୍ୟାଗୀ ନ ହେଲେ ) କଶ୍ଚନ ( କୌଣସି ଲୋକ ) ଯୋଗୀ ନ ଭବତି ( ଯୋଗୀ ହୋଇ ପାରନ୍ତି ନାହିଁ ) ।

ଅନୁବାଦ—ହେ ପାଣ୍ଡବ, ପଣ୍ଡିତମାନେ ଯାହାକୁ ସନ୍ନ୍ୟାସ କହନ୍ତି ତାହାକୁହିଁ ଯୋଗ ବୋଲି ଜାଣିବ । କାରଣ ସଙ୍କଳ୍ପ ତ୍ୟାଗ ନ କଲେ କେହି ଯୋଗୀହୋଇ ପାରନ୍ତି ନାହିଁ ।

ସୁବୋଧିନୀଟୀକା—କୃତ ଇତ୍ୟପେକ୍ଷାୟାଂ କର୍ମଯୋଗସ୍ୟୈବ ସନ୍ନ୍ୟାସତ୍ୱଂ ପ୍ରତିପାଦୟନ୍ନାହ ଯମିତି । ଯଂ ସନ୍ନ୍ୟାସ ମିତି ପ୍ରାହୁଃ ପ୍ରକର୍ଷେଣ ଶ୍ରେଷ୍ଠତ୍ୱେନାହୁଃ । ନ୍ୟାସ ଏବାତ୍ୟରେଚୟଦ୍ ଇତ୍ୟାଦିଶ୍ରୁତେଃ । କେବଳାତ୍ ଫଳସନ୍ନ୍ୟାସନାଦ୍ଧେତୋର୍ଯୋଗମେବ ତଂ ଜାନୀହି । କୃତ ଇତ୍ୟପେକ୍ଷାୟାଂ ମିତଶବ୍ଦୋକ୍ତୋ ହେତୁର୍ଯୋଗେଽପ୍ୟସ୍ତୀତ୍ୟାହ—ନହୀତି । ନ ସନ୍ନ୍ୟସ୍ତ ଫଳସଙ୍କଳ୍ପୋ ଯେନ ସ କର୍ମନିଷ୍ଠୋ ଜ୍ଞାନନିଷ୍ଠୋ ବା କଶ୍ଚିଦପି ନ ହି ଯୋଗୀ ଭବତି । ଅତଃ ଫଳସଙ୍କଳ୍ପତ୍ୟାଗସାମ୍ୟାତ୍ ସନ୍ନ୍ୟାସୀ ଚ

ଆରୁରୁକ୍ଷୋର୍ମୁନେର୍ଯୋଗଂ କର୍ମ କାରଣ ମୁଚ୍ୟତେ,
ଯୋଗାରୂଢ଼ସ୍ୟ ତସ୍ୟୈବ ଶମଃ କାରଣ ମୁଚ୍ୟତେ । ୩ ।

ଫଳସଙ୍କଳ୍ପତ୍ୟାଗାଦେବ ଚିତ୍ତବିକ୍ଷେପାଭାବାତ୍ ଯୋଗୀ ଚ ଭବତ୍ୟେବ ସ ଇତ୍ୟର୍ଥଃ ।

ବକ୍ତବ୍ୟ—କାମନାତ୍ୟାଗ ବା ,ଫଳସନ୍ନ୍ୟାସ ସନ୍ନ୍ୟାସୀଙ୍କର ପ୍ରଧାନ ଲକ୍ଷଣ, କେବଳ କର୍ମତ୍ୟାଗଦ୍ୱାରା ସନ୍ନ୍ୟାସ ହୁଏ ନାହିଁ । ଧ୍ୟାନଯୋଗ ବା ଚିତ୍ତ-ନିରୋଧ ଯୋଗରେ ମଧ୍ୟ ସଙ୍କଳ୍ପତ୍ୟାଗ ବା କାମନାତ୍ୟାଗ ପ୍ରଧାନ କଥା, କାରଣ ସଙ୍କଳ୍ପହିଁ ଚିତ୍ତ ବିକ୍ଷେପର ହେତୁ । ସୁତରାଂ ସନ୍ନ୍ୟାସ, କର୍ମଯୋଗ ଓ ଧ୍ୟାନ ଯୋଗ—ଏ ତିନହେଁ ଏକ । ସବୁ ଅବସ୍ଥାରେ କାମନାତ୍ୟାଗହିଁ ପ୍ରଧାନ କଥା ।

୩ । ଅନ୍ୱୟଦୀପିକା—ଯୋଗମ୍ ଆରୁରୁକ୍ଷୋଃ ( ଯୋଗାରୂଢ଼ ହେବାକୁ ଇଚ୍ଛା କରୁଥିବା ) ମୁନେଃ ( ମୁନିଙ୍କ ପକ୍ଷରେ ) କର୍ମ ( କର୍ମହିଁ ) କାରଣମ୍ ( କାରଣବୋଲି ) ଉଚ୍ୟତେ ( କୁହାଯାଏ ) ଯୋଗାରୂଢ଼ସ୍ୟ ତସ୍ୟ ( ଯୋଗାରୂଢ଼ହେଲେ ତାଙ୍କ ପକ୍ଷରେ ) ଶମଃ ( ଶାନ୍ତି ) କାରଣମ୍ ଉଚ୍ୟତେ ( କାରଣ ବୋଲି କୁହା ଯାଏ ) ।

ଅନୁବାଦ—ଯୋଗାରୂଢ଼ ହେବାକୁ ଇଚ୍ଛା କରୁଥିବା ଯୋଗୀଙ୍କ ପକ୍ଷରେ ନିଷ୍କାମ କର୍ମହିଁ ଯୋଗସିଦ୍ଧିର କାରଣ ବୋଲି କୁହାଯାଏ । ଯୋଗାରୂଢ଼ ହେବା ପରେ ଚିତ୍ତର ସମତାହିଁ ବ୍ରାହ୍ମୀସ୍ଥିତିରେ ନିଶ୍ଚଳ ରହିବାର କାରଣ ।

ସୁବୋଧିନୀ ଟୀକା—ତର୍ହି ଯାବଜ୍ଜୀବ କର୍ମଯୋଗ ଏବ ପ୍ରାପ୍ତ ଇତ୍ୟାଶଙ୍କ୍ୟ ତସ୍ୟାବଧିମାହ—ଆରୁରୁକ୍ଷୋରିତି । ଜ୍ଞାନଯୋଗମାରୋଢୁଂ ପ୍ରାପ୍ତୁମିଚ୍ଛୋଃ ପୁଂସସ୍ତଦାରୋହେ କାରଣଂ କର୍ମୋଚ୍ୟତେ । ଚିତ୍ତଶୁଦ୍ଧିକରତ୍ୱାତ୍ ଜ୍ଞାନଯୋଗ ମାରୂଢ଼ସ୍ୟ ତୁ ତସ୍ୟୈବ ଧ୍ୟାନନିଷ୍ଠସ୍ୟ ଶମଃ ସମାଧି ଶ୍ଚିତ୍ତବିକ୍ଷେପକ-କର୍ମୋପରମୋ ଜ୍ଞାନପରିପାକେ କାରଣ ମୁଚ୍ୟତେ ।

ବକ୍ତବ୍ୟ—ଶ୍ଳୋକର ପ୍ରଥମାର୍ଦ୍ଧରେ କୁହାଯାଇଅଛି କର୍ମଯୋଗରେ ସିଦ୍ଧିଲାଭ କରିବାକୁ ହେଲେ କର୍ତ୍ତୃତ୍ୱାଭିମାନତ୍ୟାଗପୂର୍ବକ ନିଷ୍କାମଭାବରେ କର୍ମ କରିବାକୁ ହେବ । ଏହାହିଁ ବ୍ରାହ୍ମୀସ୍ଥିତି । ଦ୍ୱିତୀୟାର୍ଦ୍ଧରେ କୁହାଯାଇଅଛି, ଏହି ବ୍ରାହ୍ମୀସ୍ଥିତିରେ ସ୍ଥିର ରହିବା ପକ୍ଷରେ ଶମ ବା ଶାନ୍ତି ଅର୍ଥାତ୍ ଅପ୍ରସନ୍ନମ-ଜନିତ ଚିତ୍ତପ୍ରସାଦ କାରଣ ସ୍ୱରୂପ ।

ସନ୍ନ୍ୟାସ ମାର୍ଗୀ ଟୀକାକାରମାନେ ଦ୍ୱିତୀୟାର୍ଦ୍ଧରେ ଥିବା 'ଶମଃ' ଶବ୍ଦକୁ 'କର୍ମର ଉପଶମ' ବୋଲି ବ୍ୟାଖ୍ୟାକରି କହନ୍ତି ଯେ ଯୋଗାରୂଢ଼ ବ୍ୟକ୍ତି ପକ୍ଷରେ କର୍ମ ନ କରିବାହିଁ ଏଠାରେ ଲକ୍ଷ୍ୟ । ଏପରି ବ୍ୟାଖ୍ୟାରେ ଗୀତୋକ୍ତ କର୍ମଯୋଗର ପୂର୍ବାପର ସଙ୍ଗତି ରକ୍ଷା ହୁଏ ନାହିଁ ।

ଯଦା ହି ନେନ୍ଦ୍ରିୟାର୍ଥେଷୁ ନ କର୍ମସ୍ୱନୁଷଜ୍ଜତେ ।
ସର୍ବସଙ୍କଳ୍ପସନ୍ନ୍ୟାସୀ ଯୋଗାରୂଢ଼ସ୍ତଦୋଚ୍ୟତେ । ୪ ।
ଉଦ୍ଧରେଦାତ୍ମନା ତ୍ମାନଂ ନାତ୍ମାନ ମବସାଦୟେତ୍ ।
ଆତ୍ମୈବ ହ୍ୟାତ୍ମନୋ ବନ୍ଧୁ ରାତ୍ମୈବ ରିପୁରାତ୍ମନଃ । ୫ ।

୪ । ଅନ୍ୱୟଦୀପିକା—ଯଦା ହି (ଯେତେବେଳେ) ସର୍ବସଙ୍କଳ୍ପ ସନ୍ନ୍ୟାସୀ (ସମସ୍ତ ସଙ୍କଳ୍ପ ତ୍ୟାଗକାରୀ ବ୍ୟକ୍ତି) ଇନ୍ଦ୍ରିୟାର୍ଥେଷୁ (ଇନ୍ଦ୍ରିୟଭୋଗ୍ୟ ବିଷୟରେ) ନ ଅନୁଷଜ୍ଜତେ (ଅସକ୍ତ ହୁଅନ୍ତି ନାହିଁ) କର୍ମସୁ ଚ ନ (କର୍ମରେ ମଧ୍ୟ ଅସକ୍ତ ହୁଅନ୍ତି ନାହିଁ) ତଦା (ସେତେବେଳେ) ଯୋଗାରୂଢ଼ଃ ଉଚ୍ୟତେ (ଯୋଗାରୂଢ଼ ବୋଲି ଅଭିହିତ ହୁଅନ୍ତି) ।

ଅନୁବାଦ—ଯେତେବେଳେ ସର୍ବ ସଙ୍କଳ୍ପ ତ୍ୟାଗ କରି ସାଧକ ଇନ୍ଦ୍ରିୟ ଭୋଗ ବିଷୟରେ ଓ କର୍ମରେ ଅସକ୍ତ ହୁଅନ୍ତି ନାହିଁ, ସେତେବେଳେ ସେ ଯୋଗାରୂଢ଼ ବୋଲି କଥିତ ହୁଅନ୍ତି ।

ସୁବୋଧିନୀ ଟୀକା—କିଦୃଶୋଽସୌ ଯୋଗାରୂଢ଼ୋ ଯସ୍ୟ ଶମଃ କାରଣ ମୁଚ୍ୟତ ଇତି । ତତ୍ରାହ—ଯଦେତି । ଇନ୍ଦ୍ରିୟାର୍ଥେଷ୍ୱିନ୍ଦ୍ରିୟ ଭୋଗ୍ୟେଷୁ ଶବ୍ଦାଦିଷୁ ତତ୍ ସାଧନେଷୁ ଚ କର୍ମସୁ ଯଦା ନାନୁଷଜ୍ଜତେ ଆସକ୍ତିଂ ନ କରୋତି । ତତ୍ରହେତୁଃ—ଆସକ୍ତିମୂଳଭୂତାନ୍ ସର୍ବାନ୍ ଭୋଗବିଷୟାନ୍ କର୍ମବିଷୟାଂଶ୍ଚ ସଙ୍କଳ୍ପାନ୍ ସନ୍ନ୍ୟସିତୁଂ ତ୍ୟକ୍ତୁଂ ଶୀଳଂ ଯସ୍ୟ ସଃ । ତଦାଯୋଗାରୂଢ଼ ଉଚ୍ୟତେ ।

ବିବୃତି—ସର୍ବ ସଙ୍କଳ୍ପ ତ୍ୟାଗ ଏବଂ ବିଷୟରେ ଓ କର୍ମରେ ଅନାସକ୍ତି—ଏହା ଯୋଗାରୂଢ଼ ପୁରୁଷରହିଁ ଲକ୍ଷଣ, ସଙ୍କଳ୍ପ ତ୍ୟାଗ ଓ ଆସକ୍ତି ତ୍ୟାଗରେ କର୍ମତ୍ୟାଗ ବୁଝା ଯାଏ ନାହିଁ ।

ସଙ୍କଳ୍ପରୁ କାମନାର ଉତ୍ପତ୍ତି ହୋଇଥାଏ, ଏହି ହେତୁରୁ ସର୍ବ ସଙ୍କଳ୍ପ ତ୍ୟାଗ କଲେ କାମନାର ଶାନ୍ତି ହୁଏ । କାମନା ଶାନ୍ତିରେ ଚିତ୍ତ ସମାହିତ ହେଲେ ସାଧକ 'ବିଧେୟାତ୍ମା' ହୁଅନ୍ତି । ଯମ, ନିୟମାଦି ଅଷ୍ଟାଙ୍ଗ ଯୋଗ ଏହାଙ୍କର ସହାୟକ ।

୫ । ଅନ୍ୱୟଦୀପିକା—ଆତ୍ମନା (ଆତ୍ମାଦ୍ୱାରା) ଆତ୍ମାନମ୍ (ଆତ୍ମାକୁ) ଉଦ୍ଧରେତ୍ (ଉଦ୍ଧାର କରିବ) ଆତ୍ମାନଂ (ଆତ୍ମାକୁ) ନ ଅବସାଦୟେତ୍ (ଅବସନ୍ନ କରିବ ନାହିଁ ବା ଅଧୋଗାମୀ କରିବ ନାହିଁ), ହି (କାରଣ) ଆତ୍ମା ଏବ (ଏହିଆତ୍ମାହିଁ) ଆତ୍ମନଃ ବନ୍ଧୁଃ (ଆତ୍ମାରବନ୍ଧୁ); ଆତ୍ମା ଏବ (ଆତ୍ମାହିଁ) ଆତ୍ମନଃ (ଆତ୍ମାର) ରିପୁଃ (ଶତ୍ରୁ) ।

ଅନୁବାଦ—ଆତ୍ମାଦ୍ୱାରା ଆତ୍ମାକୁ ଉଦ୍ଧାର କରିବ ଅର୍ଥାତ୍ ବିଷୟ ଜଞ୍ଜାଳରୁ ମୁକ୍ତ କରିବ, ଆତ୍ମାକୁ ଅବସନ୍ନ କରିବ ନାହିଁ ଅର୍ଥାତ୍ ନିମ୍ନ ଆଡ଼କୁ ନେବ ନାହିଁ । କାରଣ ଆତ୍ମାହିଁ ଆତ୍ମାର ବନ୍ଧୁ ଏବଂ ଆତ୍ମାହିଁ ଆତ୍ମାର ଶତ୍ରୁ ।

ବନ୍ଧୁରାତ୍ମାତ୍ମନସ୍ତସ୍ୟ ଯେନାତ୍ମୈବାତ୍ମନା ଜିତଃ ।
ଅନାତ୍ମନସ୍ତୁ ଶତ୍ରୁତ୍ୱେ ବର୍ତ୍ତେତାତ୍ମୈବ ଶତ୍ରୁବତ୍ । ୬ ।

ସୁବୋଧିନୀ ଟୀକା—ଅତୋ ବିଷୟାସକ୍ତିତ୍ୟାଗେ ମୋକ୍ଷଂ ତଦାସକ୍ତୌ ଚ ବନ୍ଧଂ ପର୍ଯ୍ୟାଲୋଚ୍ୟ ରାଗାଦ୍ୟସ୍ୱାଭାବିକଂ ତ୍ୟଜେଦିତ୍ୟାହ—ଉଦ୍ଧରେଦିତି । ଆତ୍ମନା ବିବେକଯୁକ୍ତେନାତ୍ମାନଂ ସଂସାରାଦୁଦ୍ଧରେତ୍ । ନତ୍ୱବସାଦୟେଦଧୋ ନ ନୟେତ୍ । ହି ଯତ ଆତ୍ମୈବ ମନଃ ସଙ୍ଗାଦ୍ୟୁପରତ ଆତ୍ମନଃ ସ୍ୱସ୍ୟ ବନ୍ଧୁରୁପକାରକଃ, ରିପୁରପକାରକଶ୍ଚ ।

୬ । ଅନ୍ୱୟ ଦୀପିକା—ଯେନ ଆତ୍ମନା ଏବ (ଯେଉଁ ଆତ୍ମା କର୍ତ୍ତୃକ) ଆତ୍ମା ଜିତଃ (ଆତ୍ମା ବଶୀଭୂତ ହୋଇଅଛି) ଆତ୍ମା ତସ୍ୟ ଆତ୍ମନଃ ବନ୍ଧୁଃ (ଆତ୍ମା ସେହି ଆତ୍ମାର ବନ୍ଧୁ); ଅନାତ୍ମନଃ ତୁ ଆତ୍ମା ଏବ (ଅଜିତାତ୍ମାର ଆତ୍ମାହିଁ) ଶତ୍ରୁବତ୍ ଶତ୍ରୁତ୍ୱେ ବର୍ତ୍ତେତ (ଶତ୍ରୁପରି ଅପକାର କରିବାରେ ପ୍ରବୃତ୍ତ ହୁଏ) ।

ଅନୁବାଦ—ଯେଉଁ ଆତ୍ମା ଆତ୍ମାକୁ ଜୟ କରିଅଛି, ସେହି ଆତ୍ମାହିଁ ଆତ୍ମାର ବନ୍ଧୁ ଏବଂ ଯେଉଁ ଆତ୍ମା ଆତ୍ମାକୁ ଜୟକରିବାରେ ଅସମର୍ଥ ସେହି ଆତ୍ମାହିଁ ଶତ୍ରୁପରି ଅପକାର କରିବାରେ ପ୍ରବୃତ୍ତ ହୁଏ ।

ସୁବୋଧିନୀ ଟୀକା—କଥଂଭୂତସ୍ୟାତ୍ମୈବ ବନ୍ଧୁଃ ? କଥଂଭୂତସ୍ୟ ଚାତ୍ମୈବ ରିପୁରିତ୍ୟପେକ୍ଷାୟାମାହ—ବନ୍ଧୁରିତି । ଯେନାତ୍ମନୈବାତ୍ମା କାର୍ଯ୍ୟକାରଣସଂଘାତରୂପୋ ଜିତୋ ବଶୀକୃତସ୍ତଥାଭୂତସ୍ୟାତ୍ମନ ଆତ୍ମୈବ ବନ୍ଧୁଃ । ଅନାତ୍ମନୋଽଜିତାତ୍ମନସ୍ତ୍ୱାତ୍ମୈବାତ୍ମନଃ ଶତ୍ରୁତ୍ୱେ ଶତ୍ରୁବଦପକାରିତ୍ୱେ ବର୍ତ୍ତେତ ।

ବିବୃତି—ପୂର୍ବ ଶ୍ଳୋକମାନଙ୍କରେ କର୍ମଫଳତ୍ୟାଗର ଯେଉଁ ଉପଦେଶ ଦିଆଯାଇ ଅଛି ତହିଁରେ ସିଦ୍ଧିଲାଭ କରିବାରେ ପ୍ରତ୍ୟେକ ଲୋକର ଯେ ଅଧିକାର ଅଛି, ତାହା ଏହି ଦୁଇ ଶ୍ଳୋକରେ ବୁଝାଯାଇ ଅଛି । ଯତ୍ନ କଲେ ପ୍ରତ୍ୟେକ ଲୋକ ଏହା ସହଜରେ ଲାଭକରି ପାରେ ।

ସଂସ୍କୃତରେ 'ଆତ୍ମା' ଶବ୍ଦ ପାଞ୍ଚଗୋଟି ଭିନ୍ନ ଅର୍ଥରେ ପ୍ରଯୁକ୍ତ ହେବା ଦେଖାଯାଏ । "ଆତ୍ମା ଜୀବେ ଧୃତୌ ଦେହେ ସ୍ୱଭାବେ ପରମାତ୍ମନି ।" ଅର୍ଥାତ୍ ଆତ୍ମା ଶବ୍ଦ ଜୀବାତ୍ମା, ଧୃତି ବା ଧୈର୍ଯ୍ୟ, ଦେହ, ସ୍ୱଭାବ ଓ ପରମାତ୍ମା ଅର୍ଥରେ ପ୍ରଯୁକ୍ତ ହୋଇଥାଏ । ଏଠାରେ ଜୀବାତ୍ମା ଅର୍ଥହିଁ ଉଦ୍ଦିଷ୍ଟ, ଅନେକ କହନ୍ତି ଆତ୍ମାର ସ୍ୱାତନ୍ତ୍ର୍ୟ ନାହିଁ, ପ୍ରକୃତି ଦ୍ୱାରା ଗୃହୀତ ହୋଇ ସେ କର୍ମ କରେ, ମାତ୍ର ଏ ଶ୍ଳୋକ ଦ୍ୱୟରେ ଭଗବାନ୍ ସ୍ପଷ୍ଟ କହୁଅଛନ୍ତି—ଆତ୍ମାଦ୍ୱାରା ଆତ୍ମାକୁ ଉଦ୍ଧାର କରିବ ଅର୍ଥାତ୍ ନିଜେ ନିଜକୁ ଉଦ୍ଧାର କରିବାକୁ ଚେଷ୍ଟା କରିବ । ଆପଣାକୁ

ଜିତାତ୍ମନଃ ପ୍ରଶାନ୍ତସ୍ୟ ପରମାତ୍ମା ସମାହିତଃ ।
ଶୀତୋଷ୍ଣ ସୁଖଦୁଃଖେଷୁ ତଥା ମାନାପମାନୟୋଃ । ୭ ।

କେବେହେଁ ଅଧୋଗାମୀ କରଇବ ନାହିଁ, ଇତ୍ୟାଦି । ପ୍ରକୃତି ଯେତେ ବଳବାନ୍ ହେଉନା କାହିଁକି ତାକୁ ଜୟକରି ଅତ୍ମୋନ୍ନତି କରିବା ପ୍ରତ୍ୟେକର ସ୍ୱାୟତ୍ତ ।

କର୍ମଯୋଗର ପ୍ରଧାନ ଲକ୍ଷଣ ଫଳତ୍ୟାଗ ଓ ବିଷୟରେ ଅନାସକ୍ତି; ଆତ୍ମା ସ୍ୱଭାବତଃ ସମ, ଶାନ୍ତ, ସଙ୍କଳ୍ପ ଶୂନ୍ୟ ଓ ନିର୍ବିକାର, କିନ୍ତୁ ପ୍ରକୃତି ବା ମାୟାଦ୍ୱାରା ଅଚ୍ଛାଦିତ ହୋଇ ଥିବାରୁ 'ମୁଁ' 'ମୋର' ଇତ୍ୟାଦି ଅଭିମାନ ରୂପ ସଙ୍କଳ୍ପ ଶୃଙ୍ଖଳରେ ଅବଦ୍ଧ ରହନ୍ତି । ବିଷୟାସକ୍ତମନହିଁ ଏହି ସଙ୍କଳ୍ପର ମୂଳ । ମନକୁ ଯେବେ ବିଷୟରୁ ପ୍ରତ୍ୟାହୃତ କରାଯାଏ, ତେବେ ଏହା ଅନ୍ତର୍ମୁଖୀ ହୁଏ, ସେତେବେଳେ ଆତ୍ମା ସ୍ୱରୂପରେ ପ୍ରକାଶିତ ହୁଅନ୍ତି, ପ୍ରକୃତରେ ବିଷୟାସକ୍ତ ମନହିଁ ବନ୍ଧନର କାରଣ । ବିଷୟ ବିମୁକ୍ତ ହେଲେ ସେ ମୋକ୍ଷର କାରଣ ହୁଏ, ସେହି ଯୋଗରୁ କୁହାଯାଏ—"ମନ ଏବ ମନୁଷ୍ୟାଣାଂ କାରଣଂ ବନ୍ଧମୋକ୍ଷୟୋଃ," ମନହିଁ ମନୁଷ୍ୟର ବନ୍ଧନ ଓ ମୁକ୍ତିର କାରଣ; ଏହା ଜ୍ଞାନବାଦ, ମାତ୍ର ଭକ୍ତିବାଦୀମାନେ କହନ୍ତି ଈଶ୍ୱରଙ୍କ ଦୟା ନ ହେଲେ ମନ ବିଷୟବିମୁକ୍ତ ହୁଏ ନାହିଁ । ତେଣୁ ସର୍ବଥା ତାଙ୍କର ଶରଣ ନେଲେ ଜୀବର ମୁକ୍ତି ସହଜସାଧ୍ୟ ହୁଏ ।

୭ । ଅନ୍ୱୟ ଦୀପିକା—ଜିତାତ୍ମନଃ ( ଯେ ନିଜ ଅନ୍ତଃକରଣକୁ ଜୟକରି ଅଛନ୍ତି, ଜିତେନ୍ଦ୍ରିୟ ) ପ୍ରଶାନ୍ତସ୍ୟ ( ରାଗଦ୍ୱେଷ ଶୂନ୍ୟ ବ୍ୟକ୍ତିଙ୍କର ) ପରମାତ୍ମା ( ପରମାତ୍ମା ) ଶୀତୋଷ୍ଣ ସୁଖ ଦୁଃଖେଷୁ (ଶୀତ ଗ୍ରୀଷ୍ମ ସୁଖ ଦୁଃଖରେ) ତଥା ମାନାପମାନୟୋଃ ( ଏବଂ ମାନ ଓ ଅପମାନରେ ) ସମାହିତଃ ( ଅବିଚଳିତ ) [ ଥାଅନ୍ତି ] ।

**ଅନୁବାଦ**—ଯେ ନିଜର ଆତ୍ମା ଅର୍ଥାତ୍ ଅନ୍ତଃକରଣକୁ ଜୟ କରି ଅଛନ୍ତି, ଏବଂ ଯେ ରାଗଦ୍ୱେଷାଦିଶୂନ୍ୟ, ଏପରି ବ୍ୟକ୍ତିଙ୍କର ପରମାତ୍ମା ଶୀତଗ୍ରୀଷ୍ମ ସୁଖଦୁଃଖରେ ଏବଂ ମାନ ଓ ଅପମାନରେ ସମାହିତ ଥାଅନ୍ତି ଅର୍ଥାତ୍ ଅବିଚଳିତ ଭାବରେ ସ୍ୱୀୟ ସମଶାନ୍ତ ସ୍ୱରୂପରେ ଅବସ୍ଥାନ କରନ୍ତି ।

**ସୁବୋଧିନୀ ଟୀକା**—ଜିତାତ୍ମନଃ ସ୍ୱସ୍ମିନ୍ ବନ୍ଧୁତ୍ୱଂ ସ୍ଫୁଟୟତି— ଜିତାତ୍ମନ ଇତି । ଜିତ ଆତ୍ମା ଯେନ ତସ୍ୟ ପ୍ରଶାନ୍ତସ୍ୟ ରାଗାଦିରହିତସ୍ୟୈବ । ପରଂ କେବଳଂ ଆତ୍ମା ଶୀତୋଷ୍ଣାଦିଷୁ ସତ୍ସ୍ୱପି ସମାହିତଃ ସ୍ୱାତ୍ମନିଷ୍ଠୋ ଭବତି । ନାନ୍ୟସ୍ୟ । ଯଦ୍ୱା ତସ୍ୟହୃଦି ପରମାତ୍ମା ସମାରୂଢଃ ସ୍ଥିତୋ ଭବତି ।

ବିବୃତି—ଲୋକମାନ୍ୟ ତିଳକଙ୍କ ମତରେ ଏ ଶ୍ଳୋକରେ ବ୍ୟବହୃତ 'ପରମାତ୍ମା' ପଦ 'ଆତ୍ମା' ଅର୍ଥରେ ପ୍ରଯୁକ୍ତ ହୋଇଅଛି । ଦେହର ଅତା ବା

ଜ୍ଞାନବିଜ୍ଞାନ ତୃପ୍ତାତ୍ମା କୂଟସ୍ଥୋ ବିଜିତେନ୍ଦ୍ରିୟଃ ।
ଯୁକ୍ତ ଇତ୍ୟୁଚ୍ୟତେ ଯୋଗୀ ସମଲୋଷ୍ଟ୍ରାଶ୍ମକାଞ୍ଚନଃ । ୮ ।

ଜୀବାତ୍ମା ସାଧାରଣତଃ ସୁଖ ଦୁଃଖାଦି ଉପାଧିରେ ମଗ୍ନ ଥାଆନ୍ତି, କିନ୍ତୁ ଇନ୍ଦ୍ରିୟ ସଂଯମଦ୍ୱାରା ଉପାଧିସମୂହକୁ ଜୟ କଲେ ଏହି ଆତ୍ମାହିଁ ପରମାତ୍ମାରୂପ ହୋଇ ଯାଆନ୍ତି, ଆତ୍ମା ପରମାତ୍ମାଙ୍କର ଅଂଶ ( ଗୀତା ୧୫ । ୭ ) । ମହାଭାରତ ଶାନ୍ତିପର୍ବରେ ( ୧୭୨୪ ) ମଧ୍ୟ ବର୍ଣ୍ଣିତ ଅଛି:—

ଆତ୍ମା କ୍ଷେତ୍ରଜ୍ଞ ଇତ୍ୟୁକ୍ତଃ ସଂଯୁକ୍ତଃ ପ୍ରାକୃତୈର୍ଗୁଣୈଃ ।
ତୈରେବ ତୁ ବିନିର୍ମୁକ୍ତଃ ପରମାତ୍ମେତ୍ୟୁଦାହୃତଃ ।

'ପ୍ରକୃତିର ଗୁଣ ସୁଖଦୁଃଖାଦି ବିକାରରେ ବଦ୍ଧଥିବା ହେତୁରୁ ଆତ୍ମାଙ୍କୁହିଁ କ୍ଷେତ୍ରଜ୍ଞ ବା ଜୀବାତ୍ମା ବୋଲିଯାଏ, ଏହି ଗୁଣରୁ ମୁକ୍ତ ହେଲେ ସେହି ଆତ୍ମାହିଁ ପରମାତ୍ମା ହୋଇଯାଆନ୍ତି ।

ଶ୍ରୀଧରସ୍ୱାମୀ ପରମାତ୍ମା ଶବ୍ଦକୁ ପରମ୍ + ଆତ୍ମା—ଏହିପରି ବିଶ୍ଳେଷଣ କରି 'ପରଂ' କୁ 'ସମାହିତଃ' ପଦର କ୍ରିୟା ବିଶେଷଣ କରିଅଛନ୍ତି ।

୮ । **ଅନ୍ୱୟଦୀପିକା**— ଜ୍ଞାନବିଜ୍ଞାନ ତୃପ୍ତାତ୍ମା ( ଜ୍ଞାନ ଓ ବିଜ୍ଞାନ ଦ୍ୱାରା ପରିତୃପ୍ତ ଚିତ୍ତ ) କୂଟସ୍ଥଃ ( ବିକାରଶୂନ୍ୟ ) ବିଜିତେନ୍ଦ୍ରିୟଃ ( ଜିତେନ୍ଦ୍ରିୟ ) ସମଲୋଷ୍ଟ୍ରାଶ୍ମକାଞ୍ଚନଃ ( ମାଟି, ପଥର ଓ ସୁବର୍ଣ୍ଣରେ ସମ ଦୃଷ୍ଟିସମ୍ପନ୍ନ ) ଯୋଗୀ ଯୁକ୍ତ ଇତି ଉଚ୍ୟତେ ( ଏପରି ଯୋଗୀଙ୍କୁ ଯୁକ୍ତ ବା ଯୋଗସିଦ୍ଧ କୁହାଯାଏ ) ।

**ଅନୁବାଦ**—ଯାହାଙ୍କର ଆତ୍ମା ଜ୍ଞାନ ଓ ବିଜ୍ଞାନରେ ତୃପ୍ତ, ଯେ ନିର୍ବିକାର ଓ ଜିତେନ୍ଦ୍ରିୟ, ମାଟି, ପଥର ଓ ସୁନାରେ ଯାହାଙ୍କର ସମାନ ଜ୍ଞାନ ଏପରି କର୍ମଯୋଗୀ ପୁରୁଷଙ୍କୁ ଯୁକ୍ତ ଅର୍ଥାତ୍ ଯୋଗସିଦ୍ଧ କୁହାଯାଏ ।

**ସୁବୋଧିନୀ ଟୀକା**—ଯୋଗାରୂଢ଼ସ୍ୟ ଲକ୍ଷଣଂ ଶ୍ରେଷ୍ଠ୍ୟଂ ଚୋକ୍ତ-ମୁପସଂହରତି—ଜ୍ଞାନେତି । ଜ୍ଞାନମୌପଦେଶିକଂ । ବିଜ୍ଞାନମପରୋକ୍ଷାନୁଭବଃ । ତାଭ୍ୟାଂ ତୃପ୍ତୋ ନିରାକାଙ୍କ୍ଷ ଆତ୍ମା ଚିତ୍ତଂ ଯସ୍ୟ । ଅତଃ କୂଟସ୍ଥୋ ନିର୍ବିକାରଃ । ଅତଏବ ବିଜିତାନୀନ୍ଦ୍ରିୟାଣି ଯେନ । ଅତ ଏବ ସମାନି ଲୋଷ୍ଟ୍ରାଦୀନି ଯସ୍ୟ । ମୃତ୍ପିଣ୍ଡପାଷାଣସୁବର୍ଣ୍ଣେଷୁ ହେୟୋପାଦେୟବୁଦ୍ଧିଶୂନ୍ୟଃ । ସ ଯୁକ୍ତୋ ଯୋଗାରୂଢ଼ ଇତ୍ୟୁଚ୍ୟତେ ।

**ବିବୃତି**—ଗୁରୁଙ୍କ ଉପଦେଶ ଓ ଶାସ୍ତ୍ରାଭ୍ୟାସରୁ ଯେଉଁ ନିର୍ମଳ ବୁଦ୍ଧିର ଉଦୟ ହୁଏ, ତାହାକୁ ଜ୍ଞାନ ବୋଲିଯାଏ । ତତ୍ତ୍ୱ ପଦାର୍ଥର ପ୍ରତ୍ୟକ୍ଷାନୁଭବର ନାମ ବିଜ୍ଞାନ—ଏହି ଉଭୟ ଦ୍ୱାରା ଯାହାଙ୍କର ଚିତ୍ତ ପରିତୃପ୍ତ ଥାଏ ତାହାଙ୍କୁ ଜ୍ଞାନବିଜ୍ଞାନତୃପ୍ତାତ୍ମା କୁହାଯାଏ । କୂଟସ୍ଥ ଅର୍ଥ ବିକାର ରହିତ;

ସୁହୃନ୍ମିତ୍ରାର୍ଯ୍ୟୁଦାସୀନମଧ୍ୟସ୍ଥଦ୍ୱେଷ୍ୟବନ୍ଧୁଷୁ ।
ସାଧୁଷ୍ୱପି ଚ ପାପେଷୁ ସମବୁଦ୍ଧିର୍ବିଶିଷ୍ୟତେ । ୯ ।

ଇନ୍ଦ୍ରିୟ ଭୋଗ୍ୟ ପଦାର୍ଥ ସମ୍ବନ୍ଧ ସନ୍ନିଧିରେ ଥିଲେହେଁ ଯାହାଙ୍କର ଚିତ୍ତ ବିକୃତ ହୁଏ ନାହିଁ ସେ ଜିତେନ୍ଦ୍ରିୟ । ଜ୍ଞାନବିଜ୍ଞାନଯୁକ୍ତ, ନିର୍ବିକାର, ନିସ୍ପୃହ ପୁରୁଷଙ୍କର ମାଟି, ପଥର, ସୁନାରେ ସମାନ ଜ୍ଞାନ ଜାତ ହେବା ସ୍ୱାଭାବିକ । ଏ ଅବସ୍ଥାରେ ଯୋଗୀଙ୍କୁ ଯୋଗାରୂଢ଼ ବୋଲି କୁହାଯାଏ ।

୯ । **ଅନ୍ୱୟଦୀପିକା**— ସୁହୃନ୍ମିତ୍ରାର୍ଯ୍ୟୁଦାସୀନମଧ୍ୟସ୍ଥ ଦ୍ୱେଷ୍ୟବନ୍ଧୁଷୁ ( ସୁହୃତ୍, ମିତ୍ର, ଅରି, ଉଦାସୀନ, ମଧ୍ୟସ୍ଥ, ଦ୍ୱେଷ୍ୟ ଓ ବନ୍ଧୁଙ୍କଠାରେ ) ସାଧୁଷୁ (ସାଧୁଙ୍କଠାରେ) ପାପେଷୁ ଅପି ଚ ( ଏବଂ ଅସାଧୁ ପ୍ରଭୃତିଙ୍କଠାରେ ମଧ୍ୟ) ସମବୁଦ୍ଧିଃ ( ସମାନ ଜ୍ଞାନବିଶିଷ୍ଟ ବ୍ୟକ୍ତି ) ବିଶିଷ୍ୟତେ ( ବିଶିଷ୍ଟ ବା ଶ୍ରେଷ୍ଠ ହୁଅନ୍ତି ) ।

**ଅନୁବାଦ**—ସୁହୃତ୍, ମିତ୍ର, ଶତ୍ରୁ, ଉଦାସୀନ, ମଧ୍ୟସ୍ଥ, ଦ୍ୱେଷ୍ୟ, ବନ୍ଧୁ, ସାଧୁ ଓ ଅସାଧୁ—ଏ ସମସ୍ତଙ୍କ ପ୍ରତି ଯାହାଙ୍କର ବୁଦ୍ଧି ସମାନ ସେ ଶ୍ରେଷ୍ଠ ଅଟନ୍ତି ।

**ସୁବୋଧିନୀ ଟୀକା**—ସୁହୃନ୍ମିତ୍ରାଦଷୁ ସମବୁଦ୍ଧିଯୁକ୍ତସ୍ତୁ ତତୋଽପି ଶ୍ରେଷ୍ଠ ଇତ୍ୟାହ—ସୁହୃଦତି । ସୁହୃତ୍ ସ୍ୱଭାବେନୈବ ହିତାଶଂସୀ । ମିତ୍ରଂ ସ୍ନେହବଶେନୋପକାରକଃ । ଅରିର୍ଘାତକଃ । ଉଦାସୀନୋ ବିବଦମାନୟୋ-ରୁଭୟୋରପ୍ୟୁପେକ୍ଷକଃ । ମଧ୍ୟସ୍ଥୋ ବିବଦମାନୟୋରୁଭୟୋରପି ହିତାଶଂସୀ । ଦ୍ୱେଷ୍ୟୋ ଦ୍ୱେଷବିଷୟଃ, ବନ୍ଧୁଃ ସମ୍ବନ୍ଧୀ, ସାଧବଃ ସଦାଚାରାଃ । ପାପାଦୁରାଚାରାଃ, ଏତେଷ୍ୱପି ସମା ରାଗଦ୍ୱେଷାଦିଶୂନ୍ୟା ବୁଦ୍ଧିର୍ଯସ୍ୟ ସ ତୁ ବିଶିଷ୍ଟଃ ।

**ବିବୃତି**—ପ୍ରତ୍ୟୁପକାରର ଆଶା ନ ରଖି ଯେ ଉପକାର କରନ୍ତି ତାହାଙ୍କୁ ସୁହୃଦ୍ ବୋଲଯାଏ । ଯେ ସ୍ନେହର ବଶବର୍ତ୍ତୀ ହୋଇ ଉପକାର କରନ୍ତି ସେ ମିତ୍ର । ଯେ ଅପକାର କରେ ସେ ଅରି ବା ଶତ୍ରୁ । ଉଦାସୀନ ବ୍ୟକ୍ତି ବିବାଦ କରୁଥିବା ଉଭୟ ପକ୍ଷ ମଧ୍ୟରୁ କୌଣସି ପକ୍ଷ ଅବଲମ୍ବନ କରନ୍ତି ନାହିଁ । ଯେ ବିବାଦ କରୁଥିବା ଉଭୟ ପକ୍ଷର ହିତାକାଂକ୍ଷୀ ସେ ମଧ୍ୟସ୍ଥ । ଯାହାଠାରୁ ଅପକାର ଆଶଙ୍କା କରାଯାଏ ସେ ଦ୍ୱେଷ୍ୟ ଅର୍ଥାତ୍ ଦ୍ୱେଷର ପାତ୍ର । ଜ୍ଞାତି କୁଟୁମ୍ବ ଶ୍ୱଶୁର ପ୍ରଭୃତି ସମ୍ବନ୍ଧ ବିଶିଷ୍ଟ ବ୍ୟକ୍ତିଙ୍କୁ ବନ୍ଧୁ କହନ୍ତି । ଏମାନଙ୍କଠାରେ ଏବଂ ସାଧୁ ଓ ଅସାଧୁଙ୍କଠାରେ ଯେ ସର୍ବଦା ଚିତ୍ତବୃତ୍ତିର ରଖି ଥାଅନ୍ତି—ତାହାଙ୍କୁ ହିଁ ଯୋଗସିଦ୍ଧ ପୁରୁଷ ବୋଲି ବୁଝିବାକୁ ହେବ ।

ଯୋଗୀ ଯୁଞ୍ଜୀତ ସତତମାତ୍ମାନଂ ରହସି ସ୍ଥିତଃ ।
ଏକାକୀ ଯତ ଚିତ୍ତାତ୍ମା ନିରାଶୀରପରିଗ୍ରହଃ ॥ ୧୦ ॥
ଶୁଚୌ ଦେଶେ ପ୍ରତିଷ୍ଠାପ୍ୟ ସ୍ଥିରମାସନମାତ୍ମନଃ ।
ନାତ୍ୟୁଚ୍ଛ୍ରିତଂ ନାତିନୀଚଂ ଚୈଲାଜିନକୁଶୋତ୍ତରମ୍ ॥ ୧୧ ॥
ତତ୍ରୈକାଗ୍ରଂ ମନଃ କୃତ୍ୱା ଯତଚିତ୍ତେନ୍ଦ୍ରିୟକ୍ରିୟଃ ।
ଉପବିଶ୍ୟାସନେ ଯୁଞ୍ଜ୍ୟାଦ୍ୟୋଗମାତ୍ମବିଶୁଦ୍ଧୟେ ॥ ୧୨ ॥

**୧୦ । ଅନ୍ୱୟଦୀପିକା—** ଯୋଗୀ, ରହସିସ୍ଥିତଃ ( ନିର୍ଜ୍ଜନ ସ୍ଥାନରେ ରହି), ଏକାକୀ ( ସଙ୍ଗଶୂନ୍ୟ ), ଯତଚିତ୍ତାତ୍ମା ( ମନ ଓ ଦେହକୁ ସଂଯତ କରି ), ନିରାଶୀଃ ( ଆକାଙ୍‌କ୍ଷା ଶୂନ୍ୟ ), ଅପରିଗ୍ରହଃ ( ପରିଗ୍ରହଶୂନ୍ୟ ହୋଇ ) ସତତମ୍ (ନିରନ୍ତର) ଆତ୍ମାନଂ ଯୁଞ୍ଜୀତ (ଚିତ୍ତକୁ ସମାହିତ କରିବେ) ।

**ଅନୁବାଦ—**ଯୋଗୀ ନିର୍ଜନ ସ୍ଥାନରେ ଏକାକୀ ରହି ମନ ଓ ଶରୀରକୁ ସଂଯତ ରଖିବେ ଏବଂ ଆକାଙ୍‌କ୍ଷାଶୂନ୍ୟ ଓ ପରିଗ୍ରହ ଶୂନ୍ୟ ହୋଇ ସର୍ବଦା ଯୋଗାଭ୍ୟାସରେ ନିବିଷ୍ଟ ରହିବେ ।

**ସୁବୋଧିନୀ ଟୀକା—**ଏବଂ ଯୋଗାରୂଢ଼ସ୍ୟ ଲକ୍ଷଣମୁକ୍ତ୍ୱେଦାନୀଂ ତସ୍ୟ ସାଙ୍ଗଂ ଯୋଗଂ ବିଧତ୍ତେ—ଯୋଗୀତ୍ୟାଦିନା ସ ଯୋଗୀ ପରମୋ ମତ ଇତ୍ୟନ୍ତେନ ଗ୍ରନ୍ଥେନ । ଯୋଗୀତି, ଯୋଗୀ ଯୋଗାରୂଢ଼ଃ । ଆତ୍ମାନଂ ମନଃ, ଯୁଞ୍ଜୀତ ସମାହିତଂ କୁର୍ଯ୍ୟାତ୍, ସତତଂ ନିରନ୍ତରଂ । ରହସ୍ୟେକାନ୍ତେସ୍ଥିତଃ ସନ୍, ଏକାକୀ ସଙ୍ଗଶୂନ୍ୟଃ, ଯତଂ ସଂଯତଂ ଚିତ୍ତମାତ୍ମା ଦେହଶ୍ଚ ଯସ୍ୟ, ନିରାଶୀ ନିର୍ଗତାକାଙ୍‌କ୍ଷଃ, ଅପରିଗ୍ରହଃ ପରିଗ୍ରହଶୂନ୍ୟଶ୍ଚ ।

**ବିବୃତି—**'ଅପରିଗ୍ରହ'ର ଅର୍ଥ ପରିଗ୍ରହଶୂନ୍ୟ; ଅର୍ଥାତ୍ ଯୋଗର ପ୍ରତିବନ୍ଧକ ସ୍ୱରୂପ ପଦାର୍ଥ ସଂଗ୍ରହରେ ବିରତ ।

**୧୧, ୧୨ । ଅନ୍ୱୟଦୀପିକା—**ଶୁଚୌ (ପବିତ୍ର) ଦେଶେ (ସ୍ଥାନରେ) ସ୍ଥିରଂ ( ନିଶ୍ଚଳ ) ନ ଅତ୍ୟୁଚ୍ଛ୍ରିତଂ ( ଅନତି ଉଚ୍ଚ ) ନ ଅତିନୀଚଂ (ଅନତି ନିମ୍ନ) ଚୈଲାଜିନକୁଶୋତ୍ତରଂ ( କୁଶ ଆସନ ଉପରେ ମୃଗାଦିର ଚର୍ମ ଏବଂ ତା ଉପରେ ବସ୍ତ୍ରଦ୍ୱାରା ରଚିତ ) ଆତ୍ମନଃ (ନିଜର) ଆସନଂ (ଆସନ) ପ୍ରତିଷ୍ଠାପ୍ୟ (ସଂସ୍ଥାପନପୂର୍ବକ) ତତ୍ର ଆସନେ (ସେହି ଆସନରେ) ଉପବିଶ୍ୟ (ବସି) ଯତଚିତ୍ତେନ୍ଦ୍ରିୟକ୍ରିୟଃ (ଚିତ୍ତ ଓ ଇନ୍ଦ୍ରିୟମାନଙ୍କର କ୍ରିୟା ସଂଯତ କରି) ମନଃ ଏକାଗ୍ରଂ କୃତ୍ୱା (ମନକୁ ଏକାଗ୍ର କରି) ଆତ୍ମଶୁଦ୍ଧୟେ (ଆତ୍ମଶୁଦ୍ଧି ନିମିତ୍ତ) (ଯୋଗାଭ୍ୟାସକାରୀ ଲୋକ) ଯୋଗଂ ଯୁଞ୍ଜ୍ୟାତ୍ (ଯୋଗାଭ୍ୟାସ କରିବେ) ।

ସମଂ କାୟଶିରୋଗ୍ରୀବଂ ଧାରୟନ୍ନଚଳଂ ସ୍ଥିରଃ ।
ସଂପ୍ରେକ୍ଷ୍ୟ ନାସିକାଗ୍ରଂ ସ୍ୱଂ ଦିଶଶ୍ଚାନବଲୋକୟନ୍ । ୧୩ ।
ପ୍ରଶାନ୍ତାତ୍ମା ବିଗତଭୀର୍ବ୍ରହ୍ମଚାରିବ୍ରତେ ସ୍ଥିତଃ ।
ମନଃ ସଂଯମ୍ୟ ମଚ୍ଚିତ୍ତୋ ଯୁକ୍ତ ଆସୀତ ମତ୍ପରଃ । ୧୪ ।

**ଅନୁବାଦ**—ଯୋଗାଭ୍ୟାସକାରୀ ପୁରୁଷ ପବିତ୍ର ସ୍ଥାନରେ ନିଜର ସ୍ଥିର ଆସନ ପ୍ରତିଷ୍ଠା କରିବେ, ତାହା ଅଧିକ ଉଚ୍ଚ ଓ ଅଧିକ ନୀଚ ହେବ ନାହିଁ । ସେହି ଆସନରେ ପ୍ରଥମେ କୁଶ, ପରେ ମୃଗ ବା ବ୍ୟାଘ୍ରର ଚର୍ମ, ତା ଉପରେ ବସ୍ତ୍ର ପକାଇବେ । ସେହି ଆସନରେ ବସି ଚିତ୍ତ ଓ ଇନ୍ଦ୍ରିୟବ୍ୟାପାର ରୁଦ୍ଧ କରି ଏବଂ ମନକୁ ଏକାଗ୍ର କରି ଆତ୍ମଶୁଦ୍ଧି ନିମିତ୍ତ ଯୋଗ ଅଭ୍ୟାସ କରିବେ ।

**ସୁବୋଧିନୀ ଟୀକା**—ଆସନ ନିୟମଂ ଦର୍ଶୟନ୍ନାହ—ଶୁଚାବିତି ଦ୍ୱାଭ୍ୟାମ୍ । ଶୁଦ୍ଧେ ସ୍ଥାନେ, ଆତ୍ମନଃ ସ୍ୱସ୍ୟାସନଂ ସ୍ଥାପୟିତ୍ୱା । କୀଦୃଶଂ ? ସ୍ଥିରମଚଳଂ । ନାତ୍ୟୁଚ୍ଛ୍ରିତଂ ନାତିନୀଚମ୍ । ନ ଗୁଢ ନୀଚଂ ଚୈଳଂ ବସ୍ତ୍ରଂ । ଅଜିନଂ ବ୍ୟାଘ୍ରାଦି ଚର୍ମ, ଚୈଳାଜିନେ କୁଶେଭ୍ୟ ଉତ୍ତରେ ଯସ୍ୟ । କୁଶାନା-ମୁପରିଚର୍ମ ତଦୁପରି ବସ୍ତ୍ର ମାସ୍ତୀର୍ଯ୍ୟେତ୍ୟର୍ଥଃ ।

ତତଶ୍ଚ । ତତ୍ର ତସ୍ମିନ୍ନାସନ ଉପବିଶ୍ୟ ଯୋଗଂ ଯୁଞ୍ଜ୍ୟାତ୍; କଥମ୍ ? ସର୍ବବିଷୟେଭ୍ୟ ଉପସଂହୃତ୍ୟୈକାଗ୍ରମନଃ କୃତ୍ୱା । ଯତଚିତ୍ତେନ୍ଦ୍ରିୟକ୍ରିୟଃ—ଚିତ୍ତଂ ଚେନ୍ଦ୍ରିୟାଣି ଚ ଚିତ୍ତେନ୍ଦ୍ରିୟାଣି । ତେଷାଂ କ୍ରିୟା ସଂଯତା ଯସ୍ୟ ସ ଯତ ଚିତ୍ତେନ୍ଦ୍ରିୟ-କ୍ରିୟଃ । ସ କିମର୍ଥଂ ଯୋଗଂ ଯୁଞ୍ଜ୍ୟାଦିତ ? ଅହ—ଆତ୍ମଶୁଦ୍ଧୟେ । ଅନ୍ତଃକରଣସ୍ୟ ବିଶୁଦ୍ଧ୍ୟର୍ଥମିତ୍ୟେତତ୍ ।

**ବିବୃତି**—ଚିତ୍ତର ସମତାହିଁ ଯୋଗର ଶ୍ରେଷ୍ଠ ଫଳ । ଏ ଅଧ୍ୟାୟର ୮ମ ଓ ୯ମ ଶ୍ଳୋକରେ ଏହା କୁହା ଯାଇଅଛି, ମାତ୍ର ସବୁ ବିଷୟରେ ଚିତ୍ତର ସମତା ସହଜ ବ୍ୟାପାର ନୁହେ । ଚଞ୍ଚଳ ମନକୁ ସ୍ଥିରକରି ଆତ୍ମସଂସ୍ଥ କରିବାର ପ୍ରଧାନ ଉପାୟ—ଧ୍ୟାନଯୋଗ । ତେଣୁ ଏ ୧୦ମ ଶ୍ଳୋକରୁ ଏହି ଧ୍ୟାନଯୋଗ ବିଷୟ ଆଲୋଚିତ ହୋଇଅଛି ।

**୧୩,୧୪ । ଅନ୍ୱୟଦୀପିକା**—କାୟଶିରୋଗ୍ରୀବଂ (ଶରୀର, ମସ୍ତକ ଏବଂ ଗ୍ରୀବାକୁ) ସମମ୍ ଅଚଳଂ ଧାରୟନ୍ (ସିଧା ସରଳରେଖା କ୍ରମେ ନିଶ୍ଚଳ ରଖି) ସ୍ଥିରଃ ( ସ୍ଥିର ଭାବରେ ରହି ) ସ୍ୱଂ ନାସିକାଗ୍ରଂ ସଂପ୍ରେକ୍ଷ୍ୟ (ନିଜ ନାସିକାର ଅଗ୍ର-ଭାଗରେ ଦୃଷ୍ଟି ରଖି) ଦିଶଃ ଚ ( ଅନ୍ୟ କୌଣସି ଦିଗକୁ ) ଅନବଲୋକୟନ୍ (ନ ଚାହିଁ) ପ୍ରଶାନ୍ତାତ୍ମା ( ପ୍ରଶାନ୍ତ ଚିତ୍ତ ) ବିଗତଭୀଃ (ନିର୍ଭୟ ) ବ୍ରହ୍ମଚାରିବ୍ରତେ ସ୍ଥିତଃ ( ବ୍ରହ୍ମଚର୍ଯ୍ୟବ୍ରତ ଅବଲମ୍ବନ କରି ), ମନଃ ସଂଯମ୍ୟ (ମନଃ ସଂଯମ ପୂର୍ବକ)

ଯୁଞ୍ଜନ୍ନେବଂ ସଦାତ୍ମାନଂ ଯୋଗୀ ନିୟତମାନସଃ ।
ଶାନ୍ତିଂ ନିର୍ବାଣପରମାଂ ମତ୍‌ସଂସ୍ଥାମଧିଗଚ୍ଛତି । ୧୫ ।

ମଚ୍ଚିତ୍ତ ( ମଦ୍‌ଗତ ଚିତ୍ତ) ମତ୍‌ପରଃ ( ମତ୍‌ପରାୟଣ ହୋଇ) ଯୁକ୍ତଃ ଆସୀତ (ସମାଧିସ୍ଥ ହେବ ) ।

**ଅନୁବାଦ**—ଶରୀରର ପୃଷ୍ଠଭାଗ, ମସ୍ତକ ଓ ଗ୍ରୀବା ସମାନ କରି ଅର୍ଥାତ୍ ସିଧା ସରଳ ରେଖାରେ ନିଶ୍ଚଳ କରି ସ୍ଥିର ହୋଇ ଏ ଅଡ଼େ ସେଅଡ଼େ ଦୃଷ୍ଟି ନ ଦେଇ ନିଜ ନାସିକାର ଅଗ୍ରଭାଗରେ ଦୃଷ୍ଟି ସ୍ଥିର ରଖି ଭୟଶୂନ୍ୟ ହୋଇ ଶାନ୍ତ ଅନ୍ତଃକରଣରେ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରି ମନଃ ସଂଯମପୂର୍ବକ ମତ୍-ପରାୟଣ ଓ ମଦ୍‌ଗତଚିତ୍ତ ହୋଇ ଯୁକ୍ତ ଅର୍ଥାତ୍ ସମାଧିସ୍ଥ ହେବ ।

**ସୁବୋଧିନୀ ଟୀକା**—ଚିତ୍ତୈକାଗ୍ର୍ୟୋପଯୋଗିନୀଂ ଦେହାଦି ଧାରଣାଂ ଦର୍ଶୟନ୍ନାହ—ସମମିତି ଦ୍ୱାଭ୍ୟାମ୍ । କାୟ ଇତି ଦେହସ୍ୟ ମଧ୍ୟଭାଗୋ ବିବକ୍ଷିତଃ । କାୟଶ୍ଚ ଶିରଶ୍ଚ ଗ୍ରୀବା ଚ କାୟଶିରୋଗ୍ରୀବଂ । ମୂଳାଧାରାଦାରଭ୍ୟ ମୂର୍ଦ୍ଧାଗ୍ରପର୍ଯ୍ୟନ୍ତଂ ସମମବକ୍ରଂ । ଅଚଳଂ ନିଶ୍ଚଳଂ, ଧାରୟନ୍, ସ୍ଥିରୋ ଦୃଢ଼ଂ ପ୍ରଯତୋ ଭୂତ୍ୱେତ୍ୟର୍ଥଃ । ସ୍ୱୀୟଂ ନାସିକାଗ୍ରଂ ସଂପ୍ରେକ୍ଷ୍ୟେତ୍ୟର୍ଦ୍ଧନିମୀଳିତନେତ୍ର ଇତ୍ୟର୍ଥଃ । ଇତସ୍ତତୋ ଦିଶଶ୍ଚାନବଲୋକୟନ୍ନାସୀତେତ୍ୟୁତ୍ତରେଣାନ୍ୱୟଃ ।

ପ୍ରଶାନ୍ତେତି ପ୍ରଶାନ୍ତ ଆତ୍ମା ଚିତ୍ତଂ ଯସ୍ୟ । ବିଗତାଭୀର୍ଭୟଂ ଯସ୍ୟ । ବ୍ରହ୍ମଚାରିବ୍ରତେ ବ୍ରହ୍ମଚର୍ଯ୍ୟେ ସ୍ଥିତଃ ସନ୍ । ମନଃ ସଂଯମ୍ୟ ପ୍ରତ୍ୟାହୃତ୍ୟ । ମଯ୍ୟେବ ଚିତ୍ତଂ ଯସ୍ୟ । ଅହମେବ ପରଃ ପୁରୁଷାର୍ଥୋ ଯସ୍ୟ ସ ମତ୍‌ପରଃ । ଏବଂ ଯୁକ୍ତୋ ଭୂତ୍ୱା ଆସୀତ ତିଷ୍ଠେତ୍ ।

**ବିବୃତି**—ଯେ କୌଣସି ଲୋକ କର୍ମ ଯୋଗର ଅଧିକାରୀ । ବିବାହିତ ଗୃହସ୍ଥ ପକ୍ଷରେ ବ୍ରହ୍ମଚର୍ଯ୍ୟବ୍ରତଧାରଣ ଅସମ୍ଭବ ନୁହେଁ । କେବଳ ସନ୍ତାନ ଲାଭ ଆଶାରେ ବିବାହ କରାଯାଏ । 'ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା' ଏହା ଶାସ୍ତ୍ରୋପଦେଶ, ତେଣୁ ଅବିହିତ ସମୟରେ ସ୍ତ୍ରୀ ସଂଭୋଗ ନ କଲେ ତାହାହିଁ ବ୍ରହ୍ମଚର୍ଯ୍ୟ ଧାରଣ ହୁଏ । ଯୋଗାଭ୍ୟାସ ସମୟରେ ଏହା ଯେ ପରିତ୍ୟାଜ୍ୟ—ଏହା ଆଉ କହିବାକୁ ହେବ ନାହିଁ ।

୧୫ । **ଅନ୍ୱୟଦୀପିକା**—ଯୋଗୀ ଏବଂ (ଏହିପରି) ସଦା (ସର୍ବଦା) ଆତ୍ମାନଂ ଯୁଞ୍ଜନ୍ (ମନକୁ ନିରୋଧକରି) ନିୟତମାନସଃ (ସଂଯତ ଚିତ୍ତ ହୋଇ) ମତ୍ ସଂସ୍ଥାଂ (ଆତ୍ମାରେ ସ୍ଥିତିଶୀଳ) ନିର୍ବାଣପରମାଂ ଶାନ୍ତିଂ (ନିର୍ବାଣ ରୂପ ପରମ ଶାନ୍ତି) ଅଧିଗଚ୍ଛତି (ପ୍ରାପ୍ତ ହୁଅନ୍ତି) ।

ନାତ୍ୟଶ୍ନତସ୍ତୁ ଯୋଗୋଽସ୍ତି ନ ଚୈକାନ୍ତମନଶ୍ନତଃ ।
ନ ଚାତି ସ୍ୱପ୍ନଶୀଳସ୍ୟ ଜାଗ୍ରତୋ ନୈବ ଚାର୍ଜୁନ । ୧୬ ।

**ଅନୁବାଦ**—ଏହି ପ୍ରକାରେ ନିରନ୍ତର ଯୋଗାଭ୍ୟାସ କରୁ କରୁ ମନ ଏକାଗ୍ର ହୋଇ ନିଶ୍ଚଳ ହୁଏ । ଏହାପରେ ସ୍ଥିରଚିତ୍ତ ଯୋଗୀ ନିର୍ବାଣରୂପ ପରମ ଶାନ୍ତିଲାଭ କରନ୍ତି; ଏହି ଶାନ୍ତି ଆମ୍ଭଠାରେହିଁ ସ୍ଥିତିଶୀଳ ।

**ସୁବୋଧିନୀ ଟୀକା**—ଯୋଗାଭ୍ୟାସ ଫଳମାହ—ଯୁଞ୍ଜନ୍ନେବମିତି । ଏବମୁକ୍ତପ୍ରକାରେଣ ସର୍ବଦାତ୍ମାନଂ ମନଃ ଯୁଞ୍ଜନ୍ ସମାହିତଂ କୁର୍ବନ୍ । ନିୟତଂ ନିରୁଦ୍ଧଂ ମାନସଂ ଚିତ୍ତଂ ଯସ୍ୟ ସଃ । ଶାନ୍ତିଂ ସଂସାରୋପରମଂ ପ୍ରାପ୍ନୋତି, କଥଂ ଭୂତାଂ ? ନିର୍ବାଣଂ ପରମଂ ପ୍ରାପ୍ୟଂ ଯସ୍ୟାଂ ତାମ୍ । ମତ୍‌ସଂସ୍ଥାଂ ମଦ୍‌ରୂପେଣାବସ୍ଥିତାମ୍ ।

**ବିବୃତି**—ଏହାହିଁ ପାତଞ୍ଜଳ ସୂତ୍ରୋକ୍ତ ଯୋଗ । କର୍ମଯୋଗ ପ୍ରାପ୍ତିର ଅଭିଳାଷୀ ପୁରୁଷ ନିଜର ସମଗ୍ର ଜୀବନକାଳ ଏଥିରେ ଅତିବାହିତ କରିବେ— ଏହାର ଏପରି ଉଦ୍ଦେଶ୍ୟ ନୁହେଁ । କର୍ମଯୋଗ ପାଇଁ ଆବଶ୍ୟକ ସାମ୍ୟବୁଦ୍ଧି ଲାଭ କରିବାର ସାଧନରୂପେ ଯେତେ ପରିମାଣ ପାତଞ୍ଜଳ ଯୋଗର ଅଭ୍ୟାସ ଆବଶ୍ୟକ ତାହାହିଁ ଏଠାରେ ବିବକ୍ଷିତ ହୋଇଅଛି । ଏଥିପାଇଁ ଏକାନ୍ତବାସ ଆବଶ୍ୟକ । ଏକ ଜନ୍ମରେ ଯେ ଏହି ପାତଞ୍ଜଳ ଯୋଗ ସମାଧିସିଦ୍ଧ ହୋଇଯିବ— ଏପରି ଆଶା କରାଯାଏ ନାହିଁ । ତେବେ ଯେତେଦୂର ସମ୍ଭବ ମନକୁ ସ୍ଥିର କରି କର୍ମଯୋଗର ଆଚରଣ କରିବାକୁ ହେବ । ଏହି ଷଷ୍ଠଅଧ୍ୟାୟର ଶେଷରେ ଏହାହିଁ ଭଗବାନ୍ କହିଅଛନ୍ତି ।

ଏ ଶ୍ଳୋକରେ ଯେଉଁ 'ସଦା' ଶବ୍ଦ ପ୍ରଯୁକ୍ତ ହୋଇଅଛି ତହିଁରୁ ବୁଝିବାକୁ ହେବ ନାହିଁ ଯେ ଦିନରାତି ୨୪ ଘଣ୍ଟା କର୍ମଯୋଗୀ ପାତଞ୍ଜଳ ଯୋଗର ଅଭ୍ୟାସ କରିବ ।

ପ୍ରତିଦିନ ଯଥାଶକ୍ତି ଏହାର ଅଭ୍ୟାସ କଲେ ମନ ଏକାଗ୍ର ହେବ । ମନ ଏକାଗ୍ର ହୋଇଗଲେ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ହିଁ ତାହାକୁ ଲଗାଇବାକୁ ହେବ । ତାହାହେଲେ 'ମଚ୍ଚିତ୍ତ' ଓ 'ମତ୍‌ପରାୟଣ' ହେବା ସହଜସାଧ୍ୟ ।

**୧୬ । ଅନ୍ୱୟଦୀପିକା**—ହେ ଅର୍ଜୁନ, ଅତ୍ୟଶ୍ନତଃ ତୁ (ଅତିଶୟ ଭୋଜନକାରୀର ) ଯୋଗଃ ନ ଅସ୍ତି ( ଯୋଗ ହୁଏ ନାହିଁ ), ଏକାନ୍ତମ୍ ( ନିତାନ୍ତ ) ଅନଶ୍ନତଃ (ଅନାହାରୀର ମଧ୍ୟ) ନ ଚ ( ହୁଏ ନାହିଁ ) । ଅତି ସ୍ୱପ୍ନଶୀଳସ୍ୟ ଚ ନ (ଅତ୍ୟନ୍ତ ନିଦ୍ରାଳୁର ମଧ୍ୟ ହୁଏ ନାହିଁ) । ଜାଗ୍ରତଃ ଏବ ଚ ନ ( ଅତି ଜାଗରଣଶୀଳର ମଧ୍ୟ ହୁଏ ନାହିଁ ) ।

ଯୁକ୍ତାହାରବିହାରସ୍ୟ ଯୁକ୍ତଚେଷ୍ଟସ୍ୟ କର୍ମସୁ ।
ଯୁକ୍ତସ୍ୱପ୍ନାବବୋଧସ୍ୟ ଯୋଗୋ ଭବତି ଦୁଃଖହା ॥ ୧୭ ॥
ଯଦା ବିନିୟତଂ ଚିତ୍ତମାତ୍ମନ୍ୟେବାବତିଷ୍ଠତେ,
ନିଃସ୍ପୃହଃ ସର୍ବକାମେଭ୍ୟୋ ଯୁକ୍ତଇତ୍ୟୁଚ୍ୟତେ ତଦା ॥ ୧୮ ॥

**ଅନୁବାଦ**—ହେ ଅର୍ଜୁନ, କିନ୍ତୁ ଯେ ଅତ୍ୟନ୍ତ ଅହାର କରନ୍ତି କିଂବା ଯେ ଏକାନ୍ତ ଅନାହାରୀ ଏବଂ ଯେଉଁ ଲୋକ ଅତିଶୟ ନିଦ୍ରାଳୁ ବା ଅତି ଜାଗରଣଶୀଳ ତାହାଙ୍କର ଯୋଗସମାଧି ହୁଏ ନାହିଁ ।

**ସୁବୋଧିନୀ ଟୀକା**—ଯୋଗାଭ୍ୟାସନିଷ୍ଠସ୍ୟାହାରାଦିନିୟମ ମାହ—ନାତ୍ୟଶ୍ନତ ଇତି ଦ୍ୱାଭ୍ୟାମ୍ । ଅତ୍ୟନ୍ତ ମଧିକଂ ଭୁଞ୍ଜାନସ୍ୟୈକାନ୍ତମତ୍ୟନ୍ତ-ମଭୁଞ୍ଜାନସ୍ୟାପି ଯୋଗଃ ସମାଧିର୍ନ ଭବତି । ତଥାତିନିଦ୍ରାଶୀଳସ୍ୟାତିଜାଗ୍ରତଶ୍ଚ ଯୋଗୋ ନୈବାସ୍ତି ।

**୧୭ । ଅନ୍ୱୟଦୀପିକା**—ଯୁକ୍ତାହାର ବିହାରସ୍ୟ ( ପରିମିତ ଆହାର ବିହାରକାରୀ ) କର୍ମସୁ ଯୁକ୍ତଚେଷ୍ଟସ୍ୟ (କର୍ମ ସମୂହରେ ନିୟମିତ ଚେଷ୍ଟାକାରୀ), ଯୁକ୍ତସ୍ୱପ୍ନାବବୋଧସ୍ୟ ( ପରିମିତ ନିଦ୍ରା ଓ ଜାଗରଣଶୀଳ ଲୋକର ) ଯୋଗଃ ଦୁଃଖହା ଭବତି ( ଯୋଗ ଦୁଃଖ ନିବର୍ତ୍ତକ ହୁଏ ) ।

**ଅନୁବାଦ**—ଯାହାଙ୍କର ଆହାର ବିହାର ପରିମିତ, କର୍ମଚେଷ୍ଟା ପରିମିତ, ନିଦ୍ରା ଓ ଜାଗରଣ ପରିମିତ ତାହାଙ୍କର ହିଁ ଏହି ଯୋଗ ଦୁଃଖ ନିବର୍ତ୍ତକ ହୁଏ ।

**ସୁବୋଧିନୀ ଟୀକା**—ତର୍ହି କଥମ୍ଭୂତସ୍ୟ ଯୋଗୋ ଭବତୀତି ? ଅତ ଆହ—ଯୁକ୍ତାହାରେତି । ଯୁକ୍ତୋ ନିୟତ ଆହାରୋ ବିହାରଶ୍ଚ ଗତିର୍ଯସ୍ୟ । କର୍ମସୁ କାର୍ଯ୍ୟେଷୁ ଯୁକ୍ତା ନିୟତା ଚେଷ୍ଟା ଯସ୍ୟ । ଯୁକ୍ତୌ ନିୟତୌ ସ୍ୱପ୍ନାବବୋଧୌ ନିଦ୍ରାଜାଗରୌ ଯସ୍ୟ । ତସ୍ୟ ଦୁଃଖନିବର୍ତ୍ତକୋ ଯୋଗୋ ଭବତି ସିଧ୍ୟତି ।

**ବିବୃତି**—ଗୀତାରେ 'ଯୋଗ' ଶବ୍ଦ ସାଧାରଣତଃ କର୍ମଯୋଗ ଅର୍ଥରେ ପ୍ରଯୁକ୍ତ ହୋଇଅଛି । ମାତ୍ର ଏଠାରେ ଏହା ପାତଞ୍ଜଳ ଯୋଗଅର୍ଥ, ପ୍ରକାଶ କରେ । ଏଥିରୁ ବୁଝିବାକୁ ହେବ ନାହିଁ ଯେ ପାତଞ୍ଜଳ ଯୋଗହିଁ ଏ ଅଧ୍ୟାୟରେ ପ୍ରତିପାଦ୍ୟ । 'କର୍ମସୁ ଯୁକ୍ତଚେଷ୍ଟସ୍ୟ' ଏହା କହିବାଦ୍ୱାରା ବୁଝାଯାଉଅଛି ଯେ କେବଳ କର୍ମତ୍ୟାଗୀ ସନ୍ନ୍ୟାସୀ ଯୋଗର ଅଧିକାରୀ ନୁହନ୍ତି । କର୍ମଯୋଗୀ ହିଁ ଏହାର ଲକ୍ଷ୍ୟ ।

**୧୮ । ଅନ୍ୱୟଦୀପିକା**—ଯଦା (ଯେତେବେଳେ) ବିନିୟତଂ (ସଂଯତ) ଚିତ୍ତଂ (ଚିତ୍ତ) ଆତ୍ମନି ଏବ (ଆତ୍ମାରେ ହିଁ) ଅବତିଷ୍ଠତେ (ଅବସ୍ଥାନ କରେ), ତଦା (ସେହି ଅବସ୍ଥାରେ) ସର୍ବକାମେଭ୍ୟଃ (ସମସ୍ତ କାମନାରୁ) ନିଃସ୍ପୃହଃ (ବିରତ ଯୋଗୀପୁରୁଷ) ଯୁକ୍ତଃ ଇତି ଉଚ୍ୟତେ [ଯୋଗସିଦ୍ଧ ବୋଲି ଉକ୍ତ ହୁଅନ୍ତି] ।

ଯଥା ଦୀପୋ ନିବାତସ୍ଥୋ ନେଙ୍ଗତେ ସୋପମା ସ୍ମୃତା ।
ଯୋଗିନୋ ଯତ ଚିତ୍ତସ୍ୟ ଯୁଞ୍ଜତୋ ଯୋଗମାତ୍ମନଃ । ୧୯ ।

ଯତ୍ରୋପରମତେ ଚିତ୍ତଂ ନିରୁଦ୍ଧଂ ଯୋଗସେବୟା,
ଯତ୍ର ଚୈବାତ୍ମନାତ୍ମାନଂ ପଶ୍ୟନ୍ନାତ୍ମନି ତୁଷ୍ୟତି । ୨୦ ।

**ଅନୁବାଦ**—ଯେତେବେଳେ ସଂଯତ ମନ ଆତ୍ମାରେହିଁ ସ୍ଥିର ହୋଇଯାଏ ଏବଂ ଅନ୍ୟ କିଛି ଉପଭୋଗ କରିବାର ଇଚ୍ଛା ରହେ ନାହିଁ ସେତେବେଳେ ଯୋଗୀପୁରୁଷ ସିଦ୍ଧ ହୋଇଅଛନ୍ତି ବୋଲି ବୁଝିବାକୁ ହୁଏ ।

**ସୁବୋଧିନୀ ଟୀକା**—କଦା ନିଷ୍ପନ୍ନଯୋଗଃ ପୁରୁଷୋ ଭବତୀତ୍ୟ-ପେକ୍ଷାୟାମାହ—ଯଦେତି, ବିନିୟତଂ ବିଶେଷେଣ ନିରୁଦ୍ଧଂ ସଚ୍ଚିତ୍ତମାତ୍ମନ୍ୟେବ ଯଦା ନିଶ୍ଚଳଂ ତିଷ୍ଠତି । କିଞ୍ଚ ସର୍ବକାମେଭ୍ୟ ଐହିକାମୁଷ୍ମିକଭୋଗେଭ୍ୟୋ ନିଃସ୍ପୃହୋ ଗତତୃଷ୍ଣୋ ଭବତି । ତଦା ଯୁକ୍ତଃ ପ୍ରାପ୍ତଯୋଗ ଇତ୍ୟୁଚ୍ୟତେ ।

**୧୯ । ଅନ୍ୱୟଦୀପିକା**—ଯଥା (ଯେପରି) ନିବାତସ୍ଥଃ (ନିର୍ବାତ ସ୍ଥାନରେ ସ୍ଥିତ) ଦୀପଃ (ଦୀପଶିଖା) ନ ଇଙ୍ଗତେ (ବିଚଳିତ ହୁଏ ନାହିଁ), ଆତ୍ମନଃ ଯୋଗଂ (ଆତ୍ମଯୋଗ) ଯୁଞ୍ଜତଃ (ଅଭ୍ୟାସକାରୀ) ଯତଚିତ୍ତସ୍ୟ ଯୋଗିନଃ (ସଂଯତଚିତ୍ତ ଯୋଗୀଙ୍କର) ସା ଉପମା ସ୍ମୃତା (ତାହା ଦୃଷ୍ଟାନ୍ତ ବୋଲି ଜାଣିବ) ।

**ଅନୁବାଦ**—ବାୟୁ ପ୍ରବାହିତ ହେଉ ନ ଥିବା ସ୍ଥାନରେ ଦୀପଶିଖା ଯେପରି ନିଶ୍ଚଳ ଥାଏ, ସେହି ଉପମା ହିଁ ଚିତ୍ତ ସଂଯତକରି ଯୋଗାଭ୍ୟାସ କରୁଥିବା ଯୋଗୀଙ୍କୁ ଦିଆଯାଏ ।

**ସୁବୋଧିନୀ ଟୀକା**—ଆତ୍ମୈକାକାରତୟାବସ୍ଥିତସ୍ୟ ଚିତ୍ତସ୍ୟୋପ-ମାନମାହ—ଯଥେତି । ବାତଶୂନ୍ୟେ ଦେଶେ ସ୍ଥିତୋ ଦୀପୋ ଯଥା ନେଙ୍ଗତେ ନ ଚଳତି । ସୋପମା ଦୃଷ୍ଟାନ୍ତଃ । କସ୍ୟ ? ଆତ୍ମ ବିଷୟଂ ଯୋଗଂ ଯୁଞ୍ଜତୋ ଅଭ୍ୟସତୋ ଯୋଗିନଃ । ଯତଂ ନିୟତଂ ଚିତ୍ତଂ ଯସ୍ୟ ତସ୍ୟ । ନିଶ୍ଚଳତୟା ପ୍ରକାଶ-କତୟା ଚ ନିଶ୍ଚଳଂ ତଚ୍ଚିତ୍ତଂ, ତଦ୍‌ବଦିତ୍ୟର୍ଥଃ ।

**୨୦ । ଅନ୍ୱୟଦୀପିକା**—ଯତ୍ର (ଯେଉଁ ଅବସ୍ଥାରେ) ଯୋଗସେବୟା (ଯୋଗାଭ୍ୟାସ ଦ୍ୱାରା) ନିରୁଦ୍ଧଂ ଚିତ୍ତଂ (ନିରୁଦ୍ଧ ଚିତ୍ତ) ଉପରମତେ (ଉପରତ ବା ନିଷ୍କ୍ରିୟ ହୁଏ), ଯତ୍ର ଚ (ଏବଂ ଯେଉଁ ଅବସ୍ଥାରେ) ଆତ୍ମନା ଏବ (ଆତ୍ମାଦ୍ୱାରା ହିଁ) ଆତ୍ମନି (ଆତ୍ମାରେ) ଆତ୍ମାନଂ (ଆତ୍ମାଙ୍କୁ) ପଶ୍ୟନ୍ (ଦେଖି) ତୁଷ୍ୟତି (ତୃପ୍ତିଲାଭ ହୁଏ) [ତାହାକୁ ହିଁ ଯୋଗ ବୋଲି ଜାଣିବ—୨୩ଶ ଶ୍ଳୋକ ସଙ୍ଗେ ଅନ୍ୱିତ] ।

**ଅନୁବାଦ**—ଯେଉଁ ଅବସ୍ଥାରେ ଯୋଗାଭ୍ୟାସ ଦ୍ୱାରା ନିରୁଦ୍ଧ ଚିତ୍ତ ଉପଶମ ପ୍ରାପ୍ତ ହୁଏ ବା ନିଷ୍କ୍ରିୟ ହୁଏ ଏବଂ ଯେଉଁ ଅବସ୍ଥାରେ ଆତ୍ମାଦ୍ୱାରା ଆତ୍ମାରେ ଆତ୍ମାଙ୍କୁ ଦେଖି ତୃପ୍ତିଲାଭ ହୁଏ [ତାହାକୁ ହିଁ ଯୋଗ ବୋଲି ଜାଣିବ] ।

ସୁଖମାତ୍ୟନ୍ତିକଂ ଯତ୍ତଦ୍‌ବୁଦ୍ଧିଗ୍ରାହ୍ୟମତୀନ୍ଦ୍ରିୟମ୍ ।
ବେତ୍ତି ଯତ୍ର ନ ଚୈବାୟଂ ସ୍ଥିତଶ୍ଚଳତି ତତ୍ତ୍ୱତଃ । ୨୧ ।

**ସୁବୋଧିନୀ ଟୀକା**—ଯଂ ସନ୍ନ୍ୟାସମିତି ପ୍ରାହୁର୍ଯୋଗଂ ତଂ ବିଦ୍ଧି ପାଣ୍ଡବେତ୍ୟାଦୌ କର୍ମୈବ ଯୋଗଶବ୍ଦେନୋକ୍ତମ୍, ନାତ୍ୟଶ୍ନତସ୍ତୁ ଯୋଗୋଽସ୍ତୀତ୍ୟାଦୌ ତୁ ସମାଧିର୍ଯୋଗଶବ୍ଦେନୋକ୍ତଃ । ତତ୍ର ମୁଖ୍ୟୋ ଯୋଗଃ କ ଇତ୍ୟପେକ୍ଷାୟାଂ ସମାଧି ମେବ ସ୍ୱରୂପତଃ ଫଳତଶ୍ଚ ଲକ୍ଷୟନ୍ ସ ଏବ ମୁଖ୍ୟୋ ଯୋଗ ଇତ୍ୟାହ—ଯତ୍ରେତି ସାର୍ଦ୍ଧୈସ୍ତ୍ରିଭିଃ । ଯତ୍ର ଯସ୍ମିନ୍ନବସ୍ଥାବିଶେଷେ ଯୋଗାଭ୍ୟାସେନ ନିରୁଦ୍ଧଂ ଚିତ୍ତମୁପରତଂ ଭବତୀତି ଯୋଗସ୍ୟ ସ୍ୱରୂପ ଲକ୍ଷଣମୁକ୍ତମ୍ । ତଥା ଚ ପାତଞ୍ଜଳଂ ସୂତ୍ରମ୍—ଯୋଗଶ୍ଚିତ୍ତବୃତ୍ତି ନିରୋଧ ଇତି । ଇଷ୍ଟପ୍ରାପ୍ତିଲକ୍ଷଣେନ ଫଳେନ ତମେବ ଲକ୍ଷୟତି । ଯତ୍ର ଚ ଯସ୍ମିନ୍ନବସ୍ଥାବିଶେଷେ । ଆତ୍ମନା ଶୁଦ୍ଧେନ ମନସା ଆତ୍ମାନମେବ ପଶ୍ୟତି ନତୁ ଦେହାଦି । ପଶ୍ୟଂଶ୍ଚାତ୍ମନ୍ୟେବ ତୁଷ୍ୟତି ନ ତୁ ବିଷୟେଷୁ । ଯତ୍ରେତ୍ୟାଦୀନାଂ ଯଚ୍ଛବ୍ଦାନାଂ ତଂ ଯୋଗସଂଜ୍ଞିତଂ ବିଦ୍ୟାଦିତି ଚତୁର୍ଥେନ ଶ୍ଳୋକେନାନ୍ୱୟଃ ।

**ବିବୃତି**—ଆତ୍ମନା ଆତ୍ମାନଂ ଆତ୍ମନି ପଶ୍ୟନ୍—ଆତ୍ମାଦ୍ୱାରା ଆତ୍ମାକୁ ଆତ୍ମାରେ ଦେଖି—ଶ୍ରୀଧରସ୍ୱାମୀ କହନ୍ତି 'ଆତ୍ମନା'ର ଅର୍ଥ ଶୁଦ୍ଧମନଦ୍ୱାରା । ଅତଏବ ବୁଝିବାକୁ ହେବ ଶୁଦ୍ଧମନଦ୍ୱାରା ଆତ୍ମାର ପ୍ରତିବିମ୍ବ ଆତ୍ମାରେ ଦେଖାଯାଏ । ଏଠାରେ ଆତ୍ମା ହିଁ ଦ୍ରଷ୍ଟା ଓ ଆତ୍ମା ହିଁ ଦୃଶ୍ୟ ।

୨୧ । **ଅନ୍ୱୟଦୀପିକା**—ଯତ୍ର ( ଯେଉଁ ଅବସ୍ଥାରେ ) ଅୟଂ ( ଏହି ଯୋଗୀ ) ବୁଦ୍ଧିଗ୍ରାହ୍ୟଂ ( କେବଳ ବୁଦ୍ଧିଦ୍ୱାରା ଗ୍ରହଣୀୟ ) ଅତୀନ୍ଦ୍ରିୟମ୍ (ଇନ୍ଦ୍ରିୟର ଅଗୋଚର) ଆତ୍ୟନ୍ତିକଂ (ଅତ୍ୟନ୍ତ) ଯତ୍ ସୁଖଂ ( ଯେଉଁ ସୁଖ ) ତତ୍ ବେତ୍ତି (ତାହା ଅନୁଭବ କରନ୍ତି ), ଯତ୍ର ଚ ସ୍ଥିତଃ ( ଯେଉଁ ଅବସ୍ଥାରେ ରହିଲେ ) ତତ୍ତ୍ୱତଃ ( ଆତ୍ମସ୍ୱରୂପ ଭାବରୁ ) ନ ଚଳତି (ବିଚଳିତ ହୁଅନ୍ତି ନାହିଁ) [ ତାହାକୁହିଁ ଯୋଗ ବୋଲି ଜାଣିବ ] ।

**ଅନୁବାଦ**--ଯେଉଁ ଅବସ୍ଥାରେ ଇନ୍ଦ୍ରିୟର ଅଗୋଚର, କେବଳ ଶୁଦ୍ଧ ବୁଦ୍ଧିଗ୍ରାହ୍ୟ ଯେଉଁ ନିରତିଶୟ ସୁଖ ତାହାକୁହିଁ ଯୋଗୀ ଅନୁଭବ କରନ୍ତି ଏବଂ ଯେଉଁ ଅବସ୍ଥାରେ ଅବସ୍ଥିତ ରହିଲେ ଆତ୍ମସ୍ୱରୂପଭାବରୁ ବିଚଳିତ ହୁଅନ୍ତି ନାହିଁ (ତାହାକୁହିଁ ଯୋଗବୋଲି ଜାଣିବ) ।

**ସୁବୋଧିନୀ ଟୀକା**—ଆତ୍ମନ୍ୟେବ ତୋଷେ ହେତୁମାହ—ସୁଖମିତି । ଯତ୍ର ଯସ୍ମିନ୍ନବସ୍ଥାବିଶେଷେ ଯତ୍ତଦ୍ କିମପି ନିରତିଶୟମାତ୍ୟନ୍ତିକଂ ନିତ୍ୟଂ ସୁଖଂ ବେତ୍ତି । ନନୁ ତଦା ବିଷୟେନ୍ଦ୍ରିୟସମ୍ବନ୍ଧାଭାବାତ୍ କୁତଃ ସୁଖଂ ସ୍ୟାତ୍ ?

ଯଂ ଲବ୍‌ଧ୍ୱା ଚାପରଂ ଲାଭଂ ମନ୍ୟତେ ନାଧିକଂ ତତଃ ।
ଯସ୍ମିନ୍ ସ୍ଥିତୋ ନ ଦୁଃଖେନ ଗୁରୁଣାଽପି ବିଚାଲ୍ୟତେ । ୨୨ ।

ତତ୍ତ୍ୱାଦ—ଅତୀନ୍ଦ୍ରିୟଂ ବିଷୟେନ୍ଦ୍ରିୟସମ୍ବନ୍ଧାତୀତମ୍ । କେବଲଂ ବୁଦ୍ଧ୍ୟୈବାତ୍ମାକାରତୟା ଗ୍ରାହ୍ୟମ୍ । ଅତ ଏବ ଚ ଯତ୍ର ସ୍ଥିତଃ ତତ୍ତ୍ୱତ୍ୱାତ ଆତ୍ମସ୍ୱରୂପାନ୍ନୈବ ଚଲତି ।

**ବିବୃତି**—ବିଷୟ ଉପଭୋଗରୁ ଯେଉଁ ଆନନ୍ଦ ଜାତ ହୁଏ, ତାହା ଇନ୍ଦ୍ରିୟଗ୍ରାହ୍ୟ, କିନ୍ତୁ ଆତ୍ମଦର୍ଶନରୁ ଯେଉଁ ସୁଖ ଜାତ ହୁଏ ତାହା ଇନ୍ଦ୍ରିୟାତୀତ, କେବଳ ବୁଦ୍ଧି ଦ୍ୱାରା ଗ୍ରହଣୀୟ । ଚକ୍ଷୁଃକର୍ଣ୍ଣାଦି ଇନ୍ଦ୍ରିୟ ବା ମଳିନ ବୁଦ୍ଧିରେ ସେପରି ଆନନ୍ଦ ଗ୍ରହଣ ବା ଅନୁଭବ କରିବାର ସମ୍ଭାବନା ନାହିଁ । ସେ ଆନନ୍ଦ ଅନୁଭବ କାଳରେ 'ମୁଁ ଆନନ୍ଦ ଅନୁଭବ କରୁଅଛି'—ଏପରି ବୋଧହୁଏ ନାହିଁ ।

୨୨ । **ଅନ୍ୱୟଦୀପିକା**—ଯଂ ଚ ଲବ୍‌ଧ୍ୱା ( ଯେଉଁ ଅବସ୍ଥା ବିଶେଷ ଲାଭକରି ) [ଯୋଗୀ] ଅପରଂ ଲାଭଂ ( ଅନ୍ୟ କୌଣସି ଲାଭକୁ ) ତତଃ ଅଧିକଂ ( ତାହାଠାରୁ ଅଧିକ ବୋଲି ) ନ ମନ୍ୟତେ ( ମନେ କରନ୍ତି ନାହିଁ ); ଯସ୍ମିନ୍ ସ୍ଥିତଃ ( ଯେଉଁ ଅବସ୍ଥାରେ ରହିଲେ ) ଗୁରୁଣା ( ଦୁଃସହ ) ଦୁଃଖେନ ଅପି ( ଦୁଃଖରେ ମଧ୍ୟ ) ନ ବିଚାଲ୍ୟତେ (ବିଚଳିତ ହୁଅନ୍ତି ନାହିଁ) [ତାହାକୁ ହିଁ ଯୋଗ ବୋଲି ଜାଣିବ ] ।

**ଅନୁବାଦ**—ଯେଉଁ ଅବସ୍ଥା ଲାଭ କଲେ ଯୋଗୀ ଅନ୍ୟ ଲାଭକୁ ଅଧିକ ବୋଲି ମନେ କରନ୍ତି ନାହିଁ ଏବଂ ଯେଉଁ ଅବସ୍ଥାରେ ରହିଲେ ମହାଦୁଃଖରେ ମଧ୍ୟ ବିଚଳିତ ହୁଅନ୍ତି ନାହିଁ ( ତାହାକୁ ହିଁ ଯୋଗ ବୋଲି ଜାଣିବ ) ।

**ସୁବୋଧିନୀ ଟୀକା**—ଅଚଳତ୍ୱ ମେବୋପପାଦୟତି—ଯମିତି । ଯମାତ୍ମସ୍ୱରୂପଂ ଲବ୍‌ଧ୍ୱା ତତୋଽଧିକମପରଂ ଲାଭଂ ନ ମନ୍ୟତେ । ତସ୍ୟୈବ ନିରତିଶୟସୁଖତ୍ୱାତ୍ । ଯସ୍ମିଂଶ୍ଚ ସ୍ଥିତୋ ମହତାଽପି ଶୀତୋଷ୍ଣାଦଦୁଃଖେନ ନ ବିଚାଲ୍ୟତେ ନାଭିଭୂୟତେ । ଏତେନୋକ୍ତକବୃତ୍ତିଫଳେନାପି ଯୋଗସ୍ୟ ଲକ୍ଷଣମୁକ୍ତଂ ଦ୍ରଷ୍ଟବ୍ୟମ୍ ।

**ବିବୃତି**—ଯେତେବେଳେ ଯୋଗୀ ଆତ୍ମାନନ୍ଦ ଉପଭୋଗ କରନ୍ତି ସେତେବେଳେ ସ୍ୱର୍ଗସୁଖ ବା ଅଣିମାଦି ଅଷ୍ଟସିଦ୍ଧି ଲାଭଜନିତ ସୁଖ ତାଙ୍କ ନିକଟରେ ଅତି ତୁଚ୍ଛ ପରି ବୋଧହୁଏ । ଶୀତ ଉଷ୍ଣତା ପ୍ରଭୃତି ହେତୁରୁ ବା ଅନ୍ୟ କୌଣସି କାରଣରୁ ଯେଉଁ ଦୁଃଖ ଜାତ ହୁଏ ତାହା ସେ ଅନୁଭବ କରନ୍ତି ନାହିଁ । କାରଣ ଅନ୍ତଃକରଣ ବୃତ୍ତି ସଙ୍ଗେ ବାହ୍ୟ ବିଷୟର ସଂଯୋଗ ହେଲେ

ତଂ ବିଦ୍ୟାଦ୍ଦୁଃଖସଂଯୋଗବିୟୋଗଂ ଯୋଗ ସଂଜ୍ଞିତମ୍ ।
ସ ନିଶ୍ଚୟେନ ଯୋକ୍ତବ୍ୟୋ ଯୋଗୋଽନିର୍ବିଣ୍ଣଚେତସା । ୨୩ ।

ସୁଖ ଦୁଃଖ ଅନୁଭୂତ ହୋଇଥାଏ । ମାତ୍ର ଯୋଗୀଙ୍କ ଅନ୍ତଃକରଣବୃତ୍ତି କରୁଣ ଏବଂ ଆତ୍ମାରେ ସମାହିତ ହୋଇଥିବାରୁ କୌଣସି ପ୍ରକାର ସୁଖ ଦୁଃଖ ସେ ଅନୁଭବ କରନ୍ତି ନାହିଁ ।

**୨୩ । ଅନ୍ୱୟଦୀପିକା**—ତଂ ( ସେହି ) ଦୁଃଖ ସଂଯୋଗବିୟୋଗଂ ( ଦୁଃଖ ସଂଯୋଗର ବିୟୋଗ ରୂପ ଅବସ୍ଥା ବିଶେଷକୁ ) ଯୋଗସଂଜ୍ଞିତଂ (ଯୋଗ ବୋଲି) ବିଦ୍ୟାତ୍ ( ଜାଣିବ ); ଅନିର୍ବିଣ୍ଣଚେତସା ( ଅବସାଦଶୂନ୍ୟ ଚିତ୍ତ ଦ୍ୱାରା ) ନିଶ୍ଚୟେନ ( ଅଧ୍ୟବସାୟ ସହିତ ) ସଃ ଯୋଗଃ (ସେହି ଯୋଗ) ଯୋକ୍ତବ୍ୟଃ ( ଅଭ୍ୟାସ କରିବା କର୍ତ୍ତବ୍ୟ ) ।

**ଅନୁବାଦ**—ଏ ଅବସ୍ଥାରେ ଦୁଃଖସଂଯୋଗର ବିୟୋଗ ହୁଏ ଅର୍ଥାତ୍ ଲେଶମାତ୍ର ଦୁଃଖ ରହେ ନାହିଁ—ଏହାହିଁ ଯୋଗ ଶବ୍ଦବାଚ୍ୟ । ନିର୍ବେଦଶୂନ୍ୟ-ଚିତ୍ତରେ ଏହି ଯୋଗ ଅଧ୍ୟବସାୟ ସହିତ ଅଭ୍ୟାସ କରିବା କର୍ତ୍ତବ୍ୟ ।

**ସୁବୋଧିନୀ ଟୀକା**—ତମିତି । ଯ ଏବଂଭୂତୋଽବସ୍ଥାବିଶେଷସ୍ତଂ ଦୁଃଖୈଃ ସଂଯୋଗବିୟୋଗଂ ଯୋଗସଂଜ୍ଞିତଂ ବିଦ୍ୟାତ୍ । ଦୁଃଖଶବ୍ଦେନ ଦୁଃଖ ମିଶ୍ରିତଂ ବୈଷୟିକଂ ସୁଖମପି ଗୃହ୍ୟତେ । ଦୁଃଖସ୍ୟ ସଂଯୋଗେନ ସମ୍ପର୍କ ମାତ୍ରେଣାପି ବିୟୋଗୋ ଯସ୍ମିଂସ୍ତମବସ୍ଥାବିଶେଷଂ ଯୋଗସଂଜ୍ଞିତଂ ଯୋଗଶବ୍ଦବାଚ୍ୟଂ ଜାନୀୟାତ୍ । ପରମାତ୍ମନା କ୍ଷେତ୍ରଜ୍ଞସ୍ୟ ଯୋଜନଂ ଯୋଗଃ ଯଦ୍ୱା ଦୁଃଖ-ସଂଯୋଗେନ ବିୟୋଗ ଏବ ଶୂରେ କାତରଶବ୍ଦବତ୍ ବିରୁଦ୍ଧଲକ୍ଷଣୟା ଯୋଗ ଉଚ୍ୟତେ । କର୍ମଣି ତୁ ଯୋଗ ଶବ୍ଦସ୍ତଦୁପାୟତ୍ୱାଦୌପଚାରିକ ଏବେତି ଭାବଃ । ଯସ୍ମାଦେବଂ ମହାଫଲୋ ଯୋଗସ୍ତସ୍ମାତ୍ ସ ଏବ ଯତ୍ନତୋଽଭ୍ୟସନୀୟ ଇତ୍ୟାହ—ଇତି ସାର୍ଦ୍ଧେନ । ସ ଯୋଗୋ ନିଶ୍ଚୟେନ ଶାସ୍ତ୍ରାଚାର୍ଯ୍ୟୋପଦେଶ-ଜନିତେନ ଯୋକ୍ତବ୍ୟୋଽଭ୍ୟସନୀୟଃ । ଯଦ୍ୟପି ଶୀଘ୍ରଂ ନ ସିଧ୍ୟତି ତଥା-ପ୍ୟନିର୍ବିଣ୍ଣେନ ନିର୍ବେଦରହିତେନ ଚେତସା ଯୋକ୍ତବ୍ୟଃ । ଦୁଃଖବୁଦ୍ଧ୍ୟା ପ୍ରଯତ୍ନ-ଶୈଥିଲ୍ୟଂ ନିର୍ବେଦଃ ।

**ବିବୃତି**—'ଦୁଃଖ ସଂଯୋଗ ବିୟୋଗଂ'—ଯେଉଁ ଅବସ୍ଥାରେ ଦୁଃଖ ସଂଯୋଗର ବିୟୋଗ ବା ଧ୍ୱଂସ ହୁଏ ତାହାହିଁ ଯୋଗ । ଏଥିରୁ ଜଣା ଯାଉଅଛି ଆତ୍ମାନନ୍ଦ ଅନୁଭୂତ ହେଲାବେଳେ ଦୁଃଖ ଲେଶମାତ୍ର ରହେ ନାହିଁ । 'ଅନିର୍ବିଣ୍ଣ ଚେତସା'—ଦୁଃଖ ବୁଦ୍ଧିରେ ଯତ୍ନର ଶିଥିଳତା ହେଲେ ତାହାକୁ ନିର୍ବେଦ କୁହାଯାଏ, ଏପରି ଯୋଗରେ ସିଦ୍ଧିଲାଭ କରିବା ବହୁ ସମୟ ସାପେକ୍ଷ । ଅଲ୍ପଦିନ

ସଂକଳ୍ପ ପ୍ରଭବାନ୍ କାମାଂସ୍ତ୍ୟକ୍ତ୍ୱା ସର୍ବାନଶେଷତଃ ।
ମନସୈବେନ୍ଦ୍ରିୟଗ୍ରାମଂ ବିନିୟମ୍ୟ ସମନ୍ତତଃ । ୨୪ ।
ଶନୈଃ ଶନୈରୁପରମେଦ୍ ବୁଦ୍ଧ୍ୟା ଧୃତିଗୃହୀତୟା ।
ଆତ୍ମସଂସ୍ଥଂ ମନଃ କୃତ୍ୱା ନ କିଞ୍ଚିଦପି ଚିନ୍ତୟେତ୍ । ୨୫ ।

ଅଭ୍ୟାସ ପରେ ନିର୍ବେଦ ବା ହତାଶ ଭାବ ଆସିବା ସ୍ୱାଭାବିକ । ତେଣୁ ନିର୍ବେଦ-ଜନ୍ୟ ଶୈଥିଲ୍ୟ ରହିତ ଚିତ୍ତରେ ଯୋଗାଭ୍ୟାସ କରିବା କର୍ତ୍ତବ୍ୟ ।

'ଯୋଗଶ୍ଚିତ୍ତବୃତ୍ତିନିରୋଧଃ' ଅର୍ଥାତ୍ ଚିତ୍ତବୃତ୍ତି ନିରୋଧକୁ ଯୋଗ ବୋଲାଯାଏ—ପାତଞ୍ଜଳ ଯୋଗସୂତ୍ରରେ ଏହାହିଁ ଯୋଗର ଲକ୍ଷଣରୂପେ ନିର୍ଦ୍ଦିଷ୍ଟ ହୋଇଅଛି । ଏ ଅଧ୍ୟାୟର ବିଂଶ ଶ୍ଳୋକରେ ଏହି ଅର୍ଥରେ ଆରମ୍ଭ କରାଯାଇ ଅଛି—'ଯତ୍ରୋପରମତେ ଚିତ୍ତଂ ନିରୁଦ୍ଧଂ ଯୋଗସେବୟା' ଏବଂ ୨୩ଶ ଶ୍ଳୋକରେ ସମାଧି ଅବସ୍ଥାର ବର୍ଣ୍ଣନା ଶେଷ କରି ଭଗବାନ କହିଅଛନ୍ତି ଏହାହିଁ ଯୋଗଶବ୍ଦବାଚ୍ୟ । ସମାଧିରେ ଯେଉଁ ଆତ୍ମାନନ୍ଦ ଅନୁଭୂତ ହୁଏ ତାହା କେବଳ ଚିତ୍ତନିରୋଧ ଦ୍ୱାରା ହୁଏ ନାହିଁ । ପ୍ରତ୍ୟୁତ ଚିତ୍ତନିରୋଧଦ୍ୱାରା ଯୋଗୀ ଆତ୍ମାକୁ ଚିହ୍ନି ପାରନ୍ତି । ସେତେବେଳେ ଯେଉଁ ଦୁଃଖସଂଯୋଗଶୂନ୍ୟ ସ୍ଥିତି ଆସେ ତାହାକୁ ହିଁ ବ୍ରହ୍ମାନନ୍ଦ ବା ଆତ୍ମାନନ୍ଦ କୁହାଯାଏ ।

ଗୀତାର ପରବର୍ତ୍ତୀ ଅଧ୍ୟାୟ ସବୁ ପଢ଼ିଲେ ଜଣାଯାଏ ଯେ ଆତ୍ମଜ୍ଞାନ ଲାଭ ପାଇଁ ଚିତ୍ତବୃତ୍ତିର ଯେଉଁ ସମତା ଆବଶ୍ୟକ ତାହା କେବଳ ପାତଞ୍ଜଳ ଯୋଗରୁ ଉତ୍ପନ୍ନ ହୁଏ ନାହିଁ । ଜ୍ଞାନ ଓ ଭକ୍ତିଦ୍ୱାରା ଚିତ୍ତ ଶୁଦ୍ଧ ହେଲେ ସାଧକ ଏହି ଆତ୍ମାନନ୍ଦ ସୁଖ ମଧ୍ୟ ଅନୁଭବ କରନ୍ତି । ଏହି ମାର୍ଗହିଁ ଅଧିକ ସୁଖସାଧ୍ୟ ମନେ ହୁଏ ।

୨୪, ୨୫ । **ଅନ୍ୱୟଦୀପିକା**—ସଂକଳ୍ପ ପ୍ରଭବାନ୍ (ସଂକଳ୍ପରୁ ଜାତ) ସର୍ବାନ୍ କାମାନ୍ (ସମସ୍ତ କାମନାକୁ) ଅଶେଷତଃ (ନିଃଶେଷ ରୂପେ) ତ୍ୟକ୍ତ୍ୱା (ତ୍ୟାଗ କରି) ମନସା ଏବ (ମନଦ୍ୱାରା ହିଁ) ଇନ୍ଦ୍ରିୟଗ୍ରାମଂ (ଇନ୍ଦ୍ରିୟମାନଙ୍କୁ) ସମନ୍ତତଃ (ସମଗ୍ର ବିଷୟରୁ) ବିନିୟମ୍ୟ (ନିବୃତ୍ତ କରି), ଧୃତି ଗୃହୀତୟା ବୁଦ୍ଧ୍ୟା (ଧୈର୍ଯ୍ୟଯୁକ୍ତ ବୁଦ୍ଧିଦ୍ୱାରା) ଶନୈଃ ଶନୈଃ (ଧୀରେ ଧୀରେ) ଉପରମେତ୍ (ବିଷୟରୁ ବିରତି ଅଭ୍ୟାସ କରିବ), ମନଃ (ମନକୁ) ଆତ୍ମସଂସ୍ଥ (ଆତ୍ମାରେ ସଂସ୍ଥିତ କରି) କିଞ୍ଚିଦପି (କିଛି ବି) ନ ଚିନ୍ତୟେତ୍ (ଚିନ୍ତା କରିବ ନାହିଁ) ।

**ଅନୁବାଦ**—ସଂକଳ୍ପ ଜାତ କାମନାମାନଙ୍କୁ ପରିତ୍ୟାଗ କରି, ମନ-ଦ୍ୱାରା ଇନ୍ଦ୍ରିୟମାନଙ୍କୁ ବିଷୟବ୍ୟାପାରରୁ ନିବୃତ୍ତ କରି ଧୈର୍ଯ୍ୟଯୁକ୍ତ ବୁଦ୍ଧିଦ୍ୱାରା, ମନକୁ ଧୀରେ ଧୀରେ ନିରୁଦ୍ଧ କରିବ ଏବଂ ନିରୁଦ୍ଧ ମନକୁ ଆତ୍ମାରେ ନିହିତ କରି ଅନ୍ୟ କିଛି ବି ଚିନ୍ତା କରିବ ନାହିଁ ।

ଯତୋ ଯତୋ ନିଶ୍ଚରତି ମନଶ୍ଚଞ୍ଚଳମସ୍ଥିରମ୍,
ତତସ୍ତତୋ ନିୟମ୍ୟୈତଦାତ୍ମନ୍ୟେବ ବଶଂ ନୟେତ୍ । ୨୬ ।

**ସୁବୋଧିନୀ ଟୀକା**—କିଞ୍ଚ—ସଙ୍କଳ୍ପେତି—ସଙ୍କଳ୍ପାତ୍ ପ୍ରଭବୋ ଯେଷାଂ ତାନ୍ ଯୋଗପ୍ରତିକୂଳାନ୍ ସର୍ବାନ୍, କାମାନଶେଷତଃ ସବାସନାଂସ୍ତ୍ୟକ୍ତ୍ୱା । ମନସୈବ ବିଷୟଦୋଷଦର୍ଶିନା ସର୍ବତଃ ପ୍ରସରନ୍ତମିନ୍ଦ୍ରିୟସମୂହଂ ବିଶେଷେଣ ନିୟମ୍ୟ ଯୋଗୋ ଯୋକ୍ତବ୍ୟ ଇତି ପୂର୍ବେଣାନ୍ୱୟଃ ।

ଯଦି ତୁ ପ୍ରାକ୍ତନକର୍ମସଂସ୍କାରେଣ ମନୋ ବିଚଲେତ୍ତର୍ହି ଧାରଣୟା ସ୍ଥିରୀକୁର୍ଯ୍ୟାଦିତ୍ୟାହ—ଶନୈରିତି । ଧୃତିର୍ଧାରଣା, ତୟା ଗୃହୀତୟା ବଶୀକୃତୟା ବୁଦ୍ଧ୍ୟା । ଆତ୍ମସଂସ୍ଥମାତ୍ମନ୍ୟେବ ସମ୍ୟକ୍ ସ୍ଥିତଂ ନିଶ୍ଚଳଂ ମନଃ କୃତ୍ୱୋପରମେତ୍, ତଚ୍ଚ ଶନୈଃ ଶନୈରଭ୍ୟାସକ୍ରମେଣ ନ ତୁ ସହସା । ଉପରମସ୍ୱରୂପମାହ—ନ କିଞ୍ଚିଦପି ଚିନ୍ତୟେତ୍ ନିଶ୍ଚଳେ ମନସି ସ୍ୱୟମେବ ପ୍ରକାଶମାନ-ପରମାନନ୍ଦସ୍ୱରୂପୋ ଭୂତ୍ୱାତ୍ମଧ୍ୟାନାଦପି ନିବର୍ତ୍ତେତେତ୍ୟର୍ଥଃ ।

**ବିବୃତି**—ମନୁଷ୍ୟର ମନ ସାଧାରଣତଃ ବିକ୍ଷିପ୍ତ, ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ସଙ୍କଳ୍ପ ମନରେ ଜାତ ହୁଏ । ସେହି ସବୁ ସଙ୍କଳ୍ପରୁ କାମନାର ଉତ୍ପତ୍ତି, ବାହାରର କର୍ମ ତ୍ୟାଗ କଲେ ଲୋକ ଯୋଗୀ ହୋଇ ପାରେ ନାହିଁ, ସଙ୍କଳ୍ପ ଜାତ କାମନାତ୍ୟାଗ ହିଁ ଯୋଗସାଧନାର ଅନୁକୂଳ । ଅନେକ ସମୟରେ ଦେଖାଯାଏ ମନ କୌଣସି ଚିନ୍ତାରେ ଅଭିନିବିଷ୍ଟ ଥିଲେ ନିକଟବର୍ତ୍ତୀ ଶବ୍ଦ ଶୁଣାଯାଏ ନାହିଁ ବା କୌଣସି ଦୃଶ୍ୟ ଆଖି ଆଗରେ ଘଟିଲେ ବି ତାହା ଦେଖାଯାଏ ନାହିଁ, ଅର୍ଥାତ୍ ଶୁଣି ମଧ୍ୟ ଶୁଣାଯାଏ ନାହିଁ ବା ଦେଖି ମଧ୍ୟ ଦେଖାଯାଏ ନାହିଁ । ଏହି ଦୃଷ୍ଟାନ୍ତରୁ ମନଦ୍ୱାରା ଇନ୍ଦ୍ରିୟ ସଂଯମ କିପରି ହୋଇପାରେ ସହଜରେ ଜଣାଯିବ । ଆଖି ବୁଜି ରଖିଲେ ବା କାନରେ ଠିପିଦେଲେ ଇନ୍ଦ୍ରିୟସଂଯମ ହୁଏ ନାହିଁ । ତେଣୁ ମନଦ୍ୱାରା ଇନ୍ଦ୍ରିୟମାନଙ୍କୁ ବିଷୟରୁ ପ୍ରତ୍ୟାହୃତ କରିବାକୁ ହେବ । ତାପରେ ବୁଦ୍ଧି ହିଁ ଭଲମନ୍ଦ ନିର୍ଣ୍ଣୟ କରେ, ମନକୁ ସତ୍‌ପଥରେ ଚାଳିତ କରେ । ଧୃତି ବା ଧୈର୍ଯ୍ୟ ମନକୁ ବହିର୍ମୁଖ ନ କରି ଭିତରେ ଧାରଣକରି ରଖେ । ଏହି ଧୃତିସଂଯୁକ୍ତ ବୁଦ୍ଧିଦ୍ୱାରା ଚିତ୍ତକୁ ନିରୁଦ୍ଧ କରିବାକୁ ହୁଏ । ଏହି ଭାବରେ ମନକୁ ନିରୁଦ୍ଧକରି ଆତ୍ମାରେ ବିଲୀନ କରିବାକୁ ହେବ । ମନ ଆତ୍ମାରେ ବିଲୀନ ହେଲେ କୌଣସି ପ୍ରକାର ଚିନ୍ତାର ଉଦୟ ହେବ ନାହିଁ । ସେତେବେଳେ ସାଧକ ଆତ୍ମାନନ୍ଦ ହିଁ ଉପଭୋଗ କରନ୍ତି ।

୨୬ । **ଅନ୍ୱୟଦୀପିକା**—ଚଞ୍ଚଳମ୍ ଅସ୍ଥିରଂ ମନଃ (ଚଞ୍ଚଳ, ଅସ୍ଥିର ମନ ) ଯତଃ ଯତଃ ନିଶ୍ଚରତି (ଯେଉଁ ଯେଉଁ ବିଷୟ ପ୍ରତି ଧାବିତ ହୁଏ) ତତଃ

ପ୍ରଶାନ୍ତମନସଂ ହ୍ୟେନଂ ଯୋଗିନଂ ସୁଖମୁତ୍ତମମ୍,
ଉପୈତି ଶାନ୍ତରଜସଂ ବ୍ରହ୍ମଭୂତମକଲ୍ମଷମ୍ । ୨୭ ।
ଯୁଞ୍ଜନ୍ନେବଂ ସଦାତ୍ମାନଂ ଯୋଗୀ ବିଗତକଲ୍ମଷଃ ।
ସୁଖେନ ବ୍ରହ୍ମସଂସ୍ପର୍ଶମତ୍ୟନ୍ତଂ ସୁଖମଶ୍ନୁତେ । ୨୮ ।

ତତଃ (ସେହି ସେହି ବିଷୟରୁ) ଏତତ୍ ନିୟମ୍ୟ (ତାହାକୁ ପ୍ରତ୍ୟାହାର କରି) ଆତ୍ମନି ଏବ (ଆତ୍ମାରେ ହିଁ) ବଶଂ ନୟେତ୍ ( ବଶୀଭୂତ କରିବ ) ।

**ଅନୁବାଦ**—ମନ ସ୍ୱଭାବତଃ ଚଞ୍ଚଳ, ଅତଏବ ଅସ୍ଥିର ହୋଇ ଏହା ଯେଉଁ ଯେଉଁ ବିଷୟ ପ୍ରତି ଧାବିତ ହୁଏ, ସେହି ସେହି ବିଷୟରୁ ତାହାକୁ ପ୍ରତ୍ୟାହାର କରି ଆତ୍ମାରେହିଁ ସ୍ଥିରକରି ରଖିବ ।

**ସୁବୋଧିନୀ ଟୀକା**—ଏବମପିରଜୋଗୁଣବଶାଦ୍ୟଦି ମନଃ ପ୍ରଚଲେତ୍ ତର୍ହି ପୁନଃ ପ୍ରତ୍ୟାହାରେଣ ବଶୀକୁର୍ଯ୍ୟାଦିତ୍ୟାହ—ଯତୋ ଯତ ଇତି । ସ୍ୱଭାବତଶ୍ଚଞ୍ଚଳଂ ଧାର୍ଯ୍ୟମାଣମପ୍ୟସ୍ଥିରଂ ମନୋ ଯଂ ଯଂ ବିଷୟଂ ପ୍ରତି ନିର୍ଗଚ୍ଛତି ତତସ୍ତତଃ ପ୍ରତ୍ୟାହୃତ୍ୟାତ୍ମନ୍ୟେବ ସ୍ଥିରଂ କୁର୍ଯ୍ୟାତ୍ ।

**୨୭ । ଅନ୍ୱୟଦୀପିକା**—ପ୍ରଶାନ୍ତମନସଂ (ପ୍ରଶାନ୍ତ ଚିତ୍ତ) ଶାନ୍ତରଜସଂ ( ରଜୋଗୁଣ ରହିତ ) ଅକଲ୍ମଷଂ ( ନିଷ୍ପାପ ତମୋଗୁଣଶୂନ୍ୟ ), ବ୍ରହ୍ମଭୂତଂ (ବ୍ରହ୍ମଭାବପ୍ରାପ୍ତ) ଏନଂ ଯୋଗିନଂ ହି (ଏହି ଯୋଗୀଙ୍କୁ ହିଁ) ଉତ୍ତମଂ ସୁଖଂ (ପରମ-ସୁଖ) ଉପୈତି (ଆଶ୍ରୟ କରେ) ।

**ଅନୁବାଦ**—ପ୍ରଶାନ୍ତଚିତ୍ତ ଯୋଗୀ ରଜୋଗୁଣ ଓ ତମୋଗୁଣ ରହିତ ହୋଇ ବ୍ରହ୍ମଭାବ ଲାଭ କରନ୍ତି; ଏହିପରି ପ୍ରଶାନ୍ତଚିତ୍ତ ଯୋଗୀକୁ ନିର୍ମଳ ସମାଧିସୁଖ ଆଶ୍ରୟ କରେ ।

**ସୁବୋଧିନୀ ଟୀକା**—ଏବଂ ପ୍ରତ୍ୟାହାରାଦିଭିଃ ପୁନଃ ପୁନର୍ମନୋବଶୀ-କୁର୍ବନ୍ତଂ ରଜୋଗୁଣ କ୍ଷୟେ ସତି ଯୋଗସୁଖଂ ପ୍ରାପ୍ନୋତୀତ୍ୟାହ—ପ୍ରଶାନ୍ତ ମନସମିତି; ଏବମୁକ୍ତପ୍ରକାରେଣ ଶାନ୍ତଂ ରଜୋ ଯସ୍ୟ ତଂ ଅତ ଏବ ପ୍ରଶାନ୍ତଂ ମନୋ ଯସ୍ୟ ତମେନଂ ନିଷ୍କଲ୍ମଷଂ ବ୍ରହ୍ମତ୍ୱପ୍ରାପ୍ତଂ ଯୋଗିନମୁତ୍ତମଂ ସମାଧିସୁଖଂ ସ୍ୱୟମେବୋ-ପୈତି ପ୍ରାପ୍ନୋତି ।

**୨୮ । ଅନ୍ୱୟଦୀପିକା**—ଏବଂ (ଏହିପରି) ଆତ୍ମାନଂ (ମନକୁ) ସଦା ଯୁଞ୍ଜନ୍ (ସର୍ବଦା ସମାହିତ କରି) ବିଗତକଲ୍ମଷଃ ଯୋଗୀ ( ପାପଶୂନ୍ୟ ଯୋଗୀ ) ସୁଖେନ ( ଅନାୟାସରେ ) ବ୍ରହ୍ମସଂସ୍ପର୍ଶଂ ( ବ୍ରହ୍ମାନୁଭବରୂପ ) ଅତ୍ୟନ୍ତଂ ସୁଖଂ (ନିରତିଶୟ ସୁଖ) ଅଶ୍ନୁତେ (ଲାଭ କରନ୍ତି) ।

**ଅନୁବାଦ**—ଏହିପରି ନିଜ ମନକୁ ସର୍ବଦା ସମାହିତ କରି ନିଷ୍ପାପ ଯୋଗୀ ବ୍ରହ୍ମାନୁଭବରୂପ ନିରତିଶୟ ସୁଖ ଲାଭ କରନ୍ତି ।

ସର୍ବଭୂତସ୍ଥମାତ୍ମାନଂ ସର୍ବଭୂତାନି ଚାତ୍ମନି ।
ଈକ୍ଷତେ ଯୋଗଯୁକ୍ତାତ୍ମା ସର୍ବତ୍ର ସମଦର୍ଶନଃ । ୨୯ ।
ଯୋ ମାଂ ପଶ୍ୟତି ସର୍ବତ୍ର ସର୍ବଂ ଚ ମୟି ପଶ୍ୟତି
ତସ୍ୟାହଂ ନ ପ୍ରଣଶ୍ୟାମି ସ ଚ ମେ ନ ପ୍ରଣଶ୍ୟତି । ୩୦ ।

**ସୁବୋଧିନୀ ଟୀକା**—ତତଶ୍ଚ କୃତାର୍ଥୋ ଭବତୀତ୍ୟାହ—ଯୁଞ୍ଜନ୍ନିତି । ଏବମନେନ ପ୍ରକାରେଣ ସର୍ବଦାତ୍ମାନଂ ମନୋ ଯୁଞ୍ଜନ୍ ବଶୀକୁର୍ବନ୍ । ବିଶେଷେଣ ସର୍ବାତ୍ମନା । ବିଗତଂ କଲ୍ମଷଂ ଯସ୍ୟ ସଃ । ଯୋଗୀ ସୁଖେନାନାୟାସେନ ବ୍ରହ୍ମଣଃ ସମ୍ପର୍କୋଽବିଦ୍ୟାନିବର୍ତ୍ତକଃ ସାକ୍ଷାତ୍କାରସ୍ତଦେବାତ୍ୟନ୍ତଂ ସୁଖମଶ୍ନୁତେ ଜୀବନ୍ମୁକ୍ତୋ ଭବତୀତ୍ୟର୍ଥଃ ।

**ବିବୃତି**—ପୂର୍ବୋକ୍ତ ତିନି ଶ୍ଳୋକରେ ଚଞ୍ଚଳ ମନକୁ ସ୍ଥିର ନ କଲେ ସମାଧି ସୁଖ ଯେ ଭୋଗ କରାଯାଇ ପାରେ ନାହିଁ ତାହା ଉକ୍ତ ହୋଇଅଛି ଏବଂ ମନ ସ୍ଥିର ହେଲେ ଯେଉଁ ଫଳ ଲାଭ ହୁଏ ତାହା କୁହାଯାଇଅଛି । ଯୋଗସିଦ୍ଧିର ଫଳ ନିର୍ମଳ ବ୍ରହ୍ମାନନ୍ଦ ଉପଭୋଗ । ଏହା ୨୮ଶ ଶ୍ଳୋକରେ ଉକ୍ତ ହେଲା ।

୨୯ । **ଅନ୍ୱୟଦୀପିକା**—ସର୍ବତ୍ର ସମଦର୍ଶନଃ (ସର୍ବତ୍ର ସମଦର୍ଶୀ) ଯୋଗଯୁକ୍ତାତ୍ମା ( ଯୋଗରେ ସମାହିତ ବ୍ୟକ୍ତି) ଆତ୍ମାନଂ (ଆତ୍ମାଙ୍କୁ) ସର୍ବଭୂତସ୍ଥଂ (ସର୍ବଭୂତସ୍ଥିତ) ସର୍ବଭୂତାନି ଚ (ଏବଂ ସର୍ବଭୂତଙ୍କୁ) ଆତ୍ମନି (ଆତ୍ମାରେ) ଈକ୍ଷତେ (ଦେଖନ୍ତି) ।

**ଅନୁବାଦ**—ସର୍ବତ୍ର ସମଦର୍ଶୀ ଯୋଗଯୁକ୍ତ ପୁରୁଷ ସର୍ବଭୂତରେ ଆତ୍ମାଙ୍କୁ ଏବଂ ଆତ୍ମାରେ ସର୍ବଭୂତଙ୍କୁ ଦର୍ଶନ କରିଥାଆନ୍ତି ।

**ସୁବୋଧିନୀ ଟୀକା**—ବ୍ରହ୍ମସାକ୍ଷାତ୍କାରମେବ ଦର୍ଶୟତି—ସର୍ବଭୂତସ୍ଥମିତି । ଯୋଗେନାଭ୍ୟସ୍ୟମାନେନ ଯୁକ୍ତାତ୍ମା ସମାହିତଚିତ୍ତଃ । ସର୍ବତ୍ର ସମଂ ବ୍ରହ୍ମୈବ ପଶ୍ୟତୀତି ସମଦର୍ଶନଃ । ତଥା ସ ସ୍ୱମାତ୍ମାନମବିଦ୍ୟାକୃତଦେହାଦି ପରିଚ୍ଛେଦଶୂନ୍ୟଂ ସର୍ବଭୂତେଷୁ ବ୍ରହ୍ମାଦିସ୍ଥାବରାନ୍ତେଷ୍ୱବସ୍ଥିତଂ ପଶ୍ୟତି । ତାନି ଚାତ୍ମନ୍ୟଭେଦେନ ପଶ୍ୟତି ।

୩୦ । **ଅନ୍ୱୟଦୀପିକା**—ଯଃ (ଯେ) ସର୍ବତ୍ର (ଜଗତରେ ସକଳ-ପଦାର୍ଥରେ) ମାଂ ପଶ୍ୟତି (ଆମ୍ଭଙ୍କୁ ଦେଖନ୍ତି), ମୟି ଚ (ଏବଂ ଆମ୍ଭଠାରେ) ସର୍ବଂ ପଶ୍ୟତି (ଦେଖନ୍ତି) ଅହଂ ତସ୍ୟ ନ ପ୍ରଣଶ୍ୟାମି (ଆମ୍ଭେ ତାଙ୍କର ଅଦୃଶ୍ୟ ହେଉଁନାହିଁ) ସ ଚ ମେ ନ ପ୍ରଣଶ୍ୟତି ( ସେ ମଧ୍ୟ ଆମ୍ଭର ଅଦୃଶ୍ୟ ହୁଅନ୍ତି ନାହିଁ ) ।

ସର୍ବଭୂତସ୍ଥିତଂ ଯୋ ମାଂ ଭଜତ୍ୟେକତ୍ୱମାସ୍ଥିତଃ ।
ସର୍ବଥା ବର୍ତ୍ତମାନୋଽପି ସ ଯୋଗୀ ମୟି ବର୍ତ୍ତତେ । ୩୧ ।

**ଅନୁବାଦ**—ଯେ ଆତ୍ମାଙ୍କୁ ସର୍ବଭୂତରେ ଅବସ୍ଥିତ ଦେଖନ୍ତି ଏବଂ ଆତ୍ମଠାରେ ସର୍ବଭୂତ ଅବସ୍ଥିତ ଦେଖନ୍ତି, ଆମ୍ଭେ ତାହାଙ୍କର ଅଦୃଶ୍ୟ ହୋଉଁ ନାହିଁ ଏବଂ ସେ ମଧ୍ୟ ଆମ୍ଭର ଅଦୃଶ୍ୟ ହୁଅନ୍ତି ନାହିଁ ।

**ସୁବୋଧିନୀ ଟୀକା**—ଏବଂ ଭୂତାତ୍ମଭଜନେ ଚ ସର୍ବଭୂତାତ୍ମତୟା ମଦୁପାସନଂ ମୁଖ୍ୟଂ କାରଣ ମିତ୍ୟାହ—ଯୋ ମାମିତ । ମାଂ ପରମେଶ୍ୱରଂ ସର୍ବେଷୁ ଭୂତେଷୁ ଯଃ ପଶ୍ୟତି । ସର୍ବଂ ଚ ପ୍ରାଣିମାତ୍ରଂ ମୟି ଯଃ ପଶ୍ୟତି । ତସ୍ୟାହଂ ନ ପ୍ରଣଶ୍ୟାମି । ଅଦୃଶ୍ୟୋ ନ ଭବାମି । ସ ଚ ମମାଦୃଶ୍ୟୋ ନ ଭବତି । ପ୍ରତ୍ୟକ୍ଷୋ ଭୂତ୍ୱା କୃପାଦୃଷ୍ଟ୍ୟା ତଂ ବିଲୋକ୍ୟାନୁଗୃହ୍ଣାମୀତ୍ୟର୍ଥଃ ।

**ବିବୃତି**—ଅନୁଧ୍ୟାନ କଲେ ଜଣାଯାଏ ଯେ ୨୯ଶ ଶ୍ଳୋକରେ ଯାହା କୁହା ଯାଇଅଛି ୩୦ଶ ଶ୍ଳୋକରେ ତାହାହିଁ କୁହାଗଲା । ଏହା ପୁନରୁକ୍ତି ପରି ଜଣାଗଲେହେଁ ପ୍ରକୃତରେ ପୁନରୁକ୍ତି ନୁହେ । କର୍ମଯୋଗୀ ଆତ୍ମସାକ୍ଷାତ୍‌କାରଲାଭ କରି ସର୍ବତ୍ର ଆତ୍ମଦର୍ଶନ କରିବେ—ଏହାହିଁ ୨୯ଶ ଶ୍ଳୋକରେ ବ୍ୟକ୍ତ ହୋଇଅଛି, ପ୍ରକୃତରେ ଏ ଜ୍ଞାନ ହିଁ ସମସ୍ତ ଅଧ୍ୟାତ୍ମଜ୍ଞାନ ଓ କର୍ମଯୋଗର ମୂଳ । କର୍ମଯୋଗୀ ଆତ୍ମଜ୍ଞାନ ଲାଭ କରି ସେହି ଜ୍ଞାନବଳରେ ସର୍ବତ୍ର ଆତ୍ମଦର୍ଶନ ବା ବ୍ରହ୍ମଦର୍ଶନ କରିବେ—ଏହା କହିବାଦ୍ୱାରା କର୍ମଯୋଗ ପୂର୍ଣ୍ଣତା ପ୍ରାପ୍ତ ହେଲା ନାହିଁ, କର୍ମଯୋଗ କେବଳ ଜ୍ଞାନମୂଳକ ନୁହେ, ଭକ୍ତିହିଁ କର୍ମଯୋଗ ସିଦ୍ଧିର ଅନ୍ୟତର ଉପାୟ, ତେଣୁ ୩୦ଶ ଶ୍ଳୋକରେ 'ମୟି' (ଆତ୍ମଠାରେ) କହିବାଦ୍ୱାରା ପରମାତ୍ମାଙ୍କର ବ୍ୟକ୍ତରୂପହିଁ ଲକ୍ଷ୍ୟ କରାଯାଇଅଛି । ଆତ୍ମାରୂପରେ ବ୍ରହ୍ମ ନାମରୂପବର୍ଜିତ ଓ ଅବ୍ୟକ୍ତ । ମାତ୍ର ସଗୁଣ ପୁରୁଷୋତ୍ତମ ରୂପରେ ସେ ଭକ୍ତଙ୍କର ଭଗବାନ୍ ଓ ସର୍ବଲୋକର ସୁହୃଦ୍ । ଜ୍ଞାନ ଲାଭ ନ ହେଲେ କେବଳ ଶୁଷ୍କ ଭକ୍ତି ଫଳପ୍ରଦ ହୁଏ ନାହିଁ । ଏହାହିଁ ଗୀତା ଶାସ୍ତ୍ରର ଲକ୍ଷ୍ୟ । ଗୀତୋକ୍ତ ଯୋଗୀ କେବଳ ଆତ୍ମାନନ୍ଦ ଉପଭୋଗକରି ସନ୍ତୁଷ୍ଟ ରହନ୍ତି ନାହିଁ, ସେ ଭକ୍ତଚୂଡ଼ାମଣିରୂପରେ ବିଶ୍ୱେଶ୍ୱରଙ୍କୁ ସର୍ବତ୍ର ଭୂତ-ମୂଳର ଉପରୂପେ ଦେଖି ବିଶ୍ୱପ୍ରେମରେ ପୁଲକିତ ହୁଅନ୍ତି ଏବଂ ବିଶ୍ୱକର୍ମରେ ଆତ୍ମନିୟୋଗ କରି ଜୀବନ ଅତିବାହିତ କରନ୍ତି । ଏହି ହେତୁରୁ ୭ମ ଅଧ୍ୟାୟରୁ ବିଶ୍ୱେଶ୍ୱରଙ୍କର ବ୍ୟକ୍ତ ସ୍ୱରୂପ ବର୍ଣ୍ଣନା ଆରମ୍ଭ ହୋଇଅଛି ।

୩୧ । **ଅନ୍ୱୟଦୀପିକା**—ଯଃ (ଯେଉଁ ଯୋଗୀ ପୁରୁଷ) ସର୍ବଭୂତସ୍ଥିତଂ ମାଂ (ସବୁ ପ୍ରାଣୀଙ୍କଠାରେ ଅବସ୍ଥିତ ଆମ୍ଭଙ୍କୁ) ଏକତ୍ୱମ୍ ଆସ୍ଥିତଃ (ଅଭିନ୍ନ ରୂପେ ଅବଧାରଣକରି) ଭଜତି (ଆରାଧନା କରନ୍ତି) ସଃ ଯୋଗୀ (ସେହି ଯୋଗୀ)

ଆତ୍ମୌପମ୍ୟେନ ସର୍ବତ୍ର ସମଂ ପଶ୍ୟତି ଯୋଽର୍ଜୁନ ।
ସୁଖଂ ବା ଯଦି ବା ଦୁଃଖଂ ସ ଯୋଗୀ ପରମୋମତଃ । ୩୨ ।

ସର୍ବଥା ବର୍ତ୍ତମାନଃ ଅପି (ଯେ କୌଣସି ଅବସ୍ଥାରେ ଥିଲେ ମଧ୍ୟ) ମୟି ବର୍ତ୍ତତେ (ଆତ୍ମଠାରେ ଅବସ୍ଥାନ କରନ୍ତି) ।

**ଅନୁବାଦ**—ଯେଉଁ ଯୋଗୀ ପୁରୁଷ ସମତ୍ୱ ବୁଦ୍ଧି ଅବଲମ୍ବନ କରି ଭେଦଜ୍ଞାନ ପରିତ୍ୟାଗପୂର୍ବକ ସର୍ବଭୂତସ୍ଥିତ ଆତ୍ମାଙ୍କୁ ଭଜନ୍ତି, ସେ ଯେଉଁ ଅବସ୍ଥାରେ ଥାଆନ୍ତୁ ନା କାହିଁକି ଆତ୍ମଠାରେ ହିଁ ଅବସ୍ଥାନ କରନ୍ତି ।

**ସୁବୋଧିନୀ ଟୀକା**—ନ କେବଳମେତାବଦ୍ଧ୍ୟାନଫଲମ୍ ସର୍ବମିତ୍ୟାହ— ସର୍ବଭୂତସ୍ଥିତମିତି । ସର୍ବଭୂତେଷୁ ସ୍ଥିତଂ ମାମଭେଦମାଶ୍ରିତୋ ଯୋ ଭଜତି ସ ଯୋଗୀ ଜ୍ଞାନୀ ସର୍ବଥା କର୍ମପରିତ୍ୟାଗେନାପି ବର୍ତ୍ତମାନୋ ମଯ୍ୟେବ ବର୍ତ୍ତତେ ମୁଚ୍ୟତେ । ନ ତୁ ଭ୍ରଶ୍ୟତୀତ୍ୟର୍ଥଃ ।

**ବିବୃତି**—'ଏକ ଆତ୍ମା ସବୁ ପ୍ରାଣୀଙ୍କଠାରେ ବିଦ୍ୟମାନ ଅଛନ୍ତି'— ଏହାହିଁ ପ୍ରକୃତ ଆତ୍ମଜ୍ଞାନ । ଜ୍ଞାନୀ ଓ କର୍ମୀ ସମସ୍ତେ ଏହି ଦୃଷ୍ଟି ନ ପାଇଲେ ସିଦ୍ଧ ହୋଇ ପାରନ୍ତି ନାହିଁ । ଜ୍ଞାନୀ ଅର୍ଥାତ୍ କର୍ମତ୍ୟାଗୀ ସନ୍ନ୍ୟାସୀମାନେ ଏ ଦୃଷ୍ଟି ଲାଭକରି ସୁଦ୍ଧା ତାହାର ପ୍ରୟୋଗ କରନ୍ତି ନାହିଁ । କିନ୍ତୁ କର୍ମଯୋଗୀ ଏ ଦୃଷ୍ଟିର ସଦ୍‌ବ୍ୟବହାର କରି କୃତାର୍ଥ ହୁଅନ୍ତି । ସର୍ବଭୂତରେ ନାରାୟଣ ବିରାଜିତ ଅଛନ୍ତି—ଏହା ଜାଣି କର୍ମଯୋଗୀ ପ୍ରତ୍ୟେକ ପ୍ରାଣୀର ସେବା ଓ ଉପକାର କରିବା ପାଇଁ ଯଥାଶକ୍ତି ଚେଷ୍ଟା କରନ୍ତି ଏବଂ ସେଥିପାଇଁ ସ୍ୱାର୍ଥତ୍ୟାଗ ମଧ୍ୟ କରନ୍ତି । ଏହାଦ୍ୱାରା ଅର୍ଥାତ୍ ସର୍ବ ଭୂତରେ ଭଗବାନଙ୍କର ଅବସ୍ଥିତି ଜାଣିବା ଦ୍ୱାରା ସେ ତାଙ୍କର ହିଁ ପୂଜାକରି ଜୀବନକୁ ଧନ୍ୟ କରନ୍ତି । ସେ ଗୃହରେ ରହନ୍ତୁ ବା ଅରଣ୍ୟରେ ଗିରିଗୁହାରେ ରହନ୍ତୁ ସବୁପ୍ରାଣୀଙ୍କଠାରେ ଭଗବାନଙ୍କର ଅସ୍ତିତ୍ୱ ଉପଲବ୍ଧି କରି ତାଙ୍କଠାରେ ନିତ୍ୟଯୁକ୍ତ ଥାଆନ୍ତି ବୋଲି ବୁଝିବାକୁ ହେବ । ଏଥିରୁ ବୁଝାଯାଉଅଛି ଜୀବସେବା ହିଁ ଈଶ୍ୱରଙ୍କ ଅର୍ଚ୍ଚନା ଏବଂ ବିଶ୍ୱପ୍ରେମ ହିଁ ଈଶ୍ୱରଭକ୍ତି ।

୩୨ । **ଅନ୍ୱୟଦୀପିକା**—ଅର୍ଜୁନ (ହେ ଅର୍ଜୁନ) ଯଃ (ଯେଉଁ ଲୋକ) ସର୍ବତ୍ର (ସମସ୍ତ ପ୍ରାଣୀଙ୍କଠାରେ) ଆତ୍ମୌପମ୍ୟେନ (ନିଜ ସଙ୍ଗେ ତୁଳନା କରିବାଦ୍ୱାରା) ସୁଖଂ ବା ଯଦି ବା ଦୁଃଖଂ (ସୁଖ ବା ଦୁଃଖକୁ) ସମଂ ପଶ୍ୟତି (ସମାନ ଭାବରେ ଦେଖନ୍ତି) ସଃ ଯୋଗୀ (ସେହି ଯୋଗୀ) ପରମଃ ମତଃ (ସର୍ବାପେକ୍ଷା ଶ୍ରେଷ୍ଠ) ।

**ଅନୁବାଦ**—ହେ ଅର୍ଜୁନ, ନିଜ ସଙ୍ଗେ ତୁଳନା କରି ଯେଉଁ ବ୍ୟକ୍ତି ସବୁ ପ୍ରାଣୀଙ୍କଠାରେ ସୁଖ ବା ଦୁଃଖକୁ ସମାନ ଦେଖନ୍ତି ସେହି ଏକା ଶ୍ରେଷ୍ଠ ଯୋଗୀ—ଏହା ଆମ୍ଭର ଅଭିମତ ।

ଅର୍ଜ୍ଜୁନ ଉବାଚ

ଯୋଽୟଂ ଯୋଗସ୍ତ୍ୱୟା ପ୍ରୋକ୍ତଃ ସାମ୍ୟେନ ମଧୁସୂଦନ ।
ଏତସ୍ୟାହଂ ନ ପଶ୍ୟାମି ଚଞ୍ଚଳତ୍ୱାତ୍ ସ୍ଥିତିଂ ସ୍ଥିରାମ୍ । ୩୩ ।

**ସୁବୋଧିନୀ ଟୀକା**—ଏବଂ ମାଂ ଭଜତାଂ ଯୋଗିନାଂ ମଧ୍ୟେ ସର୍ବଭୂତାନୁକମ୍ପୀ ଶ୍ରେଷ୍ଠ ଇତ୍ୟାହ—ଆତ୍ମୌପମ୍ୟେନେତି । ଆତ୍ମୌପମ୍ୟେନ ସ୍ୱସାଦୃଶ୍ୟେନ ଯଥା ସୁଖଂ ମମ ପ୍ରିୟଂ ଦୁଃଖଂ ଚାପ୍ରିୟଂ ତଥାଽନ୍ୟେଷାମପୀତି ସର୍ବତ୍ର ସମଂ ପଶ୍ୟନ୍ ସୁଖମେବ ସର୍ବେଷାଂ ଯୋ ବାଞ୍ଛତି । ନ ତୁ କସ୍ୟାପି ଦୁଃଖମ୍ । ସ ଯୋଗୀ ଶ୍ରେଷ୍ଠୋ ମମାଭିମତ ଇତ୍ୟର୍ଥଃ ।

**ବିବୃତି**—ଏକଆତ୍ମା ସର୍ବଭୂତରେ ବିରାଜିତ ଅଛନ୍ତି—ଯାହାଙ୍କର ଏ ଜ୍ଞାନ ହୋଇଅଛି ସେ ଅନ୍ୟର ସୁଖରେ ସୁଖୀ ଓ ଅନ୍ୟର ଦୁଃଖରେ ଦୁଃଖୀ ନ ହୋଇ ରହିପାରନ୍ତି ନାହିଁ । ଏହା ହିଁ ବିଶ୍ୱପ୍ରେମର ମୂଳ ଭିତ୍ତି । ଅତି ପ୍ରାଚୀନ କାଳରୁ ଏ ଦେଶର ସୁଧୀବୃନ୍ଦ ଏହି ସତ୍ୟ ଉପଲବ୍ଧି କରି ପରୋପକାର କରିବା ପାଇଁ ନାନାଭାବରେ ଉପଦେଶ ଦେଇ ଯାଇଅଛନ୍ତି । ଯଜ୍ଞ ଓ ଦାନ ଏହି ସତ୍ୟ ଉପରେ ପ୍ରତିଷ୍ଠିତ । ପ୍ରତ୍ୟେକ ନୀତିଶାସ୍ତ୍ର ଓ ପ୍ରତ୍ୟେକ ଧର୍ମଶାସ୍ତ୍ର କହନ୍ତି ନିଜକୁ ମନୁଷ୍ୟ ଯେପରି ସୁଖ ପାଏ ଅନ୍ୟକୁ ସେହିପରି ସୁଖ ପାଇବାକୁ ଯତ୍ନ କରିବ । ସର୍ବତ୍ର ଏକ ଆତ୍ମା ବିରାଜିତ ଅଛନ୍ତି—ଏହାହିଁ ଏ ନୀତିର ଭିତ୍ତିଭୂମି । ରାଜପୁତ୍ର ଗୌତମ ବୁଦ୍ଧ ଏହି ବିଶ୍ୱପ୍ରେମରେ ଅନୁପ୍ରାଣିତ ହୋଇ ସଂସାର ତ୍ୟାଗ କରିଥିଲେ ଏବଂ ତାଙ୍କ ଅନୁବର୍ତ୍ତୀ ରାଜର୍ଷି ଅଶୋକ ଏହି ବିଶ୍ୱମୈତ୍ରୀ ବ୍ରତରେ ଉଦ୍‌ବୁଦ୍ଧ ହୋଇ ଭାରତର ଗିରିକାନ୍ତାରକୁ ମଧ୍ୟ ଜୀବଦୟା ପ୍ରଚୁର ରୂପ ଆଲେଖ୍ୟରେ ଉଦ୍‌ଭାସିତ କରିଥିଲେ ।

୩୩ । **ଅନ୍ୱୟଦୀପିକା**—ଅର୍ଜ୍ଜୁନଃ ଉବାଚ (ଅର୍ଜ୍ଜୁନ କହିଲେ), ହେ ମଧୁସୂଦନ ! ତ୍ୱୟା (ତୁମ୍ଭ ଦ୍ୱାରା) ସାମ୍ୟେନ (ସମତାରୂପ) ଅୟଂ ଯଃ ଯୋଗଃ (ଏହି ଯେଉଁ ଯୋଗ) ଉକ୍ତଃ (କଥିତ ହେଲା), ଏତସ୍ୟ (ଏହାର) ସ୍ଥିରାଂ (ଅଚଳ) ସ୍ଥିତିଂ (ଅବସ୍ଥାନ) ଚଞ୍ଚଳତ୍ୱାତ୍ (ଚଞ୍ଚଳତାବଶତଃ) ଅହଂ (ମୁଁ) ନ ପଶ୍ୟାମି (ଦେଖୁ ନାହିଁ) ।

**ଅନୁବାଦ**—ଅର୍ଜ୍ଜୁନ ପଚାରିଲେ, ହେ ମଧୁସୂଦନ ! ତୁମ୍ଭେ ଏହି ଯେଉଁ ସମତାରୂପ ଯୋଗତତ୍ତ୍ୱ ବ୍ୟାଖ୍ୟା କଲ, ମନ ଯେପରି ଚଞ୍ଚଳ, ଏଥିରେ ଏହି ସମତ୍ୱ ଭାବ ସ୍ଥାୟୀ ହେବ ବୋଲି ମୋତେ ଜଣାଯାଉ ନାହିଁ ।

**ସୁବୋଧିନୀ ଟୀକା**—ଉକ୍ତ ଲକ୍ଷଣସ୍ୟ ଯୋଗସ୍ୟାସମ୍ଭବଂ ମନ୍ୱାନୋଽର୍ଜ୍ଜୁନ ଉବାଚ—ଯୋଽୟମିତି । ସାମ୍ୟେନ ମନସୋ ଲୟବିକ୍ଷେପଶୂନ୍ୟତୟା

.ଚଞ୍ଚଳଂ ହି ମନଃ କୃଷ୍ଣ ପ୍ରମାଥି ବଳବଦ୍ଦୃଢ଼ମ୍ ।
ତସ୍ୟାହଂ ନିଗ୍ରହଂ ମନ୍ୟେ ବାୟୋରିବ ସୁଦୁଷ୍କରମ୍ । ୩୪ ।

କେବଳାତ୍ମାକାରବୃତ୍ତ୍ୟାନେନ । ଯୋଽୟଂ ଯୋଗସ୍ତ୍ୱୟା ପ୍ରୋକ୍ତଃ । ଏତସ୍ୟ ସ୍ଥିରାଂ ଦୀର୍ଘକାଳାଂ ସ୍ଥିତିଂ ନ ପଶ୍ୟାମି । ମନସଶ୍ଚଞ୍ଚଳତ୍ୱାତ୍ ।

**ବିବୃତି**—ଏଥି ପୂର୍ବେ ପାତଞ୍ଜଳ ଯୋଗ ଅଭ୍ୟାସ ଦ୍ୱାରା ଆତ୍ମାନନ୍ଦ ଉପଭୋଗ କରିବା କଥା ଉକ୍ତ ହୋଇଅଛି । ମାତ୍ର ଏଠାରେ 'ସାମ୍ୟେନ' ପଦ ପ୍ରୟୋଗ ହେତୁରୁ ଜଣାଯାଉଅଛି ଏ ଶ୍ଳୋକର 'ଯୋଗ' ଶବ୍ଦ ଦ୍ୱାରା କର୍ମଯୋଗକୁ ହିଁ ଲକ୍ଷ୍ୟ କରାଯାଇଅଛି । କାରଣ ଦ୍ୱିତୀୟ ଅଧ୍ୟାୟ ୪୮ଶ ଶ୍ଳୋକରେ କର୍ମ-ଯୋଗ ବ୍ୟାଖ୍ୟା ବେଳେ ଭଗବାନ୍ କହିଅଛନ୍ତି, "ସିଦ୍ଧ୍ୟସିଦ୍ଧ୍ୟୋଃ ସମୋ ଭୂତ୍ୱା ସମତ୍ୱଂ ଯୋଗ ଉଚ୍ୟତେ" ଅର୍ଥାତ୍ ବୁଦ୍ଧିର ସମତ୍ୱ ହିଁ ଯୋଗ । ପ୍ରକୃତରେ ଭେଦଜ୍ଞାନ ଶୂନ୍ୟ ସମତ୍ୱ ହିଁ କର୍ମଯୋଗର ମୂଳଭିତ୍ତି । ଧ୍ୟାନ ଯୋଗ କର୍ମଯୋଗର ଅଙ୍ଗ ବିଶେଷ ।

**୩୪ । ଅନ୍ୱୟଦୀପିକା**—ହେ କୃଷ୍ଣ, ହି (ଯେଉଁ ହେତୁରୁ) ମନଃ (ମନ) ଚଞ୍ଚଳଂ (ଚଞ୍ଚଳ) ପ୍ରମାଥି (ଇନ୍ଦ୍ରିୟମାନଙ୍କର କ୍ଷୋଭକାରୀ), ବଳବତ୍ (ବଳବାନ୍) ଦୃଢ଼ଂ (ଦୃଢ଼) [ସେହି ହେତୁରୁ] ଅହଂ (ମୁଁ) ତସ୍ୟ (ସେହି ମନର) ନିଗ୍ରହଂ (ନିରୋଧ) ବାୟୋଃ ଇବ (ବାୟୁର ନିରୋଧ ପରି) ସୁଦୁଷ୍କରଂ (ଦୁଃସାଧ୍ୟ) ମନ୍ୟେ (ମନେ କରେଁ) ।

**ଅନୁବାଦ**—ହେ କୃଷ୍ଣ, ମନ ସ୍ୱଭାବତଃ ଚଞ୍ଚଳ, ଇନ୍ଦ୍ରିୟକ୍ଷୋଭକାରୀ, ଅତି ଶକ୍ତିଶାଳୀ ଏବଂ ଦୃଢ଼ । ତେଣୁ ମୁଁ ମନେକରେଁ, ବାୟୁକୁ ନିରୋଧ କରିବା ଯେପରି ଦୁଃସାଧ୍ୟ ମନକୁ ନିରୋଧ କରିବା ମଧ୍ୟ ସେହିପରି ଦୁଃସାଧ୍ୟ ।

**ସୁବୋଧିନୀ ଟୀକା**—ଏତତ୍ ସ୍ଫୁଟୟତି—ଚଞ୍ଚଳମିତି । ଚଞ୍ଚଳଂ ସ୍ୱଭାବେନୈବ ଚପଳମ୍ । କିଞ୍ଚ ପ୍ରମାଥି ପ୍ରମଥନଶୀଳମ୍ । ଦେହେନ୍ଦ୍ରିୟକ୍ଷୋଭକରମିତ୍ୟର୍ଥଃ । କିଞ୍ଚ ବଳବଦ୍ୱିଚାରେଣାପି ଜେତୁମଶକ୍ୟମ୍ । କିଞ୍ଚ ଦୃଢ଼ଂ ବିଷୟବାସନାନୁବନ୍ଧତୟା ଦୁର୍ଭେଦମ୍ । ଅତୋ ଯଥାକାଶେ ଦୋଧୂୟମାନସ୍ୟ ବାୟୋଃ କୁମ୍ଭାଦିଷୁ ନିରୋଧନମଶକ୍ୟଂ ତଥାଽହଂ ତସ୍ୟ ମନସୋ ନିଗ୍ରହଂ ନିରୋଧଂ ସୁଦୁଷ୍କରଂ ସର୍ବଥା କର୍ତୁମଶକ୍ୟଂ ମନ୍ୟେ ।

**ବିବୃତି**—ପ୍ରଭଞ୍ଜନ ଓ ଅଗ୍ନେଳର ଗତିଠାରୁ ମନର ଗତି ଅଧିକ ଚଞ୍ଚଳ । ମନ କେବଳ ଚଞ୍ଚଳ ନୁହେ, ତା ଉପଦ୍ରବରେ ଇନ୍ଦ୍ରିୟ ଓ ଶରୀର ମଧ୍ୟ ସର୍ବଦା କ୍ଷୁବ୍ଧ ହୋଇଥାଏ । ସେ ଏପରି ବଳବାନ୍ ଯେ ତାହାର ଗତି ରୋଧ କରିବା ସହଜସାଧ୍ୟ ନୁହେ । ପ୍ରବଳ ବେଗରେ ବହୁଥିବା ବାୟୁକୁ ଧରିବା ଯେପରି କଠିନ ଚଞ୍ଚଳ ମନକୁ ନିରୋଧ କରି ରଖିବା ସେହିପରି କଠିନ । ମନ

ଶ୍ରୀ ଭଗବାନୁବାଚ

ଅସଂଶୟଂ ମହାବାହୋ ମନୋ ଦୁର୍ନିଗ୍ରହଂ ଚଳମ୍ ।
ଅଭ୍ୟାସେନ ତୁ କୌନ୍ତେୟ ବୈରାଗ୍ୟେଣ ଚ ଗୃହ୍ୟତେ । ୩୫ ।

ନିରୋଧ ହିଁ ସାମ୍ୟଯୋଗର ପ୍ରଧାନ କଥା । ଏପରି ଅବସ୍ଥାରେ ମନୋନିଗ୍ରହ ସର୍ବଥା ସୁଦୁଷ୍କର, ଏପରି ପ୍ରଶ୍ନ ଅତି ସ୍ୱାଭାବିକ ।

**୩୫ । ଅନ୍ୱୟଦୀପିକା**—ଶ୍ରୀ ଭଗବାନ୍ ଉବାଚ ( ଶ୍ରୀ ଭଗବାନ୍ କହିଲେ), ହେ ମହାବାହୋ, ମନଃ ଦୁର୍ନିଗ୍ରହଂ (ମନ ଦୁର୍ନିରୋଧ) [ଏବଂ] ଚଳଂ (ଚଞ୍ଚଳ) [ଏହା] ଅସଂଶୟଂ (ଏଥିରେ ସନ୍ଦେହ ନାହିଁ); ତୁ (କିନ୍ତୁ) ହେ କୌନ୍ତେୟ, ଅଭ୍ୟାସେନ ( ଅଭ୍ୟାସ ଦ୍ୱାରା) ବୈରାଗ୍ୟେଣ ଚ ( ଏବଂ ବୈରାଗ୍ୟ ଦ୍ୱାରା) ଗୃହ୍ୟତେ (ନିଗୃହୀତ ହୁଏ) ।

**ଅନୁବାଦ**—ଭଗବାନ୍ କହିଲେ, ହେ ମହାବାହୁ ଅର୍ଜୁନ, ଏଥିରେ ସନ୍ଦେହ ନାହିଁ ଯେ, ମନ ଚଞ୍ଚଳ ଏବଂ ତାହାର ନିଗ୍ରହ କଠିନ, କିନ୍ତୁ ହେ କୌନ୍ତେୟ ଅଭ୍ୟାସ ଓ ବୈରାଗ୍ୟ ଦ୍ୱାରା ତାହାକୁ ସ୍ୱାୟତ୍ତ କରାଯାଏ ।

**ସୁବୋଧିନୀ ଟୀକା**— ତଦୁକ୍ତଂ ଚଞ୍ଚଳତ୍ୱାଦିକମଙ୍ଗୀକୃତ୍ୟୈବ ମନୋନିଗ୍ରହୋପାୟଂ ଶ୍ରୀ ଭଗବାନୁବାଚ—ଅସଂଶୟମିତି । ଚଞ୍ଚଳତ୍ୱାଦିନା ମନୋ-ନିରୋଦ୍ଧୁମଶକ୍ୟମିତି ଯଦ୍‌ବଦସି ଏତନ୍ନିଃସଂଶୟମେବ । ତଥାପି ତ୍ୱଭ୍ୟାସେନ ପରମାତ୍ମାକାରତଯ୍ୟାବୃତ୍ତ୍ୟା ବିଷୟ ବୈତୃଷ୍ଣ୍ୟେନ ଚ ଗୃହ୍ୟତେ । ଅଭ୍ୟାସେନ ଲୟ ପ୍ରତିବନ୍ଧାଦ୍‌ବୈରାଗ୍ୟେଣ ଚ ବିକ୍ଷେପପ୍ରତିବନ୍ଧାଦୁପରତବୃତ୍ତିକଂ ସତ୍ ପରମାତ୍ମାକାରେଣ ପରିଣତଂ ତିଷ୍ଠତୀତ୍ୟର୍ଥଃ । ତଦୁକ୍ତଂ ଯୋଗଶାସ୍ତ୍ରେ—ମନସୋ ବୃତ୍ତିଶୂନ୍ୟସ୍ୟ ବ୍ରହ୍ମାକାରତୟା ସ୍ଥିତିଃ, ଯାସଂପ୍ରଜ୍ଞାତନାମାଽସୌ ସମାଧିରଭିଧୀୟତେ ।

**ବିବୃତି**—ପ୍ରଥମେ ଯେଉଁ ବିଷୟ କଠିନ ବୋଧହୁଏ, ଅଭ୍ୟାସ ଓ ଉଦ୍‌ଯୋଗଦ୍ୱାରା ତାହା ସିଦ୍ଧ ହୋଇଯାଏ । ଅଭ୍ୟାସଦ୍ୱାରାହିଁ ସ୍ୱଭାବ ଗଠିତ ହୁଏ । କୌଣସି କାର୍ଯ୍ୟ ବାରଂବାର କରିବାକୁ ଅଭ୍ୟାସ ବୋଲିଯାଏ । ଯେ କୌଣସି ବିଷୟରେ ଅନୁରାଗ ଓ ପ୍ରୀତି ନ ରଖିବା ହିଁ ବୈରାଗ୍ୟ । ପାତଞ୍ଜଳ ଯୋଗ ସୂତ୍ରର ପ୍ରଥମସୂତ୍ର 'ଯୋଗଶ୍ଚିତ୍ତବୃତ୍ତିନିରୋଧଃ' ପରବର୍ତ୍ତୀ ସୂତ୍ର—'ଅଭ୍ୟାସ ବୈରାଗ୍ୟାଭ୍ୟାଂ ତନ୍ନିରୋଧଃ'—ଏ ଅଧ୍ୟାୟର ୨୦ଶ ଶ୍ଳୋକରେ ପ୍ରଥମସୂତ୍ରଟି ପ୍ରତି ଏବଂ ଏ ଶ୍ଳୋକରେ ଦ୍ୱିତୀୟ ସୂତ୍ର ପ୍ରତି ଲକ୍ଷ୍ୟ କରାଯାଇଅଛି । ମାତ୍ର ଏଠାରେ ଭଗବାନ୍ ପାତଞ୍ଜଳ ଯୋଗ ପ୍ରତି ଦୃଷ୍ଟି ନ ଦେଇ, ସାଧାରଣ ଭାବରେ କହୁଛନ୍ତି—ନିରନ୍ତର ଯତ୍ନ ବା ଅଭ୍ୟାସ ଦ୍ୱାରା ଏବଂ ବିଷୟରେ ଅନାସକ୍ତି ଦ୍ୱାରା ହିଁ ମନକୁ ନିରୋଧ କରାଯାଏ ।

ଅସଂଯତାତ୍ମନା ଯୋଗୋ ଦୁଷ୍ପ୍ରାପ ଇତି ମେ ମତିଃ ।
ବଶ୍ୟାତ୍ମନା ତୁ ଯତତା ଶକ୍ୟୋଽବାପ୍ତୁମୁପାୟତଃ ॥ ୩୬ ॥

ଅର୍ଜ୍ଜୁନ ଉବାଚ

ଅଯତିଃଶ୍ରଦ୍ଧୟୋପେତୋ ଯୋଗାଚ୍ଚଳିତମାନସଃ ;
ଅପ୍ରାପ୍ୟ ଯୋଗସଂସିଦ୍ଧିଂ କାଂ ଗତିଂ କୃଷ୍ଣ ଗଚ୍ଛତି ॥ ୩୭ ॥

୩୬ । **ଅନ୍ୱୟଦୀପିକା**—ଅସଂଯତାତ୍ମନା (ଅସଂଯତଚିତ୍ତ ବ୍ୟକ୍ତିଦ୍ୱାରା) ଯୋଗଃ (ଯୋଗ) ଦୁଷ୍ପ୍ରାପଃ (ଦୁଷ୍ପ୍ରାପ୍ୟ) ଇତି ମେ ମତିଃ (ଏହା ଆମ୍ଭର ମତ) । ତୁ (କିନ୍ତୁ) ଯତତା (ଯତ୍ନ କରୁଥିବା) ବଶ୍ୟାତ୍ମନା (ସଂଯତଚିତ୍ତ ବ୍ୟକ୍ତିଦ୍ୱାରା) [ଯୋଗଃ] ଉପାୟତଃ (ସଦୁପାୟ ଦ୍ୱାରା) ଅବାପ୍ତୁଂ ଶକ୍ୟଃ (ଲାଭ କରାଯାଇପାରେ) ।

**ଅନୁବାଦ**—ଆମ୍ଭ ମତରେ ଯାହାର ଅନ୍ତଃକରଣ ବଶୀଭୂତ ନୁହେଁ, ତା ପକ୍ଷରେ ଯୋଗପ୍ରାପ୍ତି କଠିନ, କିନ୍ତୁ ଅନ୍ତଃକରଣକୁ ବଶୀଭୂତ କରି ପ୍ରଯତ୍ନ କଲେ ଉପାୟ ଦ୍ୱାରା ଯୋଗପ୍ରାପ୍ତି ସମ୍ଭବ ।

**ସୁବୋଧିନୀ ଟୀକା**—ଏତାବାଂସ୍ତ୍ୱହି ନିଶ୍ଚୟ ଇତ୍ୟାହ—ଅସଂଯତେତି । ଉକ୍ତପ୍ରକାରେଣାଭ୍ୟାସବୈରାଗ୍ୟାଭ୍ୟାମସଂଯତ ଆତ୍ମା ଚିତ୍ତଂ ଯସ୍ୟ ତେନ ଯୋଗୋ ଦୁଷ୍ପ୍ରାପଃ ପ୍ରାପ୍ତୁମଶକ୍ୟଃ । ଅଭ୍ୟାସବୈରାଗ୍ୟାଭ୍ୟାଂ ବଶ୍ୟେ ବଶବର୍ତ୍ତୀ ଆତ୍ମା ଚିତ୍ତଂ ଯସ୍ୟ ତେନ ପୁରୁଷେଣ ପୁନସ୍ତାନେନୈବୋପାୟେନ ପ୍ରଯତ୍ନଂ କୁର୍ବତା ଯୋଗଃ ପ୍ରାପ୍ତୁଂ ଶକ୍ୟଃ ।

**ବିବୃତି**—ଯେଉଁ ଲୋକ ଅଭ୍ୟାସ ଓ ବୈରାଗ୍ୟ ଦ୍ୱାରା ଅନ୍ତଃକରଣ ବା ଚିତ୍ତବୃତ୍ତି ନିଚୟକୁ ସଂଯତ କରିନାହାନ୍ତି, ତାଙ୍କ ପକ୍ଷରେ ଯୋଗସିଦ୍ଧି ଅସମ୍ଭବ । ଅଦୃଷ୍ଟ ଉପରେ ନିର୍ଭର ନ କରି ଏ ବିଷୟରେ ଯତ୍ନ ବା କୌଶଳ ପ୍ରୟୋଗ କଲେ ପୁରୁଷାର୍ଥ ଦ୍ୱାରା ଯୋଗସିଦ୍ଧି ହୋଇପାରେ—ଏଥିପାଇଁ ଭଗବାନ୍ ଏ ଶ୍ଳୋକରେ 'ଉପାୟତଃ' ଶବ୍ଦ ପ୍ରୟୋଗ କରିଅଛନ୍ତି ।

୩୭ । **ଅନ୍ୱୟଦୀପିକା**—ଅର୍ଜ୍ଜୁନଃ ଉବାଚ ( ଅର୍ଜ୍ଜୁନ କହିଲେ ) କୃଷ୍ଣ (ହେ କୃଷ୍ଣ) ଶ୍ରଦ୍ଧୟା ଉପେତଃ (ଶ୍ରଦ୍ଧାପୂର୍ବକ ଯୋଗସାଧନରେ ପ୍ରବୃତ୍ତ) ଅଯତିଃ (ଯତ୍ନହୀନ ବ୍ୟକ୍ତି) ଯୋଗାତ୍ ଚଳିତମାନସଃ (ଯୋଗରୁ ଭ୍ରଷ୍ଟଚିତ୍ତ ହୋଇ) ଯୋଗସଂସିଦ୍ଧିମ୍ (ଯୋଗସିଦ୍ଧି) ଅପ୍ରାପ୍ୟ (ଲାଭକରି) କାଂ ଗତିଂ (କି ପ୍ରକାର ଗତି) ଗଚ୍ଛତି (ପ୍ରାପ୍ତ ହୁଅନ୍ତି) ।

**ଅନୁବାଦ**—ହେ କୃଷ୍ଣ, ଯେ ପ୍ରଥମେ ଶ୍ରଦ୍ଧା ସହିତ ଯୋଗାଭ୍ୟାସରେ ପ୍ରବୃତ୍ତ ହୋଇ ଯତ୍ନର ଶିଥିଳତାବଶତଃ ତହିଁରୁ ଭ୍ରଷ୍ଟଚିତ୍ତ ହୋଇ ସିଦ୍ଧି ଲାଭ କରି ନ ପାରନ୍ତି, ସେ କିପରି ଗତି ପ୍ରାପ୍ତ ହୁଅନ୍ତି ?

କଚ୍ଚିନ୍ନୋଭୟବିଭ୍ରଷ୍ଟଶ୍ଛିନ୍ନାଭ୍ରମିବ ନଶ୍ୟତି ।
ଅପ୍ରତିଷ୍ଠୋ ମହାବାହୋ ବିମୂଢ଼ୋ ବ୍ରହ୍ମଣଃ ପଥି । ୩୮ ।

**ସୁବୋଧିନୀ ଟୀକା**—ଅଭ୍ୟାସବୈରାଗ୍ୟାଭ୍ୟାଂ ବିନାକୃତୋ ଯୋଗଃ ନ ପ୍ରାପ୍ତ-ସମ୍ୟଗ୍‌ଜ୍ଞାନଃ କାଂ ଫଳଂ ପ୍ରାପ୍ନୋତୀତି ଅର୍ଜୁନ ଉବାଚ—ଅଯତିରିତି । ପ୍ରଥମଂ ଶ୍ରଦ୍ଧୟୋପେତ ଏବ ଯୋଗେ ପ୍ରବୃତ୍ତଃ ନ ତୁ ମିଥ୍ୟାଚାରତୟା । ତତଃ ପରଂ ତୁ ଯତିଃ ସମ୍ୟଙ୍‌ନ ଯତତେ । ଶିଥିଳାଭ୍ୟାସ ଇତ୍ୟର୍ଥଃ, ତଥା ଯୋଗାଚ୍ଚଳିତଂ ମାନସଂ ବିଷୟପ୍ରବଣଂ ଚିତ୍ତଂ ଯସ୍ୟ । ମନ୍ଦବୈରାଗ୍ୟ ଇତ୍ୟର୍ଥଃ । ଏବମଭ୍ୟାସ-ବୈରାଗ୍ୟଶୈଥିଲ୍ୟାଦ୍‌ଯୋଗସ୍ୟ ସଂସିଦ୍ଧିଂ ଫଳଂ ଜ୍ଞାନମପ୍ରାପ୍ୟ କାଂ ଗତିଂ ପ୍ରାପ୍ନୋତି ।

୩୮ । **ଅନ୍ୱୟଦୀପିକା**—[ହେ] ମହାବାହୋ, ବ୍ରହ୍ମଣଃ ପଥି (ବ୍ରହ୍ମ-ପ୍ରାପ୍ତି ମାର୍ଗରେ) ବିମୂଢ଼ଃ (ବିକ୍ଷିପ୍ତ) ଅପ୍ରତିଷ୍ଠଃ (ନିରାଶ୍ରୟ) ଉଭୟବିଭ୍ରଷ୍ଟଃ (ଉଭୟପଥରୁ ଭ୍ରଷ୍ଟହୋଇ) [ସେ ବ୍ୟକ୍ତି] ଛିନ୍ନାଭ୍ରମ୍ ଇବ (ଛିନ୍ନଭିନ୍ନ ମେଘଖଣ୍ଡ ପରି) କଚ୍ଚିତ୍ (କଅଣ) ନ ନଶ୍ୟତି (ବିନଷ୍ଟ ହୁଅନ୍ତି ନାହିଁ) ?

**ଅନୁବାଦ**—ହେ ମହାବାହୋ, ବ୍ରହ୍ମପ୍ରାପ୍ତିର ଉପାୟ ସ୍ୱରୂପ ଯୋଗମାର୍ଗରୁ ଭ୍ରଷ୍ଟ ହେବାରୁ ସେ ମୋକ୍ଷ ଲାଭରୁ ବଞ୍ଚିତ ହୁଅନ୍ତି ଏବଂ କାମ୍ୟକର୍ମ ଯୋଗହେତୁରୁ ସ୍ୱର୍ଗପ୍ରାପ୍ତିରୁ ମଧ୍ୟ ବଞ୍ଚିତ ହୁଅନ୍ତି । ଏହିପରି ଦୁଇଆଡ଼ୁ ବଞ୍ଚିତ ହୋଇ ଛିନ୍ନଭିନ୍ନ ମେଘଖଣ୍ଡ ପରି ସେ କଅଣ ମଝିରେ ବିଲୀନ ହୋଇ ଯାଆନ୍ତି ?

**ସୁବୋଧିନୀ ଟୀକା**—ପ୍ରଶ୍ନାଭିପ୍ରାୟଂ ବିବୃଣୋତି—କଚ୍ଚିଦିତି । କର୍ମଣା-ମୀଶ୍ୱରେଽର୍ପିତତ୍ୱାଦନନୁଷ୍ଠାନାଚ୍ଚ ତାବତ୍ କର୍ମଫଳଂ ସ୍ୱର୍ଗାଦିକଂ ନ ପ୍ରାପ୍ନୋତି । ଯୋଗାନିଷ୍ପତ୍ତେଶ୍ଚ ମୋକ୍ଷଂ ନ ପ୍ରାପ୍ନୋତି । ଏବମୁଭୟସ୍ମାଦ୍‌ଭ୍ରଷ୍ଟୋଽପ୍ରତିଷ୍ଠୋ ନିରାଶ୍ରୟଃ । ଅତ ଏବ ବ୍ରହ୍ମଣଃ ପ୍ରାପ୍ତ୍ୟୁପାୟେ ପଥିମାର୍ଗେ ବିମୂଢ଼ଃ ସନ୍ କଚ୍ଚିତ୍ କିଂ ନଶ୍ୟତି ? କିଂ ବା ନ ନଶ୍ୟତୀତ୍ୟର୍ଥଃ । ନାଶେ ଦୃଷ୍ଟାନ୍ତଃ—ଯଥା ଛିନ୍ନମଭ୍ରଂ ପୂର୍ବସ୍ମାଦଭ୍ରାଦ୍‌ବିଶ୍ଳିଷ୍ଟମଭ୍ରାନ୍ତରଂ ଚାପ୍ରାପ୍ତଂ ସନ୍ମଧ୍ୟ ଏବ ବିଲୀୟତେ ତଦ୍-ବଦିତ୍ୟର୍ଥଃ ।

**ବିବୃତି**—'ଛିନ୍ନାଭ୍ରମିବ ନଶ୍ୟତି'—ଏହାର ଅର୍ଥ ମେଘଖଣ୍ଡ ଯେପରି ସ୍ଥୂଳ ମେଘରୁ ବିଚ୍ୟୁତ ହୋଇ ଅନ୍ୟ ମେଘ ନ ପାଇଲେ ମଝିରେ ମିଳେଇ ଯାଏ, ଅର୍ଥାତ୍ 'ଅତୋଭ୍ରଷ୍ଟ ସ୍ତତୋ ଭ୍ରଷ୍ଟଃ' ହୋଇଯାଏ, ସେହିପରି କଅଣ ସେ ନଷ୍ଟ ହୋଇଯାଏ ?

କର୍ମ ଦୁଇ ପ୍ରକାର—କାମ୍ୟ ବୁଦ୍ଧିରେ ଶାସ୍ତ୍ରବିଧି ଅନୁସାରେ ଯାହା କରାଯାଏ ତଦ୍ୱାରା ସ୍ୱର୍ଗପ୍ରାପ୍ତି ହୁଏ । ନିଷ୍କାମ ବୁଦ୍ଧିରେ ଯେଉଁ କର୍ମ କରାଯାଏ ତାହା ବନ୍ଧକ ନ ହୋଇ ମୋକ୍ଷପ୍ରଦ ହୁଏ । ମାତ୍ର ଯେଉଁ ବ୍ୟକ୍ତି ଯତ୍ନର ଶିଥିଳତା

ଏତନ୍ମେ ସଂଶୟଂ କୃଷ୍ଣଚ୍ଛେତ୍ତୁମର୍ହସ୍ୟଶେଷତଃ
ତ୍ୱଦନ୍ୟଃ ସଂଶୟସ୍ୟାସ୍ୟଚ୍ଛେତ୍ତା ନ ହ୍ୟୁପପଦ୍ୟତେ । ୩୯ ।

ଶ୍ରୀଭଗବାନୁବାଚ

ପାର୍ଥ ନୈବେହ ନାମୁତ୍ର ବିନାଶସ୍ତସ୍ୟ ବିଦ୍ୟତେ ।
ନ ହି କଲ୍ୟାଣକୃତ୍ କଶ୍ଚିଦ୍ଦୁର୍ଗତିଂ ତାତ ଗଚ୍ଛତି । ୪୦ ।

ହେତୁରୁ ଯୋଗଭ୍ରଷ୍ଟ ହୁଏ ତାହାର କାମନା ନ ଥିବାରୁ ସେ ସ୍ୱର୍ଗଲାଭ କରିପାରେ ନାହିଁ । ଏପରି ଅବସ୍ଥାରେ ତାହାର ଗତି କଅଣ ହୁଏ ଏହାହିଁ ପ୍ରଶ୍ନର ଉଦ୍ଦେଶ୍ୟ ।

**୩୯ । ଅନ୍ୱୟଦୀପିକା**—ହେ କୃଷ୍ଣ, ମେ (ମୋର) ଏତତ୍ ସଂଶୟଂ (ଏହି ସଂଶୟକୁ) ଅଶେଷତଃ (ନିଃଶେଷ ରୂପେ) ଛେତ୍ତୁମ୍ ଅର୍ହସି (ଛେଦନ କରିବାକୁ ତୁମ୍ଭେହିଁ ସମର୍ଥ ), ହି (ଯେହେତୁ) ତ୍ୱଦନ୍ୟଃ ( ତୁମ ବ୍ୟତୀତ ) ଅସ୍ୟ (ଏହି) ସଂଶୟସ୍ୟ (ସନ୍ଦେହର) ଛେତ୍ତା (ନିବର୍ତ୍ତକ) ନ ଉପପଦ୍ୟତେ (ମିଳିବେ ନାହିଁ) ।

**ଅନୁବାଦ**—ହେ କୃଷ୍ଣ, ମୋର ଏହି ସନ୍ଦେହ ତୁମେ ଉତ୍ତମ ରୂପେ ଛେଦନ କରିଦିଅ । କାରଣ ତୁମ ଛଡ଼ା ଅନ୍ୟ କେହି ମୋର ଏହି ସନ୍ଦେହ ଦୂର କରି ପାରିବେ ନାହିଁ ।

**ସୁବୋଧିନୀ ଟୀକା**—ତ୍ୱମ୍ଯେବ ସର୍ବଜ୍ଞେନାୟଂ ମମ ସନ୍ଦେହୋ ନିରସନୀୟଃ । ତ୍ୱତ୍ତୋଽନ୍ୟସ୍ତ୍ୱେତତ୍ସନ୍ଦେହନିବର୍ତ୍ତକୋ ନାସ୍ତୀତ୍ୟାହ—ଏତଦିତି । ଏତଦେନଂ, ଛେତ୍ତା ନିବର୍ତ୍ତକଃ, ସ୍ପଷ୍ଟମନ୍ୟତ୍ ।

**୪୦ । ଅନ୍ୱୟଦୀପିକା**—ଶ୍ରୀଭଗବାନ୍ ଉବାଚ ( ଶ୍ରୀ ଭଗବାନ୍ କହିଲେ), ପାର୍ଥ (ହେ ଅର୍ଜୁନ), ତସ୍ୟ (ତାହାଙ୍କର), ଇହ ଏବ (ଇହଲୋକରେ) ବିନାଶଃ ନ ବିଦ୍ୟତେ (ବିନାଶ ନାହିଁ), ଅମୁତ୍ର (ପରଲୋକରେ ମଧ୍ୟ) ନ (ବିନାଶ ନାହିଁ); ତାତ (ହେ ବତ୍ସ) କଲ୍ୟାଣକୃତ୍ (ଶୁଭାନୁଷ୍ଠାନକାରୀ) କଶ୍ଚିତ୍ (ଯେ କୌଣସି ଲୋକ) ଦୁର୍ଗତିଂ ନ ଗଚ୍ଛତି (ଦୁର୍ଗତି ପ୍ରାପ୍ତ ହୁଅନ୍ତି ନାହିଁ) ।

**ଅନୁବାଦ**—ଶ୍ରୀଭଗବାନ୍ କହିଲେ, ହେ ପାର୍ଥ, ଯୋଗଭ୍ରଷ୍ଟ ବ୍ୟକ୍ତିର ଇହଲୋକରେ ବା ପରଲୋକରେ କୌଣସିଠାରେ ବି ବିନାଶ ନାହିଁ; କାରଣ ହେ ବତ୍ସ ! କଲ୍ୟାଣକର କର୍ମଅନୁଷ୍ଠାନକାରୀ କେତେବେଳେ ହେଲେ ଦୁର୍ଗତି ପ୍ରାପ୍ତ ହୁଅନ୍ତି ନାହିଁ ।

**ସୁବୋଧିନୀ ଟୀକା**—ଅତ୍ରୋତ୍ତରଂ ଶ୍ରୀ ଭଗବାନ୍ ଉବାଚ ପାର୍ଥେତି ସାର୍ଦ୍ଧୈସ୍ତ୍ରିଭିଃ । ଇହଲୋକେ ନାଶ ଉଭୟଭ୍ରଂଶାତ୍ ପାତିତ୍ୟମ୍ । ଅମୁତ୍ର ପରଲୋକେ ନାଶୋ ନରକପ୍ରାପ୍ତିଃ । ତଦୁଭୟଂ ତସ୍ୟ ନାସ୍ତ୍ୟେବ । ଯତଃ କଲ୍ୟାଣକୃଚ୍ଛୁଭକାରୀ କଶ୍ଚିଦପି ଦୁର୍ଗତିଂ ନ ଗଚ୍ଛତି । ଅୟଂ ଚ ଶୁଭକାରୀ ଶ୍ରଦ୍ଧୟା ଯୋଗେ ପ୍ରବୃତ୍ତତ୍ୱାତ୍ । ତାତେତି ଲୋକରୀତ୍ୟୋପଲାଳୟନ୍ ସଂବୋଧୟତି ।

ପ୍ରାପ୍ୟ ପୁଣ୍ୟକୃତାଂ ଲୋକାନୁଷିତ୍ୱା ଶାଶ୍ୱତୀଃ ସମାଃ ।
ଶୁଚୀନାଂ ଶ୍ରୀମତାଂ ଗେହେ ଯୋଗଭ୍ରଷ୍ଟୋଽଭିଜାୟତେ । ୪୧ ।
ଅଥବା ଯୋଗିନାମେବ କୁଲେ ଭବତି ଧୀମତାମ୍,
ଏତଦ୍ଧି ଦୁର୍ଲଭତରଂ ଲୋକେ ଜନ୍ମ ଯଦୀଦୃଶମ୍ । ୪୨ ।

**୪୧ । ଅନ୍ୱୟ୍‌ଦୀପିକା**—ଯୋଗଭ୍ରଷ୍ଟଃ (ଯେଉଁ ଲୋକ ଯୋଗପଥରେ ସିଦ୍ଧିଲାଭ ନ କରି ସ୍ଖଳିତ ହୋଇ ଥାଆନ୍ତି) ପୁଣ୍ୟକୃତାଂ (ପୁଣ୍ୟାତ୍ମାମାନଙ୍କର) ଲୋକାନ୍ ପ୍ରାପ୍ୟ (ଲୋକ ଲାଭ କରି), [ସେଠାରେ] ଶାଶ୍ୱତୀଃ ସମାଃ (ବହୁକାଳ-ଯାଏ) ଉଷିତ୍ୱା (ବାସକରି) ଶୁଚୀନାଂ (ସଦାଚାରସମ୍ପନ୍ନ) ଶ୍ରୀମତାଂ (ଧନବାନ୍ ଲୋକଙ୍କ) ଗେହେ (ଗୃହରେ) ଅଭିଜାୟତେ (ଜନ୍ମଗ୍ରହଣ କରନ୍ତି) ।

**ଅନୁବାଦ**—ଯୋଗଭ୍ରଷ୍ଟ ପୁରୁଷ, ପୁଣ୍ୟକର୍ମକାରୀମାନେ ଯେଉଁ ଲୋକ ପାଆନ୍ତି ସେ ଲୋକରେ ବହୁବର୍ଷ ବାସକରି ପରେ ସଦାଚାରସମ୍ପନ୍ନ ଧନୀ ଲୋକଙ୍କ ଗୃହରେ ଜନ୍ମଗ୍ରହଣ କରନ୍ତି ।

**ସୁବୋଧିନୀ ଟୀକା**—ତର୍ହି କମସୌ ପ୍ରାପ୍ନୋତ୍ୟପେକ୍ଷାୟାମାହ— ପ୍ରାପ୍ୟେତି । ପୁଣ୍ୟକାରିଣାମଶ୍ୱମେଧାଦିଯାଜିନାଂ ଲୋକାନ୍ ପ୍ରାପ୍ୟ ତତ୍ର ଶାଶ୍ୱତୀଃ ସମା ବହ୍ୱୀନ୍ ସମ୍ୱତ୍ସରାନୁଷିତ୍ୱା ବାସସୁଖମନୁଭୂୟ ଶୁଚୀନାଂ ସଦାଚାରିଣାମ୍ । ଶ୍ରୀମତାଂ ଧନିନାଂ ଗେହେ ସ ଯୋଗଭ୍ରଷ୍ଟୋଽଭିଜାୟତେ ଜନ୍ମ ପ୍ରାପ୍ନୋତି ।

**ବିବୃତି**—ଯେଉଁ ଲୋକଙ୍କର ଯୋଗସିଦ୍ଧି ହେବା ପୂର୍ବରୁ ମୃତ୍ୟୁ ହୁଏ ତାଙ୍କର ପୁନର୍ଜନ୍ମ ନିବାରିତ ହୁଏ ନାହିଁ ସତ୍ୟ, ମାତ୍ର ସାଧୁ ଚେଷ୍ଟାର ଫଳରୂପେ ସେ ଅନ୍ୟ ପ୍ରକାର ଶୁଭଫଳ ଭୋଗ କରନ୍ତି । ପୁଣ୍ୟକର୍ମ କରୁଥିବା ଲୋକମାନେ ସାଧାରଣତଃ ସ୍ୱର୍ଗଲୋକ, ପିତୃଲୋକ ପ୍ରଭୃତି ପ୍ରାପ୍ତ ହୁଅନ୍ତି । ଯୋଗଭ୍ରଷ୍ଟ ବ୍ୟକ୍ତି ସେ ସବୁ ଲୋକରେ ବହୁ ବର୍ଷ ଯାଏ ବାସକରି ପରେ ସଦାଚାରସମ୍ପନ୍ନ ଧନୀ ଲୋକଙ୍କ ଗୃହରେ ଜନ୍ମଲାଭ କରନ୍ତି, ମୃତ୍ୟୁ ସମୟରୁ ଭୋଗସ୍ପୃହା ସମ୍ପୂର୍ଣ୍ଣ ଯାଇ ନ ଥିବାରୁ ତାଙ୍କର ଧନୀଲୋକ ଗୃହରେ ଜନ୍ମ ହେବା ସ୍ୱାଭାବିକ (ଗୀତା ୮ମ ଅଧ୍ୟାୟର ୬ଷ୍ଠ ଶ୍ଳୋକ ଦେଖ) ।

**୪୨ । ଅନ୍ୱୟ୍‌ଦୀପିକା**—ଅଥବା (କିଂବା) ଧୀମତାଂ (ବୁଦ୍ଧିମାନ୍ ଜ୍ଞାନବନ୍ତ) ଯୋଗିନାମ୍ ଏବ କୁଲେ (ଯୋଗୀଙ୍କ ବଂଶରେ) ଭବତି (ଜନ୍ମଗ୍ରହଣ କରନ୍ତି), ଈଦୃଶଂ (ଏପରି) ଯତ୍ ଜନ୍ମ (ଯେଉଁ ଜନ୍ମ) ଲୋକେ (ଜଗତରେ) ଏତତ୍ ହି (ଏହାହିଁ) ଦୁର୍ଲଭତରମ୍ (ଅତି ଦୁର୍ଲଭ) ।

**ଅନୁବାଦ**—ଅନ୍ୟ ପକ୍ଷରେ (ମୃତ୍ୟୁ ପୂର୍ବରୁ ଯେଉଁ ଯୋଗଭ୍ରଷ୍ଟ ଯୋଗୀଙ୍କର ବୈରାଗ୍ୟ ଓ ମୋକ୍ଷର ଇଚ୍ଛା ପ୍ରବଳ ଥାଏ ) ଯୋଗଭ୍ରଷ୍ଟ ବ୍ୟକ୍ତି

ତତ୍ର ତଂ ବୁଦ୍ଧିସଂଯୋଗଂ ଲଭତେ ପୌର୍ବଦେହିକମ୍ ।
ଯତତେ ଚ ତତୋ ଭୂୟଃ ସଂସିଦ୍ଧୌ କୁରୁନନ୍ଦନ । ୪୩ ।
ପୂର୍ବାଭ୍ୟାସେନ ତେନୈବ ହ୍ରିୟତେ ହ୍ୟବଶୋଽପି ସଃ ।
ଜିଜ୍ଞାସୁରପି ଯୋଗସ୍ୟ ଶବ୍ଦବ୍ରହ୍ମାତିବର୍ତ୍ତତେ । ୪୪ ।

ଜ୍ଞାନବନ୍ତ ଯୋଗୀମାନଙ୍କ ବଂଶରେ ଜନ୍ମଗ୍ରହଣ କରନ୍ତି । ଜଗତରେ ଏପରି ଜନ୍ମଲାଭ ଅତି ଦୁର୍ଲ୍ଲଭ ।

**ସୁବୋଧିନୀ ଟୀକା**—ଅଳ୍ପକାଳାଭ୍ୟସ୍ତଯୋଗଭ୍ରଂଶେ ଗତିରୁକ୍ତା । ଚିରାଭ୍ୟସ୍ତ ଯୋଗଭ୍ରଂଶେ ତୁ ପକ୍ଷାନ୍ତରମାହ—ଅଥବେତି । ଯୋଗନିଷ୍ଠାନାଂ ଧୀମତାଂ ଜ୍ଞାନିନାମେବ କୁଳେ ଜାୟତେ, ନ ତୁ ପୂର୍ବୋକ୍ତାନାମନାରୂଢ଼ଯୋଗାନାଂ କୁଳେ । ଏତଜ୍ଜନ୍ମସ୍ତୌତି—ଈଦୃଶଂ ଯଜ୍ଜନ୍ମ—ଏତଦ୍ଧି ଲୋକେ ଦୁର୍ଲ୍ଲଭତରଂ । ମୋକ୍ଷହେତୁତ୍ୱାତ୍ ।

**୪୩ । ଅନ୍ୱୟଦୀପିକା**—[ହେ] କୁରୁନନ୍ଦନ ! [ସେହି ଯୋଗଭ୍ରଷ୍ଟ ସାଧକ] ତତ୍ର (ସେ ଜନ୍ମରେ) ପୌର୍ବଦେହିକଂ (ପୂର୍ବ ଦେହ ଜାତ) ତଂ ବୁଦ୍ଧିସଂଯୋଗଂ (ସେହି ମୋକ୍ଷ ବିଷୟକ ବୁଦ୍ଧି) ଲଭତେ (ଲାଭ କରନ୍ତି); ତତଃ ଚ (ତତ୍ପରେ) ଭୂୟଃ (ପୁନର୍ବାର) ସଂସିଦ୍ଧୌ (ମୁକ୍ତି ପାଇଁ) ଯତତେ (ଯତ୍ନ କରନ୍ତି) ।

**ଅନୁବାଦ**—ହେ କୁରୁନନ୍ଦନ ! ଯୋଗଭ୍ରଷ୍ଟ ପୁରୁଷ ସେ ଜନ୍ମରେ ପୂର୍ବଜନ୍ମର ବୁଦ୍ଧି ସଂସ୍କାର ଲାଭ କରନ୍ତି ଏବଂ ମୋକ୍ଷଲାଭ ପାଇଁ ପୁନର୍ବାର ଯତ୍ନ କରନ୍ତି ।

**ସୁବୋଧିନୀ ଟୀକା**—ତତଃ କିମ୍ ? ଅତ ଆହ—ତତ୍ରେତି ସାର୍ଦ୍ଧେନ । ସ ତତ୍ର ଦ୍ୱିପ୍ରକାରେଽପି ଜନ୍ମନି ପୂର୍ବଦେହେ ଭବଂ ପୌର୍ବଦେହିକଂ । ତମେବ ବ୍ରହ୍ମ ବିଷୟୟା ବୁଦ୍ଧ୍ୟା ସଂଯୋଗଂ ଲଭତେ । ତତଶ୍ଚ ଭୂୟୋଽଧିକଂ ସଂସିଦ୍ଧୌ ମୋକ୍ଷେ ପ୍ରଯତ୍ନଂ କରୋତି ।

**୪୪ । ଅନ୍ୱୟଦୀପିକା**—ସଃ (ସେ) ତେନ ଏବ ପୂର୍ବାଭ୍ୟାସେନ (ସେହି ପୂର୍ବାଭ୍ୟାସବଶତଃ) ଅବଶଃ ଅପି (ଅବଶ ହୋଇ) ହ୍ରିୟତେ (ଆକୃଷ୍ଟ ହୁଅନ୍ତି) । ଯୋଗସ୍ୟ ଜିଜ୍ଞାସୁଃ ଅପି (କର୍ମ ଯୋଗର ସ୍ୱରୂପ ଜାଣିବାକୁ ଇଚ୍ଛା କରୁଥିବା ବ୍ୟକ୍ତି ମଧ୍ୟ) ଶବ୍ଦବ୍ରହ୍ମ (ବେଦକୁ) ଅତିକ୍ରମ କରନ୍ତି ।

**ଅନୁବାଦ**—ସେ ଅବଶ ହୋଇ ପୂର୍ବ ଜନ୍ମର ସଂସ୍କାରବଶତଃ ଯୋଗ ମାର୍ଗରେ ଆକୃଷ୍ଟ ହୁଅନ୍ତି । ଯାହାଙ୍କର କର୍ମଯୋଗର ସ୍ୱରୂପ ଜାଣିବାର ଇଚ୍ଛା ଜାତ ହୋଇଥାଏ, ସେ ମଧ୍ୟ ବେଦକୁ ଅର୍ଥାତ୍ ବେଦୋକ୍ତ କାମ୍ୟକର୍ମର ଫଳକୁ ଅତିକ୍ରମ କରିଯାଆନ୍ତି । (ଏପରି ଅବସ୍ଥାରେ ଯେ ଯୋଗର ସ୍ୱରୂପ ଜାଣି ତାହାର ଅଭ୍ୟାସ କରନ୍ତି ତାଙ୍କ ସମ୍ବନ୍ଧରେ ଆଉ କୌଣସି କଥା ନ ଥାଏ) ।

**ସୁବୋଧିନୀ ଟୀକା**—ତତ୍ର ହେତୁଃ—ପୂର୍ବେତି । ତେନୈବ ପୂର୍ବଦେହକୃତାଭ୍ୟାସେନାବଶୋଽପି କୁତଶ୍ଚିଦନ୍ତରାୟାଦନିଚ୍ଛନ୍ନପି ହ୍ରିୟତେ ବିଷୟେଭ୍ୟଃ ପରାବୃତ୍ୟ ବ୍ରହ୍ମନିଷ୍ଠଃ କ୍ରିୟତେ । ତଦେବଂ ପୂର୍ବାଭ୍ୟାସବଶେନ ପ୍ରଯତ୍ନଂ କୁର୍ବନ୍ ଶନୈର୍ମୁଚ୍ୟତ ଇତ୍ୟମର୍ଥଂ କୈମୁତ୍ୟନ୍ୟାୟେନ ସ୍ଫୁଟୟତି—ଜିଜ୍ଞାସୁରପିସାର୍ଦ୍ଧେନ । ଯୋଗସ୍ୟ ସ୍ୱରୂପଂ ଜିଜ୍ଞାସୁରେବ କେବଳମ୍ । ନ ତୁ ପ୍ରାପ୍ତଯୋଗଃ । ଏବଂଭୂତୋଽଯୋଗେ ପ୍ରବୃତ୍ତମାତ୍ରୋଽପି ପାପବଶାଦ୍‌ଯୋଗଭ୍ରଷ୍ଟୋଽପି ଶବ୍ଦବ୍ରହ୍ମ ବେଦମତିବର୍ତ୍ତତେ । ବେଦୋକ୍ତ କର୍ମଫଳାନ୍ୟତିକ୍ରାମତି । ତେଭ୍ୟୋଽଧିକଂ ଫଳଂ ପ୍ରାପ୍ୟ ମୁଚ୍ୟତ ଇତ୍ୟର୍ଥଃ ।

**ବିବୃତି**—ପୂର୍ବୋକ୍ତ ଶ୍ଳୋକମାନଙ୍କରେ ଯେଉଁ ଯୋଗ, ଯୋଗଭ୍ରଷ୍ଟ ଓ ଯୋଗୀଶବ୍ଦମାନ ବ୍ୟବହୃତ ହୋଇଅଛି ସେ ସବୁ କର୍ମଯୋଗ, କର୍ମଯୋଗରୁ ଭ୍ରଷ୍ଟ ଏବଂ କର୍ମଯୋଗୀ ଅର୍ଥରେ ହିଁ ପ୍ରଯୁକ୍ତ ହୋଇଅଛି । କାରଣ ଯୋଗଭ୍ରଷ୍ଟ ବ୍ୟକ୍ତି ଶ୍ରୀମାନ୍ ବଂଶରେ ଜନ୍ମଲାଭ କରିବା କଥା ଯାହା ୪୧ଶ ଶ୍ଳୋକରେ କୁହା ଯାଇଅଛି ତାହା ଅନ୍ୟ ପକ୍ଷରେ ମଙ୍ଗଳଜନକ ହେବା ସମ୍ଭବପର ନୁହେ । ପ୍ରଥମରୁ ଯେତେ ଦୂର ସମ୍ଭବ ଶୁଦ୍ଧବୁଦ୍ଧିରେ ସାଧକଙ୍କୁ କର୍ମଯୋଗ ଆରମ୍ଭ କରିବାକୁ ହୁଏ । ଏକ ଜନ୍ମରେ ଏହା ସିଦ୍ଧ ନ ହେଲେହେଁ ପରବର୍ତ୍ତୀ ଜନ୍ମମାନଙ୍କରେ ସେହି ସଂସ୍କାରବଶତଃ କ୍ରମେ ସେ ସିଦ୍ଧି ଆଡ଼କୁ ଅଗ୍ରସର ହୁଅନ୍ତି । ୨ୟ ଅଧ୍ୟାୟର ୪୦ଶ ଶ୍ଳୋକରେ ଯାହା କୁହାଯାଇଅଛି—ଏହି ଧର୍ମର ଅଳ୍ପ ଆଚରଣ ମଧ୍ୟ ଲୋକକୁ ମହାଭୟରୁ ରକ୍ଷାକରେ—ତାହା ଏ ଉକ୍ତିର ପରିପୂରକ ।

ଶବ୍ଦବ୍ରହ୍ମର ଅର୍ଥ ବେଦ । ବ୍ରହ୍ମ ଦୁଇ ପ୍ରକାର—୧ ଶବ୍ଦବ୍ରହ୍ମ, ୨ ପରବ୍ରହ୍ମ । ମହାଭାରତ ଶାନ୍ତି ପର୍ବରେ (୨୬୯।୧) ଅଛି—

ଦ୍ୱେ ବ୍ରହ୍ମଣୀ ବେଦିତବ୍ୟେ ଶବ୍ଦବ୍ରହ୍ମ ପରଂ ଚ ଯତ୍
ଶବ୍ଦବ୍ରହ୍ମଣି ନିଷ୍ଣାତଃ ପରଂବ୍ରହ୍ମାଧିଗଚ୍ଛତି ।

"ବ୍ରହ୍ମ ଦୁଇ ପ୍ରକାର—ଏହା ଜାଣି ରଖିବା ଉଚିତ । ଏକ ଶବ୍ଦବ୍ରହ୍ମ (ଅର୍ଥାତ୍ ବେଦ) ଓ ଅପର ପରବ୍ରହ୍ମ । ଶବ୍ଦବ୍ରହ୍ମରେ ଅର୍ଥାତ୍ ବେଦୋକ୍ତ କ୍ରିୟାକାଣ୍ଡରେ ନିଷ୍ଣାତ ହୋଇ ଚିତ୍ତ ଶୁଦ୍ଧି ହେବା ପରେ ପରବ୍ରହ୍ମ ଲାଭ ହୁଏ । ବୈଦିକ ଯାଗଯଜ୍ଞାଦି କର୍ମ ବେଦ ବିହିତ ଅର୍ଥାତ୍ ବେଦରେ ବିଶ୍ୱାସ ରଖି ଏ ସବୁ କରାଯାଏ । ବେଦ ସୃଷ୍ଟିର ପ୍ରଥମ ଶବ୍ଦ । ତେଣୁ ତାହା ଶବ୍ଦବ୍ରହ୍ମ । ମହର୍ଷି ମନୁ କହିଅଛନ୍ତି—

"ଅକାମସ୍ୟ କ୍ରିୟା କାଚିତ୍ ଦୃଶ୍ୟତେ ନେହ କର୍ହିଚିତ୍"

ଏଥିରୁ ବୁଝାଯାଏ ପ୍ରତ୍ୟେକ ମନୁଷ୍ୟ ପ୍ରଥମେ ପ୍ରତ୍ୟେକ କର୍ମ କାମ୍ୟ ବୁଦ୍ଧିରେ କରେ ।

ପ୍ରଯତ୍ନାଦ୍‌ଯତମାନସ୍ତୁ ଯୋଗୀ ସଂଶୁଦ୍ଧକିଲ୍ବିଷଃ ।
ଅନେକଜନ୍ମସଂସିଦ୍ଧ ସ୍ତତୋ ଯାତି ପରାଂ ଗତିମ୍ । ୪୫ ।
ତପସ୍ୱିଭ୍ୟୋଽଧିକୋ ଯୋଗୀ ଜ୍ଞାନିଭ୍ୟୋଽପି ମତୋଽଧିକଃ ।
କର୍ମିଭ୍ୟଶ୍ଚାଧିକୋ ଯୋଗୀ ତସ୍ମାଦ୍‌ଯୋଗୀ ଭବାର୍ଜୁନ । ୪୬ ।

ଏହି କର୍ମ ଦ୍ୱାରା କ୍ରମେ ଚିତ୍ତଶୁଦ୍ଧି ହେଲେ ପରେ ନିଷ୍କାମ ବୁଦ୍ଧିରେ କର୍ମ କରିବାର ଇଚ୍ଛା ଜାତ ହୁଏ । ଏହି ନିଷ୍କାମ କର୍ମର ଅଳ୍ପ ଆଚରଣରେ ମଧ୍ୟ ମନୁଷ୍ୟ କ୍ରମେ ସିଦ୍ଧି ଆଡ଼କୁ ଅଗ୍ରସର ହୁଏ । ଏ ଶ୍ଳୋକରେ କୁହାଯାଇଅଛି ଯେ କର୍ମ ଯୋଗ ଜାଣିବାର ଇଚ୍ଛା ଜାତ ହେଲେ ତାହା ଶବ୍ଦବ୍ରହ୍ମକୁ ଅତିକ୍ରମ କରେ ।

୪୫ । **ଅନ୍ୱୟଦୀପିକା**—ପ୍ରଯତ୍ନାତ୍ ତୁ ଯତମାନଃ ( ପୂର୍ବାପେକ୍ଷା ଅଧିକତର ଯତ୍ନ କରି ) ସଂଶୁଦ୍ଧକିଲ୍ବିଷଃ (ନିଷ୍ପାପ) ଯୋଗୀ (ଯୋଗୀ, ପୁରୁଷ) ଅନେକ ଜନ୍ମ ସଂସିଦ୍ଧଃ (ବହୁ ଜନ୍ମରେ ସିଦ୍ଧ ହୋଇ) ତତଃ (ତତ୍ପରେ) ପରାଂ ଗତିଂ ଯାତି (ପରମଗତି ଲାଭ କରନ୍ତି) ।

**ଅନୁବାଦ**—ସେହି ଯୋଗୀ ପୁରୁଷ ପୂର୍ବାପେକ୍ଷା ଅଧିକତର ଯତ୍ନ କରନ୍ତି ଏବଂ ନିଷ୍ପାପ ହୋଇ ବହୁଜନ୍ମର ଚେଷ୍ଟାରେ ସିଦ୍ଧିଲାଭ କରି ଶେଷରେ ପରମଗତି ଅର୍ଥାତ୍ ମୁକ୍ତିଲାଭ କରନ୍ତି ।

**ସୁବୋଧିନୀ ଟୀକା**—ଯଦୈବଂ ମନ୍ଦପ୍ରଯତ୍ନୋଽପି ଯୋଗୀ ପରାଂ ଗତିଂ ଯାତି ତଦା ଯସ୍ତୁ ଯୋଗୀ ପ୍ରଯତ୍ନାଦୁତ୍ତରୋତ୍ତରମଧିକଂ ଯୋଗେ ଯତମାନୋ ଯତ୍ନଂ କୁର୍ବନ୍ ଯୋଗେନୈବ ସଂଶୁଦ୍ଧକିଲ୍ବିଷୋ ବିଧୂତପାପଃ ସୋଽନେକେଷୁ ଜନ୍ମସୁପଚିତେନ ଯୋଗେନ ସଂସିଦ୍ଧଃ ସମ୍ୟଗ୍‌ଜ୍ଞାନୀ ଭୂତ୍ୱା ତତଃ ଶ୍ରେଷ୍ଠାଂ ଗତିଂ ଯାତୀତି କିଂ ବକ୍ତବ୍ୟମିତ୍ୟର୍ଥଃ ।

୪୬ । **ଅନ୍ୱୟଦୀପିକା**—ଯୋଗୀ ( କର୍ମଯୋଗୀ ) ତପସ୍ୱିଭ୍ୟଃ (ତପସ୍ୱୀମାନଙ୍କ ଅପେକ୍ଷା) ଅଧିକଃ (ଶ୍ରେଷ୍ଠ); ଜ୍ଞାନିଭ୍ୟ ଅପି (ଜ୍ଞାନୀମାନଙ୍କଠାରୁ ମଧ୍ୟ) ଅଧିକଃ (ଶ୍ରେଷ୍ଠଃ); କର୍ମିଭ୍ୟ ଚ ଅଧିକଃ ( କର୍ମୀମାନଙ୍କଠାରୁ ମଧ୍ୟ ଶ୍ରେଷ୍ଠ ), [ଏହା ଆମ୍ଭର] ମତଃ (ମତ) । ତସ୍ମାତ୍ (ସେହି ହେତୁରୁ) ଯୋଗୀ ଭବ (ତୁମେ ଯୋଗୀ ହୁଅ) ।

**ଅନୁବାଦ**—କର୍ମଯୋଗୀ ତପସ୍ୱୀମାନଙ୍କଠାରୁ ଶ୍ରେଷ୍ଠ, ଜ୍ଞାନୀମାନଙ୍କ ଠାରୁ ମଧ୍ୟ ଶ୍ରେଷ୍ଠ, କର୍ମୀମାନଙ୍କଠାରୁ ମଧ୍ୟ ଶ୍ରେଷ୍ଠ, ଏହା ଆମ୍ଭର ମତ । ଅତଏବ ହେ ଅର୍ଜୁନ, ତୁମେ ଯୋଗୀ ହୁଅ ।

**ସୁବୋଧିନୀ ଟୀକା**—ଯସ୍ମାଦେବଂ ତସ୍ମାତ୍—ତପସ୍ୱିଭ୍ୟ ଇତି । ତପସ୍ୱିଭ୍ୟଃ କୃଚ୍ଛ୍ରଚାନ୍ଦ୍ରାୟଣାଦିତପୋନିଷ୍ଠେଭ୍ୟଃ । ଜ୍ଞାନିଭ୍ୟଃ ଶାସ୍ତ୍ରଜ୍ଞାନବଦ୍-

ଯୋଗିନାମପି ସର୍ବେଷାଂ ମଦ୍‌ଗତେନାନ୍ତରାତ୍ମନା ।
ଶ୍ରଦ୍ଧାବାନ୍ ଭଜତେ ଯୋ ମାଂ ସ ମେ ଯୁକ୍ତତମୋ ମତଃ । ୪୭ ।

ଇତି ଶ୍ରୀ ମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସଂବାଦେ ଧ୍ୟାନଯୋଗୋ ନାମ ଷଷ୍ଠୋଽଧ୍ୟାୟଃ ।

ଭ୍ୟୋଽପି । କର୍ମିଭ୍ୟ ଇଷ୍ଟାପୂର୍ତ୍ତାଦିକର୍ମକାରିଭ୍ୟୋଽପି । ଯୋଗୀଶ୍ରେଷ୍ଠୋ ମମାଭି-ମତଃ । ତସ୍ମାତ୍ତ୍ୱଂ ଯୋଗୀ ଭବ ।

**ବିବୃତି**—ଯେଉଁମାନେ ଅରଣ୍ୟରେ ଚାନ୍ଦ୍ର ବ୍ରତ ଉପବାସାଦି ଶାରୀରିକ କ୍ଳେଶଦାୟକ କର୍ମମାନ କରନ୍ତି ସେମାନଙ୍କୁ 'ତପସ୍ୱୀ' ବୋଲାଯାଏ । ସାଂଖ୍ୟବାଦୀ-ମାନଙ୍କୁ 'ଜ୍ଞାନୀ' କୁହାଯାଏ, କାରଣ ସେମାନେ କର୍ମତ୍ୟାଗ କରି ଜ୍ଞାନକୁ ହିଁ ମୁକ୍ତିର ସାଧନ ବୋଲି ଗ୍ରହଣ କରି ମୋକ୍ଷ ଲାଭ କରନ୍ତି । ମୀମାଂସକମାନଙ୍କ ମତରେ ଯଜ୍ଞାଦି କାମ୍ୟକର୍ମହିଁ ସ୍ୱର୍ଗଲାଭର ପନ୍ଥା, ତେଣୁ ସେହି ସକାମ କର୍ମପ୍ରବଣ ମୀମାଂସକମାନେ ଏଠାରେ 'କର୍ମୀ' ନାମରେ ଅଭିହିତ ହୋଇଅଛନ୍ତି, ଏମାନେ ପ୍ରତ୍ୟେକେ ନିଜ ନିଜ ଅନୁସୃତମାର୍ଗକୁ ସର୍ବଶ୍ରେଷ୍ଠ ମନେକରି ସିଦ୍ଧିଲାଭ ପାଇଁ ଅଗ୍ରସର ହୁଅନ୍ତି । ମାତ୍ର ଭଗବାନ୍ ଏଠାରେ କହୁଅଛନ୍ତି ପୂର୍ବୋକ୍ତ ସାଧକମାନଙ୍କ ଅପେକ୍ଷା କର୍ମଯୋଗୀହିଁ ଶ୍ରେଷ୍ଠ । ୩ୟ ଅଧ୍ୟାୟର ୮ମ ଶ୍ଳୋକରେ ଏବଂ ୫ମ ଅଧ୍ୟାୟର ୨ୟ ଶ୍ଳୋକରେ ଏହି ସିଦ୍ଧାନ୍ତହିଁ ବର୍ଣ୍ଣିତ ହୋଇଅଛି । ସନ୍ନ୍ୟାସ ମାର୍ଗାବଲମ୍ବୀ ଟୀକାକାରମାନେ ଏଠାରେ 'ଜ୍ଞାନୀ' ଶବ୍ଦର ଅର୍ଥ 'ଅପରୋକ୍ଷଜ୍ଞାନସମ୍ପନ୍ନ' ନ କରି 'ଶାସ୍ତ୍ରଜ୍ଞାନସମ୍ପନ୍ନ' ବୋଲି କହନ୍ତି । ମାତ୍ର ଏ ଅର୍ଥ ସମୀଚୀନ ବୋଧ ହୁଏ ନାହିଁ । କାରଣ ସନ୍ନ୍ୟାସୀ ସାଧକଙ୍କ ମତରେ ଜ୍ଞାନର ଉଦୟହେଲେ ସମ୍ପୂର୍ଣ୍ଣରୂପେ କର୍ମ ଛାଡ଼ିଦେବାକୁ ହେବ । ମାତ୍ର ଗୀତାର ଶେଷ ଅଧ୍ୟାୟ ପର୍ଯ୍ୟନ୍ତ ଯୁଦ୍ଧ କରିବା ପାଇଁ ଭଗବାନ୍ ଅର୍ଜୁନଙ୍କୁ ଉପଦେଶ ଦେଇଅଛନ୍ତି । ସୁତରାଂ ଗୀତା କର୍ମଯୋଗ ଶାସ୍ତ୍ର ରୂପରେ ପରିଚିତ । ଏପରି ଅବସ୍ଥାରେ କର୍ମଯୋଗୀ ଯେ ଗୀତାର ପ୍ରତିପାଦ୍ୟ ଏଥିରେ ଆଉ ସନ୍ଦେହ କଅଣ ?

୪୭ । **ଅନ୍ୱୟଦୀପିକା**—ଯଃ (ଯେ) ଶ୍ରଦ୍ଧାବାନ୍ (ଶ୍ରଦ୍ଧାଯୁକ୍ତ ହୋଇ) ମଦ୍‌ଗତେନ ଅନ୍ତରାତ୍ମନା (ମଦ୍‌ଗତ ଚିତ୍ତରେ) ମାଂ ଭଜତେ (ଆମ୍ଭଙ୍କୁ ଭଜନା କରନ୍ତି) ସଃ (ସେ) ସର୍ବେଷାମ୍ ଅପି ଯୋଗିନାଂ (ସବୁ ଯୋଗୀଙ୍କ ମଧ୍ୟରେ) ମେ ଯୁକ୍ତତମଃ ମତଃ ( ସର୍ବାପେକ୍ଷା ଶ୍ରେଷ୍ଠ ଏହା ଆମ୍ଭର ମତ) ।

**ଅନୁବାଦ**—ଯେ ଶ୍ରଦ୍ଧାଯୁକ୍ତ ହୋଇ ମଦ୍‌ଗତଚିତ୍ତରେ ଆମ୍ଭର ଉପାସନା କରନ୍ତି, ସେ ସବୁ ଯୋଗୀଙ୍କ ମଧ୍ୟରେ ଶ୍ରେଷ୍ଠ—ଏହା ଆମ୍ଭର ମତ । ଅର୍ଥାତ୍ କର୍ମଯୋଗୀଙ୍କ ମଧ୍ୟରେ ଯେ ଏକାନ୍ତ ଭଗବଦ୍‌ଭକ୍ତ ସେହି ଏକା ଶ୍ରେଷ୍ଠ ।

**ସୁବୋଧିନୀ ଟୀକା**—ଯୋଗିନାମପି ଯମନିୟମାଦପରାଣାଂ ମଧ୍ୟେ ମଦ୍‌ଭକ୍ତଃ ଶ୍ରେଷ୍ଠ ଇତ୍ୟାହ—ଯୋଗିନାମପୀତି । ମଦ୍‌ଗତେନ ମଯ୍ୟାସକ୍ତେନ । ଅନ୍ତରାତ୍ମନା ମନସା । ଯୋ ମାଂ ପରମେଶ୍ୱରଂ ବାସୁଦେବଂ । ଶ୍ରଦ୍ଧାଯୁକ୍ତଃ ସନ୍ ଭଜତେ । ସ ଯୋଗଯୁକ୍ତେଷ୍ୱ ଶ୍ରେଷ୍ଠୋ ମମ ସମ୍ମତଃ । ଅତୋ ମଦ୍‌ଭକ୍ତୋ ଭବେତି ଭାବଃ ।

ଅଷ୍ଟଯୋଗମବୋଚଦ୍‌ଯୋ ଭକ୍ତିଯୋଗ ଶିରୋମଣିମ୍ ।
ତଂ ବନ୍ଦେ ପରମାନନ୍ଦଂ ମାଧବଂ ଭକ୍ତଶେବଧିମ୍ ।

**ବିବୃତି**—ଜ୍ଞାନଯୁକ୍ତ ନିଷ୍କାମ କର୍ମଯୋଗହିଁ ଗୀତାର ପ୍ରତିପାଦ୍ୟ ବିଷୟ । କିନ୍ତୁ ଏଥିରେ ଭଗବଦ୍‌ଭକ୍ତି ସଂପୃକ୍ତ ନ ହେଲେ ତାହା ପୂର୍ଣ୍ଣତା ପ୍ରାପ୍ତ ହୁଏ ନାହିଁ । ଏ ଶ୍ଲୋକରେ ଏହାହିଁ ବ୍ୟକ୍ତ କରି ଭଗବାନ୍ ଏ ଅଧ୍ୟାୟ ସମାପ୍ତ କଲେ । ଜ୍ଞାନଯୁକ୍ତ ନିଷ୍କାମ କର୍ମସଙ୍ଗେ ଭକ୍ତିର ସମୁଚ୍ଚୟ ଦ୍ୱାରା କେହି ଯେପରି ମନେ ନ କରନ୍ତି କେବଳ ଭକ୍ତିହିଁ ଗୀତାଶାସ୍ତ୍ରର ଉପଜୀବ୍ୟ । ଶ୍ରୀମଦ୍‌ଭାଗବତ ପୁରାଣ ଭକ୍ତିପ୍ରଧାନ ଗ୍ରନ୍ଥ, ମାତ୍ର ଶ୍ରୀମଦ୍‌ଭଗବଦ୍‌ଗୀତା ଦାର୍ଶନିକ ଗ୍ରନ୍ଥ ସମ୍ବଳିତ ଜ୍ଞାନ-କର୍ମ-ଭକ୍ତି-ସମୁଚ୍ଚୟାତ୍ମକ ଉପନିଷଦ୍‌ବିଶେଷ ।

---

## ଷଷ୍ଠ ଅଧ୍ୟାୟର ସାର ସଂକଳନ

ଏ ଅଧ୍ୟାୟଟି ସାଧାରଣତଃ ଧ୍ୟାନଯୋଗ ନାମରେ ଅଭିହିତ ହୁଏ । ଧ୍ୟାନ-ଯୋଗର ବର୍ଣ୍ଣନା ପୂର୍ବରୁ ଅଧ୍ୟାୟ ଆରମ୍ଭରେ ଭଗବାନ୍ ନିଷ୍କାମ କର୍ମୀ ଓ କର୍ମତ୍ୟାଗୀ ସନ୍ନ୍ୟାସୀମାନଙ୍କର ତୁଳନା କରି କହୁଅଛନ୍ତି ଯେ ଯଜ୍ଞାଦି କର୍ମତ୍ୟାଗ କଲେ ବା ସର୍ବପ୍ରକାର ଶାରୀରିକ କର୍ମ ତ୍ୟାଗ କରି ନିଷ୍କ୍ରିୟ ହୋଇ ବସିଲେ କେହି ଯୋଗୀ ହୋଇଯାଏ ନାହିଁ । ବାହ୍ୟତ୍ୟାଗ ପ୍ରକୃତ ତ୍ୟାଗ ନୁହେ, ଅନ୍ତରର ତ୍ୟାଗହିଁ ପ୍ରକୃତ ତ୍ୟାଗ । ଏପରି ଅବସ୍ଥାରେ ଯେ କର୍ମ କରି ମଧ୍ୟ ତାହାର ଫଳ ପ୍ରତି ଉଦାସୀନ ତାହାକୁହିଁ ଯୋଗୀ ବା ସନ୍ନ୍ୟାସୀ ବୋଲାଯାଏ । ଯୋଗରେ ସିଦ୍ଧିଲାଭ କରିବାକୁ ହେଲେ କର୍ତ୍ତୃତ୍ୱାଭିମାନ ବା ଅହଂଭାବ ତ୍ୟାଗ ପ୍ରଥମ ସୋପାନ, ଏହି ଅହଂଭାବ ଦୂରୀଭୂତ ହେଲେ ଫଳକାମନା ରହିପାରେ ନାହିଁ । ଫଳତଃ ଆତ୍ମଶୁଦ୍ଧି ଜାତ ହୁଏ । ଆତ୍ମଶୁଦ୍ଧି ଜାତ ହେଲେ ଆତ୍ମା ପରମାତ୍ମାଙ୍କ ଠାରେ ସ୍ଥିର ହୋଇ ରହେ । ଏହାକୁହିଁ ବ୍ରାହ୍ମୀସ୍ଥିତି ବୋଲାଯାଏ । ଏହି ବ୍ରାହ୍ମୀସ୍ଥିତିରେ ସ୍ଥିର ରହିବା ପାଇଁ ଆତ୍ମସଂଯମଜନିତ ଚିତ୍ତପ୍ରସାଦ ଏକମାତ୍ର ଉପାୟ ।

ଗୀତୋକ୍ତ ନିଷ୍କାମ କର୍ମଯୋଗ ସଂସାରୀ ବା ବିଷୟୀ ଲୋକମାନଙ୍କ ପ୍ରତି ଅଭିପ୍ରେତ । ଏପରି ଅବସ୍ଥାରେ ସଂସାରରେ ରହି ନିର୍ଲିପ୍ତ ଭାବରେ ବିଷୟ ଭୋଗ କିପରି କରିବାକୁ ହେବ ସେଥିପାଇଁ ଗୀତାରେ ନାନାବିଧ ଉପାୟ ଆଲୋଚିତ ହୋଇଅଛି । ଏଥିରେ ଆତ୍ମସ୍ୱାତନ୍ତ୍ର୍ୟ ଅନୁଭବ କରିବା ଗୋଟିଏ ବଡ଼କଥା । ନିଜେ ଚେଷ୍ଟା କଲେ ନିଜକୁ ସଂସାର ବନ୍ଧନରୁ ମୁକ୍ତ କରିପାରିବ । ଅବଶ୍ୟ ପ୍ରକୃତିର ଶକ୍ତି ବଳବତ୍ତର, ସେହିହେତୁରୁ କୁହାଯାଇଅଛି 'ପ୍ରକୃତିଂ ଯାନ୍ତି ଭୂତାନି ନିଗ୍ରହଃ କିଂ କରିଷ୍ୟତି ।' ଯେବେ ଆତ୍ମା ପ୍ରକୃତି ଦ୍ୱାରା ପରିଚାଳିତ ହୁଅନ୍ତି ତେବେ ଆତ୍ମସ୍ୱାତନ୍ତ୍ର୍ୟ ଆଉ ରହିବ କି ? ଶାସ୍ତ୍ରମାନଙ୍କର ବିଧିନିଷେଧରେ ଅଉ ପ୍ରୟୋଜନୀୟତା କଅଣ ରହିବ ? ଏହି ପ୍ରକୃତିର କବଳରୁ ମୁକ୍ତ ହେବାକୁ ହେବ । ଆତ୍ମ ଚୈତନ୍ୟ ସମ, ଶାନ୍ତ, ନିର୍ବିକାର କିନ୍ତୁ ସେ ପ୍ରକୃତି ବା ମାୟାଦ୍ୱାରା ଉପହତ ହୋଇ ରହିଥିବାରୁ ସ୍ୱରୂପରେ ପ୍ରକାଶିତ ହୋଇ ପାରନ୍ତି ନାହିଁ । ଇନ୍ଦ୍ରିୟ ସଂଯମ ଓ ମନଃ ସଂଯମ ଦ୍ୱାରା ପ୍ରକୃତିର ବନ୍ଧନରୁ ଆତ୍ମା ମୁକ୍ତ ହୋଇ ପାରନ୍ତି । ସେହି ହେତୁରୁ ଭଗବାନ୍ ଏ ଅଧ୍ୟାୟର ୫ମ ଓ ୬ଷ୍ଠ ଶ୍ଳୋକରେ ଆତ୍ମା ଦ୍ୱାରା ଆତ୍ମାକୁ ଉଦ୍ଧାର କରିବା ପାଇଁ ଉପଦେଶ ଦେଇଅଛନ୍ତି । ମନକୁ ଯେବେ ବିଷୟରୁ ପ୍ରତ୍ୟାହୃତ କରାଯାଏ ତେବେ ତାହା ଆତ୍ମାରେ ଅବସ୍ଥାନ କରେ ଏବଂ ସେ ଅବସ୍ଥାରେ ଆତ୍ମା ସ୍ୱରୂପରେ ପ୍ରକାଶିତ ହୁଅନ୍ତି । ମନକୁ ଆତ୍ମସଂସ୍ଥ କରିବା ପାଇଁ ଧ୍ୟାନଯୋଗର ସହାୟତା ଆବଶ୍ୟକ । ତେଣୁ ଏ ଅଧ୍ୟାୟରେ ଧ୍ୟାନଯୋଗ ହିଁ ବିଶେଷ ଭାବରେ ଆଲୋଚିତ ହୋଇଅଛି । ପବିତ୍ର ନିର୍ଜନ ସ୍ଥାନରେ ଆସନ ସ୍ଥାପନ କରି ମନକୁ ବିଷୟ ବାସନାରୁ ନିର୍ମୁକ୍ତ କରିବାକୁ ହେବ । ମନକୁ ବିଷୟ ଚିନ୍ତାରୁ ଦୂରରେ ରଖିଲେ ଇନ୍ଦ୍ରିୟମାନେ ଆପଣ ଛାଏଁ ବଶୀଭୂତ ହୋଇଯାଆନ୍ତି । ତତ୍ପରେ ଧୃତିସଂଯୁକ୍ତ ବୁଦ୍ଧିଦ୍ୱାରା ମନକୁ ଅନ୍ତର୍ମୁଖୀ କରି କ୍ରମେ ଚିତ୍ତବୃତ୍ତି ନିରୋଧ କରିବାକୁ ହେବ । ଚିତ୍ତ ନିରୁଦ୍ଧ ହେଲେ ଆତ୍ମସଂସ୍ଥ ହୋଇଯାଏ । ଚିତ୍ତ ବା ମନ ଆତ୍ମସଂସ୍ଥ ହେଲେ ଧ୍ୟାନଯୋଗ ବଳରେ ଯୋଗୀ ବ୍ରହ୍ମାନନ୍ଦରୂପ ପରମଶାନ୍ତି ଅନୁଭବ କରନ୍ତି । ଏପରି ଅବସ୍ଥା ଆସିଲେ ଯୋଗୀ ସର୍ବତ୍ର ଆତ୍ମଦର୍ଶନ ଲାଭକରି କୃତାର୍ଥ ହୁଅନ୍ତି । ସର୍ବଭୂତରେ ଆତ୍ମା ବିରାଜିତ ଅଛନ୍ତି ଏବଂ ସର୍ବଭୂତ ଆତ୍ମାରେ ବିରାଜିତ ଅଛନ୍ତି—ଏହି ସମଦର୍ଶନ ହିଁ ଯୋଗର ଚରମଫଳ । ଯୋଗବଳରେ ଏ ଭାବ ଆସିଲେ ଯୋଗୀ ସର୍ବତ୍ର ବିଶ୍ୱେଶ୍ୱର ପୁରୁଷୋତ୍ତମଙ୍କ ଦର୍ଶନ ଲାଭକରି ପୁଲକିତ ଅନ୍ତଃକରଣରେ ବିଶ୍ୱପ୍ରେମରେ ଉଦ୍‌ବୁଦ୍ଧ ହୋଇ ଉଠନ୍ତି ।

ମନଃସଂଯମ ବଡ଼ କଠିନ କଥା, ଦୃଢ଼ ଅଭ୍ୟାସ ଓ ବୈରାଗ୍ୟ ଦ୍ୱାରା ମନକୁ ବିଷୟରୁ ପ୍ରତ୍ୟାହୃତ କରି କ୍ରମେ ଆତ୍ମସଂସ୍ଥ କରିବାକୁ ପଡ଼େ । ଏଥିରେ ସ୍ଖଳନର ସମ୍ଭାବନା ଅଧିକ, ଏକଜନ୍ମରେ ଏହା ସାଧ୍ୟ ନ ହୋଇ ପାରେ । ଯେବେ ଅଭ୍ୟାସ ଶିଥିଳତାରୁ ସାଧକ ସ୍ଖଳିତ ହୁଅନ୍ତି, ତେବେ ପରବର୍ତ୍ତୀ ଜନ୍ମରେ

ପୂର୍ବାଭ୍ୟାସ ବଳରେ ସେ ତତ୍ପ୍ରତି ପୁଣି ଅକୃଷ୍ଟ ହୁଅନ୍ତି, ତେଣୁ କର୍ମଯୋଗୀଙ୍କର ଦୁର୍ଗତି ହୁଏ ନାହିଁ, କ୍ରମେ ଏହିପରି ନିଷ୍ପାପ ହୋଇ କର୍ମଯୋଗୀ ଶେଷରେ ପରମଗତି ଲାଭ କରନ୍ତି ।

ଆତ୍ମାର ସଦ୍‌ଗତି କାମନାରେ କେତେ ଲୋକ ସଂସାର ତ୍ୟାଗ କରି ଅରଣ୍ୟରେ ରହି ବ୍ରତ ଉପବାସଦ୍ୱାରା ଶରୀରକୁ କ୍ଲିଷ୍ଟ କରି ତପସ୍ୟା କରନ୍ତି, କେତେକ ଜ୍ଞାନବଳରେ ଆତ୍ମଦର୍ଶନ କରିବା ପାଇଁ ସଂସାରର ସମସ୍ତ କର୍ମ ତ୍ୟାଗ କରି ଜ୍ଞାନମାର୍ଗରେ ପଥିକ ହୁଅନ୍ତି, ଆଉ କେତେକ ଲୋକ ସ୍ୱର୍ଗଲାଭ ଆଶାରେ ଯାଗଯଜ୍ଞାଦି ସକାମ କର୍ମ କରିବାରେ ଜୀବନ ଉତ୍ସର୍ଗ କରିଥାଆନ୍ତି । ଏମାନଙ୍କ ଅପେକ୍ଷା ନିଷ୍କାମ କର୍ମଯୋଗୀ ଯେ ଶ୍ରେଷ୍ଠ ଏଥିରେ ସନ୍ଦେହ ନାହିଁ । କାରଣ ସେ ଜ୍ଞାନବଳରେ ସର୍ବତ୍ର ଆତ୍ମଦର୍ଶନ କରି ଭଗବତ୍‌ପ୍ରେମରେ ଉଦ୍‌ବୁଦ୍ଧ ହୋଇ ବିଶ୍ୱ ହିତୈଷଣାରେ ଆତ୍ମନିୟୋଗ କରିଥାଆନ୍ତି ।



# ସପ୍ତମୋଽଧ୍ୟାୟଃ

ଶ୍ରୀ ଭଗବାନୁବାଚ

ମୟ୍ୟାସକ୍ତମନାଃ ପାର୍ଥ ଯୋଗଂ ଯୁଞ୍ଜନ୍ ମଦାଶ୍ରୟଃ,
ଅସଂଶୟଂ ସମଗ୍ରଂ ମାଂ ଯଥା ଜ୍ଞାସ୍ୟସି ତଚ୍ଛୃଣୁ । ୧ ।

**୧ । ଅନ୍ୱୟଦୀପିକା**— ଶ୍ରୀ ଭଗବାନ୍ ଉବାଚ (ଶ୍ରୀ ଭଗବାନ୍ କହିଲେ) ପାର୍ଥ ( ହେ ଅର୍ଜୁନ ), ମୟି (ଆମ୍ଭଠାରେ) ଅସକ୍ତମନାଃ ( ଏକାନ୍ତ ଅଭିନିବିଷ୍ଟ ହୋଇ ) ମଦାଶ୍ରୟଃ ( ଆମ୍ଭଙ୍କ ଆଶ୍ରୟ କରି ) ଯୋଗଂ ଯୁଞ୍ଜନ୍ (ଯୋଗ ଅଭ୍ୟାସ କରି ) ସମଗ୍ରଂ ମାଂ (ବିଭୂତି, ବଳ ଏବଂ ଐଶ୍ୱର୍ଯ୍ୟ ସହିତ ଆମ୍ଭଙ୍କୁ) ଯଥା (ଯେପରି ଭାବରେ) ଅସଂଶୟଂ ( ନିଃସଂଶୟ ରୂପେ ) ଜ୍ଞାସ୍ୟସି ( ଜାଣିପାରିବ ) ତତ୍ଶୃଣୁ ( ତାହା ଶୁଣ ) ।

**ଅନୁବାଦ**—ଶ୍ରୀ ଭଗବାନ କହିଲେ ହେ ଅର୍ଜୁନ ! ଆମ୍ଭଠାରେ ମନ ଲଗାଇ ଏବଂ ଆମ୍ଭଙ୍କ ଆଶ୍ରୟ କରି (କର୍ମ)-ଯୋଗାଭ୍ୟାସ କଲେ ତୁମେ ଯେପରି ଭାବରେ ଆମ୍ଭର ବିଭୂତି, ବଳ ଓ ଐଶ୍ୱର୍ଯ୍ୟପୂର୍ଣ୍ଣ ସମଗ୍ର ସ୍ୱରୂପ ନିଃସଂଶୟ ରୂପେ ଜାଣି ପାରିବ, ତାହା ଶୁଣ ।

**ସୁବୋଧିନୀ ଟୀକା**—ବିଜ୍ଞେୟମାତ୍ମନସ୍ତତ୍ତ୍ୱଂ ସଯୋଗଂ ସମୁଦୀରିତମ୍,
ଭଜନୀୟମଥେଦାନୀମୈଶ୍ୱରଂ ରୂପମୀର୍ଯ୍ୟତେ ।

ପୂର୍ବାଧ୍ୟାୟାନ୍ତେ ମଦ୍ଗତେନାନ୍ତରାତ୍ମନା ଯୋ ମାଂ ଭଜତେ ସ ମେ ଯୁକ୍ତତମୋମତ ଇତ୍ୟୁକ୍ତମ୍ । ତତ୍ର ତାଦୃଶସ୍ୟ ଯସ୍ୟ ଧ୍ୟେୟଃ କଥିତବ୍ୟେତ୍ୟପେକ୍ଷାୟାଂ ସ୍ୱସ୍ୱରୂପଂ ନିରୂପୟିଷ୍ୟନ୍ ଶ୍ରୀଭଗବାନ୍ ଉବାଚ—ମୟୀତି । ମୟି ପରମେଶ୍ୱର ଆସକ୍ତମଭିନିବିଷ୍ଟଂ ମନୋଯସ୍ୟ ସଃ । ମଦାଶ୍ରୟୋଽହମେବାଶ୍ରୟୋ ଯସ୍ୟ । ଅନନ୍ୟଶରଣଃ ସନ୍ । ଯୋଗଂ ଯୁଞ୍ଜନ୍ନଭ୍ୟସନ୍ । ଅସଂଶୟଂ ଯଥା ଭବତ୍ୟେବଂ । ମାଂ ସମଗ୍ରଂ ବିଭୂତିବଲୈଶ୍ୱର୍ଯ୍ୟାଦି ସହିତଂ ଯଥା ଜ୍ଞାସ୍ୟସି ତଦିଦଂ ମୟା ବକ୍ଷ୍ୟମାଣଂ ଶୃଣୁ ।

**ବିବୃତି**—ଗୀତାର ପ୍ରଥମ ଛଅ ଅଧ୍ୟାୟରେ ନିଷ୍କାମ କର୍ମ ଯୋଗହିଁ ଆଲୋଚିତ ହୋଇଅଛି । ସାଂଖ୍ୟବାଦୀ ସନ୍ନ୍ୟାସୀମାନେ ଶେଷରେ ଯେଉଁ ମୋକ୍ଷର ଅଧିକାରୀ ହୁଅନ୍ତି, କର୍ମଯୋଗୀମାନେ ତାହାହିଁ ଲାଭ କରନ୍ତି; ବିଶେଷତଃ କର୍ମଶୂନ୍ୟ ସାଂଖ୍ୟମାର୍ଗ ଅପେକ୍ଷା କର୍ମଯୋଗ ମାର୍ଗହିଁ ପ୍ରଶସ୍ତତର । କାରଣ ଶେଷୋକ୍ତ ମାର୍ଗରେ ବିଶ୍ୱକର୍ମରେ ସହାୟତା କରି ଯୋଗୀ କୃତାର୍ଥ ହୁଅନ୍ତି । ଏ ମାର୍ଗରେ ଅନ୍ୟଥା ଆଚରଣ କଲେ ମଧ୍ୟ ତାହା ବ୍ୟର୍ଥ ହୁଏ ନାହିଁ । କର୍ମଯୋଗ ମାର୍ଗର ପଥିକଙ୍କ ପକ୍ଷରେ ଇନ୍ଦ୍ରିୟ ସଂଯମ ପ୍ରଥମ କାର୍ଯ୍ୟ । କାମକ୍ରୋଧ

ଜ୍ଞାନଂ ତେଽହଂ ସବିଜ୍ଞାନମିଦଂ ବକ୍ଷ୍ୟାମ୍ୟଶେଷତଃ ।
ଯଜ୍‌ଜ୍ଞାତ୍ୱା ନେହ ଭୂୟୋଽନ୍ୟଜ୍‌ଜ୍ଞାତବ୍ୟମବଶିଷ୍ୟତେ ॥ ୨ ।

ପ୍ରକୃତ ଶତ୍ରୁମାନେ ସାଧାରଣତଃ ଇନ୍ଦ୍ରିୟମାନଙ୍କରେ ଘର କରି ଜ୍ଞାନ ବିଜ୍ଞାନ ନାଶ କରନ୍ତି । ତେଣୁ ପ୍ରଥମେ ଇନ୍ଦ୍ରିୟ-ନିଗ୍ରହ କରି ସେହି ଶତ୍ରୁମାନଙ୍କର ବିନାଶ ସାଧନ କରିବା ଆବଶ୍ୟକ । ଷଷ୍ଠ ଅଧ୍ୟାୟରେ କୁହାଯାଇଅଛି ଯେ କର୍ମଯୋଗଯୁକ୍ତ ପୁରୁଷ ଜ୍ଞାନ ବିଜ୍ଞାନରେ ତୃପ୍ତ ହୋଇ ସମସ୍ତ ପ୍ରାଣୀଙ୍କୁ ପରମେଶ୍ୱରଙ୍କଠାରେ ଏବଂ ପରମେଶ୍ୱରଙ୍କୁ ସମସ୍ତ ପ୍ରାଣୀଙ୍କଠାରେ ଦେଖନ୍ତି । ସାଧକର ଏପରି ଅନୁଭୂତି ହେଲେ ସହଜରେ ଇନ୍ଦ୍ରିୟନିଗ୍ରହ ହୋଇଯାଏ । ବର୍ତ୍ତମାନ 'ଜ୍ଞାନ' ଓ 'ବିଜ୍ଞାନ' କାହାକୁ କହନ୍ତି ତାହାହିଁ ଆଲୋଚିତ ହେବ । ୭ମ ଅଧ୍ୟାୟରୁ ୧୭ଶ ଅଧ୍ୟାୟ ଶେଷ ପର୍ଯ୍ୟନ୍ତ ୧୧ ଅଧ୍ୟାୟରେ ଏହି ବିଷୟରହିଁ ବର୍ଣ୍ଣନା କରାଯାଇଅଛି ଏବଂ ୧୮ଶ ଅଧ୍ୟାୟରେ ସମସ୍ତ କର୍ମଯୋଗର ଉପସଂହାର କରାଯାଇଅଛି ।

ସୃଷ୍ଟିର ପ୍ରତ୍ୟେକ ବିନଶ୍ୱର ପଦାର୍ଥରେ ଏକ ଅବିନଶ୍ୱର ପରମାତ୍ମା ପ୍ରବିଷ୍ଟ ହୋଇ ରହିଅଛନ୍ତି—ଏହା ବୁଝିବାର ନାମ 'ଜ୍ଞାନ' ଏବଂ ଏକ ନିତ୍ୟ ପରମେଶ୍ୱରଙ୍କଠାରୁ ବିବିଧ ନଶ୍ୱର ପଦାର୍ଥର ଉତ୍ପତ୍ତି ବୁଝିବାକୁ 'ବିଜ୍ଞାନ' ବୋଲାଯାଏ । ପରମେଶ୍ୱର ଏକ, ତଥାପି ଦୁଇପ୍ରକାରରେ ତାଙ୍କର ଉପାସନା ହୋଇଥାଏ । କେତେକ ଜ୍ଞାନବଳରେ ବୁଦ୍ଧିଦ୍ୱାରା ତାଙ୍କର ଅବ୍ୟକ୍ତ ସ୍ୱରୂପର ଉପାସନା କରନ୍ତି, ଅନ୍ୟମାନେ ଭକ୍ତି ଓ ଶ୍ରଦ୍ଧା ଦ୍ୱାରା ପ୍ରତ୍ୟକ୍ଷ ଅବଗମ୍ୟ ତାଙ୍କ ବ୍ୟକ୍ତ ରୂପର ଉପାସନା କରନ୍ତି । ସାଧକ ଏହି ଦୁଇ ମାର୍ଗର ପ୍ରକୃତତତ୍ତ୍ୱ ହୃଦୟଙ୍ଗମ କରି ପାରିଲେ ତାଙ୍କ ପକ୍ଷରେ ଇନ୍ଦ୍ରିୟନିଗ୍ରହ ସହଜସାଧ୍ୟ ହୁଏ । କେବଳ ଇନ୍ଦ୍ରିୟନିଗ୍ରହ ସମ୍ପାଦକ ପାତଞ୍ଜଳ ଯୋଗମାର୍ଗ ଅପେକ୍ଷା ମୋକ୍ଷଲାଭ ପାଇଁ ଶ୍ରଦ୍ଧା ଓ ଭକ୍ତିର ଉପଯୋଗିତା ଯେ ଅଧିକ ଏହା ମାନିବାକୁ ହେବ ।

ଏ ଶ୍ଳୋକରେ 'ମୟି ଆସକ୍ତମନାଃ' କହିବା ଦ୍ୱାରା ଭଗବାନଙ୍କର ବ୍ୟକ୍ତ ରୂପ ପ୍ରତି ଲକ୍ଷ୍ୟ କରାଯାଇଅଛି ଏବଂ ଏହାପରେ ଏହି ବ୍ୟକ୍ତରୂପର ହିଁ ଆଲୋଚନା ଚାଲିବ ବୋଲି ସୂଚିତ ହେଉଅଛି । 'ସମଗ୍ରଂ' ପଦ ଦ୍ୱାରା ବୁଝାଯାଉଅଛି ଯେ ବିଭୂତି ବଳ ଓ ଐଶ୍ୱର୍ଯ୍ୟାଦି ସହିତ ଭଗବାନଙ୍କୁ ଜାଣିବାର ଉପାୟ ଏ ଅଧ୍ୟାୟରେ ବର୍ଣ୍ଣିତ ହେବ ।

୨ । ଅନ୍ୱୟଦୀପିକା—ଅହଂ (ଅମ୍ଭେ) ତେ (ତୁମ୍ଭଙ୍କୁ) ସବିଜ୍ଞାନଂ (ବିଜ୍ଞାନସହିତ) ଇଦଂ ଜ୍ଞାନଂ (ଏହି ଜ୍ଞାନ) ଅଶେଷତଃ (ଅଶେଷରୂପରେ ବା ସମ୍ପୂର୍ଣ୍ଣ ରୂପେ) ବକ୍ଷ୍ୟାମି (କହିବୁଁ); ଯତ୍ ଜ୍ଞାତ୍ୱା (ଯାହା ଜାଣିଲେ) ଇହ (ମୋକ୍ଷ ମାର୍ଗରେ) ଭୂୟଃ (ପୁଣି ଅନ୍ୟ କିଛି) ଜ୍ଞାତବ୍ୟଂ (ଜାଣିବା ବିଷୟ) ନ ଅବଶିଷ୍ୟତେ (ଅବଶିଷ୍ଟ ରହିବ ନାହିଁ) ।

ମନୁଷ୍ୟାଣାଂ ସହସ୍ରେଷୁ କଶ୍ଚିଦ୍‌ଯତତି ସିଦ୍ଧୟେ ।
ଯତତାମପି ସିଦ୍ଧାନାଂ କଶ୍ଚିନ୍ମାଂ ବେତ୍ତି ତତ୍ତ୍ୱତଃ । ୩ ।

**ଅନୁବାଦ**—ଅମ୍ଭେ ତୁମ୍ଭକୁ ବିଜ୍ଞାନ ସହିତ ଏହି ଜ୍ଞାନକୁ ସମ୍ପୂର୍ଣ୍ଣରୂପେ କହିବୁଁ । ଏହା ଜାଣିଲେ ମୋକ୍ଷମାର୍ଗରେ ଆଉ କିଛି ଜାଣିବା ବିଷୟ ବାକି ରହିବ ନାହିଁ ।

**ସୁବୋଧିନୀ ଟୀକା**—ବକ୍ଷ୍ୟମାଣଂ ଜ୍ଞାନଂ ସ୍ତୌତି—ଜ୍ଞାନମିତି । ଜ୍ଞାନଂ ଶାସ୍ତ୍ରୀୟମ୍ । ବିଜ୍ଞାନମନୁଭବଃ । ତତ୍‌ସହିତମିଦଂ ମଦ୍‌ବିଷୟମଶେଷତଃ ସାକଲ୍ୟେନ ବକ୍ଷ୍ୟାମି । ଯଜ୍‌ଜ୍ଞାତ୍ୱେହ ଶ୍ରେୟୋମାର୍ଗେ ବର୍ତ୍ତମାନସ୍ୟ ପୁନରନ୍ୟଜ୍‌ଜ୍ଞାତବ୍ୟମବଶିଷ୍ଟଂ ନ ଭବତି । ତେନୈବ କୃତାର୍ଥୋ ଭବତୀତ୍ୟର୍ଥଃ ।

**ବିବୃତି**—ଶଙ୍କରାଚାର୍ଯ୍ୟ ଓ ଶ୍ରୀଧରସ୍ୱାମୀ ପ୍ରଭୃତି ପୂର୍ବାଚାର୍ଯ୍ୟମାନେ କହନ୍ତି, ଯାହା ଗୁରୁଙ୍କଠାରୁ ଓ ଶାସ୍ତ୍ର ପାଠରୁ ଜଣାଯାଏ ତାହା ଜ୍ଞାନ; ଏହି ଜ୍ଞାନ ଯେତେବେଳେ ଅନୁଭୂତ ହୁଏ, ସେତେବେଳେ ତାକୁ ବିଜ୍ଞାନ ସହିତ ଜ୍ଞାନ କୁହାଯାଏ । ମାତ୍ର ଲୋକମାନ୍ୟ ତିଲକ କହନ୍ତି ନଶ୍ୱର ସୃଷ୍ଟି ପ୍ରପଞ୍ଚ ମଧ୍ୟରେ ଯେଉଁ ଅନଶ୍ୱର ପରତତ୍ତ୍ୱ ଅନ୍ତର୍ନିବିଷ୍ଟ ଅଛି ତାହା ଜାଣିବାର ନାମ ଜ୍ଞାନ ଏବଂ ସେହି ନିତ୍ୟ ପରତତ୍ତ୍ୱରୁ ଏହି ବିବିଧ ନଶ୍ୱର ପଦାର୍ଥର କିପରି ଉତ୍ପତ୍ତି ହୁଏ ତାହା ବୁଝିବାର ନାମ ବିଜ୍ଞାନ । ଅର୍ଥାତ୍ ପରମେଶ୍ୱରଜ୍ଞାନର ସମଷ୍ଟିରୂପ (ଜ୍ଞାନ) ଓ ବ୍ୟଷ୍ଟିରୂପ (ବିଜ୍ଞାନ)—ଏହି ଦୁଇ ଭେଦ ଅଛି । ଏହାହିଁ କ୍ଷରାକ୍ଷର ବିଚାର, କ୍ଷେତ୍ର-କ୍ଷେତ୍ରଜ୍ଞବିଚାର ଓ ପୁରୁଷ-ପ୍ରକୃତି ବିଚାର ଭେଦରେ ଭିନ୍ନ ଭିନ୍ନ । ଏ ଅଧ୍ୟାୟରେ କ୍ଷରାକ୍ଷର ବିଚାର ଆରମ୍ଭ ହୋଇଅଛି । ୧୩ଶ ଅଧ୍ୟାୟରେ କ୍ଷେତ୍ରକ୍ଷେତ୍ରଜ୍ଞ ବିଚାର ଓ ୧୪ଶ ଅଧ୍ୟାୟରେ ପୁରୁଷପ୍ରକୃତି ବିଚାର ବର୍ଣ୍ଣିତ ହେବ । (ଏ ଅଧ୍ୟାୟ ପ୍ରଥମ ଶ୍ଳୋକର ବିବୃତି ଦେଖ) ।

୩ । **ଅନ୍ୱୟଦୀପିକା**—ମନୁଷ୍ୟାଣାଂ ସହସ୍ରେଷୁ (ହଜାର ହଜାର ଲୋକଙ୍କ ମଧ୍ୟରେ) କଶ୍ଚିତ୍ (କେହି ଜଣେ ବା) ସିଦ୍ଧୟେ (ଆତ୍ମଜ୍ଞାନ ଲାଭ ପାଇଁ) ଯତତି (ଯତ୍ନ କରନ୍ତି) । ଯତତାଂ ଅପି ସିଦ୍ଧାନାଂ (ଯତ୍ନକାରୀ ସିଦ୍ଧ ପୁରୁଷମାନଙ୍କ ମଧ୍ୟରେ ବି) କଶ୍ଚିତ୍ (କେହି ଜଣେ) ମାଂ (ଅମ୍ଭଙ୍କୁ) ତତ୍ତ୍ୱତଃ (ସ୍ୱରୂପତଃ) ବେତ୍ତି (ଜାଣନ୍ତି) ।

**ଅନୁବାଦ**—ସହସ୍ର ସହସ୍ର ଲୋକଙ୍କ ମଧ୍ୟରେ କେହି ଜଣେ ବା ଆତ୍ମଜ୍ଞାନଲାଭ ପାଇଁ ଯତ୍ନ କରନ୍ତି । ପୁଣି ସେହି ଯତ୍ନକାରୀ ଲୋକଙ୍କ ମଧ୍ୟରୁ କେହି ଅବା ଅମ୍ଭଙ୍କୁ ଯଥାର୍ଥ ରୂପେ ଜାଣନ୍ତି ।

ଭୂମିରାପୋଽନଲୋ ବାୟୁଃ ଖଂ ମନୋବୁଦ୍ଧିରେବ ଚ ।
ଅହଂକାର ଇତୀୟଂ ମେ ଭିନ୍ନା ପ୍ରକୃତିରଷ୍ଟଧା । ୪ ।

**ସୁବୋଧିନୀ ଟୀକା**—ମଦ୍‌ଭକ୍ତଂ ବିନା ତୁ ମଜ୍ଜ୍ଞାନଂ ଦୁର୍ଲଭ ମିତ୍ୟାହ, ମନୁଷ୍ୟାଣାମିତି । ଅସଂଖ୍ୟାତାନାଂ ଜୀବାନାଂ ମଧ୍ୟେ ମନୁଷ୍ୟବ୍ୟତିରକ୍ତାନାଂ ଶ୍ରେୟସି ପ୍ରବୃତ୍ତିରେବ ନାସ୍ତି । ମନୁଷ୍ୟାଣାଂ ତୁ ସହସ୍ରେଷୁ ମଧ୍ୟେ କଶ୍ଚିଦେବ ପ୍ରକୃଷ୍ଟ ପୁଣ୍ୟବଶାତ୍ ସିଦ୍ଧୟେ ଆତ୍ମଜ୍ଞାନାୟ ପ୍ରଯତତେ । ପ୍ରଯତ୍ନ ବତାମପି ସହସ୍ରେଷୁ କଶ୍ଚିଦେବ ପ୍ରାକ୍ତନପୁଣ୍ୟବଶାତ୍ ଆତ୍ମାନଂ ବେତ୍ତି । ତାଦୃଶାନାଂ ଗୃତ୍ମଜ୍ଞାନଂ ସହସ୍ରେଷୁ କଶ୍ଚିଦେବ ମାଂ ପରମାତ୍ମାନଂ ମତ୍‌ପ୍ରସାଦେନ ତତ୍ତ୍ୱତୋ ବେତ୍ତି । ତଦେବମତିଦୁର୍ଲଭମପ୍ୟାତ୍ମତତ୍ତ୍ୱଂ ତୁଭ୍ୟମହଂ ପ୍ରବକ୍ଷ୍ୟାମୀତ୍ୟର୍ଥଃ ।

**ବିବୃତି**—ଏ ସଂସାରରେ ମନୁଷ୍ୟ ଛଡ଼ା ଅନ୍ୟ କୋଟି କୋଟି ଜୀବ ଅଛନ୍ତି । ସେମାନଙ୍କ ମଧ୍ୟରୁ କାହାରି ହେଲେ ଆତ୍ମଜ୍ଞାନ ଲାଭରେ ପ୍ରବୃତ୍ତି ମଧ୍ୟ ନାହିଁ । ମନୁଷ୍ୟମାନଙ୍କମଧ୍ୟରୁ ସହସ୍ରରେ ଜଣେ ଅବା କେହି ଆତ୍ମଜ୍ଞାନ ଲାଭପାଇଁ ଯତ୍ନ କରନ୍ତି । ଯେଉଁମାନେ ସେପରି ଯତ୍ନକରନ୍ତି ସେମାନଙ୍କ ମଧ୍ୟରୁ ଅନେକଙ୍କର ନାନାକାରଣରୁ ଆତ୍ମଜ୍ଞାନ ଲାଭ ହୋଇପାରେ ନାହିଁ । ଯେଉଁମାନେ ଆତ୍ମଜ୍ଞାନ ଲାଭକରନ୍ତି ସେମାନଙ୍କ ମଧ୍ୟରୁ କେହି ବା ଆମ୍ଭଙ୍କୁ ସ୍ୱରୂପତଃ ଜାଣନ୍ତି । ଆମ୍ଭର ଅନୁଗ୍ରହ ନ ହେଲେ ଆମ୍ଭର ପ୍ରକୃତ ସ୍ୱରୂପ କେହି ଜାଣି ପାରନ୍ତି ନାହିଁ । ସେହି ହେତୁରୁ ଏଠାରେ 'ତତ୍ତ୍ୱତଃ' ପଦ ପ୍ରଯୁକ୍ତ ହୋଇଅଛି । ସେପରି ଦୁର୍ଲଭ ଆତ୍ମତତ୍ତ୍ୱ ତୁମ୍ଭଙ୍କୁ ଆମ୍ଭେ ଏଠାରେ କହିବୁଁ ।

୪ । **ଅନ୍ୱୟଦୀପିକା**—ଭୂମିଃ (ପୃଥିବୀ), ଆପଃ (ଜଳ), ଅନଳଃ (ତେଜଃ), ବାୟୁଃ (ବାୟୁ), ଖଂ (ଆକାଶ), ମନଃ, ବୁଦ୍ଧିଃ, ଅହଂକାର ଏବଚ (ମନ, ବୁଦ୍ଧି ଓ ଅହଂକାର) ଇୟଂ ମେ (ଏହା ଆମ୍ଭର) ଅଷ୍ଟଧା (ଅଠପ୍ରକାର) ଭିନ୍ନା ପ୍ରକୃତିଃ (ଭିନ୍ନ ପ୍ରକୃତି) ।

**ଅନୁବାଦ**—କ୍ଷିତି, ଅପ୍, ତେଜ, ମରୁତ୍, ବ୍ୟୋମ ବା ପୃଥିବୀ, ଜଳ, ତେଜ, ବାୟୁ, ଆକାଶ, ମନ, ବୁଦ୍ଧି ଓ ଅହଂକାର—ଆମ୍ଭର ପ୍ରକୃତି ଏହି ଅଠ ଭାଗରେ ବିଭକ୍ତ ।

**ସୁବୋଧିନୀ ଟୀକା**—ଏବଂ ଶ୍ରୋତାରମଭିମୁଖୀକୃତ୍ୟେଦାନୀଂ ପ୍ରକୃତି ଦ୍ୱାରା ସୃଷ୍ଟ୍ୟାଦିକର୍ତ୍ତୃତ୍ୱେନେଶ୍ୱରତତ୍ତ୍ୱଂ ପ୍ରତିଜ୍ଞାତଂ ନିରୂପୟିଷ୍ୟନ୍ ପରାପର-ଭେଦେନ ପ୍ରକୃତିଦ୍ୱୟମାହ—ଭୂମିରିତି ଦ୍ୱାଭ୍ୟାମ୍ । ଭୂମ୍ୟାଦିଶବ୍ଦୈଃ ପଞ୍ଚଗନ୍ଧାଦି ତନ୍ମାତ୍ରାଣ୍ୟୁଚ୍ୟନ୍ତେ । ମନଃ ଶବ୍ଦେନ ତତ୍କାରଣଭୂତୋଽହଂକାରଃ । ବୁଦ୍ଧିଶବ୍ଦେନ ତତ୍କାରଣଂ ମହତ୍ତ୍ୱଂ । ଅହଂକାର ଶବ୍ଦେନ ତତ୍କାରଣମବିଦ୍ୟା ।

ଅପରେୟମିତସ୍ତ୍ୱନ୍ୟାଂ ପ୍ରକୃତିଂ ବିଦ୍ଧି ମେ ପରାମ୍ ।
ଜୀବଭୂତାଂ ମହାବାହୋ ଯୟେଦଂ ଧାର୍ଯ୍ୟତେ ଜଗତ୍ ॥ ୫ ॥

ଇତ୍ୟେବମଷ୍ଟଧା ଭିନ୍ନା । ଯଦ୍ୱା ଭୂମ୍ୟାଦଶବ୍ଦୈଃ ପଞ୍ଚ ମହାଭୂତାନି ସୂକ୍ଷ୍ମୈଃ ସହୈକୀକୃତ୍ୟ ଗୃହ୍ୟନ୍ତେ । ଅହଂକାରଶବ୍ଦେନୈବାହଂକାରଃ । ତେନୈବ ତତ୍‌କାର୍ଯ୍ୟାଣୀନ୍ଦ୍ରିୟାଣ୍ୟପି ଗୃହ୍ୟନ୍ତେ । ବୁଦ୍ଧିରିତି ମହତ୍ତତ୍ତ୍ୱମ୍ । ମନଃଶବ୍ଦେନ ତୁ ମନସୈବୋନ୍ନେୟମବ୍ୟକ୍ତରୂପଂ ପ୍ରଧାନମିତି । ଅନେନ ପ୍ରକାରେଣ ମେ ପ୍ରକୃତି-ର୍ମାୟାଖ୍ୟା ଶକ୍ତିରଷ୍ଟଧା ଭିନ୍ନା ବିଭାଗଂ ପ୍ରାପ୍ତା । ଚତୁର୍ବିଂଶତିଭେଦଭିନ୍ନାଽପ୍ୟଷ୍ଟ ସ୍ୱେବାନ୍ତର୍ଭାବବିବକ୍ଷୟାଷ୍ଟଧା ଭିନ୍ନେତ୍ୟୁକ୍ତମ୍ । ତଥାଚ କ୍ଷେତ୍ରାଧ୍ୟାୟେ ଇମା-ମେବ ପ୍ରକୃତିଂ ଚତୁର୍ବିଂଶତିତତ୍ତ୍ୱାତ୍ମନା ପ୍ରପଞ୍ଚୟିଷ୍ୟତି—ମହାଭୂତାନ୍ୟହଂକାରୋ ବୁଦ୍ଧିରବ୍ୟକ୍ତମେବ ଚ । ଇନ୍ଦ୍ରିୟାଣି ଦଶୈକଂ ଚ ପଞ୍ଚ ଚେନ୍ଦ୍ରିୟଗୋଚରାଃ । ଇତି ।

୫ । **ଅନ୍ୱୟଦୀପିକା**—ମହାବାହୋ (ହେ ମହାବାହୁ) ଇୟଂ ତୁ (ଏହା) ଅପରା (ଅପରା ପ୍ରକୃତି) ଇତଃ ପରାଂ (ଏହାଠାରୁ ଶ୍ରେଷ୍ଠ) ଅନ୍ୟାଂ (ଅନ୍ୟ) ଜୀବଭୂତାଂ (ଜୀବରୂପ) ମେ (ଆମ୍ଭର) ପ୍ରକୃତିଂ (ପ୍ରକୃତି) ବିଦ୍ଧି (ଜାଣ), ଯୟା (ଯାହାଦ୍ୱାରା) ଇଦଂ (ଏହି) ଜଗତ୍ (ଜଗତ୍) ଧାର୍ଯ୍ୟତେ (ଧରାହୋଇ ରହିଅଛି) ।

**ଅନୁବାଦ**—ପୂର୍ବେ ଯେଉଁ ଅଠ ପ୍ରକୃତି କଥା କୁହାଗଲା ତାହା ଆମ୍ଭର ଅପରା ପ୍ରକୃତି, ଏହା ଭିନ୍ନ ଆମ୍ଭର ଜୀବରୂପ ପରା ପ୍ରକୃତି ଅଛି; ହେ ମହାବାହୁ, ଏହି ପରାପ୍ରକୃତିହିଁ ଜଗତକୁ ଧାରଣ କରିଅଛି ।

**ସୁବୋଧିନୀ ଟୀକା**—ଅପରାମିମାଂ ପ୍ରକୃତିମୁପସଂହରନ୍ ପରାଂ ପ୍ରକୃତି-ମାହ—ଅପରେୟମିତି । ଅଷ୍ଟଧା ଯା ପ୍ରକୃତିରୁକ୍ତାୟମପରା ନିକୃଷ୍ଟା ଜଡ଼ତ୍ୱାତ୍, ପରାର୍ଥତ୍ୱାଚ, ଇତଃ ସକାଶାତ୍ ପରାଂ ପ୍ରକୃଷ୍ଟାଂ ଅନ୍ୟାଂ ଜୀବଭୂତାଂ ଜୀବସ୍ୱରୂପାଂ ମେ ପ୍ରକୃତିଂ ଜାନୀହି । ପରତ୍ୱେ ହେତୁଃ । ଯୟା ଚେତନୟା କ୍ଷେତ୍ରଜ୍ଞ-ସ୍ୱରୂପୟା ସ୍ୱକର୍ମଦ୍ୱାରେଣ ଇଦଂ ଜଗଦ୍ଧାର୍ଯ୍ୟତେ ।

**ବିବୃତି**—ଚତୁର୍ଥ ଶ୍ଳୋକରୁ କ୍ଷରାକ୍ଷର ବିଚାର ଆରମ୍ଭ ହୋଇଅଛି । ସୃଷ୍ଟିତତ୍ତ୍ୱ ନିରୂପଣ ସମ୍ବନ୍ଧରେ ହିନ୍ଦୁମାନଙ୍କର ଭିନ୍ନ ଭିନ୍ନ ଦର୍ଶନଶାସ୍ତ୍ର ଭିନ୍ନ ଭିନ୍ନ ମତ ପ୍ରଚାର କରିଅଛନ୍ତି । ମହର୍ଷି କପିଳଙ୍କ ପ୍ରଣୀତ ସାଂଖ୍ୟ ଦର୍ଶନହିଁ ପ୍ରାମାଣିକ ପ୍ରାଚୀନ ଦର୍ଶନ । ବେଦାନ୍ତ ଦର୍ଶନରେ ମଧ୍ୟ ସୃଷ୍ଟିତତ୍ତ୍ୱ ଆଲୋଚିତ ହୋଇଅଛି । ଚତୁର୍ଥ ଓ ପଞ୍ଚମ ଶ୍ଳୋକରେ ଭଗବାନ୍ ସୃଷ୍ଟିତତ୍ତ୍ୱ ସମ୍ବନ୍ଧରେ ଯାହା କହିଅଛନ୍ତି

ତାହା କେତେକାଂଶରେ ସାଂଖ୍ୟଦର୍ଶନର ଅନୁରୂପ, ମାତ୍ର ସମ୍ପୂର୍ଣ୍ଣରୂପେ ସାଂଖ୍ୟ ଦର୍ଶନର ମତ ନୁହେଁ ।

ସାଂଖ୍ୟ ଦର୍ଶନ ମତରେ ଅଚେତନ ଜଡ଼ ପ୍ରକୃତି ଓ ସଚେତନ ପୁରୁଷ—ଏ ଦୁହିଙ୍କ ସଂଯୋଗରେ ସୃଷ୍ଟିରେ ସମସ୍ତ ପଦାର୍ଥର ଉତ୍ପତ୍ତି ହୋଇଅଛି । ଏ ଦୁହିଙ୍କ ଛଡ଼ା ଅନ୍ୟ ତତ୍ତ୍ୱ ନାହିଁ । ଏହି ଦୁଃଖମୟ ସଂସାରରୁ ଉଦ୍ଧାର ପାଇବାର ଏକମାତ୍ର ଉପାୟ—ଏହି ପ୍ରକୃତି ଓ ପୁରୁଷର ପାର୍ଥକ୍ୟ ଜ୍ଞାନ ଓ ପଞ୍ଚବିଂଶତି ତତ୍ତ୍ୱର ଜ୍ଞାନ । ପ୍ରକୃତି ଓ ପୁରୁଷର ପାର୍ଥକ୍ୟ ଜ୍ଞାନ ହେଲେ ଏ ସୃଷ୍ଟି ପ୍ରପଞ୍ଚ କଅଣ ଓ ଏହା ସହିତ ଆତ୍ମାର ସମ୍ବନ୍ଧ କଅଣ ଏହା ଜଣାଯାଏ । ପଞ୍ଚବିଂଶତି ତତ୍ତ୍ୱ ମଧ୍ୟରୁ ପ୍ରକୃତି ଓ ପୁରୁଷ ଦୁଇଟି ବାଦ ଦେଲେ ବାକି ୨୩ଟି ପ୍ରକୃତିର ବିକାର । ମହତ୍ତତ୍ତ୍ୱ, ମହତ୍ତତ୍ତ୍ୱର ବିକାର ଅହଂକାରତତ୍ତ୍ୱ, ଅହଂକାରର ବିକାର ପଞ୍ଚତନ୍ମାତ୍ର ଓ ଏକାଦଶ ଇନ୍ଦ୍ରିୟ, ପଞ୍ଚତନ୍ମାତ୍ରର ବିକାର ପଞ୍ଚ ମହାଭୂତ—ଏହି ୨୩ଟି ପ୍ରକୃତିର ବିକାର । ସାଂଖ୍ୟଦର୍ଶନ ଈଶ୍ୱର ବିଶ୍ୱାସ କରେ ନାହିଁ; ଜୀବାତ୍ମା ହିଁ ପୁରୁଷ ନାମରେ ପରିଚିତ ।

କିନ୍ତୁ ଗୀତାରେ ସୃଷ୍ଟିର ମୂଳକାରଣ ପ୍ରକୃତି ଓ ପୁରୁଷ—ଏହି ଦ୍ୱୈତ ସମର୍ଥିତ ହୋଇ ନାହିଁ । ଈଶ୍ୱର-ବାଦ ହିଁ ଗୀତାର ମୁଖ୍ୟ ବିଷୟ । ତେଣୁ ପ୍ରକୃତି ଓ ପୁରୁଷଙ୍କୁ ଏକ ପରମେଶ୍ୱରଙ୍କର ଦୁଇ ବିଭୂତି ବୋଲି ଧରି ଏ ଦୁଇ ଶ୍ଳୋକରେ ଭଗବାନ୍ କହୁଅଛନ୍ତି, ଜଡ଼ ପ୍ରକୃତି ନିମ୍ନ ଶ୍ରେଣୀର ବିଭୂତି ଏବଂ ଜୀବ ଅର୍ଥାତ୍ ପୁରୁଷ ଉଚ୍ଚ ଶ୍ରେଣୀସ୍ଥ ବିଭୂତି । ଏହି ପରା ଏବଂ ଅପରା ପ୍ରକୃତିରୁ ସ୍ଥାବର-ଜଙ୍ଗମ ସମସ୍ତର ସୃଷ୍ଟି ହୋଇଅଛି (ଗୀତା ୧୩।୨୬) ଜୀବାତ୍ମା ଅର୍ଥାତ୍ ପରାପ୍ରକୃତିର ବିସ୍ତାରିତ ଆଲୋଚନା କ୍ଷେତ୍ରଜ୍ଞ ଦୃଷ୍ଟିରେ ତ୍ରୟୋଦଶ ଅଧ୍ୟାୟରେ କରାଯାଇଅଛି । ଏଠାରେ ଅପରା ପ୍ରକୃତି ସମ୍ବନ୍ଧରେ କୁହାଯାଇଅଛି ଯେ—ଏହା ସ୍ୱତନ୍ତ୍ର ନୁହେଁ । ପରମେଶ୍ୱରଙ୍କ ଅଧ୍ୟକ୍ଷତାରେ ଏଥିରୁ ସମସ୍ତ ସୃଷ୍ଟି ହୋଇଅଛି । ପ୍ରକୃତିକୁ ସ୍ୱତନ୍ତ୍ର ବୋଲି ନ ମାନିଲେ ବି ସାଂଖ୍ୟଶାସ୍ତ୍ରରେ ପ୍ରକୃତିର ଯେଉଁ ଭେଦ ଅଛି ଗୀତାରେ ଭଗବାନ୍ କିଞ୍ଚିତ୍ ପରିବର୍ତ୍ତିତ ଆକାରରେ ତାହା ଗ୍ରହଣ କରିଅଛନ୍ତି । ଚତୁର୍ଥ ଶ୍ଳୋକରେ କ୍ଷିତି, ଅପ୍, ତେଜଃ, ମରୁତ୍, ବ୍ୟୋମ ଓ ମନ, ବୁଦ୍ଧି ଓ ଅହଂକାର ଏସବୁକୁ ପ୍ରକୃତି ବୋଲି କୁହାଯାଇଅଛି । ସାଂଖ୍ୟମତରେ ଏସବୁ ବିକୃତି । ତେଣୁ ଟୀକାକାରମାନେ କହନ୍ତି ଏ ସ୍ଥଳରେ ପଞ୍ଚସ୍ଥୂଳ ଭୂତ ସ୍ଥାନରେ ସେମାନଙ୍କର କାରଣ ପଞ୍ଚ ତନ୍ମାତ୍ର, ମନଃ ଶବ୍ଦ ଦ୍ୱାରା ତାହାର କାରଣ ଅହଂକାର, ବୁଦ୍ଧି ଶବ୍ଦ ଦ୍ୱାରା ତାହାର କାରଣ ମହତ୍ତତ୍ତ୍ୱ, ଅହଂକାର ଶବ୍ଦଦ୍ୱାରା ତାହାର କାରଣ ଅବିଦ୍ୟା ବା ପ୍ରକୃତିକୁହିଁ ଲକ୍ଷ୍ୟ କରାଯାଇ ଅଛି । (ଶ୍ରୀଧରସ୍ୱାମୀଙ୍କ ଟୀକା)

ଏତଦ୍‌ଯୋନୀନି ଭୂତାନି ସର୍ବାଣୀତ୍ୟୁପଧାରୟ ।
ଅହଂ କୃତ୍ସ୍ନସ୍ୟ ଜଗତଃ ପ୍ରଭବଃ ପ୍ରଳୟସ୍ତଥା । ୬ ।
ମତ୍ତଃ ପରତରଂ ନାନ୍ୟତ୍ କିଞ୍ଚିଦସ୍ତି ଧନଞ୍ଜୟ ।
ମୟି ସର୍ବମିଦଂ ପ୍ରୋତଂ ସୂତ୍ରେ ମଣିଗଣାଇବ । ୭ ।

**୬ । ଅନ୍ୱୟଦୀପିକା**—ସର୍ବାଣି ଭୂତାନି ( ସ୍ଥାବର ଜଙ୍ଗମାତ୍ମକ ସର୍ବଭୂତ) ଏତଦ୍‌ଯୋନୀନି (ଏହି ଉଭୟ ପ୍ରକୃତିରୁ ଜାତ) ଇତି ଉପଧାରୟ (ଏହା ଜାଣ ) । ଅହଂ (ଆମ୍ଭେ) କୃତ୍ସ୍ନସ୍ୟ ( ସମଗ୍ର ) ଜଗତଃ (ଜଗତର) ପ୍ରଭବଃ (ଉତ୍ପତ୍ତିର କାରଣ) ତଥା ପ୍ରଳୟଃ (ବିନାଶର କାରଣ) ।

**ଅନୁବାଦ**—ସ୍ଥାବରଜଙ୍ଗମାତ୍ମକ ସମସ୍ତ ଭୂତ ଏହି ଦୁଇ ପ୍ରକୃତିରୁ ଜାତ ଏବଂ ଆମ୍ଭେ ସମସ୍ତ ଜଗତର ଉତ୍ପତ୍ତି ଓ ବିନାଶର କାରଣ ଅଟୁଁ— ଏହା ତୁମ୍ଭେ ଜାଣ ।

**ସୁବୋଧିନୀ ଟୀକା**—ଅନୟୋଃ ପ୍ରକୃତିତ୍ୱଂ ଦର୍ଶୟନ୍ ସ୍ୱସ୍ୟ ତଦ୍ୱାରା ସୃଷ୍ଟ୍ୟାଦିକାରଣତ୍ୱମାହ, ଏତଦ୍‌ଯୋନୀନୀତି ଏତେ କ୍ଷେତ୍ରକ୍ଷେତ୍ରଜ୍ଞ ରୂପେ ପ୍ରକୃତୀ ଯୋନୀ କାରଣଭୂତେ ଯେଷାଂ ତାନ୍ୟେତଦ୍‌ଯୋନୀନି ସ୍ଥାବରଜଙ୍ଗମାତ୍ମକାନି ସର୍ବାଣି ଭୂତାନୀତି ଉପଧାରୟ ବୁଧ୍ୟସ୍ୱ । ତତ୍ର ଜଡ଼ା ପ୍ରକୃତିର୍ଦେହରୂପେଣ ପରିଣମତେ ଚେତନା ତୁ ମଦଂଶରୂପା ଭୋକ୍ତୃତ୍ୱେନ ଦେହେଷୁପ୍ରବିଶ୍ୟ ସ୍ୱକର୍ମଣା ତାନି ଧାରୟତି । ତେ ଚ ମଦୀୟେ ପ୍ରକୃତୀ ମତ୍ତଃ ସମ୍ଭୂତେ ଅତୋଽହମେବ କୃତ୍ସ୍ନସ୍ୟ ସପ୍ରକୃତିକସ୍ୟ ଜଗତଃ ପ୍ରଭବଃ ପ୍ରକର୍ଷେଣ ଭବତି ଅସ୍ମାଦିତି ପରମ-କାରଣ ମିତ୍ୟର୍ଥଃ । ପ୍ରଲୀୟତେ ଅନେନେତି ପ୍ରଳୟଃ ସଂହର୍ତ୍ତାପ୍ୟହମେବେତ୍ୟର୍ଥଃ ।

**ବିବୃତି**—ସ୍ଥାବର ଓ ଜଙ୍ଗମ ରୂପେ ଏ ଜଗତରେ ଯାହା କିଛି ଅଛି ସେସବୁ ଅପରା ଓ ପରା ଦୁଇ ପ୍ରକୃତିରୁ ଜାତ ହୁଅନ୍ତି । ଅଚେତନା ଅପରା ପ୍ରକୃତି ଦେହ ରୂପେ (କ୍ଷେତ୍ର) ପରିଣାମ ପ୍ରାପ୍ତ ହୁଏ । ଚେତନା ପରାପ୍ରକୃତି ବା ଜୀବ ଯେ ସୁଖଦୁଃଖ ଭୋଗ କରିବା ପାଇଁ ଦେହରୂପ କ୍ଷେତ୍ରରେ ଅଛନ୍ତି ସେ ପରା ପ୍ରକୃତିରୁ ଜାତ । ଏହି ଉଭୟ ପ୍ରକୃତି ଆମ୍ଭଠାରୁ ଜାତ, ତେଣୁ ଆମ୍ଭେ ପ୍ରକୃତି ସହିତ ଏହି ସମସ୍ତ ଜଗତର ଉତ୍ପତ୍ତି କର୍ତ୍ତା ଅଟୁଁ । ପ୍ରଳୟରେ ଏ ସମସ୍ତ ଆମ୍ଭଠାରେ ଲୟପ୍ରାପ୍ତ ହୁଏ, ତେଣୁ ଆମ୍ଭେ ସମସ୍ତ ଜଗତର ସଂହାରକର୍ତ୍ତା ମଧ୍ୟ ।

**୭ । ଅନ୍ୱୟଦୀପିକା**—ଧନଞ୍ଜୟ (ହେ ଅର୍ଜୁନ) ମତ୍ତଃ (ଆମ୍ଭଠାରୁ) ପରତରଂ (ଶ୍ରେଷ୍ଠ) ଅନ୍ୟତ୍ କିଞ୍ଚିତ୍ (ଅନ୍ୟ କିଛି) ନାସ୍ତି (ନାହିଁ) । ସୂତ୍ରେ ମଣିଗଣାଇବ (ସୂତାରେ ଗ୍ରଥିତ ମଣିସମୂହ ପରି) ମୟି (ଆମ୍ଭଠାରେ) ଇଦଂ ସର୍ବଂ (ଏ ସମସ୍ତ) ପ୍ରୋତଂ ( ଗ୍ରଥିତ, ଗୁନ୍ଥା ହୋଇଅଛି ) ।

ରସୋଽହମପ୍ସୁ କୌନ୍ତେୟ ପ୍ରଭାସ୍ମି ଶଶିସୂର୍ଯ୍ୟୟୋଃ ।
ପ୍ରଣବଃ ସର୍ବବେଦେଷୁ ଶବ୍ଦଃ ଖେ ପୌରୁଷଂ ନୃଷୁ ॥ ୮ ॥

**ଅନୁବାଦ**—ହେ ଅର୍ଜୁନ, ଅମ୍ଭ ଅପେକ୍ଷା ଶ୍ରେଷ୍ଠ ଅନ୍ୟ କିଛ ପରମାର୍ଥ ତତ୍ତ୍ୱ ନାହିଁ । ସୂତାରେ ମଣିସବୁ ଗୁନ୍ଥା ହେଲପରି ଏ ସମସ୍ତ ଜଗତ୍ ଅମ୍ଭଙ୍କୁ ଆଶ୍ରୟ କରି ରହିଅଛ ।

**ସୁବୋଧିନୀ ଟୀକା**—ଯସ୍ମାଦେବଂ ତସ୍ମାନ୍ମତ୍ତ ଇତି । ମତ୍ତଃ ସକାଶାତ୍ ପରତରଂ ଶ୍ରେଷ୍ଠଂ ଜଗତଃ ସୃଷ୍ଟିସଂହାରୟୋଃ ସ୍ୱତନ୍ତ୍ରଂ କାରଣଂ କିଞ୍ଚିଦପି ନାସ୍ତି । ସ୍ଥିତିହେତୁରପ୍ୟହମେବେତ୍ୟାହ, ମୟୀତି । ମୟି ସର୍ବମିଦଂ ଜଗତ୍ ପ୍ରୋତଂ ଗ୍ରଥିତଂ ଆଶ୍ରିତମିତ୍ୟର୍ଥଃ, ଦୃଷ୍ଟାନ୍ତ ସ୍ପଷ୍ଟଃ ।

୮ । **ଅନ୍ୱୟଦୀପିକା**—କୌନ୍ତେୟ (ହେ ଅର୍ଜୁନ) ଅହଂ (ଅମ୍ଭେ) ଅପ୍ସୁ ( ଜଳ ମଧ୍ୟରେ ) ରସଃ (ରସ) । ଶଶିସୂର୍ଯ୍ୟୟୋଃ ( ଚନ୍ଦ୍ରସୂର୍ଯ୍ୟଙ୍କଠାରେ) ପ୍ରଭା (ପ୍ରଭା), ସର୍ବବେଦେଷୁ ( ସବୁ ବେଦରେ ) ପ୍ରଣବଃ (ଓଁକାର), ଖେ (ଆକାଶରେ) ଶବ୍ଦଃ ( ଶବ୍ଦ ), ନୃଷୁ ( ମନୁଷ୍ୟମାନଙ୍କ ମଧ୍ୟରେ ) ପୌରୁଷମ୍ ( ପୌରୁଷ ବା ଉଦ୍ୟମ) ଅସ୍ମି ( ଅଟୁଁ ) ।

• **ଅନୁବାଦ**—ହେ ଅର୍ଜୁନ, ଜଳ ମଧ୍ୟରେ ରସରୂପରେ ଏବଂ ଚନ୍ଦ୍ରସୂର୍ଯ୍ୟଙ୍କଠାରେ ପ୍ରଭାରୂପରେ ଅମ୍ଭେ ବିଦ୍ୟମାନ ଅଛୁ । ପ୍ରଣବ (ଓଁ) ବେଦର ମୂଳ, ଅମ୍ଭେ ସେହି ଓଁକାର, ଆକାଶରେ ଶବ୍ଦ ରୂପରେ ଏବଂ ପୁରୁଷମାନଙ୍କଠାରେ ପୌରୁଷ ବା ଉଦ୍ୟମ ରୂପରେ ବିଦ୍ୟମାନ ଅଟୁଁ ।

**ସୁବୋଧିନୀ ଟୀକା**—ଜଗତଃ ସ୍ଥିତିହେତୁତ୍ୱମେବ ପ୍ରପଞ୍ଚୟତି—ରସୋଽହମିତି ପଞ୍ଚଭିଃ । ଅପ୍ସୁ ରସୋଽହଂ ରସତନ୍ମାତ୍ରରୂପୟା ବିଭୂତ୍ୟା । ତଦାଶ୍ରୟତ୍ୱେନାପ୍ସୁ ସ୍ଥିତୋଽହମିତ୍ୟର୍ଥଃ । ତଥା ଶଶିସୂର୍ଯ୍ୟୟୋଃ ପ୍ରଭାସ୍ମି, ଚନ୍ଦ୍ରେ ସୂର୍ଯ୍ୟେ ଚ ପ୍ରକାଶରୂପୟା ବିଭୂତ୍ୟା ତଦାଶ୍ରୟତ୍ୱେନ ସ୍ଥିତୋଽହମିତ୍ୟର୍ଥଃ । ଉତ୍ତରତ୍ରାପ୍ୟେବଂ ଦ୍ରଷ୍ଟବ୍ୟମ୍ । ସର୍ବେଷୁ ବେଦେଷୁ ବୈଖରୀରୂପେଷୁ ତନ୍ମୂଳଭୂତଃ ପ୍ରଣବଃ ଓଁକାରଃ ଅସ୍ମି । ଖେ ଆକାଶେ ଶବ୍ଦଃ ଶବ୍ଦତନ୍ମାତ୍ରରୂପୋଽସ୍ମି । ନୃଷୁ ପୁରୁଷେଷୁ ପୌରୁଷମୁଦ୍ୟମୋଽସ୍ମି । ଉଦ୍ୟମେ ହି ପୁରୁଷାସ୍ତିଷ୍ଠନ୍ତି ।

**ବିବୃତି**—ପରମେଶ୍ୱର ବ୍ରହ୍ମାଣ୍ଡର ସର୍ବତ୍ର ଅବ୍ୟକ୍ତ ରୂପରେ ବିଦ୍ୟମାନ ଅଛନ୍ତି । ମନୁଷ୍ୟ ସ୍ଥୂଳ ଦୃଷ୍ଟିରେ ସେସବୁ ଦେଖି ପାରେ ନାହିଁ । ମାତ୍ର ପରମାତ୍ମ-ଦୃଷ୍ଟି କୋଣରେ ଦେଖିଲେ ସର୍ବତ୍ର ଐଶୀସତ୍ତା ମନୁଷ୍ୟ ଦେଖିପାରିବ । ପରବର୍ତ୍ତୀ ଦଶମ ଅଧ୍ୟାୟରେ ଭଗବାନ୍ ତାଙ୍କର ବ୍ୟକ୍ତ ବିଭୂତି ବିସ୍ତାରିତରୂପେ ବର୍ଣ୍ଣନ କରିବେ । ଏଠାରେ ତନ୍ମଧ୍ୟରୁ କେତେକ ପରିଦୃଶ୍ୟମାନ ଓ ସହଜରେ ଅନୁଭବଯୋଗ୍ୟ ବିଭୂତିର ସୂଚନା କରୁଅଛନ୍ତି ।

ପୁଣ୍ୟୋ ଗନ୍ଧଃ ପୃଥିବ୍ୟାଂ ଚ ତେଜଶ୍ଚାସ୍ମି ବିଭାବସୌ ।
ଜୀବନଂ ସର୍ବଭୂତେଷୁ ତପଶ୍ଚାସ୍ମି ତପସ୍ୱିଷୁ । ୯ ।

ସେହିପରି ଜଳର ତନ୍ମାତ୍ର ବା ମୂଳତତ୍ତ୍ୱ, ଜଳରେ ରସ ରୂପରେ ଭଗବାନ୍ ବିଦ୍ୟମାନ ଅଛନ୍ତି । ପ୍ରଭା ବା ତେଜଃ ଚନ୍ଦ୍ରସୂର୍ଯ୍ୟଙ୍କ ସାର ବା ମୂଳତତ୍ତ୍ୱ, ଈଶ୍ୱରଙ୍କ ସତ୍ତା ଭିନ୍ନ ତାହା ଅନ୍ୟ କିଛି ନୁହେ । ଆକାଶର ମୂଳତତ୍ତ୍ୱ ଶବ୍ଦ, ତାହା ଭଗବତ୍ ସତ୍ତାର ସ୍ଫୁରଣ, ଓଁକାର ଭିନ୍ନ ବେଦର କୌଣସି ମନ୍ତ୍ରର ଶକ୍ତି ରହେ ନାହିଁ; ଭଗବାନ୍‌ହିଁ ସେହି ଓଁକାରରୂପୀ । ଭଗବାନ୍‌ହିଁ ପ୍ରତ୍ୟେକ ପୁରୁଷଠାରେ ଉଦ୍ୟମ ବା ତେଜଃ ରୂପରେ ବିଦ୍ୟମାନ ଅଛନ୍ତି । 'ମୁଁ ଯୁଦ୍ଧରେ ଜୟକଲି', 'ମୁଁ ନୂତନ ବୈଜ୍ଞାନିକ ସତ୍ୟ ଉଦ୍ଭାବନ କଲି', ଏ ସବୁକଥା ମନୁଷ୍ୟର ଅହଂଭାବର ପରିଚୟ । ଐଶୀସତ୍ତାହିଁ ଜଗତରେ ସବୁକାର୍ଯ୍ୟ କରୁଅଛି । ଅନ୍ତର୍ଦୃଷ୍ଟିସମ୍ପନ୍ନ ହେଲେ ମନୁଷ୍ୟ ଏହା ବୁଝିପାରିବ । ମହାଭାରତରେ ବର୍ଣ୍ଣିତ ଅଛି—କୁରୁକ୍ଷେତ୍ର ଯୁଦ୍ଧ ଶେଷରେ ଭଗବାନ ଶ୍ରୀକୃଷ୍ଣ ପୃଥିବୀରୁ ଅନ୍ତର୍ହିତ ହେଲା ପରେ ମହାରଥ ସବ୍ୟସାଚୀ ଅର୍ଜୁନ ଲଗୁଡ଼ଧାରୀ କେତେକ କୃଷକଙ୍କ ଦ୍ୱାରା ପରାସ୍ତ ହୋଇଥିଲେ । ଏଥିରୁ ବୁଝାପାଉଅଛି, ଯେଉଁ ପୌରୁଷ ବଳରେ ଅର୍ଜୁନ କୁରୁକ୍ଷେତ୍ର ଯୁଦ୍ଧରେ ଜୟୀ ହୋଇଥିଲେ ତାହା ଐଶୀଶକ୍ତି; ସେ କ୍ଷେତ୍ରରେ ଅର୍ଜୁନ ନିମିତ୍ତମାତ୍ର ଥିଲେ ।

୯ । **ଅନ୍ୱୟଦୀପିକା**—[ଅହଂ] ପୃଥିବ୍ୟାଂ (ପୃଥିବୀରେ) ପୁଣ୍ୟଃ ଗନ୍ଧଃ (ପବିତ୍ରଗନ୍ଧ); ବିଭାବସୌ (ଅଗ୍ନିରେ) ତେଜଃ ଅସ୍ମି (ତେଜ ଅଟେ), ସର୍ବଭୂତେଷୁ (ସବୁ ପ୍ରାଣୀଙ୍କ ଭିତରେ) ଜୀବନଂ (ଜୀବନ ରୂପରେ ବିଦ୍ୟମାନ ଅଛି), ତପସ୍ୱିଷୁ ଚ ( ଏବଂ ତପସ୍ୱୀମାନଙ୍କଠାରେ) ତପଃ ଅସ୍ମି (ଅହଂ ତପସ୍ୟା ରୂପରେ ବିଦ୍ୟମାନ ଅଛି) ।

**ଅନୁବାଦ**—ଅହଂ ପୃଥିବୀରେ ପବିତ୍ରଗନ୍ଧ ରୂପରେ, ଅଗ୍ନିରେ ତେଜ ରୂପରେ, ସର୍ବଭୂତରେ ଜୀବନ ରୂପରେ ଓ ତପସ୍ୱୀମାନଙ୍କଠାରେ ତପସ୍ୟା ରୂପରେ ବିଦ୍ୟମାନ ଅଛି ।

**ସୁବୋଧିନୀ ଟୀକା**—କିଞ୍ଚ ପୁଣ୍ୟ ଇତି । ପୁଣ୍ୟୋଽବିକୃତୋ ଗନ୍ଧୋ-ଗନ୍ଧତନ୍ମାତ୍ରମ୍ । ପୃଥିବ୍ୟା ଆଶ୍ରୟଭୂତୋଽହମିତ୍ୟର୍ଥଃ । ଯଦ୍ୱା ବିଭୂତିରୂପେଣା-ଽସ୍ୟୈବ ବିବକ୍ଷିତତ୍ୱାତ୍ ସୁରଭିଗନ୍ଧସ୍ୟୈବୋଦ୍ଭୂତତ୍ୱୋ ବିଭୂତିତ୍ୱାତ୍ ପୁଣ୍ୟୋ ଗନ୍ଧ ଇତ୍ୟୁକ୍ତମ୍ । ତଥା ବିଭାବସାବଗ୍ନୌ ଯତ୍ତେଜୋ ଦୁଃସହା ସହଜା ଦୀପ୍ତି-ସ୍ତଦହମ୍ । ସର୍ବଭୂତେଷୁ ଜୀବନଂ ପ୍ରାଣଧାରିଣମାୟୁରହମିତ୍ୟର୍ଥଃ । ତପସ୍ୱିଷୁ ବାନପ୍ରସ୍ଥାଦିଷୁ ଦ୍ୱନ୍ଦ୍ୱସହନରୂପଂ ତପୋଽସ୍ମି ।

ବୀଜଂ ମାଂ ସର୍ବଭୂତାନାଂ ବିଦ୍ଧି ପାର୍ଥ ସନାତନମ୍ ।
ବୁଦ୍ଧିର୍ବୁଦ୍ଧିମତାମସ୍ମି ତେଜସ୍ତେଜସ୍ୱିନାମହମ୍ । ୧୦ ।
ବଳଂ ବଳବତାଂ ଚାହଂ କାମରାଗବିବର୍ଜିତମ୍ ।
ଧର୍ମାବିରୁଦ୍ଧୋ ଭୂତେଷୁ କାମୋଽସ୍ମି ଭରତର୍ଷଭ । ୧୧ ।

**୧୦ । ଅନ୍ୱୟଦୀପିକା—** ପାର୍ଥ ( ହେ ଅର୍ଜ୍ଜୁନ ), ମାଂ (ଆମ୍ଭକୁ) ସର୍ବଭୂତାନାଂ (ସବୁପ୍ରାଣୀଙ୍କର) ସନାତନଂ (ମୂଳ ଅବିନାଶୀ) ବୀଜଂ (କାରଣ) [ବୋଲି] ବିଦ୍ଧି (ଜାଣ) । ଅହଂ (ଆମ୍ଭେ) ବୁଦ୍ଧିମତାଂ (ବୁଦ୍ଧିମାନ୍ ଲୋକଙ୍କର) ବୁଦ୍ଧିଃ (ବୁଦ୍ଧି) ତେଜସ୍ୱିନାଂ ଚ (ଏବଂ ତେଜସ୍ୱୀମାନଙ୍କର) ତେଜଃ ଅସ୍ମି (ତେଜ ଅଟୁଁ) ।

**ଅନୁବାଦ—** ହେ ଅର୍ଜ୍ଜୁନ, ଆମ୍ଭକୁ ସକଳ ପ୍ରାଣୀଙ୍କର ମୂଳକାରଣ ବୋଲି ଜାଣ; ଆମ୍ଭେ ବୁଦ୍ଧିମାନ୍ ଲୋକମାନଙ୍କର ବୁଦ୍ଧି ଓ ତେଜସ୍ୱୀମାନଙ୍କର ତେଜଃ ସ୍ୱରୂପ ଅଟୁଁ ।

**ସୁବୋଧିନୀ ଟୀକା—** କିଞ୍ଚ-ସର୍ବେଷାଂ ଚରାଚରାଣାଂ ଭୂତାନାଂ ବୀଜଂ ସଜାତୀୟକାର୍ଯ୍ୟୋତ୍ପାଦନସାମର୍ଥ୍ୟଂ । ସନାତନଂ ନିତ୍ୟଂ ଉତ୍ତରୋତ୍ତର ସର୍ବକାର୍ଯ୍ୟେଷ୍ୱନୁସ୍ୟୂତଂ । ତଦେବ ବୀଜଂ ମଦ୍‌ବିଭୂତିଂ ବିଦ୍ଧି, ନ ତୁ ପ୍ରତିବ୍ୟକ୍ତିଭିନ୍ନଂ ନଶ୍ୟତ୍ ତଥା ବୁଦ୍ଧିମତାଂ ବୁଦ୍ଧିଃ ପ୍ରଜ୍ଞାହମସ୍ମି । ତେଜସ୍ୱିନାଂ ପ୍ରଗଲ୍‌ଭାନାଂ ତେଜଃ ପ୍ରାଗଲ୍‌ଭ୍ୟମହଂ ।

**୧୧ । ଅନ୍ୱୟଦୀପିକା—** ଭରତର୍ଷଭ ( ହେ ଭରତ କୁଳଶ୍ରେଷ୍ଠ) ଅହଂ (ଆମ୍ଭେ) ବଳବତାଂ (ବଳବାନ୍ ଲୋକମାନଙ୍କର) କାମରାଗବିବର୍ଜ୍ଜିତଂ ( କାମରାଗଶୂନ୍ୟ ) ବଳଂ (ବଳ) ଭୂତେଷୁ (ପ୍ରାଣୀମାନଙ୍କ ମଧ୍ୟରେ) ଧର୍ମାବିରୁଦ୍ଧ ( ଧର୍ମର ଅବିରୋଧୀ ) କାମଃ ( ଅଭିଳାଷ ) ଅସ୍ମି ( ଅଟୁଁ ) ।

**ଅନୁବାଦ—** ହେ ଭରତକୁଳଶ୍ରେଷ୍ଠ, ଆମ୍ଭେ ବଳବାନ୍ ଲୋକମାନଙ୍କର କାମରାଗଶୂନ୍ୟ ବଳ ଏବଂ ପ୍ରାଣୀମାନଙ୍କର ଧର୍ମର ଅବିରୋଧୀ କାମ ।

**ସୁବୋଧିନୀ ଟୀକା—** କିଞ୍ଚ ବଳମିତି । କାମୋଽପ୍ରାପ୍ତେ ବସ୍ତୁନ୍ୟଭିଳାଷୋ ରଜସଃ । ରାଗଃ ପୁନରଭିଳଷିତେଽର୍ଥେ ପ୍ରାପ୍ତେଽପି ପୁନରଧିକେଽର୍ଥେ ଚିତ୍ତରଞ୍ଜନାତ୍ମକସ୍ତୃଷ୍ଣାପରପର୍ଯ୍ୟାୟସ୍ତାମସଃ । ତାଭ୍ୟାଂ ବିବର୍ଜିତଂ ବଳବତାଂ ବଳମହମସ୍ମି । ସାତ୍ତ୍ୱିକଂ ସ୍ୱଧର୍ମାନୁଷ୍ଠାନ ସାମର୍ଥ୍ୟମହମିତ୍ୟର୍ଥଃ । ଧର୍ମେଣାବିରୁଦ୍ଧଃ ସ୍ୱଦାରେଷୁ ପୁତ୍ରୋତ୍ପାଦନମାତ୍ରୋପଯୋଗୀ କାମୋଽହମିତି ।

**ବିବୃତି—** ଏଠାରେ ଭଗବାନ୍ କହୁଅଛନ୍ତି—ଆମ୍ଭେ ବଳବାନ୍ ଲୋକଙ୍କଠାରେ କାମରାଗଶୂନ୍ୟ ବଳ, ଅପ୍ରାପ୍ତବସ୍ତୁ ପାଇବା ପାଇଁ ଯେଉଁ

ଯେ ଚୈବ ସାତ୍ତ୍ୱିକା ଭାବା ରାଜସାସ୍ତାମସାଶ୍ଚ ଯେ ।
ମତ୍ତ ଏବେତି ତାନ୍ ବିଦ୍ଧି ନତ୍ୱହଂ ତେଷୁତେ ମୟି ।୧୨।

ଅଭିଳାଷ ଜାତ ହୁଏ ତାହାକୁ 'କାମ' ବୋଲାଯାଏ,—ଏହା ରଜୋଗୁଣରୁ ଜାତ ଏବଂ ପ୍ରାପ୍ତବସ୍ତୁରେ ଯେଉଁ ଅନୁରାଗ ବା ଆସକ୍ତି ଜାତ ହୁଏ ତାକୁ 'ରାଗ' ବୋଲାଯାଏ,—ଏହାର ଅନ୍ୟ ନାମ ତୃଷ୍ଣା—ଏହା ତମୋଗୁଣରୁ ଉତ୍ପନ୍ନ । ବଳବାନ୍‌ମାନଙ୍କଠାରେ ଯେଉଁ ବଳ ତାହା ସାତ୍ତ୍ୱିକବଳ ବୋଲି ବୁଝିବାକୁ ହେବ, ଭଗବାନହିଁ ପ୍ରାଣୀମାନଙ୍କଠାରେ କାମରୂପରେ ବିଦ୍ୟମାନ ଅଛନ୍ତି, କିନ୍ତୁ ସେ କାମ ଧର୍ମର ଅବିରୋଧୀ ଅର୍ଥାତ୍ ଗାର୍ହସ୍ଥ୍ୟ ଧର୍ମର ଅନୁକୂଳ ନିଜ ପତ୍ନୀଙ୍କଠାରେ ପୁତ୍ର ଉତ୍ପାଦନମାତ୍ର ଉପଯୋଗୀ । ଫଳତଃ ମନୁଷ୍ୟର ଯେଉଁ ବୃତ୍ତି ପବିତ୍ରଭାବ-ବିଶିଷ୍ଟ ତାହାହିଁ ଭଗବାନ୍‌ଙ୍କର ବିଭୂତି ।

**୧୨ । ଅନ୍ୱୟଦୀପିକା**—ଯେ ଚ ଏବ (ଯେଉଁ ସମସ୍ତ) ସାତ୍ତ୍ୱିକାଃ (ସତ୍ତ୍ୱଗୁଣ ପ୍ରଧାନ) ରାଜସାଃ (ରଜୋଗୁଣ ପ୍ରଧାନ) ତାମସାଃ (ତମୋଗୁଣ ପ୍ରଧାନ) ଭାବାଃ (ଭାବ) ତାନ୍ ସର୍ବାନ୍ (ସେ ସମସ୍ତଙ୍କୁ) ମତ୍ତଃ ଏବ (ଆମ୍ଭଠାରୁହିଁ) [ଉତ୍ପନ୍ନ] ବିଦ୍ଧି (ଜାଣ); ତେଷୁ (ସେହି ସମସ୍ତ ମଧ୍ୟରେ) ଅହଂ ନ (ଆମ୍ଭେ ନାହୁଁ), ତୁ (କିନ୍ତୁ) ତେ (ସେ ସବୁ) ମୟି (ଆମ୍ଭଠାରେ) [ଅଛନ୍ତି] ।

**ଅନୁବାଦ**—ସାତ୍ତ୍ୱିକ, ରାଜସିକ, ତାମସିକ—ଯେତେ ପ୍ରକାର ଭାବ ଅଛି ସେ ସବୁ ଆମ୍ଭଠାରୁ ଜାତ ବୋଲି ଜାଣିବ । ଆମ୍ଭେ ସେ ସବୁ ଭାବ ମଧ୍ୟରେ ନ ଥାଉଁ, କିନ୍ତୁ ସେ ସବୁ ଭାବ ଆମ୍ଭ ମଧ୍ୟରେ ଥାଆନ୍ତି ।

**ସୁବୋଧିନୀ ଟୀକା**—କିଞ୍ଚ ଯେ ଚୈବେତି— ଯେ ଚାନ୍ୟେଽପି ସାତ୍ତ୍ୱିକା ଭାବାଃ ଶମଦମାଦୟଃ । ରାଜସାଶ୍ଚ ହର୍ଷଦର୍ପାଦୟଃ । ତାମସାଶ୍ଚ ଯେ ଶୋକମୋହାଦୟଃ ପ୍ରାଣିନାଂ ସ୍ୱକର୍ମବଶାତ୍ ଜାୟନ୍ତେ ତାନ୍ ସର୍ବାନ୍ ମତ୍ତ ଏବ ଜାତାନ୍ ବିଦ୍ଧି ମଦୀୟ ପ୍ରକୃତି ଗୁଣକାର୍ଯ୍ୟତ୍ୱାତ୍, ଏବ ମପି ତେଷ୍ୱହଂ ନ ବର୍ତ୍ତେ ଜୀବବତ୍ ତଦଧୀନୋଽହଂ ନ ଭବାମୀତ୍ୟର୍ଥଃ । ତେ ତୁ ମଦଧୀନାଃ ସନ୍ତୋ ମୟି ବର୍ତ୍ତନ୍ତ ଇତ୍ୟର୍ଥଃ ।

**ବିବୃତି**—ଶମ, ଦମ, ଜ୍ଞାନ, ବୈରାଗ୍ୟ ପ୍ରଭୃତି ସାତ୍ତ୍ୱିକ ଭାବ; ହର୍ଷ, ଦର୍ପ, ଲୋଭ ପ୍ରଭୃତି ରାଜସିକ ଭାବ ଏବଂ ଶୋକ, ମୋହ, ନିଦ୍ରା, ଆଳସ୍ୟ ପ୍ରଭୃତି ତାମସିକ ଭାବ । ମନୁଷ୍ୟର ପୂର୍ବଜନ୍ମ କର୍ମବଶରୁ ଏ ସବୁ ଜାତ ହେଲେହେଁ ପ୍ରକୃତରେ ଏସବୁ ଆମ୍ଭଠାରୁ ଜାତ ବୋଲି ଜାଣିବ । ପ୍ରକୃତିରୁ ଗୁଣ ସବୁର ଉତ୍ପତ୍ତି, ଆମ୍ଭଠାରୁ ପ୍ରକୃତିର ଉତ୍ପତ୍ତି, ଏପରି ଅବସ୍ଥାରେ ଆମ୍ଭେ ଏ ସବୁର ଉତ୍ପତ୍ତିସ୍ଥଳ । ସୁତରାଂ ସେମାନେ ଆମ୍ଭଙ୍କୁ ଆଶ୍ରୟ କରି ଥାଆନ୍ତି, କିନ୍ତୁ ଆମ୍ଭେ ସେମାନଙ୍କଠାରେ

ତ୍ରିଭିର୍ଗୁଣମୟୈର୍ଭାବୈରେଭିଃ ସର୍ବ ମିଦଂ ଜଗତ୍ ।
ମୋହିତଂ ନାଭି ଜାନାତି ମାମେଭ୍ୟଃ ପରମବ୍ୟୟମ୍ ।୧୩।
ଦୈବୀ ହ୍ୟେଷା ଗୁଣମୟୀ ମମ ମାୟା ଦୁରତ୍ୟୟା ।
ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେତାଂ ତରନ୍ତି ତେ । ୧୪ ।

ନ ଥାଉଁ, କାରଣ ଆମ୍ଭେ ଶମ, ଶାନ୍ତ, ନିର୍ବିକାର । ପ୍ରକୃତି ଆମ୍ଭଠାରୁ ଜାତ ହେଲେହେଁ ଆମ୍ଭେ ପ୍ରକୃତି ବିକାରର ଅଧୀନ ନୋହୁଁ । ମୂଳକଥା—ସାତ୍ତ୍ୱିକାଦିଗୁଣ ସବୁ ଆମ୍ଭର ଅଧୀନ, ଜୀବମାନଙ୍କ ପରି ଆମ୍ଭେ ସେ ସବୁ ଗୁଣର ଅଧୀନ ନୋହୁଁ ।

**୧୩ । ଅନ୍ୱୟଦୀପିକା**—ଏଭି (ଏହି) ତ୍ରିଭିଃ (ତିନି) ଗୁଣମୟୈଃ (ଗୁଣମୟ) ଭାବୈଃ (ଭାବଦ୍ୱାରା) ମୋହିତଂ (ମୋହିତ) ଇଦଂ (ଏହି) ସର୍ବଂ ଜଗତ୍ (ସମସ୍ତ ଜଗତ୍) ଏଭ୍ୟଃ ପରମ୍ (ଏହି ଭାବମାନଙ୍କଠାରୁ ଶ୍ରେଷ୍ଠ) ଅବ୍ୟୟଂ (ଅକ୍ଷୟ) ମାଂ (ଆମ୍ଭଙ୍କୁ) ନ ଅଭିଜାନାତି (ଜାଣିପାରେ ନାହିଁ) ।

**ଅନୁବାଦ**—ସତ୍ତ୍ୱ, ରଜଃ, ତମଃ—ଏହି ତ୍ରିବିଧ ଗୁଣମୟ ଭାବଦ୍ୱାରା ସମସ୍ତ ଜଗତ୍ ମୋହିତ ହୋଇ ରହିଅଛି; ତେଣୁ ଏହି ସମସ୍ତର ଅତୀତ ଏବଂ ଅବ୍ୟୟ ବୋଲି ଜଗତ୍ ଆମ୍ଭଙ୍କୁ ଜାଣିପାରେ ନାହିଁ ।

**ସୁବୋଧିନୀ ଟୀକା**—ଏବଂଭୂତମୀଶ୍ୱରଂ ତ୍ୱାମପି ଜନଃ କିମିତି ନ ଜାନାତୀତି । ଅତ ଆହ ତ୍ରିଭିରିତି । ତ୍ରିଭିର୍ବିଧୈରେଭିଃ ପୂର୍ବୋକ୍ତୈ-ର୍ଗୁଣମୟୈଃ କାମଲୋଭାଦିଭିର୍ଗୁଣବିକାରୈର୍ଭାବୈଃ ସ୍ୱଭାବୈର୍ମୋହିତମିଦଂ ଜଗତ୍ । ଅତୋ ମାଂ ନାଭିଜାନାତି । କଥଂଭୂତମ୍ ? ଏଭ୍ୟୋ ଭାବେଭ୍ୟଃ ପରଂ—ଏଷାଂ ସ୍ରଷ୍ଟାରମ୍—ଏତେଷାଂ ନିୟନ୍ତାରମ୍ । ଅତ ଏବାବ୍ୟୟଂ ନିର୍ବିକାର ମିତ୍ୟର୍ଥଃ ।

**ବିବୃତି**—ଭଗବାନ୍ ନାନା ବିଭୂତିସମ୍ପନ୍ନ, ତଥାପି ଲୋକମାନେ ତାଙ୍କୁ ଚିହ୍ନି ପାରନ୍ତି ନାହିଁ କାହିଁକି ? ଏହାର ଉତ୍ତରରେ ଭଗବାନ୍ କହୁଅଛନ୍ତି ଯେ ସାତ୍ତ୍ୱିକ, ରାଜସିକ ଓ ତାମସିକ ଏହି ତିନି ଭାବଦ୍ୱାରା ସମଗ୍ର ଜଗଦ୍‌ବାସୀ ଲୋକମାନେ ମୋହିତ ହୋଇ ରହିଅଛନ୍ତି । ତେଣୁ ଆମ୍ଭେ ଯେ ସେହି ଗୁଣମୟ ଭାବମାନଙ୍କ ଦ୍ୱାରା ଅସ୍ପୃଷ୍ଟ ଓ ସେହି ଭାବମାନଙ୍କର ନିୟନ୍ତା ତାହା ଲୋକେ ଜାଣି ପାରନ୍ତି ନାହିଁ । କାମଲରୋଗଦ୍ୱାରା ଆକ୍ରାନ୍ତ ହେଲେ ଲୋକ ଯେପରି ପଦାର୍ଥର ପ୍ରକୃତ ସ୍ୱରୂପ ଜାଣି ନ ପାରି ସମସ୍ତ ପଦାର୍ଥକୁ ପୀତବର୍ଣ୍ଣ ଦେଖେ ସେହିପରି ତ୍ରିଗୁଣମୟ ସ୍ୱଭାବଦ୍ୱାରା ଜଗତର ପ୍ରାଣୀ ମୋହିତ ହୋଇ ଆମ୍ଭର ସ୍ୱରୂପ ଅବଗତ ହୋଇ ପାରନ୍ତି ନାହିଁ ।

**୧୪ । ଅନ୍ୱୟଦୀପିକା**—ଏଷା (ଏହି) ଗୁଣମୟୀ (ତ୍ରିଗୁଣାତ୍ମିକା) ଦୈବୀ (ଅଲୌକିକ) ମମ ମାୟା (ଆମ୍ଭ ମାୟା) ହି ଦୁରତ୍ୟୟା (ନିତାନ୍ତ

ଦୁରତ୍ୟୟା), ଯେ ( ଯେଉଁମାନେ ) ମାମ୍ ଏବ ( ଆମ୍ଭକୁହିଁ ) ପ୍ରପଦ୍ୟନ୍ତେ (ଆଶ୍ରୟ କରନ୍ତି), ତେ ( ସେମାନେ ) ଏତାଂ ମାୟାଂ ( ଏହି ମାୟାକୁ ) ତରନ୍ତି (ଉତ୍ତୀର୍ଣ୍ଣ ହୁଅନ୍ତି) ।

**ଅନୁବାଦ**—ସତ୍ତ୍ୱାଦି ତ୍ରିଗୁଣାତ୍ମିକା ଆମ୍ଭର ଏହି ଅଲୌକିକୀମାୟା ନିତାନ୍ତ ଦୁସ୍ତର ଅର୍ଥାତ୍ ଆମ୍ଭ ମାୟାକୁ କେହି ସହଜରେ ପାର ହୋଇ ପାରନ୍ତି ନାହିଁ । ଯେଉଁମାନେ କେବଳ ଆମ୍ଭର ଶରଣାଗତ ହୋଇ ଭଜନା କରନ୍ତି, ସେହିମାନେହିଁ ଏ ମାୟାରୁ ଉତ୍ତୀର୍ଣ୍ଣ ହୋଇ ପାରନ୍ତି ।

**ସୁବୋଧିନୀ ଟୀକା**—କେ ତର୍ହି ତ୍ୱାଂ ଜାନନ୍ତୀତି ? ଅତ ଆହ— ଦୈବୀତି । ଦୈବ୍ୟଲୌକିକୀ । ଅତ୍ୟଦ୍ଭୁତେତ୍ୟର୍ଥଃ । ଗୁଣମୟୀ ସତ୍ତ୍ୱାଦି ଗୁଣ ବିକାରାତ୍ମିକା, ମମପରମେଶ୍ୱରସ୍ୟ ଶକ୍ତିର୍ମାୟା ଦୁରତ୍ୟୟା ଦୁସ୍ତରା ହି । ଯଦ୍ୟପ୍ୟେବମେତତ୍, ତଥାପି ମାମେବେତ୍ୟେବକାରେଣାବ୍ୟଭିଚାରିଣ୍ୟା ଭକ୍ତ୍ୟା ଯେ ପ୍ରପଦ୍ୟନ୍ତେ ଭଜନ୍ତି ମାୟାମେତାଂ ସୁଦୁସ୍ତରାମପି ତେ ତରନ୍ତି । ତତୋ ମାଂ ଜାନନ୍ତୀତି ଭାବଃ ।

**ବିବୃତି**—ଶ୍ଳୋକରେ ଭଗବାନ କହୁଅଛନ୍ତି ଆମ୍ଭର ଅଲୌକିକୀମାୟା ତ୍ରିଗୁଣାତ୍ମିକା ଅର୍ଥାତ୍ ସତ୍ତ୍ୱରଜଃତମୋଗୁଣମୟୀ । ପୂର୍ବ ଶ୍ଳୋକରେ କୁହାଯାଇ-ଅଛି ପ୍ରକୃତିର ତ୍ରିବିଧ ଗୁଣମୟ ଭାବଦ୍ୱାରା ସମସ୍ତ ଜଗତ୍ ମୋହିତ ହୋଇ ରହିଅଛି । ତେଣୁ ବୁଝା ଯାଉଅଛି ଯାହା ପ୍ରକୃତି, ତାହାହିଁ ମାୟା । ସାଙ୍ଖ୍ୟ ଦର୍ଶନରେ ଯାହାକୁ ପ୍ରକୃତି କହନ୍ତି, ବେଦାନ୍ତ ଦର୍ଶନରେ ତାହାକୁ ମାୟା, ଅବିଦ୍ୟା ବା ଅଜ୍ଞାନ ବୋଲାଯାଏ । ଏହି ମାୟା କଅଣ ବର୍ତ୍ତମାନ ତାହା ଦେଖିବା ।

ସୃଷ୍ଟିର ଆରମ୍ଭ ସମୟରେ ଅବ୍ୟକ୍ତ ଓ ନିର୍ଗୁଣ ପରବ୍ରହ୍ମ ଯେଉଁ ଦେଶ-କାଳାଦି ନାମରୂପାତ୍ମକ ସଗୁଣରୂପଦ୍ୱାରା ବ୍ୟକ୍ତ ଅର୍ଥାତ୍ ଦୃଶ୍ୟ ଜଗତରୂପରେ ପ୍ରତୀୟମାନ ହୁଅନ୍ତି ବେଦାନ୍ତ ଶାସ୍ତ୍ରରେ ତାହାହିଁ 'ମାୟା' ନାମରେ ଅଭିହିତ ହୁଏ । ଏହି ମାୟାକୁ କେହି କେହି 'କର୍ମ' ମଧ୍ୟ କହନ୍ତି, କାରଣ ପ୍ରଥମେ କୌଣସି ନା କୌଣସି କର୍ମ ବା ବ୍ୟାପାର ହେବା ବ୍ୟତୀତ ଅବ୍ୟକ୍ତର ବ୍ୟକ୍ତ ହେବା ବା ନିର୍ଗୁଣର ସଗୁଣ ହେବା ସମ୍ଭବ ନୁହେ । ତେଣୁ ଭଗବାନ ଏହି ଗୀତାର ଅଷ୍ଟମ ଅଧ୍ୟାୟର ୩ୟ ଶ୍ଳୋକରେ କହୁଅଛନ୍ତି 'ଭୂତଭାବୋଦ୍-ଭବକରୋ ବିସର୍ଗଃ କର୍ମ ସଞ୍ଜ୍ଞିତଃ' ଅର୍ଥାତ୍ ଅକ୍ଷର ବ୍ରହ୍ମଙ୍କଠାରୁ ପଞ୍ଚଭୂତାଦି ବିବିଧସୃଷ୍ଟିର ଯେଉଁ କ୍ରିୟା ତାହାହିଁ 'କର୍ମ' । ସାରକଥା କର୍ମର ଅର୍ଥ—ଦୃଶ୍ୟ ଜଗତର ସୃଷ୍ଟି ହେବା ସମୟରେ ନିର୍ଗୁଣ ବ୍ରହ୍ମରେ ଦୃଶ୍ୟମାନ ବ୍ୟାପାର । ଏହି ବ୍ୟାପାରକୁହିଁ ନାମରୂପାତ୍ମକ ମାୟା ବୋଲାଯାଏ । ଏହି ମୂଳକର୍ମରୁ ଚନ୍ଦ୍ରସୂର୍ଯ୍ୟାଦି ଜାଗତିକ ସମସ୍ତ ପଦାର୍ଥର ବ୍ୟାପାର ପରେ ପରମ୍ପରାକ୍ରମେ ଉତ୍ପନ୍ନ

ନ ମାଂ ଦୁଷ୍କୃତିନୋ ମୂଢ଼ାଃ ପ୍ରପଦ୍ୟନ୍ତେ ନରାଧମାଃ ।
ମାୟୟାଽପହୃତଜ୍ଞାନା ଆସୁରଂ ଭାବମାଶ୍ରିତାଃ । ୧୫ ।

ହୋଇଅଛି । ପୂର୍ବାଚାର୍ଯ୍ୟମାନେ ଜ୍ଞାନ ଦ୍ୱାରା ନିର୍ଣ୍ଣୟ କରିଅଛନ୍ତି ଯେ ଏହି ମାୟା ବ୍ରହ୍ମଙ୍କର ଏକ ଅଚିନ୍ତ୍ୟ ଲୀଳା । ଏକମାତ୍ର ବ୍ରହ୍ମହିଁ ସଦ୍‌ବସ୍ତୁ । ଏହିପରି ଦୃଶ୍ୟମାନ ଜଗତ୍ ଅସତ୍, ଯଥାର୍ଥରେ ଏହାର ପାରମାର୍ଥିକ ସତ୍ତା ନାହିଁ । ରଜ୍ଜୁ ବା ଦଉଡ଼ି ଉପରେ ଅଳ୍ପ ଅନ୍ଧକାର ପଡ଼ିଲେ ତାହା ଯେପରି ସର୍ପ ବୋଲି ପ୍ରତୀୟମାନ ହୁଏ, ପରବ୍ରହ୍ମଙ୍କ ଉପରେ ମାୟାରୂପ ଆବରଣ ପଡ଼ିବାରୁ ତାହା ଦୃଶ୍ୟ ଜଗତ୍ ରୂପରେ ଭ୍ରମ ହୁଏ । ଅନ୍ଧକାର ଅପସାରିତ ହୋଇଗଲେ ଯେପରି ସର୍ପ ଭ୍ରମ ଦୂର ହୁଏ, ସେହିପରି ମାୟା ଅପସାରିତ ହୋଇଗଲେ ଜଗତ୍ ଭ୍ରମ ଦୂର ହୋଇଯାଏ, ସେତେବେଳେ ଜ୍ଞାନ ହୁଏ ଯେ 'ସର୍ବଂ ଖଲ୍ୱିଦଂ ବ୍ରହ୍ମ' । ସାଙ୍ଖ୍ୟ ଦର୍ଶନ ଛଡ଼ା ଅନ୍ୟ ଦାର୍ଶନିକ ମତାବଲମ୍ବୀ ଓ ଶାସ୍ତ୍ରକାରମାନେ ସମସ୍ତେ ଏହି ମାୟାକୁ ବ୍ରହ୍ମଙ୍କର ଶକ୍ତି ବୋଲି ବିଶ୍ୱାସ କରନ୍ତି । ତନ୍ତ୍ରଶାସ୍ତ୍ରରେ ଏହି ମାୟାହିଁ ଶକ୍ତି ରୂପରେ ଉପାସ୍ୟ । ଏହାଙ୍କୁହିଁ ସାଧକ ଭକ୍ତ କାଳୀ, ତାରା, ଚଣ୍ଡୀ ପ୍ରଭୃତି ରୂପରେ ଅବସ୍ଥା ଭେଦରେ ପୂଜାକରି ସିଦ୍ଧିଲାଭ କରନ୍ତି । ସାଙ୍ଖ୍ୟୋକ୍ତ ପୁରୁଷ ଶିବ—ନିଷ୍କ୍ରିୟ, ଉଦାସୀନ, ଜ୍ଞାନ, ସାକ୍ଷୀ ଏବଂ ତାଙ୍କ ସମ୍ମୁଖରେ ପ୍ରକୃତି ବା ମାୟା 'ଶକ୍ତି' ରୂପରେ କ୍ରିୟାଶୀଳା ବା ନୃତ୍ୟପରା । ମଣିରେ ଯେପରି ସ୍ୱାଭାବିକ ତେଜ ଝଲସିଉଠେ, ସେହିପରି ମାୟା ଶକ୍ତିମୟ ବ୍ରହ୍ମରେ ସ୍ୱାଭାବିକ ସ୍ପନ୍ଦନ । ସେହି ହେତୁରୁ ଶ୍ରୀମତ୍ ଶଙ୍କରାଚାର୍ଯ୍ୟ 'ଆନନ୍ଦ-ଲହରୀ'ରେ ପ୍ରଥମେ କହିଅଛନ୍ତି:—

"ଶିବଃ ଶକ୍ତ୍ୟା ଯୁକ୍ତୋ ଯଦି ଭବତି ଶକ୍ତଃ ପ୍ରଭବିତୁମ୍,
ନ ଚେଦେବଂ ଦେବୋ ନ ଖଲୁ କୁଶଳଃ ସ୍ପନ୍ଦିତୁମପି"

ଶକ୍ତି ଯୁକ୍ତ ନ ହେଲେ ଶିବ ସୃଷ୍ଟି କରିବାରେ କ୍ଷମ ହୋଇ ପାରନ୍ତି ନାହିଁ । 'ଶିବ' ଶବ୍ଦରୁ ଶକ୍ତି ସ୍ୱରୂପ 'ଇକାର' ଉଠାଇନେଲେ ତାହା 'ଶବ' ହୋଇଯାଏ । ଇତ୍ୟାଦି ।

**୧୫ । ଅନ୍ୱୟଦୀପିକା**—ଦୁଷ୍କୃତିନଃ (ପାପକାରୀ), ମୂଢ଼ାଃ (ମୂଢ଼) ନରାଧମାଃ (ନରାଧମମାନେ) ମାୟୟା (ମାୟାଦ୍ୱାରା) ଅପହୃତ ଜ୍ଞାନାଃ (ହୃତଜ୍ଞାନ ହୋଇ) ଆସୁରଂ ଭାବଂ ଆଶ୍ରିତାଃ (ଅସୁରଭାବ ଆଶ୍ରୟପୂର୍ବକ) ମାଂ ନ ପ୍ରପଦ୍ୟନ୍ତେ (ଆମ୍ଭକୁ ଭଜନ୍ତି ନାହିଁ) ।

**ଅନୁବାଦ**—ପାପକାରୀ, ବିବେକଶୂନ୍ୟ ନରାଧମମାନେ ମାୟା ଦ୍ୱାରା ହୃତଜ୍ଞାନ ହୋଇ ଦମ୍ଭ, ଦର୍ପ, ଅଭିମାନ ପ୍ରଭୃତି ଅସୁରଭାବ ଆଶ୍ରୟପୂର୍ବକ ଆମ୍ଭକୁ ଭଜନ୍ତି ନାହିଁ ।

ଚତୁର୍ବିଧା ଭଜନ୍ତେ ମାଂ ଜନାଃ ସୁକୃତିନୋଽର୍ଜୁନ ।
ଆର୍ତ୍ତୋ ଜିଜ୍ଞାସୁରର୍ଥାର୍ଥୀ ଜ୍ଞାନୀ ଚ ଭରତର୍ଷଭ ।୧୬।

**ସୁବୋଧିନୀ ଟୀକା**—ଯଦ୍ୟେବଂ ସର୍ବେ ତ୍ୱାମେବ କମିତି ନ ଭଜନ୍ତି ? ତତ୍ରାହ—ନ ମାମିତି । ନରେଷୁ ଯେଽଧମାସ୍ତେ ମାଂ ନ ପ୍ରପଦ୍ୟନ୍ତେ ନ ଭଜନ୍ତି । ଅଧମତ୍ୱେ ହେତୁଃ—ମୂଢ଼ା ବିବେକଶୂନ୍ୟାଃ । ତତ୍ କୁତଃ ? ଦୁଷ୍କୃତିନଃ ପାପଶୀଳାଃ । ଅତୋ ମାୟୟାଽପହୃତଂ ନିରସ୍ତଂ ଶାସ୍ତ୍ରାଚାର୍ଯ୍ୟୋପଦେଶାଭ୍ୟାଂ ଜାତମପି ଜ୍ଞାନଂ ଯେଷାଂ ତେ ତଥା । ଅତଏବ ଦମ୍ଭୋ ଦର୍ପୋଽଭିମାନଶ୍ଚ କ୍ରୋଧଃ ପାରୁଷ୍ୟମେବ ଚେତ୍ୟାଦିନା ବକ୍ଷ୍ୟମାଣମାସୁରଂ ଭାବଂ ସ୍ୱଭାବଂ ପ୍ରାପ୍ତାଃ ସନ୍ତୋ ନ ମାଂ ଭଜନ୍ତି ।

**ବିବୃତି**—ପୂର୍ବ ଶ୍ଳୋକରେ ଭଗବାନ୍ କହିଅଛନ୍ତି—"ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେତାଂ ତରନ୍ତି ତେ" ଅର୍ଥାତ୍ ଯେଉଁମାନେ ଆମ୍ଭର ଆଶ୍ରିତ, ସେହିମାନେହିଁ ଏହି ମାୟାରୁ ଉଦ୍ଧାର ପାଆନ୍ତି । ବର୍ତ୍ତମାନ ପ୍ରଶ୍ନ ହୋଇପାରେ ସମସ୍ତେ କାହିଁକି ତୁମ୍ଭଙ୍କୁ ଆଶ୍ରୟ ନ କରନ୍ତି ? ଏହାର ଉତ୍ତରରେ କୁହା ଯାଉଅଛି —ଯେଉଁମାନେ ପାପସ୍ୱଭାବସମ୍ପନ୍ନ, ନରାଧମ ସେମାନଙ୍କର ହିତାହିତଜ୍ଞାନ ନ ଥାଏ, ଶାସ୍ତ୍ରପାଠ ଦ୍ୱାରା ଓ ଉପଦେଶ ଶୁଣିବା ଦ୍ୱାରା ସେମାନଙ୍କର ଯେଉଁ କ୍ଷଣିକ ଜ୍ଞାନ ହୁଏ, ତାହା ମାୟା ପ୍ରଭାବରେ ଅଳ୍ପ ସମୟ ପରେ ନଷ୍ଟ ହୋଇଯାଏ । ଦମ୍ଭ, ଦର୍ପ, ଅଭିମାନ ଓ କ୍ରୋଧାଦି ଅସୁରଭାବ ଦ୍ୱାରା ଅଭିଭୂତ ହୋଇ ସେମାନେ ସଂସାରରେ ଲିପ୍ତହୋଇ ରହନ୍ତି । ଏପରି ଅବସ୍ଥାରେ ଆମ୍ଭଙ୍କୁ ଭଜନା କରିବେ କପରି ?

**୧୬। ଅନ୍ୱୟଦୀପିକା**—ହେ. ଭରତର୍ଷଭ ଅର୍ଜୁନ ! ଆର୍ତ୍ତଃ (ରୋଗାଦିରେ କ୍ଲିଷ୍ଟ ବା ବିପଦ୍‌ଗ୍ରସ୍ତ), ଜିଜ୍ଞାସୁ (ତତ୍ତ୍ୱଜ୍ଞାନ ଲାଭ କରିବାକୁ ଇଚ୍ଛୁକ), ଅର୍ଥାର୍ଥୀ (ଭୋଗସୁଖାର୍ଥୀ), ଜ୍ଞାନୀ ଚ (ଏବଂ ଆତ୍ମଜ୍ଞାନସମ୍ପନ୍ନ) (ଏହି) ଚତୁର୍ବିଧାଃ (ଚାରିପ୍ରକାର) ସୁକୃତିନଃ (ପୁଣ୍ୟାତ୍ମା) ଜନାଃ (ଲୋକମାନେ) ମାଂ (ଆମ୍ଭଙ୍କୁ) ଭଜନ୍ତେ (ଭଜନ୍ତି) ।

**ଅନୁବାଦ**—ହେ ଭରତକୁଳଶ୍ରେଷ୍ଠ ଅର୍ଜୁନ, ଚାରିପ୍ରକାର ପୁଣ୍ୟାତ୍ମା ଲୋକ ଆମ୍ଭଙ୍କୁ ଭଜ୍ନା କରନ୍ତି । ୧—ଆର୍ତ୍ତ ଅର୍ଥାତ୍ ରୋଗାଦିରେ କ୍ଲିଷ୍ଟ ବା ବିପଦ୍‌ଗ୍ରସ୍ତ, ୨—ଜିଜ୍ଞାସୁ ଅର୍ଥାତ୍ ଜ୍ଞାନପ୍ରାପ୍ତିରେ ଅଭିଳାଷୀ, ୩—ଅର୍ଥାର୍ଥୀ ଅର୍ଥାତ୍ ଇହକାଳ ଓ ପରକାଳରେ ଯେ ସୁଖଭୋଗ ଆକାଂକ୍ଷା ରଖେ ଓ ୪—ଜ୍ଞାନୀ ଅର୍ଥାତ୍ ଆତ୍ମଜ୍ଞାନସମ୍ପନ୍ନ ବ୍ୟକ୍ତି ।

**ସୁବୋଧିନୀ ଟୀକା**—ସୁକୃତିନସ୍ତୁ ମାଂ ଭଜନ୍ତ୍ୟେବ । ତେ ଚ ସୁକୃତ-ତାରତମ୍ୟେନ ଚତୁର୍ବିଧା ଇତ୍ୟାହ । ଚତୁର୍ବିଧା ଇତି । ପୂର୍ବଜନ୍ମସୁ ଯେ କୃତପୁଣ୍ୟାଜନାସ୍ତେ ମାଂ ଭଜନ୍ତି ତେ ତୁ ଚତୁର୍ବିଧାଃ । ଆର୍ତ୍ତୋ ରୋଗାଦ୍ୟଭି-ଭୂତଃ, ସ ଚେତ୍ ପୂର୍ବଂ କୃତପୁଣ୍ୟସ୍ତର୍ହି ମାଂ ଭଜତି । ଅନ୍ୟଥା କ୍ଷୁଦ୍ରଦେବତା ଭଜନେନ ସଂସରତି, ଏବମୁତ୍ତରେଷ୍ୱପି ଦ୍ରଷ୍ଟବ୍ୟଂ, ଜିଜ୍ଞାସୁରାତ୍ମଜ୍ଞାନେଚ୍ଛୁଃ, ଅର୍ଥାର୍ଥୀ ଅତ୍ର ବା ପରତ୍ର ବା ଭୋଗସାଧନଭୂତାର୍ଥଲିପ୍ସୁଃ, ଜ୍ଞାନୀ ଚ ଆତ୍ମବିତ୍ ।

**ବିବୃତି**—ଭଗବଦ୍‌ଭକ୍ତମାନେ ସାଧାରଣତଃ ଦ୍ୱିବିଧ—ସକାମ ଓ ନିଷ୍କାମ । ଆର୍ତ୍ତ, ଜିଜ୍ଞାସୁ ଓ ଅର୍ଥାର୍ଥୀ—ଏ ତିନହେଁ ସକାମଭକ୍ତ, ଜ୍ଞାନୀ ଏକମାତ୍ର ନିଷ୍କାମଭକ୍ତ । ପ୍ରଥମାବସ୍ଥାରେ କାମନାପରବଶ ହୋଇ ଲୋକ ଈଶ୍ୱରଙ୍କୁ ଭକ୍ତି କରିବା ଶିଖେ; କ୍ରମେ କାମନା ଦୂର ହୋଇଗଲେ, ନିଷ୍କାମଭାବରେ ଅର୍ଥାତ୍ କର୍ତ୍ତବ୍ୟବୁଦ୍ଧିରେ ବା ଜ୍ଞାନଦୃଷ୍ଟିରେ ଭକ୍ତି କରେ । ଏହାର ଉଦାହରଣ:—

ଧ୍ରୁବ ପିତୃସିଂହାସନର ଅଧିକାରୀ ହେବା କାମନାରେ ତପସ୍ୟା କରିବାକୁ ଅରଣ୍ୟକୁ ଗଲେ । ତାଙ୍କର କଠିନ ତପଶ୍ଚରଣରେ ଭଗବାନ୍ ପ୍ରସନ୍ନହୋଇ ତାଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ ଓ ତାଙ୍କୁ ବର ମାଗିବାକୁ କହିଲେ । ମାତ୍ର ଭଗବଦ୍ଦର୍ଶନରେ ଧ୍ରୁବଙ୍କର କାମନା ଦୂର ହୋଇଯାଇଥିଲା, ସେ ଉତ୍ତରରେ କହିଲେ:—

"ସ୍ଥାନାଭିଲାଷୀ ତପସି ସ୍ଥିତୋଽହଂ,
ତ୍ୱାଂ ପ୍ରାପ୍ତବାନ୍ ଦେବ ମୁନୀନ୍ଦ୍ର ଗୁହ୍ୟମ୍ ।
କାଚଂ ବିଚିନ୍ୱନ୍ନପି ଦିବ୍ୟ ରତ୍ନଂ,
ସ୍ୱାମିନ୍ କୃତାର୍ଥୋଽସ୍ମି ବରଂ ନ ଯାଚେ ।" (ବିଷ୍ଣୁପୁରାଣ)

ପ୍ରଭୋ ! ସ୍ଥାନଅଭିଲାଷୀ ହୋଇ ମୁଁ ତପସ୍ୟା କରୁଥିଲି, କିନ୍ତୁ ମୁନିଜନଙ୍କର ଦୁଷ୍ପ୍ରାପ୍ୟ ତୁମ୍ଭଙ୍କୁ ପାଇଲି । କାଚ ଖୋଜୁ ଖୋଜୁ ଶ୍ରେଷ୍ଠ ଦିବ୍ୟରତ୍ନ ମୋର ହସ୍ତଗତ ହେଲା, ଏପରି ଅବସ୍ଥାରେ ମୁଁ କୃତାର୍ଥ ହୋଇଅଛି; ଆଉ ବର କଅଣ ମାଗିବି ?

ବିପଦରେ, ପଡ଼ି ବା ରୋଗାଦିରେ ଅଭିଭୂତ ହୋଇ ଯେଉଁମାନେ ଈଶ୍ୱରଙ୍କୁ ଡାକନ୍ତି ସେମାନେ ଆର୍ତ୍ତଭକ୍ତ । ଦ୍ରୌପଦୀ କୁରୁସଭାରେ ଅପମାନ ଭୟରେ ଭଗବାନଙ୍କୁ ଡାକିଥିଲେ, ତେଣୁ ସେ ଆର୍ତ୍ତଭକ୍ତ । ଅର୍ଜ୍ଜୁନ, ଉଦ୍ଧବ, ଜନକ ପ୍ରଭୃତି ଭକ୍ତଙ୍କୁ ଜିଜ୍ଞାସୁଭକ୍ତ କୁହାଯାଏ, ସେମାନେ ତତ୍ତ୍ୱଜ୍ଞାନ ଲାଭଆଶାରେ ଭକ୍ତିପରାୟଣ ହୋଇଥିଲେ । ଇହଲୋକ ଓ ପରଲୋକରେ ସୁଖଭୋଗ କାମନାରେ ଯେଉଁମାନେ ଭଗବାନଙ୍କୁ ଡାକନ୍ତି ସେମାନେ 'ଅର୍ଥାର୍ଥୀ' ଭକ୍ତଶ୍ରେଣୀସ୍ଥ । ସୁଗ୍ରୀବ, ବିଭୀଷଣ, ସୁଦାମା ପ୍ରଭୃତି ଅର୍ଥାର୍ଥୀ । ଶୁକ, ସନକ, ପ୍ରହ୍ଲାଦ, ପ୍ରଭୃତିଙ୍କ ପରି

ତେଷାଂ ଜ୍ଞାନୀ ନିତ୍ୟଯୁକ୍ତ ଏକଭକ୍ତିର୍ବିଶିଷ୍ୟତେ ।
ପ୍ରିୟୋ ହି ଜ୍ଞାନିନୋଽତ୍ୟର୍ଥମହଂ ସ ଚ ମମ ପ୍ରିୟଃ । ୧୭ ।
ଉଦାରାଃ ସର୍ବ ଏବୈତେ ଜ୍ଞାନୀ ତ୍ୱାତ୍ମୈବ ମେ ମତମ୍,
ଆସ୍ଥିତଃ ସ ହି ଯୁକ୍ତାତ୍ମା ମାମେବାନୁତ୍ତମାଂ ଗତିମ୍ । ୧୮ ।

ଯେଉଁମାନେ ଭୋଗାସକ୍ତି ଓ ଫଳକାମନା ତ୍ୟାଗ କରି କର୍ତ୍ତବ୍ୟବୁଦ୍ଧିରେ ଈଶ୍ୱରଙ୍କୁ ଭକ୍ତି କରନ୍ତି ସେମାନେ ଜ୍ଞାନୀଭକ୍ତ ।

୧୭ । **ଅନ୍ୱୟଦୀପିକା**—ତେଷାଂ (ସେମାନଙ୍କ ମଧ୍ୟରେ) ନିତ୍ୟଯୁକ୍ତଃ (ସର୍ବଦା ଆମ୍ଭଠାରେ ସମାହିତ ଚିତ୍ତ) ଏକଭକ୍ତିଃ(ଏକନିଷ୍ଠଭକ୍ତ) ଜ୍ଞାନୀ ବିଶିଷ୍ୟତେ (ଜ୍ଞାନୀ ସର୍ବୋତ୍କୃଷ୍ଟ ଅଟନ୍ତି) ଅହଂ ହି (ଆମ୍ଭେ) ଜ୍ଞାନିନଃ (ଜ୍ଞାନୀଙ୍କର) ଅତ୍ୟର୍ଥଂ ପ୍ରିୟଃ (ଅତୀବ ପ୍ରିୟ ଅଟୁଁ); ସ ଚ ମମ ପ୍ରିୟଃ (ସେ ମଧ୍ୟ ଆମ୍ଭର ପ୍ରିୟ ଅଟନ୍ତି) ।

**ଅନୁବାଦ**—ଏହି ଚତୁର୍ବିଧ ଭକ୍ତଙ୍କ ମଧ୍ୟରେ ଜ୍ଞାନୀ ଭକ୍ତହିଁ ଶ୍ରେଷ୍ଠ, କାରଣ ସେ ସର୍ବଦା ଆମ୍ଭଠାରେ ଅନୁରକ୍ତ ଓ ଏକନିଷ୍ଠ ଭକ୍ତ ଅଟନ୍ତି, ଆମ୍ଭେ ଜ୍ଞାନୀଙ୍କର ଅତ୍ୟନ୍ତ ପ୍ରିୟ ଏବଂ ସେ ମଧ୍ୟ ଆମ୍ଭର ପ୍ରିୟ ଅଟନ୍ତି ।

**ସୁବୋଧିନୀ ଟୀକା**—ତେଷାଂ ମଧ୍ୟେ ଜ୍ଞାନୀ ଶ୍ରେଷ୍ଠ ଇତ୍ୟାହ—ତେଷାମିତି । ତେଷାଂ ମଧ୍ୟେ ଜ୍ଞାନୀ ବିଶିଷ୍ୟତେ । ଅତ୍ର ହେତୁଃ—ନିତ୍ୟଯୁକ୍ତଃ ସଦାମନ୍ନିଷ୍ଠଃ, ଏକସ୍ମିନ୍ ମୟ୍ୟେବ ଭକ୍ତିର୍ଯସ୍ୟ ସଃ, ଜ୍ଞାନିନୋ ଦେହାଦ୍ୟଭିମାନାଭାବେନ ଚିତ୍ତବିକ୍ଷେପାଭାବାନ୍ନିତ୍ୟଯୁକ୍ତତ୍ୱମେକାନ୍ତଭକ୍ତିତ୍ୱଂ ଚ ସମ୍ଭବତି, ନାନ୍ୟସ୍ୟ, ଅତ ଏବ ହି ତସ୍ୟାହମତ୍ୟନ୍ତଂ ପ୍ରିୟଃ । ସ ଚ ମମ । ତସ୍ମାଦେତୌ ନିତ୍ୟଯୁକ୍ତତ୍ୱାଦଭିଷ୍ଟଭୂର୍ଭିର୍ଦ୍ୱେର୍ଭିରଃ ସ ଉତ୍ତମ ଇତ୍ୟର୍ଥଃ ।

**ବିବୃତି**—ସକାମ ଭକ୍ତମାନେ କାମନାସିଦ୍ଧିପାଇଁ ଆମ୍ଭଙ୍କୁ ଆଶ୍ରୟ କରିଥାନ୍ତି, ତେଣୁ ସେମାନେ ଏକାନ୍ତନିଷ୍ଠାସହ ଆମ୍ଭଙ୍କୁ ଭଜନକରି ପାରନ୍ତି ନାହିଁ । କିନ୍ତୁ ଜ୍ଞାନୀଭକ୍ତ ନିଷ୍କାମ, କୌଣସି ଫଳପ୍ରାପ୍ତିର କାମନା ତାଙ୍କର ନ ଥାଏ, ତେଣୁ ସେ ଏକନିଷ୍ଠ ଭକ୍ତ । ଏହା ବୋଲି ସକାମଭକ୍ତ ନିନ୍ଦନୀୟ ନୁହେଁ, ପରବର୍ତ୍ତୀ ଶ୍ଳୋକରେ ଭଗବାନ୍ ତାହାହିଁ କହୁଅଛନ୍ତି ।

୧୮ । **ଅନ୍ୱୟଦୀପିକା**—ଏତେ ସର୍ବେ ଏବ (ଏମାନେ ସମସ୍ତେହିଁ) ଉଦାରାଃ (ମହାନ୍ ବା ଶ୍ରେଷ୍ଠ ଅଟନ୍ତି); ତୁ (କିନ୍ତୁ) ଜ୍ଞାନୀ ମେ ଆତ୍ମା ଏବ ( ଜ୍ଞାନୀହିଁ ଆମ୍ଭର ଆତ୍ମାସ୍ୱରୂପ), ମତଂ (ଏହାହିଁ ଆମ୍ଭ ମତ), ହି (କାରଣ) ଯୁକ୍ତାତ୍ମା ସଃ (ମଦ୍‌ଗତଚିତ୍ତ ସେହି ଜ୍ଞାନୀ) ଅନୁତ୍ତମାଂ (ପରମା) ଗତିଂ (ଗତିସ୍ୱରୂପ) ମାମ୍ ଏବ (ଆମ୍ଭଙ୍କୁହିଁ) ଆସ୍ଥିତଃ (ଆଶ୍ରୟ କରି ଥାଆନ୍ତି) ।

ବହୂନାଂ ଜନ୍ମନାମନ୍ତେ ଜ୍ଞାନବାନ୍ ମାଂ ପ୍ରପଦ୍ୟତେ ।
ବାସୁଦେବଃ ସର୍ବମିତି ସ ମହାତ୍ମା ସୁଦୁର୍ଲ୍ଲଭଃ । ୧୯ ।

**ଅନୁବାଦ**—ଏମାନେ ସମସ୍ତେ ମହାନ୍ କିନ୍ତୁ ଜ୍ଞାନୀ ଆମ୍ଭର ଆତ୍ମସ୍ୱରୂପ, ଏହାହିଁ ଆମ୍ଭର ମତ ଅଟେ । କାରଣ ଜ୍ଞାନୀ ସର୍ବଦା ଆମ୍ଭଠାରେ ସମାହିତ ଥାଆନ୍ତି ଏବଂ ଆମ୍ଭଙ୍କୁ ସର୍ବୋତ୍କୃଷ୍ଟ ଗତିସ୍ୱରୂପ ମନେ କରି ଆମ୍ଭଙ୍କୁହିଁ ଆଶ୍ରୟ କରି ରହି-ଥାଆନ୍ତି ।

**ସୁବୋଧିନୀ ଟୀକା**—ତର୍ହି କିମିତରେ ଚତ୍ୱାରୋ ଭକ୍ତାଃ ସଂସରନ୍ତି ? ନହି ନହିତ୍ୟାହ—ଉଦାରଇତି, ସର୍ବେଽପ୍ୟେତେ ଉଦାରା ମହାନ୍ତୋ ମୋକ୍ଷଭାଜ ଏବେତ୍ୟର୍ଥଃ । ଜ୍ଞାନୀ ତୁ ମୁନରାତ୍ମୈବେତି ମେ ମତଂ ନିଶ୍ଚୟଃ । ହି ଯସ୍ମାତ୍ ସ ଜ୍ଞାନୀ ଯୁକ୍ତାତ୍ମା ମଦେକଚିତ୍ତଃ ସନ୍ ନ ବିଦ୍ୟତ ଉତ୍ତମା ଯସ୍ୟାସ୍ତାମନୁତ୍ତମାଂ ସର୍ବୋତ୍ତମାଂ ଗତିଂ ମାମେବାସ୍ଥିତ ଆଶ୍ରିତବାନ୍ । ମଦ୍ବ୍ୟତିରିକ୍ତମନ୍ୟତ୍ଫଳଂ ନ ମନ୍ୟତ ଇତ୍ୟର୍ଥଃ ।

**ବିବୃତି**—ପୂର୍ବଜନ୍ମାର୍ଜିତ ପୁଣ୍ୟଫଳ ନ ଥିଲେ—ପୂର୍ବୋକ୍ତ ଚାରିପ୍ରକାର ଭକ୍ତ ଆମ୍ଭଠାରେ ଅନୁରକ୍ତ ହୁଅନ୍ତେ ନାହିଁ । ତେଣୁ ସକାମ ହେଲେହେଁ ସେମାନେ ସମସ୍ତେ ମହାନ୍ । କିନ୍ତୁ ଜ୍ଞାନୀ ଏକାନ୍ତନିଷ୍ଠାସହକାରେ ଆମ୍ଭର ଆରାଧନା କରୁଥିବାରୁ ଓ ଆମ୍ଭଙ୍କୁ ସର୍ବଶ୍ରେଷ୍ଠ ଗତିରୂପେ ଆଶ୍ରୟ କରିଥିବାରୁ ତାଙ୍କର କୌଣସି ପ୍ରକାର ଫଳକାମନା ନ ଥାଏ । ଆମ୍ଭେ ତାଙ୍କର ଆତ୍ମସ୍ୱରୂପ, ତେଣୁ ସେ ମଧ୍ୟ ଆମ୍ଭର ଆତ୍ମସ୍ୱରୂପ; କାରଣ ଭକ୍ତ ଆମ୍ଭଙ୍କୁ ଯେଉଁପରେ ପ୍ରୀତି କରନ୍ତି, ଅମ୍ଭେ ତାଙ୍କୁ ସେହିପରେ ପ୍ରୀତି କରିଥାଉଁ ।

**୧୯ । ଅନ୍ୱୟ ଦୀପିକା**—ବହୂନାଂ (ଅନେକ) ଜନ୍ମନାମ୍ (ଜନ୍ମର) ଅନ୍ତେ (ଶେଷରେ) ବାସୁଦେବଃ ସର୍ବମ୍ ଇତି (ବାସୁଦେବହିଁ ସମସ୍ତ ଏହି ପ୍ରକାରେ) ଜ୍ଞାନବାନ୍ (ଜ୍ଞାନବାନ୍ ହୋଇ) ମାଂ (ଆମ୍ଭଙ୍କୁ) ପ୍ରପଦ୍ୟତେ (ପ୍ରାପ୍ତ ହୁଅନ୍ତି), ସଃ ମହାତ୍ମା (ସେ ମହାତ୍ମା) ସୁଦୁର୍ଲଭଃ (ଅତି ଦୁର୍ଲଭ ଅଟନ୍ତି) ।

**ଅନୁବାଦ**—ଜ୍ଞାନୀ ବ୍ୟକ୍ତି ବହୁ ଜନ୍ମ ଶେଷରେ—ସମସ୍ତ ଜଗତ୍ହିଁ ବାସୁଦେବ—ଏଭଳି ଜ୍ଞାନ ଲାଭକରି ଆମ୍ଭଙ୍କୁ ପାଆନ୍ତି । କିନ୍ତୁ ସେପରି ମହାତ୍ମା ସୁଦୁର୍ଲଭ ।

**ସୁବୋଧିନୀ ଟୀକା**—ଏବମ୍ଭୂତୋ ମଦ୍ଭକ୍ତୋଽତିଦୁର୍ଲଭ ଇତ୍ୟାହ-ବହୂନାମିତି । ବହୂନାଂ ଜନ୍ମନାଂ କିଞ୍ଚିତ୍ କିଞ୍ଚିତ୍ ପୁଣ୍ୟୋପଚୟେନାନ୍ତେ ଚରମେ ଜନ୍ମନି ଜ୍ଞାନବାନ୍ ସନ୍ ସର୍ବମିଦଂ ଚରାଚରଂ ବାସୁଦେବ ଏବେତି ସର୍ବାତ୍ମଦୃଷ୍ଟ୍ୟା ମାଂ ପ୍ରପଦ୍ୟତେ ଭଜତି । ଅତଃ ସ ମହାତ୍ମା ଅପରିଚ୍ଛିନ୍ନଦୃଷ୍ଟିଃ ସୁଦୁର୍ଲଭଃ ।

କାମୈସ୍ତୈସ୍ତୈର୍ହୃତଜ୍ଞାନାଃ ପ୍ରପଦ୍ୟନ୍ତେଽନ୍ୟଦେବତାଃ ।
ତଂ ତଂ ନିୟମମାସ୍ଥାୟ ପ୍ରକୃତ୍ୟା ନିୟତାଃ ସ୍ୱୟା । ୨୦ ।

**ବିବୃତି**—ଜ୍ଞାନୀ ଭକ୍ତ ପ୍ରତିଜନ୍ମରେ କିଛି କିଛି ପୁଣ୍ୟ ସଞ୍ଚୟ କରି ଶେଷଜନ୍ମରେ ଜ୍ଞାନବାନ୍ ହୋଇ 'ଚରାଚର ବାସୁଦେବମୟ' ଏହା ଜାଣି ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି । ସେପରି ମହାତ୍ମା ଏକାନ୍ତ ଦୁର୍ଲଭ । ଅର୍ଥାତ୍ ଜ୍ଞାନୀଭକ୍ତ ବହୁଜନ୍ମର ଚେଷ୍ଟାରେ ସର୍ବତ୍ର ଆମ୍ଭଙ୍କୁ ଦର୍ଶନକରି କୃତାର୍ଥ ହୁଅନ୍ତି । ଏହାହିଁ ଏ ଶ୍ଳୋକର ତାତ୍ପର୍ଯ୍ୟ ।

ପୁରାଣ ମତରେ ବସୁଦେବଙ୍କ ପୁତ୍ରରୂପରେ ଜନ୍ମ ଗ୍ରହଣ କରିଥିବାରୁ ଭଗବାନଙ୍କ ନାମ 'ବାସୁଦେବ' । କିନ୍ତୁ ବାସୁଦେବ ଶବ୍ଦର ବ୍ୟୁତ୍ପତ୍ତି ଅନ୍ୟ ପ୍ରକାର ।

ଛାଦୟାମି ଜଗତ୍ ସର୍ବଂ ଭୂତ୍ୱା ସୂର୍ଯ୍ୟ ଇବାଂଶୁଭିଃ,
ସର୍ବଭୂତାଧିବାସଶ୍ଚ ବାସୁଦେବ ସ୍ତତୋ ହ୍ୟହମ୍ । (ମହାଃ ଶାନ୍ତିପର୍ବ)

"ସୂର୍ଯ୍ୟ ଯେପରି କିରଣ ଦ୍ୱାରା ସମସ୍ତ ଜଗତ୍‌କୁ ଆଚ୍ଛାଦନ କରନ୍ତି, ଆମ୍ଭେ ସେହିପରି ସର୍ବଭୂତରେ ଅଧିଷ୍ଠିତ ଅଛୁଁ, ତେଣୁ ଆମ୍ଭେ ବାସୁଦେବ ଅଟୁଁ" ଏହାହିଁ ଭଗବାନଙ୍କର ଉକ୍ତି । 'ବାସୁଦେବ' ଶବ୍ଦ 'ବସ୍ ଆଚ୍ଛାଦନେ' ଏହି ଧାତୁରୁ ନିଷ୍ପନ୍ନ ।

**୨୦ । ଅନ୍ୱୟଦୀପିକା**—ତୈଃ ତୈଃ କାମୈଃ (ସେହି ସେହି କାମନାମାନଙ୍କ ଦ୍ୱାରା ଅର୍ଥାତ୍ ସ୍ତ୍ରୀ, ପୁତ୍ର, ଧନ, ସ୍ୱର୍ଗଲାଭ ପ୍ରଭୃତି କାମନା ଦ୍ୱାରା) ହୃତଜ୍ଞାନାଃ (ବିନଷ୍ଟଜ୍ଞାନ ଲୋକମାନେ) ତଂ ତଂ ନିୟମଂ (ସେହି ବିଷୟମାନଙ୍କରେ ବିହିତ ନିୟମ ସବୁ) ଆସ୍ଥାୟ (ଅବଲମ୍ବନପୂର୍ବକ) ସ୍ୱୟା (ନିଜ) ପ୍ରକୃତ୍ୟା (ପ୍ରକୃତି ଦ୍ୱାରା) ନିୟତାଃ (ବଶୀଭୂତ ହୋଇ) ଅନ୍ୟ ଦେବତାଃ (ଅନ୍ୟ ଦେବତାମାନଙ୍କୁ) ପ୍ରପଦ୍ୟନ୍ତେ (ଭଜନା କରନ୍ତି) ।

**ଅନୁବାଦ**—ସ୍ତ୍ରୀ, ପୁତ୍ର, ଧନ, ସ୍ୱର୍ଗ ପ୍ରଭୃତି କାମନାରେ ଯେଉଁମାନଙ୍କ ଜ୍ଞାନ ନଷ୍ଟ ହୋଇ ଯାଇଥାଏ, ସେମାନେ କ୍ଷୁଦ୍ର ଦେବତାଙ୍କ ଉପାସନାରେ ବ୍ରତ ଉପବାସାଦି ଯେଉଁ ସବୁ ନିୟମ ପ୍ରଚଳିତ ଅଛି, ନିଜ ସ୍ୱଭାବର ବଶୀଭୂତ ହୋଇ ସେହି ସବୁ ନିୟମ ପାଳନ କରି ଅନ୍ୟ ଦେବତାଙ୍କର ଉପାସନା କରନ୍ତି ।

**ସୁବୋଧିନୀ ଟୀକା**—ତଦେବଂ କାମିନୋଽପି ସନ୍ତଃ କାମପ୍ରାପ୍ତୟେ ପରମେଶ୍ୱରମେବ ଯେ ଭଜନ୍ତି ତେ କାମାନ୍ ପ୍ରାପ୍ୟ ଶନୈର୍ମୁଚ୍ୟନ୍ତ ଇତ୍ୟୁକ୍ତମ୍ । ଯେ ତ୍ୱତ୍ୟନ୍ତଂ ରାଜସାସ୍ତାମସାଶ୍ଚ କାମାଭିଭୂତାଃ କ୍ଷୁଦ୍ର ଦେବତାଃ ସେବନ୍ତେ ତେ ସଂସରନ୍ତୀତ୍ୟାହ—କାମୈରିତି ଚତୁର୍ଭିଃ । ଯେ ତୁ ତୈ ସ୍ତୈଃ ପୁତ୍ର କୀର୍ତ୍ତି ଶତ୍ରୁ-

ଯୋ ଯୋ ଯାଂ ଯାଂ ତନୁଂ ଭକ୍ତଃ ଶ୍ରଦ୍ଧୟାର୍ଚ୍ଚିତୁମିଚ୍ଛତି ।
ତସ୍ୟ ତସ୍ୟାଚଳାଂ ଶ୍ରଦ୍ଧାଂ ତାମେବ ବିଦଧାମ୍ୟହମ୍ । ୨୧ ।

କସ୍ମାଦ ବପର୍ଯ୍ୟୈଃ କାମୈରପହୃତବିବେକାଃ ସନ୍ତୋଽନ୍ୟାଃ କ୍ଷୁଦ୍ରା ଭୂତପ୍ରେତ-ଯକ୍ଷାଦ୍ୟା ଦେବତା ଭଜନ୍ତ । କଂ କୃତ୍ୱା ? ତତ୍ତଦ୍ଦେବତାରାଧନେ ଯୋ ଯୋ ନିୟମ ଉପବାସାଦିଲକ୍ଷଣ ସ୍ତଂ ସ୍ତଂ ନିୟମଂ ସ୍ୱୀକୃତ୍ୟ । ତତ୍ରାପି ସ୍ୱୟା ସ୍ୱୀୟୟା ପ୍ରକୃତ୍ୟା ପୂର୍ବାଭ୍ୟାସବାସନୟା ନିୟତା ବଶୀକୃତାଃ ସନ୍ତଃ ।

**ବିବୃତି**—ପୂର୍ବେ କୁହାଯାଇଅଛି ଯେଉଁମାନେ କାମପ୍ରାପ୍ତି ପାଇଁ ପରମେଶ୍ୱରଙ୍କର ଉପାସନା କରନ୍ତି ସେମାନେ କାମନାନୁରୂପ ଫଳପାଇ କ୍ରମେ ମୁକ୍ତ ହୁଅନ୍ତି, ମାତ୍ର ଯେଉଁମାନେ ଅତ୍ୟନ୍ତ ରାଜସିକ ଓ ତାମସିକ ସେମାନେ କାମନାନୁରୂପ ଫଳପାଇବା ପାଇଁ କ୍ଷୁଦ୍ର ଦେବତାମାନଙ୍କର ଉପାସନା କରନ୍ତି । ସେମାନେ କାମନାନୁରୂପ ଫଳ ପାଅନ୍ତି ସତ୍ୟ, ମାତ୍ର ଭଗବାନଙ୍କୁ ପାଇପାରନ୍ତି ନାହିଁ ।

୨୧ । **ଅନ୍ୱୟଦୀପିକା**—ଯଃ ଯଃ ଭକ୍ତଃ (ଯେଉଁ ଯେଉଁ ଭକ୍ତ) ଶ୍ରଦ୍ଧୟା (ଶ୍ରଦ୍ଧାଯୁକ୍ତ ହୋଇ ) ଯାଂ ଯାଂ ତନୁମ୍ (ଯେଉଁ ଯେଉଁ ଦେବମୂର୍ତ୍ତିଙ୍କୁ) ଅର୍ଚ୍ଚିତୁମ୍ ଇଚ୍ଛତି (ଅର୍ଚ୍ଚନା ବା ପୂଜା କରିବାକୁ ଇଚ୍ଛା କରନ୍ତି) ତସ୍ୟ ତସ୍ୟ (ସେହି ସେହି ଭକ୍ତଙ୍କର) ତାମ୍ ଏବ (ସେହି ଦେବମୂର୍ତ୍ତି ବିଷୟକ) ଅଚଳାଂ ଶ୍ରଦ୍ଧାଂ (ଅଚଳାଶ୍ରଦ୍ଧାକୁ) ଅହଂ (ଆମ୍ଭେ) ବିଦଧାମି (ବିଧାନ କରିଥାଉଁ) ।

**ଅନୁବାଦ**—ଯେଉଁ ଯେଉଁ ସକାମ ବ୍ୟକ୍ତି ଭକ୍ତିଯୁକ୍ତହୋଇ ଯେଉଁ ଯେଉଁ ଦେବମୂର୍ତ୍ତିକୁ ଶ୍ରଦ୍ଧାପୂର୍ବକ ଅର୍ଚ୍ଚନା କରିବାକୁ ଇଚ୍ଛା କରନ୍ତି, ଆମ୍ଭେ ଅନ୍ତର୍ଯ୍ୟାମୀ ରୂପରେ ସେହି ସେହି ବ୍ୟକ୍ତିଙ୍କର ଭକ୍ତିକୁ—ସେହି ସେହି ଦେବମୂର୍ତ୍ତିରେ ଦୃଢ଼ କରିଦେଉଁ ।

**ସୁବୋଧିନୀ ଟୀକା**—ଦେବତାବିଶେଷଂ ଯେ ଭଜନ୍ତି ତେଷାଂ ମଧ୍ୟେ—ଯୋ ଯ ଇତି, ଯୋ ଯୋ ଭକ୍ତୋ ଯାଂ ଯାଂ ତନୁଂ ଦେବତାରୂପାଂ ମଦୀୟାମେବ ମୂର୍ତ୍ତିଂ ଶ୍ରଦ୍ଧୟାର୍ଚ୍ଚିତୁମିଚ୍ଛତି ପ୍ରବର୍ତ୍ତତେ ତସ୍ୟ ତସ୍ୟ ଭକ୍ତସ୍ୟ ତତ୍ତନ୍ମୂର୍ତ୍ତି-ବିଷୟାଂ ତାମେବ ଶ୍ରଦ୍ଧାମଚଳାଂ ଦୃଢ଼ାମହମନ୍ତର୍ଯ୍ୟାମୀ ବିଦଧାମି କରୋମି ।

**ବିବୃତି**—ଯେଉଁମାନେ କାମନାସିଦ୍ଧି ପାଇଁ ଭିନ୍ନ ଭିନ୍ନ ଦେବତାଙ୍କର ଉପାସନା କରନ୍ତି, ଅନ୍ତର୍ଯ୍ୟାମୀ ଭଗବାନ୍ ସେହି ସେହି ଦେବମୂର୍ତ୍ତିରେ ଉପାସକଙ୍କର ଶ୍ରଦ୍ଧାକୁ ଦୃଢ଼ କରିଦଅନ୍ତି । ଭଗବାନ୍ ବିଶ୍ୱବ୍ୟାପୀ, ତେଣୁ ପ୍ରତି ଦେବମୂର୍ତ୍ତିରେ ତାଙ୍କର ସତ୍ତା ବିଦ୍ୟମାନ; ତେଣୁ ଭକ୍ତଙ୍କର ଶ୍ରଦ୍ଧାକୁ ସେହି ସେହି ଦେବମୂର୍ତ୍ତିରେ ଭଗବାନ୍ହିଁ ଦୃଢ଼ କରିଦଅନ୍ତି । ଏକମାତ୍ର ପରମ ପୁରୁଷହିଁ ସମସ୍ତ

ସ ତୟା ଶ୍ରଦ୍ଧୟା ଯୁକ୍ତସ୍ତସ୍ୟା ରାଧନମୀହତେ ।
ଲଭତେ ଚ ତତଃ କାମାନ୍ ମୟୈବ ବିହିତାନ୍ ହି ତାନ୍ ।୨୨।
ଅନ୍ତବତ୍ତୁ ଫଳଂ ତେଷାଂ ତଦ୍‌ଭବତ୍ୟଲ୍ପମେଧସାମ୍ ।
ଦେବାନ୍ ଦେବଯଜୋ ଯାନ୍ତି ମଦ୍‌ଭକ୍ତା ଯାନ୍ତି ମାମପି ।୨୩।

ପୂଜାର ଫଳଦାତା, ଲୋକେ ଯେ ଭାବରେ ପୂଜାକରନ୍ତୁ ନା କାହିଁକି ସର୍ବଥା ତାଙ୍କରହିଁ ପୂଜା କରିଥାଆନ୍ତି ।

୨୨ । **ଅନ୍ୱୟଦୀପିକା**—ସଃ (ସେହି ସକାମ ଦେବୋପାସକ) ତୟା ଶ୍ରଦ୍ଧୟା ଯୁକ୍ତଃ (ସେହି ଶ୍ରଦ୍ଧାଯୁକ୍ତହୋଇ) ତସ୍ୟାଃ (ସେହି ଦେବତାଙ୍କର) ରାଧନଂ (ଆରାଧନା) ଈହତେ (କରନ୍ତି), ତତଃ (ସେହି ଦେବତାଙ୍କଠାରୁ) ମୟା ଏବ ବିହିତାନ୍ (ଆମ୍ଭଦ୍ୱାରା ବିହିତ) ତାନ୍ କାମାନ୍ (ସେହି ସେହି କାମ୍ୟବସ୍ତୁ ସବୁ) ହି ଲଭତେ (ଲାଭ କରିଥାଆନ୍ତି) ।

**ଅନୁବାଦ**—ସେହି ସକାମ ଭକ୍ତ ଶ୍ରଦ୍ଧାଯୁକ୍ତ ହୋଇ ସେହି ଦେବମୂର୍ତ୍ତିର ଅର୍ଚ୍ଚନା କରି ଥାଆନ୍ତି ଏବଂ ସେହି ଦେବତାଙ୍କ ନିକଟରୁ ମତ୍‌ପ୍ରଦତ୍ତ କାମନାସବୁ ଲାଭ କରନ୍ତି ।

**ସୁବୋଧିନୀ ଟୀକା**—ତତଶ୍ଚ ସ ଇତ୍ୟେତି—ସ ଭକ୍ତ ସ୍ତୟା ଦୃଢ଼ୟା ଶ୍ରଦ୍ଧୟା ତସ୍ୟାସ୍ତନୋ ରାଧନମାରାଧନମୀହତେ କରୋତି । ତତଶ୍ଚ ଯେ ସଙ୍କଳ୍ପିତାଃ କାମା ସ୍ତାନ୍ କାମାଂସ୍ତତୋ ଦେବତା ବିଶେଷାତ୍ ଲଭତେ । କିନ୍ତୁ ମୟୈବ ତତ୍ତ‌ଦ୍ଦେବତାନ୍ତର୍ଯାମିଣା ବିହିତାନ୍ ନିର୍ମିତାନ୍ ହି । ସ୍ପୁଟମେତତ୍ ତତ୍ତଦ୍ଦେବତାନାମପି ମଦଧୀନତ୍ୱାତ୍ ମମ ମୂର୍ତ୍ତିତ୍ୱାଚ୍ଚେତ୍ୟର୍ଥଃ ।

୨୩ । **ଅନ୍ୱୟଦୀପିକା**—ତୁ (କିନ୍ତୁ) ଅଳ୍ପମେଧସାଂ (ଅଳ୍ପବୁଦ୍ଧି) ତେଷାଂ (ସେହି ଲୋକମାନଙ୍କର) ତତ୍ ଫଳଂ (ସେହି ଫଳ) ଅନ୍ତବତ୍ (ନଶ୍ୱର ଅଟେ), ହି (କାରଣ) ଦେବଯଜଃ (ଦେବୋପାସକମାନେ) ଦେବାନ୍ ଯାନ୍ତି (ଦେବତାମାନଙ୍କୁ ପ୍ରାପ୍ତ ହୁଅନ୍ତି), ମଦ୍‌ଭକ୍ତାଃ (ଆମ୍ଭ ଭକ୍ତମାନେ) ମାଂ ଯାନ୍ତି (ଆମ୍ଭଙ୍କୁ ପ୍ରାପ୍ତହୁଅନ୍ତି) ।

**ଅନୁବାଦ**—କିନ୍ତୁ ଅଳ୍ପବୁଦ୍ଧିବିଶିଷ୍ଟ ସେହି ଦେବୋପାସକମାନଙ୍କର ଫଳ ବିନାଶଶୀଳ । ଦେବୋପାସକମାନେ ଦେବଲୋକ ପ୍ରାପ୍ତହୁଅନ୍ତି ଏବଂ ଆମ୍ଭ ଭକ୍ତମାନେ ଆମ୍ଭଙ୍କୁହିଁ ପ୍ରାପ୍ତହୁଅନ୍ତି ।

**ସୁବୋଧିନୀ ଟୀକା**—ତଦେବଂ ଯଦ୍ୟପି ସର୍ବା ଅପି ଦେବତାଃ ସର୍ବାତ୍ମନୋ ମମୈବ ତନବଃ । ଅତ ସ୍ତଦାରାଧନମପି ବସ୍ତୁତୋ ମଦାରାଧନମେବ । ତଚ୍ଚ ଫଳଦାତାପି ତ୍ୱହମେବ । ତଥାପି ସାକ୍ଷାନ୍ମଦ୍‌ଭକ୍ତାନାଂ ଚ

ଅବ୍ୟକ୍ତଂ ବ୍ୟକ୍ତିମାପନ୍ନଂ ମନ୍ୟନ୍ତେ ମାମବୁଦ୍ଧୟଃ ।
ପରଂ ଭାବମଜାନନ୍ତୋ ମମାବ୍ୟୟମନୁତ୍ତମମ୍ ।୨୪।

ତେଷାଂ ଫଳବୈଷମ୍ୟଂ ଭବତୀତ୍ୟାହ—ଅନ୍ତବଦିତି । ଅଳ୍ପମେଧସାଂ ପରିଚ୍ଛିନ୍ନ-ଦୃଷ୍ଟୀନାଂ ମୟା ଦତ୍ତମପି ତତ୍ଫଳମନ୍ତବତ୍ ବିନାଶି ଭବତି । ତଦେବାହ—ଦେବାନ୍ ଯଜନ୍ତୀତି ଦେବଯଜଃ । ତେ ଦେବାନ୍ ଅନ୍ତବତୋ ଯାନ୍ତି, ମଦ୍ଭକ୍ତାସ୍ତୁ ମାମନାଦ୍ୟନ୍ତଂ ପରମାନନ୍ଦଂ ପ୍ରାପ୍ନୁବନ୍ତି ।

**ବିବୃତି**—ସାଧାରଣ ଲୋକେ ମନେ କରନ୍ତି ସଂସାରରେ ଚଳିବା ପାଇଁ ଯେଉଁ ଯେଉଁ ବସ୍ତୁର ପ୍ରୟୋଜନ, ଦେବତାମାନେହିଁ ସେ ସବୁ ଦେଇଥାଆନ୍ତି; ତେଣୁ ସେମାନେ ଦେବତାବିଶେଷଙ୍କୁ ଧାତୁନିର୍ମିତ ବିଗ୍ରହରୂପରେ, ବୃକ୍ଷରୂପରେ ବା ସିନ୍ଦୂରରଞ୍ଜିତ ଶିଳା ପ୍ରଭୃତି ରୂପରେ ପୂଜା କରନ୍ତି । ଉପାସକ ଭାବନ୍ତି—ଉପାସ୍ୟ ଦେବତାହିଁ ସେହି ଫଳର ଦାତା, ମାତ୍ର ସେ ପୂଜା କ୍ରମେ ପରମେଶ୍ୱରଙ୍କ ପୂଜାରେ ପରିଣତ ହୋଇଯାଏ ଏବଂ ପରମେଶ୍ୱରହିଁ ସେହି ଫଳ ଦିଅନ୍ତି । କେବଳ ସେତିକି ନୁହେଁ । ସେହି ଦେବତାଙ୍କୁ ପୂଜା କରିବା ପାଇଁ ଯେଉଁ ବୁଦ୍ଧି ବା ଶ୍ରଦ୍ଧା ଆବଶ୍ୟକ ପରମେଶ୍ୱରହିଁ ତାହା ଦିଅନ୍ତି । ଭିନ୍ନ ଭିନ୍ନ ଦେବତାଙ୍କର ପୂଜା କରି କରି ବୁଦ୍ଧି ସ୍ଥିର ଓ ଶୁଦ୍ଧ ହୋଇଯାଏ ଏବଂ ଶେଷରେ ଏକ ପରମେଶ୍ୱରଙ୍କ ଜ୍ଞାନ ଜାତହୁଏ । ଏହାହିଁ ଏହି ଭିନ୍ନ ଭିନ୍ନ ଉପାସନାର ପରିଣାମ ।

୨୪ । **ଅନ୍ୱୟଦୀପିକା**—ଅବୁଦ୍ଧୟଃ ( ଅଳ୍ପବୁଦ୍ଧି ଅବିବେକୀ ଲୋକମାନେ) ମମ (ଆମ୍ଭର) ଅବ୍ୟୟମ୍ (ଅକ୍ଷୟ) ଅନୁତ୍ତମଂ (ସର୍ବୋତ୍କୃଷ୍ଟ) ପରଂ ଭାବ (ପରମ ସ୍ୱରୂପ) ଅଜାନନ୍ତଃ (ଜାଣି ନ ପାରି) ଅବ୍ୟକ୍ତଂ (ପ୍ରପଞ୍ଚାତୀତ) ମାଂ (ଆମ୍ଭଙ୍କୁ) ବ୍ୟକ୍ତିମ୍ ଆପନ୍ନଂ (ପ୍ରାକୃତ ମନୁଷ୍ୟାଦି ଭାବପ୍ରାପ୍ତ) ମନ୍ୟନ୍ତେ (ମନେ କରନ୍ତି) ।

**ଅନୁବାଦ**—ଅଳ୍ପବୁଦ୍ଧି ବ୍ୟକ୍ତିମାନେ ଆମ୍ଭର ଅକ୍ଷୟ ସର୍ବୋତ୍କୃଷ୍ଟ ପରମସ୍ୱରୂପ ନ ଜାଣି ଅବ୍ୟକ୍ତ ଆମ୍ଭଙ୍କୁ ପ୍ରାକୃତବ୍ୟକ୍ତିଭାବାପନ୍ନ ମନେ କରନ୍ତି ।

**ସୁବୋଧିନୀ ଟୀକା**—ନନୁ ଚ ସମାନେ ପ୍ରୟାସେ ମହତି ଚ ଫଳ-ବିଶେଷେ ସତି ସର୍ବେଽପି କସ୍ମାତ୍ ଦେବତାନ୍ତରଂ ହିତ୍ୱା ତ୍ୱାମେବ ନ ଭଜନ୍ତି ? ତତ୍ରାହ—ଅବ୍ୟକ୍ତମିତି । ଅବ୍ୟକ୍ତଂ ପ୍ରପଞ୍ଚାତୀତମ୍, ମାଂ ବ୍ୟକ୍ତିଂ ମନୁଷ୍ୟମତ୍ସ୍ୟ-କୂର୍ମାଦିଭାବଂ ପ୍ରାପ୍ତମଳ୍ପବୁଦ୍ଧୟୋ ମନ୍ୟନ୍ତେ । ତତ୍ର ହେତୁଃ—ମମ ପରଂ ଭାବ ସ୍ୱରୂପମଜାନନ୍ତଃ । କଥଂ ଭୂତମ୍ ? ଅବ୍ୟୟଂ ନିତ୍ୟଂ । ନ ବିଦ୍ୟତେ ଉତ୍ତମୋ ଭାବୋ ଯସ୍ମାତ୍ ତଂ ମଦ୍ଭାବମ୍ । ଅତୋ ଜଗଦ୍ରକ୍ଷଣାର୍ଥଂ ଲୀଳୟାବିଷ୍କୃତ-ନାନାବିଶୁଦ୍ଧୋର୍ଜିତସତ୍ତ୍ୱମୂର୍ତ୍ତିଂ ମାଂ ପରମେଶ୍ୱରଂ ଚ ସ୍ୱକର୍ମନିର୍ମିତଭୌତିକଦେହଂ

ନାହଂ ପ୍ରକାଶଃ ସର୍ବସ୍ୟ ଯୋଗମାୟାସମାବୃତଃ ।
ମୂଢ଼ୋଽୟଂ ନାଭିଜାନାତି ଲୋକୋ ମାମଜମବ୍ୟୟମ୍ । ୨୫ ।

ଚ ଦେବତାନ୍ତରଂ ସମଂ ପଶ୍ୟନ୍ତୋ ମନ୍ଦମତୟୋ ମାଂ ନାଗବାଚ୍ଛନ୍ତି । ପ୍ରତ୍ୟୁତ କ୍ଷିପ୍ରଫଳଦଂ ଦେବତାନ୍ତରମେବ ଭଜନ୍ତି । ତେ ପ୍ରୋକ୍ତପ୍ରକାରେଣାନ୍ତବତ୍ ଫଳଂ ପ୍ରାପ୍ନୁବନ୍ତୀତ୍ୟର୍ଥଃ ।

**ବିବୃତି**—ଏଠାରେ ପ୍ରଶ୍ନ ହୋଇପାରେ ଯେବେ ଭଗବାନ୍ ସର୍ବଶକ୍ତିମାନ୍ ଓ ମୁକ୍ତିଦାତା ତେବେ ଲୋକେ କାହିଁକି ତାଙ୍କୁ ଛାଡ଼ି ଅନ୍ୟଦେବତାଙ୍କର ଆଶ୍ରୟ ନିଅନ୍ତି ? ଏହାର ଉତ୍ତରରେ ଭଗବାନ୍ କହୁଅଛନ୍ତି ଯେ "ସାଧାରଣ ଲୋକ ବିବେକଶୂନ୍ୟ, ସେମାନେ ଆମ୍ଭର ପ୍ରପଞ୍ଚାତୀତ ନିତ୍ୟ ସଚ୍ଚିଦାନନ୍ଦ ବିଗ୍ରହ ବିଷୟ ଜାଣିପାରନ୍ତି ନାହିଁ ଏବଂ ଆମ୍ଭର ଲୀଳାବତାର ମନୁଷ୍ୟାଦିରୂପ ଦେଖି ଆମ୍ଭଙ୍କୁ ସାମାନ୍ୟ ଜୀବରୂପରେ ଅବଜ୍ଞା କରନ୍ତି । ତେଣୁ ଅନ୍ୟ ଦେବତାଙ୍କର ଆଶ୍ରୟ ନେଇ ଆମ୍ଭ ପ୍ରତି ବିମୁଖ ହୁଅନ୍ତି । ଲୀଳା ଉଦ୍ଦେଶ୍ୟରେ ଆମ୍ଭେ ମନୁଷ୍ୟାଦି ଭାବ ଗ୍ରହଣ କଲେହେଁ ଆମ୍ଭ ଅବ୍ୟୟ ସ୍ୱରୂପର ବ୍ୟତ୍ୟୟ ହୁଏ ନାହିଁ, ଏହା ସେମାନେ ବୁଝିପାରନ୍ତି ନାହିଁ ।" ଅବ୍ୟକ୍ତ ନିର୍ବିକାର ବ୍ରହ୍ମ ସବିଶେଷ ସାକାର ରୂପ ଧାରଣ କଲେ ତାହାଙ୍କୁ ଅବତାର କୁହାଯାଏ । ଏହାହିଁ ତାଙ୍କର ମାୟା ବା ଯୋଗର ପ୍ରଭାବ । ସୁତରାଂ ବ୍ୟକ୍ତ ଓ ଅବ୍ୟକ୍ତ ଉଭୟ ଅବସ୍ଥାରେହିଁ ସେ ପୂର୍ଣ୍ଣ । ବ୍ୟକ୍ତ ହେଲେହେଁ ତାଙ୍କ ପୂର୍ଣ୍ଣତାର ହାନି ହୁଏ ନାହିଁ । ଏହି ହେତୁରୁ ବେଦରେ ଉକ୍ତ ହୋଇଅଛି—

ପୂର୍ଣ୍ଣସ୍ୟ ପୂର୍ଣ୍ଣ ମାଦାୟପୂର୍ଣ୍ଣମେବାବଶିଷ୍ୟତେ (ବୃଃ ଉଃ ୫।୧।୧)
ଅର୍ଥାତ୍ ପୂର୍ଣ୍ଣରୁ ପୂର୍ଣ୍ଣ ଗ୍ରହଣକଲେହେଁ ପୂର୍ଣ୍ଣହିଁ ଅବଶିଷ୍ଟ ରହେ ।

ସବୁକାଳରେ ଏବଂ ସବୁ ସ୍ଥାନରେ ସମାଜରେ ରାଜସିକ ଓ ତାମସିକ ପ୍ରକୃତିର ଅନେକ ଲୋକ ରହନ୍ତି । ସେମାନେ ଅବତାରଙ୍କୁ ଚିହ୍ନି ପାରନ୍ତି ନାହିଁ । ଶ୍ରୀକୃଷ୍ଣଙ୍କ ଜନ୍ମ ସମୟରେ କଂସ, ଶିଶୁପାଳ, ଜରାସନ୍ଧ ପ୍ରଭୃତି ଶତ ଶତ ଦୁର୍ଜନ ତତ୍କାଳୀନ ସମାଜରେ ଥିଲେ । ସେମାନେ ଶ୍ରୀକୃଷ୍ଣଙ୍କୁ ସାମାନ୍ୟ ମନୁଷ୍ୟ ବୋଲି ମନେକରି ନାନା ଭାବରେ ତାଙ୍କର ବିରୋଧ କରୁଥିଲେ । ଭୀଷ୍ମ, ଯୁଧିଷ୍ଠିର, ଅର୍ଜୁନ ପ୍ରଭୃତି ସାତ୍ତ୍ୱିକ ପ୍ରକୃତିର ଲୋକମାନେ ତାଙ୍କୁ ଈଶ୍ୱର ବୋଲି ଜାଣିପାରି ସର୍ବଥା ତାଙ୍କର ଶରଣାଗତ ହୋଇଥିଲେ । ଏହି ସବୁ କଥାକୁ ଭଗବାନ୍ ଏଂସିତ ଶ୍ଳୋକରେ ଲକ୍ଷ୍ୟ କରିଅଛନ୍ତି ।

୨୫ । **ଅନ୍ୱୟଦୀପିକା**—ଅହଂ ( ଆମ୍ଭେ ) ଯୋଗମାୟାସମାବୃତଃ (ଯୋଗରୂପ ମାୟାଦ୍ୱାରା ଆଚ୍ଛାଦିତ ହୋଇଥିବାରୁ) ସର୍ବସ୍ୟ (ସମସ୍ତଙ୍କ ନିକଟରେ)

ବେଦାହଂ ସମତୀତାନି ବର୍ତ୍ତମାନାନି ଚାର୍ଜୁନ ।
ଭବିଷ୍ୟାଣି ଚ ଭୂତାନି ମାଂ ତୁ ବେଦ ନ କଶ୍ଚନ । ୨୬ ।

ପ୍ରକାଶଃ ନ (ପ୍ରକାଶିତ ନୋହୁଁ) । [ସେଥିପାଇଁ] ଅୟଂ (ଏହି) ମୂଢ଼ଃ ଲୋକଃ (ମୂଢ଼ଲୋକ) ମାମ୍ (ଅମ୍ଭଙ୍କୁ) ଅଜମ୍ (ଜନ୍ମରହିତ) ଅବ୍ୟୟଂ (କ୍ଷୟଶୂନ୍ୟ) [ବୋଲି] ନ ଅଭିଜାନାତି (ଜାଣିପାରେ ନାହିଁ) ।

**ଅନୁବାଦ**—ଅମ୍ଭେ ଯୋଗରୂପ ମାୟାଦ୍ୱାରା ସମାଚ୍ଛାଦିତ ଥିବାରୁ ସମସ୍ତଙ୍କ ନିକଟରେ ପ୍ରକାଶିତ ନୋହୁଁ; ତେଣୁ ମୂଢ଼ଲୋକମାନେ ଅମ୍ଭଙ୍କୁ ଜନ୍ମରହିତ ଅକ୍ଷୟ ପରମେଶ୍ୱର ବୋଲି ଜାଣି ପାରନ୍ତି ନାହିଁ ।

**ସୁବୋଧିନୀ ଟୀକା**—ତେଷାଂ ସ୍ୱାଜ୍ଞାନେ ହେତୁମାହ—ନାହମିତି । ସର୍ବସ୍ୟ ଲୋକସ୍ୟ ନାହଂ ପ୍ରକାଶଃ ପ୍ରକଟୋ ନ ଭବାମି । କିନ୍ତୁ ମଦ୍‌ଭକ୍ତାନାମେବ । ଯତୋ ଯୋଗମାୟୟାସମାବୃତଃ । ଯୋଗୋ ଯୁକ୍ତିର୍ମଦୀୟଃ କୋଽପ୍ୟଚିନ୍ତ୍ୟଃ ପ୍ରଜ୍ଞାବିଳାସଃ । ସ ଏବ ମାୟା ଅଘଟନଘଟନାପଟୀୟସ୍ତ୍ୱାତ୍ । ତୟା ଛନ୍ନଃ । ଅତଏବ ମତ୍ସ୍ୱରୂପଜ୍ଞାନେ ମୂଢ଼ଃ ସନ୍ନୟଂ ଲୋକୋଽଜମବ୍ୟୟଂ ଚ ମାଂ ନ ଜାନାତି ।

**ବିବୃତି**—'ଯୋଗ' ଶବ୍ଦ ସଂସ୍କୃତଭାଷାରେ ଅନେକ ଅର୍ଥରେ ପ୍ରଯୁକ୍ତ ହୁଏ । ଏଠାରେ ଉପାୟ ବା କୌଶଳ ଅର୍ଥହିଁ ବୁଝିବାକୁ ହେବ । ଗୀତାର ଦ୍ୱିତୀୟ ଅଧ୍ୟାୟ ୫୦ଶ ଶ୍ଲୋକରେ ଭଗବାନ୍ ନିଜେ ଯୋଗଶବ୍ଦର ପ୍ରକୃତ ଅର୍ଥ ବୁଝାଇ କହିଅଛନ୍ତି, 'ଯୋଗଃ କର୍ମସୁ କୌଶଳମ୍' ଅର୍ଥାତ୍ କର୍ମ କରିବାରେ ଯାହା କୌଶଳ ତାହାକୁହିଁ ଯୋଗ ବୋଲିଯାଏ । ତେଣୁ 'ଯୋଗମାୟା' ଶବ୍ଦର ଅର୍ଥ ଯୋଗରୂପ ମାୟା । ପୂର୍ବେ କୁହାଯାଇଅଛି ଅବ୍ୟକ୍ତ ସ୍ୱରୂପ ଛାଡ଼ି ବ୍ୟକ୍ତ ରୂପ ଧାରଣ କରିବାର କୌଶଳକୁ ମାୟା କୁହାଯାଏ । ଅତଏବ ଯୋଗଶବ୍ଦ ଓ ମାୟାଶବ୍ଦ ଏକାର୍ଥକ । ଅବ୍ୟକ୍ତ ପରମେଶ୍ୱର ଏହି ମାୟାବଳରେ ବ୍ୟକ୍ତରୂପ ଧାରଣ କରନ୍ତି । ଏଥିରୁ ଜଣାଯାଉଅଛି ବ୍ୟକ୍ତସୃଷ୍ଟି ମାୟିକ ବା ଅନିତ୍ୟ; ଅବ୍ୟକ୍ତ ପରମେଶ୍ୱରହିଁ ନିତ୍ୟ; ତେଣୁ ମାୟା ଅସତ୍ୟ, ଏକମାତ୍ର ପରମାତ୍ମାହିଁ ସତ୍ୟ ।

୨୬ । **ଅନ୍ୱୟଦୀପିକା**—[ହେ] ଅର୍ଜୁନ ! ଅହଂ (ଅମ୍ଭେ) ସମତୀତାନି (ଅତୀତ), ବର୍ତ୍ତମାନାନି (ବର୍ତ୍ତମାନ), ଭବିଷ୍ୟାଣି ଚ (ଏବଂ ଭବିଷ୍ୟତ୍) ଭୂତାନି (ସ୍ଥାବରଜଙ୍ଗମାତ୍ମକ ସମସ୍ତଙ୍କୁ ଜାଣୁଁ); ତୁ (କିନ୍ତୁ) କଶ୍ଚନ (କୌଣସି ଲୋକ) ମାଂ ନ ବେଦ (ଅମ୍ଭଙ୍କୁ ଜାଣନ୍ତି ନାହିଁ) ।

**ଅନୁବାଦ**—ହେ ଅର୍ଜୁନ, ଅମ୍ଭେ ଭୂତ, ବର୍ତ୍ତମାନ ଓ ଭବିଷ୍ୟତ୍ ସମସ୍ତଙ୍କୁ ଜାଣୁଁ, କିନ୍ତୁ ଅମ୍ଭଙ୍କୁ କେହି ଜାଣି ପାରନ୍ତି ନାହିଁ ।

ଇଚ୍ଛାଦ୍ୱେଷସମୁତ୍ଥେନ ଦ୍ୱନ୍ଦ୍ୱମୋହେନ ଭାରତ ।
ସର୍ବଭୂତାନି ସମ୍ମୋହଂ ସର୍ଗେ ଯାନ୍ତି ପରନ୍ତପ । ୨୭ ।

**ସୁବୋଧିନୀ ଟୀକା**—ସର୍ବୋତ୍ତମଂ ମତ୍‌ସ୍ୱରୂପମଜ୍ଞାନନ୍ତ ଇତ୍ୟୁକ୍ତଂ । ତଦେବ ସ୍ୱସ୍ୟ ସର୍ବୋତ୍ତମତ୍ୱମନାବୃତଜ୍ଞାନଶକ୍ତିତ୍ୱେନ ଦର୍ଶୟନ୍ନନ୍ୟେଷା-ମଜ୍ଞାନମାହ—ବେଦାହମିତି । ସମତୀତାନି ବିନଷ୍ଟାନି ବର୍ତ୍ତମାନାନି ଚ ଭବିଷ୍ୟାଣି ଭବୀନି ଚ ତ୍ରିକାଳବର୍ତ୍ତୀନି ଭୂତାନି ସ୍ଥାବରଜଙ୍ଗମାନି ସର୍ବାଣ୍ୟହଂ ବେଦ ଜାନାମି । ମାୟାଶ୍ରୟତ୍ୱାନ୍ମମ । ତସ୍ୟାଃ ସ୍ୱାଶ୍ରୟ ବ୍ୟାମୋହକତ୍ୱା ଭାବାଦିତି ପ୍ରସିଦ୍ଧଂ । ମାଂ ତୁ କୋଽପି ନ ବେତ୍ତି ମନ୍ମାୟାମୋହିତତ୍ୱାତ୍ । ପ୍ରସିଦ୍ଧଂ ହି ଲୋକେ ମାୟାୟାଃ ସ୍ୱାଶ୍ରୟାଧୀନତ୍ୱମନ୍ୟମୋହକତ୍ୱଂ ଚେତି ।

**ବିବୃତି**—ଏହି ମାୟାରୁ ଉପରେ ନିଷ୍କୃତି ମିଳିବ ବର୍ତ୍ତିମାନ ଏହାହିଁ ଭଗବାନ୍ ବୁଝାଇବେ । ଯୋଗମାୟା ଦ୍ୱାରା ଲୋକମାନଙ୍କର ଜ୍ଞାନର ପରିସର ସୀମାବଦ୍ଧ ହୋଇଥିବାରୁ ସେମାନେ ଭୂତ ଭବିଷ୍ୟତ୍ ବର୍ତ୍ତିମାନ କିଛି ଜାଣିପାରନ୍ତି ନାହିଁ । ମାତ୍ର ସେହି ଯୋଗମାୟା ମାୟାବୀ ଭଗବାନଙ୍କର ଲୀଳାବିଶେଷ, ତେଣୁ ସେ ଭଗବାନଙ୍କର ଜ୍ଞାନରେ ବାଧା ଦେଇପାରେ ନାହିଁ । ତେଣୁ ଭଗବାନଙ୍କର ତ୍ରିକାଳଦର୍ଶିତା ଅକ୍ଷୁଣ୍ଣ ଥାଏ ।

୨୭ । **ଅନ୍ୱୟଦୀପିକା**—ପରନ୍ତପ ଭାରତ (ହେ ଶତ୍ରୁନାଶକାରୀ ଭରତବଂଶୀୟ ଅର୍ଜ୍ଜୁନ ) ସର୍ଗେ ( ସୃଷ୍ଟିକାଳରେ, ଅର୍ଥାତ୍ ସ୍ଥୂଳଦେହର ଉତ୍ପତ୍ତି ହେଲେ ) ଇଚ୍ଛାଦ୍ୱେଷସମୁତ୍ଥେନ ( ଇଚ୍ଛା ଓ ଦ୍ୱେଷରୁ ଜାତ ) ଦ୍ୱନ୍ଦ୍ୱମୋହେନ ( ସୁଖଦୁଃଖାଦି ଦ୍ୱନ୍ଦ୍ୱଜନିତ ମୋହଦ୍ୱାରା ) ସର୍ବଭୂତାନି ( ସମସ୍ତ ପ୍ରାଣୀ ) ସମ୍ମୋହଂ ଯାନ୍ତି (ସମ୍ପୂର୍ଣ୍ଣରୂପେ ଅଭିଭୂତ ହୋଇପଡ଼ନ୍ତି) ।

**ଅନୁବାଦ**—ହେ ଭରତବଂଶୀୟ ଅର୍ଜ୍ଜୁନ ! ସୃଷ୍ଟିକାଳରେ ଅର୍ଥାତ୍ ସ୍ଥୂଳ ଦେହର ଉତ୍ପତ୍ତି ହେଲେ ଇନ୍ଦ୍ରିୟମାନଙ୍କର ଅନୁକୂଳ ବିଷୟରେ ଇଚ୍ଛା ଓ ପ୍ରତିକୂଳ ବିଷୟରେ ଦ୍ୱେଷ ଜାତ ହୁଏ । ସେହି ସୁଖଦୁଃଖଦ୍ୱାରା ପ୍ରାଣୀମାନେ ମୋହପ୍ରାପ୍ତ ହୁଅନ୍ତି ।

**ସୁବୋଧିନୀ ଟୀକା**—ତଦେବଂ ମାୟା ବିଷୟତ୍ୱେନ ଜୀବାନାଂ ପରମେଶ୍ୱରାଜ୍ଞାନମୁକ୍ତଂ ତତ୍ତ୍ୱସ୍ୟ ବା ଜ୍ଞାନସ୍ୟ ଦୃଢ଼ତ୍ୱେ କାରଣମାହ, ଇଚ୍ଛାଦ୍ୱେଷ-ସମୁତ୍ଥେନେତି । ସୃଜ୍ୟତ ଇତି ସର୍ଗଃ ସର୍ଗେ ସ୍ଥୂଳଦେହୋତ୍ପତ୍ତୌ ସତ୍ୟାଂ ତଦନୁକୂଳେ ଇଚ୍ଛା ତତ୍ ପ୍ରତିକୂଳେ ଚ ଦ୍ୱେଷଃ ତାଭ୍ୟାଂ ସମୁତ୍ଥ ସମୁଦ୍‌ଭୂତୋ ଯଃ ଶୀତୋଷ୍ଣସୁଖଦୁଃଖାଦିଦ୍ୱନ୍ଦ୍ୱନିମିତ୍ତୋ ମୋହୋ ବିବେକଭ୍ରଂଶଃ ତେନ ସର୍ବାଣି ଭୂତାନି ସମ୍ମୋହଂ ଯାନ୍ତି, ଅହମେବ ସୁଖୀ ଦୁଃଖୀ ଚେତି ଗାଢ଼ତରମଭିନିବେଶଂ ପ୍ରାପ୍ନୁବନ୍ତି ଅତସ୍ତାନି ମଜ୍ଜ୍ଞାନାଭାବାନ୍ମାଂ ନ ଭଜନ୍ତୀତି ଭାବଃ ।

ଯେଷାଂ ତ୍ୱନ୍ତଗତଂ ପାପଂ ଜନାନାଂ ପୁଣ୍ୟକର୍ମଣାମ୍ ।
ତେ ଦ୍ୱନ୍ଦ୍ୱମୋହନିର୍ମୁକ୍ତା ଭଜନ୍ତେ ମାଂ ଦୃଢ଼ବ୍ରତାଃ ।୨୮।
ଜରାମରଣମୋକ୍ଷାୟ ମାମାଶ୍ରିତ୍ୟ ଯତନ୍ତି ଯେ ।
ତେ ବ୍ରହ୍ମ ତଦ୍‌ବିଦୁଃ କୃତ୍ସ୍ନମଧ୍ୟାତ୍ମଂ କର୍ମ ଚାଖିଳମ୍ । ୨୯ ।

**ବିବୃତି**—ଅନୁରାଗ ଓ ଦ୍ୱେଷ ଦ୍ୱାରା ଯେଉଁ ସୁଖ ଦୁଃଖ ଜାତ ହୁଏ ଜୀବ ତହିଁରେ ଅଭିଭୂତ ହୋଇ ପଡ଼ିବାରୁ ଈଶ୍ୱରବିଷୟକ ଜ୍ଞାନରେ ବିମୁଖ ହୁଏ, ତେଣୁ ସେ ଈଶ୍ୱରଙ୍କ ଭଜନା କରି ପାରେ ନାହିଁ ।

୨୮ । **ଅନ୍ୱୟଦୀପିକା**—ତୁ (କିନ୍ତୁ) ଯେଷାଂ (ଯେଉଁ) ପୁଣ୍ୟକର୍ମଣାଂ (ପୁଣ୍ୟାତ୍ମା ଲୋକଙ୍କର) ପାପମ୍ (ପାପ) ଅନ୍ତଗତଂ (ବିନଷ୍ଟ ହୋଇଅଛି), ତେ (ସେମାନେ) ଦ୍ୱନ୍ଦ୍ୱମୋହନିର୍ମୁକ୍ତାଃ (ଦ୍ୱନ୍ଦ୍ୱ ଓ ମୋହରୁ ମୁକ୍ତହୋଇ) ଦୃଢ଼ବ୍ରତାଃ (ଏବଂ ସ୍ଥିରସଙ୍କଳ୍ପ ହୋଇ) ମାଂ ଭଜନ୍ତେ (ଆମ୍ଭଙ୍କୁ ଭଜନ୍ତି) ।

**ଅନୁବାଦ**—ପୁଣ୍ୟକର୍ମ କରିବାଦ୍ୱାରା ଯେଉଁ ଲୋକଙ୍କର ପାପ ବିନଷ୍ଟ ହୋଇଥାଏ ସେହିମାନେହିଁ ଦ୍ୱନ୍ଦ୍ୱମୋହରୁ ମୁକ୍ତ ହୋଇ ଆମ୍ଭଙ୍କୁ ଭଜନା କରନ୍ତି ।

**ସୁବୋଧିନୀ ଟୀକା**—କୃତସ୍ତର୍ହି କେଚନ ତ୍ୱାଂ ଭଜନ୍ତୋ ଦୃଶ୍ୟନ୍ତେ ତତ୍ରାହ । ଯେଷାମିତି । ଯେଷାଂ ତୁ ପୁଣ୍ୟାଚରଣଶୀଳାନାଂ ସର୍ବଂ ପ୍ରତିବନ୍ଧକଂ ପାପମନ୍ତଗତଂ ନଷ୍ଟଂ ତେ ଦ୍ୱନ୍ଦ୍ୱନିମିତ୍ତେନ ମୋହେନ ବିନିର୍ମୁକ୍ତାଃ ଦୃଢ଼ବ୍ରତାଃ ଏକାନ୍ତିନଃ ସନ୍ତୋ ମାଂ ଭଜନ୍ତେ ।

**ବିବୃତି**—ଯେ ପର୍ଯ୍ୟନ୍ତ ପାପ ଦୂର ହୋଇ ନ ଥାଏ ସେ ପର୍ଯ୍ୟନ୍ତ ଲୋକ ଭକ୍ତିରେ ଅନୁପ୍ରାଣିତ ହୋଇପାରେ ନାହିଁ । ପାପର ଧ୍ୱଂସରେ ମନ ସ୍ୱତଃ ତାଙ୍କ ଆଡ଼କୁ ଧାବିତ ହୁଏ । ଚୁମ୍ବକ ଲୌହକୁ ଆକର୍ଷଣ କରେ ମାତ୍ର ଯେବେ ଲୁହାରେ ପଙ୍କ ବୋଳି ଦିଆଯାଏ, ତେବେ ତାହା ଚୁମ୍ବକଦ୍ୱାରା କେବେହେଁ ଆକୃଷ୍ଟ ହୋଇ ପାରେ ନାହିଁ । ସେହିପରି ପାପର ଆବରଣ ଅପସାରିତ ହୋଇଗଲେ ଭକ୍ତଚିନ୍ତାମଣି ଆଶ୍ରିତକୁ ନିଜ ଆଡ଼କୁ ଆକର୍ଷଣ କରନ୍ତି । ସର୍ବତ୍ର ସମଦୃଷ୍ଟି ଓ ପରୋପକାର ପ୍ରଭୃତି ପୁଣ୍ୟକର୍ମର ଅନୁଷ୍ଠାନଦ୍ୱାରା ପାପ ବିଧ୍ୱସ୍ତ ହୋଇଥାଏ ।

୨୯ । **ଅନ୍ୱୟଦୀପିକା**—ଯେ (ଯେଉଁମାନେ) ଜରାମରଣ ମୋକ୍ଷାୟ (ବାର୍ଦ୍ଧକ୍ୟ ଯନ୍ତ୍ରଣା ଓ ମୃତ୍ୟୁ ଯନ୍ତ୍ରଣାରୁ ମୁକ୍ତ ହେବା ଉଦ୍ଦେଶ୍ୟରେ) ମାମ୍ ଆଶ୍ରିତ୍ୟ (ଆମ୍ଭଙ୍କୁ ଆଶ୍ରୟକରି) ଯତନ୍ତି (ଯତ୍ନ କରନ୍ତି) ତେ (ସେମାନେ) ତତ୍ ବ୍ରହ୍ମ (ସେହି ସନାତନ ବ୍ରହ୍ମଙ୍କୁ), କୃତ୍ସ୍ନମ୍ ଅଧ୍ୟାତ୍ମଂ (ସମଗ୍ର ଅଧ୍ୟାତ୍ମ ବିଷୟ) ଅଖିଳଂ କର୍ମ ଚ (ଏବଂ ସମସ୍ତ କର୍ମ) ବିଦୁଃ (ଜାଣନ୍ତି) ।

ସାଧିଭୂତାଧିଦୈବଂ ମାଂ ସାଧିଯଜ୍ଞଞ୍ଚ ଯେ ବିଦୁଃ ।
ପ୍ରୟାଣକାଲେଽପି ଚ ମାଂ ତେ ବିଦୁର୍ଯୁକ୍ତଚେତସଃ ।୩୦ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସଂବାଦେ ଜ୍ଞାନବିଜ୍ଞାନଯୋଗୋ ନାମ ସପ୍ତମୋଽଧ୍ୟାୟଃ ।

**ଅନୁବାଦ**—(ଏହିପରି) ଯେଉଁମାନେ **ଆମ୍ଭଙ୍କୁ** ଆଶ୍ରୟ କରି ଜନ୍ମମରଣରୁ ଅର୍ଥାତ୍ ପୁନର୍ଜନ୍ମଚକ୍ରରୁ ମୁକ୍ତି ପାଇବା ପାଇଁ ଯତ୍ନ କରନ୍ତି ସେମାନେ ବ୍ରହ୍ମ, ସକଳ ଅଧ୍ୟାତ୍ମତତ୍ତ୍ୱ ଓ ସକଳ କର୍ମତତ୍ତ୍ୱ ଜାଣିପାରନ୍ତି ।

**ସୁବୋଧିନୀ ଟୀକା**—ଏବଂ ଚ ମାଂ ଭଜନ୍ତଃ ସର୍ବଂ ବିଜ୍ଞେୟଂ ବିଜ୍ଞାୟ କୃତାର୍ଥା ଭବନ୍ତୀତ୍ୟାହ— ଜରେତି । ଜନ୍ମମରଣଯୋର୍ମୋକ୍ଷାୟ ନିରସନାର୍ଥଂ ମାମାଶ୍ରିତ୍ୟ ଯେ ପ୍ରଯତନ୍ତେ ତେ ତତ୍ ପରଂବ୍ରହ୍ମ ବିଦୁଃ । କୃତ୍ସ୍ନମଧ୍ୟାତ୍ମଂ ଚ ବିଦୁଃ । ଯେନ ତତ୍ ପ୍ରାପ୍ତବ୍ୟଂ ତଂ ଦେହାଦିବ୍ୟତିରିକ୍ତଂ ଶୁଦ୍ଧମାତ୍ମାନଂ ଚ ଜାନନ୍ତୀତ୍ୟର୍ଥଃ । ତତ୍ ସାଧନଭୂତମଖିଲଂ ସରହସ୍ୟଂ କର୍ମ ଚ ଜାନନ୍ତୀ-ତ୍ୟର୍ଥଃ ।

**ବିବୃତି**—ବ୍ୟକ୍ତରୂପହିଁ ଉପାସ୍ୟ । ଜନ୍ମମରଣରୁ ମୁକ୍ତି ପାଇବା ଅର୍ଥ ଜନ୍ମମରଣ ଚକ୍ରରୁ ମୁକ୍ତି ପାଇବା । ଯେଉଁମାନେ ମୁକ୍ତି କାମନାରେ **ଆମ୍ଭର** ବ୍ୟକ୍ତ ରୂପକୁ ଆଶ୍ରୟ କରି ଯତ୍ନ କରନ୍ତି ସେମାନେ **ଆମ୍ଭର** ଅବ୍ୟକ୍ତ ରୂପର ଜ୍ଞାନ ଲାଭ କରିବା ସଙ୍ଗେ ସଙ୍ଗେ ସମସ୍ତ ଅଧ୍ୟାତ୍ମତତ୍ତ୍ୱ ଓ ଅଖିଳ କର୍ମତତ୍ତ୍ୱ ସମ୍ବନ୍ଧରେ ମଧ୍ୟ ଜ୍ଞାନ ଲାଭ କରନ୍ତି ।

**୩୦ । ଅନ୍ୱୟଦୀପିକା**—ଯେ ଚ (ଅଜ୍ଞ ଯେଉଁମାନେ) ସାଧିଭୂତାଧି-ଦୈବଂ (ଅଧିଭୂତ, ଅଧିଦୈବ ସହିତ) ସାଧିଯଜ୍ଞଂ ଚ (ଏବଂ ଅଧିଯଜ୍ଞ ସହିତ) ମାଂ ବିଦୁଃ (ଆମ୍ଭଙ୍କୁ ଜାଣନ୍ତି) ତେ ଯୁକ୍ତଚେତସଃ (ସେହି ସମାହିତଚିତ୍ତ ଲୋକ-ମାନେ) ପ୍ରୟାଣକାଲେଽପି ( ମୃତ୍ୟୁ ସମୟରେ ମଧ୍ୟ ) ମାଂ ( ଆମ୍ଭଙ୍କୁ ) ବିଦୁଃ ( ଜାଣି ପାରନ୍ତି ) ।

**ଅନୁବାଦ**—ଅଜ୍ଞ ଯେଉଁମାନେ ଅଧିଭୂତ, ଅଧିଦୈବ ଓ ଅଧିଯଜ୍ଞ ସହିତ **ଆମ୍ଭଙ୍କୁ** ଜାଣନ୍ତି ସେହି ସବୁ ଲୋକଙ୍କର ଚିତ୍ତ **ଆମ୍ଭଠାରେ** ଆସକ୍ତ ଥିବାରୁ ମରଣକାଳରେ ମଧ୍ୟ ସେମାନେ **ଆମ୍ଭଙ୍କୁ** ଜାଣିପାରନ୍ତି ।

**ସୁବୋଧିନୀ ଟୀକା**—ନ ଚୈବଂଭୂତାନାଂ ଯୋଗଭ୍ରଂଶଶଙ୍କା-ପୀତ୍ୟାହ—ସାଧିଭୂତେତି । ଅଧିଭୂତାଦଶବ୍ଦାନାମର୍ଥଂ ଶ୍ରୀଭଗବାନେବୋତ୍ତ-ରାଧ୍ୟାୟେ ବ୍ୟାଖ୍ୟାସ୍ୟତି । ଅଧିଭୂତେନାଧିଦୈବେନ ଚ ସହାଧିଯଜ୍ଞେନ ଚ

ସହ ମାଂ ଯେ ଜାନନ୍ତି ତେ ଯୁକ୍ତଚେତସୋ ମଯ୍ୟାସକ୍ତମନସଃ ପ୍ରୟାଣକାଳେଽପି ମରଣସମୟେଽପି ମାଂ ବିଦୁର୍ଜାନନ୍ତି । ନତୁ ତଦାପି ବ୍ୟାକୁଳୀଭୂୟ ମାଂ ବିସ୍ମରନ୍ତି । ଅତୋ ମଦ୍‌ଭକ୍ତାନାଂ ନ ଯୋଗଭ୍ରଂଶଶଙ୍କେତିଭାବଃ ।

କୃଷ୍ଣଭକ୍ତୈରଯତ୍ନେନ ବ୍ରହ୍ମଜ୍ଞାନମବାପ୍ୟତେ,
ଇତି ବିଜ୍ଞାନଯୋଗାଖ୍ୟେ ସପ୍ତମେ ସପ୍ରକାଶିତମ୍ ।

**ବିବୃତି**—ଧର୍ମଶାସ୍ତ୍ର ପ୍ରଭୃତିରେ ଉକ୍ତ ହୋଇଅଛି ଯେ ମୃତ୍ୟୁକାଳରେ ମନୁଷ୍ୟ ମନରେ ଯେଉଁ ବାସନା ପ୍ରବଳ ଥାଏ ତଦନୁସାରେ ସେ ପରବର୍ତ୍ତୀ ଜନ୍ମଲାଭ କରେ । ସେହିହେତୁରୁ 'ପ୍ରୟାଣକାଳରେ' ଶବ୍ଦର ବ୍ୟବହାର ହୋଇଅଛି । 'ଅପି' ବା ମଧ୍ୟ ଶବ୍ଦ ପ୍ରୟୋଗରୁ ଜଣାଯାଏ ଯେ ପୂର୍ବରୁ ଈଶ୍ୱରଜ୍ଞାନ ନ ଥିଲେ କେବଳ ମୃତ୍ୟୁକାଳରେ ସେ ଜ୍ଞାନ ହୁଏ ନାହିଁ । ଅଧ୍ୟାତ୍ମ, ଅଧିଦୈବ ଓ ଅଧିଯଜ୍ଞ ଶବ୍ଦର ଅର୍ଥ ଭଗବାନ୍ ନିଜେ ପରବର୍ତ୍ତୀ ୮ମ ଅଧ୍ୟାୟର ଚତୁର୍ଥ ଶ୍ଳୋକରେ ବ୍ୟାଖ୍ୟା କରିବେ ।

---

## ସପ୍ତମ ଅଧ୍ୟାୟର ସାର ସଙ୍କଳନ

ଏ ଅଧ୍ୟାୟଟି ଜ୍ଞାନବିଜ୍ଞାନଯୋଗ ନାମରେ ଅଭିହିତ ହୁଏ । ସୃଷ୍ଟିର ପ୍ରତ୍ୟେକ ବସ୍ତୁରେ ଏକ ପରମାତ୍ମତତ୍ତ୍ୱ ବିଦ୍ୟମାନ ଅଛି—ଏହା ଜାଣିବାର ନାମ ଜ୍ଞାନ ଏବଂ ଏକ ପରମାତ୍ମାଙ୍କଠାରୁ ବିବିଧ ନଶ୍ୱର ପଦାର୍ଥର ଉତ୍ପତ୍ତିକୁ ବିଜ୍ଞାନ ବୋଲାଯାଏ । କେହି କେହି କହନ୍ତି ଶାସ୍ତ୍ରାଲୋଚନାରୁ ଓ ଗୁରୁଙ୍କ ଉପଦେଶରୁ ଯାହା ଜଣାଯାଏ ତାହା ଜ୍ଞାନ ଏବଂ ସେହି ଜ୍ଞାନ ଯେତେବେଳେ ଅନୁଭୂତ ହୁଏ ସେତେବେଳେ ତାହାକୁ ବିଜ୍ଞାନ ବୋଲାଯାଏ । ପ୍ରଥମ ଛଅ ଅଧ୍ୟାୟରେ ଭଗବାନ୍ ଯେଉଁ ନିଷ୍କାମ କର୍ମଯୋଗର ଉପଦେଶ ଦେଇଅଛନ୍ତି ଜ୍ଞାନ ଓ ଭକ୍ତିଯୁକ୍ତ ନ ହେଲେ ତାହା ଫଳୋପଧାୟକ ହୋଇପାରେ ନାହିଁ—ଷଷ୍ଠ ଅଧ୍ୟାୟ ଶେଷରେ ଏହାହିଁ ଭଗବାନ୍ ସୂଚନାକରି ସପ୍ତମ ଅଧ୍ୟାୟରୁ କି ଉପାୟରେ ମନୁଷ୍ୟ ସେହି ଜ୍ଞାନ ଓ ଭକ୍ତିର ଅଧିକାରୀ ହୋଇପାରେ ତାହାର ବର୍ଣ୍ଣନା କରିଅଛନ୍ତି । ଏ ଅଧ୍ୟାୟ ଆରମ୍ଭରେ ଭଗବାନ୍ କହିଲେ ପରା ଓ ଅପରା ଭେଦରେ ଆମ୍ଭର ପ୍ରକୃତି ଦ୍ୱିବିଧ । କ୍ଷିତି, ଅପ୍, ତେଜଃ, ମରୁତ୍, ବ୍ୟୋମ, ମନ, ବୁଦ୍ଧି ଓ ଅହଂକାର—ଏହା ଅପରା ପ୍ରକୃତି ଏବଂ ଯାହା ଜୀବାତ୍ମା ରୂପରେ ଅଭିହିତ, ତାହା ପରା ପ୍ରକୃତି । ସମସ୍ତ ସୃଷ୍ଟବସ୍ତୁ ଏହି ଦୁଇ ପ୍ରକୃତି ସଂଯୋଗରୁ ଉତ୍ପନ୍ନ । ଅନ୍ୟେ

ଜଗତର ମୂଳ କାରଣ, ଆମ୍ଭର ସତ୍ତାଦ୍ୱାରା ସମସ୍ତ ବସ୍ତୁ ସତ୍ତାବାନ୍ । ସତ୍ତ୍ୱ, ରଜଃ, ଓ ତମଃ—ଏହି ତିନିଗୁଣ ଦ୍ୱାରା ପ୍ରକୃତି ସମସ୍ତ ଜଗତ୍‌କୁ ମୋହିତ କରି ରଖିଅଛି । ଜୀବମାନେ ଯେପରି ପ୍ରକୃତିପରତନ୍ତ୍ର ହୋଇ ରହନ୍ତି ଆମ୍ଭେ ସେପରି ପ୍ରକୃତି-ପରତନ୍ତ୍ର ନୋହୁଁ, କାରଣ ପ୍ରକୃତି ଆମ୍ଭଠାରୁ ଜାତ । ଏହି ପ୍ରକୃତି ହିଁ ଆମ୍ଭର ମାୟା, ଏହି ମାୟାରୁ ଜୀବ ସହଜରେ ମୁକ୍ତିଲାଭ କରିପାରେ ନାହିଁ । ଯେଉଁମାନେ ଭକ୍ତିଯୁକ୍ତ ଚିତ୍ତରେ ଆମ୍ଭର ଶରଣାପନ୍ନ ହୁଅନ୍ତି ସେହିମାନେହିଁ ଏ ମାୟାରୁ ଉତ୍ତୀର୍ଣ୍ଣ ହୁଅନ୍ତି ।

ସାଧାରଣତଃ ଆର୍ତ୍ତ, ଜିଜ୍ଞାସୁ, ଅର୍ଥାର୍ଥୀ ଓ ଜ୍ଞାନୀ ଭେଦରେ ଆମ୍ଭର ଭକ୍ତ ଚାରି ପ୍ରକାର । ପ୍ରଥମ ତିନି ପ୍ରକାର ଭକ୍ତ ସକାମ କିନ୍ତୁ ଜ୍ଞାନୀଭକ୍ତ ନିଷ୍କାମ, ତେଣୁ ଜ୍ଞାନୀଭକ୍ତ ହିଁ ଆମ୍ଭର ପ୍ରିୟ । ସଂସାରରେ ଏପରି ଅନେକ ଲୋକ ଅଛନ୍ତି ଯେଉଁମାନେ ଧନ, ସମ୍ମାନ, ଯଶପ୍ରଭୃତି ଲାଭ ପାଇଁ କ୍ଷୁଦ୍ର କ୍ଷୁଦ୍ର ଦେବତାଙ୍କର ଉପାସନା କରନ୍ତି । ସେହି ଦେବତାମାନେ ଆମ୍ଭ ଶକ୍ତିରେ ଶକ୍ତିମାନ୍, ସୁତରାଂ ସେମାନେ ଯେଉଁ ଫଳ ଦଅନ୍ତି ପ୍ରକାରାନ୍ତରେ ଆମ୍ଭେ ହିଁ ତାହା ଦେଉଁ । କିନ୍ତୁ କ୍ଷୁଦ୍ର ଦେବତା ଆରାଧନାରୁ ଯେଉଁ ଫଳ ମିଳେ ତାହା ଅସ୍ଥାୟୀ । ଦେବୋପାସକମାନେ ଶେଷରେ ଦେବଲୋକ ପ୍ରାପ୍ତ ହୁଅନ୍ତି; ମାତ୍ର ଆମ୍ଭ ଉପାସକମାନେ ଆମ୍ଭଙ୍କୁ ପାଇ ଥାଆନ୍ତି । ଆମ୍ଭେ ଅବ୍ୟକ୍ତ ହେଲେହେଁ ବ୍ୟକ୍ତ ରୂପରେ ଯେତେବେଳେ ଆତ୍ମପ୍ରକାଶ କରୁଁ ସେତେବେଳେ ଅଳ୍ପବୁଦ୍ଧି ଲୋକେ ତାହା ଜାଣି ନ ପାରି ଆମ୍ଭଙ୍କୁ ଅବଜ୍ଞା କରନ୍ତି । ପୁଣ୍ୟକର୍ମଦ୍ୱାରା ଯେଉଁମାନଙ୍କର ପାପ କ୍ଷୟପ୍ରାପ୍ତ ହୋଇପାଏ ସେମାନେ ହିଁ ମାୟାମୁକ୍ତ ହୋଇ ଆମ୍ଭଙ୍କୁ ଆରାଧନା କରନ୍ତି ।

ସର୍ବଦା ବିଷୟଚିନ୍ତାରେ ଲିପ୍ତ ରହିଲେ ଲୋକ ମୃତ୍ୟୁସମୟରେ ଆମ୍ଭଙ୍କୁ ସ୍ମରଣ କରିପାରେ ନାହିଁ; ତେଣୁ ଜନ୍ମଚକ୍ରରୁ ରକ୍ଷା ପାଇବା ପାଇଁ ବିଷୟଚିନ୍ତାରୁ ମୁକ୍ତହୋଇ ସର୍ବଦା ଆମ୍ଭଙ୍କୁ ସ୍ମରଣ କରିବାକୁ ହେବ, ତାହାହେଲେ ଅନ୍ତକାଳରେ ମଧ୍ୟ ଆମ୍ଭ ସ୍ମୃତି ଅକ୍ଷୁଣ୍ଣ ରହିବ । ଦେହତ୍ୟାଗ ବେଳେ ଯାହାକୁ ଜୀବ ସ୍ମରଣ କରେ ପରଜନ୍ମରେ ତାହାକୁ ହିଁ ପ୍ରାପ୍ତ ହୁଏ । ଅତଏବ ଭଗବଦ୍‌ଭକ୍ତିଦ୍ୱାରା ହିଁ ଲୋକ ବ୍ରହ୍ମଜ୍ଞାନ ଲାଭ କରିଥାଏ ଏବଂ ତଦ୍ୱାରା ଶେଷରେ ଜନ୍ମଚକ୍ରରୁ ରକ୍ଷାପାଇ ମୁକ୍ତିର ଅଧିକାରୀ ହୁଏ ।

---

# ଅଷ୍ଟମୋଽଧ୍ୟାୟଃ

ଅର୍ଜୁନ ଉବାଚ

କିଂ ତଦ୍‌ବ୍ରହ୍ମ କିମଧ୍ୟାତ୍ମଂ କିଂ କର୍ମ ପୁରୁଷୋତ୍ତମ ।
ଅଧିଭୂତଂ ଚ କିଂ ପ୍ରୋକ୍ତମଧିଦୈବଂ କିମୁଚ୍ୟତେ ।୧।
ଅଧିଯଜ୍ଞଃ କଥଂ କୋଽତ୍ର ଦେହେଽସ୍ମିନ୍ ମଧୁସୂଦନ ।
ପ୍ରୟାଣକାଳେ ଚ କଥଂ ଜ୍ଞେୟୋଽସି ନିୟତାତ୍ମଭିଃ ।୨।

୧-୨ । **ଅନ୍ୱୟଦୀପିକା**—ଅର୍ଜୁନଃ ଉବାଚ ( ଅର୍ଜୁନ କହିଲେ ). ହେ ପୁରୁଷୋତ୍ତମ ତତ୍ ବ୍ରହ୍ମ କିମ୍ (ସେହି ବ୍ରହ୍ମ କଅଣ ?) ଅଧ୍ୟାତ୍ମଂ କିମ୍ (ଅଧ୍ୟାତ୍ମ କଅଣ ?) ଅଧିଭୂତଂ ଚ କିଂ ପ୍ରୋକ୍ତମ୍ (ଅଧିଭୂତ କାହାକୁ କୁହାଯାଏ ?) କିମ୍ ଅଧି-ଦୈବମ୍ ଉଚ୍ୟତେ (ଅଧିଦୈବ କାହାକୁ କୁହାଯାଏ ?); ହେ ମଧୁସୂଦନ ! ଅତ୍ର ( ଏ ଦେହରେ ) ଅଧିଯଜ୍ଞଃ କଃ ( ଅଧିଯଜ୍ଞ କିଏ ? ) ଅସ୍ମିନ୍ ଦେହେ (ଏ ଦେହରେ) କଥମ୍ ( କି ପ୍ରକାରେ ଅବସ୍ଥିତ ? ) ପ୍ରୟାଣକାଳେ ଚ (ଏବଂ ମରଣ ସମୟରେ ) ନିୟତାତ୍ମଭିଃ (ସଂଯତଚିତ୍ତ ଲୋକମାନଙ୍କ ଦ୍ୱାରା) କଥଂ (କିପରି) ଜ୍ଞେୟଃ ଅସି (ଜଣାଯାଅ ବା ଜ୍ଞାନଗମ୍ୟ ହୁଅ )।

**ଅନୁବାଦ**—ଅର୍ଜୁନ ପଚାରିଲେ, ହେ ପୁରୁଷୋତ୍ତମ, ବ୍ରହ୍ମ କଅଣ ? ଅଧ୍ୟାତ୍ମ କାହାକୁ ବୋଲାଯାଏ ? କର୍ମ ବା କଅଣ ? ଅଧିଭୂତ କାହାକୁ କୁହାଯାଏ ? ଏବଂ ଅଧିଦୈବ ବା କାହାକୁ କହନ୍ତି ? ଅଧିଯଜ୍ଞ କିଏ ? ଏ ଦେହରେ ସେ କି ପ୍ରକାରେ ରହିଅଛନ୍ତି ? ହେ ମଧୁସୂଦନ ! ଅନ୍ତକାଳରେ ସଂଯତଚିତ୍ତ ଲୋକମାନେ ତୁମ୍ଭଙ୍କୁ କିପରି ଜାଣି ପାରନ୍ତି ?

**ସୁବୋଧିନୀ ଟୀକା**—

ବ୍ରହ୍ମକର୍ମାଧିଭୂତାଦ ବଦୁଃ କୃଷ୍ଣେ କ ଚେତସଃ
ଇତ୍ୟୁକ୍ତଂ ବ୍ରହ୍ମକର୍ମାଦ ସ୍ପଷ୍ଟମଷ୍ଟମ ଉଚ୍ୟତେ ।

ପୂର୍ବାଧ୍ୟାୟାନ୍ତେ ଭଗବତୋପକ୍ଷିପ୍ତାନାଂ ବ୍ରହ୍ମାଧ୍ୟାତ୍ମାଦସପ୍ତାନାଂ ପରମାର୍ଥାନାଂ ତତ୍ତ୍ୱଂ ଜିଜ୍ଞାସୁରର୍ଜୁନ ଉବାଚ—କିଂ ତଦ୍‌ବ୍ରହ୍ମେତି ଦ୍ୱାଭ୍ୟାମ୍, ସ୍ପଷ୍ଟୋଽର୍ଥଃ ।

**କିଞ୍ଚ**—ଅଧିଯଜ୍ଞ ଇତି. ଅତ୍ର ଦେହେ ଯୋ ଯଜ୍ଞେ ନିର୍ବର୍ତ୍ତିତେ ତସ୍ମିନ୍ **କୋଽଧିଯଜ୍ଞେଽଧିଷ୍ଠାତା ? ପ୍ରଯୋଜକଃ ଫଳଦାତା ଚ କଃ ଇତ୍ୟର୍ଥଃ । ସ୍ୱରୂପଂପୃଷ୍ଟ୍ୱା**

ଶ୍ରୀ ଭଗବାନୁବାଚ

ଅକ୍ଷରଂ ବ୍ରହ୍ମ ପରମଂ ସ୍ୱଭାବୋଽଧ୍ୟାତ୍ମମୁଚ୍ୟତେ ।
ଭୂତଭାବୋଦ୍‌ଭବକରୋ ବିସର୍ଗଃ କର୍ମସଞ୍ଜ୍ଞିତଃ । ୩ ।
ଅଧିଭୂତଂ କ୍ଷରୋ ଭାବଃ ପୁରୁଷଶ୍ଚାଧିଦୈବତମ୍ ।
ଅଧିଯଜ୍ଞୋଽହମେବାତ୍ର ଦେହେ ଦେହଭୃତାଂବର । ୪ ।

ଅଧିଯଜ୍ଞ ପ୍ରକାରଂ ପୃଚ୍ଛତି—କଥଂ କେନ ପ୍ରକାରେଣାସାବସ୍ମିନ୍ ଦେହେ ସ୍ଥିତୋ ଽଧିଯଜ୍ଞ ଇତ୍ୟର୍ଥଃ । ଯଜ୍ଞଗ୍ରହଣଂ ସର୍ବକର୍ମଣାମୁପଲକ୍ଷଣାର୍ଥଂ । ଅନ୍ତକାଳେ ଚ ନିୟତଚିତ୍ତୈଃ ପୁରୁଷୈଃ କଥଂ କେନୋପାୟେନ ଜ୍ଞେୟୋଽସି ?

**ବିବୃତି**—ସପ୍ତମ ଅଧ୍ୟାୟ ଶେଷରେ ଭଗବାନ୍ ବ୍ରହ୍ମ, ଅଧ୍ୟାତ୍ମ ପ୍ରଭୃତି ଯେଉଁ ସାତପଦାର୍ଥର ସୂଚନା କରିଅଛନ୍ତି, ସେ ସମସ୍ତର ପ୍ରକୃତ ମର୍ମ କଅଣ, ଅର୍ଜୁନ ଏହି ଦୁଇଗୋଟି ଶ୍ଳୋକରେ ତାହା ପଚାରୁଅଛନ୍ତି । ପରବର୍ତ୍ତୀ କେତେଗୋଟି ଶ୍ଳୋକରେ ଭଗବାନ୍ ତାହାର ଉତ୍ତର ଦେବେ ।

୩-୪ । **ଅନ୍ୱୟ ଦୀପିକା**—ଶ୍ରୀ ଭଗବାନ୍ ଉବାଚ (ଶ୍ରୀ ଭଗବାନ୍ କହିଲେ) ପରମମ୍ ଅକ୍ଷରଂ (ଯାହା ପରମ ଅକ୍ଷର ପଦାର୍ଥ) [ତାହାହିଁ] ବ୍ରହ୍ମ (ବ୍ରହ୍ମ) । ସ୍ୱଭାବଃ ଅଧ୍ୟାତ୍ମମ୍ ଉଚ୍ୟତେ (ସ୍ୱଭାବ ଅଧ୍ୟାତ୍ମ ବୋଲି କଥିତ ହୁଏ), ଭୂତଭାବୋଦ୍‌ଭବକରଃ ( ଭୂତଗଣଙ୍କର ଉତ୍ପତ୍ତିକାରକ ) ବିସର୍ଗଃ ( ସୃଷ୍ଟି ବା ତ୍ୟାଗ ), କର୍ମସଞ୍ଜ୍ଞିତଃ (କର୍ମଶବ୍ଦ ବାଚ୍ୟ) ।

ଦେହଭୃତାଂବର ( ହେ ନରଶ୍ରେଷ୍ଠ ) କ୍ଷରଃ (ନଶ୍ୱର) ଭାବଃ (ପଦାର୍ଥହିଁ) ଅଧିଭୂତମ୍ (ଅଧିଭୂତ), ପୁରୁଷଃ (ପୁରୁଷ ହିଁ) ଅଧିଦୈବତଂ ଚ (ଅଧିଦୈବ), ଅହମ୍ ଏବ (ଅମ୍ଭେହିଁ) ଅତ୍ର ଦେହେ (ଏହି ଦେହରେ) ଅଧିଯଜ୍ଞଃ (ଅଧିଯଜ୍ଞ ରୂପରେ ଅଛୁଁ) ।

**ଅନୁବାଦ**—ଭଗବାନ୍ କହିଲେ, ଯାହା ପରମ ଅକ୍ଷର ଅର୍ଥାତ୍ ସର୍ବଥା ଅବିନଶ୍ୱର ତତ୍ତ୍ୱ ତାହାହିଁ ବ୍ରହ୍ମ । ପ୍ରତ୍ୟେକ ବସ୍ତୁର ସ୍ୱଭାବ ବା ମୂଳଭାବକୁ ଅଧ୍ୟାତ୍ମ ବୋଲିଯାଏ । ଭୂତମାନଙ୍କର ଉତ୍ପତ୍ତିକାରକ ସୃଷ୍ଟି ବ୍ୟାପାର ବା ଦ୍ରବ୍ୟତ୍ୟାଗ-ରୂପ ଯଜ୍ଞହିଁ କର୍ମଶବ୍ଦ ବାଚ୍ୟ ।

ହେ ନରଶ୍ରେଷ୍ଠ, ବିନାଶଶୀଳ ଦେହାଦି ବସ୍ତୁହିଁ ଅଧିଭୂତ । ପୁରୁଷହିଁ ଅଧିଦୈବତ । ଏ ଦେହରେ ଅମ୍ଭେ ଅଧିଯଜ୍ଞ ବୋଲାଉଁ ।

**ସୁବୋଧିନୀ ଟୀକା**—ପ୍ରଶ୍ନକ୍ରମେଣୈବୋତ୍ତରଂ ଶ୍ରୀ ଭଗବାନୁବାଚ—ଅକ୍ଷରମିତି ଦ୍ୱିଭିଃ । ନ କ୍ଷରତି ନଚଲତୀତ୍ୟକ୍ଷରମ୍ । ନନୁ ଙ୍କାରୋଽପ୍ୟକ୍ଷରଃ ?—ଇତ୍ୟାହ ପରମଂ ଯଦକ୍ଷରଂ ଜଗତୋ ମୂଳକାରଣଂ ତଦ୍‌ବ୍ରହ୍ମ, ଏତଦ୍‌ବୈ ତଦକ୍ଷରଂ

ଗାର୍ଗି ବ୍ରାହ୍ମଣା ଅଭିବଦନ୍ତୀତି ଶ୍ରୁତେଃ । ସ୍ୱସ୍ୟୈବ ବ୍ରହ୍ମଣ ଏବାଂଶତୟା ଜୀବରୂପେଣ ଭବନଂ ସ୍ୱଭାବଃ । ସ ଏବାତ୍ମାନଂ ଦେହମଧିକୃତ୍ୟ ଭୋକ୍ତୃତ୍ୱେନ ବର୍ତ୍ତମାନୋ-ଽଧ୍ୟାତ୍ମଶବ୍ଦେନୋଚ୍ୟତ ଇତ୍ୟର୍ଥଃ । ଭୂତାନାଂ ଜରାୟୁଜାଦୀନାଂ ଭାବ ଉତ୍ପତ୍ତିଃ । ଉଦ୍‌ଭବଣ୍ଡ ଅଗ୍ନୌ ପ୍ରାସ୍ତାହୁତିଃ ସମ୍ୟଗାଦିତ୍ୟମୁପତିଷ୍ଠତେ । ଆଦିତ୍ୟାଜ୍ଜାୟତେ ବୃଷ୍ଟିର୍ବୃଷ୍ଟେରନ୍ନଂ ତତଃ ପ୍ରଜାଃ । ଇତ୍ୟୁକ୍ତ କ୍ରମେଣ ବୃଦ୍ଧିଃ । ତୌ ଭାବୋଦ୍-ଭବୌ କରୋତି ଯୋ ବିସର୍ଗୋ ଦେବତୋଦ୍ଦେଶେନ ଦ୍ରବ୍ୟତ୍ୟାଗରୂପୋ ଯଜ୍ଞଃ । ସର୍ବକର୍ମଣାମୁପଲକ୍ଷଣମେତତ୍ । ସ ଚ କର୍ମଶବ୍ଦବାଚ୍ୟଃ ।

କିଞ୍ଚ ଅଧିଭୂତମିତି—କ୍ଷରେ ବିନଶ୍ୱରେ ଭାବୋ ଦେହାଦିପଦାର୍ଥଃ । ଭୂତଂ ପ୍ରାଣିମାତ୍ରମଧିକୃତ୍ୟ ଭବତୀତ୍ୟଧିଭୂତମୁଚ୍ୟତେ । ପୁରୁଷୋ ବୈରାଜଃ ସୂର୍ଯ୍ୟମଣ୍ଡଳମଧ୍ୟବର୍ତ୍ତୀ ସ୍ୱାଂଶଭୂତସର୍ବଦେବତାନାମଧିପତିରଧିଦୈବତମୁଚ୍ୟତେ । ଅଧି-ଦୈବତମଧିଷ୍ଠାତ୍ରୀ ଦେବତା । ସ ବୈ ଶରୀରୀ ପ୍ରଥମଃ ସ ବୈ ପୁରୁଷ ଉଚ୍ୟତେ । ଆଦିକର୍ତ୍ତା ସ ଭୂତାନାଂ ବ୍ରହ୍ମାଗ୍ରେ ସମବର୍ତ୍ତତ । ଇତି ଶ୍ରୁତେଃ । ଅସ୍ମିନ୍ ଦେହେଽନ୍ତର୍ଯ୍ୟାମିତ୍ୱେନ ସ୍ଥିତୋଽହମେବାଧିଯଜ୍ଞଃ । ଯଜ୍ଞାଦିକର୍ମପ୍ରବର୍ତ୍ତକ-ସ୍ତତ୍‌ଫଳଦାତା ଚ । କଥମିତ୍ୟସ୍ୟାପ୍ୟୁତ୍ତରମନେନୈବୋକ୍ତଂ ଦ୍ରଷ୍ଟବ୍ୟମ୍ । ଅନ୍ତର୍ଯ୍ୟାମିଣୋଽସଙ୍ଗତ୍ୱାଦବଗୁଣୈର୍ଜୀବବୈଲକ୍ଷଣ୍ୟେନ ଦେହାନ୍ତର୍ବର୍ତ୍ତିତ୍ୱସ୍ୟ ପ୍ରସିଦ୍ଧ-ତ୍ୱାତ୍ । ତଥାଚ ଶ୍ରୁତିଃ-ଦ୍ୱା ସୁପର୍ଣା ସଯୁଜା ସଖାୟା ସମାନଂ ବୃକ୍ଷଂ ପରିଷସ୍ୱଜାତେ । ତୟୋରନ୍ୟଃ ପିପ୍‌ପଳଂ ସ୍ୱାଦ୍ୱତ୍ତ୍ୟନଶ୍ନନ୍ନନ୍ୟୋ ଅଭିଚାକଶୀତି । ଦେହଭୃତାଂ ମଧ୍ୟେ ଶ୍ରେଷ୍ଠେତି ସମ୍ବୋଧୟଂସ୍ତ୍ୱମପ୍ୟେବଂଭୂତମନ୍ତର୍ଯ୍ୟାମିଣଂ ପରାଧୀନସ୍ୱପ୍ରବୃତ୍ତି-ନିବୃତ୍ତ୍ୟନ୍ୱୟ ବ୍ୟତିରେକାଭ୍ୟାଂ ବୋଦ୍ଧୁମର୍ହସୀତି ସୂଚୟତି ।

**ବିବୃତି**—ଅର୍ଜୁନଙ୍କର ପ୍ରଥମ ପ୍ରଶ୍ନ ହେଉଛି—ବ୍ରହ୍ମ କଅଣ ? ଏହାର ଉତ୍ତରରେ ଭଗବାନ୍ କହୁଅଛନ୍ତି—ଜଗତର ଯାହା ସର୍ବଶ୍ରେଷ୍ଠ ମୂଳ କାରଣ ତାହାହିଁ ବ୍ରହ୍ମ ।

ଦ୍ୱିତୀୟ ପ୍ରଶ୍ନ—ଅଧ୍ୟାତ୍ମ କଅଣ ? ଏହି ଦୁଇ ଶ୍ଳୋକରେ 'ଅଧି' ଉପସର୍ଗ ଯୁକ୍ତ ଅଧ୍ୟାତ୍ମ, ଅଧିଭୂତ, ଅଧିଦୈବତ, ଅଧିଯଜ୍ଞ ଏହି ଚାରିଗୋଟି ଶବ୍ଦ ଅଛି । କୌଣସି ଶବ୍ଦ ପୂର୍ବରେ 'ଅଧି' ଉପସର୍ଗ ରହିଲେ ଅର୍ଥ ହୁଏ—ତାହାକୁ ଅଧିକାର କରି, ତଦ୍‌ବିଷୟକ, ତତ୍‌ସମ୍ବନ୍ଧୀୟ ବା ତହିଁରେ ସ୍ଥିତିଶୀଳ । ଏଠାରେ ଅଧ୍ୟାତ୍ମ ଶବ୍ଦର ଅର୍ଥ ଆତ୍ମା ସମ୍ବନ୍ଧୀୟ ବା ଆତ୍ମବିଷୟକ । ଏ ପ୍ରଶ୍ନର ଉତ୍ତରରେ ଭଗବାନ୍ କହୁଅଛନ୍ତି—ସ୍ୱଭାବହିଁ ଅଧ୍ୟାତ୍ମ, ବ୍ରହ୍ମହିଁ ଅଂଶ କ୍ରମେ ଜୀବରୂପରେ ଉତ୍ପନ୍ନ ହୋଇ ଦେହ ମଧ୍ୟରେ ରହି ସୁଖଦୁଃଖ ଭୋଗକରନ୍ତି, ଏହି ହେତୁରୁ ତାଙ୍କୁ ଅଧ୍ୟାତ୍ମ ବୋଲାଯାଏ । ଏହା ବ୍ରହ୍ମଙ୍କର ସ୍ୱ ଅର୍ଥାତ୍ ନିଜର ଭାବ ଅର୍ଥାତ୍ ଉତ୍ପତ୍ତି, ଅତଏବ ବ୍ରହ୍ମ ପରମାତ୍ମା ଓ ଅଧ୍ୟାତ୍ମ ଜୀବାତ୍ମା ।

ତୃତୀୟ ପ୍ରଶ୍ନ—କର୍ମ କଅଣ ? ଉତ୍ତରରେ କୁହାଯାଇଅଛି ଭୂତଭାବର ଉଦ୍‌ଭବକର ଯେଉଁ ବିସର୍ଗ ତାହାହିଁ କର୍ମ । ଶ୍ରୀଧରସ୍ୱାମୀ କହନ୍ତି—ଭୂତଭାବର ଅର୍ଥ ଜୀବମାନଙ୍କର ଉତ୍ପତ୍ତି ଏବଂ ଉଦ୍‌ଭବକରର ଅର୍ଥ ଅଭିବୃଦ୍ଧି, ତେଣୁ ଜୀବ-ଜଗତର ଉଦ୍‌ଭବ ଓ ବୃଦ୍ଧି ପାଇଁ ପ୍ରୟୋଜନୀୟ ଯଜ୍ଞ କାର୍ଯ୍ୟରେ ଦେବତାମାନଙ୍କ ଉଦ୍ଦେଶ୍ୟରେ ଦ୍ରବ୍ୟତ୍ୟାଗରୂପ ବିସର୍ଗ ଅର୍ଥାତ୍ ବିସର୍ଜନ ହିଁ କର୍ମ । ଏହି ବ୍ୟାଖ୍ୟାର ସମର୍ଥନ ପାଇଁ ସେ ମନୁ ସଂହିତାର ୩ୟ ଅଧ୍ୟାୟରୁ ଗୋଟିଏ ଶ୍ଳୋକ ଉଦ୍ଧାର କରିଅଛନ୍ତି । (ତାହା ସ୍ୱାମୀଙ୍କ ଟୀକାରେ ଦେଖ) । କିନ୍ତୁ ଲୋକମାନ୍ୟ ତିଳକ ଓ ଅରବିନ୍ଦ ପ୍ରଭୃତି ଏ ଯୁଗର ମନୀଷୀମାନେ 'ବିସର୍ଗ' ଶବ୍ଦକୁ 'ସୃଷ୍ଟିବ୍ୟାପାର' ଅର୍ଥରେ ଗ୍ରହଣ କରିଅଛନ୍ତି । ସେମାନଙ୍କ ମତରେ ପ୍ରାଣୀମାନଙ୍କର ଉତ୍ପତ୍ତିକାରକ ସୃଷ୍ଟି ବ୍ୟାପାରହିଁ କର୍ମ । ଏହାର ସମର୍ଥନରେ ତିଳକ କହନ୍ତି—ବୈଦିକ ନାରଦୀୟ ସୂକ୍ତରେ 'ବିସୃଷ୍ଟି' ଶବ୍ଦ ବିସର୍ଗ ଅର୍ଥରେ ବହୁବାର ପ୍ରଯୁକ୍ତ ହୋଇଅଛି ।

ଚତୁର୍ଥ ପ୍ରଶ୍ନ—ଅଧିଭୂତ କଅଣ ? ପ୍ରତ୍ୟେକ ପଦାର୍ଥର ନାମରୂପାତ୍ମକ ବିନଶ୍ୱର ସ୍ୱରୂପକୁ 'କ୍ଷର' ବୋଲାଯାଏ । ଏହି ନାମରୂପାତ୍ମକ କ୍ଷରଭାବ ବା ନଶ୍ୱରଭାବହିଁ 'ଅଧିଭୂତ' । ଏହା ଭୂତ ଅର୍ଥାତ୍ ପ୍ରାଣୀମାନଙ୍କୁ ଆଶ୍ରୟ କରିଥାଏ ।

ପଞ୍ଚମ ପ୍ରଶ୍ନ 'ଅଧିଦୈବ' କଅଣ ? ଐଶୀଶକ୍ତି ସଙ୍କଳ୍ପ ସଚେତନ, ସୂକ୍ଷ୍ମଦେହଧାରୀ, ଦେବତାରୂପରେ ବିରାଜିତ । ଯେପରି ସୂର୍ଯ୍ୟଦେବତା, ଜଳଦେବତା ବା ବରୁଣ ପୁରୁଷ ଇତ୍ୟାଦି, ଏଠାରେ ଏହିସବୁ ଦେବତା ହିଁ ପୁରୁଷ ପଦବାଚ୍ୟ । ଇନ୍ଦ୍ରିୟାଦିର ନିୟନ୍ତ୍ରା ରୂପେ ଭିନ୍ନ ଭିନ୍ନ ଦେବତା ମଧ୍ୟ ସ୍ୱୀକୃତ ହୋଇଅଛନ୍ତି । ଯଥା, ମନର ଦେବତା ଚନ୍ଦ୍ର, ଚକ୍ଷୁର ନିୟନ୍ତ୍ରା ସୂର୍ଯ୍ୟ, କର୍ଣ୍ଣର ଦେବତା ଆକାଶ ବା ଦିଗ ଇତ୍ୟାଦି । ସମସ୍ତ ଦେବତା ଯାହାଙ୍କର ଅଙ୍ଗୀଭୂତ ସେହି ଆଦିପୁରୁଷ ହିଁ ଅଧିଦୈବତ, ଏହାଙ୍କୁ ହିରଣ୍ୟଗର୍ଭ ବା ଭୂତସ୍ରଷ୍ଟା ବ୍ରହ୍ମା କୁହାଯାଏ ।

ଷଷ୍ଠ ପ୍ରଶ୍ନ—ଅଧିଯଜ୍ଞ କିଏ ? ସପ୍ତମ ପ୍ରଶ୍ନ—ଏବଂ ଏ ଦେହରେ ସେ କି ପ୍ରକାରେ ରହିଅଛନ୍ତି ? ଏହାର ଉତ୍ତରରେ ଭଗବାନ୍ କହୁଅଛନ୍ତି, ସୃଷ୍ଟିରକ୍ଷାର୍ଥ ଜୀବର କର୍ମ ହିଁ ଯଜ୍ଞ; ଯେ ସମସ୍ତ ଯଜ୍ଞର ପ୍ରବର୍ତ୍ତକ ଓ ଫଳଦାତା ଓ ଯେ ଅନ୍ତର୍ଯ୍ୟାମିରୂପରେ ଦେହମଧ୍ୟରେ ବାସକରି ରହିଅଛନ୍ତି, ସେହି ବସ୍ତୁହିଁ ଅଧିଯଜ୍ଞ । (ଅଷ୍ଟମ ପ୍ରଶ୍ନର ଉତ୍ତର ପରବର୍ତ୍ତୀ ଶ୍ଳୋକରେ ଦିଆଯାଇଅଛି) ।

ଏସବୁ ଆଲୋଚନା କଲେ ଜଣାଯାଏ ପରବ୍ରହ୍ମ ହିଁ ସମସ୍ତ । ଯେଉଁମାନେ ବ୍ରହ୍ମ, ଆତ୍ମା, ଦେବତା, ଯଜ୍ଞନାରାୟଣାଦି ନାନାପ୍ରକାର ଭେଦକରି ଭିନ୍ନ ଭିନ୍ନ ଉପାସନାରେ ମଗ୍ନଥାଆନ୍ତି ସେହିମାନଙ୍କୁ ଲକ୍ଷ୍ୟକରି ଏହି ବର୍ଣ୍ଣନା କରାଯାଇଅଛି । ଶେଷରେ ସିଦ୍ଧାନ୍ତ ହୋଇଅଛି—ଭଗବାନ ହିଁ ଏସବୁ । ଉପାସନା ସକାଶେ

ଅନ୍ତକାଳେ ଚ ମାମେବ ସ୍ମରନ୍ ମୁକ୍ତ୍ୱା କଳେବରମ୍ ।
ଯଃ ପ୍ରୟାତି ସ ମଦ୍‌ଭାବଂ ଯାତି ନାସ୍ତ୍ୟତ୍ର ସଂଶୟଃ । ୫ ।

ଅଧିଭୂତ, ଅଧିଯଜ୍ଞ, ଅଧିଦୈବତ, ଅଧ୍ୟାତ୍ମ ପ୍ରଭୃତି ଅନେକ ଭେଦମାନଙ୍କରେ ମଧ୍ୟ ଏହି ନାନାତ୍ୱ ସତ୍ୟ ନୁହେଁ । ବସ୍ତୁତଃ ଏକ ପରମେଶ୍ୱର ସର୍ବତ୍ର ବ୍ୟାପ୍ତ ଅଛନ୍ତି ।

ଏ ସମ୍ବନ୍ଧରେ ଅରବିନ୍ଦଙ୍କ ବ୍ୟାଖ୍ୟା ଅଧିକ ସଙ୍ଗତ ଓ ସରଳ । ତାହା ଏହିପରି—"ଭଗବାନଙ୍କର ପରମ ଅକ୍ଷର ଅବ୍ୟୟ ଭାବହିଁ ବ୍ରହ୍ମତତ୍ତ୍ୱ । ପ୍ରତ୍ୟେକ ବସ୍ତୁର ଯାହା ମୂଳ ବା ଆତ୍ମସ୍ୱରୂପ ତାହାକୁ ହିଁ ସ୍ୱ-ଭାବ ବା ଅଧ୍ୟାତ୍ମ ବୋଲାଯାଏ । ଅତଏବ ସେହି ନିର୍ଗୁଣ ବ୍ରହ୍ମଙ୍କୁ ଯେତେବେଳେ ସଗୁଣ ଭାବରେ ସୃଷ୍ଟି ପ୍ରପଞ୍ଚର ମୂଳକାରଣ ନାନାବିଭୂତିସମ୍ପନ୍ନ ବୋଲି କଳ୍ପନା କରାଯାଏ ସେତେବେଳେ ତାହାଙ୍କୁ ଅଧ୍ୟାତ୍ମ କୁହାଯାଏ । ଏହି ଅଧ୍ୟାତ୍ମତତ୍ତ୍ୱହିଁ ସ୍ୱଭାବ ଅର୍ଥାତ୍ ସ୍ୱୟଂ ବ୍ରହ୍ମଙ୍କର ଗୋଟିଏ ଭାବ । ବ୍ରହ୍ମଙ୍କର ଏହି ସ୍ୱଭାବ ବା ସଗୁଣ ଭାବରୁ ହିଁ ବିସର୍ଗ ଅର୍ଥାତ୍ ଜଗତ୍ ସୃଷ୍ଟି ବ୍ୟାପାର-ବିଶ୍ୱଶକ୍ତିର ସମସ୍ତ କର୍ମର ଉତ୍ପତ୍ତି । ସୁତରାଂ ଏହାହିଁ କର୍ମତତ୍ତ୍ୱ । ଏହି କର୍ମର ଯାହା ଫଳ ଅର୍ଥାତ୍ ନଶ୍ୱର ଜଗତ୍ ପ୍ରପଞ୍ଚ ତାହାହିଁ କ୍ଷରଭାବ ବା ଅଧିଭୂତ । ସ୍ୱ-ଭାବରୁହିଁ କ୍ଷରଭାବର ଉତ୍ପତ୍ତି ଏବଂ ଏହି ଭୂତସମୂହରେ ଚୈତନ୍ୟରୂପରେ ଯାହା ଅବସ୍ଥିତ ତାହାହିଁ ଅଧିଦୈବତ । ସୃଷ୍ଟିବ୍ୟାପାରହିଁ ଆଦିକର୍ମ ଏବଂ ସେହି ସୃଷ୍ଟିରକ୍ଷାନିମିତ୍ତ ଜୀବର ଯେଉଁ ନିଷ୍କାମକର୍ମ ତାହାହିଁ ଯଜ୍ଞ ଏବଂ ସେହିସବୁ କର୍ମର ନିୟନ୍ତା, ସର୍ବଯଜ୍ଞର ଭୋକ୍ତା ଭଗବାନହିଁ ଅଧିଯଜ୍ଞ, ଅନ୍ତର୍ଯାମିରୂପରେ ସେ ସବୁଦେହରେ ବାସ କରନ୍ତି ।"

୫ । **ଅନ୍ୱୟଦୀପିକା**—ଅନ୍ତକାଳେ (ମୃତ୍ୟୁକାଳରେ) ମାମ୍ ଏବ (ଆମ୍ଭଙ୍କୁହିଁ) ସ୍ମରନ୍ (ଚିନ୍ତାକରି) କଳେବରଂ (ଦେହ) ମୁକ୍ତ୍ୱା (ପରିତ୍ୟାଗପୂର୍ବକ) ଯଃ (ଯେ) ପ୍ରୟାତି (ପ୍ରୟାଣକରନ୍ତି) ସଃ (ସେ) ମଦ୍‌ଭାବଂ (ଆତ୍ମ ସ୍ୱରୂପ) ଯାତି (ପାଆନ୍ତି) । ଅତ୍ର (ଏଥିରେ) ସଂଶୟଃ ନାସ୍ତି (ସନ୍ଦେହ ନାହିଁ) ।

**ଅନୁବାଦ**—ଯେଉଁ ଲୋକ ମୃତ୍ୟୁ ସମୟରେ ଆମ୍ଭଙ୍କୁ ସ୍ମରଣକରି ଦେହତ୍ୟାଗପୂର୍ବକ ପ୍ରସ୍ଥାନ କରନ୍ତି, ସେ ଆତ୍ମ ଭାବ ପ୍ରାପ୍ତ ହୁଅନ୍ତି—ଏଥିରେ ସନ୍ଦେହ ନାହିଁ ।

**ସୁବୋଧିନୀ ଟୀକା**—ପ୍ରୟାଣକାଳେ ଚ କଥଂ ଜ୍ଞେୟୋଽସୀତ୍ୟନେନ ପୃଷ୍ଟମନ୍ତକାଳେ ଜ୍ଞାନୋପାୟଂ ତତ୍‌ଫଳଂ ଚ ଦର୍ଶୟତି—ଅନ୍ତକାଳ ଇତି । ମାମେବୋକ୍ତଲକ୍ଷଣମନ୍ତର୍ଯାମିରୂପଂ ପରମେଶ୍ୱରଂ ସ୍ମରନ୍ ଦେହଂ ତ୍ୟକ୍ତ୍ୱା ଯଃ ପ୍ରକର୍ଷେଣାର୍ଚ୍ଚିରାଦିମାର୍ଗେଣୋତ୍ତରାୟଣ ପଥା ଯାତି ସ ମଦ୍‌ଭାବଂ ମଦ୍ରୂପତାଂ ଯାତି । ଅତ୍ର ସଂଶୟୋ ନାସ୍ତି । ସ୍ମରଣଂ ଜ୍ଞାନୋପାୟଃ, ମଦ୍‌ଭାବାପତ୍ତିସ୍ତୁ ଫଳମିତ୍ୟର୍ଥଃ ।

ଯଂ ଯଂ ବାପି ସ୍ମରନ୍ ଭାବଂ ତ୍ୟଜତ୍ୟନ୍ତେ କଳେବରମ୍ ।
ତଂ ତମେବୈତି କୌନ୍ତେୟ ସଦା ତଦ୍‌ଭାବଭାବିତଃ । ୬ ।
ତସ୍ମାତ ସର୍ବେଷୁ କାଳେଷୁ ମାମନୁସ୍ମର ଯୁଧ୍ୟ ଚ ।
ମୟ୍ୟର୍ପିତମନୋବୁଦ୍ଧି ର୍ମାମେବୈଷ୍ୟସ୍ୟସଂଶୟମ୍ । ୭ ।

**ବିବୃତି**—ଅର୍ଜୁନଙ୍କର ଅଷ୍ଟମ ପ୍ରଶ୍ନର ଉତ୍ତରରେ ଭଗବାନ ଏ ଶ୍ଲୋକରେ ଏବଂ ପରବର୍ତ୍ତୀ କେତେ ଗୋଟି ଶ୍ଲୋକରେ ଶେଷ ସମୟରେ ଭଗବାନଙ୍କୁ କି ଭାବରେ ସ୍ମରଣ କରିବାକୁ ହୁଏ ଓ ତଦ୍ଦ୍ୱାରା କପରି ସଦ୍‌ଗତି ଲାଭ ହୁଏ ତାହାହିଁ କହୁଅଛନ୍ତି ।

**୬ । ଅନ୍ୱୟଦୀପିକା**—ହେ କୌନ୍ତେୟ, [ଜୀବଃ] ଅନ୍ତେ (ଶେଷ ସମୟରେ ଅର୍ଥାତ୍ ମରଣକାଳରେ) ଯଂ ଯଂ ବା ଅପି (ଯେଉଁ ଯେଉଁ) ଭାବ (ଭାବ) ସ୍ମରନ୍ (ସ୍ମରଣକରି) କଳେବରଂ ତ୍ୟଜତି (ଶରୀର ତ୍ୟାଗକରେ), ସଦା (ସର୍ବଦା) ତଦ୍‌ଭାବଭାବିତଃ (ସେହି ଭାବରେ ତନ୍ମୟଚିତ୍ତ ହୋଇ) ତଂ ତମ୍ ଏବ (ସେହି ସେହି ଭାବକୁହିଁ) ଏତି (ପ୍ରାପ୍ତହୁଏ) ।

**ଅନୁବାଦ**—ହେ କୌନ୍ତେୟ, ଜୀବ ମରଣକାଳରେ ଯେଉଁ ଯେଉଁ ଭାବ ସ୍ମରଣ କରି କରି ଦେହ ତ୍ୟାଗକରେ, ଜନ୍ମସାରା ସେହି ସେହି ଭାବରେ ତନ୍ମୟ ଚିତ୍ତ ଥିବାରୁ ସେହି ଭାବହିଁ ପ୍ରାପ୍ତହୁଏ ।

**ସୁବୋଧିନୀ ଟୀକା**—ନ କେବଲଂ ମାଂ ସ୍ମରନ୍ ମଦ୍‌ଭାବଂ ପ୍ରାପ୍ନୋତୀତି ନିୟମଃ । କିଂ ତର୍ହି ? ଯଂ ଯମିତି । ଯଂ ଯଂ ଭାବଂ ଦେବତାନ୍ତରଂ ଚାନ୍ୟମପି ବାନ୍ତକାଳେ ସ୍ମରନ୍ ଦେହଂ ତ୍ୟଜତି ତଂ ତମେବ ସ୍ମର୍ଯ୍ୟମାଣଂ ଭାବଂ ପ୍ରାପ୍ନୋତି । ଅନ୍ତକାଳେ ଭାବବିଶେଷସ୍ମରଣେହେତୁଃ ସଦା ତଦ୍‌ଭାବଭାବିତ ଇତି ସର୍ବଦା ତସ୍ୟ ଭାବୋ ଭାବନାଽନୁଚିନ୍ତନମ୍ । ତେନ ଭାବିତୋ ବାସିତଚିତ୍ତଃ ।

**ବିବୃତି**—ମୃତ୍ୟୁସମୟରେ ଜୀବ ଭଗବାନଙ୍କୁ ସ୍ମରଣକଲେ ତାଙ୍କୁ ପାଏ—୫ମ ଶ୍ଲୋକରେ ଏହା କୁହାଯାଇଅଛି । ମାତ୍ର ଜୀବନସାରା ଯେଉଁମାନେ ବିଷୟଚିନ୍ତାରେ ଲିପ୍ତଥାଆନ୍ତି, ମୃତ୍ୟୁକାଳରେ ତାହା ଦୂର ହୁଏ ନାହିଁ । ତେଣୁ ଏଠାରେ କୁହାଯାଇଅଛି 'ସଦା ତଦ୍‌ଭାବଭାବିତଃ' ଅର୍ଥାତ୍ ଜୀବନର ପ୍ରତ୍ୟେକ କାର୍ଯ୍ୟରେ ଲୋକ ଯାହା ଚିନ୍ତା କରୁଥାଏ, ମୃତ୍ୟୁସମୟରେ ତାହାହିଁ ସେ ସ୍ମରଣ କରେ । ଏଥିରୁ ବୁଝାଯାଉଅଛି, ଯେଉଁ ଲୋକ ଜୀବନର ପ୍ରତ୍ୟେକ କାର୍ଯ୍ୟରେ ଭଗବାନଙ୍କୁ ସ୍ମରଣ କରନ୍ତି ମୃତ୍ୟୁସମୟରେ ନିଶ୍ଚୟ ତାଙ୍କ ସ୍ମୃତି ଜାଗରୁକ ରହେ ।

**୭ । ଅନ୍ୱୟଦୀପିକା**—ତସ୍ମାତ୍ (ସେହି ହେତୁରୁ) ସର୍ବେଷୁ କାଳେଷୁ (ସବୁବେଳେ) ମାମ୍ (ଆମ୍ଭଙ୍କୁ) ଅନୁସ୍ମର (ସ୍ମରଣକର) ଯୁଧ୍ୟ ଚ (ଏବଂ ଯୁଦ୍ଧକର) ।

ଅଭ୍ୟାସଯୋଗଯୁକ୍ତେନ ଚେତସା ନାନ୍ୟଗାମିନା ।
ପରମଂ ପୁରୁଷଂ ଦିବ୍ୟଂ ଯାତି ପାର୍ଥାନୁଚିନ୍ତୟନ୍ । ୮ ।

ମୟି (ଅମ୍ଭଠାରେ) ଅର୍ପିତ ମନୋବୁଦ୍ଧିଃ (ମନ ଓ ବୁଦ୍ଧି ଅର୍ପଣ କରି) ମାମ୍ ଏବ (ଅମ୍ଭଙ୍କୁହିଁ) ଅସଂଶୟଂ (ନିଃସନ୍ଦେହରେ) ଏଷ୍ୟସି (ପାଇବ) ।

**ଅନୁବାଦ**—ସେହିହେତୁରୁ ସବୁବେଳେ ଅମ୍ଭଙ୍କୁ ସ୍ମରଣକର ଏବଂ ଯୁଦ୍ଧକର । ଅମ୍ଭଠାରେ ମନ ଓ ବୁଦ୍ଧି ସମର୍ପଣ କଲେ ଅମ୍ଭଙ୍କୁ ନିଶ୍ଚୟ ପାଇବ ।

**ସୁବୋଧିନୀ ଟୀକା**—ଯସ୍ମାତ୍ ପୂର୍ବବାସନୈବାନ୍ତକାଲେ ସ୍ମୃତିହେତୁଃ, ନତୁ ତଦାନୀନ୍ତନ ସ୍ମରଣୋଦ୍ୟମଃ ସମ୍ଭବତି—ତସ୍ମାଦେତ । ତସ୍ମାତ୍ ସର୍ବଦା ମାମନୁସ୍ମର ଚିନ୍ତୟ । ସତତଂ ସ୍ମରଣଂ ଚ ଚିତ୍ତଶୁଦ୍ଧିଂ ବିନା ନ ଭବତି । ଅତୋ ଯୁଧ୍ୟ ଚ ଯୁଧ୍ୟସ୍ୱ । ଚିତ୍ତଶୁଦ୍ଧ୍ୟର୍ଥଂ ଯୁଦ୍ଧାଦିକଂ ସ୍ୱଧର୍ମମନୁତିଷ୍ଠେତ୍ୟର୍ଥଃ । ଏବଂ ମୟ୍ୟର୍ପିତଂମନଃ ସଙ୍କଳ୍ପାତ୍ମକଂ ବୁଦ୍ଧିଶ୍ଚ ବ୍ୟବସାୟାତ୍ମିକା ଯେନ ତ୍ୱୟା ସ ତ୍ୱଂ ମାମେବ ପ୍ରାପ୍ସ୍ୟସି । ଅସଂଶୟଃ ସଂଶୟୋଽତ୍ର ନାସ୍ତି ।

**ବିବୃତି**—ଯେଉଁମାନେ କହନ୍ତି ସଂସାର ଛାଡ଼ି ଅର୍ଥାତ୍ ସମସ୍ତ କର୍ମ ତ୍ୟାଗକରି ଏକମାତ୍ର ଭକ୍ତିପଥରେ ପଥିକ ହେଲେ ଜୀବର ସଦ୍‌ଗତି ହୁଏ, ସେମାନଙ୍କପକ୍ଷରେ ଏ ଶ୍ଳୋକର ସିଦ୍ଧାନ୍ତ ପ୍ରତି ଦୃଷ୍ଟି ଦେବା ସର୍ବଥା ଉଚିତ । ଅନନ୍ୟଭକ୍ତି ଭକ୍ତିଦ୍ୱାରା ଯେ ମୋକ୍ଷପ୍ରାପ୍ତି ହୁଏ—ଏହା ନିଃସନ୍ଦେହ । ତେଣୁ ଈଶ୍ୱର-ଭକ୍ତିକୁ ସ୍ଥିରରଖିବା ପାଇଁ ଜୀବନସାରା ତାହାର ଅଭ୍ୟାସ କରିବା ଆବଶ୍ୟକ । ଏହା ବୋଲି କର୍ତ୍ତବ୍ୟକର୍ମ ତ୍ୟାଗକରିବା ଉଚିତ ନୁହେ । ସ୍ୱଧର୍ମଅନୁସାରେ ଯେତେ-ବେଳେ ଯେଉଁ କର୍ମ କରିବାର କଥା ସେତେବେଳେ ସେହି କର୍ମ ନିଷ୍କାମବୁଦ୍ଧିରେ କରିବ, ଏହାହିଁ ଗୀତାଶାସ୍ତ୍ରର ସିଦ୍ଧାନ୍ତ । ସଂସାର ଛାଡ଼ି କର୍ମ ତ୍ୟାଗ ନ କଲେ ମୁକ୍ତିଲାଭ ହେବ ନାହିଁ—ଏହା କୌଣସିଠାରେ ଗୀତାରେ କୁହାଯାଇ ନାହିଁ ।

୮ । **ଅନ୍ୱୟଦୀପିକା**—ହେ ପାର୍ଥ, ଅଭ୍ୟାସଯୋଗଯୁକ୍ତେନ (ଅଭ୍ୟାସ-ରୂପ ଯୋଗଯୁକ୍ତ ) ନାନ୍ୟଗାମିନା ( ଅନନ୍ୟଗାମୀ ) ଚେତସା ( ମନଦ୍ୱାରା ) ଅନୁଚିନ୍ତୟନ୍ ( ଚିନ୍ତା କରି ) [ ସାଧକ ] ଦିବ୍ୟଂ ପରମଂ ପୁରୁଷଂ ( ଦିବ୍ୟ ପରମପୁରୁଷଙ୍କୁ ) ଯାତି ( ପ୍ରାପ୍ତହୁଅନ୍ତି ) ।

**ଅନୁବାଦ**—ହେ ଅର୍ଜୁନ, ସାଧକ ଚିତ୍ତକୁ ଅନ୍ୟ ବିଷୟରେ ନ ଦେଇ ଅଭ୍ୟାସଦ୍ୱାରା ସ୍ଥିରକରି ଦିବ୍ୟ ପରମ ପୁରୁଷଙ୍କୁ ଚିନ୍ତାକଲେ ତାହାଙ୍କୁ ପ୍ରାପ୍ତ ହୁଅନ୍ତି ।

**ସୁବୋଧିନୀ ଟୀକା**—ସତତସ୍ମରଣସ୍ୟ ଚାଭ୍ୟାସୋଽନ୍ତରଙ୍ଗଂ ସାଧନ-ମିତି ଦର୍ଶୟନ୍ନାହ—ଅଭ୍ୟାସ ଯୋଗେତି । ଅଭ୍ୟାସଃ ସଜାତୀୟ ପ୍ରତ୍ୟୟ ପ୍ରବାହଃ ।

କବିଂ ପୁରାଣମନୁଶାସିତାରମ୍
ଅଣୋରଣୀୟାଂସମନୁସ୍ମରେଦ୍ ଯଃ
ସର୍ବସ୍ୟ ଧାତାରମଚିନ୍ତ୍ୟରୂପମ୍
ଆଦିତ୍ୟ ବର୍ଣ୍ଣଂ ତମସଃ ପରସ୍ତାତ୍ । ୯ ।
ପ୍ରୟାଣକାଲେ ମନସାଚଲେନ,
ଭକ୍ତ୍ୟାଯୁକ୍ତୋ ଯୋଗବଲେନ ଚୈବ ।
ଭ୍ରୁବୋର୍ମଧ୍ୟେ ପ୍ରାଣମାବେଶ୍ୟ ସମ୍ୟକ୍
ସ ତଂ ପରଂ ପୁରୁଷମୁପୈତି ଦିବ୍ୟମ୍ । ୧୦ ।

ସ ଏବ ଯୋଗ ଉପାୟଃ ତେନ ଯୁକ୍ତେନ ଏକାଗ୍ରେଣ । ଅତ ଏବ ନାନ୍ୟଂ ବିଷୟଂ ଗନ୍ତୁଂଶୀଲଂ ଯସ୍ୟ, ତେନ ଚେତସା । ଦିବ୍ୟଂ ଦ୍ୟୋତନାତ୍ମକଂ ପରମଂ ପୁରୁଷଂ ପରମେଶ୍ୱରମନୁଚିନ୍ତୟନ୍ ହେ ପାର୍ଥ ତମେବଯାତୀତି ।

**ବିବୃତି**—ସପ୍ତମ ଶ୍ଳୋକରେ ପରମାତ୍ମାଙ୍କୁ ନିରନ୍ତର ସ୍ମରଣ କରିବା ପାଇଁ ଯେଉଁ ଉପଦେଶ ପ୍ରଦତ୍ତ ହୋଇଅଛି, ସେ ଚିନ୍ତା କି ପଦ୍ଧତିରେ କରିବାକୁ ହେବ—ଏହି ଶ୍ଳୋକରୁ ତାହା କୁହାଯାଉଅଛି ।

ଚିତ୍ତ ବଡ଼ ଚଞ୍ଚଳ, ବିଷୟବିଶେଷରେ ତାହାକୁ ଏକାଗ୍ର କରିବାର ପ୍ରଧାନ ଉପାୟ ଅଭ୍ୟାସ । ଅଭ୍ୟାସବଳରେ ଚିତ୍ତକୁ ଅନ୍ୟ ବିଷୟରୁ ନିବୃତ୍ତ ରଖି ପାରିଲେ ଦିବ୍ୟ ତେଜୋମୟ ପରମପୁରୁଷଙ୍କର ସ୍ମରଣ ସହଜସାଧ୍ୟ ହୁଏ ।

୯-୧୦ । **ଅନ୍ୱୟଦୀପିକା**—ଯଃ ( ଯେଉଁଲୋକ ) କବିଂ ( ସର୍ବଜ୍ଞ ) ପୁରାଣଂ ( ଅନାଦି ) ଅନୁଶାସିତାରଂ ( ନିୟନ୍ତା ) ଅଣୋଃ ( ଅଣୁଠାରୁ ) ଅଣୀୟାଂସଂ (ଅତିସୂକ୍ଷ୍ମ) ସର୍ବସ୍ୟ (ସମସ୍ତଙ୍କର) ଧାତାରଂ (ବିଧାତା) ଅଚିନ୍ତ୍ୟରୂପଂ (ଅଚିନ୍ତନୀୟ ରୂପଧାରୀ) ଆଦିତ୍ୟବର୍ଣ୍ଣଂ (ସୂର୍ଯ୍ୟଙ୍କ ପରି ସ୍ୱପ୍ରକାଶ) ତମସଃ ପରସ୍ତାତ୍ (ପ୍ରକୃତି ପରେ ଅବସ୍ଥିତ ବା ପ୍ରପଞ୍ଚାତୀତ) [ପୁରୁଷଙ୍କୁ] ପ୍ରୟାଣକାଲେ (ମରଣ-କାଳରେ) ଅଚଲେନ ମନସା (ଏକାଗ୍ରମନରେ) ଭକ୍ତ୍ୟା ଯୁକ୍ତଃ (ଭକ୍ତିଯୁକ୍ତ ହୋଇ) ଯୋଗବଲେନ ଚ (ଏବଂ ଯୋଗବଳରେ) ଭ୍ରୁବୋଃ ମଧ୍ୟେ (ଭ୍ରୂଯୁଗଳମଧ୍ୟରେ) ପ୍ରାଣଂ ସମ୍ୟକ୍ ଆବେଶ୍ୟ (ପ୍ରାଣକୁ ସମ୍ୟକ୍ ରୂପେ ସ୍ଥାପନ କରି) ଅନୁସ୍ମରେତ୍ (ସ୍ମରଣ କରନ୍ତି) ସଃ (ସେ) ତଂ ଦିବ୍ୟଂ ପୁରୁଷଂ (ସେହି ଦିବ୍ୟ ପରମପୁରୁଷଙ୍କୁ) ଉପୈତି (ପ୍ରାପ୍ତ ହୁଅନ୍ତି) ।

**ଅନୁବାଦ**—ଯେଉଁ ଲୋକ ମୃତ୍ୟୁ ସମୟରେ ଯୋଗବଳରେ ଭକ୍ତିଯୁକ୍ତ ହୋଇ ମନକୁ ସ୍ଥିରକରି ଦୁଇ ଭ୍ରୂମଧ୍ୟରେ ପ୍ରାଣକୁ ଉତ୍ତମରୂପେ ରଖି କବି ଅର୍ଥାତ୍ ସର୍ବଜ୍ଞ, ପୁରାତନ, ସର୍ବନିୟନ୍ତା, ଅଣୁଠାରୁ ମଧ୍ୟ ସୂକ୍ଷ୍ମ, ସମସ୍ତଙ୍କର ବିଧାତା,

ଯଦକ୍ଷରଂ ବେଦବିଦୋ ବଦନ୍ତି
ବିଶନ୍ତି ଯଦ୍ ଯତୟୋ ବୀତରାଗାଃ ।
ଯଦିଚ୍ଛନ୍ତୋ ବ୍ରହ୍ମଚର୍ଯ୍ୟଂ ଚରନ୍ତି
ତତ୍ ତେ ପଦଂ ସଂଗ୍ରହେଣ ପ୍ରବକ୍ଷ୍ୟେ । ୧୧ ।

ଅଚିନ୍ତ୍ୟରୂପଧାରୀ ଏବଂ ଅନ୍ଧକାରର ଅତୀତ, ସୂର୍ଯ୍ୟଙ୍କ ପରି ଦେଦୀପ୍ୟମାନ ପୁରୁଷଙ୍କୁ ସ୍ମରଣ କରନ୍ତି ସେ ଲୋକ ସେହି ଦିବ୍ୟ ପରମ ପୁରୁଷଙ୍କ ସଙ୍ଗରେ ମିଳିତ ହୁଅନ୍ତି ।

**ସୁବୋଧିନୀ ଟୀକା**—ପୁନରପ୍ୟନୁଚିନ୍ତନୀୟଂ ପୁରୁଷଂ ବିଶିନଷ୍ଟି—କବିମିତି ଦ୍ୱାଭ୍ୟାମ୍ । କବିଂ ସର୍ବଜ୍ଞଂ ସର୍ବବିଦ୍ୟାନିର୍ମାତାରଂ ପୁରାଣମନାଦିସିଦ୍ଧମ୍ । ଅନୁଶାସିତାରଂ ନିୟନ୍ତାରମ୍ । ଅଣୋଃ ସୂକ୍ଷ୍ମାଦପ୍ୟଣୀୟାଂସମ୍ । ଅତିସୂକ୍ଷ୍ମମାକାଶ କାଳଦିଗ୍ଭ୍ୟୋଽପ୍ୟତିସୂକ୍ଷ୍ମତରଂ । ସର୍ବସ୍ୟ ଧାତାରଂ ପୋଷକମ୍ । ଅପରିମିତ ମହିମତ୍ୱାଦଚିନ୍ତ୍ୟରୂପଂ ମଳୀମସୟୋର୍ମନୋବୁଦ୍ଧ୍ୟୋରଗୋଚରମ୍ । ବେଦାହମେତଂ ପୁରୁଷଂ ମହାନ୍ତମାଦିତ୍ୟବର୍ଣ୍ଣଂ ତମସଃ ପରସ୍ତାଦିତି ଶ୍ରୁତେଃ । ୯ ।

ପ୍ରୟାଣକାଳ ଇତି । ସପ୍ତପଦ୍ମପ୍ରକୃତଂ ଉକ୍ତ୍ୱା ଯତ୍ରିଷ୍ଟୁତ, ଏବମ୍ଭୂତଂ ପୁରୁଷମନ୍ତକାଳେ ଭକ୍ତ୍ୟାଯୁକ୍ତୋ ନିଶ୍ଚଳେନ ବିକ୍ଷେପରହିତେନ ମନସା ଯୋଽନୁସ୍ମରେତ୍ । ମନୋନୈଶ୍ଚଲ୍ୟେ ହେତୁଃ—ଯୋଗବଳେନ ସମ୍ୟକ୍ ସୁଷୁମ୍ନାମାର୍ଗେଣ ଭ୍ରୁବୋର୍ମଧ୍ୟେ ପ୍ରାଣମାବେଶ୍ୟେତି । ସ ତଂ ପରଂ ପୁରୁଷଂ ପରମାତ୍ମସ୍ୱରୂପଂ ଦିବ୍ୟଂ ଦ୍ୟୋତନାତ୍ମକଂ ପ୍ରାପ୍ନୋତି । ୧୦ ।

**ବିବୃତି**—ମୋକ୍ଷାର୍ଥୀପୁରୁଷ ମୃତ୍ୟୁସମୟରେ ଯେଉଁ ଦିବ୍ୟପୁରୁଷଙ୍କୁ ସ୍ମରଣ କରନ୍ତି, ନାନା ବିଶେଷଣଦ୍ୱାରା ଏ ଦୁଇଶ୍ଳୋକରେ ଭଗବାନ୍ ତାହାର ଅଭାସ ପ୍ରଦାନ କରିଅଛନ୍ତି । ପରମେଶ୍ୱରଙ୍କ ରୂପର ଏହି ବର୍ଣ୍ଣନା ଶ୍ୱେତାଶ୍ୱେତର ଓ କଠ ଉପନିଷଦ୍‌ରୁ ଶବ୍ଦଶଃ ଗୃହୀତ ହୋଇଅଛି ।

**୧୧ । ଅନ୍ୱୟଦୀପିକା**—ବେଦବିଦଃ (ବେଦଜ୍ଞମାନେ) ଯତ୍ ଅକ୍ଷରଂ ବଦନ୍ତି (ଯାହାଙ୍କୁ ଅକ୍ଷରପୁରୁଷ କହନ୍ତି) ବୀତରାଗାଃ (ନିସ୍ପୃହ) ଯତୟଃ (ସନ୍ନ୍ୟାସୀମାନେ) ଯତ୍ ବିଶନ୍ତି (ଯାହାଙ୍କଠାରେ ପ୍ରବେଶ କରନ୍ତି) ଯତ୍ ଇଚ୍ଛନ୍ତଃ (ଯାହାଙ୍କୁ ପାଇବାକୁ ଇଚ୍ଛାକରି) ବ୍ରହ୍ମଚର୍ଯ୍ୟଂ ଚରନ୍ତି (ବ୍ରହ୍ମଚର୍ଯ୍ୟ ଅନୁଷ୍ଠାନ କରନ୍ତି) ତତ୍ପଦଂ (ସେହି ପରମପଦ) ତେ (ତୁମ୍ଭଙ୍କୁ) ସଂଗ୍ରହେଣ (ସଂକ୍ଷେପରେ) ପ୍ରବକ୍ଷ୍ୟେ (କହୁଅଛି) ।

**ଅନୁବାଦ**—ବେଦବେତ୍ତାମାନେ ଯାହାଙ୍କୁ ଅକ୍ଷର ଅର୍ଥାତ୍ ଅବିନାଶୀ ବ୍ରହ୍ମ ବୋଲି କହନ୍ତି, ଅନାସକ୍ତ ଯୋଗୀମାନେ ଯାହାଙ୍କଠାରେ ଲୀନ ହୁଅନ୍ତି, ଯାହାଙ୍କୁ ପାଇବାପାଇଁ ବ୍ରହ୍ମଚାରୀମାନେ ବ୍ରହ୍ମଚର୍ଯ୍ୟ ଅନୁଷ୍ଠାନ କରନ୍ତି, ସେହି ପରମପଦପ୍ରାପ୍ତିବିଷୟ ସଂକ୍ଷେପରେ ତୁମ୍ଭଙ୍କୁ କହୁଅଛି ।

ସର୍ବଦ୍ୱାରାଣି ସଂଯମ୍ୟ ମନୋ ହୃଦି ନିରୁଧ୍ୟ ଚ ।
ମୂର୍ଦ୍ଧ୍ନ୍ୟାଧାୟାତ୍ମନଃ ପ୍ରାଣମାସ୍ଥିତୋ ଯୋଗଧାରଣାମ୍ ॥ ୧୨ ॥
ଓମିତ୍ୟେକାକ୍ଷରଂ ବ୍ରହ୍ମ ବ୍ୟାହରନ୍ ମାମନୁସ୍ମରନ୍ ।
ଯଃ ପ୍ରୟାତି ତ୍ୟଜନ୍ ଦେହଂ ସ ଯାତି ପରମାଂ ଗତିମ୍ ॥ ୧୩ ॥

**ସୁବୋଧିନୀ ଟୀକା**—କେବଲାଦଭ୍ୟାସଯୋଗାଦପି ପ୍ରଣବାଧାରମଭ୍ୟାସମନ୍ତରଙ୍ଗଂ ବିଧିତ୍ସୁଃ ପ୍ରତିଜାନୀତେ-ଯଦକ୍ଷରମିତି, ଯଦକ୍ଷରଂ ବେଦାର୍ଥଜ୍ଞା ବଦନ୍ତି । ଏତସ୍ୟ ବା ଅକ୍ଷରସ୍ୟ ପ୍ରଶାସନେ ଗାର୍ଗି ସୂର୍ଯ୍ୟାଚନ୍ଦ୍ରମସୌ ବିଧୃତୌ ତିଷ୍ଠତ ଇତ୍ୟାଦି ଶ୍ରୁତେଃ । ବୀତୋ ରାଗୋ ଯେଭ୍ୟସ୍ତେ ବୀତରାଗାଃ । ଯତୟଃ ପ୍ରଯତ୍ନବନ୍ତୋ ଯଦ୍ୱିଶନ୍ତି । ଯଚ୍ଚ ଜ୍ଞାତୁମିଚ୍ଛନ୍ତୋ ଗୁରୁକୁଳେ ବ୍ରହ୍ମଚର୍ଯ୍ୟଂ ଚରନ୍ତି । ତତ୍ତେ ତୁଭ୍ୟଂ ପଦଂ । ପଦ୍ୟତେ ଗମ୍ୟତ ଇତି ପଦଂ ପ୍ରାପ୍ୟଂ. ସଂଗ୍ରହେଣ ସଂକ୍ଷେପେଣ ପ୍ରବକ୍ଷ୍ୟେ । ତତ୍ ପ୍ରାପ୍ତ୍ୟୁପାୟଂ କଥୟିଷ୍ୟାମୀତ୍ୟର୍ଥଃ ।

**୧୨-୧୩ । ଅନ୍ୱୟଦୀପିକା**—ସର୍ବେନ୍ଦ୍ରିୟାଣି (ସମସ୍ତ ଇନ୍ଦ୍ରିୟରୂପଦ୍ୱାର) ସଂଯମ୍ୟ (ଅବରୁଦ୍ଧ କରି) ମନଃ ଚ (ଏବଂ ମନକୁ) ହୃଦି (ହୃଦୟରେ) ନିରୁଧ୍ୟ (ନିରୋଧପୂର୍ବକ) ମୂର୍ଦ୍ଧ୍ନି (ଭ୍ରୂଯୁଗମଧ୍ୟରେ) ପ୍ରାଣଂ ଆଧାୟ (ପ୍ରାଣକୁ ଧାରଣ କରି) ଆତ୍ମନଃ ଯୋଗଧାରଣାମ୍ ଆସ୍ଥିତଃ (ଆତ୍ମସମାଧିରୂପ ଯୋଗ ଅବଲମ୍ବନ କରି) ଓମ୍ ଇତି ଏକାକ୍ଷରଂ ବ୍ରହ୍ମ (ଓଁ ଏହି ବ୍ରହ୍ମରୂପ ଏକାକ୍ଷରକୁ) ବ୍ୟାହରନ୍ (ଉଚ୍ଚାରଣ କରୁ କରୁ) ମାମ୍ ଅନୁସ୍ମରନ୍ (ଆମ୍ଭକୁ ସ୍ମରଣକରି) ଦେହଂ ତ୍ୟଜନ୍ (ଶରୀର ତ୍ୟାଗପୂର୍ବକ) ଯଃ ପ୍ରୟାତି (ଯେ ପ୍ରସ୍ଥାନ କରନ୍ତି) ସଃ (ସେ) ପରମାଂ ଗତିଂ (ପରମ ଗତି) ଯାତି (ପ୍ରାପ୍ତ ହୁଅନ୍ତି) ।

**ଅନୁବାଦ**—ସମସ୍ତ ଇନ୍ଦ୍ରିୟରୂପ ଦ୍ୱାର ଅବରୁଦ୍ଧ କରି ଅର୍ଥାତ୍ ଇନ୍ଦ୍ରିୟମାନଙ୍କୁ ବିଷୟରୁ ପ୍ରତ୍ୟାହୃତକରି, ମନକୁ ହୃଦୟମଧ୍ୟରେ ନିରୁଦ୍ଧକରି, ପ୍ରାଣକୁ ଭ୍ରୂଦ୍ୱୟମଧ୍ୟରେ ଧାରଣପୂର୍ବକ ଆତ୍ମସମାଧିରୂପ ଯୋଗରେ ଅବସ୍ଥିତ ହୋଇ 'ଓଁ' ଏହି ବ୍ରହ୍ମରୂପ ଏକାକ୍ଷର ଉଚ୍ଚାରଣ କରୁଁ କରୁଁ ଆମ୍ଭଙ୍କୁ ସ୍ମରଣ କରି ଯେ ଦେହତ୍ୟାଗପୂର୍ବକ ପ୍ରସ୍ଥାନ କରନ୍ତି ସେ ପରମଗତି ପ୍ରାପ୍ତ ହୁଅନ୍ତି ।

**ସୁବୋଧିନୀ ଟୀକା**—ପ୍ରତିଜ୍ଞାତମୁପାୟଂ ସାର୍ଦ୍ଧମାହ ଦ୍ୱାଭ୍ୟାଂ—ସର୍ବେତି । ସର୍ବାଣୀନ୍ଦ୍ରିୟଦ୍ୱାରାଣି ସଂଯମ୍ୟ ପ୍ରତ୍ୟାହୃତ୍ୟ । ଚକ୍ଷୁରାଦଭିର୍ବାହ୍ୟବିଷୟଗ୍ରହଣମକୁର୍ବନ୍ନିତ୍ୟର୍ଥଃ । ମନଶ୍ଚ ହୃଦି ନିରୁଧ୍ୟ ବାହ୍ୟବିଷୟସ୍ମରଣମକୁର୍ବନ୍ନିତ୍ୟର୍ଥଃ । ମୂର୍ଦ୍ଧ୍ନି ଭ୍ରୁବୋର୍ମଧ୍ୟେ ପ୍ରାଣମାଧାୟ ଯୋଗସ୍ୟ ଧାରଣାଂ ସ୍ଥୈର୍ଯ୍ୟମାସ୍ଥିତ ଆଶ୍ରିତବାନ୍ ସନ୍ ।

ଅନନ୍ୟଚେତାଃ ସତତଂ ଯୋ ମାଂ ସ୍ମରତି ନିତ୍ୟଶଃ ।
ତସ୍ୟାହଂ ସୁଲଭଃ ପାର୍ଥ ନିତ୍ୟଯୁକ୍ତସ୍ୟ ଯୋଗିନଃ । ୧୪ ।

ଓମିତି । ଓମିତ୍ୟେକଂ ଯଦକ୍ଷରଂ ତଦେବବ୍ରହ୍ମବାଚକତ୍ୱାଦ୍‌ବା ପ୍ରତିମାଦି-ବଦ୍‌ବ୍ରହ୍ମପ୍ରତୀକତ୍ୱାଦ୍‌ବା ବ୍ରହ୍ମ । ତଦ୍‌ବ୍ୟାହରନ୍ନୁଚ୍ଚାରୟଂ ସ୍ତଦର୍ଥଭୂତଂ ଚ ମାମନୁ-ସ୍ମରନ୍ନେବ ଦେହଂ ତ୍ୟଜନ୍ ଯଃ ପ୍ରକର୍ଷେଣ ଯାତ୍ୟର୍ଚ୍ଚିରାଦିମାର୍ଗେଣ ସ ପରମାଂ ଶ୍ରେଷ୍ଠାଂ ଗତିଂ ମଦ୍‌ଗତିଂ ଯାତି ପ୍ରାପ୍ନୋତି ।

**ବିବୃତି**—ବ୍ରହ୍ମପଦ କିପରି ମିଳିବ—ଏହି ଦୁଇ ଶ୍ଳୋକରେ ସଂକ୍ଷେପରେ ତାହା କୁହାଯାଇଅଛି । ପ୍ରଥମେ ଇନ୍ଦ୍ରିୟମାନଙ୍କୁ ସଂଯତ କରିବାକୁ ହେବ ଅର୍ଥାତ୍ ସେମାନେ ଯେପରି ବିଷୟଗ୍ରହଣରୁ ନିବୃତ୍ତ ରହନ୍ତି ତାହା କରିବ । ତତ୍ପରେ ମନକୁ ଅଭ୍ୟାସ ଓ ବୈରାଗ୍ୟଦ୍ୱାରା ହୃଦୟରେ ନିରୁଦ୍ଧ ରଖିବ ଅର୍ଥାତ୍ ମନରେ ମଧ୍ୟ ବିଷୟ ଚିନ୍ତା କରିବ ନାହିଁ । ତତ୍ପରେ ପ୍ରାଣକୁ ଭ୍ରୂଯୁଗମଧ୍ୟରେ ସ୍ଥାପିତ କରି ଆତ୍ମସମାଧି ଅବଲମ୍ବନପୂର୍ବକ 'ଓଁ' ଏହି ବ୍ରହ୍ମବାଚକ ପଦ ଉଚ୍ଚାରଣ କରୁ କରୁ ଈଶ୍ୱର ସ୍ମରଣରେ ଦେହତ୍ୟାଗକଲେ ସାଧକ ବ୍ରହ୍ମପଦ ପ୍ରାପ୍ତ ହେବେ ।

୧୪ । **ଅନ୍ୱୟଦୀପିକା**—[ ହେ ] ପାର୍ଥ, ଯଃ ( ଯେଉଁଲୋକ ) ଅନନ୍ୟଚେତାଃ ( ଅନନ୍ୟଚିତ୍ତ ହୋଇ ) ମାଂ (ଆମ୍ଭଙ୍କୁ) ସତତଂ ( ସର୍ବଦା ) ନିତ୍ୟଶଃ ( ପ୍ରତିଦିନ ) ସ୍ମରତି ( ଚିନ୍ତା କରନ୍ତି ) ତସ୍ୟ ( ସେହି ) ନିତ୍ୟଯୁକ୍ତସ୍ୟ ( ନିତ୍ୟସମାହିତ ଚିତ୍ତ ) ଯୋଗିନଃ ( ଯୋଗୀଙ୍କ ପକ୍ଷରେ ) ଅହଂ ( ଆମ୍ଭେ ) ସୁଲଭଃ (ସୁଲଭ ଅଟୁଁ) ।

**ଅନୁବାଦ**—ହେ ଅର୍ଜୁନ, ଯେଉଁଲୋକ ଅନନ୍ୟଚିତ୍ତ ହୋଇ ପ୍ରତିଦିନ ନିରନ୍ତର ଆମ୍ଭଙ୍କୁ ସ୍ମରଣ କରନ୍ତି, ସେହି ନିତ୍ୟ ସମାହିତ ଯୋଗୀଙ୍କ ପକ୍ଷରେ ଆମ୍ଭେ ସହଜଲଭ୍ୟ ଅଟୁଁ ।

**ସୁବୋଧିନୀ ଟୀକା**—ଏବଂ ମୃତ୍ୟୁକାଳେ ଧାରଣୟା ମତ୍‌ପ୍ରାପ୍ତି-ର୍ନିତ୍ୟାଭ୍ୟାସବଶତଃ ଏବ ଭବତି । ନାନ୍ୟସ୍ୟେତି ପୂର୍ବୋକ୍ତମେବାନୁସ୍ମାରୟନ୍ନାହ—ଅନନ୍ୟେତି । ନାସ୍ତ୍ୟନ୍ୟସ୍ମିଂଶ୍ଚେତୋ ଯସ୍ୟ । ତଥାଭୂତଃ ସନ୍ । ଯୋ ମାଂ ସତତଂ ନିରନ୍ତରଂ ନିତ୍ୟଶଃ ପ୍ରତିଦିନଂ ସ୍ମରତି । ତସ୍ୟ ନିତ୍ୟଯୁକ୍ତସ୍ୟ ସମାହିତସ୍ୟାହଂ ସୁଖେନ ଲଭ୍ୟୋଽସ୍ମି । ନାନ୍ୟସ୍ୟ ।

**ବିବୃତି**—ତ୍ରୟୋଦଶ ଶ୍ଳୋକରେ ପ୍ରାଣାୟାମ ଓ ଧ୍ୟାନାଦିଦ୍ୱାରା ଯୋଗୀମାନେ ପ୍ରାଣବାୟୁକୁ ଭ୍ରୂଯୁଗଳ ମଧ୍ୟରେ ସ୍ଥାପନକରି ଦେହତ୍ୟାଗ କଲେ ବ୍ରହ୍ମପଦ ଲାଭ କରନ୍ତି—ଏହା କୁହାଯାଇଅଛି; କିନ୍ତୁ ଏହା ସାଧାରଣଙ୍କ ପକ୍ଷରେ ସହଜସାଧ୍ୟ ନୁହେ । ତେଣୁ ଏ ଶ୍ଳୋକରେ ଭଗବାନ୍ କହୁଛନ୍ତି ଯେ, ପ୍ରାଣାୟାମ

ମାମୁପେତ୍ୟ ପୁନର୍ଜନ୍ମ ଦୁଃଖାଳୟମଶାଶ୍ୱତମ୍ ।
ନାପ୍ନୁବନ୍ତି ମହାତ୍ମାନଃ ସଂସିଦ୍ଧିଂ ପରମାଂ ଗତାଃ । ୧୫ ।
ଆବ୍ରହ୍ମ ଭୁବନାଲ୍ଲୋକାଃ ପୁନରାବର୍ତ୍ତିନୋଽର୍ଜୁନ ।
ମାମୁପେତ୍ୟ ତୁ କୌନ୍ତେୟ ପୁନର୍ଜନ୍ମ ନ ବିଦ୍ୟତେ । ୧୬ ।

ଯୋଗୀଏ ନ ହେଲେ ମଧ୍ୟ ଭକ୍ତ ଯେବେ ଅବିଚ୍ଛେଦଭାବରେ ପ୍ରତିଦିନ ସୁଖରେ, ଦୁଃଖରେ, ସମ୍ପଦରେ, ବିପଦରେ, ସବୁବେଳେ ଆମ୍ଭଙ୍କୁ ସ୍ମରଣ କରନ୍ତି, ତେବେ ଆମ୍ଭଙ୍କୁ ପାଇବାରେ ତାଙ୍କୁ ଆଉ କୌଣସି ପ୍ରକାର କଷ୍ଟସାଧ୍ୟ ଉପାୟ ଅବଲମ୍ବନ କରିବାକୁ ପଡ଼େନାହିଁ, ଅର୍ଥାତ୍ ତାଙ୍କପକ୍ଷରେ ଆମ୍ଭେ ସହଜଲଭ୍ୟ ହେଉଁ ।

୧୫ । **ଅନ୍ୱୟଦୀପିକା**—ମହାତ୍ମାନଃ (ମହାତ୍ମାମାନେ) ମାମ୍ ଉପେତ୍ୟ (ଆମ୍ଭଙ୍କୁ ପାଇ) ଦୁଃଖାଳୟଂ (ଦୁଃଖର ଆଳୟସ୍ୱରୂପ) ଅଶାଶ୍ୱତଂ ଚ (ଏବଂ ଅନିତ୍ୟ) ପୁନର୍ଜନ୍ମ ନ ଆପ୍ନୁବନ୍ତି (ପୁନର୍ଜନ୍ମପ୍ରାପ୍ତ ହୁଅନ୍ତି ନାହିଁ) [କାରଣ ସେମାନେ] ପରମାଂ (ପରମ) ସଂସିଦ୍ଧିଂ ଗତାଃ (ପରମସିଦ୍ଧିପ୍ରାପ୍ତ) ।

**ଅନୁବାଦ**—ପୂର୍ବୋକ୍ତମହାତ୍ମାମାନେ ଆମ୍ଭଙ୍କୁ ପାଇଲେ ଦୁଃଖର ଆଳୟସ୍ୱରୂପ ପୁନର୍ଜନ୍ମ ଆଉ ପ୍ରାପ୍ତ ହୁଅନ୍ତି ନାହିଁ । କାରଣ ସେମାନେ ପରମସିଦ୍ଧି-ସ୍ୱରୂପ ମୁକ୍ତିଲାଭ କରନ୍ତି ।

**ସୁବୋଧିନୀ ଟୀକା**—ଏବଂ ଭୂତ ଭକ୍ତିଯୋଗେ ସୁଲଭୋଽପି ତତଃ କିମତ ଆହ, ମାମିତି । ଉକ୍ତଲକ୍ଷଣା ମହାତ୍ମାନୋ ମଦ୍‌ଭକ୍ତା ମାଂ ପ୍ରାପ୍ୟ ପୁନର୍ଦୁଃଖାଶ୍ରୟ-ମନିତ୍ୟଂ ଚ ଜନ୍ମ ନ ପ୍ରାପ୍ନୁବନ୍ତି, ଯତସ୍ତେ ପରମାଂ ସିଦ୍ଧିଂ ମୋକ୍ଷମେବ ପ୍ରାପ୍ତାଃ, ପୁନର୍ଜନ୍ମନୋ ଦୁଃଖାନାଂ ଗୃହଂ ସ୍ଥାନଂ ମାମୁପେତ୍ୟ ନ ପ୍ରାପ୍ନୁବନ୍ତୀତି ବା ।

**ବିବୃତି**—ଯେଉଁମାନେ ଭକ୍ତିପୂର୍ବକ ପ୍ରତିଦିନ ଭଗବାନଙ୍କୁ ସ୍ମରଣ କରନ୍ତି ସେମାନେ ଇହକାଳରେ ତ କୌଣସି ଦୁଃଖଭୋଗ କରନ୍ତି ନାହିଁ, ପରନ୍ତୁ ପୁନର୍ଜନ୍ମ ମଧ୍ୟ ସେମାନଙ୍କର ହୁଏ ନାହିଁ ।

୧୬ । **ଅନ୍ୱୟଦୀପିକା**—ଅର୍ଜୁନ (ହେ ଅର୍ଜୁନ), ଆବ୍ରହ୍ମ-ଭୁବନାତ୍ (ବ୍ରହ୍ମଲୋକ ପର୍ଯ୍ୟନ୍ତ ସମସ୍ତ ଲୋକରୁ) ଲୋକାଃ (ଜୀବମାନେ) ପୁନଃ ଆବର୍ତ୍ତିନଃ (ପୁନରାବୃତ୍ତିଶୀଳ ବା ପୁନର୍ଜନ୍ମ ପ୍ରାପ୍ତ ହୁଅନ୍ତି), ତୁ (କିନ୍ତୁ) ହେ କୌନ୍ତେୟ, ମାମ୍ ଉପେତ୍ୟ (ଆମ୍ଭଙ୍କୁ ପାଇଲେ) ପୁନର୍ଜନ୍ମ ନ ବିଦ୍ୟତେ (ପୁନର୍ଜନ୍ମ ହୁଏ ନାହିଁ) ।

**ଅନୁବାଦ**—ହେ ଅର୍ଜୁନ, ବ୍ରହ୍ମଲୋକ ପର୍ଯ୍ୟନ୍ତ ସମସ୍ତ ଲୋକରୁ ଜୀବମାନେ ଫେରି ପୁନର୍ବାର ଜନ୍ମଗ୍ରହଣ କରନ୍ତି, କିନ୍ତୁ ଆମ୍ଭଙ୍କୁ ପାଇଲେ ଆଉ ପୁନର୍ଜନ୍ମ ହୁଏ ନାହିଁ ।

ସହସ୍ରଯୁଗପର୍ଯ୍ୟନ୍ତମହର୍ଯଦ୍ ବ୍ରହ୍ମଣୋ ବିଦୁଃ ।
ରାତ୍ରିଂ ଯୁଗସହସ୍ରାନ୍ତାଂ ତେଽହୋରାତ୍ରବିଦୋ ଜନାଃ । ୧୭ ।

**ସୁବୋଧିନୀ ଟୀକା**—ଏତଦେବ ସର୍ବେଷ୍ୱପି ଲୋକେଷୁ ପୁନରାବୃତ୍ତିଂ ଦର୍ଶୟନ୍ କର୍ଦ୍ଧାରୟତି—ଅବ୍ରହ୍ମଭୁବନାଦଦ୍ଧ । ବ୍ରହ୍ମଣୋ ଭୁବନଂ ବାସସ୍ଥାନଂ-ବ୍ରହ୍ମଲୋକଃ, ତମଭିବ୍ୟାପ୍ୟ ସର୍ବେ ଲୋକାଃ ପୁନରାବର୍ତ୍ତିନଶୀଳାଃ । ବ୍ରହ୍ମଲୋକ-ସ୍ୟାପି ବିନାଶିତ୍ୱାତ୍ । ତଦ୍‌ବାସୀନାମନୁତ୍ପନ୍ନଜ୍ଞାନାନାମବଶ୍ୟଂଭାବି ପୁନର୍ଜନ୍ମ । ଯେ ଏବ କ୍ରମମୁକ୍ତିଫଳାଭିରୁପାସନାଭିର୍ବ୍ରହ୍ମଲୋକଂ ପ୍ରାପ୍ତାସ୍ତେଷାମେବ ତତ୍ରୋତ୍ପନ୍ନ-ଜ୍ଞାନାନାଂ ବ୍ରହ୍ମଣା ସହ ମୋକ୍ଷଃ । ନାନ୍ୟେଷାମ୍ । ତଥାଚ—ବ୍ରହ୍ମଣାସହ ତେ ସର୍ବେ ସମ୍ପ୍ରାପ୍ତେ ପ୍ରତିସଞ୍ଚରେ, ପରସ୍ୟାନ୍ତେ କୃତାତ୍ମାନଃ ପ୍ରବିଶନ୍ତି ପରଂ ପଦମ୍ । ପରସ୍ୟାନ୍ତେ ବ୍ରହ୍ମଣଃ ପରମାୟୁଷୋଽନ୍ତେ । କୃତାତ୍ମାନୋ ବ୍ରହ୍ମଭାବାପାଦିତମନୋ-ବୃତ୍ତୟଃ । କର୍ମଦ୍ୱାରେଣ ଯେଷାଂ ବ୍ରହ୍ମତ୍ୱଲୋକପ୍ରାପ୍ତି ସ୍ତେଷାଂ ନ ମୋକ୍ଷ ଇତି ପରିନିଷ୍ଠିତଃ । ମାମୁପେତ୍ୟ ବର୍ତ୍ତିମାନାନାଂ ତୁ ପୁନର୍ଜନ୍ମ ନାସ୍ତ୍ୟେବେତି ।

**ବିବୃତି**—ଶାସ୍ତ୍ରମାନଙ୍କରେ ସପ୍ତ ଲୋକ କଥା ଲିଖିତ ଅଛି—ଭୂଃ, ଭୁବଃ, ସ୍ୱଃ, ମହଃ, ଜନଃ, ତପଃ ଓ ସତ୍ୟ । ସତ୍ୟଲୋକକୁ ବ୍ରହ୍ମଲୋକ କହନ୍ତି । ବ୍ରହ୍ମଲୋକପର୍ଯ୍ୟନ୍ତ ସମସ୍ତ ଲୋକରୁ ଜୀବମାନେ ପୁଣ୍ୟ କ୍ଷୟ ଶେଷରେ ଫେରିଆସି ପୁଣି ଏ ସଂସାରରେ ଜନ୍ମଗ୍ରହଣ କରନ୍ତି । କେବଳ ଯେଉଁମାନେ ଭଗବାନଙ୍କୁ ପ୍ରାପ୍ତ ହୁଅନ୍ତି ସେମାନଙ୍କୁ ଆଉ ପୁନର୍ଜନ୍ମ ଫାନ୍ଦରେ ପଡ଼ିବାକୁ ହୁଏ ନାହିଁ ।

କୌଣସି ଲୋକ ଚିରସ୍ଥାୟୀ ନୁହେ । ସମସ୍ତ ବିନାଶଶୀଳ । ଏକମାତ୍ର ସେହି ଭଗବାନଙ୍କ ଚିରସ୍ଥାୟୀ ।

**୧୭ । ଅନ୍ୱୟଦୀପିକା**—ସହସ୍ରଯୁଗପର୍ଯ୍ୟନ୍ତଂ ( ଦେବତାମାନଙ୍କର ସହସ୍ର ଯୁଗରେ ) ବ୍ରହ୍ମଣଃ ( ବ୍ରହ୍ମାଙ୍କର ) ଯତ୍ ଅହଃ ( ଯେଉଁଦିନ ) [ ତଥା ] ଯୁଗସହସ୍ରାନ୍ତାଂ ରାତ୍ରିଂ ( ସହସ୍ର ଯୁଗ ପରିମିତ ରାତ୍ରି ) [ ଯେଉଁମାନେ ] ବିଦୁଃ ( ଜାଣନ୍ତି ) ତେ ଜନାଃ ( ସେହିମାନେହିଁ ) ଅହୋରାତ୍ରବିଦଃ ( ଦିବାରାତ୍ରିର ତତ୍ତ୍ୱ ଜାଣନ୍ତି ) ।

**ଅନୁବାଦ**—ଦେବତାଙ୍କ ସହସ୍ର ଯୁଗରେ ବ୍ରହ୍ମାଙ୍କର ଗୋଟିଏ ଦିନ ହୁଏ, ସେହିପରି ସହସ୍ର ଦେବଯୁଗରେ ବ୍ରହ୍ମାଙ୍କର ଗୋଟିଏ ରାତ୍ରି ହୁଏ, ଯେଉଁ ଲୋକମାନେ ଏହି ଦିନ ରାତିର ତତ୍ତ୍ୱ ଜାଣନ୍ତି ସେହିମାନେ ପ୍ରକୃତରେ ଅହୋରାତ୍ର ବେତ୍ତା ଅଟନ୍ତି ।

**ସୁବୋଧିନୀ ଟୀକା**—ନନୁଚ—

ତପସ୍ୱିନୋ ଦାନଶୀଳା ଜିତକ୍ରୋଧା ଜିତେନ୍ଦ୍ରିୟାଃ ।
ବ୍ରହ୍ମଲୋକସ୍ୟୋପରିସ୍ଥାନଂ ଲଭନ୍ତେ ଶୋକବର୍ଜିତମ୍ ।

ଇତ୍ୟାଦପୁରାଣବାକ୍ୟୈ ସ୍ୱୈଲୋକ୍ୟସ୍ୟ ସକାଶାନ୍ମହର୍ଲୋକାଦୀନାମୁତ୍କୃଷ୍ଟତ୍ୱଂ ଗମ୍ୟତେ । ବନାଶିତ୍ୱେ ଚ ସର୍ବେଷାମବିଶିଷ୍ଟେ କଥମସୌ ବିଶେଷଃ ସ୍ୟାଦିତ୍ୟାଶଙ୍କ୍ୟ ବହୁକାଲକାଳାବସ୍ଥାୟିତ୍ୱନିମିତ୍ତୋଽସୌ ବିଶେଷ ଇତ୍ୟାଶୟେନ ସମାନେନ ଶତବର୍ଷାୟୁଷୋ ବ୍ରହ୍ମଣୋଽହନ୍ୟହନି ତ୍ରୈଲୋକ୍ୟସ୍ୟୋତ୍ପତ୍ତିର୍ନିଶି ନିଶି ଚ ପ୍ରଳୟୋ ଭବତୀତି ଦର୍ଶୟିଷ୍ୟନ୍ ବ୍ରହ୍ମଣୋଽହୋରାତ୍ରୟୋଃ ପ୍ରମାଣମାହସହସ୍ରେତି—ସହସ୍ରଂ ଯୁଗାନି ପର୍ଯ୍ୟନ୍ତୋଽବସାନଂ ଯସ୍ୟ ତଦ୍ ବ୍ରହ୍ମଣୋ ଯଦହସ୍ତତ୍ ଯେ ବିଦୁଃ, ଯୁଗସହସ୍ରାନ୍ତାଂ ଯସ୍ୟାସ୍ତାଂ ରାତ୍ରିଂ ଚ ଯୋଗବଳେନ ଯେ ବିଦୁସ୍ତ ଏବ ସର୍ବଜ୍ଞ ଜନାଃ ଅହୋରାତ୍ରବିଦଃ । ଯେଷାଂ ତୁ କେବଳଂ ଚନ୍ଦ୍ରାଦିତ୍ୟଗତ୍ୟୈବ ଜ୍ଞାନଂ ତେ ତଥାହୋରାତ୍ରବିଦୋ ନ ଭବନ୍ତି ଅଳ୍ପଦର୍ଶିତ୍ୱାତ୍ । ଯୁଗଶବ୍ଦେନାତ୍ର ଚତୁର୍ଯୁଗମଭିପ୍ରେତଂ । ଚତୁର୍ଯୁଗ ସହସ୍ରଂ ତୁ ବ୍ରହ୍ମଣୋ ଦିନମୁଚ୍ୟତେ—ଇତି ବିଷ୍ଣୁପୁରାଣୋକ୍ତେଃ,ବ୍ରହ୍ମଣୋ ଇତି ଚ ମହର୍ଲୋକାଦିବାସିନାମୁପଲକ୍ଷଣାର୍ଥଂ । ତନ୍ନାଯ୍ୟଂ କାଳଗଣନାପ୍ରକାରଃ । ମନୁଷ୍ୟାଣାଂ ଯଦ୍‌ବର୍ଷଂ ତଦ୍ଦେବାନାମହୋରାତ୍ରଂ । ତାଦୃଶୈରହୋରାତ୍ରୈଃ ପକ୍ଷମାସାଦିକଳ୍ପନୟା ଦ୍ୱାଦଶଭିର୍ବର୍ଷ ସହସ୍ରୈ ଶ୍ଚତୁର୍ଯୁଗଂ ଭବତି, ଚତୁର୍ଯୁଗସହସ୍ରଂ ତୁ ବ୍ରହ୍ମଣୋ ଦିନଂ । ତାବତ୍ ପ୍ରମାଣୈବ ରାତ୍ରି ସ୍ତାଦୃଶୈ ଶ୍ଚାହୋରାତ୍ରୈଃ ପକ୍ଷମାସାଦିକ୍ରମେଣ ବର୍ଷଶତଂ ବ୍ରହ୍ମଣଃ ପରମାୟୁରିତି ।

**ବିବୃତି**—ସତ୍ୟ, ତ୍ରେତା, ଦ୍ୱାପର, କଳି—ମନୁଷ୍ୟମାନଙ୍କର ଏହି ଚାରିଯୁଗରେ ଦେବତାମାନଙ୍କର ଏକ ଯୁଗ ହୁଏ । ଏ ଶ୍ଲୋକରେ ସହସ୍ର ଯୁଗର ଅର୍ଥ ସହସ୍ର ଚତୁର୍ଯୁଗ ବୁଝିବାକୁ ହେବ । ମନୁଷ୍ୟମାନଙ୍କର ସହସ୍ର ଚତୁର୍ଯୁଗରେ ବ୍ରହ୍ମାଙ୍କର ଏକ ଦିନ ହୁଏ ଏବଂ ଏହିପରି ସହସ୍ର ଚତୁର୍ଯୁଗରେ ଏକ ରାତ୍ରି ହୁଏ । ମନୁଷ୍ୟ ଓ ଦେବତାମାନଙ୍କର କାଳଗଣନା ଏକପ୍ରକାର ନୁହେ ।

ଦେବତାମାନେ ଉତ୍ତରମେରୁ ପର୍ବତର ଉପରେ ଅର୍ଥାତ୍ ଉତ୍ତର ଧ୍ରୁବ ସ୍ଥାନରେ ରହନ୍ତି । କେବଳ ସ୍ମୃତିଗ୍ରନ୍ଥାଦିରେ ନୁହେ, ସୂର୍ଯ୍ୟ ସିଦ୍ଧାନ୍ତରେ ( ୧।୧୩; ୧୨।୩୫।୬୭ ) ମଧ୍ୟ ଏହାର ବର୍ଣ୍ଣନା ଅଛି । ଆମ୍ଭମାନଙ୍କ ଉତ୍ତରାୟଣ ଛଅମାସ ଦେବତାମାନଙ୍କର ଦିନ ଏବଂ ଦକ୍ଷିଣାୟନ ଛଅମାସ ଦେବତାମାନଙ୍କର ରାତ୍ରି । ସୁତରାଂ ଆମ୍ଭମାନଙ୍କର ଏକବର୍ଷ ଦେବତାମାନଙ୍କର ଏକ ଅହୋରାତ୍ର । ଆମ୍ଭର ୩୬୦ ବର୍ଷରେ ଦେବତାମାନଙ୍କର ଏକ ବର୍ଷ । ସତ୍ୟ, ତ୍ରେତା, ଦ୍ୱାପର, କଳି—ଏହି ଚାରିଯୁଗର ଦେବପରିମିତ ପରିମାଣ ମୋଟରେ ବାରହଜାର ବର୍ଷ, ସୁତରାଂ ମନୁଷ୍ୟ ପରିମାଣରେ ଏହା ୧୨୦୦୦ × ୩୬୦ = ୪୩୨୦୦୦୦ ବର୍ଷ । ଏହି ତେୟାଳିଶ ଲକ୍ଷ କୋଡ଼ିଏ ହଜାର ବର୍ଷରେ ଦେବତାମାନଙ୍କର ଏକ ଯୁଗ ହୁଏ । ଏହା ମନୁଷ୍ୟମାନଙ୍କର ଚାରିଯୁଗ ସଙ୍ଗେ ସମାନ ଅଟେ । ମନୁଷ୍ୟମାନଙ୍କର

ଅବ୍ୟକ୍ତାଦ୍‌ବ୍ୟକ୍ତୟଃ ସର୍ବାଃ ପ୍ରଭବନ୍ତ୍ୟହରାଗମେ ।
ରାତ୍ର୍ୟାଗମେ ପ୍ରଲୀୟନ୍ତେ ତତ୍ରୈବାବ୍ୟକ୍ତସଂଜ୍ଞକେ । ୧୮ ।

ଚାରିଯୁଗର ପରିମାଣ ଯଥା:—ସତ୍ୟଯୁଗ ୧୭,୨୮,୦୦୦ ବର୍ଷ + ତ୍ରେତାଯୁଗ ୧୨,୯୬,୦୦୦ ବର୍ଷ + ଦ୍ୱାପର ଯୁଗ ୮,୬୪,୦୦୦ ବର୍ଷ + କଳିଯୁଗ ୪,୩୨,୦୦୦ ବର୍ଷ = ୪୩,୨୦,୦୦୦ ବର୍ଷ (ତେୟାଳିଶ ଲକ୍ଷ କୋଡ଼ିଏ ହଜାର ବର୍ଷ) ।

ଏହି ହିସାବରେ ଦେବତାମାନଙ୍କର ଏକହଜାର ଯୁଗ ହେଲେ ଅର୍ଥାତ୍ ମନୁଷ୍ୟ ବର୍ଷର ୪୩,୨୦,୦୦୦ × ୧୦୦୦ = ୪୩୨,୦୦୦୦୦୦୦ ଚାରିଶହ ବତିଶକୋଟି ବର୍ଷରେ ବ୍ରହ୍ମାଙ୍କର ଏକ ଦିବସ ହୁଏ ଏବଂ ସେହିପରି ଅଭ ଚାରିଶ ବତିଶକୋଟି ବର୍ଷରେ ବ୍ରହ୍ମାଙ୍କର ଏକରାତ୍ରି ହୁଏ, ମୋଟରେ ୮୬୪,୦୦୦୦୦୦୦ ଆଠଶହ ଚଉଷଠୀ କୋଟି ବର୍ଷରେ ବ୍ରହ୍ମାଙ୍କର ଏକ ଅହୋରାତ୍ର ହୁଏ । ବ୍ରହ୍ମାଙ୍କର ଏକ ଦିନକୁ ହିଁ କଳ୍ପ ବୋଲାଯାଏ । ଏହିପରି ୩୬୦ ଦିବାରାତ୍ରିରେ ବ୍ରହ୍ମାଙ୍କର ଏକବର୍ଷ । ଏହିପରି ଏକଶହ ବର୍ଷ ବ୍ରହ୍ମାଙ୍କର ପରମାୟୁ (୮୬୪,୦୦୦୦୦୦୦ × ୩୬୦ × ୧୦୦ ବର୍ଷ) । ଏହାପରେ ବ୍ରହ୍ମଲୋକର ବିନାଶ ହୁଏ ଏବଂ ବ୍ରହ୍ମା ପରବ୍ରହ୍ମରେ ଲୀନ ହୁଅନ୍ତି ।

ଯେଉଁମାନେ ଯୋଗବଳରେ ବ୍ରହ୍ମାଙ୍କର ଏପ୍ରକାର ଅହୋରାତ୍ର ପରିମାଣ ବୁଝି ପାରନ୍ତି ସେମାନେ କେବଳ ଅହୋରାତ୍ର ତତ୍ତ୍ୱବିଦ୍ । ମାତ୍ର ଯେଉଁମାନେ ଚନ୍ଦ୍ର ସୂର୍ଯ୍ୟଙ୍କ ଗତିରୁ ଦିବାରାତ୍ରର ପରିମାଣ ଗଣନା କରନ୍ତି ସେମାନେ ପ୍ରକୃତ ଅହୋରାତ୍ରର ପରିମାଣ ବୁଝି ପାରନ୍ତି ନାହିଁ ।

୧୮ । **ଅନ୍ୱୟଦୀପିକା**—ଅହରାଗମେ (ବ୍ରହ୍ମାଙ୍କର ଦିବାସମାଗମ ହେଲେ) ଅବ୍ୟକ୍ତାତ୍ (ଅବ୍ୟକ୍ତରୁ) ସର୍ବାଃ ବ୍ୟକ୍ତୟଃ (ସମସ୍ତ ବ୍ୟକ୍ତପଦାର୍ଥ) ପ୍ରଭବନ୍ତି (ଉତ୍ପନ୍ନ ହୁଅନ୍ତି) ରାତ୍ର୍ୟାଗମେ (ବ୍ରହ୍ମାଙ୍କର ରାତ୍ରିସମାଗମ ହେଲେ) ତତ୍ର ଏବ ଅବ୍ୟକ୍ତସଂଜ୍ଞକେ (ସେହି ଅବ୍ୟକ୍ତରୂପ ମୂଳକାରଣରେ) ପ୍ରଲୀୟନ୍ତେ (ଲୟପ୍ରାପ୍ତ ହୁଅନ୍ତି) ।

**ଅନୁବାଦ**—ବ୍ରହ୍ମାଙ୍କର ଦିବସ ଆରମ୍ଭ ହେଲେ ଅବ୍ୟକ୍ତ ପ୍ରକୃତିରୁ ସମସ୍ତ ବ୍ୟକ୍ତପଦାର୍ଥର ଉତ୍ପତ୍ତି ହୁଏ ଏବଂ ବ୍ରହ୍ମାଙ୍କର ରାତ୍ରି ଆରମ୍ଭ ହେଲେ ସେହି ବ୍ୟକ୍ତ ପଦାର୍ଥ ସବୁ ଅବ୍ୟକ୍ତ ମୂଳକାରଣରେ ଲୀନ ହୋଇଯାଏ ।

**ସୁବୋଧିନୀ ଟୀକା**—ତତଃକିମ୍ ? ଅତ ଆହ—ଅବ୍ୟକ୍ତାଦିତି । କାର୍ଯ୍ୟସ୍ୟାବ୍ୟକ୍ତଂ ରୂପଂ କାରଣାତ୍ମକଂ । ତସ୍ମାଦବ୍ୟକ୍ତାତ୍ କାରଣରୂପାଦ୍‌ବ୍ୟଜ୍ୟନ୍ତ ଇତି ବ୍ୟକ୍ତୟଃ ଚରାଚରାଣି ଭୂତାନି ପ୍ରାଦୁର୍ଭବନ୍ତି । କଦା ? ଅହରାଗମେ ବ୍ରହ୍ମଣୋ

ଭୂତଗ୍ରାମଃ ସ ଏବାୟଂ ଭୂତ୍ୱା ଭୂତ୍ୱା ପ୍ରଲୀୟତେ ।
ରାତ୍ର୍ୟାଗମେଽବଶଃ ପାର୍ଥ ପ୍ରଭବତ୍ୟହରାଗମେ । ୧୯ ।

ତନସଂଜ୍ଞକେ । ତଥା ରାତ୍ର୍ୟାଗମେ ବ୍ରହ୍ମଣଃ ସ୍ୱାପେ, ତସ୍ମିନ୍ନେବା ବ୍ୟକ୍ତସଂଜ୍ଞକେ କାରଣରୂପେ, ପ୍ରଲୟଂ ଯାନ୍ତି । ଯଦ୍‌ବା ବେଦୋହୋରାତ୍ରବଦ ଇତ୍ୟେତଲ ବର୍ଧ୍ୟତେ କନ୍ତୁ ତେ ପ୍ରସିଦ୍ଧା ଅହୋରାତ୍ରବଦୋକ୍ତନା ବ୍ରହ୍ମଣୋ ଯଦହର୍ବିଦୁ ସ୍ତସ୍ୟାନ୍ତ ଆଗମେଽବ୍ୟକ୍ତାଦ୍‌ବ୍ୟକ୍ତୟଃ ପ୍ରଭବନ୍ତି । ଯାଂ ଚ ରାତ୍ରିଂ ବଦୁସ୍ତସ୍ୟା ରାତ୍ର୍ୟାଗମେ ପ୍ରଲୀୟନ୍ତେ—ଇତି ଦ୍ରଷ୍ଟବ୍ୟମ୍ ।

**ବିବୃତି**—ପୂର୍ବେ କୁହାଯାଇଅଛି ବ୍ରହ୍ମାଙ୍କର ଏକଦିନରେ ଏକକଳ୍ପ ହୁଏ । ଏହି କଳ୍ପାରମ୍ଭରେ ସୃଷ୍ଟି ଓ କଳ୍ପକ୍ଷୟରେ ପ୍ରଳୟ । ଏହିପରି ପୁନଃ ପୁନଃ ସୃଷ୍ଟିଚକ୍ର ଚାଲୁଅଛି । ମୁକ୍ତ ନ ହେବାଯାଏ ଜୀବମାନଙ୍କୁ ପ୍ରତିକଳ୍ପରେହିଁ ଜନ୍ମମରଣ ଦୁଃଖ ଭୋଗ କରିବାକୁ ହୁଏ ।

ଏ ଶ୍ଳୋକରେ 'ଅବ୍ୟକ୍ତ' ଶବ୍ଦ ମୂଳପ୍ରକୃତି ଅର୍ଥରେ ପ୍ରଯୁକ୍ତ ହୋଇଅଛି ।

**୧୯ । ଅନ୍ୱୟଦୀପିକା**—[ହେ] ପାର୍ଥ ! ଅୟଂ ସଃ ଭୂତଗ୍ରାମଃ (ଏହି ସେହି ଜୀବସମୂହ) ଭୂତ୍ୱା ଭୂତ୍ୱା ( ପୁନଃ ପୁନଃ ଜନ୍ମଗ୍ରହଣକରି) ରାତ୍ର୍ୟାଗମେ (ରାତି ଆସିଲେ) ପ୍ରଲୀୟତେ (ଲୟପ୍ରାପ୍ତ ହୁଅନ୍ତି), ଅହରାଗମେ (ଦିନ ଆସିଲେ) ଅବଶଃ (ଅବଶ ହୋଇ) ପ୍ରଭବତି (ପ୍ରାଦୁର୍ଭୂତ ହୁଅନ୍ତି) ।

**ଅନୁବାଦ**—ହେ ପାର୍ଥ, ଏହି ସେ ପ୍ରାଣିସମୂହ ବାରଂବାର ଜନ୍ମଗ୍ରହଣ କରି ବ୍ରହ୍ମାଙ୍କର ରାତ୍ରିସମାଗମରେ ଲୟପ୍ରାପ୍ତ ହୁଅନ୍ତି, ଦିବସ ଉପସ୍ଥିତରେ ପୁଣି ଅବଶ ହୋଇ ଅର୍ଥାତ୍ ଇଚ୍ଛା ଥାଉ ବା ନ ଥାଉ ସ୍ୱ ସ୍ୱ କର୍ମର ବଶୀଭୂତ ହୋଇ ପୁଣି ଜନ୍ମଗ୍ରହଣ କରନ୍ତି ।

**ସୁବୋଧିନୀ ଟୀକା**—ଅତ୍ର ଚ କୃତନାଶାକୃତାଭ୍ୟାଗମଶଙ୍କାଂ ବାରୟନ୍ ବୈରାଗ୍ୟାର୍ଥଂ ସୃଷ୍ଟିପ୍ରଳୟପ୍ରବାହସ୍ୟାବିଚ୍ଛେଦଂ ଦର୍ଶୟତି—ଭୂତଗ୍ରାମ-ଇତି । ଭୂତାନାଂ ଚରାଚରପ୍ରାଣିନାଂ । ଗ୍ରାମଃ ସମୂହଃ । ଯଃ ପ୍ରାଗାସୀତ୍ ସ ଏବାୟମହରାଗମେ ଭୂତ୍ୱା ଭୂତ୍ୱା ରାତ୍ର୍ୟାଗମେ ପ୍ରଲୀୟ ପ୍ରଲୀୟ ପୁନରପ୍ୟହ-ରାଗମେଽବଶଃ କର୍ମାଦିପରତନ୍ତ୍ରଃ ପ୍ରଭବତି, ନାନ୍ୟ ଇତ୍ୟର୍ଥଃ ।

**ବିବୃତି**—ଏ ଶ୍ଳୋକରେ 'ସ ଏବ ଅୟଂ ଭୂତଗ୍ରାମଃ' (ଏହି ସେହି ପ୍ରାଣିସମୂହ) ଏହା କହିବାର ଉଦ୍ଦେଶ୍ୟ ଏହି ଯେ ପୂର୍ବକଳ୍ପରେ ଯେଉଁମାନେ ଥିଲେ ସେହିମାନେହିଁ କଳ୍ପକ୍ଷୟରେ କାରଣାବସ୍ଥାରେ ରହିଥାଅନ୍ତି, ପୁଣି କଳ୍ପାରମ୍ଭ ହେଲେ ଜନ୍ମଗ୍ରହଣ କରନ୍ତି । ଜୀବର କାମ୍ୟକର୍ମର ଅନୁଷ୍ଠାନହିଁ ପୁନଃ ପୁନଃ ସଂସାରପ୍ରବାହର ଏକମାତ୍ର ହେତୁ । କର୍ମର କ୍ଷୟ ନ ହେବା ପର୍ଯ୍ୟନ୍ତ ଅର୍ଥାତ୍

ପରସ୍ତସ୍ମାତ୍ତୁ ଭାବୋଽନ୍ୟୋଽବ୍ୟକ୍ତୋଽବ୍ୟକ୍ତାତ୍ ସନାତନଃ ।
ଯଃ ସ ସର୍ବେଷୁ ଭୂତେଷୁ ନଶ୍ୟତ୍ସୁ ନ ବିନଶ୍ୟତି । ୨୦ ।
ଅବ୍ୟକ୍ତୋଽକ୍ଷର ଇତ୍ୟୁକ୍ତସ୍ତମାହୁଃ ପରମାଂ ଗତିମ୍ ।
ଯଂ ପ୍ରାପ୍ୟ ନ ନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ । ୨୧ ।

ନିଷ୍କାମଭାବରେ କର୍ମାନୁଷ୍ଠାନ ନ କରିବା ପର୍ଯ୍ୟନ୍ତ ଜୀବକୁ ଏହି ଭାବରେ ଜନ୍ମଯନ୍ତ୍ରଣା ଭୋଗକରିବାକୁ ହୋଇଥାଏ । ସେହିହେତୁରୁ ଶାସ୍ତ୍ରରେ ଉକ୍ତଅଛି ଯେ—

ଅବଶ୍ୟମେବ ଭୋକ୍ତବ୍ୟଂ କୃତଂ କର୍ମ ଶୁଭାଶୁଭମ୍,
ନାଭୁକ୍ତଂ କ୍ଷୀୟତେ କର୍ମ କଳ୍ପକୋଟି ଶତୈରପି ।

ଶୁଭ ହେଉ ବା ଅଶୁଭ ହେଉ କୃତକର୍ମର ଫଳ ଅବଶ୍ୟ ଭୋଗକରିବାକୁ ହେବ । ଶତକୋଟିକଳ୍ପରେ ମଧ୍ୟ ଭୋଗ ନ ହୋଇ କର୍ମ କ୍ଷୟପ୍ରାପ୍ତ ହୁଏ ନାହିଁ ।

୨୦ । **ଅନ୍ୱୟଦୀପିକା**—ତୁ (କିନ୍ତୁ) ତସ୍ମାତ୍ ଅବ୍ୟକ୍ତାତ୍ (ସେହି ଅବ୍ୟକ୍ତଠାରୁ) ପରଃ (ଉତ୍କୃଷ୍ଟ) ଅନ୍ୟଃ ସନାତନଃ (ଅନ୍ୟ ଚିରସ୍ଥାୟୀ) ଯଃ ଅବ୍ୟକ୍ତ ଭାବଃ (ଯେଉଁ ଅବ୍ୟକ୍ତ ପଦାର୍ଥ), ସଃ (ତାହା) ସର୍ବେଷୁ ଭୂତେଷୁ ନଶ୍ୟତ୍ସୁ (ସର୍ବଭୂତ ବିନଷ୍ଟ ହେଲେହେଁ) ନ ବିନଶ୍ୟତି (ନଷ୍ଟ ହୁଅନ୍ତି ନାହିଁ) ।

**ଅନୁବାଦ**—କିନ୍ତୁ ସେହି ଅବ୍ୟକ୍ତ (ପ୍ରକୃତି) ଠାରୁ ଶ୍ରେଷ୍ଠ ଯେଉଁ ଚିରସ୍ଥାୟୀ ନିତ୍ୟ ଅବ୍ୟକ୍ତ ପଦାର୍ଥ ଅଛନ୍ତି, ସମସ୍ତଭୂତର ବିନାଶ ହେଲେ ମଧ୍ୟ ତାହାଙ୍କର ବିନାଶ ହୁଏନାହିଁ ।

**ସୁବୋଧିନୀ ଟୀକା**—ଲୋକାନାଂ ଅନିତ୍ୟତ୍ୱଂ ପ୍ରପଞ୍ଚ୍ୟ ପରମେଶ୍ୱର-ସ୍ୱରୂପସ୍ୟ ନିତ୍ୟତ୍ୱଂ ପ୍ରପଞ୍ଚୟତି—ପର ଇତି ଦ୍ୱାଭ୍ୟାମ୍ । ତସ୍ମାତ୍ ପଦ୍ମପର-କାରଣଭୂତାଦବ୍ୟକ୍ତାତ୍ପରସ୍ତସ୍ୟାପି କାରଣଭୂତୋ ଯୋଽନ୍ୟ ସ୍ତଦ୍ ବିଲକ୍ଷଣୋଽ-ବ୍ୟକ୍ତ ଶ୍ଚକ୍ଷୁରାଦ୍ୟଗୋଚରୋଭାବଃ ସନାତନୋଽନାଦଃ । ସ ତୁ ସର୍ବେଷୁ କାର୍ଯ୍ୟକାରଣଲକ୍ଷଣେଷୁ ଭୂତେଷୁ ନଶ୍ୟତ୍ସ୍ୱପି ନ ବିନଶ୍ୟତି ।

**ବିବୃତି**—ପୂର୍ବୋକ୍ତ ୧୮ଶ ଶ୍ଳୋକରେ ଯେଉଁ 'ଅବ୍ୟକ୍ତ' ଶବ୍ଦର ପ୍ରୟୋଗ ହୋଇଅଛି ତାହା ସାଂଖ୍ୟଦର୍ଶନର ପ୍ରକୃତି । ଯେଉଁମାନେ ସାଂଖ୍ୟଦର୍ଶନର ପ୍ରକୃତିକୁ ସ୍ୱୀକାର କରନ୍ତି ନାହିଁ ସେମାନେ ସେହି ଅବ୍ୟକ୍ତର ଅର୍ଥ କରନ୍ତି—ହିରଣ୍ୟଗର୍ଭ ବା ବ୍ରହ୍ମାଙ୍କର ଶୟନାବସ୍ଥା ବା କାରଣାବସ୍ଥା । ଏ ଶ୍ଳୋକରେ ସେହି ଅବ୍ୟକ୍ତ ଶବ୍ଦ ଦୁଇଥର ପ୍ରଯୁକ୍ତ ହୋଇଅଛି । 'ଅବ୍ୟକ୍ତାତ୍ ପରଃ' ଏଠାରେ ଅବ୍ୟକ୍ତ ଶବ୍ଦ ସେହି ପ୍ରକୃତି ଅର୍ଥବ୍ୟଞ୍ଜକ ଏବଂ 'ସନାତନଃ ଅବ୍ୟକ୍ତଃ' ଏଠାରେ ଅବ୍ୟକ୍ତ ଶବ୍ଦର ଅର୍ଥ ପରମାତ୍ମା, ସମସ୍ତ ଭୂତର ବିନାଶରେ ସୁଦ୍ଧା ଯାହାଙ୍କର ବିନାଶ ହୁଏ ନାହିଁ ।

୨୧ । **ଅନ୍ୱୟଦୀପିକା**—[ଯଃ] ଅବ୍ୟକ୍ତଃ (ଯେଉଁ ଅବ୍ୟକ୍ତକୁ) ଅକ୍ଷରଃ ଇତି ଉକ୍ତଃ (ଅକ୍ଷର ବୋଲି କୁହାଯାଏ) ତଂ (ତାହାଙ୍କୁ) ପରମାଂ ଗତିମ୍ ଆହୁଃ

ପୁରୁଷଃ ସପରଃ ପାର୍ଥ ଭକ୍ତ୍ୟା ଲଭ୍ୟସ୍ତ୍ୱନନ୍ୟୟା ।
ଯସ୍ୟାନ୍ତଃସ୍ଥାନି ଭୂତାନି ଯେନ ସର୍ବମିଦଂ ତତମ୍ ।୨୨ ।

(ପରମଗତି କୁହାଯାଏ), ଯଂ ପ୍ରାପ୍ୟ (ଯାହାଙ୍କୁ ପାଇଲେ) ନ ନିବର୍ତ୍ତନ୍ତେ (ଆଉ ଫେରିବାକୁ ହୁଏ ନାହିଁ) ତତ୍ ମମ (ତାହା ଆମ୍ଭର) ପରମଂ ଧାମ (ଶ୍ରେଷ୍ଠ ସ୍ୱରୂପ) ।

**ଅନୁବାଦ**—ଯେଉଁ ଅବ୍ୟକ୍ତଙ୍କୁ ଅକ୍ଷର ବୋଲି କୁହାଯାଏ, ତାହାହିଁ ଶ୍ରେଷ୍ଠ ଗତି । ଯାହା ପାଇଲେ ଆଉ ଫେରିବାକୁ ହୁଏ ନାହିଁ, ତାହାହିଁ ଆମ୍ଭର ଶ୍ରେଷ୍ଠ ସ୍ଥାନ ବା ସ୍ୱରୂପ ।

**ସୁବୋଧିନୀ ଟୀକା**—ଅବନାଶେ ପ୍ରମାଣଂ ଦର୍ଶୟିତ୍ୱାହ—ଅବ୍ୟକ୍ତ ଇତି । ଯୋଽସାବବ୍ୟକ୍ତୋଽତୀନ୍ଦ୍ରିୟଃ । ଅକ୍ଷରଃ ପ୍ରବେଶନାଶଶୂନ୍ୟ ଇତି । ତଥାକ୍ଷରାତ୍ ସମ୍ଭବତୀହ ବିଶ୍ୱମ୍ ଇତ୍ୟାଦି ଶ୍ରୁତିଷ୍ୱକ୍ଷର ଇତ୍ୟୁକ୍ତଃ । ତଂ ପରମାଂ ଗତିଂ ଗମ୍ୟଂ ପୁରୁଷାର୍ଥମାହୁଃ—ପୁରୁଷାନ୍ନ ପରଂ କିଞ୍ଚିତ୍ ସା କାଷ୍ଠା ସାପରାଗତିଃ ଇତ୍ୟାଦି ଶ୍ରୁତୟଃ । ପରମଗତିତ୍ୱମେବାହ—ଯଂ ପ୍ରାପ୍ୟ ନ ପୁନର୍ନିବର୍ତ୍ତନ୍ତ ଇତି । ତତ ମମୈବ ଧାମ ସ୍ୱରୂପଂ । ମମେତ୍ୟୁପଚାରେ ଷଷ୍ଠୀ । ରାହୋଃ ଶିର ଇତି-ବତ୍ । ଅତୋଽହମେବ ପରମାଗତିରିତ୍ୟର୍ଥଃ ।

**ବିବୃତି**—ତାହା ଆମର ପରମଧାମ—ଏହାର ଅର୍ଥ ଆମ୍ଭେ ସେହି ପରମଧାମ ସ୍ୱରୂପ ଅଟୁଁ । ପରମାତ୍ମା ଓ ପରମଧାମ ମଧ୍ୟରେ କିଛିମାତ୍ର ପ୍ରଭେଦ ନାହିଁ ।

୨୨ । **ଅନ୍ୱୟଦୀପିକା**—[ହେ] ପାର୍ଥ, ଭୂତାନି (ସମସ୍ତଭୂତ) ଯସ୍ୟ ଅନ୍ତଃସ୍ଥାନି (ଯାହାଙ୍କ ମଧ୍ୟରେ ଅବସ୍ଥିତ), ଯେନ (ଯାହାଙ୍କ ଦ୍ୱାରା) ଇଦଂ ସର୍ବଂ (ଏହି ସମସ୍ତ ଜଗତ୍) ତତମ୍ (ବ୍ୟାପ୍ତ ହୋଇଅଛି) ସଃ (ସେହି) ପରଃ ପୁରୁଷଃ (ପରମ ପୁରୁଷ) ଅନନ୍ୟୟା ଭକ୍ତ୍ୟା (କେବଳ ଏକାନ୍ତ ଭକ୍ତିଦ୍ୱାରା) ଲଭ୍ୟଃ (ପ୍ରାପ୍ୟ) ।

**ଅନୁବାଦ**—ହେ ପାର୍ଥ, ସମସ୍ତ ଭୂତ ଯାହାଙ୍କ ମଧ୍ୟରେ ଅବସ୍ଥିତ, ଯେ ଏହି ସମସ୍ତ ବିଶ୍ୱକୁ ବ୍ୟାପିକରି ରହିଅଛନ୍ତି, ଏକମାତ୍ର ଅନନ୍ୟ ଭକ୍ତିଦ୍ୱାରା ସେହି ପରମ ପୁରୁଷଙ୍କୁ ଲାଭ କରାଯାଏ ।

**ସୁବୋଧିନୀ ଟୀକା**—ତତ୍ପ୍ରାପ୍ତୌ ଚ ଭକ୍ତିରନ୍ତରଙ୍ଗୋପାୟ ଇତ୍ୟୁକ୍ତ-ମେବେତ୍ୟାହ—ପୁରୁଷ ଇତି । ସ ଚାହଂ ପରଃ ପୁରୁଷୋଽନନ୍ୟୟା—ନ ବିଦ୍ୟତେଽନ୍ୟଂ ଶରଣତ୍ୱେନ ଯସ୍ୟାଂ ତୟୈକାନ୍ତଭକ୍ତ୍ୟୈବ ଲଭ୍ୟଃ । ନାନ୍ୟଥା । ପରତ୍ୱମେବାହ—ଯସ୍ୟ କାରଣଭୂତସ୍ୟାନ୍ତର୍ମଧ୍ୟେ ଭୂତାନି ସ୍ଥିତାନି । ଯେନ ଚ କାରଣଭୂତେନେଦଂ ସର୍ବଂ ଜଗତ୍ ତତଂ ବ୍ୟାପ୍ତମ୍ ।

ଯତ୍ର କାଲେ ତ୍ୱନାବୃତ୍ତିମାବୃତ୍ତିଂ ଚୈବ ଯୋଗିନଃ ।
ପ୍ରୟାତା ଯାନ୍ତି ତଂ କାଲଂ ବକ୍ଷ୍ୟାମି ଭରତର୍ଷଭ । ୨୩ ।

**ବିବୃତି**—ନିର୍ଗୁଣ-ବ୍ରହ୍ମ-ବିଶ୍ୱାସୀ ଜ୍ଞାନବାଦୀ ସନ୍ନ୍ୟାସୀମାନେ ଅନନ୍ୟ ଭକ୍ତିଦ୍ୱାରା ବ୍ରହ୍ମପ୍ରାପ୍ତି ହୁଏ—ଏହା ସ୍ୱୀକାର କରନ୍ତି ନାହିଁ । କାରଣ ନିରାକାର ନିର୍ଗୁଣ ବ୍ରହ୍ମଙ୍କ ପ୍ରତି ଭକ୍ତି ଶବ୍ଦର ପ୍ରୟୋଗ ହୁଏ ନାହିଁ । ତେଣୁ ଏ ଶ୍ଳୋକର ଭାଷ୍ୟରେ ଶଙ୍କରାଚାର୍ଯ୍ୟ କହନ୍ତି—'ସ ଭକ୍ତ୍ୟା ଲଭ୍ୟସ୍ତୁ ଜ୍ଞାନ ଲକ୍ଷଣୟା ଅନନ୍ୟୟା-ତ୍ମବିଷୟୟା' ଅର୍ଥାତ୍ ଏଠାରେ ଭକ୍ତିର ଅର୍ଥ ଜ୍ଞାନ ଲକ୍ଷଣା ଓ 'ଅନନ୍ୟା' ଏହି ବିଶେଷଣର ଅର୍ଥ ଆତ୍ମବିଷୟକ । କିନ୍ତୁ ଗୀତାରେ ଯେଉଁ ଭାବରେ ଈଶ୍ୱରତତ୍ତ୍ୱ ଆଲୋଚିତ ହୋଇଅଛି ତହିଁରୁ ବୋଧହୁଏ ନିର୍ଗୁଣସଗୁଣ ଓ ସାକାର ନିରାକାରାଦି ଭେଦ—ସାଧକଙ୍କର ଚିନ୍ତାର ଅନୁରୂପ । ବସ୍ତୁତଃ ଏକ ବ୍ରହ୍ମ—ଯେ ଯେପରି ଭାବରେ ତାଙ୍କୁ ଚିନ୍ତା କରନ୍ତି ସେହି ଭାବରେ ତାଙ୍କୁ ପାଆନ୍ତି । ଯେ ନିରାକାର ସେ ସାକାର, ଯେ ନିର୍ଗୁଣ ସେ ସଗୁଣ, ଏପରି ଅବସ୍ଥାରେ ତାଙ୍କ ପ୍ରତି ହୃଦୟର ଅନୁରାଗ ହିଁ ଭକ୍ତି ( ୧୩।୧୪-୧୫, ୯।୧୮, ୧୮।୬୪ ଶ୍ଳୋକ ଦେଖ ) ।

୨୩ । **ଅନ୍ୱୟଦୀପିକା**—[ହେ] ଭରତର୍ଷଭ, ଯତ୍ରକାଲେ ତୁ (ଯେଉଁ-ସମୟରେ ) ପ୍ରୟାତାଃ ( ପ୍ରୟାଣ କଲେ ବା ମୃତ ହେଲେ ) ଯୋଗିନଃ ( ଯୋଗୀମାନେ) ଅନାବୃତ୍ତିଂ (ଅପୁନରାବର୍ତ୍ତନ) ଆବୃତ୍ତିଂ ଚ (ପୁନରାବର୍ତ୍ତନ) ଯାନ୍ତି (ପ୍ରାପ୍ତ ହୁଅନ୍ତି) ତଂ କାଲଂ (ସେହିକାଳ ବିଷୟ) ବକ୍ଷ୍ୟାମି (କହିବୁଁ ) ।

**ଅନୁବାଦ**—ହେ ଭରତର୍ଷଭ, ଯେଉଁକାଳରେ ଗମନ କଲେ ଯୋଗୀମାନେ ପୁନର୍ଜନ୍ମ ପ୍ରାପ୍ତ ହୁଅନ୍ତି ନାହିଁ ଏବଂ ଯେଉଁ କାଳରେ ଗମନ କଲେ ପୁନର୍ଜନ୍ମ ପ୍ରାପ୍ତ ହୁଅନ୍ତି ସେହି କାଳ ବିଷୟ କହିବୁଁ ।

**ସୁବୋଧିନୀ ଟୀକା**—ତଦେବଂ ପରମେଶ୍ୱରୋପାସକାସ୍ତତ୍ପଦଂ ପ୍ରାପ୍ୟ ନ ନିବର୍ତ୍ତନ୍ତେ ଅନ୍ୟେତ୍ୱାବର୍ତ୍ତନ୍ତ ଇତ୍ୟୁକ୍ତେ—ତତ୍ର କେନମାର୍ଗେଣ ଗତା ନାବର୍ତ୍ତନ୍ତେ କେନବାବର୍ତ୍ତନ୍ତ ଇତ୍ୟପେକ୍ଷାୟାମାହ—ଯତ୍ରେତି । ଯତ୍ର ଯସ୍ମିନ୍ କାଲେ ପ୍ରୟାତା ଯୋଗିନୋଽନାବୃତ୍ତିଂ ଯାନ୍ତି ଯସ୍ମିଂଶ୍ଚକାଲେ ପ୍ରୟାତା ଆବୃତ୍ତିଂ ଯାନ୍ତି ତଂ କାଲଂ ବକ୍ଷ୍ୟାମୀତ୍ୟନ୍ୱୟଃ । ଅତ୍ର ଚ ରଶ୍ମ୍ୟନୁସାରୀ—ଅତଶ୍ଚାୟନେଽପି ଦକ୍ଷିଣ ଇତି ସୂତ୍ରିତ-ନ୍ୟାୟେନୋତ୍ତରାୟଣାଦି କାଲବିଶେଷମରଣସ୍ୟ ତ୍ୱବିବକ୍ଷିତତ୍ୱାତ୍ । କାଲଶବ୍ଦେନ କାଲାଭିମାନିନୀଭିରାତିବାହିକାଭିର୍ଦେବତାଭିଃ ପ୍ରାପ୍ୟୋମାର୍ଗ ଉପଲକ୍ଷ୍ୟତେ । ଅତୋଽୟମର୍ଥଃ । ଯସ୍ମିନ୍ କାଲାଭିମାନଦେବତୋପଲକ୍ଷିତେ ମାର୍ଗେ ପ୍ରୟାତା ଯୋଗିନ ଉପାସକାଃ କର୍ମିଣଶ୍ଚ ଯଥାକ୍ରମମନାବୃତ୍ତିମାବୃତ୍ତିଂ ଚ ଯାନ୍ତି ତଂ

ଅଗ୍ନିର୍ଜ୍ୟୋତିରହଃ ଶୁକ୍ଳଃ ଷଣ୍ମାସା ଉତ୍ତରାୟଣମ୍ ।
ତତ୍ର ପ୍ରୟାତା ଗଚ୍ଛନ୍ତି ବ୍ରହ୍ମ ବ୍ରହ୍ମବିଦୋ ଜନାଃ । ୨୪ ।

କାଲାଭିମାନଦେବତୋପଲକ୍ଷିତଂ ମାର୍ଗଂ କଥୟିଷ୍ୟାମୀତି । ଅଗ୍ନିଜ୍ୟୋତିଷୋଃ କାଲାଭିମାନିତ୍ୱାଭାବେଽପି ଭୂୟସାମହରାଦୀନାଂ କାଲାଭିମାନିତ୍ୱାତ୍ ତତ୍ ସାହଚର୍ଯ୍ୟାଦାମ୍ରବଣମିତ୍ୟାଦିବତ୍ କାଲଶବ୍ଦେନୋପଲକ୍ଷଣମବିରୁଦ୍ଧମ୍ ।

**ବିବୃତି**—ଏ ଶ୍ଳୋକରେ 'କାଳ' ଶବ୍ଦଦ୍ୱାରା ଦିବାରାତ୍ରି ଆଦି କାଳର ଅଭିମାନୀ ଦେବତା ବା ସେମାନଙ୍କ ପ୍ରଦର୍ଶିତ ମାର୍ଗ ଏହିପରି ବୁଝିବାକୁ ହେବ । କେଉଁ କର୍ମଫଳରେ କେଉଁ ପଥରେ ଗମନ କଲେ ମୋକ୍ଷ ପ୍ରାପ୍ତି ହୁଏ ଏବଂ କେଉଁ ପଥରେ ଗମନ କଲେ ତାହା ହୁଏ ନାହିଁ—ଏହାହିଁ ପରେ କୁହାଯିବ । 'ଯୋଗିନଃ' ଏହି ପଦଦ୍ୱାରା କର୍ମୀ ଏବଂ ବ୍ରହ୍ମଙ୍କ ଉପାସକ ଉଭୟେ ପରିଗୃହୀତ ହୋଇଅଛନ୍ତି ।

**୨୪ । ଅନ୍ୱୟ-ଦୀପିକା**—ଅଗ୍ନିଃ (ଅଗ୍ନି), ଜ୍ୟୋତିଃ (ଜ୍ୱାଳା), ଅହଃ (ଦିନ) ଶୁକ୍ଳଃ (ଶୁକ୍ଳପକ୍ଷ) ଉତ୍ତରାୟଣଂ ଷଣ୍ମାସାଃ (ଉତ୍ତରାୟଣ ଛଅମାସ), ତତ୍ର ପ୍ରୟାତାଃ (ସେହି ମାର୍ଗରେ ପ୍ରୟାଣକାରୀ) ବ୍ରହ୍ମବିଦଃ (ବ୍ରହ୍ମଙ୍କ ଉପାସକ) ଜନାଃ (ବ୍ୟକ୍ତିମାନେ) ବ୍ରହ୍ମ ଗଚ୍ଛନ୍ତି (ବ୍ରହ୍ମଙ୍କୁ ପ୍ରାପ୍ତ ହୁଅନ୍ତି) ।

**ଅନୁବାଦ**—ଅଗ୍ନି, ଜ୍ୟୋତିଃ ବା ଜ୍ୱାଳା, ଦିନ, ଶୁକ୍ଳପକ୍ଷ ଓ ଉତ୍ତରାୟଣ ଛଅମାସରେ ମଲେ ବ୍ରହ୍ମବେତ୍ତା ଲୋକ ବ୍ରହ୍ମଙ୍କୁ ପ୍ରାପ୍ତ ହୁଅନ୍ତି ଅର୍ଥାତ୍ ତାଙ୍କୁ ଆଉ ଫେରି ଆସିବାକୁ ହୁଏ ନାହିଁ ।

**ସୁବୋଧିନୀ ଟୀକା**—ତତ୍ରାନାବୃତ୍ତିମାର୍ଗ ମାହ । ଅଗ୍ନିରିତି ଅଗ୍ନି-ର୍ଜ୍ୟୋତିଃ ଶବ୍ଦାଭ୍ୟାଂ ତେଽର୍ଚିଷମଭିସମ୍ଭବନ୍ତୀତି ଶ୍ରୁତ୍ୟୁକ୍ତ୍ୟାର୍ଚିରଭିମାନିନୀ ଦେବତୋପଲକ୍ଷ୍ୟତେ । ଅହରିତି ଦିବସାଭିମାନିନୀ ଶୁକ୍ଳ ଇତି ଶୁକ୍ଳପକ୍ଷାଭିମାନିନୀ ଉତ୍ତରାୟଣରୂପାଃ ଷଣ୍ମାସା ଇତ୍ୟୁତ୍ତରାୟଣାଭିମାନିନୀ । ଏତଚ୍ଚାନ୍ୟାସାମପି ଶ୍ରୁତ୍ୟୁକ୍ତାନାଂ ସମ୍ବତ୍ସର ଦେବଲୋକାଦିଦେବତାନାମୁପଲକ୍ଷଣାର୍ଥଂ, ଏବମ୍ଭୂତୋ ଯୋ ମାର୍ଗ ସ୍ତତ୍ରପ୍ରୟାତାଗତା ଭଗବଦୁପାସକାଜନା ବ୍ରହ୍ମ ପ୍ରାପ୍ନୁବନ୍ତି, ଯତସ୍ତେ ବ୍ରହ୍ମବିଦଃ । ତଥାଚ ଶ୍ରୁତିଃ—

ତେଽର୍ଚିରଭିସମ୍ଭବନ୍ତ୍ୟର୍ଚିଷୋଽହରହ୍ନ ଆପୂର୍ଯ୍ୟମାଣପକ୍ଷମାପୂର୍ଯ୍ୟମାଣପକ୍ଷାଦ୍ ଯାନ୍ ଷଣ୍ମାସାନୁଦଙ୍ଙାଦିତ୍ୟ ଏତି ମାସେଭ୍ୟୋ-ଦେବଲୋକମିତି ।

( ୨୪, ୨୫ ଓ ୨୬ ଏ ତିନଗୋଟି ଶ୍ଳୋକ ସମ୍ବନ୍ଧୀୟ ବିବୃତି ୨୬ଶ ଶ୍ଳୋକ ଶେଷରେ ଦେଖ ) ।

ଧୂମୋ ରାତ୍ରିସ୍ତଥା କୃଷ୍ଣଃ ଷଣ୍ମାସା ଦକ୍ଷିଣାୟନମ୍ ।
ତତ୍ର ଚାନ୍ଦ୍ରମସଂ ଜ୍ୟୋତିର୍ଯୋଗୀ ପ୍ରାପ୍ୟ ନିବର୍ତ୍ତତେ ।୨୫।
ଶୁକ୍ଳକୃଷ୍ଣେ ଗତୀ ହ୍ୟେତେ ଜଗତଃ ଶାଶ୍ୱତେ ମତେ ।
ଏକୟା ଯାତ୍ୟନାବୃତ୍ତିମନ୍ୟୟାବର୍ତ୍ତତେ ପୁନଃ । ୨୬ ।

୨୫ । **ଅନ୍ୱୟଦୀପିକା**—ଧୂମଃ, ରାତ୍ରିଃ, କୃଷ୍ଣଃ ( ଧୂମ, ରାତ୍ରି ଓ କୃଷ୍ଣପକ୍ଷ) ତଥା ଷଣ୍ମାସାଃ ଦକ୍ଷିଣାୟନଂ (ଏବଂ ଦକ୍ଷିଣାୟନ ଛଅମାସ) ତତ୍ର (ସେହି ପଥରେ) ଯୋଗୀ (କର୍ମୀ ପୁରୁଷ) ଚାନ୍ଦ୍ରମସଂ ଜ୍ୟୋତିଃ (ଚନ୍ଦ୍ର ସମ୍ବନ୍ଧୀୟ ଜ୍ୟୋତିଃ ବା ଚନ୍ଦ୍ରଲୋକ ବା ସ୍ୱର୍ଗଲୋକ) ପ୍ରାପ୍ୟ (ପ୍ରାପ୍ତ ହୋଇ) ନିବର୍ତ୍ତତେ (ପୁନରାବୃତ୍ତ ହୁଅନ୍ତି) ।

**ଅନୁବାଦ**—(ଅଗ୍ନି) ଧୂମ, ରାତ୍ରି, କୃଷ୍ଣପକ୍ଷ, ଦକ୍ଷିଣାୟନ ଛଅମାସ—ଏହି ସମୟରେ ମଲେ କର୍ମୀପୁରୁଷ ଚନ୍ଦ୍ରଲୋକ ବା ସ୍ୱର୍ଗଲୋକ ପ୍ରାପ୍ତ ହୋଇ (ପୁଣ୍ୟ ଭୋଗ ଶେଷରେ) ପୁନର୍ବାର ସଂସାରକୁ ଫେରି ଆସନ୍ତି ।

**ସୁବୋଧିନୀ ଟୀକା**—ଅନାବୃତ୍ତିମାର୍ଗମାହ— ଧୂମ ଇତି । ଧୂମୋ ଧୂମାଭିମାନିନୀ ଦେବତା । ରାତ୍ର୍ୟାଦିଶବ୍ଦୈଶ୍ଚ ପୂର୍ବବଦେବ ରାତ୍ରିକୃଷ୍ଣପକ୍ଷ-ଦକ୍ଷିଣାୟନରୂପଷଣ୍ମାସାଭିମାନିନ୍ୟସ୍ତିସ୍ରୋ ଦେବତା ଉପଲକ୍ଷ୍ୟନ୍ତେ । ଏତାଭି-ର୍ଦେବତାଭିରୁପଲକ୍ଷିତୋ ଯୋ ମାର୍ଗ ସ୍ତତ୍ର ପ୍ରୟାତଃ କର୍ମଯୋଗୀ ଚାନ୍ଦ୍ରମସଂ ଜ୍ୟୋତିସ୍ତଦୁପଲକ୍ଷିତଂ ସ୍ୱର୍ଗଲୋକଂ ପ୍ରାପ୍ୟ ତତ୍ରେଷ୍ଟାପୂର୍ତ୍ତିକର୍ମଫଲଂଭୁକ୍ତ୍ୱା ପୁନରାବର୍ତ୍ତତେ । ତଥାପି ଶ୍ରୁତିଃ—ତେ ଧୂମମଭିସଂଭବନ୍ତି ଧୂମାଦ୍ରାତ୍ରିଂ ରାତ୍ରେ-ରପକ୍ଷୀୟମାଣପକ୍ଷମପକ୍ଷୀୟମାଣପକ୍ଷାଦ୍ 'ଯାନ୍ ଷଣ୍ମାସାନ୍ ଦକ୍ଷିଣାଦତ୍ୟ ଏତି ମାସେଭ୍ୟଃ ପିତୃଲୋକଂ ପିତୃଲୋକାଚ୍ଚନ୍ଦ୍ରଂ ତେ ଚନ୍ଦ୍ରଂ ପ୍ରାପ୍ୟାନ୍ନଂ ଭବନ୍ତି—ଇତି' ତଦେବଂ କେବଳକର୍ମସହିତୋପାସନୟା କମନ୍ମୁକ୍ତିଃ । କାମ୍ୟକର୍ମଭିଶ୍ଚ ସ୍ୱର୍ଗ-ଭୋଗାନନ୍ତରମାବୃତ୍ତିଃ । ନିଷିଦ୍ଧକର୍ମଭିସ୍ତୁ ନରକଭୋଗାନନ୍ତରମାବୃତ୍ତିଃ । କ୍ଷୁଦ୍ର-କର୍ମଣାଂ ତୁ ଜନ୍ତୂନାମତ୍ରୈବ ପୁନଃପୁନର୍ଜନ୍ମେତି ଦ୍ରଷ୍ଟବ୍ୟମ୍ ।

୨୬ । **ଅନ୍ୱୟଦୀପିକା**—ଜଗତଃ (ଜଗତର) ଏତେ ହି ଶୁକ୍ଳକୃଷ୍ଣେ ଗତୀ (ଏହି ଶୁକ୍ଳ ଓ କୃଷ୍ଣ ଗତି,—ପ୍ରକାଶମୟ ଓ ଅନ୍ଧକାରମୟ ଦୁଇ ପଥ) ଶାଶ୍ୱତେ ମତେ (ଅନାଦି ବୋଲି କଥିତ) । [ଉପାସକ] ଏକୟା (ଗୋଟିକଦ୍ୱାରା) ଅନାବୃତ୍ତିଂ ଯାତି (ମୋକ୍ଷପ୍ରାପ୍ତ ହୁଅନ୍ତି); ଅନ୍ୟୟା (ଅନ୍ୟଟି ଦ୍ୱାରା) ପୁନଃ ଆବର୍ତ୍ତତେ (ପୁନର୍ଜନ୍ମ ପ୍ରାପ୍ତ ହୁଅନ୍ତି) ।

**ଅନୁବାଦ**—ଜଗତରେ ଶୁକ୍ଳ (ପ୍ରକାଶମୟ) ଓ କୃଷ୍ଣ (ଅନ୍ଧକାରମୟ) ଏହି ଦୁଇଟି ପଥ ଅନାଦି ବୋଲି ପ୍ରସିଦ୍ଧ । ଗୋଟିକ ଦ୍ୱାରା ମୋକ୍ଷ ଲାଭ ହୁଏ, ଅନ୍ୟଟି ଦ୍ୱାରା ପୁନର୍ଜନ୍ମ ହୁଏ ।

**ସୁବୋଧିନୀ ଟୀକା**—ଉକ୍ତୌ ମାର୍ଗାବୁପସଂହରତି—ଶୁକ୍ଳେତି । ଶୁକ୍ଳା-ଽର୍ଚ୍ଚିରାଦିଗତିଃ । ପ୍ରକାଶମୟତ୍ୱାତ୍, କୃଷ୍ଣା ଧୂମାଦିଗତିଃ ତମୋମୟତ୍ୱାତ୍ । ଏତେ ଗତୀ ମାର୍ଗୌ ଜ୍ଞାନକର୍ମାଧିକାରିଣୋ ଜଗତଃ ଶାଶ୍ୱତେ ଅନାଦୀ ସମ୍ମତେ । ସଂସାରସ୍ୟାନାଦିତ୍ୱାତ୍ । ତୟୋରେକୟା ଶୁକ୍ଳୟାଽନାବୃତ୍ତିଂ ମୋକ୍ଷଂ ଯାତି । ଅନ୍ୟୟା କୃଷ୍ଣୟା ତୁ ପୁନରାବର୍ତ୍ତତେ ।

**୨୪-୨୬ ବିବୃତି**—ମୃତ୍ୟୁ ପରେ ଜୀବାତ୍ମାର ଉତ୍‌କ୍ରାନ୍ତି ସମ୍ବନ୍ଧରେ ଦୁଇଗୋଟି ମାର୍ଗ ବିଷୟ ଅତି ପ୍ରାଚୀନକାଳରୁ ପ୍ରଚଳିତ ଅଛି । ଉପନିଷଦରେ ଏହି ଦୁଇମାର୍ଗକୁ ଦେବଯାନ (ଶୁକ୍ଳ) ଓ ପିତୃଯାନ (କୃଷ୍ଣ) ଅଥବା ଅର୍ଚ୍ଚିରାଦି ମାର୍ଗ ଓ ଧୂମାଦିମାର୍ଗ କୁହାଯାଏ । ଋଗ୍‌ବେଦରେ ମଧ୍ୟ ଏହି ଦୁଇ ମାର୍ଗର ଉଲ୍ଲେଖ ଅଛି । ମୃତଲୋକର ଦେହ ଅଗ୍ନିରେ ପୋଡ଼ିଦେବା ପରେ ଅଗ୍ନିରୁହିଁ ଏହି ମାର୍ଗର ଆରମ୍ଭ ହୋଇଥାଏ । ତେଣୁ ୨୪ଶ ଶ୍ଳୋକରେ ଯେଉଁ ଅଗ୍ନି ଶବ୍ଦର ପ୍ରୟୋଗ ହୋଇଅଛି, ୨୫ଶ ଶ୍ଳୋକରେ ସେହି ଅଗ୍ନି ଶବ୍ଦକୁ ଅଧ୍ୟାହାର କରାଯାଇଅଛି ।

ମୃତ୍ୟୁପରେ ଶରୀର ଚିତାଗ୍ନିରେ ଦଗ୍‌ଧ ହେଲେ ସେହି ଅଗ୍ନିରୁ ଜ୍ୟୋତି, ଦିବା, ଶୁକ୍ଳପକ୍ଷ ଏବଂ ଉତ୍ତରାୟଣ ଛଅମାସ ଏହିକ୍ରମରେ ବ୍ରହ୍ମଜ୍ଞଙ୍କ ଜୀବାତ୍ମା ପ୍ରୟାଣ କରି କରି ଶେଷରେ ବ୍ରହ୍ମପଦରେ ଉପସ୍ଥିତ ହୁଅନ୍ତି । ସେହିଠାରେ ମୋକ୍ଷଲାଭ ହେବାରୁ ସେ ଆଉ ପୁନର୍ଜନ୍ମ ଗ୍ରହଣ କରନ୍ତି ନାହିଁ । କିନ୍ତୁ ଯେଉଁ ଲୋକ କେବଳ ସକାମ କର୍ମ କରିଥାଆନ୍ତି ଓ ଯାହାଙ୍କର ବ୍ରହ୍ମଜ୍ଞାନ ହୋଇ ନ ଥାଏ, ତାଙ୍କ ଆତ୍ମା ସେହି ଚିତାଗ୍ନିରୁ ଧୂମ, ରାତ୍ରି, କୃଷ୍ଣପକ୍ଷ ଓ ଦକ୍ଷିଣାୟନ ଛଅମାସ ଏହି କ୍ରମରେ ଯାଇ ଚନ୍ଦ୍ରଲୋକରେ ଉପସ୍ଥିତ ହୁଅନ୍ତି ଏବଂ ସେଠାରେ ତାଙ୍କ କୃତକର୍ମର ସମସ୍ତ ଫଳ ଭୋଗକରି ଶେଷରେ ପୁଣି ମର୍ତ୍ତ୍ୟଲୋକରେ ଜନ୍ମ ଗ୍ରହଣ କରନ୍ତି । ଏ ସମ୍ବନ୍ଧରେ ଛାନ୍ଦୋଗ୍ୟ ଉପନିଷଦରେ ଏହିପରି ବର୍ଣ୍ଣନା ଦେଖାଯାଏ (ଛାନ୍ଦୋଗ୍ୟ ୫।୧୦।୧୨)—

"ଯେ ଚେମେ ଅରଣ୍ୟେ ଶ୍ରଦ୍ଧାତପ ଇତ୍ୟୁପାସତେ ତେ ଅର୍ଚ୍ଚିଷମଭି-ସମ୍ଭବନ୍ତି । ଅର୍ଚ୍ଚିଷୋଽହଃ ଅହ୍ନ ଆପୂର୍ଯ୍ୟମାଣପକ୍ଷମ୍ ଆପୂର୍ଯ୍ୟମାଣ ପକ୍ଷାଦ୍‌ଯାନ୍ ଷଡୁଦଙ୍ଙେତି । ମାସାଂସ୍ତାନ୍, ମାସେଭ୍ୟଃ ସଂବତ୍ସରମ୍, ସଂବତ୍ସରାଦାଦିତ୍ୟମ୍, ଆଦିତ୍ୟାଚ୍ଚନ୍ଦ୍ରମସମ୍, ଚନ୍ଦ୍ରମସୋ ବିଦ୍ୟୁତଂ, ତତ୍ପୁରୁଷୋଽମାନବଃ ସ ଏନାନ୍ ବ୍ରହ୍ମ ଗମୟତି, ଏଷ ଦେବଯାନ, ପନ୍ଥା ଇତି ।"

"ଯେଉଁମାନେ ଅରଣ୍ୟରେ ଶ୍ରଦ୍ଧାସହକାରେ ତପସ୍ୟା କରନ୍ତି ସେମାନେ ଅର୍ଚ୍ଚିଃ ଅର୍ଥାତ୍ ଜ୍ୟୋତିକୁ ପ୍ରାପ୍ତ ହୁଅନ୍ତି, ଅର୍ଚ୍ଚିରୁ ଦିବା, ଦିବାରୁ ଶୁକ୍ଳପକ୍ଷ, ଶୁକ୍ଳପକ୍ଷରୁ ଉତ୍ତରାୟଣ ଛମାସ, ତତ୍ପରେ ସମ୍ବତ୍ସର, ସମ୍ବତ୍ସରରୁ ଆଦିତ୍ୟ, ଆଦିତ୍ୟରୁ ଚନ୍ଦ୍ରମା, ଚନ୍ଦ୍ରମାରୁ ବିଦ୍ୟୁତ୍ ପ୍ରାପ୍ତ ହୁଅନ୍ତି । ପରେ ଏକ ଅମାନବ-ପୁରୁଷ ସେମାନଙ୍କୁ ବ୍ରହ୍ମଲୋକକୁ ନେଇ ଯାଆନ୍ତି ।" ଏହାର ନାମ ଦେବଯାନମାର୍ଗ, ଅର୍ଚ୍ଚିରାଦିମାର୍ଗ, ପ୍ରକାଶମୟମାର୍ଗ ବା ଉତ୍ତରାୟଣ ମାର୍ଗ । ଯେଉଁମାନେ ବ୍ରହ୍ମଜ୍ଞାନ ଲାଭକରି ଥାଆନ୍ତି ସେହିମାନେ ଏହିମାର୍ଗରେ ଗତିକରି ଶେଷରେ ମୋକ୍ଷର ଅଧିକାରୀ ହୁଅନ୍ତି ।

ସକାମ କର୍ମୀମାନେ ଅନ୍ଧକାରମୟ ଧୂମାଦିମାର୍ଗରେ ଗମନ କରନ୍ତି, ସେମାନଙ୍କର ବର୍ଣ୍ଣନା ଏହିପରି ।

"ଅଥ ଯେ ଇମେ ଗ୍ରାମେ ଇଷ୍ଟାପୂର୍ତ୍ତେ ଦତ୍ତମିତ୍ୟୁପାସତେ ତେ ଧୂମମଭିସଂଭବନ୍ତି, ଧୂମାଦ୍ରାତ୍ରିମ୍, ରାତ୍ରେରପରପକ୍ଷମ୍, ଅପରପକ୍ଷାଦ୍ୟାନ୍ ଷଡ଼୍‌ଦକ୍ଷିଣୈତି ମାସାଂ ସ୍ତାନ୍, ନୈତେ ସମ୍ବତ୍ସରମଭିପ୍ରାପ୍ନୁବନ୍ତି, ମାସେଭ୍ୟଃ ପିତୃଲୋକଂ, ପିତୃଲୋକାଦାକାଶମ୍ ଆକାଶାଚ୍ଚନ୍ଦ୍ରମସମ୍ ।"

ଅର୍ଥାତ୍ ଯେଉଁମାନେ ଗ୍ରାମରେ ଗୃହସ୍ଥାଶ୍ରମରେ ରହି ଯଜ୍ଞ, ଜଳାଶୟ ଖନନାଦି ପୁଣ୍ୟକର୍ମ ଏବଂ ଦାନାଦି କରନ୍ତି ସେମାନେ ଧୂମ ପ୍ରାପ୍ତ ହୁଅନ୍ତି, ଧୂମରୁ ରାତ୍ରି, ରାତ୍ରିରୁ କୃଷ୍ଣପକ୍ଷ, କୃଷ୍ଣପକ୍ଷରୁ ଛଅମାସ ଦକ୍ଷିଣାୟନ ଏବଂ ସେଠାରୁ ଏମାନେ ସମ୍ବତ୍ସର ପ୍ରାପ୍ତ ହୁଅନ୍ତି ନାହିଁ । ମାସରୁ ପିତୃଲୋକ, ସେଠାରୁ ଆକାଶ ଏବଂ ଆକାଶରୁ ଚନ୍ଦ୍ରଲୋକ ପ୍ରାପ୍ତ ହୁଅନ୍ତି ।" ଏହାର ନାମ ପିତୃଯାନ ମାର୍ଗ, ଧୂମ୍ରାଦିମାର୍ଗ ବା ଦକ୍ଷିଣମାର୍ଗ । ଚନ୍ଦ୍ରଲୋକରୁ ଏମାନଙ୍କୁ ପୁଣ୍ୟକ୍ଷୟରେ ପୁଣି ସଂସାରକୁ ଫେରିଆସିବାକୁ ହୁଏ ।

ଉତ୍ତରଧ୍ରୁବସ୍ଥାନ ଦେବତାମାନଙ୍କର ରହିବାସ୍ଥାନ ଏହା ପୂର୍ବେ କୁହାଯାଇ ଅଛି । ଆମ୍ଭମାନଙ୍କର ଯେତେବେଳେ ଉତ୍ତରାୟଣ ସେତେବେଳେ ଦେବତାମାନଙ୍କର ଦିନ ଏବଂ ଦକ୍ଷିଣାୟନବେଳେ ସେମାନଙ୍କର ରାତ୍ରି । ଏହି କଥାକୁ ଲକ୍ଷ୍ୟ ରଖିଲେ ଜଣାଯିବ ଯେ, ଅର୍ଚ୍ଚିରାଦିମାର୍ଗ ବା ପ୍ରଥମମାର୍ଗ ଆରମ୍ଭରୁ ଶେଷଯାଏ ପ୍ରକାଶମୟ ଏବଂ ଦ୍ୱିତୀୟମାର୍ଗ ବା ଧୂମ୍ରାଦିମାର୍ଗ ଅନ୍ଧକାରମୟ । ଜ୍ଞାନପ୍ରକାଶମୟ ଏବଂ 'ପରବ୍ରହ୍ମ ଜ୍ୟୋତିଷାଂ ଜ୍ୟୋତିଃ' ସ୍ୱରୂପ ହୋଇଥିବାରୁ ଜ୍ଞାନୀ ବ୍ୟକ୍ତିଙ୍କର ମାର୍ଗ ପ୍ରକାଶମୟ ହେବାହିଁ ସଙ୍ଗତ; ପ୍ରକାଶମୟ ଓ ଅନ୍ଧକାରମୟ—ଏହି ଅର୍ଥରେ ହିଁ ଗୀତାରେ ଶୁକ୍ଳ ଓ କୃଷ୍ଣ ଏହି ସଂଜ୍ଞା ପ୍ରଦତ୍ତ ହୋଇଅଛି ।

୨୪ଶ ଓ ୨୫ଶ ଶ୍ଳୋକରେ ଯେଉଁ ଦୁଇମାର୍ଗର ବର୍ଣ୍ଣନା ହୋଇଅଛି, ତନ୍ମଧ୍ୟରୁ ଦିନ, ଶୁକ୍ଳପକ୍ଷ ଓ ଉତ୍ତରାୟଣ ଏବଂ ରାତ୍ରି, କୃଷ୍ଣପକ୍ଷ ଓ ଦକ୍ଷିଣାୟନ—ଏଗୁଡ଼ିକ କାଳବାଚକ ଶବ୍ଦ, କିନ୍ତୁ ଅଗ୍ନି, ଜ୍ୟୋତିଃ, ଧୂମପ୍ରଭୃତି ଶବ୍ଦ କାଳବାଚକ

ନୁହେ । ଉପନିଷଦ୍, ନିରୁକ୍ତଗ୍ରନ୍ଥରେ ଏହି ଦୁଇମାର୍ଗର ଯେଉଁ ବର୍ଣ୍ଣନା ଅଛି ତହିଁରେ ଉତ୍ତରାୟଣପରେ ସମ୍ବତ୍ସର, ବାୟୁଲୋକ, ସୂର୍ଯ୍ୟ, ଚନ୍ଦ୍ର, ବିଦ୍ୟୁତ୍ ପ୍ରଭୃତି କ୍ରମ ବର୍ଣ୍ଣିତ ଅଛି । ଏସବୁ ମଧ୍ୟ କାଳବାଚକ ନୁହେ । ତେଣୁ ବେଦାନ୍ତସୂତ୍ରରେ ଏସବୁର ସମାଧାନ ହୋଇ ତତ୍ତଦଭିମାନୀ ଦେବତା ବୋଲି କଳ୍ପନା କରାଯାଇ-ଅଛି । ସେହି ସମସ୍ତଦେବତା ଜ୍ଞାନୀ ଓ କର୍ମକାଣ୍ଡୀ ଲୋକଙ୍କର ଆତ୍ମାକୁ ଭିନ୍ନ ମାର୍ଗରେ ବ୍ରହ୍ମଲୋକ ଓ ଚନ୍ଦ୍ରଲୋକକୁ ନେଇ ଯାଆନ୍ତି । କିନ୍ତୁ ଶ୍ରୀମଦ୍‌ଭଗବଦ୍-ଗୀତାର ଏହା ଅଭିମତ କି ନୁହେ ତାହା ଜଣାଯାଏ ନାହିଁ, କାରଣ ଭଗବାନ ଏ ବର୍ଣ୍ଣନା ପୂର୍ବରୁ ୨୩ଶ ଶ୍ଳୋକରେ ସ୍ପଷ୍ଟ କହିଅଛନ୍ତି 'ଯେଉଁ କାଳରେ ଗମନ କଲେ ଯୋଗୀମାନେ ପୁନର୍ଜନ୍ମ ପ୍ରାପ୍ତ ହୁଅନ୍ତି ନାହିଁ ବା ପ୍ରାପ୍ତ ହୁଅନ୍ତି ସେହି କାଳବିଷୟ ତୁମ୍ଭଙ୍କୁ କହିବି' । ମହାଭାରତରେ ବର୍ଣ୍ଣିତ ଅଛି ଯେ ଭୀଷ୍ମ ଶରଶଯ୍ୟାରେ ରହି ଶରୀରତ୍ୟାଗ ନିମିତ୍ତ ଉତ୍ତରାୟଣ କାଳକୁ ଅପେକ୍ଷାକରି ରହିଥିଲେ । ଏଥିରୁ ମନେ ହେଉଛି ଦିନ, ଶୁକ୍ଳପକ୍ଷ, ଉତ୍ତରାୟଣ କାଳହିଁ ଶରୀରତ୍ୟାଗର ପ୍ରଶସ୍ତ ସମୟ ବୋଲି ବହୁକାଳରୁ ଏ ଦେଶରେ ବିଶ୍ୱାସ ଅଛି । ଉତ୍ତର ଗୋଲାର୍ଦ୍ଧର ଯେଉଁ ସ୍ଥାନରେ ସୂର୍ଯ୍ୟ ବରାବର ଛଅମାସ କ୍ଷିତିଜ ଉପରେ ଦୃଶ୍ୟ ହୁଅନ୍ତି ସେହି ସ୍ଥାନରେ ଅର୍ଥାତ୍ ଉତ୍ତରଧ୍ରୁବ ନିକଟରେ ଅଥବା ମେରୁ ସ୍ଥାନରେ ଯେତେବେଳେ ବୈଦିକ ଋଷିମାନଙ୍କର ବାସସ୍ଥାନ ଥିଲା ସେତେବେଳେ ପ୍ରକାଶମୟ କାଳ ଉତ୍ତରାୟଣ ୬ ମାସ ମୃତ୍ୟୁର ପ୍ରଶସ୍ତ କାଳ ବୋଲି ମାନିବା ପ୍ରଥା ପ୍ରଚଳିତ ହୋଇଥିବ ।

କିନ୍ତୁ କି ଦେବଯାନ, କି ପିତୃଯାନ—ଶାସ୍ତ୍ରୋକ୍ତ ପୁଣ୍ୟକର୍ମ କରିବା ଲୋକେ ଏହି ଦୁଇମାର୍ଗ ପ୍ରାପ୍ତ ହୁଅନ୍ତି, ପିତୃଯାନମାର୍ଗ ଦେବଯାନ ଅପେକ୍ଷା ନିମ୍ନ ସ୍ଥାନୀୟ ହେଲେହେଁ ତାହା ମଧ୍ୟ ଚନ୍ଦ୍ରଲୋକରେ ଅର୍ଥାତ୍ ଏକପ୍ରକାର ସ୍ୱର୍ଗରେ ପହଞ୍ଚିବାର ମାର୍ଗ । ତେଣୁ ଇହଲୋକରେ ଶାସ୍ତ୍ରୋକ୍ତ କୌଣସି ପ୍ରକାର ପୁଣ୍ୟକର୍ମ କଲେ ସୁଖଭୋଗର ଯୋଗ୍ୟତା ଆସେ—ଏହା ସ୍ପଷ୍ଟ ଦେଖାଯାଏ । କିନ୍ତୁ ଯେଉଁମାନେ ଶାସ୍ତ୍ରୋକ୍ତ କୌଣସି ପ୍ରକାର ପୁଣ୍ୟକର୍ମ ନ କରି ସଂସାରରେ ଯାବଜ୍ଜୀବନ ପାପାଚରଣରେ ନିମଗ୍ନ ଥାଆନ୍ତି, ସେମାନେ ପୂର୍ବୋକ୍ତ ଦୁଇମାର୍ଗ ମଧ୍ୟରୁ କୌଣସି ମାର୍ଗରେ ଯାଆନ୍ତି ନାହିଁ । ମୃତ୍ୟୁ ପରେ ସେମାନେ ଏକାବେଳେକେ ପଶୁ ପକ୍ଷୀ ଆଦି ତିର୍ଯ୍ୟକ୍‌ଯୋନିରେ ଜନ୍ମଗ୍ରହଣ କରନ୍ତି ଏବଂ ପୁନଃପୁନଃ ନରକଯନ୍ତ୍ରଣା ଭୋଗକରନ୍ତି—ଉପନିଷଦରେ ଏହା ସ୍ପଷ୍ଟରୂପେ ବର୍ଣ୍ଣିତ ହୋଇଅଛି । ଏହାକୁ ତୃତୀୟମାର୍ଗ କୁହାଯାଏ (ଛା ୫.୧୦.୮ କଠ ୨.୬.୭); ଏବଂ ଭଗବଦ୍‌ଗୀତାରେ ମଧ୍ୟ ଘୋର ପାପୀ ଅର୍ଥାତ୍ ଆସୁରି ପୁରୁଷମାନେ ନରକଗତି ପ୍ରାପ୍ତ ହୁଅନ୍ତି—ଏହିପରି ବର୍ଣ୍ଣିତ ଅଛି ( ଗୀତା ୧୬-୧୯।୨୧. ୯-୧୨ )

(ଲୋକମାନ୍ୟତିଲକଙ୍କ ଗୀତାରହସ୍ୟର ସାରାଂଶ)

ନୈତେ ସୃତୀ ପାର୍ଥ ଜାନନ୍ ଯୋଗୀ ମୁହ୍ୟତି କଶ୍ଚନ ।
ତସ୍ମାତ୍ ସର୍ବେଷୁ କାଲେଷୁ ଯୋଗଯୁକ୍ତୋ ଭବାର୍ଜୁନ । ୨୭ ।

ବେଦେଷୁ ଯଜ୍ଞେଷୁ ତପଃସୁ ଚୈବ
ଦାନେଷୁ ଯତ୍ ପୁଣ୍ୟଫଳଂ ପ୍ରଦିଷ୍ଟମ୍ ।
ଅତ୍ୟେତି ତତ୍‌ସର୍ବମିଦଂ ବିଦିତ୍ୱା
ଯୋଗୀ ପରଂସ୍ଥାନମୁପୈତି ଚାଦ୍ୟମ୍ । ୨୮ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସଂବାଦେ ଅକ୍ଷରବ୍ରହ୍ମଯୋଗୋ ନାମ ଅଷ୍ଟମୋଽଧ୍ୟାୟଃ ।

**୨୭ । ଅନ୍ୱୟଦୀପିକା**—[ହେ] ପାର୍ଥ ! ଏତେ (ଏହି) ସୃତୀ (ମାର୍ଗଦ୍ୱୟ) ଜାନନ୍ (ଜାଣିଲେ) କଶ୍ଚନ ଯୋଗୀ (କୌଣସି ଯୋଗୀ) ନ ମୁହ୍ୟତି (ମୋହପ୍ରାପ୍ତ ହୁଅନ୍ତି ନାହିଁ), ତସ୍ମାତ୍ (ସେହି ହେତୁରୁ) [ହେ] ଅର୍ଜୁନ ! ସର୍ବେଷୁ କାଲେଷୁ (ସବୁବେଳେ) ଯୋଗଯୁକ୍ତଃ ଭବ (ଯୋଗଯୁକ୍ତ ହୁଅ) ।

**ଅନୁବାଦ**—ହେ ପାର୍ଥ ! ପୂର୍ବୋକ୍ତ ମାର୍ଗଦ୍ୱୟ ଅବଗତ ହୋଇ କୌଣସି ଯୋଗୀ ମୋହପ୍ରାପ୍ତ ହୁଅନ୍ତି ନାହିଁ । ଅତଏବ ହେ ଅର୍ଜୁନ, ତୁମେ ସର୍ବଦା ଯୋଗଯୁକ୍ତ ହୁଅ ।

**ସୁବୋଧିନୀ ଟୀକା**—ମାର୍ଗଜ୍ଞାନଫଳଂ ଦର୍ଶୟନ୍ ଭକ୍ତିଯୋଗମୁପସଂହରତି-ନୈତେଇତି । ଏତେ ସୃତୀ ମାର୍ଗୌ ମୋକ୍ଷସଂସାର ପ୍ରାପକୌ ଜାନନ୍ କଶ୍ଚିଦପି ଯୋଗୀ ନ ମୁହ୍ୟତି । ସୁଖବୁଦ୍ଧ୍ୟା ସ୍ୱର୍ଗାଦିଫଳଂ ନ କାମୟତେ । କିନ୍ତୁ ପରମେଶ୍ୱରନିଷ୍ଠ ଏବ ଭବତୀତ୍ୟର୍ଥଃ । ସ୍ପଷ୍ଟ ମନ୍ୟତ୍ ।

**ବିବୃତି**—ଜ୍ଞାନ-କର୍ମ-ଭକ୍ତି-ମିଶ୍ରିତ ମାର୍ଗହିଁ ଗୀତୋକ୍ତ ଯୋଗ । ସୁତରାଂ ଏଠାରେ ଯୋଗୀ ଶବ୍ଦ ଦ୍ୱାରା ସେହିଭଳି ଯୋଗୀଙ୍କୁ ଲକ୍ଷ୍ୟ କରାଯାଇଅଛି—ଯେଉଁ ଯୋଗୀ ପୂର୍ବୋକ୍ତ ଦେବଯାନ ଓ ପିତୃଯାନ—ଏହି ଦୁଇମାର୍ଗର ପ୍ରକୃତତତ୍ତ୍ୱ ଜାଣିଅଛନ୍ତି—ଅର୍ଥାତ୍ ଦେବଯାନ ମାର୍ଗ ମୋକ୍ଷପ୍ରଦ ଓ ପିତୃଯାନ ମାର୍ଗ ସଂସାରପ୍ରାପକ—ଏହା ବୁଝି ପାରିଛନ୍ତି, ସେ କେବେହେଁ ଘାତମାର୍ଗ ଅର୍ଥାତ୍ ପିତୃଯାନ ମାର୍ଗର ପଥିକ ହେବେ ନାହିଁ; ଦେବଯାନ ମାର୍ଗହିଁ ଆଶ୍ରୟ କରିବେ । ସେହି ପଥ ଆଶ୍ରୟ କରିବାକୁ ଅର୍ଜୁନଙ୍କୁ ଉପଦେଶ ଦିଆଯାଇଅଛି ।

**୨୮ । ଅନ୍ୱୟଦୀପିକା**—ବେଦେଷୁ (ବେଦରେ) ଯଜ୍ଞେଷୁ (ଯଜ୍ଞରେ) ତପଃସୁ (ତପସ୍ୟାରେ) ଦାନେଷୁ ଚ ଏବ (ଓ ଦାନ ସମୂହରେ) ଯତ୍‌ପୁଣ୍ୟଫଳଂ

(ଯେଉଁ ପୁଣ୍ୟଫଳ) ପ୍ରଦିଷ୍ଟମ୍ (ନିରୂପିତ ହୋଇଅଛି) ଇଦଂ ବିଦିତ୍ୱା (ଏହି ତତ୍ତ୍ୱ ଜାଣି) ଯୋଗୀ ତତ୍‌ସର୍ବମ୍ (ଯୋଗୀ ସେହି ସମସ୍ତ ଫଳକୁ) ଅତ୍ୟେତି (ଅତିକ୍ରମ କରନ୍ତି) ଚ (ଏବଂ) ଆଦ୍ୟଂ ପରଂ ସ୍ଥାନଂ (ଉତ୍କୃଷ୍ଟ ଆଦ୍ୟସ୍ଥାନ, ମୋକ୍ଷ) ଉପୈତି (ଲାଭ କରନ୍ତି) ।

**ଅନୁବାଦ**—ବେଦାଧ୍ୟୟନରେ, ଯଜ୍ଞରେ, ତପସ୍ୟାରେ ଏବଂ ଦାନାଦିରେ ଯେଉଁସବୁ ପୁଣ୍ୟଫଳ ନିର୍ଦ୍ଦିଷ୍ଟ ହୋଇଅଛି, ଏହି ତତ୍ତ୍ୱଜାଣି ଯୋଗୀ ପୁରୁଷ ସେ ସମସ୍ତ ଅତିକ୍ରମ କରନ୍ତି ଏବଂ ଉତ୍କୃଷ୍ଟ ଆଦ୍ୟସ୍ଥାନ ଅର୍ଥାତ୍ ମୋକ୍ଷ ପ୍ରାପ୍ତ ହୁଅନ୍ତି ।

**ସୁବୋଧିନୀ ଟୀକା**—ଅଧ୍ୟାୟାର୍ଥମଷ୍ଟପ୍ରଶ୍ନାର୍ଥନିର୍ଣ୍ଣୟଂ ସଫଳମୁପସଂହରତି, ବେଦେଷ୍ୱିତି । ବେଦେଷୁ ଅଧ୍ୟୟନାଦିଭିଃ, ଯଜ୍ଞେଷୁ ଅନୁଷ୍ଠାନାଦିଭିଃ, ତପଃସୁ କାୟଶୋଷଣାଦିଭିଃ, ଦାନେଷୁ ସତ୍‌ପାତ୍ରେଽର୍ପଣାଦିଭିଃ, ଯତ୍‌ପୁଣ୍ୟଫଳମୁପଦିଷ୍ଟଂ ଶାସ୍ତ୍ରେଷୁ ତତ୍ ସର୍ବମତ୍ୟେତି । ନତୋଽପି ଶ୍ରେଷ୍ଠଂ ଯୋଗୈଶ୍ୱର୍ଯ୍ୟଂ ପ୍ରାପ୍ନୋତି କିଂ କୃତ୍ୱା ? ଇଦମଷ୍ଟପ୍ରଶ୍ନାର୍ଥନିର୍ଣ୍ଣୟେନୋକ୍ତଂ ତତ୍ତ୍ୱଂ ବିଦିତ୍ୱା ତତଶ୍ଚ ଯୋଗୀ ଜ୍ଞାନୀଭୂତ୍ୱା ପରମୁତ୍କୃଷ୍ଟମାଦ୍ୟଂ ଜଗନ୍ମୂଲଭୂତଂ ସ୍ଥାନଂ ବିଷ୍ଣୋଃ ପରମଂ ପଦଂ ପ୍ରାପ୍ନୋତି ।

ଅଷ୍ଟମେଽସ୍ମିନ୍ ବର୍ଣିତଂ ସ୍ୱେଷ୍ଟପୃଷ୍ଟାର୍ଥନିର୍ଣ୍ଣୟୈଃ
ଅନନ୍ୟଭକ୍ତିଗମ୍ୟ ଧାମାପ୍ତିଃ ସ୍ମୃତିତୋଽତ୍କୃଷ୍ଟବର୍ତ୍ମନା ।

**ବିବୃତି**—ବେଦ ଅଧ୍ୟୟନ କଲେ,ଅଶ୍ୱମେଧାଦି ଯଜ୍ଞ ଅନୁଷ୍ଠାନ କଲେ, କୃଚ୍ଛ୍ର ଚାନ୍ଦ୍ରାୟଣାଦି ଶରୀରଶୋଷଣକାରୀ ତପସ୍ୟା କଲେ, ଦେଶ, କାଳ, ପାତ୍ର ଅନୁସାରେ ଦାନ କଲେ ଯେଉଁ ପୁଣ୍ୟଫଳ ଲାଭ ହୁଏ ବୋଲି ଶାସ୍ତ୍ରରେ କଥିତ ହୋଇଅଛି, ଯୋଗୀ ଏ ତତ୍ତ୍ୱ ଜାଣି ଅର୍ଥାତ୍ କାମ୍ୟକର୍ମାଦିଦ୍ୱାରା ସ୍ୱର୍ଗଲାଭ ହେଲେ ମଧ୍ୟ ପୁନର୍ବାର ସଂସାରପ୍ରାପ୍ତି ଅନିବାର୍ଯ୍ୟ ଏହା ଜାଣି ସ୍ୱର୍ଗସୁଖକୁ ତୁଚ୍ଛ ମନେ କରନ୍ତି ଏବଂ ବ୍ରହ୍ମଜ୍ଞାନ ଲାଭକରି ଶେଷରେ ମୋକ୍ଷର ଅଧିକାରୀ ହୁଅନ୍ତି ।

---

## ଅଷ୍ଟମ ଅଧ୍ୟାୟର ସାର ସଂକଳନ

ସପ୍ତମ ଅଧ୍ୟାୟ ଶେଷରେ ଭଗବାନ କହିଥିଲେ ଅମ୍ଭ ଭକ୍ତମାନେ ବ୍ରହ୍ମତତ୍ତ୍ୱ, ଅଧ୍ୟାତ୍ମ ତତ୍ତ୍ୱ ଓ କର୍ମ ତତ୍ତ୍ୱ ଜାଣି ପାରନ୍ତି ଏବଂ ଅଧିଭୂତ, ଅଧିଦୈବ ଓ ଅଧିଯଜ୍ଞ ସହ ଅମ୍ଭଙ୍କୁ ଜାଣନ୍ତି ଏବଂ ଅମ୍ଭଠାରେ ଏକାନ୍ତ ଅଶ୍ରିତ ହୋଇ ଥିବାରୁ ମୃତ୍ୟୁ ସମୟରେ ମଧ୍ୟ ଅମ୍ଭଙ୍କୁ ବିସ୍ମୃତ ହୁଅନ୍ତି ନାହିଁ । ଅଷ୍ଟମଅଧ୍ୟାୟ ଅରମ୍ଭରେ ଅର୍ଜୁନ ସେ ସମ୍ବନ୍ଧରେ ଯେଉଁ ଆଠଗୋଟି ପ୍ରଶ୍ନ କଲେ ଭଗବାନ୍ ତାହାର ଉତ୍ତରରେ କହିଲେ:—

ଜଗତର ଯାହା ସର୍ବ ଶ୍ରେଷ୍ଠ ମୂଳକାରଣ ବା ଅବିନାଶୀ ଭାବ ତାହା ହିଁ ବ୍ରହ୍ମତତ୍ତ୍ୱ; ସଗୁଣ ଭାବରେ ଅମ୍ଭର ସ୍ୱ-ଭାବ—ଯାହା ଜୀବ ରୂପରେ ଦେହ ମଧ୍ୟରେ ପ୍ରକାଶିତ, ତାହା ଅମ୍ଭର ଅଧ୍ୟାତ୍ମତତ୍ତ୍ୱ । ବିଶ୍ୱସୃଷ୍ଟିହିଁ ଆଦ କର୍ମତତ୍ତ୍ୱ । ଅମ୍ଭର ସୃଷ୍ଟ ନାମରୂପାତ୍ମକ ବିନଶ୍ୱର ଭାବ ହିଁ ଅଧିଭୂତ । ଭୂତସମୂହରେ ଚୈତନ୍ୟ ପୁରୁଷରୂପେ ଅଧିଷ୍ଠିତ ଦେବତାରୂପୀ ଐଶୀଶକ୍ତିକୁ ଅଧିଦୈବ କୁହାଯାଏ । ସୃଷ୍ଟିରକ୍ଷା ପାଇଁ ଜୀବ ଯେଉଁ କର୍ମ କରେ ତାହା ଯଜ୍ଞ ଏବଂ ଆମ୍ଭେ ଅଧିଯଜ୍ଞ ସ୍ୱରୂପ ସମସ୍ତଙ୍କ ଶରୀରରେ ନିୟନ୍ତା ଓ ଫଳଦାତାରୂପେ ରହିଅଛୁଁ । ପ୍ରକୃତରେ ବୁଝିବାକୁ ଗଲେ ଏ ସମସ୍ତ ହିଁ ଅମ୍ଭେ, ଜୀବର କର୍ମ ମଧ୍ୟ ଅମ୍ଭଦ୍ୱାରା ନିୟନ୍ତ୍ରିତ ହୁଏ ଏବଂ ଅମ୍ଭଙ୍କୁ ଜାଣିଲେ ଏ ସବୁ ଜଣାଯାଏ । ଅର୍ଜୁନଙ୍କ ଶେଷପ୍ରଶ୍ନରେ ଭଗବାନ କହିଲେ ମୃତ୍ୟୁ ସମୟରେ ଯେ ଯେଉଁ ଭାବ ସ୍ମରଣ କରି ଦେହତ୍ୟାଗ କରେ ସେ ସେହି ଭାବ ହିଁ ପ୍ରାପ୍ତ ହୁଏ । ଯଦି ଅମ୍ଭଙ୍କୁ ସ୍ମରଣ କରି ଲୋକ ଶରୀର ତ୍ୟାଗ କରେ ତାହାହେଲେ ସେ ଅମ୍ଭଙ୍କୁ ପାଏ । କିନ୍ତୁ ଅଜୀବନ ଅଭ୍ୟାସ ନ ଥିଲେ ଶେଷ ସମୟରେ ଅମ୍ଭର ସ୍ମରଣ ସହଜସାଧ୍ୟ ହୁଏ ନାହିଁ । ତେଣୁ ସର୍ବଦା ପ୍ରତ୍ୟେକ କାର୍ଯ୍ୟରେ ଅମ୍ଭଙ୍କୁ ସ୍ମରଣ କରି କର୍ତ୍ତବ୍ୟ କଲେ ଶେଷରେ ସଦ୍‌ଗତି ଲାଭରେ ଆଦୌ ଅଶଙ୍କା ରହେ ନାହିଁ ।

ମୃତ୍ୟୁ କାଳରେ ମନକୁ ଏକାଗ୍ର ରଖି ଯୋଗବଳରେ ପ୍ରାଣବାୟୁକୁ ଭ୍ରୂଦ୍ୱୟ ମଧ୍ୟରେ ସ୍ଥାପନ କରି ଇନ୍ଦ୍ରିୟସଂଯମପୂର୍ବକ ପରମପୁରୁଷଙ୍କୁ ଚିନ୍ତା କରୁଁ କରୁଁ ଯେ ପ୍ରାଣତ୍ୟାଗ କରନ୍ତି ସେ ମୋକ୍ଷଲାଭ କରି ଥାଆନ୍ତି; କିନ୍ତୁ ସାଧାରଣ ଲୋକଙ୍କ ପକ୍ଷରେ ଏପରି ଯୋଗଧାରଣାପୂର୍ବକ ବ୍ରହ୍ମଚିନ୍ତା କରି ଦେହତ୍ୟାଗ କରିବା ସୁଖସାଧ୍ୟ ନୁହେ, ତେଣୁ ଯେଉଁ ଲୋକ ଏକାନ୍ତ ଭକ୍ତି ସହକାରେ ଅନ୍ୟ ଭାବ ହୃଦୟରେ ସ୍ଥାନ ନ ଦେଇ ସବୁବେଳେ ଅମ୍ଭଙ୍କୁ ସ୍ମରଣ କରନ୍ତି ଶେଷ ଅବସ୍ଥାରେ ଅମ୍ଭେ ତାଙ୍କ ପକ୍ଷରେ ସହଜଲଭ୍ୟ ହେଉଁ ।

ବ୍ରହ୍ମଲୋକରୁ ମଧ୍ୟ ପୁଣ୍ୟକ୍ଷୟ ପରେ ଜୀବର ସଂସାରକ୍ଷେତ୍ରକୁ ପ୍ରତ୍ୟାବର୍ତ୍ତନ ହୁଏ, ମାତ୍ର ଆମ୍ଭକୁ ପାଇଲେ ଜୀବର ଆଉ ସଂସାରରେ ପୁନର୍ବାର ଜନ୍ମ ଗ୍ରହଣ କରିବାର ଭୟ ନ ଥାଏ । କଳ୍ପକ୍ଷୟରେ ଅବ୍ୟକ୍ତ ପ୍ରକୃତିରେ ଜୀବମାନଙ୍କର ଲୟ ହୁଏ ଏବଂ କଳ୍ପାରମ୍ଭରେ ପୁନର୍ବାର ସେମାନଙ୍କର ଉତ୍ପତ୍ତି ହୋଇଥାଏ ।

ମୃତ୍ୟୁ ପରେ ଜୀବାତ୍ମାର ଉତ୍କ୍ରାନ୍ତି ସମ୍ବନ୍ଧରେ ତିନିଗୋଟି ମାର୍ଗ ପ୍ରସିଦ୍ଧ ଅଛି । ଯେଉଁମାନେ ବ୍ରହ୍ମୋପାସନା କରନ୍ତି ଶେଷରେ ସେମାନେ ପ୍ରକାଶମୟ ଦେବଯାନ ମାର୍ଗରେ ଗତିକରି ମୋକ୍ଷର ଅଧିକାରୀ ହୁଅନ୍ତି । ଯେଉଁମାନେ ଦାନ, ଯଜ୍ଞ, ଜଳାଶୟ ଖନନାଦି ସକାମ ପୁଣ୍ୟକର୍ମ କରନ୍ତି ସେମାନେ ଅନ୍ଧକାରମୟ ପିତୃଯାନ ମାର୍ଗରେ ଗମନକରି ସ୍ୱର୍ଗପ୍ରାପ୍ତ ହୁଅନ୍ତି ଏବଂ ପୁଣ୍ୟକ୍ଷୟରେ ପୁଣି ସଂସାରକୁ ଫେରିଆସନ୍ତି । ଯେଉଁମାନେ ଅସୁରଭାବାପନ୍ନ ଓ କୌଣସି ପ୍ରକାର ପୁଣ୍ୟକର୍ମ କରନ୍ତି ନାହିଁ ସେମାନେ ତିର୍ଯ୍ୟକ୍ ଯୋନିରେ ଅର୍ଥାତ୍ ପଶୁ ପକ୍ଷୀ ପ୍ରଭୃତି ନୀଚ ଜୀବରୂପରେ ଏ ସଂସାରରେ ଜନ୍ମଲାଭ କରନ୍ତି । ତେଣୁ ନିଷ୍କାମ କର୍ମ କରି ଯୋଗଯୁକ୍ତ ହେବା ସମସ୍ତଙ୍କ ପକ୍ଷରେ ସର୍ବଥା ବାଞ୍ଛନୀୟ ।

ଏ ଅଧ୍ୟାୟରେ ଅକ୍ଷରବ୍ରହ୍ମତତ୍ତ୍ୱ ହିଁ ମୁଖ୍ୟରୂପେ ଆଲୋଚିତ ହୋଇଅଛି । ତେଣୁ ଏ ଅଧ୍ୟାୟର ନାମ 'ଅକ୍ଷରବ୍ରହ୍ମଯୋଗ' ।



# ନବମୋଽଧ୍ୟାୟଃ

ଶ୍ରୀ ଭଗବାନୁବାଚ

ଇଦଂ ତୁ ତେ ଗୁହ୍ୟତମଂ ପ୍ରବକ୍ଷ୍ୟାମ୍ୟନସୂୟବେ ।
ଜ୍ଞାନଂ ବିଜ୍ଞାନସହିତଂ ଯଜ୍ଜ୍ଞାତ୍ୱା ମୋକ୍ଷ୍ୟସେଽଶୁଭାତ୍ । ୧ ।

୧ । **ଅନ୍ୱୟଦୀପିକା**—ଶ୍ରୀ ଭଗବାନ୍ ଉବାଚ (ଶ୍ରୀଭଗବାନ କହିଲେ) ଇଦଂ ତୁ (ଏହି) ଗୁହ୍ୟତମଂ (ଅତିଗୂଢ଼) ବିଜ୍ଞାନସହିତଂ ଜ୍ଞାନଂ (ବିଜ୍ଞାନ ସହିତ ଜ୍ଞାନକୁ) ଅନସୂୟବେ (ଅସୂୟାଶୂନ୍ୟ ବା ଦୋଷଦୃଷ୍ଟିରହିତ) ତେ (ତୁମ୍ଭକୁ) ପ୍ରବକ୍ଷ୍ୟାମି (କହିବୁଁ), ଯତ୍ ଜ୍ଞାତ୍ୱା (ଯାହା ଜାଣିଲେ) [ତୁମେ] ଅଶୁଭାତ୍ (ସଂସାରବନ୍ଧନରୁ) ମୋକ୍ଷ୍ୟସେ (ମୁକ୍ତ ହେବ) ।

**ଅନୁବାଦ**—ଭଗବାନ୍ କହିଲେ, ହେ ଅର୍ଜୁନ, ତୁମ୍ଭେ ଦୋଷଦୃଷ୍ଟିଶୂନ୍ୟ; ତୁମ୍ଭକୁ ଏହି ଅତି ଗୋପନୀୟ ବିଜ୍ଞାନ ସହିତ ଈଶ୍ୱରବିଷୟକ ଜ୍ଞାନତତ୍ତ୍ୱ କହୁଅଛି, ଏହା ଜାଣିପାରିଲେ ତୁମ୍ଭେ ସଂସାରବନ୍ଧନରୁ ମୁକ୍ତ ହେବ ।

**'ସୁବୋଧିନୀ ଟୀକା**—

ପରେଶଃ ପ୍ରାପ୍ୟତେ ଶୁଦ୍ଧଭକ୍ତ୍ୟେତି ସ୍ଥିତମଷ୍ଟମେ ।
ନବମେ ତୁ ତଦୈଶ୍ୱର୍ଯ୍ୟ ମତ୍ୟାଶ୍ଚର୍ଯ୍ୟଂ ପ୍ରପଞ୍ଚ୍ୟତେ ॥

ଏବଂ ତାବତ୍ ସପ୍ତମାଷ୍ଟମୟୋଃ ସ୍ୱୀୟଂ ପାରମେଶ୍ୱରଂ ତତ୍ତ୍ୱଂ ଭକ୍ତ୍ୟୈବ ସୁଲଭଂ ନାନ୍ୟଥେତ୍ୟୁକ୍ତେଦାନୀମତ୍ୟନ୍ତଂ ସ୍ୱକୀୟମୈଶ୍ୱର୍ଯ୍ୟଂ ଭକ୍ତେଶ୍ଚାସାଧାରଣଂ ପ୍ରଭାବଂ ପ୍ରପଞ୍ଚୟିଷ୍ୟନ୍ ଭଗବାନୁବାଚ—ଇଦମିତି । ବିଶେଷେଣ ଜ୍ଞାୟତେଽନେନେତି ବିଜ୍ଞାନମୁପାସନମ୍ । ତତ୍ସହିତଂ ଜ୍ଞାନମୀଶ୍ୱର ବିଷୟମ୍ । ଇଦଂ ତ୍ୱନସୂୟବେ—ପୁନଃପୁନଃ ସ୍ୱମାହାତ୍ମ୍ୟମେବୋପଦିଶତୀତ୍ୟେବଂ ପରମକାରୁଣିକେ ମୟି ଦୋଷ-ଦୃଷ୍ଟିରହିତାୟ । ତୁଭ୍ୟଂ ବକ୍ଷ୍ୟାମି । ତୁ ଶବ୍ଦୋ ବୈଶିଷ୍ଟ୍ୟେ । ତଦେବାହ—ଗୁହ୍ୟତମମିତ୍ୟାଦିନା । ଗୁହ୍ୟଂ ଧର୍ମଜ୍ଞାନମ୍ । ତତୋ ଦେହାଦିବ୍ୟତିରିକ୍ତାତ୍ମଜ୍ଞାନଂ ଗୁହ୍ୟତରଂ । ତତୋଽପି ପରମାତ୍ମଜ୍ଞାନମତିରହସ୍ୟତ୍ୱାଦ୍ ଗୁହ୍ୟତମଂ । ଯଜ୍ଜ୍ଞାତ୍ୱାଽଶୁଭାତ୍ ସଂସାରବନ୍ଧନାନ୍ମୋକ୍ଷ୍ୟସେ, ସଦ୍ୟ ଏବ ମୁକ୍ତୋ ଭବିଷ୍ୟସି ।

**ବିବୃତି**—ଅଷ୍ଟମ ଅଧ୍ୟାୟରେ ଅକ୍ଷରବ୍ରହ୍ମବିଷୟକ ଜ୍ଞାନ ବ୍ୟାଖ୍ୟା କରି ସମାଧି ଦ୍ୱାରା ଶେଷରେ କିପରି ମୋକ୍ଷଲାଭ ହେବ—ଭଗବାନ୍ ଏହି ବିଷୟ ବର୍ଣ୍ଣନ କରିଅଛନ୍ତି । ପ୍ରଥମେ ଅକ୍ଷରବ୍ରହ୍ମବିଷୟକ ଧାରଣା ଅତି କଠିନ ବ୍ୟାପାର, ତହିଁରେ ପୁଣି ସମାଧିର ପ୍ରୟୋଜନ ହେଲେ ସାଧାରଣ ଲୋକ

ରାଜବିଦ୍ୟା ରାଜଗୁହ୍ୟଂ ପବିତ୍ରମିଦମୁତ୍ତମମ୍ ।
ପ୍ରତ୍ୟକ୍ଷାବଗମଂ ଧର୍ମ୍ୟଂ ସୁସୁଖଂ କର୍ତ୍ତୁମବ୍ୟୟମ୍ । ୨ ।

ଏହି ମାର୍ଗ ଛାଡ଼ିବାକୁ ବାଧ୍ୟ ହେବେ । ଏହି ବିଚାରରେ ଭଗବାନ୍ ବର୍ତ୍ତମାନ ଈଶ୍ୱରପ୍ରାପ୍ତିର ସହଜ ଉପାୟ ଭକ୍ତିଯୋଗହିଁ ବୁଝାଇବାକୁ ଯାଉଅଛନ୍ତି । ଏ ମାର୍ଗରେ ପରମେଶ୍ୱରଙ୍କ ପ୍ରେମଗମ୍ୟ ବ୍ୟକ୍ତରୂପ ପ୍ରତ୍ୟକ୍ଷଭାବରେ ଜାଣିହୁଏ । ନବମଠାରୁ ଦ୍ୱାଦଶ ଅଧ୍ୟାୟ ଶେଷଯାଏ ଏହି ଭକ୍ତିଯୋଗହିଁ ବର୍ଣ୍ଣିତ ହୋଇଅଛି ।

ସାଧାରଣତଃ ଦୋଷଦର୍ଶୀ ଶିଷ୍ୟକୁ ଗୁରୁ ଗୂଢ଼ ଉପଦେଶ ଦିଅନ୍ତି ନାହିଁ । ମାତ୍ର ଅର୍ଜୁନ ଗୁରୁରୂପୀ ଶ୍ରୀକୃଷ୍ଣଙ୍କଠାରୁ ଅଲୌକିକ ଐଶ୍ୱର୍ଯ୍ୟର ବର୍ଣ୍ଣନା ବହୁବାର ଶୁଣି ମଧ୍ୟ ଟିକିଏ ହେଲେ ଅସୂୟାପରବଶ ହୋଇନାହାନ୍ତି, ତେଣୁ ଏଠାରେ ଭଗବାନ୍ ତାଙ୍କୁ ଅସୂୟାଶୂନ୍ୟ କହି ଗୁଢ଼ତତ୍ତ୍ୱ ଶୁଣିବାର ଉପଯୁକ୍ତ ପାତ୍ର ବୋଲି ସଙ୍କେତ କରିଅଛନ୍ତି ।

୨ । **ଅନ୍ୱୟଦୀପିକା**—ଇଦଂ ରାଜଗୁହ୍ୟଂ (ଏହା ଅତି ଗୋପନୀୟ), ରାଜବିଦ୍ୟା (ସବୁ ବିଦ୍ୟା ମଧ୍ୟରେ ଶ୍ରେଷ୍ଠ) ଉତ୍ତମଂ (ଉତ୍ତମ) ପବିତ୍ରଂ (ପବିତ୍ର); ପ୍ରତ୍ୟକ୍ଷାବଗମଂ (ପ୍ରତ୍ୟକ୍ଷ ଫଳପ୍ରଦ), ଧର୍ମ୍ୟଂ (ଧର୍ମସଙ୍ଗତ), କର୍ତ୍ତୁଂ ସୁସୁଖଂ (ସୁଖସାଧ୍ୟ) ଅବ୍ୟୟଂ ଚ (ଏବଂ ଅକ୍ଷୟ ଫଳପ୍ରଦ) ।

**ଅନୁବାଦ**—ଏହା ଅତି ଗୋପନୀୟ, ବିଦ୍ୟାମାନଙ୍କ ମଧ୍ୟରେ ଶ୍ରେଷ୍ଠ, ଉତ୍ତମ, ପବିତ୍ର, ସବୁ ଧର୍ମର ଫଳସ୍ୱରୂପ, ସୁଖସାଧ୍ୟ ଏବଂ ଅକ୍ଷୟ ଫଳପ୍ରଦ ।

**ସୁବୋଧିନୀ ଟୀକା**—କିଂ ତଜ୍ଜ୍ଞାନଂ ଇତି ଅପେକ୍ଷାୟାମ୍... ରାଜବିଦ୍ୟେତି—ଇଦଂ ଜ୍ଞାନଂ ରାଜବିଦ୍ୟା ବିଦ୍ୟାନାଂ ରାଜା, ରାଜଗୁହ୍ୟଂ ଗୁହ୍ୟାନାଂ ଚ ରାଜା, ବିଦ୍ୟାସୁ ଗୋପ୍ୟେଷୁ ଚ ରହସ୍ୟଂ ଶ୍ରେଷ୍ଠମିତ୍ୟର୍ଥଃ, ରାଜଦନ୍ତାଦିତ୍ୱାତ୍ ଉପସର୍ଜନସ୍ୟ ଚ ପରତ୍ୱଂ, ରାଜ୍ଞାଂ ବିଦ୍ୟା ରାଜ୍ଞାଂଗୁହ୍ୟମିତିବା, ଉତ୍ତମଂ ପବିତ୍ରମିଦମତ୍ୟନ୍ତ ପାବନଂ, କିଞ୍ଚନାଂ ପ୍ରତ୍ୟକ୍ଷାବଗମଂ ଚ ପ୍ରତ୍ୟକ୍ଷଃ ସ୍ପଷ୍ଟୋଽବଗମୋଽବବୋଧୋ ଯସ୍ୟ ତତ୍– ପ୍ରତ୍ୟକ୍ଷାବଗମଂ ଦୃଷ୍ଟଫଳମିତ୍ୟର୍ଥଃ । ଧର୍ମ୍ୟଂ ଧର୍ମାଦନପେତଂ ବେଦୋକ୍ତ ସର୍ବଧର୍ମଫଳତ୍ୱାତ୍ କର୍ତ୍ତୁଂ ଚ ସୁସୁଖଂ ସୁଖେନ କର୍ତ୍ତୁଂ ଶକ୍ୟମିତ୍ୟର୍ଥଃ, ଅବ୍ୟୟଂ ଗୃକ୍ଷୟଫଳତ୍ୱାତ୍ ।

**ବିବୃତି**—ଏହି ଅଧ୍ୟାୟରେ ଯେଉଁ ବିଷୟ ବର୍ଣ୍ଣିତ ହେବ ତାହାକୁ ଭଗବାନ୍ ଏ ଶ୍ଳୋକରେ 'ରାଜବିଦ୍ୟା', 'ରାଜଗୁହ୍ୟ', ପ୍ରତ୍ୟକ୍ଷାନୁଭୂତ, ସୁଖସାଧ୍ୟ ଇତ୍ୟାଦି ନାନା ବିଶେଷଣଦ୍ୱାରା ବିଶେଷିତ କରିଅଛନ୍ତି । 'ରାଜବିଦ୍ୟା'ର ଅର୍ଥ ବିଦ୍ୟାମାନଙ୍କ ମଧ୍ୟରେ ରାଜା ବା ଶ୍ରେଷ୍ଠବିଦ୍ୟା ଏବଂ 'ରାଜଗୁହ୍ୟ'ର ଅର୍ଥ

ଗୋପନୀୟ ବିଷୟମାନଙ୍କ ମଧ୍ୟରେ ଶ୍ରେଷ୍ଠ, ଅଧିକନ୍ତୁ ଏ ମାର୍ଗ ସୁଖସାଧ୍ୟ ଓ ପ୍ରତ୍ୟକ୍ଷାନୁଭୂତ । ଏପରି ଅବସ୍ଥାରେ ଗୀତାର ପ୍ରଧାନ ପ୍ରତିପାଦ୍ୟ 'ଭକ୍ତିମାର୍ଗ'କୁ ଯେ ଲକ୍ଷ୍ୟ କରାଯାଇଅଛି ଏହା ସହଜରେ ବୁଝାଯାଏ । ପ୍ରଥମ ଶ୍ଳୋକର ବିବୃତିରେ ଏହାହିଁ ବୁଝାଯାଇଅଛି, ମାତ୍ର ଜ୍ଞାନବାଦୀ ସନ୍ନ୍ୟାସୀମାନେ ଏ ଅଧ୍ୟାୟରେ ବର୍ଣ୍ଣିତ ମାର୍ଗକୁ 'ଜ୍ଞାନମାର୍ଗ' କହି ପୂର୍ବୋକ୍ତ ବିଶେଷଣମାନଙ୍କୁ ଜ୍ଞାନର ବିଶେଷଣରୂପେ ନିର୍ଦ୍ଦେଶ କରିଅଛନ୍ତି । ଏଠାରେ ବିଚାରି କରି ଦେଖିବା କଥା ଯେ, ଅଷ୍ଟମ ଅଧ୍ୟାୟରେ ବର୍ଣ୍ଣିତ 'ଅକ୍ଷରଅବ୍ୟକ୍ତବ୍ରହ୍ମ' ତତ୍ତ୍ୱ ଛଡ଼ା ଏ ଅଧ୍ୟାୟରେ କୌଣସି ନୂତନ ସତ୍ୟ କୁହାଯାଇଛି କି ନାହିଁ, ଯେବେ କିଛି ନୂତନ ତତ୍ତ୍ୱ ଏ ଅଧ୍ୟାୟରେ ନ ଥିବ, ତେବେ 'ସୁସୁଖ ବା ସୁଖସାଧ୍ୟ' ପ୍ରଭୃତି ବିଶେଷଣ ନିରର୍ଥକ ବୋଲି ବୁଝିବାକୁ ହେବ । ନିର୍ଗୁଣ ଅକ୍ଷର ବିଷୟକ ଅବ୍ୟକ୍ତଉପାସନା ଯେ କଷ୍ଟସାଧ୍ୟ (ସୁଖସାଧ୍ୟ ନୁହେ) ନିଜେ ଭଗବାନ୍ ୧୨ଶ ଅଧ୍ୟାୟର ୫ମ ଶ୍ଳୋକରେ କହିଅଛନ୍ତି, ସୁତରାଂ ଏ ଅଧ୍ୟାୟରେ ସେହି ଅବ୍ୟକ୍ତ ଉପାସନାକୁ ସୁଖସାଧ୍ୟ ବୋଲି କହିବା ବିରୁଦ୍ଧବାଦ । ଦ୍ୱିତୀୟରେ ଗୀତାଗ୍ରନ୍ଥ ବହୁଯୁଗବ୍ୟାପୀ ଯେଉଁ ଲୋକପ୍ରିୟତା ଲାଭ କରିଅଛି, ତାହା ଶୁଷ୍କ ଦାର୍ଶନିକ ଜ୍ଞାନବାଦର ଆଲୋଚନା ପାଇଁ ନୁହେ, ଅନ୍ୟ ପକ୍ଷରେ ତାହା ଜ୍ଞାନମିଶ୍ର ଭକ୍ତିର ଆଲୋଚନା ପାଇଁ । ତେଣୁ ଏ ଅଧ୍ୟାୟରେ ବର୍ଣ୍ଣିତ ବିଷୟ ଯେ ଭକ୍ତିମୂଳକ ଏଥିରେ ସନ୍ଦେହ ନାହିଁ । ଭଗବାନ୍ ଭକ୍ତ ପକ୍ଷରେ ଗତି-ମୁକ୍ତି-ବିଧାତା, ପୋଷଣ କର୍ତ୍ତା, ପ୍ରଭୁ, ସାକ୍ଷୀ, ଶରଣ, ସୁହୃଦ୍ ଏବଂ ଭକ୍ତପ୍ରଦତ୍ତ ପତ୍ର, ପୁଷ୍ପ, ଫଳ, ତୋୟ ଗ୍ରହଣ କରନ୍ତି—ଏଗୁଡ଼ିକ ଏ ଅଧ୍ୟାୟର ନୂତନ ସତ୍ୟ । ଅବ୍ୟକ୍ତ ବ୍ରହ୍ମଙ୍କ ପ୍ରତି ଏସବୁ ପ୍ରଯୋଜ୍ୟ ହୋଇ ପାରେ କି ? ବ୍ୟକ୍ତ ଉପାସନା ନ କଲେ ସାଧାରଣ ଲୋକେ ଯେ ଆତ୍ମପ୍ରସାଦ ଲାଭ କରିପାରନ୍ତି ନାହିଁ—ଏହା ଏଥିରୁ ସ୍ପଷ୍ଟ ଜଣାଯାଉଅଛି ।

ତେବେ ଗୀତାର ଭକ୍ତିମାର୍ଗ ସାଧାରଣ ଭକ୍ତି ମାର୍ଗପରି ଶୁଷ୍କଭକ୍ତି ନୁହେଁ । ଏ ଭକ୍ତି ଜ୍ଞାନମିଶ୍ରା, ଅର୍ଥାତ୍ ଜ୍ଞାନବଳରେ ଭକ୍ତ ଯେତେବେଳେ ବୁଝିପାରେ ସର୍ବଶକ୍ତିସମନ୍ୱିତ ବିଶ୍ୱେଶ୍ୱର ସର୍ବତ୍ର ବିଦ୍ୟମାନ ଅଛନ୍ତି ଏବଂ ବୃଦ୍ଧି ବୃତ୍ତିର ନିୟାମକରୂପେ ବିଶ୍ୱ ବ୍ରହ୍ମାଣ୍ଡକୁ ପରିଚାଳିତ କରୁଅଛନ୍ତି, ସେତେବେଳେ ତାଙ୍କପ୍ରତି ଭକ୍ତି ସ୍ୱତଃ ପ୍ରଧାବିତ ହୁଏ । ଅକ୍ଷର ଅବ୍ୟକ୍ତ ବ୍ରହ୍ମଙ୍କ ଉପାସକମାନେ ଯେ ଅନନ୍ୟ ଭକ୍ତିଦ୍ୱାରା ତାଙ୍କୁ ଲାଭକରନ୍ତି—ଅଷ୍ଟମ ଅଧ୍ୟାୟର ୨୨ଶ ଶ୍ଳୋକରେ ଏ କଥା ଭଗବାନ୍ ସ୍ପଷ୍ଟଭାଷାରେ କହିଅଛନ୍ତି । କେବଳ ଈଶ୍ୱରଙ୍କ ନାମ ଉଚ୍ଚାରଣ କରିବାକୁ ବା ଅର୍ଥ ନ ବୁଝି ମନ୍ତ୍ର ବା ଗ୍ରନ୍ଥ ଆବୃତ୍ତି କରିବାକୁ ଶୁଷ୍କଭକ୍ତି ଛଡ଼ା ଆଉ କଣ କୁହାଯାଇପାରେ ?

ଅଶ୍ରଦ୍ଦଧାନାଃ ପୁରୁଷା ଧର୍ମସ୍ୟାସ୍ୟ ପରନ୍ତପ ।
ଅପ୍ରାପ୍ୟ ମାଂ ନିବର୍ତ୍ତନ୍ତେ ମୃତ୍ୟୁସଂସାରବର୍ତ୍ମନି ॥ ୩ ॥
ମୟା ତତମିଦଂ ସର୍ବଂ ଜଗଦବ୍ୟକ୍ତମୂର୍ତ୍ତିନା,
ମତ୍ସ୍ଥାନି ସର୍ବଭୂତାନି ନ ଚାହଂ ତେଷ୍ୱବସ୍ଥିତଃ ॥ ୪ ॥

୩ । **ଅନ୍ୱୟଦୀପିକା**—[ହେ] ପରନ୍ତପ (ଶତ୍ରୁତାପକାରୀ) ଅସ୍ୟ ଧର୍ମସ୍ୟ (ଏହି ଧର୍ମ ପ୍ରତି) ଅଶ୍ରଦ୍ଦଧାନାଃ (ଶ୍ରଦ୍ଧାଶୂନ୍ୟ) ପୁରୁଷାଃ (ଲୋକମାନେ) ମାମ୍ ଅପ୍ରାପ୍ୟ (ଆମ୍ଭକୁ ନ ପାଇ) ମୃତ୍ୟୁସଂସାରବର୍ତ୍ମନି (ମୃତ୍ୟୁମୟ ସଂସାର ପଥରେ) ନିବର୍ତ୍ତନ୍ତେ (ଭ୍ରମଣ କରନ୍ତି) ।

**ଅନୁବାଦ**—ହେ ପରନ୍ତପ ଅର୍ଜୁନ, ଏ ଧର୍ମପ୍ରତି ଯାହାଙ୍କର ଶ୍ରଦ୍ଧା ନାହିଁ ସେମାନେ ଆମ୍ଭକୁ ନ ପାଇ ମୃତ୍ୟୁମୟ ସଂସାରପଥରେ ନିରନ୍ତର ଭ୍ରମଣ କରନ୍ତି ଅର୍ଥାତ୍ ମୁକ୍ତି ନ ପାଇ ବାରଂବାର ଜନ୍ମମରଣଯନ୍ତ୍ରଣା ଭୋଗକରନ୍ତି ।

**ସୁବୋଧିନୀ ଟୀକା**—ନନ୍ୱେବମସ୍ୟାତିସୁଖକରତ୍ୱେ କେ ନାମ ସଂସାରିଣଃ ସ୍ୟୁଃ ? ତତ୍ରାହ-ଅଶ୍ରଦ୍ଦଧାନା ଇତି । ଅସ୍ୟ ଭକ୍ତିସହିତଜ୍ଞାନଲକ୍ଷଣସ୍ୟ । ଧର୍ମସେ୍ୟତି କର୍ମଣି ଷଷ୍ଠୀ । ଇମଂ ଧର୍ମମଶ୍ରଦ୍ଦଧାନା ଆସ୍ତିକ୍ୟେନାପ୍ୟଙ୍ଗୀକୁର୍ବନ୍ତ ଉପାୟାନ୍ତରୈର୍ମତ୍ପ୍ରାପ୍ତୟେ କୃତ ପ୍ରଯତ୍ନା ଅପି ମାମପ୍ରାପ୍ୟ ମୃତ୍ୟୁଯୁକ୍ତେ ସଂସାରବର୍ତ୍ମନି ନିମିତ୍ତେ ନିବର୍ତ୍ତନ୍ତେ । ମୃତ୍ୟୁବ୍ୟାପ୍ତେ ସଂସାର ମାର୍ଗେ ପରିଭ୍ରମନ୍ତୀତ୍ୟର୍ଥଃ ।

୪ । **ଅନ୍ୱୟଦୀପିକା**—ଅବ୍ୟକ୍ତମୂର୍ତ୍ତିନା (ଅପ୍ରକାଶିତମୂର୍ତ୍ତିଧାରୀ) ମୟା (ଆମ୍ଭ ଦ୍ୱାରା) ଇଦଂ ସର୍ବଂ ଜଗତ୍ (ଏହି ସମସ୍ତ ଜଗତ୍) ତତଂ (ବ୍ୟାପ୍ତ ହୋଇଅଛି) । ସର୍ବଭୂତାନି (ସମସ୍ତ ଭୂତହିଁ) ମତ୍ସ୍ଥାନି (ଆମ୍ଭଠାରେ ଅବସ୍ଥିତ), ଅହଂ ତ ତେଷୁ (କିନ୍ତୁ ଆମ୍ଭେ ସେ ସମସ୍ତରେ) ନ ଅବସ୍ଥିତଃ (ଅବସ୍ଥିତ ନୋହୁଁ) ।

**ଅନୁବାଦ**—ଆମ୍ଭେ ଅପ୍ରକାଶିତ ରୂପରେ ଏହି ସମଗ୍ର ଜଗତକୁ ବ୍ୟାପି କରି ରହିଅଛୁଁ । ସମସ୍ତଭୂତ ଆମ୍ଭଠାରେ ଅବସ୍ଥିତ କିନ୍ତୁ ଆମ୍ଭେ ସେ ସମୁଦାୟରେ ଅବସ୍ଥିତ ନୋହୁଁ ।

**ସୁବୋଧିନୀ ଟୀକା**—ତଦେବ ବକ୍ତବ୍ୟ ତୟା ପ୍ରସ୍ତୁତସ୍ୟ ଜ୍ଞାନସ୍ୟ-ସ୍ତୁତ୍ୟା ଶ୍ରୋତାରମଭିମୁଖୀକୃତ୍ୟ ତଦେବଜ୍ଞାନଂ କଥୟତି, ମୟେତି ଦ୍ୱାଭ୍ୟାମ୍ । ଅବ୍ୟକ୍ତା ଅତୀନ୍ଦ୍ରିୟା ମୂର୍ତ୍ତିଃ ସ୍ୱରୂପଂ ଯସ୍ୟ ତାଦୃଶେନ ମୟା କାରଣଭୂତେନ ସର୍ବମିଦଂ ଜଗତ୍ ତତଂ ବ୍ୟାପ୍ତଂ, ତତ୍ସୃଷ୍ଟ୍ୱା ତଦେବାନୁପ୍ରାବଣଦିତ୍ୟାଦିଶ୍ରୁତେଃ, ଅତଏବ କାରଣଭୂତେ ମୟି ତିଷ୍ଠନ୍ତୀତି ମତ୍ସ୍ଥାନି ସର୍ବାଣି

ନ ଚ ମତ୍ସ୍ଥାନି ଭୂତାନି ପଶ୍ୟ ମେ ଯୋଗମୈଶ୍ୱରମ୍ ।
ଭୂତଭୃନ୍ନ ଚ ଭୂତସ୍ଥୋ ମମାତ୍ମା ଭୂତଭାବନଃ । ୫ ।

ଭୂତାନି ଚରାଚରାଣି, ଏବମପି ଘଟାଦଷୁ ସ୍ୱକାର୍ଯ୍ୟେଷୁ ମୃତ୍ତିକେବ, ତେଷୁ ଭୂତେଷୁ ନାହମବସ୍ଥିତଃ ଆକାଶବଦସଙ୍ଗତ୍ୱାତ୍ ।

**ବିବୃତି**—ପରମାତ୍ମାଙ୍କ ମୂର୍ତ୍ତି ଅବ୍ୟକ୍ତ ଅର୍ଥାତ୍ ଇନ୍ଦ୍ରିୟଗୋଚର ନୁହେ । ସେ ମୂର୍ତ୍ତି ଏହି ଜଗତ୍‌କୁ ବ୍ୟାପି ରହିଅଛି ଅର୍ଥାତ୍ ସେହି ଈଶ୍ୱରସତ୍ତା ଥିବାରୁ ଏ ଜଗତ୍ ପ୍ରକାଶିତ ହୋଇଅଛି । ସେ ସତ୍ତା ସମସ୍ତ ଭୂତର କାରଣ ହେଲେ ମଧ୍ୟ, ତାହିଁରେ ଲିପ୍ତ ଭାବରେ ନ ଥାଏ । ବସ୍ତ୍ରର କାରଣ ସୂତା ଯେପରି ବସ୍ତ୍ରରେ ଲିପ୍ତଭାବରେ ଥାଏ, ଘଟର କାରଣ ମୃତ୍ତିକା ଯେପରି ଘଟରେ ଲିପ୍ତ ଭାବରେ ଥାଏ, ସେହିପରି ଭୂତମାନଙ୍କର କାରଣ ସ୍ୱରୂପ ଈଶ୍ୱରସତ୍ତା ଭୂତମାନଙ୍କରେ ଅବସ୍ଥିତ ନୁହେ । ଆକାଶ ପରି ନିର୍ଲିପ୍ତ ଭାବରେ ତାହା ସର୍ବତ୍ର ବ୍ୟାପି ରହିଅଛି ।

**୫ । ଅନ୍ୱୟଦୀପିକା**—ମମ (ଆମ୍ଭର) ଐଶ୍ୱରଂ (ଐଶ୍ୱରିକ) ଯୋଗଂ (ପ୍ରଭାବ) ପଶ୍ୟ (ଦେଖ), ଭୂତାନି ଚ (ପୁଣି ଭୂତ ସକଳ) ମତ୍ସ୍ଥାନି ନ (ଆମ୍ଭଠାଁରେ ଅବସ୍ଥିତ ନୁହନ୍ତି), ମମ ଆତ୍ମା (ଆମ୍ଭ ଆତ୍ମା) ଭୂତଭୃତ୍ (ଭୂତ ଧାରକ) ଭୂତଭାବନଃ ଚ (ଏବଂ ଭୂତପାଳକ), ନ ଚ ଭୂତସ୍ଥଃ (ଭୂତ ମଧ୍ୟରେ ଅବସ୍ଥିତ ନୁହେ) ।

**ଅନୁବାଦ**—ତୁମ୍ଭେ ଆମ୍ଭର ଐଶ୍ୱରିକ ପ୍ରଭାବ ଦେଖ । ଏହି ଭୂତମାନେ ଆମ୍ଭଠାରେ ଅବସ୍ଥିତ ନୁହନ୍ତି । ଆମ୍ଭେ ଭୂତଧାରକ ଓ ଭୂତପାଳକ କିନ୍ତୁ ଭୂତମାନଙ୍କ ମଧ୍ୟରେ ଅବସ୍ଥିତ ନୋହୁଁ ।

**ସୁବୋଧିନୀ ଟୀକା**—କିଞ୍ଚ ନ ଚେତି—ନ ଚ ମୟି ସ୍ଥିତାନି ଭୂତାନି ଅସଙ୍ଗତ୍ୱାଦେବ ମମ । ନନ୍ୱ ତର୍ହି ବ୍ୟାପକତ୍ୱମାଶ୍ରୟତ୍ୱଂ ଚ ପୂର୍ବୋକ୍ତଂ ବିରୁଦ୍ଧମିତ୍ୟାଶଙ୍କ୍ୟାହ ପଶ୍ୟେତି । ମମ ଐଶ୍ୱରମସାଧାରଣଂ ଯୋଗଂ ଯୁକ୍ତିମଘଟନଘଟନଚାତୁର୍ଯ୍ୟମିଦଂ ପଶ୍ୟ, ମଦୀୟ ଯୋଗମାୟାବୈଭବସ୍ୟାବିତର୍କ୍ୟତ୍ୱାନ୍ନ କିଞ୍ଚିଦ୍ ବିରୁଦ୍ଧମିତ୍ୟର୍ଥଃ । ଅନ୍ୟଦପ୍ୟାଶ୍ଚର୍ଯ୍ୟଂ ପଶ୍ୟେତ୍ୟାହ—ଭୂତେତି । ଭୂତାନି ବିଭର୍ତ୍ତି ଧାରୟତୀତି ଭୂତଭୃତ୍, ଭୂତାନି ଭାବୟତି ପାଳୟତୀତି ଭୂତଭାବନଃ ଏବଂ ଭୂତୋଽପି ମମାତ୍ମା ପରଂ ସ୍ୱରୂପଂ ଭୂତସ୍ଥୋ ନ ଭବତୀତି । ଅୟଂ ଭାବଃ, ଯଥା ଦେହଂ ବିଭ୍ରତ୍ପାଳୟଂଶ୍ଚ ଜୀବୋଽହଂକାରେଣ ତତ୍ସଂଶ୍ଳିଷ୍ଟସ୍ତିଷ୍ଠତି ଏବମହଂ ଭୂତାନି ଧାରୟନ୍ ପାଳୟନ୍ନପି ତେଷୁ ନ ତିଷ୍ଠାମି ନିରହଂକାରତ୍ୱାଦିତି ।

ଯଥାକାଶସ୍ଥିତୋ ନିତ୍ୟଂ ବାୟୁଃ ସର୍ବତ୍ରଗୋ ମହାନ୍ ।
ତଥା ସର୍ବାଣି ଭୂତାନି ମତ୍‌ସ୍ଥାନୀତ୍ୟୁପଧାରୟ ॥ ୬ ॥

**ବିବୃତି**—ପୂର୍ବ ଶ୍ଲୋକରେ କୁହାଯାଇଅଛି ଯେ, ଭୂତ ସକଳ ଭଗବାନଙ୍କ ଠାରେ ସ୍ଥିତି କରୁଅଛନ୍ତି । ଏହାର କାରଣ ଈଶ୍ୱରଙ୍କ ସତ୍ତ୍ୱରେ ଜଗତ୍ ସତ୍ତ୍ୱବାନ୍, ତେଣୁ କୁହାଯାଏ ସେମାନେ ଭଗବାନଙ୍କଠାରେ ଅଛନ୍ତି । ବର୍ତ୍ତମାନ ଏ ଶ୍ଲୋକରେ କୁହାଯାଉଅଛି, ଭୂତ ସକଳ ଈଶ୍ୱରଙ୍କଠାରେ ଅବସ୍ଥିତ କରୁ ନାହାନ୍ତି । ଏହି ବିରୋଧାଭାସର ସମାଧାନରେ ଭଗବାନ୍ କହୁଅଛନ୍ତି—ଏହା ଆମ୍ଭର ଐଶ୍ୱରିକ ପ୍ରଭାବ । ନିର୍ଗୁଣ ବ୍ରହ୍ମ ଜଗତର ସର୍ବତ୍ର ବ୍ୟାପ୍ତ ମାତ୍ର କାହିଁରେ ଲିପ୍ତ ନୁହନ୍ତି । ସଗୁଣ ଭାବରେ ସେ ସର୍ବବ୍ୟାପୀ ଏବଂ ସମସ୍ତଙ୍କର ଧାରକ ଏବଂ ପାଳକ । ଏହା ହିଁ ଐଶ୍ୱରିକ ଅଘଟନଘଟନାପଟୀୟସୀ ବା ତାଙ୍କର ଯୋଗମାୟାର ପ୍ରଭାବ ।

**୬ । ଅନ୍ୱୟଦୀପିକା**—ଯଥା ( ଯେପରି ) ସର୍ବତ୍ରଗଃ ( ସର୍ବତ୍ର ଗମନଶୀଳ) ମହାନ୍ ବାୟୁଃ ( ବାୟୁରାଶି ) ନିତ୍ୟମ୍ (ସର୍ବଦା) ଆକାଶସ୍ଥିତଃ (ଆକାଶରେ ଅବସ୍ଥିତ), ତଥା (ସେହିପରି) ସର୍ବାଣି ଭୂତାନି (ଭୂତସମସ୍ତ) ମତ୍‌ସ୍ଥାନି (ଆମ୍ଭଠାରେ ଅବସ୍ଥିତ) ଇତି (ଏହା) ଉପଧାରୟ (ଜାଣ) ।

**ଅନୁବାଦ**—ସର୍ବତ୍ର ଗମନଶୀଳ ମହାବାୟୁ ଯେପରି ଆକାଶରେ ଅବସ୍ଥିତ ସେହିପରି ସମସ୍ତଭୂତ ଆମ୍ଭଠାରେ ଅବସ୍ଥିତ—ଏହା ଜାଣିରଖ ।

**ସୁବୋଧିନୀ ଟୀକା**—ଅସଂଶ୍ଲିଷ୍ଟୟୋରପ୍ୟାଧାରାଧେୟଭାବଂ ଦୃଷ୍ଟାନ୍ତେନାହ—ଯଥେତି । ଅବକାଶଂ ବିନାଽବସ୍ଥାନାନୁପପତ୍ତେର୍ନିତ୍ୟମାକାଶେସ୍ଥିତୋ ବାୟୁଃ ସର୍ବତ୍ରଗୋଽପି ମହାନପି ନାକାଶେନ ସଂଶ୍ଲିଷ୍ୟତେ ନିରବୟବତ୍ୱେନ ସଂଶ୍ଲେଷାଯୋଗାତ୍ ତଥା ସର୍ବାଣି ଭୂତାନି ମୟି ସ୍ଥିତାନୀତି ଜାନୀହି ।

**ବିବୃତି**—ବାୟୁରାଶି ମହାନ୍ ଏବଂ ସର୍ବତ୍ର ଗମନଶୀଳ, ଏହା ଆକାଶରେ ଥିଲେ ମଧ୍ୟ ଆକାଶ ସହିତ ସଂଶ୍ଲିଷ୍ଟ ନୁହେ; ସେହିପରି ଭୂତସକଳ ଆମ୍ଭଠାରେ ଥିଲେହେଁ ଆମ୍ଭ ସହିତ ତାହାଙ୍କର କୌଣସି ସଂଶ୍ଲେଷ ନାହିଁ । କାରଣ ଆମ୍ଭେ ନିଃସଙ୍ଗ, ଅଥଚ ସତେ ଯେପରି ବୋଧହୁଏ ସମସ୍ତ ଭୂତ ଆମ୍ଭଠାରେ ଅବସ୍ଥିତ । ଏହି ହେତୁରୁ ପୂର୍ବ ଦୁଇ ଶ୍ଲୋକରେ ବିରୋଧାଭାସ-ଭାବରେ କୁହାଯାଇ ଅଛି-ଭୂତ ସକଳ ଆମ୍ଭଠାରେ ଅବସ୍ଥିତ ଏବଂ ଆମ୍ଭଠାରେ ଅବସ୍ଥିତ ନୁହନ୍ତି; ପୁଣି କୁହାଯାଇ ଅଛି, ଭୂତ ସକଳ ଧାରଣ କରି ମଧ୍ୟ ଆମ୍ଭେ ଭୂତ ସକଳରେ ନାହୁଁ । ସ୍ଥୂଳରେ ବୁଝିଲେ ନିର୍ଗୁଣ ଭାବରେ ଆମ୍ଭେ ଅସଂଶ୍ଲିଷ୍ଟ ଏବଂ ସଗୁଣ ଭାବରେ ଆମ୍ଭେ ଭୂତଧାରକ ।

ସର୍ବଭୂତାନି କୌନ୍ତେୟ ପ୍ରକୃତିଂ ଯାନ୍ତି ମାମିକାମ୍,
କଳ୍ପକ୍ଷୟେ ପୁନସ୍ତାନି କଳ୍ପାଦୌ ବିସୃଜାମ୍ୟହମ୍ । ୭ ।
ପ୍ରକୃତିଂ ସ୍ୱାମବଷ୍ଟଭ୍ୟ ବିସୃଜାମି ପୁନଃ ପୁନଃ
ଭୂତଗ୍ରାମମିମଂ କୃତ୍ସ୍ନମବଶଂ ପ୍ରକୃତେର୍ବଶାତ୍ । ୮ ।

୭ । **ଅନ୍ୱୟଦୀପିକା**—[ହେ] କୌନ୍ତେୟ ! କଳ୍ପକ୍ଷୟେ ( ପ୍ରଳୟକାଳରେ ) ସର୍ବାଣି ଭୂତାନି ( ସମସ୍ତ ଭୂତ ) ମାମିକାଂ ପ୍ରକୃତିଂ ଯାନ୍ତି ( ଅମ୍ଭର ପ୍ରକୃତିରେ ଲୀନ ହୁଅନ୍ତି ) । କଳ୍ପାଦୌ ( କଳ୍ପାରମ୍ଭରେ ଅର୍ଥାତ୍ ସୃଷ୍ଟିକାଳରେ ) ତାନି ( ସେହି ଭୂତମାନଙ୍କୁ ) ପୁନଃ ( ପୁଣି ) ଅହଂ (ଅମ୍ଭେ) ବିସୃଜାମି ( ସୃଷ୍ଟି କରିଥାଉଁ ) ।

**ଅନୁବାଦ**—ହେ କୌନ୍ତେୟ, କଳ୍ପକ୍ଷୟ ସମୟରେ ସମସ୍ତ ଭୂତ ଅମ୍ଭର ( ତ୍ରିଗୁଣାତ୍ମିକା ) ପ୍ରକୃତିରେ ଲୀନ ହୁଅନ୍ତି । କଳ୍ପାରମ୍ଭରେ ଅର୍ଥାତ୍ ସୃଷ୍ଟି କାଳରେ ଏମାନଙ୍କୁ ଅମ୍ଭେ ପୁଣି ସୃଷ୍ଟି କରୁଁ ।

**ସୁବୋଧିନୀ ଟୀକା**—ତଦେବମସଙ୍ଗସ୍ୟୈବ ଯୋଗମାୟୟା ସ୍ଥିତିହେତୁତ୍ୱମୁକ୍ତଂ । ତସ୍ୟୈବ ସୃଷ୍ଟିପ୍ରଳୟହେତୁତ୍ୱଂ ଗୃହ—ସର୍ବେତି, କଳ୍ପକ୍ଷୟେ ପ୍ରଳୟକାଳେ ସର୍ବାଣି ଭୂତାନି ମଦୀୟାଂ ପ୍ରକୃତିଂ ଯାନ୍ତି । ତ୍ରିଗୁଣାତ୍ମିକାୟାଂ ମାୟାୟାଂ ଲୀୟନ୍ତେ । ପୁନଃ କଳ୍ପାଦୌ ସୃଷ୍ଟିକାଳେ ତାନି ବିସୃଜାମି ବିଶେଷେଣ ସୃଜାମି ।

**ବିବୃତି**—ପୂର୍ବେ କୁହାଯାଇଅଛି ଯେ, ଭଗବାନ୍ ନିର୍ଲିପ୍ତ, ସ୍ୱକୀୟ ତ୍ରିଗୁଣାତ୍ମିକା ମାୟା ପ୍ରଭାବରେ ସେ ସୃଷ୍ଟି ଓ ପ୍ରଳୟ କରନ୍ତି । ସେହି ମାୟା ପ୍ରଭାବରେ ସୃଷ୍ଟି ଓ ପ୍ରଳୟ କିପରି ହୁଏ ତାହା ଏଠାରେ ସେ ବର୍ଣ୍ଣନ କରୁଅଛନ୍ତି ।

ସୃଷ୍ଟି ଓ ସ୍ଥିତିକାଳରେ ପରମାତ୍ମା ଭୌତିକ ପଦାର୍ଥରେ ଲିପ୍ତ ନଥାନ୍ତି—ଏହା ପୂର୍ବ ଶ୍ଳୋକରେ କୁହାଯାଇଅଛି । ଭଗବାନଙ୍କର ଯେଉଁ ମାୟା ପ୍ରଭାବରେ ଜଗତ୍ ସୃଷ୍ଟି ହୋଇଅଛି, ପ୍ରଳୟକାଳ ଉପସ୍ଥିତ ହେଲେ ସେହି ମାୟା ବା ପ୍ରକୃତିରେ ହିଁ ଜଗତ୍ ପ୍ରବିଷ୍ଟ ହୁଏ ଏବଂ ସୃଷ୍ଟି ଆରମ୍ଭରେ ସେହି କାରଣ ସ୍ୱରୂପ ବୀଜରୁ ଭୂତ ସମୂହ ସେ ପୁଣି ରଚନା କରନ୍ତି ।

୮ । **ଅନ୍ୱୟଦୀପିକା**—ସ୍ୱାଂ (ସ୍ୱକୀୟ, ନିଜର) ପ୍ରକୃତିମ୍ (ପ୍ରକୃତିକୁ) ଅବଷ୍ଟଭ୍ୟ ( ବଶୀଭୂତକରି ) ପ୍ରକୃତେଃ ବଶାତ୍ ଅବଶଂ ( ପ୍ରାକ୍ତନ କର୍ମବଶରୁ ନିଜନିଜ ସ୍ୱଭାବ ଦ୍ୱାରା ଅବଶ ) ଇମଂ (ଏହି) କୃତ୍ସ୍ନଂ (ସମଗ୍ର) ଭୂତଗ୍ରାମଂ ( ଭୂତସମଷ୍ଟିକୁ ) ପୁନଃ ପୁନଃ ( ବାରଂବାର ) ବିସୃଜାମି (ସୃଷ୍ଟିକରୁଁ) ।

ନ ଚ ମାଂ ତାନିକର୍ମାଣି ନିବଧ୍ନନ୍ତି ଧନଞ୍ଜୟ ।
ଉଦାସୀନବଦାସୀନ ମସକ୍ତଂ ତେଷୁ କର୍ମସୁ । ୯ ।

**ଅନୁବାଦ—**ଅମ୍ଭେ ନିଜ ପ୍ରକୃତିକୁ ହାତରେ ଧରି ପ୍ରାକ୍ତନ ସ୍ୱଭାବ ବଶରୁ ନିଜ ନିଜ କର୍ମଦ୍ୱାରା ଅବଶ ଭୂତସମୂହକୁ ପୁନଃ ପୁନଃ ସୃଷ୍ଟି କରୁଁ ।

**ସୁବୋଧିନୀ ଟୀକା—**ନନ୍ୱସଙ୍ଗୋ ନିର୍ବିକାରସ୍ତ୍ୱଂ କଥଂ ସୃଜସୀତ୍ୟ-ପେକ୍ଷାୟାମାହ—ପ୍ରକୃତିମିତି, ସ୍ୱାଂ ସ୍ୱୀୟାଂ ସ୍ୱାଧୀନାଂ ପ୍ରକୃତିମବଷ୍ଟଭ୍ୟାଧିଷ୍ଠାୟ ପ୍ରଳୟେ ଲୀନଂ ସନ୍ତଂ ଚତୁର୍ବିଧମିମଂ ସର୍ବଂ ଭୂତଗ୍ରାମଂ କର୍ମାଦପରବଶଂ ପୁନଃପୁନର୍ବିବିଧଂ ସୃଜାମି । ଶେଷେଣ ସୃଜାମୀତିବା । କଥଂ ପ୍ରକୃତେର୍ବଶାତ୍ ପ୍ରାଚୀନକର୍ମନିମିତ୍ତତତ୍ତତ୍‌ସ୍ୱଭାବବଶାତ୍ ।

**ବିବୃତି—**ସମସ୍ତଭୂତ ପ୍ରଳୟ କାଳରେ ପ୍ରାକ୍ତନ କର୍ମଜନିତ ସଂସ୍କାର ସହିତ ପ୍ରକୃତିରେ ଲୀନ ହୋଇ ରହି ଥାଆନ୍ତି ଏବଂ ସୃଷ୍ଟି ଆରମ୍ଭରେ ନିଜ ନିଜ ପୂର୍ବ କର୍ମାନୁସାରେ ଆକୃତି ପ୍ରକୃତି ସହିତ ପ୍ରକାଶିତ ହୁଅନ୍ତି । ତେଣୁ ଜଣାପାଉଅଛି ପରମେଶ୍ୱର ନିଜେ ନିର୍ଲିପ୍ତ, ଜୀବକୁ ନିଜ ନିଜ କର୍ମାନୁସାରେ ସେ ଜନ୍ମ ଦଅନ୍ତି ମାତ୍ର; ତେଣୁ ସେଥିରେ ସେ ସଂଶ୍ଳିଷ୍ଟ ହୁଅନ୍ତି ନାହିଁ ।

**୯ । ଅନ୍ୱୟଦୀପିକା—**[ହେ] ଧନଞ୍ଜୟ ! ତେଷୁ (ସେହି) କର୍ମସୁ (ସବୁକର୍ମରେ) ଅସକ୍ତଂ ଚ (ଅନାସକ୍ତ) ଉଦାସୀନବତ୍ ଆସୀନଂ (ଉଦାସୀନ ପରି ଅବସ୍ଥିତ) ମାଂ (ଅମ୍ଭଙ୍କୁ) ତାନିକର୍ମାଣି (ସେହି ସମସ୍ତକର୍ମ) ନ ଚ ନିବଧ୍ନନ୍ତି (ବନ୍ଧନକରି ପାରନ୍ତି ନାହିଁ) ।

**ଅନୁବାଦ—**ହେ ଧନଞ୍ଜୟ, ସେହିସବୁ କର୍ମରେ ଅମ୍ଭେ ଉଦାସୀନ ପରି ଅନାସକ୍ତ ଭାବରେ ଥାଉଁ, ତେଣୁ ସେହିସବୁ କର୍ମ ଅମ୍ଭଙ୍କୁ ଆବଦ୍ଧ କରି ପାରନ୍ତି ନାହିଁ ।

**ସୁବୋଧିନୀ ଟୀକା—**ନନ୍ୱେବଂ ନାନାବିଧାନି କର୍ମାଣି କୁର୍ବତସ୍ତବ ଜୀବବଦ୍‌ବନ୍ଧଃ କଥଂ ନ ସ୍ୟାଦିତି ? ଅତଆହ— ନ ଚ ମାମିତି । ତାନି ବିଶ୍ୱସୃଷ୍ଟ୍ୟା-ଦୀନି କର୍ମାଣି ମାଂ ନ ନିବଧ୍ନନ୍ତି । କର୍ମାସକ୍ତିର୍ହି ବନ୍ଧହେତୁଃ । ସା ଚ ମୃପ୍ତକାମତ୍ୱାନ୍ମମ ନାସ୍ତି । ଅତ ଉଦାସୀନବଦ୍ ବର୍ତ୍ତିମାନସ୍ୟ ମେ ବନ୍ଧଂ ନାପାଦୟନ୍ତି, ଉଦାସୀନତ୍ୱେ କର୍ତ୍ତୃତ୍ୱାନୁପପତ୍ତେଃ । କର୍ତ୍ତୃତ୍ୱେ ଚୌଦାସୀନତ୍ୱାନୁପପତ୍ତେ-ରୁଦାସୀନବଦ୍‌ସ୍ଥିତମିତ୍ୟୁକ୍ତମ୍ ।

**ବିବୃତି—**ସାଧାରଣ କର୍ମମୟ ଜୀବନରେ ଦେଖାଯାଏ, ଲୋକର ଯହିଁରେ ଆସକ୍ତି ବେଶି ଥାଏ, ତାହା ସହଜରେ ସଫଳ ହୁଏ ନାହିଁ, ପରିଣାମରେ ସେଥିପାଇଁ ଲୋକ ନାନା ଦୁଃଖକଷ୍ଟ ଅନୁଭବ କରେ । ଭଗବାନଙ୍କର ସୃଷ୍ଟିରଚନା

ମୟାଽଧ୍ୟକ୍ଷେଣ ପ୍ରକୃତିଃ ସୂୟତେ ସଚରାଚରମ୍ ।
ହେତୁନାନେନ କୌନ୍ତେୟ ଜଗଦ୍ୱିପରିବର୍ତ୍ତତେ । ୧୦ ।
ଅବଜାନନ୍ତି ମାଂ ମୂଢ଼ା ମାନୁଷୀଂ ତନୁମାଶ୍ରିତମ୍,
ପରଂ ଭାବମଜାନନ୍ତୋ ମମ ଭୂତମହେଶ୍ୱରମ୍ । ୧୧ ।

ଦୃଷ୍ଟାନ୍ତ ଦେଖିଲେ ବୁଝାଯିବ—କର୍ମ କରିବ ମାତ୍ର ଅସକ୍ତଶୂନ୍ୟ ଭାବରେ କରିବ। ଭଗବାନ୍ ସୃଷ୍ଟି ରଚନା କରନ୍ତି ମାତ୍ର ତହିଁରେ ତାଙ୍କର ଅହଂ ଅସକ୍ତି ନ ଥାଏ। ତେଣୁ ସେ ଆସକ୍ତିର ପରିଣାମ ବନ୍ଧନରେ ପଡ଼ନ୍ତି ନାହିଁ ।

**୧୦ । ଅନ୍ୱୟଦୀପିକା**—ଅଧ୍ୟକ୍ଷେଣ ମୟା (ଅମ୍ଭ କର୍ତ୍ତୃତ୍ୱଦ୍ୱାରା) ପ୍ରକୃତିଃ (ପ୍ରକୃତି) ସଚରାଚରଂ (ସ୍ଥାବରଜଙ୍ଗମାତ୍ମକ) ଜଗତ୍ (ସଂସାର) ସୂୟତେ (ପ୍ରସବ କରେ) । [ହେ] କୌନ୍ତେୟ ! ଅନେନ ହେତୁନା (ଏହି ହେତୁରୁ) ଜଗତ୍ (ଜଗତ) ବିପରିବର୍ତ୍ତତେ (ବାରଂବାର ଉତ୍ପନ୍ନ ହୁଏ) ।

**ଅନୁବାଦ**—ଅମ୍ଭେ ଅଧ୍ୟକ୍ଷ ହୋଇ ପ୍ରକୃତି ଦ୍ୱାରା ସମସ୍ତ ଚରାଚରସୃଷ୍ଟି ଉତ୍ପନ୍ନ କରଉଁ । ହେ କୌନ୍ତେୟ, ଏହି କାରଣରୁ ଜଗତ୍ ବାରଂବାର ଉତ୍ପନ୍ନ ହୋଇଥାଏ ଅର୍ଥାତ୍ ଜଗତର ସୃଷ୍ଟି ପ୍ରଳୟ ହୋଇଥାଏ ।

**ସୁବୋଧିନୀ ଟୀକା**—ତଦେବୋପପାଦୟତି । ମୟେତି । ମୟା ଅଧ୍ୟକ୍ଷେଣ ଅଧିଷ୍ଠାତ୍ରା ନିମିତ୍ତଭୂତେନ ପ୍ରକୃତିଃ ସଚରାଚରଂ ବିଶ୍ୱଂ ସୂୟତେ, ଜନୟତି, ଅନେନ ମଦଧିଷ୍ଠାନେନ ହେତୁନା ଇଦଂ ଜଗତ୍ ବିପରିବର୍ତ୍ତତେ ପୁନଃପୁନର୍ଜାୟତେ, ସନ୍ନିଧିମାତ୍ରେଣାଧିଷ୍ଠାତୃତ୍ୱାତ୍ କର୍ତ୍ତୃତ୍ୱମୁଦାସୀନତ୍ୱଞ୍ଚାବିରୁଦ୍ଧମିତିଭାବଃ ।

**୧୧ । ଅନ୍ୱୟଦୀପିକା**—ମୂଢ଼ାଃ ( ଅବିବେକୀ ଲୋକମାନେ ) ମମ (ଅମ୍ଭର) ଭୂତ ମହେଶ୍ୱରଂ (ସର୍ବଭୂତର ମହେଶ୍ୱର ସ୍ୱରୂପ) ପରଂ ଭାବଂ (ପରମତତ୍ତ୍ୱ) ଅଜାନନ୍ତଃ (ଜାଣି ନ ପାରି) ମାନୁଷୀଂ ତନୁମ୍ ଆଶ୍ରିତଂ (ମାନବ ଶରୀରଧାରୀ) ମାଂ (ଅମ୍ଭଙ୍କୁ) ଅବଜାନନ୍ତି (ଅବଜ୍ଞା କରନ୍ତି) ।

**ଅନୁବାଦ**—ଅବିବେକୀ ଲୋକମାନେ ସର୍ବଭୂତ ମହେଶ୍ୱର ସ୍ୱରୂପ ଅମ୍ଭର ପରମାର୍ଥତତ୍ତ୍ୱ ଜାଣି ନ ପାରି ମନୁଷ୍ୟଦେହଧାରୀ ବୋଲି ଅମ୍ଭଙ୍କୁ ଅବଜ୍ଞା କରନ୍ତି ।

**ସୁବୋଧିନୀ ଟୀକା**—ନନ୍ୱେବଂଭୂତଂ ପରମେଶ୍ୱରଂ ତ୍ୱାଂ କିମିତି କେଚିନ୍ନାଦ୍ରିୟନ୍ତେ ? ତତ୍ରାହ ଅବଜାନନ୍ତୀତି ଦ୍ୱାଭ୍ୟାମ୍ । ସର୍ବଭୂତ ମହେଶ୍ୱର ସ୍ୱରୂପଂ ମଦୀୟଂ ପରଂ ଭାବଂ ତତ୍ତ୍ୱମଜାନନ୍ତୋ ମୂଢ଼ା ମୂର୍ଖା ମାମବଜାନନ୍ତି

ମୋଘାଶା ମୋଘକର୍ମାଣୋ ମୋଘଜ୍ଞାନା ବିଚେତସଃ ।
ରାକ୍ଷସୀମାସୁରୀଞ୍ଚୈବ ପ୍ରକୃତିଂ ମୋହିନୀଂ ଶ୍ରିତାଃ । ୧୨ ।

ମାମବମନ୍ୟନ୍ତେ, . ଅବଜ୍ଞନେ ହେତୁଃ—ଶୁଦ୍ଧସତ୍ତ୍ୱମୟୀମପିତନୁଂ ଭକ୍ତେଚ୍ଛା-ବଶାନ୍ମନୁଷ୍ୟାକାରମାଶ୍ରିତବନ୍ତମିତ ।

**ବିବୃତି**—ସପ୍ତମ ଅଧ୍ୟାୟର ୨୪ଶ ଶ୍ଳୋକର ବିବୃତ ଦେଖ ।

**୧୨ । ଅନ୍ୱୟଦୀପିକା**—[ସେହି ମୂଢ଼ମାନେ] ମୋଘାଶାଃ (ନିଷ୍ଫଳ କାମ), ମୋଘକର୍ମାଣଃ (ନିଷ୍ଫଳକର୍ମୀ), ମୋଘଜ୍ଞାନାଃ (ବୃଥା ଜ୍ଞାନୀ), ବିଚେତସଃ (ବିକ୍ଷିପ୍ତଚିତ୍ତ), ମୋହିନୀଂ (ମୋହଜନକ) ରାକ୍ଷସୀଂ (ହିଂସାତ୍ମକ ତାମସୀ) ଆସୁରୀଂ ଚ ଏବ (ଓ ରଜଃପ୍ରଧାନ) ପ୍ରକୃତିଂ ଶ୍ରିତାଃ (ପ୍ରକୃତି ପ୍ରାପ୍ତ ହୋଇଥାଆନ୍ତି) ।

**ଅନୁବାଦ**—ସେହି ସବୁ ମୂଢ଼ ଲୋକଙ୍କର ଆଶା ବ୍ୟର୍ଥ, କର୍ମ ନିଷ୍ଫଳ, ଜ୍ଞାନ ନିରର୍ଥକ, ଚିତ୍ତ ବିକ୍ଷିପ୍ତ ହୋଇଥାଏ । ସେମାନେ ମୋହାତ୍ମକ ରାକ୍ଷସ ଓ ଅସୁରସ୍ୱଭାବ ଆଶ୍ରୟ କରିଥାଆନ୍ତି ।

**ସୁବୋଧିନୀ ଟୀକା**—କିଞ୍ଚ ମୋଘାଶାଇତି । ମତ୍ତୋଽନ୍ୟଦ୍‌ଦେବତାନ୍ତରଂ କ୍ଷିପ୍ରଂ ଫଳଂ ଦାସ୍ୟତୀତ୍ୟେବମ୍ଭୂତା ମୋଘା ନିଷ୍ଫଳୈବାଶା ଯେଷାଂ ତେ । ଅତଏବ ମଦ୍‌ବିମୁଖତ୍ୱାନ୍ ମୋଘାନି ନିଷ୍ଫଳାନି କର୍ମାଣି ଯେଷାଂ ତେ । ମୋଘମେବ ନାନା କୁତର୍କାଶ୍ରିତଂ ଶାସ୍ତ୍ରଜ୍ଞାନଂ ଯେଷାଂ ତେ ଅତଏବ ବିଚେତସୋ ବିକ୍ଷିପ୍ତଚିତ୍ତାଃ । ସର୍ବତ୍ର ହେତୁଃ—ରାକ୍ଷସୀଂ ତାମସୀଂ ହିଂସାଦି ପ୍ରଚୁରାଂ । ଆସୁରୀଂ ଚ ରାଜସୀଂ କାମଦର୍ପାଦିବହୁଲାଂ ମୋହିନୀଂ ବୁଦ୍ଧିଭ୍ରଂଶକରୀଂ ପ୍ରକୃତିଂ ସ୍ୱଭାବଂ ଶ୍ରିତା ଆଶ୍ରିତାଃ ସନ୍ତଃ ମାମବଜାନନ୍ତୀତି ପୂର୍ବେଣୈବାନ୍ୱୟଃ ।

**ବିବୃତି**—ଯେଉଁମାନେ ଭଗବଦ୍‌ବିମୁଖ ସେମାନଙ୍କୁ ଅସୁର ଓ ରାକ୍ଷସ ବୋଲଯାଏ । ଶ୍ରୀକୃଷ୍ଣ ଅବତାରବେଳେ କଂସ, ଶିଶୁପାଳ, ଜରାସନ୍ଧ ପ୍ରଭୃତି ଏହି ଶ୍ରେଣୀର ଲୋକ ଥିଲେ । ସେମାନେ ମନେ କରୁଥିଲେ ଭଗବାନଙ୍କ ଛଡ଼ା ଅନ୍ୟ ଦେବତାମାନେ ଶୀଘ୍ର ଫଳ ଦଅନ୍ତି । ଏପରି ବୃଥା ଆଶାରେ ସେମାନେ ଆଶାନ୍ୱିତ ଥିଲେ । ଈଶ୍ୱରବିମୁଖ ହୋଇଥିବାରୁ ସେମାନଙ୍କର ଯାଗ ଯଜ୍ଞାଦି କର୍ମ ବ୍ୟର୍ଥ ହେଉଥିଲା, ଭଗବଦ୍‌ଭକ୍ତ ନ ଥିବାରୁ ସେମାନେ ଯେଉଁ ଶାସ୍ତ୍ରଜ୍ଞାନ ଲାଭ କରୁଥିଲେ ତାହା ବୃଥା ହେଉଥିଲା, ଏହି ରାଜସିକ ଓ ତାମସିକ ପ୍ରକୃତିବିଶିଷ୍ଟ ଲୋକଙ୍କ କଥା ଏହି ଦୁଇ ଶ୍ଳୋକରେ କୁହାଯାଇଅଛି । ପରବର୍ତ୍ତୀ ଦୁଇ ଶ୍ଳୋକରେ ଭଗବଦ୍‌ଭକ୍ତମାନଙ୍କ କଥା କୁହାଯିବ ।

ମହାତ୍ମାନସ୍ତୁ ମାଂ ପାର୍ଥ ଦୈବୀଂ ପ୍ରକୃତିମାଶ୍ରିତାଃ ।
ଭଜନ୍ତ୍ୟନନ୍ୟମନସୋ ଜ୍ଞାତ୍ୱା ଭୂତାଦିମବ୍ୟୟମ୍ । ୧୩ ।
ସତତଂ କୀର୍ତ୍ତୟନ୍ତୋ ମାଂ ଯତନ୍ତଶ୍ଚ ଦୃଢ଼ବ୍ରତାଃ ।
ନମସ୍ୟନ୍ତଶ୍ଚ ମାଂ ଭକ୍ତ୍ୟା ନିତ୍ୟଯୁକ୍ତା ଉପାସତେ । ୧୪ ।

**୧୩ । ଅନ୍ୱୟଦୀପିକା**—[ହେ] ପାର୍ଥ, ତୁ (କିନ୍ତୁ) ଦୈବୀଂ ପ୍ରକୃତିଂ (ସାତ୍ତ୍ୱିକ ପ୍ରକୃତିକୁ) ଆଶ୍ରିତାଃ (ଆଶ୍ରୟ କରିଥିବା) ମହାତ୍ମାନଃ (ମହାତ୍ମାମାନେ) ଅନନ୍ୟମନସଃ (ଅନନ୍ୟମନା ହୋଇ) ମାଂ (ଆମ୍ଭକୁ) ଭୂତାଦିଂ (ଜଗତର କାରଣ) ଅବ୍ୟୟଂ (ନିତ୍ୟ) ଜ୍ଞାତ୍ୱା (ଜାଣି) ଭଜନ୍ତି (ଭଜନ କରନ୍ତି) ।

**ଅନୁବାଦ**—ହେ ପାର୍ଥ, କିନ୍ତୁ ଯେଉଁମାନେ ଦୈବୀ ପ୍ରକୃତି ବା ସାତ୍ତ୍ୱିକ ପ୍ରକୃତି ଲାଭ କରିଥାନ୍ତି, ସେହି ମହାତ୍ମାମାନେ ଅନନ୍ୟଚିତ୍ତ ହୋଇ ଅର୍ଥାତ୍ ଅନ୍ୟ ଦେବତାଙ୍କଠାରେ ମନ ନ ଦେଇ ଆମ୍ଭକୁ ସମସ୍ତ ଜଗତର କାରଣ ଓ ଅବ୍ୟୟ ବୋଲି ଜାଣିପାରି ଆମ୍ଭର ଉପାସନା କରନ୍ତି ।

**ସୁବୋଧିନୀ ଟୀକା**—କେ ତର୍ହି ତ୍ୱାମାରାଧୟନ୍ତୀତି ? ଅତଆହ— ମହାତ୍ମାନ ଇତି । ମହାତ୍ମାନଃ କାମାଦ୍ୟନଭିଭୂତଚିତ୍ତାଃ । ଅତଏବ ଅଭୟଂ ସତ୍ତ୍ୱସଂଶୁଦ୍ଧିରିତ୍ୟାଦିନା ବକ୍ଷ୍ୟମାଣଂ ଦୈବୀଂ ପ୍ରକୃତିଂ ସ୍ୱଭାବମାଶ୍ରିତାଃ । ଅତଏବ ମଦ୍‌ବ୍ୟତିରେକେଣ ନାସ୍ତ୍ୟନ୍ୟସ୍ମିନ୍ ମନୋ ଯେଷାଂ । ତେ ତୁ ଭୂତାଦିଂ ଜଗତ୍‌କାରଣମବ୍ୟୟଂ ଚ ମାଂ ଜ୍ଞାତ୍ୱା ଭଜନ୍ତି ।

**ବିବୃତି**—ପୂର୍ବ ଦୁଇ ଶ୍ଳୋକରେ ଭଗବଦ୍‌ଭକ୍ତିଶୂନ୍ୟ ରାଜସିକ ଓ ତାମସିକ ବ୍ୟକ୍ତିମାନଙ୍କ କଥା କୁହା ଯାଇଅଛି । ଏ ଶ୍ଳୋକରେ ଭଗବଦ୍-ଭକ୍ତିପରାୟଣ ଦୈବୀ ପ୍ରକୃତି ବା ସାତ୍ତ୍ୱିକପ୍ରକୃତିକ ଲୋକମାନଙ୍କ କଥା କୁହାଗଲା । ସେମାନଙ୍କ ସମ୍ବନ୍ଧରେ ବିସ୍ତାରିତ ଆଲୋଚନା ଷୋଡ଼ଶ ଅଧ୍ୟାୟରେ କରାଯିବ ।

ପରବର୍ତ୍ତୀ ଦୁଇ ଶ୍ଳୋକରେ ସାତ୍ତ୍ୱିକପ୍ରକୃତିବିଶିଷ୍ଟ ଲୋକମାନଙ୍କର ଉପାସନା ପ୍ରଣାଳୀ ସଂକ୍ଷେପରେ କୁହାଯାଉଅଛି ।

**୧୪ । ଅନ୍ୱୟଦୀପିକା**—[ ସେମାନେ ] ମାଂ ସତତଂ କୀର୍ତ୍ତୟନ୍ତଃ (ଆମ୍ଭ ନାମ ସର୍ବଦା କୀର୍ତ୍ତନ କରି) ଯତନ୍ତଃ (ଯତ୍ନଶୀଳ ହୋଇ) ଦୃଢ଼ବ୍ରତାଃ ଚ (ଏବଂ ଦୃଢ଼ବ୍ରତ ହୋଇ) ଭକ୍ତ୍ୟା ଚ ନମସ୍ୟନ୍ତଃ (ଏବଂ ଭକ୍ତିପୂର୍ବକ ଆମ୍ଭକୁ ନମସ୍କାର କରି) ନିତ୍ୟଯୁକ୍ତାଃ (ନିତ୍ୟ ଏକନିଷ୍ଠ ହୋଇ) ଉପାସତେ (ଆମ୍ଭର ଉପାସନା କରନ୍ତି) ।

**ଅନୁବାଦ**—ସେମାନେ ଆମ୍ଭ ନାମ ସର୍ବଦା କୀର୍ତ୍ତନ କରି ଯତ୍ନପୂର୍ବକ ଦୃଢ଼ବ୍ରତ ହୋଇ ଏବଂ ଭକ୍ତିପୂର୍ବକ ଆମ୍ଭକୁ ନମସ୍କାର କରି ନିତ୍ୟ ଏକନିଷ୍ଠ ଭାବରେ ଆମ୍ଭର ଉପାସନା କରନ୍ତି ।

ଜ୍ଞାନଯଜ୍ଞେନ ଚାପ୍ୟନ୍ୟେ ଯଜନ୍ତୋ ମାମୁପାସତେ ।
ଏକତ୍ୱେନ ପୃଥକ୍‌ତ୍ୱେନ ବହୁଧା ବିଶ୍ୱତୋମୁଖମ୍ । ୧୫ ।

**ସୁବୋଧିନୀ ଟୀକା**—ତେଷାଂ ଭଜନପ୍ରକାର ମାହ—ସତତମିତି ଦ୍ୱାଭ୍ୟାମ୍ । ସତତଂ ସର୍ବଦା ସ୍ତୋତ୍ରମନ୍ତ୍ରାଦଭିଃ କୀର୍ତ୍ତୟନ୍ତଃ କେଚନ୍ମାମୁପାସତେ ସେବନ୍ତେ । ଦୃଢ଼ାନି ବ୍ରତାନି ନିୟମା ଯେଷାଂ ତାଦୃଶାଃ ସନ୍ତଃ । ଯତନ୍ତଶ୍ଚେଶ୍ୱର-ପୂଜାଦନ୍ୱିନ୍ଦ୍ରିୟୋପସଂହରଣାଦଷ୍ଟୁ ପ୍ରଯତ୍ନଂ କୁର୍ବନ୍ତଃ । କେଚଦ୍ ଭକ୍ତ୍ୟା ନମସ୍ୟନ୍ତଃ ପ୍ରଣମନ୍ତଶ୍ଚ । ଅନ୍ୟେ ନିତ୍ୟଯୁକ୍ତା ଅନବରତମବହିତାଃ ସେବନ୍ତେ । ଭକ୍ତ୍ୟେତି ନିତ୍ୟଯୁକ୍ତା ଇତି ଚ କୀର୍ତ୍ତନାଦଷ୍ୱପି ଦ୍ରଷ୍ଟବ୍ୟମ୍ ।

**ବିବୃତି**—ଯେଉଁମାନେ ସାତ୍ତ୍ୱିକ ପ୍ରକୃତିବିଶିଷ୍ଟ ସେମାନେ କିପରି ଈଶ୍ୱର ଉପାସନା କରନ୍ତି, ତାହା ଏଠାରେ ସଂକ୍ଷେପରେ କୁହାଯାଉଅଛି । ଭକ୍ତ ସହକାରେ ଈଶ୍ୱରଙ୍କ ନାମ କୀର୍ତ୍ତନ କରିବା ଏକପ୍ରକାର ଉପାସନା । ଚୈତନ୍ୟ ଦେବ ଏହାହିଁ ପ୍ରଚାର କରିବାକୁ ଅବତୀର୍ଣ୍ଣ ହୋଇଥିଲେ । ତପସ୍ୱୀମାନେ ଦୃଢ଼ ନିୟମର ବଶବର୍ତ୍ତୀ ହୋଇ ଇନ୍ଦ୍ରିୟ ସଂଯମକରି ଈଶ୍ୱର ଧ୍ୟାନରେ ତନ୍ମୟ ହୋଇ ରହନ୍ତି । ବ୍ୟକ୍ତ ସୃଷ୍ଟିରେ ପଞ୍ଚମହାଭୂତର କ୍ରିୟା ଦେଖି ଏବଂ ଭଗବାନଙ୍କର ବିଭୂତି ଦର୍ଶନ କରି ଭକ୍ତମାନେ ଭକ୍ତିଉଦ୍‌ଗତଚିତ୍ତରେ ତାଙ୍କୁ ନମସ୍କାର କରି କୃତାର୍ଥ ହୁଅନ୍ତି । ଏହି ଭାବରେ ନାନାପ୍ରକାରେ ସାତ୍ତ୍ୱିକ ଉପାସନା ପ୍ରଣାଳୀ ମନୁଷ୍ୟ ସମାଜରେ ବହୁକାଳରୁ ପ୍ରଚଳିତ ହୋଇ ଆସୁଅଛି ।

୧୫ । **ଅନ୍ୱୟଦୀପିକା**—ଅନ୍ୟେ ଅପି ଚ (ଅନ୍ୟ କେହି କେହି) ଜ୍ଞାନଯଜ୍ଞେନ (ଜ୍ଞାନରୂପଯଜ୍ଞଦ୍ୱାରା) ଯଜନ୍ତଃ (ପୂଜାକରି) ମାମ୍ ଉପାସତେ (ଆମ୍ଭକୁ ଆରାଧନା କରନ୍ତି), [କେହି କେହି] ଏକତ୍ୱେନ (ଅଭିନ୍ନ ଭାବରେ) [କେହି କେହି] ପୃଥକ୍‌ତ୍ୱେନ (ପୃଥକ୍‌ଭାବରେ ଅର୍ଥାତ୍ ଦାସ୍ୟାଦିଭାବରେ) [ଅନ୍ୟ ମଧ୍ୟ କେହି କେହି] ବିଶ୍ୱତୋମୁଖଂ (ସର୍ବାତ୍ମକଭାବରେ) ବହୁଧା (ନାନା-ପ୍ରକାରରେ) [ଆମ୍ଭର ଉପାସନା କରନ୍ତି] ।

**ଅନୁବାଦ**—କେହି କେହି ଜ୍ଞାନ-ରୂପ ଯଜ୍ଞଦ୍ୱାରା ଆମ୍ଭର ଉପାସନା କରନ୍ତି, କେହି କେହି ଅଭେଦଭାବରେ, କେହି କେହି ପୃଥକ୍‌ଭାବରେ, ଅନ୍ୟ କେହି କେହି ସର୍ବବ୍ୟାପୀ ଆମ୍ଭକୁ ନାନାଭାବରେ ପୂଜା କରନ୍ତି ।

**ସୁବୋଧିନୀ ଟୀକା**—କିଞ୍ଚ—ଜ୍ଞାନେତି—ବାସୁଦେବଃ ସର୍ବମିତ୍ୟେବଂ ସର୍ବାତ୍ମତ୍ୱଦର୍ଶନଂ ଜ୍ଞାନଂ । ତଦେବଯଜ୍ଞଃ, ତେନ ଜ୍ଞାନଯଜ୍ଞେନ ମାଂ ଯଜନ୍ତଃ ପୂଜୟନ୍ତୋଽନ୍ୟେଽପ୍ୟୁପାସତେ, ତତ୍ରାପି କେଚିଦେକତ୍ୱେନାଭେଦଭାବନୟା, କେଚିତ୍ ପୃଥକ୍‌ତ୍ୱେନ ପୃଥଗ୍‌ଭାବନୟା ଦାସୋଽହମିତି । କେଚିତ୍ତୁ ବିଶ୍ୱତୋମୁଖଂ ସର୍ବାତ୍ମକଂ ମାଂ ବହୁଧା ବ୍ରହ୍ମରୁଦ୍ରାଦିରୂପେଣୋପାସତେ ।

ଅହଂ କ୍ରତୁରହଂ ଯଜ୍ଞଃ ସ୍ୱଧାହମହମୌଷଧମ୍ ।
ମନ୍ତ୍ରୋଽହମହମେବାଜ୍ୟମହମଗ୍ନିରହଂ ହୁତମ୍ । ୧୬ ।

**ବିବୃତି**—ଭେଦ ଲୋକ ଭେଦ ଭାବରେ ଯେ ଭଗବାନଙ୍କୁ ପୂଜା କରନ୍ତି ତାହା କିଏ କହିବ ? 'ବାସୁଦେବ ସମସ୍ତ'—ଏହି ଜ୍ଞାନହିଁ ଯଜ୍ଞ, ସେହି ଜ୍ଞାନଯଜ୍ଞଦ୍ୱାରା କେହି କେହି ଭଗବାନଙ୍କର ଉପାସନା କରନ୍ତି । ଦ୍ୱୈତ ଅଦ୍ୱୈତାଦି ଭେଦରେ ଜ୍ଞାନ ନାନା ପ୍ରକାର, ସେହିହେତୁରୁ କେହି କେହି ଅଦ୍ୱୈତ ଭାବରେ ଉପାସ୍ୟ ଉପାସକ ଭେଦ ଛାଡ଼ି 'ବ୍ରହ୍ମାହମ୍' ମୁଁ ନିଜେ ବ୍ରହ୍ମ—ଏହିପରି ଭାବ, କେହି ବା ପୃଥକ୍‌ଭାବରେ ଅର୍ଥାତ୍ ପରମେଶ୍ୱର ପ୍ରଭୁ ବା ପିତା ମୁଁ ତାଙ୍କର ଦାସ ବା ପୁତ୍ର—ଏହି ଭାବରେ ଉପାସନା କରନ୍ତି । ପରମେଶ୍ୱର ବିଶ୍ୱବ୍ୟାପୀ—ଏହି ଜ୍ଞାନ ବଳରେ କେହି କେହି ତାଙ୍କୁ ରୁଦ୍ରରୂପରେ, ଗଣପତି ରୂପରେ, ବ୍ରହ୍ମା ରୂପରେ ବା ଦୁର୍ଗା ରୂପରେ ପୂଜା କରନ୍ତି । ଗୀତା ଜ୍ଞାନଭକ୍ତିମୂଳକ କର୍ମଯୋଗ ଶାସ୍ତ୍ର ହେଲେହେଁ ବିବିଧ ଉପାସନା ପଦ୍ଧତି ସମ୍ବନ୍ଧରେ ତହିଁରେ ସାର୍ବଭୌମ ଓ ଉଦାର ମତ ପ୍ରତିପାଦିତ ହୋଇଅଛି । ସାମ୍ପ୍ରଦାୟିକତାର ସମ୍ବନ୍ଧ ଗୀତାରେ ଦେଖାଯାଏ ନାହିଁ ।

**୧୬ । ଅନ୍ୱୟଦୀପିକା**—ଅହଂ କ୍ରତୁ (ଅମ୍ଭେ ବେଦବିହିତ ଅଶ୍ୱମେଧାଦି ଯଜ୍ଞ); ଅହଂ ଯଜ୍ଞଃ (ଅମ୍ଭେ ବୈଶ୍ୱଦେବାଦି ସ୍ମାର୍ତ୍ତଯଜ୍ଞ) ଅହଂ ସ୍ୱଧା (ଅମ୍ଭେ ଶ୍ରାଦ୍ଧାଦି ପିତୃଯଜ୍ଞ), ଅହମ୍ ଔଷଧମ୍ (ଓଷଧିଜାତ ଅନ୍ନ ବା ଭେଷଜ ଅମ୍ଭେ) ଅହଂ ମନ୍ତ୍ରଃ (ଅମ୍ଭେ ମନ୍ତ୍ର), ଅହମ୍ ଆଜ୍ୟଂ (ଅମ୍ଭେ ହୋମର ଘୃତ), ଅହମ୍ ଏବ ଅଗ୍ନିଃ (ଅଗ୍ନି ହିଁ ଅମ୍ଭେ), ଅହଂ ହୁତମ୍ (ଅମ୍ଭେ ଯଜ୍ଞ ହୋମ) ।

**ଅନୁବାଦ**—ଅମ୍ଭେ କ୍ରତୁ, ଅମ୍ଭେ ଯଜ୍ଞ, ଅମ୍ଭେ ସ୍ୱଧା, ଅମ୍ଭେ ଔଷଧ, ଅମ୍ଭେ ମନ୍ତ୍ର, ଅମ୍ଭେ ହୋମାଦି ସାଧନ ଘୃତ, ଅମ୍ଭେ ଅଗ୍ନି ଏବଂ ଅମ୍ଭେ ଯଜ୍ଞ ହୋମ ।

**ସୁବୋଧିନୀ ଟୀକା**—ସର୍ବାତ୍ମତାଂ ପ୍ରପଞ୍ଚୟତି—ଅହଂ କ୍ରତୁରିତି ଚତୁର୍ଭିଃ । କ୍ରତୁଃ ଶ୍ରୌତୋଽଗ୍ନିଷ୍ଟୋମାଦିଃ, ଯଜ୍ଞଃ ସ୍ମାର୍ତ୍ତଃ ପଞ୍ଚମହାଯଜ୍ଞାଦିଃ । ସ୍ୱଧା ପିତ୍ରର୍ଥେ ଶ୍ରାଦ୍ଧାଦିଃ । ଔଷଧମୋଷଧିପ୍ରଭବମନ୍ନଂ, ଭେଷଜଂ ବା, ମନ୍ତ୍ରୋ ଯାଜ୍ୟାପୁରୋଽନୁବାକ୍ୟାଦିଃ । ଆଜ୍ୟଂ ହୋମାଦିସାଧନମ୍ । ଅଗ୍ନିରାହବନୀୟାଦିଃ । ହୁତଂ ହୋମଃ, ଏତତ୍ ସର୍ବମହମେବ ।

**ବିବୃତି**—ଭଗବାନ୍ ବିଶ୍ୱତୋମୁଖ ବୋଲି ପୂର୍ବ ଶ୍ଲୋକରେ କୁହାଯାଇଅଛି । ଏହି ଚାରିଗୋଟି ଶ୍ଳୋକରେ ଭଗବାନଙ୍କର ସେହି ବିଶ୍ୱବ୍ୟାପକତା ବର୍ଣ୍ଣିତ ହେଉଅଛି । ଏ ଶ୍ଳୋକରେ ଭଗବାନ୍ କହୁଅଛନ୍ତି, ଅଶ୍ୱମେଧାଦି

ପିତାହମସ୍ୟ ଜଗତୋ ମାତା ଧାତା ପିତାମହଃ ।
ବେଦ୍ୟଂ ପବିତ୍ରମୋଙ୍କାର ଋକ୍ ସାମ ଯଜୁରେବ ଚ । ୧୭।

ଯଜ୍ଞ କର, ଅଥବା ବୈଶ୍ୱଦେବାଦି ଯଜ୍ଞ କର, ପିତୃଲୋକଙ୍କ ଉଦ୍ଦେଶ୍ୟରେ ଅନ୍ନଦାନ (ସ୍ୱଧା) କର, ଜୀବଗଣଙ୍କୁ ଅନ୍ନ ବା ଔଷଧ ଦାନ କର, ଅଥବା ଗାୟତ୍ରୀପ୍ରଭୃତି ମନ୍ତ୍ର ଜପ କର, ଅଗ୍ନିରେ ଆଜ୍ୟ ବା ଘୃତ ଅର୍ପଣ କର ସେ ସମସ୍ତହିଁ ଆମ୍ଭେ ।

'ଯଜ୍ଞ' ଶବ୍ଦର ଅର୍ଥ ବ୍ୟାପକ; ଦେବପୂଜା, ମନ୍ତ୍ରଜପ, ପ୍ରାଣାୟାମ, ଅତିଥି-ସତ୍କାର ପ୍ରଭୃତିକୁ ମଧ୍ୟ ଯଜ୍ଞ ବୁଝାଯାଏ, କିନ୍ତୁ 'କ୍ରତୁ' ଶବ୍ଦର ଅର୍ଥ ଯଜ୍ଞହେଲେହେଁ ତାହା ଅଗ୍ନିଷ୍ଟୋମ, ଅଶ୍ୱମେଧାଦି ବୈଦୋକ୍ତ ଯଜ୍ଞକୁହିଁ ବୁଝାଏ । ତେଣୁ କ୍ରତୁ ଶବ୍ଦ ଶ୍ରୌତଯଜ୍ଞ ଅର୍ଥରେ ଏବଂ ଯଜ୍ଞଶବ୍ଦ ସ୍ମାର୍ତ୍ତଯଜ୍ଞ ଅର୍ଥରେ ଏ ଶ୍ଳୋକରେ ପ୍ରଯୁକ୍ତ ହୋଇଅଛି ।

**୧୭ । ଅନ୍ୱୟଦୀପିକା**—ଅହମ୍ (ଆମ୍ଭେ) ଅସ୍ୟ ଜଗତଃ (ଏହି ଜଗତରେ) ପିତା, ମାତା, ଧାତା, ପିତାମହଃ (ପିତାମହ), ବେଦ୍ୟଂ (ଏକମାତ୍ର ଜ୍ଞେୟବସ୍ତୁ), ପବିତ୍ରଂ (ପାବନ), ଓଁକାରଃ (ପ୍ରଣବ), ଋକ୍ (ଋଗ୍‌ବେଦ), ସାମ (ସାମବେଦ) ଯଜୁଃ ଏବ ଚ (ଓ ଯଜୁର୍ବେଦ ସ୍ୱରୂପ) ।

**ଅନୁବାଦ**—ଆମ୍ଭେ ଏହି ଜଗତର ପିତା, ମାତା, ବିଧାତା, ପିତାମହ; ଯାହା କିଛି ଜ୍ଞେୟବସ୍ତୁ ଓ ପବିତ୍ରବସ୍ତୁ—ସେ ସବୁ ଆମ୍ଭେ, ଆମ୍ଭେ ଓଁକାର ଓ ଋକ୍, ସାମ, ଯଜୁର୍ବେଦସ୍ୱରୂପ ଅଟୁଁ ।

**ସୁବୋଧିନୀ ଟୀକା**—କିଞ୍ଚ ପିତେତି । ଧାତା କର୍ମଫଳବିଧାତା । ବେଦ୍ୟଂ ଜ୍ଞେୟଂ ବସ୍ତୁ । ପବିତ୍ରଂ ଶୋଧକଂ । ପ୍ରାୟଶ୍ଚିତ୍ତାତ୍ମକଂ ବା । ଓଁକାରଃ ପ୍ରଣବଃ । ଋଗାଦୟୋ ବେଦାସ୍ତ୍ୱହମେବ । ସ୍ପଷ୍ଟମନ୍ୟତ୍ ।

**ବିବୃତି**—ଭଗବାନଙ୍କଠାରୁ ଏହି ଜଗତର ଉତ୍ପତ୍ତି ହୋଇଅଛି, ତେଣୁ ସେ ଏହାର ପିତା ବା କର୍ତ୍ତୃକାରଣ । ସେ ଜଗତର ମାତା ବା ଉପାଦାନକାରଣ (ଅପରା ପ୍ରକୃତି) । ସେ ପାପପୁଣ୍ୟର ଫଳଦାତା, ତେଣୁ ସେ ଧାତା ବା ବିଧାତା । ସେ ଜଗତର ମୂଳକାରଣର କାରଣ ଅର୍ଥାତ୍ ଅବ୍ୟକ୍ତ ପ୍ରକୃତିର ମଧ୍ୟ କାରଣ, ତେଣୁ ସେ ପିତାମହ । ଯାହା ଜାଣିଲେ ଜୀବ ଇହଜୀବନରେ ପରମ ଶାନ୍ତି ସନ୍ତୋଷ ଲାଭକରି ଶେଷରେ ମୋକ୍ଷର ଅଧିକାରୀ ହୁଏ ଈଶ୍ୱର ହିଁ ସେହି ବେଦ୍ୟ ବା ଜ୍ଞେୟବସ୍ତୁ । ଓଁକାର ବା ପ୍ରଣବ ବ୍ରହ୍ମଜ୍ଞାନର ପ୍ରଧାନ ସାଧନ । ତାହା ମଧ୍ୟ ଭଗବାନ୍, ସେ ସମସ୍ତ ପାପର କ୍ଷାଳନକାରୀ, ତେଣୁ ସେ ପବିତ୍ର, ସେ ଋକ୍, ଯଜୁଃ ଓ ସାମ ବେଦ ସ୍ୱରୂପ ଅଟନ୍ତି । ଏଠାରେ 'ଚ'କାରଦ୍ୱାରା ଅଥର୍ବ ବେଦ ଉପଲକ୍ଷିତ ହୋଇଅଛି ।

ଗତିର୍ଭର୍ତ୍ତା ପ୍ରଭୁଃ ସାକ୍ଷୀ ନିବାସଃ ଶରଣଂ ସୁହୃତ୍ ।
ପ୍ରଭବଃ ପ୍ରଳୟଃ ସ୍ଥାନଂ ନିଧାନଂ ବୀଜମବ୍ୟୟମ୍ ॥ ୧୮ ॥

୧୮ । **ଅନ୍ୱୟଦୀପିକା**—[ଅହଂ] ଗତିଃ (କର୍ମଫଳ), ଭର୍ତ୍ତା (ପୋଷଣକର୍ତ୍ତା), ପ୍ରଭୁଃ (ସ୍ୱାମୀ), ସାକ୍ଷୀ (ଦ୍ରଷ୍ଟା), ନିବାସଃ (ଭୋଗସ୍ଥାନ) ଶରଣଂ (ରକ୍ଷକ), ସୁହୃତ୍ (ହିତକାରୀ), ପ୍ରଭବଃ (ଉତ୍ପତ୍ତିର କାରଣ), ପ୍ରଳୟଃ (ସଂହାରକାରୀ) ସ୍ଥାନଂ (ଆଧାର), ନିଧାନଂ (ଲୟସ୍ଥାନ), ଅବ୍ୟୟଂ ବୀଜଂ (ଅବିନାଶୀ କାରଣ) ।

**ଅନୁବାଦ**—ଆମ୍ଭେ ଗତି, ଆମ୍ଭେ ଭର୍ତ୍ତା, ଆମ୍ଭେ ପୋଷଣକର୍ତ୍ତା, ଆମ୍ଭେ ପ୍ରଭୁ, ଆମ୍ଭେ ସାକ୍ଷୀ, ଆମ୍ଭେ ନିବାସସ୍ଥାନ, ଆମ୍ଭେ ରକ୍ଷକ, ଆମ୍ଭେ ସୁହୃତ୍, ଆମ୍ଭେ ସ୍ରଷ୍ଟା, ଆମ୍ଭେ ସଂହର୍ତ୍ତା, ଆମ୍ଭେ ଆଧାର, ଆମ୍ଭେ ଲୟସ୍ଥାନ ଏବଂ ଆମ୍ଭେ ଅବିନାଶୀ ବୀଜସ୍ୱରୂପ ।

**ସୁବୋଧିନୀ ଟୀକା**—କିଞ୍ଚ—ଗତିରିତି । ଗମ୍ୟତ ଇତି ଗତିଃ ଫଳଂ, ଭର୍ତ୍ତା ପୋଷଣକର୍ତ୍ତା, ପ୍ରଭୁ ର୍ନିୟନ୍ତା, ସାକ୍ଷୀ ଶୁଭାଶୁଭଦ୍ରଷ୍ଟା, ନିବାସୋ ଭୋଗସ୍ଥାନଂ, ଶରଣଂ ରକ୍ଷକଃ, ସୁହୃଦ୍ ହିତକର୍ତ୍ତା, ପ୍ରକର୍ଷେଣ ଭବତ୍ୟନେନେତି ପ୍ରଭବଃ ସ୍ରଷ୍ଟା । ପ୍ରଲୀୟତେଽନେନେତି ପ୍ରଳୟଃ ସଂହର୍ତ୍ତା, ତିଷ୍ଠତ୍ୟସ୍ମିନ୍ନିତି ସ୍ଥାନମାଧାରଃ । ନିଧୀୟତେଽସ୍ମିନ୍ନିତି ନିଧାନଂ ଲୟ ସ୍ଥାନଂ । ବୀଜଂ କାରଣଂ । ତଥାପ୍ୟବ୍ୟୟମବିନାଶୀ, ନତୁ ବ୍ରୀହ୍ୟାଦିବୀଜବନ୍ନଶ୍ୱରମିତ୍ୟର୍ଥଃ ।

**ବିବୃତି**—ନାନାପ୍ରକାର କର୍ମ କଲେ ବା ସାଧନା କଲେ ଜୀବର ଯେଉଁ ଫଳ ଲାଭ ହୁଏ ଭଗବାନ୍ ସେହି ଗତିସ୍ୱରୂପ । ସେ ଚରାଚରଜଗତକୁ ପୋଷଣ କରୁଅଛନ୍ତି ତେଣୁ ସେ ଭର୍ତ୍ତା ଅଟନ୍ତି । ତାଙ୍କର ଆଦେଶରେ ସୂର୍ଯ୍ୟଚନ୍ଦ୍ରାଦି ଆକାଶରେ ଯଥା ନିୟମରେ ଗତି କରୁଅଛନ୍ତି ଓ ମେଘମାନେ ଜଳବର୍ଷଣ କରୁଅଛନ୍ତି, ତେଣୁ ସେ ପ୍ରଭୁ । ତାଙ୍କ ଅଜାଣରେ କେହି କୌଣସି କର୍ମ କରିପାରେ ନାହିଁ, ତେଣୁ ସେ ଶୁଭାଶୁଭ କର୍ମମାନଙ୍କର ଦ୍ରଷ୍ଟା ବା ସାକ୍ଷୀ । ସମସ୍ତେ ତାଙ୍କଠାରେ ବାସକରନ୍ତି ତେଣୁ ସେ ନିବାସ, ତାଙ୍କର ଆଶ୍ରୟ ନେଲେ ଜୀବ ବିପଦରୁ ରକ୍ଷାପାଏ, ତେଣୁ ସେ ଶରଣ, ପ୍ରତ୍ୟୁପକାରର ଅପେକ୍ଷା ନ କରି ସେ ଜୀବର ଉପକାର କରନ୍ତି ତେଣୁ ସେ ସୁହୃତ୍; ସେ ପ୍ରଭବ, ପ୍ରଳୟ, ସ୍ଥାନ ଅର୍ଥାତ୍ ସୃଷ୍ଟି, ପ୍ରଳୟ ଏବଂ ସ୍ଥିତିର କାରଣ । ତାଙ୍କଠାରେ ଜଗତ୍ ଲୟପ୍ରାପ୍ତ ହୁଏ ତେଣୁ ସେ ନିଧାନ । ସମସ୍ତ ନଷ୍ଟ ହେଲେହେଁ ସେ ନଷ୍ଟ ହୁଅନ୍ତି ନାହିଁ ତେଣୁ ସେ ଅବିନାଶୀ ବୀଜ ସ୍ୱରୂପ ଅଟନ୍ତି ।

ତପାମ୍ୟହମହଂ ବର୍ଷଂ ନିଗୃହ୍ଣାମ୍ୟୁତ୍ସୃଜାମି ଚ ।
ଅମୃତଂ ଚୈବ ମୃତ୍ୟୁଶ୍ଚ ସଦସଚ୍ଚାହମର୍ଜୁନ ।। ୧୯ ।।

**୧୯ । ଅନ୍ୱୟଦୀପିକା**—[ହେ] ଅର୍ଜୁନ ! ଅହଂ ତପାମି ( ଅମ୍ଭେ ଉତ୍ତାପ ଦାନ କରୁଁ ), ଅହଂ (ଅମ୍ଭେ) ବର୍ଷଂ (ବୃଷ୍ଟିକୁ, ଜଳକୁ) ନିଗୃହ୍ଣାମି (ଆକର୍ଷଣକରୁଁ), ଉତ୍ସୃଜାମି ଚ (ପୁନର୍ବାର ବର୍ଷଣ କରୁଁ), [ଅମ୍ଭେ] ଅମୃତଂ ମୃତ୍ୟୁଃ ଚ (ଜୀବନ ଓ ମୃତ୍ୟୁ ସ୍ୱରୂପ), ସତ୍ (ନିତ୍ୟ ଅକ୍ଷର ଅତ୍ମା), ଅସତ୍ (ଅନିତ୍ୟ-କ୍ଷର ଜଗତ) ।

**ଅନୁବାଦ**—ହେ ଅର୍ଜୁନ, ଅମ୍ଭେ ଆଦିତ୍ୟରୂପରେ ରହି ଉତ୍ତାପ ପ୍ରଦାନ କରୁଁ । ଅମ୍ଭେ ଭୂମିରୁ ଜଳ ଆକର୍ଷଣ କରୁଁ ଓ ପୁନର୍ବାର ଜଳ ବର୍ଷଣ କରୁଁ । ଅମ୍ଭେ ଜୀବର ଜୀବନ ଓ ମୃତ୍ୟୁ ସ୍ୱରୂପ । ଅମ୍ଭେ ସତ୍ (ଅବିନାଶୀ ଅତ୍ମା) ଏବଂ ଅସତ୍ (ନଶ୍ୱର ବା ବିନାଶଶୀଳ ଜଗତ୍) ।

**ସୁବୋଧିନୀ ଟୀକା**—କିଞ୍ଚ ତପାମ୍ୟହମିତି, ଆଦିତ୍ୟାତ୍ମନାଚ୍ଛିତ୍ୱା କଦାଚକାଲେ ତପାମି ଜଗତ୍ତାପଂ କରୋମି । ବୃଷ୍ଟିସଂଯୋଗେ ଚ ବର୍ଷମୁତ୍ସୃଜାମି ବିମୁଞ୍ଚାମି । କଦାଚିତ୍ତୁ ବର୍ଷଂ ନିଗୃହ୍ଣାମ୍ୟାକର୍ଷାମି, ଅମୃତଂ ଜୀବନଂ । ମୃତ୍ୟୁଶ୍ଚ ନାଶଃ । ସତ୍ ସ୍ଥୂଳଂ ଦୃଶ୍ୟମ୍ । ଅସଚ୍ଚ ସୂକ୍ଷ୍ମମଦୃଶ୍ୟମ୍ । ଏତତ୍ ସର୍ବମହମେବେତି, ଏବଂ ମତ୍ୱା ମାମେବ ବହୁଧୋପାସତ ଇତି ପୂର୍ବେଣୈବାନ୍ୱୟଃ ।

**ବିବୃତି**—ଦଶମ, ଏକାଦଶ ଓ ଦ୍ୱାଦଶ ଅଧ୍ୟାୟରେ ପରମେଶ୍ୱରଙ୍କ ସ୍ୱରୂପର ବିସ୍ତାରିତ ବର୍ଣ୍ଣନା ଅଛି । ଏ ସ୍ଥଳରେ ସଂକ୍ଷେପରେ ଏହା କୁହାଗଲା ଯେ ସେ ଜଗତରେ ଜୀବର ରକ୍ଷକ, ସୁହୃଦ୍ ଓ ପିତାମାତା ସ୍ୱରୂପ । ବୃଷ୍ଟି ଓ ଅନାବୃଷ୍ଟି ଉଭୟହିଁ ଈଶ୍ୱରଙ୍କ କାର୍ଯ୍ୟ । ଏହି ଦୃଷ୍ଟିରେ ସପ୍ତମ ଅଧ୍ୟାୟ ୧୨ଶ ଶ୍ଳୋକରେ ଭଗବାନ୍ କହିଅଛନ୍ତି—ସାତ୍ତ୍ୱିକ, ରାଜସିକ ଓ ତାମସିକ ଏ ତିନିଗୁଣହିଁ ଅମ୍ଭେ ଉତ୍ପନ୍ନ କରୁଁ । ଏ ଶ୍ଳୋକରେ 'ସତ୍' ଓ 'ଅସତ୍'—ଦୁଇଶବ୍ଦ ଅବିନାଶୀ ଓ ନାଶଶୀଳ ଅର୍ଥରେ ଉପରେ ବ୍ୟାଖ୍ୟା କରାଯାଇଅଛି । ଗୀତାରେ କେତେକ ସ୍ଥାନରେ ସତ୍‌ଶବ୍ଦ ପରମାତ୍ମାଙ୍କ ଉଦ୍ଦେଶ୍ୟରେ ଏବଂ ଅସତ୍ ଶବ୍ଦ ଦୃଶ୍ୟସୃଷ୍ଟି ଉଦ୍ଦେଶ୍ୟରେ ବ୍ୟବହୃତ ହୋଇଅଛି । ଋଗ୍‌ବେଦର ନାସଦୀୟ ସୂକ୍ତରେ ଏହାର ବିପରୀତ ଅର୍ଥରେ ସତ୍ ଶବ୍ଦର ପ୍ରୟୋଗ ଦେଖାଯାଏ ଅର୍ଥାତ୍ ସେଠାରେ ସତ୍‌ଶବ୍ଦ ଦୃଶ୍ୟସୃଷ୍ଟି ଉଦ୍ଦେଶ୍ୟରେ ବ୍ୟବହୃତ ହୋଇଅଛି ।

ତ୍ରୈବିଦ୍ୟା ମାଂ ସୋମପାଃ ପୂତପାପା
ଯଜ୍ଞୈରିଷ୍ଟ୍ୱା ସ୍ୱର୍ଗତିଂ ପ୍ରାର୍ଥୟନ୍ତେ ।
ତେ ପୁଣ୍ୟମାସାଦ୍ୟ ସୁରେନ୍ଦ୍ରଲୋକ-
ମଶ୍ନନ୍ତି ଦିବ୍ୟାନ୍ ଦିବି ଦେବଭୋଗାନ୍ । ୨୦ ।

୨୦ । **ଅନ୍ୱୟଦୀପିକା**—ତ୍ରୈବିଦ୍ୟା (ତ୍ରିବେଦୋକ୍ତ କ୍ରିୟାନୁଷ୍ଠାନକାରୀ-ମାନେ) ଯଜ୍ଞୈଃ ମାଂ ଇଷ୍ଟ୍ୱା (ଯଜ୍ଞଦ୍ୱାରା ଆମ୍ଭକୁ ପୂଜାକରି) ସୋମପାଃ (ସୋମ-ରସପାନପୂର୍ବକ) ପୂତପାପାଃ (ନିଷ୍ପାପ ହୋଇ) ସ୍ୱର୍ଗତିଂ ପ୍ରାର୍ଥୟନ୍ତେ । (ସ୍ୱର୍ଗଲୋକ ପ୍ରାପ୍ତି କାମନା କରନ୍ତି) । ତେ (ସେମାନେ) ପୁଣ୍ୟଂ (ପବିତ୍ର) ସୁରେନ୍ଦ୍ରଲୋକଂ (ସ୍ୱର୍ଗଲୋକ) ଆସାଦ୍ୟ (ପ୍ରାପ୍ତହୋଇ) ଦିବି (ସ୍ୱର୍ଗରେ) ଦିବ୍ୟାନ୍ (ଉତ୍କୃଷ୍ଟ) ଦେବଭୋଗାନ୍ (ଦେବଭୋଗସବୁ) ଅଶ୍ନନ୍ତି (ଭୋଗକରନ୍ତି) ।

**ଅନୁବାଦ**—ତ୍ରୈବିଦ୍ୟ ଅର୍ଥାତ୍ ଋକ୍, ଯଜୁଃ, ସାମ—ଏହି ତିନି ବେଦରେ କଥିତ ହୋଇଥିବା କର୍ମର ଅନୁଷ୍ଠାନକାରୀମାନେ ଯଜ୍ଞଦ୍ୱାରା ଆମ୍ଭର ପୂଜାକରି ଯଜ୍ଞାବଶିଷ୍ଟ ସୋମରସ ପାନଦ୍ୱାରା ନିଷ୍ପାପ ହୋଇ ସ୍ୱର୍ଗପ୍ରାପ୍ତିର ଇଚ୍ଛା କରନ୍ତି, ସେମାନେ ପବିତ୍ର ସ୍ୱର୍ଗଲୋକ ପ୍ରାପ୍ତ ହୋଇ ସେଠାରେ ଦିବ୍ୟଭୋଗ-ସମୂହ ଉପଭୋଗ କରନ୍ତି ।

**ସୁବୋଧିନୀ ଟୀକା**—ତଦେବମର୍ବକାନନ୍ତ ମାଂ ନତ୍ୱା ଇତ୍ୟାଦି ଶ୍ଲୋକଦ୍ୱୟେନ ଷିପ୍ରଫଳାଶୟା ଦେବତାନ୍ତରଂ ଯଜନ୍ତୋ ମାଂ ନାଦ୍ରିୟନ୍ତ ଇତ୍ୟକ୍ତ୍ୱା ଦର୍ଶିତାଃ, ମହାତ୍ମାନସ୍ତୁ ମାଂ ପାର୍ଥେତ୍ୟାଦିନା ଚ ଭକ୍ତାଉକ୍ତାଃ । ତତ୍ରୈକତ୍ୱେନ ପୃଥକ୍ତ୍ୱେନ ବା ଯେ ପରମେଶ୍ୱରଂ ନ ଭଜନ୍ତି ତେଷାଂ ଜନ୍ମମୃତ୍ୟୁ-ପ୍ରବାହୋ ଦୁର୍ବାର ଇତ୍ୟାହ—ତ୍ରୈବିଦ୍ୟା ଇତି ଦ୍ୱାଭ୍ୟାମ୍ । ଋଗ୍‌ଯଜୁଃସାମ-ଲକ୍ଷଣାସ୍ତିସ୍ରୋ ବିଦ୍ୟା ଯେଷାଂ ତେ ତ୍ରିବିଦ୍ୟାଃ । ତ୍ରିବିଦ୍ୟା ଏବ ତ୍ରୈବିଦ୍ୟାଃ, ସ୍ୱାର୍ଥେ ତଦ୍ଧିତଃ, ତିସ୍ରୋ ବିଦ୍ୟା ଅଧୀୟତେ ଜାନନ୍ତୀତି ବା, ତ୍ରୈବିଦ୍ୟା ବେଦତ୍ରୟୋକ୍ତକର୍ମପରା ଇତ୍ୟର୍ଥଃ । ବେଦତ୍ରୟବିହିତୈର୍ଯଜ୍ଞୈର୍ମାମିଷ୍ଟ୍ୱା ମମୈବରୂପଂ ଦେବତାନ୍ତରମିତ୍ୟଜାନନ୍ତୋଽପି ବସ୍ତୁତ ଇନ୍ଦ୍ରାଦିରୂପେଣ ମାମେବେଷ୍ଟ୍ୱା ସମ୍ପୂଜ୍ୟ ଯଜ୍ଞଶେଷଂ ସୋମଂ ପିବନ୍ତୀତି ସୋମପାଃ । ତେନୈବ ପୂତପାପାଃ ଶୋଧିତକଲ୍ମଷାଃ ସନ୍ତଃ ସ୍ୱର୍ଗତିଂ ସ୍ୱର୍ଗଂ ପ୍ରତି ଗତିଂ ଯେ ପ୍ରାର୍ଥୟନ୍ତେ ତେ ପୁଣ୍ୟଫଳରୂପଂ, ସୁରେନ୍ଦ୍ରଲୋକଂ ସ୍ୱର୍ଗମାସାଦ୍ୟ ପ୍ରାପ୍ୟ । ଦିବି ସ୍ୱର୍ଗେ । ଦିବ୍ୟାନୁତ୍ତମାନ୍, ଦେବାନାଂ ଭୋଗାନ୍ । ଅଶ୍ନନ୍ତି ଭୁଞ୍ଜତେ ।

ତେ ତଂ ଭୁକ୍ତ୍ୱା ସ୍ୱର୍ଗଲୋକଂ ବିଶାଳଂ,
କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟଲୋକଂ ବିଶନ୍ତି।
ଏବଂ ତ୍ରୟୀଧର୍ମମନୁପ୍ରପନ୍ନା
ଗତାଗତଂ କାମକାମା ଲଭନ୍ତେ । ୨୧ ।
ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ ।
ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହମ୍ । ୨୨ ।

୨୧ । **ଅନ୍ୱୟଦୀପିକା**—ତେ ( ସେମାନେ ) ତଂ ( ସେହି ) ବିଶାଳଂ ସ୍ୱର୍ଗଲୋକଂ (ବିଶାଳ ସ୍ୱର୍ଗସୁଖ) ଭୁକ୍ତ୍ୱା (ଭୋଗକରି) ପୁଣ୍ୟେକ୍ଷୀଣେ [ସତି] (ପୁଣ୍ୟ କ୍ଷୀଣ ହେଲେ) ମର୍ତ୍ତ୍ୟଲୋକଂ ବିଶନ୍ତି (ମର୍ତ୍ତ୍ୟ ଲୋକରେ ପ୍ରବେଶ କରନ୍ତି ); ଏବଂ (ଏହିପରି) ତ୍ରୟୀଧର୍ମମ୍ (ବେଦତ୍ରୟ ବିହିତ ଧର୍ମ ) ଅନୁପ୍ରପନ୍ନାଃ (ଅନୁଷ୍ଠାନକାରୀ ) କାମକାମାଃ (ଭୋଗେଚ୍ଛୁ ବ୍ୟକ୍ତିମାନେ) ଗତାଗତଂ ଲଭନ୍ତେ (ଯାତାୟାତ କରନ୍ତି ।

**ଅନୁବାଦ**—ସେମାନେ ଅଭିଳଷିତ ବିପୁଳ ସ୍ୱର୍ଗସୁଖ ଉପଭୋଗ କରି ପୁଣ୍ୟ କ୍ଷୟ ହେଲେ ପୁନର୍ବାର ମର୍ତ୍ତ୍ୟଲୋକରେ ପ୍ରବେଶ କରନ୍ତି । ସ୍ୱର୍ଗ କାମନାରେ ଏହିପରି ବେଦୋକ୍ତ ଯାଗଯଜ୍ଞାଦି ଅନୁଷ୍ଠାନ କଲେ ମର୍ତ୍ତ୍ୟଲୋକକୁ ବାରଂବାର ଯିବା ଆସିବା କରିବାକୁ ପଡ଼େ ।

**ସୁବୋଧିନୀ ଟୀକା**—ତତଶ୍ଚ—ତେ ଇତି । ତେ ସ୍ୱର୍ଗକାମାସ୍ତଂ ପ୍ରାର୍ଥିତଂ ବିପୁଳଂ ସ୍ୱର୍ଗଲୋକଂ ତତ୍ ସୁଖଂ ଭୁକ୍ତ୍ୱା ଭୋଗପ୍ରାପକେ ପୁଣ୍ୟେ କ୍ଷୀଣେ ସତି ମର୍ତ୍ତ୍ୟଲୋକଂ ବିଶନ୍ତି । ପୁନରପ୍ୟେବମେବ ବେଦତ୍ରୟବିହିତଂ ଧର୍ମମନୁଗତାଃ କାମକାମା ଭୋଗାନ୍ କାମୟମାନା ଗତାଗତଂ ଯାତାୟାତଂ ଲଭନ୍ତେ ।

**ବିବୃତି**—୨୦ଶ ଓ ୨୧ଶ ଶ୍ଲୋକରେ ଯେଉଁ ସିଦ୍ଧାନ୍ତ କୁହାଗଲା ଏଥିପୂର୍ବେ ୨ୟ ଅଧ୍ୟାୟର ୧୨-୪୪ ଶ୍ଲୋକରେ, ୭ମ ଅଧ୍ୟାୟର ୨୩ଶ ଶ୍ଲୋକରେ ଓ ୮ମ ଅଧ୍ୟାୟର ୧୬।୨୫ ଶ୍ଲୋକରେ ସକାମ ଉପାସନା ଓ ନିଷ୍କାମ ଉପାସନାର ପ୍ରଭେଦ ବ୍ୟାଖ୍ୟାବେଳେ ତାହା କୁହାଯାଇଅଛି । ଯାଗଯଜ୍ଞାଦି କର୍ମ ବା ବିବିଧ ଦେବତାରାଧନା ଦ୍ୱାରା କିଛି କାଳ ଅନୁଷ୍ଠାନକାରୀଙ୍କୁ ସ୍ୱର୍ଗସୁଖ ମିଳେ ସତ୍ୟ, ମାତ୍ର ପୁଣ୍ୟ ଶେଷରେ ସେମାନଙ୍କୁ ପୁନର୍ବାର ମର୍ତ୍ତ୍ୟଲୋକକୁ ଆସିବାକୁ ହୁଏ । କିନ୍ତୁ ମୋକ୍ଷକାମୀମାନଙ୍କ ପକ୍ଷରେ ଏପରି ଗୋଳମାଳ ହୁଏ ନାହିଁ ଅର୍ଥାତ୍ ଥରେ ପରମେଶ୍ୱରଙ୍କୁ ପାଇଲେ ପୁଣି ଆଉ ଜନ୍ମଗ୍ରହଣ କରିବାକୁ ହୁଏ ନାହିଁ ।

୨୨ । **ଅନ୍ୱୟଦୀପିକା**—ଅନନ୍ୟାଃ ( ଅନନ୍ୟ ଚିତ୍ତରେ ) ମାଂ ଚିନ୍ତୟନ୍ତଃ ( ଆମ୍ଭ ସ୍ମରଣ-ନିରତ ) ଯେ ଜନାଃ ( ଯେଉଁ ଲୋକମାନେ )

ଯେଽପ୍ୟନ୍ୟଦେବତା ଭକ୍ତା ଯଜନ୍ତେ ଶ୍ରଦ୍ଧୟାନ୍ୱିତାଃ ।
ତେଽପି ମାମେବ କୌନ୍ତେୟ ଯଜନ୍ତ୍ୟବିଧିପୂର୍ବକମ୍ । ୨୩ ।

ପର୍ଯ୍ୟୁପାସତେ (ଉପାସନା କରନ୍ତି), ତେଷାଂ ନିତ୍ୟାଭିଯୁକ୍ତାନାଂ (ଅମ୍ଭଠାରେ ଏକାନ୍ତ ଅନୁରକ୍ତ ସେହି ଲୋକମାନଙ୍କର) ଯୋଗକ୍ଷେମଂ (ଯୋଗ ଓ କ୍ଷେମ) ଅହଂ ବହାମି (ଅମ୍ଭେ ବହନ କରୁଁ) ।

**ଅନୁବାଦ**—ଅନନ୍ୟ ଚିତ୍ତରେ ଅମ୍ଭ ଚିନ୍ତାରେ ନିରତ ରହି ଯେଉଁ ଭକ୍ତମାନେ ଅମ୍ଭର ଉପାସନା କରନ୍ତି, ଅମ୍ଭଠାରେ ନିତ୍ୟ ଅନୁରକ୍ତ ସେହି ଭକ୍ତମାନଙ୍କର ଯୋଗ ଓ କ୍ଷେମ ଅମ୍ଭେ ବହନ କରିଥାଉଁ ।

**ସୁବୋଧିନୀ ଟୀକା**—ମଦ୍‌ଭକ୍ତାସ୍ତୁ ମତ୍‌ପ୍ରସାଦେନ କୃତାର୍ଥା ଭବନ୍ତୀତ୍ୟାହ—ଅନନ୍ୟା ଇତି । ଅନନ୍ୟାଃ—ନାସ୍ତି ମଦ୍‌ବ୍ୟତିରେକେଣାନ୍ୟତ୍ କାମ୍ୟଂ ଯେଷାଂ ତେ । ତଥାଭୂତା ଯେ ଜନା ମାଂ ଚିନ୍ତୟନ୍ତଃ ସେବନ୍ତେ । ତେଷାଂ ନିତ୍ୟାଭିଯୁକ୍ତାନାଂ ସର୍ବଥା ମଦେକନିଷ୍ଠାନାଂ । ଯୋଗଂ ଧନାଦିଲାଭଂ କ୍ଷେମଂ ଚ ତତ୍‌ପାଳନଂ, ମୋକ୍ଷଂ ବା ତୈରପ୍ରାର୍ଥିତମପ୍ୟହମେବ ବହାମି ପ୍ରାପୟାମି ।

**ବିବୃତି**—ଅପ୍ରାପ୍ତ ବସ୍ତୁର ପ୍ରାପ୍ତିକୁ ଯୋଗ ଏବଂ ପ୍ରାପ୍ତ ବସ୍ତୁକୁ ରକ୍ଷା କରିବାକୁ କ୍ଷେମ ବୋଲାଯାଏ । ଯୋଗକ୍ଷେମର ମୋଟାମୋଟି ଅର୍ଥ ସାଂସାରିକ ନିତ୍ୟ ନିର୍ବାହ ।

ସାଧାରଣତଃ ଦେଖାଯାଏ ଯେ ସଂସାର ଜଞ୍ଜାଳରେ ପଡ଼ି ସଂସାରୀ ଲୋକ ନିତ୍ୟ ନାନା ଅଭାବର ସମ୍ମୁଖୀନ ହୁଏ । ସେହି ସମସ୍ତ ଅଭାବ ଦୂର କରିବାପାଇଁ ସେ ନାନା, ଦେବଦେବୀଙ୍କୁ ପ୍ରାର୍ଥନା କରେ, ସେଥିପାଇଁ ପୂଜା ଦିଏ, ସନ୍ଧ୍ୟବତୀ ଜାଳେ ଏବଂ ନାନା ପ୍ରକାର ସ୍ତବପାଠ କରେ । ଏହି ପ୍ରତ୍ୟେକ କାର୍ଯ୍ୟରେ 'ଦିଅ', 'ଦିଅ' ଏହାହିଁ ହୃଦୟର ଭାବ । ସ୍ତବସ୍ତୁତିମାନ ମଧ୍ୟ ଏହି ଭାବରେ ଲେଖା ହୋଇଥାଏ । ଏହି ସବୁକୁ ଲକ୍ଷ୍ୟ କରି ଏଠାରେ ଭଗବାନ କହୁଅଛନ୍ତି— ଯେଉଁମାନେ ଅମ୍ଭର ଶରଣାଗତ ହୋଇ ସର୍ବଦା ଅମ୍ଭକୁ ଚିନ୍ତା କରନ୍ତି ଓ ଅମ୍ଭର ଉପାସନା କରନ୍ତି ସେମାନେ ପ୍ରାର୍ଥନା ନ କଲେହେଁ ଅମ୍ଭେ ତାଙ୍କର ସାଂସାରିକ ସମସ୍ତ ନିର୍ବାହ ନିଜେ କରିଦେଉଁ । ସକାମ ଭକ୍ତମାନଙ୍କ ପରି ଅମ୍ଭ ଭକ୍ତମାନେ ନାନା ଅଭାବରେ ପଡ଼ନ୍ତି ନାହିଁ ।

ଏ ଶ୍ଳୋକର ସତ୍ୟତା ସମ୍ବନ୍ଧରେ ଅନେକ ଭକ୍ତଙ୍କର ଦୃଷ୍ଟାନ୍ତ ଗଳ୍ପ ଛଳରେ ସମାଜରେ ଚଳେ । ବାହୁଲ୍ୟ ଭୟରେ ସେସବୁର ବିବରଣ ଏଠାରେ ଦିଆଗଲା ନାହିଁ ।

୨୩ । **ଅନ୍ୱୟଦୀପିକା**—[ହେ] କୌନ୍ତେୟ । ଅନ୍ୟ ଦେବତା ଭକ୍ତାଃ ଯେ ଅପି ( ଅନ୍ୟ ଦେବତାଙ୍କ ଭକ୍ତ ଯେଉଁମାନେ ମଧ୍ୟ ) ଶ୍ରଦ୍ଧୟା

ଅହଂ ହି ସର୍ବଯଜ୍ଞାନାଂ ଭୋକ୍ତା ଚ ପ୍ରଭୁରେବ ଚ ।
ନ ତୁ ମାମଭିଜାନନ୍ତି ତତ୍ତ୍ୱେନାତଶ୍ଚ୍ୟବନ୍ତି ତେ । ୨୪ ।

ଅନ୍ୱିତାଃ (ଶ୍ରଦ୍ଧାଯୁକ୍ତ ହୋଇ) ଯଜନ୍ତେ (ପୂଜା କରନ୍ତି) ତେ ଅପି (ସେମାନେ ମଧ୍ୟ) ଅବିଧିପୂର୍ବକଂ (ଅବିଧିରେ ଅର୍ଥାତ୍‌ ନିର୍ଦ୍ଦିଷ୍ଟ ବିଧି ବ୍ୟତିରେକେ) ମାମ୍‌ ଏବ (ଅମ୍ଭଙ୍କୁ ହିଁ) ଯଜନ୍ତି (ପୂଜାକରନ୍ତି) ।

**ଅନୁବାଦ**—ହେ କୌନ୍ତେୟ—ଯେଉଁମାନେ ଅନ୍ୟ ଦେବତାଙ୍କ ପ୍ରତି ଭକ୍ତିଯୁକ୍ତ ହୋଇ ଶ୍ରଦ୍ଧା ସହକାରେ ସେମାନଙ୍କୁ ପୂଜା କରନ୍ତି, ସେମାନେ ମଧ୍ୟ ନିର୍ଦ୍ଦିଷ୍ଟ ବିଧିବ୍ୟତିରେକେ ଅମ୍ଭର ହିଁ ପୂଜା କରନ୍ତି ।

**ସୁବୋଧିନୀ ଟୀକା**—ନନୁ ତ୍ୱଦ୍‌ବ୍ୟତିରେକେଣ ବସ୍ତୁତୋ ଦେବତାନ୍ତରସ୍ୟାଭାବାଦ୍‌ ଇନ୍ଦ୍ରାଦିସେବିନୋଽପି ତ୍ୱଦ୍‌ଭକ୍ତା ଏବେତି କଥଂ ତେ ଗତାଗତଂ ଲଭେରନ୍‌ ? ତତ୍ରାହ—ଯେଽପୀତି । ଶ୍ରଦ୍ଧୟୋପେତା ଭକ୍ତାଃ ସନ୍ତୋ ଯେ ଜନା ଅନ୍ୟଦେବତା ଇନ୍ଦ୍ରାଦିରୂପା ଯଜନ୍ତେ ତେଽପି ମାମେବ ଯଜନ୍ତୀତି ସତ୍ୟଂ, କିନ୍ତ୍ୱବିଧିପୂର୍ବକଂ, ମୋକ୍ଷପ୍ରାପକଂ ବିଧିଂ ବିନା ଯଜନ୍ତି । ଅତସ୍ତେ ପୁନରାବର୍ତ୍ତନ୍ତେ ।

୨୪ । **ଅନ୍ୱୟଦୀପିକା**—ହି (ଯେହେତୁ) ଅହମ୍‌ ଏବ (ଅମ୍ଭେ ହିଁ) ସର୍ବଯଜ୍ଞାନାଂ (ସବୁ ଯଜ୍ଞର) ଭୋକ୍ତା, ପ୍ରଭୁଃ ଚ (ଭୋକ୍ତା ଏବଂ ଫଳଦାତା), ତୁ (କିନ୍ତୁ) ତେ (ସେମାନେ) ମାଂ (ଅମ୍ଭଙ୍କୁ) ତତ୍ତ୍ୱେନ (ସ୍ୱରୂପତଃ) ନ ଅଭିଜାନନ୍ତି (ଜାଣନ୍ତି ନାହିଁ), ଅତଃ (ସେହି ହେତୁରୁ) ଚ୍ୟବନ୍ତି (ସଂସାରରେ ପତିତ ହୁଅନ୍ତି, ଅର୍ଥାତ୍‌ ପୁନର୍ଜନ୍ମ ପ୍ରାପ୍ତ ହୁଅନ୍ତି) ।

**ଅନୁବାଦ**—ଅମ୍ଭେ ହିଁ ସବୁ ଯଜ୍ଞର ଭୋକ୍ତା ଓ ଫଳଦାତା । କିନ୍ତୁ ସେମାନେ ଅମ୍ଭଙ୍କୁ ଯଥାର୍ଥତଃ ଜାଣି ପାରନ୍ତି ନାହିଁ ବୋଲି ସଂସାରରେ ପୁନଃପୁନଃ ଜନ୍ମ ହୁଅନ୍ତି ।

**ସୁବୋଧିନୀ ଟୀକା**—ଏତଦେବ ବିବୃଣୋତି—ଅହମିତି । ସର୍ବେଷାଂ ଯଜ୍ଞାନାଂ ତତ୍ତଦ୍ଦେବତାରୂପେଣାହମେବ ଭୋକ୍ତା । ପ୍ରଭୁଶ୍ଚ ସ୍ୱାମୀ । ଫଳଦାତାପ୍ୟହମେବେତ୍ୟର୍ଥଃ । ଏବମ୍ଭୂତଂ ମାଂ ତେ ତତ୍ତ୍ୱେନ ଯଥାବନ୍ନାଭିଜାନନ୍ତି । ଅତଶ୍ଚ୍ୟବନ୍ତି ପ୍ରଚ୍ୟବନ୍ତେ ପୁନରାବର୍ତ୍ତନ୍ତେ । ଯେ ତୁ ସର୍ବ ଦେବତାସୁ ମାମେବାନ୍ତର୍ଯାମିଣଂ ପଶ୍ୟନ୍ତୋ ଯଜନ୍ତି ତେ ତୁ ନାବର୍ତ୍ତନ୍ତେ ।

୨୩-୨୪ । **ବିବୃତି**—ତୃତୀୟ ଅଧ୍ୟାୟ ୧୧ଶ ଶ୍ଲୋକର ବିବୃତିରେ ଦେବତାଉପାସନା ସମ୍ବନ୍ଧରେ ଯେଉଁ କେତେକ କଥା କୁହାଯାଇଅଛି, ତାହା ଏଠାରେ ପୁନର୍ବାର ଆଲୋଚନା କରିବାର ପ୍ରୟୋଜନ ନାହିଁ । ଦେବତା ଯେ

ଯାନ୍ତି ଦେବବ୍ରତା ଦେବାନ୍ ପିତୃନ୍ ଯାନ୍ତି ପିତୃବ୍ରତାଃ ।
ଭୂତାନି ଯାନ୍ତି ଭୂତେଜ୍ୟା ଯାନ୍ତି ମଦ୍ୟାଜିନୋଽପି ମାମ୍ ।୨୫।

ଭଗବାନଙ୍କର ଚୋଟିଏ ରୂପ ଏ ମତ ବୈଦିକ କାଳରୁ ଏ ଦେଶରେ ଚଳି ଆସୁଅଛି । ଋଗ୍‌ବେଦରେ (୧.୬୪.୪୬) ଉକ୍ତ ଅଛି:—

"ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତ୍ୟଗ୍ନିଂ ଯମଂ ମାତରିଶ୍ୱାନମାହୁଃ"
'ପରମେଶ୍ୱର ଏକ କିନ୍ତୁ ବ୍ରାହ୍ମଣମାନେ ତାଙ୍କୁ ଅଗ୍ନି, ଯମ, ମାତରିଶ୍ୱା ବା ବାୟୁ ବୋଲି କହନ୍ତି ।' ଏହି ସତ୍ୟ ପରବର୍ତ୍ତୀ ଦଶମ ଅଧ୍ୟାୟରେ ବିଭୂତିଯୋଗ ବର୍ଣ୍ଣନାରେ ସ୍ପଷ୍ଟଭାବରେ ବ୍ୟାଖ୍ୟାତ ହୋଇଅଛି । ମହାଭାରତ ଶାନ୍ତିପର୍ବରେ (୩୪୫.୨୨,୨୬) କୁହାଯାଇଅଛି:—

ଯେ ଯଜନ୍ତି ପିତୃନ୍ ଦେବାନ୍ ଗୁରୂଂ ଶ୍ଚୈବାତିଥୀଂସ୍ତଥା ।
ଗାଶ୍ଚୈବ ଦ୍ୱିଜମୁଖ୍ୟାଂଶ୍ଚ ପୃଥିବୀଂ ମାତରଂ ତଥା
କର୍ମଣା ମନସା ବାଚା ବିଷ୍ଣୁମେବ ଯଜନ୍ତି ତେ ।

ଯେଉଁମାନେ ପିତୃଗଣ, ଦେବଗଣ, ଗୁରୁ, ଅତିଥି, ଗୋ, ବ୍ରାହ୍ମଣ, ପୃଥିବୀ ପ୍ରଭୃତିଙ୍କୁ କର୍ମ, ମନ ଓ ବଚନରେ ସେବା କରନ୍ତି, ସେମାନେ ବିଷ୍ଣୁଙ୍କରହିଁ ପୂଜା କରିଥାଆନ୍ତି । ଏସବୁ ସ୍ଥଳରେ ଭକ୍ତି ହିଁ ମୁଖ୍ୟ, ଦେବତାରୂପପ୍ରଭେଦ ଗୌଣ, ଏପରି ଅବସ୍ଥାରେ ବୈଷ୍ଣବ, ଶୈବ, ଗାଣପତ୍ୟ, ଶାକ୍ତ ପ୍ରଭୃତିଙ୍କ ମଧ୍ୟରେ ପରସ୍ପର ବିବାଦ ଅତି ଅଶୋଭନୀୟ ବ୍ୟାପାର ।

ଦେବତାମାନେ ଅବଶ୍ୟ ଈଶ୍ୱର ନୁହନ୍ତି, ଈଶ୍ୱରଙ୍କ ଶକ୍ତି ବିଶେଷର ଭିନ୍ନ ବିକାଶ ବା ବିଭୂତି । ଏ ଯୁଗରେ ମଧ୍ୟ ବିଶେଷ ବିଶେଷ ମନୁଷ୍ୟଙ୍କଠାରେ ଐଶୀଶକ୍ତିର ବିକାଶ ଅନେକ ସ୍ଥାନରେ ଦେଖାଯାଏ । ଏହିଭଳି ଶକ୍ତିର ବିକାଶ ଦେଖିଲେ ମନୁଷ୍ୟ ସ୍ୱାର୍ଥବୁଦ୍ଧିରେ, ଭୟରେ ବା ବିଶ୍ୱାସରେ ସେହି ଶକ୍ତିମାନଙ୍କର ପୂଜା କରିଥାଏ; ଏ ଯୁଗରେ ଯାହାକୁ 'ବୀରପୂଜା' କହନ୍ତି ତାହା ଯେ ଶକ୍ତିମାନର ପୂଜା ଏହା ସହଜରେ ବୁଝାଯାଏ । ଦେବତାଙ୍କ ଦ୍ୱାରା ଇଷ୍ଟଲାଭ ହୋଇଥାଏ ମାତ୍ର ଈଶ୍ୱରପ୍ରାପ୍ତି ହୁଏ ନାହିଁ । ଯେଉଁମାନେ ଶ୍ରଦ୍ଧା ଓ ବିଶ୍ୱାସରେ ଦେବତା-ଆରାଧନା କରନ୍ତି, ସେମାନେ ଅବିଧିରେ ହିଁ ଅର୍ଥାତ୍ ଈଶ୍ୱରରୂପ ଯଥାର୍ଥରେ ନ ଜାଣି ଉପାସନା କରି ଥାଆନ୍ତି, ଏବଂ ବୁଝିପାରନ୍ତି ନାହିଁ ଯେ, ଉପାସ୍ୟ ଦେବତା ଐଶୀଶକ୍ତିର ବିକାଶ ମାତ୍ର, ତେଣୁ ସେମାନେ ଅଭିଳଷିତ ଫଳ ଲାଭକରନ୍ତି ମାତ୍ର ଈଶ୍ୱରଙ୍କୁ ଲାଭ କରି ନ ପାରି ଜନ୍ମ ବନ୍ଧନରୁ ମୁକ୍ତ ହୋଇ ପାରନ୍ତି ନାହିଁ ।

୨୫ । **ଅନ୍ୱୟଦୀପିକା**—ଦେବବ୍ରତାଃ (ଦେବତାପୂଜକମାନେ) ଦେବାନ୍ (ଦେବତାମାନଙ୍କୁ) ଯାନ୍ତି (ପ୍ରାପ୍ତ ହୁଅନ୍ତି), ପିତୃବ୍ରତାଃ (ପିତୃପୁରୁଷଙ୍କ ପୂଜକମାନେ) ପିତୃନ୍ (ପିତୃ ପୁରୁଷଙ୍କୁ) ଯାନ୍ତି (ପ୍ରାପ୍ତ ହୁଅନ୍ତି) ଭୂତେଜ୍ୟାଃ

ପତ୍ରଂ ପୁଷ୍ପଂ ଫଳଂ ତୋୟଂ ଯୋ ମେ ଭକ୍ତ୍ୟା ପ୍ରଯଚ୍ଛତି ।
ତଦହଂ ଭକ୍ତ୍ୟୁପହୃତମଶ୍ନାମି ପ୍ରଯତାତ୍ମନଃ । ୨୬ ।

(ଭୂତପୂଜକମାନେ) ଭୂତାନି (ଭୂତସମୂହ) ଯାନ୍ତି (ପ୍ରାପ୍ତ ହୁଅନ୍ତି), ମଦ୍‌ଯାଜିନଃ ଅପି (ଏବଂ ଆମ୍ଭ ଉପାସକମାନେ) ମାଂ ଯାନ୍ତି (ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି) ।

**ଅନୁବାଦ**— ଦେବତାମାନଙ୍କର ପୂଜକମାନେ ମୃତ୍ୟୁ ପରେ ଦେବତାଙ୍କୁ ପ୍ରାପ୍ତ ହୁଅନ୍ତି । ପିତୃଗଣଙ୍କ ଉପାସକମାନେ ପିତୃପୁରୁଷଙ୍କୁ, ଭୂତପୂଜକମାନେ ଭୂତଗଣଙ୍କୁ ପ୍ରାପ୍ତ ହୁଅନ୍ତି । କିନ୍ତୁ ଆମ୍ଭର ଉପାସକମାନେ ଆମ୍ଭଙ୍କୁ ହିଁ ପ୍ରାପ୍ତ ହୁଅନ୍ତି ।

**ସୁବୋଧିନୀ ଟୀକା**—ତଦେବୋପପାଦୟତି—ଯାନ୍ତୀତି । ଦେବେନ୍ଦ୍ରାଦବ୍ରତଂ ନିୟମୋ ଯେଷାଂ ତେ ଅନ୍ତବନ୍ତୋ ଦେବାନ୍ ଯାନ୍ତି । ଅତଃ ପୁନରାବର୍ତ୍ତନ୍ତେ । ପିତୃଷୁ ବ୍ରତଂ ଯେଷାଂ ଶ୍ରାଦ୍ଧାଦି କ୍ରିୟାପରାଣାଂ ତେ ପିତୃନ୍ ଯାନ୍ତି । ଭୂତେଷୁ ବିନାୟକମାତୃଗଣାଦଶ୍ରିତ୍ୟା ପୂଜା ଯେଷାଂ ତେ ଭୂତେଜ୍ୟା ଭୂତାନି ଯାନ୍ତି । ମାଂ ଯଷ୍ଟୁଂ ଶୀଳଂ ଯେଷାଂ ତେ ମଦ୍‌ଯାଜିନଃ । ତେ ତୁ ମାମେବାବ୍ୟୟଂ ପରମାନନ୍ଦସ୍ୱରୂପଂ ନାଶ୍ୱୟଣଂ ଯାନ୍ତି ।

**ବିବୃତି**—ଶାସ୍ତ୍ରରେ ଉକ୍ତ ଅଛି:—

"ମନ୍ତ୍ରେ ତୀର୍ଥେ ତଥା ଦେବେ ଦୈବଜ୍ଞେ ଭେଷଜେ ଗୁରୌ,
ଯାଦୃଶୀ ଭାବନା ଯସ୍ୟ ସିଦ୍ଧିର୍ଭବତି ତାଦୃଶୀ ।"

'ମନ୍ତ୍ରରେ, ତୀର୍ଥରେ, ଦେବତାଙ୍କଠାରେ, ଦୈବଜ୍ଞ ଅର୍ଥାତ୍ ଜ୍ୟୋତିଷଙ୍କଠାରେ, ଔଷଧରେ ଓ ଗୁରୁଙ୍କଠାରେ ଯାହାଙ୍କର ଯେପରି ଭାବନା ତାହାଙ୍କର ସେହିପରି ସିଦ୍ଧି ହୁଏ ।'

ଏହି ବିଷୟରେ ଭଗବାନ କହୁଅଛନ୍ତି—ଉପାସକମାନେ ନିଜ ନିଜ ଉପାସ୍ୟଙ୍କ ପ୍ରକୃତି ତଥା ନିଜଭାବନାର ଅନୁରୂପ ଫଳ ଲାଭ କରିଥାଆନ୍ତି । ତଥାପି ମନେରଖିବାକୁ ହେବ ଯେ ଦେବତାମାନେ ଈଶ୍ୱରଙ୍କ ପ୍ରତୀକ, କିନ୍ତୁ ସେମାନଙ୍କର ଫଳଦାନର କ୍ଷମତା ନ ଥାଏ । ଭଗବାନ ହିଁ ସର୍ବଫଳଦାତା । ପୂର୍ବ ଶ୍ଳୋକରେ ଭଗବାନ୍ କହିଅଛନ୍ତି, 'ଅହଂ ହି ସର୍ବଯଜ୍ଞାନାଂ ଭୋକ୍ତା ଚ ପ୍ରଭୁରେବ ଚ ।' ତେଣୁ ଏ ଶ୍ଳୋକର ଶେଷରେ କୁହାଯାଇଅଛି, ଆମ୍ଭର ଉପାସକମାନେ ଆମ୍ଭଙ୍କୁ ହିଁ ପ୍ରାପ୍ତ ହୁଅନ୍ତି । ୮ମ ଅଧ୍ୟାୟର ଷଷ୍ଠ ଶ୍ଳୋକରେ ଏହି ଭାବ ହିଁ ବ୍ୟକ୍ତ ହୋଇଅଛି ।

**୨୬ । ଅନ୍ୱୟଦୀପିକା**—ଯଃ (ଯେଉଁଲୋକ) ମେ (ଆମ୍ଭଙ୍କୁ) ଭକ୍ତ୍ୟା (ଭକ୍ତିରେ) ପତ୍ରଂ ପୁଷ୍ପଂ ଫଳଂ ତୋୟଂ (ପତ୍ର, ଫୁଲ, ଫଳ, ଜଳ) ପ୍ରଯଚ୍ଛତି (ଅର୍ପଣ କରନ୍ତି), ଅହଂ (ଆମ୍ଭେ) ପ୍ରଯତାତ୍ମନଃ (ଶୁଦ୍ଧଚିତ୍ତ ବ୍ୟକ୍ତିଙ୍କର)

ଭକ୍ତ୍ୟୁପହୃତଂ (ଭକ୍ତିରେ ପ୍ରଦତ୍ତ) ତତ୍ (ସେହି ସମସ୍ତ ଦ୍ରବ୍ୟ) ଅଶ୍ନାମି (ଗ୍ରହଣକରୁଁ) ।

**ଅନୁବାଦ**—ଯେଉଁ ଲୋକ ଭକ୍ତିରେ ଆମ୍ଭଙ୍କୁ ପତ୍ର, ପୁଷ୍ପ, ଫଳ ବା ଜଳ ଅର୍ପଣ କରନ୍ତି ସେହି ଶୁଦ୍ଧଚିତ୍ତଲୋକଙ୍କର ଭକ୍ତିପୂର୍ବଦତ୍ତ ଉପହାରକୁ ଆମ୍ଭେ ଗ୍ରହଣ କରିଥାଉଁ ।

**ସୁବୋଧିନୀ ଟୀକା**—ତଦେବ ସ୍ୱଭକ୍ତାନାମକ୍ଷୟଫଳମୁକ୍ତମ୍ । ଅନାୟାସତ୍ୱଂ ଚ ସ୍ୱଭକ୍ତେର୍ଦର୍ଶୟତି—ପତ୍ରମିତି । ପତ୍ରପୁଷ୍ପାଦମାତ୍ରମପି ମହ୍ୟଂ ଭକ୍ତ୍ୟା ପ୍ରୀତ୍ୟା ଯଃ ପ୍ରଯଚ୍ଛତି ତସ୍ୟ ପ୍ରୟତାତ୍ମନଃ ଶୁଦ୍ଧଚିତ୍ତସ୍ୟ ନିଷ୍କାମଭକ୍ତସ୍ୟ । ତତ୍ ପତ୍ରପୁଷ୍ପାଦକଂ ଭକ୍ତ୍ୟା ତେନୋପହୃତଂ ସମର୍ପିତ ମହମଶ୍ନାମି ପ୍ରୀତ୍ୟାଗୃହ୍ଣାମି । ନ ହି ମହାବିଭୂତିପତେଃ ପରମେଶ୍ୱରସ୍ୟ ମମ କ୍ଷୁଦ୍ରଦେବତାନାମିବ ବହୁବର୍ତ୍ତସାଧ ଯାଗାଦଭିଃ ପରିତୋଷଃ ସ୍ୟାତ୍ । କିନ୍ତୁ ଭକ୍ତିମାତ୍ରେଣ, ଅତୋ ଭକ୍ତେନ ସମର୍ପିତଂ ଯତ୍ କିଞ୍ଚିତ୍ ପତ୍ରାଦମାତ୍ରମପି ତଦନୁଗ୍ରହାର୍ଥମେବାଶ୍ନାମୀତ୍ୟର୍ଥଃ ।

**ବିବୃତି**—ଦେବତାଙ୍କ ସନ୍ତୋଷ ବିଧାନ ପାଇଁ ବେଦରେ ଯେଉଁ ସବୁ ଯଜ୍ଞର ବ୍ୟବସ୍ଥା ଅଛି ତାହା ବହୁବ୍ୟୟସାଧ୍ୟ ଏବଂ ଯଜ୍ଞ ପାଇଁ ନାନାବିଧ ଦ୍ରବ୍ୟର ପ୍ରୟୋଜନ ହୋଇଥାଏ । ମାତ୍ର ଈଶ୍ୱରଙ୍କର ସନ୍ତୋଷବିଧାନ ପାଇଁ କୌଣସି ମୂଲ୍ୟବାନ୍ ଦ୍ରବ୍ୟର ପ୍ରୟୋଜନ ହୁଏ ନାହିଁ । ପୃଥିବୀର ଯାବତୀୟ ବସ୍ତୁ ତାଙ୍କର ସୃଷ୍ଟି । ଏପରି ଅବସ୍ଥାରେ ସେ ଦ୍ରବ୍ୟର ଭିଖାରି ନୁହନ୍ତି । ସେ ଖୋଜନ୍ତି ହୃଦୟର ଭାବ ବା ଭକ୍ତି । ଅଭକ୍ତିରେ ଲକ୍ଷେ ଥର ନୈବେଦ୍ୟ ଅର୍ପଣକଲେ ମଧ୍ୟ ତାଙ୍କର ସନ୍ତୋଷବିଧାନ ହୁଏ ନାହିଁ । ଯେବେ ଭକ୍ତିରେ ତୁଳସୀପତ୍ରଟିଏ ବି ତାଙ୍କୁ ସମର୍ପଣ କରାଯାଏ ତଦ୍ୱାରା ସେ ସନ୍ତୁଷ୍ଟ ହୁଅନ୍ତି । ସୁଦାମାଙ୍କ ପ୍ରଦତ୍ତ ଖୁଦ ଲଳ କ୍ଷୁଦରେ ସେ ସନ୍ତୁଷ୍ଟ ହୋଇଥିଲେ ଟି । ଭକ୍ତର ଶୁଦ୍ଧ ବୁଦ୍ଧିଜନିତ ଭକ୍ତି ହିଁ ତାଙ୍କର ପ୍ରୟୋଜନୀୟ । ତେଣୁ ଶାସ୍ତ୍ରରେ କଥିତ ହୋଇଅଛି—କେବଳ ନୈବେଦ୍ୟ ସାମଗ୍ରୀରେ ନୁହେ, ଶୁଦ୍ଧବୁଦ୍ଧିରେ ସମର୍ପିତ ମାନସିକ ପୂଜା ଦ୍ରବ୍ୟରେ ମଧ୍ୟ ତାଙ୍କର ସନ୍ତୋଷବିଧାନ ହୋଇଥାଏ ।

ଅନେକେ ମନେ କରନ୍ତି ଭଗବାନଙ୍କୁ ଯେବେ କୌଣସି ବସ୍ତୁ ସମର୍ପଣ କରିବାକୁ ହୁଏ ତେବେ ତାଙ୍କର ସାକାର ମୂର୍ତ୍ତି ଅବଶ୍ୟକ । ମାତ୍ର ଏହା ଠିକ୍ ନୁହେ । ମାନସିକ ଦ୍ରବ୍ୟ ଦ୍ୱାରା ଯେ ଭଗବାନଙ୍କର ପୂଜା ହୋଇପାରେ ଏହା ପୂର୍ବେ କୁହାଯାଇଅଛି । ଭଗବାନ ସର୍ବବ୍ୟାପୀ, ତେଣୁ ଯେ କୌଣସି ଦ୍ରବ୍ୟ ଯେ କୌଣସି ଅବସ୍ଥାରେ ତାଙ୍କୁ ଭକ୍ତିରେ ଅର୍ପଣ କରାଯାଇ ପାରେ । ନିରାକାର ବା ଅବ୍ୟକ୍ତ ଉପାସନା କ୍ଲେଶସାଧ୍ୟ, ତେଣୁ ଆମ ଧର୍ମଶାସ୍ତ୍ରରେ ମୂର୍ତ୍ତି ପୂଜାର ବ୍ୟବସ୍ଥା ଅଛି । ଚଞ୍ଚଳ ମନକୁ ସ୍ଥିର କରିବା ପାଇଁ ପ୍ରଥମାବସ୍ଥାରେ ପ୍ରତୀକ

ଯତ୍ କରୋଷି ଯଦଶ୍ନାସି ଯଜ୍ଜୁହୋଷି ଦଦାସି ଯତ୍ ।
ଯତ୍ ତପସ୍ୟସି କୌନ୍ତେୟ ତତ୍ କୁରୁଷ୍ୱ ମଦର୍ପଣମ୍ ॥ ୨୭ ॥

ବା ପ୍ରତିମାର ସାହାଯ୍ୟ ଲୋଡ଼ା ହୁଏ । କିନ୍ତୁ ଯେଉଁମାନେ ଇନ୍ଦ୍ରିୟସଂଯମପୂର୍ବକ ମନକୁ ନିଜ ଅଧୀନ କରି ପାରି ଥାଆନ୍ତି ଏବଂ ପ୍ରକୃତିର ଅତୀତ ହୋଇ ଅତୀନ୍ଦ୍ରିୟ ଅନୁଭବ ଲାଭକରି ସିଦ୍ଧ ହୋଇ ଥାଆନ୍ତି, ସେମାନଙ୍କ ପକ୍ଷରେ ପ୍ରତିମାର ପ୍ରୟୋଜନୀୟତା ନ ଥାଏ । ଧର୍ମଜୀବନର ଉଚ୍ଚ ସୋପାନରେ ଅରୋହଣ କଲେ ସାଧକ ବୁଝି ପାରନ୍ତି 'ନ ତସ୍ୟ ପ୍ରତିମା ଅସ୍ତି ଯସ୍ୟ ନାମ ମହଦ୍‌ଯଶଃ' ।

**୨୭ । ଅନ୍ୱୟଦୀପିକା**—[ହେ] କୌନ୍ତେୟ ! [ତୁମେ] ଯତ୍ କରୋଷି (ଯାହା କରୁଛ) ଯତ୍ ଅଶ୍ନାସି (ଯାହା ଖାଉଛ), ଯତ୍ ଜୁହୋଷି (ଯାହା ହୋମ କରୁଅଛ) ଯତ୍ ଦଦାସି (ଯାହା ଦେଉଅଛ), ଯତ୍ ତପସ୍ୟସି ( ଯାହା ତପସ୍ୟା କରୁଅଛ ) ତତ୍ ( ସେସବୁ ) ମଦର୍ପଣଂ ( ଅମ୍ଭଠାରେ ଅର୍ପଣ ) କୁରୁଷ୍ୱ (କର) ।

**ଅନୁବାଦ**—ହେ କୌନ୍ତେୟ, ତୁମେ ଯାହା କରୁଅଛ, ଯାହା ଖାଉଅଛ, ଯାହା ହୋମ କରୁଅଛ, ଯାହା ଦେଉଅଛ, ଯାହା ତପସ୍ୟା କରୁଅଛ, ସେ ସମସ୍ତ ଅମ୍ଭଠାରେ ସମର୍ପଣ କର ।

**ସୁବୋଧିନୀ ଟୀକା**—ନ ଚ ପତ୍ରପୁଷ୍ପାଦିକମପି ଯଜ୍ଞାର୍ଥପଶୁସୋମାଦି-ଦ୍ରବ୍ୟବଦର୍ଥମେବୋଦ୍ୟମୈରୁପାଦ୍ୟ ସମର୍ପଣୀୟଂ । କିଂ ତର୍ହି ? ଯତ୍ କରୋଷୀତି । ସ୍ୱଭାବତଃ ଶାସ୍ତ୍ରତୋ ବା ଯତ୍ କିଞ୍ଚିତ୍ କର୍ମ କରୋଷି ; ତଥା ଯଦଶ୍ନାସି । ଯଜ୍ଜୁହୋଷି, ଯଦ୍ଦଦାସି, ଯଚ୍ଚ ତପସ୍ୟସି ତପଃ କରୋଷି ତତ୍‌ସର୍ବଂ ମଦର୍ପିତଂ ଯଥା ଭବତ୍ୟେବଂ କୁରୁଷ୍ୱ ।

**ବିବୃତି**—ଗୀତା କର୍ମଯୋଗ ଶାସ୍ତ୍ର; ସବୁ କର୍ମ ତ୍ୟାଗକରିବାହିଁ ଗୀତାର ଉପଦେଶ—ଯେଉଁମାନେ ଏହା କହନ୍ତି ସେମାନେ ଏ ଶ୍ଲୋକ ଏବଂ ଏହାର ପରବର୍ତ୍ତୀ ଶ୍ଲୋକର ଭାବ ଚିନ୍ତାକଲେ ନିଜ ନିଜ ଭ୍ରମ ବୁଝିପାରିବେ । ସବୁ କର୍ମ କରିବାକୁ ହେବ କୃଷ୍ଣାର୍ପଣ ବୁଦ୍ଧିରେ । 'କୃଷ୍ଣାର୍ପଣମସ୍ତୁ' କେବଳ ଏହା ଉଚ୍ଚାରଣ କଲେ କୃଷ୍ଣାର୍ପଣ ହୁଏ ନାହିଁ । ହୃଦୟର ଭାବ ସେହିପରି ହେବା ଉଚିତ । ଫଳ କାମନା ତ୍ୟାଗ ହିଁ ଏହାର ମୂଳତତ୍ତ୍ୱ । ଗୀତା ମତରେ ଏହିପରି କୃଷ୍ଣାର୍ପଣ ବୁଦ୍ଧିରେ ବା ବ୍ରହ୍ମାର୍ପଣ ବୁଦ୍ଧିରେ କର୍ମ କରିବା ହିଁ ସନ୍ନ୍ୟାସ । କର୍ମତ୍ୟାଗରୂପ ସନ୍ନ୍ୟାସ ଗୀତାର ସମ୍ମତ ନୁହେ । ଶ୍ରୀମଦ୍‌ଭାଗବତରେ ମଧ୍ୟ 'ମଯ୍ୟାବେଶ୍ୟ ମନସ୍ତାତ କୁରୁକର୍ମାଣି ମତ୍‌ପରଃ' (୭।୧୦।୨୩); ଏହିଭଳି ସବୁକର୍ମ ଭଗବାନଙ୍କଠାରେ ଅର୍ପଣ କରିବାକୁ କୁହାଯାଇଅଛି ।

ଶୁଭାଶୁଭଫଳୈରେବଂ ମୋକ୍ଷ୍ୟସେ କର୍ମବନ୍ଧନୈଃ ।
ସନ୍ନ୍ୟାସଯୋଗଯୁକ୍ତାତ୍ମା ବିମୁକ୍ତୋମାମୁପୈଷ୍ୟସି । ୨୮ ।
ସମୋଽହଂ ସର୍ବଭୂତେଷୁ ନ ମେ ଦ୍ୱେଷ୍ୟୋଽସ୍ତି ନ ପ୍ରିୟଃ ।
ଯେ ଭଜନ୍ତି ତୁ ମାଂ ଭକ୍ତ୍ୟା ମୟିତେ ତେଷୁ ଚାପ୍ୟହମ୍ ।୨୯।

'ଜୀବ ଦାସ, ଈଶ୍ୱର ପ୍ରଭୁ' ଏହି ଭାବ ହୃଦୟରେ ଦୃଢ଼ ହେବା ଭକ୍ତିର ପ୍ରଥମ ସୋପାନ । 'ତୁମ୍ଭେ କର୍ତ୍ତା, ମୁଁ ନିମିତ୍ତ ମାତ୍ର' ମୋତେ ଯେପରି ଚଳାଉଛ ମୁଁ ସେପରି ଚଳୁଛି । 'ତ୍ୱୟା ହୃଷୀକେଶ ହୃଦିସ୍ଥିତେନ, ଯଥା ନିଯୁକ୍ତୋଽସ୍ମି ତଥା କରୋମି'—ଏହି ଭାବରେ ନିତ୍ୟ ଅନୁପ୍ରାଣିତ ହେଲେ ଜୀବନର ସମସ୍ତ କର୍ମ କୃଷ୍ଣାର୍ପିତ ହୁଏ ।

୨୮ । **ଅନ୍ୱୟଦୀପିକା**—ଏବଂ (ଏହିପରି) ଶୁଭାଶୁଭଫଳୈଃ (କର୍ମର ଶୁଭାଶୁଭଫଳରୂପ) କର୍ମବନ୍ଧନୈଃ (କର୍ମ ବନ୍ଧନରୁ) ମୋକ୍ଷ୍ୟସେ (ମୁକ୍ତହେବ) । ସନ୍ନ୍ୟାସଯୋଗଯୁକ୍ତାତ୍ମା (ମୋଠାରେ କର୍ମାର୍ପଣରୂପ ଯୋଗଯୁକ୍ତ ହେଲେ) ବିମୁକ୍ତଃ (କର୍ମବନ୍ଧନରୁ ମୁକ୍ତ ହୋଇ) ମାମ୍ (ଅମ୍ଭଙ୍କୁ) ଉପୈଷ୍ୟସି (ପ୍ରାପ୍ତ ହେବ) ।

**ଅନୁବାଦ**—ଅମ୍ଭଠାରେ ସବୁକର୍ମ ସମର୍ପଣ କଲେ କର୍ମର ଶୁଭାଶୁଭ ଫଳରୂପ ବନ୍ଧନରୁ ମୁକ୍ତ ହେବ ଏବଂ କର୍ମଫଳ ତ୍ୟାଗ କରିବାରୂପ ଯୋଗଯୁକ୍ତ ହେଲେ ମୁକ୍ତ ହୋଇ ଅମ୍ଭଙ୍କୁ ପ୍ରାପ୍ତ ହେବ ।

**ସୁବୋଧିନୀ ଟୀକା**—ଏବଂ ଚ ଯତ୍ ଫଳଂ ପ୍ରାପ୍ସ୍ୟସି ତଚ୍ଛୃଣୁ । ଶୁଭାଶୁଭେତି । ଏବଂ କୁର୍ବନ୍ କର୍ମବନ୍ଧନୈଃ କର୍ମନିମିତ୍ତୈଃ ଇଷ୍ଟାନିଷ୍ଟଫଳୈର୍ମୁକ୍ତୋ ଭବିଷ୍ୟସି । କର୍ମଣାଂ ମୟି ସମର୍ପିତତ୍ୱେନ ତବ ତତ୍ଫଳ ସମ୍ବନ୍ଧାନୁପପତ୍ତେଃ । ତୈଶ୍ଚ ବିମୁକ୍ତଃ ସନ୍ । ସନ୍ନ୍ୟାସଯୋଗଯୁକ୍ତାତ୍ମା—ସନ୍ନ୍ୟାସଃ କର୍ମଣାଂ ମଦର୍ପଣଂ, ସ ଏବ ଯୋଗଃ । ତେନ ଯୁକ୍ତଃ ଅତ୍ମା ଚିତ୍ତଂ ଯସ୍ୟ, ତଥାଭୂତସ୍ତ୍ୱଂ ମାଂ ପ୍ରାପ୍ସ୍ୟସି ।

**ବିବୃତି**—ଏଠାରେ 'ସନ୍ନ୍ୟାସ ଯୋଗଯୁକ୍ତାତ୍ମା'ର ଅର୍ଥ କର୍ମତ୍ୟାଗରୂପ ଯୋଗ ନୁହେ । କର୍ମ ଈଶ୍ୱରଙ୍କଠାରେ ସମର୍ପଣ କରିବାରୂପ ଯୋଗ ବା କୌଶଳ । ସ୍ୱାମୀଙ୍କ ଟୀକାରେ ଏହାହିଁ କୁହାଯାଇଅଛି ।

କର୍ମରେ ଅସକ୍ତି ହିଁ ବନ୍ଧନର ହେତୁ । ମାତ୍ର କର୍ମସବୁ ଈଶ୍ୱରଙ୍କଠାରେ ଅର୍ପଣ କଲେ ଫଳାଭିଳାଷ ନ ଥିବାରୁ କର୍ମବନ୍ଧନ ରହେ ନାହିଁ । ତେଣୁ ଶରୀର-ଧ୍ୱଂସପରେ ଜୀବ ଭଗବାନଙ୍କୁ ପାଏ ଅର୍ଥାତ୍ ମୋକ୍ଷଲାଭ କରେ ।

୨୯ । **ଅନ୍ୱୟଦୀପିକା**—ଅହଂ (ଅମ୍ଭେ) ସର୍ବଭୂତେଷୁ ସମଃ (ସବୁ ଜୀବଙ୍କ ପକ୍ଷରେ ସମାନ ବା ଏକାପରି) । ମେ (ଅମ୍ଭର) ଦ୍ୱେଷ୍ୟଃ ନ

(ଅପ୍ରିୟ ନାହିଁ), ପ୍ରିୟଃ ନ ଅସ୍ତି (ପ୍ରିୟ ମଧ୍ୟ ନାହିଁ) । ଯେ ତୁ (କିନ୍ତୁ ଯେଉଁମାନେ) ମାଂ (ଆମ୍ଭଙ୍କୁ) ଭକ୍ତ୍ୟା ଭଜନ୍ତି (ଭକ୍ତିପୂର୍ବକ ଭଜନା କରନ୍ତି) ତେ (ସେମାନେ) ମୟି (ଆମ୍ଭଠାରେ) [ରହନ୍ତି]; ଅହମପି (ଆମ୍ଭେ ମଧ୍ୟ) ତେଷୁ (ସେମାନଙ୍କ ମଧ୍ୟରେ) [ଥାଉଁ] ।

**ଅନୁବାଦ**—ଆମ୍ଭେ ସବୁ ଜୀବଙ୍କ ପକ୍ଷରେ ସମାନ, ଆମ୍ଭର କେହି ଅପ୍ରିୟ ନାହିଁ କି କେହି ପ୍ରିୟ ନାହିଁ କିନ୍ତୁ ଯେଉଁମାନେ ଭକ୍ତିପୂର୍ବକ ଆମ୍ଭଙ୍କୁ ଭଜନା କରନ୍ତି ସେମାନେ ଆମ୍ଭଠାରେ ଅବସ୍ଥାନ କରନ୍ତି ଓ ଆମ୍ଭେ ସେମାନଙ୍କଠାରେ ଅବସ୍ଥାନ କରୁଁ ।

**ସୁବୋଧିନୀ ଟୀକା**—ଯଦି ଭକ୍ତେଭ୍ୟ ଏବ ମୋକ୍ଷଂ ଦଦାସି ନାଭକ୍ତେଭ୍ୟସ୍ତର୍ହି ତବାପି କିଂ ରାଗଦ୍ୱେଷାଦିକୃତଂ ବୈଷମ୍ୟମସ୍ତି ? ନେତ୍ୟାହ— ସମୋଽହମିତି । ସମୋଽହଂ ସର୍ବେଷ୍ୱପି ଭୂତେଷୁ । ଅତୋ ମେ ପ୍ରିୟଶ୍ଚ ଦ୍ୱେଷ୍ୟଶ୍ଚ ନାସ୍ତ୍ୟେବ । ଏବଂ ସତ୍ୟପି ଯେ ମାଂ ଭଜନ୍ତି ତେ ଭକ୍ତ୍ୟା ମୟି ବର୍ତ୍ତନ୍ତେ । ଅହମପି ତେଷ୍ୱନୁଗ୍ରାହକତୟାବର୍ତ୍ତେ । ଅୟଂ ଭାବଃ—ଯଥାଗ୍ନେଃ ସ୍ୱସେବକେଷ୍ୱେବ ତମଃ ଶୀତାଦି ଦୁଃଖମପାକୁର୍ବତୋଽପି ନ ବୈଷମ୍ୟଂ । ଯଥା ବା କଳ୍ପବୃକ୍ଷସ୍ୟ । ତଥୈବ ଭକ୍ତପକ୍ଷପାତିନୋଽପି ମମ ବୈଷମ୍ୟଂ ନାସ୍ତ୍ୟେବ । କିନ୍ତୁ ମଦ୍‌ଭକ୍ତେ-ରେବାୟଂ ମହିମେତି ।

**ବିବୃତି**—୭ମ ଅଧ୍ୟାୟର ୧୭ଶ ଶ୍ଳୋକରେ ଭଗବାନ୍ କହିଅଛନ୍ତି—ଜ୍ଞାନୀ ଭକ୍ତ ଆମ୍ଭର ପ୍ରିୟ । ପରବର୍ତ୍ତୀ ୧୨ଶ ଅଧ୍ୟାୟରେ ମଧ୍ୟ ଭକ୍ତ ଆମ୍ଭର ପ୍ରିୟ ଏହା ବାରମ୍ବାର କହିଅଛନ୍ତି । ଷୋଡ଼ଶ ଅଧ୍ୟାୟରେ ମଧ୍ୟ ଆମ୍ଭେ ନରାଧମମାନଙ୍କୁ ଅସୁର ଯୋନିରେ ନିକ୍ଷେପ କରୁଁ ଏପରି କହିଅଛନ୍ତି । ଶଂସିତ ଶ୍ଳୋକର ପ୍ରଥମାର୍ଦ୍ଧରେ କହିଅଛନ୍ତି ମୋର କେହି ଶତ୍ରୁ ବା ମିତ୍ର ନାହିଁ, କିନ୍ତୁ ଦ୍ୱିତୀୟାର୍ଦ୍ଧରେ କହୁଅଛନ୍ତି ଆମ୍ଭଙ୍କୁ ଯେଉଁମାନେ ଭଜନ୍ତି ଆମ୍ଭେ ସେମାନଙ୍କ ପ୍ରତି ଅନୁଗ୍ରହ କରୁଁ ଇତ୍ୟାଦି । ଏସବୁ କଅଣ ପରସ୍ପର ବିରୁଦ୍ଧ ନୁହେଁ ? ସ୍ଥୁଳ ଦୃଷ୍ଟିରେ ଏପରି ଜଣାଗଲେ ମଧ୍ୟ ଏହା ପ୍ରକୃତରେ ସେପରି ନୁହେଁ । ଯେଉଁ ଲୋକ ଭକ୍ତିପୂର୍ବକ ଭଗବାନଙ୍କୁ ଭଜନା କରନ୍ତି ଭକ୍ତିଗୁଣରେ ତାଙ୍କର ଅନ୍ତଃକରଣ ନିର୍ମଳ ହେଲେ ସେ ଭଗବଦ୍‌ଭାବ ଲାଭ କରନ୍ତି । ସ୍ୱଚ୍ଛ ସ୍ଫଟିକ ମନ୍ଦାରଫୁଲ ନିକଟରେ ଧରିଲେ ତାହା ରକ୍ତବର୍ଣ୍ଣ ଦେଖାଯାଏ ଏବଂ ନୀଳପଦ୍ମ ନିକଟରେ ଧରିଲେ ତାହା ନୀଳବର୍ଣ୍ଣ ଦେଖାଯାଏ କିନ୍ତୁ ଗୋଟିଏ ଲୌହପିଣ୍ଡ ମନ୍ଦାରଫୁଲ ନିକଟରେ ଧରିଲେ ତହିଁରେ କୌଣସି ପ୍ରତିକ୍ରିୟା ଦେଖାଯାଏ ନାହିଁ; ସେହିପରି ଭକ୍ତିରେ ଅନ୍ତଃକରଣ ଶୁଦ୍ଧ

ଅପି ଚେତ୍ ସୁଦୁରାଚାରୋ ଭଜତେ ମାମନନ୍ୟଭାକ୍ ।
ସାଧୁରେବ ସ ମନ୍ତବ୍ୟଃ ସମ୍ୟଗ୍‌ବ୍ୟବସିତୋ ହି ସଃ । ୩୦ ।

ଓ ନିର୍ମଳ ହୋଇଥିଲେ ତହିଁରେ ଭଗବତ୍‌ପ୍ରେମ ବା ବ୍ରହ୍ମାନନ୍ଦର ଉପଲବ୍ଧି ହୁଏ, ଅଭକ୍ତର ହୃଦୟରେ ତାହାର କୌଣସି କ୍ରିୟା ଦେଖାଯାଏ ନାହିଁ ।

ଅଗ୍ନିର ଅନ୍ଧକାର ନାଶ କରିବା ଓ ଶୈତ୍ୟ ନାଶ କରିବା ଶକ୍ତି ସ୍ୱାଭାବିକ, କିନ୍ତୁ ଯେଉଁ ଲୋକ ଅଗ୍ନି ନିକଟରେ ଥାଏ ସେ ସିନା ସେ ଉପକାର ଅଗ୍ନିଠାରୁ ପାଏ, ଯେ ଦୂରରେ ରହେ ସେ ତାହା ପାଇପାରେ କି ? ଏହା ଅଗ୍ନିର ପକ୍ଷପାତିତା ନୁହେ । ସେବକର ନିକଟବର୍ତ୍ତିତା ଓ ଦୂରବର୍ତ୍ତିତାର ଫଳ ।

କ୍ଷୁଦ୍ର ଶିଶୁ ସାଧାରଣତଃ ରାଗଦ୍ୱେଷଶୂନ୍ୟ, ଯେଉଁ ଲୋକ ଶିଶୁକୁ ସ୍ନେହ କରେ ସେ ତାକୁ ଦେଖି ହସେ, କିନ୍ତୁ ଯେ ତାକୁ ଘୃଣା କରେ ସେ ତା ଆଡ଼କୁ ମୋଟେ ଗୃହେଁ ନାହିଁ । ଏହା ଶିଶୁର ଦୋଷ ବା ଗୁଣ ନୁହେ, ଲୋକର ରାଗ ବା ଦ୍ୱେଷର ପ୍ରତିକ୍ରିୟା । ଭଗବାନଙ୍କର ପ୍ରୀତି ବା ବିଦ୍ୱେଷ ସେହିପରି ଜୀବର ପ୍ରୀତି ବା ବିଦ୍ୱେଷର ପ୍ରତିକ୍ରିୟା ମାତ୍ର ।

ଅଭକ୍ତ ହିରଣ୍ୟକଶିପୁ ଓ ତାଙ୍କ ପୁତ୍ର ଭକ୍ତ ପ୍ରହ୍ଲାଦଙ୍କ ସମ୍ମୁଖରେ ଯେତେବେଳେ ଭଗବାନ୍ ନର-ସିଂହ ରୂପରେ ଅବତୀର୍ଣ୍ଣ ହେଲେ ସେତେବେଳେ ଅଭକ୍ତର ବିଦ୍ୱେଷପୂର୍ଣ୍ଣ ବକ୍ଷଃସ୍ଥଳକୁ ଭଗବାନ୍ ବିଦାର୍ଣ୍ଣ କଲେ ଏବଂ ଭକ୍ତର ପ୍ରେମପୂର୍ଣ୍ଣ ଅନ୍ତଃକରଣକୁ ଶାନ୍ତିସୁଧା ଦ୍ୱାରା ପ୍ଲାବିତ କରି ଭକ୍ତକୁ କୋଳରେ ବସାଇଲେ, ଭକ୍ତ ଓ ଅଭକ୍ତର ପ୍ରେମ ବା ବିଦ୍ୱେଷପୂର୍ଣ୍ଣ ହୃଦୟର ଏହା ପ୍ରତିକ୍ରିୟା ।

ମେଘ ସର୍ବତ୍ର ସମାନ ଭାବରେ ଜଳ ବର୍ଷଣ କରେ କିନ୍ତୁ କେତେକ କ୍ଷେତ୍ରରେ ସୁଶସ୍ୟ ଜନ୍ମେ ଏବଂ କେତେକ କ୍ଷେତ୍ରରେ ତୃଣ ସୁଦ୍ଧା ଅଙ୍କୁରିତ ହୁଏ ନାହିଁ, ଏହା ମେଘର ଗୁଣ ବା ଦୋଷ ନୁହେ । କ୍ଷେତ୍ରର ଗୁଣ ବା ଦୋଷ ।

୩୦ । **ଅନ୍ୱୟଦୀପିକା**—ଚେତ୍ (ଯଦି) ସୁଦୁରାଚାରଃ ଅପି (ଅତ୍ୟନ୍ତ ଦୁରାଚାର ବ୍ୟକ୍ତି ମଧ୍ୟ) ଅନନ୍ୟଭାକ୍ (ଅନନ୍ୟ ଚିତ୍ତ ହୋଇ) ମାଂ ଭଜତେ (ଆମ୍ଭକୁ ଭଜନ କରନ୍ତି) ସଃ ସାଧୁଃ ଏବ ମନ୍ତବ୍ୟଃ (ତାହାଙ୍କୁ ସାଧୁ ବୋଲି ମନେ କରିବା ଉଚିତ), ହି (କାରଣ) ସଃ ସମ୍ୟକ୍‌ବ୍ୟବସିତଃ (ସେ ଉତ୍ତମ ବୁଦ୍ଧିସମ୍ପନ୍ନ) ।

**ଅନୁବାଦ**—ଯଦି କୌଣସି ଅତି ଦୁରାଚାର ବ୍ୟକ୍ତି ଅନନ୍ୟଚିତ୍ତ ହୋଇ ଆମ୍ଭକୁ ଭଜନା କରେ ତେବେ ତାକୁ ସାଧୁ ବୋଲି ମନେ କରିବ । କାରଣ ତାହାର ଯତ୍ନ ସାଧୁତ୍ୱପୂର୍ଣ୍ଣ ।

କ୍ଷିପ୍ରଂ ଭବତି ଧର୍ମାତ୍ମା ଶଶ୍ୱଚ୍ଛାନ୍ତିଂ ନିଗଚ୍ଛତି ।
କୌନ୍ତେୟ ପ୍ରତିଜାନୀହି ନ ମେ ଭକ୍ତଃ ପ୍ରଣଶ୍ୟତି ॥ ୩୧ ॥

**ସୁବୋଧିନୀ ଟୀକା**—ଅପି ଚ ମଦ୍‌ଭକ୍ତେରେବାଯୁମବତର୍କ୍ୟଃ ପ୍ରଭାବ ଇତି ଦର୍ଶୟନ୍ନାହ—ଅପି ଚେଦିତି । ଅତ୍ୟନ୍ତଂ ଦୁରାଚାରୋଽପି ନରୋ ଯଦ୍ୟପ୍ୟ-ପୃଥକ୍‌ତ୍ୱେନ ପୃଥକ୍ ଦେବତାପି ବାସୁଦେବ ଏବେତି ବୁଦ୍ଧ୍ୟା ଦେବତାନ୍ତର-ଭକ୍ତମକୁର୍ବନ୍ ମାମେବ ପରମେଶ୍ୱରଂ ଭଜତେ ତର୍ହି ସାଧୁଃ ଶ୍ରେଷ୍ଠ ଏବ ସ ମନ୍ତବ୍ୟଃ । ଯତୋଽସୌ ସମ୍ୟଗ୍‌ବ୍ୟବସିତଃ ପରମେଶ୍ୱର ଭଜନେନୈବ କୃତାର୍ଥୋ ଭବିଷ୍ୟାମୀତି ଶୋଭନମଧ୍ୟବସାୟଂ କୃତବାନ୍ ।

**ବିବୃତି**—ମହାପାପୀ ଯେବେ ଭଗବାନଙ୍କୁ ଏକମାତ୍ର ଶରଣ୍ୟ ଭାବି ତାଙ୍କୁ ଭଜନା କରେ ତେବେ ସେ ପାପରୁ ମୁକ୍ତିଲାଭ କରିଥାଏ; ଅନ୍ୟବିଧ ପ୍ରାୟଶ୍ଚିତ୍ତ ତା ପକ୍ଷରେ ଅବଶ୍ୟକ ହୁଏ ନାହିଁ । ବାଲ୍ମୀକି ଓ ଅଜାମିଳ ଏହାର ଉଦାହରଣ । ଭକ୍ତଚରିତ୍ରମାନଙ୍କରେ ଅନ୍ୟ ଉଦାହରଣ ମଧ୍ୟ ଅଳ୍ପ ନାହିଁ । ଏ ଶ୍ଳୋକର ଭାବାର୍ଥ ଏପରି ନୁହେ ଯେ, ଭଗବଦ୍‌ଭକ୍ତ ଦୁରାଚାରୀ ହେଲେ ମଧ୍ୟ ସେ ଭଗବାନଙ୍କର ପ୍ରିୟ ହୋଇଥାଏ, ଏଠାରେ ବୁଝିବାକୁ ହେବ ଯେ କୌଣସି ଦୁର୍ବୃତ୍ତ ଲୋକ ଯେବେ ସୌଭାଗ୍ୟବଶରୁ ଶୁଦ୍ଧବୁଦ୍ଧିଯୁକ୍ତ ହୋଇ ଏକାନ୍ତଭାବରେ ଈଶ୍ୱରପରାୟଣ ହୁଏ ତେବେ ସେ ଆଉ କୌଣସି ଦୁଷ୍କର୍ମ କରିବାକୁ ପ୍ରବୃତ୍ତ ହୁଏ ନାହିଁ । ଏବଂ କ୍ରମେ ଧର୍ମାତ୍ମା ହୋଇ ଚିତ୍ତଶୁଦ୍ଧି ଲାଭ କରେ ଏବଂ ସିଦ୍ଧିଲାଭ କରିବାରୁ ତାହାର ପାପ ସମସ୍ତ ଧ୍ୱଂସ ହୋଇଯାଏ ।

**୩୧ । ଅନ୍ୱୟଦୀପିକା**—[ସେହି ଅତି ପାପୀ] କ୍ଷିପ୍ରଂ (ଶୀଘ୍ର) ଧର୍ମାତ୍ମା (ଧାର୍ମିକ) ଭବତି (ହୁଏ), ଶଶ୍ୱତ୍ ଶାନ୍ତିଂ (ନିତ୍ୟ ଶାନ୍ତି) ନିଗଚ୍ଛତି (ଲାଭକରେ) [ହେ] କୌନ୍ତେୟ ! ମେ (ଅମ୍ଭ) ଭକ୍ତଃ ( ଭକ୍ତ ) ନ ପ୍ରଣଶ୍ୟତି ( ବିନଷ୍ଟ ହୁଏ ନାହିଁ) [ଏହା] ପ୍ରତିଜାନୀହି (ପ୍ରତିଜ୍ଞା କରି କହ) ।

**ଅନୁବାଦ**—ସେହି ଅତିଦୁରାଚାର ଲୋକ ଶୀଘ୍ର ଧର୍ମପରାୟଣ ହୁଏ ଏବଂ ନିତ୍ୟଶାନ୍ତି ଉପଭୋଗ କରେ । ହେ କୌନ୍ତେୟ ତୁମ୍ଭେ ପ୍ରତିଜ୍ଞା କରି କହ—ଅମ୍ଭ ଭକ୍ତ କେବେହେଁ ବିନଷ୍ଟ ହୁଏ ନାହିଁ ।

**ସୁବୋଧିନୀ ଟୀକା**—ନନୁ କଥଂ ସମୀଚୀନାଧ୍ୟବସାୟମାତ୍ରେଣ ସାଧୁର୍ମନ୍ତବ୍ୟଃ ? ତତ୍ରାହ କ୍ଷିପ୍ରମିତି । ସୁଦୁରାଚାରୋଽପି ମାଂ ଭଜନ୍ ଶୀଘ୍ରଂ ଧର୍ମ-ଚିତ୍ତୋ ଭବତି । ତତଶ୍ଚ ଶଶ୍ୱଚ୍ଛାନ୍ତିଂ ଚିତ୍ତୋପଶମଲବୋପରମରୂପାଂ ପରମେଶ୍ୱର-ନିଷ୍ଠାଂ ନିତରାଂ ଗଚ୍ଛତି ପ୍ରାପ୍ନୋତି । କୁତାର୍କିକକର୍କଶବାଦିନୋ ନୈତନ୍ମନ୍ୟେରନ୍ନିତି

ଣଙ୍କାକୁଳମର୍ଜୁନଂ ପ୍ରୋତ୍ସାହୟନ୍ନାହ—ହେ କୌନ୍ତେୟ ପଟହାଦମହାଘୋଷ-ପୂର୍ବକଂ ବିବଦମାନାନାଂ ସଭାଂ ଗତ୍ୱା ବାହୂମୁତ୍କ୍ଷିପ୍ୟ ନିଃଶଙ୍କଂ ପ୍ରତିଜାନୀହି । ପ୍ରତିଜ୍ଞାଂ କୁରୁ । କଥଂ ? ମେ ପରମେଶ୍ୱରସ୍ୟ ଭକ୍ତଃ ସୁଦୁରାଚାରୋଽପି ନ ପ୍ରଣଶ୍ୟତି। ଅପି ତୁ କୃତାର୍ଥ ଏବ ଭବତୀତି । ତତଶ୍ଚ ତେ ତ୍ୱାଂ ପ୍ରୌଢ଼ିବିଜୃମ୍ଭବିଧ୍ୱଂସିତ-କୁତର୍କାଃ ସନ୍ତୋ ନିଃସଂଶୟଂ ତ୍ୱାମେବ ଗୁରୁତ୍ୱେନାଶ୍ରୟେରନ୍ ।"

**ବିବୃତି**—ପୂର୍ବଶ୍ଳୋକରେ କୁହାଯାଇଅଛି ମହାପାପୀ ଯେବେ ଭଗବାନଙ୍କର ଏକାନ୍ତ ଶରଣାଗତ ହୋଇ ଭଜନା କରେ ସେ ସାଧୁ ହୋଇଯାଏ । ସାଧାରଣତଃ ପାପକଲେ ପ୍ରାୟଶ୍ଚିତ୍ତ ଦ୍ୱାରା ତହିଁରୁ ନିଷ୍କୃତି ହୋଇଥାଏ, କିନ୍ତୁ ମହାପାପୀ ଈଶ୍ୱରଭକ୍ତ ହେଲେ ତାକୁ ଅନ୍ୟ ପ୍ରାୟଶ୍ଚିତ୍ତ କରିବାକୁ ହୁଏ ନାହିଁ । ସେହି ପରମପାବନ ଶ୍ରୀହରିଙ୍କ ଧ୍ୟାନରେ ଓ ନାମ ସ୍ମରଣରେ ତାହାର ସମସ୍ତ ପାପ କ୍ଷାଳିତ ହୋଇଯାଏ । ପାପ କ୍ଷାଳନ ପରେ ସେ ନିତ୍ୟଶାନ୍ତି ଉପଭୋଗ କରିଥାଏ । ଶାସ୍ତ୍ରରେ ଉକ୍ତ ଅଛି—

"ଅତି ପାପପ୍ରସକ୍ତୋଽପି ଧ୍ୟାୟନ୍ନିମିଷମଚ୍ୟୁତମ୍ ,
ଭୂୟସ୍ତପସ୍ୱୀ ଭବତି ପଂକ୍ତିପାବନପାବନଃ ।"

ଅର୍ଥାତ୍ ଅତି ପାପରେ ଯେଉଁ ଲୋକ ଆସକ୍ତ ଥାଏ, ନିର୍ମଳ ଚିତ୍ତରେ ସେ ମୁହୂର୍ତ୍ତିକ ପାଇଁ ଭଗବାନଙ୍କୁ ଧ୍ୟାନ କଲେ ତପସ୍ୱୀ ବୋଲି ପରିଚିତ ହୁଏ ଏବଂ ସେ ଯେଉଁ ସମାଜରେ ବସେ ସେ ସମାଜ ମଧ୍ୟ ପବିତ୍ର ହୋଇଯାଏ ।

ଭକ୍ତି ଯଥାର୍ଥତଃ ସ୍ପର୍ଶମଣି ପରି । ସ୍ପର୍ଶମଣି ଲାଗିଲେ ଯେପରି ଲୌହଖଣ୍ଡ ନିମେଷକମଧ୍ୟରେ ସୁବର୍ଣ୍ଣରେ ପରିଣତ ହୋଇଯାଏ, ସେହିପରି ଭକ୍ତିର ଉଦ୍ରେକରେ ମନୁଷ୍ୟ ମୁହୂର୍ତ୍ତିକ ମଧ୍ୟରେ ପବିତ୍ର ହୋଇଯାଏ । ସୂର୍ଯ୍ୟରଶ୍ମି ଯେପରି ରାତ୍ରିର ଅନ୍ଧକାର ନାଶକରି ଜଗତକୁ ଉଦ୍ଭାସିତ କରେ, ମେଘାବରଣ ଅପସୃତ ହୋଇ ଗଲେ ଯେପରି ଜ୍ୟୋତ୍ସ୍ନାର ବିମଳ ରଶ୍ମିରେ ଚରାଚର ଆନନ୍ଦମୟ ହୋଇ ଉଠେ, ସେହିପରି ଭକ୍ତିରସର ପ୍ରବାହରେ ଜୀବନ ମଧୁମୟ ହୋଇଯାଏ । ସଦ୍‌ଗ୍ରନ୍ଥ ପାଠ, ମହାପୁରୁଷ ସଂସର୍ଗରେ ଏହା ଲବ୍ଧ ହୋଇଥାଏ । ସାଧୁସଙ୍ଗ ଏଥିପାଇଁ ବିଶେଷ ଲୋଡ଼ା । ସାଧୁଲୋକ ସ୍ପର୍ଶ ଦ୍ୱାରା ଏହି ଭକ୍ତିରସ ହୃଦୟରେ ପ୍ରବାହିତ କରିପାରନ୍ତି, ଏପରିକି ତାଙ୍କ ଇଚ୍ଛାରେ ମଧ୍ୟ ଭକ୍ତିର ପ୍ରବାହ ହୃଦୟରେ ଉଦ୍‌ବେଳିତ ହୋଇ ଉଠେ ।

ଏ ଶ୍ଳୋକର ଶେଷାର୍ଦ୍ଧରେ ଭଗବାନ୍ କହୁଅଛନ୍ତି, 'କୌନ୍ତେୟ ପ୍ରତି-ଜାନୀହି ନମେ ଭକ୍ତଃ ପ୍ରଣଶ୍ୟତି' ଶ୍ରୀଧର ସ୍ୱାମୀ ଏହାର ବ୍ୟାଖ୍ୟାରେ କହୁଅଛନ୍ତି, 'ହେ ଅର୍ଜୁନ, ତୁମେ ଉଚ୍ଚ ସ୍ୱରରେ ଡେଙ୍ଗୁରା ପିଟି ବିରୁଦ୍ଧବାଦୀମାନଙ୍କ ସଭାକୁ

ମାଂ ହି ପାର୍ଥ ବ୍ୟପାଶ୍ରିତ୍ୟ ଯେଽପି ସ୍ୟୁଃ ପାପଯୋନୟଃ ।
ସ୍ତ୍ରିୟୋ ବୈଶ୍ୟାସ୍ତଥା ଶୂଦ୍ରାସ୍ତେଽପି ଯାନ୍ତି ପରାଂ ଗତିମ୍ ॥ ୩୨ ॥

ଯାଇ ବାହୁ ଉତ୍ତୋଳନପୂର୍ବକ ଉଚ୍ଚୈଃସ୍ୱରରେ ପ୍ରତିଜ୍ଞା କରି କହ—'ଭଗବାନଙ୍କ ଭକ୍ତ କେବେହେଁ ନଷ୍ଟ ହେବେ ନାହିଁ ।'

**୩୨ । ଅନ୍ୱୟଦୀପିକା**—[ହେ] ପାର୍ଥ, ଯେ ଅପି (ଯେଉଁମାନେ ବି) ପାପଯୋନୟଃ (ପାପଯୋନିସମ୍ଭୂତ) ସ୍ୟୁଃ (ହୁଅନ୍ତି); [ଆଉ ଯେଉଁମାନେ ବି] ସ୍ତ୍ରିୟଃ (ସ୍ତ୍ରୀ ଜାତି) ବୈଶ୍ୟାଃ (ବୈଶ୍ୟଜାତି), ଶୂଦ୍ରାଃ (ଶୂଦ୍ର ଜାତି); ତେ ଅପି (ସେମାନେ ମଧ୍ୟ) ମାଂ (ଆମ୍ଭଙ୍କୁ) ବ୍ୟପାଶ୍ରିତ୍ୟ (ଆଶ୍ରୟ କରି) ପରାଂ ଗତିଂ (ପରମଗତି) ହି ଯାନ୍ତି (ନିଶ୍ଚୟ ପ୍ରାପ୍ତ ହୁଅନ୍ତି) ।

**ଅନୁବାଦ**—ହେ ପାର୍ଥ, ଯେଉଁମାନେ ପାପଯୋନିସମ୍ଭୂତ ଅନ୍ତ୍ୟଜ ଜାତି, ଆଉ ଯେଉଁମାନେ ସ୍ତ୍ରୀ, ବୈଶ୍ୟ ବା ଶୂଦ୍ର ଜାତି ସେମାନେ ମଧ୍ୟ ଆମ୍ଭ ଆଶ୍ରୟ କଲେ ପରମଗତି ପ୍ରାପ୍ତ ହୁଅନ୍ତି ।

**ସୁବୋଧିନୀ ଟୀକା**—ସ୍ୱାଚାରଭ୍ରଷ୍ଟଂ ମଦ୍‌ଭକ୍ତଃ ପବିତ୍ରୀକରୋତୀତି କିମତ୍ର ଚିତ୍ରଂ ? ଯତୋ ମଦ୍‌ଭକ୍ତିର୍ଦୁଷ୍କୁଲାନପ୍ୟନଧିକାରିଣୋଽପି ସଂସାରାନ୍ମୋଚୟତୀତ୍ୟାହ । ମାଂ ହୀତି ଯେଽପି ପାପଯୋନୟଃ ସ୍ୟୁର୍ନିକୃଷ୍ଟଜନ୍ମାନୋଽନ୍ତ୍ୟଜାଦୟୋ ଭବେୟୁଃ । ଯେଽପି ବୈଶ୍ୟାଃ, କେବଲଂ କୃଷ୍ୟାଦି ନିରତାଃ ସ୍ତ୍ରିୟଃ ଶୂଦ୍ରାଶ୍ଚାପ୍ୟଧ୍ୟୟନାଦିରହିତାଃ । ତେଽପି ମାଂ ବ୍ୟପାଶ୍ରିତ୍ୟ ସଂସେବ୍ୟ ପରାଂ ଗତିଂ ଯାନ୍ତି । ହି ନିଶ୍ଚିତଂ ।

**ବିବୃତି**—ଏ ଶ୍ଳୋକରେ 'ପାପଯୋନି' ଶବ୍ଦ ସ୍ତ୍ରୀ, ବୈଶ୍ୟ ଓ ଶୂଦ୍ରର ବିଶେଷଣ ନୁହେ । ଏହାର ଅର୍ଥ ନୀଚକୁଳସମ୍ଭୂତ । ଆଜିକାଲି ରାଜବିଧିରେ ଯେଉଁମାନେ ଅପରାଧୀ ଜାତି ବା Criminal Tribes ସେହିମାନଙ୍କୁ 'ପାପଯୋନି' ଶବ୍ଦରେ ଅଭିହିତ କରାଯାଇଅଛି । ଏ ଜାତୀୟ ଲୋକମାନେ ହିଁ ଭଗବଦ୍‌ଭକ୍ତିବଳରେ ମୁକ୍ତିଲାଭ କରିପାରନ୍ତି—ଏହାହିଁ ଏଠାରେ ବିବକ୍ଷିତ ।

ଭାଗବତ ପୁରାଣରେ ଉକ୍ତ ଅଛି:—

ସ୍ତ୍ରୀଶୂଦ୍ର ଦ୍ୱିଜବନ୍ଧୁନାଂ ତ୍ରୟୀ ନ ଶ୍ରୁତିଗୋଚରା
କର୍ମ ଶ୍ରେୟସି ମୂଢ଼ାନାଂ ଶ୍ରେୟ ଏବଂ ଭବେଦିହ,
ଇତି ଭାରତମାଖ୍ୟାନଂ କୃପୟା ମୁନିନାକୃତମ୍ ।

"ସ୍ତ୍ରୀ ଲୋକ, ଶୂଦ୍ର ଅଥବା କଳିଯୁଗରେ ଯେଉଁମାନେ ନାମତଃ ବ୍ରାହ୍ମଣ, ବେଦ ସେମାନଙ୍କ ଶ୍ରୁତିଗୋଚର ହୁଏ ନାହିଁ, ଏହି ହେତୁରୁ ସେମାନଙ୍କୁ ମୂର୍ଖତାଦୋଷରୁ ରକ୍ଷା କରିବା ପାଇଁ ମହାମୁନି ବ୍ୟାସଦେବ କୃପାପରବଶ

କିଂ ପୁନର୍ବ୍ରାହ୍ମଣାଃ ପୁଣ୍ୟା ଭକ୍ତା ରାଜର୍ଷୟସ୍ତଥା ।
ଅନିତ୍ୟମସୁଖଂ ଲୋକମିମଂ ପ୍ରାପ୍ୟ ଭଜସ୍ୱ ମାମ୍ । ୩୩ ।

ହୋଇ ସେମାନଙ୍କ କଲ୍ୟାଣ ନିମିତ୍ତ ମହାଭାରତ (ଗୀତା ସହିତ) ରଚନା କଲେ ।" ଭଗବଦ୍‌ଭକ୍ତିର ଏହି ଶ୍ରେଷ୍ଠତା ଏ ଦେଶର ଧର୍ମର ଇତିହାସରୁ ସମସ୍ତେ ଜାଣନ୍ତି । ଆମ ଓଡ଼ିଆରେ 'ଦାର୍ଢ୍ୟତା ଭକ୍ତି' ନାମରେ ଯେଉଁ ଭକ୍ତମାଳାଗ୍ରନ୍ଥ ଖଣ୍ଡି ଅଛି ସେଥିରେ ଏଭଳି ଶତଶତ ଲୋକଙ୍କର ମୁକ୍ତିର ଦୃଷ୍ଟାନ୍ତ ସରଳସୁନ୍ଦର ଭାଷାରେ ବର୍ଣ୍ଣିତ ହୋଇଅଛି । ସମସ୍ତେ ଜ୍ଞାନଯୋଗ ଆଚରଣ କରି ମୁକ୍ତିର ଅଧିକାରୀ ହୋଇ ପାରନ୍ତି ନାହିଁ କିନ୍ତୁ ଭକ୍ତିଯୋଗରେ ସମସ୍ତଙ୍କର ଅଧିକାର ଅଛି—ଏହା ହିଁ ଏ ଶ୍ଳୋକର ତାତ୍ପର୍ଯ୍ୟ ।

୩୩ । **ଅନ୍ୱୟ ଦୀପିକା**—ପୁଣ୍ୟାଃ (ପବିତ୍ର) ବ୍ରାହ୍ମଣାଃ (ବ୍ରାହ୍ମଣମାନେ) ତଥା ଭକ୍ତାଃ ରାଜର୍ଷୟଃ (ଏବଂ ଭକ୍ତ ରାଜର୍ଷିମାନେ) [ପରମଗତି ଯେ ପ୍ରାପ୍ତ ହେବେ] କିଂ ପୁନଃ (ତହିଁରେ ଆଉ କଥା କଅଣ ?), [ଅତଏବ ତୁମ୍ଭେ] ଅନିତ୍ୟମ୍ (ଅସ୍ଥାୟୀ) ଅସୁଖମ୍ (ସୁଖଶୂନ୍ୟ) ଇମଂ ଲୋକଂ (ଏହି ମର୍ତ୍ତ୍ୟ ଲୋକକୁ) ପ୍ରାପ୍ୟ (ପାଇ) ମାଂ ଭଜସ୍ୱ (ଆମ୍ଭ ଭଜନା କର) ।

**ଅନୁବାଦ**—ପୁଣ୍ୟାତ୍ମା ବ୍ରାହ୍ମଣ ଏବଂ ଭକ୍ତ ରାଜର୍ଷି କ୍ଷତ୍ରିୟମାନଙ୍କର କଥା ବା କଅଣ କହିବି ? ତୁମ୍ଭେ ଏହି ଅନିତ୍ୟ ଓ ସୁଖଲେଶଶୂନ୍ୟ ମର୍ତ୍ତ୍ୟଲୋକରେ ଅଛ, ତେଣୁ ଆମ୍ଭ ଭଜନା କର ।

**ସୁବୋଧିନୀ ଟୀକା**—ଯଦୈବଂ ତଦା ସତ୍‌କୁଳାଃ ସଦାଚାରାସ୍ତ ମଦ୍‌ଭକ୍ତାଃ ପରାଂ ଗତିଂ ଯାନ୍ତୀତି, କିଂ ବକ୍ତବ୍ୟମିତ୍ୟାହ—କିଂ ପୁନରିତି । ପୁଣ୍ୟାଃ ସୁକୃତିନୋ ବ୍ରାହ୍ମଣାଃ, ତଥା ରାଜାନଶ୍ଚ ଋଷୟଶ୍ଚ କ୍ଷତ୍ରିୟାଃ ଏବଂଭୂତାଃ ପରାଂ ଗତିଂ ଯାନ୍ତୀତି କିଂ ପୁନର୍ବକ୍ତବ୍ୟମିତ୍ୟର୍ଥଃ । ଅତସ୍ତ୍ୱମିମଂ ରାଜର୍ଷିରୂପଂ ଦେହଂ ପ୍ରାପ୍ୟ ଲବ୍ଧ୍ୱା ମାଂ ଭଜସ୍ୱ । କସ୍ମାଦନିତ୍ୟମଧ୍ରୁବମସୁଖଂ ସୁଖରହିତଂ ଚେମଂ ମର୍ତ୍ତ୍ୟଲୋକଂ ପ୍ରାପ୍ୟାନିତ୍ୟତ୍ୱାଦ୍‌ବିଲମ୍ବମକୁର୍ବନ୍ନସୁଖତ୍ୱାଚ୍ଚ ସୁଖାର୍ଥମୁଦ୍ୟମଂ ହିତ୍ୱା ମାମେବ ଭଜସ୍ୱେତ୍ୟର୍ଥଃ ।

**ବିବୃତି**—ନାମରୂପାତ୍ମକ ଏହି ଦୃଶ୍ୟଜଗତ୍ ଅନିତ୍ୟ ଓ ଦୁଃଖପୂର୍ଣ୍ଣ, ଜନବାସୀମାନଙ୍କର ଏହି ମତକୁ ବ୍ୟବହାରଦୃଷ୍ଟିରେ ଭଗବାନ୍ ଏଠାରେ ସମର୍ଥନ କଲେ । ଏ ବର୍ଣ୍ଣନା ଭକ୍ତିଦୃଷ୍ଟିରେ କରାଯାଇଅଛି—ଏହା କହିବାର ତାତ୍ପର୍ଯ୍ୟ ଏହି ଯେ ଏଠାରେ ଭଗବାନ୍ 'ପରମାତ୍ମା' ବା 'ପରବ୍ରହ୍ମ' ପଦର ପ୍ରୟୋଗ ନ କରି 'ଆମ୍ଭଙ୍କୁ ଭଜନାକର'—ଏହିପରି କହିବା ଦ୍ୱାରା ଭକ୍ତିର ମୂଳମନ୍ତ୍ର ବ୍ୟକ୍ତିରୂପକୁ ହିଁ ଲକ୍ଷ୍ୟ କରିଅଛନ୍ତି ।

ମନ୍ମନା ଭବ ମଦ୍‌ଭକ୍ତୋ ମଦ୍‌ଯାଜୀ ମାଂ ନମସ୍କୁରୁ ।
ମାମେବୈଷ୍ୟସି ଯୁକ୍ତ୍ୱୈବମାତ୍ମାନଂ ମତ୍ପରାୟଣଃ ॥ ୩୪ ॥

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନ ସଂବାଦେ ରାଜବିଦ୍ୟାରାଜଗୁହ୍ୟଯୋଗୋ ନାମ ନବମୋଽଧ୍ୟାୟଃ ।

୩୪ । **ଅନ୍ୱୟଦୀପିକା**—ମନ୍ମନାଃ (ମଦଗତ ଚିତ୍ତ), ମଦ୍‌ଭକ୍ତଃ (ଆମ୍ଭର ଭକ୍ତ) ଭବ (ହୁଅ), ମଦ୍‌ଯାଜୀ (ଆମ୍ଭର ପୂଜନଶୀଳ) ମାଂ ନମସ୍କୁରୁ (ଆମ୍ଭଙ୍କୁ ନମସ୍କାର କର), [ଏହିପରି] ମତ୍ପରାୟଣଃ (ଆମ୍ଭ ଶରଣାଗତ ହୋଇ) ଆତ୍ମାନଂ (ଅନ୍ତଃକରଣକୁ) ଯୁକ୍ତ୍ୱା (ଆମ୍ଭଠାରେ ସମାହିତ କରି) ମାମ୍ ଏବ ଏଷ୍ୟସି (ଆମ୍ଭଙ୍କୁ ପ୍ରାପ୍ତ ହେବ) ।

**ଅନୁବାଦ**—ତୁମ୍ଭେ ସବୁବେଳେ ଆମ୍ଭଠାରେ ମନ ଲଗାଅ; ଆମ୍ଭଙ୍କୁ ଭକ୍ତି କର, ଆମ୍ଭର ପୂଜାକର ଏବଂ ଆମ୍ଭଙ୍କୁ ନମସ୍କାର କର । ଏହିପରି ଆମ୍ଭର ଶରଣାଗତ ହୋଇ ଅନ୍ତଃକରଣକୁ ଆମ୍ଭଠାରେ ସମାହିତ କରିପାରିଲେ ଆମ୍ଭଙ୍କୁ ପାଇବ ।

**ସୁବୋଧିନୀ ଟୀକା**—ଭଜନାପ୍ରକାରଂ ଦର୍ଶୟନ୍ନୁପସଂହରତି—ମନ୍ମନା ଇତି । ମୟ୍ୟେବ ମନୋ ଯସ୍ୟ ସ ମନ୍ମନାଃ । ତାଦୃଶସ୍ତ୍ୱଂ ଭବ । ତଥା ମମୈବ ଭକ୍ତଃ ସେବକୋ ଭବ । ମଦ୍‌ଯାଜୀ ମତ୍ପୂଜନଶୀଳୋ ଭବ, ମାମେବ ଚ ନମସ୍କୁରୁ । ଏବମେଭିଃ ପ୍ରକାରୈର୍ମତ୍ପରାୟଣଃ ସନ୍ନାତ୍ମାନଂ ମନୋ ମୟି ଯୁକ୍ତ୍ୱା ସମାଧାୟ ମାମେବ ପରମାନନ୍ଦରୂପମେଷ୍ୟସି ପ୍ରାପ୍ସ୍ୟସି ।

ନିଜୈଶ୍ୱର୍ୟ୍ୟମାହାତ୍ମ୍ୟଂ ଭକ୍ତେଶ୍ଚାଦ୍ଭୁତବୈଭବମ୍,
ନବମେ ରାଜଗୁହ୍ୟାଖ୍ୟେ କୃପୟାବୋଚଦଚ୍ୟୁତଃ ।

**ବିବୃତି**—ଭଗବାନଙ୍କର ଏକାନ୍ତ ଶରଣାଗତ ହୋଇ ତାଙ୍କ ଦାସରୂପେ ସଂସାର ସମସ୍ତ କର୍ତ୍ତବ୍ୟ କରିବା—ଏହାହିଁ ଏ ଅଧ୍ୟାୟର ଶେଷ ଉପଦେଶ; ଏକାଦଶ ଅଧ୍ୟାୟ ଶେଷରେ ଏହାର ହିଁ ପୁନରାବୃତ୍ତି ହୋଇଅଛି । ଗୀତାର ଏହି ରହସ୍ୟ ଥରେ ଅଧ୍ୟାତ୍ମ ଦୃଷ୍ଟିରେ ଓ ଥରେ ଭକ୍ତିଦୃଷ୍ଟିରେ ବ୍ୟାଖ୍ୟା କରାଯାଇଅଛି ।

---

# ନବମ ଅଧ୍ୟାୟର ସାର ସଂକଳନ

ଅଷ୍ଟମ ଅଧ୍ୟାୟରେ ଯେଉଁ ନିର୍ଗୁଣ ବ୍ରହ୍ମତତ୍ତ୍ୱର ଉପଦେଶ ଦିଆଯାଇଅଛି; ଭକ୍ତିଦ୍ୱାରା ତାହା ଯେ ଲଭ୍ୟ—ଏହା ସେହି ଅଧ୍ୟାୟର ୨୨ଶ ଶ୍ଳୋକରେ ଭଗବାନ୍ ବୁଝାଇ ଅଛନ୍ତି । ଏ ଅଧ୍ୟାୟରେ ବିଶେଷ ଭାବରେ ସେହି ଭକ୍ତିଯୋଗର ବ୍ୟାଖ୍ୟା କରିବା ପୂର୍ବରୁ ଭଗବାନ୍ ପ୍ରଥମେ ନିଜର ଅସାଧାରଣ ଯୋଗସାମର୍ଥ୍ୟ ଏବଂ ସର୍ବବ୍ୟାପିତ୍ୱ କଥା କହି ଜଗତର ସୃଷ୍ଟି ସଂହାର ବିଷୟ ବର୍ଣ୍ଣନା କରି ଅଛନ୍ତି । ନିର୍ଗୁଣ ଓ ସଗୁଣ ଭାବରେ ଭଗବାନଙ୍କର ଦୁଇଟି ସ୍ୱଭାବ । ନିର୍ଗୁଣ ସ୍ୱଭାବରେ ସେ ନିଃସଙ୍ଗ, କାହିଁରେ ଲିପ୍ତ ନୁହନ୍ତି । ବ୍ୟକ୍ତ ବା ସଗୁଣସ୍ୱଭାବରେ ସେ ଜୀବମାନଙ୍କର ଗତି, ଭର୍ତ୍ତା, ଶରଣ ଓ ସୁହୃଦ୍ । ସଂସାରରେ ଅନେକ ଅସୁର ସ୍ୱଭାବଧାରୀ ଲୋକ ଅଛନ୍ତି; ସେମାନେ ମନୁଷ୍ୟ ସମାଜର ମଙ୍ଗଳ ଉଦ୍ଦେଶ୍ୟରେ ବ୍ୟକ୍ତ ରୂପ ଧାରଣ କରିଥିବା ଭଗବାନଙ୍କୁ ଅବଜ୍ଞା କରନ୍ତି ମାତ୍ର ଦେବସ୍ୱଭାବପନ୍ନ ମନୁଷ୍ୟମାନେ ତାଙ୍କୁ ଚିହ୍ନି ପାରି ତାଙ୍କ ପ୍ରତି ଭକ୍ତିଯୁକ୍ତ ହୁଅନ୍ତି । କେହି ଜ୍ଞାନ ବଳରେ ତାଙ୍କର ସର୍ବବ୍ୟାପିତ୍ୱ ବୁଝିପାରି ତାଙ୍କୁ ଅଦ୍ୱୈତ ଭାବରେ କେହି ବା ଦ୍ୱୈତଭାବରେ ଆରାଧନା କରି ଥାଆନ୍ତି । ଯେ ଯେଉଁ ଭାବରେ ଉପାସନା କରନ୍ତି ସେଭାବରେ ସେ ତାଙ୍କୁ ପାଆନ୍ତି, କାରଣ ଭଗବାନ୍ ବିଶ୍ୱତୋମୁଖ । ଯେଉଁମାନେ ସ୍ୱର୍ଗଲାଭ କାମନାରେ ବେଦୋକ୍ତ ଯଜ୍ଞାଦିର ଅନୁଷ୍ଠାନ କରନ୍ତି ସେମାନେ ସ୍ୱର୍ଗଲାଭ କରନ୍ତି, କିନ୍ତୁ ମୋକ୍ଷଲାଭ କରିପାରନ୍ତି ନାହିଁ । ସେହି ସକାମ ଭକ୍ତମାନେ ସ୍ୱର୍ଗ ସୁଖ ଶେଷରେ ପୁଣି ମର୍ତ୍ତ୍ୟଲୋକରେ ଜନ୍ମଗ୍ରହଣ କରନ୍ତି । ଯେଉଁମାନେ ଏକାନ୍ତ ଭକ୍ତିଯୁକ୍ତ ଚିତ୍ତରେ ଏକମାତ୍ର ଭଗବାନଙ୍କର ଶରଣାପନ୍ନ ହୋଇ ତାଙ୍କୁ ଚିନ୍ତା କରନ୍ତି, ଭଗବାନ ସଂସାରରେ ସେମାନଙ୍କର କୌଣସି ଅଭାବ ରଖନ୍ତି ନାହିଁ । ଏପରି ଅବସ୍ଥାରେ ଅନ୍ୟ ଦେବତାଙ୍କ ଉପାସନାର ପ୍ରୟୋଜନ ହୁଏ ନାହିଁ ।

ଯାଗଯଜ୍ଞାଦି କ୍ରିୟା କଳାପ ବହୁ ବ୍ୟୟସାଧ୍ୟ ଏବଂ ନାନାବିଧ ବିଧିବ୍ୟବସ୍ଥା-ଯୁକ୍ତ । ଅଙ୍ଗହାନି ହେଲେ ଅନେକ ସମୟରେ ତାହା ସଫଳ ହୁଏ ନାହିଁ । କିନ୍ତୁ ଭକ୍ତିରେ ଭଗବାନଙ୍କୁ ଲାଭକରିବା ସହଜସାଧ୍ୟ; ଭକ୍ତ ପ୍ରଦତ୍ତ ଅନାୟାସଲବ୍ଧ ପତ୍ର, ପୁଷ୍ପ, ଫଳ, ଜଳ ଭଗବାନ ଆନନ୍ଦରେ ଗ୍ରହଣ କରନ୍ତି । ତେଣୁ ଭଗବାନ ଦ୍ରବ୍ୟ ପାଇଁ ବ୍ୟାକୁଳ ନୁହନ୍ତି, ସେ ଲୋକର ହୃଦୟର ଭାବ ପାଇଁ ବ୍ୟାକୁଳ । ତେଣୁ ଭକ୍ତ ଯାହା କରେ, ଖାଏ, ଦିଏ ସେ ସମସ୍ତ ଭଗବାନଙ୍କଠାରେ ଅର୍ପଣ କରି କର୍ମବନ୍ଧନରୁ ମୁକ୍ତି ପାଏ ।

ନିତାନ୍ତ ଦୁରାଚାର, ଅଧମ, ପାଷଣ୍ଡ ଯେବେ ଭକ୍ତିପୂର୍ଣ୍ଣ ଚିତ୍ତରେ ଭଗବାନଙ୍କୁ ଡାକେ, ତେବେ ସେ ପାପରୁ ମୁକ୍ତ ହୋଇ ତାଙ୍କ ଅନୁଗ୍ରହ ଲାଭ କରିଥାଏ । ତେଣୁ ଭକ୍ତି ସ୍ପର୍ଶମଣି ପରି । ତାହା ଯେଉଁ ଲୋକର ହୃଦୟକୁ ସ୍ପର୍ଶକରେ ତାହାକୁ ସ୍ୱର୍ଗୀୟ ଆନନ୍ଦରେ ପୂର୍ଣ୍ଣ କରିଦିଏ । ଏହି ଭକ୍ତିଲାଭ କରିବାକୁ ହେଲେ ସାଧୁସଙ୍ଗ ଲୋଡ଼ା । ସାଧୁ ସଜ୍ଜନଙ୍କ ସଂସର୍ଗରେ ହୃଦୟରେ ସ୍ୱତଃ ମହାଭାବର ଉଦ୍ରେକ ହୋଇଥାଏ । ଅତଏବ ସଜ୍ଜନ ସଂସର୍ଗରେ ରହି ମନୁଷ୍ୟ ସର୍ବଦା ତାଙ୍କୁ ନମସ୍କାର କରି, ତାଙ୍କର ପୂଜା କରି ଅନ୍ତଃକରଣକୁ ତାଙ୍କଠାରେ ସମାହିତ କରି ପାରିଲେ ତାହାର ଜୀବନ-ଧାରଣ ସାର୍ଥକ ହୁଏ ।

ଗୀତୋକ୍ତ ଭକ୍ତି ଜ୍ଞାନମୂଳକ, ଜ୍ଞାନ ବଳରେ ସର୍ବତ୍ର ଈଶ୍ୱରଙ୍କ ଅସ୍ତିତ୍ୱ ଉପଲବ୍ଧି କରିପାରିଲେ ଲୋକର ହୃଦୟ ସ୍ୱତଃ ଈଶ୍ୱରାଭିମୁଖୀ ହୋଇଥାଏ । ତେଣୁ ଏ ଅଧ୍ୟାୟ ପ୍ରଥମ ଅଂଶରେ ଜ୍ଞାନଦୃଷ୍ଟିରେ ଈଶ୍ୱରଙ୍କ ସର୍ବବ୍ୟାପିତ୍ୱ ପ୍ରଭୃତି ବର୍ଣ୍ଣନ କରି ପରେ ଭକ୍ତିଦୃଷ୍ଟିରେ କିପରି ଈଶ୍ୱରପରାୟଣ ହେବାକୁ ହୁଏ ତାହା କୁହାଯାଇଅଛି । ଜ୍ଞାନ ବଳରେ ଈଶ୍ୱରଙ୍କୁ କେବଳ ବୁଦ୍ଧିମାନ୍ ଲୋକମାନେହିଁ ପାଇ ଥାଆନ୍ତି, ମାତ୍ର ଭକ୍ତିର ଦ୍ୱାର ମୂର୍ଖ, ପଣ୍ଡିତ, ସ୍ତ୍ରୀ ସମସ୍ତଙ୍କ ପାଇଁ ଉନ୍ମୁକ୍ତ । ଭକ୍ତିର ଅନ୍ୟାନ୍ୟ ଲକ୍ଷଣ ସହିତ ଏହି ଉଦାରତାର ବର୍ଣ୍ଣନା ନବମ ଅଧ୍ୟାୟର ବିଶେଷତ୍ୱ ।

---

# ଦ୍ୱିତୀୟୋଭାଗଃ

## ଦଶମୋଽଧ୍ୟାୟଃ

### ବିଭୂତିଯୋଗଃ

ଶ୍ରୀ ଭଗବାନୁବାଚ

ଭୂୟ ଏବ ମହାବାହୋ ଶୃଣୁ ମେ ପରମଂ ବଚଃ ।
ଯତ୍ତେଽହଂ ପ୍ରୀୟମାଣାୟ ବକ୍ଷ୍ୟାମି ହିତକାମ୍ୟୟା । ୧ ।

୧ । ଅନ୍ୱୟ ଦୀପିକା—ଶ୍ରୀ ଭଗବାନ୍ ଉବାଚ ( ଶ୍ରୀ ଭଗବାନ୍ କହିଲେ ):—[ ହେ ] ମହାବାହୋ, ଭୂୟଃ ଏବ (ପୁନର୍ବାର) ମେ (ଆମ୍ଭର ) ପରମଂ ବଚଃ ( ଉତ୍କୃଷ୍ଟ ବଚନ ) ଶୃଣୁ ( ଶ୍ରବଣ କର ), ଯତ୍ ( ଯାହା ) ପ୍ରୀୟମାଣାୟ ( ପ୍ରୀତିମାନ୍ ) ତେ ( ତୁମ୍ଭଙ୍କୁ ) ଅହଂ ( ଆମ୍ଭେ ) ହିତକାମ୍ୟୟା ( ମଙ୍ଗଳ କାମନାରେ ) ବକ୍ଷ୍ୟାମି ( କହିବୁଁ ) ।

ଅନୁବାଦ—ଭଗବାନ୍ କହିଲେ,—ହେ ମହାବାହୁ, ଆମ୍ଭ କଥା ଶୁଣି ତୁମ୍ଭେ ପ୍ରୀତି ଲାଭ କରୁଅଛ, ତୁମ ହିତପାଇଁ ଆମ୍ଭେ ପୁନର୍ବାର ଭଲ କଥା କହୁଅଛୁଁ ; ତାହା ଶୁଣ ।

ସୁବୋଧିନୀ ଟୀକା—

ଉକ୍ତାଃ ସଂକ୍ଷେପତଃ ପୂର୍ବଂ ସପ୍ତମାଦୌ ବିଭୂତୟଃ ।
ଦଶମେ ତା ବିତନ୍ୟନ୍ତେ ସର୍ବେଶ୍ୱରବିଭୂତୟେ ।

ଏବଂ ତାବତ୍ ସପ୍ତମାଦିଭିରଧ୍ୟାୟୈଃ ଭଜନୀୟଂ ପରମେଶ୍ୱରତତ୍ତ୍ୱଂ ନିରୂପିତଂ । ତଦ୍‌ବିଭୂତୟଶ୍ଚ ସପ୍ତମେ ରସୋଽହମପ୍‌ସୁ କୌନ୍ତେୟେତ୍ୟାଦିନା ସଂକ୍ଷେପତୋ ଦର୍ଶିତାଃ । ଅଷ୍ଟମେ ଅଧିଯଜ୍ଞୋଽହମେବାତ୍ରେତ୍ୟାଦିନା । ନବମେ ଅହଂ କ୍ରତୁ ରହଂ ଯଜ୍ଞ ଇତ୍ୟାଦିନା । ଇଦାନୀଂ ତା ଏବ ବିଭୂତୟଃ ପ୍ରପଞ୍ଚୟିଷ୍ୟନ୍ ଭକ୍ତେ ଶ୍ରାବଣୀୟତ୍ୱଂ ବର୍ଣ୍ଣୟିଷ୍ୟନ୍ ଭଗବାନୁବାଚ—ଭୂୟ ଏବେତି । ମହାନ୍ତୌ ଯୁଦ୍ଧାଦିସ୍ୱଧର୍ମାନୁଷ୍ଠାନେ ମହତ୍ ପାଣ୍ଡିତ୍ୟଂ ବା କୁଶଳୌ ବାହୂ ଯସ୍ୟ ତଥା ହେ ମହାବାହୋ, ଭୂୟ ଏବ ପୁନରପି ମେ ବଚଃ ଶୃଣୁ. କଥଂଭୂତଂ ? ପରମଂ ପରମାର୍ଥନିଷ୍ଠଂ ମଦ୍‌ବଚନାମୃତେନୈବ ପ୍ରୀତିଂ ପ୍ରାପ୍ନୁବତେ ତେ ତୁଭ୍ୟଂ ହିତକାମ୍ୟୟା ହିତେଚ୍ଛୟା ଯଦହଂ ବକ୍ଷ୍ୟାମି ତତ୍ ।

ନମେ ବିଦୁଃ ସୁରଗଣାଃ ପ୍ରଭବଂ ନ ମହର୍ଷୟଃ ।
ଅହମାଦିର୍ହି ଦେବାନାଂ ମହର୍ଷୀଣାଂ ଚ ସର୍ବଶଃ ।୨।
ଯୋ ମା ମଜ ମନାଦିଂ ଚ ବେତ୍ତି ଲୋକମହେଶ୍ୱରମ୍ ।
ଅସମ୍ମୂଢ଼ଃ ସ ମର୍ତ୍ତ୍ୟେଷୁ ସର୍ବପାପୈଃ ପ୍ରମୁଚ୍ୟତେ ।୩।

ବିବୃତି—ପୂର୍ବ ଅଧ୍ୟାୟରୁ ଭଗବାନଙ୍କ ଉପାସନା ପାଇଁ ବ୍ୟକ୍ତ ସ୍ୱରୂପର ବର୍ଣ୍ଣନା ଆରମ୍ଭ ହୋଇଅଛି । ସପ୍ତମ ଓ ଅଷ୍ଟମ ଅଧ୍ୟାୟରେ ମଧ୍ୟ 'ରସୋଽହ-ମପ୍ସୁକୌନ୍ତେୟ' ଇତ୍ୟାଦି ରୂପରେ ଓ ଅଷ୍ଟମ ଅଧ୍ୟାୟରେ 'ଅଧିଯଜ୍ଞୋଽହ-ମେବାତ୍ର' ଇତ୍ୟାଦି ରୂପରେ ସଂକ୍ଷେପରେ ଭଗବାନ୍ ନିଜ ବ୍ୟକ୍ତରୂପ ବା ବିଭୂତିର ଯେଉଁ ବର୍ଣ୍ଣନା କରିଥିଲେ ଏ ଅଧ୍ୟାୟରେ ତାହାର ବିସ୍ତାରିତ ବର୍ଣ୍ଣନା କରିବେ ।

୨ । ଅନ୍ୱୟଦୀପିକା—ସୁରଗଣାଃ (ଦେବତାମାନେ), ମହର୍ଷୟଃ ( ଓ ମହର୍ଷିମାନେ ) ମେ ( ଆମର ) ପ୍ରଭବଂ ( ଉତ୍ପତ୍ତି ବା ଆବିର୍ଭାବ ବିଷୟ ) ନ ବିଦୁଃ ( ଜାଣନ୍ତି ନାହିଁ ), ହି ( କାରଣ ) ଅହଂ ( ଆମ୍ଭେ ) ଦେବତାନାଂ ( ଦେବତା ମାନଙ୍କର ) ମହର୍ଷୀଣାଂ ଚ ( ମହର୍ଷିମାନଙ୍କର ) ସର୍ବଶଃ ( ସବୁ ପ୍ରକାରେ ) ଆଦିଃ ( ଆଦି କାରଣ ଅଟୁଁ ) ।

ଅନୁବାଦ—ଦେବତାମାନେ ବା ମହର୍ଷିମାନେ—କେହି ଆମ୍ଭର ଉତ୍ପତ୍ତି ବିଷୟ ଜାଣନ୍ତି ନାହିଁ । କାରଣ ଆମ୍ଭେ ସର୍ବଥା ଦେବତା ଓ ମହର୍ଷି ମାନଙ୍କର ଆଦି କାରଣ ।

ସୁବୋଧିନୀ ଟୀକା—ଉକ୍ତସ୍ୟାପି ପୁନର୍ବଚନେ ଦୁର୍ଜ୍ଞେୟତ୍ୱଂ ହେତୁମାହ—ନମେ ବିଦୁରିତି । ମେ ମମ ପ୍ରଭବଂ ପ୍ରଭବଂ ଜନ୍ମରହିତସ୍ୟାପି ନାନା ବିଭୂତିଭିରାବିର୍ଭାବଂ ସୁରଗଣା ଅପି ମହର୍ଷୟୋଽପି ଭୃଗ୍ୱାଦୟୋ ନ ଜାନନ୍ତି । ତତ୍ରହେତୁଃ ଅହଂ ହି ଦେବାନାଂ ମହର୍ଷୀଣାଂ ଚ ଆଦିଃ କାରଣଂ । ସର୍ବଶଃ ସର୍ବୈଃ ପ୍ରକାରୈଃ-ଉତ୍ପାଦକତ୍ୱେନ ବୁଦ୍ଧ୍ୟାଦିପ୍ରବର୍ତ୍ତକତ୍ୱେନ ଚ । ଅତୋ ମଦନୁ-ଗ୍ରହଂ ବିନା ମାଂ କୋଽପି ନ ଜାନନ୍ତି ।

ବିବୃତି—ଇନ୍ଦ୍ରାଦି ଦେବତା ଓ ଭୃଗୁ ପ୍ରଭୃତି ମହର୍ଷି ମାନଙ୍କର ଉତ୍ପତ୍ତି ଭଗବାନଙ୍କଠାରୁ ହୋଇଅଛି । ତେଣୁ ସେମାନେ କେହି ଭଗବାନ୍‌ଙ୍କ ଆବିର୍ଭାବ ବିଷୟ ଜାଣନ୍ତି ନାହିଁ, କାରଣ ଭଗବାନହିଁ ସେମାନଙ୍କ ଉତ୍ପାଦକ ଓ ବୁଦ୍ଧିର ପ୍ରବର୍ତ୍ତକ । ଏପରି ଅବସ୍ଥାରେ ତାଙ୍କର ଅନୁଗ୍ରହ ନ ହେଲେ କେହି ତାଙ୍କର ଉତ୍ପତ୍ତି ତତ୍ତ୍ୱ ବୁଝି ପାରନ୍ତି ନାହିଁ ।

୩ । ଅନ୍ୱୟଦୀପିକା—ଯଃ ( ଯେଉଁ ଲୋକ ) ମାଂ ( ଆମ୍ଭକୁ ) ଅଜମ୍ ( ଜନ୍ମ ରହିତ ) ଅନାଦିଂ ( ଆଦି ରହିତ ) ଲୋକମହେଶ୍ୱରଂ ଚ

ବୁଦ୍ଧିର୍ଜ୍ଞାନମସମ୍ମୋହଃ କ୍ଷମା ସତ୍ୟଂ ଦମଃ ଶମଃ ।
ସୁଖଂ ଦୁଃଖଂ ଭବୋଽଭାବୋ ଭୟଂ ଚାଭୟମେବଚ । ୪ ।
ଅହିଂସା ସମତା ତୁଷ୍ଟି ସ୍ତପୋଦାନଂ ଯଶୋଽଯଶଃ ।
ଭବନ୍ତି ଭାବା ଭୂତାନାଂ ମତ୍ତ ଏବ ପୃଥଗ୍ବିଧାଃ । ୫ ।

( ସର୍ବଲୋକ ମହେଶ୍ୱର ବୋଲି ) ବେତ୍ତି ( ଜାଣନ୍ତି ) ସଃ ( ସେ ) ମର୍ତ୍ତ୍ୟେଷୁ ( ମନୁଷ୍ୟ ମାନଙ୍କ ମଧ୍ୟରେ ) ଅସମ୍ମୂଢ଼ଃ ( ମୋହ ବର୍ଜିତ ହୋଇ ) ସର୍ବପାପୈଃ ( ସମସ୍ତ ପାପରୁ ) ପ୍ରମୁଚ୍ୟତେ ( ବିମୁକ୍ତ ହୁଅନ୍ତି ) ।

**ଅନୁବାଦ**—ଅମ୍ଭର ଜନ୍ମ ନାହିଁ, ଆଦି ନାହିଁ ଏବଂ ଅମ୍ଭେ ପୃଥିବୀ ପ୍ରଭୃତି ସର୍ବଲୋକର ମହେଶ୍ୱର ଅଟୁଁ—ଏହା ଯେଉଁଲୋକ ଜାଣି ପାରନ୍ତି ମନୁଷ୍ୟ ମଧ୍ୟରେ ସେ ମୋହଶୂନ୍ୟ ହୋଇ ସମସ୍ତ ପାପରୁ ମୁକ୍ତ ହୁଅନ୍ତି ।

ସୁବୋଧିନୀ ଟୀକା—ଏବଂ ଭୂତାତ୍ମଜ୍ଞାନେ ଫଳମାହ, ଯୋ ମାମିତି, ସର୍ବକାରଣତ୍ୱାଦେବ ନ ବିଦ୍ୟତେ ଆଦିଃ କାରଣଂ ଯସ୍ୟ ତମନାଦିଂ ଅତ ଏବାଜଂ ଜନ୍ମଶୂନ୍ୟଂ ଲୋକାନାଂ ମହେଶ୍ୱରଂ ଚ ମାଂ ଯୋ ବେତ୍ତି ସ ମନୁଷ୍ୟେଷୁ ସମ୍ମୋହରହିତଃ ସନ୍ ସର୍ବପାପୈଃ ପ୍ରମୁଚ୍ୟତେ ।

୪, ୫ । ଅନ୍ୱୟ ଦୀପିକା—ବୁଦ୍ଧିଃ ( ବୁଦ୍ଧି ) ଜ୍ଞାନଂ ( ଜ୍ଞାନ ), ଅସମ୍ମୋହଃ ( ଅବ୍ୟାକୁଳତା ), କ୍ଷମା ( ସହିଷ୍ଣୁତା ), ସତ୍ୟଂ (ଯଥାର୍ଥ ଭାଷଣ), ଦମଃ ( ବାହ୍ୟେନ୍ଦ୍ରିୟ ସଂଯମ ), ଶମଃ ( ଚିତ୍ତ ସଂଯମ ), ସୁଖଂ ( ସୁଖ ), ଦୁଃଖଂ ( ଦୁଃଖ ), ଭବଃ ( ଉତ୍ପତ୍ତିଃ ), ଅଭାବଃ ( ବିନାଶ ), ଭୟଂ ( ଭୟ ), ଅଭୟଂ ଚ ଏବ ( ଏବଂ ଅଭୟ ମଧ୍ୟ ), ଅହିଂସା, ସମତା, ତୁଷ୍ଟିଃ ( ସନ୍ତୋଷ ), ତପଃ ( ତପସ୍ୟା ), ଦାନଂ ( ଦାନ ), ଯଶଃ ( ଯଶ ), ଅଯଶଃ ( ଅଯଶ ), ଭୂତାନାଂ ( ପ୍ରାଣୀମାନଙ୍କର ) [ ଏହି ସବୁ ] ପୃଥଗ୍ ବିଧାଃ ( ଭିନ୍ନ ଭିନ୍ନ ) ଭାବାଃ ( ଭାବ ସମୂହ ) ମତ୍ତଃ ଏବ ( ଅମ୍ଭଠାରୁହିଁ ) ଭବନ୍ତି (ଉତ୍ପନ୍ନ ହୁଅନ୍ତି) ।

ଅନୁବାଦ—ବୁଦ୍ଧି, ଜ୍ଞାନ, ଚିତ୍ତବ୍ୟରେ ଅବ୍ୟାକୁଳତା, କ୍ଷମା, ସତ୍ୟ, ବାହ୍ୟେନ୍ଦ୍ରିୟ ସଂଯମ, ଚିତ୍ତ ସଂଯମ, ସୁଖ, ଦୁଃଖ, ଉତ୍ପତ୍ତି, ବିନାଶ, ଭୟ, ଅଭୟ, ଅହିଂସା, ସମଚିତ୍ତତା, ସନ୍ତୋଷ, ତପସ୍ୟା, ଦାନ, ଯଶଃ, ଅଯଶଃ,—ପ୍ରାଣୀମାନଙ୍କର ଏହି ସମସ୍ତ ଭିନ୍ନ ଭିନ୍ନ ଭାବ ଅମ୍ଭଠାରୁ ଜାତ ହୁଏ ।

ସୁବୋଧିନୀ ଟୀକା—ଲୋକମହେଶ୍ୱରତାମେବ ପ୍ରପଞ୍ଚୟତି—ବୁଦ୍ଧିରିତ୍ୟାଦିଭିଃ—ବୁଦ୍ଧିଃ ସାରାସାରବିବେକନୈପୁଣ୍ୟଂ, ଜ୍ଞାନମ୍ ଆତ୍ମବିଷୟମ୍ । ଅସମ୍ମୋହୋ ବ୍ୟାକୁଳତାଭାବଃ । କ୍ଷମା ସହିଷ୍ଣୁତ୍ୱଂ । ସତ୍ୟଂ ଯଥାର୍ଥଭାଷଣଂ, ଦମୋ ବାହ୍ୟେନ୍ଦ୍ରିୟସଂଯମଃ, ଶମୋଽନ୍ତଃକରଣସଂଯମଃ, ସୁଖଂ ମନୋଽନୁକୂଲସଂବେଦନୀୟଂ; ଦୁଃଖଂ ଚ ତଦ୍ୱିପରୀତଂ, ଭବଃ ଉଦ୍ଭବଃ, ଅଭାବସ୍ତଦ୍-

ମହର୍ଷୟଃ ସପ୍ତ ପୂର୍ବେ ଚତ୍ୱାରୋ ମନବସ୍ତଥା ।
ମଦ୍‌ଭାବା ମାନସା ଜାତା ଯେଷାଂ ଲୋକ ଇମାଃ ପ୍ରଜାଃ ।୬।

ବିପର୍ଯ୍ୟୟଶ୍ଚ, ଭୟଂ ତ୍ରାସଃ, ଅଭୟଂ ତଦ୍ ବିପର୍ଯ୍ୟୟଶ୍ଚ । ଅସ୍ୟ ଶ୍ଳୋକସ୍ୟ ମଦ୍ଧ୍ୟେବ ଭବନ୍ତୀତ୍ୟୁତ୍ତରେଣାନ୍ୱୟଃ । କିଞ୍ଚ—ଅହିଂସେତି, ଅହିଂସା ପରପୀଡ଼ାନିବୃତ୍ତିଃ, ସମତା ରାଗଦ୍ୱେଷାଦ୍ୟଭାବଃ, ତୁଷ୍ଟିର୍ଦୈବଲବ୍ଧେନ ସନ୍ତୋଷଃ, ତପଃ ଶାସ୍ତ୍ରୀୟଂ ବକ୍ଷ୍ୟମାଣଂ, ଦାନଂ ନ୍ୟାୟାର୍ଜ୍ଜିତସ୍ୟ ଧନାଦେଃ ପାତ୍ରେଽର୍ପଣଂ, ଯଶଃ ସତ୍କୀର୍ତ୍ତିଃ, ଅଯଶୋ ଦୁଷ୍କୀର୍ତ୍ତିଃ, ଏତେ ବୁଦ୍ଧିର୍ଜ୍ଞାନ ମିତ୍ୟାଦୟସ୍ତୁ ତଦ୍‌ବିପର୍ଯ୍ୟୟତା-ଶ୍ଚାଭାବ୍ୟାଦୟୋ ନାନାବିଧାଃ ଭାବାଃ ପ୍ରାଣିନାଂ ମତ୍ତଃ ସକାଶାଦେବ ଭବନ୍ତି ।

ବିବୃତ—ଭଗବାନ୍ ପୃଥିବୀ ପ୍ରଭୃତି ସମସ୍ତ ଲୋକର ମହେଶ୍ୱର । ତେଣୁ ବୁଦ୍ଧି, ଜ୍ଞାନ ପ୍ରଭୃତି ଯେଉଁ ୨୦ଟି ଭାବ ତାଙ୍କଠାରୁ ଉତ୍ପନ୍ନ ବୋଲି ଭଗବାନ ଏ ଶ୍ଳୋକରେ କହିଲେ ତାହା ଯଥାର୍ଥ । ଅଷ୍ଟାଦଶ ଅଧ୍ୟାୟ ୪୬ଶ ଶ୍ଳୋକରେ ମଧ୍ୟ ଭଗବାନ୍ କହିଅଛନ୍ତି :—

ଯତଃ ପ୍ରବୃତ୍ତିର୍ଭୂତାନାଂ ଯେନ ସର୍ବମିଦଂ ତତମ୍,
ସ୍ୱକର୍ମଣା ତମଭ୍ୟର୍ଚ୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ ।

ଯାହାଙ୍କ ଠାରୁ ପ୍ରାଣୀମାନଙ୍କର ସମସ୍ତ ପ୍ରବୃତ୍ତି ଜାତ ହୁଏ ଏବଂ ଯେ ସମସ୍ତ ଜଗତ୍ ବ୍ୟାପି ରହିଛନ୍ତି ନିଜ କର୍ମଦ୍ୱାରା ତାହାଙ୍କୁ ଅର୍ଚ୍ଚନା କଲେ ଲୋକ ସିଦ୍ଧିପ୍ରାପ୍ତ ହୁଏ ।

୬ । ଅନ୍ୱୟଦୀପିକା—ସପ୍ତ ମହର୍ଷୟଃ ( ସପ୍ତ ମହର୍ଷି ) ପୂର୍ବେ ଚତ୍ୱାରଃ ( ତତ୍‌ପୂର୍ବବର୍ତ୍ତୀ ଚାରିଜଣ ମହର୍ଷି ) ତଥା ମନବଃ ( ଏବଂ ମନୁଗଣ ) ମଦ୍‌ଭାବାଃ ( ଅସ୍ମ ଭାବାପନ୍ନ ) ମାନସାଃ ଜାତାଃ ( ଅମ୍ଭ ମନରୁ ଉଦ୍‌ଭୂତ ) ଲୋକେ ( ଏ ଜଗତରେ ) ଇମାଃ ପ୍ରଜାଃ ( ଏହି ପ୍ରଜାମାନେ ) ଯେଷାଂ ( ଯାହାଙ୍କ ଠାରୁ ଜାତ ହୋଇଅଛନ୍ତି ) ।

ଅନୁବାଦ—ସପ୍ତମହର୍ଷି, ତତ୍‌ପୂର୍ବବର୍ତ୍ତୀ ଚାରିଜଣ ମହର୍ଷି, ମନୁଗଣ—ଏ ସମସ୍ତେ ଅମ୍ଭ ମନରୁ ଜାତ, ଜଗଦ୍‌ବାସୀ ଏହି ସମସ୍ତ ଲୋକ ସେହିମାନଙ୍କ ପ୍ରଜା ଅର୍ଥାତ୍ ବଂଶଧର ।

ସୁବୋଧିନୀ ଟୀକା—କିଞ୍ଚ ମହର୍ଷୟ ଇତି, ସପ୍ତ ମହର୍ଷୟୋ ଭୃଗ୍ୱାଦୟଃ ସପ୍ତ ବ୍ରାହ୍ମଣା ଇତ୍ୟେତେ ପୁରାଣେ ନିଶ୍ଚୟଂ ଗତାଃ, ଇତ୍ୟାଦି ପୁରାଣ ପ୍ରସିଦ୍ଧାଃ, ତେଭ୍ୟୋଽପି ପୂର୍ବେଽନ୍ୟେ ଚତ୍ୱାରୋ ମହର୍ଷୟଃ ସନକାଦୟଃ । ତଥା ମନବଃ ସ୍ୱାୟମ୍ଭୁବାଦୟଃ ମଦ୍‌ଭାବାଃମଦୀୟୋ ଭାବୋ ପ୍ରଭାବୋ ଯେଷୁ ତେ, ହିରଣ୍ୟଗର୍ଭାତ୍ମନୋ ମମୈବ ମନସଃସଙ୍କଳ୍ପମାତ୍ରାଜ୍ଜାତାଃ । ପ୍ରଭାବ ମେବାହ—ଯେଷାମିତି, ଯେଷାଂ ଭୃଗ୍ୱାଦୀନାଂ ସନକାଦୀନାଂ ମନୂନାଂ ଚେମା

ଏତାଂ ବିଭୂତିଂ ଯୋଗଂ ଚ ମମ ଯୋ ବେତ୍ତି ତତ୍ତ୍ୱତଃ
ସୋଽବିକମ୍ପେନ ଯୋଗେନ ଯୁଜ୍ୟତେ ନାତ୍ର ସଂଶୟଃ । ୭ ।

ବ୍ରାହ୍ମଣାଦ୍ୟା ଲୋକେ ବର୍ତ୍ତମାନା ଯଥାଯଥଂ ପୁତ୍ରପୌତ୍ରାଦିରୂପାଃ ଶିଷ୍ୟ-ପ୍ରଶିଷ୍ୟାଦିରୂପାଶ୍ଚ ପ୍ରଜା ଯାଭ୍ୟଃ ପ୍ରବୃତ୍ତାଃ ।

ବକ୍ତବ୍ୟ—ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ବଶିଷ୍ଠ—ଏମାନେ ସପ୍ତମହର୍ଷି; ମତାନ୍ତରରେ ଭୃଗୁ, ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ—ଏମାନେ ସପ୍ତମହର୍ଷି, 'ପୂର୍ବେ ଚତ୍ୱାରଃ,' ଅର୍ଥାତ୍ ପୂର୍ବବର୍ତ୍ତୀ ଚାରିଜଣ—ସନକ, ସନନ୍ଦ, ସନାତନ ଓ ସନତ୍‌କୁମାର; ପୂର୍ବାଚାର୍ଯ୍ୟମାନେ ଏହିପରି ନିର୍ଦ୍ଦେଶ କରିଅଛନ୍ତି, ମାତ୍ର ସନକାଦି ଚାରିଜଣ ମହର୍ଷି ଚିର କୁମାର ଥିଲେ, ତେଣୁ ପ୍ରଜା ସୃଷ୍ଟି କରିନାହାନ୍ତି—ଏହି ଆପତ୍ତିରେ କେତେକ ଟୀକାକାର 'ପୂର୍ବବର୍ତ୍ତୀ ଚାରିଜଣ'—ଏହାର ଅର୍ଥ ବାସୁଦେବ (ଆତ୍ମା), ସଙ୍କର୍ଷଣ (ଜୀବ), ପ୍ରଦ୍ୟୁମ୍ନ (ମନ) ଓ ଅନିରୁଦ୍ଧ (ଅହଂକାର) ଏହି ଚାରିମୂର୍ତ୍ତି ବା ଚତୁର୍ବ୍ୟୂହ; ମହାଭାରତରେ ନାରାୟଣୀୟ ବା ଭାଗବତ ଧର୍ମ ବର୍ଣ୍ଣନାରେ ଏହି ଚତୁର୍ବ୍ୟୂହର ଉଲ୍ଲେଖ ଅଛି ଏବଂ ଗୀତାରେ ସେହି ନାରାୟଣୀୟ ଧର୍ମହିଁ ପ୍ରତିପାଦିତ ହୋଇଅଛି ।

ମନୁ ୧୪ ଜଣ—ସ୍ୱାୟମ୍ଭୁବ, ସ୍ୱାରୋଚିଷ, ଉତ୍ତମ, ତାମସ, ରୈବତ, ଚାକ୍ଷୁଷ, ବୈବସ୍ୱତ ଏମାନେ ପ୍ରଥମ ବର୍ଗର ୭ ମନୁ, ଏହା ପୂର୍ବରୁ ୬ ଜଣ ମନୁ ଯାଇଅଛନ୍ତି, ବର୍ତ୍ତମାନ ସପ୍ତମ ମନୁ ବା ବୈବସ୍ୱତମନୁଙ୍କ କାଳ ଚାଲୁଅଛି; ଏହା ପରେ ୭ ଜଣ 'ସାବର୍ଣ୍ଣି ମନୁ' ଆସିବେ, ସେମାନଙ୍କ ନାମ ଯଥା—ସାବର୍ଣ୍ଣି, ଦକ୍ଷ ସାବର୍ଣ୍ଣି, ବ୍ରହ୍ମ ସାବର୍ଣ୍ଣି, ଧର୍ମ ସାବର୍ଣ୍ଣି, ରୁଦ୍ର ସାବର୍ଣ୍ଣି, ଦେବ-ସାବର୍ଣ୍ଣି ଓ ଇନ୍ଦ୍ର ସାବର୍ଣ୍ଣି ।

୭ । ଅନ୍ୱୟଦୀପିକା—ଯଃ (ଯେଉଁଲୋକ) ମମ (ଆମ୍ଭର) ଏତାଂ (ଏହି) ବିଭୂତିଂ (ବିଭୂତି) ଯୋଗଂ ଚ (ଓ ଯୋଗ) ତତ୍ତ୍ୱତଃ (ଯଥାର୍ଥରୂପରେ) ବେତ୍ତି (ଜାଣନ୍ତି) ସଃ (ସେ) ଅବିକମ୍ପେନ (ନିଶ୍ଚଳ) ଯୋଗେନ (ଯୋଗଦ୍ୱାରା) ଯୁଜ୍ୟତେ (ଯୁକ୍ତ ହୁଅନ୍ତି); ଅତ୍ର ସଂଶୟଃ ନ (ଏଥିରେ ସନ୍ଦେହ ନାହିଁ) ।

ଅନୁବାଦ—ଯେ ଆମ୍ଭର ଭୃଗୁମନ୍ୱାଦି ରୂପ ବିଭୂତି ବା ବିସ୍ତାର ଏବଂ ଯୋଗ ଅର୍ଥାତ୍ ବିସ୍ତାର କରିବାର ସାମର୍ଥ୍ୟ ଯଥାର୍ଥରୂପେ ଜାଣନ୍ତି, ସେ ନିଶ୍ଚୟ ସ୍ଥିର କର୍ମଯୋଗର ଅଧିକାରୀ ହୁଅନ୍ତି—ଏଥିରେ ସନ୍ଦେହ ନାହିଁ ।

ସୁବୋଧିନୀ ଟୀକା—ଯଥୋକ୍ତବିଭୂତ୍ୟାଦିତତ୍ତ୍ୱଜ୍ଞାନସ୍ୟ ଫଳମାହ—ଏତାମିତି । ଏତାଂ ଭୃଗ୍ୱାଦିଲକ୍ଷଣାଂ ମମ ବିଭୂତିଂ । ଯୋଗଂ ଚୈଶ୍ୱର୍ଯ୍ୟଲକ୍ଷଣଂ ତତ୍ତ୍ୱତୋ ଯୋ ବେତ୍ତି, ସୋଽବିକମ୍ପେନ ନିଃସଂଶୟେନ ଯୋଗେନ ସମ୍ୟଗ୍‌ଦର୍ଶନେନ ଯୁକ୍ତୋ ଭବତି, ନାତ୍ରାତ୍ର ସଂଶୟଃ ।

ଅହଂ ସର୍ବସ୍ୟ ପ୍ରଭବୋ ମତ୍ତଃ ସର୍ବଂ ପ୍ରବର୍ତ୍ତତେ ।
ଇତି ମତ୍ୱା ଭଜନ୍ତେ ମାଂ ବୁଧା ଭାବସମନ୍ୱିତାଃ । ୮ ।
ମଚ୍ଚିତ୍ତା ମଦ୍‌ଗତପ୍ରାଣା ବୋଧୟନ୍ତଃ ପରସ୍ପରମ୍ ।
କଥୟନ୍ତଶ୍ଚ ମାଂ ନିତ୍ୟଂ ତୁଷ୍ୟନ୍ତି ଚ ରମନ୍ତି ଚ । ୯ ।

୮ । ଅନ୍ୱୟ ଦୀପିକା—ଅହଂ ସର୍ବସ୍ୟ (ଆମ୍ଭେ ସମସ୍ତ ଜଗତର) ପ୍ରଭବଃ (ଉତ୍ପତ୍ତିର କାରଣ) । ମତ୍ତଃ (ଆମ୍ଭଠାରୁ) ସର୍ବଂ (ସମସ୍ତ) ପ୍ରବର୍ତ୍ତତେ (ପ୍ରବର୍ତ୍ତିତ ହୁଏ) । ଇତି ମତ୍ୱା (ଏହା ଜାଣିପାରି) ବୁଧାଃ (ଜ୍ଞାନୀମାନେ) ଭାବସମନ୍ୱିତାଃ (ପ୍ରୀତି ଯୁକ୍ତ ହୋଇ) ମାଂ (ଆମ୍ଭଙ୍କୁ) ଭଜନ୍ତେ (ଆରାଧନା କରନ୍ତି) ।

ଅନୁବାଦ—ଆମ୍ଭେ ସମସ୍ତ ଜଗତର ଉତ୍ପତ୍ତିର କାରଣ ଏବଂ ଆମ୍ଭଠାରୁ ସମସ୍ତ ପ୍ରବର୍ତ୍ତିତ ହୁଏ—ଏହା ଜାଣି ଜ୍ଞାନୀମାନେ ପ୍ରେମପୂର୍ବକ ଆମ୍ଭର ଆରାଧନା କରନ୍ତି ।

ସୁବୋଧିନୀ ଟୀକା—ଯଥୋକ୍ତ ବିଭୂତିଯୋଗଯୋର୍ଜ୍ଞାନେନ ସମ୍ୟଗ୍ ଜ୍ଞାନାବାପ୍ତିମ୍ଦର୍ଶୟତି—ଅହମିତ୍ୟାଦି ଚତୁର୍ଭିଃ । ଅହଂ ସର୍ବସ୍ୟ ଜଗତଃ ପ୍ରଭବୋ ଲୟସ୍ଥାନଂ ମତ୍ତାଦିରୂପବିଭୂତିଦ୍ୱାରେଣୋତ୍ପତ୍ତିହେତୁଃ । ମତ୍ତ ଏବ ଚ ସର୍ବସ୍ୟ ବୁଦ୍ଧିର୍ଜ୍ଞାନ ମସମ୍ମୋହ ଇତ୍ୟାଦି ସର୍ବଂ ପ୍ରବର୍ତ୍ତତ ଇତି । ଏବଂ ମତ୍ୱାଽବବୁଧ ବୁଧା ବିବେକିନୋ ଭାବସମନ୍ୱିତାଃ ପ୍ରୀତିଯୁକ୍ତା ମାଂ ଭଜନ୍ତେ ।

ବିବୃତ—ଭଗବାନହିଁ ଏହି ଜଗତ୍ ସୃଷ୍ଟିକର ଅଟନ୍ତି ଏବଂ ଭଗବାନଙ୍କଠାରୁ ବୁଦ୍ଧି ଜ୍ଞାନ ପ୍ରଭୃତି ସମସ୍ତ ପ୍ରବୃତ୍ତି ପ୍ରବର୍ତ୍ତିତ ହୋଇଅଛି—ଏହା ଯେଉଁମାନେ ଜ୍ଞାନ ଦୃଷ୍ଟିରେ ଦେଖନ୍ତି ସେମାନେ ପ୍ରୀତିପୂର୍ଣ୍ଣ ଅନ୍ତଃ-କରଣରେ ଭଗବାନଙ୍କର ଆରାଧନା କରିଥାଆନ୍ତି ।

୯ । ଅନ୍ୱୟ ଦୀପିକା—ମଚ୍ଚିତ୍ତାଃ (ମଦ୍‌ଗତ ଚିତ୍ତ) ମଦ୍‌ଗତପ୍ରାଣାଃ (ମଦ୍‌ଗତପ୍ରାଣ) [ଲୋକମାନେ] ମାଂ ପରସ୍ପରଂ ବୋଧୟନ୍ତଃ (ଆମ୍ଭକଥା ପରସ୍ପରକୁ ବୁଝାଇ) ନିତ୍ୟଂ କଥୟନ୍ତଶ୍ଚ (ଓ ସର୍ବଦା ଆମ୍ଭକଥା କୀର୍ତ୍ତନ କରି) ତୁଷ୍ୟନ୍ତିଚ (ସନ୍ତୋଷ ଓ ସୁଖଲାଭ କରିଥାଆନ୍ତି) ।

ଅନୁବାଦ—ଯେଉଁମାନଙ୍କ ମନ ଆମଠାରେ ଅର୍ପିତ, ଯେଉଁମାନଙ୍କର ପ୍ରାଣ ମଦ୍‌ଗତ ଅର୍ଥାତ୍ ଆମ୍ଭଛଡ଼ା ଯେଉଁମାନେ ପ୍ରାଣଧାରଣରେ ଅସମର୍ଥ ସେମାନେ ପରସ୍ପରକୁ ଆମ୍ଭ କଥା ବୁଝାନ୍ତି ଏବଂ ଆମ୍ଭ କଥା କୀର୍ତ୍ତନ କରି ପରମ ପରିତୋଷ ଲାଭ ପୂର୍ବକ ପ୍ରେମାନନ୍ଦ ଭୋଗ କରନ୍ତି ।

ସୁବୋଧିନୀ ଟୀକା—ପ୍ରୀତି ପୂର୍ବକଂ ଭଜନ ମାହ—ମଚ୍ଚିତ୍ତା ଇତି । ମୟ୍ୟେବ ଚିତ୍ତଂ ଯେଷାଂତେ ମଚ୍ଚିତ୍ତାଃ, ମାମେବ ଗତାଃ ପ୍ରାପ୍ତାଃ ପ୍ରାଣା

ତେଷାଂ ସତତଯୁକ୍ତାନାଂ ଭଜତାଂ ପ୍ରୀତିପୂର୍ବକମ୍ ।
ଦଦାମି ବୁଦ୍ଧିଯୋଗଂ ତଂ ଯେନ ମାମୁପଯାନ୍ତି ତେ । ୧୦ ।

ଇନ୍ଦ୍ରିୟାଣି ଯେଷାଂ ତେ ମଦ୍‌ଗତପ୍ରାଣାଃ । ମଦର୍ପିତଜୀବନା ଇତି ବା । ଏବଂ ଭୂତାସ୍ତେ ବୁଧା ଅନ୍ୟୋଽନ୍ୟଂ ମାଂ ନ୍ୟାୟୋପେତୈଃ ଶ୍ରୁତ୍ୟାଦିପ୍ରମାଣୈ ର୍ବୋଧୟନ୍ତୋ ବୁଦ୍ଧ୍ୟାଚ ମାଂ କଥୟନ୍ତଃ ସଙ୍କୀର୍ତ୍ତୟନ୍ତଃ ସନ୍ତୋ ନିତ୍ୟଂ ତୃପ୍ୟନ୍ତ୍ୟନୁମୋଦନେନ ତୁଷ୍ଟିଂ ଯାନ୍ତି । ରମନ୍ତିଚ ନିର୍ବୃତିଂ ଯାନ୍ତି ।

ବିବୃତି—ଭକ୍ତି ରସ ଯେଉଁମାନଙ୍କ ପ୍ରାଣକୁ ପ୍ଲାବିତ କରେ ସେମାନେ ସର୍ବଦା ଭଗବାନଙ୍କୁ ଦର୍ଶନ କରନ୍ତି, ଭଗବାନଙ୍କ ଭିନ୍ନ ଅନ୍ୟ କୌଣସି କଥା ସେମାନଙ୍କ ମନଃପ୍ରାଣରେ ପ୍ରବେଶ କରେ ନାହିଁ । ଭକ୍ତି ଗ୍ରନ୍ଥ ପାଠରେ ସେମାନେ ପରସ୍ପର ନିକଟରେ ସେହିକଥାର ବ୍ୟାଖ୍ୟା କରନ୍ତି ଏବଂ ଭଗବାନଙ୍କ ଗୁଣ କୀର୍ତ୍ତନ କରି ପରମ ଶାନ୍ତିରେ କାଳଯାପନ କରନ୍ତି । ପ୍ରକୃତ କଥା, ଭକ୍ତିରସ ହୃଦୟରେ ସଞ୍ଚରିତ ହେଲେ ଜୀବନର ଗତି ପରିବର୍ତ୍ତିତ ହୋଇଯାଏ ।

୧୦ । ଅନ୍ୱୟ ଦୀପିକା— ସତତଯୁକ୍ତାନାଂ ( ଆମଠାରେ ଯାହାଙ୍କ ଚିତ୍ତ ସର୍ବଦା ଆସକ୍ତ) ପ୍ରୀତିପୂର୍ବକଂ ଭଜତାଂ (ପ୍ରୀତିପୂର୍ବକ ଭଜନଶୀଳ) ତେଷାଂ (ସେମାନଙ୍କୁ) ତଂ (ସେହିପରି) ବୁଦ୍ଧିଯୋଗଂ (ବୁଦ୍ଧିଯୋଗ) ଦଦାମି (ଦେଉଁ), ଯେନ (ଯାହାଦ୍ୱାରା) ତେ (ସେମାନେ) ମାଂ ( ଆମ୍ଭକୁ ) ଉପଯାନ୍ତି (ପ୍ରାପ୍ତ ହୁଅନ୍ତି) ।

ଅନୁବାଦ—ଯେଉଁମାନେ ସବୁବେଳେ ଆମଠାରେ ଚିତ୍ତ ସମର୍ପଣ କରି ପ୍ରୀତିପୂର୍ଣ୍ଣହୃଦୟରେ ଆମ୍ଭର ଉପାସନା କରନ୍ତି, ସେମାନଙ୍କୁ ଆମ୍ଭେ ଏହିପରି ବୁଦ୍ଧି ଯୋଗ ପ୍ରଦାନ କରୁଁ, ଯଦ୍ୱାରା ସେମାନେ ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି ।

ସୁବୋଧିନୀ ଟୀକା—ଏବଂଭୂତାନାଂ ସମ୍ୟଗ୍ ଜ୍ଞାନମହଂ ଦଦାମୀତ୍ୟାହ—ତେଷାମିତି । ଏବଂ ସତତଯୁକ୍ତାନାଂ ମଯ୍ୟାସକ୍ତଚିତ୍ତାନାଂ ପ୍ରୀତି ପୂର୍ବକଂ ଭଜତାଂ ତେଷାଂ ତଂ ବୁଦ୍ଧିରୂପଂ ଯୋଗମୁପାୟଂ ଦଦାମି, ତମିତି କଂ ? ଯେନୋପାୟେନ ତେ ମଦ୍‌ଭକ୍ତା ମାଂ ପ୍ରାପ୍ନୁବନ୍ତି ।

ବିବୃତି—ଭଗବାନଙ୍କୁ ପ୍ରୀତିପୂର୍ଣ୍ଣହୃଦୟରେ ଆରାଧନା କଲେ ଭଗବାନ୍ ଭକ୍ତର ବୁଦ୍ଧିକୁ ନିର୍ମଳ କରିଦିଅନ୍ତି । ବୁଦ୍ଧି ନିର୍ମଳ ହେଲେ ଭକ୍ତ ସହଜରେ ଭଗବାନଙ୍କୁ ଲାଭ କରେ । ଏଥିରୁ ବୁଝାଯାଉଅଛି, ଭକ୍ତିମାର୍ଗରେ ପ୍ରବିଷ୍ଟ ହେଲେ ଭକ୍ତର ସମସ୍ତ ବୁଦ୍ଧିକୁ ଉନ୍ନତ କରିବା କାର୍ଯ୍ୟ ଭଗବାନ୍ ନିଜେ କରନ୍ତି ।

କଠୋପନିଷଦରେ ଅଛି :—

ନାୟମାତ୍ମା ପ୍ରବଚନେନ ଲଭ୍ୟୋନ ମେଧୟା ନ ବହୁନା ଶ୍ରୁତେନ ।
ଯମେବୈଷ ବୃଣୁତେ ତେନ ଲଭ୍ୟସ୍ତସ୍ୟୈଷ ଆତ୍ମା ବିବୃଣୁତେ ତନୂଂସ୍ୱାମ୍ ।

ତେଷାମେବାନୁକମ୍ପାର୍ଥମହମଜ୍ଞାନଜଂ ତମଃ ।
ନାଶୟାମ୍ୟାତ୍ମଭାବସ୍ଥୋ ଜ୍ଞାନଦୀପେନ ଭାସ୍ୱତା ।୧୧।

'ଆତ୍ମା ବହୁ ଶାସ୍ତ୍ରାଭ୍ୟାସଦ୍ୱାରା ଲଭ୍ୟ ନୁହନ୍ତି; ମେଧା ଅର୍ଥାତ୍ ଗ୍ରନ୍ଥାର୍ଥ-ଧାରଣା ଶକ୍ତିଦ୍ୱାରା ଲଭ୍ୟ ନୁହନ୍ତି, ବହୁ ଶ୍ରବଣ ଦ୍ୱାରା ମଧ୍ୟ ଲଭ୍ୟ ନୁହନ୍ତି । ଯେଉଁ ସାଧକକୁ ଏ ନିଜେ ଅନୁଗ୍ରହ କରନ୍ତି ସେହୁ କେବଳ ଏହାଙ୍କୁ ଜାଣିପାରନ୍ତି ।

୧୧ । **ଅନ୍ୱୟଦୀପିକା**—ତେଷାମ୍ (ସେମାନଙ୍କ ପ୍ରତି) ଅନୁକମ୍ପାର୍ଥମ୍ ଏବ (ଅନୁଗ୍ରହ କରି) ଅହମ୍ (ଆମ୍ଭେ) ଆତ୍ମଭାବସ୍ଥଃ (ସେମାନଙ୍କ ଅନ୍ତରରେ ଅବସ୍ଥିତ ହୋଇ) ଭାସ୍ୱତା (ସମୁଜ୍ଜ୍ୱଳ) ଜ୍ଞାନଦୀପେନ (ଜ୍ଞାନରୂପ ଦୀପଦ୍ୱାରା) ଅଜ୍ଞାନଜଂ ତମଃ (ଅଜ୍ଞାନଜନିତ ଅନ୍ଧକାର) ନାଶୟାମି (ନାଶକରୁଁ) ।

**ଅନୁବାଦ**—ଆମ୍ଭେ ଭକ୍ତମାନଙ୍କ ପ୍ରତି ଅନୁଗ୍ରହ କରି ସେମାନଙ୍କ ହୃଦୟରେ ଅବସ୍ଥାନ ପୂର୍ବକ ସମୁଜ୍ଜ୍ୱଳ ଜ୍ଞାନ ରୂପ ଦୀପ ଦ୍ୱାରା ସେମାନଙ୍କ ଅଜ୍ଞାନ-ଅନ୍ଧକାର ନାଶକରୁଁ ।

**ସୁବୋଧିନୀ ଟୀକା**—ବୁଦ୍ଧିଯୋଗଂ ଦତ୍ତ୍ୱା ଚ ତସ୍ୟାନୁଭବ-ପର୍ଯ୍ୟନ୍ତଂ ତମାବସ୍ତୁ ତ୍ୟାବଦ୍ୟାକୃତଂ ସଂସାରଂ ନାଶୟାମୀତ୍ୟାହ—ତେଷାମିତି । ତେଷାମନୁକମ୍ପାର୍ଥମନୁଗ୍ରହାର୍ଥମେବାଜ୍ଞାନାତ୍ଜାତଂ ତମଃ ସଂସାରାଖ୍ୟଂ ନାଶୟାମି । କୁହସ୍ଥିତଃ ସନ୍ କେନ ବା ସାଧନେନ ତମୋ ନାଶୟସି ? ଅତ ଆହ—ଆତ୍ମଭାବସ୍ଥୋ ବୁଦ୍ଧିବୃତ୍ତୌ ସ୍ଥିତଃ ସନ୍ ଭାସ୍ୱତା ବସ୍ତୁରତା ଜ୍ଞାନଲକ୍ଷଣେ ନ ଦୀପେନ ନାଶୟାମି ।

**ବିବୃତି**—ଭଗବାନ୍ ଆତ୍ମା ରୂପରେ ସମସ୍ତଙ୍କ ହୃଦୟରେ ବିଦ୍ୟମାନ ଅଛନ୍ତି, ତଥାପି ସ୍ୱଭାବତଃ ସାଧକଙ୍କ ହୃଦୟାନ୍ତର୍ବର୍ତ୍ତୀ ଆତ୍ମା ଜ୍ଞାନାଲୋକରେ ଉଦ୍‌ଭାସିତ ହୋଇଉଠନ୍ତି । ଏହାହିଁ ଭଗବାନଙ୍କର ଦୟା, ଆଲୋକର ଦୀପ୍ତ କିରଣରେ ଯେପରି ଅନ୍ଧକାର ଦୂର ହୋଇଯାଏ, ସେହିପରି ଜ୍ଞାନଦ୍ୱାରା ଅଜ୍ଞାନର ବୀଜ ହୃଦୟ ମଧ୍ୟରୁ ଅନ୍ତର୍ହିତ ହୋଇଯାଏ । ଜନ୍ମାନ୍ତରୀଣ ଅନ୍ଧକାର ଧ୍ୱଂସରେ ସତ୍ୟର ପ୍ରଭା ପ୍ରକାଶିତ ହୁଏ । ଯେଉଁମାନେ ମୂର୍ଖ ଓ ଅଧମ ଥାଆନ୍ତି ଭଗବତ୍ କୃପା ଲାଭରେ ସେମାନେ ଯେ ପଣ୍ଡିତ ହୁଅନ୍ତି ତାହାର ଶତ ଶତ ଉଦାହରଣ ଭକ୍ତଚରିତ୍ର ମାନଙ୍କରେ ଦେଖାଯାଏ ; ସ୍ୱାମୀଜୀ ଯଥାର୍ଥରେ କହି-ଅଛନ୍ତି :—

ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଙ୍ଘୟତେ ଗିରିମ୍ ।
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦମୀଶ୍ୱରମ୍ ।

ଅର୍ଜୁନ ଉବାଚ

ପରଂବ୍ରହ୍ମ ପରଂଧାମ ପବିତ୍ରଂ ପରମଂ ଭବାନ୍
ପୁରୁଷଂ ଶାଶ୍ୱତଂ ଦିବ୍ୟମାଦିଦେବମଜଂ ବିଭୁମ୍ । ୧୨ ।
ଆହୁସ୍ତ୍ୱା ମୃଷୟଃ ସର୍ବେ ଦେବର୍ଷି ର୍ନାରଦସ୍ତଥା ।
ଅସିତୋ ଦେବଲୋ ବ୍ୟାସଃ ସ୍ୱୟଞ୍ଚୈବ ବ୍ରବୀଷି ମେ । ୧୩ ।

୧୨।୧୩—ଅନ୍ୱୟ ଦୀପିକା—ଅର୍ଜୁନଃ ଉବାଚ—( ଅର୍ଜୁନ କହିଲେ ) । ଭବାନ୍ ( ଆପଣ ) ପରଂବ୍ରହ୍ମ ( ପରବ୍ରହ୍ମ ), ପରଂଧାମ ( ପରମ ଆଶ୍ରୟ ), ପରମଂ ପବିତ୍ରଂ ( ପରମ ପବିତ୍ର ), ସର୍ବେ ଋଷୟଃ ( ସମସ୍ତ ଋଷି ); ଦେବର୍ଷିଃ ନାରଦଃ (ଦେବର୍ଷି ନାରଦ) ତଥା (ଏବଂ) ଅସିତଃ ଦେବଲଃ ବ୍ୟାସଃ ଚ ( ଅସିତ, ଦେବଲ ଓ ବ୍ୟାସ ) ତ୍ୱାଂ ( ତୁମ୍ଭଙ୍କୁ ) ଶାଶ୍ୱତଂ ପୁରୁଷଂ ( ନିତ୍ୟ ପୁରୁଷ ), ଦିବ୍ୟଂ ( ସ୍ୱପ୍ରକାଶ ), ଆଦି ଦେବଂ ( ଆଦିଦେବ ), ଅଜଂ ( ଜନ୍ମ ରହିତ ), ବିଭୁଂ [ ଚ ] ( ଏବଂ ବ୍ୟାପକ ) ଆହୁଃ ( ବଦନ୍ତି ), ସ୍ୱୟମ୍ ଏବଚ ( ଏବଂ ତୁମେ ନିଜେ ମଧ୍ୟ ) ମେ ( ମୋତେ ) ବ୍ରବୀଷି ( କହୁଅଛ ) ।

ଅନୁବାଦ—ଅର୍ଜୁନ କହିଲେ, ଆପଣ ପରଂବ୍ରହ୍ମ, ପରମାଶ୍ରୟ, ପରମ ପବିତ୍ର ଅଟନ୍ତି । ଭୃଗୁ ପ୍ରଭୃତି ଋଷିମାନେ, ଦେବର୍ଷି ନାରଦ, ଅସିତ, ଦେବଲ, ବ୍ୟାସ ପ୍ରଭୃତି ଆପଣଙ୍କୁ ନିତ୍ୟ ପୁରୁଷ, ସ୍ୱୟଂ ପ୍ରକାଶ, ଆଦିଦେବ, ଜନ୍ମ ରହିତ ଏବଂ ବିଶ୍ୱବ୍ୟାପୀ ବିଭୁବୋଲି କହନ୍ତି, ଆପଣ ନିଜେ ମଧ୍ୟ ସେହିପରି କହୁଅଛନ୍ତି ।

ସୁବୋଧିନୀ ଟୀକା—ସଂକ୍ଷେପେଣୋକ୍ତାଂ ବିଭୂତିଂ ବିସ୍ତରେଣ ବିଜ୍ଞସୁର୍ଭଗବନ୍ତଂ ସ୍ତୁବନ୍ନର୍ଜୁନ ଉବାଚ' । ପରଂବ୍ରହ୍ମେତି ସପ୍ତଭିଃ, ପରଂବ୍ରହ୍ମ, ପରଂଧାମ ଆଶ୍ରୟଃ, ପରମଂ ପବିତ୍ରଂ ଚ ଭବାନେବ । କୁତ ଇତି ଅତ ଆହ— ଯତଃ ଶାଶ୍ୱତଂ ନିତ୍ୟଂ ପୁରୁଷଂ, ତଥା ଦିବ୍ୟଂ ଦ୍ୟୋତନାତ୍ମକଂ ସ୍ୱୟଂ ପ୍ରକାଶମ୍ ଆଦିଶ୍ଚାସୌ ଦେବଶ୍ଚେତି ତଂ, ଦେବାନାମାଦିଭୂତମିତ୍ୟର୍ଥଃ, ତଥା ଅଜମଜନ୍ମାନଂ, ବିଭୁଂ ଚ ବ୍ୟାପକଂ, ତ୍ୱାମେବାହୁଃ ।

କେ ତ ଇତି—ଆହ, ଆହୁରିତି, ଋଷୟୋ ଭୃଗ୍ୱାଦୟଃ ସର୍ବେ, ଦେବର୍ଷିଶ୍ଚ ନାରଦଃ, ଅସିତଶ୍ଚ, ବ୍ୟାସଶ୍ଚ, ଦେବଲଶ୍ଚ, ସ୍ୱୟଂ ତ୍ୱମେବଚ ସ୍ୱୟଂ ସାକ୍ଷାନ୍ମେ ମହ୍ୟଂ ବ୍ରବୀଷି ।

ବିବୃତ—ବିଭୂତିର ବିସ୍ତାରିତ ବିବରଣ ଜାଣିବା ଉଦ୍ଦେଶ୍ୟରେ ଅର୍ଜୁନ ଭଗବାନଙ୍କୁ ଏହି ଦୁଇଗୋଟି ଶ୍ଳୋକରେ ସ୍ତୁତି କରି ଅଛନ୍ତି ଏବଂ ଆହୁରି ମଧ୍ୟ କହି ଅଛନ୍ତି—ଅସିତ, ଦେବଲ, ବ୍ୟାସ, ନାରଦ ପ୍ରଭୃତି ଋଷିମାନେ ଆପଣଙ୍କ

ସର୍ବମେତଦୃତଂ ମନ୍ୟେ ଯନ୍ମାଂ ବଦସି କେଶବ
ନ ହି ତେ ଭଗବନ୍ ବ୍ୟକ୍ତିଂ ବିଦୁର୍ଦେବା ନ ଦାନବାଃ ।୧୪।

ସ୍ୱପ୍ରକାଶ, ଅଜ ପ୍ରଭୃତି ରୂପରେ ବର୍ଣ୍ଣନ କରି ଅଛନ୍ତି । ଋଷିମାନଙ୍କ ସ୍ତବ ରୂପେ ମହାମନୀଷୀ ରାମାନୁଜାଚାର୍ଯ୍ୟ ତତ୍ ପ୍ରଣୀତ ଗୀତାଭାଷ୍ୟରେ ନିମ୍ନୋକ୍ତ ବଚନମାନ ଉଦ୍ଧାର କରିଅଛନ୍ତି ।

ଏଷ ନାରାୟଣଃ ଶ୍ରୀମାନ୍ କ୍ଷୀରାର୍ଣ୍ଣବନିକେତନଃ ।
ନାଗପର୍ଯ୍ୟଙ୍କମୁତ୍ସୃଜ୍ୟ ହ୍ୟାଗତୋ ମଥୁରାଂ ପୁରୀମ୍ ।୧।
ପୁଣ୍ୟା ଦ୍ୱାରବତୀ ତତ୍ର ଯତ୍ରାସ୍ତେ ମଧୁସୂଦନଃ
ସାକ୍ଷାଦେବ ପୁରାଣୋଽସୌ ସ ହି ଧର୍ମଃ ସନାତନଃ ।୨।
ଯେ ଚ ବେଦବିଦୋ ବିପ୍ରା ଯେ ଚାଧ୍ୟାତ୍ମବିଦୋ ଜନାଃ
ତେ ବଦନ୍ତି ମହାତ୍ମାନଂ କୃଷ୍ଣଂ ଧର୍ମଂ ସନାତନମ୍ ।୩।
ପବିତ୍ରାଣାଂ ହି ଗୋବିନ୍ଦଃ ପବିତ୍ରଂ ପରମୁଚ୍ୟତେ ।
ପୁଣ୍ୟାନାମପି ପୁଣ୍ୟୋଽସୌ ମଙ୍ଗଳାନାଂ ଚ ମଙ୍ଗଳଂ ।୪। ଇତ୍ୟାଦି ।

୧୪ । ଅନ୍ୱୟ ଦୀପିକା—[ ହେ ] କେଶବ, ଯତ୍ ( ଯାହା ) ମାଂ ( ମୋତେ ) ବଦସି ( କହୁଅଛ ) ଏତତ୍ ସର୍ବଂ ( ଏ ସମସ୍ତକୁ ) ଋତଂ ( ସତ୍ୟ ବୋଲି ) ମନ୍ୟେ ( ସ୍ୱୀକାର କରୁଅଛି ); [ହେ] ଭଗବନ୍, ତେ ବ୍ୟକ୍ତିମ୍ ( ତୁମ ଆବିର୍ଭାବ ବିଷୟ ) ଦେବାଃ ( ଦେବତାମାନେ ) ଦାନବାଃ ଚ ନ ବିଦୁଃ ( ରାକ୍ଷସମାନେ ମଧ୍ୟ ଜାଣନ୍ତି ନାହିଁ ) ।

ଅନୁବାଦ—ହେ କେଶବ ! ତୁମେ ମୋତେ ଯାହା କହିଲ, ସେ ସମସ୍ତକୁ ମୁଁ ସତ୍ୟବୋଲି ସ୍ୱୀକାର କରୁଅଛି । ହେ ଭଗବନ୍, କି ଦେବତା, କି ରାକ୍ଷସ କେହି ତୁମ ଆବିର୍ଭାବ ତତ୍ତ୍ୱ ଜାଣନ୍ତି ନାହିଁ ।

ସୁବୋଧିନୀ ଟୀକା—ଅତୋ ମମେଦାନୀଂ ତ୍ୱଦୀୟୈଶ୍ୱର୍ଯ୍ୟେଽସମ୍ଭାବନା ନିବୃତ୍ତେତ୍ୟାହ । ସର୍ବମେତଦିତି, ଏତଦ୍ଭବାନେବ ପରଂବ୍ରହ୍ମେତ୍ୟାଦି ସର୍ବମପି ଋତଂ ସତ୍ୟଂ ମନ୍ୟେ । ଯନ୍ମାଂପ୍ରତି ତ୍ୱଂ କଥୟସି—ନମେ ବିଦୁଃ ସୁରଗଣା ଇତ୍ୟାଦି, ତଦପି ସତ୍ୟମେବ ମନ୍ୟ ଇତ୍ୟାହ—ନହୀତି । ହେ ଭଗବଂସ୍ତବ ବ୍ୟକ୍ତିଂ ଦେବା ନ ବିଦୁଃ, ଅସ୍ମଦନୁଗ୍ରହାର୍ଥମିୟମଭିବ୍ୟକ୍ତିରିତି ନ ଜାନନ୍ତି, ଦାନବାସ୍ତୁସ୍ୱନିଗ୍ରହାର୍ଥମିତି ନ ବିଦୁରେବେତି ।

ବିବୃତି—ଭଗବାନଙ୍କ ମାୟାରେ ମୁଗ୍ଧ ହୋଇ କେହି ତାଙ୍କର ଆବିର୍ଭାବର କାରଣ ବୁଝି ପାରନ୍ତି ନାହିଁ । ଇନ୍ଦ୍ରାଦି ଦେବତା, କଂସାଦି ରାକ୍ଷସ ସମସ୍ତେ ତାଙ୍କ ମାୟାଦ୍ୱାରା ମୁଗ୍ଧ; ଏଠାରେ ସେ ଦୟାକରି ଅର୍ଜ୍ଜୁନଙ୍କୁ ନିଜତତ୍ତ୍ୱ ବୁଝାଇଲେ, ଦୟାକରି କାହାକୁ ନ ବୁଝାଇଲେ କେହି ତାଙ୍କ ପ୍ରଭବ ବୁଝି-

ସ୍ୱୟମେବାତ୍ମନାତ୍ମାନଂ ବେତ୍ଥ ତ୍ୱଂ ପୁରୁଷୋତ୍ତମ ।
ଭୂତଭାବନ ଭୂତେଶ ଦେବଦେବ ଜଗତ୍ପତେ । ୧୫ ।
ବକ୍ତୁମର୍ହସ୍ୟଶେଷେଣ ଦିବ୍ୟା ହ୍ୟାତ୍ମବିଭୂତୟଃ ।
ଯାଭିର୍ବିଭୂତିଭିର୍ଲୋକାନିମାଂସ୍ତ୍ୱଂ ବ୍ୟାପ୍ୟ ତିଷ୍ଠସି । ୧୬ ।

ପାରନ୍ତି ନାହିଁ । ଦେବତାମାନଙ୍କ ପ୍ରତି ଅନୁଗ୍ରହ କରିବାକୁ ଓ ରାକ୍ଷସମାନଙ୍କୁ ବିନାଶ କରିବାକୁ ସେ ଯେ ଅବତୀର୍ଣ୍ଣ ହୋଇଥିଲେ ଏହା ସେମାନେ କେହି ଜାଣି ପାରି ନ ଥିଲେ ।

୧୫ । ଅନ୍ୱୟ ଦୀପିକା—[ହେ] ପୁରୁଷୋତ୍ତମ, ଭୂତଭାବନ ( ହେ ପ୍ରାଣୀମାନଙ୍କ ଉତ୍ପାଦକ ) [ହେ] ଭୂତେଶ ( ପ୍ରାଣୀମାନଙ୍କର ନିୟନ୍ତା ), [ହେ] ଦେବଦେବ ( ଦେବତାମାନଙ୍କର ଉପାସ୍ୟ ଦେବତା ) [ହେ] ଜଗତ୍ପତେ ( ବିଶ୍ୱପାଳକ ) ତ୍ୱଂ ( ତୁମେ ) ସ୍ୱୟଂ ( ନିଜେ ) ଆତ୍ମନା ( ଆତ୍ମାଦ୍ୱାରା ) ଆତ୍ମାନଂ ( ଆପଣଙ୍କୁ ) ବେତ୍ଥ ( ଜାଣୁଅଛ ) ।

ଅନୁବାଦ—ହେ ପୁରୁଷୋତ୍ତମ, ହେ ସକଳଜଗତର ଉତ୍ପାଦକ, ହେ ଭୂତଗଣଙ୍କ ନିୟାମକ, ହେ ଦେବଦେବ, ହେ ବିଶ୍ୱପାଳକ ତୁମେ ନିଜେ ନିଜର ଆତ୍ମଜ୍ଞାନଦ୍ୱାରା ନିଜକୁ ଜାଣ ।

ସୁବୋଧିନୀ ଟୀକା—କଥଂ ତର୍ହି ? ସ୍ୱୟମିତି । ସ୍ୱୟମେବ ତ୍ୱମାତ୍ମାନଂ ବେତ୍ଥ ଜାନାସି । ନାନ୍ୟଃ, ତଦପ୍ୟାତ୍ମନା ତ୍ୱୟୈବ ବେତ୍ଥ, ନ ସାଧନାନ୍ତରେଣ । ଅତ୍ୟାଦରେଣ ବହୁଧା ସମ୍ବୋଧୟତି—ହେ ପୁରୁଷୋତ୍ତମ ପୁରୁଷୋତ୍ତମତ୍ୱେ ହେତୁଗର୍ଭାଣି ବିଶେଷଣାନି ସମ୍ବୋଧନାନି । ହେ ଭୂତଭାବନ ଭୂତୋତ୍ପାଦକ, ଭୂତାନାମୀଶ ନିୟନ୍ତଃ । ଦେବାନାମାଦିତ୍ୟାଦୀନାଂ ଦେବ ପ୍ରକାଶକ । ଜଗତ୍ପତେ ବିଶ୍ୱପାଳକ ।

ବିବୃତି—ତ୍ରିଗୁଣାଗତ ମାୟାଶୂନ୍ୟ ପୁରୁଷହିଁ ପୁରୁଷୋତ୍ତମ, ତେଣୁ ତାଙ୍କର ଆତ୍ମଜ୍ଞାନ ସ୍ୱତଃସିଦ୍ଧ । ସୁତରାଂ ଅନ୍ୟକୁ ଅପେକ୍ଷା ନ କରି ତାଙ୍କର ଜ୍ଞାନ ସ୍ୱତଃ ସ୍ଫୁରିତ ହୋଇଅଛି । ଏପରି ଅବସ୍ଥାରେ ଆତ୍ମଜ୍ଞାନଦ୍ୱାରା ସେ ନିଜେ ନିଜକୁ ଜାଣନ୍ତି । ପରେ ଭଗବାନ୍ ଯେଉଁ ବିଭୂତିର ବର୍ଣ୍ଣନା କରିବେ ତାହା ତାଙ୍କ ଛଡ଼ା ଅନ୍ୟ କେହି ଜାଣନ୍ତି ନାହିଁ, ତେଣୁ ପୁରୁଷୋତ୍ତମ ପଦର ଚାରିଗୋଟି ହେତୁଗର୍ଭ ବିଶେଷଣ ସମ୍ବୋଧନ ପଦ ରୂପେ ପ୍ରଯୁକ୍ତ ହୋଇଅଛି । ଭୂତଭାବନର ଅର୍ଥ ସମସ୍ତ ଭୂତଙ୍କ ଉତ୍ପାଦକ, ଭୂତେଶର ଅର୍ଥ ଭୂତମାନଙ୍କ ଶାସନକାରୀ, ସୂର୍ଯ୍ୟାଦି ସମସ୍ତ ଦେବତାଙ୍କର ଉପାସ୍ୟ ବୋଲି ସେ ଦେବଦେବ ଓ ସମସ୍ତ ଜଗତର ପାଳକ ବୋଲି ସେ ଜଗତ୍ପତି ।

୧୬ । ଅନ୍ୱୟ ଦୀପିକା—ଯାଭିଃ ( ଯେଉଁସବୁ ) ବିଭୂତିଭିଃ ( ବିଭୂତି ଦ୍ୱାରା ) ତ୍ୱଂ ( ତୁମେ ) ଇମାନ୍ ( ଏହି ) ଲୋକାନ୍ ( ଲୋକସମୂହକୁ )

କଥଂ ବିଦ୍ୟାମହଂ ଯୋଗିଂସ୍ତ୍ୱାଂ ସଦା ପରିଚିନ୍ତୟନ୍,
କେଷୁ କେଷୁ ଚ ଭାବେଷୁ ଚିନ୍ତ୍ୟୋଽସି ଭଗବନ୍ ମୟା । ୧୭ ।

ଵ୍ୟାପ୍ୟ ( ବ୍ୟାପିକରି ) ତିଷ୍ଠସି ( ରହିଅଛ ) [ ସେହିସବୁ ] ଦିବ୍ୟା ଆତ୍ମବିଭୂତୟଃ ( ଦିବ୍ୟ ଅତ୍ମବିଭୂତିମାନଙ୍କୁ ) ଅଶେଷେଣ ହି (ବିସ୍ତୃତରୂପରେ ) ବକ୍ତୁମ୍ ଅର୍ହସି ( କହିବାକୁ ଉପଯୁକ୍ତ ଅଛ ) ।

ଅନୁବାଦ—ତୁମେ ଯେଉଁସବୁ ବିଭୂତିଦ୍ୱାରା ସ୍ୱର୍ଗାଦି ସବୁ ଲୋକ ବ୍ୟାପି ରହିଅଛ, ସେହିସବୁ ଦିବ୍ୟ ବିଭୂତି ତୁମେ ବିସ୍ତୃତରୂପେ ( କୃପାକରି ) ବର୍ଣ୍ଣନ କର ।

ସୁବୋଧିନୀ ଟୀକା—ଯସ୍ମାତ୍ ତବାଭିବ୍ୟକ୍ତିଂ ତ୍ୱମେବ ବେତ୍ଥ ସି । ନ ଦେବାଦୟଃ । ତସ୍ମାତ୍—ବକ୍ତୁମିତି । ଯା ଅସାଧାରଣ ଦିବ୍ୟା ଅତ୍ୟଦ୍ଭୁତା ବିଭୂତୟ ସ୍ତାଃ ସର୍ବା ବକ୍ତୁଂ ତ୍ୱମେବାର୍ହସି ଯୋଗ୍ୟୋଽସି । ଯାଭିରେତ ବଭୂତୀନାଂ ବଶେଷଣଂ ସ୍ପଷ୍ଟାର୍ଥଂ ।

ବିବୃତ—ଐଶୀଶକ୍ତି ସଂସାରରେ ସର୍ବତ୍ର ବିଦ୍ୟମାନ, ଯେଉଁଠାରେ ସେ ଶକ୍ତି ବିଶେଷରୂପେ ପରିସ୍ଫୁଟ ଓ ଅନୁଭବଯୋଗ୍ୟ ସେଠାରେ ତାହାକୁହିଁ ଭଗବାନଙ୍କର ବିଭୂତି ବୋଲି କୁହାଯାଏ ।

୧୭ । ଅନ୍ୱୟ ଦୀପିକା—ଯୋଗିନ୍ ( ହେ ଯୋଗିନ୍ ), ଅହଂ ( ମୁଁ ) ତ୍ୱାଂ ( ତୁମ୍ଭକୁ ) ସଦା ( ସର୍ବଦା ) କଥଂ ( କପରି ) ଚିନ୍ତୟନ୍ ( ଚିନ୍ତାକରି ) ବିଦ୍ୟାଂ ( ଜାଣିପାରିବି ? ) [ହେ] ଭଗବନ୍ କେଷୁ କେଷୁ ଭାବେଷୁ ଚ ( କେଉଁ କେଉଁ ପଦାର୍ଥରେ ) ମୟା ( ମୋ ଦ୍ୱାରା ) ଚିନ୍ତ୍ୟଃ ଅସି ( ତୁମେ ଚିନ୍ତନୀୟ ଅଛ ) ?

ଅନୁବାଦ—ହେ ଯୋଗିନ୍, ମୁଁ ତୁମ୍ଭକୁ ସବୁବେଳେ କପରି ଚିନ୍ତାକରି ଜାଣି ପାରିବି ? ହେ ଭଗବନ୍, କେଉଁ କେଉଁ ପଦାର୍ଥରେ କି ଭାବରେ ତୁମ୍ଭକୁ ଚିନ୍ତାକରିବି ତାହା କହିଦିଅ ।

ସୁବୋଧିନୀ ଟୀକା—କଥନ ପ୍ରୟୋଜନଂ ଦର୍ଶୟନ୍ ପ୍ରାର୍ଥୟତେ କଥମିତି ଦ୍ୱାଭ୍ୟାଂ । ହେ ଯୋଗିନ୍, କଥଂ କୈ ର୍ବିଭୂତିଭେଦୈଃ ସଦା ପରିଚିନ୍ତୟନ୍ନହଂ ତ୍ୱାଂ ବିଦ୍ୟାଂ ଜାନୀୟାଂ ? ବିଭୂତିଭେଦେନ ଚିନ୍ତ୍ୟୋଽସି ତ୍ୱଂ କେଷୁ କେଷୁ ପଦାର୍ଥେଷୁ ମୟା ଚିନ୍ତନୀୟୋଽସି ?

ବିବୃତ—ଭଗବାନ୍ ନାନା ଐଶ୍ୱର୍ଯ୍ୟସମ୍ପନ୍ନ, ତେଣୁ ଏଠାରେ ଅର୍ଜ୍ଜୁନଙ୍କର 'ଯୋଗିନ୍' ସମ୍ବୋଧନ ହେତୁଗର୍ଭ । କାରଣ ଯେଉଁ ବିଭୂତି-ବର୍ଣ୍ଣନ ପାଇଁ ଅର୍ଜ୍ଜୁନ ପ୍ରାର୍ଥନା କରୁଅଛନ୍ତି ସେ ସବୁ ବିଭୂତି ଭଗବାନଙ୍କର ଐଶ୍ୱର୍ଯ୍ୟର ବିକାଶ ମାତ୍ର, ଭଗବାନ୍ କେଉଁଠାରେ କେତେସ୍ୱରେ ବିରାଜିତ

ବିସ୍ତରେଣାତ୍ମନୋ ଯୋଗଂ ବିଭୂତିଂ ଚ ଜନାର୍ଦ୍ଦନ ।
ଭୂୟଃ କଥୟ ତୃପ୍ତିର୍ହି ଶୃଣ୍ୱତୋ ନାସ୍ତି ମେଽମୃତମ୍ । ୧୮ ।
ଶ୍ରୀ ଭଗବାନୁବାଚ
ହନ୍ତ ତେ କଥୟିଷ୍ୟାମି ଦିବ୍ୟା ହ୍ୟାତ୍ମବିଭୂତୟଃ ।
ପ୍ରାଧାନ୍ୟତଃ କୁରୁଶ୍ରେଷ୍ଠ ନାସ୍ତ୍ୟନ୍ତୋ ବିସ୍ତରସ୍ୟ ମେ । ୧୯ ।

ଅଛନ୍ତି, ତାହା କିଏ କହି ପାରିବ ? ତେଣୁ ଅର୍ଜ୍ଜୁନ ନିଜ କଲ୍ୟାଣ କାମନାରେ ନିଜ ଧ୍ୟାନୋପଯୋଗୀ ବିଭୂତି ବିଷୟ ଜାଣିବା ପାଇଁ ଭଗବାନଙ୍କୁ ପ୍ରାର୍ଥନା କଲେ ।

୧୮ । **ଅନ୍ୱୟ ଦୀପିକା**—[ହେ] ଜନାର୍ଦ୍ଦନ, ଆତ୍ମନଃ (ସ୍ୱକୀୟ) ଯୋଗଂ ବିଭୂତିଂଚ (ଯୋଗ ଓ ବିଭୂତିକୁ) ବିସ୍ତରେଣ (ବିସ୍ତାର ପୂର୍ବକ) ଭୂୟଃ ( ପୁନର୍ବାର ) କଥୟ ( କହ ), ହି ( କାରଣ ) ଅମୃତଂ ( ତୁମ୍ଭର ଅମୃତୋପମ ବଚନ ) ଶୃଣ୍ୱତଃ ( ଶୁଣି ) ମେ ( ମୋର ) ତୃପ୍ତିଃ ( ସନ୍ତୋଷ ) ନ ଅସ୍ତି ( ହେଉନାହିଁ ) ।

**ଅନୁବାଦ**—ହେ ଜନାର୍ଦ୍ଦନ, ତୁମ୍ଭର ଯୋଗ ଓ ବିଭୂତି ବିଷୟ ପୁନର୍ବାର ମୋତେ ବିସ୍ତାର ପୂର୍ବକ କହ । କାରଣ ତୁମ୍ଭର ଅମୃତୋପମ ବଚନ ଶୁଣି ମୋର ତୃପ୍ତି ହେଉନାହିଁ ।

**ସୁବୋଧିନୀ ଟୀକା**—ତଦେବ ବହୁମୁଖେଽପି ଶ୍ରୁତେ ତେ ତେ ବିଭୂତିଭେଦେନ କିଞ୍ଚିନ୍ନୈବ ଯଥା ଭବେତ୍ ତଥା ବିସ୍ତରେଣ କଥୟେତ୍ୟାହ— ବିସ୍ତରେଣେତି । ଆତ୍ମନସ୍ତବ ଯୋଗଂ ସର୍ବଜ୍ଞତ୍ୱସର୍ବଶକ୍ତିତ୍ୱାଦିଲକ୍ଷଣଂ ଯୋଗୈଶ୍ୱର୍ଯ୍ୟଂ ବିଭୂତିଂ ଚ ବିସ୍ତରେଣ ପୁନଃ କଥୟ । ହି ଯତସ୍ତବ ବାକ୍ୟ-ମମୃତରୂପଂ ଶୃଣ୍ୱତୋମମ ତୃପ୍ତିରଳଂବୁଦ୍ଧିର୍ନାସ୍ତି ।

**ବକ୍ତବ୍ୟ**—ପୂର୍ବେ ୭ମ ଅଧ୍ୟାୟରେ ଓ ୯ମ ଅଧ୍ୟାୟରେ ଭଗବାନ୍ ନିଜ ବିଭୂତି ସମ୍ବନ୍ଧରେ କେତେକ କଥା କହି ଅଛନ୍ତି । ଏଠାରେ ବିସ୍ତାରିତ ରୂପେ ସେ ସବୁ ଶୁଣିବାକୁ ଇଚ୍ଛା କରିବାରୁ ଅର୍ଜ୍ଜୁନ 'ଭୂୟ' ବା ପୁନର୍ବାର ଶବ୍ଦର ପ୍ରୟୋଗ କରିଅଛନ୍ତି ।

ଯୋଗ ଶବ୍ଦର ବ୍ୟାଖ୍ୟା ୭ମ ଅଧ୍ୟାୟ ୨୫ଶ ଶ୍ଳୋକରେ କରି ଯାଇଅଛି । ଏବଂ ଏ ଅଧ୍ୟାୟ ୧୬ଶ ଶ୍ଳୋକରେ ବିଭୂତି ଶବ୍ଦର ଅର୍ଥ କୁହା ଯାଇଅଛି । ଏଠାରେ ମନେ ରଖିବାକୁ ହେବ ଯେ 'ବିଭୂତି' ଈଶ୍ୱର ନୁହନ୍ତି, ଐଶୀ ଶକ୍ତିର ବିକାଶ ମାତ୍ର । ଈଶ୍ୱର ସର୍ବତ୍ର ଅଛନ୍ତି ଏହା ଏକ ପ୍ରକାର ଜ୍ଞାନ ଓ ଈଶ୍ୱରଙ୍କ ବିଭୂତି—ଅନ୍ୟ ପ୍ରକାର ଜ୍ଞାନ ।

୧୯ । **ଅନ୍ୱୟ ଦୀପିକା**—ଶ୍ରୀଭଗବାନ୍ ଉବାଚ ( ଶ୍ରୀ ଭଗବାନ୍ କହିଲେ)—ହନ୍ତ ( ଅଚ୍ଛା ହେଉ ) [ହେ] କୁରୁଶ୍ରେଷ୍ଠ, ଦିବ୍ୟାଃ ଆତ୍ମବିଭୂତୟଃ

ଅହମାତ୍ମା ଗୁଡାକେଶ ସର୍ବଭୂତାଶୟସ୍ଥିତଃ ।
ଅହମାଦିଶ୍ଚ ମଧ୍ୟଂ ଚ ଭୂତାନାମନ୍ତ ଏବ ଚ । ୨୦ ।

( ନିଜର ଦିବ୍ୟ ବିଭୂତି ସମସ୍ତ ) ପ୍ରାଧାନ୍ୟତଃ ( ପ୍ରଧାନ ପ୍ରାଧାନ ରୂପେ ) ତେ ( ତୁମ୍ଭଙ୍କୁ ) କଥୟିଷ୍ୟାମି (କହିବୁଁ), ହି ( କାରଣ ) ମେ ( ଆମର ) ବିସ୍ତରସ୍ୟ ( ବିସ୍ତୃତ ବିଭୂତିର ) ଅନ୍ତଃ ନାସ୍ତି ( ଅନ୍ତ ନାହିଁ ) ।

ଅନୁବାଦ—ଅଚ୍ଛା ହେଉ, ହେ କୁରୁଶ୍ରେଷ୍ଠ, ବର୍ତ୍ତମାନ ନିଜର ଦିବ୍ୟ ବିଭୂତି ମଧ୍ୟରୁ ପ୍ରଧାନ ପ୍ରଧାନ କେତେକ ତୁମ୍ଭଙ୍କୁ କହିବୁଁ । କାରଣ ଆମ ବିସ୍ତୃତ ବିଭୂତିର ଅନ୍ତ ନାହିଁ ।

ସୁବୋଧିନୀ ଟୀକା—ଏବଂ ପ୍ରାର୍ଥିତଃସନ୍ ଭଗବାନ୍ ଉବାଚ—ହନ୍ତେତି । ହନ୍ତେତ୍ୟନୁକମ୍ପା ସମ୍ବୋଧନେ । ଦିବ୍ୟା ଯା ମଦ୍‌ବିଭୂତୟସ୍ତାଃ ପ୍ରାଧାନ୍ୟେନ ତେ ତୁଭ୍ୟଂ କଥୟିଷ୍ୟାମି । ଯତୋଽବାନ୍ତରସ୍ୟ ବିଭୂତିବିସ୍ତରସ୍ୟ ମଦୀୟସ୍ୟାନ୍ତୋ ନାସ୍ତି । ଅତଃ ପ୍ରଧାନଭୂତାଃକତିଚିଦ୍ ବର୍ଣ୍ଣୟିଷ୍ୟାମି ।

ବକ୍ତବ୍ୟ—ଭଗବାନଙ୍କର ଏହି ବିଭୂତି ବର୍ଣ୍ଣନା ମହାଭାରତରେ କେତେକ ସ୍ଥଳରେ ଅଛି । ବିଶେଷତଃ ଶ୍ରୀମଦ୍ ଭାଗବତ ୧୧ଶ ସ୍କନ୍ଧ ଷୋଡ଼ଶ ଅଧ୍ୟାୟରେ ଭଗବାନ୍ ଏହି ଭାବରେ ଉଦ୍ଧବଙ୍କ ନିକଟରେ ବିଭୂତି ବର୍ଣ୍ଣନା କରି ଅଛନ୍ତି । ସେ ବର୍ଣ୍ଣନା ଗୀତାର ଏ ବର୍ଣ୍ଣନାର ଅନୁରୂପ—ଏହା ସେଠାରେ ଭାଗବତକାର ନିଜେ ଉଲ୍ଲେଖ କରିଅଛନ୍ତି ।

୨୦ । ଅନ୍ୱୟ ଦୀପିକା—ଗୁଡ଼ାକେଶ ( ହେ ଅର୍ଜ୍ଜୁନ ) ସର୍ବଭୂତାଶୟସ୍ଥିତଃ ( ସର୍ବଭୂତଙ୍କ ହୃଦୟରେ ଅବସ୍ଥିତ ) ଆତ୍ମା ଅହଂ ( ଆମ୍ଭେ ଆତ୍ମା ଅଟୁଁ ) । ଅହଂ ( ଆମ୍ଭେ ) ଭୂତାନାଂ ( ସକଳ ଭୂତଙ୍କର ) ଆଦିଃ ( ଉତ୍ପତ୍ତି ) ମଧ୍ୟଂ ( ସ୍ଥିତି ) ଅନ୍ତଃ ଚ ( ଏବଂ ବିନାଶ ସ୍ୱରୂପ ) ।

ଅନୁବାଦ—ହେ ଅର୍ଜ୍ଜୁନ, ଆମ୍ଭେ ସବୁ ଭୂତଙ୍କ ହୃଦୟରେ ଅବସ୍ଥିତ ଆତ୍ମା; ଏବଂ ସର୍ବଭୂତର ଉତ୍ପତ୍ତି, ସ୍ଥିତି ଓ ବିନାଶ ସ୍ୱରୂପ ।

ସୁବୋଧିନୀ ଟୀକା—ତତ୍ର ପ୍ରଥମମୈଶ୍ୱରଂ ରୂପଂ କଥୟତି—ଅହମିତି । ହେ ଗୁଡ଼ାକେଶ, ସର୍ବେଷାଂ ଭୂତାନାମାଶୟେଷ୍ୱନ୍ତଃକରଣେଷୁ ସର୍ବଜ୍ଞତ୍ୱାଦଗୁଣୈ ନିୟନ୍ତୃତ୍ୱେନାବସ୍ଥିତଃ ପରମାତ୍ମାଽହମ୍ । ଆଦିର୍ଜନ୍ମ । ମଧ୍ୟଂ ସ୍ଥିତିଃ । ଅନ୍ତଃ ସଂହାରଃ । ସର୍ବଭୂତାନାଂ ଜନ୍ମାଦି ହେତୁ ସ୍ତାହମେବେତ୍ୟର୍ଥଃ ।

ବକ୍ତବ୍ୟ—ଏ ଶ୍ଳୋକରେ ଭଗବାନଙ୍କର ଐଶ୍ୱରିକ ରୂପର ବର୍ଣ୍ଣନା ହୋଇଅଛି । ପରବର୍ତ୍ତୀ ଶ୍ଳୋକରୁ ବିଭୂତି ବର୍ଣ୍ଣନ ଆରମ୍ଭ ହେବ । (ଶ୍ରୀଧର) ।

ଗୁଡ଼ାକେଶ ଶବ୍ଦର ବ୍ୟାଖ୍ୟା ପ୍ରଥମ ଅଧ୍ୟାୟର ୨୪ଶ ଶ୍ଳୋକରେ କରି ଯାଇଅଛି ।

'ଆଦିତ୍ୟାନାମହଂ ବିଷ୍ଣୁର୍ଜ୍ୟୋତିଷାଂ ରବିରଂଶୁମାନ୍ ।
ମରୀଚିର୍ମରୁତାମସ୍ମି ନକ୍ଷତ୍ରାଣାମହଂ ଶଶୀ । ୨୧ ।

ବେଦାନାଂ ସାମବେଦୋଽସ୍ମି ଦେବାନାମସ୍ମି ବାସବଃ ।
ଇନ୍ଦ୍ରିୟାଣାଂ ମନଶ୍ଚାସ୍ମି ଭୂତାନାମସ୍ମି ଚେତନା । ୨୨ ।

୨୧ । ଅନ୍ୱୟ ଦୀପିକା—ଅହଂ ( ଅମ୍ଭେ ) ଆଦିତ୍ୟାନାଂ ବିଷ୍ଣୁଃ ( ଆଦିତ୍ୟମାନଙ୍କ ମଧ୍ୟରେ ବିଷ୍ଣୁ ) ଜ୍ୟୋତିଷାଂ ( ଜ୍ୟୋତିଷ୍ମାନ୍‌ମାନଙ୍କ ମଧ୍ୟରେ ) ଅଂଶୁମାନ୍ ରବିଃ ( ରଶ୍ମିଯୁକ୍ତ ସୂର୍ଯ୍ୟ ) । ମରୁତାଂ ( ବାୟୁମାନଙ୍କ ମଧ୍ୟରେ ) ମରୀଚିଃ ( ମରୀଚି ) । ନକ୍ଷତ୍ରାଣାଂ (ନକ୍ଷତ୍ରମାନଙ୍କ ମଧ୍ୟରେ ) ଅହଂ ଶଶୀ ( ଅମ୍ଭେ ଚନ୍ଦ୍ର ) ଅସ୍ମି ( ଅଟୁ ) ।

ଅନୁବାଦ—ଦ୍ୱାଦଶ ଆଦିତ୍ୟଙ୍କ ମଧ୍ୟରେ ଅମ୍ଭେ ବିଷ୍ଣୁ-ନାମକ ଆଦିତ୍ୟ; ଜ୍ୟୋତିଷ୍ମାନଙ୍କର ମଧ୍ୟରେ ଅମ୍ଭେ କିରଣମାଳୀ ସୂର୍ଯ୍ୟ; ବାୟୁମାନଙ୍କ ମଧ୍ୟରେ ଅମ୍ଭେ ମରୀଚି ଏବଂ ନକ୍ଷତ୍ରମାନଙ୍କ ମଧ୍ୟରେ ଅମ୍ଭେ ଚନ୍ଦ୍ର ।

ସୁବୋଧିନୀ ଟୀକା—ଇଦାନୀଂ ବିଭୂତୀଃ କଥୟତି । ଆଦିତ୍ୟାନା ମିତ୍ୟାଦିନା ଯାବଦଧ୍ୟାୟସମାପ୍ତିଃ । ଆଦିତ୍ୟାନାଂ ଦ୍ୱାଦଶାନାଂ ମଧ୍ୟେ ବିଷ୍ଣୁର୍ନାମ ଆଦିତ୍ୟୋଽହମ୍ । ଜ୍ୟୋତିଷାଂ ପ୍ରକାଶକାନାଂ ମଧ୍ୟେଽଂଶୁମାନ୍ ବିଶ୍ୱବ୍ୟାପିରଶ୍ମିଯୁକ୍ତୋ ରବିଃସୂର୍ଯ୍ୟୋଽହମ୍ । ମରୁତାଂ ଦେବବିଶେଷାଣାଂ ମଧ୍ୟେ ମରୀଚିର୍ନାମାହମସ୍ମି । ଯଦ୍ୱା ସପ୍ତମରୁଦ୍‌ଗଣା ବାୟବଃ । ତେଷାଂ ମଧ୍ୟ ଇତି । ତେଚ—ଆବହଃ ପ୍ରବହୋ ବିବହଃ ପରାବହ ଉଦ୍‌ବହଃ ସଂବହଃ ପରିବହ ଇତି ସପ୍ତ ମରୁଦ୍‌ଗଣାଃ । ନକ୍ଷତ୍ରାଣାଂ ମଧ୍ୟେ ଚନ୍ଦ୍ରୋଽହମ୍ ।

ଅତ୍ର ଗୃଦିତ୍ୟାନାମହଂ ବିଷ୍ଣୁରିତ୍ୟାଦିଷୁ ପ୍ରାୟଶୋନିର୍ଦ୍ଧାରଣେ ଷଷ୍ଠୀ । କ୍ୱଚିତ୍ ଭୂତାନାମସ୍ମି ଚେତନେତ୍ୟାଦିଷୁ ସମ୍ବନ୍ଧେ ଷଷ୍ଠୀ । ତଚ୍ଚ ତତ୍ରତତ୍ରୈବ ଦର୍ଶୟିଷ୍ୟାମଃ । ବିଷ୍ଣୁରିତ୍ୟାଦ୍ୟବତାରେଷ୍ୱପି ପ୍ରଭାବାତିଶୟମାତ୍ରବିବକ୍ଷୟା ବିଭୂତିତ୍ୱେନ ନିର୍ଦ୍ଦିଶ୍ୟତେ । ଅତଃ ପରଂ ଗ୍ରନ୍ଥାୟୁଷ୍ୟ ସ୍ପଷ୍ଟାର୍ଥତ୍ୱେଽପି କ୍ୱଚିତ୍ କଞ୍ଚିଦ୍ ବ୍ୟାଖ୍ୟାସ୍ୟାମଃ ।

ବିବୃତି—ଧାତା, ମିତ୍ର, ଅର୍ଯ୍ୟମା, ରୁଦ୍ର, ବରୁଣ, ସୂର୍ଯ୍ୟ, ଭଗ, ବିବସ୍ୱାନ୍, ପୂଷା, ସବିତା, ତ୍ୱଷ୍ଟା ଓ ବିଷ୍ଣୁ—ଏମାନେ ଦ୍ୱାଦଶ ଆଦିତ୍ୟ । ବାୟୁ ୭ ଗୋଟି—ଆବହ, ପ୍ରବହ, ବିବହ, ପରାବହ, ଉଦ୍‌ବହ, ସଂବହ ଓ ପରିବହ ।

୨୨ । ଅନ୍ୱୟ ଦୀପିକା—ବେଦାନାଂ (ବେଦମାନଙ୍କ ମଧ୍ୟରେ ) [ ଅମେ ], ସାମବେଦଃ ଅସ୍ମି ( ସାମବେଦ ଅଟୁ ) । ଦେବାନାଂ ( ଦେବତାମାନଙ୍କ ମଧ୍ୟରେ ) ବାସବଃ ( ଇନ୍ଦ୍ର ) ଅସ୍ମି ( ଅଟୁ ) । ଇନ୍ଦ୍ରିୟାଣାଂ

ରୁଦ୍ରାଣାଂ ଶଙ୍କରଶ୍ଚାସ୍ମି ବିତ୍ତେଶୋ ଯକ୍ଷରକ୍ଷସାମ୍ ।
ବସୂନାଂ ପାବକଶ୍ଚାସ୍ମି ମେରୁଃ ଶିଖରିଣାମହମ୍ । ୨୩ ।

( ଇନ୍ଦ୍ରିୟମାନଙ୍କ ମଧ୍ୟରେ ) ମନଃ ଅସ୍ମି ( ଅମ୍ଭେ ମନ ଅଟୁଁ ), ଭୂତାନାଂ ( ଭୂତମାନଙ୍କ ମଧ୍ୟରେ ) ଚେତନା ଅସ୍ମି ( ଅମ୍ଭେ ଚେତନା ) ।

ଅନୁବାଦ—ବେଦମାନଙ୍କ ମଧ୍ୟରେ ଅମେ ସାମବେଦ, ଦେବତା-ମାନଙ୍କ ମଧ୍ୟରେ ଅମେ ଇନ୍ଦ୍ର, ଇନ୍ଦ୍ରିୟମାନଙ୍କ ମଧ୍ୟରେ ଅମେ ମନ, ଭୂତମାନଙ୍କ-ମଧ୍ୟରେ ଅମେ ଜ୍ଞାନ ଶକ୍ତି ।

ସୁବୋଧିନୀ ଟୀକା—ବେଦାନାମିତି । ବାସବ ଇନ୍ଦ୍ରଃ । ଭୂତାନାଂ ଚେତନା ଜ୍ଞାନଶକ୍ତିରହମସ୍ମି ।

ବକ୍ତବ୍ୟ—ମହାଭାରତ ଅନୁଶାସନ ପର୍ବରେ ( ୧୪, ୩୩୨ ) ଏହିପରି କଥିତ ଅଛି :—

"ସାମବେଦଶ୍ଚ ବେଦାନାଂ ଯଜୁଷାଂ ଶତରୁଦ୍ରିୟମ୍ ।"

କିନ୍ତୁ ଗୀତା ୯ମ ଅଧ୍ୟାୟ ୧୭ଶ ଶ୍ଳୋକରେ 'ଋକ୍ ସାମ ଯଜୁରେବଚ' ଏଠାରେ ଋଗ୍‌ବେଦକୁ ପ୍ରଥମ ସ୍ଥାନ ଦିଆ ଯାଇଅଛି । ଏହିପରି ପରସ୍ପର ବିରୁଦ୍ଧ ବର୍ଣ୍ଣନା ଦେଖି ଅନେକ ଲୋକ ନାନା ପ୍ରକାର ବ୍ୟାଖ୍ୟା କରନ୍ତି । ସାମବେଦ ଋଗ୍ ବେଦର ସାର—ଛାନ୍ଦୋଗ୍ୟ ଉପନିଷଦରେ ଏହିପରି କୁହାଯାଇଅଛି । ( ୧-୧-୨ ) । ସେ ଯାହାହେଉ ସାମବେଦ ଗାନ ପ୍ରଧାନ, ଭକ୍ତିମାର୍ଗରେ ପରମେଶ୍ୱରଙ୍କ ଗାନଯୁକ୍ତ ସ୍ତବର ପ୍ରାଧାନ୍ୟ ଅଛି । ଅତଏବ ଭକ୍ତି ପ୍ରଧାନ ଧର୍ମରେ ଯାଗ ଯଜ୍ଞ ପ୍ରଭୃତି କ୍ରିୟାତ୍ମକ ବେଦ ଅପେକ୍ଷା ଗାନପ୍ରଧାନ ସାମବେଦକୁ ଅଧିକ ମାହାତ୍ମ୍ୟ ଦିଆଯାଇଅଛି—ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ( ତିଲକ )

୨୩ । ଅନ୍ୱୟ ଦୀପିକା—ରୁଦ୍ରାଣାଂ ( ରୁଦ୍ରଗଣଙ୍କ ମଧ୍ୟରେ ) ଶଙ୍କରଃ ଅସ୍ମି ( ଅମ୍ଭେ ଶଙ୍କର ), ଯକ୍ଷରକ୍ଷସାଂ ଚ ( ଯକ୍ଷ ଓ ରାକ୍ଷସମାନଙ୍କ ମଧ୍ୟରେ ) ବିତ୍ତେଶଃ ( କୁବେର ଅଟୁଁ ) ବସୂନାଂ ( ବସୁଗଣଙ୍କ ମଧ୍ୟରେ ) ପାବକଃ ଅସ୍ମି ( ଅମ୍ଭେ ଅଗ୍ନି ), ଶିଖରିଣାମ୍ (ପର୍ବତମାନଙ୍କ ମଧ୍ୟରେ) ମେରୁଃ ଅସ୍ମି ( ଅମ୍ଭେ ମେରୁ ଅଟୁଁ ) ।

ଅନୁବାଦ—ରୁଦ୍ରଗଣଙ୍କ ମଧ୍ୟରେ ଅମ୍ଭେ ଶଙ୍କର, ଯକ୍ଷ ଓ ରାକ୍ଷସ-ମାନଙ୍କ ମଧ୍ୟରେ ଅମ୍ଭେ କୁବେର, ବସୁମାନଙ୍କ ମଧ୍ୟରେ ଅମ୍ଭେ ଅଗ୍ନି, ପର୍ବତ-ମାନଙ୍କ ମଧ୍ୟରେ ଅମ୍ଭେ ସୁମେରୁ ।

ସୁବୋଧିନୀ ଟୀକା—ରୁଦ୍ରାଣାମିତି । ରକ୍ଷସାମପି ନୈଋତ୍ୟାଦ-ସାମ୍ୟାଦ୍ ଯକ୍ଷୈଃ ସହୈକୀକୃତ୍ୟ ନିର୍ଦ୍ଦେଶଃ, ତେଷାଂ ମଧ୍ୟେ ବିତ୍ତେଶଃ କୁବେରୋଽସ୍ମି । ଶିଖରିଣାଂ ଶିଖରବତା ମୂର୍ତ୍ତିମତାନାଂ ମଧ୍ୟେ ମେରୁଃ ।

ପୁରୋଧସାଂ ଚ ମୁଖ୍ୟଂ ମାଂ ବିଦ୍ଧି ପାର୍ଥ ବୃହସ୍ପତିମ୍ ।
ସେନାନୀନାମହଂ ସ୍କନ୍ଦଃ ସରସାମସ୍ମି ସାଗରଃ । ୨୪ ।
ମହର୍ଷୀଣାଂ ଭୃଗୁରହଂ ଗିରାମସ୍ମ୍ୟେକମକ୍ଷରମ୍ ।
ଯଜ୍ଞାନାଂ ଜପଯଜ୍ଞୋଽସ୍ମି ସ୍ଥାବରାଣାଂ ହିମାଳୟଃ । ୨୫ ।

ବିବୃତି—ଏକାଦଶରୁଦ୍ର,—ଅଜ, ଏକପାଦ, ଅହିବ୍ରଧ୍ନ, ପିନାକୀ, ଅପରାଜିତ, ତ୍ର୍ୟମ୍ବକ, ମହେଶ୍ୱର, ବୃଷାକପି, ଶମ୍ଭୁ, ହର, ଈଶ୍ୱର । ଅନ୍ୟମତରେ —ମହାଦେବ, ମହେଶ୍ୱର, ଶଙ୍କର, ବୃଷଭଧ୍ୱଜ, କୃତ୍ତିବାସ, କାମାଙ୍ଗନାଶନ, ଦେବଦେବ, ନୀଳକଣ୍ଠ, ଈଶ୍ୱର, ପାର୍ବତୀପତି, ରୁଦ୍ର, ଶିବ—ଏହି ୧୨ ଗୋଟି । ଅଷ୍ଟବସୁ—ଭବ, ଧ୍ରୁବ, ସୋମ, ବିଷ୍ଣୁ, ଅନିଳ, ଅନଳ (ପାବକ), ପ୍ରତ୍ୟୂଷ, ପ୍ରଭବ ।

୨୪ । ଅନ୍ୱୟ ଦୀପିକା—[ହେ] ପାର୍ଥ, ମାଂ (ଆମ୍ଭକୁ) ପୁରୋଧସାଂ ଚ (ପୁରୋହିତମାନଙ୍କ ମଧ୍ୟରେ) ମୁଖ୍ୟଂ ବୃହସ୍ପତିଂ (ପ୍ରଧାନ ବୃହସ୍ପତି ବୋଲି) ବିଦ୍ଧି (ଜାଣ) । ଅହଂ ସେନାନୀନାଂ (ଆମ୍ଭେ ସେନାପତି-ମାନଙ୍କ ମଧ୍ୟରେ) ସ୍କନ୍ଦଃ (କାର୍ତ୍ତିକେୟ); ସରସାଂ (ଜଳାଶୟମାନଙ୍କ-ମଧ୍ୟରେ) ସାଗରଃ ଅସ୍ମି (ସମୁଦ୍ର ଅଟୁଁ) ।

ଅନୁବାଦ—ହେ ପାର୍ଥ, ପୁରୋହିତମାନଙ୍କ ମଧ୍ୟରେ ପ୍ରଧାନ ବୃହସ୍ପତି ବୋଲି ଆମ୍ଭକୁ ଜାଣ । ଆମ୍ଭେ ସେନାପତିମାନଙ୍କ ମଧ୍ୟରେ ଦେବ ସେନାପତି କାର୍ତ୍ତିକେୟ ଏବଂ ଜଳାଶୟମାନଙ୍କ ମଧ୍ୟରେ ସାଗର ଅଟୁଁ ।

ସୁବୋଧିନୀ ଟୀକା—ପୁରୋଧସାମିତି । ପୁରୋଧସାଂ ମଧ୍ୟେ ଦେବପୁରୋହିତତ୍ୱାନ୍ମୁଖ୍ୟଂ ବୃହସ୍ପତିଂ ମାଂ ବିଦ୍ଧି । ସେନାନୀନାଂ ସେନାପତୀନାଂ ମଧ୍ୟେ ଦେବସେନାପତିଃ ସ୍କନ୍ଦୋଽହମସ୍ମି । ସରସାଂ ସ୍ଥିରଜଳାଶୟାନାଂ ମଧ୍ୟେ ସମୁଦ୍ରୋଽସ୍ମି ।

୨୫ । ଅନ୍ୱୟ ଦୀପିକା—ଅହମ୍ (ଆମ୍ଭେ) ମହର୍ଷୀଣାଂ (ମହର୍ଷିମାନଙ୍କ ମଧ୍ୟରେ) ଭୃଗୁଃ (ଭୃଗୁ), ଗିରାମ୍ (ପଦ ସମୂହମଧ୍ୟରେ) ଏକମ୍ ଅକ୍ଷରମ୍ (ଆମ୍ଭେ ଏକାକ୍ଷର ପ୍ରଣବ), ଯଜ୍ଞାନାଂ (ଯଜ୍ଞସମୂହ ମଧ୍ୟରେ) ଜପଯଜ୍ଞଃ (ଆମ୍ଭେ ଜପଯଜ୍ଞ) । ସ୍ଥାବରାଣାଂ (ସ୍ଥାବର ପଦାର୍ଥମାନଙ୍କ ମଧ୍ୟରେ) ହିମାଳୟଃ (ଆମ୍ଭେ ହିମାଳୟ) ।

ଅନୁବାଦ—ଆମ୍ଭେ ମହର୍ଷି ମାନଙ୍କ ମଧ୍ୟରେ ଭୃଗୁ, ଆମ୍ଭେ ପଦ-ମାନଙ୍କ ମଧ୍ୟରେ ଏକାକ୍ଷର ପ୍ରଣବ ବା ଓଁ କାର । ଯଜ୍ଞମାନଙ୍କ ମଧ୍ୟରେ ଆମ୍ଭେ ଜପ ଯଜ୍ଞ ଏବଂ ସ୍ଥାବର ପଦାର୍ଥଙ୍କ ମଧ୍ୟରେ ଆମ୍ଭେ ହିମାଳୟ ଅଟୁଁ ।

ଅଶ୍ୱତ୍ଥଃ ସର୍ବବୃକ୍ଷାଣାଂ ଦେବର୍ଷୀଣାଂ ଚ ନାରଦଃ ।
ଗନ୍ଧର୍ବାଣାଂ ଚିତ୍ରରଥଃ ସିଦ୍ଧାନାଂ କପିଳୋ ମୁନିଃ । ୨୬ ।

ସୁବୋଧିନୀ ଟୀକା—ମହର୍ଷୀଣାମିତି, ଗିରାଂ ବାଚାଂ ପଦାତ୍ମିକାନାଂ ମଧ୍ୟେ ଏକମକ୍ଷରଂ ଓଙ୍କାରାଖ୍ୟଂପଦମସ୍ମି । ଯଜ୍ଞାନାଂ ଶ୍ରୌତସ୍ମାର୍ତ୍ତାନାଂ ମଧ୍ୟେ ଜପରୂପୋ ଯଜ୍ଞୋଽହମ୍ ।

ବକ୍ତବ୍ୟ—ଋଷିମାନଙ୍କ ମଧ୍ୟରେ ଭୃଗୁଋଷି ଅତି ତେଜସ୍ୱୀ ଥିଲେ, ତାଙ୍କର ପଦଚିହ୍ନ ବିଷ୍ଣୁଙ୍କ ବକ୍ଷଃସ୍ଥଳରେ ଲକ୍ଷିତ ହୁଏ । ଏହି ହେତୁରୁ ଭୃଗୁଙ୍କଠାରେ ତାଙ୍କ ବିଭୂତି ପ୍ରକାଶିତ ହୋଇଅଛି । ଅର୍ଥବାଚକ ପଦମାନଙ୍କ ମଧ୍ୟରେ ଏକାକ୍ଷର ପ୍ରଣବ ବା ଓଁକାର ବ୍ରହ୍ମବାଚକ, ତେଣୁ ତାହା ଭଗବାନଙ୍କ ବିଭୂତି । ଅଶ୍ୱମେଧାଦି ଯଜ୍ଞରେ ପଶୁ ହିଂସାରୂପ ଦୋଷଥାଏ ମାତ୍ର ଭଗବାନଙ୍କ ନାମଜପରୂପ ଯଜ୍ଞରେ ତାହା ଦେଖାଯାଏ ନାହିଁ,ତେଣୁ ତାହା ସର୍ବଶ୍ରେଷ୍ଠ । ଦେବତା ଓ ଋଷିମାନଙ୍କର ବିହାର ସ୍ଥଳ ପରମ ପବିତ୍ର ହିମାଳୟ ପର୍ବତ ଅଚଳ ପଦାର୍ଥମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ; ତେଣୁ ତାହା ଭଗବାନଙ୍କ ବିଭୂତି । ଏ ଅଧ୍ୟାୟର ୨୩ଶ ଶ୍ଳୋକରେ ଶିଖରଧାରୀ ପର୍ବତମାନଙ୍କ ମଧ୍ୟରେ ମେରୁ ପର୍ବତକୁ ଶ୍ରେଷ୍ଠ କୁହାଯାଇ ଅଛି, ତେଣୁ ବୋଧହୁଏ ସେ କାଳରେ ସୁମେରୁପର୍ବତ ଉଚ୍ଚତମ ଶୃଙ୍ଗ ବିଶିଷ୍ଟ ଥିଲା ।

କଳିଯୁଗରେ ଭଗବାନଙ୍କ ନାମ ଜପକୁ ଶ୍ରେଷ୍ଠସ୍ଥାନ ଦିଆଯାଏ, ଏହି ନାମ ସଙ୍କୀର୍ତ୍ତନ ପ୍ରଚାର ଉଦ୍ଦେଶ୍ୟରେ ଚୈତନ୍ୟଙ୍କର ଆବିର୍ଭାବ ହୋଇଥିଲା, ସେହି ହେତୁରୁ କୁହାଯାଏ :—

ହରେର୍ନାମ ହରେର୍ନାମ ହରେର୍ନାମୈବ କେବଳମ୍,
କଳୌ ନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ ଗତିରନ୍ୟଥା ।

୨୬ । ଅନ୍ୱୟ ଦୀପିକା—[ଅହଂ] ସର୍ବବୃକ୍ଷାଣାଂ ( ସବୁବୃକ୍ଷ ମଧ୍ୟରେ ) ଅଶ୍ୱତ୍ଥଃ ( ଅଶ୍ୱତ୍ଥ ନାମକ ବୃକ୍ଷ ); ଦେବର୍ଷୀଣାଂ ଚ ( ଏବଂ ଦେବର୍ଷିମାନଙ୍କ ମଧ୍ୟରେ ) ନାରଦଃ ( ନାରଦ ଅଟେଁ ), ଗନ୍ଧର୍ବାଣାଂ ( ଗନ୍ଧର୍ବମାନଙ୍କ ମଧ୍ୟରେ ) ଚିତ୍ରରଥଃ ( ଚିତ୍ରରଥ ନାମକ ଗନ୍ଧର୍ବ ଅଟେଁ ), ସିଦ୍ଧାନାଂ ( ସିଦ୍ଧପୁରୁଷ ମାନଙ୍କ ମଧ୍ୟରେ ) କପିଳଃ ମୁନିଃ (କପିଳମୁନି ଅଟେଁ) ।

ଅନୁବାଦ—ଅମ୍ଭେ ବୃକ୍ଷମାନଙ୍କ ମଧ୍ୟରେ ଅଶ୍ୱତ୍ଥ ବା ପିପ୍ପଳ ବୃକ୍ଷ, ଦେବର୍ଷିମାନଙ୍କ ମଧ୍ୟରେ ନାରଦ, ଗନ୍ଧର୍ବମାନଙ୍କ ମଧ୍ୟରେ ଚିତ୍ରରଥ ଏବଂ ସିଦ୍ଧ ପୁରୁଷମାନଙ୍କ ମଧ୍ୟରେ କପିଳ ମୁନି ଅଟେଁ ।

ସୁବୋଧିନୀ ଟୀକା—ଅଶ୍ୱତ୍ଥ ଇତି, ଦେବା ଏବ ସନ୍ତୋ ଯେ ମନ୍ତ୍ରଦର୍ଶନେନ ଋଷିତ୍ୱଂ ପ୍ରାପ୍ତାସ୍ତେଷାଂ ମଧ୍ୟେ ନାରଦୋଽସ୍ମି । ସିଦ୍ଧାନାଂ ଜନ୍ମନୈବ ବିନା ପ୍ରୟତ୍ନମଧିଗତପରମାର୍ଥତତ୍ତ୍ୱାନାଂ ମଧ୍ୟେ କପିଳାଖ୍ୟୋ ମୁନିରସ୍ମି ।

ଉଚ୍ଚୈଃଶ୍ରବସମଶ୍ୱାନାଂ ବିଦ୍ଧି ମାମମୃତୋଦ୍‌ଭବମ୍,
ଐରାବତଂ ଗଜେନ୍ଦ୍ରାଣାଂ ନରାଣାଂ ଚ ନରାଧିପମ୍ । ୨୭ ।
ଆୟୁଧାନା ମହଂ ବଜ୍ରଂ ଧେନୂନାମସ୍ମି କାମଧୁକ୍ ।
ପ୍ରଜନଶ୍ଚାସ୍ମି କନ୍ଦର୍ପଃ ସର୍ପାଣା ମସ୍ମି ବାସୁକିଃ । ୨୮ ।

ବକ୍ତବ୍ୟ—ବୃକ୍ଷମାନଙ୍କମଧ୍ୟରେ ଅଶ୍ୱତ୍ଥ ବୃକ୍ଷ ପରମ ପବିତ୍ର ବିବେଚିତ ହୁଏ, ତେଣୁ ତାହା ଭଗବାନଙ୍କ ବିଭୂତି, ନାରଦ ଦେବତା ହୋଇ ମଧ୍ୟ ମନ୍ତ୍ରଦ୍ରଷ୍ଟା ହୋଇ ଋଷିତ୍ୱ ଲାଭ କରି ଅଛନ୍ତି, ସେ ପରମ ଭଗବଦ୍‌ଭକ୍ତ ବୋଲି ପ୍ରସିଦ୍ଧ, ମହର୍ଷି କପିଳ ସାଂଖ୍ୟ ଦର୍ଶନର ପ୍ରଣେତା, ସେ ଜନ୍ମରୁ ପରମାର୍ଥତତ୍ତ୍ୱଜ୍ଞ ।

୨୭ । ଅନ୍ୱୟ ଦୀପିକା—ଅଶ୍ୱାନାଂ (ଅଶ୍ୱମାନଙ୍କ ମଧ୍ୟରେ) ମାମ୍ (ଆମ୍ଭଙ୍କୁ) ଅମୃତୋଦ୍‌ଭବମ୍ (ସମୁଦ୍ରମନ୍ଥନବେଳେ ଅମୃତରୁ ଜାତ) ଉଚ୍ଚୈଃଶ୍ରବସମ୍ (ଉଚ୍ଚୈଃଶ୍ରବା ବୋଲି) ବିଦ୍ଧି (ଜାଣ) । ଗଜେନ୍ଦ୍ରାଣାଂ (ମହାଗଜଙ୍କ ମଧ୍ୟରେ) ଐରାବତଂ (ଐରାବତ), ଚ ନରାଣାଂ (ଏବଂ ମନୁଷ୍ୟମାନଙ୍କ ମଧ୍ୟରେ) ନରାଧିପଂ (ରାଜା ବୋଲି) [ଜାଣ] ।

ଅନୁବାଦ—ଆମ୍ଭଙ୍କୁ ସମୁଦ୍ର ମନ୍ଥନବେଳେ ଅମୃତ ସଙ୍ଗେ ଜାତ ଉଚ୍ଚୈଃଶ୍ରବା ଅଶ୍ୱ ବୋଲି ଓ ଗଜରାଜ ମାନଙ୍କ ମଧ୍ୟରେ ଐରାବତ ଗଜ ବୋଲି ଜାଣ; ମନୁଷ୍ୟ ମାନଙ୍କ ମଧ୍ୟରେ ଆମ୍ଭଙ୍କୁ ରାଜା ବୋଲି ଜାଣ ।

ସୁବୋଧିନୀ ଟୀକା—ଉଚ୍ଚୈଃଶ୍ରବ ଇତି—ଅମୃତାର୍ଥଂ କ୍ଷୀରୋଦ-ମଥନାଦୁଦ୍‌ଭୂତମ୍ ଉଚ୍ଚୈଃଶ୍ରବସ୍‌ନାମାଶ୍ୱଂ ମଦ୍‌ବିଭୂତିଂ ବିଦ୍ଧି । ଅମୃତୋଦ୍-ଭବମିତ୍ୟେତଦୈରାବତେଽପି ସମ୍ବଧ୍ୟତେ, ନରାଧିପଂ ରାଜାନଂ ମଦ୍‌ବିଭୂତିଂ ବିଦ୍ଧି ଜାନୀହି ।

ବକ୍ତବ୍ୟ—ସମୁଦ୍ରମନ୍ଥନବେଳେ ଅମୃତ ସହିତ ଉଚ୍ଚୈଃଶ୍ରବା ଅଶ୍ୱ, ଐରାବତ ହସ୍ତୀ, ଲକ୍ଷ୍ମୀ ଓ ପାରିଜାତ ବୃକ୍ଷ ସମୁଦ୍ରରୁ ବାହାରି ଥିଲେ ।

୨୮ । ଅନ୍ୱୟ ଦୀପିକା—ଅହମ୍ (ଆମ୍ଭେ) ଆୟୁଧାନାଂ (ଅସ୍ତ୍ରସମୂହ ମଧ୍ୟରେ) ବଜ୍ରଂ (ବଜ୍ର), ଧେନୂନାଂ (ଗାଈମାନଙ୍କ ମଧ୍ୟରେ) କାମଧୁକ୍ (କାମନାପୂର୍ଣ୍ଣକାରିଣୀ କାମଧେନୁ) [ଅସ୍ମି] ପ୍ରଜନଃ (ସନ୍ତାନ ଉତ୍ପାଦକ) କନ୍ଦର୍ପଃ (କାମ ଅଟୁଁ), ସର୍ପାଣାଂ (ସର୍ପମାନଙ୍କ ମଧ୍ୟରେ) ବାସୁକିଃ ଅସ୍ମି (ଆମ୍ଭେ ବାସୁକି ଅଟୁଁ) ।

ଅନୁବାଦ—ଆମ୍ଭେ ଅସ୍ତ୍ରମାନଙ୍କ ମଧ୍ୟରେ ବଜ୍ର, ଧେନୁମାନଙ୍କ ମଧ୍ୟରେ କାମନାପୂର୍ଣ୍ଣକାରିଣୀ କାମଧେନୁ, ଆମ୍ଭେ ସନ୍ତାନ ଉତ୍ପାଦକ କାମ ଏବଂ ସର୍ପ-ମାନଙ୍କ ମଧ୍ୟରେ ବାସୁକି ଅଟୁଁ ।

ଅନନ୍ତଶ୍ଚାସ୍ମି ନାଗାନାଂ ବରୁଣୋଯାଦସାମହମ୍ ।
ପିତୃଣା ମର୍ଯ୍ୟମା ଚାସ୍ମି ଯମଃ ସଂଯମତାମହମ୍ । ୨୯ ।
ପ୍ରହ୍ଲାଦ ଶ୍ଚାସ୍ମି ଦୈତ୍ୟାନାଂ କାଳଃ କଳୟତା ମହମ୍ ।
ମୃଗାଣାଂ ଚ ମୃଗେନ୍ଦ୍ରୋଽହଂ ବୈନତେୟଶ୍ଚ ପକ୍ଷିଣାମ୍ ।୩୦।

ସୁବୋଧିନୀ ଟୀକା—ଅଯୁଧାନାମିତ, ଅଯୁଧାନାଂ ମଧ୍ୟେ ବଜ୍ରମସ୍ମି, କାମାକୁ ବୋଗ୍‌ଧୀତ କାମଧୁକ୍, ପ୍ରଜନଃ ପ୍ରଜୋତ୍ପତ୍ତିହେତୁଃ କନ୍ଦର୍ପଃ କାମୋଽସ୍ମି, ନ କେବଲଂ ସମ୍ଭୋଗମାତ୍ରପ୍ରଧାନଃ କାମୋ ମଦ୍‌ବିଭୂତଃ, ଅଶାସ୍ତ୍ରୀୟତ୍ୱାତ୍, ସର୍ପାଣାଂ ସବଷାଣାଂ ରାଜା ବାସୁକ ରସ୍ମି ।

୨୯ । ଅନ୍ୱୟ ଦୀପିକା—ନାଗାନାଂ ( ନାଗମାନଙ୍କ ମଧ୍ୟରେ ) ଅନନ୍ତଃ ଅସ୍ମି ( ଅମ୍ଭେ ଅନନ୍ତ ବା ଶେଷଦେବ ଅଟୁଁ ) ଯାଦସାଂ ଚ ( ଏବଂ ଜଳଚର ଜୀବମାନଙ୍କ ମଧ୍ୟରେ) ଅହଂ ବରୁଣଃ (ଅମ୍ଭେ ବରୁଣ ଅଟୁଁ), ପିତୃଣାଂ ( ପିତୃଗଣଙ୍କ ମଧ୍ୟରେ ) ଅହଂ ଅର୍ଯ୍ୟମା ( ଅମ୍ଭେ ଅର୍ଯ୍ୟମା ଅଟୁଁ ), ସଂଯମତାଂ ( ସଂଯମକାରୀମାନଙ୍କ ମଧ୍ୟରେ ) ଅହଂ ଯମଃ ( ଅମ୍ଭେ ଯମ ଅଟୁଁ ) ।

ଅନୁବାଦ—ନାଗମାନଙ୍କ ମଧ୍ୟରେ ଅମ୍ଭେ ଅନନ୍ତ ବା ଶେଷଦେବ, ଜଳଜନ୍ତୁ ମାନଙ୍କ ମଧ୍ୟରେ ଅମ୍ଭେ ବରୁଣ, ପିତୃଗଣଙ୍କ ମଧ୍ୟରେ ଅମ୍ଭେ ଅର୍ଯ୍ୟମା ଏବଂ ସଂଯମକାରୀଙ୍କ ମଧ୍ୟରେ ଅମ୍ଭେ ଯମ ଅଟୁଁ ।

ସୁବୋଧିନୀ ଟୀକା—ଅନନ୍ତ ଇତ, ନାଗାନାଂ ନିର୍ବିଷାଣାଂ ରାଜା ଅନନ୍ତଃ ଶେଷୋଽସ୍ମି, ଯାଦସାଂ ଜଳଚରାଣାଂ ରାଜା ବରୁଣୋଽସ୍ମି, ପିତୃଣାଂ ରାଜା ଅର୍ଯ୍ୟମାସ୍ମି, ସଂଯମତାଂ ନିୟମନଂ କୁର୍ବତାଂ ମଧ୍ୟେ ଯମୋଽସ୍ମି ।

ବକ୍ତବ୍ୟ—ଶ୍ରୀଧରସ୍ୱାମୀଙ୍କ ମତରେ ଯେଉଁମାନଙ୍କର ବିଷ ଅଛି ସେମାନେ ସର୍ପ ଓ ଯେଉଁମାନେ ନିର୍ବିଷ ସେମାନେ ନାଗ । ସର୍ପମାନେ ବ୍ୟଳଦଅ ଓ ନାଗମାନେ ଅଗ୍ନିବର୍ଣ୍ଣ ବିଶିଷ୍ଟ, ରାମାନୁଜାଚାର୍ଯ୍ୟ କହନ୍ତି—ସର୍ପମାନେ ଏକଶିର ବିଶିଷ୍ଟ ଓ ନାଗମାନେ ବହୁଶିରବିଶିଷ୍ଟ ।

୩୦ । ଅନ୍ୱୟ ଦୀପିକା—ଦୈତ୍ୟାନାଂ (ଦୈତ୍ୟମାନଙ୍କ ମଧ୍ୟରେ) ଅହଂ ପ୍ରହ୍ଲାଦଃ ( ଅମ୍ଭେ ପ୍ରହ୍ଲାଦ ), କଳୟତାଂ ମଧ୍ୟେ ( ଗଣନାକାରୀ ବା ଗ୍ରାସକାରୀ ମାନଙ୍କ ମଧ୍ୟରେ ) ଅହଂ କାଳଃ ( ଅମ୍ଭେ କାଳ ), ମୃଗାଣାଂ ( ମୃଗମାନଙ୍କ ମଧ୍ୟରେ ) ଅହଂ ମୃଗେନ୍ଦ୍ରଃ ( ସିଂହ ), ପକ୍ଷିଣାଂ ଚ (ପକ୍ଷୀମାନଙ୍କମଧ୍ୟରେ ) ବୈନତେୟଃ ( ଗରୁଡ଼ ) ।

ଅନୁବାଦ—ଦୈତ୍ୟମାନଙ୍କ ମଧ୍ୟରେ ଅମ୍ଭେ ପ୍ରହ୍ଲାଦ, ଗ୍ରାସକାରୀ ମାନଙ୍କ ମଧ୍ୟରେ ଅମ୍ଭେ କାଳ, ପଶୁମାନଙ୍କ ମଧ୍ୟରେ ଅମ୍ଭେ ସିଂହ ଏବଂ ପକ୍ଷୀମାନଙ୍କ ମଧ୍ୟରେ ଗରୁଡ଼ ଅଟୁଁ ।

ପବନଃ ପବତାମସ୍ମି ରାମଃ ଶସ୍ତ୍ରଭୃତାମହମ୍ ।
ଝଷାଣାଂ ମକରଶ୍ଚାସ୍ମି ସ୍ରୋତସାମସ୍ମି ଜାହ୍ନବୀ । ୩୧ ।
ସର୍ଗାଣାମାଦିରନ୍ତଶ୍ଚ ମଧ୍ୟଂ ଚୈବାହମର୍ଜୁନ ।
ଅଧ୍ୟାତ୍ମବିଦ୍ୟା ବିଦ୍ୟାନାଂ ବାଦଃ ପ୍ରବଦତାମହମ୍ ॥ ୩୨ ।

ସୁବୋଧିନୀ ଟୀକା—ପ୍ରହ୍ଲାଦ ଇତି, କଳୟତାଂ ବଶୀକୁର୍ବତାଂ ଗଣୟତାଂ ବା ମଧ୍ୟେ କାଲୋଽହମସ୍ମି, ମୃଗେନ୍ଦ୍ରଃ ସିଂହଃ, ପକ୍ଷିଣାଂ ମଧ୍ୟେ ବୈନତେୟୋ ଗରୁଡୋଽସ୍ମି ।

୩୧ । ଅନ୍ୱୟ ଦୀପିକା—ପବତାଂ ( ପବିତ୍ରତାକାରୀ ବା ବେଗବାନ୍ ମାନଙ୍କ ମଧ୍ୟରେ ) ପବନଃ ଅସ୍ମି (ଆମ୍ଭେ ପବନ ଅଟୁଁ), ଶସ୍ତ୍ରଭୃତାଂ (ଶସ୍ତ୍ରଧାରୀମାନଙ୍କ ମଧ୍ୟରେ ) ଅହଂ ରାମଃ ( ଆମ୍ଭେ ଦାଶରଥି ରାମଚନ୍ଦ୍ର ), ଝଷାଣାଂ (ମତ୍ସ୍ୟମାନଙ୍କ ମଧ୍ୟରେ ) ମକରଃ ଅସ୍ମି ( ମଗର ନାମକ ଜଳଜୀବ ), ସ୍ରୋତସାଂ ( ନଦୀମାନଙ୍କ ମଧ୍ୟରେ ) ଜାହ୍ନବୀ ଅସ୍ମି ( ଗଙ୍ଗା ଅଟୁଁ ) ।

ଅନୁବାଦ—ବେଗବାନ୍ ମାନଙ୍କ ମଧ୍ୟରେ ଆମ୍ଭେ ପବନ, ଶସ୍ତ୍ରଧାରୀ ବୀରମାନଙ୍କ ମଧ୍ୟରେ ଆମ୍ଭେ ଦଶରଥଙ୍କ ପୁତ୍ର ରାମଚନ୍ଦ୍ର, ମାଛମାନଙ୍କ ମଧ୍ୟରେ ଆମ୍ଭେ ମଗର ନାମକ ଜଳଜୀବ ଏବଂ ନଦୀମାନଙ୍କ ମଧ୍ୟରେ ଆମ୍ଭେ ଗଙ୍ଗା ଅଟୁଁ ।

ସୁବୋଧିନୀ ଟୀକା—ପବନ ଇତି, ପାବୟିତୃଣାଂ ବେଗବତାଂ ବା ମଧ୍ୟେ ବାୟୁରହମସ୍ମି, ଶସ୍ତ୍ରଭୃତାଂ ବୀରାଣାଂ ରାମୋ ଦାଶରଥିଃ । ଯଦ୍ୱା ରାମଃ ପରଶୁରାମଃ, ଝଷାଣାଂ ମତ୍ସ୍ୟାନାଂ ମଧ୍ୟେ ମକରୋ ନାମ ମତ୍ସ୍ୟଜାତି-ବିଶେଷୋଽହମ୍ । ସ୍ରୋତସାଂ ପ୍ରବାହୋଦକାନାଂ ମଧ୍ୟେ ଭାଗୀରଥୀ ।

୩୨ । ଅନ୍ୱୟ ଦୀପିକା—[ ହେ ] ଅର୍ଜୁନ ! ସର୍ଗାଣାଂ ( ସୃଷ୍ଟ ପଦାର୍ଥ ମାନଙ୍କର ) ଆଦିଃ ( ଉତ୍ପତ୍ତି ) ଅନ୍ତଃ ଚ ( ବିନାଶ ) ମଧ୍ୟଂ ଚ (ଓ ମଧ୍ୟ) ଅହମ୍ ଏବ ( ଆମ୍ଭେହିଁ ), ବିଦ୍ୟାନାଂ (ବିଦ୍ୟାମାନଙ୍କ ମଧ୍ୟରେ ) ଅଧ୍ୟାତ୍ମବିଦ୍ୟା ( ଆତ୍ମ ବିଦ୍ୟା ବା ବ୍ରହ୍ମବିଦ୍ୟା ) ପ୍ରବଦତାଂ ( ତାର୍କିକ ମାନଙ୍କ ମଧ୍ୟରେ ) ଅହଂ ( ଆମ୍ଭେ ) ବାଦଃ ( ବାଦନାମକ ତର୍କ ) ।

ଅନୁବାଦ—ହେ ଅର୍ଜୁନ, ସୃଷ୍ଟ ପଦାର୍ଥମାନଙ୍କର ସୃଷ୍ଟି, ବିନାଶ ଓ ସ୍ଥିତି ଆମ୍ଭଦ୍ୱାରା ହୁଏ ଅର୍ଥାତ୍ ଆମେ ସେ ସବୁର କର୍ତ୍ତା, ବିଦ୍ୟାମାନଙ୍କ ମଧ୍ୟରେ ଆମ୍ଭେହିଁ ବ୍ରହ୍ମବିଦ୍ୟା, ବିବଦମାନ ତାର୍କିକ ପୁରୁଷଙ୍କ ମଧ୍ୟରେ ଆମ୍ଭେ ବାଦ ନାମକ ତର୍କ ଅଟୁଁ ।

ସୁବୋଧିନୀ ଟୀକା—ସର୍ଗାଣାମିତି, ସୃଜ୍ୟନ୍ତ ଇତି ସର୍ଗା ଆକାଶାଦୟଃ, ତେଷା ମାଦିରନ୍ତଶ୍ଚ ମଧ୍ୟଂ ଚୈବାହମ୍, ଅହମାଦିଶ୍ଚ ମଧ୍ୟଂ ଚେତ୍ୟନେ ସୃଷ୍ଟ୍ୟାଦିକର୍ତ୍ତୃତ୍ୱଂ ପାରମୈଶ୍ୱର୍ଯ୍ୟମୁକ୍ତମ୍, ଅତ୍ର ତୂତ୍ପତ୍ତିସ୍ଥିତି ପ୍ରଳୟା ମଦ୍ୱିଭୂତିତ୍ୱେନ

ଅକ୍ଷରାଣାମକାରୋଽସ୍ମି ଦ୍ୱନ୍ଦ୍ୱଃ ସାମାସିକସ୍ୟ ଚ ।
ଅହମେବାକ୍ଷୟଃ କାଲୋ ଧାତାହଂ ବିଶ୍ୱତୋମୁଖଃ । ୩୩ ।

ଯେୟଂ ଉଚ୍ୟତ ଇତିଶେଷଃ, ଅଧ୍ୟାତ୍ମବିଦ୍ୟାତ୍ମବିଦ୍ୟା, ପ୍ରବଦତାଂ ବାଦିନାଂ ସମ୍ବନ୍ଧିନ୍ୟୋ ବାଦଜଳ୍ପବିତଣ୍ଡାଖ୍ୟା ସ୍ତ୍ରିସ୍ତ୍ରଃ କଥାଃ ପ୍ରସିଦ୍ଧାଃ, ତାସାଂ ମଧ୍ୟେ ବାଦୋଽହମ୍ ; ଯତ୍ର ଦ୍ୱାଭ୍ୟାମପି ପ୍ରମାଣତ ସ୍ତର୍କତଶ୍ଚ ସ୍ୱପକ୍ଷଃ ସ୍ଥାପ୍ୟତେ । ଯତ୍ର ପରପକ୍ଷଶ୍ଛଳଜାତିନିଗ୍ରହସ୍ଥାନୈ ର୍ଦୂଷ୍ୟତେ ସ ଜଳ୍ପୋ ନାମ, ଯତ୍ର ତ୍ୱେକଃ ସ୍ୱପକ୍ଷଂ ସ୍ଥାପୟତି ଅନ୍ୟସ୍ତୁ ଛଳଜାତିନିଗ୍ରହସ୍ଥାନୈ ସ୍ତତ୍ପକ୍ଷଂ ଦୂଷୟତି ନତୁ ସ୍ୱପକ୍ଷଂ ସ୍ଥାପୟତି ସା ବିତଣ୍ଡା ନାମକଥା, ତତ୍ର ଜଳ୍ପବିତଣ୍ଡେ ବିଜିଗୀଷମାଣୟୋ ର୍ବାଦିନୋଃ ଶକ୍ତିପରୀକ୍ଷାମାତ୍ରଫଲେ, ବାଦସ୍ତୁ ବୀତରାଗୟୋଃ ଶିଷ୍ୟାଚାର୍ଯ୍ୟୟୋ ରନ୍ୟୟୋର୍ବା ତତ୍ତ୍ୱନିର୍ଣ୍ଣୟଫଲଃ ଅତୋଽସୌ ଶ୍ରେଷ୍ଠତ୍ୱାନ୍ମଦ୍ବିଭୂତିରିତ୍ୟର୍ଥଃ ।

ବିବୃତି—ଏ ଅଧ୍ୟାୟର ୨୦ ଶ ଶ୍ଳୋକରେ ସଚେତନ ଭୂତମାନଙ୍କ ମଧ୍ୟରେ **ଅମ୍ଭେ ଆଦି, ମଧ୍ୟ ଓ ଅନ୍ତ**, ଏହା କୁହାଯାଇଅଛି । ଏଠାରେ ସେହିକଥା ତତ୍ତ୍ୱତଃ ସୃଷ୍ଟିବିଷୟରେ କୁହାଯାଉଅଛି—ଏହାହିଁ ପ୍ରଭେଦ । ତାର୍କିକମାନଙ୍କର ଯୁକ୍ତି—ବାଦ, ଜଳ୍ପ, ଓ ବିତଣ୍ଡା ଭେଦରେ ତିନିପ୍ରକାର । ଦ୍ୱେଷ ଓ ଜୟ କରିବାର ଇଚ୍ଛା ନ ଥାଇ ପ୍ରକୃତ ସତ୍ୟ ନିର୍ଦ୍ଧାରଣ ଉଦ୍ଦେଶ୍ୟରେ ଯେଉଁଠାରେ ଉଭୟପକ୍ଷ ପ୍ରମାଣ ଓ ତର୍କ ଉପସ୍ଥାପିତ କରନ୍ତି ତାହାକୁ 'ବାଦ' ବୋଲଯାଏ । ଏକ ପକ୍ଷ ଅନ୍ୟ ପକ୍ଷକୁ ଜୟ କରିବା ଇଚ୍ଛାରେ ଯେଉଁ ତର୍କ-ପ୍ରମାଣ ଉପସ୍ଥାପିତ କରନ୍ତି ତାହାର ନାମ 'ଜଳ୍ପ' । ଯେଉଁଠାରେ ନିଜମତ ପ୍ରତିଷ୍ଠିତ ହେଉ ବା ନ ହେଉ ଅନ୍ୟ ମତକୁ ଖଣ୍ଡନ କରିବା ପାଇଁ ଏକ ପକ୍ଷ ଚେଷ୍ଟା କରେ ସେତେବେଳେ ତାକୁ 'ବିତଣ୍ଡା' କୁହାଯାଏ । ଗୁରୁ ଶିଷ୍ୟଙ୍କ ମଧ୍ୟରେ ବା ସାଧୁମାନଙ୍କ ମଧ୍ୟରେ 'ବାଦ' ହୁଏ । ଏଠାରେ ଭଗବାନ୍ କହୁଅଛନ୍ତି ଅମ୍ଭେ ସେହି ବାଦ ଅଟୁଁ ।

୩୩ । **ଅନ୍ୱୟ ଦୀପିକା**—ଅକ୍ଷରାଣାମ୍ (ଅକ୍ଷରମାନଙ୍କ ମଧ୍ୟରେ) ଅକାରଃ ଅସ୍ମି (ଅମ୍ଭେ ଅକାର ଅଟୁଁ), ସାମାସିକସ୍ୟଚ (ଏବଂ ସମାସମାନଙ୍କ ମଧ୍ୟରେ) ଦ୍ୱନ୍ଦ୍ୱଃ (ଦ୍ୱନ୍ଦ୍ୱ ସମାସ ଅଟୁଁ), ଅହମ୍ ଏବ ଅକ୍ଷୟଃ କାଳଃ (ଅମ୍ଭେହିଁ ଅକ୍ଷୟ କାଳ ସ୍ୱରୂପ), ଅହଂ (ଅମ୍ଭେ) ବିଶ୍ୱତୋ ମୁଖଃ (ସର୍ବତୋମୁଖ) ଧାତା (କର୍ମଫଳ ବିଧାତା) ।

**ଅନୁବାଦ**—ଅକ୍ଷରମାନଙ୍କ ମଧ୍ୟରେ ଅମ୍ଭେ ଅକାର ଅଟୁଁ, ସମାସମାନଙ୍କ ମଧ୍ୟରେ ଅମ୍ଭେ ଦ୍ୱନ୍ଦ୍ୱ ସମାସ, ଅମ୍ଭେ ହିଁ ଅକ୍ଷୟକାଳରୂପୀ ଏବଂ ସର୍ବକର୍ମର ଫଳବିଧାନକର୍ତ୍ତା ।

**ସୁବୋଧିନୀ ଟୀକା**— ଅକ୍ଷରାଣାମିତି, ଅକ୍ଷରାଣାଂ ବର୍ଣ୍ଣାନାଂ ମଧ୍ୟେଽକାରୋଽସ୍ମି, ତସ୍ୟ ସର୍ବବାଙ୍ମୟତ୍ୱେନ ଶ୍ରେଷ୍ଠତ୍ୱାତ୍ । ତଥାଚ ଶ୍ରୁତିଃ—

ମୃତ୍ୟୁଃ ସର୍ବହରଶ୍ଚାହ ମୁଦ୍‌ଭବଶ୍ଚ ଭବିଷ୍ୟତାମ,
କୀର୍ତ୍ତିଃ ଶ୍ରୀର୍ବାକ୍ ଚ ନାରୀଣାଂ ସ୍ମୃତିର୍ମେଧା ଧୃତିଃ କ୍ଷମା । ୩୪ ।

ଅକାରେ ବୈ ସର୍ବାବାକ୍ ସୈଷା ସ୍ପର୍ଶୋଷ୍ମଭିର୍ବ୍ୟଜ୍ୟମାନା ବହ୍ୱୀ ନାନାରୂପା ଭବତୀତି । ସାମାସିକସ୍ୟ ସମାସସମୂହସ୍ୟ ମଧ୍ୟେ ଦ୍ୱନ୍ଦ୍ୱଃ—ରାମକୃଷ୍ଣାବିତ୍ୟାଦିସମାସଃ ଅସ୍ମି, ଉଭୟପଦପ୍ରଧାନତ୍ୱେନ ଶ୍ରେଷ୍ଠତ୍ୱାତ୍, ଅକ୍ଷୟଃ ପ୍ରବାହରୂପଃ କାଲୋଽହମେବ । କାଲଃ କଲୟତାମହ ମିତ୍ୟତ୍ରାୟୁର୍ଗଣନାତ୍ମକଃ ଅବସ୍ଥିର ଶତାଦ୍ୟାୟୁଃସ୍ୱରୂପଃ କାଲଃ ଉକ୍ତଃ, ସ ଚ ତସ୍ମିନ୍ନାୟୁଷି କ୍ଷୀଣେ ସତି କ୍ଷୀୟତେ । ଅତ୍ର ତୁ ପ୍ରବାହାତ୍ମକୋଽକ୍ଷୟଃକାଲ ଉଚ୍ୟତ ଇତି ବିଶେଷଃ । କର୍ମଫଲ ବିଧାତୃଣାଂ ମଧ୍ୟେ ବିଶ୍ୱତୋମୁଖଃ ଧାତା, ସର୍ବ କର୍ମଫଲବିଧାତାହ ମିତ୍ୟର୍ଥଃ ।

ବିବୃତ—ଅକାର ବର୍ଣ୍ଣମାନଙ୍କ ମଧ୍ୟରେ ପ୍ରଥମ, ଅକାରବିନା ବର୍ଣ୍ଣର ସାହାଯ୍ୟ ବ୍ୟତୀତ ହସନ୍ତ ବର୍ଣ୍ଣ ଉଚ୍ଚାରିତ ହୋଇପାରେ ନାହିଁ, ତେଣୁ ତାହା ଶ୍ରେଷ୍ଠ ବର୍ଣ୍ଣ, ସେହି ହେତୁରୁ ଭଗବାନଙ୍କର ବିଭୂତି ବୋଲି ଉକ୍ତ ହୋଇଅଛି । ସମାସମାନଙ୍କମଧ୍ୟରେ କେଉଁ ସମାସରେ ପୂର୍ବପଦର, କାହିଁରେ ପର ପଦର, କାହିଁରେ ଅନ୍ୟ ପଦରଂ ଏବଂ କାହିଁରେ ଉଭୟ ପଦର ପ୍ରାଧାନ୍ୟ ଲକ୍ଷିତ ହୁଏ; ଦ୍ୱନ୍ଦ୍ୱ ସମାସରେହିଁ ଉଭୟ ପଦର ପ୍ରାଧାନ୍ୟ ଥାଏ, ତେଣୁ ତାହା ଭଗବାନଙ୍କର ବିଭୂତି ଅଟେ; ଏ ଅଧ୍ୟାୟର ୩୦ଶ ଶ୍ଳୋକରେ 'କାଲଃକଲୟତା-ମହମ୍' ବୋଲି କୁହାଯାଇ ଅଛି, ସେଠାରେ କାଳର ଅର୍ଥ ଗଣନାକାରୀ ବା ଗ୍ରାସକାରୀ, ମାତ୍ର ଏଠାରେ ଅବିଚ୍ଛିନ୍ନ ପ୍ରବାହରୂପ କାଳକୁ ଲକ୍ଷ୍ୟ କରାଯାଇ ଅଛି, ଏହାହିଁ ପ୍ରଭେଦ ।

୩୪ । ଅନ୍ୱୟ ଦୀପିକା—ଅହଂ ( ଅମ୍ଭେ ) ସର୍ବହରଃ ( ସର୍ବସଂହାରକାରୀ ) କାଲଃ ( କାଳ ଅଟୁଁ ), ଭବିଷ୍ୟତାଂ ( ଭବିଷ୍ୟତରେ ଉତ୍ପନ୍ନ ହେବା ପ୍ରାଣୀମାନଙ୍କର ) ଉଦ୍‌ଭବଃ ( ଅଭ୍ୟୁଦୟ ବା ଉତ୍ପତ୍ତି ସ୍ଥାନ ଅଟୁଁ ) । ନାରୀଣାଂ (ନାରୀମାନଙ୍କ ମଧ୍ୟରେ) କୀର୍ତ୍ତିଃ, ଶ୍ରୀଃ, ବାକ୍, ସ୍ମୃତିଃ, ମେଧାଃ; ଧୃତିଃ, କ୍ଷମା ( କୀର୍ତ୍ତି, ଲକ୍ଷ୍ମୀ, ସରସ୍ୱତୀ, ସ୍ମୃତି, ମେଧା, ଧୃତି, କ୍ଷମା ସ୍ୱରୂପ ଅଟୁଁ ) ।

ଅନୁବାଦ—ଅମ୍ଭେ ସଂହାରକାରୀମାନଙ୍କ ମଧ୍ୟରେ ସର୍ବସଂହର୍ତ୍ତା ମୃତ୍ୟୁ ସ୍ୱରୂପ ଅଟୁଁ । ଭବିଷ୍ୟତ୍ ପ୍ରାଣୀମାନଙ୍କର ଅମ୍ଭେ ଉତ୍ପତ୍ତିସ୍ଥାନ ସ୍ୱରୂପ; ନାରୀମାନଙ୍କମଧ୍ୟରେ ଅମ୍ଭେ କୀର୍ତ୍ତି, ଲକ୍ଷ୍ମୀ, ସରସ୍ୱତୀ, ସ୍ମୃତି, ମେଧା, ଧୃତି ଓ କ୍ଷମା ସ୍ୱରୂପ ଅଟୁଁ ।

ସୁବୋଧିନୀ ଟୀକା—ମୃତ୍ୟୁରିତି—ସଂହାରକାଣାଂ ମଧ୍ୟେ ସର୍ବହରୋ ମୃତ୍ୟୁରହମ୍ । ଭବିଷ୍ୟତାଂ ଭାବିକଲ୍ୟାଣାନାଂ ପ୍ରାଣିନା ମୁଦ୍‌ଭବୋଽଭ୍ୟୁଦୟୋଽହଂ,

ବୃହତ୍ ସାମ ତଥାସାମ୍ନାଂ ଗାୟତ୍ରୀ ଛନ୍ଦସାମହମ୍ ।
ମାସାନାଂ ମାର୍ଗଶୀର୍ଷୋଽହ ମୃତୂନାଂ କୁସୁମାକରଃ । ୩୫ ।

ନାରୀଣାଂ ମଧ୍ୟେ କୀର୍ତ୍ତ୍ୟାଦ୍ୟାଃ ସପ୍ତଦେବତାରୂପାଃ ସ୍ତ୍ରିୟୋଽହମ୍ । ଯାସାମାଭାସ-ମାତ୍ରଯୋଗେନ ପ୍ରାଣିନଃ ଶ୍ଳାଘ୍ୟା ଭବନ୍ତି । ତା କୀର୍ତ୍ତ୍ୟାଦ୍ୟାଃ ସ୍ତ୍ରିୟୋ ମଦ୍-ବିଭୂତୟଃ ।

ବକ୍ତବ୍ୟ—କୀର୍ତ୍ତି, ଶ୍ରୀ, ବାଣୀ ପ୍ରଭୃତି ଦ୍ୱାରା ସେହି ସେହି ଦେବତାଙ୍କୁ ଲକ୍ଷ୍ୟ କରା ଯାଇଅଛି । ଏମାନଙ୍କ ମଧ୍ୟରୁ ବାଣୀ ଓ କ୍ଷମାକୁ ଛାଡ଼ି ଅବଶିଷ୍ଟ ପାଞ୍ଚ ଏବଂ ପୁଷ୍ଟି, ଶ୍ରଦ୍ଧା, କ୍ରିୟା, ଲଜ୍ଜା, ମତି—ମୋଟ ଦଶଗୋଟି ଦକ୍ଷଙ୍କ କନ୍ୟା । ଧର୍ମଙ୍କ ସଙ୍ଗେ ଏମାନଙ୍କ ବିବାହ ହୋଇଥିବାରୁ ଏମାନଙ୍କୁ ଧର୍ମପତ୍ନୀ କୁହାଯାଏ ।

ମୂଳ ଶ୍ଳୋକରେ ଯେଉଁ ସାତଗୋଟି ଦେବତାଙ୍କୁ ଭଗବାନ୍ ନିଜର ବିଭୂତି ରୂପେ ବର୍ଣ୍ଣନା କରି ଅଛନ୍ତି ସେମାନଙ୍କ ଅନୁଗ୍ରହରେ ମନୁଷ୍ୟ ଧନ୍ୟ ହୋଇଯାଏ । ତେଣୁ ସେମାନେ ଭଗବାନଙ୍କର ବିଭୂତି ।

୩୫ । ଅନ୍ୱୟ ଦୀପିକା—ଅହଂ (ଅମ୍ଭେ) ସାମ୍ନାଂ (ସାମବେଦୋକ୍ତ ମନ୍ତ୍ରମାନଙ୍କମଧ୍ୟରେ) ବୃହତ୍‌ସାମ, ଛନ୍ଦସାଂ (ବୈଦିକ ଛନ୍ଦମାନଙ୍କ ମଧ୍ୟରେ) ଗାୟତ୍ରୀ, ମାସାନାଂ (ମାସମାନଙ୍କ ମଧ୍ୟରେ) ମାର୍ଗଶୀର୍ଷଃ (ମାର୍ଗଶିର), ଋତୂନାଂ (ଋତୁମାନଙ୍କ ମଧ୍ୟରେ) କୁସୁମାକରଃ (ବସନ୍ତ ଋତୁ) ।

ଅନୁବାଦ—ଅମ୍ଭେ ସାମବେଦୋକ୍ତ ମନ୍ତ୍ରମାନଙ୍କ ମଧ୍ୟରେ ବୃହତ୍ ସାମ, ବୈଦିକ ଛନ୍ଦୋବିଶିଷ୍ଟ ମନ୍ତ୍ରମାନଙ୍କ ମଧ୍ୟରେ ଗାୟତ୍ରୀ ମନ୍ତ୍ର, ମାସମାନଙ୍କ-ମଧ୍ୟରେ ମାର୍ଗଶିର ମାସ ଓ ଋତୁମାନଙ୍କ ମଧ୍ୟରେ ବସନ୍ତଋତୁ ଅଟୁଁ ।

ସୁବୋଧିନୀ ଟୀକା—ବୃହତ୍ ସାମେତି, ତ୍ୱାମିଦ୍ଧି ହବାମହେ ଇତ୍ୟସ୍ୟାମୃଚି ଗୀୟମାନଂ ବୃହତ୍‌ସାମ । ତେନ ଚେନ୍ଦ୍ରଃ ସର୍ବେଶ୍ୱରତ୍ୱେନ ସ୍ତୂୟତ ଇତି ଶ୍ରୈଷ୍ଠ୍ୟମ୍, ଛନ୍ଦୋବିଶିଷ୍ଟାନାଂ ମନ୍ତ୍ରାଣାଂ ମଧ୍ୟେ ଗାୟତ୍ରୀ ମନ୍ତ୍ରୋଽହମ୍, ଦ୍ୱିଜତ୍ୱାପାଦକତ୍ୱେନ ସୋମାହରଣେନଚ ଶ୍ରେଷ୍ଠତ୍ୱାତ୍, କୁସୁମାକରୋ ବସନ୍ତଃ ।

ବକ୍ତବ୍ୟ—ଏ ଅଧ୍ୟାୟର ୨୨ଶ ଶ୍ଳୋକରେ ସାମବେଦ ଭଗବାନଙ୍କ ବିଭୂତି ବୋଲି କୁହା ଯାଇଅଛି । ସେହି ସାମବେଦରେ 'ବୃହତ୍‌ସାମ' ଅଂଶ ଶ୍ରେଷ୍ଠ, ତେଣୁ ତାହା ଭଗବାନଙ୍କ ବିଭୂତି ବୋଲି ଏଠାରେ କୁହାଗଲା । ମାର୍ଗଶିର ମାସରୁ ପ୍ରଥମେ ମାସ ଗଣନା ଆରମ୍ଭ ହେଉଥିଲା, ସେହି ହେତୁରୁ ତାକୁ ଅଗ୍ରହାୟଣ (ଅଗ୍ର=ପ୍ରଥମ, ହାୟନ=ବର୍ଷ) କୁହାଯାଏ । ତାହା ଭଗବାନଙ୍କ ବିଭୂତି ।

'ଦ୍ୟୂତଂ ଛଳୟତାମସ୍ମି ତେଜସ୍ତେଜସ୍ୱିନାମହମ୍ ।
ଜୟୋଽସ୍ମି ବ୍ୟବସାୟୋଽସ୍ମି ସତ୍ତ୍ୱଂ ସତ୍ତ୍ୱବତାମହମ୍ । ୩୬ ।
ବୃଷ୍ଣୀନାଂ ବାସୁଦେବୋଽସ୍ମି ପାଣ୍ଡବାନାଂ ଧନଞ୍ଜୟଃ
ମୁନୀନାମପ୍ୟହଂ ବ୍ୟାସଃ କବୀନାମୁଶନାଃ କବିଃ । ୩୭ ।

୩୬ । **ଅନ୍ୱୟ ଦୀପିକା**—ଅହଂ (ଅମ୍ଭେ) ଛଳୟତାଂ (ପ୍ରବଞ୍ଚକମାନଙ୍କର) ଦ୍ୟୂତଂ (ଅକ୍ଷକ୍ରୀଡ଼ା ବା ଜୁଆଖେଳ), ତେଜସ୍ୱିନାଂ (ତେଜସ୍ୱୀ ବ୍ୟକ୍ତିମାନଙ୍କର) ତେଜଃ ଅସ୍ମି (ତେଜ ଅଟୁଁ), ଅହଂ ଜୟଃ ଅସ୍ମି (ଅମ୍ଭେ ଜେତାମାନଙ୍କର ଜୟ), ଅହଂ ବ୍ୟବସାୟଃ (ଅମ୍ଭେ ଅଧ୍ୟବସାୟ ଅଟୁଁ), ଅହଂ ସତ୍ତ୍ୱବତାଂ (ସାତ୍ତ୍ୱିକ ବ୍ୟକ୍ତିମାନଙ୍କର) ସତ୍ତ୍ୱଂ (ସତ୍ତ୍ୱଗୁଣ ଅଟୁଁ) ।

**ଅନୁବାଦ**—ଅମ୍ଭେ ପ୍ରବଞ୍ଚକମାନଙ୍କର ଦ୍ୟୂତରୂପ ଛଳ, ତେଜସ୍ୱୀ ପୁରୁଷମାନଙ୍କର ତେଜଃ, ବିଜୟୀଲୋକଙ୍କର ଜୟ, ଉଦ୍‌ଯୋଗୀମାନଙ୍କର ଅଧ୍ୟବସାୟ ଓ ସାତ୍ତ୍ୱିକମାନଙ୍କର ସତ୍ତ୍ୱଗୁଣ ଅଟୁଁ ।

**ସୁବୋଧିନୀ ଟୀକା**—ଦ୍ୟୂତମିତି—ଛଳୟତାମନ୍ୟୋଽନ୍ୟବଞ୍ଚନପରାଣାଂ ସମ୍ବନ୍ଧି ଦ୍ୟୂତମସ୍ମି, ତେଜସ୍ୱିନାଂ ପ୍ରଭାବବତାଂ ତେଜଃ ପ୍ରଭାବୋଽସ୍ମି, ଜେତୃଣାଂ ଜୟୋଽସ୍ମି, ବ୍ୟବସାୟିନାମୁଦ୍ୟମବତାଂ ବ୍ୟବସାୟ ଉଦ୍ୟମୋଽସ୍ମି, ସତ୍ତ୍ୱବତାଂ ସାତ୍ତ୍ୱିକାନାଂ ସତ୍ତ୍ୱମହମ୍ ।

୩୭ । **ଅନ୍ୱୟ ଦୀପିକା**—ଅହଂ (ଅମ୍ଭେ) ବୃଷ୍ଣୀନାଂ (ଯାଦବମାନଙ୍କ ମଧ୍ୟରେ) ବାସୁଦେବଃ (ବାସୁଦେବ ଅଟୁଁ), ପାଣ୍ଡବାନାଂ (ପାଣ୍ଡବମାନଙ୍କ ମଧ୍ୟରେ) ଧନଞ୍ଜୟଃ (ଅର୍ଜୁନ ଅଟୁଁ), ମୁନୀନାଂ (ମୁନିମାନଙ୍କ ମଧ୍ୟରେ) ବ୍ୟାସଃ (ବେଦବ୍ୟାସ), କବୀନାଂ (କବିମାନଙ୍କ ମଧ୍ୟରେ) ଉଶନାଃ କବିଃ (କବି ଶୁକ୍ରାଚାର୍ଯ୍ୟ ଅଟୁଁ) ।

**ଅନୁବାଦ**—ଅମ୍ଭେ ଯାଦବମାନଙ୍କମଧ୍ୟରେ ବାସୁଦେବ ବା ଶ୍ରୀକୃଷ୍ଣ (ତୁମ ସଖା), ପାଣ୍ଡବମାନଙ୍କ ମଧ୍ୟରେ ଧନଞ୍ଜୟ (ତୁମେ ନିଜେ), ମୁନିମାନଙ୍କ ମଧ୍ୟରେ ବେଦବ୍ୟାସ ଓ କବିମାନଙ୍କ ମଧ୍ୟରେ ଶୁକ୍ରାଚାର୍ଯ୍ୟ ଅଟୁଁ ।

୩୭ । **ସୁବୋଧିନୀ ଟୀକା**— ବୃଷ୍ଣୀନାମିତି, ବାସୁଦେବୋ ଯୋଽହଂ ତ୍ୱାମୁପଦିଶାମି, ଧନଞ୍ଜୟ ସ୍ତ୍ୱମେବମଦ୍‌ବିଭୂତିଃ, ମୁନୀନାଂ ବେଦାର୍ଥମନନଶୀଳାନାଂ ବେଦବ୍ୟାସୋଽସ୍ମି, କବୀନାଂ କ୍ରାନ୍ତଦର୍ଶିନାମୁଶନା ନାମ କବିଃ ଶୁକ୍ରଃ ।

**ବିବୃତି**—ଯେଉଁମାନେ ବେଦର ଅର୍ଥକୁ ମନନ ବା ଚିନ୍ତା କରନ୍ତି ସେମାନଙ୍କୁ ମୁନି କହନ୍ତି । ବ୍ୟାସଦେବ ବେଦର ଅର୍ଥକୁ ଚିନ୍ତାକରି ତାହାକୁ

ଦଣ୍ଡୋ ଦମୟତାମସ୍ମି ନୀତିରସ୍ମି ଜିଗୀଷତାମ୍ ।
ମୌନଂ ଚୈବାସ୍ମି ଗୁହ୍ୟାନାଂ ଜ୍ଞାନଂ ଜ୍ଞାନବତାମହମ୍ ॥ ୩୮ ॥

ବିଭାଗ କରିଥିଲେ । ତେଣୁ ସେ ବେଦବ୍ୟାସ ରୂପରେ ଭଗବାନଙ୍କର ବିଭୂତି, ବେଦାନ୍ତ ଦର୍ଶନ, ମହାଭାରତ, ଶ୍ରୀମଦ୍ ଭାଗବତ ପ୍ରଭୃତି ଅଷ୍ଟାଦଶ ପୁରାଣ— ସମସ୍ତ ବ୍ୟାସଦେବଙ୍କ ପ୍ରଣୀତ, ଏସବୁ ଏକ ସମୟରେ ରଚିତ ନୁହେଁ, ତେଣୁ ଜଣେ ବ୍ୟାସ ଏସବୁ ଲେଖିବା ବିଶ୍ୱାସ ଯୋଗ୍ୟ ହେବ କିପରି ? ଏ ସମ୍ବନ୍ଧରେ ବଶିଷ୍ଠଙ୍କ ଉକ୍ତି ଏହିପରି— "ଇମଂ ବ୍ୟାସମୁନିଂ ତାତ ଦ୍ୱାତ୍ରିଂଶଂ ହ୍ୟନୁଶାସ୍ମ୍ୟହମ୍" । ଏହାର ଭାବ—ଏକଜନ୍ମରେ ବ୍ୟାସମୁନି ଏସବୁ ଲେଖି ନଥିଲେ, ସେଥିପାଇଁ ତାଙ୍କୁ ବତିଶବାର ଜନ୍ମ ଗ୍ରହଣ କରିବାକୁ ହୋଇଥିଲା । ଏକ ଜନ୍ମରେ ବଶିଷ୍ଠ ତାଙ୍କୁ ଦ୍ୱାତ୍ରିଂଶ ଅଥବା ୩୨ଶ ଜନ୍ମ ଲାଭ କରିଥିବା ବ୍ୟାସଦେବ ବୋଲି ମନେ କରନ୍ତି ।

୩୮ । ଅନ୍ୱୟ ଦୀପିକା—ଅହଂ ( ଅମ୍ଭେ ) ଦମୟତାଂ ( ଦମନକାରୀ ମାନଙ୍କର ) ଦଣ୍ଡଃ ଅସ୍ମି ( ଦଣ୍ଡ ଅଟୁଁ ), ଜିଗୀଷତାଂ ( ଜୟ ଇଚ୍ଛା କରୁଥିବା ଲୋକମାନଙ୍କର ) ନୀତିଃ ଅସ୍ମି ( ନୀତି ଅଟୁଁ ), ଗୁହ୍ୟାନାଂ ( ଗୋପନୀୟ ବିଷୟ ମାନଙ୍କ ମଧ୍ୟରେ ) ମୌନମ୍ ଏବ ( ମୌନ ଅଟୁଁ ) । ଜ୍ଞାନବତାଂ ( ଏବଂ ଜ୍ଞାନୀମାନଙ୍କର ) ଜ୍ଞାନଂ ( ଜ୍ଞାନ ସ୍ୱରୂପ ଅଟୁଁ ) ।

ଅନୁବାଦ—ଅମ୍ଭେ ଦଣ୍ଡଦାତାମାନଙ୍କର ଦଣ୍ଡ ସ୍ୱରୂପ, ଜୟେଚ୍ଛୁ-ମାନଙ୍କର ସାମଦାନାଦି ନୀତି, ଗୋପନୀୟ ବିଷୟ ମଧ୍ୟରେ ମୌନ ଏବଂ ଜ୍ଞାନୀମାନଙ୍କର ଜ୍ଞାନସ୍ୱରୂପ ଅଟୁଁ ।

ସୁବୋଧିନୀ ଟୀକା—ଦଣ୍ଡଇତି, ଦମୟତାଂ ଦମନକର୍ତ୍ତୃଣାଂ ସମ୍ବନ୍ଧୀ ଦଣ୍ଡୋଽସ୍ମି, ଯେନାସଂଯତା ଅପି ସଂଯତା ଭବନ୍ତି ସ ଦଣ୍ଡୋ ମଦ୍‌ବିଭୂତିଃ; ଜେତୁମିଚ୍ଛତାଂ ସମ୍ବନ୍ଧିନୀ ସାମାଦ୍ୟୁପାୟରୂପା ନୀତିରସ୍ମି, ଗୁହ୍ୟାନାଂ ଗୋପ୍ୟାନାଂ ଗୋପନହେତୁମୌନମବଚନମହମସ୍ମି । ନହି ତୂଷ୍ଣୀଂସ୍ଥିତସ୍ୟାଭିପ୍ରାୟୋ ଜ୍ଞାୟତେ । ଜ୍ଞାନବତାଂ ତତ୍ତ୍ୱ ଜ୍ଞାନିନାଂ ଯଜ୍‌ଜ୍ଞାନଂ ତଦହମସ୍ମି ।

ବକ୍ତୃତା—ସାମ, ଦାନ, ଦଣ୍ଡ, ଭେଦ—ଏହି ଚାରିଗୋଟି ରାଜ୍ୟ ଶାସନର ଉପାୟ, ଏସବୁକୁ ନୀତି କୁହାଯାଏ । ଏମାନଙ୍କ ମଧ୍ୟରେ ଦଣ୍ଡ ରାଜ୍ୟ ଶାସନର ଉପାୟ, ତେଣୁ ତାହା ଭଗବାନଙ୍କ ବିଭୂତି । ଅନେକ ସମୟରେ ଗୋପନୀୟ ବିଷୟ ପ୍ରକାଶିତ ହେଲେ କ୍ଷତିହୁଏ, ତେଣୁ ଲୋକେ ସେ ବିଷୟରେ ମୌନାବଲମ୍ବନ କରନ୍ତି, ସେହି ମୌନହିଁ ଭଗବାନଙ୍କ ବିଭୂତି ।

ଯଚ୍ଚାପି ସର୍ବଭୂତାନାଂ ବୀଜଂ ତଦହମର୍ଜୁନ ।
ନ ତଦସ୍ତି ବିନା ଯତ୍ ସ୍ୟାନ୍ମୟା ଭୂତଂ ଚରାଚରମ୍ । ୩୯ ।

ନାନ୍ତୋଽସ୍ତି ମମ ଦିବ୍ୟାନାଂ ବିଭୂତୀନାଂ ପରନ୍ତପ ।
ଏଷ ତୂଦ୍ଦେଶତଃ ପ୍ରୋକ୍ତୋ ବିଭୂତେର୍ବିସ୍ତରୋ ମୟା । ୪୦ ।

୩୯। **ଅନ୍ୱୟ ଦୀପିକା**—[ହେ] ଅର୍ଜ୍ଜୁନ, ଯତ୍ ଚ (ଯାହାକିଛି) ସର୍ବଭୂତାନାଂ ବୀଜଂ ( ସମସ୍ତ ଭୂତଙ୍କର ମୂଳକାରଣ ) ତତ୍ ଅପି ( ତାହାମଧ୍ୟ ) ଅହଂ (ଅମ୍ଭେ), ମୟା ବିନା ( ଆମଛଡ଼ା ) ଯତ୍ ସ୍ୟାତ୍ (ଯାହା ହୋଇପାରେ) ତତ୍ ଚରାଚରଂ ଭୂତଂ ( ସେହି ସ୍ଥାବର ଜଙ୍ଗମ ବସ୍ତୁ ) ନ ଅସ୍ତି ( ନାହିଁ )।

**ଅନୁବାଦ**—ହେ ଅର୍ଜ୍ଜୁନ, ସମସ୍ତ ଭୂତର ଯାହାକିଛି ମୂଳକାରଣ ତାହାହିଁ ଅମ୍ଭେ । ଚରାଚରରେ ଏପରି କୌଣସି ବସ୍ତୁ ନାହିଁ,ଯାହା ଆମ ବ୍ୟତୀତ ଉତ୍ପନ୍ନ ହୋଇପାରେ ।

**ସୁବୋଧିନୀ ଟୀକା**—ଯଚ୍ଚାପୀତି, ଯଦପି ଚ ସର୍ବଭୂତାନାଂ ବୀଜଂ ପ୍ରରୋହକାରଣଂ ତଦହଂ । ତତ୍ର ହେତୁଃ—ମୟା ବିନା ଯତ୍ ସ୍ୟାତ୍ ଭବେତ୍ ତଚ୍ଚରାଚରଂ ବା ଭୂତଂ ନାସ୍ତ୍ୟେବେତି ।

**ବିବୃତି**—ଏଠାରେ କେତେଗୋଟି ମାତ୍ର ପ୍ରଧାନ ପ୍ରଧାନ ବିଭୂତି ବିଷୟ ଭଗବାନ୍ ବ୍ୟାଖ୍ୟା କରି ଶେଷରେ କହିଲେ—ଏହି ଜଗତରେ ଚର ବା ଅଚର କୌଣସି ବସ୍ତୁ ଆମ ବ୍ୟତୀତ ଉତ୍ପନ୍ନ ହୋଇପାରେ ନାହିଁ ଅର୍ଥାତ୍ ଅମ୍ଭେ ସର୍ବବିଧ ବସ୍ତୁର ମୂଳ କାରଣ ଅଟୁଁ ।

୪୦। **ଅନ୍ୱୟ ଦୀପିକା**—[ ହେ ] ପରନ୍ତପ (ଶତ୍ରୁନିପାତକାରୀ ଅର୍ଜ୍ଜୁନ ) ମମ ( ଆମର ) ଦିବ୍ୟାନାଂ ବିଭୂତୀନାଂ ( ଦିବ୍ୟ ବିଭୂତି ସମୂହର ) ଅନ୍ତଃ ନ ଅସ୍ତି ( ସୀମାନାହିଁ ), ଏଷ ତୁ ( ଏହି ) ବିଭୂତେଃ ବିସ୍ତରଃ ( ବିଭୂତିର ବିସ୍ତାର ) ମୟା ( ଆମ ଦ୍ୱାରା ) ଉଦ୍ଦେଶତଃ ( ସଂକ୍ଷେପରେ ) ପ୍ରୋକ୍ତଃ ( କୁହାଗଲା ) ।

**ଅନୁବାଦ**—ହେ ପରନ୍ତପ, ଆମ ଦିବ୍ୟ ବିଭୂତି ସମୂହର ସୀମା ନାହିଁ । ଅମ୍ଭେ ଏହି ଯେଉଁ ସବୁ ବିଭୂତି ବିସ୍ତାର କହିଲୁଁ, ତାହା ଆମ ବିଭୂତିର ସଂକ୍ଷେପ ବା ଦିଗ୍‌ଦର୍ଶନ ମାତ୍ର ।

**ସୁବୋଧିନୀ ଟୀକା**—ପ୍ରକରଣାର୍ଥମୁପସଂହରତି, ନାନ୍ତୋଽସ୍ତୀତି । ଅନନ୍ତତ୍ୱାଦ୍‌ବିଭୂତୀନାଂ ତାଃ ସାକଲ୍ୟେନ ବକ୍ତୁଂ ନ ଶକ୍ୟନ୍ତେ । ଏଷ ତୁ ବିଭୂତିବିସ୍ତରଃ ଉଦ୍ଦେଶତଃ ସଂକ୍ଷେପତଃ ପ୍ରୋକ୍ତଃ ।

ଯଦ୍ ଯଦ୍ ବିଭୂତିମତ୍ସତ୍ତ୍ୱଂ ଶ୍ରୀମଦୂର୍ଜ୍ଜିତମେବ ବା ।
ତତ୍ତଦେବାବଗଚ୍ଛ ତ୍ୱଂ ମମ ତେଜୋଽଂଶସମ୍ଭବମ୍ । ୪୧ ।

ଅଥବା ବହୁନୈତେନ କିଂ ଜ୍ଞାତେନ ତବାର୍ଜ୍ଜୁନ ।
ବିଷ୍ଟଭ୍ୟାହମିଦଂ କୃତ୍ସ୍ନମେକାଂଶେନ ସ୍ଥିତୋ ଜଗତ୍ । ୪୨ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍ଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନ-ସଂବାଦେ ବିଭୂତିଯୋଗୋ ନାମ ଦଶମୋଽଧ୍ୟାୟଃ ।

---

୪୧ । ଅନ୍ୱୟ ଦୀପିକା—ବିଭୂତିମତ୍ ( ଐଶ୍ୱର୍ଯ୍ୟଯୁକ୍ତ ) ଶ୍ରୀମତ୍ ( ସମ୍ପତ୍ତି ଯୁକ୍ତ ) ଊର୍ଜ୍ଜିତମ୍ ଏବ ବା ( କିମ୍ବା ପ୍ରଭାବସମ୍ପନ୍ନ ) ଯତ୍ ଯତ୍ ( ଯେଉଁ ଯେଉଁ ) ସତ୍ତ୍ୱଂ ( ପଦାର୍ଥ ), ତତ୍ ତତ୍ ଏବ (ସେହି ସମସ୍ତହିଁ) ମମ ତେଜୋଽଂଶ ସମ୍ଭବ ( ଆମ ଶକ୍ତିର ଅଂଶରୁ ସମୁଦ୍ଭୂତ ) ତ୍ୱମ୍ ( ତୁମେ ) ଅବଗଚ୍ଛ (ଜାଣ) ।

ଅନୁବାଦ—ଯାହା ଯାହା ଐଶ୍ୱର୍ଯ୍ୟଯୁକ୍ତ, ଶ୍ରୀଯୁକ୍ତ କିମ୍ବା ପ୍ରଭାବଶାଳୀ ତାହା ଆମ ଶକ୍ତିର ଅଂଶରୁ ଉତ୍ପନ୍ନ ବୋଲି ଜାଣ ।

ସୁବୋଧିନୀ ଟୀକା—ପୁନଶ୍ଚ ସାକାଂକ୍ଷଂ ପ୍ରତି କଥିତ୍ ସାକଲ୍ୟେନ କଥୟତି—ଯଦ୍ ଯଦିତି, ବିଭୂତିମଦୈଶ୍ୱର୍ଯ୍ୟଯୁକ୍ତମ୍ । ଶ୍ରୀମତ୍ ସମ୍ପତ୍ତିୟୁକ୍ତମ୍ । ଊର୍ଜ୍ଜିତଂ କେନାପି ପ୍ରଭାବବଲାଦନା ଗୁଣେନାତିଶୟିତମ୍ । ଯଦ୍ ଯତ୍ ସତ୍ତ୍ୱଂ ବସ୍ତୁମାତ୍ରଂ ଭବେତ୍ । ତତ୍ତଦେବ ମମ ତେଜସଃ ପ୍ରଭାବସ୍ୟାଂଶେନ ସମ୍ଭୂତଂ ଜାନୀହି ।

୪୨ । ଅନ୍ୱୟ ଦୀପିକା—ଅଥବା [ହେ] ଅର୍ଜ୍ଜୁନ ! ଏତେନ ବହୁନା ( ଏତେ ଅଧିକ ) ଜ୍ଞାତେନ ( ଜାଣିବାରେ ) ତବ କିମ୍ ( ତୁମ୍ଭର କି ପ୍ରୟୋଜନ ? ) [ ଏତିକି ମାତ୍ର ଜାଣି ରଖ ଯେ ] ଅହଂ ( ଅମ୍ଭେ ) ଇଦଂ କୃତ୍ସ୍ନ ଜଗତ୍ ( ଏହି ସମୁଦାୟ ଜଗତକୁ ) ଏକାଂଶେନ (ଏକାଂଶରେ ମାତ୍ର ) ବିଷ୍ଟଭ୍ୟ ( ଧାରଣ କରି ) ସ୍ଥିତଃ, ( ରହି ଅଛୁଁ ) ।

ଅନୁବାଦ—ଅଥବା ହେ ଅର୍ଜ୍ଜୁନ, ଅଧିକ ଜାଣିବାରେ ତୁମ୍ଭର କି ପ୍ରୟୋଜନ ? ଏହା ଜାଣି ରଖ ଯେ, ଅମ୍ଭେ ଏହି ସମସ୍ତ ଜଗତକୁ ଏକାଂଶରେ ମାତ୍ର ଧାରଣ କରି ରହି ଅଛୁଁ ।

ସୁବୋଧିନୀ ଟୀକା—ଅଥବା କିମେତେନ ପରିଚ୍ଛିନ୍ନବିଭୂତି-ଦର୍ଶନେନ ? ସର୍ବତ୍ର ସମଦୃଷ୍ଟିମେବ କୁର୍ବିତ୍ୟାହ । ଅଥବେତି । ବହୁନା

ପୃଥଗ୍‌ଜ୍ଞାତେନ କିଂତବ କାର୍ଯମ୍ ? ଯସ୍ମାଦଦଂସର୍ବଂ ଜଗଦେକାଂଶେନୈକଦେଶ ମାତ୍ରେଣ ବିଷ୍ଟଭ୍ୟାଧିଷ୍ଠାୟ ବ୍ୟାପ୍ୟେତିବା । ଅହମେବସ୍ଥିତଃ । ନ ମଦ୍‌ବ୍ୟତିରିକ୍ତଂ କିଞ୍ଚିଦସ୍ତି । ପାଦୋଽସ୍ୟ ବିଶ୍ୱା ଭୂତାନୀତି ଶ୍ରୁତେଃ ।

ଇତ୍ଥମ୍ବୁଦ୍ଧ୍ୱାରତିଷ୍ଠିତେ ବିହୁଧାବିତ ସତ୍ୟପି
ଈଶଦୃଷ୍ଟି ବିଧାନାୟ ବିଭୂତୀର୍ଦର୍ଶମେଽବ୍ରବୀତ୍ ।

ବିବୃତି—ଶେଷରେ ଭଗବାନ୍ କହିଲେ 'ଅମ୍ଭେ ଏକାଂଶରେ ମାତ୍ର ଏ ଜଗତକୁ ଧାରଣ କରି ରହିଅଛୁଁ ।' ଋକ୍ ବେଦର ପୁରୁଷସୂକ୍ତମନ୍ତ୍ରରେ ଠିକ୍ ଏହି କଥାହିଁ କୁହା ଯାଇଅଛି :—

"ଏତାବାନସ୍ୟ ମହିମାତୋ ଜ୍ୟାୟାଂଶ୍ଚ ପୂରୁଷଃ,
ପାଦୋଽସ୍ୟ ବିଶ୍ୱା ଭୂତାନି ତ୍ରିପାଦସ୍ୟାମୃତଂ ଦିବି ।"

ଏ ସମସ୍ତ ତାଙ୍କର ମହିମା ମାତ୍ର । ବସ୍ତୁତଃ ସେହି ପୁରୁଷ ଏହି ମହିମାରୁ ଅତିଶୟ ଶ୍ରେଷ୍ଠ, କାଳତ୍ରୟବର୍ତ୍ତୀ ସମସ୍ତ ଜୀବ ତାହାଙ୍କର ଏକ ପାଦ ମାତ୍ର । ତାଙ୍କର ଅବଶିଷ୍ଟ ତିନିପାଦ ସ୍ୱପ୍ରକାଶ ଅବିନାଶୀ ରୂପରେ ଅବସ୍ଥିତ ଅଛି ।

ଏହି ପରିଦୃଶ୍ୟମାନ ବିଶ୍ୱରୂପକୁ ଧାରଣା କରି ନ ପାରି ଆମ ବୁଦ୍ଧି ବିହ୍ୱଳ ହୋଇଯାଏ; ବିଶ୍ୱର ଅତୀତ ନାମରୂପବିବର୍ଜିତ ଅନ୍ୟ ତିନି ପାଦ କେଉଁଠାରେ ? କପରି ? କିଏ ଧାରଣା କରିବ ?

## ଦଶମ ଅଧ୍ୟାୟର ସାର ସଂକଳନ

ଏ ଅଧ୍ୟାୟରେ ଭଗବାନଙ୍କର ବିଭୂତି ମୁଖ୍ୟରୂପେ ବର୍ଣ୍ଣିତ ହୋଇଥିବାରୁ ଏହା ବିଭୂତି ଯୋଗ ନାମରେ ପରିଚିତ, ମାତ୍ର ଏ ବିଭୂତିର ବର୍ଣ୍ଣନା ଅଧ୍ୟାୟର ୨୧ଶ ଶ୍ଳୋକରୁ ଆରମ୍ଭ ହୋଇଅଛି । ନବମ ଅଧ୍ୟାୟରୁ ଭଗବାନ୍ ନିଜ ବ୍ୟକ୍ତିରୂପ ବିଷୟ ବୁଝାଇବାକୁ ଆରମ୍ଭ କରି ଦ୍ୱାଦଶ ଅଧ୍ୟାୟରେ ତାହା ଶେଷ କରିବେ । ଏ ଅଧ୍ୟାୟଟି ଭକ୍ତିଯୋଗର ବିଶିଷ୍ଟ ଅଙ୍ଗ ବିଭୂତିର ବର୍ଣ୍ଣନା । ପ୍ରଥମରୁ ଭଗବାନ୍ କହୁ ଅଛନ୍ତି, ଆମର ପ୍ରକୃତ ତତ୍ତ୍ୱ ଦେବତାମାନେ ବି ଜାଣନ୍ତି ନାହିଁ, କାରଣ ଦେବତାମାନେ ପରବର୍ତ୍ତୀକାଳରେ ଆମଦ୍ୱାରା ସୃଷ୍ଟ, ଯେଉଁ ଲୋକ ଆମ୍ଭକୁ ଅନାଦି, ଅଜ, ସର୍ବଲୋକ ମହେଶ୍ୱର ବୋଲି ଜାଣନ୍ତି ସେ ଏକା ମୋହଶୂନ୍ୟ ହୋଇ ନିଷ୍ପାପ ହୁଅନ୍ତି । ବୁଦ୍ଧି, ଜ୍ଞାନ, ସୁଖ, ଦୁଃଖ, ଜନ୍ମମୃତ୍ୟୁ ପ୍ରଭୃତି ସର୍ବବିଧ ପ୍ରବୃତ୍ତି ଆମ୍ଭଠାରୁ ଉଦ୍‌ଭୂତ ହୋଇଅଛି । ଭୃଗୁ ପ୍ରଭୃତି ସପ୍ତ ମହର୍ଷି, ଚତୁର୍ଦ୍ଦଶମନୁ— ଯାହାଙ୍କଠାରୁ ଏ ପ୍ରଜାମାନଙ୍କର ଉତ୍ପତ୍ତି ସେମାନେ ସମସ୍ତେ ଆମଠାରୁ ଜାତ । ଏ ସମ୍ବନ୍ଧୀୟ ଧାରଣା ଦୃଢ଼ ହେଲେ ଲୋକ ଈଶ୍ୱରର ଅଧିବାସୀ ହୋଇ କୃତାର୍ଥ ହୁଏ । ଭକ୍ତିରସ ହୃଦୟରେ ସଞ୍ଚରିତ ହେଲେ ଲୋକମାନେ ଆଉ ତଥା

ଅଟେଳେ। କର ହୃଦୟରେ ପରମ ଶାନ୍ତି ସନ୍ତୋଷ ଅନୁଭବ କରନ୍ତି । ଆମ୍ଭଠାରେ ଚିତ୍ତ ସମର୍ପଣକରି ଯେଉଁମାନେ ପ୍ରୀତିପୂର୍ଣ୍ଣ ଅନ୍ତଃକରଣରେ ଆମ୍ଭର ଉପାସନା କରନ୍ତି, ଆମ୍ଭେ ସେମାନଙ୍କୁ ସୁବୁଦ୍ଧି ପ୍ରଦାନ କରୁଁ ଏବଂ ଜ୍ଞାନଦୀପ ସେମାନଙ୍କ ହୃଦୟରେ ପ୍ରଜ୍ୱାଳିତ କରି ଅଜ୍ଞାନ ଅନ୍ଧକାର ଦୂର କରିଦେଉଁ, ତଦ୍ୱାରା ସେମାନେ ଆମ୍ଭଙ୍କୁ ସହଜରେ ଲାଭକରିପାରନ୍ତି ।

ହରିଙ୍କର ଏହି ଗୂଢ଼ ରହସ୍ୟ ଶୁଣି ପାର୍ଥ ଅର୍ଜୁନ କହିଲେ, ପ୍ରଭୋ, ତୁମ୍ଭର ତତ୍ତ୍ୱ ତୁମ ଛଡ଼ା ଅନ୍ୟ କେହି ଜାଣନ୍ତି ନାହିଁ । ଅସିତ, ଦେବଳ, ବ୍ୟାସ ପ୍ରଭୃତି ମୁନିମାନେ ତୁମର ଗୁଣ-ମାହାତ୍ମ୍ୟ ନାନା ଭାବରେ ବର୍ଣ୍ଣନା କରିଅଛନ୍ତି, ତୁମେ ମଧ୍ୟ ସେ ସବୁ କହୁଅଛ—ଏବେ ବିସ୍ତାରିତ ଭାବରେ ତୁମ୍ଭର ବ୍ୟକ୍ତରୂପ ମୋ ଆଗରେ ବର୍ଣ୍ଣନା କର । ତୁମ୍ଭର ସେହି ଅମୃତମୟ କଥା ବାରମ୍ବାର ଶୁଣି ମଧ୍ୟ ମୋର ତୃପ୍ତି ହେଉନାହିଁ । କେଉଁ କେଉଁ ପଦାର୍ଥରେ କି ଭାବରେ ତୁମ୍ଭଙ୍କୁ ମୁଁ ଚିନ୍ତା କରିବି—ଏହା ମୋତେ ବୁଝାଇ ଦେଇ କୃତାର୍ଥ କର ।

ଏହି ସବୁ କଥା ଶୁଣି ଭଗବାନ ଉତ୍ତର କଲେ—ଅଚ୍ଛାହେଉ, ଅର୍ଜୁନ, ପ୍ରଥମେ ତୁମେ ମନେରଖ, ସର୍ବଭୂତର ଅନ୍ତରରେ ଆମ୍ଭେ ଆତ୍ମା ରୂପେ ରହିଅଛୁଁ, ଆମେ ସମସ୍ତ ପ୍ରାଣୀଙ୍କର ଆଦି, ଅନ୍ତ ଓ ମଧ୍ୟ । ଆମ୍ଭେ ଆଦିତ୍ୟମାନଙ୍କ ମଧ୍ୟରେ ବିଷ୍ଣୁ, ଜ୍ୟୋତିଷ୍କମାନଙ୍କ ମଧ୍ୟରେ କିରଣମାଳୀ ସୂର୍ଯ୍ୟ, ନକ୍ଷତ୍ରମାନଙ୍କ ମଧ୍ୟରେ ଚନ୍ଦ୍ରମା, ବେଦମାନଙ୍କ ମଧ୍ୟରେ ସାମବେଦ, ଇନ୍ଦ୍ରିୟମାନଙ୍କ ମଧ୍ୟରେ ମନ, ଭୂତମାନଙ୍କ ମଧ୍ୟରେ ଚେତନା, ରୁଦ୍ରମାନଙ୍କ ମଧ୍ୟରେ ଶଙ୍କର, ସେନାପତିମାନଙ୍କ ମଧ୍ୟରେ କାର୍ତ୍ତିକେୟ, ମହର୍ଷିମାନଙ୍କ ମଧ୍ୟରେ ଭୃଗୁ, ଯଜ୍ଞ ମଧ୍ୟରେ ଜପଯଜ୍ଞ ଇତ୍ୟାଦି; ଆମ ବିଭୂତି ଅନନ୍ତ, ତାହାର ଇୟତ୍ତା ନାହିଁ, ଏଠାରେ କେତେଗୁଡ଼ିଏ ବିଭୂତି ସଂକ୍ଷେପରେ ତୁମ୍ଭଙ୍କୁ କହିଲୁଁ । ମନେରଖ, ଆମ୍ଭେ ସର୍ବଭୂତଙ୍କର ମୂଳ ବୀଜ; ଏ ସଂସାରରେ ତୁମେ ଯାହା ଐଶ୍ୱର୍ଯ୍ୟ ବା ଶ୍ରୀସମ୍ପନ୍ନ ଦେଖିବ ଏବଂ ଯେଉଁଠାରେ ବିଶେଷ ଶକ୍ତିର ଆବିର୍ଭାବ ତୁମେ ଅନୁଭବ କରିବ, ସେ ସମସ୍ତ ଯେ ଆମ୍ଭର ବିଭୂତି ତାହା ଜାଣିବ । ଅଥବା ଏତେ କଥାରେ ତୁମ୍ଭର କି ପ୍ରୟୋଜନ ? ଗୋଟାଏ କଥା ମନେ ରଖ, ଆମ୍ଭେ ସମସ୍ତ ବିଶ୍ୱବ୍ରହ୍ମାଣ୍ଡକୁ ବ୍ୟାପିକରି ରହି ଅଛୁଁ, ଏହି ପରିଦୃଶ୍ୟମାନ ଜଗତ୍ ଆମ୍ଭର ଏକାଂଶରେ ମାତ୍ର ଅବସ୍ଥିତ ।

---

# ଏକାଦଶୋଽଧ୍ୟାୟଃ

## ବିଶ୍ୱରୂପଦର୍ଶନଯୋଗଃ

ଅର୍ଜୁନ ଉବାଚ

ମଦନୁଗ୍ରହାୟ ପରମଂ ଗୁହ୍ୟମଧ୍ୟାତ୍ମସଂଜ୍ଞିତମ ।
ଯତ୍ତ୍ୱୟୋକ୍ତଂ ବଚସ୍ତେନ ମୋହୋଽୟଂ ବିଗତୋମମ । ୧ ।

୧ । **ଅନ୍ୱୟ ଦୀପିକା**—ଅର୍ଜୁନଃ ଉବାଚ—(ଅର୍ଜୁନ କହିଲେ), ମଦନୁଗ୍ରହାୟ ( ମୋ ପ୍ରତି ଅନୁଗ୍ରହ ପ୍ରକାଶ କରି ) ପରମଂ ଗୁହ୍ୟଂ ( ଅତି ଗୋପନୀୟ ) ଅଧ୍ୟାତ୍ମସଂଜ୍ଞିତଂ ( ଅଧ୍ୟାତ୍ମ ବିଷୟକ ) ଯତ୍ ବଚଃ (ଯେଉଁ କଥା) ତ୍ୱୟା ଉକ୍ତଂ ( ତୁମେ କହିଲ ), ତେନ ( ତଦ୍ଦ୍ୱାରା ) ମମ ( ମୋର ) ଅୟଂ ମୋହଃ ( ଏହି ମୋହ ) ବିଗତଃ ( ଦୂରୀଭୂତ ହୋଇଗଲା ) ।

ଅନୁବାଦ—ଅର୍ଜୁନ କହିଲେ, ମୋ ପ୍ରତି ଅନୁଗ୍ରହ ପ୍ରକାଶ କରି ତୁମେ ପରମ ଗୋପନୀୟ ଯେଉଁ ଅଧ୍ୟାତ୍ମତତ୍ତ୍ୱ କହିଲ, ତଦ୍ଦ୍ୱାରା ମୋର ଏହି ମୋହ ଦୂରୀଭୂତ ହୋଇଗଲା ।

ସୁବୋଧିନୀ ଟୀକା—

ବିଭୂତିବୈଭବଂ ପ୍ରୋଚ୍ୟ କୃପୟା ପରୟା ହରିଃ
ଦିଦୃକ୍ଷୋରର୍ଜୁନସ୍ୟାଥ ବିଶ୍ୱରୂପମଦର୍ଶୟତ୍ ।

ପୂର୍ବାଧ୍ୟାୟାନ୍ତେ, ବିଷ୍ଟଭ୍ୟାହମିଦଂ କୃତ୍ସ୍ନମେକାଂଶେନ ସ୍ଥିତୋ ଜଗତ୍—ଇତି ବିଶ୍ୱାତ୍ମକଂ ପାରମେଶ୍ୱରଂ ରୂପ ମୁପକ୍ଷିପ୍ତଂ । ତଦିଦୃକ୍ଷୁଃ ପୂର୍ବୋକ୍ତମଭିନନ୍ଦନ୍ନର୍ଜୁନ ଉବାଚ—ମଦନୁଗ୍ରହାୟେତି ଚତୁର୍ଭିଃ । ମମାନୁଗ୍ରହାୟ ଶୋକନିବୃତ୍ତୟେ, ପରମଂ ପରମାତ୍ମନିଷ୍ଠମ୍ । ଗୁହ୍ୟଂ ଗୋପ୍ୟମପ୍ୟଧ୍ୟାତ୍ମ ସଂଜ୍ଞିତଂ ଆତ୍ମାନାତ୍ମବିବେକ-ବିଷୟମ୍ । ଯତ୍ତ୍ୱୟୋକ୍ତଂ ବଚଃ—ଅଶୋଚ୍ୟାନନ୍ୱଶୋଚସ୍ତ୍ୱମିତ୍ୟାଦି ଷଷ୍ଠାଧ୍ୟାୟ ପର୍ଯ୍ୟନ୍ତଂ—ଯଦ୍‌ବାକ୍ୟମ୍ । ତେନ ମମାୟଂ ମୋହଃ—ଅହଂ ହନ୍ତା—ଏତେ ହନ୍ୟନ୍ତେ—ଇତ୍ୟାଦି ଲକ୍ଷଣୋଭ୍ରମଃ, ବିଗତୋ ବିନଷ୍ଟଃ, ଆତ୍ମନଃ କର୍ତ୍ତୃତ୍ୱା-ଦ୍ୟଭାବୋକ୍ତେଃ ।

ବକ୍ତବ୍ୟ—ଦଶମ ଅଧ୍ୟାୟ ଶେଷରେ ଭଗବାନ୍ କହିଲେ 'ଏହି ସମସ୍ତ ଜଗତକୁ ଅମ୍ଭେ ଏକାଂଶରେ ମାତ୍ର ଧାରଣ କରି ରହିଅଛୁଁ ।' ଏହି କଥା ଶୁଣି ଭଗବାନଙ୍କର ବିଶ୍ୱବ୍ୟାପୀ ରୂପ ଦେଖିବାକୁ ଇଚ୍ଛା ହେବାରୁ ଅର୍ଜୁନ

ଭବାପ୍ୟୟୌ ହି ଭୂତାନାଂ ଶ୍ରୁତୌ ବିସ୍ତରଶୋମୟା ।
ତ୍ୱତ୍ତଃ କମଲପତ୍ରାକ୍ଷ ମାହାତ୍ମ୍ୟମପି ଚାବ୍ୟୟମ୍ । ୨ ।

କହୁଅଛନ୍ତି—ଦ୍ୱିତୀୟ ଅଧ୍ୟାୟର 'ଅଶୋଚ୍ୟାନନ୍ୱଶୋଚସ୍ତ୍ୱମ୍'ଠାରୁ ଆରମ୍ଭ କରି ଦଶମ ଅଧ୍ୟାୟ ଶେଷ ପର୍ଯ୍ୟନ୍ତ ତୁମେ ଯେଉଁ ଅଧ୍ୟାତ୍ମତତ୍ତ୍ୱ ବ୍ୟାଖ୍ୟାକଲ, ତାହା ଶୁଣି ମୋର ମୋହ ଦୂର ହୋଇଗଲା, ଅର୍ଥାତ୍ ମୁଁ ବୁଝି ପାରିଲି ମୁଁ କର୍ତ୍ତା ନୁହେଁ, ତୁମେହିଁ ସବୁ କର୍ମର ନିୟନ୍ତା, ମୁଁ ଯନ୍ତ୍ର ମାତ୍ର ।

୨ । ଅନ୍ୱୟ ଦୀପିକା—କମଲପତ୍ରାକ୍ଷ (ହେ ପଦ୍ମପଲାଶ ଲୋଚନ), ତ୍ୱତ୍ତଃ (ତୁମ ନିକଟରୁ) ଭୂତାନାଂ (ଭୂତମାନଙ୍କର) ଭବାପ୍ୟୟୌ (ଉତ୍ପତ୍ତି ଓ ଲୟ) ମୟା (ମୋ ଦ୍ୱାରା) ବିସ୍ତରଶଃ (ବିସ୍ତାରିତ ଭାବରେ) ଶ୍ରୁତୌ (ଶ୍ରୁତ ହେଲା); ଅପିଚ (ଅଧିକ ମଧ୍ୟ) [ତୁମର] ଅବ୍ୟୟଂ ମାହାତ୍ମ୍ୟଂ (ଅବ୍ୟୟ ମାହାତ୍ମ୍ୟ) [ମୋ ଦ୍ୱାରା ଶୁଣାହେଲା ।]

ଅନୁବାଦ—ହେ କମଲପତ୍ରାକ୍ଷ, ଭୂତମାନଙ୍କର ଉତ୍ପତ୍ତି ଓ ଲୟ ଏବଂ ତୁମର ଅକ୍ଷୟ ମାହାତ୍ମ୍ୟ ତୁମ ନିକଟରୁ ମୁଁ ବିସ୍ତାରିତ ଭାବରେ ଶୁଣିଲି ।

ସୁବୋଧିନୀ ଟୀକା—କିଞ୍ଚ ଭବାପ୍ୟୟାବିତି—ଭୂତାନାଂ ଭବାପ୍ୟୟୌ ସୃଷ୍ଟିପ୍ରଳୟୌ ତ୍ୱତ୍ତଃ ସକାଶାଦେବ ଭବତଃ—ଇତି ଶ୍ରୁତଂ ମୟା—ଅହଂ କୃତ୍ସ୍ନସ୍ୟ ଜଗତଃ ପ୍ରଭବଃ ପ୍ରଳୟସ୍ତଥେତ୍ୟାଦୌ । ବିସ୍ତରଶଃ ପୁନଃ ପୁନଃ । କମଲସ୍ୟ ପତ୍ରେଇବ ସୁପ୍ରସନ୍ନେ ବିଶାଲେ ଅକ୍ଷିଣୀ ଯସ୍ୟ ତବ ହେ କମଲପତ୍ରାକ୍ଷ । ମାହାତ୍ମ୍ୟମପି ଚାବ୍ୟୟମକ୍ଷୟଂ ଶ୍ରୁତମ୍ । ବିଶ୍ୱସୃଷ୍ଟ୍ୟାଦି କର୍ତ୍ତୃତ୍ୱେଽପି ସର୍ବନିୟନ୍ତୃତ୍ୱେଽପି ଶୁଭାଶୁଭକର୍ମକାରୟିତୃତ୍ୱେଽପି ବନ୍ଧମୋକ୍ଷାଦି-ବିଚିତ୍ରଫଳଦାତୃତ୍ୱେଽପ୍ୟବିକାରବୈଷମ୍ୟାସଙ୍ଗୌ ଦାସୀନ୍ୟାଦିଲକ୍ଷଣମ ପରମୈଶ୍ୱର୍ୟଂ ମହତ୍ତ୍ୱଂ ଚ ଶ୍ରୁତମ୍—ଅବ୍ୟକ୍ତଂ ବ୍ୟକ୍ତିମାପନ୍ନଂ ମନ୍ୟନ୍ତେ ମାମବୁଦ୍ଧୟ ଇତି । ମୟାତତମିଦଂସର୍ବମିତି । ନ ଚ ମାଂ ତାନି କର୍ମାଣି ନିବଧ୍ନନ୍ତିତି । ସମୋଽହଂ ସର୍ବଭୂତେଷୁ । ଇତ୍ୟାଦିନା । ଅତସ୍ତତ୍ପରତନ୍ତ୍ରତ୍ୱାଦପି ଜୀବାନାମହଂ କର୍ତ୍ତେତ୍ୟାଦିମଦୀୟୋ ମୋହୋ ବିଗତ ଇତିଭାବଃ ।

ବକ୍ତବ୍ୟ—ସପ୍ତମ ଅଧ୍ୟାୟରେ (୪—୧୫), ୮ମ ଅଧ୍ୟାୟରେ (୧୬—୨୧) ଏବଂ ୯ମ ଅଧ୍ୟାୟରେ (୪—୮)—ଏକ ଅବ୍ୟକ୍ତରୁ ସମସ୍ତ ବ୍ୟକ୍ତ ପଦାର୍ଥ ସୃଷ୍ଟି ହେବାର ଯେଉଁ ବର୍ଣ୍ଣନା ଅଛି ତାହାହିଁ ଏଠାରେ ଭୂତମାନଙ୍କର ଉତ୍ପତ୍ତି ଓ ଲୟ ବୋଲି କୁହାଯାଇ ଅଛି । ଅନ୍ୟେ ବିଶ୍ୱସୃଷ୍ଟିର କର୍ତ୍ତା, ନିୟନ୍ତା ଏବଂ ଶୁଭାଶୁଭ କର୍ମର କାରୟିତା ଇତ୍ୟାଦି ଯାହା କୁହାଯାଇଅଛି ତାହାହିଁ ଭଗବାନଙ୍କର ମାହାତ୍ମ୍ୟର ବର୍ଣ୍ଣନା । ଏହି ସବୁ ବର୍ଣ୍ଣନା ଶୁଣି ଅର୍ଜ୍ଜୁନଙ୍କର ମୋହ ଦୂରୀଭୂତ ହୋଇଥିଲା ।

ଏବମେତଦ୍ ଯଥାତ୍ଥ ତ୍ୱମାତ୍ମାନଂ ପରମେଶ୍ୱର ।
ଦ୍ରଷ୍ଟୁମିଚ୍ଛାମି ତେ ରୂପମୈଶ୍ୱରଂ ପୁରୁଷୋତ୍ତମ । ୩ ।
ମନ୍ୟସେ ଯଦି ତଚ୍ଛକ୍ୟଂ ମୟା ଦ୍ରଷ୍ଟୁମିତି ପ୍ରଭୋ ।
ଯୋଗେଶ୍ୱର ତତୋ ମେ ତ୍ୱଂ ଦର୍ଶୟାତ୍ମାନମବ୍ୟୟମ୍ । ୪ ।

୩ । **ଅନ୍ୱୟ ଦୀପିକା**—[ହେ] ପରମେଶ୍ୱର, ଯଥା (ଯେପରି) ତ୍ୱମ୍ (ତୁମେ) ଆତ୍ମାନଂ (ଆପଣା କଥା) ଆତ୍ଥ (କହୁଅଛ) ଏତତ୍ ଏବ (ତାହା ଏହି ପ୍ରକାର); ହେ ପୁରୁଷୋତ୍ତମ, ତେ (ତୁମ) ଐଶ୍ୱରଂ ରୂପ (ଐଶ୍ୱରିକ ରୂପକୁ) ଦ୍ରଷ୍ଟୁମ୍ ଇଚ୍ଛାମି (ଦେଖିବାକୁ ମୁଁ ଇଚ୍ଛା କରୁଅଛି) ।

**ଅନୁବାଦ**—ହେ ପରମେଶ୍ୱର, ତୁମେ ଆପଣା କଥା ଯେପରି କହୁଛ (ଅର୍ଥାତ୍ ଅମ୍ଭେ ଏହି ସମସ୍ତ ଜଗତକୁ ଏକାଂଶରେ ମାତ୍ର ଧାରଣ କରି ରଖିଅଛୁଁ), ତାହା ଏହିପରି ; ହେ ପୁରୁଷୋତ୍ତମ, ମୁଁ ତୁମର ସେହି ଐଶ୍ୱରିକ ରୂପ ଦେଖିବାକୁ ଇଚ୍ଛା କରୁଅଛି ।

**ସୁବୋଧିନୀ ଟୀକା**—କଥଂ ଏବମେତଦେତ, ବକ୍ତାପ୍ୟସ୍ମୋ ତ ଭୂତାନା ମିତ୍ୟାଦି ମୟାଶ୍ରୁତମ୍, ଯଥା ତେଦାଖ ମାତ୍ମାନଂ ତ୍ୱମାତ୍ଥ—ବିଷ୍ଟ-ଭ୍ୟାହମିଦଂ କୃତ୍ସ୍ନ ମେକାଂଶେନ ସ୍ଥିତୋ ଜଗଦତ୍ୟୈବ କଥୟସି, ହେ ପରମେଶ୍ୱର ଏବମେବତତ୍, ଅତାପ୍ୟବିଶ୍ୱାସୋ ମମ ନାସ୍ତି, ତଥାପି ହେ ପୁରୁଷୋ-ତ୍ତମ, ତବୈଶ୍ୱର୍ଯଶକ୍ତିବୀର୍ଯତେଜୋଭିଃ ସମନ୍ୱିତଂ ତ୍ୱଦ୍ରୂପଂ କୌତୂହଲାଦହଂ ଦ୍ରଷ୍ଟୁମିଚ୍ଛାମି ।

**ବକ୍ତବ୍ୟ**—ଶ୍ରୀଧରସ୍ୱାମୀଙ୍କ ଟୀକାର ଅନୁସାରେ ଏ ଶ୍ଲୋକର ଅନୁବାଦ କରାଯାଇଅଛି, ମାତ୍ର ଶାଙ୍କର ଭାଷ୍ୟରେ ଓ ଶ୍ରୀଧରସ୍ୱାମୀଙ୍କ ଟୀକାରେ ଏ ଶ୍ଲୋକର ବ୍ୟାଖ୍ୟା ଏହିପରି—ହେ ପରମେଶ୍ୱର, ତୁମେ ଯେପରି ନିଜ କଥା କହୁଛ ତାହା ଠିକ୍, ସେଥିରେ ମୋର ଅବିଶ୍ୱାସ ନାହିଁ, ତଥାପି ହେ ପୁରୁଷୋ-ତ୍ତମ, ତୁମର ଐଶ୍ୱର୍ଯାଦି ସମ୍ପନ୍ନ ରୂପକୁ କୌତୂହଳ ହେତୁରୁ ମୁଁ ଦେଖିବାକୁ ଇଚ୍ଛା କରୁଅଛି ।

୪ । **ଅନ୍ୱୟ ଦୀପିକା**—[ହେ] ପ୍ରଭୋ, ତତ୍ ଯଦି (ସେହି ରୂପ ଯେବେ) ମୟା ଦ୍ରଷ୍ଟୁଂ ଶକ୍ୟଂ (ମୋ ଦ୍ୱାରା ଦେଖିବାର ଯୋଗ୍ୟ ଅର୍ଥାତ୍ ମୁଁ ଦେଖି ପାରେଁ) ଇତି ମନ୍ୟସେ (ଏପରି ତୁମେ ମନେକର) ତତଃ (ତାହାହେଲେ) [ହେ] ଯୋଗେଶ୍ୱର, ତ୍ୱଂ ମେ (ତୁମେ ମୋତେ) ଅବ୍ୟୟମ୍ (ଅକ୍ଷୟ) ଆତ୍ମାନଂ (ଆତ୍ମ ସ୍ୱରୂପ) ଦର୍ଶୟ (ଦେଖାଅ) ।

**ଅନୁବାଦ**—ହେ ପ୍ରଭୁ, ଯଦି ତୁମେ ମନେକର ଯେ, ମୁଁ ସେହିରୂପ ଦର୍ଶନ କରିବାର ଯୋଗ୍ୟ, ତାହାହେଲେ, ହେ ଯୋଗେଶ୍ୱର, ତୁମର ସେହି ଅକ୍ଷୟ ଆତ୍ମସ୍ୱରୂପ ମୋତେ ପ୍ରଦର୍ଶନ କର ।

ଶ୍ରୀଭଗବାନୁବାଚ

ପଶ୍ୟ ମେ ପାର୍ଥ ରୂପାଣି ଶତଶୋଽଥ ସହସ୍ରଶଃ ।
ନାନାବିଧାନି ଦିବ୍ୟାନି ନାନାବର୍ଣ୍ଣାକୃତୀନି ଚ ।୫।

ସୁବୋଧିନୀ ଟୀକା—ନ ଗୃହଂ ଦ୍ରଷ୍ଟୁମିଚ୍ଛାମୀତ୍ୟେତାବତୈବ ହୃଷ୍ଟୋ ଭଗବାନ୍ ଦର୍ଶୟିତବ୍ୟମ୍, କିଂତର୍ହି ? ମନ୍ୟସ ଇତି । ଯୋଗିନ ଏବଯୋଗାଃ, ତେଷାମୀଶ୍ୱର, ମୟାର୍ଜୁନେନ ତଦ୍ରୂପଂ ଦ୍ରଷ୍ଟୁଂଶକ୍ୟମିତି ଯଦି ମନ୍ୟସେ, ତତସ୍ତର୍ହି ତଦ୍ରୂପବନ୍ତ ମାତ୍ମାନମବ୍ୟୟଂ ନିତ୍ୟଂ ମମଦର୍ଶୟ ।

ବକ୍ତବ୍ୟ—ଏ ଶ୍ଳୋକରେ 'ଯୋଗେଶ୍ୱର' ପଦଟି ହେତୁଗର୍ଭକ; ୭ମ ଶ୍ଳୋକରେ ଏହି 'ଯୋଗ' ଶବ୍ଦର ବ୍ୟାଖ୍ୟା କରାଯାଇ ଅଛି । ଯେଉଁ ଶକ୍ତିବଳରେ ଅବ୍ୟକ୍ତ ପରମେଶ୍ୱର ବ୍ୟକ୍ତରୂପ ଧାରଣ କରନ୍ତି, ତାହାକୁ ଅର୍ଥାତ୍ ଈଶ୍ୱରଙ୍କର ଅଲୌକିକ ସୃଷ୍ଟିନିର୍ମାଣସାମର୍ଥ୍ୟକୁ 'ଯୋଗ' ବୋଲାଯାଏ; ବେଦାନ୍ତରେ ଏହାକୁ ମାୟା କହନ୍ତି । ପରମେଶ୍ୱରଙ୍କୁ ଏହି ଯୋଗ ବା ମାୟାର ଈଶ୍ୱର ବା ଯୋଗେଶ୍ୱର କୁହାଯାଏ । ସେହି ସାମର୍ଥ୍ୟଦ୍ୱାରା ଭଗବାନ୍ ଏଠାରେ ବିଶ୍ୱରୂପ ପ୍ରଦର୍ଶନ କରିବେ । ତେଣୁ 'ଯୋଗେଶ୍ୱର' ପଦର ବ୍ୟବହାର ଏଠାରେ ସମୀଚୀନ ।

୫ । ଅନ୍ୱୟ ଦୀପିକା—ଶ୍ରୀ ଭଗବାନ୍ ଉବାଚ, ( ଶ୍ରୀ ଭଗବାନ୍ କହିଲେ ), [ ହେ ] ପାର୍ଥ, ମେ ( ଆମ୍ଭର ) ଦିବ୍ୟାନି ( ଅଲୌକିକ ) ନାନାବିଧାନି ( ନାନାପ୍ରକାର ) ନାନାବର୍ଣ୍ଣାକୃତୀନି ( ନାନାବର୍ଣ୍ଣ ଓ ଆକୃତିବିଶିଷ୍ଟ ) ଶତଶଃ ( ଶତ ଶତ ) ଅଥ ସହସ୍ରଶଃ ( ଓ ସହସ୍ର ସହସ୍ର ) ରୂପାଣି ( ରୂପଗୁଡ଼ିକ ) ପଶ୍ୟ ( ଦେଖ ) ।

ଅନୁବାଦ—ଶ୍ରୀ ଭଗବାନ କହିଲେ—ହେ ପାର୍ଥ, ନାନାବର୍ଣ୍ଣ ଓ ନାନା ଆକୃତି ବିଶିଷ୍ଟ ଆମ୍ଭର ଶତ ଶତ ଓ ସହସ୍ର ସହସ୍ର ରୂପ ଦେଖ ।

ସୁବୋଧିନୀ ଟୀକା—ଏବଂ ପ୍ରାର୍ଥିତଃ ସନ୍ନତ୍ୟଦ୍ଭୁତଂ ରୂପଂ ଦର୍ଶୟିଷ୍ୟନ୍ ସାବଧାନୋ ଭବେତ୍ୟେବମର୍ଜୁନମଭିମୁଖୀ କରୋତି । ଶ୍ରୀ ଭଗବାନୁବାଚ ପଶ୍ୟେତି ଚତୁର୍ଭିଃ, ରୂପସ୍ୟୈକତ୍ୱେଽପି ନାନାବିଧତ୍ୱାଦ୍ ରୂପାଣୀତି ବହୁବଚନମ୍, ଅପରିମିତାନ୍ୟନେକପ୍ରକାରାଣି, ଦିବ୍ୟାନ୍ୟଲୌକିକାନି ମମରୂପାଣି ପଶ୍ୟ । ବର୍ଣ୍ଣାଃ ଶୁକ୍ଳକୃଷ୍ଣାଦୟଃ, ଆକୃତୟୋଽବୟବବିଶେଷାଃ । ନାନାବିଧାବର୍ଣ୍ଣା ଆକୃତୟଶ୍ଚ ଯେଷାଂ ତାନି ନାନାବର୍ଣ୍ଣାକୃତୀନି ।

ବକ୍ତବ୍ୟ—ଶ୍ରେଷ୍ଠତମ ଯୋଗୀ ଋଷିମାନେ ବହୁଜନ୍ମର ଯତ୍ନରେ ଯେଉଁ ବିଶ୍ୱରୂପ ଦର୍ଶନ କରି ପାରନ୍ତି ନାହିଁ, କେବଳ ଭକ୍ତି ବଳରେ ଅର୍ଜୁନ ତାହା ଦେଖିଲେ । ଏଥିରୁ ଜଣା ଯାଉଅଛି ହୃଦୟରେ ପ୍ରକୃତ ଭକ୍ତି ରସର ସଞ୍ଚାର

ପଶ୍ୟାଦିତ୍ୟାନ୍ ବସୂନ୍ ରୁଦ୍ରାନଶ୍ୱିନୌ ମରୁତସ୍ତଥା ।
ବହୂନ୍ୟଦୃଷ୍ଟପୂର୍ବାଣି ପଶ୍ୟାଶ୍ଚର୍ଯାଣି ଭାରତ । ୬ ।
ଇହୈକସ୍ଥଂ ଜଗତ୍କୃତ୍ସ୍ନଂ ପଶ୍ୟାଦ୍ୟ ସଚରାଚରମ୍ ।
ମମ ଦେହେ ଗୁଡ଼ାକେଶ ଯଚ୍ଚାନ୍ୟଦ୍ଦ୍ରଷ୍ଟୁମିଚ୍ଛସି । ୭ ।

ହେଲେ ହୃଦୟରୁ ପାପ-କଳୁଷ ଧ୍ୱଂସ ହୋଇଯାଏ, ଅନ୍ତଃକରଣ ଶୁଦ୍ଧ ଓ ପବିତ୍ର ହୋଇଉଠେ, ତେଣୁ ଭକ୍ତବତ୍ସଳ ଭକ୍ତ ସମ୍ମୁଖରେ ଆଉ ଆତ୍ମଗୋପନ କରି ରହି ପାରନ୍ତି ନାହିଁ ।

୬ । ଅନ୍ୱୟଦୀପିକା—[ ହେ ] ଭାରତ । [ ଅମ୍ଭ ଦେହରେ ] ଆଦିତ୍ୟାନ୍ ( ଦ୍ୱାଦଶଆଦିତ୍ୟ ), ବସୂନ୍ ( ଅଷ୍ଟବସୁ ) ରୁଦ୍ରାନ୍ ( ରୁଦ୍ରଗଣ ) ଅଶ୍ୱିନୌ ( ଅଶ୍ୱିନୀକୁମାର ଦ୍ୱୟ ), ତଥା ମରୁତଃ ( ଓ ମରୁଦ୍‌ଗଣ ) ପଶ୍ୟ ( ଦେଖ ) । ବହୂନି ( ଅନେକ ) ଅଦୃଷ୍ଟପୂର୍ବାଣି ( ଅଦୃଷ୍ଟପୂର୍ବ ) ଆଶ୍ଚର୍ଯାଣି ( ଆଶ୍ଚର୍ଯବିଷୟ ସବୁ ) ପଶ୍ୟ ( ଦେଖ ) ।

ଅନୁବାଦ—ହେ ଭାରତ, ଅମ୍ଭ ଦେହରେ ଦ୍ୱାଦଶ ଆଦିତ୍ୟ, ଅଷ୍ଟବସୁ, ଏକାଦଶ ରୁଦ୍ର, ଅଶ୍ୱିନୀକୁମାର ଦ୍ୱୟ ଏବଂ ଊନପଞ୍ଚାଶତ୍ ମରୁଦ୍‌ଗଣଙ୍କୁ ଦେଖ; ପୂର୍ବେ ଯାହା କେବେହେଲେ ତୁମେ ଦେଖିନାହଁ, ସେହିପରି ନାନାବିଧ ଆଶ୍ଚର୍ଯ ବସ୍ତୁ ମଧ୍ୟ ଦର୍ଶନ କର ।

ସୁବୋଧିନୀ ଟୀକା—ତାନେୟବାହ—ପଶ୍ୟେତି । ଆଦିତ୍ୟାଦୀନ୍ ମମଦେହେ ପଶ୍ୟ । ମରୁତ ଏକୋନପଞ୍ଚାଶଦ୍‌ଦେବତାବିଶେଷାନ୍ । ଅଦୃଷ୍ଟ-ପୂର୍ବାଣି ତ୍ୱୟାନ୍ୟୈନକା ପୂର୍ବମଦୃଷ୍ଟାନି ରୂପାଣି । ଆଶ୍ଚର୍ଯାଣ୍ୟଦ୍ଭୁତାନି ।

ବକ୍ତବ୍ୟ—ଭଗବାନଙ୍କୁ ଭକ୍ତ ବାଞ୍ଛା କଳ୍ପତରୁ ବୋଲି କହନ୍ତି ମାତ୍ର ଏଠାରେ ଅର୍ଜୁନ ତାଙ୍କ ଦୟାରୁ ବାଞ୍ଛାର ଅତିରିକ୍ତ ଫଳ ଲାଭକରି କିପରି କୃତକୃତ୍ୟ ହୋଇ ଅଛନ୍ତି ତାହା ଭାବିବାର ବିଷୟ । ଅର୍ଜୁନ, ଭଗବାନଙ୍କର ସ୍ୱରୂପ ଦର୍ଶନ ପାଇଁ ପ୍ରାର୍ଥୀ ହୋଇଥିଲେ ମାତ୍ର ତାହା ସଙ୍ଗରେ ଅଧିକା ଦେଖିଲେ ବିଭିନ୍ନ ଦେବଗଣଙ୍କ ଏବଂ ଯାହା କେବେ ଦେଖିବେ ବୋଲି ସ୍ୱପ୍ନରେ ମଧ୍ୟା ଭାବି ନ ଥିଲେ ସେହିପରି ଅଦୃଷ୍ଟପୂର୍ବ ଅନେକ ଆଶ୍ଚର୍ଯ ଦୃଶ୍ୟମାନଙ୍କୁ ।

୭ । ଅନ୍ୱୟଦୀପିକା—[ ହେ ] ଗୁଡ଼ାକେଶ । ଇହ ( ଏଠି ) ମମ ଦେହେ ( ଅମ୍ଭ ଦେହରେ ) ଏକସ୍ଥଂ ( ଏକ ସ୍ଥାନରେ ଥିବା ) କୃତ୍ସ୍ନଂ ( ସମସ୍ତ ) ଚରାଚରଂ ଜଗତ୍ ( ସ୍ଥାବର ଜଙ୍ଗମ ସହିତ ଜଗତଂ) ଯତ୍ ଅନ୍ୟତ୍ ଚ ( ଏବଂ ଅନ୍ୟ ଯାହା କିଛି ) ଦ୍ରଷ୍ଟୁମ୍ ( ଦେଖିବାକୁ ) ଇଚ୍ଛସି (ଇଚ୍ଛା କରୁଛ) [ ତାହା ] ଅଦ୍ୟ ପଶ୍ୟ ( ଆଜି ଦେଖ ) ।

ନ ତୁ ମାଂ ଶକ୍ୟସେ ଦ୍ରଷ୍ଟୁମନେନୈବ ସ୍ୱଚକ୍ଷୁଷା ।
ଦିବ୍ୟଂ ଦଦାମି ତେ ଚକ୍ଷୁଃ ପଶ୍ୟ ମେ ଯୋଗମୈଶ୍ୱରମ୍ ।୮।

ଅନୁବାଦ—ହେ ଗୁଡ଼ାକେଶ, ଏହି ଅମ୍ଭ ଦେହରେ ସ୍ଥାବର ଜଙ୍ଗମାତ୍ମକ ସମଗ୍ର ଜଗତକୁ ଏକ ସ୍ଥାନରେ ଅବସ୍ଥିତ ଥିବା ଦେଖ ଏବଂ ଅନ୍ୟ ଯେବେ କିଛି ଦେଖିବାକୁ ତୁମ ଇଚ୍ଛା, ତାହା ମଧ୍ୟ ତୁମେ ଦେଖିନିଅ ।

ସୁବୋଧିନୀ ଟୀକା—କିଞ୍ଚ ଇହୈକସ୍ଥମିତି । ତତ୍ର ତତ୍ର ପରିଭ୍ରମତା ବର୍ଷକୋଟିଭିରପି ଦ୍ରଷ୍ଟୁମଶକ୍ୟଂ କୃତ୍ସ୍ନମପି ଚରାଚରଂ ସହିତଂ ଜଗଦିହାସ୍ମିନ୍ ମମଦେହେଽବୟବରୂପେଣୈକତ୍ରୈବ ସ୍ଥିତମଦ୍ୟାଧୁନୈବ ପଶ୍ୟ ଯଚ୍ଚାନ୍ୟଜ୍ଜଗଦାଶ୍ରୟଭୂତଂ କାରଣସ୍ୱରୂପଂ ଜଗତସ୍ତାବସ୍ଥାବିଶେଷାଦିକଂ ଜୟପରାଜୟାଦିକଂ ଚ ଯଦପ୍ୟନ୍ୟଦ୍ ଦ୍ରଷ୍ଟୁମିଚ୍ଛସି ତତ୍ସର୍ବଂ ପଶ୍ୟ ।

ବକ୍ତବ୍ୟ—ଯେଉଁ ଜଗତକୁ ସମ୍ପୂର୍ଣ୍ଣରୂପେ ବୁଲି ଦେଖିବା ପାଇଁ ଯେ କୌଣସି ଲୋକ ପକ୍ଷରେ କୋଟି ଜନ୍ମ ଓ କୋଟି ବର୍ଷ ଅବଶ୍ୟକ ହେବ ଅଛି ସେହି ଜଗନ୍ମଣ୍ଡଳକୁ ଭକ୍ତ ସମ୍ମୁଖରେ ଭଗବାନ ନିଜ ଦେହରେ ଏକ ସ୍ଥାନରେ ପ୍ରଦର୍ଶନ କଲେ । ସେହି ଜଗତ୍‌ସତ୍ତ୍ୱରେ ଭୂତ, ଭବିଷ୍ୟତ୍, ବର୍ତ୍ତମାନ ତ୍ରିକାଳର ଘଟନା ଏକତ୍ର ବିଦ୍ୟମାନ । 'ଉପସ୍ଥିତ କୁରୁକ୍ଷେତ୍ର ଯୁଦ୍ଧରେ ଭବିଷ୍ୟତ୍‌ରେ ଯେଉଁ ଜୟ ପରାଜୟ ଘଟିବ ତାହା ତୁମେ ଅମ ଦେହରେ ବର୍ତ୍ତମାନ ସବୁ ଦେଖି ନିଅ'—'ଯଚ୍ଚାନ୍ୟତ୍ ଦ୍ରଷ୍ଟୁମିଚ୍ଛସି'—ବାକ୍ୟରେ ଭଗବାନ୍ ଏହାହିଁ ସଙ୍କେତ କଲେ ।

୮ । ଅନ୍ୱୟଦୀପିକା—ଅନେନ ( ଏହି ) ସ୍ୱଚକ୍ଷୁଷା ଏବ ( ସ୍ୱୀୟ ଚର୍ମଚକ୍ଷୁଦ୍ୱାରା ) ମାଂ ଦ୍ରଷ୍ଟୁଂ ନ ଶକ୍ୟସେ ( ଅମ୍ଭଙ୍କୁ ଦେଖି ପାରିବ ନାହିଁ ); [ ସେଥିପାଇଁ ] ତେ ( ତୁମ୍ଭଙ୍କୁ ) ଦିବ୍ୟଂ ଚକ୍ଷୁଃ ଦଦାମି ( ଦିବ୍ୟ ଚକ୍ଷୁ ଦେଉ ଅଛୁଁ ), ମେ ( ଅମ୍ଭର ) ଐଶ୍ୱରଂ ଯୋଗଂ ( ଐଶ୍ୱରିକ ଯୋଗଶକ୍ତି ବା ଅଘଟନଘଟନାସାମର୍ଥ୍ୟ ) ପଶ୍ୟ ( ଦେଖ ) ।

ଅନୁବାଦ—ତୁମେ ତୁମର ଏହି ଚର୍ମଚକ୍ଷୁଦ୍ୱାରା ଅମ୍ଭ ରୂପ ଦର୍ଶନରେ ସମର୍ଥ ହେବ ନାହିଁ । ତେଣୁ ତୁମ୍ଭଙ୍କୁ ଦିବ୍ୟ ଚକ୍ଷୁ ଦେଉଅଛୁଁ । ତଦ୍ୱାରା ତୁମ୍ଭେ ଅମ୍ଭର ଐଶ୍ୱରିକ ଯୋଗସାମର୍ଥ୍ୟ ଦେଖ ।

ସୁବୋଧିନୀ ଟୀକା—ଯଦୁକ୍ତମର୍ଜ୍ଜୁନେନ ମନ୍ୟସେ ଯଦିତଚ୍ଛକ୍ୟ ମିତି ତତ୍ରାହ—ନତୁମାମିତି । ଅନେନୈବ ତୁ ସ୍ୱୀୟେନ ଚର୍ମଚକ୍ଷୁଷା ମାଂ ଦ୍ରଷ୍ଟୁଂ ନ ଶକ୍ୟସେ ଶକ୍ତୋ ନ ଭବିଷ୍ୟସି । ଅତୋଽହଂ ଦିବ୍ୟମଲୌକିକଂ ଜ୍ଞାନାତ୍ମକଂ ଚକ୍ଷୁସ୍ତୁଭ୍ୟଂ ଦଦାମି । ମମୈଶ୍ୱରମସାଧାରଣଂ ଯୋଗଂ ଯୁକ୍ତିମଘଟନଘଟନା- ସାମର୍ଥ୍ୟଂ ପଶ୍ୟ ।

ସଞ୍ଜୟ ଉବାଚ

ଏବମୁକ୍ତ୍ୱା ତତୋ ରାଜନ୍ ମହାଯୋଗେଶ୍ୱରୋ ହରିଃ ।
ଦର୍ଶୟାମାସ ପାର୍ଥାୟ ପରମଂ ରୂପମୈଶ୍ୱରମ୍ । ୯ ।
ଅନେକବକ୍ତ୍ରନୟନମନେକାଦ୍ଭୁତଦର୍ଶନମ୍ ।
ଅନେକ ଦିବ୍ୟାଭରଣଂ ଦିବ୍ୟାନେକୋଦ୍ୟତାୟୁଧମ୍ ।୧୦।

ବିବୃତି—ଆମ୍ଭେମାନେ ଯେଉଁ ଚର୍ମଚକ୍ଷୁ ଦ୍ୱାରା ଜଗତରେ ଭୌତିକବସ୍ତୁ ଦେଖୁଁ, ତଦ୍ୱାରା ଭଗବାନଙ୍କୁ ଦେଖିବା ସମ୍ଭବ ନୁହେଁ । ସେଥିପାଇଁ ଦିବ୍ୟଦୃଷ୍ଟି ଲୋଡ଼ା । ସେହି ଦିବ୍ୟଦୃଷ୍ଟି ଲାଭ କରିବାକୁ ଅର୍ଜୁନ ପ୍ରାର୍ଥୀ ହୋଇ ନ ଥିଲେ । କିନ୍ତୁ ଭକ୍ତବତ୍ସଳ ସ୍ୱାମୀ ନିଜେ ତାହା ବୁଝିପାରି ତାଙ୍କୁ ଦିବ୍ୟଚକ୍ଷୁ ପ୍ରଦାନ କଲେ । ଭଗବାନଙ୍କର ଶରଣାଗତ ହେଲେ ସେ ଭକ୍ତର କୌଣସି ଅଭାବ ରଖନ୍ତି ନାହିଁ ।

୯ । ଅନ୍ୱୟ ଦୀପିକା—ସଞ୍ଜୟଃ ଉବାଚ, ( ସଞ୍ଜୟ କହିଲେ ) ରାଜନ୍ ( ହେ ମହାରାଜ ଧୃତରାଷ୍ଟ୍ର ) ମହାଯୋଗେଶ୍ୱରଃ ହରିଃ ( ମହା-ଯୋଗେଶ୍ୱର ହରି ) ଏବଂ ଉକ୍ତ୍ୱା ( ଏହିପରି କହି ) ତତଃ ( ତା ପରେ ) ପାର୍ଥାୟ ( ଅର୍ଜୁନଙ୍କୁ ) ପରମମ୍ ଐଶ୍ୱରଂ ରୂପଂ ( ଦିବ୍ୟ ଐଶ୍ୱରିକ ରୂପ ) ଦର୍ଶୟାମାସ ( ଦେଖାଇଲେ ) ।

ଅନୁବାଦ—ସଞ୍ଜୟ କହିଲେ, ହେ ମହାରାଜ ! ମହାଯୋଗେଶ୍ୱର ଭଗବାନ୍ କୃଷ୍ଣ ଏହିପରି କହି ତତ୍ପରେ ଅର୍ଜୁନଙ୍କୁ ଦିବ୍ୟ ଐଶ୍ୱରିକରୂପ ଦେଖାଇଲେ ।

ସୁବୋଧିନୀ ଟୀକା—ଏବମୁକ୍ତ୍ୱା ଭଗବାନ୍ ଅର୍ଜୁନାୟ ସ୍ୱରୂପଂ ଦର୍ଶିତବାନ୍ । ତଚ୍ଚ ରୂପଂ ଦୃଷ୍ଟ୍ୱା ଅର୍ଜୁନଃ ଶ୍ରୀକୃଷ୍ଣଂ ବିଜ୍ଞାପିତବାନ୍ ଇତ୍ୟେତଦର୍ଥ ଷଡ୍ଭିଃ ଶ୍ଳୋକୈର୍ଧୃତରାଷ୍ଟ୍ରଂ ପ୍ରତି ସଞ୍ଜୟ ଉବାଚ, ଏବମୁକ୍ତ୍ୱେତି, ହେ ରାଜନ୍ ଧୃତରାଷ୍ଟ୍ର, ମହାଂଶ୍ଚାସୌ ଯୋଗେଶ୍ୱରଶ୍ଚ ହରିଃ ପରମୈଶ୍ୱରଂ ରୂପଂ ଦର୍ଶିତବାନ୍ ।

୧୦ । ଅନ୍ୱୟ ଦୀପିକା—[ ସେହି ଐଶ୍ୱରରୂପ ବା ବିଶ୍ୱରୂପ ] ଅନେକ ବକ୍ତ୍ରନୟନମ୍ (ବହୁମୁଖ ଓ ବହୁନେତ୍ର ବିଶିଷ୍ଟ ) ଅନେକାଦ୍ଭୁତଦର୍ଶନଂ ( ଅନେକ ଅଦ୍ଭୁତ ଅବୟବବିଶିଷ୍ଟ ) ଅନେକଦିବ୍ୟାଭରଣଂ ( ଅନେକ ଦିବ୍ୟ ଆଭରଣ ବିଶିଷ୍ଟ) ଦିବ୍ୟାନେକୋଦ୍ୟତାୟୁଧମ୍ ) ଅନେକ ଦିବ୍ୟ ସଜ୍ଜିତ ଅୟୁଧ-ଯୁକ୍ତ ଥିଲା ।

ଅନୁବାଦ—ସେହି ଐଶ୍ୱରିକ ରୂପରେ ଅନେକ ମୁଖ, ଅନେକ ନେତ୍ର, ଅନେକ ଅଦ୍ଭୁତ ଦର୍ଶନୀୟ ବିଷୟ, ଅନେକ ଦିବ୍ୟ ଅଳଙ୍କାର ଓ ଅନେକ ସଜ୍ଜିତ ଦିବ୍ୟାସ୍ତ୍ର ବିଦ୍ୟମାନ ଥିଲା ।

ଦିବ୍ୟମାଲ୍ୟାମ୍ବରଧରଂ ଦିବ୍ୟଗନ୍ଧାନୁଲେପନମ୍ ।
ସର୍ବାଶ୍ଚର୍ଯ୍ୟମୟଂ ଦେବମନନ୍ତଂ ବିଶ୍ୱତୋମୁଖମ୍ । ୧୧ ।

ଦିବି ସୂର୍ଯ୍ୟସହସ୍ରସ୍ୟ ଭବେଦ୍‌ଯୁଗପଦୁତ୍ଥିତା ।
ଯଦି ଭାଃ ସଦୃଶୀ ସା ସ୍ୟାଦ୍ଭାସସ୍ତସ୍ୟ ମହାତ୍ମନଃ । ୧୨ ।

ସୁବୋଧିନୀ ଟୀକା—କିଂଭୂତଂ ତଦେତ, ଅତଆହ—ଅନେକ ବକ୍ତ୍ରନୟନମିତି, ଅନେକାନି ବକ୍ତ୍ରାଣି ନୟନାନି ଚ ଯସ୍ମିଂସ୍ତତ୍ । ଅନେକାନାମଦ୍ଭୁତାନାଂ ଦର୍ଶନଂ ଯସ୍ମିଂସ୍ତତ୍, ଅନେକାନି ଦିବ୍ୟାଭରଣାନି ଯସ୍ମିଂସ୍ତତ୍, ଦିବ୍ୟାନ୍ୟନେକାନ୍ୟୁଦ୍ୟତାନ୍ୟାୟୁଧାନି ଯସ୍ମିଂସ୍ତତ୍ ।

୧୧ । ଅନ୍ୱୟ ଦୀପିକା—ଦିବ୍ୟମାଲ୍ୟାମ୍ବରଧରଂ ( ଦିବ୍ୟମାଲ୍ୟ ଓ ବସ୍ତ୍ରଦ୍ୱାରା ଶୋଭିତ ) ଦିବ୍ୟଗନ୍ଧାନୁଲେପନଂ ( ଦିବ୍ୟ ସୁଗନ୍ଧ ବସ୍ତୁଦ୍ୱାରା ଅନୁଲିପ୍ତ ) ସର୍ବାଶ୍ଚର୍ଯ୍ୟମୟଂ ( ଅତ୍ୟଦ୍ଭୁତ ) ଦେବମ୍ ( ଦୀପ୍ତିଶାଳୀ ) ଅନନ୍ତଂ ( ଅପରିଚ୍ଛିନ୍ନ ) ବିଶ୍ୱତୋମୁଖଂ ( ସର୍ବତ୍ର ମୁଖ ବିଶିଷ୍ଟ ) ।

ଅନୁବାଦ—ସେହି ବିଶ୍ୱରୂପ ଦିବ୍ୟମାଲ୍ୟ ଓ ଦିବ୍ୟବସ୍ତ୍ରଦ୍ୱାରା ସୁଶୋଭିତ ଥିଲେ, ଦିବ୍ୟ ଗନ୍ଧଦ୍ୱାରା ଅନୁଲିପ୍ତ ହୋଇଥିଲେ, ଅତି, ଅଦ୍ଭୁତ ଦୀପ୍ତିଶାଳୀ ଓ ସର୍ବତ୍ର ମୁଖବିଶିଷ୍ଟ ଥିଲେ ।

ସୁବୋଧିନୀ ଟୀକା—କିଞ୍ଚ-ଦିବ୍ୟେତି-ଦିବ୍ୟାନି ମାଲ୍ୟାନ୍ୟମ୍ବରାଣି ଚ ଧାରୟତୀତି ତତ୍, ତଥା ଦିବ୍ୟୋ ଗନ୍ଧୋ ଯସ୍ୟ, ତାଦୃଶମନୁଲେପନଂ ଯସ୍ୟତତ୍, ସର୍ବାଶ୍ଚର୍ଯ୍ୟମୟମନେକାଶ୍ଚର୍ଯ୍ୟପ୍ରାୟଂ । ଦେବଂ ଦ୍ୟୋତନାତ୍ମକମ୍, ଅନନ୍ତମପରିଚ୍ଛିନ୍ନଂ, ବିଶ୍ୱତଃ ସର୍ବତୋ ମୁଖାନି ଯସ୍ମିଂସ୍ତତ୍ ।

୧୨ । ଅନ୍ୱୟ ଦୀପିକା—ଦିବି ( ଆକାଶରେ ) ସୂର୍ଯ୍ୟ ସହସ୍ରସ୍ୟ ( ସହସ୍ର ସୂର୍ଯ୍ୟଙ୍କର ) ଭାଃ ( ପ୍ରଭା ) ଯଦି ( ଯେବେ ) ଯୁଗପତ୍ ( ଏକକାଳରେ, ସମାନ ସମୟରେ ) ଉତ୍ଥିତା ( ସମୁଦିତ ) ଭବେତ୍ ( ହୁଏ ) [ ତେବେ ] ସା ( ସେହି ପ୍ରଭା ) ତସ୍ୟ ( ସେହି ) ମହାତ୍ମନଃ ( ମହାତ୍ମାଙ୍କର ) ଭାସଃ ସଦୃଶୀ ସ୍ୟାତ୍ ( ପ୍ରଭା ସଙ୍ଗେ ସମାନ ହୋଇପାରେ ) ।

ଅନୁବାଦ—ଯେବେ ଆକାଶରେ ଯୁଗପତ୍ ( ଏକାବେଳକେ ) ସହସ୍ର ସୂର୍ଯ୍ୟଙ୍କର ପ୍ରଭା ପ୍ରକାଶ ପାଏ, ତାହାହେଲେ ସେ ପ୍ରଭା ସେହି ମହିମମୟ ବିଶ୍ୱରୂପଙ୍କ ପ୍ରଭା ସଙ୍ଗରେ କଥଞ୍ଚିତ୍ ତୁଳିତ ହୋଇପାରେ ।

ସୁବୋଧିନୀ ଟୀକା—ବିଶ୍ୱରୂପଦୀପ୍ତେର୍ନିରୁପମତ୍ୱମାହ—ଦିବୀତି, ଦିବ୍ୟାକାଶେ ସୂର୍ଯ୍ୟସହସ୍ରସ୍ୟ ଯୁଗପଦୁତ୍ଥିତସ୍ୟ ଯଦି ଯୁଗପଦୁତ୍ଥିତା ଭାଃ ପ୍ରଭା ଭବେତ୍ତର୍ହି ସା ତଦା ମହାତ୍ମନୋ ବିଶ୍ୱରୂପସ୍ୟ ଭାସଃ କଥଞ୍ଚିତ୍ ସଦୃଶୀ-

ତତ୍ରୈକସ୍ଥଂ ଜଗତ୍‌କୃତ୍ସ୍ନଂ ପ୍ରବିଭକ୍ତମନେକଧା ।
ଅପଶ୍ୟଦ୍ଦେବଦେବସ୍ୟ ଶରୀରେ ପାଣ୍ଡବସ୍ତଦା ॥ ୧୩ ॥
ତତଃ ସ ବିସ୍ମୟାବିଷ୍ଟୋ ହୃଷ୍ଟରୋମା ଧନଞ୍ଜୟଃ ।
ପ୍ରଣମ୍ୟ ଶିରସା ଦେବଂ କୃତାଞ୍ଜଳିରଭାଷତ ॥ ୧୪ ॥

ସ୍ୟାତ୍ । ଅନ୍ୟୋପମା ନାସ୍ତ୍ୟେବେତ୍ୟର୍ଥଃ, ତଥାଭୂତଂ ରୂପଂ ଦର୍ଶୟାମାସେତି ପୂର୍ବେଣାନ୍ୱୟଃ ।

ବିବୃତ—ଅମେ ଚର୍ମ ଚକ୍ଷୁରେ ଗୋଟିଏ ସୂର୍ଯ୍ୟଙ୍କର ପ୍ରଭା ଧାରଣକରି ପାରୁନାହୁଁ, ଅର୍ଜୁନ ଯେଉଁ ଦିବ୍ୟଚକ୍ଷୁ ପାଇଥିଲେ ତାହା କିପରି ଶକ୍ତିଶାଳୀ ଏହି ଗୋଟିଏ ଶ୍ଳୋକର ଭାବରୁ ଜଣାପଡ଼େ ।

୧୩ । ଅନ୍ୱୟ ଦୀପିକା—ତଦା ( ସେତେବେଳେ ) ପାଣ୍ଡବଃ ( ଅର୍ଜୁନ ) ଦେବଦେବସ୍ୟ ( ଭଗବାନଙ୍କର ) ତନ୍ଦ ଦେହେ (ସେହି ବିଶ୍ୱରୂପ ଦେହରେ ) ଅନେକଧା ( ନାନାଭାଗରେ ) ପ୍ରବିଭକ୍ତଂ ( ବିଭକ୍ତ ହୋଇ ରହିଥିବା ) କୃତ୍ସ୍ନଂ ( ସମଗ୍ର ) ଜଗତ୍ (ଜଗତ) ଏକସ୍ଥଂ ( ଏକତ୍ର ଅବସ୍ଥିତ ) ଅପଶ୍ୟତ୍ ( ଦେଖିଲେ ) ।

ଅନୁବାଦ—ସେତେବେଳେ ଅର୍ଜୁନ ଭଗବାନଙ୍କର ସେହି ବିଶ୍ୱରୂପ ଶରୀରରେ ନାନାଭାଗରେ ବିଭକ୍ତ ସମଗ୍ରଜଗତକୁ ତାହାଙ୍କ ଅଙ୍ଗ ପ୍ରତ୍ୟଙ୍ଗ ରୂପରେ ଏକତ୍ର ଅବସ୍ଥିତ ଦେଖିଲେ ।

ସୁବୋଧିନୀ ଟୀକା—ତତଃ କିଂ ବୃତ୍ତମିତ୍ୟପେକ୍ଷାୟାମାହ ସଞ୍ଜୟଃ—ତତ୍ରୈତି । ଅନେକଧା ପ୍ରବିଭକ୍ତଂ ନାନାବିଭାଗେନାବସ୍ଥିତଂ କୃତ୍ସ୍ନଂ ଜଗତ୍ ଦେବଦେବସ୍ୟ ଶରୀରେ ତଦବୟବତ୍ୱେନୈକତ୍ରୈବ ପୃଥକ୍ ପୃଥଗବସ୍ଥିତଂ ତଦା ପାଣ୍ଡବୋଽର୍ଜୁନୋଽପଶ୍ୟତ୍ ।

୧୪ । ଅନ୍ୱୟ ଦୀପିକା—ତତଃ ( ତତ୍ପରେ ) ସଃ ଧନଞ୍ଜୟଃ ( ସେହି ଧନଞ୍ଜୟ ) ବିସ୍ମୟାବିଷ୍ଟଃ ( ବିସ୍ମୟାନ୍ୱିତ ) ହୃଷ୍ଟରୋମା ( ରୋମାଞ୍ଚିତ ହୋଇ ) ଦେବଂ ( ଦେବଙ୍କୁ ) ଶିରସା (ମସ୍ତକଦ୍ୱାରା) ପ୍ରଣମ୍ୟ ( ପ୍ରଣାମ କରି ) କୃତାଞ୍ଜଳିଃ ( ହାତଯୋଡ଼ି ) ଅଭାଷତ ( କହିଲେ ) ।

ଅନୁବାଦ—ତତ୍ପରେ, ସେହି ଅର୍ଜୁନ ବିସ୍ମୟାନ୍ୱିତ ହୋଇଗଲେ, ତାଙ୍କ ଦେହର ରୋମ ଠାକୁରି ଉଠିଲା, ସେ ମୁଣ୍ଡନୁଆଇଁ ଦେବଦେବଙ୍କୁ ପ୍ରଣାମ କରି କରଯୋଡ଼ି କହିବାକୁ ଆରମ୍ଭ କଲେ ।

ସୁବୋଧିନୀ ଟୀକା—ଏବଂ ଦୃଷ୍ଟ୍ୱା କିଂ କୃତବାନିତ, ତତାହ—ତତଇତି, ତତୋଦର୍ଶନାନନ୍ତରଂ, ବିସ୍ମୟେନାବିଷ୍ଟୋ ବ୍ୟାପ୍ତଃ ସନ୍

ଅର୍ଜୁନ ଉବାଚ

ପଶ୍ୟାମି ଦେବାଂସ୍ତବ ଦେବଦେହେ,
ସର୍ବାଂସ୍ତଥା ଭୂତବିଶେଷସଙ୍ଘାନ୍ ।
ବ୍ରହ୍ମାଣମୀଶଂ କମଳାସନସ୍ଥ—
ମୃଷୀଂଶ୍ଚ ସର୍ବାନୁରଗାଂଶ୍ଚ ଦିବ୍ୟାନ୍ ।୧୫।

କୃଷ୍ଣାନ୍ୟଦ୍ଭୁତରୂପାଣି ଶ୍ରେମାଣି ଯସ୍ୟ ସ ଧନଞ୍ଜୟଃ । ତମେବ ଦେବ ଶିରସାପ୍ରଣମ୍ୟ, କୃତାଞ୍ଜଳିଃ ସମ୍ପୁଟୀକୃତହସ୍ତୋ ଭୂତ୍ୱା, ଅଭ୍ୟଭାଷତୋକ୍ତବାନ୍ ।

ବିବୃତ—ଭକ୍ତ ଯେତେବେଳେ କୃତାର୍ଥ ହୁଏ, ସେତେବେଳେ ମସ୍ତକ ଅବନତ କରି ହାତଯୋଡ଼ି ପ୍ରଣାମ ନ କରି ରହି ପାରେନାହିଁ, ଭାବର ଆବେଶରେ ତାହାର ହୃଦୟ କନ୍ଦରରୁ ସ୍ତବର ଧାରା ସ୍ୱତଃ ପ୍ରଧାବିତ ହୁଏ ।

୧୫ । ଅନ୍ୱୟ ଦୀପିକା—ଅର୍ଜୁନଃ ଉବାଚ—(ଅର୍ଜୁନ କହିଲେ) [ ହେ ] ଦେବ ! ତବ ଦେହେ ( ତୁମ ଶରୀରରେ ) ସର୍ବାନ୍ ଦେବାନ୍ ( ସମସ୍ତ ଦେବତାଙ୍କୁ ) ତଥା ( ଏବଂ ) ଭୂତବିଶେଷ-ସଙ୍ଘାନ୍ ( ସ୍ଥାବର ଜଙ୍ଗମାତ୍ମକ ଭୂତ ସମୂହକୁ ) ଦିବ୍ୟାନ୍ ( ଦିବ୍ୟ ) ଋଷୀନ୍ ( ଋଷିମାନଙ୍କୁ ) ସର୍ବାନ୍ ଉରଗାନ୍ ଚ ( ଏବଂ ସମୁଦାୟ ସର୍ପଙ୍କୁ ) ଈଶଂ (ସୃଷ୍ଟିକର୍ତ୍ତା) କମଳାସନସ୍ଥଂ (ପଦ୍ମାସନସ୍ଥିତ) ବ୍ରହ୍ମାଣଂ ଚ ( ବ୍ରହ୍ମାଙ୍କୁ ମଧ୍ୟ ) ପଶ୍ୟାମି ( ଦେଖୁଅଛି ) ।

ଅନୁବାଦ—ଅର୍ଜୁନ କହିଲେ, ହେ ଦେବ, ତୁମର ଏହି ବିଶ୍ୱରୂପ ଶରୀରରେ ମୁଁ ଅଦିତ୍ୟ ପ୍ରଭୃତି ସମସ୍ତ ଦେବତାଙ୍କୁ, ସ୍ଥାବର ଜଙ୍ଗମାତ୍ମକ ସମସ୍ତ ଭୂତଙ୍କୁ, କମଳାସନରେ ଉପବିଷ୍ଟ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କୁ, ବଶିଷ୍ଠ, ସନକ, ନାରଦାଦି ଋଷିମାନଙ୍କୁ ଏବଂ ବାସୁକି, ଅନନ୍ତ ପ୍ରଭୃତି ସର୍ପମାନଙ୍କୁ ଦେଖୁଅଛି ।

ସୁବୋଧିନୀ ଟୀକା—ଈକ୍ଷଣ ମେବାହ—ପଶ୍ୟାମୀତି ସପ୍ତଦଶଭିଃ । ହେ ଦେବ, ତବ ଦେହେ ଦେବାନାଦିତ୍ୟାଦୀନ୍ ପଶ୍ୟାମି, ତଥା ସର୍ବାନ୍ ଭୂତ-ବିଶେଷାଣାଂ ଜରାୟୁଜାଣ୍ଡଜାଦୀନାଂ ସଙ୍ଘାଂଶ୍ଚ, ତଥା ଦିବ୍ୟାନ୍ ଋଷୀନ୍ ବଶିଷ୍ଠାଦୀନ୍, ଉରଗାଂଶ୍ଚ ତକ୍ଷକାଦୀନ୍ ତଥା ତେଷାଂ ଦେବାଦୀନାମୀଶଂ ସ୍ୱାମିନଂ ବ୍ରହ୍ମାଣଂ ଚ, କଥଂଭୂତଂ ? କମଳାସନସ୍ଥଂ ପୃଥ୍ୱୀପଦ୍ମକର୍ଣ୍ଣିକାୟାଂ ମେରୌସ୍ଥିତମିତ୍ୟର୍ଥଃ, ଯଦ୍ୱା ତ୍ୱନ୍ନାଭିପଦ୍ମାସନସ୍ଥମିତି ।

ବିବୃତ—ବୃକ୍ଷାଦିକୁ ସ୍ଥାବର ଓ ଜୀବମାନଙ୍କୁ ଜଙ୍ଗମ ଭୂତ କୁହାଯାଏ । ଜୀବମାନଙ୍କ ମଧ୍ୟରେ ମନୁଷ୍ୟାଦିଙ୍କୁ ଜରାୟୁଜ, ପକ୍ଷୀ, କୁମ୍ଭୀର, ସର୍ପାଦିଙ୍କୁ ଅଣ୍ଡଜ, ମଶକ ଦଂଶ ପ୍ରଭୃତିଙ୍କୁ ସ୍ୱେଦଜ କୁହାଯାଏ । ସ୍ଥାବର ଓ ଜଙ୍ଗମ ସମସ୍ତ ଭଗବାନଙ୍କ ବିଶ୍ୱରୂପରେ ବିଦ୍ୟମାନ ଥିଲେ । ଏମାନଙ୍କ ଛଡ଼ା ସମସ୍ତ ଦେବତା, ଏବଂ ଦେବତାମାନଙ୍କ ପ୍ରଭୁ ଭଗବାନଙ୍କ ନାଭି କମଳରେ ଅବସ୍ଥିତ ବ୍ରହ୍ମା, ସମସ୍ତ ଋଷି ଓ ସର୍ପ ମଧ୍ୟ ସେହି ବିଶ୍ୱରୂପରେ ଅର୍ଜୁନ ଦେଖିଥିଲେ ।

ଅନେକବାହୂଦରବକ୍ତ୍ରନେତ୍ରଂ,
ପଶ୍ୟାମି ତ୍ୱାଂ ସର୍ବତୋଽନନ୍ତରୂପମ୍ ।
ନାନ୍ତଂ ନ ମଧ୍ୟଂ ନ ପୁନସ୍ତବାଦିଂ,
ପଶ୍ୟାମି ବିଶ୍ୱେଶ୍ୱର ବିଶ୍ୱରୂପ । ୧୬ ।
କିରୀଟିନଂ ଗଦିନଂ ଚକ୍ରିଣଂ ଚ
ତେଜୋରାଶିଂ ସର୍ବତୋ ଦୀପ୍ତିମନ୍ତମ୍,
ପଶ୍ୟାମି ତ୍ୱାଂ ଦୁର୍ନିରୀକ୍ଷ୍ୟଂ ସମନ୍ତା—
ଦ୍ଦୀପ୍ତାନଳାର୍କଦ୍ୟୁତିମପ୍ରମେୟମ୍ । ୧୭ ।

୧୬ । ଅନ୍ୱୟ ଦୀପିକା—[ହେ] ବିଶ୍ୱେଶ୍ୱର, [ହେ] ବିଶ୍ୱରୂପ ! ଅନେକ ବାହୂଦର ବକ୍ତ୍ରନେତ୍ରଂ ( ଅନେକ ବାହୁ, ଅନେକ ଉଦର, ଅନେକ ମୁଖ ଓ ଅନେକ ନେତ୍ର ବିଶିଷ୍ଟ ) ଅନନ୍ତରୂପଂ ( ଅନନ୍ତରୂପଧାରୀ ) ତ୍ୱାଂ ( ତୁମ୍ଭକୁ ) ସର୍ବତଃ ( ସବୁଠାରେ ) ପଶ୍ୟାମି ( ଦେଖୁଅଛି ), ପୁନଃ ( ଏବଂ ) ତବ ( ତୁମ୍ଭର ) ନ ଅନ୍ତଂ ନ ମଧ୍ୟଂ ନ ଆଦିଂ ପଶ୍ୟାମି ( ଶେଷ, ମଧ୍ୟ ଓ ଆଦି ଦେଖୁନାହିଁ ଅର୍ଥାତ୍ ତୁମ୍ଭର ଆଦି, ଅନ୍ତ ଓ ମଧ୍ୟ କିଛି ଦେଖିପାରୁ ନାହିଁ ) ।

ଅନୁବାଦ—ହେ ବିଶ୍ୱେଶ୍ୱର, ହେ ବିଶ୍ୱରୂପ ! ତୁମ୍ଭର ଅନେକ ବାହୁ ଉଦର ନେତ୍ରଯୁକ୍ତ ଅନନ୍ତରୂପ ମୁଁ ସବୁଆଡ଼େ ଦେଖୁଅଛି; କିନ୍ତୁ ତୁମ୍ଭର ଆଦି, ଅନ୍ତ ଓ ମଧ୍ୟ କେଉଁଠାରେ କିଛି ଦେଖିପାରୁ ନାହିଁ ।

ସୁବୋଧିନୀ ଟୀକା—କିଞ୍ଚ ଅନେକେତି—ଅନେକାନି ବାହ୍ୱାଦୀନି ଯସ୍ୟ ତାଦୃଶଂ ତ୍ୱାଂ ପଶ୍ୟାମି । ଅନନ୍ତାନି ରୂପାଣି ଯସ୍ୟ ତଂ ତ୍ୱାଂ ସର୍ବତଃ ପଶ୍ୟାମି, ତବ ତ୍ୱନ୍ତଂ ମଧ୍ୟମାଦିଂ ଚ ନ ପଶ୍ୟାମି, ସର୍ବଗତତ୍ୱାତ୍ ।

୧୭ । ଅନ୍ୱୟଦୀପିକା—କିରୀଟିନଂ ( କିରୀଟଧାରୀ ) ଗଦିନଂ ଚକ୍ରିଣଂ ଚ ( ଗଦା ଓ ଚକ୍ରଧାରୀ ) ସର୍ବତଃ ଦୀପ୍ତିମନ୍ତଂ ( ସର୍ବତ୍ର ଦୀପ୍ତିଶାଳୀ ) ତେଜୋରାଶିଂ ( ତେଜଃପୁଞ୍ଜ ସ୍ୱରୂପ ) ଦୁର୍ନିରୀକ୍ଷ୍ୟଂ ( ଅତି କଷ୍ଟରେ ଦର୍ଶନ-ଯୋଗ୍ୟ ) ଦୀପ୍ତାନଳାର୍କଦ୍ୟୁତିଂ ( ପ୍ରଦୀପ୍ତ ଅଗ୍ନି ଓ ସୂର୍ଯ୍ୟପରି ପ୍ରକାଶଶୀଳ ) ଅପ୍ରମେୟଂ ଚ ( ଅପରିମେୟ ) ତ୍ୱାଂ ( ତୁମ୍ଭକୁ ) ସମନ୍ତାତ୍ ( ଚାରିଆଡ଼େ ) ପଶ୍ୟାମି ( ଦେଖୁଅଛି ) ।

ଅନୁବାଦ—କିରୀଟ, ଗଦା ଓ ଚକ୍ରଧାରୀ, ତେଜଃପୁଞ୍ଜସ୍ୱରୂପ, ପ୍ରଦୀପ୍ତ ଅଗ୍ନି ଓ ସୂର୍ଯ୍ୟଙ୍କପରି ପ୍ରକାଶଶୀଳ, ଅତି କଷ୍ଟରେ ଦର୍ଶନ ଯୋଗ୍ୟ, ଅପରିମେୟ ତୁମ୍ଭର ରୂପକୁ ମୁଁ ଚାରିଆଡ଼େ ଦେଖୁଅଛି ।

ସୁବୋଧିନୀ ଟୀକା—କିରୀଟିନମିତି—କିରୀଟିନଂ ମୁକୁଟବନ୍ତଂ, ଗଦିନଂ ଗଦାବନ୍ତଂ, ଚକ୍ରିଣଂ ଚକ୍ରବନ୍ତଂ ଚ, ସର୍ବତୋ ଦୀପ୍ତିମନ୍ତଂ ତେଜଃପୁଞ୍ଜରୂପଂ,

ତ୍ୱମକ୍ଷରଂ ପରମଂ ବେଦିତବ୍ୟଂ,
ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନଂ ।
ତ୍ୱମବ୍ୟୟଃ ଶାଶ୍ୱତଧର୍ମଗୋପ୍ତା,
ସନାତନସ୍ତ୍ୱଂ ପୁରୁଷୋ ମତୋ ମେ ।୧୮।

ଅନାଦିମଧ୍ୟାନ୍ତମନନ୍ତବୀର୍ଯ୍ୟ—
ମନନ୍ତ ବାହୁଂ ଶଶିସୂର୍ଯ୍ୟନେତ୍ରମ୍ ।
ପଶ୍ୟାମି ତ୍ୱାଂ ଦୀପ୍ତହୁତାଶବକ୍ତ୍ରଂ,
ସ୍ୱତେଜସା ବିଶ୍ୱମିଦଂ ତପନ୍ତମ୍ । ୧୯ ।

ତଥା ଦୁର୍ନିରୀକ୍ଷ୍ୟଂ, ଦ୍ରଷ୍ଟୁମଶକ୍ୟଂ, ତତ୍ରହେତୁଃ ଦୀପ୍ତୟୋରନଳାର୍କୟୋ ର୍ଦ୍ୟୁତିରିବ ଦ୍ୟୁତିସ୍ତେଜୋ ଯସ୍ୟ ତମ୍, ଅତଏବାପ୍ରମେୟ ମେବମ୍ଭୂତ ମତି କ୍ଷେତ୍ରମଶକ୍ୟଂ ତ୍ୱାଂ ସମନ୍ତତଃ ପଶ୍ୟାମି ।

ବକ୍ତବ୍ୟ—ଯେଉଁ ବିଶ୍ୱରୂପ ଭଗବାନ୍ ଦେଖାଉଅଛନ୍ତି ତାହା ସାଧାରଣ ଚକ୍ଷୁରେ ଦେଖିହେବ ନାହିଁ, ମାତ୍ର ଅର୍ଜ୍ଜୁନ ଦିବ୍ୟ ଚକ୍ଷୁଧାରୀ, ତେଣୁ ସେ ତାହା ଦେଖୁଅଛନ୍ତି ।

୧୮ । ଅନ୍ୱୟଦୀପିକା—ତ୍ୱମ୍ ( ତୁମେ ) ଅକ୍ଷରଂ ପରମଂ ( ଅକ୍ଷର ପରବ୍ରହ୍ମ ), ବେଦିତବ୍ୟଂ ( ମୁମୁକ୍ଷୁମାନଙ୍କର ଜ୍ଞାତବ୍ୟ ), ତ୍ୱମ୍ ଅସ୍ୟ ବିଶ୍ୱସ୍ୟ ( ତୁମେ ଏହି ଜଗତର ) ପରଂ ନିଧାନଂ ( ପରମ ଆଶ୍ରୟ ), ତ୍ୱମ୍ ଅବ୍ୟୟଃ ( ତୁମ୍ଭେ ନିତ୍ୟ ) ଶାଶ୍ୱତଧର୍ମଗୋପ୍ତା ( ସନାତନ ଧର୍ମର ରକ୍ଷକ ), ତ୍ୱଂ ସନାତନଃ ପୁରୁଷଃ ( ଚିରନ୍ତନ ପୁରୁଷ ), [ଇତି] ମେ ମତଃ ( ଏହାହିଁ ମୋର ମତ ) ।

ଅନୁବାଦ—ତୁମେ ହିଁ ଅକ୍ଷର ପରମ ବ୍ରହ୍ମ, ତୁମେ ହିଁ ମୁକ୍ତିକାମୀମାନଙ୍କର ଜ୍ଞାତବ୍ୟତତ୍ତ୍ୱ । ତୁମ୍ଭେ ହିଁ ଏହି ବିଶ୍ୱର ପରମ ଆଶ୍ରୟ, ତୁମ୍ଭେହିଁ ସନାତନ ଧର୍ମର ରକ୍ଷକ ଏବଂ ଚିରନ୍ତନ ପୁରୁଷ—ଏଥିରେ ମୋର ଆଉ ସନ୍ଦେହ ନାହିଁ ।

ସୁବୋଧିନୀ ଟୀକା—ଯସ୍ମାଦେବ ତବାଚିନ୍ତ୍ୟମୈଶ୍ୱର୍ଯ୍ୟଂ ତସ୍ମାତ୍— ତ୍ୱମିତି, ତ୍ୱମେବାକ୍ଷରଂ ପରମଂ ବ୍ରହ୍ମ, କଥଂ ଭୂତଂ ? ମୁମୁକ୍ଷୁଭିର୍ଜ୍ଞାତବ୍ୟମ୍ ତ୍ୱମେବାସ୍ୟ ବିଶ୍ୱସ୍ୟ ପରଂ ନିଧାନଂ, ନିଧୀୟତେ ଅସ୍ମିନ୍ନିତି ନିଧାନଂ ପ୍ରକୃଷ୍ଟାଶ୍ରୟଃ, ଅତଏବ ତ୍ୱମବ୍ୟୟୋନିତ୍ୟଃ, ଶାଶ୍ୱତସ୍ୟ ନିତ୍ୟସ୍ୟ ଧର୍ମସ୍ୟ ଗୋପ୍ତା ପାଳକଃ, ସନାତନଶ୍ଚିରନ୍ତନଃ ପୁରୁଷଃ । ମତୋ ମେ ସମ୍ମତୋଽସି ମମ ।

୧୯ । ଅନ୍ୱୟ ଦୀପିକା—ଅନାଦି ମଧ୍ୟାନ୍ତମ୍ ( ଆଦି, ମଧ୍ୟ ଓ ଅନ୍ତରହିତ ) ଅନନ୍ତବୀର୍ଯ୍ୟମ୍ ( ଅନନ୍ତ ପ୍ରଭାବଶାଳୀ ), ଅନନ୍ତବାହୁଂ

ଦ୍ୟାବାପୃଥିବ୍ୟୋରିଦମନ୍ତରଂ ହି,
ବ୍ୟାପ୍ତଂ ତ୍ୱୟୈକେନ ଦିଶଶ୍ଚ ସର୍ବାଃ,
ଦୃଷ୍ଟ୍ୱାଦ୍ଭୁତଂ ରୂପମିଦଂ ତବୋଗ୍ରଂ,
ଲୋକତ୍ରୟଂ ପ୍ରବ୍ୟଥିତଂ ମହାତ୍ମନ୍ । ୨୦ ।

( ଅସଂଖ୍ୟ ବାହୁସମ୍ପନ୍ନ ) ଶଶିସୂର୍ଯ୍ୟନେତ୍ରଂ (ଚନ୍ଦ୍ର ଏବଂ ସୂର୍ଯ୍ୟରୂପ ନେତ୍ର ବିଶିଷ୍ଟ), ପ୍ରଦୀପ୍ତହୁତାଶବକ୍ତ୍ରଂ ( ପ୍ରଜ୍ଜ୍ୱଳିତ ଅଗ୍ନି ତୁଲ୍ୟ ମୁଖଯୁକ୍ତ ), ସ୍ୱତେଜସା ( ସ୍ୱୀୟତେଜଦ୍ୱାରା ) ଇଦଂ ବିଶ୍ୱଂ ତପନ୍ତଂ ( ଏହି ଜଗତର ସନ୍ତାପକାରୀ ) ତ୍ୱାଂ ( ତୁମ୍ଭକୁ ) ପଶ୍ୟାମି ( ଦେଖୁଅଛି ) ।

ଅନୁବାଦ— ( ହେ ପ୍ରଭୁ ) ମୁଁ ଦେଖୁଛି—ତୁମ୍ଭର ଆଦି ନାହିଁ, ମଧ୍ୟ ନାହିଁ, ଅନ୍ତ ନାହିଁ । ତୁମ୍ଭେ ଅନନ୍ତପ୍ରଭାବଶାଳୀ ଓ ଅନନ୍ତ ବାହୁ ବିଶିଷ୍ଟ; ଚନ୍ଦ୍ର ଓ ସୂର୍ଯ୍ୟ ତୁମ୍ଭର ନେତ୍ର । ତୁମ୍ଭର ମୁଖମଣ୍ଡଳରେ ପ୍ରଦୀପ୍ତ ଅଗ୍ନି ସଦୃଶ ପ୍ରଜ୍ୱଳିତ ହୋଇଅଛି ଏବଂ ତୁମ୍ଭେ ନିଜ ତେଜରେ ଏହି ବିଶ୍ୱ ବ୍ରହ୍ମାଣ୍ଡକୁ ସନ୍ତାପିତ କରୁଅଛ ।

ସୁବୋଧିନୀ ଟୀକା—କିଞ୍ଚ ଅନାଦୀତି, ଅନାଦିମଧ୍ୟାନ୍ତମ୍— ଉତ୍ପତ୍ତିସ୍ଥିତିଲୟରହିତମ୍, ଅନନ୍ତବୀର୍ଯ୍ୟମ୍—ଅନନ୍ତଂ ବୀର୍ଯ୍ୟଂ ପ୍ରଭାବୋ ଯସ୍ୟ ତମ୍, ଅନନ୍ତା ବୀର୍ଯ୍ୟବନ୍ତୋ ବାହବୋ ଯସ୍ୟ ତଂ, ଶଶିସୂର୍ଯ୍ୟୌ ନେତ୍ରେ ଯସ୍ୟ ତାଦୃଶଂ ତ୍ୱାଂ ପଶ୍ୟାମି, ତଥା ଦୀପ୍ତୋ ହୁତାଶୋଽଗ୍ନିର୍ବକ୍ତ୍ରେଷୁ ଯସ୍ୟ ତଂ, ସ୍ୱତେଜସେଦଂ ବିଶ୍ୱଂ ତପନ୍ତଂ ସନ୍ତାପୟନ୍ତଂ ପଶ୍ୟାମି ।

ବିବୃତି—ଏ ଅଧ୍ୟାୟର ୧୬ଶ ଶ୍ଳୋକରେ ଅନନ୍ତବାହୁ ଓ ଆଦିଅନ୍ତ-ମଧ୍ୟହୀନ ବୋଲି କୁହା ଯାଇଅଛି, ଏ ଶ୍ଳୋକରେ ପୁଣି ତାହା କୁହାଯିବାରୁ ଦ୍ୱିରୁକ୍ତ ଦୋଷ ବୋଲି ମନେକରିବା ଉଚିତ ନୁହେଁ, କାରଣ ଅଳଙ୍କାର ଶାସ୍ତ୍ରରେ କୁହାଯାଇଅଛି :—

ବିହିତସ୍ୟାନୁବାଦ୍ୟତ୍ୱେ ବିଷାଦେ ବିସ୍ମୟେ କୃଧି,
ଦୈନ୍ୟେଽଥ ଲାଟାନୁପ୍ରାସେଽନୁକମ୍ପାୟାଂ ପ୍ରସାଦନେ ।
ଅର୍ଥାନ୍ତର ସଂକ୍ରମିତ ବାଚ୍ୟେ ହର୍ଷେଽବଧାରଣେ ।

ବିଷାଦ, ବିସ୍ମୟ, କ୍ରୋଧ, ଦୈନ୍ୟ, ଲାଟାନୁପ୍ରାସ, ପ୍ରଶଂସା ପ୍ରଭୃତି ସ୍ଥଳରେ ଦ୍ୱିରୁକ୍ତ ଦୋଷାବହ ନୁହେଁ, ଏଠାରେ ଅର୍ଜ୍ଜୁନ ଏକାନ୍ତ ବିସ୍ମୟରେ ଏହିପରି କହୁଅଛନ୍ତି ।

୨୦ । ଅନ୍ୱୟ ଦୀପିକା—[ହେ] ମହାତ୍ମନ୍, ଦ୍ୟାବାପୃଥିବ୍ୟୋଃ ( ସ୍ୱର୍ଗ ଓ ପୃଥିବୀର ) ଇଦମ୍ ଅନ୍ତରଂ ( ଏହି ମଧ୍ୟସ୍ଥଳ ଅର୍ଥାତ୍ ଆକାଶ ) ଏକେନ ତ୍ୱୟା ( ଏକମାତ୍ର ତୁମ୍ଭଦ୍ୱାରାହିଁ ) ବ୍ୟାପ୍ତମ୍ ( ବ୍ୟାପ୍ତହୋଇ ରହିଅଛି );

ଅମୀ ହି ତ୍ୱାଂ ସୁରସଙ୍ଘା ବିଶନ୍ତି,
କେଚିଦ୍‌ଭୀତାଃ ପ୍ରାଞ୍ଜଳୟୋ ଗୃଣନ୍ତି,
ସ୍ୱସ୍ତୀତ୍ୟୁକ୍ତ୍ୱା ମହର୍ଷିସିଦ୍ଧସଙ୍ଘାଃ,
ସ୍ତୁବନ୍ତି ତ୍ୱାଂ ସ୍ତୁତିଭିଃ ପୁଷ୍କଳାଭିଃ । ୨୧ ।

ସର୍ବାଦିଶଃ ଚ ( ଏବଂ ସବୁ ଦିଗ ମଧ୍ୟ ବ୍ୟାପ୍ତ ହୋଇ ରହିଅଛ ) । ତବ ଅଦ୍ଭୁତମ୍ ଇଦମ୍ ଉଗ୍ରଂ ( ତୁମ୍ଭର ଏହି ଅଦ୍ଭୁତ ଭୟାନକ ) ରୂପଂ ( ରୂପକୁ ) ଦୃଷ୍ଟ୍ୱା ( ଦେଖିକରି ) ଲୋକତ୍ରୟଂ ( ତିନିଲୋକ ) ପ୍ରବ୍ୟଥିତମ୍ ( ଅତି ଭୀତ ହେଉଅଛନ୍ତି ) ।

ଅନୁବାଦ—ହେ ମହାତ୍ମନ୍, ଏକମାତ୍ର ତୁମ୍ଭେହିଁ ସ୍ୱର୍ଗ ଓ ପୃଥିବୀର ମଧ୍ୟସ୍ଥଳ ଏହି ଅନ୍ତରୀକ୍ଷ ଦେଶ ଓ ଦିଗମାନଙ୍କୁ ବ୍ୟାପି ରହିଅଛ । ତୁମ୍ଭର ଏହି ଅଦ୍ଭୁତ ଭୟାନକରୂପ ଦେଖି ତ୍ରିଲୋକ ବ୍ୟଥିତ ହେଉଅଛି ।

ସୁବୋଧିନୀ ଟୀକା—କିଞ୍ଚ ଦ୍ୟାବାପୃଥିବ୍ୟୋରିତି—ଦ୍ୟାବାପୃଥିବ୍ୟୋରିଦମନ୍ତରମନ୍ତରୀକ୍ଷଂ ତ୍ୱୟୈବୈକେନ ବ୍ୟାପ୍ତଂ । ଦିଶଶ୍ଚ ସର୍ବା ବ୍ୟାପ୍ତାଃ, ଅଦ୍ଭୁତମଦୃଷ୍ଟପୂର୍ବଂ, ତ୍ୱଦୀୟମିଦମୁଗ୍ରଂ ଘୋରଂ ରୂପଂ ଦୃଷ୍ଟ୍ୱା ଲୋକତ୍ରୟଂ ପ୍ରବ୍ୟଥିତମତିଭୀତମ୍, ପଶ୍ୟାମୀତି ପୂର୍ବସ୍ୟୈବାନୁଷଙ୍ଗଃ ।

ବିବୃତି—ଅର୍ଜ୍ଜୁନଙ୍କ ବ୍ୟତୀତ ଅନ୍ୟ କେହି ବିଶ୍ୱରୂପ ଦେଖୁ ନାହାନ୍ତି । ଏପରି ଅବସ୍ଥାରେ ତିନିଲୋକ ଭୀତ ହେଉଅଛନ୍ତି—ଏପରି କହିବା ଦ୍ୱାରା ବୁଝା ଯାଉଅଛି, ଏହା ଅର୍ଜ୍ଜୁନଙ୍କ ନିଜ ମନୋଗତ ଭାବ । ତାଙ୍କୁ ଜଣାଯାଉଛି; ସତେ ଯେପରି ସମସ୍ତେ ଏ ରୂପ ଦେଖି ଡରୁଅଛନ୍ତି, ଏ ବିଶ୍ୱରୂପ ଦେବତାମାନେ ଦେଖି ପାରୁଥିଲେ । ପରବର୍ତ୍ତୀ ୨୨ଶ ଶ୍ଳୋକରୁ ଏହା ଜଣାଯାଏ ।

୨୧ । ଅନ୍ୱୟଦୀପିକା—ଅମୀ ( ଏହି ) ସୁରସଙ୍ଘାଃ ( ଦେବତାମାନେ ) ତ୍ୱାଂ ହି ( ତୁମ୍ଭଠାରେହିଁ ) ବିଶନ୍ତି ( ଶରଣ ପଶୁଅଛନ୍ତି ), କେଚିଦ୍ ଭୀତାଃ ( କେହି କେହି ଭୀତହୋଇ ) ପ୍ରାଞ୍ଜଳୟଃ ( କୃତାଞ୍ଜଳିପୁଟରେ ) ଗୃଣନ୍ତି ('ରକ୍ଷାକର, ରକ୍ଷାକର-ଏହିପରି ପ୍ରାର୍ଥନା କରୁଅଛନ୍ତି ), ମହର୍ଷି—ସିଦ୍ଧସଙ୍ଘାଃ ( ମହର୍ଷି ଓ ସିଦ୍ଧପୁରୁଷମାନେ ) ସ୍ୱସ୍ତି ଇତି ଉକ୍ତ୍ୱା ( 'ସ୍ୱସ୍ତି' ଉଚ୍ଚାରଣ ପୂର୍ବକ ) ପୁଷ୍କଳାଭିଃ ସ୍ତୁତିଭିଃ ( ସାରଗର୍ଭସ୍ତୁତି ବାକ୍ୟଦ୍ୱାରା ) ତ୍ୱାଂ ସ୍ତୁବନ୍ତି ( ତୁମ୍ଭଙ୍କୁ ସ୍ତବ କରୁଅଛନ୍ତି ) ।

ଅନୁବାଦ—ଏହି ଦେବତାମାନେ ତୁମ୍ଭଠାରେ ଶରଣ ପଶୁଅଛନ୍ତି, କେହି କେହି ଭୀତ ହୋଇ କୃତାଞ୍ଜଳିପୁଟରେ 'ରକ୍ଷାକର' 'ରକ୍ଷାକର' ବୋଲି ପ୍ରାର୍ଥନା କରୁଅଛନ୍ତି. ମହର୍ଷି ଓ ସିଦ୍ଧମାନେ 'ସ୍ୱସ୍ତି' 'ସ୍ୱସ୍ତି' କହି ସାରଗର୍ଭସ୍ତୁତି ବାକ୍ୟ ଦ୍ୱାରା ତୁମ୍ଭଙ୍କୁ ସ୍ତବ କରୁଅଛନ୍ତି ।

ରୁଦ୍ରାଦିତ୍ୟା ବସବୋ ଯେ ଚ ସାଧ୍ୟା,
ବିଶ୍ୱେଽଶ୍ୱିନୌ ମରୁତଶ୍ଚୋଷ୍ମପାଶ୍ଚ ।
ଗନ୍ଧର୍ବଯକ୍ଷାସୁରସିଦ୍ଧସଙ୍ଘା,
ବୀକ୍ଷନ୍ତେ ତ୍ୱାଂ ବିସ୍ମିତାଶ୍ଚୈବ ସର୍ବେ । ୨୨ ।

ସୁବୋଧିନୀ ଟୀକା—କିଞ୍ଚ ଅମୀହୀତି—ଅମୀ ସୁରସଙ୍ଘାଃ ସ୍ଥିତାଃ ସନ୍ତସ୍ତ୍ୱାଂ ବିଶନ୍ତି, ଶରଣଂ ପ୍ରବିଶନ୍ତି, ତେଷାଂମଧ୍ୟେ କେଚିତ୍ ଅତିଭୀତା ଦୂରତ ଏବ ସ୍ଥିତ୍ୱା କୃତପ୍ରାଞ୍ଜଳୟଃ ସନ୍ତୋ ଗୃଣନ୍ତି । ଜୟ ଜୟ ରକ୍ଷ ରକ୍ଷେତି —ପ୍ରାର୍ଥୟନ୍ତେ । ସ୍ପଷ୍ଟମନ୍ୟତ୍ ।

ବିବୃତ—କୁରୁକ୍ଷେତ୍ରରଣକ୍ଷେତ୍ର ବସ୍ତୁ ପ୍ରକୃତ ଦେବତାମାନେ ମନୁଷ୍ୟ ରୂପ ଧାରଣକରି କୁରୁକ୍ଷେତ୍ରରେ ଯୋଦ୍ଧା ରୂପରେ ଉପସ୍ଥିତ ଅଛନ୍ତି । 'ଅମୀ ସୁରସଙ୍ଘାଃ' ଦ୍ୱାରା ସେହିମାନଙ୍କୁ ଲକ୍ଷ୍ୟ କରାଯାଇ ଅଛି । ( ଶଙ୍କର ) ।

୨୨ । ଅନ୍ୱୟ ଦୀପିକା—ରୁଦ୍ରାଦିତ୍ୟାଃ ( ରୁଦ୍ରଗଣ ଓ ଆଦିତ୍ୟଗଣ), ବସବଃ ( ବସୁଗଣ ) ଯେ ଚ ସାଧ୍ୟାଃ ( ଯେଉଁମାନେ ସାଧ୍ୟନାମକ ଦେବତା), ବିଶ୍ୱେ (ବିଶ୍ୱଦେବ ନାମକ ଦେବଗଣ) ଅଶ୍ୱିନୌ ( ଅଶ୍ୱିନୀ କୁମାର ଦ୍ୱୟ ) ମରୁତଃ ଚ ( ଏବଂ ମରୁଦ୍‌ଗଣ ), ଉଷ୍ମପାଃ ( ଉଷ୍ମପାୟୀ ପିତୃଗଣ ), ଗନ୍ଧର୍ବଯକ୍ଷାସୁରସିଦ୍ଧସଙ୍ଘାଃ ଚ ( ଗନ୍ଧର୍ବ, ଯକ୍ଷ, ଅସୁର ଓ ସିଦ୍ଧଗଣ ) ସର୍ବେ ଏବ ( ସମସ୍ତେହିଁ ) ବିସ୍ମିତାଃତ୍ୱାଂ ବୀକ୍ଷନ୍ତେ ( ବିସ୍ମିତ ହୋଇ ତୁମ୍ଭକୁ ଦେଖୁଅଛନ୍ତି ) ।

ଅନୁବାଦ—ରୁଦ୍ରଗଣ, ଆଦିତ୍ୟଗଣ, ବସୁଗଣ, ସାଧ୍ୟଗଣ, ବିଶ୍ୱଦେବଗଣ, ଅଶ୍ୱିନୀକୁମାରଦ୍ୱୟ, ମରୁଦ୍‌ଗଣ, ଉଷ୍ମପାୟୀ ପିତୃଗଣ, ଗନ୍ଧର୍ବ, ଯକ୍ଷ, ଅସୁର ଓ ସିଦ୍ଧଗଣ ସମସ୍ତେ ବିସ୍ମୟାବିଷ୍ଟ ହୋଇ ତୁମ୍ଭକୁ ଦେଖୁ ଅଛନ୍ତି ।

ସୁବୋଧିନୀ ଟୀକା—କିଞ୍ଚରୁଦ୍ରେତି—ରୁଦ୍ରାଶ୍ଚ, ଆଦିତ୍ୟାଶ୍ଚ, ବସବଶ୍ଚ, ଯେଚସାଧ୍ୟା ନାମ ଦେବାଃ, ବିଶ୍ୱେଦେବାଃ । ଅଶ୍ୱିନୌ ଦେବୌ । ମରୁତୋ ମରୁଦ୍‌ଗଣାଶ୍ଚ । ଉଷ୍ମାଣଂ ପିବନ୍ତୀତ୍ୟୁଷ୍ମପାଃ ପିତରଃ ଉଷ୍ମଭାଗା ହି ପିତରଃ—ଇତିଶ୍ରୁତେଃ. ସ୍ମୃତେଶ୍ଚ—ଯାବଦୁଷ୍ଣଂ ଭବେଦନ୍ନଂ ଯାବଦଶ୍ନନ୍ତି ବାଗ୍ୟତାଃ । ତାବଦଶ୍ନନ୍ତି ପିତରୋ ଯାବନ୍ନୋକ୍ତା ହବିର୍ଗୁଣାଃ, ଇତି, ଗନ୍ଧର୍ବାଶ୍ଚ, ଯକ୍ଷାଶ୍ଚ, ଅସୁରାଶ୍ଚ, ବୈରୋଚନାଦୟଃ, ସିଦ୍ଧସଙ୍ଘାଃ ସିଦ୍ଧାନାଂ ସଙ୍ଘାଶ୍ଚ, ସର୍ବ ଏବ ବିସ୍ମିତାଃସନ୍ତ ସ୍ତ୍ୱାଂ ବୀକ୍ଷନ୍ତେ ଇତ୍ୟନ୍ୱୟଃ ।

ବିବୃତ—ଶ୍ରାଦ୍ଧରେ ପିତୃଗଣଙ୍କ ଉଦ୍ଦେଶ୍ୟରେ ଯେଉଁ ଅନ୍ନ ଦିଆଯାଏ, ତାହା ଯେତେ ସମୟ ଗରମ ଥାଏ ସେତେସମୟ ପାଏ ତାହା ପିତୃଗଣ

ରୂପଂ ମହତ୍ତେ ବହୁବକ୍ତ୍ରନେତ୍ରଂ,
ମହାବାହୋ ବହୁବାହୂରୁପାଦଂ ।
ବହୂଦରଂ ବହୁଦଂଷ୍ଟ୍ରାକରାଳଂ,
ଦୃଷ୍ଟ୍ୱା ଲୋକାଃ ପ୍ରବ୍ୟଥିତାସ୍ତଥାହମ୍ । ୨୩ ।

ଗ୍ରହଣ କରନ୍ତି, ସ୍ନେହ ହେତୁରୁ ସେମାନଙ୍କୁ 'ଊଷ୍ମପାଃ' କୁହାଯାଏ । ଅତଏବ ପିତୃପୁରୁଷଗଣ ମନୁଷ୍ୟମାନଙ୍କପରି ଭୋଜନ କରନ୍ତି ନାହିଁ । ଅର୍ପିତ ବସ୍ତୁର ଉଷ୍ମଭାଗ ଅର୍ଥାତ୍ ତେଜଃଶକ୍ତି ପାନକରି ପୁଷ୍ଟିଲାଭ କରନ୍ତି ।

ଆଦିତ୍ୟାଦି ବୈଦିକ ଦେବତା । ବୃହଦାରଣ୍ୟକ ଉପନିଷଦରେ ବର୍ଣ୍ଣିତ ଅଛି ଯେ ଦେବତାଙ୍କ ସଂଖ୍ୟା ୩୩ ମାତ୍ର; ୮ ବସୁ ୧୧ ରୁଦ୍ର, ୧୨ ଆଦିତ୍ୟ, ଇନ୍ଦ୍ର ଓ ପ୍ରଜାପତି ।

୨୩ । ଅନ୍ୱୟଦୀପିକା—[ ହେ ] ମହାବାହୋ, ତେ (ତୁମ୍ଭର) ବହୁବକ୍ତ୍ରନେତ୍ରଂ ( ବହୁମୁଖ ଓ ବହୁନେତ୍ର ଯୁକ୍ତ ) ବହୁ ବାହୂରୁପାଦଂ ( ବହୁବାହୁ, ବହୁ ଊରୁ ଓ ବହୁଚରଣ ବିଶିଷ୍ଟ ) ବହୂଦରଂ ( ଅନେକ ଉଦର ବିଶିଷ୍ଟ ) ବହୁଦଂଷ୍ଟ୍ରାକରାଳଂ ( ଅସଂଖ୍ୟ ବୃହତ୍ ଦନ୍ତ ଦ୍ୱାରା ଅତି ଭୟାବହ ) ମହତ୍‌ରୂପଂ (ବିଶାଳ ରୂପ ) ଦୃଷ୍ଟ୍ୱା ( ଦେଖି ) ଲୋକାଃ ( ସମସ୍ତଲୋକ ) ପ୍ରବ୍ୟଥିତାଃ ( ଭୀତ ହୋଇଅଛନ୍ତି ), ତଥା ( ସେହିପରି ) ଅହଂ, ( ମୁଁ ମଧ୍ୟ ) [ ଭୀତ ହୋଇଅଛି ] ।

ଅନୁବାଦ—ହେ ମହାବାହୋ, ତୁମ୍ଭର ଏହି ମହତ୍ ରୂପ ଅନେକ ମୁଖ ଓ ନେତ୍ରଯୁକ୍ତ, ଅନେକ ବାହୁ, ଊରୁ, ପାଦ ଓ ଉଦର ବିଶିଷ୍ଟ, ଏବଂ ଅନେକ ବୃହଦାକାର ବା ବଡ଼ ବଡ଼ ଦାନ୍ତ ଦ୍ୱାରା ଭୟଙ୍କର ଦିଶୁଅଛି । ଏହା ଦେଖି ସମସ୍ତ ଲୋକ ଭୀତ ହୋଇଅଛନ୍ତି ଏବଂ ମୁଁ ମଧ୍ୟ ଭୀତହୋଇ ପଡ଼ିଅଛି ।

ସୁବୋଧିନୀ ଟୀକା—କିଞ୍ଚ—ରୂପମିତି । ହେ ମହାବାହୋ, ମହଦତ୍ୟୁର୍ଜିତଂ ତବରୂପଂ ଦୃଷ୍ଟ୍ୱା ଲୋକାଃ ସର୍ବେ ପ୍ରବ୍ୟଥିତା ଅତିଭୀତାଃ । ତଥା ଅହଂ ଚ ପ୍ରବ୍ୟଥିତୋଽସ୍ମି । କୀଦୃଶଂ ରୂପଂ ଦୃଷ୍ଟ୍ୱା ? ବହୂନି ବକ୍ତ୍ରାଣି ନେତ୍ରାଣି ଚ ଯସ୍ମିଂସ୍ତତ୍ । ବହବୋ ବାହବ ଊରବଃ ପାଦାଶ୍ଚ ଯସ୍ମିଂସ୍ତତ୍ । ବହୂନ୍ୟୁଦରାଣି ଯସ୍ମିଂସ୍ତତ୍ । ବହ୍ୱୀଭି ର୍ଦଂଷ୍ଟ୍ରାଭିଃ କରାଳଂ ବିକୃତମ୍ । ରୌଦ୍ରମିତ୍ୟର୍ଥଃ ।

କୌତୁକ—ଅର୍ଜୁନ କହୁଛନ୍ତି—ହେ ପ୍ରଭୋ, ମୋତେ ତୁମେ ଦୟାକରି ଦିବ୍ୟ ଚକ୍ଷୁ ଦେଇଅଛ, ତଥାପି ତୁମ୍ଭର ଏହି କରାଳ ରୂପ ଦେଖି ମୁଁ ଭୀତ ହୋଇ ପଡ଼ୁଅଛି, ଅନ୍ୟ ଯେଉଁମାନେ ଏ ରୂପ ଦେଖୁଅଛନ୍ତି ସେମାନେ କଅଣ ନ ହେଉଥିବେ ?

ନଭଃସ୍ପୃଶଂ ଦୀପ୍ତମନେକ ବର୍ଣ୍ଣଂ,
ବ୍ୟାତ୍ତାନନଂ ଦୀପ୍ତବିଶାଳନେତ୍ରମ୍ ।
ଦୃଷ୍ଟ୍ୱା ହି ତ୍ୱାଂ ପ୍ରବ୍ୟଥିତାନ୍ତରାତ୍ମା,
ଧୃତିଂ ନ ବିନ୍ଦାମି ଶମଂ ଚ ବିଷ୍ଣୋ । ୨୪ ।

ଦଂଷ୍ଟ୍ରାକରାଳାନି ଚ ତେ ମୁଖାନି
ଦୃଷ୍ଟ୍ୱୈବ କାଳାନଳ ସନ୍ନିଭାନି,
ଦିଶୋ ନ ଜାନେ ନ ଲଭେ ଚ ଶର୍ମ,
ପ୍ରସୀଦ ଦେବେଶ ଜଗନ୍ନିବାସ । ୨୫ ।

୨୪ । ଅନ୍ୱୟ ଦୀପିକା—[ହେ] ବିଷ୍ଣୋ ! ନଭଃସ୍ପୃଶଂ (ଆକାଶସ୍ପର୍ଶୀ) ଦୀପ୍ତଂ ( ତେଜୋମୟ ) ଅନେକ ବର୍ଣ୍ଣଂ ( ନାନା ବର୍ଣ୍ଣ ବିଶିଷ୍ଟ ), ବ୍ୟାତ୍ତାନନଂ ( ବିସ୍ତାରିତ ମୁଖ ବିଶିଷ୍ଟ ), ଦୀପ୍ତ ବିଶାଳନେତ୍ରଂ ( ସମୁଜ୍ଜ୍ୱଳ ବିଶାଳ ନେତ୍ର ଯୁକ୍ତ ) ତ୍ୱାଂ (ତୁମ୍ଭଙ୍କୁ) ଦୃଷ୍ଟ୍ୱା ( ଦେଖି ) ପ୍ରବ୍ୟଥିତାନ୍ତରାତ୍ମା ( ବ୍ୟଥିତ ଚିତ୍ତ ହୋଇ ) ଧୃତିଂ ଶମଂ ଚ ନ ବିନ୍ଦାମି ( ଧୈର୍ଯ୍ୟ ଏବଂ ଶାନ୍ତି ଲାଭ କରିପାରୁ ନାହିଁ ) ।

ଅନୁବାଦ—ହେ ବିଷ୍ଣୋ, ଆକାଶସ୍ପର୍ଶୀ, ତେଜୋମୟ, ନାନା-ବର୍ଣ୍ଣବିଶିଷ୍ଟ, ବିସ୍ତାରିତ ମୁଖଯୁକ୍ତ ଏବଂ ଅତ୍ୟୁଜ୍ଜ୍ୱଳ ବିଶାଳ ନେତ୍ରବିଶିଷ୍ଟ ତୁମ୍ଭର ମୂର୍ତ୍ତି ଦର୍ଶନ କରି ମୁଁ ଏକାନ୍ତ ଭୀତ ହୋଇଅଛି, ତେଣୁ ଧୈର୍ଯ୍ୟ ଓ ଶାନ୍ତି ଲାଭ କରି ପାରୁନାହିଁ ।

ସୁତବୋଧିନୀ ଟୀକା—ନ କେବଳଂ ଭୀତୋଽହ ମତ୍ୟେତାବ-ଦେବ । ଅପିତୁ—ନଭଃସ୍ପୃଶମିତି । ନଭଃ ସ୍ପୃଶତୀତି ନଭଃ ସ୍ପୃକ୍ । ତମ୍ । ଅନ୍ତରୀକ୍ଷବ୍ୟାପିନମିତ୍ୟର୍ଥଃ । ଦୀପ୍ତଂ ତେଜୋଯୁକ୍ତମ୍ । ଅନେକେ ବର୍ଣ୍ଣା ଯସ୍ୟ ତଂ । ଏବମ୍ଭୂତଂ ହି ତ୍ୱାଂ ଦୃଷ୍ଟ୍ୱା ପ୍ରବ୍ୟଥିତୋଽନ୍ତରାତ୍ମା ମନୋଯସ୍ୟ ସୋଽହଂ ଧୃତିଂ ଧୈର୍ଯ୍ୟମୁପଶମଂ ଚ ନ ଲଭେ ।

ବକ୍ତବ୍ୟ—ତୁମ୍ଭର ଏ ରୂପ ଦେଖି ମୁଁ ଯେ କେବଳ ଭୀତ ହୋଇଅଛି ତାହା ନୁହେ—ତୁମ୍ଭର ନଭଃସ୍ପର୍ଶୀ ବିଶାଳ ରୂପର ଜ୍ୟୋତି ମୁଁ ସହି ପାରୁନାହିଁ, ତୁମ୍ଭର ବିଶାଳନେତ୍ରଯୁକ୍ତ ବିସ୍ତାରିତ ମୁଖଗହ୍ୱରକୁ ଦେଖି ମୋ ମନ ଅସ୍ଥିର ହେଉଅଛି । ଅଧିକ କଅଣ କହିବି—ମୁଁ ସ୍ଥିର ଓ ଶାନ୍ତ ହୋଇ ରହିପାରୁ ନାହିଁ ।

୨୫ । ଅନ୍ୱୟ ଦୀପିକା—[ ହେ ] ଦେବେଶ [ ହେ ] ଜଗନ୍ନିବାସ ( ହେ ଜଗଦାଧାର ) ! ଦଂଷ୍ଟ୍ରାକରାଳାନି ( ଭୟଙ୍କର ବଡ଼ ବଡ଼ ଦାନ୍ତ ଦ୍ୱାରା ବିକୃତ ) କାଳାନଳସନ୍ନିଭାନି ( ପ୍ରଳୟକାଳୀନ ଅଗ୍ନି ସଦୃଶ )

ଅମୀ ଚ ତ୍ୱାଂ ଧୃତରାଷ୍ଟ୍ରସ୍ୟ ପୁତ୍ରାଃ,
ସର୍ବେ ସହୈବାବନିପାଳସଙ୍ଘୈଃ ।
ଭୀଷ୍ମୋ ଦ୍ରୋଣଃ ସୂତପୁତ୍ରସ୍ତଥାସୌ
ସହାସ୍ମଦୀୟୈରପି ଯୋଧମୁଖ୍ୟୈଃ ।୨୬।
ବକ୍ତ୍ରାଣି ତେ ତ୍ୱରମାଣା ବିଶନ୍ତି,
ଦଂଷ୍ଟ୍ରାକରାଳାନି ଭୟାନକାନି ।
କେଚିଦ୍‌ବିଲଗ୍ନା ଦଶନାନ୍ତରେଷୁ,
ସନ୍ଦୃଶ୍ୟନ୍ତେ ଚୂର୍ଣ୍ଣିତୈରୁତ୍ତମାଙ୍ଗୈଃ ।୨୭।

ତେ (ତୁମ୍ଭର) ମୁଖାନି (ମୁଖ ସମୂହ) ଦୃଷ୍ଟ୍ୱା ଏବ (ଦେଖିଲାକ୍ଷଣି) ଦିଶଃ ନ ଜାନେ (ମୁଁ ଦିଗ ଜାଣିପାରୁ ନାହିଁ, ଦିଗ୍‌ଭ୍ରାନ୍ତ ହୋଇଅଛି) ଶର୍ମ ଚ (ଓ ସୁଖ) ନ ଲଭେ (ପାଉନାହିଁ), ପ୍ରସୀଦ (ପ୍ରସନ୍ନ ହୁଅ)।

ଅନୁବାଦ—ଭୟଙ୍କର ବିଶାଳ ଦନ୍ତାବଳି ଦ୍ୱାରା ବିକୃତ, ପ୍ରଳୟାଗ୍ନି ସଦୃଶ ତୁମ୍ଭର ମୁଖ ମଣ୍ଡଳ ଦେଖି ମୁଁ ଦିଗ୍‌ଭ୍ରାନ୍ତ ହୋଇଅଛି, ମୋ ମନରେ ସୁଖ ନାହିଁ । ହେ ଦେବେଶ ହେ ଜଗନ୍ନିବାସ, ପ୍ରସନ୍ନ ହୁଅ ।

ସୁବୋଧିନୀ ଟୀକା—ଦଂଷ୍ଟ୍ରେତି—ହେ ଦେବେଶ, ତବ ମୁଖାନି ଦୃଷ୍ଟ୍ୱା ଭୟାବେଶେନ ଦିଶୋ ନ ଜାନାମି । ଶର୍ମ ସୁଖଂ ଚ ନ ଲଭେ, ହେ ଜଗନ୍ନିବାସ ପ୍ରସନ୍ନୋ ଭବ । କୀଦୃଶାନି ମୁଖାନି ଦୃଷ୍ଟ୍ୱା ? ଦଂଷ୍ଟ୍ରାଭିଃ କରାଳାନି । କାଳାନଳଃ ପ୍ରଳୟାଗ୍ନିଃ । ତତ୍ ସଦୃଶାନି ।

ବିବୃତି—ଅର୍ଜ୍ଜୁନ ବିଶ୍ୱରୂପ ଦେଖିବାକୁ ଇଚ୍ଛା କରିଥିଲେ ମାତ୍ର ବିଶ୍ୱରୂପ ଯେ ଏଭଳି ବିଶାଳ ଦନ୍ତ ବିଶିଷ୍ଟ ଓ ପ୍ରଳୟାଗ୍ନି ସଦୃଶ ମୁଖମଣ୍ଡଳଯୁକ୍ତ ତାହା ଜାଣି ନ ଥିଲେ, ତେଣୁ ଅତି ଭୟରେ କହୁଅଛନ୍ତି, ହେ ଜଗନ୍ନିବାସ, ଏ ରୂପ ଦେଖି ମୁଁ ଦିଗ୍‌ବିଦିଗ୍ ଜ୍ଞାନଶୂନ୍ୟ ହୋଇଗଲି, ମୋର ମନରେ ଶାନ୍ତି ନାହିଁ, ତୁମ୍ଭେ ପ୍ରସନ୍ନ ହୁଅ ।

୨୬।୨୭। ଅନ୍ୱୟ ଦୀପିକା—ଅବନିପାଳସଙ୍ଘୈଃ ସହ (ରାଜାମାନଙ୍କ ସହିତ) ଅମୀ ଚ ସର୍ବେ ଏବ ଧୃତରାଷ୍ଟ୍ରସ୍ୟ ପୁତ୍ରାଃ (ଏହି ସମସ୍ତ ଧୃତରାଷ୍ଟ୍ରଙ୍କ ପୁତ୍ର) ତଥା ଭୀଷ୍ମଃ ଦ୍ରୋଣଃ ଅସୌ ସୂତପୁତ୍ରଃ ଚ (ଏବଂ ଭୀଷ୍ମ ଦ୍ରୋଣ ଓ ସେହି କର୍ଣ୍ଣ) ଅସ୍ମଦୀୟୈଃ (ଆମ୍ଭ ପକ୍ଷର) ଯୋଧମୁଖ୍ୟୈଃ ସହ (ପ୍ରଧାନ ପ୍ରଧାନ ଯୋଦ୍ଧାଙ୍କ ସହିତ) ତ୍ୱରମାଣାଃ (ଦ୍ରୁତ ବେଗରେ ଦଉଡ଼ି) ତେ (ତୁମ୍ଭର) ଦଂଷ୍ଟ୍ରାକରାଳାନି (ବଡ଼ ବଡ଼ ଦାନ୍ତ ଦ୍ୱାରା ବିକୃତ) ଭୟାନକାନି ବକ୍ତ୍ରାଣି (ଭୟଙ୍କର ମୁଖ ଗହ୍ୱରମାନଙ୍କ ମଧ୍ୟରେ) ବିଶନ୍ତି (ପ୍ରବେଶ କରୁଅଛନ୍ତି), କେଚିତ୍ (କେତେ କେହି) ଚୂର୍ଣ୍ଣିତୈଃ (ଚୂର୍ଣ୍ଣିତ) ଉତ୍ତମାଙ୍ଗୈଃ

ଯଥା ନଦୀନାଂ ବହବୋଽମ୍ବୁବେଗାଃ,
ସମୁଦ୍ରମେବାଭିମୁଖା ଦ୍ରବନ୍ତି ।
ତଥା ତବାମୀ ନରଲୋକବୀରା,
ବିଶନ୍ତି ବକ୍ତ୍ରାଣ୍ୟଭିବିଜ୍ୱଲନ୍ତି ।୨୮।

( ମସ୍ତକରେ ) ଦଶନାନ୍ତରେଷୁ ( ଦାନ୍ତ ସନ୍ଧିରେ ) ବିଲଗ୍ନାଃ ସନ୍ଦୃଶ୍ୟନ୍ତେ ( ଲାଗି ରହିଥିବା ପରି ଦେଖାଯାଉ ଅଛନ୍ତି ) ।

ଅନୁବାଦ—ଧୃତରାଷ୍ଟ୍ରଙ୍କର ଦୁର୍ଯ୍ୟୋଧନ ପ୍ରଭୃତି ପୁତ୍ରମାନେ ଜୟଦ୍ରଥପ୍ରମୁଖ ରାଜନ୍ୟମଣ୍ଡଳୀଙ୍କ ସହିତ ଏବଂ ଭୀଷ୍ମ, ଦ୍ରୋଣ, କର୍ଣ୍ଣ ଓ ଆମ ପକ୍ଷର ଯୋଦ୍ଧାମାନେ ସମସ୍ତେ ତୁମର ଭୟଙ୍କର ମୁଖଗହ୍ୱର ମଧ୍ୟରେ ଦଉଡ଼ ଦଉଡ଼ ଅତି ବେଗରେ ପ୍ରବେଶ କରୁଅଛନ୍ତି । କାହାର କାହାର ମସ୍ତକ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ଯାଇଅଛି ଏବଂ ସେମାନେ ତୁମ ଦାନ୍ତ ସନ୍ଧିରେ ( ଖାଇବା ମାଂସ ଲାଗିଲା ପରି ) ସଂଲଗ୍ନ ହୋଇ ରହିଥିବା ଦେଖା ଯାଉଅଛନ୍ତି ।

ସୁବୋଧିନୀ ଟୀକା—ଯଚ୍ଚାନ୍ୟଦ୍ ଦ୍ରଷ୍ଟୁମିଚ୍ଛସୀତ୍ୟନେନୋକ୍ତଂ ସଂଗ୍ରାମେ ସ୍ୱସ୍ୟ ଜୟପରାଜୟାଦିକଂ ଚ ମମଦେହେ ପଶ୍ୟେତି ଯଦ୍ ଭଗବତୋକ୍ତଂ ତଦଦର୍ଶ୍ୟଂ ପଶ୍ୟନାହ । ଅମୀଚେତି ପଞ୍ଚଭିଃ । ଅମୀ ଧୃତରାଷ୍ଟ୍ରସ୍ୟପୁତ୍ରା ଦୁର୍ଯ୍ୟୋଧନାଦୟଃ ସର୍ବେ । ଅବନିପାଳାନାଂ ଜୟଦ୍ରଥାଦୀନାଂ ସଙ୍ଘୈଃସମୂହୈଃ ସମ୍ଭୂତୈଃ ସହୈବ । ତବ ବକ୍ତ୍ରାଣି ବିଶନ୍ତୀତ୍ୟୁତ୍ତରେଣାନ୍ୱୟଃ । ତଥା ଭୀଷ୍ମଶ୍ଚ ଦ୍ରୋଣଶ୍ଚାସୌ ସୂତପୁତ୍ରଃ କର୍ଣ୍ଣଶ୍ଚ । ନ କେବଲଂ ତ ଏବ ବିଶନ୍ତି । ଅପିତୁ ପ୍ରତି-ଯୋଦ୍ଧାରୋଽସ୍ମଦୀୟା ଯେ ଯୋଧମୁଖ୍ୟାଃ ଶିଖଣ୍ଡିଧୃଷ୍ଟଦ୍ୟୁମ୍ନାଦୟସ୍ତୈଃସହ ।୨୬।

ବକ୍ତ୍ରାଣୀତି । ଯ ଏତେ ସର୍ବେତ୍ୱରମାଣା ଧାବନ୍ତସ୍ତବ ଦଂଷ୍ଟ୍ରାଭିଃ କରାଳାନି ବିକୃତାନି ଭୟଂକରାଣି ବକ୍ତ୍ରାଣି ବିଶନ୍ତି ତେଷାଂ ମଧ୍ୟେ କେଚଚ୍ଚୂର୍ଣ୍ଣୀକୃତୈ-ରୁତ୍ତମାଙ୍ଗୈଃ ଶିରୋଭିରୁପଲକ୍ଷିତା ଦନ୍ତସନ୍ଧିଷୁ ସଂଶ୍ଲିଷ୍ଟାଃ ସନ୍ଦୃଶ୍ୟନ୍ତେ । ୨୭ ।

ବିବୃତ—ଏ ଅଧ୍ୟାୟର ୭ମ ଶ୍ଳୋକରେ ଭଗବାନ୍ ଅର୍ଜ୍ଜୁନଙ୍କୁ କହିଥିଲେ, 'ମମଦେହେ ଗୁଡ଼ାକେଶ ଯଚ୍ଚାନ୍ୟଦ୍ ଦ୍ରଷ୍ଟୁମିଚ୍ଛସି', ଅର୍ଥାତ୍ 'ହେ ଅର୍ଜ୍ଜୁନ, ଆଉ ଯାହା କିଛି ଦେଖିବାର ଇଚ୍ଛା ତା ଆମ ଦେହରେ ଦେଖ' । ଏହି କଥାର ସତ୍ୟତା ଦେଖାଇବାପାଇଁ କୁରୁକ୍ଷେତ୍ର ଯୁଦ୍ଧରେ ଭବିଷ୍ୟତରେ ଯାହା ଘଟିବ ତାହାର ଚିତ୍ର ନିଜ ବିଶ୍ୱରୂପ ମଧ୍ୟରେ ଅର୍ଜ୍ଜୁନଙ୍କୁ ଦେଖାଉ-ଅଛନ୍ତି । ଭଗବାନଙ୍କ ନିକଟରେ ଭୂତ, ଭବିଷ୍ୟତର ସମସ୍ତ ଘଟନା ବର୍ତ୍ତମାନ ମଧ୍ୟରେ । ତେଣୁ ଭାବୀ ଦୃଶ୍ୟ ଦେଖାଇବା ତାଙ୍କ ପକ୍ଷରେ କିଛି ବିଚିତ୍ର ନୁହେଁ ।

୨୮ । ଅନ୍ୱୟ ଦୀପିକା—ଯଥା ( ଯେପରି ) ନଦୀନାଂ ( ନଦୀମାନଙ୍କର ) ବହବଃ ( ବହୁତ ) ଅମ୍ବୁବେଗାଃ ( ଜଳପ୍ରବାହ )

ଯଥା ପ୍ରଦୀପ୍ତଂ ଜ୍ୱଳନଂ ପତଙ୍ଗା,
ବିଶନ୍ତି ନାଶାୟ ସମୃଦ୍ଧବେଗାଃ ।
ତଥୈବ ନାଶାୟ ବିଶନ୍ତି ଲୋକା-
ସ୍ତବାପି ବକ୍ତ୍ରାଣି ସମୃଦ୍ଧବେଗାଃ । ୨୯ ।

ସମୁଦ୍ର ଏବ ଅଭିମୁଖାଃ ( ସମୁଦ୍ର ଅଭିମୁଖରେ ) ଦ୍ରବନ୍ତି ( ଧାବିତ ହୁଅନ୍ତି ), ତଥା ( ସେହିପରି ) ଅମୀ ( ଏହି ସମସ୍ତ ) ନରଲୋକବୀରାଃ ( ପୃଥିବୀର ଯୋଦ୍ଧାମାନେ ) ଅଭିବିଜ୍ୱଳନ୍ତି ( ଚତୁର୍ଦ୍ଦିଗରେ ଜଳୁଥିବା ) ତବ ବକ୍ତ୍ରାଣି ( ତୁମ ମୁଖ ଗହ୍ୱରମାନଙ୍କରେ ) ବିଶନ୍ତି ( ପ୍ରବେଶ କରୁଅଛନ୍ତି ) ।

**ଅନୁବାଦ**—ଯେପରି ନଦୀମାନଙ୍କର ପ୍ରବଳଜଳପ୍ରବାହ ସମୁଦ୍ର ଅଭିମୁଖରେ ଧାବିତ ହୋଇ ତହିଁରେ ପ୍ରବେଶ କରେ, ସେହିପରି ଏହି ନରଲୋକବାସୀ ବୀରମାନେ ତୁମର ସର୍ବତୋବ୍ୟାପ୍ତ ପ୍ରଜ୍ୱଳିତ ମୁଖଗହ୍ୱର ମଧ୍ୟରେ ( ମରିବା ପାଇଁ ) ପ୍ରବେଶ କରୁଅଛନ୍ତି ।

**ସୁବୋଧିନୀ ଟୀକା**—ପ୍ରବେଶମେବ ଦୃଷ୍ଟାନ୍ତେ ନାହ—ଯଥେତି । ନଦୀନାମନେକମାର୍ଗପ୍ରବୃତ୍ତାନାଂ ବହବୋଽମ୍ବୁନାଂ ବାରୀଣାଂ ବେଗାଃ ପ୍ରବାହାଃ ସମୁଦ୍ରାଭିମୁଖାଃ ସନ୍ତୋ ଯଥା ସମୁଦ୍ରମେବ ଦ୍ରବନ୍ତି ବିଶନ୍ତି । ତଥାମୀ ଯେ ନରଲୋକବୀରା ସ୍ତେଽଭିତୋ ଜ୍ୱଳନ୍ତି ସର୍ବତଃ ପ୍ରଦୀପ୍ୟମାନାନି ତବ ବକ୍ତ୍ରାଣି ପ୍ରବିଶନ୍ତି ।

୨୯ । **ଅନ୍ୱୟ ଦୀପିକା**—ଯଥା ପତଙ୍ଗାଃ ସମୃଦ୍ଧବେଗାଃ ( ଯେପରି ପତଙ୍ଗମାନେ ଅତି ବେଗରେ ଧାବମାନ ହୋଇ ) ନାଶାୟ ( ମରିବାପାଇଁ ) ପ୍ରଦୀପ୍ତଂ ( ପ୍ରଜ୍ୱଳିତ ) ଜ୍ୱଳନଂ ( ଅଗ୍ନିରେ ) ବିଶନ୍ତି ( ପ୍ରବେଶ କରନ୍ତି ), ତଥା ( ସେହିପରି ) ସମୃଦ୍ଧବେଗାଃ ( ଅତି ବେଗଗାମୀ ହୋଇ ) ଲୋକାଃ ଅପି ( ମନୁଷ୍ୟ ମାନେ ମଧ୍ୟ ) ନାଶାୟ ଏବ ( ମରଣ ନିମିତ୍ତ ହିଁ ) ତବ ବକ୍ତ୍ରାଣି ( ତୁମର ମୁଖ ଗହ୍ୱର ମଧ୍ୟରେ ) ବିଶନ୍ତି ( ପ୍ରବେଶ କରୁଅଛନ୍ତି ) ।

**ଅନୁବାଦ**—ଯେପରି ପତଙ୍ଗମାନେ ଅତିବେଗରେ ଧାବିତ ହୋଇ ମରିବା ପାଇଁ ପ୍ରଜ୍ୱଳିତ ଅଗ୍ନିରେ ପ୍ରବେଶ କରନ୍ତି, ସେହିପରି ଏହି ଲୋକମାନେ ମରିବାପାଇଁ ତୁମ ମୁଖ ଗହ୍ୱର ମଧ୍ୟରେ ପ୍ରବେଶ କରୁ ଅଛନ୍ତି ।

**ସୁବୋଧିନୀ ଟୀକା**—ଅବଶତ୍ୱେନ ପ୍ରବେଶେ ନଦୀବେଗୋ ଦୃଷ୍ଟାନ୍ତଃ ଉକ୍ତଃ । ବୁଦ୍ଧିପୂର୍ବକପ୍ରବେଶେ ଦୃଷ୍ଟାନ୍ତମାହ—ଯଥେତି । ପ୍ରଦୀପ୍ତଂ ଜ୍ୱଳନମଗ୍ନିଂ ପତଙ୍ଗାଃ ଶଲଭା ବୁଦ୍ଧିପୂର୍ବକଂ ସମୃଦ୍ଧୋ ବେଗୋ ଯେଷାଂ ତେ ଯଥା ନାଶାୟ ମରଣାୟୈବ ବିଶନ୍ତି ତଥୈବ ଲୋକା ଏତେ ଜନା ଅପି ତବ ମୁଖାନି ପ୍ରବିଶନ୍ତି ।

ଲେଲିହ୍ୟସେ ଗ୍ରସମାନଃ ସମନ୍ତା-,
ଲ୍ଲୋକାନ୍ ସମଗ୍ରାନ୍ ବଦନୈର୍ଜ୍ୱଲଦ୍ଭିଃ ।
ତେଜୋଭିରାପୂର୍ଯ୍ୟ ଜଗତ୍ ସମଗ୍ରଂ,
ଭାସସ୍ତବୋଗ୍ରାଃ ପ୍ରତପନ୍ତି ବିଷ୍ଣୋ । ୩୦ ।

ବିବୃତି - କାଳର ଗତି ଦୁର୍ନିବାର, କାଳ ପୂରିଗଲେ କେତେକ ସ୍ଥଳରେ ଅନିଚ୍ଛାରେ, କେତେକ ସ୍ଥଳରେ ଇଚ୍ଛା କରି ଲୋକ ମୃତ୍ୟୁ ଅଭିମୁଖରେ ଧାବିତ ହୁଏ । ୨୮ଶ ଶ୍ଳୋକରେ ଯେଉଁ ନଦୀ ବେଗର ଦୃଷ୍ଟାନ୍ତ ଦିଆ ଯାଇଅଛି ସେଥିରୁ ବୁଝିବାକୁ ହେବ ନଦୀମାନଙ୍କର ପ୍ରବଳ ଜଳପ୍ରବାହ ଜଳର ସ୍ୱଭାବସିଦ୍ଧ ଧର୍ମରେ ନିମ୍ନାଭିମୁଖରେ ଗତି କରି ଅବଶ ହୋଇ ସମୁଦ୍ରରେ ପ୍ରବେଶ କରନ୍ତି; ୨୯ ଶ୍ଳୋକରେ ପ୍ରଦତ୍ତ ପତଙ୍ଗ ଦୃଷ୍ଟାନ୍ତରୁ ବୁଝିବାକୁ ହେବ ମୃତ୍ୟୁ ନିକଟବର୍ତ୍ତୀ ହୋଇ ଆସିବାରୁ ପତଙ୍ଗମାନେ ବୁଦ୍ଧି ପୂର୍ବକ ମରିବାପାଇଁ ଅଗ୍ନି ଆଡ଼କୁ ଧାବିତ ହୁଅନ୍ତି ।

ଯୁଦ୍ଧ ପୂର୍ବରୁ ଯେତେବେଳେ ଭଗବାନ୍ ଶ୍ରୀକୃଷ୍ଣ ସନ୍ଧିପାଇଁ ଦୁର୍ଯ୍ୟୋଧନଙ୍କ ନିକଟରେ ପ୍ରସ୍ତାବ କରିଥିଲେ, ସେତେବେଳେ ଦୁର୍ଯ୍ୟୋଧନ ତହିଁରେ କର୍ଣ୍ଣପାତ କଲେ ନାହିଁ । ଏହା ଶୁଣି ଶ୍ରୀସୁଦେବ ପ୍ରସଙ୍ଗ କ୍ରମେ ଶ୍ରୀକୃଷ୍ଣଙ୍କୁ କହିଲେ, 'କାଳପକ୍ୱଂ ଇଦଂ ମନ୍ୟେ ସର୍ବଂ କ୍ଷତ୍ରଂ ଜନାର୍ଦ୍ଦନ ।" ହେ ଜନାର୍ଦ୍ଦନ, ମୁଁ ମନେ କରୁଛି ଏହି କ୍ଷତ୍ରିୟମାନେ କାଳପକ୍ୱ ହୋଇଗଲେଣି ଅର୍ଥାତ୍ ଏମାନଙ୍କର କାଳ ପୂରି ଆସିଲାଣି । ଏହି କଥାର ପ୍ରତ୍ୟକ୍ଷ ଦୃଶ୍ୟ ଭଗବାନ୍ ନିଜ ବିଶ୍ୱରୂପରେ ଅର୍ଜ୍ଜୁନଙ୍କୁ ଦେଖାଇଦେଲେ ।

୩୦ । ଅନ୍ୱୟ ଦୀପିକା—[ ତୁମ୍ଭେ ] ଜ୍ୱଲଦ୍ଭିଃ ବଦନୈଃ ( ପ୍ରଜ୍ୱଳିତ ମୁଖ ସମୂହଦ୍ୱାରା ) ସମଗ୍ରାନ୍ ( ସମସ୍ତ ) ଲୋକାନ୍ ( ଲୋକମାନଙ୍କୁ ) ଗ୍ରସମାନଃ ( ଗ୍ରାସକରି ) ସମନ୍ତାତ୍ ( ଚାରିଆଡ଼େ ) ଲେଲିହ୍ୟସେ ( ବାରଂବାର ଜିଭରେ ଚାଟୁଅଛ ), [ ହେ ] ବିଷ୍ଣୋ, ତବ ଉଗ୍ରା ଭାସଃ ( ତୁମ୍ଭର ଉଗ୍ର ପ୍ରଭାସମୂହ ) ତେଜୋଭିଃ ସମଗ୍ରଂ ଜଗତ୍ ଆପୂର୍ଯ୍ୟ ( ତେଜଦ୍ୱାରା ସମଗ୍ର ଜଗତକୁ ପୂର୍ଣ୍ଣକରି ) ପ୍ରତପନ୍ତି ( ଦଗ୍ଧ କରୁଅଛି ) ।

ଅନୁବାଦ—ତୁମ୍ଭେ ପ୍ରଜ୍ୱଳିତ ମୁଖ ସମୂହଦ୍ୱାରା ସମସ୍ତ ଲୋକଙ୍କୁ ଗ୍ରାସ କରିବାକୁ ଇଚ୍ଛାକରି ଜିହ୍ୱାଗ୍ରଲେହନଦ୍ୱାରା ସତେ ଯେପରି ଚାରିଆଡ଼କୁ ବାରଂବାର ଲେହନ କରୁଅଛ । ହେ ବିଷ୍ଣୁ ବ୍ୟାପକ, ତୁମ୍ଭର ତୀବ୍ର ତେଜୋରାଶି ସମଗ୍ର ଜଗତରେ ବ୍ୟାପ୍ତ ହୋଇ ତାହାକୁ ପୋଡ଼ି ଦେଉଅଛି ।

ସୁବୋଧିନୀ ଟୀକା—ତତଃ ସମନ୍ତାତ୍ କିମ୍ ? ଅତ ଆହ— ଲେଲିହ୍ୟସ ଇତି । ଗ୍ରସମାନୋଗିଳନ୍ ; ସମଗ୍ରାଲ୍ଲୋକାନ୍ ସର୍ବାନ୍ ଏତାନ୍ ।

ଆଖ୍ୟାହି ମେ କୋ ଭବାନୁଗ୍ରରୂପୋ,
ନମୋଽସ୍ତୁତେ ଦେବବର ପ୍ରସୀଦ ।
ବିଜ୍ଞାତୁମିଚ୍ଛାମି ଭବନ୍ତ ମାଦ୍ୟଂ,
ନ ହି ପ୍ରଜାନାମି ତବ ପ୍ରବୃତ୍ତିମ୍ । ୩୧ ।

ସମନ୍ତାତ୍ ସର୍ବତଃ । ଲେଲିହ୍ୟସେ ଆସ୍ୱାଦୟସି । କୈଃ ? ଜ୍ୱଲଦ୍ଭିର୍ବଦନୈଃ । କିଞ୍ଚ ହେ ବିଷ୍ଣୋ, ତବୋଗ୍ରାଃ ଭାସଃ ତେଜୋଭିର୍ବିସ୍ତୃତରଶ୍ମିଭିଃ ସମଗ୍ରଂ ଜଗଦ୍ବ୍ୟାପ୍ୟ ଉଗ୍ରାଃ ସତ୍ୟଃ ପ୍ରତପନ୍ତି ସନ୍ତାପୟନ୍ତି ।

୩୧ । ଅନ୍ୱୟ ଦୀପିକା—ଉଗ୍ରରୂପଃ ( ଉଗ୍ରମୂର୍ତ୍ତିଧାରୀ ) ଭବାନ୍ କଃ ( ଆପଣ କିଏ ) ମେ ଆଖ୍ୟାହି ( ମୋତେ କହନ୍ତୁ ) । ତେ ନମଃ ଅସ୍ତୁ ( ତୁମ୍ଭଙ୍କୁ ନମସ୍କାର କରୁଅଛି ), [ ହେ ] ଦେବବର, ପ୍ରସୀଦ ( ପ୍ରସନ୍ନ ହୁଅ ), ଆଦ୍ୟଂ ଭବନ୍ତଂ ( ଆଦି ପୁରୁଷ ଆପଣଙ୍କୁ ) ବିଜ୍ଞାତୁମ୍ ଇଚ୍ଛାମି ( ଜାଣିବାକୁ ଇଚ୍ଛା କରୁଅଛି ), ହି ( ଯେହେତୁ ) ତବପ୍ରବୃତ୍ତିଂ ( କାହିଁକି ତୁମେ ଏପରି କାର୍ଯ୍ୟରେ ପ୍ରବୃତ୍ତ ହୋଇଅଛ ) ନ ଜାନାମି ( ମୁଁ ଜାଣିପାରୁ ନାହିଁ ) ।

ଅନୁବାଦ—ଏ ଉଗ୍ରମୂର୍ତ୍ତିଧାରୀ ଆପଣ କିଏ ? ଏହା ମୋତେ କହନ୍ତୁ । ଆପଣଙ୍କୁ ନମସ୍କାର କରୁଅଛି, ହେ ଦେବବର, ଆପଣ ପ୍ରସନ୍ନ ହୁଅନ୍ତୁ । ସର୍ବ କାରଣ ସ୍ୱରୂପ ଆପଣଙ୍କୁ ବିଶେଷରୂପେ ଜାଣିବାପାଇଁ ମୁଁ ଏକାନ୍ତ ଅଭିଳାଷୀ, କାରଣ ଆପଣ କାହିଁକି ଏ କାର୍ଯ୍ୟରେ ପ୍ରବୃତ୍ତ ହୋଇ ଅଛନ୍ତି, ମୁଁ ସେ କଥା କିଛି ଜାଣେ ନାହିଁ ।

ସୁବୋଧିନୀ ଟୀକା—ଯତ ଏବଂ ତସ୍ମାତ୍ ଆଖ୍ୟାହୀତ, ଭବାନ୍ ଉଗ୍ରରୂପଃ କଃ ଇତ୍ୟାଖ୍ୟାହି, କଥୟ, ତୁଭ୍ୟଂ ନମଃ ଅସ୍ତୁ, ହେ ଦେବବର, ପ୍ରସୀଦ ପ୍ରସନ୍ନୋ ଭବ । ଭବନ୍ତ ମାଦ୍ୟଂ ପୁରୁଷଂ ବିଶେଷେଣ ଜ୍ଞାତୁମିଚ୍ଛାମି, ଯତସ୍ତବ ପ୍ରବୃତ୍ତିଂ ଚେଷ୍ଟାଂ କମର୍ଥମେବ ପ୍ରବୃତ୍ତୋଽସୀତି ନ ଜାନାମି ଏବଂଭୂତସ୍ୟ ତବ ପ୍ରବୃତ୍ତିଂ ବାର୍ତ୍ତାମପି ନ ଜାନାମୀତିବା ।

ବିବୃତି—ଅର୍ଜ୍ଜୁନ ଭଗବାନଙ୍କର ସଖା ଏବଂ ଏକାନ୍ତ ଭକ୍ତ, ତଥାପି ଭଗବାନ୍ କାହିଁକି ଏ ଭୟଙ୍କର ଉଗ୍ରରୂପ ଧାରଣ କରିଅଛନ୍ତି, ତାହା ବୁଝିବା ଅର୍ଜ୍ଜୁନଙ୍କ ପକ୍ଷରେ ଅସମ୍ଭବ, ତେଣୁ ଅର୍ଜ୍ଜୁନ ଅତି ବିନୟରେ ଭଗବାନଙ୍କର ଏହି ଉଗ୍ରରୂପ ଧାରଣର ପ୍ରକୃତ ତତ୍ତ୍ୱ ଜାଣିବାକୁ ଇଚ୍ଛାକରି ଏ ଶ୍ଳୋକରେ ପ୍ରାର୍ଥନା କରୁ ଅଛନ୍ତି । ପ୍ରକୃତରେ ତାଙ୍କର ବିଶେଷ ଅନୁଗ୍ରହ ନ ହେଲେ କେହି ତାଙ୍କର ପ୍ରବୃତ୍ତି ବା କାର୍ଯ୍ୟଗତି ବୁଝି ପାରିବେ ନାହିଁ ।

ଶ୍ରୀଭଗବାନୁବାଚ
କାଲୋଽସ୍ମି ଲୋକକ୍ଷୟକୃତ୍ ପ୍ରବୃଦ୍ଧୋ,
ଲୋକାନ୍ ସମାହର୍ତ୍ତୁମିହ ପ୍ରବୃତ୍ତଃ ।
ଋତେଽପି ତ୍ୱାଂ ନ ଭବିଷ୍ୟନ୍ତି ସର୍ବେ,
ଯେଽବସ୍ଥିତାଃ ପ୍ରତ୍ୟନୀକେଷୁ ଯୋଧାଃ । ୩୨ ।

୩୨ । ଅନ୍ୱୟ ଦୀପିକା—ଶ୍ରୀଭଗବାନ୍ ଉବାଚ, ( ଶ୍ରୀ ଭଗବାନ୍ କହିଲେ ) । [ ଅହଂ ] ଲୋକକ୍ଷୟକୃତ୍ ( ଲୋକକ୍ଷୟକାରୀ ) ପ୍ରବୃଦ୍ଧଃ ( ଉତ୍କଟ ) କାଲଃ ଅସ୍ମି ( କାଳ ଅଟେ ), ଲୋକାନ୍ ( ଲୋକମାନଙ୍କୁ ) ସମାହର୍ତ୍ତୁଂ ( ସଂହାର କରିବାପାଇଁ ) ଇହ ( ଏହିକ୍ଷଣି ) ପ୍ରବୃତ୍ତଃ ( ପ୍ରବୃତ୍ତ ହୋଇଅଛି ) ତ୍ୱାମ୍ ଋତେ ଅପି ( ତୁମ ବ୍ୟତିରେକେ ମଧ୍ୟ, ଅର୍ଥାତ୍ ତୁମେ ନ ମାରିଲେ ସୁଦ୍ଧା ) ପ୍ରତ୍ୟନୀକେଷୁ ( ବିପକ୍ଷ ସୈନ୍ୟମାନଙ୍କ ମଧ୍ୟରେ ) ଯେ ଯୋଧାଃ ( ଯେଉଁ ବୀରମାନେ ) ଅବସ୍ଥିତାଃ ( ଅବସ୍ଥିତ ଅଛନ୍ତି ) ସର୍ବେ ଅପି ( ସେମାନେ ସମସ୍ତେ ବି ) ନ ଭବିଷ୍ୟନ୍ତି ( ରହିବେ ନାହିଁ ) ।

ଅନୁବାଦ—ଶ୍ରୀଭଗବାନ୍ କହିଲେ । ଅମ୍ଭେ ଲୋକକ୍ଷୟକାରୀ ଉତ୍କଟ କାଳ । ଏକ୍ଷଣି ଏହି ଲୋକମାନଙ୍କୁ ସଂହାର କରିବାପାଇଁ ପ୍ରବୃତ୍ତ ହୋଇ-ଅଛୁଁ । ତୁମ୍ଭେ ଯୁଦ୍ଧ ନ କଲେ ମଧ୍ୟ ବିପକ୍ଷ ସୈନ୍ୟ ମାନଙ୍କ ମଧ୍ୟରେ ଯେଉଁ ସବୁ ଯୋଦ୍ଧା ଅବସ୍ଥାନ କରୁଅଛନ୍ତି, ସେମାନେ କେହି ରହିବେ ନାହିଁ ।

ସୁବୋଧିନୀ ଟୀକା—ଏବଂ ପ୍ରାର୍ଥିତଃ ସନ୍ ଶ୍ରୀଭଗବାନୁବାଚ—କାଲ ଇତ୍ୟାଦିନା । ଲୋକାନାଂ କ୍ଷୟକର୍ତ୍ତା ପ୍ରବୃଦ୍ଧୋଽତ୍ୟୁତ୍କଟଃ କାଲୋଽସ୍ମି । ଲୋକାନ୍ ପ୍ରାଣିନଃ ସଂହର୍ତ୍ତୁମିହ ଲୋକେ ପ୍ରବୃତ୍ତୋଽସ୍ମି । ଅତ ଋତେଽପି ତ୍ୱାଂ—ତ୍ୱତ୍ତ୍ୱାରଂ ବିନାପି—ନ ଭବିଷ୍ୟନ୍ତି ନ ଜୀବିଷ୍ୟନ୍ତି । ଯଦ୍ୟପି ତ୍ୱୟା ନ ହନ୍ତବ୍ୟା ଏତେ ତଥାପି ମୟା କାଳାତ୍ମନା ଗ୍ରସ୍ତାଃସନ୍ତୋ ମରିଷ୍ୟନ୍ତ୍ୟେବ, କେଽତେ ? ପ୍ରତ୍ୟନୀକେଷୁ—ଅନୀକାନ ଅନୀକାନ ପ୍ରତି, ଭୀଷ୍ମଦ୍ରୋଣାଦୀନାଂ ସର୍ବାସୁ ସେନାସୁ ଯେ ଯୋଦ୍ଧାରୋଽବସ୍ଥିତା ସ୍ତେ ସର୍ବେଽପି ।

ବିବୃତ—କାଳରୂପୀ ଭଗବାନ୍ ସମସ୍ତ ପ୍ରାଣୀଙ୍କର ସଂହାରକ । କୁରୁକ୍ଷେତ୍ର ଯୁଦ୍ଧରେ ସମବେତ ହୋଇଥିବା ବୀରମାନଙ୍କୁ ସଂହାର କରିବା ପାଇଁ ସେ ଏକ୍ଷଣି ପ୍ରବୃତ୍ତ ହୋଇ ଅଛନ୍ତି, ଏହାହିଁ ତାଙ୍କର ପ୍ରବୃତ୍ତି । ଭୀଷ୍ମ ଦ୍ରୋଣାଦି ଗୁରୁଜନଙ୍କୁ ହତ୍ୟାକରି ପାପଗ୍ରସ୍ତ ହେବାକୁ ହେବ—ଅର୍ଜ୍ଜୁନଙ୍କର ଏ ଆଶଙ୍କା ନିବାରଣ କରିବା ପାଇଁ ଭଗବାନ୍ କହୁଅଛନ୍ତି, ତୁମେ ନ ମାରିଲେବି କାଳ-ବଶରେ ଏମାନେ ସମସ୍ତେ ଏଠାରେ ମରିବେ, ଏଥିରେ ସନ୍ଦେହ ନାହିଁ ।

ତସ୍ମାତ୍ତ୍ୱମୁତ୍ତିଷ୍ଠ ଯଶୋ ଲଭସ୍ୱ,
ଜିତ୍ୱା ଶତ୍ରୂନ୍ ଭୁଂକ୍ଷ୍ୱ ରାଜ୍ୟଂ ସମୃଦ୍ଧମ୍,
ମୟୈବୈତେ ନିହତାଃ ପୂର୍ବମେବ,
ନିମିତ୍ତମାତ୍ରଂ ଭବ ସବ୍ୟସାଚିନ୍ । ୩୩ ।

୩୩ । **ଅନ୍ୱୟଦୀପିକା**—ତସ୍ମାତ୍ ( ଅତଏବ ) ତ୍ୱମ୍ ଉତ୍ତିଷ୍ଠ ( ତୁମେ ଉଠ ), ଯଶଃ ଲଭସ୍ୱ ( ଯଶଲାଭ କର ); ଶତ୍ରୂନ୍ ଜିତ୍ୱା ( ଶତ୍ରୁମାନଙ୍କୁ ଜୟକରି ) ସମୃଦ୍ଧଂ ରାଜ୍ୟଂ ( ନିଷ୍କଣ୍ଟକ ରାଜ୍ୟ ) ଭୁଙ୍କ୍ଷ୍ୱ ( ଭୋଗକର ); ମୟା ଏବ ( ମତ୍‌କର୍ତ୍ତୃକ ) ଏତେ ( ଏମାନେ ) ପୂର୍ବମ୍ ଏବ ( ପୂର୍ବରୁହିଁ ) ନିହତାଃ ( ନିହତ ହୋଇ ଅଛନ୍ତି ), ସବ୍ୟସାଚିନ୍ ( ହେ ଅର୍ଜ୍ଜୁନ ) ନିମିତ୍ତମାତ୍ରଂ ଭବ ( ତୁମେ ଉପଲକ୍ଷ୍ୟ ମାତ୍ର ହୁଅ ) ।

**ଅନୁବାଦ**—ଅତଏବ ତୁମେ ଉଠ, ଯଶୋଲାଭ କର ଏବଂ ଶତ୍ରୁଙ୍କୁ ଜୟ କରି ନିଷ୍କଣ୍ଟକ ରାଜ୍ୟ ଉପଭୋଗ କର । ହେ ସବ୍ୟସାଚିନ୍, ଆମ୍ଭେ ଏମାନଙ୍କୁ ଆଗରୁ ସଂହାର କରି ସାରିଅଛୁଁ; ତୁମ୍ଭେ ମୃତ୍ୟୁର ନିମିତ୍ତ ମାତ୍ର ଅର୍ଥାତ୍ ଉପଲକ୍ଷ୍ୟ ମାତ୍ର ହୁଅ ।

**ସୁବୋଧିନୀ ଟୀକା**—ତସ୍ମାଦିତି । ଯସ୍ମାଦେବଂ ତସ୍ମାତ୍ତ୍ୱଂ ଯୁଦ୍ଧାୟୋତ୍ତିଷ୍ଠ । ଦେବୈରପି ଦୁର୍ଜ୍ଜୟା ଭୀଷ୍ମାଦୟୋଽର୍ଜ୍ଜୁନେନ ନିର୍ଜ୍ଜିତା ଇତ୍ୟେବଂଭୂତଂ ଯଶୋ ଲଭସ୍ୱ ପ୍ରାପ୍ନୁହି । ଅଯତ୍ନତଶ୍ଚ ଶତ୍ରୂନ୍ ଜିତ୍ୱା ସମୃଦ୍ଧଂ ରାଜ୍ୟଂ ଭୁଙ୍କ୍ଷ୍ୱ, ଏତେ ଚ ତବ ଶତ୍ରବସ୍ତ୍ୱଦୀୟ ଯୁଦ୍ଧାତ୍ ପୂର୍ବମେବ ମୟୈବ କାଳାତ୍ମନା ନିହତପ୍ରାୟାଃ, ତଥାପି ତ୍ୱଂ ନିମିତ୍ତମାତ୍ରଂ ଭବ । ହେ ସବ୍ୟସାଚିନ୍ ସବ୍ୟେନ ବାମେନ ହସ୍ତେନ ସଚିତୁଂ ଶରାନ୍ ସନ୍ଧାତୁଂ ଶୀଳଂ ଯସ୍ୟେତି ବ୍ୟୁତ୍ପତ୍ତ୍ୟା ବାମେନାପି ବାଣକ୍ଷେପାତ୍ ସବ୍ୟସାଚୀତ୍ୟୁଚ୍ୟତେ ।

**ବିବୃତି**—ଯୁଦ୍ଧାରମ୍ଭରେ ଅର୍ଜ୍ଜୁନ କହିଥିଲେ 'ଯଦ୍ ବା ଜୟେମ ଯଦିବା ନୋ ଜୟେୟୁଃ—ଆମ୍ଭେ ଜୟକରୁଁ ବା ଆମ୍ଭଙ୍କୁ ଶତ୍ରୁମାନେ ଜୟକରନ୍ତୁ; ଏହି ସନ୍ଦେହ ଦୂର କରିବା ପାଇଁ ଭଗବାନ୍ କହିଲେ—ତୁମେ ଏ ଯୁଦ୍ଧରେ ନିଶ୍ଚୟ ଜୟ କରିବ, କାରଣ କୌରବ ପକ୍ଷରେ ଯୋଦ୍ଧାମାନେ କାଳରୂପୀ ଆମ୍ଭ-ଦ୍ୱାରା ନିହତ ପ୍ରାୟ ହୋଇ ରହିଅଛନ୍ତି । ତୁମେ ନିମିତ୍ତମାତ୍ର ହୋଇ ସେମାନଙ୍କୁ ଜୟକର । ନିଜକର୍ମ ଦୋଷରେ ଦୁଷ୍ଟମାନେ ମରନ୍ତି, ମାରିବା ଲୋକକୁ ସେଥିପାଇଁ ପାପଭାଗୀ ହେବାକୁ ପଡ଼େ ନାହିଁ ।

ସବ୍ୟର ଅର୍ଥ ବାମହସ୍ତ, ଯେ ବାମହସ୍ତରେ ମଧ୍ୟ ଶରସନ୍ଧାନ କରି ପାରନ୍ତି ତାହାଙ୍କୁ ସବ୍ୟସାଚୀ କୁହାଯାଏ, ସବ୍ୟ—ସାଚ୍+ଇନ୍ । ଏହା ଅର୍ଜ୍ଜୁନଙ୍କର ଅନ୍ୟ ନାମ ।

ଦ୍ରୋଣଂଚ ଭୀଷ୍ମଂ ଚ ଜୟଦ୍ରଥଂ ଚ,
କର୍ଣ୍ଣଂ ତଥାନ୍ୟାନପି ଯୋଧବୀରାନ୍ ।
ମୟାହତାଂସ୍ତ୍ୱଂ ଜହି ମା ବ୍ୟଥିଷ୍ଠା
ଯୁଧ୍ୟସ୍ୱ ଜେତାସି ରଣେ ସପତ୍ନାନ୍ । ୩୪ ।

ସଞ୍ଜୟ ଉବାଚ

ଏତଚ୍ଛ୍ରୁତ୍ୱା ବଚନଂ କେଶବସ୍ୟ
କୃତାଞ୍ଜଳି ର୍ବେପମାନଃ କିରୀଟୀ ।
ନମସ୍କୃତ୍ୱା ଭୂୟ ଏବାହ କୃଷ୍ଣଂ
ସଗଦ୍‌ଗଦଂ ଭୀତଭୀତଃ ପ୍ରଣମ୍ୟ । ୩୫ ।

୩୪ । ଅନ୍ୱୟ ଦୀପିକା—ମୟା ହତାନ୍ (ଆମଦ୍ୱାରା ହତ ହୋଇଥିବା) ଦ୍ରୋଣଂ ଚ, ଭୀଷ୍ମଂ ଚ, ଜୟଦ୍ରଥଂ ଚ ( ଦ୍ରୋଣ, ଭୀଷ୍ମ ଓ ଜୟଦ୍ରଥଙ୍କୁ ) ତଥା ଅନ୍ୟାନ୍ ଯୋଧବୀରାନ୍ ଅପି ( ଏବଂ ଅନ୍ୟ ଯୁଦ୍ଧବୀରମାନଙ୍କୁ ) ତ୍ୱଂ ଜହି ( ତୁମେ ବଧକର ), ମା ବ୍ୟଥିଷ୍ଠାଃ ( ବ୍ୟଥିତ ହୁଅ ନାହିଁ ) ରଣେ ( ଯୁଦ୍ଧରେ ) ସପତ୍ନାନ୍ ( ଶତ୍ରୁମାନଙ୍କୁ ) ଜେତାସି ( ଜୟକରି ପାରିବ), [ ଅତଏବ ] ଯୁଧ୍ୟସ୍ୱ ( ଯୁଦ୍ଧକର ) ।

ଅନୁବାଦ—ଦ୍ରୋଣ, ଭୀଷ୍ମ, ଜୟଦ୍ରଥ, କର୍ଣ୍ଣ ଏବଂ ଅନ୍ୟାନ୍ୟ ଯୁଦ୍ଧବୀରମାନଙ୍କୁ ମୁଁ ଆଗରୁ ନିହତପ୍ରାୟ କରି ରଖିଅଛି । ତୁମେ ସେମାନଙ୍କୁ ( ବାହାର ଦୃଷ୍ଟିରେ ) ହତକର । ବ୍ୟଥିତ ହୁଅ ନାହିଁ, ଯୁଦ୍ଧ କର । ଏ ଯୁଦ୍ଧରେ ତୁମେ ନିଶ୍ଚୟ ଶତ୍ରୁମାନଙ୍କୁ ଜୟକରି ପାରିବ ।

ସୁବୋଧିନୀ ଟୀକା—ନ ଚୈତଦ୍ ବିଦ୍ମଃ କତରନ୍ନୋ ଗରୀୟୋ ଯଦ୍ ବା ଜୟେମ ଯଦି ବା ନୋ ଜୟେୟୁ ରିତ୍ୟାଶଙ୍କାଽପି ନ କାର୍ଯ୍ୟେତ୍ୟାହ—ଦ୍ରୋଣମିତି । ଯେଭ୍ୟସ୍ତ୍ୱଂ ଶଙ୍କସେ ତାନ୍ ଦ୍ରୋଣାଦୀନ୍ ମୟୈବ ହତାଂସ୍ତ୍ୱଂ ଜହି ଘାତୟ । ମା ବ୍ୟଥିଷ୍ଠାଃ, ଭୟଂ ମା କାର୍ଷୀଃ । ସପତ୍ନାନ୍ ଶତ୍ରୂନ୍ ରଣେ ଯୁଦ୍ଧେ ନିଶ୍ଚିତଂ ଜେତାସି ଜେଷ୍ୟସି ।

୩୫ । ଅନ୍ୱୟ ଦୀପିକା—ସଞ୍ଜୟ ଉବାଚ—ସଞ୍ଜୟ କହିଲେ । କେଶବସ୍ୟ ( କେଶବଙ୍କର ), ଏତତ୍ ( ଏହି ) ବଚନଂ ( କଥା ) ଶ୍ରୁତ୍ୱା ( ଶୁଣି ) ବେପମାନଃ ( କମ୍ପମାନ ) କିରୀଟୀ ( ଅର୍ଜୁନ ) କୃତାଞ୍ଜଳିଃ ( ହାତଯୋଡ଼ି ) କୃଷ୍ଣଂ ନମସ୍କୃତ୍ୱା ( କୃଷ୍ଣଙ୍କୁ ନମସ୍କାର କରି ) ଭୀତଭୀତଃ ( ଅତି ଭୟରେ ) ପ୍ରଣମ୍ୟ ( ପ୍ରଣାମ କରି ) ଭୂୟଃ ଏବ ( ପୁନର୍ବାର ) ସଗଦ୍‌ଗଦଂ ( ଗଦ୍‌ଗଦ୍ ସ୍ୱରରେ ) ଆହ ( କହିଲେ ) ।

ଅର୍ଜୁନ ଉବାଚ

ସ୍ଥାନେ ହୃଷୀକେଶ ତବ ପ୍ରକୀର୍ତ୍ତ୍ୟା
ଜଗତ୍ ପ୍ରହୃଷ୍ୟତ୍ୟନୁରଜ୍ୟତେ ଚ ।
ରକ୍ଷାଂସି ଭୀତାନି ଦିଶୋ ଦ୍ରବନ୍ତି,
ସର୍ବେ ନମସ୍ୟନ୍ତି ଚ ସିଦ୍ଧସଙ୍ଘାଃ । ୩୬ ।

ଅନୁବାଦ—ସଞ୍ଜୟ କହିଲେ [ ହେ ଧୃତରାଷ୍ଟ୍ର ! ] ଶ୍ରୀକୃଷ୍ଣଙ୍କର ଏହି କଥା ଶୁଣି ଅର୍ଜୁନ କୃତାଞ୍ଜଳିପୁଟରେ କମ୍ପିତ କଳେବର ହୋଇ ଶ୍ରୀକୃଷ୍ଣଙ୍କୁ ନମସ୍କାର କଲେ, ପୁଣି ଅତି ଭୟରେ ପ୍ରଣାମ କରି ପୁନର୍ବାର ଗଦ୍‌ଗଦ୍ ସ୍ୱରରେ କହିଲେ ।

ସୁବୋଧିନୀ ଟୀକା—ତତୋ ଯଦ୍‌ବୃତ୍ତଂ ତଦେବ ଧୃତରାଷ୍ଟ୍ରଂ ପ୍ରତି ସଞ୍ଜୟ ଉବାଚ ଏତଦିତି । ଏତତ୍ ପୂର୍ବଶ୍ଳୋକଦ୍ୱୟୋକ୍ତଂ କେଶବସ୍ୟ ବଚନଂ ଶ୍ରୁତ୍ୱା ବେପମାନଃ କମ୍ପମାନଃ କିରୀଟୀ ଅର୍ଜୁନଃ କୃତାଞ୍ଜଳିଃ ସମ୍ପୁଟୀକୃତହସ୍ତଃ କୃଷ୍ଣଂ ନମସ୍କୃତ୍ୟ ପୁନରପ୍ୟାହୋକ୍ତବାନ୍ । କଥମାହ ? ହର୍ଷଭୟାଦ୍ୟାବେଶବଶାଦ୍‌ଗଦ୍‌ଗଦେନ କଣ୍ଠକମ୍ପନେନ ସହ ବର୍ତ୍ତତ ଇତି ସଗଦ୍‌ଗଦଂ ଯଥାସ୍ୟାତ୍ତଥା । କିଞ୍ଚ ଭୀତାଦପି ଭୀତଃସନ୍ ପ୍ରଣମ୍ୟାବନତୋଭୂତ୍ୱା ।

ବିବୃତି—ମଝିରେ ସଞ୍ଜୟଙ୍କର ଏହି ଉକ୍ତିର ଉଦ୍ଦେଶ୍ୟ କ'ଣ ? ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଜୟଦ୍ରଥ—ଏ ଚାରିଜଣ କୌରବପକ୍ଷରେ ଅଜେୟ ବୀର । ଏମାନଙ୍କ ମୃତ୍ୟୁ ସମ୍ବାଦରେ ଧୃତରାଷ୍ଟ୍ର ସ୍ୱପୁତ୍ର ଦୁର୍ଯ୍ୟୋଧନର ପତନ ଅବଶ୍ୟମ୍ଭାବୀ ମନେ କରି କିଛି ସନ୍ଧିର ପ୍ରସ୍ତାବ କରିବେ । ଏହି ଆଶାରେ ସଞ୍ଜୟ ମଝିରେ ଏହା କହିଲେ, ମାତ୍ର କାଳବଶବର୍ତ୍ତୀ ଧୃତରାଷ୍ଟ୍ର ସେ ପ୍ରସଙ୍ଗ ନ କରିବାରୁ ସଞ୍ଜୟ ପୁଣି କହିଲେ, ଅର୍ଜୁନ ପ୍ରେମଗଦ୍‌ଗଦ୍‌କଣ୍ଠରେ ଭଗବାନଙ୍କୁ ପୁଣି କ'ଣ କହିଲେ ଶୁଣନ୍ତୁ ।

୩୬ । ଅନ୍ୱୟ ଦୀପିକା—ଅର୍ଜୁନ ଉବାଚ (ଅର୍ଜୁନ କହିଲେ) [ ହେ ] ହୃଷୀକେଶ, ତବ ପ୍ରକୀର୍ତ୍ତ୍ୟା ( ତୁମ୍ଭର ମାହାତ୍ମ୍ୟ କୀର୍ତ୍ତନ ଦ୍ୱାରା ) ଜଗତ୍ ପ୍ରହୃଷ୍ୟତି ( ଜଗତ୍ ପ୍ରହୃଷ୍ଟ ହୁଏ ), ଅନୁରଜ୍ୟତେ ଚ ( ଓ ଅନୁରକ୍ତ ହୁଏ ); ରକ୍ଷାଂସି ( ରାକ୍ଷସମାନେ ) ଭୀତାନି ( ଭୀତ ହୋଇ ) ଦିଶଃ ଦ୍ରବନ୍ତି ( ଦିଗ୍‌ଦିଗନ୍ତକୁ ପଳାଇ ଯାଆନ୍ତି ), ସର୍ବେ ସିଦ୍ଧସଙ୍ଘାଃ ଚ ( ସିଦ୍ଧ ମହାତ୍ମା ସମସ୍ତେ ) ନମସ୍ୟନ୍ତି (ନମସ୍କାର କରନ୍ତି), [ ଏ ସମସ୍ତହିଁ ] ସ୍ଥାନେ (ଯୁକ୍ତିଯୁକ୍ତ ) ।

ଅନୁବାଦ—ଅର୍ଜୁନ କହିଲେ, ହେ ହୃଷୀକେଶ, ତୁମ୍ଭ ମାହାତ୍ମ୍ୟ କୀର୍ତ୍ତନରେ ସମସ୍ତ ଜଗତ୍ ଯେ ପ୍ରହୃଷ୍ଟ ହୁଏ ଏବଂ ତୁମ୍ଭ ପ୍ରତି ଅନୁରାଗ ଯୁକ୍ତ ହୁଏ, ରାକ୍ଷସମାନେ ଯେ ଭୟରେ ଦିଗ୍‌ଦିଗନ୍ତକୁ ପଳାୟନ କରନ୍ତି ଓ ସିଦ୍ଧ ମହାତ୍ମାମାନେ ଯେ ତୁମ୍ଭଙ୍କୁ ନମସ୍କାର କରନ୍ତି—ଏ ସମସ୍ତ ଯୁକ୍ତି ସଙ୍ଗତ ।

କସ୍ମାଚ୍ଚ ତେ ନ ନମେରନ୍ ମହାତ୍ମନ୍,
ଗରୀୟସେ ବ୍ରହ୍ମଣୋଽପ୍ୟାଦିକର୍ତ୍ରେ ।
ଅନନ୍ତ ଦେବେଶ ଜଗନ୍ନିବାସ,
ତ୍ୱମକ୍ଷରଂ ସଦସତ୍ ତତ୍ପରଂ ଯତ୍ । ୩୭ ।

ସୁବୋଧିନୀ ଟୀକା—ସ୍ଥାନ ଇତ୍ୟେକାଦଶଭିର୍ଦ୍ଧିନସ୍ୟୋକ୍ତିଃ । ସ୍ଥାନେ—ଇତ୍ୟବ୍ୟୟଂ ଯୁକ୍ତମିତ୍ୟସ୍ମିନ୍ନର୍ଥେ—ହେ ହୃଷୀକେଶ, ଯତ ଏବ ତ୍ୱମଦ୍ଭୁତପ୍ରଭାବୋ ଭକ୍ତବତ୍ସଳଶ୍ଚ । ଅତଏବ ପ୍ରକୀର୍ତ୍ତ୍ୟା ମାହାତ୍ମ୍ୟସଙ୍କୀର୍ତ୍ତନେନ ନ କେବଳମହମେବ ପ୍ରହୃଷ୍ୟାମୀତି, କିନ୍ତୁ ଜଗତ୍ ସର୍ବଂ ପ୍ରହୃଷ୍ୟତି ପ୍ରକର୍ଷେଣ ହର୍ଷଂ ପ୍ରାପ୍ନୋତି । ଏତତ୍ ସ୍ଥାନେ ଯୁକ୍ତମିତ୍ୟର୍ଥଃ, ତଥା ଜଗଦନୁରଜ୍ୟତେ ଚାନୁରାଗମୁପୈତି ଇତି ଯତ୍, ତଥା ରକ୍ଷାଂସି ଭୀତାନି ସନ୍ତି ଦିଶଃ-ପ୍ରତି ଦ୍ରବନ୍ତି ପଳାୟନ୍ତେ—ଇତି ଯତ୍ । ସର୍ବେ ଯୋଗତପୋମନ୍ତ୍ରାଦିସିଦ୍ଧାନାଂ ସଙ୍ଘା ନମସ୍ୟନ୍ତି—ଇତି ଯତ୍—ଏତଚ୍ଚ ସ୍ଥାନେ ଯୁକ୍ତମେବ । ନ ଚିତ୍ରମିତ୍ୟର୍ଥଃ ।

ଦ୍ରଷ୍ଟବ୍ୟ:—ଏ ଶ୍ଳୋକଟି ଗ୍ରହପୀଡ଼ା ଭୂତଯୋନି ଜନିତ ଉପଦ୍ରବ ନିବାରଣ ପାଇଁ ମନ୍ତ୍ରଶାସ୍ତ୍ରରେ ପ୍ରସିଦ୍ଧ ଅଟେ । ଅଷ୍ଟାକ୍ଷର ନାରାୟଣ ମନ୍ତ୍ର ଓ ସୁଦର୍ଶନାସ୍ତ୍ର ମନ୍ତ୍ରରେ ସମ୍ପୁଟ କରି ପାଠକରିବାର ବିଧି ଅଛି ( ଚନ୍ଦ୍ରାଗୋକୁଳ ପଣ୍ଡିତଙ୍କ ଗୀତା ) ।

୩୭ । ଅନ୍ୱୟ ଦୀପିକା—ହେ ମହାତ୍ମନ୍, ହେ ଅନନ୍ତ, ହେ ଦେବେଶ, ହେ ଜଗନ୍ନିବାସ, ବ୍ରହ୍ମଣଃ ଅପି ( ବ୍ରହ୍ମାଙ୍କର ମଧ୍ୟ ) ଗରୀୟସେ ( ଗୁରୁ ) ଆଦିକର୍ତ୍ରେ, ( ଆଦିକର୍ତ୍ତା ) ତେ ( ତୁମ୍ଭଙ୍କୁ ) [ ସମସ୍ତେ ] କସ୍ମାତ୍ ( କାହିଁକି ) ନ ନମେରନ୍ ( ନମସ୍କାର ନ କରିବେ ? ) ସତ୍ ( ବ୍ୟକ୍ତ ) ଅସତ୍ ( ଅବ୍ୟକ୍ତ ) ପରଂ ( ସେ ଦୁହିଙ୍କର ଅତୀତ ) ଯତ୍ ଅକ୍ଷରଂ ( ଯେଉଁ ଅକ୍ଷର ପରବ୍ରହ୍ମ ) ତତ୍ ଚ ( ତାହା ମଧ୍ୟ ) ତ୍ୱମ୍ ( ତୁମ୍ଭେ ) ।

ଅନୁବାଦ—ହେ ମହାତ୍ମନ୍, ହେ ଅନନ୍ତ, ହେ ଦେବେଶ, ହେ ଜଗନ୍ନିବାସ, ତୁମ୍ଭେ ବ୍ରହ୍ମାଙ୍କର ମଧ୍ୟ ଗୁରୁ ଓ ଆଦି କର୍ତ୍ତା ( ଜନକ ) । ସମସ୍ତ ଜଗତ୍ କାହିଁକି ତୁମ୍ଭଙ୍କୁ ନମସ୍କାର ନ କରିବ ? ସତ୍ ( ବ୍ୟକ୍ତ-ଜଗତ୍ ), ଅସତ୍ ( ଅବ୍ୟକ୍ତ ପ୍ରକୃତି ) ଏବଂ ଏ ଦୁହିଙ୍କର ଅତୀତ ଯେ ଅକ୍ଷର ବ୍ରହ୍ମ ତାହା ମଧ୍ୟ ତୁମ୍ଭେ ।

ସୁବୋଧିନୀ ଟୀକା—ତତ୍ର ହେତୁମାହ—କସ୍ମାଦିତି । ହେ ମହାତ୍ମନ୍, ହେ ଅନନ୍ତ, ହେ ଦେବେଶ, ହେ ଜଗନ୍ନିବାସ, କସ୍ମାଦ୍ଧେତୋସ୍ତେ ତୁଭ୍ୟଂ ନ ନମେରନ୍ ନ ନମସ୍କାରଂ କୁର୍ଯ୍ୟୁଃ ? କଥଂଭୂତାୟ, ବ୍ରହ୍ମଣୋଽପି ଗରୀୟସେ । ଆଦିକର୍ତ୍ରେ ଚ ବ୍ରହ୍ମଣୋଽପି ଜନକାୟ । କିଞ୍ଚ ସଦ୍ ବ୍ୟକ୍ତଂ ।

ତ୍ୱମାଦିଦେବଃ ପୁରୁଷଃ ପୁରାଣ
ସ୍ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନମ୍ ।
ବେତ୍ତାସି ବେଦ୍ୟଂ ଚ ପରଂ ଚ ଧାମ,
ତ୍ୱୟା ତତଂ ବିଶ୍ୱମନନ୍ତରୂପ । ୩୮ ।
ବାୟୁର୍ଯମୋଽଗ୍ନି ର୍ବରୁଣଃ ଶଶାଙ୍କଃ
ପ୍ରଜାପତିସ୍ତ୍ୱଂ ପ୍ରପିତାମହଶ୍ଚ ।
ନମୋ ନମସ୍ତେଽସ୍ତୁ ସହସ୍ରକୃତ୍ୱଃ
ପୁନଶ୍ଚ ଭୂୟୋଽପି ନମୋନମସ୍ତେ । ୩୯ ।

ଅସଦବ୍ୟକ୍ତଂ । ତାଭ୍ୟାଂ ପରଂ ମୂଳ କାରଣଂ ଯଦକ୍ଷରଂ ବ୍ରହ୍ମ । ତଚ୍ଚ ତ୍ୱମେବ । ଏତୈ ର୍ନିବିଭ ର୍ହେତୁଭିସ୍ତ୍ୱାଂ ସର୍ବେ ନମସ୍ୟନ୍ତୀତି ନଚିତ୍ରମିତ୍ୟର୍ଥଃ ।

୩୮ । ଅନ୍ୱୟ ଦୀପିକା—[ ହେ ] ଅନନ୍ତରୂପ ! ତ୍ୱମ୍ ( ତୁମ୍ଭେହିଁ ) ଆଦିଦେବଃ ( ଦେବତାମାନଙ୍କର ଆଦି ), ପୁରାଣଃ ପୁରୁଷଃ ( ପୁରାଣ ପୁରୁଷ ଅଛ ); ଅସ୍ୟ ବିଶ୍ୱସ୍ୟ ( ଏହି ସଂସାରର ) ପରଂ ନିଧାନଂ ( ଶେଷ ଲୟ ସ୍ଥାନ ); [ ତୁମ୍ଭେ ] ବେତ୍ତା ( ଜ୍ଞାତା ), ବେଦ୍ୟଂ ଚ ( ଏବଂ ଜ୍ଞେୟ ), ପରଂ ଚ ଧାମ ( ଏବଂ ପରମଧାମ ) ଅସି ( ଅଛ ), ତ୍ୱୟା ( ତୁମ୍ଭଦ୍ୱାରା ) ବିଶ୍ୱଂ ତତମ୍ ( ଜଗତ୍ ବ୍ୟାପ୍ତ ହୋଇ ରହିଅଛି ) ।

ଅନୁବାଦ—ହେ ଅନନ୍ତରୂପ, ତୁମ୍ଭେହିଁ ଆଦିଦେବ, ତୁମ୍ଭେହିଁ ପୁରାଣ ପୁରୁଷ, ତୁମ୍ଭେହିଁ ଏହି ବିଶ୍ୱର ଶେଷ ଲୟ ସ୍ଥାନ, ତୁମ୍ଭେ ସର୍ବଜ୍ଞ ଓ ତୁମ୍ଭେ ଜ୍ଞେୟ ବସ୍ତୁ । ତୁମ୍ଭେହିଁ ପରମଧାମ ଓ ଏହି ସମଗ୍ର ବ୍ରହ୍ମାଣ୍ଡକୁ ବ୍ୟାପ୍ତ କରି ଅବସ୍ଥାନ କରୁଅଛ ।

ସୁବୋଧିନୀ ଟୀକା—କିଞ୍ଚ ତ୍ୱମାଦି ଦେବ ଇତି । ତ୍ୱମାଦିଦେବୋ ଦେବାନାମାଦିଃ । ଯତଃ ପୁରାଣୋଽନାଦିଃ ପୁରୁଷସ୍ତ୍ୱମ୍ । ଅତ ଏବ ତ୍ୱମସ୍ୟ ପରଂ ନିଧାନଂ ଲୟସ୍ଥାନମ୍ । ତଥା ବିଶ୍ୱସ୍ୟବେତ୍ତା ଜ୍ଞାତା ତ୍ୱମ୍ । ଯଚ୍ଚ ବେଦ୍ୟଂ ବସ୍ତୁଜାତଂ ପରଂ ଚ ଧାମ ବୈଷ୍ଣବ ପଦଂ ତଦପି ତ୍ୱମେବାସି । ଅତ ଏବ ହେ ଅନନ୍ତରୂପ ତ୍ୱୟୈବେଦଂ ବିଶ୍ୱଂ ତତଂ ବ୍ୟାପ୍ତମ୍ । ଏତୈଶ୍ଚ ସପ୍ତଭି ର୍ହେତୁଭିସ୍ତ୍ୱମେବ ନମସ୍କାର୍ଯ ଇତ୍ୟର୍ଥଃ ।

୩୯ । ଅନ୍ୱୟ ଦୀପିକା—ତ୍ୱମ୍ ( ତୁମ୍ଭେହିଁ ) ବାୟୁଃ ( ବାୟୁ ), ଯମଃ ( ଯମ ), ଅଗ୍ନିଃ ( ଅଗ୍ନି ) ବରୁଣଃ ( ବରୁଣ ), ଶଶାଙ୍କଃ ( ଚନ୍ଦ୍ର ), ପ୍ରଜାପତିଃ ( ବ୍ରହ୍ମା ) ପ୍ରପିତାମହଃ ଚ ( ବ୍ରହ୍ମାଙ୍କର ଜନକ ), ତେ ( ତୁମ୍ଭକୁ ) ସହସ୍ରକୃତ୍ୱଃ ( ସହସ୍ରବାର ) ନମଃ ଅସ୍ତୁ ( ନମସ୍କାର ), ପୁନଶ୍ଚ ( ପୁନର୍ବାର )

ନମଃ ପୁରସ୍ତାଦଥ ପୃଷ୍ଠତସ୍ତେ,
ନମୋଽସ୍ତୁତେ ସର୍ବତ ଏବ ସର୍ବ ।
ଅନନ୍ତବୀର୍ଯ୍ୟାମିତ ବିକ୍ରମସ୍ତ୍ୱଂ
ସର୍ବଂ ସମାପ୍ନୋଷି ତତୋଽସିସର୍ବଃ । ୪୦ ।

ନମଃ ( ନମସ୍କାର ), ଭୂୟଃ ଅପି ( ପୁନର୍ବାର ) ତେ ( ତୁମ୍ଭଙ୍କୁ ) ନମଃନମଃ ( ପୁନଃପୁନଃ ନମସ୍କାର )।

ଅନୁବାଦ—ତୁମ୍ଭେହିଁ ବାୟୁ, ଯମ, ଅଗ୍ନି, ବରୁଣ, ଚନ୍ଦ୍ର ଓ ବ୍ରହ୍ମା; ବ୍ରହ୍ମାଙ୍କ ଜନକ ପ୍ରପିତାମହ ମଧ୍ୟ ତୁମେ । ତୁମ୍ଭଙ୍କୁ ସହସ୍ରବାର ନମସ୍କାର କରୁଅଛି ଏବଂ ପୁନର୍ବାର ନମସ୍କାର ଏବଂ ପୁନଃପୁନଃ ନମସ୍କାର ।

ସୁବୋଧିନୀ ଟୀକା—ଇତଶ୍ଚ ସର୍ବୈ ସ୍ତ୍ୱମେବ ନମସ୍କାର୍ଯ୍ୟଃ ସର୍ବଦେବାତ୍ମକତ୍ୱାଦିତ୍ୟଭିବନ୍ ସ୍ୱୟମପି ନମସ୍କରୋତି, ବାୟ୍ୱାଦିରୂପ ସ୍ତ୍ୱମିତ, ସର୍ବଦେବାତ୍ମକତ୍ୱୋପଲକ୍ଷଣାର୍ଥମୁକ୍ତମ୍, ପ୍ରଜାପତିଃ ପିତାମହଃ, ତସ୍ୟାପି ଜନକତ୍ୱାତ୍ ପ୍ରପିତାମହସ୍ତ୍ୱମ୍, ଅତସ୍ତେ ତୁଭ୍ୟଂ ସହସ୍ରଶୋ ନମୋଽସ୍ତୁ, ଭୂୟୋଽପି ପୁନରପି ସହସ୍ରକୃତ୍ୱୋ ନମୋନମ ଇତି ।

ବିବୃତି—ମରୀଚି ପ୍ରଭୃତି ସାତଜଣ ବ୍ରହ୍ମାଙ୍କର ମାନସ ପୁତ୍ର, ମରୀଚଙ୍କ ପୁତ୍ର କଶ୍ୟପ ଏବଂ କଶ୍ୟପଙ୍କଠାରୁ ସମସ୍ତ ପ୍ରଜା ଉତ୍ପନ୍ନ ହୋଇଅଛନ୍ତି । ଯେଉଁ ହେତୁରୁ ଏହି ମରୀଚି ପ୍ରଭୃତିଙ୍କୁ ପ୍ରଜାପତି କୁହାଯାଏ, ମାତ୍ର ଏଠାରେ ପ୍ରଜାପତି ଶବ୍ଦ ଏକବଚନାନ୍ତ ହୋଇଥିବାରୁ ଏହାଦ୍ୱାରା ବ୍ରହ୍ମଦେବଙ୍କୁହିଁ ଲକ୍ଷ୍ୟ କରାଯାଇଅଛି—ବୁଝିବାକୁ ହେବ; ବ୍ରହ୍ମା ମରୀଚି ପ୍ରଭୃତିଙ୍କ ପିତା, ତେଣୁ ସମସ୍ତଙ୍କର ପିତାମହ । ଭଗବାନ୍ ବ୍ରହ୍ମାଙ୍କର ପିତା, ତେଣୁ ତାହାଙ୍କୁ ପ୍ରପିତାମହ କହିବା ସ୍ୱାଭାବିକ ।

୪୦ । ଅନ୍ୱୟ ଦୀପିକା—ସର୍ବ । ( ହେ ସର୍ବ ) ତେ ( ତୁମ୍ଭଙ୍କୁ ) ପୁରସ୍ତାତ୍ ( ସମ୍ମୁଖରେ ) ଅଥ ( ଏବଂ ) ପୃଷ୍ଠତଃ ( ପଶ୍ଚାଦ୍‌ଭାଗରେ ) ନମଃ ( ନମସ୍କାର ), ତେ ( ତୁମ୍ଭଙ୍କୁ ) ସର୍ବତଃ ଏବ ( ସବୁ ଦିଗରେ ) ନମଃ ଅସ୍ତୁ ( ନମସ୍କାର କରୁଅଛି ), [ ହେ ] ଅନନ୍ତ ବୀର୍ଯ୍ୟ ( ଅସାଧାରଣ ବଳଶାଳୀ ) ତ୍ୱମ୍ ( ତୁମ୍ଭେ ) ଅମିତବିକ୍ରମଃ ( ଅସାଧାରଣ ପରାକ୍ରମଶାଳୀ ), ତ୍ୱଂ ( ତୁମ୍ଭେ ) ସର୍ବଂ ସମାପ୍ନୋଷି ( ସମସ୍ତ ବିଶ୍ୱ ବ୍ୟାପିଅଛ), ତତଃ ( ସେହି ହେତୁରୁ ) ସର୍ବଃଅସି ( ସର୍ବସ୍ୱରୂପ ଅଟ )।

ଅନୁବାଦ—ହେ ସର୍ବସ୍ୱରୂପ, ତୁମ୍ଭଙ୍କୁ ସମ୍ମୁଖ ଭାଗରେ ନମସ୍କାର କରୁଅଛି ଏବଂ ତୁମ୍ଭଙ୍କୁ ସବୁଆଡ଼େ ନମସ୍କାର କରୁଅଛି; ତୁମ୍ଭର ପରାକ୍ରମ ମଧ୍ୟ ଅପରିମିତ, ତୁମ୍ଭେ ସମସ୍ତ ବିଶ୍ୱକୁ ବ୍ୟାପିଅଛ, ସେହି ହେତୁରୁ ତୁମ୍ଭେ ସର୍ବସ୍ୱରୂପ ଅଟ ।

ସଖେତି ମତ୍ୱା ପ୍ରସଭଂ ଯଦୁକ୍ତଂ,
ହେ କୃଷ୍ଣ ହେ ଯାଦବ ହେ ସଖେତି ।
ଅଜାନତା ମହିମାନଂ ତବେଦଂ,
ମୟା ପ୍ରମାଦାତ୍ ପ୍ରଣୟେନ ବାପି । ୪୧ ।

ସୁବୋଧିନୀ ଟୀକା—ଭକ୍ତିଶ୍ରଦ୍ଧାତିଶୟାତିଶୟେନ ନମସ୍କାରେଷ୍ୱ ତୃପ୍ତିମନଧିଗଚ୍ଛନ୍ ପୁନରପି ବହୁଶଃ ପ୍ରଣମତି—ନମଇତି, ହେ ସର୍ବ ସର୍ବାତ୍ମନ୍ ସର୍ବାସୁ ଦିକ୍ଷୁ ତୁଭ୍ୟଂ ନମୋଽସ୍ତୁ, ସର୍ବାତ୍ମକତ୍ୱମୁପପାଦୟନ୍ନାହ—ଅନନ୍ତଂ ବୀର୍ଯ୍ୟଂ ସାମର୍ଥ୍ୟଂ ଯସ୍ୟ ତଥା, ଅମିତୋ ବିକ୍ରମଃ ପରାକ୍ରମୋ ଯସ୍ୟ ସଃ, ଏବମ୍ଭୂତସ୍ତ୍ୱଂ ସର୍ବଂ ଜଗତ୍ ସମ୍ୟଗନ୍ତର୍ବହିଶ୍ଚ ସମାପ୍ନୋଷି, ସୁବର୍ଣ୍ଣମିବ କଟକକୁଣ୍ଡଳାଦସ୍ତଦାର୍ଯ୍ୟଂ ବ୍ୟାପ୍ୟ ବର୍ତ୍ତସେ, ତତଃ ସର୍ବସ୍ୱରୂପୋଽସି ।

ବକ୍ତବ୍ୟ—ଯେତେବେଳେ ଭକ୍ତି, ଶ୍ରଦ୍ଧା ଓ ଭୟର ଆଧିକ୍ୟ ହୁଏ ସେତେବେଳେ ଭକ୍ତ ବାରମ୍ବାର ନମସ୍କାରକରି ସୁଦ୍ଧା ତୃପ୍ତ ହୋଇ ନ ପାରି ପୁନର୍ବାର ନମସ୍କାର କରେ । ବୀର୍ଯ୍ୟ ଓ ବିକ୍ରମ ମଧ୍ୟରେ ପ୍ରଭେଦ ନିର୍ଦ୍ଦେଶ କରି କେହି କେହି କହନ୍ତି—ବୀର୍ଯ୍ୟର ଅର୍ଥ ଶାରୀରିକ ସାମର୍ଥ୍ୟ ଓ ବିକ୍ରମର ଅର୍ଥ ଅସ୍ତ୍ର-ପ୍ରୟୋଗ ନିପୁଣତା ।

୪୧ । ଅନ୍ୱୟ ଦୀପିକା—ତବ ( ତୁମ୍ଭର ) ମହିମାନଂ ( ମହିମାକୁ ), ଇଦଂ ଚ ( ଏବଂ ବିଶ୍ୱରୂପ ବିଷୟକୁ ) ଅଜାନତା ( ନଜାଣି ) ମୟା ( ମୋଦ୍ୱାରା ) ପ୍ରମାଦାତ୍ ( ପ୍ରମାଦବଶତଃ ) ପ୍ରଣୟେନ ବା ଅପି ( ଅଥବା ପ୍ରଣୟ ବଶତଃ ) ସଖାଇତି ମତ୍ୱା ( ସଖା ବୋଲି ମନେ କରି ) ହେ କୃଷ୍ଣ, ହେ ଯାଦବ, ହେ ସଖା, ଇତି ପ୍ରସଭଂ ଯଦୁକ୍ତଂ ( ଏହିପରି ହଠାତ୍ ଯାହା କୁହା ହୋଇଅଛି ) ।

ଅନୁବାଦ—ତୁମ୍ଭର ମହିମା ଏବଂ ବିଶ୍ୱରୂପ ବିଷୟ ନ ଜାଣି ତୁମ୍ଭକୁ ସଖା ବୋଲି ମନେକରି ହେ କୃଷ୍ଣ, ହେ ଯାଦବ, ହେ ସଖା—ଏହିପରି ଅଜ୍ଞାନବଶତଃ ଏବଂ ପ୍ରମାଦ ବଶତଃ ଯାହା କହିଅଛି—( ତୁମ୍ଭେ ସେହି ଅପରାଧ କ୍ଷମାକର ) ।

ସୁବୋଧିନୀ ଟୀକା—ଇଦାନୀଂ ଭଗବନ୍ତଂ କ୍ଷମାପୟତି—ସଖେତି ଦ୍ୱାଭ୍ୟାମ୍, ତ୍ୱଂ ପ୍ରାକୃତଃ ସଖେତ୍ୟେବ ମତ୍ୱା ପ୍ରସଭଂ ହଠାତ୍ ତିରସ୍କାରେଣ ଯଦୁକ୍ତଂ ତତ୍‌କ୍ଷାମୟେ, ତ୍ୱାମିତ୍ୟୁତ୍ତରେଣାନ୍ୱୟଃ; କିଂ ତତ୍ ? ହେ କୃଷ୍ଣ, ହେ ଯାଦବ, ହେ ସଖେ ଚ ସମ୍ବୋଧନଃ । ପ୍ରସଭୋକ୍ତୌ ହେତୁଃ—ତବ ମହିମାନ ମିଦଂ ଚ ବିଶ୍ୱରୂପମଜାନତା ମୟା ପ୍ରମାଦାତ୍ ପ୍ରଣୟେନ ସ୍ନେହେନ ବା ଯଦୁକ୍ତ ମିତି ।

ଯଚ୍ଚାବହାସାର୍ଥ ମସତ୍କୃତୋଽସି,
ବିହାରଶଯ୍ୟାସନଭୋଜନେଷୁ ।
ଏକୋଽଥବାପ୍ୟଚ୍ୟୁତ ତତ୍ସମକ୍ଷଂ,
ତତ୍ କ୍ଷାମୟେ ତ୍ୱାମହମପ୍ରମେୟମ୍ । ୪୨ ।
ପିତାସି ଲୋକସ୍ୟ ଚରାଚରସ୍ୟ,
ତ୍ୱମସ୍ୟ ପୂଜ୍ୟଶ୍ଚ ଗୁରୁର୍ଗରୀୟାନ୍,
ନତ୍ୱତ୍ସମୋଽସ୍ତ୍ୟଭ୍ୟଧିକଃ କୁତୋଽନ୍ୟୋ
ଲୋକତ୍ରୟେଽପ୍ୟପ୍ରତିମପ୍ରଭାବ । ୪୩ ।

ବିବୃତି—ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ଭଗବାନ୍ ବୋଲି ଜାଣିଥିଲେ ସୁଦ୍ଧା—ମାମୁପୁଅ ଭାଇ ଜ୍ଞାନରେ କେତେବେଳେ ହେ କୃଷ୍ଣ, କେତେବେଳେ ହେ ଯାଦବ, କେତେବେଳେ ବା ହେ ସଖେ—ଏହିପରି ଅବଜ୍ଞାପୂର୍ଣ୍ଣ ସମ୍ବୋଧନ କରିଥିଲେ । ବର୍ତ୍ତମାନ ତାଙ୍କର ଏହି ଅସାଧାରଣ ମହିମା ଓ ବିଶ୍ୱରୂପ ଦେଖି ଭୟ ଓ ଭକ୍ତିରେ ସେଥିପାଇଁ କ୍ଷମା ପ୍ରାର୍ଥନା କରୁଅଛନ୍ତି—

୪୨ । ଅନ୍ୱୟ ଦୀପିକା—[ହେ] ଅଚ୍ୟୁତ, ବିହାରଶଯ୍ୟାସନ-ଭୋଜନେଷୁ (ଆମୋଦ, ଶୟନ, ଆସନ, ଭୋଜନ ସମୟରେ) ଏକଃ (ଏକାକୀ ଥିଲାବେଳେ) ଅଥବା ତତ୍ ସମକ୍ଷଂ (ଅଥବା ବନ୍ଧୁମାନଙ୍କ ଆଗରେ) ଅବହାସାର୍ଥଂ (ପରିହାସ ଛଳରେ) ଯତ୍ ଅସତ୍କୃତଃ (ଯାହା ଅପମାନିତ) ଅସି (ହୋଇଅଛ) ଅହଂ (ମୁଁ) ଅପ୍ରମେୟଂ (ଅଚିନ୍ତ୍ୟ ଶକ୍ତି) ତ୍ୱାଂ (ତୁମ ନିକଟରେ) ତତ୍ (ତାହା) କ୍ଷାମୟେ (କ୍ଷମା ମାଗୁଅଛି) ।

ଅନୁବାଦ—ହେ ଅଚ୍ୟୁତ, ଖେଳିବା ବୁଲିବା ବେଳେ, ଶୋଇବା ବସିବା ବେଳେ, ଅଥବା ଭୋଜନ ବେଳେ, ଏକାହୋଇ ଥିବାଅବସ୍ଥାରେ, ଅଥବା ବନ୍ଧୁମାନଙ୍କ ଆଗରେ, ପରିହାସ ଛଳରେ, ମୁଁ ତୁମ୍ଭକୁ କେତେ ଅପମାନିତ କରିଅଛି । ତୁମ୍ଭର ପ୍ରଭାବ ଅଚିନ୍ତନୀୟ, ସେଥିପାଇଁ ତୁମ୍ଭ ନିକଟରେ କ୍ଷମାପ୍ରାର୍ଥନା କରୁଅଛି ।

ସୁବୋଧିନୀ ଟୀକା—କିଞ୍ଚ—ଯଚ୍ଚେତି । ହେ, ଅଚ୍ୟୁତ, ଯଚ୍ଚ ପରିହାସାର୍ଥଂ ବିହାରାଦିଷୁ ତିରସ୍କୃତୋଽସି ଏକଃ କେବଲଃ । ସଖୀନ୍ ବିନା ରହସିସ୍ଥିତ ଇତ୍ୟର୍ଥଃ, ଅଥବା ତତ୍ସମକ୍ଷଂ ତେଷାଂ ପରିହସତାଂ ସଖୀନାଂ ସମକ୍ଷଂ ପୁରତୋଽପି ତତ୍ସର୍ବମପରାଧଜାତଂ ତ୍ୱାମପ୍ରମେୟମଚିନ୍ତ୍ୟପ୍ରଭାବଂ କ୍ଷାମୟେ କ୍ଷମାଂ କାରୟାମି ।

୪୩ । ଅନ୍ୱୟ ଦୀପିକା—ଅପ୍ରତିମପ୍ରଭାବ (ହେ ଅତୁଳ ପ୍ରଭାବଶାଳୀ) ତ୍ୱମ୍ (ତୁମେ) ଅସ୍ୟ ଚରାଚରସ୍ୟ ଲୋକସ୍ୟ (ଏହି ଚରାଚର

ତସ୍ମାତ୍ ପ୍ରଣମ୍ୟ ପ୍ରଣିଧାୟ କାୟଂ,
ପ୍ରସାଦୟେ ତ୍ୱାମହମୀଶମୀଡ୍ୟମ୍ ।
ପିତେବ ପୁତ୍ରସ୍ୟ ସଖେବ ସଖ୍ୟୁଃ,
ପ୍ରିୟଃ ପ୍ରିୟାୟାର୍ହସି ଦେବ ସୋଢୁମ୍ ।୪୪।

ଲୋକ ସମସ୍ତର ) ପିତା ( ଜନକ ), ପୂଜ୍ୟଃ ଗରୀୟାନ୍ ଗୁରୁଃ ଚ ( ଏବଂ ପୂଜ୍ୟ ଗୁରୁଙ୍କର ଗୁରୁ ) ଅସି ( ଅଛ ), ଲୋକତ୍ରୟେ ଅପି ( ତିନି ଜଗତରେ ମଧ୍ୟ ) ତ୍ୱତ୍ସମଃ ( ତୁମ୍ଭପରି ) ନ ଅସ୍ତି ( କେହି ନାହାନ୍ତି ), ଅଭ୍ୟଧିକଃ ( ତୁମଠାରୁ ଅଧିକ ) ଅନ୍ୟଃ କୁତଃ ( ଅନ୍ୟ କେଉଁଠାରେ ) ?

ଅନୁବାଦ—ହେ ଅତୁଳପ୍ରଭାବଶାଳୀ, ତୁମେ ଏହି ଚରାଚର ସମସ୍ତ ଲୋକର ପିତା, ତୁମେ ପୂଜ୍ୟ ଗୁରୁ ଏବଂ ଗୁରୁଙ୍କ ଅପେକ୍ଷା ଗୁରୁତର, ତ୍ରିଜଗତରେ ତୁମ୍ଭପରି କେହି ନାହିଁ; ତୁମ୍ଭ ଅପେକ୍ଷା ଶ୍ରେଷ୍ଠ ଅଉ କିଏ ହୋଇ ପାରନ୍ତି ?

ସୁବୋଧିନୀ ଟୀକା— ଅଚିନ୍ତ୍ୟପ୍ରଭାବତ୍ୱମେବାହ—ପିତେତି ନ ବିଦ୍ୟତେ ପ୍ରତିମୋପମା ଯସ୍ୟ ସୋଽପ୍ରତିମଃ, ତଥାବିଧଃ ପ୍ରଭାବୋ ଯସ୍ୟ ତବ ହେ ଅପ୍ରତିମପ୍ରଭାବ, ତ୍ୱମସ୍ୟ ଚରାଚରସ୍ୟ ଲୋକସ୍ୟ ପିତା ଜନକୋଽସି, ଅତଏବ ପୂଜ୍ୟଶ୍ଚ ଗୁରୁଶ୍ଚ ଗୁରୋରପି ଗରୀୟାନ୍ ଗୁରୁତରଃ; ଅତୋ ଲୋକତ୍ରୟେଽପି ତ୍ୱତ୍ସମଏବ ତାବଦନ୍ୟୋ ନାସ୍ତି, ପରମେଶ୍ୱରଦନ୍ୟସ୍ୟାଭାବାତ୍, ତ୍ୱତ୍ତୋଽଭ୍ୟଧିକଃ ପୁନଃ କୁତଃସ୍ୟାତ୍ ?

୪୪ । ଅନ୍ୱୟ ଦୀପିକା—[ ହେ ] ଦେବ ! ତସ୍ମାତ୍ ( ସେହି ହେତୁରୁ ) ଅହଂ ( ମୁଁ ) କାୟଂ ( ଶରୀରକୁ ) ପ୍ରଣିଧାୟ ( ଦଣ୍ଡବତ୍ ଅବନତ କରି ) ପ୍ରଣମ୍ୟ ( ପ୍ରଣାମ ପୂର୍ବକ ) ଈଡ୍ୟଂ ( ବନ୍ଦନୀୟ ) ଈଶଂ ( ଈଶ୍ୱର ) ତ୍ୱାଂ ( ତୁମ୍ଭକୁ ) ପ୍ରସାଦୟେ ( ପ୍ରସନ୍ନ କରୁଅଛି ), ପୁତ୍ରସ୍ୟ ( ପୁଅର ) [ ଅପରାଧ ] ପିତାଇବ ( ପିତା ଯେପରି ), ସଖ୍ୟୁଃ ( ସଖାର ଅପରାଧ ) ସଖାଇବ ( ସଖା ଯେପରି ) ପ୍ରିୟାୟାଃ ( ପ୍ରଣୟିନୀର ଅପରାଧ ) ପ୍ରିୟଃ ଇବ ( ପ୍ରଣୟୀ ସ୍ୱାମୀ ଯେପରି ) [ କ୍ଷମା କରନ୍ତି ] [ ସେହିପରି ମୋର ଅପରାଧ ] ସୋଢୁମ୍ ଅର୍ହସି ( କ୍ଷମା କରିବାକୁ ତୁମେ ଯୋଗ୍ୟ ଅଛ ) ।

ଅନୁବାଦ—ହେ ଦେବ, ( ପୂର୍ବୋକ୍ତ କାରଣରୁ ମୁଁ ଅପରାଧୀ, ) ସେହି ହେତୁରୁ ମୁଁ ଦଣ୍ଡବତ୍ ଶରୀରକୁ ଅବନତ କରି ପ୍ରଣାମ ପୂର୍ବକ ତୁମ୍ଭର ଅନୁଗ୍ରହ ପ୍ରାର୍ଥନା କରୁଅଛି, ତୁମ୍ଭେ ସମସ୍ତଙ୍କର ବନ୍ଦନୀୟ ଈଶ୍ୱର, ପିତା ଯେପରି ପୁତ୍ରର ସମସ୍ତ ଅପରାଧ କ୍ଷମା କରନ୍ତି, ସଖା ଯେପରି ସଖାର ସମସ୍ତ ଅପରାଧ କ୍ଷମା କରନ୍ତି, ପ୍ରଣୟୀ ସ୍ୱାମୀ ଯେପରି ପ୍ରଣୟିନୀ ସ୍ତ୍ରୀର ସମସ୍ତ ଅପରାଧ କ୍ଷମା କରନ୍ତି ତୁମେ ସେହିପରି ମୋର ସମସ୍ତ ଅପରାଧ କ୍ଷମା କର ।

ଅଦୃଷ୍ଟପୂର୍ବଂ ହୃଷିତୋଽସ୍ମି ଦୃଷ୍ଟ୍ୱା,
ଭୟେନ ଚ ପ୍ରବ୍ୟଥିତଂ ମନୋ ମେ ।
ତଦେବ ମେ ଦର୍ଶୟ ଦେବ ରୂପଂ,
ପ୍ରସୀଦ ଦେବେଶ ଜଗନ୍ନିବାସ । ୪୫ ।

ସୁବୋଧିନୀ ଟୀକା—ଯସ୍ମାଦେବ ତସ୍ମାଦତ, ତସ୍ମାତ୍ ତ୍ୱାମୀଶଂ ଜଗତଃ ସ୍ୱାମିନମ୍, ଈଡ୍ୟଂ ସ୍ତୁତ୍ୟଂ, ପ୍ରସାଦୟେ ପ୍ରସାଦୟାମି, କଥଂ ? କାୟଂ ପ୍ରଣିଧାୟ ଦଣ୍ଡବନ୍ନିପାତ୍ୟ, ପ୍ରଣମ୍ୟ ପ୍ରକର୍ଷେଣ ନତ୍ୱା, ଅତସ୍ତ୍ୱଂ ମମାପରାଧଂ ସୋଢୁଂ କ୍ଷନ୍ତୁ ମର୍ହସି, କସ୍ୟ କ ଇବ, ପୁତ୍ରସ୍ୟାପରାଧଂ କୃପୟା ପିତା ଯଥା ସହତେ, ସଖ୍ୟୁର୍ମିତ୍ରସ୍ୟାପରାଧଂ ସଖା ନିରୁପାଧିବନ୍ଧୁର୍ଯଥା ସହତେ, ପ୍ରିୟସ୍ତୁ ପ୍ରିୟାୟା ଅପରାଧଂ ତତ୍ ପ୍ରିୟାର୍ଥଂ ଯଥା ସହତେ, ତଦ୍ୱତ୍ ।

ବକ୍ତବ୍ୟ—ଏ ଶ୍ଳୋକରେ "ପ୍ରିୟଃ ପ୍ରିୟାୟାର୍ହସି", ଏଠାରେ ସନ୍ଧି ଆର୍ଷ (ପ୍ରିୟାୟାଃ+ଅର୍ହସି), କିନ୍ତୁ ଲୋକମାନେ ଭଲକି କହନ୍ତି- ପ୍ରିୟଂଗତ ପ୍ରିୟାର-ଏପରି ଅର୍ଥ କଲେ ତାହା ଶୃଙ୍ଗାର ରସାଶ୍ରିତ ହେବ । ତେଣୁ "ପ୍ରିୟଃ ପ୍ରିୟାୟ ଅର୍ହସି" ଏପରି କଲେ ଅର୍ଥ ହେବ ପ୍ରିୟଲୋକ ଯେପରି ପ୍ରିୟ ଲୋକର ଅପରାଧ କ୍ଷମା କରେ, ତୁମେ ସେହିପରି ମୋର ଅପରାଧ କ୍ଷମା କରିବ । ତେଣୁ 'ପ୍ରିୟସ୍ୟ' ଏହି ଷଷ୍ଠ୍ୟନ୍ତପଦ ସ୍ଥାନରେ 'ପ୍ରିୟାୟ' ଏହିପରି ଚତୁର୍ଥ୍ୟନ୍ତ ପଦ ହେଲେ 'ଆର୍ଷ ସନ୍ଧି'ର ଦୋଷ ରହିବ ନାହିଁ । ଷଷ୍ଠୀ ସ୍ଥାନରେ ଚତୁର୍ଥୀର ପ୍ରୟୋଗ ସେତେ ଦୋଷାବହ ନୁହେ, ଇତ୍ୟାଦି । ମାତ୍ର ଶଙ୍କର ଶ୍ରୀଧର ପ୍ରଭୃତି ପୂର୍ବା-ଚାର୍ଯ୍ୟମାନେ ଏପରି ଅର୍ଥ ଗ୍ରହଣ ନ କରି 'ପ୍ରିୟାୟାଃ ଅର୍ହସି' ଏହିପରି ବ୍ୟାଖ୍ୟା କରିଥିବାରୁ ସେହିପରି ବ୍ୟାଖ୍ୟା କରାଗଲା ।

୪୫ । ଅନ୍ୱୟ ଦୀପିକା—[ ହେ ] ଦେବ, ଅଦୃଷ୍ଟପୂର୍ବଂ (ଯାହା ପୂର୍ବରେ ଦେଖି ନ ଥିଲି, ସେହିପରି) [ ତୁମ୍ଭର ରୂପ ] ଦୃଷ୍ଟ୍ୱା (ଦେଖି) ହୃଷିତଃ ଅସ୍ମି (ଆହ୍ଲାଦିତ ହୋଇଅଛି), [ କିନ୍ତୁ ] ଭୟେନ ଚ (ଭୟରେ) ମେ ମନଃ (ମୋର ମନ) ପ୍ରବ୍ୟଥିତଂ (ବ୍ୟାକୁଳ ହେଉଅଛି), [ ଅତଏବ ] [ହେ] ଦେବେଶ, [ହେ] ଜଗନ୍ନିବାସ, ତତ୍ ଏବ ରୂପଂ (ସେହି ପୂର୍ବ ରୂପ) ମେ (ମୋତେ) ଦର୍ଶୟ (ଦେଖାଅ), ପ୍ରସୀଦ (ପ୍ରସନ୍ନ ହୁଅ) ।

ଅନୁବାଦ—ହେ ଦେବ, ଯେଉଁରୂପ କେବେ ହେଲେ ଦେଖି ନ ଥିଲି ତୁମ୍ଭର ସେହି ଅପୂର୍ବ ରୂପ ଦେଖି ମୁଁ ଆନନ୍ଦିତ ହେଲି ସତ, ମାତ୍ର ଭୟରେ ମୋ ମନ ବ୍ୟାକୁଳ ହୋଇ ଉଠୁଛି । ଅତଏବ ହେ ଦେବେଶ, ହେ ଜଗନ୍ନିବାସ, ତୁମ୍ଭର ସେହି ପୂର୍ବ ରୂପଟି ଏବେ ମୋତେ ଦେଖାଅ, ପ୍ରସନ୍ନ ହୁଅ ।

କିରୀଟିନଂ ଗଦିନଂ ଚକ୍ରହସ୍ତ-
ମିଚ୍ଛାମି ତ୍ୱାଂ ଦ୍ରଷ୍ଟୁମହଂ ତଥୈବ ।
ତେନୈବ ରୂପେଣ ଚତୁର୍ଭୁଜେନ,
ସହସ୍ରବାହୋ ଭବ ବିଶ୍ୱମୂର୍ତ୍ତେ । ୪୬ ।

ସୁବୋଧିନୀ ଟୀକା—ଏବଂ କ୍ଷମାପୟିତ୍ୱା ପ୍ରାର୍ଥୟତେ, ଅଦୃଷ୍ଟପୂର୍ବମିତି ଦ୍ୱାଭ୍ୟାମ୍ । ହେ ଦେବ, ପୂର୍ବମଦୃଷ୍ଟଂ ତବ ରୂପଂ ଦୃଷ୍ଟ୍ୱା ହୃଷିତୋଽସ୍ମି । ତଥା ଭୟେନ ଚ ମେ ମନଃ ପ୍ରବ୍ୟଥିତଂ ପ୍ରଚଳିତମ୍ । ତସ୍ମାନ୍ମମ ବ୍ୟଥାନିବୃତ୍ତୟେ ତଦେବ ରୂପଂ ଦର୍ଶୟ, ହେ ଦେବେଶ, ହେ ଜଗନ୍ନିବାସ, ପ୍ରସନ୍ନୋ ଭବ ।

୪୬। ଅନ୍ୱୟ ଦୀପିକା—ଅହଂ ( ମୁଁ ) ତ୍ୱାଂ ( ତୁମ୍ଭକୁ ) ତଥା ଏବ ( ପୂର୍ବ ପରି ) କିରୀଟିନଂ ( କିରୀଟ ଯୁକ୍ତ ) ଗଦିନଂ ( ଗଦାଧାରୀ ) ଚକ୍ରହସ୍ତଂ ( ଚକ୍ରଧାରୀ ) ଦ୍ରଷ୍ଟୁମ୍ ଇଚ୍ଛାମି ( ଦେଖିବାକୁ ଇଚ୍ଛା କରୁଅଛି )। [ ହେ ] ସହସ୍ର ବାହୋ, [ ହେ ] ବିଶ୍ୱମୂର୍ତ୍ତେ । ତେନ ଚତୁର୍ଭୁଜେନ ରୂପେଣ ଏବ ( ସେହି ଚତୁର୍ଭୁଜ ମୂର୍ତ୍ତିରେହିଁ ) ଭବ ( ଆବିର୍ଭୂତ ହୁଅ )।

ଅନୁବାଦ—ମୁଁ ତୁମ୍ଭର କିରୀଟଧାରୀ, ଗଦାଧାରୀ ଓ ଚକ୍ରଧାରୀ ପୂର୍ବରୂପ ଦେଖିବାକୁ ଇଚ୍ଛା କରୁଅଛି; ହେ ସହସ୍ରବାହୋ, ହେ ବିଶ୍ୱମୂର୍ତ୍ତେ, ବର୍ତ୍ତମାନ ତୁମେ ସେହି ଚତୁର୍ଭୁଜ ମୂର୍ତ୍ତି ଧାରଣ କର ।

ସୁବୋଧିନୀ ଟୀକା— ତଦେବ ରୂପଂ ବିଶେଷୟନ୍ନାହ—କିରୀଟିନମିତି-କିରୀଟବନ୍ତଂ, ଗଦାବନ୍ତଂ ଚକ୍ରହସ୍ତଂ ଚ ତ୍ୱାଂ ଦ୍ରଷ୍ଟୁମିଚ୍ଛାମି, ପୂର୍ବଂ ଯଥା ଦୃଷ୍ଟୋଽସି ତଥୈବ । ଅତୋ ହେ ସହସ୍ରବାହୋ, ହେ ବିଶ୍ୱମୂର୍ତ୍ତେ, ଇଦଂ ବିଶ୍ୱରୂପମୁପସଂହୃତ୍ୟ ତେନୈବ କିରୀଟାଦିଯୁକ୍ତେନ ଚତୁର୍ଭୁଜେନ ରୂପେଣ ଆବିର୍ଭବ ।

ତଦନେନ ଶ୍ରୀକୃଷ୍ଣମର୍ଜୁନଃ ପୂର୍ବମପି କିରୀଟାଦିଯୁକ୍ତମେବ ପଶ୍ୟତୀତି ଗମ୍ୟତେ, ଯତ୍ତୁ ପୂର୍ବମୁକ୍ତଂ ବିଶ୍ୱରୂପ ଦର୍ଶନେ—କିରୀଟିନଂ ଗଦିନଂ ଚକ୍ରିଣଂ ଚ ପଶ୍ୟାମୀତି—ତଦ୍ ବହୁକିରୀଟାଦ୍ୟଭିପ୍ରାୟେଣ । ଯଦ୍ୱା—ଏତାବନ୍ତଂ କାଲଂ ଯଂ ତ୍ୱାଂ କିରୀଟିନଂ ଗଦିନଂ ଚକ୍ରିଣଂ ଚ ସୁପ୍ରସନ୍ନମପଶ୍ୟଂ ତମେବେଦାନୀଂ ତେଜୋରାଶିଂ ଦୁର୍ନିରୀକ୍ଷ୍ୟଂ ପଶ୍ୟାମୀତ୍ୟେବମ୍ପର ବଚନସ୍ୟ ବ୍ୟକ୍ତତ୍ୱାଦବିରୋଧଃ ।

ବିବୃତି—ପୂର୍ବ ୪୫ ମ ଓ ଏହି ୪୬ ମ ଶ୍ଳୋକରେ ବିଶ୍ୱରୂପ ଦର୍ଶନ କଲା ପରେ ଅର୍ଜୁନଙ୍କର ମନରେ ଯେଉଁ ଭାବ ଜାତ ହୋଇଥିଲା ତାହାହିଁ କୁହାଯାଇଅଛି । ଅର୍ଜୁନ ପରମ ଭକ୍ତ ହେଲେହେଁ ସାଧାରଣ ମନୁଷ୍ୟ,

ମନୁଷ୍ୟ ଦୃଷ୍ଟିରେ ସେ ଅତଯାଏ ଯାହା ଯାହା ଦେଖିଥିଲେ ଅତ ତହିଁରୁ ଅଧିକ କିଛି ଦେଖିଲେ । ବିଶ୍ୱରୂପରେ ସମୁଦାୟ ବ୍ରହ୍ମାଣ୍ଡର ଚିତ୍ର ବିଦ୍ୟମାନ ଥିଲା, ବିଶେଷତଃ କୁରୁକ୍ଷେତ୍ର ଯୁଦ୍ଧରେ ଭବିଷ୍ୟତରେ ଯାହା ଘଟିବ ତାହାର ଦୃଶ୍ୟ ମଧ୍ୟ ତହିଁରେ ଥିଲା । ସେହି ବିରାଟ, ବିକଟ, ଉଗ୍ର ରୂପ ଅର୍ଜୁନ ପୂର୍ବେ କେବେ ଦେଖି ନ ଥିଲେ, ତେଣୁ ତାଙ୍କ ହୃଦୟରେ ଯୁଗପତ୍ ହର୍ଷ, ଭୟ ଓ ବିସ୍ମୟ ଜାତହେବା ସ୍ୱାଭାବିକ । ନୂତନ ଦର୍ଶନରେ ଯେଉଁ ହର୍ଷ ବା ଆନନ୍ଦର ସଞ୍ଚାର ହୋଇଥିଲା ବିରାଟ ଓ ବିକଟ ରୂପ ଦର୍ଶନରେ ତାହାର ସ୍ଥାୟୀତ୍ୱ ରହିଲା ନାହିଁ । କାର୍ଯ୍ୟତଃ ଶେଷରେ ସେ ଭୟବ୍ୟାକୁଳ ହୋଇ ପ୍ରାର୍ଥନା କଲେ, ପ୍ରଭୋ, ଏ ରୂପ ପ୍ରତିସଂହାର କରି ମୋତେ ତୁମ୍ଭର ସ୍ୱାଭାବିକ ସୌମ୍ୟ ଶାନ୍ତରୂପ ପ୍ରଦର୍ଶନ କର । ଭକ୍ତ ଭଗବାନଙ୍କୁ ଧ୍ୟାନରେ ନିତ୍ୟ ଯେଉଁ ରୂପରେ ଦେଖି ହୃଦୟରେ ଶାନ୍ତି ସନ୍ତୋଷ ଲାଭକରେ, ତହିଁରୁ ଭିନ୍ନ ରୂପରେ ଦେଖିଲେ ସେ ବିଚଳିତ ହୋଇ ଉଠିବ—ଏଥିରେ ଆଉ ସନ୍ଦେହ କଅଣ ?

ଭଗବାନଙ୍କର ବିରାଟ ଐଶ୍ୱର୍ଯ୍ୟ ବିଷୟ ଚିନ୍ତା କରିବା କ୍ଷୁଦ୍ରବୁଦ୍ଧି ମନୁଷ୍ୟ ପକ୍ଷରେ ଏକାନ୍ତ ଅସମ୍ଭବ କଥା । ଆମେ ଏହି ଯେଉଁ ପୃଥିବୀରେ ରହୁଅଛୁଁ, ତାହାର ବିଶାଳତା ଓ ବିଚିତ୍ରତା କଥା ତ ଚିନ୍ତା କରି ନ ପାରି ହତବୁଦ୍ଧି ହୋଇଯାଉଁ, କିନ୍ତୁ ଏହିପରି କୋଟି କୋଟି ପୃଥିବୀ ଯାହାଙ୍କ ଇଙ୍ଗିତରେ ସୃଷ୍ଟି ହୋଇଅଛି ଏବଂ ଯେ ଏହି ସମଗ୍ର ବିଶ୍ୱବ୍ରହ୍ମାଣ୍ଡକୁ ପରିଚାଳିତ କରୁଅଛନ୍ତି, ତାହାଙ୍କର ମହତ୍ତ୍ୱ ଚିନ୍ତା କରିବା ଆମ ପକ୍ଷରେ ସମ୍ଭବ କି ? ଆମେ ଏହି ଐଶ୍ୱର୍ଯ୍ୟ ବିଷୟ ପଢ଼ୁଁ ଓ ଶୁଣୁଁ ମାତ୍ର ତାହା ହୃଦୟରେ ଧାରଣ କରିପାରୁ ନାହିଁ । ତେଣୁ ଆମେ ଖୋଜୁଁ ଭଗବାନଙ୍କର ସେହି ମଧୁର ସୁନ୍ଦର କମନୀୟ ରୂପ । ଐଶ୍ୱର୍ଯ୍ୟ-ପୂର୍ଣ୍ଣ ଦିବ୍ୟ ବିଭୂତି ଧାରଣା କରିବା ତ ଦୂରର କଥା, ପ୍ରତ୍ୟକ୍ଷ ଅନୁଭବରେ ଆଣିବା ସହଜ କି ? ତେଣୁ ଯେ ଭକ୍ତ, ସେ ମାଧୁର୍ଯ୍ୟ ପିପାସୁ, ଐଶ୍ୱର୍ଯ୍ୟ ଦିଦୃକ୍ଷୁ ନୁହେ ।

ଶ୍ରୀକୃଷ୍ଣ ଅବତାରରେ ଭଗବାନ୍ ଦ୍ୱିଭୁଜ ଥିଲେ, ଅବଶ୍ୟ, ଜନ୍ମବେଳେ ସେ ଜନକ ବସୁଦେବଙ୍କୁ ଚତୁର୍ଭୁଜ ରୂପ ଦେଖାଇଥିଲେ ମାତ୍ର ମନୁଷ୍ୟ ଭାବରେ ଅର୍ଜୁନ କେବେହେଲେ ଏଥିପୂର୍ବେ ତାଙ୍କୁ ଚତୁର୍ଭୁଜ ଦେଖି ନ ଥିଲେ । ଏଠାରେ ଚତୁର୍ଭୁଜରେ ଅବର୍ତ୍ତିତ ହେବାକୁ ପ୍ରାର୍ଥନା କରିବାରୁ ବୁଝାଯାଉଅଛି, ଅର୍ଜୁନ ତାଙ୍କର ଯେଉଁ ସୌମ୍ୟ ବିଷ୍ଣୁ ବା ନାରାୟଣ ରୂପକୁ ପ୍ରତ୍ୟହ ଧ୍ୟାନରେ ଚତୁର୍ଭୁଜ ଦେଖୁଥିଲେ, ସେହି ରୂପରେ ତାଙ୍କ ଆଗରେ ଅବର୍ତ୍ତିତ ହେବାକୁ କହିଲେ ।

ଶ୍ରୀ ଭଗବାନୁବାଚ

ମୟା ପ୍ରସନ୍ନେନ ତବାର୍ଜୁନେଦଂ
ରୂପଂ ପରଂ ଦର୍ଶିତମାତ୍ମଯୋଗାତ୍ ।
ତେଜୋମୟଂ ବିଶ୍ୱମନନ୍ତମାଦ୍ୟଂ
ଯନ୍ମେ ତ୍ୱଦନ୍ୟେନ ନ ଦୃଷ୍ଟପୂର୍ବମ୍ । ୪୭ ।

ନ ବେଦ ଯଜ୍ଞାଧ୍ୟୟନୈର୍ନ ଦାନୈ-
ର୍ନ ଚ କ୍ରିୟାଭିର୍ନ ତପୋଭିରୁଗ୍ରୈଃ ।
ଏବଂରୂପଃ ଶକ୍ୟ ଅହଂ ନୃଲୋକେ,
ଦ୍ରଷ୍ଟୁଂ ତ୍ୱଦନ୍ୟେନ କୁରୁପ୍ରବୀର । ୪୮ ।

୪୭ । ଅନ୍ୱୟ ଦୀପିକା—ଶ୍ରୀ ଭଗବାନ୍ ଉବାଚ ( ଶ୍ରୀ ଭଗବାନ୍ କହିଲେ ) । [ ହେ ] ଅର୍ଜୁନ ପ୍ରସନ୍ନେନ ( ପ୍ରସନ୍ନ ହୋଇ ) ମୟା (ଅମ ଦ୍ୱାରା) ଆତ୍ମଯୋଗାତ୍ ( ନିଜ ଯୋଗ ବଳରେ ) ତବ ( ତୁମ୍ଭଙ୍କୁ ) ଇଦଂ ( ଏହି ) ତେଜୋମୟମ୍ ( ତେଜୋମୟ ) ଅନନ୍ତମ୍ ( ଅନ୍ତ ଶୂନ୍ୟ ) ଆଦ୍ୟଂ ( ସମସ୍ତର ଆଦିଭୂତ ) ମେ ( ଅମର ) ପରଂ ( ଉତ୍ତମ ) ବିଶ୍ୱଂ ରୂପଂ ( ବିଶ୍ୱାତ୍ମକ ରୂପ ) ଦର୍ଶିତଂ ( ପ୍ରଦର୍ଶିତ ହେଲା ) । ଯତ୍ ( ଯେଉଁ ରୂପ ) ତ୍ୱଦନ୍ୟେନ ( ତୁମ ବ୍ୟତୀତ ଅନ୍ୟ କାହାରି ଦ୍ୱାରା ) ନ ଦୃଷ୍ଟପୂର୍ବଂ (ପୂର୍ବେ ଦୃଷ୍ଟ ହୋଇ ନ ଥିଲା) ।

ଅନୁବାଦ—ଶ୍ରୀ ଭଗବାନ୍ କହିଲେ—ହେ ଅର୍ଜୁନ, ଅମ୍ଭେ ପ୍ରସନ୍ନ ହୋଇ ନିଜ ଯୋଗମାୟାପ୍ରଭାବରେ ଏହି ତେଜୋମୟ, ଅନନ୍ତ, ଆଦ୍ୟ, ବିଶ୍ୱାତ୍ମକ ପରମରୂପ ତୁମ୍ଭଙ୍କୁ ଦେଖାଇଲୁଁ । ଅମ୍ଭର ଏ ରୂପ ତୁମ ବ୍ୟତୀତ ଅନ୍ୟ କେହି ଦେଖି ନ ଥିଲେ ।

ସୁବୋଧିନୀ ଟୀକା—ଏବଂ ପ୍ରାର୍ଥିତଃ ସନ୍ତ୍ରମାଶ୍ୱାସୟନ୍, ଭଗବାନୁବାଚ । ମଦ୍ଭୈତ କିଂଭଃ, ହେ ଅର୍ଜୁନ ! କମିତ ତ୍ୱଂ ବିଭେଷି ? ଯତୋ ମୟା ପ୍ରସନ୍ନେନ କୃପୟା ତବେଦଂ ପରମୁତ୍ତମଂ ରୂପଂ ଦର୍ଶିତମ୍ । ଆତ୍ମନୋମମ ଯୋଗାତ୍ ଯୋଗମାୟା ସାମର୍ଥ୍ୟାତ୍ । ପରତ୍ୱମେବାହ—ତେଜୋମୟଂ । ବିଶ୍ୱଂ ବିଶ୍ୱାତ୍ମକମ୍, ଅନନ୍ତମ୍, ଆଦ୍ୟଂ ଚ, ଯନ୍ମମ ରୂପଂ ତ୍ୱାଦୃଶାତ୍ ତ୍ୱଦ୍ଭକ୍ତାଦନ୍ୟେନ ପୂର୍ବଂ ନ ଦୃଷ୍ଟଂ ତତ୍ ।

୪୮ । ଅନ୍ୱୟ ଦୀପିକା—[ ହେ ] କୁରୁପ୍ରବୀର, ନ ବେଦ-ଯଜ୍ଞାଧ୍ୟୟନୈଃ ( ନା ବେଦପାଠ ଦ୍ୱାରା, ନା ଯଜ୍ଞ ବିଦ୍ୟା ଅଧ୍ୟୟନ ଦ୍ୱାରା ) ନ ଦାନୈଃ ( ନ ଦାନଦ୍ୱାରା ) ନ କ୍ରିୟାଭିଃ ( ନା ଅଗ୍ନିହୋତ୍ରାଦି କ୍ରିୟାଦ୍ୱାରା ) ନ ଉଗ୍ରୈଃ ତପୋଭିଃ ( ନା ଉଗ୍ର ତପସ୍ୟାଦ୍ୱାରା ) ଏବଂରୂପଃ ( ଏହିପରି

ମା ତେ ବ୍ୟଥା ମା ଚ ବିମୂଢ଼ଭାବୋ
ଦୃଷ୍ଟ୍ୱା ରୂପଂ ଘୋରମୀଦୃଙ୍ମମେଦମ୍ ।
ବ୍ୟପେତଭୀଃ ପ୍ରୀତମନାଃ ପୁନସ୍ତ୍ୱଂ
ତଦେବ ମେ ରୂପମିଦଂ ପ୍ରପଶ୍ୟ । ୪୯ ।

ରୂପଧାରୀ ) ଅହଂ ( ଆମ୍ଭେ ) ନୃଲୋକେ ( ମନୁଷ୍ୟ ଲୋକରେ ) ତ୍ୱଦନ୍ୟେନ ( ତୁମଛଡ଼ା ଅନ୍ୟଦ୍ୱାରା ) ଦ୍ରଷ୍ଟୁଂ ଶକ୍ୟଃ ( ଦର୍ଶନ ଯୋଗ୍ୟ ) [ ହେଉଁ ] ।

ଅନୁବାଦ—ହେ କୁରୁ ପ୍ରବୀର ! ବେଦପାଠ ଦ୍ୱାରା, ଯଜ୍ଞବିଦ୍ୟା ଅଧ୍ୟୟନ ଦ୍ୱାରା, ଦାନ ଦ୍ୱାରା, ଅଗ୍ନିହୋତ୍ରାଦି କ୍ରିୟା ଦ୍ୱାରା, ଉଗ୍ର ତପସ୍ୟାଦ୍ୱାରା, ମନୁଷ୍ୟଲୋକରେ ତୁମ ଭିନ୍ନ ଅନ୍ୟ କେହି ଆମ୍ଭର ଏ ରୂପ ଦେଖିବାକୁ ସମର୍ଥ ହୋଇ ନାହାନ୍ତି ।

ସୁବୋଧିନୀ ଟୀକା—ଏତଦ୍ଦର୍ଶନମତିଦୁର୍ଲଭଂ ଲବ୍ଧ୍ୱା ତ୍ୱଂ କୃତାର୍ଥୋଽସୀତ୍ୟାହ—ନ ବେଦେତି । ବେଦାଧ୍ୟୟନବ୍ୟତିରେକେଣ ଯଜ୍ଞାଧ୍ୟୟନସ୍ୟାପୃଥକ୍ ଯଜ୍ଞଶବ୍ଦେନ ଯଜ୍ଞବିଦ୍ୟାଃ କଳ୍ପସୂତ୍ରାଦ୍ୟା ଲକ୍ଷ୍ୟନ୍ତେ । ବେଦାନାଂ ଯଜ୍ଞବିଦ୍ୟାନାଂ ଚାଧ୍ୟୟନୈରିତ୍ୟର୍ଥଃ । ନ ଚ ଦାନୈଃ । ନ ଚ କ୍ରିୟା-ଭିରଗ୍ନିହୋତ୍ରାଦିଭିଃ । ନଚୋଗ୍ରୈସ୍ତପୋଭିଶ୍ଚାନ୍ଦ୍ରାୟଣାଦିଭିଃ । ଏବମ୍ଭୂତୋଽହଂ ତ୍ୱତ୍ତୋଽନ୍ୟେନ ମନୁଷ୍ୟଲୋକେ ଦ୍ରଷ୍ଟୁଂ ଶକ୍ୟଃ । ଅପିତୁ ତ୍ୱୟୈବ କେବଳଂ ମତ୍ପ୍ରସାଦେନ ଦୃଷ୍ଟ୍ୱା କୃତାର୍ଥୋଽସି ।

ବିବୃତି—ଆଗ୍ରହରେ ବେଦ ଆଲୋଚନା କର, ଯଜ୍ଞବିଦ୍ୟାର ଆଲୋଚନା କର, ତୁଳା ପୁରୁଷ ଦାନାଦି କର, କଠୋର ତପସ୍ୟା କର, ଅଗ୍ନିହୋତ୍ରାଦି କ୍ରିୟାନୁଷ୍ଠାନ କର—ମନୁଷ୍ୟଲୋକରେ ଭଗବାନଙ୍କୁ ଦର୍ଶନ କରି ପାରିବ ନାହିଁ । ଭକ୍ତ ଭାବରେ ଏକାନ୍ତ ଶରଣାଗତ ହେଲେ ସେ କେବଳ ପ୍ରସନ୍ନ ହୋଇ ଦର୍ଶନ ଦେବେ । ଅନ୍ୟ ଭାବରେ ନୁହେ ।

୪୯ । ଅନ୍ୱୟ ଦୀପିକା—ଈଦୃକ୍ ( ଏରୂପର ) ମମ ( ଆମ୍ଭର ) ଘୋରଂ ( ଭୟଙ୍କର ) ଇଦଂ ରୂପଂ ଦୃଷ୍ଟ୍ୱା ( ଏହି ରୂପକୁ ଦେଖି ) ତେ ( ତୁମ୍ଭର ) ବ୍ୟଥା ( ଭୟ ) ମା ( ନ ହେଉ ), ବିମୂଢ଼ଭାବଃ ଚ ( ଏବଂ ବ୍ୟାକୁଳତା ) ମା ( ନ ହେଉ ) । ବ୍ୟପେତଭୀଃ ( ଭୟରହିତ ) ପ୍ରୀତମନାଃ ( ଓ ପ୍ରସନ୍ନଚିତ୍ତ ହୋଇ ) ପୁନଃ ( ପୁନର୍ବାର ) ତ୍ୱଂ ( ତୁମ୍ଭେ ) ମେ ( ଆମ୍ଭର ) ଇଦଂ ତଦ୍ ରୂପମ୍ ଏବ ( ଆମ୍ଭର ଏହି ସେହି ପୂର୍ବରୂପ ) ପ୍ରପଶ୍ୟ ( ଦେଖ ) ।

ଅନୁବାଦ—ତୁମ୍ଭେ, ଆମ୍ଭର ଏହି ଘୋର ରୂପ ଦେଖି ଭୟଭୀତ ହୁଅନାହିଁ ବା ବ୍ୟାକୁଳ ହୁଅନାହିଁ । ଭୟତ୍ୟାଗ କରି ପ୍ରସନ୍ନ ଚିତ୍ତରେ ଆମ୍ଭର ପୂର୍ବରୂପ ଦର୍ଶନ କର ।

ସଞ୍ଜୟ ଉବାଚ

ଇତ୍ୟର୍ଜୁନଂ ବାସୁଦେବ ସ୍ତଥୋକ୍ତ୍ୱା
ସ୍ୱକଂ ରୂପଂ ଦର୍ଶୟାମାସ ଭୂୟଃ ।
ଆଶ୍ୱାସୟାମାସ ଚ ଭୀତମେନଂ
ଭୂତ୍ୱା ପୁନଃ ସୌମ୍ୟବପୁର୍ମହାତ୍ମା । ୫୦ ।

ସୁବୋଧିନୀ ଟୀକା—ଏବମପି ଚେତ୍ ତବେଦଂ ଘୋରଂରୂପଂ ଦୃଷ୍ଟ୍ୱା ବ୍ୟଥା ଭବତ ତର୍ହି ତଦେବ ରୂପଂ ଦର୍ଶୟାମୀତ୍ୟାହ—ମା ତ ଇତ । ଈଦୃଗୀଦୃଶଂ ଘୋରଂ ମଦୀୟଂ ରୂପଂ ଦୃଷ୍ଟ୍ୱା ତେ ବ୍ୟଥା ମାଷ୍ଟୁ । ବିମୂଢ଼ଭାବୋ ବିମୂଢ଼ତ୍ୱଂ ଚ ମାଷ୍ଟୁ । ବିଗତଭୟଃ ପ୍ରୀତମନାଶ୍ଚ ସନ୍ ପୁନସ୍ତ୍ୱଂ ତଦେବେଦଂ ମମରୂପଂ ପ୍ରକର୍ଷେଣ ପଶ୍ୟ ।

ବକ୍ତୃତ—ଭଗବାନ୍ ବାଞ୍ଛାକଳ୍ପତରୁ । ଅର୍ଜୁନ ତାଙ୍କର ବିଶ୍ୱରୂପ ଦେଖିବାକୁ ପ୍ରାର୍ଥନା କରିବାରୁ ସେ ତାଙ୍କୁ ସେହି ଭୟଙ୍କର ରୂପ ଦେଖାଇଥିଲେ । ସେ ରୂପ ଦେଖି ଭୟରେ ବ୍ୟାକୁଳ ହୋଇ ପୁଣି ପ୍ରାର୍ଥନା କଲେ, ପ୍ରଭୁ ମୋର ପରମାରାଧ୍ୟ ସେହି ଚତୁର୍ଭୁଜ ବିଷ୍ଣୁ ରୂପ ଦେଖିବି, ବାଞ୍ଛାନିଧି ତତ୍‌କ୍ଷଣାତ୍ ବାଞ୍ଛା ପୂର୍ଣ୍ଣ କରିବା ପାଇଁ ପ୍ରତିଶ୍ରୁତି ଦେଲେ । ଏକାନ୍ତଭକ୍ତି ବିନା ଏହା ଯେ ଅନ୍ୟ ପ୍ରକାରେ ହୋଇ ପାରେ ନାହିଁ - ପୂର୍ବ ଶ୍ଳୋକରେ କୁହାଯାଇଅଛି ।

୫୦ । ଅନ୍ୱୟ ଦୀପିକା—ସଞ୍ଜୟଃ ଉବାଚ—(ସଞ୍ଜୟ କହିଲେ), ବାସୁଦେବଃ ( ଶ୍ରୀକୃଷ୍ଣ ) ଅର୍ଜୁନଂ ( ଅର୍ଜୁନଙ୍କୁ ) ଇତି ( ଏହିପରି ) ଉକ୍ତ୍ୱା ( କହି ) ଭୂୟଃ ( ପୁନର୍ବାର ) ତଥା ( ସେହିପରି ) ସ୍ୱକଂ ରୂପଂ ( ସ୍ୱୀୟରୂପ ) ଦର୍ଶୟାମାସ ( ଦେଖାଇଲେ ); ମହାତ୍ମା ପୁନଃ ( ମହାତ୍ମା ପୁନର୍ବାର ) ସୌମ୍ୟ ବପୁଃ ( ପ୍ରସନ୍ନମୂର୍ତ୍ତି ) ଭୂତ୍ୱା ( ହୋଇ ) ପୁନଃ ( ପୁନର୍ବାର ) ଭୀତମ୍ ଏନଂ ( ଭୟାତୁର ସେହି ଅର୍ଜୁନଙ୍କୁ ) ଅଶ୍ୱାସୟାମାସ ଚ (ଅଶ୍ୱସ୍ତ କରିଥିଲେ) ।

ଅନୁବାଦ—ସଞ୍ଜୟ କହିଲେ—ବାସୁଦେବ ଅର୍ଜୁନଙ୍କୁ ଏହା କହି ପୁନର୍ବାର ସେହିପରି ପୂର୍ବ ସ୍ୱରୂପ ଦେଖାଇଲେ ଏବଂ ମହାତ୍ମା ପୁନର୍ବାର ପ୍ରସନ୍ନମୂର୍ତ୍ତି ଧାରଣ କରି ଭୟବ୍ୟାକୁଳ ଅର୍ଜୁନଙ୍କୁ ଅଶ୍ୱସ୍ତ କଲେ ।

ସୁବୋଧିନୀ ଟୀକା—ଏବ ମୁକ୍ତ୍ୱା ପ୍ରାକ୍ତନମେବ ରୂପଂ ଦର୍ଶିତବାନିତ ସଞ୍ଜୟ ଉବାଚ, ଇତୀତ । ଶ୍ରୀବାସୁଦେବୋଽର୍ଜୁନମେବମୁକ୍ତ୍ୱା ଯଥା ପୂର୍ବମାସୀତ୍ତଥୈବ ବସୁଃଦେବାଦସ୍ୱକଂ ଚତୁର୍ଭୁଜଂ ସ୍ୱୀୟଂ ରୂପଂ ପୁନର୍ଦର୍ଶୟାମାସ । ଏନମର୍ଜୁନଂ ଭୀତମେବଂ ପ୍ରସନ୍ନବପୁର୍ଭୂତ୍ୱା ପୁନରପ୍ୟାଶ୍ୱାସିତବାନ୍ । ମହାତ୍ମା ବିଶ୍ୱରୂପଃ, କୃପାଳୁରିତବା ।

ଅର୍ଜୁନ ଉବାଚ

ଦୃଷ୍ଟ୍ୱେଦଂ ମାନୁଷଂ ରୂପଂ ତବ ସୌମ୍ୟଂ ଜନାର୍ଦ୍ଦନ ।
ଇଦାନୀମସ୍ମି ସଂବୃତ୍ତଃ ସଚେତାଃ ପ୍ରକୃତିଂ ଗତଃ । ୫୧ ।

ଶ୍ରୀ ଭଗବାନୁବାଚ

ସୁଦୁର୍ଦ୍ଦର୍ଶମିଦଂ ରୂପଂ ଦୃଷ୍ଟବାନସି ଯନ୍ମମ ।
ଦେବା ଅପ୍ୟସ୍ୟ ରୂପସ୍ୟ ନିତ୍ୟଂ ଦର୍ଶନକାଂକ୍ଷିଣଃ । ୫୨ ।

୫୧ । ଅନ୍ୱୟ ଦୀପିକା—ଅର୍ଜୁନଃ ଉବାଚ—(ଅର୍ଜ୍ଜୁନ କହିଲେ) [ହେ] ଜନାର୍ଦ୍ଦନ, ତବ ( ତୁମର ) ଇଦଂ ( ଏହି ) ସୌମ୍ୟଂ ( ଶାନ୍ତ ) ମାନୁଷଂ ରୂପଂ ( ମନୁଷ୍ୟ ରୂପ ) ଦୃଷ୍ଟ୍ୱା ( ଦେଖି ) ଇଦାନୀଂ ( ଏହିକ୍ଷଣି ) ମୁଁ ସଚେତାଃ ( ପ୍ରସନ୍ନମନାଃ ) ସଂବୃତ୍ତଃ ଅସ୍ମି ( ହୋଇଅଛି ) [ ଏବ ] ପ୍ରକୃତିଂ ଗତଃ ( ପ୍ରକୃତିସ୍ଥ ହୋଇଅଛି ) ।

ଅନୁବାଦ—ଅର୍ଜୁନ କହିଲେ, ହେ ଜନାର୍ଦ୍ଦନ, ବର୍ତ୍ତମାନ ତୁମର ଏହି ସୌମ୍ୟ ମନୁଷ୍ୟ ରୂପ ଦର୍ଶନ କରି ମୁଁ ପ୍ରସନ୍ନଚିତ୍ତ ଓ ପ୍ରକୃତିସ୍ଥ ହେଲି ।

ସୁବୋଧିନୀ ଟୀକା—ତତୋ କର୍ଣ୍ଣମ୍ଷଃସନ୍ନର୍ଜୁନ ଉବାଚ । ଦୃଷ୍ଟ୍ୱେଦ-ମିତି, ସଚେତାଃ ପ୍ରସନ୍ନଚିତ୍ତଃ, ଇଦାନୀଂ ସଂବୃତ୍ତଃ, ଜାତୋଽସ୍ମି, ପ୍ରକୃତିଂ ସ୍ୱାସ୍ଥ୍ୟଂ ଚ ପ୍ରାପ୍ତୋଽସ୍ମି, ଶେଷଂ ସ୍ପଷ୍ଟମ୍ ।

ବକ୍ତବ୍ୟ—ଏଠାରେ ଭଗବାନ୍ ଶେଷରେ ପାର୍ଥସାରଥିଭାବରେ ଦ୍ୱିଭୁଜ ରୂପହିଁ ଧାରଣ କଲେ, ତା ପୂର୍ବରୁ ଅର୍ଜୁନଙ୍କ ପ୍ରାର୍ଥନାନୁରୂପ ଚତୁର୍ଭୁଜ ହୋଇଥିବେ—ମାତ୍ର ଏଠାରେ ତାହାର ବର୍ଣ୍ଣନା ନାହିଁ ।

୫୨ । ଅନ୍ୱୟ ଦୀପିକା—ଶ୍ରୀ ଭଗବାନ୍ ଉବାଚ— ( ଶ୍ରୀଭଗବାନ୍ କହିଲେ ), ମମ ( ଆମ୍ଭର ) ଇଦଂ ( ଏହି ) ସୁଦୁର୍ଦ୍ଦର୍ଶଂ ( ଦୁର୍ନିରୀକ୍ଷ୍ୟ ) ଯତ୍ ରୂପଂ ( ଯେଉଁ ରୂପ ) ଦୃଷ୍ଟବାନ୍ ଅସି ( ଦେଖିଲ ) ଦେବାଃ ଅପି ( ଦେବତାମାନେ ମଧ୍ୟ ) ଅସ୍ୟ ( ଏହି ) ରୂପସ୍ୟ ( ରୂପର ) ନିତ୍ୟଂ ଦର୍ଶନକାଂକ୍ଷିଣଃ ( ସର୍ବଦା ଦର୍ଶନାଭିଳାଷୀ ) ।

ଅନୁବାଦ—ଶ୍ରୀ ଭଗବାନ୍ କହିଲେ—ତୁମେ ଆମର ଏହି ଯେଉଁ ରୂପ ଦେଖିଲ, ତାହା ଦେଖିବା ଅତ୍ୟନ୍ତ କଠିନ, ଦେବତାମାନେ ମଧ୍ୟ ସର୍ବଦା ଏ ରୂପର ଦର୍ଶନାଭିଳାଷୀ ।

ସୁବୋଧିନୀ ଟୀକା—ସ୍ୱକୃତସ୍ୟାନୁଗ୍ରହସ୍ୟାତିଦୁର୍ଲ୍ଲଭତ୍ୱଂ ଦର୍ଶୟନ୍ ଭଗବାନ୍ ଉବାଚ । ସୁଦୁର୍ଦ୍ଦର୍ଶ ମିତି, ଯନ୍ମମ ବିଶ୍ୱରୂପଂ ତ୍ୱଂ ଦୃଷ୍ଟବାନସି—ଇଦଂ ସୁଦୁର୍ଦ୍ଦର୍ଶମତ୍ୟନ୍ତଂ ଦ୍ରଷ୍ଟୁମଶକ୍ୟଂ; ଯତୋ ଦେବା ଅପ୍ୟସ୍ୟ ରୂପସ୍ୟ ନିତ୍ୟଂ ସର୍ବଦା ଦର୍ଶନ ମିଚ୍ଛନ୍ତି କେବଲମ୍, ନ ପୁନରିଦଂ ପଶ୍ୟନ୍ତି ।

ନାହଂ ବେଦୈର୍ନ ତପସା ନ ଦାନେନ ନ ଚେଜ୍ୟୟା
ଶକ୍ୟ ଏବଂବିଧୋ ଦ୍ରଷ୍ଟୁଂ ଦୃଷ୍ଟବାନସି ମାଂ ଯଥା । ୫୩ ।

ଭକ୍ତ୍ୟା ତ୍ୱନନ୍ୟୟା ଶକ୍ୟ ଅହମେବଂବିଧୋଽର୍ଜ୍ଜୁନ
ଜ୍ଞାତୁଂ ଦ୍ରଷ୍ଟୁଂ ଚ ତତ୍ତ୍ୱେନ ପ୍ରବେଷ୍ଟୁଂ ଚ ପରନ୍ତପ । ୫୪ ।

୫୩ । ଅନ୍ୱୟ ଦୀପିକା—ମାଂ (ଆମ୍ଭଙ୍କୁ) ଯଥା (ଯେପରି) ଦୃଷ୍ଟବାନ୍ ଅସି (ଦେଖିଲ) । ଏବଂବିଧଃ ଅହଂ (ଏ ରୂପଧାରୀ ଆମ୍ଭେ) ନ ବେଦୈଃ (ନା ବେଦାଧ୍ୟୟନ ଦ୍ୱାରା) ନ ତପସା (ନା ତପସ୍ୟାଦ୍ୱାରା) ନ ଦାନେନ (ନା ଦାନଦ୍ୱାରା) ନ ଚ ଇଜ୍ୟୟା (ନା ଯଜ୍ଞଦ୍ୱାରା) ଦ୍ରଷ୍ଟୁଂ ଶକ୍ୟଃ (ଦେଖାଯାଇ ପାରୁଁ) ।

ଅନୁବାଦ—ଆମ୍ଭଙ୍କୁ ଯେଉଁ ରୂପରେ ଦେଖିଲ, ଏହି ରୂପ ବେଦ ପାଠଦ୍ୱାରା, ତପସ୍ୟାଦ୍ୱାରା, ଦାନଦ୍ୱାରା ବା ଯଜ୍ଞଦ୍ୱାରା ଦର୍ଶନ କରାଯାଏ ନାହିଁ ।

ସୁବୋଧିନୀ ଟୀକା—ଅତ୍ର ହେତୁ ମାହ—ନାହମିତି, ସ୍ପଷ୍ଟୋଽର୍ଥଃ ।

୫୪ । ଅନ୍ୱୟ ଦୀପିକା—[ହେ] ପରନ୍ତପ ଅର୍ଜ୍ଜୁନ, ଅନନ୍ୟୟା ଭକ୍ତ୍ୟା ତୁ (କେବଳ ଅନନ୍ୟ ଭକ୍ତି ଦ୍ୱାରାହିଁ) ଏବଂବିଧଃ ଅହଂ (ଏହିରୂପ ଧାରୀ ଆମ୍ଭେ) ତତ୍ତ୍ୱେନ (ସ୍ୱରୂପତଃ) ଜ୍ଞାତୁଂ (ଜାଣିବା ପାଇଁ) ଦ୍ରଷ୍ଟୁଂ (ଦେଖିବା ପାଇଁ) ପ୍ରବେଷ୍ଟୁଂ ଚ (ଏବଂ ପ୍ରବେଶ କରିବା ପାଇଁ) ଶକ୍ୟଃ (ଶକ୍ୟ ହେଉଁ) ।

ଅନୁବାଦ—ହେ ପରନ୍ତପ ଅର୍ଜ୍ଜୁନ, ଅନନ୍ୟ ଭକ୍ତିଦ୍ୱାରାହିଁ ମନୁଷ୍ୟ ଆମ୍ଭର ଏପରି ତତ୍ତ୍ୱ ଜାଣିପାରେ, ଆମ୍ଭର ସ୍ୱରୂପ ଦର୍ଶନ କରିପାରେ ଓ ଆମ୍ଭ ସ୍ୱରୂପରେ ପ୍ରବେଶ କରିପାରେ ।

ସୁବୋଧିନୀ ଟୀକା—ତର୍ହି କେନୋପାୟେନ ତ୍ୱଂ ଦ୍ରଷ୍ଟୁଂ ଶକ୍ୟଇତି, ଅତାହ ଭକ୍ତ୍ୟା ତ୍ୱିତି, ଅନନ୍ୟୟା ମଦେକନିଷ୍ଠୟା ଭକ୍ତ୍ୟା ତ୍ୱେବଂ-ଭୂତୋ ବିଶ୍ୱରୂପୋଽହଂ ତତ୍ତ୍ୱେନ ପରମାର୍ଥତୋ ଜ୍ଞାତୁଂ ଶକ୍ୟଃ ଶାସ୍ତ୍ରତଃ, ଦ୍ରଷ୍ଟୁଂ ପ୍ରତ୍ୟକ୍ଷତଃ, ପ୍ରବେଷ୍ଟୁଂ ଚ ତାଦାତ୍ମ୍ୟେନ ଶକ୍ୟଃ, ନାନ୍ୟୈରୁପାୟୈଃ ।

ବକ୍ତବ୍ୟ—୫୩ମ ଶ୍ଳୋକରେ କୁହାଗଲା—ବେଦାଧ୍ୟୟନ, ତପସ୍ୟା, ଦାନ ବା ଯଜ୍ଞଦ୍ୱାରା ଈଶ୍ୱର ଦର୍ଶନ ହୁଏନାହିଁ, ତେବେ କେଉଁ ଉପାୟରେ ହେବ ? ଏହାର ଉତ୍ତର ଉପରୋକ୍ତ ଏହି ୫୪ମ ଶ୍ଳୋକରେ କହୁଛନ୍ତି—ଅର୍ଥାତ୍ ଏକମାତ୍ର ଭକ୍ତିଦ୍ୱାରାହିଁ ପରମେଶ୍ୱରଙ୍କର ସ୍ୱରୂପ ଜଣାହୁଏ, ସାକ୍ଷାତ୍କାର ହୁଏ ଏବଂ ତାଙ୍କ ସଙ୍ଗରେ ତାଦାତ୍ମ୍ୟ ଲାଭ ହୁଏ ।

ମତ୍କର୍ମକୃନ୍ମତ୍ପରମୋ ମଦ୍ଭକ୍ତଃ ସଙ୍ଗବର୍ଜିତଃ ।
ନିର୍ବୈରଃ ସର୍ବଭୂତେଷୁ ଯଃ ସ ମାମେତି ପାଣ୍ଡବ ॥ ୫୫ ॥

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି
ଶ୍ରୀମଦ୍ ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ
ଶ୍ରୀକୃଷ୍ଣାର୍ଜୁନ ସଂବାଦେ ବିଶ୍ୱରୂପ ଦର୍ଶନ ଯୋଗୋ
ନାମୈକାଦଶୋଽଧ୍ୟାୟଃ ।

---

୫୫ । **ଅନ୍ୱୟ ଦୀପିକା**—[ହେ] ପାଣ୍ଡବ, ଯଃ (ଯେଉଁଲୋକ) ମତ୍କର୍ମକୃତ୍ ( ଆମ୍ଭର କର୍ମାନୁଷ୍ଠାନକାରୀ ) ମତ୍ପରମଃ ( ମତ୍ ପରାୟଣଃ ), ମଦ୍ଭକ୍ତଃ ( ଆମ୍ଭର ଭଜନାକାରୀ ), ସଙ୍ଗବର୍ଜିତଃ ( ଆସକ୍ତିଶୂନ୍ୟ ). ସର୍ବଭୂତେଷୁ ନିର୍ବୈରଃ ( ସବୁ ପ୍ରାଣୀଙ୍କ ଠାରେ ଶତ୍ରୁଭାବ ଶୂନ୍ୟ ) ସଃ ( ସେହି ଲୋକ ହିଁ ) ମାମ୍ ( ଆମ୍ଭଙ୍କୁ ) ଏତି ( ପାଆନ୍ତି ) ।

**ଅନୁବାଦ**—ହେ ପାଣ୍ଡବ, ଯେଉଁ ଲୋକ, ଆମ୍ଭକର୍ମ--ଏହି ଜ୍ଞାନରେ ସମୁଦାୟ କର୍ମ କରନ୍ତି, ଆମ୍ଭେ ଯାହାଙ୍କର ଏକମାତ୍ର ଗତି, ଯେ ଆମ୍ଭର ଭଜନାକାରୀ, ଯେ ସବୁ ବିଷୟରେ ଆସକ୍ତିଶୂନ୍ୟ ଏବଂ ଯାହାଙ୍କର କୌଣସି ପ୍ରାଣୀଠାରେ ଶତ୍ରୁଭାବ ନାହିଁ, ସେହି ଏକା ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି ।

**ସୁବୋଧିନୀ ଟୀକା**—ଅତଃ ସର୍ବଶାସ୍ତ୍ରାର୍ଥସାରଂ ପରମଂ ରହସ୍ୟଂ ଶୃଣ୍ୱିତ୍ୟାହ, ମତ୍କର୍ମକୃଦିତି, ମଦର୍ଥଂ କର୍ମ କରୋତୀତି ମତ୍କର୍ମକୃତ୍, ଅହମେବ ପରମଃ ପୁରୁଷାର୍ଥୋ ଯସ୍ୟ ସଃ, ମମୈବ ଭକ୍ତ ଆଶ୍ରିତଃ । ପୁତ୍ରାଦିଷୁ ସଙ୍ଗବର୍ଜିତଃ, ନିର୍ବୈରଶ୍ଚ ସର୍ବଭୂତେଷୁ, ଏବମ୍ଭୂତୋ ଯଃ ସ ମାଂ ପ୍ରାପ୍ନୋତି, ନାନ୍ୟ ଇତି ।

ଦେବୈରପି ସୁଦୁର୍ଦର୍ଶଂ ତପୋଯଜ୍ଞାଦିକୋଟିଭିଃ
ଭକ୍ତ୍ୟାସ୍ମୈ ଭଗବାନେବଂ ବିଶ୍ୱରୂପମଦର୍ଶୟତ୍ ।

**ବିବୃତି**—ଏ ଶ୍ଲୋକର ଭାଷ୍ୟର ଭୂମିକା ବା ଅବତରଣରେ ଆଚାର୍ଯ୍ୟ ଶଙ୍କର କହି ଅଛନ୍ତି :—"ଅଧୁନା ସର୍ବସ୍ୟ ଗୀତା ଶାସ୍ତ୍ରସ୍ୟ ସାରଭୂତୋଽର୍ଥୋ ନିଃଶ୍ରେୟସାର୍ଥୋଽନୁଷ୍ଠେୟତ୍ୱେନ ସମୁଚ୍ଚିତ୍ୟୋଚ୍ୟତେ ।" ଅର୍ଥାତ୍ ସମସ୍ତ ଗୀତା ଶାସ୍ତ୍ରର ସାରମର୍ମ ଏହି ଗୋଟିଏ ଶ୍ଲୋକରେ ମୋକ୍ଷଧର୍ମାର୍ଥୀର ଅନୁଷ୍ଠାନ ଉଦ୍ଦେଶ୍ୟରେ ସଙ୍ଗ୍ରହ କରି କୁହାଯାଇଅଛି । ପୂଜ୍ୟପାଦ ଶ୍ରୀଧରସ୍ୱାମୀ ମଧ୍ୟ ନିଜ ଟୀକାରେ ଏହି ଶ୍ଲୋକଟିକୁ 'ସର୍ବଶାସ୍ତ୍ରସାର ପରମ ରହସ୍ୟ' ବୋଲି କହି ଅଛନ୍ତି । ଏଥିରେ ଯେଉଁ ପାଞ୍ଚଗୋଟି ତତ୍ତ୍ୱ ଅଛି, ତାହା ଏଠାରେ ସଂକ୍ଷେପରେ ଆଲୋଚନା କରାଯାଉଅଛି । ଏହିଗୁଡ଼ିକହିଁ ଭକ୍ତର ଲକ୍ଷଣ ତତ୍ତ୍ୱ:—

ପ୍ରଥମତଃ କୁହା ଯାଇଅଛି 'ମତ୍‌କର୍ମକୃତ୍', କର୍ମ କରିବା ମାନବ ଜୀବନ ଧାରଣର ଏକମାତ୍ର ଲକ୍ଷ୍ୟ । ଫଳ କାମନା ତ୍ୟାଗକରି ଯେତେବେଳେ ଯେଉଁ କର୍ମ କରିବା କର୍ତ୍ତବ୍ୟ ହେବ, ସେତେବେଳେ ତାହା ଈଶ୍ୱରାର୍ପଣ ବୁଦ୍ଧିରେ କରିବ । କର୍ମ ଈଶ୍ୱରଙ୍କର, ସେ କର୍ତ୍ତା ବା କାରୟିତା, ମୁଁ ତାଙ୍କର ଭୃତ୍ୟ, ତେଣୁ ତାଙ୍କର ପ୍ରୀତି ଉଦ୍ଦେଶ୍ୟରେ କର୍ମ କରୁଅଛି—ଏହି ଭାବରେ କର୍ମ କରିବା ଲୋକ 'ମତ୍‌କର୍ମକୃତ୍' ବା ଆମ୍ଭର କର୍ମକାରୀ । ଅନେକ ସମୟରେ 'ମୁଁ କରେ', 'ମୋର ଘର', ଇତ୍ୟାଦି ଅଭିମାନରେ କର୍ମକରି ଲୋକ କର୍ମର ବିଷମୟ ଫଳ ବନ୍ଧନରେ ପଡ଼େ, ତେଣୁ ଅହଂକାର ବା କର୍ତ୍ତୃତ୍ୱାଭିମାନ ତ୍ୟାଗକରି ନିଷ୍କାମ ବୁଦ୍ଧିରେ ଯଥାପ୍ରାପ୍ତ କର୍ମ କର୍ତ୍ତବ୍ୟ ଜ୍ଞାନରେ କରିବାକୁ ହେବ । କର୍ମ ତ୍ୟାଗ କରିବାକୁ ହେବନାହିଁ ।

କେହି କେହି କହନ୍ତି—ବ୍ରତ, ଉପବାସ, ମନ୍ତ୍ରଜପ, ଇଷ୍ଟଦେବ-ପୂଜା ପାଇଁ ପତ୍ର, ପୁଷ୍ପ, ଫଳାଦି ସଂଗ୍ରହ କରିବା ପ୍ରଭୃତି କର୍ମକାରୀଙ୍କୁ ଏଠାରେ 'ମତ୍‌କର୍ମକୃତ୍' ବୋଲି କୁହା ଯାଇଅଛି, ସେସବୁ ଅବସ୍ଥା ବିଶେଷରେ ମନୁଷ୍ୟର କର୍ତ୍ତବ୍ୟ ହୋଇପାରେ, ମାତ୍ର ଏଗୁଡ଼ିକ ପ୍ରଥମୋକ୍ତ ପ୍ରଶସ୍ତ ଅର୍ଥର ଅଙ୍ଗୀଭୂତ । ଏ ଉକ୍ତି କୌଣସି ନିର୍ଦ୍ଦିଷ୍ଟ ପନ୍ଥାଧାରୀ ବ୍ୟକ୍ତିଙ୍କ ଉଦ୍ଦେଶ୍ୟରେ କୁହା ଯାଇନାହିଁ, ସାଧାରଣ ମନୁଷ୍ୟଙ୍କ କର୍ମକୁ ଲକ୍ଷ୍ୟକରି ଏହା କୁହା ଯାଇଅଛି ।

ଦ୍ୱିତୀୟତଃ 'ମତ୍‌ପରମଃ' ଏହାର ଅର୍ଥ ଆମ୍ଭେହିଁ ଯାହାଙ୍କର ପରମ ଅର୍ଥାତ୍ ଶ୍ରେଷ୍ଠଗତି ବା ଉପାସ୍ୟ । ଅର୍ଥାତ୍ ଈଶ୍ୱରଙ୍କୁ ଲାଭ କରିବା ଯାହାଙ୍କର ଜୀବନ ଧାରଣର ଏକମାତ୍ର ଲକ୍ଷ୍ୟ, ତାହାଙ୍କୁହିଁ 'ମତ୍‌ପରମ' ବୋଲି କୁହା ଯାଇଅଛି । ତୃତୀୟତଃ—'ମଦ୍‌ଭକ୍ତଃ', ନିରନ୍ତର ମୋତେ ଭଜନାକାରୀ, ଅନ୍ୟ ଦେବତାଙ୍କ ପ୍ରତି ଆସକ୍ତି ତ୍ୟାଗକରି ଯେଉଁମାନେ ଏକାନ୍ତ ନିଷ୍ଠା ସହକାରେ ଆମ୍ଭର ଭଜନା କରନ୍ତି ବା ଉପାସନା କରନ୍ତି ସେହିମାନେହିଁ ମଦ୍‌ଭକ୍ତ । ଶିବ, ସୂର୍ଯ୍ୟ, ଦୁର୍ଗା, ଗଣପତି ପ୍ରଭୃତିଙ୍କ ନାମ ରୂପରେ ପାର୍ଥକ୍ୟ ଥାଇପାରେ, ମାତ୍ର ଏକମାତ୍ର ପରମେଶ୍ୱର ବିଭିନ୍ନ ନାମରୂପରେ ପ୍ରକାଶିତ ହୋଇ ଅଛନ୍ତି—ଏହି ଜ୍ଞାନରେ ଭଜନା କରିବାକୁ ହେବ । ଚତୁର୍ଥତଃ—'ସଙ୍ଗବର୍ଜ୍ଜିତଃ', ଆସକ୍ତି ସମସ୍ତ ଦୁଃଖର କାରଣ; ପୁତ୍ର, ସ୍ତ୍ରୀ, ଧନ, ସଂସାର ପ୍ରଭୃତି ଈଶ୍ୱରଙ୍କ ଦାନ, ପଦ୍ମପତ୍ରରେ ଜଳପରି ସେ ସବୁ ଭୋଗ କରିବାକୁ ହେବ; ଦାନ ଦାତାର ଇଚ୍ଛାଧୀନ, ଯେତେବେଳେ ସେ ଦତ୍ତବସ୍ତୁ ଫେରାଇନେବେ ସେତେବେଳେ ଗ୍ରହୀତା କେଉଁ ଯୁକ୍ତିବଳରେ ତହିଁରେ ନିଜ ଅଧିକାର ପ୍ରତିଷ୍ଠା କରିବ ? ଏପରି ଅବସ୍ଥାରେ ନିର୍ଲିପ୍ତଭାବରେ ବିଷୟ ସେବା କରିବା କର୍ତ୍ତବ୍ୟ; କବିବର ଯଥାର୍ଥରେ ଗାଇ ଅଛନ୍ତି :—

କ୍ୱଚିତ୍ ପୃଥ୍ୱୀଶଯ୍ୟଃ କ୍ୱଚିଦପିଚ ପର୍ଯ୍ୟଙ୍କଶୟନଃ,
କ୍ୱଚିଚ୍ଛାକାହାରଃ କ୍ୱଚିଦପିଚ ଶାଲ୍ୟୋଦନରୁଚିଃ ।
କ୍ୱଚିତ୍ କନ୍ଥାଧାରୀ କ୍ୱଚିଦପି ଚ ଦିବ୍ୟାମ୍ବରଧରୋ,
ମନସ୍ୱୀ କାର୍ଯ୍ୟାର୍ଥୀ ନଗଣୟତି ଦୁଃଖଂ ନ ଚ ସୁଖମ୍ ।

ଏହାହିଁ ସଙ୍କର୍ଷଣର ପ୍ରକୃଷ୍ଟ ଉଦା ।

ପଞ୍ଚମତଃ—ଯେଉଁଲୋକ କୌଣସି ପ୍ରାଣୀଠାରେ ଶତ୍ରୁଭାବ ନ ରଖନ୍ତି ସେ 'ସର୍ବଭୂତେଷୁ ନିର୍ବୈରଃ' । ଈଶ୍ୱର ସର୍ବଭୂତରେ ବିରାଜିତ ଅଛନ୍ତି—ଈଶ୍ୱରବିଶ୍ୱାସୀଙ୍କ ପକ୍ଷରେ ଏପରି ସମତ୍ୱ ଜ୍ଞାନର ଆବଶ୍ୟକତା ୬ଷ୍ଠ ଅଧ୍ୟାୟର ୩୦ ଶ ଓ ୩୧ ଶ ଶ୍ଲୋକରେ ଏବଂ ଗୀତାର ଅନ୍ୟ ଅନେକ ସ୍ଥାନରେ କୁହାଯାଇଅଛି । କୌଣସି ପ୍ରାଣୀକୁ ହିଂସା କଲେ ବା କୌଣସି ପ୍ରାଣୀଠାରେ ବୈରଭାବ ପୋଷଣ କଲେ ପ୍ରକୃତରେ ଈଶ୍ୱର ବିଶ୍ୱାସରେ ବାଧା ଆସେ, ତେଣୁ ନିର୍ବୈର ଲୋକ ଈଶ୍ୱରଙ୍କୁ ପାଇ ଥାଏ ।

ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଯୁଦ୍ଧ କରିବା ପାଇଁ ଗୀତାରେ ବାରଂବାର ଉତ୍ସାହିତ କରି ଅଛନ୍ତି । ଏପରି ଅବସ୍ଥାରେ 'ନିର୍ବୈର' ହେବାକୁ କିପରି ଉପଦେଶ ଦେଲେ ? କର୍ତ୍ତବ୍ୟ ଜ୍ଞାନରେ ବା ଈଶ୍ୱରୀ ପ୍ରେରଣାରେ ଯେଉଁ ହିଂସା କରାଯାଏ ତାହା ବୈର ନୁହେ । ହିଂସାପ୍ରଣୋଦିତ ହୋଇ ରାଜ୍ୟ ଧନ ଗ୍ରହଣ କାମନାରେ ଯେଉଁ ଯୁଦ୍ଧ କରାଯାଏ, ତାହାହିଁ ବୈରଭାବ । ଆତତାୟୀକୁ ହତ୍ୟା କରିବା ଦ୍ୱାରା ପାପ ହୁଏ ନାହିଁ—ଏହା ଧର୍ମ ଶାସ୍ତ୍ରର ଉପଦେଶ, ଏପରି ନ ହେଲେ ସୃଷ୍ଟି ରକ୍ଷା ହେବ ନାହିଁ । ତେଣୁ ବୁଝା ଯାଉଅଛି ଏଠାରେ ନିର୍ବୈର ଶବ୍ଦ ନିଷ୍କାରଣ ବୈରଯୁକ୍ତ ଅର୍ଥରେ ପ୍ରଯୁକ୍ତ ହୋଇଅଛି ।

## ଏକାଦଶ ଅଧ୍ୟାୟର ସାରସଂକଳନ

କାବ୍ୟ ଦୃଷ୍ଟିରେ ଗୀତାର ପ୍ରଥମ ଅଧ୍ୟାୟଟି କାରୁଣ୍ୟ ବା କରୁଣ ରସର ଉତ୍ସ । ଅର୍ଜୁନଙ୍କ ବିଷାଦ ପଢ଼ିଲେ କେଉଁଲୋକର ଚକ୍ଷୁ ଲୋତକ ପୂର୍ଣ୍ଣ ନ ହୁଏ ? ଏହି ଏକାଦଶ ଅଧ୍ୟାୟଟି ଗୀତା ଶାସ୍ତ୍ରରେ ସେହିପରି ଶାନ୍ତ ରସର ଗୋଟିଏ ଭଣ୍ଡାର । ଏକନିଷ୍ଠ ଭକ୍ତର ପ୍ରାର୍ଥନାରେ ଭକ୍ତବତ୍ସଳ କିପରି ସ୍ୱୀୟ ପରମୈଶ୍ୱର୍ଯ୍ୟ ପ୍ରଦର୍ଶନ କରନ୍ତି, ତାହାହିଁ ଏ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । ଅଦ୍ୱୈତ ବ୍ରହ୍ମଜ୍ଞାନ କହ, ନିଷ୍କାମ କର୍ମଯୋଗ କହ, ଚିତ୍ତବୃତ୍ତି ନିରୋଧରୂପ ନିର୍ବିକଳ୍ପ ସମାଧି କହ—ଭକ୍ତି ତୁଳନାରେ ସେ ସବୁ ଯେ ତୁଚ୍ଛ ତାହାହିଁ ଏ ଅଧ୍ୟାୟରେ ପ୍ରତିପାଦିତ ବିଷୟ । ଅବଶ୍ୟ ମର୍ତ୍ତ୍ୟ ମାନବର ଚର୍ମ ଚକ୍ଷୁରେ ଈଶ୍ୱରଙ୍କ ବିଭୂତି ଦେଖାଯାଏ ନାହିଁ, ସେଥିପାଇଁ ଦିବ୍ୟଚକ୍ଷୁ ଲୋଡ଼ା, ଭକ୍ତବତ୍ସଳ ଯଥା କାଳରେ ଶରଣାଗତ ଭକ୍ତକୁ ତା ମଧ୍ୟ ପ୍ରଦାନ କରନ୍ତି ।

ଦଶମ ଅଧ୍ୟାୟରେ ଭକ୍ତର ଅନୁରୋଧରେ ଭଗବାନ୍ ନିଜର ମହତ୍କୃଷ୍ଟ୍ୟ-ମାନ ବ୍ୟକ୍ତ ବିଭବର ବର୍ଣ୍ଣନା କରି ଶେଷରେ କହିଥିଲେ, ଆମ୍ଭେ ଏହି ବିଶ୍ୱ-ବ୍ରହ୍ମାଣ୍ଡକୁ ବ୍ୟାପି ରହିଅଛୁଁ, ଏହି ଜଗତ୍ ଆମ୍ଭର ଏକାଂଶରେ ଅବସ୍ଥିତ । ଏହା ଶୁଣି ଭଗବାନଙ୍କର ବିଶ୍ୱବ୍ୟାପୀ ରୂପ ଦେଖିବାକୁ ଅର୍ଜୁନଙ୍କର କୌତୂହଳ ଜାତ ହେଲା । ଶେଷରେ ସେ କହିଲେ, ପ୍ରଭୁ, ଯଦି ମୁଁ ସେ ରୂପ ଦେଖିବାର ଉପଯୁକ୍ତ ପାତ୍ର ବୋଲି ତୁମେ ମନେ କର ତେବେ ମୋତେ ତାହା ଦେଖାଅ, ଭକ୍ତର ପ୍ରାର୍ଥନା ଗୃହୀତ ହେଲା, ପ୍ରଭୁ ତାଙ୍କୁ ଦିବ୍ୟ ଦୃଷ୍ଟି ଦେଲେ ଓ ବିଶ୍ୱବ୍ରହ୍ମାଣ୍ଡ ବ୍ୟାପୀ ରୂପ ପ୍ରଦର୍ଶନ କଲେ । ସଞ୍ଜୟ ସେ ରୂପର ବର୍ଣ୍ଣନା କରି ଅଛନ୍ତି—କି ବିଚିତ୍ର ସେ ରୂପ ! ଅନନ୍ତ ମୁଖ, ଅନନ୍ତ ବାହୁ, ଅନନ୍ତ ଉଦର ଯୁକ୍ତ, ସହସ୍ର ସୂର୍ଯ୍ୟଙ୍କ ଦୀପ୍ତିରେ ଭାସ୍ୱର, ବିଶାଳ ଦନ୍ତାବଳୀରେ ଭୟଙ୍କର, ଚକ୍ଷୁରେ ସୂର୍ଯ୍ୟ ଚନ୍ଦ୍ରଙ୍କ ଦ୍ୟୁତି । କେତେ ସିଦ୍ଧ, ଗନ୍ଧର୍ବ, ଯକ୍ଷ, ରାକ୍ଷସ, ସିଦ୍ଧତପା ମୁନି, ଋଷି, କେତେ ନଦୀ, ପର୍ବତ, କାନ୍ତାର ସେହି ଉଦର ମଧ୍ୟରେ ବିଦ୍ୟମାନ । ସେହି ସହସ୍ରସୂର୍ଯ୍ୟଦୀପ୍ତିମୟ ଶରୀର ପୁଣି ଦିବ୍ୟମାଲ୍ୟଧର ଓ ଦିବ୍ୟ ଗନ୍ଧର ଅନୁଲେପନରେ ସୁଗନ୍ଧ ପୂର୍ଣ୍ଣ । କେବଳ ସେତିକି ନୁହେଁ, ଭୂତ, ଭବିଷ୍ୟତ୍, ବର୍ତ୍ତମାନ କାଳର ଘଟଣାବଳୀ ସେହି ବିଶାଳ ଶରୀରରେ ପ୍ରତ୍ୟକ୍ଷ ପରି-ଦୃଶ୍ୟମାନ । ଯେଉଁ ପ୍ରଳୟଙ୍କର ମହାଯୁଦ୍ଧପାଇଁ ସମ୍ମୁଖରେ ଅଷ୍ଟାଦଶ ଅକ୍ଷୌହିଣୀ ସୈନ୍ୟ ଅସ୍ତ୍ର ଶସ୍ତ୍ରରେ ସୁସଜ୍ଜିତ, ତାହାର ଭବିଷ୍ୟତ୍ ଦୃଶ୍ୟ ମଧ୍ୟ ତହିଁରେ ପରିସ୍ଫୁଟ । ଅର୍ଜୁନ ଦେଖିଲେ ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଜୟଦ୍ରଥପ୍ରମୁଖ ଯୁଦ୍ଧରେ ସମବେତ ଅସଂଖ୍ୟ ଯୋଦ୍ଧା ଜ୍ୱଳନ୍ତ ଅଗ୍ନି ଆଡ଼କୁ ଧାବମାନ ହେଉଥିବା ପତଙ୍ଗକୁଳପରି ସେ ବିଶ୍ୱରୂପ ମଧ୍ୟରେ ଅତିବେଗରେ ପ୍ରବେଶ କରୁଅଛନ୍ତି , ବିଶ୍ୱରୂପ ମଧ୍ୟରେ ଏ ସମସ୍ତ ଦୃଶ୍ୟ ବିଶେଷତଃ କୁରୁକ୍ଷେତ୍ର ଯୁଦ୍ଧର ଭବିଷ୍ୟ ଘଟଣା-ଜାଲ ଦେଖି ଅର୍ଜୁନ ଭୟରେ ବ୍ୟାକୁଳ ହୋଇ ଗଲେ, ତାଙ୍କର ଆତ୍ମଜ୍ଞାନ ନଷ୍ଟ ହୋଇଗଲା; ଅର୍ଜୁନ ମନୁଷ୍ୟ, ଭୟଙ୍କର ଅତ୍ୟଦ୍ଭୁତ, ଅଦୃଷ୍ଟପୂର୍ବ ରୂପ ଦେଖି ସେ ବିସ୍ମୟରେ ସ୍ତବ୍ଧ ହୋଇଗଲେ ଏବଂ ଥରି ଥରି ଗଦ୍ ଗଦ୍ ସ୍ୱରରେ କହିଲେ—ପ୍ରଭୁ, ତୁମେ କିଏ ମତେ କହ । ତୁମ୍ଭର ଏ ସଂହାର ମୂର୍ତ୍ତି ଦେଖି ମୁଁ ଅବସନ୍ନ ହୋଇଯାଉ ଅଛି, ମୋର ଦିଗ୍‌ବିଦିଗ୍ ଜ୍ଞାନ ନାହିଁ, ମୋତେ କିଛି ସୁଖ ଲାଗୁନାହିଁ । ଏହା ଶୁଣି ଭଗବାନ୍ କହିଲେ, ‘ଅର୍ଜୁନ, ଆମ୍ଭେ ଏପାଣ୍ଡର ମହାକାଳ ରୂପେ ଲୋକ ସଂହାର କରିବାରେ ପ୍ରବୃତ୍ତ ହୋଇଅଛୁଁ, ତୁମ୍ଭେ ଯୁଦ୍ଧ ନ କଲେ ମଧ୍ୟ ଏଠାରେ ଉପସ୍ଥିତ ଯୋଦ୍ଧାମାନଙ୍କ ମଧ୍ୟରୁ କେହି ହେଲେ ଜୀବିତ ରହିବେ ନାହିଁ । ଆମ୍ଭେ କାଳରୂପରେ ସମସ୍ତଙ୍କୁ ଆଗରୁ ମାରି ସାରିଅଛୁଁ, ତୁମ୍ଭେ ନିମିତ୍ତ ମାତ୍ର ହେବ ।’

ଏହିସବୁ ଶୁଣି ଅର୍ଜୁନ ପୁନର୍ବାର ଭଗବାନଙ୍କ ପୁରତରେ ସ୍ତବ କରି କହିଲେ—'ପ୍ରଭୁ, ମୁଁ ତୁମ୍ଭକୁ ସଖା ବୋଲି ମନେ କରି କେତେ ପ୍ରକାରେ ପରିହାସ କରିଅଛି, ତୁମ୍ଭ ମହିମା ଜାଣି ନ ପାରି କେତେ ପ୍ରକାରେ ତୁମ୍ଭର ଅସମ୍ମାନ କରିଅଛି, ମୋତେ କ୍ଷମାଦିଅ, ମୁଁ ତୁମ୍ଭର ଏ ଭୀଷଣ ଭୟଙ୍କର ରୂପ ଦେଖି ବର୍ତ୍ତମାନ ପ୍ରକୃତିସ୍ଥ ନୁହେଁ, ପୂର୍ବ ସୌମ୍ୟ ରୂପରେ ମୋ ଆଗରେ ଆବିର୍ଭୂତ ହୁଅ, ହେ ଦେବେଶ, ପ୍ରସନ୍ନ ହୁଅ' ।

ଭକ୍ତବାଞ୍ଛାକଳ୍ପତରୁ ଭକ୍ତର ପ୍ରାର୍ଥନାରେ ପୂର୍ବରୂପ ଧାରଣ କଲେ, ଏବଂ କହିଲେ—ଅର୍ଜୁନ, ଆମ୍ଭର ଏ ରୂପ ଦର୍ଶନ ଦେବତାମାନଙ୍କ ପକ୍ଷରେ ମଧ୍ୟ ଦୁର୍ଲଭ, ଯେଉଁମାନେ ଆମ୍ଭର ଏକନିଷ୍ଠ ଉପାସକ, ସେହିମାନେହିଁ ଏହା ଦେଖନ୍ତି; ଯେଉଁମାନଙ୍କର ସମସ୍ତ କର୍ମ ଆମ୍ଭ ପ୍ରୀତି ଉଦ୍ଦେଶ୍ୟରେ ଅନୁଷ୍ଠିତ ହୁଏ ଏବଂ ଯେଉଁମାନେ ସର୍ବଭୂତରେ ନିର୍ବୈର, ସେହିମାନେହିଁ ଆମ୍ଭର ଅନୁଗ୍ରହ ଲାଭ କରନ୍ତି ।

ଏଥିରୁ ବୁଝା ଯାଉଅଛି ଅକର୍ମୀ ହୋଇ ଜପି ବସି 'କୃଷ୍ଣ, କୃଷ୍ଣ' ବା 'ରାମ, ରାମ' ଉଚ୍ଚାରଣ କରିବା ଭକ୍ତର ଲକ୍ଷଣ ନୁହେ । ନିଷ୍କାମ ବୁଦ୍ଧିରେ ସମସ୍ତ କର୍ମ ଉତ୍ସାହ ସହକାରେ କରିବାହିଁ ପ୍ରକୃତ ଭକ୍ତି ।

ଏ ଅଧ୍ୟାୟର ସ୍ତବ ଏପରି ଭାବଯୁକ୍ତ, ପ୍ରାଣସ୍ପର୍ଶୀ, ଉଦ୍ଦୀପକ ଓ ଚିତ୍ତାକର୍ଷକ ଯେ ସଂସ୍କୃତ ଭିନ୍ନ ଅନ୍ୟ ଭାଷାରେ ତାହା ସହଜରେ ପ୍ରକାଶ କରି ହେବ ନାହିଁ । ଏହି ବିଶ୍ୱରୂପ ଦର୍ଶନ ଅନୁକରଣରେ ଅନ୍ୟ କେତେକ ଗ୍ରନ୍ଥରେ ଏହିପରି ଯେଉଁ ବର୍ଣ୍ଣନା ଦେଖାଯାଏ, ତାହା ଏହାର ପ୍ରତିଚ୍ଛାୟା ମାତ୍ର । ବେଦାନ୍ତ ଦର୍ଶନ ମତରେ 'ସର୍ବଂ ଖଲ୍ୱିଦଂ ବ୍ରହ୍ମ'—ଏ ସତ୍ୟ ଉପରେ ଏ ବିଶ୍ୱରୂପର ତତ୍ତ୍ୱ ସୁପ୍ରତିଷ୍ଠିତ ହୋଇଅଛି ।

ସାଧାରଣତଃ ଗୀତାର ଶ୍ଳୋକ ସମୂହ ଅନୁଷ୍ଟୁଭ୍ ବୃତ୍ତରେ ରଚିତ, ମାତ୍ର ଏ ଅଧ୍ୟାୟର ୧୫ଶ ଠାରୁ ୫୦ମ ଶ୍ଳୋକ ଅର୍ଥାତ୍ ବିଶ୍ୱରୂପ ବର୍ଣ୍ଣନା ଆରମ୍ଭରୁ ଶେଷଯାଏ ୩୬ ଟି ଶ୍ଳୋକ ସ୍ୱତନ୍ତ୍ର ଏକାଦଶ ଅକ୍ଷରବିଶିଷ୍ଟ ଅନ୍ୟ ଗୋଟିଏ ଛନ୍ଦ ବା ବୃତ୍ତରେ ରଚିତ । ଦ୍ୱିତୀୟ ଅଧ୍ୟାୟର ୫ମ ରୁ ୮ମ, ୨୦ଶ, ୨୨ଶ, ୨୯ଶ ଶ୍ଳୋକ ଏବଂ ୭୦ମ ଶ୍ଳୋକ, ଏବଂ ଅଷ୍ଟମ ଅଧ୍ୟାୟର ୯ମ, ୧୦ମ, ୧୧ଶ ଓ ୨୮ଶ ଶ୍ଳୋକ, ନବମ ଅଧ୍ୟାୟର ୨୦ଶ ଓ ୨୧ଶ ଶ୍ଳୋକ, ପଞ୍ଚଦଶ ଅଧ୍ୟାୟର ୨ୟ ଠାରୁ ୫ମ ଓ ୧୫ଶ ଶ୍ଳୋକର ଛନ୍ଦ ଏହି ବିଶ୍ୱରୂପ ବର୍ଣ୍ଣନା ଛନ୍ଦର ଅନୁରୂପ ଏକାଦଶାକ୍ଷରବିଶିଷ୍ଟ; ପରବର୍ତ୍ତୀ କାଳର କାଳିଦାସ ପ୍ରମୁଖ କବିମାନେ ଏକାଦଶ ଅକ୍ଷର ବିଶିଷ୍ଟ ଯେଉଁ ଇନ୍ଦ୍ରବଜ୍ରା, ଉପେନ୍ଦ୍ରବଜ୍ରା, ଦୋଧକ, ଶାଳିନୀ-ପ୍ରଭୃତି ବୃତ୍ତରେ ଶ୍ଳୋକମାନ ଲେଖି ଅଛନ୍ତି ସେ ସବୁର ଗଣ ନିୟମ ବା ଯତିପାତ [illegible] ଏ ସବୁ ଗୀତୋକ୍ତ ଶ୍ଳୋକରେ ନାହିଁ, ଏ ସବୁରେ ବୈଦିକ ତ୍ରିଷ୍ଟୁପ୍ ବୃତ୍ତର ଅନୁକରଣ କରିଯାଇ ଅଛି ।

---

# ଦ୍ୱାଦଶୋଽଧ୍ୟାୟଃ

## ଭକ୍ତିଯୋଗଃ

### ଅର୍ଜୁନ ଉବାଚ

ଏବଂ ସତତଯୁକ୍ତା ଯେ ଭକ୍ତାସ୍ତ୍ୱାଂ ପର୍ଯ୍ୟୁପାସତେ
ଯେ ଚାପ୍ୟକ୍ଷରମବ୍ୟକ୍ତଂ ତେଷାଂ କେ ଯୋଗବିତ୍ତମାଃ ॥ ୧ ॥

୧ । ଅନ୍ୱୟ ଦୀପିକା—ଅର୍ଜୁନ ଉବାଚ ( ଅର୍ଜୁନ କହିଲେ ), ଏବଂ ( ଏହିପରି ) ସତତଯୁକ୍ତାଃ ( ସର୍ବଦା ତ୍ୱଦ୍‌ଗତଚିତ୍ତ ହୋଇ ) ଯେ ଭକ୍ତାଃ ( ଯେଉଁ ଭକ୍ତମାନେ ) ତ୍ୱାଂ ( ତୁମ୍ଭଙ୍କୁ ) ପର୍ଯ୍ୟୁପାସତେ ( ଉପାସନା କରନ୍ତି ), ଯେ ଚ ଅପି ( ଏବଂ ଯେଉଁମାନେ ) ଅବ୍ୟକ୍ତମ୍ ଅକ୍ଷରମ୍ ( ଅବ୍ୟକ୍ତ ଅକ୍ଷର ବ୍ରହ୍ମଙ୍କୁ ) [ ଧ୍ୟାନ କରନ୍ତି ], ତେଷାଂ ( ସେମାନଙ୍କ ମଧ୍ୟରେ ) କେ ( କେଉଁମାନେ ) ଯୋଗବିତ୍ତମାଃ ( ଶ୍ରେଷ୍ଠ ଉପାସକ ) ।

ଅନୁବାଦ—ଅର୍ଜୁନ କହିଲେ, ଏହିପରି ( ଏକାଦଶ ଅଧ୍ୟାୟର ଶେଷ ଶ୍ଳୋକ ବର୍ଣ୍ଣନା ଅନୁରୂପ ) ସର୍ବଦା ତ୍ୱଦ୍‌ଗତ ଚିତ୍ତ ହୋଇ ଯେଉଁ ଭକ୍ତମାନେ ତୁମ୍ଭର ଉପାସନା କରନ୍ତି ଏବଂ ଯେଉଁମାନେ ତୁମ୍ଭର ଅବ୍ୟକ୍ତ ଅକ୍ଷର ବ୍ରହ୍ମରୂପର ଧ୍ୟାନ କରନ୍ତି, ସେ ଉଭୟ ମଧ୍ୟରେ ଶ୍ରେଷ୍ଠ ସାଧକ କେଉଁମାନେ ?

ସୁବୋଧିନୀ ଟୀକା—

ନିର୍ଗୁଣୋପାସନସ୍ୟୈବଂ ସଗୁଣୋପାସନସ୍ୟ ଚ,
ଶ୍ରେୟଃ କତରଦତ୍ୟେତନ୍ନିର୍ଣ୍ଣେତୁଂ ଦ୍ୱାଦଶୋଦ୍ୟମଃ ।

ପୂର୍ବାଧ୍ୟାୟାନ୍ତେ ମତ୍‌କର୍ମକୃନ୍ମତ୍‌ପରମ ଇତ୍ୟେବଂ ଭକ୍ତନିଷ୍ଠସ୍ୟ ଶ୍ରେଷ୍ଠତ୍ୱମୁକ୍ତମ୍ । ତୈତ୍ରେୟୁ ପ୍ରଭୃତ୍ୟାକାଙ୍କ୍ଷାତ୍ୟାଦନା ଚ ତତ୍ର ତତ୍ର ତସ୍ୟୈବ ଶ୍ରେଷ୍ଠତ୍ୱଂ କୀର୍ତ୍ତିତମ୍ । ତଥା ତେଷାଂ ଜ୍ଞାନିନାମତ୍ୟର୍ଥଂ ଏକଭକ୍ତି ର୍ବିଶିଷ୍ୟତ ଇତ୍ୟାଦନା— ସର୍ବଂ ଜ୍ଞାନପ୍ଲବେନୈବ ବୃଜିନଂ ସନ୍ତରିଷ୍ୟସୀତ୍ୟାଦନାଚ ଜ୍ଞାନନିଷ୍ଠସ୍ୟ ଶ୍ରେଷ୍ଠତ୍ୱମୁକ୍ତମ୍ । ଏବମୁଭୟୋଃ ଶ୍ରେଷ୍ଠ୍ୟେଽପି ବିଶେଷଜିଜ୍ଞାସୟା ଶ୍ରୀଭଗବନ୍ତଂ ପ୍ରତ୍ୟର୍ଜୁନ ଉବାଚ । ଏବମିତି । ଏବଂ ସର୍ବକର୍ମାର୍ପଣାଦିନା ସତତଯୁକ୍ତାସ୍ତ୍ୱନ୍ନିଷ୍ଠାଃ ସନ୍ତୋ ଯେ ଭକ୍ତାସ୍ତ୍ୱାଂ ବିଶ୍ୱରୂପଂ ସର୍ବଜ୍ଞଂ ସର୍ବଶକ୍ତଂ ପର୍ଯ୍ୟୁପାସତେ ଧ୍ୟାୟନ୍ତି । ଯେ ଚାପ୍ୟକ୍ଷରଂ ବ୍ରହ୍ମାବ୍ୟକ୍ତଂ ନିର୍ବିଶେଷ ମୁପାସତେ । ତେଷାମୁଭୟେଷାଂ ମଧ୍ୟେ କେଽତିଶୟେନ ଯୋଗବିଦୋଽତିଶ୍ରେଷ୍ଠା ଇତ୍ୟର୍ଥଃ ।

ଶ୍ରୀ ଭଗବାନୁବାଚ

ମୟ୍ୟାବେଶ୍ୟ ମନୋ ଯେ ମାଂ ନିତ୍ୟଯୁକ୍ତା ଉପାସତେ ।
ଶ୍ରଦ୍ଧୟା ପରୟୋପେତାସ୍ତେ ମେ ଯୁକ୍ତତମା ମତାଃ । ୨ ।

ବକ୍ତବ୍ୟ—ଏକାଦଶ ଅଧ୍ୟାୟର ଶେଷ ଶ୍ଳୋକରେ ଭଗବାନ୍ କହିଲେ 'ମତ୍କର୍ମକୃନ୍ମତ୍ପରମୋ ମଦ୍‌ଭକ୍ତଃ ସଙ୍ଗବର୍ଜିତଃ, ନିର୍ବୈରଃ ସର୍ବଭୂତେଷୁ ଯଃ ସ ମାମେତି ପାଣ୍ଡବ' ଏବଂ ନବମ ଅଧ୍ୟାୟ ୩୧ଶ ଶ୍ଳୋକର ଶେଷାର୍ଦ୍ଧରେ କହିଥିଲେ—'କୌନ୍ତେୟ ପ୍ରତିଜାନୀହି ନମେ ଭକ୍ତଃ ପ୍ରଣଶ୍ୟତି ।' ଏହାଦ୍ୱାରା ଭକ୍ତିନିଷ୍ଠ ଲୋକର ଶ୍ରେଷ୍ଠତ୍ୱ କୁହା ଯାଇଅଛି । ତତ୍ପୂର୍ବେ ୭ମ ଅଧ୍ୟାୟର ୧୯ଶ ଶ୍ଳୋକରେ 'ବହୂନାଂ ଜନ୍ମନା ମନ୍ତେ ଜ୍ଞାନବାନ୍ ମାଂ ପ୍ରପଦ୍ୟତେ, ବାସୁଦେବଃ ସର୍ବମିତି ସ ମହାତ୍ମା ସୁଦୁର୍ଲଭଃ' ଓ ୨୪ଶ ଶ୍ଳୋକରେ 'ଅବ୍ୟକ୍ତୋଽକ୍ଷର ଇତ୍ୟୁକ୍ତସ୍ତମାହୁଃ ପରମାଂ ଗତିଂ' ଏ ସବୁ ସ୍ଥଳରେ ଅବ୍ୟକ୍ତୋପାସକ ଜ୍ଞାନୀଙ୍କର ଶ୍ରେଷ୍ଠତ୍ୱ କୁହା ଯାଇଥିଲା । ଏହିପରି ସଗୁଣ ଈଶ୍ୱରଙ୍କ ଉପାସକ ଓ ନିର୍ଗୁଣ ବ୍ରହ୍ମଙ୍କ ଉପାସକ—ଏହି ଦୁଇ ପ୍ରକାର ଉପାସକଙ୍କ ମଧ୍ୟରେ କେଉଁମାନେ ଶ୍ରେଷ୍ଠ, ଏହା ଜାଣିବା ଅର୍ଜ୍ଜୁନଙ୍କ ପ୍ରଶ୍ନର ଉଦ୍ଦେଶ୍ୟ ।

ଏ ଶ୍ଳୋକରେ 'ଯୋଗବିତ୍ତମାଃ' ପଦରେ ଯୋଗ ଶବ୍ଦର ଅର୍ଥ ଭଗବତ୍-ପ୍ରାପ୍ତିର ଉପାୟ, ସେ ଉପାୟ ଯେ ଜାଣନ୍ତି ସେ ଯୋଗବିଦ୍ ଅର୍ଥାତ୍ ସାଧକ । ସେମାନଙ୍କ ମଧ୍ୟରେ ଯେଉଁମାନେ ଶ୍ରେଷ୍ଠ ସେମାନେ 'ଯୋଗବିତ୍ତମାଃ' ।

୨ । ଅନ୍ୱୟ ଦୀପିକା—ଶ୍ରୀ ଭଗବାନ୍ ଉବାଚ ( ଶ୍ରୀ ଭଗବାନ୍ କହିଲେ ) । ମୟି ( ଅମ୍ଭଠାରେ ) ମନଃ ଆବେଶ୍ୟ ( ମନକୁ ଏକାଗ୍ର କରି ) ନିତ୍ୟଯୁକ୍ତାଃ ( ନିତ୍ୟଯୁକ୍ତ ହୋଇ ) ପରୟା ଶ୍ରଦ୍ଧୟା ଉପେତାଃ ( ଏକାନ୍ତ ଶ୍ରଦ୍ଧା ସହକାରେ ) ଯେ ( ଯେଉଁମାନେ ) ମାମ୍ ( ଅମ୍ଭକୁ ) ଉପାସତେ ( ଉପାସନା କରନ୍ତି ) ତେ ( ସେମାନେ ହିଁ ) ଯୁକ୍ତତମାଃ ମତାଃ ( ଶ୍ରେଷ୍ଠ ସାଧକ, ଏହା ଅମ୍ଭର ମତ ) ।

ଅନୁବାଦ—ଶ୍ରୀ ଭଗବାନ୍ କହିଲେ—ଯେଉଁମାନେ ଅମ୍ଭଠାରେ ମନୋନିବେଶ କରି ନିତ୍ୟଯୁକ୍ତ ହୋଇ ପରମ ଶ୍ରଦ୍ଧାସହକାରେ ଅମ୍ଭର ଉପାସନା କରନ୍ତି, ଅମ ମତରେ ସେହିମାନେହିଁ ଶ୍ରେଷ୍ଠ ସାଧକ ।

ସୁବୋଧିନୀ ଟୀକା—ତତ୍ର ପ୍ରଥମଃ ଶ୍ରେଷ୍ଠ ଇତ୍ୟୁତ୍ତରଂ ଶ୍ରୀ ଭଗବାନୁବାଚ । ମୟୀତି । ମୟି ପରମେଶ୍ୱରେ ସର୍ବଜ୍ଞତ୍ୱାଦିଗୁଣବିଶିଷ୍ଟେ, ମନ ଆବେଶ୍ୟୈକାଗ୍ରଂକୃତ୍ୱା, ନିତ୍ୟଯୁକ୍ତା ମଦର୍ଥ କର୍ମାନୁଷ୍ଠାନାଦିନା ମନ୍ନିଷ୍ଠାଃ ସନ୍ତଃ ଶ୍ରେଷ୍ଠୟା ଶ୍ରଦ୍ଧୟା ଯୁକ୍ତା ଯେ ମାମୁପାସତେ ତେ ଯୁକ୍ତତମା ମମାଭିମତାଃ ।

ଯେ ତ୍ୱକ୍ଷରମନିର୍ଦ୍ଦେଶ୍ୟମବ୍ୟକ୍ତଂ ପର୍ଯ୍ୟୁପାସତେ ।
ସର୍ବତ୍ରଗମଚିନ୍ତ୍ୟଂ ଚ କୂଟସ୍ଥମଚଳଂ ଧ୍ରୁବମ୍ । ୩ ।

ସଂନିୟମ୍ୟେନ୍ଦ୍ରିୟଗ୍ରାମଂ ସର୍ବତ୍ର ସମବୁଦ୍ଧୟଃ ।
ତେ ପ୍ରାପ୍ନୁବନ୍ତି ମାମେବ ସର୍ବଭୂତହିତେ ରତାଃ । ୪ ।

ପ୍ରବୃତ୍ତି—ବ୍ୟକ୍ତ ଉପାସନା ବା ଭକ୍ତିମାର୍ଗ ଯେ ଶ୍ରେଷ୍ଠ ଏ ଶ୍ଳୋକରେ ଭଗବାନ୍ ତାହାହିଁ ସ୍ପଷ୍ଟରୂପେ ପ୍ରକାଶ କଲେ । ଉପାସ୍ୟ ମୂର୍ତ୍ତି ଯାହା ହୁଅନ୍ତୁ ନା କାହିଁକି ତାଙ୍କଠାରେ ବିଶ୍ୱବ୍ୟାପୀ ଏକ ପରମେଶ୍ୱରଙ୍କ ଭାବନା ରଖି ଯେଉଁ ଭକ୍ତ କରଯାଏ ତାହାହିଁ ବ୍ୟକ୍ତ ଉପାସନା । ଏଥିପାଇଁ ଏକାନ୍ତ ନିଷ୍ଠା, ପରମ ଶ୍ରଦ୍ଧା ଓ ନିରନ୍ତର ଭାବନା ଅବଶ୍ୟକ ।

୩ । ୪ । ଅନ୍ୱୟ ଦୀପିକା—ଯେ ତୁ ( କିନ୍ତୁ ଯେଉଁମାନେ ) ସର୍ବତ୍ର ସମବୁଦ୍ଧୟଃ ( ସବୁ ବିଷୟରେ ସମବୁଦ୍ଧି ସମ୍ପନ୍ନ ହୋଇ ) ସର୍ବଭୂତ-ହିତେ ରତାଃ ( ସମସ୍ତ ପ୍ରାଣୀଙ୍କ ମଙ୍ଗଳ କାର୍ଯ୍ୟରେ ଅଭିନିବିଷ୍ଟ ରହି ) ଇନ୍ଦ୍ରିୟ-ଗ୍ରାମଂ ( ଇନ୍ଦ୍ରିୟ ସମୂହକୁ ) ସଂନିୟମ୍ୟ ( ସମ୍ୟକ୍ ସଂଯତ କରି ) ଅନିର୍ଦ୍ଦେଶ୍ୟମ୍ ( ଅନିର୍ବଚନୀୟ ) ଅବ୍ୟକ୍ତଂ ( ଇନ୍ଦ୍ରିୟର ଅଗୋଚର ) ସର୍ବତ୍ରଗମ୍ ( ବିଶ୍ୱବ୍ୟାପୀ ) ଅଚିନ୍ତ୍ୟମ୍ ( ଅଚିନ୍ତନୀୟ ) କୂଟସ୍ଥଂ ( ମାୟା ପ୍ରପଞ୍ଚରେ ଅଚଳଭାବରେ ଅବସ୍ଥିତ ) ଅଚଳଂ ( ସ୍ଥିର ) ଧ୍ରୁବଂ ( ନିତ୍ୟ ) ଅକ୍ଷରଂ ( ନିର୍ଗୁଣ ବ୍ରହ୍ମଙ୍କୁ ) ପର୍ଯ୍ୟୁପାସତେ ( ଉପାସନା କରନ୍ତି ) ତେ ( ସେମାନେ ) ମାମ୍ ଏବ ( ଆମ୍ଭକୁହିଁ ) ପ୍ରାପ୍ନୁବନ୍ତି ( ପ୍ରାପ୍ତ ହୁଅନ୍ତି ) ।

ଅନୁବାଦ—କିନ୍ତୁ ଯେଉଁମାନେ ସବୁ ବିଷୟରେ ସମ ବୁଦ୍ଧିଯୁକ୍ତ ହୋଇ ଏବଂ ସବୁ ପ୍ରାଣୀଙ୍କ ହିତ ସାଧନରେ ଅଭିନିବିଷ୍ଟ ରହି ଇନ୍ଦ୍ରିୟମାନଙ୍କୁ ବିଷୟରୁ ପ୍ରତ୍ୟାହୃତ କରି ଅନିର୍ବଚନୀୟ, ଅବ୍ୟକ୍ତ, ସର୍ବବ୍ୟାପୀ, ଅଚିନ୍ତନୀୟ, ସର୍ବତ୍ର ଅଚଳ ଭାବରେ ଅବସ୍ଥିତ; ନିର୍ଗୁଣ ବ୍ରହ୍ମଙ୍କର ଉପାସନା କରନ୍ତି ସେମାନେ ମଧ୍ୟ ଆମ୍ଭକୁହିଁ ପ୍ରାପ୍ତ ହୁଅନ୍ତି ।

ସୁବୋଧିନୀ ଟୀକା—ତର୍ହି ଇତରେ କିଂ ନ ଶ୍ରେଷ୍ଠା ଇତି ? ଅତ ଆହ—ଯେତ୍ୱିତି ଦ୍ୱାଭ୍ୟାମ୍ । ଯେ ତ୍ୱକ୍ଷରଂ ପର୍ଯ୍ୟୁପାସତେ ଧ୍ୟାୟନ୍ତି ତେଽପି ମାମେବ ପ୍ରାପ୍ନୁବନ୍ତୀତି ଦ୍ୱୟୋରନ୍ୱୟଃ । ଅକ୍ଷରସ୍ୟ ଲକ୍ଷଣମ୍—ଅନିର୍ଦ୍ଦେଶ୍ୟ ମିତ୍ୟାଦି । ଅନିର୍ଦ୍ଦେଶ୍ୟତ୍ୱେନ ନିର୍ଦ୍ଦେଷ୍ଟୁମଶକ୍ୟମ୍ । ଯତୋଽବ୍ୟକ୍ତଂ ରୂପାଦିହୀନମ୍ । ସର୍ବତ୍ରଗଂ ସର୍ବବ୍ୟାପି । ଅବ୍ୟକ୍ତତ୍ୱାଦେବାଚିନ୍ତ୍ୟମ୍ । କୂଟସ୍ଥଂ— କୂଟେ ମାୟାପ୍ରପଞ୍ଚେଽଧିଷ୍ଠାନତ୍ୱେନାବସ୍ଥିତମ୍ । ଅଚଳଂ ସ୍ପନ୍ଦନରହିତମ୍— ଅତ ଏବ ଧ୍ରୁବଂ ନିତ୍ୟଂ ବୃଦ୍ଧ୍ୟାଦିରହିତମ୍ । ସ୍ପଷ୍ଟମନ୍ୟତ୍ ।

କ୍ଳେଶୋଽଧିକତରସ୍ତେଷାମବ୍ୟକ୍ତାସକ୍ତଚେତସାମ୍
ଅବ୍ୟକ୍ତା ହି ଗତିର୍ଦୁଃଖଂ ଦେହବଦ୍ଭିରବାପ୍ୟତେ । ୫ ।

ବିବୃତି—ଦ୍ୱିତୀୟ ଶ୍ଳୋକରେ ଭକ୍ତି ମାର୍ଗକୁ ଶ୍ରେଷ୍ଠ ବୋଲି କହି ଏହି ଦୁଇ ଶ୍ଳୋକରେ 'ତୁ ( କିନ୍ତୁ )' ଶବ୍ଦଦ୍ୱାରା ନିର୍ଗୁଣ ଉପାସନାକୁ ମଧ୍ୟ ଈଶ୍ୱର ପ୍ରାପ୍ତିର ଅନ୍ୟତର ସାଧନରୂପେ ନିର୍ଦ୍ଦେଶ କରିଅଛନ୍ତି । ଭକ୍ତିମାର୍ଗରେ ଯେପରି ନିଷ୍କାମ କର୍ମ କରିବାକୁ କହିଅଛନ୍ତି, ଏ ମାର୍ଗରେ ମଧ୍ୟ ସେହିପରି ସର୍ବ ପ୍ରାଣୀଙ୍କର ମଙ୍ଗଳ ସାଧନ କରିବା ପାଇଁ ଉପଦେଶ ଦେଇ ଅଛନ୍ତି । ମୋଟ କଥା—କି ସଗୁଣ ଉପାସକ, କି ନିର୍ଗୁଣ ଉପାସକ ଉଭୟେ ମୋକ୍ଷର ଅଧିକାରୀ । ପର ଶ୍ଳୋକରେ ମାର୍ଗ ଦୁଇଟିର ସୁଖକରତା ବିଷୟ କହିବେ ।

୫ । ଅନ୍ୱୟ ଦୀପିକା—ତେଷାଂ ( ସେହି ) ଅବ୍ୟକ୍ତାସକ୍ତଚେତସାଂ ( ଅବ୍ୟକ୍ତ ବ୍ରହ୍ମଙ୍କଠାରେ ଆସକ୍ତଚିତ୍ତ ସାଧକ ମାନଙ୍କର ) ଅଧିକତରଃ କ୍ଳେଶଃ ( ବିଶେଷ କଷ୍ଟ ହୁଏ ) । ହି ( କାରଣ ) ଦେହବଦ୍ଭିଃ ( ଦେହାଭିମାନୀ ଲୋକମାନଙ୍କ ଦ୍ୱାରା ) ଅବ୍ୟକ୍ତା ଗତିଃ ( ଅବ୍ୟକ୍ତ ବ୍ରହ୍ମ ବିଷୟକ ନିଷ୍ଠା ) ଦୁଃଖମ୍ ( ଦୁଃଖରେ ) ଅବାପ୍ୟତେ ( ଲବ୍ଧ ହୁଏ )

ଅନୁବାଦ—ଯେଉଁ ସାଧକମାନେ ଅବ୍ୟକ୍ତ ନିର୍ଗୁଣ ବ୍ରହ୍ମଙ୍କ ପ୍ରତି ଆସକ୍ତ ହୋଇ ଥାଆନ୍ତି ସେମାନଙ୍କର ସିଦ୍ଧି ଲାଭରେ ଅଧିକତର କଷ୍ଟ ହୁଏ । କାରଣ ଦେହଧାରୀମାନଙ୍କ ପକ୍ଷରେ ଅବ୍ୟକ୍ତ ବ୍ରହ୍ମ ବିଷୟକ ନିଷ୍ଠା ଦୁଃଖସାଧ୍ୟ ।

ସୁବୋଧିନୀ ଟୀକା—ନନ୍ୱ ତ ତେଽପି ତେତ୍ୱାମେବ ପ୍ରାପ୍ନୁବନ୍ତି ତର୍ହୀତରେଷାଂ ଯୁକ୍ତତମତ୍ୱଂ କୁତଃ—ଇତ୍ୟପେକ୍ଷାୟାଂ କ୍ଳେଶାକ୍ଳେଶକୃତଂ ବିଶେଷମାହ—କ୍ଳେଶ ଇତ୍ୟାଦିନା । ଅବ୍ୟକ୍ତେ ନିର୍ବିଶେଷେଽକ୍ଷରେ ଆସକ୍ତଂ ଚେତୋ ଯେଷାଂ ତେଷାଂ କ୍ଳେଶୋଽଧିକତରଃ । ହି ଯସ୍ମାଦବ୍ୟକ୍ତବିଷୟା ଗତିର୍ନିଷ୍ଠା ଦେହାଭିମାନିଭିର୍ଦୁଃଖଂ ଯଥା ଭବତ୍ୟେବମବାପ୍ୟତେ । ଦେହାଭିମାନିନାଂ ନିତ୍ୟଂ ପ୍ରତ୍ୟକ୍ ପ୍ରବଣତ୍ୱସ୍ୟ ଦୁଷ୍କରତ୍ୱାଦିତି ଭାବଃ ।

ବିବୃତି—ଦେହାଭିମାନୀ ଲୋକ ସହଜରେ ଅବ୍ୟକ୍ତ ନିର୍ଗୁଣ ବ୍ରହ୍ମବିଷୟକ ନିଷ୍ଠା ଲାଭକରି ପାରନ୍ତି ନାହିଁ । କାରଣ ଦେହାଭିମାନ ଥିବାଯାଏ ଅବ୍ୟକ୍ତ ନିର୍ଗୁଣ ବସ୍ତୁର ଧାରଣା କରିହୁଏ ନାହିଁ, ବହୁଦିନ ସାଧନା କଲେ ମନୁଷ୍ୟର ଦେହାଭିମାନ ଦୂର ହୁଏ ଏବଂ ଆତ୍ମନିଷ୍ଠା ଜାତହୁଏ । ଏପରି ଅବସ୍ଥା ନ ଆସିବା ଯାଏ ଅବ୍ୟକ୍ତ ବ୍ରହ୍ମୋପାସନାରେ ସିଦ୍ଧିଲାଭ ହୁଏ ନାହିଁ । ଏହି ହେତୁରୁ ନିର୍ଗୁଣ ଉପାସନା କଷ୍ଟ ସାଧ୍ୟ ।

ନବମ ଅଧ୍ୟାୟର ଦ୍ୱିତୀୟ ଶ୍ଳୋକରେ 'ସୁସୁଖଂ କର୍ତ୍ତୁମବ୍ୟୟମ୍' ବୋଲି ଉପାସନାକୁ ଯେଉଁ ଉପଦେଶ ଦେଇ ଅଛନ୍ତି, ତାହା ସେ ଭକ୍ତିମାର୍ଗର ଉପଦେଶ

ଯେ ତୁ ସର୍ବାଣି କର୍ମାଣି ମୟି ସନ୍ନ୍ୟସ୍ୟ ମତ୍ପରାଃ,
ଅନନ୍ୟେନୈବ ଯୋଗେନ ମାଂ ଧ୍ୟାୟନ୍ତ ଉପାସତେ । ୬ ।
ତେଷାମହଂ ସମୁଦ୍ଧର୍ତ୍ତା ମୃତ୍ୟୁସଂସାରସାଗରାତ୍,
ଭବାମି ନ ଚିରାତ୍ ପାର୍ଥ ମୟ୍ୟାବେଶିତଚେତସାମ୍ । ୭ ।

ଏହି ଶ୍ଳୋକଦ୍ୱାରା ତାହା ଦୃଢ଼ୀଭୂତ ହେଲା । ବ୍ୟକ୍ତ ଉପାସନା ବା ଭକ୍ତି ହିଁ ସେଠାରେ 'ରାଜବିଦ୍ୟା' ନାମରେ ଅଭିହିତ ହୋଇଅଛି ।

୬ । ୭ । ଅନ୍ୱୟ ଦୀପିକା—[ ହେ ] ପାର୍ଥ, ଯେତୁ ( କିନ୍ତୁ ଯେଉଁମାନେ ) ସର୍ବାଣି କର୍ମାଣି ( ସମସ୍ତ କର୍ମ ) ମୟି ସନ୍ନ୍ୟସ୍ୟ ( ଆମ୍ଭଠାରେ ସମର୍ପଣ କରି ) ମତ୍ପରାଃ ( ମତ୍‌ପରାୟଣ ହୋଇ ) ଅନନ୍ୟେନ ଏବ ଯୋଗେନ ( ଏକାନ୍ତ ଭକ୍ତି ଯୋଗରେ ) ମାଂ ଧ୍ୟାୟନ୍ତଃ ( ଆମ୍ଭଙ୍କୁ ଧ୍ୟାନକରି ) ଉପାସତେ ( ଉପାସନା କରନ୍ତି ), ମୟି ଆବେଶିତଚେତସାଂ ( ଆମ୍ଭଠାରେ ସମର୍ପିତ ଚିତ୍ତ ) ତେଷାଂ ( ସେମାନଙ୍କର ) ମୃତ୍ୟୁସଂସାରସାଗରାତ୍ ( ମୃତ୍ୟୁ-ସମାକୁଳ ସଂସାର ସମୁଦ୍ରରୁ ) ନ ଚିରାତ୍ ( ଶୀଘ୍ର ) ଅହଂ ( ଆମ୍ଭେ ) ସମୁଦ୍ଧର୍ତ୍ତା ( ଉଦ୍ଧାର କର୍ତ୍ତା ) ଭବାମି ( ହୋଇଥାଉଁ ) ।

ଅନୁବାଦ—କିନ୍ତୁ ହେ ପାର୍ଥ, ଯେଉଁମାନେ ସମସ୍ତ କର୍ମ ଆମ୍ଭଠାରେ ସମର୍ପଣ କରି ଓ ଏକମାତ୍ର ଆମ୍ଭଠାରେ ଚିତ୍ତ ଏକାଗ୍ର କରି ଏକାନ୍ତ ଭକ୍ତିଯୋଗରେ ଧ୍ୟାନକରିତ ହୋଇ ଆମ୍ଭର ଉପାସନାକରନ୍ତି, ଆମ୍ଭଠାରେ ସମର୍ପିତ ଚିତ୍ତ ସେହି ଭକ୍ତମାନଙ୍କୁ ଆମ୍ଭେ ଅଚିରାତ୍ ସଂସାର ସାଗରରୁ ଉଦ୍ଧାର କରିଥାଉଁ ।

ସୁବୋଧିନୀ ଟୀକା—ମଦ୍‌ଭକ୍ତାନାଂ ତୁ ମତ୍‌ପ୍ରସାଦାଦନାୟାସେନୈବ ସିଦ୍ଧି ର୍ଭବତୀତ୍ୟାହ ଯେ ତ୍ୱିତି ଦ୍ୱାଭ୍ୟାମ୍ । ଯେ ମୟି ପରମେଶ୍ୱରେ ସର୍ବାଣି କର୍ମାଣି ସନ୍ନ୍ୟସ୍ୟ ସମର୍ପ୍ୟ ମତ୍ପରା ଭୂତ୍ୱା ମାଂ ଧ୍ୟାୟନ୍ତଃ । ଅନନ୍ୟେନ ନାସ୍ତ୍ୟନ୍ୟଦାଲମ୍ବନଂ ଯସ୍ୟ ତେନୈବ ଏକାନ୍ତଭକ୍ତିଯୋଗେନୋପାସତ ଇତ୍ୟର୍ଥଃ ।

ତେଷାମିତି । ଏବଂ ମୟ୍ୟାବେଶିତଂ ଚେତୋ ଯୈସ୍ତେଷାଂ । ମୃତ୍ୟୁଯୁକ୍ତାତ୍ ସଂସାରସାଗରାଦହଂ ସମ୍ୟଗୁଦ୍ଧର୍ତ୍ତାଽଚିରେଣ ଭବାମି ।

ବିବୃତି—ନିର୍ଗୁଣ ବ୍ରହ୍ମୋପାସକମାନଙ୍କର ଅଧିକତର କ୍ଳେଶବିଷୟ ପୂର୍ବ ଶ୍ଳୋକରେ କହି ପକ୍ଷାନ୍ତରବୋଧକ 'ତୁ ( କିନ୍ତୁ )' ଶବ୍ଦଦ୍ୱାରା ପୁଣି ବ୍ୟକ୍ତୋପାସକ ଭକ୍ତମାନଙ୍କ ପକ୍ଷରେ ଈଶ୍ୱରପ୍ରାପ୍ତି ସହଜ ସାଧ୍ୟ ବୋଲି ଏ ଦୁଇଟି ଶ୍ଳୋକରେ କହୁଅଛନ୍ତି । ଭକ୍ତିରେ ଦୁଇଟି ବିଷୟ ପ୍ରତି ଲକ୍ଷ୍ୟ ରଖିବାକୁ ହୁଏ—ପ୍ରଥମତଃ ସମସ୍ତକର୍ମ ଉତ୍ସାହସହକାରେ କରି ଫଳ

ମୟ୍ୟେବ ମନ ଆଧତ୍ସ୍ୱ ମୟି ବୁଦ୍ଧିଂ ନିବେଶୟ
ନିବସିଷ୍ୟସି ମୟ୍ୟେବ ଅତ ଊର୍ଦ୍ଧ୍ୱଂ ନ ସଂଶୟଃ ।୮।

ଈଶ୍ୱରଙ୍କଠାରେ ସମର୍ପଣ କରିବା, ଦ୍ୱିତୀୟତଃ ଏକାଗ୍ର ଚିତ୍ତରେ ଭଗବାନଙ୍କର ଶରଣାପନ୍ନ ହୋଇ ଉପାସନା କରିବା । ଭକ୍ତି ଯୋଗରେ କର୍ମତ୍ୟାଗ କରିବାର ପ୍ରୟୋଜନ ନ ଥାଏ ।

୮ । ଅନ୍ୱୟ ଦୀପିକା—ମୟି ଏବ (ଆମ୍ଭଠାରେହିଁ) ମନଃ (ମନକୁ) ଆଧତ୍ସ୍ୱ (ସ୍ଥିରକର), ମୟି (ଆମ୍ଭଠାରେହିଁ) ବୁଦ୍ଧିଂ ନିବେଶୟ (ବୁଦ୍ଧିକୁ ସ୍ଥାପନ କର)। ଅତଃ ଊର୍ଦ୍ଧ୍ୱଂ (ଏହାପରେ ଅର୍ଥାତ୍ ଦେହାନ୍ତେ) ମୟି ଏବ (ଆମ୍ଭଠାରେହିଁ) ନିବସିଷ୍ୟସି (ବାସକରିବ); ସଂଶୟଃ ନ (ଏଥିରେ ସନ୍ଦେହ ନାହିଁ)।

ଅନୁବାଦ— ଆମ୍ଭଠାରେ ମନ ଓ ବୁଦ୍ଧିକୁ ସ୍ଥିର କରି ରଖ, ତାହାହେଲେ ମୃତ୍ୟୁପରେ ଆମ୍ଭଠାରେହିଁ ଅବସ୍ଥାନ କରିବ—ଏଥିରେ ସନ୍ଦେହ ନାହିଁ ।

ସୁବୋଧିନୀ ଟୀକା—ଯସ୍ମାଦେବଂ ତସ୍ମାତ୍—ମୟ୍ୟେବେତି, ମୟ୍ୟେବ ସଂକଳ୍ପବିକଳ୍ପାତ୍ମକଂ ମନଃ ଆଧତ୍ସ୍ୱ ସ୍ଥିରୀକୁରୁ । ବୁଦ୍ଧିମପି ବ୍ୟବସାୟାତ୍ମିକାଂ ମୟ୍ୟେବ ନିବେଶୟ । ଏବଂ କୁର୍ବନ୍ ମତ୍ପ୍ରସାଦେନ ଲବ୍ଧଜ୍ଞାନଃ ସନ୍ନତ ଊର୍ଦ୍ଧ୍ୱଂ ଦେହାନ୍ତେ ମୟ୍ୟେବ ନିବସିଷ୍ୟସି ନିବତ୍ସ୍ୟସି । ମଦାତ୍ମନା ବାସଂ କରିଷ୍ୟସି ନାତ୍ର ସଂଶୟଃ । ତଥା ଚ ଶ୍ରୁତିଃ—ଦେହାନ୍ତେ ଦେବଃ ପରଂବ୍ରହ୍ମ ତାରକଂ ବ୍ୟାଚଷ୍ଟେ ଇତି ।

ବିବୃତି—ସଂକଳ୍ପ ବିକଳ୍ପାତ୍ମିକା ଅନ୍ତଃକରଣ ବୃତ୍ତିକୁ ମନ କୁହାଯାଏ, ଏବଂ ନିଶ୍ଚୟାତ୍ମିକା ଅନ୍ତଃକରଣବୃତ୍ତିକୁ ବୁଦ୍ଧି କୁହାଯାଏ । ମନ ସ୍ୱଭାବତଃ ଚଞ୍ଚଳ, ବୁଦ୍ଧି ସାହାଯ୍ୟରେ ତାହାକୁ ବିଷୟରୁ ପ୍ରତ୍ୟାହୃତ କରି ଭଗବାନଙ୍କଠାରେ ସ୍ଥିର କରିବାକୁ ହୁଏ । ତେଣୁ ଏଠାରେ ମନ ଓ ବୁଦ୍ଧି ଦୁଇ ଶବ୍ଦର ପ୍ରୟୋଗ ହୋଇଅଛି ।

ଗୀତାରେ ଭକ୍ତିମାର୍ଗରହିଁ ଶ୍ରେଷ୍ଠତା ପ୍ରତିପାଦିତ ହୋଇଅଛି; ନିର୍ଗୁଣ ବ୍ରହ୍ମକୁ ଯେଉଁମାନେ ଚିନ୍ତା କରନ୍ତି ସେମାନେ ବ୍ରହ୍ମଜ୍ଞାନୀ; ସେମାନେ ଶେଷରେ ଯେଉଁସ୍ଥାନ ଲାଭକରନ୍ତି ବ୍ୟକ୍ତୋପାସକ ଭକ୍ତମାନେହିଁ ସେହିସ୍ଥାନର ଅଧିକାରୀ ହୁଅନ୍ତି; ନିର୍ଗୁଣ ଉପାସନା କଷ୍ଟସାଧ୍ୟ, ତେଣୁ ହିନ୍ଦୁ ଧର୍ମରେ ଭକ୍ତିମାର୍ଗହିଁ ସର୍ବଶ୍ରେଷ୍ଠ ବୋଲି କଥିତ ହୋଇଅଛି । ଶ୍ରୀମଦ୍ଭାଗବତ, ଅଷ୍ଟାଦଶ ପୁରାଣ ପ୍ରଭୃତି ଶତଶତ ଗ୍ରନ୍ଥ ଏହି ଭକ୍ତିରସର ଅମୃତଧାରା ପରିବେଷଣ କରି ଧର୍ମପିପାସୁ ହିନ୍ଦୁ ଧର୍ମ ବଲମ୍ବୀ କୋଟି କୋଟି ଲୋକଙ୍କୁ ଜଗତରେ ବିଶିଷ୍ଟ ଧର୍ମପ୍ରାଣ ଜାତି ରୂପେ ଗଠିତ ରଖିଅଛି । କିନ୍ତୁ ମନେ ରଖିବାକୁ ହେବ ଗୀତୋକ୍ତ ଭକ୍ତିଯୋଗ ଜପ-ମନ୍ତ୍ର, ଏହା ଶବ୍ଦ ବା ମୌଖିକ ଶବ୍ଦମାନ ଉଚ୍ଚାରଣରେ ପର୍ଯ୍ୟବସିତ ନୁହେଁ ।

ଅଥ ଚିତ୍ତଂ ସମାଧାତୁଂ ନ ଶକ୍ନୋଷି ମୟି ସ୍ଥିରମ୍ ।
ଅଭ୍ୟାସଯୋଗେନ ତତୋ ମାମିଚ୍ଛାପ୍ତୁଂ ଧନଞ୍ଜୟ ।୯।
ଅଭ୍ୟାସେଽପ୍ୟସମର୍ଥୋଽସି ମତ୍କର୍ମପରମୋଭବ,
ମଦର୍ଥ ମପି କର୍ମାଣି କୁର୍ବନ୍ ସିଦ୍ଧିମବାପ୍ସ୍ୟସି ।୧୦।

୯ । ଅନ୍ୱୟ ଦୀପିକା—[ହେ] ଧନଞ୍ଜୟ—ଅଥ (ଅଜ୍ଞଯେବେ) ମୟି (ଅମ୍ଭଠାରେ) ଚିତ୍ତଂ (ମନକୁ) ସ୍ଥିରଂ ସମାଧାତୁଂ (ସ୍ଥିରଭାବରେ ରଖିବାକୁ) ନ ଶକ୍ନୋଷି ( ଅସମର୍ଥ ହୁଅ ) ତତଃ ( ତାହା ହେଲେ ) ଅଭ୍ୟାସଯୋଗେନ (ଅଭ୍ୟାସଯୋଗଦ୍ୱାରା) ମାମ୍ ଅପ୍ତୁଂ (ଅମ୍ଭଙ୍କୁ ପାଇବାକୁ) ଇଚ୍ଛ (ଇଚ୍ଛା କର) ।

ଅନୁବାଦ—ହେ ଧନଞ୍ଜୟ, ଯେବେ ଅମ୍ଭଠାରେ ମନକୁ ସ୍ଥିର ଭାବରେ ରଖି ନ ପାର ତେବେ ଅଭ୍ୟାସ ଯୋଗଦ୍ୱାରା ଅମ୍ଭଙ୍କୁ ପାଇବାକୁ ଇଚ୍ଛା କର ବା ଚେଷ୍ଟା କର ।

ସୁବୋଧିନୀ ଟୀକା—ଅତ୍ରାଶକ୍ତଂ ପ୍ରତି ସୁଗମୋପାୟମାହ—ଅଥେତି, ସ୍ଥିରଂ ଯଥା ଭବତ୍ୟେବଂ ମୟି ଚିତ୍ତଂ ଧାରୟିତୁଂ ଯଦି ଶକ୍ତୋ ନ ଭବସି ତର୍ହି ବିକ୍ଷିପ୍ତଂ ଚିତ୍ତଂ ପୁନଃ ପୁନଃ ପ୍ରତ୍ୟାହୃତ୍ୟ ମଦନୁସ୍ମରଣଲକ୍ଷଣୋ ଯୋଽଭ୍ୟାସଯୋଗସ୍ତେନ ମାଂ ପ୍ରାପ୍ତୁମିଚ୍ଛ । ପ୍ରଯତ୍ନଂ କୁରୁ ।

ବିବୃତି—କି ଉପାୟରେ ଭଗବଦ୍‌ଭକ୍ତ ହେବ କହୁଥାଏ, ତାହାର ଉପାୟ ବା ସାଧନ ବର୍ତ୍ତମାନ କୁହାଯାଉଅଛି । ୮ମ ଶ୍ଲୋକରେ ଭଗବାନ୍ କହୁଥିଲେ. ବୁଦ୍ଧି ସାହାଯ୍ୟରେ ମନକୁ ଅମ୍ଭଠାରେ ସ୍ଥିର ରଖିଲେ ଶେଷରେ ଅମ୍ଭଙ୍କୁ ପାଇବ; ଏଠାରେ କହୁଅଛନ୍ତି ଯେବେ ସ୍ୱଭାବ ଚପଳ ମନକୁ ଅମ୍ଭଠାରେ ସ୍ଥିର ଭାବରେ ରଖିବାକୁ ଅସମର୍ଥ ହୁଅ, ତେବେ ସେଥିରେ ନିରାଶ ନ ହୋଇ ଅଭ୍ୟାସ ଦ୍ୱାରା ମନକୁ ସ୍ଥିର ରଖିବାକୁ ଚେଷ୍ଟାକର, ଅଭ୍ୟାସ ଦ୍ୱାରା ବହୁ ଅସାଧ୍ୟ ସାଧନ ହୋଇଥାଏ । ମନ ବିଚଳିତ ହୋଇ ଅନ୍ୟ ବିଷୟ ପ୍ରତି ଧାବିତ ହେଲେ ତାହାକୁ ତହିଁରୁ ପ୍ରତ୍ୟାହାର କରି ଅମ୍ଭ ସ୍ମରଣରେ ବାରଂବାର ଲଗାଅ, ଏପରି କଲେ ତାହା କ୍ରମେ ଅମ୍ଭଠାରେ ସ୍ଥିର ହୋଇ ରହି ପାରିବ ।

୧୦ । ଅନ୍ୱୟ ଦୀପିକା—ଅଭ୍ୟାସେ ଅପି (ଅଭ୍ୟାସ କରିବାରେ) [ଯେବେ] ଅସମର୍ଥଃ ଅସି ( ଯେବେ ଅକ୍ଷମ ହୁଅ [ତେବେ] ମତ୍କର୍ମପରମଃ ଭବ (କେବଳ ଅମ୍ଭକର୍ମ କରିବାରେ [illegible] ହୁଅ) । ମଦର୍ଥଂ (ଅମ୍ଭ ପ୍ରୀତି ଉଦ୍ଦେଶ୍ୟରେ) କର୍ମାଣି କୁର୍ବନ୍ ଅପି (କର୍ମ କଲେ ମଧ୍ୟ) ସିଦ୍ଧିମ୍ (ମୋକ୍ଷ) ଅବାପ୍ସ୍ୟସି (ପାଇବ) ।

ଅନୁବାଦ—ଯେବେ ଅଭ୍ୟାସରେ ଅସମର୍ଥ ହୁଅ, ତେ[illegible] ପ୍ରୀତି ଉଦ୍ଦେଶ୍ୟରେ ନାନାବିଧ କର୍ମ କର । ଅମ୍ଭ ପ୍ରୀତି ଉଦ୍ଦେଶ୍ୟରେ କର୍ମ କଲେ ତୁମେ ନିଶ୍ଚେ ମୋକ୍ଷ ଲାଭ କରି ପାରିବ ।

ଅଥୈତଦପ୍ୟଶକ୍ତୋଽସି କର୍ତ୍ତୁଂ ମଦ୍‌ଯୋଗମାଶ୍ରିତଃ ।
ସର୍ବକର୍ମଫଳ ତ୍ୟାଗଂ ତତଃ କୁରୁ ଯତାତ୍ମବାନ୍ । ୧୧ ।

ସୁବୋଧିନୀ ଟୀକା—ଯଦି ପୁନର୍ନୈବ ତତ୍ରାହ—ଅଥେତି, ଯଦି ପୁନରଭ୍ୟାସେଽପ୍ୟଶକ୍ତୋଽସି ତର୍ହି ମତ୍ପ୍ରୀତ୍ୟର୍ଥାନି ଯାନି କର୍ମାଣି—ଏକାଦଶ୍ୟୁପବାସବ୍ରତଚର୍ଯ୍ୟାପୂଜାନାମସଙ୍କୀର୍ତ୍ତନାଦୀନି—ତଦନୁଷ୍ଠାନମେବ ପରମ୍ ଯସ୍ୟ ତାଦୃଶୋଭବ, ଏବଙ୍କୃତାନି କର୍ମାଣ୍ୟପି ମଦର୍ଥଂ କୁର୍ବନ୍ ମୋକ୍ଷଂପ୍ରାପ୍ସ୍ୟସି ।

ବିବୃତି—ସାଧକ ଯେବେ ଅଭ୍ୟାସବଳରେ ଭଗବାନଙ୍କଠାରେ ମନୋନିବେଶ କରିବାକୁ ଅସମର୍ଥ ହୁଏ, ତେବେ ତାଠାରୁ ଅଧିକ ସରଳ ଉପାୟ କହୁଅଛନ୍ତି—ଆମ୍ଭ ପ୍ରୀତି ଉଦ୍ଦେଶ୍ୟରେ କର୍ମାନୁଷ୍ଠାନ କର । ସେ ସବୁ କର୍ମ କଅଣ ? ସାଧାରଣ ଲୋକ ସମାଜରେ ଯେଉଁ ସବୁ କର୍ମ ଏ ପର୍ଯ୍ୟନ୍ତ ପ୍ରଚଳିତ ଅଛି ଯଥା—ଶ୍ରୀମଦ୍ ଭଗବତାଦି ଧର୍ମଗ୍ରନ୍ଥ ପାଠ, ନାମ ସଙ୍କୀର୍ତ୍ତନ, ଏକାଦଶୀ ପ୍ରଭୃତିରେ ଉପବାସ କରି ନାମ ସ୍ମରଣ, ବିବିଧ ବାର ବ୍ରତର ଅନୁଷ୍ଠାନ, ତୀର୍ଥଭ୍ରମଣ, ପ୍ରତିମା ପୂଜା ପାଇଁ ପୁଷ୍ପ, ଜଳ, ଚନ୍ଦନ ପ୍ରଭୃତି ସଂଗ୍ରହ, ନୈବେଦ୍ୟ ପ୍ରଦାନ ଇତ୍ୟାଦି ଭଗବତ୍‌କର୍ମ; ସ୍ୱଭାବ ଚପଳମନକୁ ସ୍ଥିର ରଖି ନ ପାରି ଯେବେ ଲୋକ ପୂର୍ବୋକ୍ତ କର୍ମଗୁଡ଼ିକର ଅନୁଷ୍ଠାନ କରେ ତାହା ହେଲେ କ୍ରମେ ତାହାର ଚିତ୍ତଶୁଦ୍ଧି ଜାତ ହୁଏ ଏବଂ ଚିତ୍ତ ଶୁଦ୍ଧହେଲେ ଭଗବତ୍ ପ୍ରାପ୍ତି ହୁଏ ।

ବୈଷ୍ଣବ ଧର୍ମ ଶାସ୍ତ୍ର ମାନଙ୍କରେ ଏହିଭଳିରେ ଭଗବଦ୍ ପ୍ରାପ୍ତିର ଅନେକ ଉପାୟ ବର୍ଣ୍ଣିତ ହୋଇଅଛି । ସ୍ମରଣ, ଶ୍ରବଣ, କୀର୍ତ୍ତନ, ପାଦସେବା, ଅର୍ଚ୍ଚନା, ବନ୍ଦନା, ଦାସ୍ୟ, ସଖ୍ୟ, ଆତ୍ମ ନିବେଦନ ପ୍ରଭୃତି ଦ୍ୱାରା ଅନେକ ସାଧୁ ବୈଷ୍ଣବ ଜୀବନକାଳ ଅତିବାହିତ କରନ୍ତି । ଆମ୍ଭ ସମାଜରେ ସ୍ତ୍ରୀ ଲୋକଙ୍କ ପାଇଁ ଯେଉଁ ସବୁ ବାରବ୍ରତ ଉପବାସର ବ୍ୟବସ୍ଥା ଅଛି ସେଗୁଡ଼ିକ ଯେ ଭଗବତ୍ ପ୍ରାପ୍ତିର ସାଧନ ତାହା ଏ ଶ୍ଳୋକର ଭାବରୁ ସହଜରେ ଉପଲବ୍ଧ ହେବ ।

୧୧ । ଅନ୍ୱୟଦୀପିକା—ଅଥ (ଯେବେ) ଏତତ୍ ଅପି କର୍ତ୍ତୁଂ (ଏହା ମଧ୍ୟ କରିବାକୁ) ଅଶକ୍ତଃ ଅସି (ଅକ୍ଷମ ହୁଅ), ତତଃ (ତେବେ) ମଦ୍‌ଯୋଗମ୍ ଆଶ୍ରିତଃ (ଆମ୍ଭଠାରେ କର୍ମ ସମର୍ପଣ ରୂପ ଯୋଗକୁ ଆଶ୍ରୟ କରି) ଯତାତ୍ମବାନ୍ (ସଂଯତ ଚିତ୍ତ ହୋଇ) ସର୍ବକର୍ମଫଳତ୍ୟାଗଂ କୁରୁ (ସର୍ବ କର୍ମଫଳ ତ୍ୟାଗ କର) ।

ଅନୁବାଦ—ଯେବେ ଆମ୍ଭ ପ୍ରୀତି ନିମିତ୍ତ କର୍ମ କରିବାକୁ ଅକ୍ଷମ ହୁଅ, ତେବେ ଆମ୍ଭଠାରେ କର୍ମସମର୍ପଣରୂପ ଯୋଗ ଆଶ୍ରୟ କରି ସଂଯତଚିତ୍ତ ହୋଇ ସମସ୍ତ କର୍ମର ଫଳ ତ୍ୟାଗକର ।

ଶ୍ରେୟୋହି ଜ୍ଞାନ ମଭ୍ୟାସାଜ୍ଜ୍ଞାନାଦ୍ଧ୍ୟାନଂ ବିଶିଷ୍ୟତେ ।
ଧ୍ୟାନାତ୍ କର୍ମଫଳତ୍ୟାଗ ସ୍ତ୍ୟାଗ ଚ୍ଛାନ୍ତିରନନ୍ତରମ୍ । ୧୨ ।

ସୁବୋଧିନୀ ଟୀକା— ଅତ୍ୟନ୍ତଂ ଭଗବଦ୍ଧର୍ମପରନିଷ୍ଠାୟାମ୍ ମପ୍ୟଶକ୍ତସ୍ୟ ପକ୍ଷାନ୍ତରମାହ ଅଥେତି । ଯଦ୍ୟେତଦପି କର୍ତ୍ତୁଂ ନ ଶକ୍ନୋଷି ତର୍ହି ମଦ୍ୟୋଗମଦେକଶରଣଂ ତ୍ୱମାଶ୍ରିତଃ ସନ୍ ସର୍ବେଷାଂ ଦୃଷ୍ଟାଦୃଷ୍ଟାର୍ଥାନା-ମାବଶ୍ୟକାନାଂ ଗୃହ୍ୟୋକ୍ତାଦି କର୍ମଣାଂ ଫଳାନି ନିୟତଚିତ୍ତୋ ଭୂତ୍ୱା ପରିତ୍ୟଜ । ଏତଦୁକ୍ତଂ ଭବତି—ମୟ୍ୟାତ୍ମାବଧାନସଙ୍କଳ୍ପ ଯଥାଶକ୍ତି କର୍ମାଣି କରିଷ୍ୟାନି । ଫଳଂତାବଦ୍ ଦୃଷ୍ଟମଦୃଷ୍ଟଂ ବା ପରମେଶ୍ୱରାଧୀନମିତ୍ୟେବଂ ମୟୀଶ୍ୱରମାରୋପ୍ୟ ଫଳାସକ୍ତିଂ ପରିତ୍ୟଜ୍ୟ ବର୍ତ୍ତମାନୋ ମତ୍ପ୍ରସାଦେନ କୃତାର୍ଥୋ ଭବିଷ୍ୟସୀତି ।

ବିବୃତ—କି କି ଉପାୟରେ ଭଗବଦ୍ଭକ୍ତି ଲାଭ କରିପାଏ ତାହାର ସାଧନ ପୂର୍ବୋକ୍ତ ଶ୍ଳୋକମାନଙ୍କରେ କୁହାଗଲା । ତନ୍ମଧ୍ୟରୁ ସଗୁଣ ବା ବ୍ୟକ୍ତ ଉପାସନା ଭଗବଦ୍ଭକ୍ତିଲାଭର ପ୍ରଥମ ସାଧନ । ସେହି ବ୍ୟକ୍ତ ସ୍ୱରୂପରେ ଚିତ୍ତସ୍ଥିର ରଖିବାକୁ ଭଗବାନ୍ ପ୍ରଥମେ ଉପଦେଶ ଦେଲେ, କିନ୍ତୁ ମନସ୍ଥିର ରଖିବା ସହଜ କଥା ନୁହେଁ, ଷଷ୍ଠଅଧ୍ୟାୟର ୩୪ଶ ଶ୍ଳୋକରେ ଅର୍ଜ୍ଜୁନ ଏହା କହିଥିଲେ । ସେହି ହେତୁରୁ ଭଗବାନ୍ କହିଲେ ଅଭ୍ୟାସ କଲେ ମନ ସ୍ଥିର ହୋଇଯାଏ । ଈଶ୍ୱର ଚିନ୍ତା କରିବାବେଳେ ଯେବେ ମନ ବାରଂବାର ଅନ୍ୟ ବିଷୟ ପ୍ରତି ଧାବିତ ହୁଏ, ତେବେ ତାହାକୁ ତହିଁରୁ ପ୍ରତ୍ୟାହାର କରି ଭଗବାନଙ୍କଠାରେ ଲଗାଇବା ପାଇଁ ବାରଂବାର ଚେଷ୍ଟା କରିବାର ନାମ ଅଭ୍ୟାସଯୋଗ । ଯେବେ ସେପରି ଅଭ୍ୟାସ କରିବାରେ ଅସମର୍ଥ ହୁଅ, ତେବେ ଈଶ୍ୱରଙ୍କ ପ୍ରୀତି ସମ୍ପାଦନ ପାଇଁ ଭକ୍ତିଗ୍ରନ୍ଥ ପାଠ, ବ୍ରତ, ଉପବାସ, ପ୍ରତିମାପୂଜା ପ୍ରଭୃତି କର । ଯେବେ ତହିଁରେ ବି ଅକ୍ଷମ ହୁଅ, ତେବେ ଈଶ୍ୱରଙ୍କଠାରେ ସବୁ କର୍ମର ଫଳ ସମର୍ପଣ କରି ବା ତାଙ୍କଠାରେ ଶରଣ ପଶି ସଂଯତଚିତ୍ତ ହୋଇ ଯେଉଁ ସବୁ କର୍ମ କରୁଛ ତାହାର ଫଳ ତ୍ୟାଗ କର ।

୧୨ । ଅନ୍ୱୟ ଦୀପିକା—ଅଭ୍ୟାସାତ୍ ( ଅଭ୍ୟାସଠାରୁ ) ଜ୍ଞାନଂ ଶ୍ରେୟଃ ( ଜ୍ଞାନ ଶ୍ରେଷ୍ଠ ); ଜ୍ଞାନାତ୍ ( ଜ୍ଞାନଠାରୁ ) ଧ୍ୟାନଂ ( ଧ୍ୟାନ ) ବିଶିଷ୍ୟତେ ( ଶ୍ରେଷ୍ଠ ଅଟେ ); ଧ୍ୟାନାତ୍ ( ଧ୍ୟାନ ଅପେକ୍ଷା ) କର୍ମଫଳ ତ୍ୟାଗଃ ( କର୍ମର ଫଳ ପ୍ରତି ଆଶା ନ ରଖିବା ) [ ଶ୍ରେଷ୍ଠ ] । ଅନନ୍ତରଂ ତ୍ୟାଗାତ୍ ( ତାପରେ ତ୍ୟାଗରୁ ) ଶାନ୍ତିଃ ( ଶାନ୍ତି ଆସେ ) ।

ଅନୁବାଦ—ଅଭ୍ୟାସ ଅପେକ୍ଷା ଜ୍ଞାନ ଶ୍ରେଷ୍ଠ; ଜ୍ଞାନ ଅପେକ୍ଷା ଧ୍ୟାନ ଶ୍ରେଷ୍ଠ, ଧ୍ୟାନ ଅପେକ୍ଷା କର୍ମଫଳତ୍ୟାଗ ଶ୍ରେଷ୍ଠ । ତ୍ୟାଗ ପରେ ଶାନ୍ତି ଲାଭ ହୁଏ ।

ସୁବୋଧିନୀ ଟୀକା—ତମେନଂ ଫଳତ୍ୟାଗଂ ସ୍ତୌତି । ଶ୍ରେୟୋହୀତି ସମ୍ୟକ୍ ଜ୍ଞାନରହିତାଦଭ୍ୟାସାଦ୍ ଯୁକ୍ତିସହିତୋପଦେଶପୂର୍ବକଂ ଜ୍ଞାନଂ ଶ୍ରେଷ୍ଠମ୍ । ତସ୍ମାଦପି ତତ୍ପୂର୍ବଂ ଧ୍ୟାନଂ ବିଶିଷ୍ଟମ୍ । ତତସ୍ତୁ ତଂ ପଶ୍ୟତେ ନିଷ୍କଳଂ ଧ୍ୟାୟମାନଃ ଇତି ଶ୍ରୁତେଃ । ତସ୍ମାଦପ୍ୟୁକ୍ତଲକ୍ଷଣଃ କର୍ମଫଳତ୍ୟାଗଃ ଶ୍ରେଷ୍ଠଃ । ତସ୍ମାଦେବଂଭୂତାତ୍ କର୍ମଫଳତ୍ୟାଗାତ୍ କର୍ମସୁ ତତ୍ଫଳେଷୁ ଚାସକ୍ତିନିବୃତ୍ତ୍ୟା ମତ୍ପ୍ରସାଦେନ ଚ ସମନନ୍ତରମେବ ସଂସାରଶାନ୍ତିର୍ଭବତି ।

ବକ୍ତବ୍ୟ—ଆଧ୍ୟାତ୍ମିକ ଉନ୍ନତିପାଇଁ ପ୍ରତ୍ୟେକ ଧର୍ମପିପାସୁ ଅଭିଳାଷୀ । ‘ରାମ’ ‘ରାମ’, ‘କୃଷ୍ଣ’ ‘କୃଷ୍ଣ’ ଇତ୍ୟାଦି ନାମଜପ କେବଳ ଅଭ୍ୟାସ କଲେ ବା ପ୍ରାଣାୟାମାଦି ଯୌଗିକ କ୍ରିୟାର ଅଭ୍ୟାସ କଲେ ଆଧ୍ୟାତ୍ମିକ ଜ୍ଞାନ ଲାଭ ହୁଏ ନାହିଁ । ତେଣୁ ଯାହା ଲାଭ କରିବା ପାଇଁ ଏ ସବୁ ଅଭ୍ୟାସର ଆବଶ୍ୟକତା, ତାହା ଉତ୍ତମ ରୂପେ ବୁଝିବା ଆବଶ୍ୟକ । ଈଶ୍ୱର ପ୍ରାପ୍ତି ଯେବେ ଏ ସବୁ ଅଭ୍ୟାସର ଲକ୍ଷ୍ୟ ହୁଏ, ତାହାହେଲେ ଈଶ୍ୱରଙ୍କ ସମ୍ବନ୍ଧରେ ସମ୍ୟଗ୍ ଜ୍ଞାନ ଆବଶ୍ୟକ । ସେହି ହେତୁରୁ କୁହା ଯାଇଅଛି—ଅଭ୍ୟାସଠାରୁ ଜ୍ଞାନ ଶ୍ରେଷ୍ଠ । ସେହି ଜ୍ଞାନଠାରୁ ଇଷ୍ଟ ବସ୍ତୁର ଧ୍ୟାନ ବା ତାଙ୍କ ସମ୍ବନ୍ଧରେ ଗଭୀର ରୂପେ ଚିନ୍ତା କରିବା ଶ୍ରେଷ୍ଠ । ଧ୍ୟାନ ଅବସ୍ଥାରେ ଚିତ୍ତ ସ୍ଥିର ହେଲେହେଁ ଧ୍ୟାନ ଭଙ୍ଗପରେ ପୁଣି ସାଂସାରିକ ଚିନ୍ତାରେ ଚିତ୍ତ ବ୍ୟାକୁଳ ହୁଏ । ଏପରି ଅବସ୍ଥାରେ କର୍ତ୍ତବ୍ୟ କଅଣ ? ସେହି ହେତୁରୁ ଶେଷରେ କୁହାଯାଇ ଅଛି—ଏତେ କଥା ନ କରି ଯେବେ ପ୍ରଥମରୁ କର୍ମର ଫଳ ତ୍ୟାଗ କରିବାକୁ ଅଭ୍ୟାସ କର ତେବେ ଚିତ୍ତଶାନ୍ତି ଲାଭ କରିବ । କର୍ମତ୍ୟାଗ କୌଣସି ଅବସ୍ଥାରେ ସମ୍ଭବପର ନୁହେଁ, ଏ କଥା ଭଗବାନ୍ ନାନା ସ୍ଥାନରେ ଗୀତାରେ କହି ଅଛନ୍ତି । ଶରୀର ଥିବାଯାଏ କର୍ମ କରିବାକୁ ହେବ (୧୮।୧୧); ଏପରି ସ୍ଥଳରେ ଫଳକାମନା ତ୍ୟାଗ କରି କର୍ମ କରିବାହିଁ ଶ୍ରେଷ୍ଠ ମାର୍ଗ । ଏକାବେଳକେ କର୍ମର ଫଳ ତ୍ୟାଗ ଅବଶ୍ୟ ସହଜ ନୁହେଁ । ତେଣୁ ଦ୍ୱିତୀୟ ଅଧ୍ୟାୟର ୪୦ ମ ଶ୍ଳୋକରେ କୁହା ଯାଇଅଛି ଯେ, ସ୍ୱଳ୍ପମାତ୍ରାରେ ହେଲେ ବି କର୍ମଫଳ ତ୍ୟାଗ କରିବାକୁ ଶିଖିଲେ ମନୁଷ୍ୟ ମହାଭୟରୁ ରକ୍ଷା ପାଇଥାଏ । କେବଳ ସେତିକି ନୁହେଁ, ଷଷ୍ଠ ଅଧ୍ୟାୟର ୪୪ଶ ଶ୍ଳୋକ ଅନୁସାରେ କର୍ମଯୋଗ ଜାଣିବାର ଇଚ୍ଛା ହେଲେ ମଧ୍ୟ ଲୋକ ଅନ୍ତିମ ସିଦ୍ଧି ଆଡ଼କୁ ଆକୃଷ୍ଟ ହୋଇଥାଏ । ଏହି କର୍ମଫଳ ତ୍ୟାଗର ପ୍ରକୃତ ସ୍ୱରୂପ କଅଣ ତାହା ଜାଣିବାକୁ ସ୍ୱତଃ ପ୍ରବୃତ୍ତି ଜାତ ହୁଏ । ପ୍ରକୃତରେ ବୁଝିଲେ ଈଶ୍ୱରଙ୍କଠାରେ କର୍ମ ସମର୍ପଣ ଓ କର୍ମ ଫଳତ୍ୟାଗ—ଏକ କଥା । ହୃଦୟରେ ଦୃଢ଼ ବିଶ୍ୱାସ ଓ ଗଭୀର ଅନୁରାଗ ଏଥିପାଇଁ ଲୋଡ଼ା । ‘ମୁଁ ଯାହା କରନ୍ତ ଅନ୍ତର୍ଯାମୀ ମୋ ପାଇଁ ସେ ସମସ୍ତ କରିଦେବେ ।’ ଏହି ବିଶ୍ୱାସରେ କର୍ମଫଳ ଈଶ୍ୱରାର୍ପିତ ହୁଏ । ଗୀତା ୧୮ଶ ଅଧ୍ୟାୟର ୬୬ମ ଶ୍ଳୋକରେ ପରମ ଗୋପନୀୟ ତତ୍ତ୍ୱରୂପେ ଭଗବାନ୍ ଅର୍ଜ୍ଜୁନଙ୍କୁ କହି ଅଛନ୍ତି :—

ଅଦ୍ୱେଷ୍ଟା ସର୍ବଭୂତାନାଂ ମୈତ୍ରଃ କରୁଣ ଏବ ଚ ।
ନିର୍ମମୋ ନିରହଂକାରଃ ସମଦୁଃଖସୁଖଃ କ୍ଷମୀ । ୧୩ ।
ସନ୍ତୁଷ୍ଟଃ ସତତଂ ଯୋଗୀ ଯତାତ୍ମା ଦୃଢ଼ନିଶ୍ଚୟଃ ।
ମୟ୍ୟର୍ପିତମନୋବୁଦ୍ଧି ର୍ଯୋ ମଦ୍‌ଭକ୍ତଃ ସ ମେ ପ୍ରିୟଃ । ୧୪ ।

"ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂବ୍ରଜ,
ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମାଶୁଚଃ ।"

ଏହି ଅଭୟ ବାଣୀରେ ବିଶ୍ୱାସ କରି କର୍ମ କରିଯିବ ଏବଂ ତାଙ୍କର ଶରଣାପନ୍ନ ହୋଇ କର୍ମର ଫଳ ତାଙ୍କଠାରେହିଁ ଅର୍ପଣ କରିବ ।

ଏ ଶ୍ଳୋକର ସାର କଥା ଏହି ଯେ, ଜ୍ଞାନଭକ୍ତିଯୁକ୍ତ କର୍ମଯୋଗହିଁ ଈଶ୍ୱରପ୍ରାପ୍ତିର ସର୍ବଶ୍ରେଷ୍ଠ ଉପାୟ ।

ଗୀତାର ୬ଷ୍ଠ ଓ ୭ମ ଅଧ୍ୟାୟରେ ଯେଉଁ 'ଜ୍ଞାନ' ବିଷୟ ବର୍ଣ୍ଣିତ ହୋଇଅଛି, ତାହା ଅପରୋକ୍ଷଜ୍ଞାନ ମାତ୍ର ଏଠାରେ ସେ ଅର୍ଥରେ ତାହା ପ୍ରଯୁକ୍ତ ହୋଇନାହିଁ । ଏଠାରେ ଅପରୋକ୍ଷଜ୍ଞାନ ଜାତ ହୋଇ ନ ଥିବା ଲୋକର ପରୋକ୍ଷ ଜ୍ଞାନକୁ 'ଜ୍ଞାନ' ବୁଝାଯାଇ ଅଛି । ସେହିପରି 'ଧ୍ୟାନ' ଶବ୍ଦର ପ୍ରକୃତ ଅର୍ଥ 'ଧ୍ୟେୟ ବସ୍ତୁରେ ନିର୍ବିଷୟ ମନର ସଂଯୋଗ' ( ଧ୍ୟାନଂ ନିର୍ବିଷୟଂ ମନଃ ) ମାତ୍ର ଏଠାରେ ଅଭ୍ୟାସୀର ଉପାସ୍ୟ ଚିନ୍ତାକୁ 'ଧ୍ୟାନ' ଶବ୍ଦରେ ପ୍ରକାଶ କରାଯାଇଅଛି ।

୧୩ । ୧୪ । ଅନ୍ୱୟ ଦୀପିକା—ସର୍ବଭୂତାନାମ୍ ( ସକଳ ପ୍ରାଣୀଙ୍କ ପ୍ରତି ) ଅଦ୍ୱେଷ୍ଟା ( ଦ୍ୱେଷ ରହିତ ), ମୈତ୍ରଃ ( ମୈତ୍ରୀ ଭାବାପନ୍ନ ) କରୁଣଃ ଚ ଏବ ( ଏବଂ ଦୟାଳୁ ) ନିର୍ମମଃ (ମମତ୍ୱ ବୁଦ୍ଧି ଶୂନ୍ୟ) ନିରହଂକାରଃ ( ଅହଂକାର ଶୂନ୍ୟ ) ସମଦୁଃଖସୁଖଃ ( ଦୁଃଖରେ ଏବଂ ସୁଖରେ ସମଚିତ୍ତ ) କ୍ଷମୀ ( କ୍ଷମାଶୀଳ ), ସତତଂ ସନ୍ତୁଷ୍ଟଃ ( ସର୍ବଦା ସନ୍ତୁଷ୍ଟ ), ଯୋଗୀ ( ସମାହିତ ଚିତ୍ତ ) ଯତାତ୍ମା ( ସଂଯତସ୍ୱଭାବ ), ଦୃଢ଼ ନିଶ୍ଚୟଃ ( ଅଟଳ ବିଶ୍ୱାସୀ ) ମୟି ଅର୍ପିତମନୋବୁଦ୍ଧିଃ ( ଆମ୍ଭଠାରେ ଯାହାଙ୍କର ମନ ଓ ବୁଦ୍ଧି ସମର୍ପିତ ) ଯଃ ( ଯେ ) ମଦ୍‌ଭକ୍ତଃ ( ଆମ୍ଭର ଭକ୍ତ ) ସଃ ମେ ପ୍ରିୟଃ ( ସେ ଆମ୍ଭର ପ୍ରିୟ ଅଟନ୍ତି ) ।

ଅନୁବାଦ—ଯେ କୌଣସି ପ୍ରାଣୀଙ୍କୁ ଦ୍ୱେଷ କରନ୍ତି ନାହିଁ, ଯେ ସମସ୍ତଙ୍କ ପ୍ରତି ମିତ୍ର ଭାବାପନ୍ନ ଓ ଦୟାଳୁ, ଯାହାଙ୍କର ମମତ୍ୱ ବୁଦ୍ଧି ନାହିଁ ଓ ଅହଙ୍କାର ନାହିଁ, ଯେ ସୁଖ ଦୁଃଖରେ ସମଭାବାପନ୍ନ, ଯେ ସର୍ବଦା ସନ୍ତୁଷ୍ଟ, ସମାହିତ ଚିତ୍ତ, ସଂଯତାତ୍ମା ଓ ଦୃଢ଼ ବିଶ୍ୱାସୀ, ଯାହାଙ୍କର ମନ ଓ ବୁଦ୍ଧି ଆମ୍ଭଠାରେ ସମର୍ପିତ, ମଦ୍‌ଭକ୍ତିପରାୟଣ ଏପରି ଲୋକ ଆମ୍ଭର ପ୍ରିୟ ଅଟନ୍ତି ।

ଯସ୍ମାନ୍ନୋଦ୍‌ବିଜତେ ଲୋକୋ ଲୋକାନ୍ନୋଦ୍‌ବିଜତେ ଚ ଯଃ ।
ହର୍ଷାମର୍ଷଭୟୋଦ୍‌ବେଗୈର୍ମୁକ୍ତୋ ଯଃ ସ ଚ ମେ ପ୍ରିୟଃ । ୧୫ ।

**ସୁବୋଧିନୀ ଟୀକା**—ଏବମ୍ଭୂତସ୍ୟ ଭକ୍ତସ୍ୟ କ୍ଷିପ୍ରମେବ ପରମେଶ୍ୱରପ୍ରସାଦହେତୂନ୍ ଧର୍ମାନାହ, ଅଦ୍ୱେଷ୍ଟେତ୍ୟଷ୍ଟଭିଃ । ସର୍ବଭୂତାନାଂ ଯଥାଯଥମଦ୍ୱେଷ୍ଟା, ମୈତ୍ରଃ, କରୁଣଶ୍ଚ । ଉତ୍ତମେଷୁ ଦ୍ୱେଷଶୂନ୍ୟଃ, ସମେଷୁ ମିତ୍ରତୟା ବର୍ତ୍ତିତ ଇତି ମୈତ୍ରଃ । ହୀନେଷୁ କୃପାଳୁରିତ୍ୟର୍ଥଃ । ନିର୍ମମଃ, ନିରହଂକାରଶ୍ଚ । କୃପାଳୁତ୍ୱାଦେବାନେୟଃ ଅତ ଏବ ସୁଖଦୁଃଖେ ଯସ୍ୟସଃ । କ୍ଷମୀ କ୍ଷମାଶୀଳଃ ।

ସନ୍ତୁଷ୍ଟ ଇତି । ସତତଂ ଲାଭେ ଅଲାଭେ ଚ ସନ୍ତୁଷ୍ଟଃ ସୁପ୍ରସନ୍ନଚିତ୍ତଃ, ଯୋଗୀ ଅପ୍ରମତ୍ତଃ । ଯତାତ୍ମା ସଂଯତସ୍ୱଭାବଃ । ଦୃଢ଼ୋ ମଦ୍‌ବିଷୟେ ଯସ୍ୟ । ମୟ୍ୟର୍ପିତେ ମନୋବୁଦ୍ଧୀ ଯେନ ଏବମ୍ଭୂତୋ ଯୋ ମଦ୍‌ଭକ୍ତଃ ସ ମେ ପ୍ରିୟଃ ।

୧୫ । **ଅନ୍ୱୟ ଦୀପିକା**—ଯସ୍ମାତ୍ ( ଯାହାଙ୍କଠାରୁ ) ଲୋକଃ ( କୌଣସି ବ୍ୟକ୍ତି ) ନ ଉଦ୍‌ବିଜତେ ( ଉଦ୍‌ବେଗ ପ୍ରାପ୍ତ ହୁଅନ୍ତି ନାହିଁ ), ଯଃ ଚ ( ଏବଂ ଯେ ) ଲୋକାତ୍ ( ଅନ୍ୟ ଲୋକଠାରୁ ) ନ ଉଦ୍‌ବିଜତେ ( ଉଦ୍‌ବେଗ ପ୍ରାପ୍ତ ହୁଏ ନାହିଁ ), ଯଃ ଚ ହର୍ଷାମର୍ଷଭୟୋଦ୍‌ବେଗୈଃ ମୁକ୍ତଃ ( ହର୍ଷ, ପରଶ୍ରୀକାତରତା, ଭୟ ଓ ଉଦ୍‌ବେଗରୁ ମୁକ୍ତ ) ସଃ ମେ ପ୍ରିୟଃ ( ସେ ଆମ୍ଭର ପ୍ରିୟ ଅଟନ୍ତି ) ।

**ଅନୁବାଦ**—ଯାହାଙ୍କଠାରୁ କୌଣସି ଲୋକ ଉଦ୍‌ବେଗ ପ୍ରାପ୍ତ ହୁଅନ୍ତି ନାହିଁ ଏବଂ ଯେ ନିଜେ ମଧ୍ୟ କୌଣସି ଲୋକ ଦ୍ୱାରା ଉଦ୍ୱିଗ୍ନ ହୁଅନ୍ତି ନାହିଁ ଏବଂ ଯେ ହର୍ଷ, ପରଶ୍ରୀକାତରତା, ଭୟ ଓ ଉଦ୍‌ବେଗରୁ ମୁକ୍ତ ସେ ଆମ୍ଭର ପ୍ରିୟ ଅଟନ୍ତି ।

**ସୁବୋଧିନୀ ଟୀକା**—କିଞ୍ଚ—ଯସ୍ମାଦିତି—ଯସ୍ମାତ୍ ସକାଶାଲ୍ଲୋକୋ ଜନୋ ନୋଦ୍‌ବିଜତେ, ଭୟଶଙ୍କୟା ସଂକ୍ଷୋଭଂ ନ ପ୍ରାପ୍ନୋତି, ଯଶ୍ଚ ଲୋକାନ୍ନୋଦ୍‌ବିଜତେ, ଯଶ୍ଚ ସ୍ୱାଭାବିକୈଃ ହର୍ଷାଦିଭିର୍ମୁକ୍ତଃ । ତତ୍ର ହର୍ଷଃ ସ୍ୱସ୍ୟେଷ୍ଟଲାଭ ଉତ୍ସାହଃ । ଅମର୍ଷଃ ପରସ୍ୟ ଲାଭେଽସହନଂ । ଭୟଂ ତ୍ରାସଃ, ଉଦ୍‌ବେଗୋ ଭୟାଦନନ୍ତରକ୍ଷିତ୍ତ କ୍ଷୋଭଃ ଏତୈର୍ବିମୁକ୍ତୋ ଯୋ ମଦ୍‌ଭକ୍ତଃ ସ ଚ ମେ ପ୍ରିୟଃ ।

**ବକ୍ତବ୍ୟ**—ସଂସାରୀ ଲୋକର ଜୀବନରେ ଅନେକ ସମୟରେ ଚିତ୍ତ-ଉଦ୍‌ବେଗର କାରଣ ଉପସ୍ଥିତ ହୁଏ; କିନ୍ତୁ ଯାହାଙ୍କର ଚିତ୍ତ ଭଗବାନଙ୍କଠାରେ ଆସକ୍ତ, କାରଣସତ୍ତ୍ୱେ ସେ କେବେହେଁ ଉଦ୍‌ବିଗ୍ନ ହୁଅନ୍ତି ନାହିଁ । ବିଶ୍ୱାସରେ ଦୃଢ଼ତା ନ ଥିଲେ ଲୋକର ଉଦ୍‌ବେଗ ଆସିବା ସ୍ୱାଭାବିକ ।

ଅନପେକ୍ଷଃ ଶୁଚିର୍ଦକ୍ଷ ଉଦାସୀନୋ ଗତବ୍ୟଥଃ ।
ସର୍ବାରମ୍ଭପରିତ୍ୟାଗୀ ଯୋ ମଦ୍ଭକ୍ତଃ ସ ମେ ପ୍ରିୟଃ । ୧୬ ।

ସାଧୁଲୋକ କାହାରିକୁ ହିଂସା କରନ୍ତି ନାହିଁ ସତ୍ୟ, ମାତ୍ର ଏ ସଂସାରରେ ଅସାଧୁ ଅଳ୍ପ ନାହାନ୍ତି । ସେମାନେ ତଥା ବ୍ୟାଘ୍ର ସର୍ପାଦି ହିଂସ୍ର ଜନ୍ତୁମାନେ ବିନା ଉତ୍ତେଜନାରେ ମଧ୍ୟ ସାଧୁଲୋକଙ୍କ ପ୍ରତି ହିଂସାଚରଣ କରି ଥାଆନ୍ତି । ଏହା ଠିକ୍; କିନ୍ତୁ ଯେଉଁମାନେ ପ୍ରକୃତରେ ଭକ୍ତ, ସେମାନେ ଅହିଂସା ବ୍ରତର ଉପାସକ । ଅହିଂସା ବ୍ରତରେ ଦୀକ୍ଷିତ ହୋଇଥିବାରୁ ଋଷିମାନେ ଶ୍ୱାପଦସଙ୍କୁଳ ଅରଣ୍ୟମଧ୍ୟରେ ନିର୍ଭୟରେ ବିଚରଣ କରନ୍ତି ଏବଂ ସେମାନଙ୍କ ଆଶ୍ରମରେ ସ୍ୱାଭାବିକ ବୈର ତ୍ୟାଗକରି ବ୍ୟାଘ୍ର ହରିଣ, ସର୍ପ ମୟୂର ଏକତ୍ର ବାସ କରନ୍ତି ।

୧୬ । **ଅନ୍ୱୟ ଦୀପିକା**—ଅନପେକ୍ଷଃ ( ନିସ୍ପୃହ ) ଶୁଚିଃ ( ଅନ୍ତରବାନ୍ ) ଦକ୍ଷଃ ( ନିରଳସଃ ) ଉଦାସୀନଃ ( ପକ୍ଷପାତ ଶୂନ୍ୟ ) ଗତବ୍ୟଥଃ ( ମାନସିକ ଅଶାନ୍ତି ରହିତ ) ସର୍ବାରମ୍ଭପରିତ୍ୟାଗୀ ( ସକାମ କର୍ମାନୁଷ୍ଠାନରେ ସ୍ପୃହାଶୂନ୍ୟ ) ଯଃ ମଦ୍ଭକ୍ତଃ ( ଯେ ଆମ୍ଭର ଭକ୍ତ ) ସ ମେ ପ୍ରିୟଃ ( ସେ ଆମ୍ଭର ପ୍ରିୟ ) ।

**ଅନୁବାଦ**—ଯେଉଁଲୋକ କୌଣସି ବିଷୟ ପ୍ରାପ୍ତିରେ ଅପେକ୍ଷା ରଖନ୍ତି ନାହିଁ, ଯେ ଅନ୍ତରବାହ୍ୟଶୁଦ୍ଧ, କର୍ତ୍ତବ୍ୟ କର୍ମରେ ଆଳସ୍ୟବର୍ଜିତ, ପକ୍ଷପାତଶୂନ୍ୟ, କୌଣସି ଅବସ୍ଥାରେ ଯାହାଙ୍କର ମାନସିକ ପୀଡ଼ା ଜାତ ହୁଏନାହିଁ, ଫଳ ପାଇବାର ଆଶାରଖି ଯେ କୌଣସି କର୍ମ ଆରମ୍ଭ କରନ୍ତି ନାହିଁ—ଏପରି ଭକ୍ତ ଆମ୍ଭର ପ୍ରିୟ ଅଟନ୍ତି ।

**ସୁବୋଧିନୀ ଟୀକା**—କିଞ୍ଚ—ଅନପେକ୍ଷ ଇତି, ଅନପେକ୍ଷୋ ଯଦୃଚ୍ଛୟୋପସ୍ଥିତେଽପ୍ୟର୍ଥେ ନିସ୍ପୃହଃ, ଶୁଚିର୍ବାହ୍ୟାଭ୍ୟନ୍ତରଶୌଚସମ୍ପନ୍ନଃ, ଦକ୍ଷୋଽନଳସଃ, ଉଦାସୀନଃ ପକ୍ଷପାତରହିତଃ, ଗତବ୍ୟଥଃ ଅଧିଶୂନ୍ୟଃ । ସର୍ବାନ୍ ଦୃଷ୍ଟାଦୃଷ୍ଟାର୍ଥାନାରମ୍ଭାନୁଦ୍ୟମାନ୍ ପରିତ୍ୟକ୍ତୁଂ ଶୀଳଂ ଯସ୍ୟସଃ, ଏବମ୍ଭୂତଃ ସନ୍ ଯୋ ମଦ୍ଭକ୍ତଃ ସମେ ପ୍ରିୟଃ ।

**ବକ୍ତବ୍ୟ**—ଦେହ, ଇନ୍ଦ୍ରିୟ ଓ ବିଷୟ ସମ୍ବନ୍ଧରେ ଯାହାଙ୍କର ଅପେକ୍ଷା ନ ଥାଏ ତାହାଙ୍କୁ ଅନପେକ୍ଷ କୁହାଯାଏ ଅର୍ଥାତ୍ ଯଦୃଚ୍ଛାରେ ଉପସ୍ଥିତ ଅର୍ଥରେ ମଧ୍ୟ ଯାହାଙ୍କର ସ୍ପୃହା ନ ଥାଏ ସେ ଏହା ଅନପେକ୍ଷ । ଯାହାଙ୍କର ବାହାର ଓ ଭିତର ସର୍ବଦା ପବିତ୍ର ତାହାଙ୍କୁ ଶୁଚି କହନ୍ତି । ମୃତ୍ତିକା ଜଳାଦିଦ୍ୱାରା ବାହ୍ୟ ଶରୀର ଏବଂ ମିତ୍ରତା, କରୁଣା ଓ ସାମ୍ୟ ଦୃଷ୍ଟିଦ୍ୱାରା ଅଭ୍ୟନ୍ତର ଶୁଦ୍ଧି ହୁଏ । କର୍ତ୍ତବ୍ୟରେ ନିରଳସ ଲୋକହିଁ ଦକ୍ଷ, ଶତ୍ରୁମିତ୍ର ସମସ୍ତଙ୍କ ପ୍ରତି ସମବ୍ୟବହାର ଉଦାସୀନତାର ଲକ୍ଷଣ, ଗତବ୍ୟଥ ଶବ୍ଦର ଅର୍ଥ ନିର୍ଭୟ ବା ମାନସିକ ବ୍ୟଥା-

ଯୋ ନ ହୃଷ୍ୟତି ନ ଦ୍ୱେଷ୍ଟି ନ ଶୋଚତି ନ କାଙ୍‌କ୍ଷତି,
ଶୁଭାଶୁଭପରିତ୍ୟାଗୀ ଭକ୍ତିମାନ୍ ଯଃ ସ ମେ ପ୍ରିୟଃ । ୧୭ ।
ସମଃ ଶତ୍ରୌ ଚ ମିତ୍ରେ ଚ ତଥା ମାନାପମାନୟୋଃ ।
ଶୀତୋଷ୍ଣସୁଖଦୁଃଖେଷୁ ସମଃ ସଙ୍ଗବିବର୍ଜିତଃ । ୧୮ ।

ରହିତ । ଇହଲୋକରେ ବା ପରଲୋକରେ କୌଣସି ଫଳ ପାଇବା ଆଶାରେ ଯେ କୌଣସି କର୍ମାରମ୍ଭ ନ କରନ୍ତି—ସେହି ଏବା ଭଗବଦ୍‌ଭକ୍ତ ।

୧୭ । ଅନ୍ୱୟ ଦୀପିକା—ଯଃ ( ଯେ ) ନ ହୃଷ୍ୟତି ( ଅନନ୍ଦିତ ହୁଅନ୍ତି ନାହିଁ ), ନ ଦ୍ୱେଷ୍ଟି ( କାହାରିକୁ ଦ୍ୱେଷ କରନ୍ତି ନାହିଁ ), ନ ଶୋଚତି (ଶୋକ କରନ୍ତି ନାହିଁ), ନ କାଙ୍‌କ୍ଷତି ( ଆକାଙ୍‌କ୍ଷା କରନ୍ତି ନାହିଁ ), ଶୁଭାଶୁଭପରିତ୍ୟାଗୀ ( ପୁଣ୍ୟ ପାପ ତ୍ୟାଗ କରି ଥାଆନ୍ତି ), ସଃ ମେ ପ୍ରିୟଃ ( ସେ ଆମ୍ଭର ପ୍ରିୟ ଅଟନ୍ତି ) ।

ଅନୁବାଦ—ଯେଉଁ ଲୋକ ପ୍ରିୟବସ୍ତୁ ପାଇଲେ ଆନନ୍ଦିତ ହୁଅନ୍ତି ନାହିଁ ବା ଅପ୍ରିୟ ବସ୍ତୁ ପାଇଲେ ଦ୍ୱେଷ କରନ୍ତି ନାହିଁ, ଇଷ୍ଟ ବସ୍ତୁର ବିନାଶରେ ଯାହାଙ୍କର ଶୋକ ନ ଥାଏ ବା ଅପ୍ରାପ୍ତ ବସ୍ତୁ ପାଇବା ପାଇଁ ଯେ ଇଚ୍ଛା କରନ୍ତି ନାହିଁ, ଶୁଭାଶୁଭ ପରିତ୍ୟାଗୀ ଅର୍ଥାତ୍ ଯେ ସ୍ୱର୍ଗଲାଭ ଇଚ୍ଛାରେ ବା ନରକ ଭୟରେ କୌଣସି କର୍ମ କରନ୍ତି ନାହିଁ ସେ ଆମ୍ଭର ପ୍ରିୟ ଅଟନ୍ତି ।

ସୁବୋଧିନୀ ଟୀକା—କିଞ୍ଚ ଯ ଇତି, ପ୍ରିୟଂ ପ୍ରାପ୍ୟ ଯୋ ନ ହୃଷ୍ୟତି, ଅପ୍ରିୟଂ ପ୍ରାପ୍ୟ ଯୋ ନ ଦ୍ୱେଷ୍ଟି । ଇଷ୍ଟାର୍ଥନାଶେ ସତି ଯୋ ନ ଶୋଚତି, ଅପ୍ରାପ୍ତମର୍ଥଂ ଯୋ ନ କାଙ୍‌କ୍ଷତି, ଶୁଭାଶୁଭେ ପୁଣ୍ୟପାପେ ପରିତ୍ୟକ୍ତୁଂ ଶୀଳଂ ଯସ୍ୟ ସଃ, ଏବମ୍ଭୂତୋ ଭୂତ୍ୱା ଯୋ ମଦ୍‌ଭକ୍ତିମାନ୍ ସ ମେ ପ୍ରିୟଃ ।

୧୮ । ଅନ୍ୱୟଦୀପିକା—ଶତ୍ରୌ ଚ ( ଶତ୍ରୁଠାରେ ) ମିତ୍ରେ ଚ ( ଏବଂ ମିତ୍ରଠାରେ ), ତଥା ମାନାପମାନୟୋଃ ( ଏବଂ ସମ୍ମାନ ଓ ଅପମାନରେ ) ସମଃ ( ସମଜ୍ଞାନବିଶିଷ୍ଟ ), ଶୀତୋଷ୍ଣସୁଖଦୁଃଖେଷୁ ( ଶୀତ, ଉଷ୍ଣ ଓ ସୁଖ, ଦୁଃଖରେ), ସମଃ (ସମବୁଦ୍ଧିଯୁକ୍ତ), ସଙ୍ଗବିବର୍ଜିତଃ (ସବୁ ବିଷୟରେ ସଙ୍ଗଶୂନ୍ୟ ବା ଆସକ୍ତି ରହିତ ) [ ସେ ଆମ୍ଭର ପ୍ରିୟ ] ।

ଅନୁବାଦ—ଯାହାଙ୍କର ଶତ୍ରୁଠାରେ ଓ ମିତ୍ରଠାରେ ସମାନ ଦୃଷ୍ଟି, ସମ୍ମାନ ଏବଂ ଅପମାନ ଏ ଉଭୟରେ ଯେ ସମାନ ଅବସ୍ଥାରେ ଥାଆନ୍ତି, ଶୀତ ଉଷ୍ଣ ଓ ସୁଖ ଦୁଃଖରେ ଯେ ସମତ୍ୱବୁଦ୍ଧିଯୁକ୍ତ ଏବଂ ଯେ ସଙ୍ଗଶୂନ୍ୟ ବା ଆସକ୍ତି ବର୍ଜିତ ( ସେ ଆମ୍ଭର ପ୍ରିୟ ) ।

ତୁଲ୍ୟ ନିନ୍ଦାସ୍ତୁତି ର୍ମୌନୀ ସନ୍ତୁଷ୍ଟୋ ଯେନ କେନଚିତ୍,
ଅନିକେତଃ ସ୍ଥିରମତି ର୍ଭକ୍ତିମାନ୍ ମେ ପ୍ରିୟୋନରଃ । ୧୯ ।
ଯେ ତୁ ଧର୍ମାମୃତମିଦଂ ଯଥୋକ୍ତଂ ପର୍ଯ୍ୟୁପାସତେ,
ଶ୍ରଦ୍ଦଧାନା ମତ୍ପରମା ଭକ୍ତାସ୍ତେଽତୀବ ମେ ପ୍ରିୟାଃ । ୨୦ ।

ଇତି ଶ୍ରୀ ମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଭୀଷ୍ମପର୍ବଣି ଶ୍ରୀମଦ୍ଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ
ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ଭକ୍ତିଯୋଗୋ
ନାମ ଦ୍ୱାଦଶୋଽଧ୍ୟାୟଃ ।

---

ସୁବୋଧିନୀ ଟୀକା—କିଞ୍ଚ ସମଃ ଶତ୍ରୌ ଚ ମିତ୍ରେ ଚ ସମ ଏକରୂପଃ; ମାନାପମାନୟୋରପି ତଥା ସମ ଏବ, ହର୍ଷବିଷାଦଶୂନ୍ୟ ଇତ୍ୟର୍ଥଃ, ଶୀତୋଷ୍ଣୟୋଃ ସୁଖଦୁଃଖୟୋଶ୍ଚ ସମଃ; ସଙ୍ଗ ବିବର୍ଜିତଃ କ୍ୱଚିଦପ୍ୟନାସକ୍ତଃ ।

୧୯ । ଅନ୍ୱୟ ଦୀପିକା—ତୁଲ୍ୟନିନ୍ଦାସ୍ତୁତିଃ ( ନିନ୍ଦା ଏବଂ ପ୍ରଶଂସାରେ ତୁଲ୍ୟଜ୍ଞାନ ବିଶିଷ୍ଟ ) ମୌନୀ ( ସଂଯତବାକ୍ ), ଯେନ କେନଚିତ୍ ସନ୍ତୁଷ୍ଟଃ ( ଯାହା ମିଳେ ତହିଁରେ ସନ୍ତୁଷ୍ଟ ) ଅନିକେତଃ (ଗୃହରେ ମମତାଶୂନ୍ୟ) ସ୍ଥିରମତିଃ ( ସ୍ଥିରଚିତ୍ତ ) ଭକ୍ତିମାନ୍ ନରଃ ( ଏପରି ଭକ୍ତିଯୁକ୍ତ ଲୋକ ) ମେ ପ୍ରିୟଃ ( ଆମ୍ଭର ପ୍ରିୟ ଅଟନ୍ତି ) ।

ଅନୁବାଦ—ନିନ୍ଦା ଏବଂ ପ୍ରଶଂସା ଯାହାଙ୍କ ପାଖରେ ସମାନ, ଯେ ସଂଯତବାକ୍, ଯାହା ଯେତେବେଳେ ମିଳେ ତହିଁରେ ଯେ ସନ୍ତୁଷ୍ଟ ରହନ୍ତି, ଗୃହାଦିରେ ଯେ ମମତ୍ୱବୁଦ୍ଧିଶୂନ୍ୟ, ଯାହାଙ୍କର ମତି ସ୍ଥିର—ଏହିପରି ଭକ୍ତିମାନ୍ ଲୋକ ଆମ୍ଭର ପ୍ରିୟ ଅଟନ୍ତି ।

ସୁବୋଧିନୀ ଟୀକା—କିଞ୍ଚ ତୁଲ୍ୟ ନିନ୍ଦାସ୍ତୁତିରିତି, ତୁଲ୍ୟା ନିନ୍ଦାସ୍ତୁତିଶ୍ଚ ଯସ୍ୟ ସଃ; ମୌନୀ ସଂଯତବାକ୍, ଯେନ କେନଚିତ୍ ଯଥାଲାଭେନ ସନ୍ତୁଷ୍ଟଃ । ଅନିକେତୋ ନିୟତବାସଶୂନ୍ୟଃ । ସ୍ଥିରମତିର୍ବ୍ୟବସ୍ଥିତଚିତ୍ତଃ । ଏବମ୍ଭୂତୋ ଭକ୍ତିମାନ୍ ଯଃ ସ ନରୋ ମମପ୍ରିୟଃ ।

୨୦ । ଅନ୍ୱୟ ଦୀପିକା—ଯେ ତୁ ( ଯେଉଁମାନେ ) ଯଥୋକ୍ତମ୍ ( ପୂର୍ବୋକ୍ତ ) ଇଦଂ ଧର୍ମାମୃତଂ ( ଏହି ଅମୃତ ତୁଲ୍ୟ ଧର୍ମକୁ ) ଶ୍ରଦ୍ଦଧାନାଃ ( ଶ୍ରଦ୍ଧାଯୁକ୍ତ ) ମତ୍ପରାୟଣାଃ ( ମତ୍ ପରାୟଣହୋଇ ) ପର୍ଯ୍ୟୁପାସତେ ( ଅନୁଷ୍ଠାନ କରନ୍ତି ), ତେ ଭକ୍ତାଃ ( ସେହି ଭକ୍ତମାନେ ) ମେ ଅତୀବପ୍ରିୟାଃ ( ଆମ୍ଭର ଅତ୍ୟନ୍ତ ପ୍ରିୟ ଅଟନ୍ତି ) ।

ଅନୁବାଦ—ଯେଉଁମାନେ ଶ୍ରଦ୍ଧାବାନ୍ ଓ ମତ୍‌ପରାୟଣ ହୋଇ ପୂର୍ବୋକ୍ତ 'ଅମୃତତୁଲ୍ୟ ଧର୍ମର ଅନୁଷ୍ଠାନ କରନ୍ତି, ସେହି ଭକ୍ତମାନ୍ ଲୋକମାନେ ଆମ୍ଭର ଅତ୍ୟନ୍ତ ପ୍ରିୟ ଅଟନ୍ତି ।

ସୁବୋଧିନୀ ଟୀକା—ଉକ୍ତଂ ଧର୍ମଜାତଂ ସଫଳମୁପସଂହରତି । ଯେ ତ୍ୱିତି, ଯଥୋକ୍ତ ମୁକ୍ତପ୍ରକାରଂ । ଧର୍ମ ଏବାମୃତମ୍—ଅମୃତତ୍ୱସାଧନତ୍ୱାତ୍ । ଧର୍ମ୍ୟାମୃତମିତି କେଚିତ୍ ପଠନ୍ତି । ଯେ ତଦୁପାସତେଽନୁତିଷ୍ଠନ୍ତି ଶ୍ରଦ୍ଧାଂ କୁର୍ବନ୍ତୋ ମତ୍‌ପରାୟଣାଃ । ମଦ୍‌ଭକ୍ତାସ୍ତେଽତୀବ ମେ ପ୍ରିୟାଃ । ଇତି ।

ଦୁଃଖମବ୍ୟକ୍ତବର୍ତ୍ମୈତଦ୍ ବନ୍ଧୁବନ୍ଧ ମତୋ ବୁଧୈଃ,
ସୁଖଂ କୃଷ୍ଣପଦାମ୍ଭୋଜଭକ୍ତିସତ୍‌ପଥମାଶ୍ରୟେତ୍ ।

ବକ୍ତବ୍ୟ—"ଅଦ୍ୱେଷ୍ଟା ସର୍ବଭୂତାନାମ୍"ଠାରୁ ଅର୍ଥାତ୍ ଏ ଅଧ୍ୟାୟର ୧୩ଶ ଶ୍ଳୋକଠାରୁ "ଯେତୁ ଧର୍ମାମୃତମିଦମ୍" ୨୦ଶ ଶ୍ଳୋକ ଯାଏ ୮ ଗୋଟି ଶ୍ଳୋକରେ ସାଧକଭକ୍ତଙ୍କର ଯେଉଁ ସବୁ ଅବସ୍ଥା ବିଷୟ ବର୍ଣ୍ଣିତ ହେଲା, ତାହା ଅକ୍ଷର ବ୍ରହ୍ମୋପାସକ ସନ୍ନ୍ୟାସୀମାନଙ୍କପ୍ରତିହିଁ ପ୍ରଯୋଜ୍ୟ—ଆଚାର୍ଯ୍ୟ ଶଙ୍କର ପ୍ରମୁଖ ସନ୍ନ୍ୟାସମାର୍ଗାବଲମ୍ବୀ ଟୀକାକାରମାନେ ଏପରି ଉଲ୍ଲେଖ କରି ଅଛନ୍ତି । ତାହା ହୋଇପାରେ ମାତ୍ର ଏ ଶ୍ଳୋକ ଗୁଡ଼ିକ ଯେ କର୍ମଯୋଗୀ ଭକ୍ତମାନଙ୍କ ପାଇଁ ଉଦ୍ଦିଷ୍ଟ ଏହା କିଏ ଅସ୍ୱୀକାର କରିବ ? ଗୀତାର ୯ମ ଅଧ୍ୟାୟଠାରୁ ବ୍ୟକ୍ତୋପାସନା ବା ଭକ୍ତିମାର୍ଗର ଉପାସନା ବର୍ଣ୍ଣିତ ହୋଇଅଛି । ଏପରି ଅବସ୍ଥାରେ ଅକ୍ଷର ବ୍ରହ୍ମଙ୍କ ଉପାସନା ଏଠାରେ କିପରି ଅବାନ୍ତରଭାବରେ ପୁଣି ସ୍ଥାନ ପାଇଲା—ତାହା ବୁଝିହୁଏ ନାହିଁ । ୨ୟ ଅଧ୍ୟାୟର ୫୫ମ ଠାରୁ ୭୨ମ ପର୍ଯ୍ୟନ୍ତ ଶ୍ଳୋକରେ ଜ୍ଞାନୀ ସ୍ଥିତପ୍ରଜ୍ଞଙ୍କର ଯେଉଁସବୁ ଲକ୍ଷଣ ପ୍ରଦତ୍ତ ହୋଇଅଛି, ଏ ଅଧ୍ୟାୟରେ ଭକ୍ତର ଲକ୍ଷଣ ସଙ୍ଗେ ତାହା ପ୍ରାୟ ମିଳିଯାଏ । ଏଥିରୁ ଜଣାଯାଉଅଛି—ପରମ ଜ୍ଞାନୀ ଓ ନିଷ୍କାମ କର୍ମଯୋଗୀ ପରମଭକ୍ତ ଏମାନଙ୍କ ମଧ୍ୟରେ ପାର୍ଥକ୍ୟ କିଛି ନାହିଁ । କାମନାତ୍ୟାଗ ଉଭୟଙ୍କ ସମାନ ଏବଂ ପରା ଶାନ୍ତି ଉଭୟଙ୍କ ଲକ୍ଷ୍ୟ ।

୧୯ଶ ଶ୍ଳୋକରେ 'ଅନିକେତଃ' ଓ ୧୬ଶ ଶ୍ଳୋକରେ 'ସର୍ବାରମ୍ଭପରିତ୍ୟାଗୀ' ଏ ଦୁଇଟି ଶବ୍ଦର ପ୍ରୟୋଗ କେବଳ ସନ୍ନ୍ୟାସୀମାନଙ୍କ ବିଶେଷଣ ହୋଇପାରେ, କର୍ମଯୋଗୀ ଭକ୍ତମାନଙ୍କର ବିଶେଷଣ ହୋଇପାରେ ନାହିଁ—ତେଣୁ ପୂର୍ବୋକ୍ତ ଅଠଗୋଟି ଶ୍ଳୋକରେ ଥିବା ଅନ୍ୟ ବିଶେଷଣ ଗୁଡ଼ିକ ଦ୍ୱାରା ସେହି ସନ୍ନ୍ୟାସୀ ବା ନିର୍ଗୁଣ ଅକ୍ଷର ବ୍ରହ୍ମୋପାସକମାନଙ୍କୁ ବିଶେଷିତ କରାଯାଇ ଅଛି—ଏହା ସନ୍ନ୍ୟାସବାଦୀ ଟୀକାକାରମାନେ କହନ୍ତି । ଆଚାର୍ଯ୍ୟ ଶଙ୍କର ତାଙ୍କ ଗୁରୁଦେବ

'ସର୍ବାରମ୍ଭପରିତ୍ୟାଗୀ'ର ବ୍ୟାଖ୍ୟାରେ ଲେଖି ଅଛନ୍ତି, 'ଇହାମୁତ୍ର ଫଳଭୋଗାର୍ଥାନି କାମହେତୂନି କର୍ମାଣି ସର୍ବାରମ୍ଭାଃ, ତାନ୍ ପରିତ୍ୟକ୍ତୁଂ ଶୀଳମସ୍ୟ'। ଅର୍ଥାତ୍ ଇହଲୋକ ଓ ପରଲୋକରେ ଫଳଭୋଗନିମିତ୍ତ ଯେଉଁ କର୍ମ କରାଯାଏ, ତାହାକୁ ସର୍ବାରମ୍ଭ କହନ୍ତି। ତାହାକୁ ଯେ ପରିତ୍ୟାଗ କରି ଅଛନ୍ତି ସେ ସର୍ବାରମ୍ଭ ପରିତ୍ୟାଗୀ। ୪ର୍ଥ ଅଧ୍ୟାୟର ୧୯ଶ ଶ୍ଳୋକରେ ନିଷ୍କାମ କର୍ମଯୋଗୀଙ୍କ ସମ୍ବନ୍ଧରେ ଏହାହିଁ କୁହାଯାଇ ଅଛି।

ଦ୍ୱିତୀୟତଃ 'ଅନିକେତଃ' ଶବ୍ଦର ଅର୍ଥ ଯାହାଙ୍କର ନିକେତନ ବା ଗୃହ ନାହିଁ। ଏହା ସନ୍ନ୍ୟାସୀଙ୍କର ବିଶେଷଣ, ସନ୍ନ୍ୟାସୀମାନେହିଁ ଗୃହତ୍ୟାଗୀ। ଏହି ହେତୁରୁ ସନ୍ନ୍ୟାସମାର୍ଗୀ ଟୀକାକାରମାନେ କହନ୍ତି, ଘରଦ୍ୱାର ଛାଡ଼ି କୌଣସି କାମନା ହୃଦୟରେ ନ ରଖି ଅରଣ୍ୟରେ ବୁଲିବାହିଁ ଗୀତାର ପ୍ରତିପାଦ୍ୟ, ମାତ୍ର ଏ ମତ ସତ୍ୟ ନୁହେ। ଗୀତାର ଅନ୍ୟ ଉପଦେଶ ମାନଙ୍କ ସଙ୍ଗେ ଏହାର ମେଳ ହୁଏ ନାହିଁ। ତେଣୁ 'ଅନିକେତଃ'ର ଅର୍ଥ ଗୃହହୀନ ନ କରି ଆଶ୍ରୟହୀନ କରିବା ଉଚିତ, କାରଣ ଆଶ୍ରୟ ଓ ନିକେତ ଏ ଦୁଇଶବ୍ଦ ଏକାର୍ଥ ଜ୍ଞାପକ। ଗୀତାର ୬ଷ୍ଠ ଅଧ୍ୟାୟର ୧ମ ଶ୍ଳୋକରେ 'ଅନାଶ୍ରିତଃ କର୍ମଫଳଂ' ଏହିପରି ଅନାଶ୍ରିତ ଶବ୍ଦର ପ୍ରୟୋଗ ହୋଇଅଛି। ଅତଏବ 'ଅନିକେତଃ' ଶବ୍ଦର ଗୃହତ୍ୟାଗୀ ଅର୍ଥ ନକରି ଗୃହ ପ୍ରତି ମମତାଶୂନ୍ୟ ଏହିପରି ଅର୍ଥ କରିବା ସଙ୍ଗତ।

ସେ ଯାହାହେଉ, ଏହି ଶ୍ଳୋକ ମାନଙ୍କରେ ଭକ୍ତଙ୍କର ଯେଉଁ ସବୁ ଲକ୍ଷଣ ପ୍ରଦତ୍ତ ହୋଇଅଛି ସେସବୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ପୂଜାପାଠ, ତିଳକ ଧାରଣ, ପ୍ରତିମାର୍ଚ୍ଚନ ପ୍ରଭୃତି ଭକ୍ତିର ଗୌଣସାଧନ। ଦୃଢ଼ ବିଶ୍ୱାସ, କାମନାତ୍ୟାଗ, ସମତ୍ୱବୁଦ୍ଧି—ଏଗୁଡ଼ିକ ମୁଖ୍ୟ ସାଧନ ବା ମାନସିକ ସାଧନ। ଯେ ପର୍ଯ୍ୟନ୍ତ ଇନ୍ଦ୍ରିୟ ନିଗ୍ରହ ହୋଇନାହିଁ, ଯେ ପର୍ଯ୍ୟନ୍ତ ନିଜର ଚରିତ୍ର ପବିତ୍ର ହୋଇନାହିଁ ଏବଂ ଯେ ପର୍ଯ୍ୟନ୍ତ ତନ୍ମୟତା ଆସିନାହିଁ, ସେ ପର୍ଯ୍ୟନ୍ତ ଈଶ୍ୱରଙ୍କ ଅନୁଗ୍ରହ ଲାଭ କରାଯାଇ ପାରେନାହିଁ, ବା ସେ ପର୍ଯ୍ୟନ୍ତ ଲୋକ ଆପଣାକୁ ଭକ୍ତ ବୋଲି ଭାବି ପାରେନାହିଁ। ଆମ ଧର୍ମର ଇତିହାସରେ ଏଭଳି ଗୃହସ୍ଥ ଭକ୍ତଙ୍କର ଉଦାହରଣ ଅଳ୍ପ ନାହିଁ। ଯାହାଙ୍କୁ ଲକ୍ଷ୍ୟକରି ଏ ଗୀତା ଶାସ୍ତ୍ରର ଉପଦେଶ ଦିଆଯାଇଅଛି ଏବଂ ଯେ ପରମଭକ୍ତ ବୋଲି ଭଗବାନଙ୍କର ବିଶ୍ୱରୂପ ଦର୍ଶନ କରି ପାରିଥିଲେ, ସେହି ଅର୍ଜୁନ ଗୃହସ୍ଥାଶ୍ରମୀ ଥିଲେ। ମହାରାଜ ଯୁଧିଷ୍ଠିର, ରାଜର୍ଷି ଜନକ ପ୍ରଭୃତି ଗୃହସ୍ଥାଶ୍ରମରେ ରହି ପରମଭକ୍ତ ହୋଇ ପାରିଥିଲେ।

ଏ ଉପଦେଶ ଶ୍ରୁତ ସାଧକ ଭକ୍ତଙ୍କ ହୃଦୟରେ ନବ ପ୍ରାଣର ସଞ୍ଚାର କରେ ଏବଂ ତାଙ୍କୁ ଶାଶ୍ୱତ ଅନନ୍ତମୟ ଧାମର ଶାନ୍ତରସ ଆସ୍ୱାଦନ କରିବାକୁ ଉପଯୁକ୍ତ କରାଏ । ସେହି ହେତୁରୁ ଏ ଗ୍ରନ୍ଥକୁ 'ଧର୍ମାମୃତ' ନାମରେ ଅଭିହିତ କରାଯାଇ ଅଛି ।

## ଦ୍ୱାଦଶ ଅଧ୍ୟାୟର ସାର ସଂକଳନ

ଗୀତାର ନବମ ଅଧ୍ୟାୟରୁ ବ୍ୟକ୍ତ ଉପାସନା ଆରମ୍ଭ ହୋଇଅଛି । ଯେଉଁମାନେ ଆଜୀବନ ବ୍ରହ୍ମଚର୍ଯ୍ୟ ପାଳନ କରି ଆତ୍ମସ୍ୱରୂପ ଅନୁଭବ କରିଅଛନ୍ତି, ସେହିମାନେହିଁ ନିର୍ଗୁଣ ଅବ୍ୟକ୍ତ ବ୍ରହ୍ମର ଉପାସନା କରି ସିଦ୍ଧିଲାଭ କରନ୍ତି । କିନ୍ତୁ ଏପରି ସାଧକ ସଂସାରରେ କେତେଜଣ ? ସାଧାରଣ ଲୋକଙ୍କ ପକ୍ଷରେ ବ୍ୟକ୍ତୋପାସନାହିଁ ପ୍ରଶସ୍ତ । ଏକାଦଶ ଅଧ୍ୟାୟ ଶେଷ ଶ୍ଳୋକରେ ଭକ୍ତିମାର୍ଗ ବା ବ୍ୟକ୍ତୋପାସନା ସମ୍ବନ୍ଧରେ ଏହିପରି ସଙ୍କେତ କରିବାରୁ ଦ୍ୱାଦଶ ଅଧ୍ୟାୟ ଆରମ୍ଭରେ ଅର୍ଜୁନ ବ୍ୟକ୍ତ ଓ ଅବ୍ୟକ୍ତ ଉପାସନା ମଧ୍ୟରେ କିଏ ଶ୍ରେଷ୍ଠ—ଏହି ପ୍ରଶ୍ନ ପଚାରିଲେ, ତାହାର ଉତ୍ତରରେ ଭଗବାନ୍ କହିଲେ ଅବ୍ୟକ୍ତ ବ୍ରହ୍ମୋପାସନା ବା ଜ୍ଞାନମାର୍ଗଠାରୁ ବ୍ୟକ୍ତୋପାସନା ବା ଭକ୍ତିମାର୍ଗହିଁ ଶ୍ରେଷ୍ଠ । ତେବେ ଯେଉଁମାନେ ଇନ୍ଦ୍ରିୟ ସଂଯମ କରି ସର୍ବବ୍ୟାପୀ ଅକ୍ଷର ବ୍ରହ୍ମଙ୍କର ଉପାସନା କରନ୍ତି, ସେମାନେ ଶେଷରେ ମୋକ୍ଷର ଅଧିକାରୀ ହୁଅନ୍ତି, କିନ୍ତୁ ସେ ମାର୍ଗ ବଡ଼ କଷ୍ଟସାଧ୍ୟ, କାରଣ ଦେହ ଥିବା ଯାଏ ଦେହ ଓ ଆତ୍ମାର ପାର୍ଥକ୍ୟ ଜ୍ଞାନ ଥାଏ; ଯେତେବେଳେ ଜ୍ଞାନୀମାନେ କଠୋର ସାଧନାଦ୍ୱାରା ଦେହ ଓ ଆତ୍ମାର ଏକତା ଉପଲବ୍ଧି କରନ୍ତି, ସେତେବେଳେ ସେମାନେ ସିଦ୍ଧିପ୍ରାପ୍ତ ହୁଅନ୍ତି । ନିଷ୍କାମ କର୍ମଯୋଗୀମାନେ କର୍ମର ଫଳ ଭଗବାନଙ୍କ ଠାରେ ସମର୍ପଣ କରି ଓ ଏକାନ୍ତ ଭକ୍ତିରେ ତାଙ୍କର ଶରଣାପନ୍ନ ହୋଇ ଅଚିରେ ସଂସାର ବନ୍ଧନରୁ ମୁକ୍ତ ହୋଇ ଯାଆନ୍ତି ।

ମନ ସ୍ୱଭାବତଃ ଚପଳ, କୌଣସି ବିଷୟରେ ମନକୁ ଏକାଗ୍ର କରି ରଖିବା ସହଜ ନୁହେ । ଅଭ୍ୟାସ ଦ୍ୱାରା ମନ ଭଗବାନଙ୍କ ଠାରେ ଅବିଚ୍ଛିନ୍ନ ରହିପାରେ, ଯେବେ ସାଧକ ତହିଁରେ ଅକୃତ କାର୍ଯ୍ୟ ହୁଅନ୍ତି ତେବେ ସାଧୁସଙ୍ଗ, ଧର୍ମଗ୍ରନ୍ଥ ବା ଭକ୍ତି ପ୍ରଧାନ ଗ୍ରନ୍ଥ ପାଠ, ପୂଜା, ଅର୍ଚ୍ଚନା, ବ୍ରତ, ଉପବାସ ପ୍ରଭୃତି ଈଶ୍ୱର ପ୍ରୀତି-ଉତ୍ପାଦକ କର୍ମମାନ କରି ସିଦ୍ଧିଲାଭ କରିବେ । ଯେବେ ସେପରି କରିବାକୁ ଲୋକ ଅକ୍ଷମ ହୁଅନ୍ତି ତେବେ ଯଥା ପ୍ରାପ୍ତ କର୍ତ୍ତବ୍ୟ ସମ୍ପାଦନ କରି ତାହାର ଫଳ ଭଗବାନଙ୍କଠାରେ ଅର୍ପଣ କରିବେ ।

ଧ୍ୟେୟବସ୍ତୁ ସମ୍ବନ୍ଧରେ ସମ୍ୟକ୍ ଜ୍ଞାନଲାଭ ନ କରି ମନ୍ତ୍ରାଦି ଜପ କଲେ ବା ପ୍ରାଣାୟାମାଦି ଅଭ୍ୟାସ କଲେ ବିଶେଷ କିଛି ଫଳଲାଭ ହୁଏ ନାହିଁ । ତେଣୁ

ଅଭ୍ୟାସ ଅପେକ୍ଷା ଜ୍ଞାନ ଶ୍ରେଷ୍ଠ । ପରୋକ୍ଷ ଜ୍ଞାନଲାଭ ଠାରୁ ଧ୍ୟେୟ ବସ୍ତୁର ସ୍ୱରୂପ ଚିନ୍ତନରୂପଧ୍ୟାନ ଶ୍ରେଷ୍ଠ, ଧ୍ୟାନ ଅପେକ୍ଷା କର୍ମଫଳ ତ୍ୟାଗ ଅଧିକ ଶ୍ରେଷ୍ଠ । ଏହି ତ୍ୟାଗଦ୍ୱାରା ସାଧକ ପରମ ଶାନ୍ତି ଲାଭ କରନ୍ତି ।

ଏ ଅଧ୍ୟାୟର ଶେଷ ଅଠଗୋଟି ଶ୍ଳୋକରେ ଭଗବାନ୍ ଭକ୍ତଙ୍କର କେତେ ସ୍ୱରୂପ ଲକ୍ଷଣ ନିର୍ଦ୍ଦେଶ କରି ଅଛନ୍ତି । ଯେ ପ୍ରକୃତ ଭକ୍ତ, ସେ କୌଣସି ପ୍ରାଣୀକୁ ଦ୍ୱେଷ କରନ୍ତି ନାହିଁ; ମିତ୍ରଭାବ, କରୁଣା, କ୍ଷମା ଦ୍ୱାରା ତାଙ୍କର ହୃଦୟ ପୂର୍ଣ୍ଣ ଥାଏ, ସେ ପରମ ସନ୍ତୋଷରେ କାଳଯାପନ କରି ସୁଖ ଓ ଦୁଃଖରେ ସମଭାବରେ ଅବସ୍ଥାନ କରନ୍ତି । ତାଙ୍କ ଦୃଷ୍ଟିରେ ଶତ୍ରୁ ମିତ୍ର ସମାନ; ମାନ ଅପମାନ, ନିନ୍ଦା ବା ପ୍ରଶଂସାରେ ସେ କେବେ ହେଲେ ବିଚଳିତ ହୁଅନ୍ତି ନାହିଁ । ଇହଲୋକରେ ବା ପରଲୋକରେ ଫଳ ଲାଭର ଆଶା ରଖି ସେ କୌଣସି କର୍ମ ଆରମ୍ଭ କରନ୍ତି ନାହିଁ । ନିରଳସ ସ୍ୱଭାବଦ୍ୱାରା ସେ ଗୃହରେ ରହି ମଧ୍ୟ ସମସ୍ତ କର୍ମ କରି ମମତ୍ୱ ବୁଦ୍ଧିରେ ଗ୍ରସିତ ହୁଅନ୍ତି ନାହିଁ । ଏହି ସବୁକୁ ଭଗବାନ୍ 'ଧର୍ମାମୃତ' ନାମରେ ଅଭିହିତ କରି ଶେଷରେ କହି ଅଛନ୍ତି— ଶ୍ରଦ୍ଧା ସହକାରେ ଏ ଗୁଣକୁ ଆଚରଣ କଲେ ଏବଂ ଆମ୍ଭଙ୍କୁ ଏକାନ୍ତ ଗତି ବୋଲି ହୃଦୟରେ ଧାରଣ କଲେ ଆମ୍ଭେ ପ୍ରୀତ ହେଉଁ ।

---

# ତ୍ରୟୋଦଶୋଽଧ୍ୟାୟଃ

## କ୍ଷେତ୍ରକ୍ଷେତ୍ରଜ୍ଞବିଭାଗଯୋଗଃ

ଅର୍ଜୁନ ଉବାଚ

ପ୍ରକୃତିଂ ପୁରୁଷଂ ଚୈବ କ୍ଷେତ୍ରଂ କ୍ଷେତ୍ରଜ୍ଞମେବ ଚ ।
ଏତଦ୍ ବେଦିତୁମିଚ୍ଛାମି ଜ୍ଞାନଂ ଜ୍ଞେୟଂ ଚ କେଶବ । ୦ ।

୦ । ଅନ୍ୱୟ ଦୀପିକା—ହେ କେଶବ, ପ୍ରକୃତିଂ ପୁରୁଷଂ ଚ ( ପ୍ରକୃତି ଏବଂ ପୁରୁଷ ବିଷୟ ) କ୍ଷେତ୍ରଂ, କ୍ଷେତ୍ରଜ୍ଞଂ ଚ ( କ୍ଷେତ୍ର ଓ କ୍ଷେତ୍ରଜ୍ଞ ବିଷୟ ) ଜ୍ଞାନଂ ଜ୍ଞେୟଂ ଚ ( ଜ୍ଞାନ ଏବଂ ଜ୍ଞେୟ ବିଷୟ ), ଏତଦ୍ ( ଏହା ) ବେଦିତୁମ୍ (ଜାଣିବାକୁ) ଇଚ୍ଛାମି ( ଇଚ୍ଛା କରୁଅଛି ) ।

ଅନୁବାଦ—ହେ କେଶବ ! ପ୍ରକୃତି ପୁରୁଷ, କ୍ଷେତ୍ର କ୍ଷେତ୍ରଜ୍ଞ ଓ ଜ୍ଞାନଜ୍ଞେୟ—ଏ ସବୁ ବିଷୟ ମୁଁ ଜାଣିବାକୁ ଇଚ୍ଛା କରୁଅଛି ।

ବିବୃତି—ନବମ ଠାରୁ ଦ୍ୱାଦଶ ଅଧ୍ୟାୟ ମଧ୍ୟରେ ଈଶ୍ୱରଙ୍କ ବ୍ୟକ୍ତରୂପ ଓ ବ୍ୟକ୍ତଉପାସନା ହିଁ ଆଲୋଚନାର ବିଷୟବସ୍ତୁ । ସପ୍ତମ ଅଧ୍ୟାୟରେ ଜ୍ଞାନ ବିଜ୍ଞାନ ସଙ୍ଗେ ପରା ଓ ଅପରା ପ୍ରକୃତିର ସଂକ୍ଷିପ୍ତ ବିବରଣ ପ୍ରଦତ୍ତ ହୋଇଅଛି । ଈଶ୍ୱର ବିଷୟକ ପୂର୍ଣ୍ଣ ଜ୍ଞାନଲାଭ ପାଇଁ ୭ମ ଅଧ୍ୟାୟର ସେହି ସଂକ୍ଷିପ୍ତ ବିବରଣ ଯଥେଷ୍ଟ ନୁହେ । ତେଣୁ ବିଶ୍ୱସୃଷ୍ଟିର କ୍ଷର ଅକ୍ଷର ବିଚାର ସଙ୍ଗେ ମନୁଷ୍ୟଶରୀର ଓ ଆତ୍ମାର ଅଥବା କ୍ଷେତ୍ର ଓ କ୍ଷେତ୍ରଜ୍ଞର ବିଚାର ଏକାନ୍ତ ଆବଶ୍ୟକ । ତା ନ ହେଲେ ଜ୍ଞାନ ବିଜ୍ଞାନ ନିରୂପଣ ଅସମ୍ପୂର୍ଣ୍ଣ ରହିଯିବ । ସେହି ହେତୁରୁ ଭଗବାନ୍ ୧୩ଶ ଠାରୁ ୧୭ଶ ଅଧ୍ୟାୟ ମଧ୍ୟରେ ଏସବୁର ଆଲୋଚନା କରିଅଛନ୍ତି । ଶେଷ ଅଧ୍ୟାୟରେ ଅର୍ଥାତ୍ ୧୮ଶ ଅଧ୍ୟାୟରେ ସମଗ୍ର ଗୀତା ଶାସ୍ତ୍ରର ସାର ସଂକଳନ କରାଯାଇ ଅଛି ।

ଏ ଶ୍ଲୋକଟି ପ୍ରକ୍ଷିପ୍ତ, ମୂଳ ଗୀତାର ଅନ୍ତର୍ଗତ ନୁହେ । ଆଚାର୍ଯ୍ୟ ଶଙ୍କର ଓ ଶ୍ରୀଧର ସ୍ୱାମୀ, ଏ ଶ୍ଲୋକର ଟୀକା ଲେଖି ନାହାନ୍ତି । ବ୍ୟକ୍ତ ଉପାସନା ପରେ ହଠାତ୍ ପୁଣି କ୍ଷେତ୍ର କ୍ଷେତ୍ରଜ୍ଞ ବିଚାର ଆରମ୍ଭ ହେବାର ଦେଖି ପରେ କୌଣସି ଗୀତାଭକ୍ତ ପ୍ରସଙ୍ଗର ସମନ୍ୱୟ କରାଇବାକୁ ଏ ଶ୍ଲୋକଟି ନିଜେ ରଚନା କରି ଗୀତାର ଅଙ୍ଗୀଭୂତ କରିଦେଇ ଅଛନ୍ତି । ଏହାକୁ ପ୍ରକ୍ଷିପ୍ତ ବୋଲି ନ ମାନିଲେ ଗୀତାର ଶ୍ଲୋକ ସଂଖ୍ୟା ୭୦୦ ସ୍ଥାନରେ ୭୦୧ ହୋଇଯିବ ।

ଶ୍ରୀ ଭଗବାନୁବାଚ

ଇଦଂ ଶରୀରଂ କୌନ୍ତେୟ କ୍ଷେତ୍ରମିତ୍ୟଭିଧୀୟତେ ।
ଏତଦ୍ ଯୋ ବେତ୍ତି ତଂ ପ୍ରାହୁଃ କ୍ଷେତ୍ରଜ୍ଞ ଇତିତଦ୍‌ବିଦଃ । ୧ ।

୧ । ଅନ୍ୱୟ ଦୀପିକା—ଶ୍ରୀ ଭଗବାନ୍ ଉବାଚ ( ଶ୍ରୀ ଭଗବାନ୍ କହିଲେ), [ ହେ ] କୌନ୍ତେୟ, ଇଦଂ ଶରୀରଂ ( ଏହି ଶରୀର ) କ୍ଷେତ୍ରମ୍ ଇତି ( କ୍ଷେତ୍ରବୋଲି ) ଅଭିଧୀୟତେ (ଅଭିହିତ ହୁଏ ), ଯଃ ( ଯେ ) ଏତତ୍ ବେତ୍ତି ( ଏହାକୁ ଜାଣନ୍ତି ) ତଂ ( ତାହାଙ୍କୁ ) ତଦ୍‌ବିଦଃ ( କ୍ଷେତ୍ର କ୍ଷେତ୍ରଜ୍ଞ ବିଷୟ ଜାଣିବା ଲୋକମାନେ ) କ୍ଷେତ୍ରଜ୍ଞଃ ଇତି ( କ୍ଷେତ୍ରଜ୍ଞ ବୋଲି) ପ୍ରାହୁଃ ( କହନ୍ତି ) ।

ଅନୁବାଦ—ଶ୍ରୀ ଭଗବାନ୍ କହିଲେ—ହେ କୌନ୍ତେୟ, ଏହି ଶରୀରକୁ କ୍ଷେତ୍ର କୁହାଯାଏ ଏବଂ ଏହାକୁ ଯେ ଜାଣନ୍ତି ତାହାଙ୍କୁ କ୍ଷେତ୍ରଜ୍ଞ ବୋଲି କହନ୍ତି । କ୍ଷେତ୍ର ଓ କ୍ଷେତ୍ରଜ୍ଞ ଏ ଦୁଇ ତତ୍ତ୍ୱ ଯେ ଜାଣନ୍ତି ସେମାନେ ଏହିପରି କହି ଥାଆନ୍ତି ।

ସୁବୋଧିନୀ ଟୀକା—

ଭକ୍ତାନାମହଂ ମୁଦ୍ଧର୍ତ୍ତା ସଂସାରାଦିତ୍ୟବାଦି ଯତ୍,
ତଦ୍ୱୋଦଶେଽଥ ତତ୍‌ସିଦ୍ଧ୍ୟୈ ତତ୍ତ୍ୱଜ୍ଞାନ ମୁଦୀର୍ଯ୍ୟତେ ।

ତେଷାଂମହଂ ସମୁଦ୍ଧର୍ତ୍ତା ମୃତ୍ୟୁସଂସାରସାଗରାତ୍, ଭବାମି ନ ଚିରାତ୍ ପାର୍ଥ—ଇତି ପୂର୍ବଂ ପ୍ରତିଜ୍ଞାତମ୍ । ନ ଚାତ୍ମଜ୍ଞାନଂ ବିନା ସଂସାରାଦୁଦ୍ଧରଣଂ ସମ୍ଭବତୀତି ତତ୍ତ୍ୱଜ୍ଞାନୋପଦେଶାର୍ଥଂ ପ୍ରକୃତିପୁରୁଷବିବେକାଧ୍ୟାୟ ଆରଭ୍ୟତେ । ତତ୍ରଯତ୍ ସପ୍ତମାଧ୍ୟାୟେ ଅପରା ପରାଚେତି ପ୍ରକୃତିଦ୍ୱୟମୁକ୍ତଂ ତୟୋରବିବେକାଜ୍ଜୀବଭାବ-ମାପନ୍ନସ୍ୟ ଚିଦଂଶସ୍ୟାୟଂ ସଂସାରଃ । ଯାଭ୍ୟାଂ ଚ ଜୀବୋପଭୋଗାର୍ଥମୀଶ୍ୱରସ୍ୟ ସୃଷ୍ଟ୍ୟାଦିଷୁ ପ୍ରବୃତ୍ତିଃ । ତଦେବ ପ୍ରକୃତିଦ୍ୱୟଂ କ୍ଷେତ୍ରକ୍ଷେତ୍ରଜ୍ଞଶବ୍ଦବାଚ୍ୟଂ ପରସ୍ପରଂ ବିବିକ୍ତଂ ତତ୍ତ୍ୱତୋ ନିରୂପୟିଷ୍ୟନ୍ ଭଗବାନୁବାଚ—ଇଦମିତି । ଇଦଂ ଭୋଗାୟ-ତନଂ ଶରୀରଂ କ୍ଷେତ୍ରମିତ୍ୟଭିଧୀୟତେ । ସଂସାରସ୍ୟ ପ୍ରରୋହଭୂମିତ୍ୱାତ୍ । ଏତଦ୍ ଯୋବେତ୍ତି—ଅହଂ ମମେତିମନ୍ୟତେ ତଂ କ୍ଷେତ୍ରଜ୍ଞ ଇତି ପ୍ରାହୁଃ । କୃଷୀବଳବତ୍ତତ୍‌ଫଲଭୋକ୍ତୃତ୍ୱାତ୍ । ତଦ୍‌ବିଦଃ କ୍ଷେତ୍ରକ୍ଷେତ୍ରଜ୍ଞୟୋର୍ବିବେକଜ୍ଞଃ ।

ବିବୃତି—କ୍ଷେତ୍ର ଶବ୍ଦର ମୌଳିକ ଅର୍ଥ କ୍ଷେତ ବା ଭୂମିଖଣ୍ଡ । କ୍ଷେତ୍ର ଯେପରି ଶସ୍ୟର ଉତ୍ପତ୍ତି ସ୍ଥାନ, ଏହି ଶରୀର ସେହିପରି ସୁଖ ଦୁଃଖମୟ ସଂସାରର ଉତ୍ପତ୍ତି ଭୂମି । ତେଣୁ ଏହି ଭୋଗାୟତନ ଶରୀରକୁ କ୍ଷେତ୍ର କୁହାଯାଏ । କୃଷକ ଯେପରି ଭୂମିରୁ ଫଳ ଉତ୍ପାଦନ କରି ଭୋଗକରେ,

କ୍ଷେତ୍ରଜ୍ଞଂ ଚାପି ମାଂ ବିଦ୍ଧି ସର୍ବକ୍ଷେତ୍ରେଷୁ ଭାରତ
କ୍ଷେତ୍ରକ୍ଷେତ୍ରଜ୍ଞୟୋର୍ଜ୍ଞାନଂ ଯତ୍ତଜ୍ଜ୍ଞାନଂ ମତଂ ମମ । ୨ ।

ସେହିପରି ଏ ଶରୀରରେ ରହି ଯେ 'ମୁଁ' 'ମୋର' ଏହି ଅଭିମାନ କରି ସୁଖ-ଦୁଃଖାଦି ଫଳ ଭୋଗ କରନ୍ତି ତାହାଙ୍କୁ ହିଁ କ୍ଷେତ୍ରଜ୍ଞ ବୋଲାଯାଏ । ଅତଏବ କ୍ଷେତ୍ରର ଅର୍ଥ ଶରୀର ଓ କ୍ଷେତ୍ରଜ୍ଞର ଅର୍ଥ ଆତ୍ମା ।

୨ । ଅନ୍ୱୟଦୀପିକା—[ ହେ ] ଭାରତ, ସର୍ବ କ୍ଷେତ୍ରେଷୁ ଅପି ( ସମସ୍ତ କ୍ଷେତ୍ରରେହିଁ ) ମାଂ ଚ ( ଆମ୍ଭକୁ ) କ୍ଷେତ୍ରଜ୍ଞଂ ବିଦ୍ଧି ( କ୍ଷେତ୍ରଜ୍ଞ ବୋଲି ଜାଣ), କ୍ଷେତ୍ରକ୍ଷେତ୍ରଜ୍ଞୟୋଃ ( କ୍ଷେତ୍ର ଓ କ୍ଷେତ୍ରଜ୍ଞ ସମ୍ବନ୍ଧୀୟ ) ଯତ୍ ଜ୍ଞାନଂ (ଯେଉଁଜ୍ଞାନ) ତତ୍ ଜ୍ଞାନଂ (ତାହାହିଁ ଜ୍ଞାନ ), ମମ ମତଂ (ଏହା ଆମ୍ଭର ଅଭିମତ) ।

ସୁବୋଧିନୀ ଟୀକା—ତଦେବ ସଂସାରିଣଃ ସ୍ୱରୂପମୁକ୍ତ୍ୱେଦାନୀଂ ତସ୍ୟୈବ ପାରମାର୍ଥିକମସଂସାରିସ୍ୱରୂପମାହ, କ୍ଷେତ୍ରଜ୍ଞମିତି । ତଂ ଚ କ୍ଷେତ୍ରଜ୍ଞଂ ସଂସାରିଣଂ ଜୀବଂ ବସ୍ତୁତଃ ସର୍ବକ୍ଷେତ୍ରେଷ୍ୱନୁଗତଂ ମାମେବ ବିଦ୍ଧି, ତତ୍ତ୍ୱମସୀତି ଶ୍ରୁତ୍ୟୁପଲକ୍ଷିତେନ ଶଦାଂଶେନ ମଦ୍ରୂପସ୍ୟୋକ୍ତତ୍ୱାତ୍ । ଅଦଗ୍ଧର୍ଥମେବ ତଜ୍ଜ୍ଞାନଂ ସ୍ତୌତି । କ୍ଷେତ୍ରକ୍ଷେତ୍ରଜ୍ଞୟୋର୍ଯଦେବଂ ବୈଲକ୍ଷଣ୍ୟେନ ଜ୍ଞାନଂ ତଦେବ ମୋକ୍ଷହେତୁତ୍ୱାନ୍ମଜ୍ଞାନଂ ମତମ୍ । ଅନ୍ୟତ୍ତୁ ବୃଥା ପାଣ୍ଡିତ୍ୟଂ । ବନ୍ଧହେତୁତ୍ୱା-ଦତ୍ୟର୍ଥଃ, ତଦୁକ୍ତଂ :—

ତତ୍କର୍ମ ଯନ୍ନ ବନ୍ଧାୟ ସା ବିଦ୍ୟା ଯାଚ ମୁକ୍ତୟେ,
ଆୟାସାୟାପରଂ କର୍ମ ବିଦ୍ୟାନ୍ୟା ଶିଳ୍ପନୈପୁଣମ୍—ଇତି ।

ବିବୃତି—ପ୍ରଥମ ଶ୍ଳୋକରେ କୁହାଯାଇ ଅଛି, ଏହି ଭୋଗାୟତନ ଶରୀରର ନାମ କ୍ଷେତ୍ର ଏବଂ ଏହି ଶରୀରର ମଧ୍ୟରେ 'ମୁଁ' 'ମୋର' ବୋଲି ଯେ ଅଭିମାନ କରନ୍ତି, ସେହି ଆତ୍ମାହିଁ କ୍ଷେତ୍ରଜ୍ଞ । ଏହି ଶ୍ଳୋକରେ 'କ୍ଷେତ୍ରଜ୍ଞଂଚାପି' କହିବା ଦ୍ୱାରା ବୁଝାଉଛନ୍ତି ଯେ ଆମ୍ଭେ କେବଳ କ୍ଷେତ୍ରଜ୍ଞ ନୋହୁଁ, କ୍ଷେତ୍ର ମଧ୍ୟ ଆମ୍ଭେ । କାରଣ ଏ ଶରୀର ଯେଉଁ ପଞ୍ଚ ମହାଭୂତରେ ନିର୍ମିତ ହୋଇଅଛି, ତାହା ପ୍ରକୃତି । ସପ୍ତମ ଓ ଅଷ୍ଟମ ଅଧ୍ୟାୟରେ କୁହାଯାଇ ଅଛି ଯେ, ଏହି ପ୍ରକୃତି ପରମେଶ୍ୱରଙ୍କ ଅପରାବିଭୂତି । ଅତଏବ ଏହି କ୍ଷେତ୍ର ବା ଶରୀରହିଁ ଈଶ୍ୱରଙ୍କ ଶରୀର ବା କ୍ଷେତ୍ର; ପଞ୍ଚମହାଭୂତରେ ନିର୍ମିତ ବୋଲି କ୍ଷର—ଅକ୍ଷର ବିଚାରରେ ଯାହାକୁ 'କ୍ଷର' ବୋଲାଯାଏ, କ୍ଷେତ୍ର ତାହାର ଅନ୍ତର୍ଗତ । କ୍ଷେତ୍ରଜ୍ଞହିଁ ପରମେଶ୍ୱର ବା ଅକ୍ଷର, ଏହି ଭାବରେ ଦେଖିଲେ କ୍ଷର—ଅକ୍ଷର ବିଚାର ପରି କ୍ଷେତ୍ର-କ୍ଷେତ୍ରଜ୍ଞ ବିଚାର ମଧ୍ୟ ପରମେଶ୍ୱର ବିଷୟକ ଜ୍ଞାନର ଏକ ଅଂଶ । ତେଣୁ ଏ ଶ୍ଳୋକରେ କୁହାଯାଇ ଅଛି କ୍ଷେତ୍ର କ୍ଷେତ୍ରଜ୍ଞ ବିଷୟକ ଜ୍ଞାନ ଆମ୍ଭର ଅର୍ଥାତ୍ ପରମେଶ୍ୱରଙ୍କ ଜ୍ଞାନ ।

ତତ୍ କ୍ଷେତ୍ରଂ ଯଚ୍ଚ ଯାଦୃକ୍ ଚ ଯଦ୍ବିକାରି ଯତଶ୍ଚ ଯତ୍ ।
ସ ଚ ଯୋ ଯତ୍ପ୍ରଭାବଶ୍ଚ ତତ୍ ସମାସେନ ମେ ଶୃଣୁ । ୩ ।
ଋଷିଭିର୍ବହୁଧା ଗୀତଂ ଛନ୍ଦୋଭିର୍ବିବିଧୈଃ ପୃଥକ୍
ବ୍ରହ୍ମସୂତ୍ରପଦୈଶ୍ଚୈବ ହେତୁମଦ୍ଭିର୍ବିନିଶ୍ଚିତୈଃ । ୪ ।

୩ । ଅନ୍ୱୟଦୀପିକା—ତତ୍ ( ସେହି ) କ୍ଷେତ୍ରଂ (କ୍ଷେତ୍ର) ଯତ୍ ଚ (ଯାହା ), ଯାଦୃକ୍ ଚ ( ଯେଉଁପରି), ଯଦ୍ବିକାରି ( ଯେଉଁପରି ବିକାରଯୁକ୍ତ ), ଯତଃ ଚ ଯତ୍ ( ଏହାମଧ୍ୟରେ କାହିଁରୁ କଅଣ ହୁଏ ) ସଃ ଚ ( ଏବଂ ସେହି କ୍ଷେତ୍ରଜ୍ଞ ) ଯଃ (ଯେପରି), ଯତ୍ ପ୍ରଭାବଃ ଚ ( ଯେଉଁପରି ପ୍ରଭାବ ବିଶିଷ୍ଟ ) ତତ୍ ମେ ( ତାହା ଅମ୍ଭଠାରୁ ) ସମାସେନ ( ସଂକ୍ଷେପରେ ) ଶୃଣୁ ( ଶୁଣ ) ।

ଅନୁବାଦ—ସେହି କ୍ଷେତ୍ର ବା ଶରୀର କଅଣ, ତାହା କି ପ୍ରକାର, କିପରି ବିକାର ବିଶିଷ୍ଟ ଏବଂ ଏହା ମଧ୍ୟରେ କଅଣରୁ କଅଣ ହୁଏ, ସେହିପରି କ୍ଷେତ୍ରଜ୍ଞ କିଏ ଏବଂ ତାହାଙ୍କର ପ୍ରଭାବ କିପରି—ଅମ୍ଭଠାରୁ ସଂକ୍ଷେପରେ ଏହିସବୁ କଥା ଶୁଣ ।

ସୁବୋଧିନୀ ଟୀକା—ଇଦ ଯଦ୍ୟପି ଚତୁର୍ବିଂଶତ୍ୟା ଭେଦୈର୍ଭିନ୍ନା ପ୍ରକୃତିଃ କ୍ଷେତ୍ରମିତ୍ୟଭିପ୍ରେତଂ ତଥାପି ଦେହରୂପେଣ ପରିଣତାୟାମେବ ତସ୍ୟା-ମହଂଭାବେନାଭିବେକଃ ସ୍ଫୁଟ ଇତି । ତଦ୍ବିବେକାର୍ଥମିଦଂ ଶରୀରଂ କ୍ଷେତ୍ରମିତ୍ୟାଦ୍ୟୁକ୍ତମ୍ । ତଦେତତ୍ ପ୍ରପଞ୍ଚୟିଷ୍ୟନ୍ ପ୍ରତିଜାନୀତେ—ତଦିତି, ଯଦୁକ୍ତଂ ମୟା ତତ୍କ୍ଷେତ୍ରଂ ଯତ୍ ସ୍ୱରୂପତୋ ଜଡ଼ଂ ଦୃଶ୍ୟାଦିସ୍ୱଭାବଂ । ଯାଦୃଗ୍ ଯାଦୃଶଂ ଚେଚ୍ଛାଦିଧର୍ମକଂ । ଯଦ୍ବିକାରି ଯୈରିନ୍ଦ୍ରିୟାଦିବିକାରୈର୍ଯୁକ୍ତଂ । ଯତଶ୍ଚ ପ୍ରକୃତିପୁରୁଷସଂଯୋଗାଦ୍ ଭବତି । ଯଦିତି ଯୈଃ ପ୍ରକାରୈଃ ସ୍ଥାବରଜଙ୍ଗମା-ଦିଭେଦୈର୍ଭିନ୍ନ ମିତ୍ୟର୍ଥଃ । ସ ଚ କ୍ଷେତ୍ରଜ୍ଞୋ ଯତ୍ସ୍ୱରୂପୋ ଯତ୍ପ୍ରଭାବଶ୍ଚ ଅଚିନ୍ତ୍ୟୈ-ଶ୍ୱର୍ଯ୍ୟଯୋଗେଣ ଯୈଃ ପ୍ରଭାବୈଃ ସମ୍ପନ୍ନଃ । ତତ୍ ସର୍ବଂ ସଂକ୍ଷେପତୋ ମତ୍ତଃ ଶୃଣୁ ।

ବିବୃତି—କ୍ଷେତ୍ର କିପରି ଜଡ଼ସ୍ୱଭାବ, କିପରି ଇଚ୍ଛାଦିଧର୍ମବିଶିଷ୍ଟ, କିପରି ଇନ୍ଦ୍ରିୟାଦିବିକାରଯୁକ୍ତ, ଏବଂ ଏହି ଇନ୍ଦ୍ରିୟବିକାରରୁ କିପରି କାର୍ଯ୍ୟାଦି ଉତ୍ପନ୍ନ ହୁଏ ଏବଂ ସ୍ଥାବରଜଙ୍ଗମାଦି ଭେଦରେ ଏହା କିପରି ଭିନ୍ନ—ଏ ସମସ୍ତ ତତ୍ତ୍ୱ ଏବଂ କ୍ଷେତ୍ରଜ୍ଞ କିଏ ଏବଂ ତାଙ୍କର ସ୍ୱରୂପ ପ୍ରଭାବ କିପରି—ତାହାହିଁ ଭଗବାନ୍ ସଂକ୍ଷେପରେ ଏଠାରେ ବର୍ଣ୍ଣନା କରିବେ ।

୪ । ଅନ୍ୱୟଦୀପିକା—ଋଷିଭିଃ (ଋଷିମାନଙ୍କ ଦ୍ୱାରା) ବିବିଧୈଃ ଛନ୍ଦୋଭିଃ (ନାନାବିଧ ଛନ୍ଦରେ) ପୃଥକ୍ ବହୁଧା (ପୃଥକ୍ ପୃଥକ୍ ନାନା ପ୍ରକାରରେ) [ଏହି କ୍ଷେତ୍ର ଓ କ୍ଷେତ୍ରଜ୍ଞ ସ୍ୱରୂପ] ଗୀତମ୍ (ବ୍ୟାଖ୍ୟାତ ହୋଇଅଛି), ବିନିଶ୍ଚିତୈଃ (ସଣ୍ଶୟରହିତ) ହେତୁମଦ୍ଭିଃ (ଯୁକ୍ତିଯୁକ୍ତ) ବ୍ରହ୍ମସୂତ୍ରପଦୈଃ ଏବଚ (ବ୍ରହ୍ମସୂତ୍ର ପଦସମୂହ ଦ୍ୱାରା ମଧ୍ୟ) [ବହୁ ପ୍ରକାର ବ୍ୟାଖ୍ୟାତ ହୋଇଅଛି ] ।

ଅନୁବାଦ—ଋଷିମାନେ ଏହି କ୍ଷେତ୍ର କ୍ଷେତ୍ରଜ୍ଞ ସ୍ୱରୂପ ନାନା ଛନ୍ଦରେ ପୃଥକ୍ ପୃଥକ୍ ନାନା ପ୍ରକାରରେ ବ୍ୟାଖ୍ୟା କରିଅଛନ୍ତି । ବ୍ରହ୍ମସୂତ୍ରର ପଦସମୂହ ଦ୍ୱାରା ମଧ୍ୟ ଯୁକ୍ତି ଯୁକ୍ତ ବିଚାର ସହିତ ନିଃସନ୍ଦିଗ୍ଧ ରୂପରେ ଏହି ବିଷୟ ସବୁ ବ୍ୟାଖ୍ୟାତ ହୋଇଅଛି ।

ସୁବୋଧିନୀ ଟୀକା—ତୈର୍ବିସ୍ତରେଣୋକ୍ତସ୍ୟାସ୍ୟ ସଂକ୍ଷେପ ଇତ୍ୟପେକ୍ଷାୟାମାହ । ଋଷିଭିରିତି, ଋଷିଭିର୍ବଶିଷ୍ଠାଦିଭିର୍ଯୋଗଶାସ୍ତ୍ରେଷୁ ଧ୍ୟାନଧାରଣାଦିବିଷୟତ୍ୱେନ ବୈରାଜାଦିସ୍ୱରୂପେଣ ବହୁଧା ଗୀତଂ ନିରୂପିତଂ । ବିବିଧୈର୍ବିଚିତ୍ରୈର୍ନିତ୍ୟନୈମିତ୍ତିକକାମ୍ୟକର୍ମାଦିବିଷୟୈଃ । ଛନ୍ଦୋଭିର୍ବେଦୈଃ ନାନାଯଜ୍ଞୋପାସ୍ୟଦେବତାଦିରୂପେଣ ଗୀତଂ, ବ୍ରହ୍ମଣଃ ସୂତ୍ରୈଃ ପଦୈଶ୍ଚ, ବ୍ରହ୍ମ ସୂଚ୍ୟତେ ସୂଚ୍ୟତ ଏଭିରିତି ବ୍ରହ୍ମସୂତ୍ରାଣି । ଯତୋ ବା ଇମାନି ଭୂତାନି ଜାୟନ୍ତେ ଇତ୍ୟାଦୀନି ତଟସ୍ଥଲକ୍ଷଣପରାଣ୍ୟୁପନିଷଦ୍ବାକ୍ୟାନି, ତୈଶ୍ଚ ବ୍ରହ୍ମ ପଦ୍ୟତେ ଗମ୍ୟତେ ସାକ୍ଷାଜ୍ଜ୍ଞାୟତ ଏଭିରିତି ପଦାନି ସ୍ୱରୂପଲକ୍ଷଣପରାଣି—ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ ଇତ୍ୟାଦୀନି, ତୈଶ୍ଚ ବହୁଧା ଗୀତମ୍ । କିଞ୍ଚ ହେତୁମଦ୍ଭିଃ—ସଦେବ ସୌମ୍ୟେଦମଗ୍ର ଆସୀତ୍, କଥମସତଃ ସଜ୍ଜାୟେତ ଇତି । ତଥା କୋ ହ୍ୟେବାନ୍ୟାତ୍ କଃ ପ୍ରାଣ୍ୟାତ୍ ଯଦେଷ ଆକାଶ ଆନନ୍ଦୋ ନ ସ୍ୟାତ୍, ଏଷ ହ୍ୟେବାନନ୍ଦୟତି ଇତ୍ୟାଦି ଯୁକ୍ତିମଦ୍ଭିଃ । ଅନ୍ୟାଦପାନଚେଷ୍ଟାଂ କଃ କୁର୍ଯାତ୍ । ପ୍ରାଣ୍ୟାତ୍ ପ୍ରାଣବ୍ୟାପାରଂ ବା କଃ କୁର୍ଯାଦିତି ଶ୍ରୁତିପଦୟୋରର୍ଥଃ, ବିନିଶ୍ଚିତୈରୁପକ୍ରମୋପସଂହାରୈକବାକ୍ୟତୟାଽସନ୍ଦିଗ୍ଧାର୍ଥପ୍ରତିପାଦକୈରିତ୍ୟର୍ଥଃ, ତଦେବ ମେ ତୈର୍ବିସ୍ତରେଣୋକ୍ତଂ ଦୁଃସଂଗ୍ରହଂ ସଂକ୍ଷେପତସ୍ତତ୍ତ୍ୱଂ କଥୟିଷ୍ୟାମି, ତଚ୍ଛୃଣ୍ୱିତ୍ୟର୍ଥଃ; ଯଦ୍ୱା ଅଥାତୋ ବ୍ରହ୍ମଜିଜ୍ଞାସା । ଇତ୍ୟାଦୀନି ବ୍ରହ୍ମସୂତ୍ରାଣି ଗୃହ୍ୟନ୍ତେ ତାନ୍ୟେବ ବ୍ରହ୍ମପଦ୍ୟତେ ନିଶ୍ଚୀୟତ ଏଭିରିତି ପଦାନି ତୈର୍ହେତୁମଦ୍ଭିଃ—ଈକ୍ଷତେର୍ନାଶବ୍ଦମ୍—ଆନନ୍ଦମୟୋଽଭ୍ୟାସାତ୍ ଇତ୍ୟାଦିଯୁକ୍ତିମଦ୍ଭିର୍ବିନିଶ୍ଚିତାର୍ଥୈଃ । ଶେଷଂ ସମାନମ୍ ।

ବିବୃତି—ପ୍ରାଚୀନ ଆର୍ଯ୍ୟ ଋଷିମାନେ ଉପନିଷଦ୍ ସମୂହରେ ଆଧ୍ୟାତ୍ମିକ ତତ୍ତ୍ୱ ନାନାଭାବରେ ବିଚାର କରିଅଛନ୍ତି । ଏହି ସବୁ ବିଚାର ଏକସ୍ଥାନରେ ବା ଏକ ସମୟରେ ହୋଇ ନ ଥିବାରୁ ଏମାନଙ୍କ ମଧ୍ୟରେ ସାମଞ୍ଜସ୍ୟ ରକ୍ଷା କରାଯାଇ ପାରନାହିଁ ଏବଂ ଅନେକ ସ୍ଥାନରେ ଏସବୁ ପରସ୍ପର ବିରୁଦ୍ଧ ପରି ବୋଧହୁଏ । ଏ ଶ୍ଲୋକର ପ୍ରଥମ ଚରଣରେ ବିବିଧ ଓ ପୃଥକ୍ ଶବ୍ଦଦ୍ୱାରା ଏହି ଅସାମଞ୍ଜସ୍ୟ ଓ ପରସ୍ପର ବିରୁଦ୍ଧ ମତକୁ ଲକ୍ଷ୍ୟ କରାଯାଇଅଛି । ପରବର୍ତ୍ତୀ କାଳରେ ବାଦରାୟଣାର୍ଯ୍ୟ ବା ବ୍ୟାସଦେବ ଏହି ଉପନିଷଦ୍ ବାକ୍ୟ ମାନଙ୍କ ମଧ୍ୟରେ ସାମଞ୍ଜସ୍ୟ ଆଣିବା ଉଦ୍ଦେଶ୍ୟରେ ବ୍ରହ୍ମସୂତ୍ର ବା ବେଦାନ୍ତ ଦର୍ଶନ ପ୍ରଣୟନ କଲେ । ବେଦାନ୍ତ ଦର୍ଶନ ସୂତ୍ରମାନଙ୍କରେ ଉପନିଷଦ ସମୂହର ଏକ ବାକ୍ୟତା

ମହାଭୂତାନ୍ୟହଂକାରୋ ବୁଦ୍ଧିରବ୍ୟକ୍ତ ମେବଚ
ଇନ୍ଦ୍ରିୟାଣି ଦଶୈକଂ ଚ ପଞ୍ଚେନ୍ଦ୍ରିୟଗୋଚରାଃ । ୫ ।
ଇଚ୍ଛା ଦ୍ୱେଷଃ ସୁଖଂ ଦୁଃଖଂ ସଂଘାତ ଶ୍ଚେତନା ଧୃତିଃ
ଏତତ୍‌ କ୍ଷେତ୍ରଂ ସମାସେନ ସବିକାରମୁଦାହୃତମ୍ । ୬ ।

ପ୍ରମାଣ ଓ କାର୍ଯ୍ୟକାରଣ ହେତୁଦ୍ୱାରା ନିର୍ଣ୍ଣୀତ ହୋଇଅଛି । ଉପନିଷଦ୍ ମାନଙ୍କର ରହସ୍ୟ ବୁଝିବାପାଇଁ ବେଦାନ୍ତ ଦର୍ଶନ ସର୍ବଦା ପ୍ରୟୋଜନୀୟ ହୁଏ । ସେହିହେତୁରୁ ଏ ଶ୍ଳୋକରେ ଉପନିଷଦ୍ ଓ ବେଦାନ୍ତ ଦର୍ଶନ ଉଭୟର ଉଲ୍ଲେଖ ହୋଇଅଛି ।

କେହି କେହି କହନ୍ତି ଶ୍ରୀମଦ୍‌ଭଗବଦ୍‌ଗୀତାର ରଚନା ପରେ ବେଦାନ୍ତ ଦର୍ଶନର ରଚନା, ତେଣୁ ଏଠାରେ "ବ୍ରହ୍ମସୂତ୍ରପଦୈଃ" ଏହାଦ୍ୱାରା କେବଳ ଉପନିଷଦର ବାକ୍ୟମାନଙ୍କୁ ଲକ୍ଷ୍ୟ କରାଯାଇଅଛି । ମାତ୍ର ଲୋକମାନ୍ୟ ତିଲକ ନାନା ଆଲୋଚନା ଦ୍ୱାରା ସ୍ଥିର କରିଅଛନ୍ତି ଯେ, ମହାଭାରତ, ଗୀତା ଓ ବେଦାନ୍ତ ଦର୍ଶନ—ଏ ତିନିଗ୍ରନ୍ଥ ଏକ ବାଦରାୟଣାଚାର୍ଯ୍ୟ ବ୍ୟାସଦେବଙ୍କ ଦ୍ୱାରାହିଁ ରଚିତ, ତେଣୁ 'ବ୍ରହ୍ମ ସୂତ୍ର' ପଦ ବେଦାନ୍ତଦର୍ଶନଅର୍ଥରେ ପ୍ରଯୁକ୍ତ ହୋଇ ଅଛି, ବେଦାନ୍ତ ଦର୍ଶନର ଅନ୍ୟନାମ ଶାରୀରକ ସୂତ୍ର, କ୍ଷେତ୍ର ଅର୍ଥାତ୍ ଶରୀର ସମ୍ବନ୍ଧୀୟ ବିଚାର ଏଥିରେ ଥିବାରୁ ଏହାର ଏହିପରି ନାମକରଣ ।

୫ । ୬ । ଅନ୍ୱୟ ଦୀପିକା—ମହାଭୂତାନି ( ପଞ୍ଚ ମହାଭୂତ ) ଅହଂକାରଃ (ଅହଂକାର), ବୁଦ୍ଧିଃ (ବୁଦ୍ଧି), ଅବ୍ୟକ୍ତମ୍ ଏବ ଚ (ଏବଂ ମୂଳପ୍ରକୃତି), ଦଶ ଇନ୍ଦ୍ରିୟାଣି (ଦଶ ଇନ୍ଦ୍ରିୟ), ଏକଂ ଚ (ଏବଂ ଏକମନ) ପଞ୍ଚ ଇନ୍ଦ୍ରିୟ-ଗୋଚରାଃ ଚ (ଓ ପଞ୍ଚ ଇନ୍ଦ୍ରିୟ ବିଷୟ), ଇଚ୍ଛା (ଇଚ୍ଛା), ଦ୍ୱେଷଃ (ଦ୍ୱେଷ), ସୁଖଂ (ସୁଖ), ଦୁଃଖଂ (ଦୁଃଖ), ସଂଘାତଃ (ଦେହେନ୍ଦ୍ରିୟାଦିର ସଂହତି) ଚେତନା (ଚେତନା), ଧୃତିଃ (ଧୈର୍ଯ୍ୟ), ଏତତ୍ (ଏହି) ସବିକାରଂ (ବିକାର ସହିତ) କ୍ଷେତ୍ରଂ (କ୍ଷେତ୍ର) ସମାସେନ (ସମୁଦାୟରେ) ଉଦାହୃତଂ (କଥିତ ହେଲା) ।

ଅନୁବାଦ—କ୍ଷିତି, ଅପ୍, ତେଜଃ, ମରୁଦ୍, ବ୍ୟୋମ—ଏହି ପଞ୍ଚ-ମହାଭୂତ, ଅହଂକାର, ବୁଦ୍ଧି, ମୂଳପ୍ରକୃତି, ଦଶଇନ୍ଦ୍ରିୟ, ମନ ଏବଂ ରୂପ, ରସ, ଶବ୍ଦ, ସ୍ପର୍ଶ, ଗନ୍ଧ ଏହି ପାଞ୍ଚଗୋଟି ଇନ୍ଦ୍ରିୟ ବିଷୟ ଅର୍ଥାତ୍ ପଞ୍ଚତନ୍ମାତ୍ର ଏବଂ ଇଚ୍ଛା, ଦ୍ୱେଷ, ସୁଖ, ଦୁଃଖ, ସଂଘାତ, ଚେତନା ଓ ଧୃତି, ଏହି ସମବାୟକୁ ସବିକାର କ୍ଷେତ୍ର କୁହାଯାଏ ।

ସୁବୋଧିନୀ ଟୀକା—ତତ୍ର କ୍ଷେତ୍ରସ୍ୱରୂପମାହ—ମହାଭୂତାନୀତି ଦ୍ୱାଭ୍ୟାମ୍ । ମହାଭୂତାନି ଭୂମ୍ୟାଦୀନି ପଞ୍ଚ, ଅହଂକାରସ୍ତତ୍କାରଣଭୂତଃ । ବୁଦ୍ଧିର୍ନିଶ୍ଚୟାତ୍ମକଂ ମହତ୍ତତ୍ତ୍ୱଂ । ଅବ୍ୟକ୍ତଂ ମୂଳପ୍ରକୃତିଃ, ଇନ୍ଦ୍ରିୟାଣି ଦଶ ବାହ୍ୟାନି ଜ୍ଞାନକର୍ମେନ୍ଦ୍ରିୟାଣି, ଏକଂ ଚ ମନଃ, ଇନ୍ଦ୍ରିୟଗୋଚରାଶ୍ଚ ପଞ୍ଚ ତନ୍ମାତ୍ରରୂପା

ଏବ, ଶବ୍ଦାଦୟ ଆକାଶାଦିବିଶେଷଗୁଣତୟା ବ୍ୟକ୍ତାଃ ସନ୍ତଃ ଇନ୍ଦ୍ରିୟବିଷୟାଃ ପଞ୍ଚ ଭବନ୍ତୀତି ଚତୁର୍ବିଂଶତିତତ୍ତ୍ୱାନ୍ୟୁକ୍ତାନି ।

ଇଚ୍ଛେତି—ଇଚ୍ଛାଦୟଃ ପ୍ରସିଦ୍ଧାଃ । ସଂଘାତଃ ଶରୀରଂ । ଚେତନା ଜ୍ଞାନାତ୍ମିକା ମନୋବୃତ୍ତିଃ । ଧୃତିର୍ଧୈର୍ଯ୍ୟମ୍, ଏତେ ଇଚ୍ଛାଦୟୋ, ଦୃଶ୍ୟତ୍ୱାନ୍ନାତ୍ମ-ଧର୍ମାଃ । ଅପିତୁ ମନୋଧର୍ମା ଏବ, ଅତଃ କ୍ଷେତ୍ରାନ୍ତଃପାତିନ ଏବ ଉପଲକ୍ଷଣଂ ଚୈତତ୍ ସଙ୍କଳ୍ପାଦୀନାଂ, ତଥାଚ ଶ୍ରୁତିଃ—କାମଃ ସଙ୍କଳ୍ପୋ ବିଚିକିତ୍ସା ଶ୍ରଦ୍ଧାଽଶ୍ରଦ୍ଧା ଧୃତିରଧୃତିର୍ହ୍ରୀର୍ଧୀର୍ଭୀରିତ୍ୟେତତ୍ ସର୍ବଂ ମନ ଏବ ଇତି । ଅନେନ ଚ ଯାଦୃଗିତି ପ୍ରତିଜ୍ଞାତାଃ କ୍ଷେତ୍ରଧର୍ମା ଦର୍ଶିତାଃ, ଏତତ୍ କ୍ଷେତ୍ରଂ ସବିକାରମିନ୍ଦ୍ରି-ୟାଦିବିକାରସହିତଂ ସଂକ୍ଷେପେଣ ତୁଭ୍ୟଂ ମୟୋକ୍ତମ୍ । ଇତି କ୍ଷେତ୍ରୋପସଂହାରଃ ।

ବିବୃତି—ଏ ଅଧ୍ୟାୟର ଦ୍ୱିତୀୟ ଶ୍ଳୋକର ବିବୃତିରେ କ୍ଷେତ୍ର ଓ କ୍ଷେତ୍ରଜ୍ଞ—ଏହି ଦୁଇ ଦାର୍ଶନିକ ପରିଭାଷାର ସଂକ୍ଷିପ୍ତ ସୂଚନା ଦିଆଯାଇଅଛି । ସପ୍ତମ ଅଧ୍ୟାୟର ୪ର୍ଥ ଓ ୫ମ ଶ୍ଳୋକରେ କ୍ଷର ଅକ୍ଷର ବର୍ଗର ପ୍ରସଙ୍ଗରେ ପ୍ରକୃତି ଓ ପୁରୁଷ ତତ୍ତ୍ୱ ଆଲୋଚିତ ହୋଇଅଛି ( ତାହା ଦେଖ ), ଏ ଶରୀର ପ୍ରକୃତିର ପରିଣାମ, ଜୀବାତ୍ମା ପରମାତ୍ମାଙ୍କର ପରା ବିଭୂତି, କ୍ଷର ଅକ୍ଷର ବର୍ଗର ପର କ୍ଷେତ୍ର ଓ କ୍ଷେତ୍ରଜ୍ଞ ବର୍ଗର ପ୍ରକୃତି ପୁରୁଷ ବର୍ଗର । ସାଙ୍ଖ୍ୟବାଦୀମାନେ ଯେଉଁ ୨୫ଗୋଟି ତତ୍ତ୍ୱ ବିଶ୍ୱାସ କରନ୍ତି—ପୁରୁଷ ଭିନ୍ନ ଅନ୍ୟ ୨୪ ଗୋଟି ଏଠାରେ ସନ୍ନିବେଶିତ ହୋଇଅଛି, ଏ ୨୪ତତ୍ତ୍ୱ ମଧ୍ୟରେ 'ମନ'ର ସମାବେଶ ଅଛି । ଇଚ୍ଛା, ଦ୍ୱେଷ, ସୁଖ, ପ୍ରଭୃତି ମନର ଧର୍ମ । କୌଣସି କୌଣସି ଦର୍ଶନ ( ଯେପରି କଣାଦଙ୍କ ବୈଶେଷିକ ଦର୍ଶନ ) ଇଚ୍ଛା ଦ୍ୱେଷ ପ୍ରଭୃତିକୁ ଆତ୍ମାର ଧର୍ମ ବୋଲି କହନ୍ତି । ସେହି ସନ୍ଦେହ ଦୂରକରିବା ପାଇଁ ଏଗୁଡ଼ିକୁ ଏଠାରେ କ୍ଷେତ୍ରର ଧର୍ମ-ରୂପେ ସମାବେଶ କରାଯାଇଅଛି । ଏହି କ୍ଷେତ୍ରର ସ୍ୱରୂପ କଅଣ ଏବଂ ଏଥିରେ କି କି ବସ୍ତୁର ସମାବେଶ ହୋଇଅଛି—ଏହି ଦୁଇ ଶ୍ଳୋକରେ ତାହାହିଁ ପ୍ରଦର୍ଶିତ ହୋଇଅଛି । ମୂଳ ପ୍ରକୃତି, ବୁଦ୍ଧି ବା ମହତ୍ତତ୍ତ୍ୱ, ଅହଂକାର, ଦଶଇନ୍ଦ୍ରିୟ, ମନ, ପଞ୍ଚତନ୍ମାତ୍ର ଓ ପଞ୍ଚସ୍ଥୂଳଭୂତ—ସାଂଖ୍ୟବାଦୀଙ୍କର ଏହି ୨୪ ତତ୍ତ୍ୱ ଛଡ଼ା ଏଠାରେ ଇଚ୍ଛା, ଦ୍ୱେଷ, ସୁଖ, ଦୁଃଖ, ସଂଘାତ, ଚେତନା, ଧୃତି ପ୍ରଭୃତି ଅନ୍ୟ ଯେଉଁଗୁଡ଼ିକର ଉଲ୍ଲେଖ ଅଛି, ସେଗୁଡ଼ିକ ମନର ଧର୍ମ ବୋଲି ପୂର୍ବେ କୁହାଯାଇଅଛି । ଏଠାରେ 'ଚେତନା' ଶବ୍ଦ ଦ୍ୱାରା ଜୀବଶରୀରରେ ପ୍ରାଣ ପ୍ରଭୃତିର ପ୍ରତ୍ୟକ୍ଷ ବ୍ୟାପାର ବୁଝିବାକୁ ହୁଏ । ସୁଷୁପ୍ତି ଅବସ୍ଥାରେ ଜୀବଚୈତନ୍ୟ ବା ମୁଁ ଜ୍ଞାନ ନ ଥାଏ, କିନ୍ତୁ ପ୍ରାଣର କ୍ରିୟା ବା ଚେତନା ଥାଏ, ତେଣୁ ଏ ଦୁଇଟି ପରସ୍ପର ବିଭିନ୍ନ, 'ଧୃତି' ଶବ୍ଦର ଅର୍ଥ ଧୈର୍ଯ୍ୟ; ମନ, ପ୍ରାଣ ଓ ଇନ୍ଦ୍ରିୟ ସକଳର କ୍ରିୟା ଯେଉଁ ଶକ୍ତିଦ୍ୱାରା ଏ ଶରୀରରେ ସ୍ଥିର ଥାଏ, ତାହାହିଁ ଧୃତି ( ୧୮—୩୩ ) ସଂଘାତ ଶବ୍ଦର ଅର୍ଥ ଶରୀର; ଯାବତୀୟ ଶାରୀରିକ ଓ ମାନସିକ ବ୍ୟାପାର

ଅମାନିତ୍ୱମଦମ୍ଭିତ୍ୱମହିଂସା କ୍ଷାନ୍ତିରାର୍ଜବମ୍ ।
ଆଚାର୍ଯ୍ୟୋପାସନଂ ଶୌଚଂ ସ୍ଥୈର୍ଯ୍ୟମାତ୍ମବିନିଗ୍ରହଃ । ୭ ।

**ମାନଙ୍କର ସହିତହିଁ ଶରୀର, ତେଣୁ ଏହାକୁ ଏଠାରେ ଗୋଟିଏ ସ୍ୱତନ୍ତ୍ର ତତ୍ତ୍ୱ ରୂପେ ନକରି ଦେହର ଅନ୍ତର୍ଗତ କରାଯାଇ ଅଛି ।**

୭ । **ଅନ୍ୱୟ ଦୀପିକା**—ଅମାନିତ୍ୱମ୍ ( ଆତ୍ମ ପ୍ରଶଂସାର ଅଭାବ ), ଅଦମ୍ଭିତ୍ୱମ୍ ( ଦମ୍ଭର ଅଭାବ ), ଅହିଂସା ( ପରପୀଡ଼ା ବର୍ଜନ ), କ୍ଷାନ୍ତିଃ ( କ୍ଷମା ), ଆର୍ଜବମ୍ ( ସରଳତା ), ଆଚାର୍ଯ୍ୟୋପାସନମ୍ ( ଗୁରୁସେବା ), ଶୌଚଂ ( ପବିତ୍ରତା ), ସ୍ଥୈର୍ଯ୍ୟମ୍ ( ସ୍ଥିରତା ) ଆତ୍ମ-ବିନିଗ୍ରହଃ ( ଶରୀର-ସଂଯମ ) ।

**ଅନୁବାଦ**—ଆତ୍ମ ପ୍ରଶଂସା ନ କରିବା, ଦମ୍ଭଶୂନ୍ୟତା, ଅହିଂସା, କ୍ଷମା, ସରଳତା, ଗୁରୁସେବା, ପବିତ୍ରତା ବା ସଦାଚାର, ସ୍ଥୈର୍ଯ୍ୟ ବା ସତ୍‌କାର୍ଯ୍ୟରେ ଏକନିଷ୍ଠା, ଆତ୍ମସଂଯମ; ( ଏ ସବୁ ଜ୍ଞାନର ସ୍ୱରୂପ—ଏକାଦଶ ଶ୍ଳୋକ ଶେଷ ପର୍ଯ୍ୟନ୍ତ ) ।

**ସୁବୋଧିନୀ ଟୀକା**—ଇଦାନୀଂ ମୁକ୍ତଲକ୍ଷଣାତ୍ କ୍ଷେତ୍ରାଦନ୍ତର-ତ୍ୱେନ ଜ୍ଞେୟଂ ଶୁଦ୍ଧଂ କ୍ଷେତ୍ରଜ୍ଞଂ ପଞ୍ଚଭିଃ ବକ୍ତୁଂ ତୁଳ୍ୟ ଜ୍ଞାନ-ସାଧନାନ୍ୟାହ—ଅମାନିତ୍ୱ ମିତି ପଞ୍ଚଭିଃ । ଅମାନିତ୍ୱଂ ସ୍ୱଗୁଣଶ୍ଳାଘାରାହିତ୍ୟମ୍, ଅଦମ୍ଭିତ୍ୱମ୍ ଦମ୍ଭରାହିତ୍ୟମ୍ । ଅହିଂସା ପରପୀଡ଼ାବର୍ଜନଂ, କ୍ଷାନ୍ତିଃ ସହିଷ୍ଣୁତ୍ୱମ୍, ଆର୍ଜବମବକ୍ରତା । ଆଚାର୍ଯ୍ୟୋପାସନଂ ସଦ୍‌ଗୁରୁସେବା, ଶୌଚଂ ବାହ୍ୟ-ମାଭ୍ୟନ୍ତରଂ ଚ । ତତ୍ର ବାହ୍ୟଂ ମୃଜ୍ଜଳାଦିନା । ଅଭ୍ୟନ୍ତରଂ ଚ ରାଗାଦିମଳ-କ୍ଷାଳନମ୍ । ତଥାଚ ସ୍ମୃତିଃ— ଶୌଚଂ ଚ ଦ୍ୱିବିଧଂ ପ୍ରୋକ୍ତଂ ବାହ୍ୟମାଭ୍ୟନ୍ତରଂ ତଥା, ମୃଜ୍ଜଳାଭ୍ୟାଂ ସ୍ମୃତଂ ବାହ୍ୟଂ ଭାବଶୁଦ୍ଧିସ୍ତଥାନ୍ତରମ୍ । ଇତି । ସ୍ଥୈର୍ଯ୍ୟଂ ସନ୍ମାର୍ଗେପ୍ରବୃତ୍ତସ୍ୟ ତଦେକନିଷ୍ଠତା । ଆତ୍ମବିନିଗ୍ରହଃ ଶରୀରସଂଯମଃ । ଏତଜ୍ଜ୍ଞାନମିତିପ୍ରୋକ୍ତମିତି ପଞ୍ଚମେନାନ୍ୱୟଃ ।

**ବିବୃତି**—ପୂର୍ବଶ୍ଳୋକମାନଙ୍କରେ କ୍ଷେତ୍ରର ତତ୍ତ୍ୱ ବର୍ଣ୍ଣନା କରିସାରି କ୍ଷେତ୍ରଜ୍ଞ ତତ୍ତ୍ୱ ଜଗଦ୍‌ରୂପେ ବର୍ଣ୍ଣନା କରିବା ପୂର୍ବରୁ ସେହି ତତ୍ତ୍ୱ ଜାଣିବାର ସାଧନ ସ୍ୱରୂପ ଯେଉଁ ଜ୍ଞାନ ଆବଶ୍ୟକ, ତାହା ୭ମରୁ ୧୧ଶ ଶ୍ଳୋକ ମଧ୍ୟରେ ବର୍ଣ୍ଣନା କରୁ ଅଛନ୍ତି ।

ଅଦମ୍ଭିତ୍ୱର ଅର୍ଥ ଖ୍ୟାତି ବା ପ୍ରଶଂସା ଲାଭ ଆଶାରେ ନିଜ ଧାର୍ମିକତ୍ୱା-ଦିଗୁଣ ଲୋକ ସମକ୍ଷରେ ପ୍ରକାଶ ନ କରିବା । ବାହ୍ୟ ଓ ଅଭ୍ୟନ୍ତର ଭେଦରେ ଶୌଚ ଦୁଇପ୍ରକାର; ମାଟି, ଜଳ ପ୍ରଭୃତି ଦ୍ୱାରା ବାହ୍ୟ ଶୌଚ ହୁଏ ଏବଂ ରାଗଦ୍ୱେଷାଦିବର୍ଜନଦ୍ୱାରା ଅଭ୍ୟନ୍ତର ଶୌଚ ହୁଏ । ଅନ୍ୟ ଗୁଡ଼ିକର ଅର୍ଥ ଅନୁବାଦରୁ ସ୍ପଷ୍ଟ ଜଣାଯିବ ।

ଇନ୍ଦ୍ରିୟାର୍ଥେଷୁ ବୈରାଗ୍ୟମନହଂକାର ଏବ ଚ ।
ଜନ୍ମମୃତ୍ୟୁଜରାବ୍ୟାଧିଦୁଃଖଦୋଷାନୁଦର୍ଶନମ୍ ।୮।
ଅସକ୍ତିରନଭିଷ୍ୱଂଗଃ ପୁତ୍ରଦାରଗୃହାଦିଷୁ ।
ନିତ୍ୟଂ ଚ ସମଚିତ୍ତତ୍ୱମିଷ୍ଟାନିଷ୍ଟୋପପତ୍ତିଷୁ ।୯।
ମୟି ଚାନନ୍ୟଯୋଗେନ ଭକ୍ତିରବ୍ୟଭିଚାରିଣୀ ।
ବିବିକ୍ତଦେଶସେବିତ୍ୱମରତିର୍ଜନସଂସଦି ।୧୦।

୮ । ଅନ୍ୱୟ ଦୀପିକା—ଇନ୍ଦ୍ରିୟାର୍ଥେଷୁ ( ଇନ୍ଦ୍ରିୟ ଭୋଗ୍ୟ ବିଷୟ ସମୂହରେ ) ବୈରାଗ୍ୟମ୍ ( ବିତୃଷ୍ଣା ), ଅନହଂକାର ଏବଚ ( ଏବଂ ନିରହଂକାରତା ), ଜନ୍ମମୃତ୍ୟୁଜରାବ୍ୟାଧିଦୁଃଖଦୋଷାନୁଦର୍ଶନମ୍ ( ଜନ୍ମ ମୃତ୍ୟୁ ଜରାବ୍ୟାଧିରେ ଦୁଃଖ ରୂପ ଦୋଷର ଆଲୋଚନା ) ।

ଅନୁବାଦ—ବିଷୟ ଭୋଗରେ ବିତୃଷ୍ଣା, ଅହଂକାରଶୂନ୍ୟତା, ଜନ୍ମ ମରଣ ବାର୍ଦ୍ଧକ୍ୟ ଓ ରୋଗରେ ଦୁଃଖ ରୂପ ଦୋଷ ଦର୍ଶନ, ( ଏ ସବୁ ଜ୍ଞାନ- ୧୧ଶ ଶ୍ଳୋକ ସଙ୍ଗେ ଅନ୍ୱିତ )

ସୁବୋଧିନୀ ଟୀକା—କିଞ୍ଚ ଇନ୍ଦ୍ରିୟାର୍ଥେଷ୍ୱିତି—ଜନ୍ମାଦିଷୁ ଦୁଃଖ-ଦୋଷୟୋରନୁଦର୍ଶନଂ ପୁନଃ ପୁନରାଲୋଚନମ୍ । ଦୁଃଖରୂପସ୍ୟ ଦୋଷସ୍ୟାନୁ-ଦର୍ଶନମିତିବା । ସ୍ପଷ୍ଟମନ୍ୟତ୍ ।

୯ । ଅନ୍ୱୟ ଦୀପିକା—ଅସକ୍ତିଃ ( କର୍ମରେ ଅନାସକ୍ତି ), ପୁତ୍ରଦାର ଗୃହାଦିଷୁ ଅନଭିଷ୍ୱଂଗଃ ( ପୁଅ, ସ୍ତ୍ରୀ, ଘର ପ୍ରଭୃତିରେ ବେଶି ଲିପ୍ତ ନ ହେବା ). ଇଷ୍ଟାନିଷ୍ଟୋପପତ୍ତିଷୁ ( ଇଷ୍ଟ ଏବଂ ଅନିଷ୍ଟପାତରେ ) ନିତ୍ୟଂ ( ସର୍ବଦା ) ସମଚିତ୍ତତ୍ୱଂ ( ଅନ୍ତଃ କରଣର ସମାନ ଭାବ ) ।

ଅନୁବାଦ—ବିଷୟ କର୍ମରେ ଅନାସକ୍ତି, ସ୍ତ୍ରୀ ପୁତ୍ର ଗୃହ ପ୍ରଭୃତିରେ ବେଶି ଲିପ୍ତ ନ ହେବା , ଇଷ୍ଟ ବା ଅନିଷ୍ଟ ପ୍ରାପ୍ତିରେ ଅନ୍ତଃକରଣରେ ସମାନ-ଭାବ ରଖିବା ( ୧୧ଶ ଶ୍ଳୋକ ସଙ୍ଗେ ଅନ୍ୱିତ ) ।

ସୁବୋଧିନୀ ଟୀକା—କିଞ୍ଚ— ଅସକ୍ତିରିତି— ପୁତ୍ରଦାରାଦିଷ୍ୱସକ୍ତିଃ ପ୍ରୀତିତ୍ୟାଗଃ । ଅନଭିଷ୍ୱଂଗଃ ପୁତ୍ରାଦୀନାଂ ସୁଖେ ଗୃହମେବ ସୁଖୀ ଦୁଃଖୀ ଚେତ୍ୟଧ୍ୟାସାତିରେକାଭାବଃ । ଇଷ୍ଟାନିଷ୍ଟୟୋରୁପପତ୍ତିଷୁ ନିତ୍ୟଂ ସର୍ବଦା ସମଚିତ୍ତତ୍ୱମ୍ ।

୧୦ । ଅନ୍ୱୟ ଦୀପିକା—ମୟି ଚ ( ଏବଂ ଆମ୍ଭଠାରେ ) ଅନନ୍ୟ-ଯୋଗେନ ( ଅନନ୍ୟ ଭାବରେ ) ଅବ୍ୟଭିଚାରିଣୀ ( ଅଟଳ ) ଭକ୍ତିଃ ( ଭକ୍ତି ) ବିବିକ୍ତଦେଶସେବିତ୍ୱଂ ( ନିର୍ଜ୍ଜନ ସ୍ଥାନରେ ବାସ ), ଜନସଂସଦି ( ପ୍ରାକୃତ ଜନ ସମାଜରେ ) ଅରତିଃ ( ବିରକ୍ତି ) ।

ଅଧ୍ୟାତ୍ମଜ୍ଞାନନିତ୍ୟତ୍ୱଂ ତତ୍ତ୍ୱଜ୍ଞାନାର୍ଥଦର୍ଶନମ୍ ।
ଏତଜ୍‌ଜ୍ଞାନମିତିପ୍ରୋକ୍ତମଜ୍ଞାନଂ ଯଦତୋଽନ୍ୟଥା । ୧୧ ।

ଅନୁବାଦ—ଆମଠାରେ ଅନନ୍ୟଭାବରେ ଅଟଳ ଭକ୍ତି, ନିର୍ଜନ ସ୍ଥାନରେ ବାସ, ପ୍ରାକୃତ ଜନ ସମାଜରେ ବିରକ୍ତି । (୧୧ଶ ଶ୍ଳୋକ ସଙ୍ଗେ ଅନ୍ୱିତ)

ସୁବୋଧିନୀ ଟୀକା—କିଞ୍ଚ-ମୟୀତି, ମୟି ପରମେଶ୍ୱରେ, ଅନନ୍ୟ-ଯୋଗେନ, ସର୍ବାତ୍ମଦୃଷ୍ଟ୍ୟା । ଅବ୍ୟଭିଚାରିଣ୍ୟେକାନ୍ତାଭକ୍ତିଃ, ବିବିକ୍ତଃ ଶୁଦ୍ଧଶ୍ଚିତ୍ତ-ପ୍ରସାଦକରଃ, ତଂ ଦେଶଂ ସେବିତୁଂ ଶୀଳଂ ଯସ୍ୟ ତସ୍ୟ ଭାବସ୍ତତ୍ତ୍ୱଂ । ପ୍ରାକୃତାନାଂ ଜନାନାଂ ସଂସଦି ସଭାୟାଂ ଅରତି ରତ୍ୟଭାବଃ ।

୧୧ । ଅନ୍ୱୟ ଦୀପିକା—ଅଧ୍ୟାତ୍ମ ଜ୍ଞାନ ନିତ୍ୟତ୍ୱଂ (ଆତ୍ମ ଜ୍ଞାନନିଷ୍ଠା) ତତ୍ତ୍ୱଜ୍ଞାନାର୍ଥ ଦର୍ଶନମ୍ ( ତତ୍ତ୍ୱ ଜ୍ଞାନର ପ୍ରୟୋଜନ ଆଲୋଚନା ), ଏତଦ୍ ( ଏହି ସମସ୍ତହିଁ ) ଜ୍ଞାନମ୍ ଇତି ପ୍ରୋକ୍ତମ୍ (ଜ୍ଞାନ ବୋଲି କଥିତ ହୁଏ ), ଯତ୍ ( ଯାହା ) ଅତଃ ( ଏଥିରୁ ) ଅନ୍ୟଥା ( ବିପରୀତ ) [ ତାହା ] ଅଜ୍ଞାନମ୍ ( ଅଜ୍ଞାନ ) ।

ଅନୁବାଦ—ସର୍ବଦା ଅଧ୍ୟାତ୍ମ ଜ୍ଞାନର ଅନୁଶୀଳନ, ତତ୍ତ୍ୱଜ୍ଞାନର ପ୍ରୟୋଜନ ଆଲୋଚନା—ଏହି ସମସ୍ତକୁ ଜ୍ଞାନ କୁହାଯାଏ, ଯାହା ଏ ସବୁର ବିପରୀତ ତାହା ଅଜ୍ଞାନ ।

ସୁବୋଧିନୀ ଟୀକା—କିଞ୍ଚ-ଅଧ୍ୟାତ୍ମେତି, ଆତ୍ମାନମଧିକୃତ୍ୟ ବର୍ତ୍ତମାନଂ ଜ୍ଞାନମଧ୍ୟାତ୍ମଜ୍ଞାନଂ, ତସ୍ମିନ୍ ନିତ୍ୟତ୍ୱଂ ନିତ୍ୟଭାବଃ—ତତ୍ତ୍ୱଂ । ପଦାର୍ଥଶୁଦ୍ଧିନିଷ୍ଠତ୍ୱ-ମିତ୍ୟର୍ଥଃ, ତତ୍ତ୍ୱଜ୍ଞାନସ୍ୟାର୍ଥଃ ପ୍ରୟୋଜନଂ ମୋକ୍ଷଃ, ତସ୍ୟ ଦର୍ଶନଂ ମୋକ୍ଷସ୍ୟ ସର୍ବୋତ୍କୃଷ୍ଟତ୍ୱାଲୋଚନମିତ୍ୟର୍ଥଃ, ଏତଦମାନିତ୍ୱମଦମ୍ଭିତ୍ୱମିତ୍ୟାଦିବିଂଶତି ସଂଖ୍ୟକଂ ଯଦୁକ୍ତମ୍—ଏତଜ୍ ଜ୍ଞାନମିତିପ୍ରୋକ୍ତଂ ବଶିଷ୍ଠାଦିଭିଃ, ଜ୍ଞାନସାଧନତ୍ୱାତ୍ । ଅତୋଽନ୍ୟଥାଭୂତ୍ ବିପରୀତଂ ମାନିତ୍ୱାଦି ଯତ୍ତଦଜ୍ଞାନମିତି ପ୍ରୋକ୍ତମ୍, ଜ୍ଞାନ-ବିରୋଧିତ୍ୱାତ୍, ଅତଃ ସର୍ବଥା ତ୍ୟାଜ୍ୟ ମିତ୍ୟର୍ଥଃ ।

ବିବୃତି—୭ମ ଠାରୁ ୧୧ଶ ଶ୍ଳୋକ ମଧ୍ୟରେ ଜ୍ଞାନର ଯେଉଁସବୁ ଲକ୍ଷଣ ବର୍ଣ୍ଣିତ ହେଲା, କୌଣସି ଲୋକଠାରେ ଏହିସବୁ ଲକ୍ଷଣ ଦେଖିଲେ ତାଙ୍କୁ ପ୍ରକୃତ ଜ୍ଞାନୀ ବୋଲି ବୁଝିବାକୁ ହେବ ଏବଂ ଏହି ଜ୍ଞାନବଳରେ ସେ ଯେ ଜ୍ଞେୟ ପରମାତ୍ମାଙ୍କୁ ଜାଣି ଅଛନ୍ତି ତାହା ଜାଣିବାକୁ ହେବ । ଏହି ଜ୍ଞାନଲାଭ ପରେ ସଂସାର ଛାଡ଼ି ଚାଲିଯିବା ଗୀତାର ଉପଦେଶ ନୁହେଁ । ସଂସାର-ମଧ୍ୟରେ ରହି ଅନାସକ୍ତ ଭାବରେ କର୍ତ୍ତବ୍ୟ କର୍ମ କରିବା ପାଇଁ ଗୀତାର ଅନେକ ସ୍ଥଳରେ ଉପଦେଶ ଦିଆ ଯାଇଅଛି; କେବଳ ପୁସ୍ତକ ପାଠରେ ଯେ ଅମାନିତ୍ୱ, ଅଦମ୍ଭିତ୍ୱ ପ୍ରଭୃତି ଜ୍ଞାନ ସାଧନ ହୃଦୟରେ ଉଦ୍ରେକ ହୋଇଯାଏ, ତାହା ଭାବିବା ଅନୁଚିତ, ସେଥିପାଇଁ ସାଧୁସଙ୍ଗ ଓ ଏକାନ୍ତ ଅନୁଶୀଳନ ଆବଶ୍ୟକ । ଏହିସବୁ

ଜ୍ଞେୟଂ ଯତ୍ ତତ୍ ପ୍ରବକ୍ଷ୍ୟାମି ଯଜ୍ଜ୍ଞାତ୍ୱାମୃତମଶ୍ନୁତେ ।
ଅନାଦିମତ୍ପରଂ ବ୍ରହ୍ମ ନ ସତ୍ତନ୍ନାସଦୁଚ୍ୟତେ । ୧୨ ।

ସ୍ତ୍ରଣର ଅନୁଶୀଳନ ଦ୍ୱାରା ସର୍ବତ୍ର ସାମ୍ୟବୁଦ୍ଧି ଜାତ ହୁଏ । ଯେତେବେଳ ଯାଏ ସାମ୍ୟ ବୁଦ୍ଧି ବା ସର୍ବତ୍ର ଅତ୍ମଦର୍ଶନ ହୋଇନାହିଁ, ସେତେବେଳ ଯାଏ ପ୍ରକୃତ ଜ୍ଞାନ ଜାତ ହୋଇନାହିଁ ବୋଲି ଜାଣିବାକୁ ହେବ ।

କେହ କେହ କହନ୍ତି 'ବିବିକ୍ତ ଦେଶସେବିତ୍ୱଂ', 'ଅରତିର୍ଜନସଂସଦି', 'ପୁତ୍ରଦାରଗୃହାଦିଷୁ ଅନଭିଷ୍ୱଙ୍ଗଃ', ଏ ଗୁଡ଼ିକ ସନ୍ନ୍ୟାସମାର୍ଗର ଉପଦେଶ ମାତ୍ର ଗୀତା ଯେ କେବଳ ସନ୍ନ୍ୟାସୀମାନଙ୍କ ଉଦ୍ଦେଶ୍ୟରେ ରଚିତ ହୋଇନାହିଁ, ଏହା ପୂର୍ବେ ଅନ୍ୟ ପ୍ରସଙ୍ଗରେ ଆଲୋଚିତ ହୋଇଅଛି । ସନ୍ନ୍ୟାସୀମାନେ ଗୃହତ୍ୟାଗୀ, ଏପରି ସ୍ଥଳରେ ପୁତ୍ର, ଦାର, ଗୃହାଦିରେ ଅସକ୍ତିଶୂନ୍ୟ ହେବା ପାଇଁ ତାଙ୍କୁ କାହିଁକି କୁହାଯିବ ? ନିର୍ଜନ ସ୍ଥାନରେ ବାସ କରି ରହିବା, ପ୍ରାକୃତ ଜନ ସମାଜରେ ନ ମିଶିବା ବା ବାକ୍ ସଂଯମ କରିବା ଗୃହସ୍ଥମାନଙ୍କ ପକ୍ଷରେ ଅସମ୍ଭବ ନୁହେ । ଆମ ସମାଜରେ ବର୍ତ୍ତମାନ କାଳରେ ଏପରି ଅନେକ ଲୋକ ଅଛନ୍ତି, ଯେଉଁମାନେ ଅତ୍ୟଳ୍ପ କଥା କହନ୍ତି, ନିର୍ଜନ ବାସରୁ ସୁଖ ପାଆନ୍ତି ଓ ଯାତ୍ରା, ମେଳା ପ୍ରଭୃତିରେ ଯୋଗ ଦିଅନ୍ତି ନାହିଁ, ତେଣୁ ବୋଧ ହେଉଅଛି ପୂର୍ବୋକ୍ତ କୋଡ଼ିଏଟି ଗୁଣ ସାଧାରଣ ଜ୍ଞାନଲିପ୍ସୁ ଲୋକଙ୍କ ଉଦ୍ଦେଶ୍ୟରେ କୁହା ଯାଇଅଛି ।

୧୨ । ଅନ୍ୱୟ ଦୀପିକା—ଯତ୍ ଜ୍ଞେୟଂ ( ଯାହା ଜ୍ଞାତବ୍ୟ ତତ୍ତ୍ୱ ), ଯତ୍ ଜ୍ଞାତ୍ୱା ( ଯାହା ଜାଣିଲେ ), [ ସାଧକ ] ଅମୃତମ୍ ( ମୋକ୍ଷ ) ଅଶ୍ନୁତେ ( ଲାଭ କରନ୍ତି ), ତତ୍ ( ତାହା ) ପ୍ରବକ୍ଷ୍ୟାମି ( କହିବି ), ତତ୍ ( ସେହି ) ଅନାଦିମତ୍ (ଆଦିବର୍ଜିତ) ପରଂ ବ୍ରହ୍ମ ( ପରମବ୍ରହ୍ମ ) ନ ସତ୍ ( ସତ୍ ନୁହନ୍ତି ), ନ ଅସତ୍ (ଅସତ୍ ମଧ୍ୟ ନୁହନ୍ତି); [ ଏହିପରି ] ଉଚ୍ୟତେ (କୁହାଯାଏ) ।

ଅନୁବାଦ—ଯାହା ଜ୍ଞାତବ୍ୟ ତତ୍ତ୍ୱ, ଯାହା ଜାଣିଲେ ସାଧକ ମୋକ୍ଷ ଲାଭ କରନ୍ତି ତାହା କହିବି । ସେହି ଆଦିବର୍ଜିତ ପରମବ୍ରହ୍ମ ସତ୍ ନୁହନ୍ତି ଓ ଅସତ୍ ମଧ୍ୟ ନୁହନ୍ତି ।

ସୁବୋଧିନୀ ଟୀକା—ଏଭିଃ ସାଧନୈ ର୍ଯଜ୍ଜ୍ଞେୟଂ ତଦାହ—ଜ୍ଞେୟମିତି ଷଡ଼୍ଭିଃ । ଯଜ୍ଜ୍ଞେୟଂ ତତ୍ ପ୍ରବକ୍ଷ୍ୟାମି । ଶ୍ରୋତୃଃ ରୁଚି ଉତ୍ପାଦନାୟ ଜ୍ଞାନଫଳଂ ଦର୍ଶୟତି । ଯଦ୍ବକ୍ଷ୍ୟମାଣଂ ଜ୍ଞାତ୍ୱାଽମୃତଂ ମୋକ୍ଷଂ ପ୍ରାପ୍ନୋତି । କିଂ ତତ୍ ଅନାଦିମତ୍ । ଆଦିମନ୍ନଭବତୀତ୍ୟନାଦିମତ୍ । ପରଂ ନିରତିଶୟଂ ବ୍ରହ୍ମ ଅନାଦି—ଇତ୍ୟେତାବତୈବ ବହୁବ୍ରୀହିଣା ଅନାଦିମତ୍ତ୍ୱେ ସିଦ୍ଧେଽପି ପୁନର୍ମତୁପଃ ପ୍ରୟୋଗଶ୍ଛାନ୍ଦସଃ । ଯଦ୍ବା ଅନାଦି ମତ୍ପରମିତି ଚ ପଦଦ୍ୱୟମ୍ । ମମ ବିଷ୍ଣୋଃ ପରଂ ନିର୍ବିଶେଷଂ ରୂପଂ ବ୍ରହ୍ମେତ୍ୟର୍ଥଃ । ତଦେବାହ—ନ ସତ୍ତନ୍ନାସଦୁଚ୍ୟତେ

ବିଧିମୁଖେନ ପ୍ରମାଣସ୍ୟ ବିଷୟଃ ସଚ୍ଛବ୍ଦେନୋଚ୍ୟତେ, ନିଷେଧସ୍ୟ ବିଷୟସ୍ତ୍ୱସ-ଚ୍ଛବ୍ଦେନୋଚ୍ୟତେ । ଇଦଂ ତୁ ତଦୁଭୟବିଲକ୍ଷଣମ୍ । ଅବିଷୟତ୍ୱାଦିତ୍ୟର୍ଥଃ ।

ବିବୃତି—ସପ୍ତମରୁ ଏକାଦଶ ଶ୍ଲୋକ ମଧ୍ୟରେ ଯେଉଁ ଜ୍ଞାନଲାଭ କରିବାର ଉପଦେଶ ଦିଆଗଲା, ସେହି ଜ୍ଞାନଦ୍ୱାରା ଯାହାଙ୍କୁ ଜାଣିବାକୁ ହେବ ବର୍ତ୍ତମାନ ଏହି ୧୨ ଶ ଶ୍ଲୋକରୁ ୧୭ଶ ଶ୍ଲୋକରେ ସେହି ଜ୍ଞାତବ୍ୟ ତତ୍ତ୍ୱ କୁହାଯାଉଅଛି । ଏହିତତ୍ତ୍ୱ ଜାଣିଲେ ସାଧକ ମୋକ୍ଷଲାଭ କରନ୍ତି, ସେହି ପରବ୍ରହ୍ମ ଅନାଦିମତ୍ ଅର୍ଥାତ୍ ତାହାଙ୍କର ଆଦି ନାହିଁ । 'ଅନାଦିମତ୍ ପରଂ ବ୍ରହ୍ମ' ଏ ପଦର ବ୍ୟାଖ୍ୟାରେ ଟୀକାକାରମାନଙ୍କ ମଧ୍ୟରେ ଭିନ୍ନ ଭିନ୍ନ ମତ ଦେଖାଯାଏ । 'ଅନାଦିମତ୍' ପଦ ବ୍ୟାକରଣ ବିରୁଦ୍ଧ; କାରଣ—ନାହିଁ ଆଦି ଯାହାଙ୍କର ସେ ଅନାଦି । ବହୁବ୍ରୀହି ସମାସରେ ସିଦ୍ଧ 'ଅନାଦି' ପଦ ପରେ ପୁଣି 'ଅସ୍ତ୍ୟର୍ଥେ ମତୁପ୍' ପ୍ରତ୍ୟୟ କରାଯାଏ ନାହିଁ, ତେଣୁ 'ମତ୍' ପ୍ରତ୍ୟୟ ପଦପୂରଣ ନିମନ୍ତେ କରାଯାଇ ଅଛି, ସୁତରାଂ ଏହା ଆର୍ଷ ପ୍ରୟୋଗ; ପ୍ରଥମେ ଯେବେ 'ଆଦିମତ୍' ଶବ୍ଦ କରି ପରେ ନଞ୍ ସମାସରେ 'ଅନାଦିମତ୍' କରାଯାଏ ତେବେ ବ୍ୟାକରଣ ବିରୁଦ୍ଧ ହୁଏ ନାହିଁ । ତଥାପି ଏଭଳି ପ୍ରୟୋଗ ବିରଳ, ଏହି ହେତୁରୁ କେତେକ ଟୀକାକାର ଏ ପଦଟିକୁ ଅନାଦି+ମତ୍ପରଂ ବ୍ରହ୍ମ ଏହିପରି ପଦଚ୍ଛେଦ କରି ମତ୍ପରଂ ପଦକୁ "ମମ ବିଷ୍ଣୋଃ ପରଂ ନିର୍ବିଶେଷଂ ରୂପଂ ବ୍ରହ୍ମ" ଅର୍ଥାତ୍ ଯାହା ଆମ୍ଭର ( ବାସୁଦେବାଖ୍ୟ ଶ୍ରୀକୃଷ୍ଣଙ୍କର ) ପର ଅର୍ଥାତ୍ ନିର୍ବିଶେଷ ବିଗ୍ରହ ସେହି ବ୍ରହ୍ମ—ଏହିପରି ଅର୍ଥ କରନ୍ତି, ଶ୍ରୀଧର ଓ ଶଙ୍କର ଉଭୟେ ବିକଳ୍ପ ପକ୍ଷରେ ଏହିପରି ଅର୍ଥ ଗ୍ରହଣକରି ଅଛନ୍ତି । ଯେଉଁମାନେ ନିର୍ଗୁଣ ବ୍ରହ୍ମବାଦୀ ସେମାନେ ପ୍ରଥମୋକ୍ତ ଅର୍ଥହିଁ ଗ୍ରହଣକରନ୍ତି, ପରବର୍ତ୍ତୀ ଅର୍ଥ ଗ୍ରହଣକଲେ ନିର୍ଗୁଣ ଓ ସଗୁଣ, ଉଭୟ ଯେ ବ୍ରହ୍ମଙ୍କର ସ୍ୱରୂପ ଏହା ସ୍ୱୀକାର କରିବାକୁ ହେବ ।

ବ୍ରହ୍ମ ସତ୍ ନୁହନ୍ତି କି ଅସତ୍ ନୁହନ୍ତି—ଏ ବର୍ଣ୍ଣନା ଗୀତା ନବମ ଅଧ୍ୟାୟର ୧୯ଶ ଶ୍ଲୋକରେ କରାଯାଇ ଅଛି । ଏହା ଋଗ୍ ବେଦର 'ନାସଦାସୀତ୍' ଏହି ପ୍ରସିଦ୍ଧ ସୂକ୍ତର ଭିତ୍ତି ଉପରେ ପ୍ରତିଷ୍ଠିତ । ଏହା ପରସ୍ପର ବିରୁଦ୍ଧପରି ବୋଧ ହେଲେହେଁ ପ୍ରକୃତରେ ବିରୁଦ୍ଧ ନୁହେ । କାରଣ ବ୍ୟକ୍ତ ଓ ଅବ୍ୟକ୍ତ ଭେଦରେ ପରମେଶ୍ୱରଙ୍କର ଦୁଇସ୍ୱରୂପ—ଉପନିଷଦ୍ ଓ ଗୀତା ଉଭୟରେ ଏହା ପ୍ରମାଣିତ ହୋଇଅଛି । ତଥାପି ପ୍ରକୃତ ଈଶ୍ୱରତତ୍ତ୍ୱ ଏହି ଉଭୟର ଅତୀତ ଅର୍ଥାତ୍ ଅଜ୍ଞେୟ । 'ସତ୍' ଶବ୍ଦର ଅର୍ଥ ଯାହାଅଛି ଓ 'ଅସତ୍' ଶବ୍ଦର ଅର୍ଥ ଯାହା ନାହିଁ; ସୃଷ୍ଟ ବସ୍ତୁ ସମ୍ବନ୍ଧରେ ପୂର୍ବୋକ୍ତ ଦୁଇ ଅର୍ଥରେ ଆମ୍ଭେମାନେ ସତ୍ ଓ ଅସତ୍ ଶବ୍ଦ ପ୍ରୟୋଗ କରୁଁ । କିନ୍ତୁ ଯାହା ସୃଷ୍ଟିପୂର୍ବରେ ଥିଲା ଏବଂ ପରେ ମଧ୍ୟ ରହିବ—ସେ ସମ୍ବନ୍ଧରେ 'ଅଛି', 'ନାହିଁ' ଏପରି କିଛି କୁହାଯାଇ ପାରେ ନାହିଁ, କାରଣ ଯାହା ଅତୀନ୍ଦ୍ରିୟ ବସ୍ତୁ ସେ ସମ୍ବନ୍ଧରେ ଏପରି ସାପେକ୍ଷ ଶବ୍ଦ ପ୍ରୟୋଗ କରାଯାଏ ନାହିଁ ।

ସର୍ବତଃ ପାଣିପାଦଂ ତତ୍ ସର୍ବତୋଽକ୍ଷିଶିରୋମୁଖମ୍
ସର୍ବତଃ ଶ୍ରୁତିମଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି । ୧୩ ।

୧୩ । ଅନ୍ୱୟଦୀପିକା—ତତ୍ ( ସେହି ବ୍ରହ୍ମ ) ସର୍ବତଃ ପାଣିପାଦଂ (ସର୍ବତ୍ର ହସ୍ତପଦ ବିଶିଷ୍ଟ), ସର୍ବତୋଽକ୍ଷି ଶିରୋମୁଖଂ ( ସର୍ବତ୍ର ଚକ୍ଷୁ, ଶିର, ମୁଖ ବିଶିଷ୍ଟ ), ସର୍ବତଃ ଶ୍ରୁତିମତ୍ ( ସର୍ବତ୍ର କର୍ଣ୍ଣ ବିଶିଷ୍ଟ ) ଲୋକେ ( ସଂସାରରେ ) ସର୍ବମ୍ ଆବୃତ୍ୟ ( ସମସ୍ତ ପଦାର୍ଥ ଆବୃତକରି ) ତିଷ୍ଠତି ( ଅବସ୍ଥାନ କରୁ ଅଛନ୍ତି ) ।

ଅନୁବାଦ—ସବୁଆଡ଼େ ତାହାଙ୍କର ହସ୍ତପଦ, ସବୁ ଦିଗରେ ତାହାଙ୍କର ଚକ୍ଷୁ, ମସ୍ତକ ଓ ମୁଖ, ସବୁ ଦିଗରେ ତାହାଙ୍କର କର୍ଣ୍ଣ, ସଂସାରରେ ଏହିପରି ସେ ସବୁ ପଦାର୍ଥକୁ ଆବୃତ କରି ରହିଅଛନ୍ତି ।

ସୁବୋଧିନୀ ଟୀକା—ତନ୍ନୈବ ବ୍ରହ୍ମଣଃ ସଦସଦ୍‌ବିଲକ୍ଷଣତ୍ୱେ ସତି—ସର୍ବଂ ଖଲ୍ୱିଦଂ ବ୍ରହ୍ମ, ବ୍ରହ୍ମୈବେଦଂ ସର୍ବମ୍—ଇତ୍ୟାଦି ଶ୍ରୁତିଭିର୍ବିରୁଧ୍ୟେତ—ଇତ୍ୟାଶଙ୍କ୍ୟ—ପରସ୍ୟ ଶକ୍ତିର୍ବିବିଧୈବ ଶ୍ରୂୟତେ, ସ୍ୱାଭାବିକୀ ଜ୍ଞାନବଳକ୍ରିୟା ଚ ଇତ୍ୟାଦି ଶ୍ରୁତିପ୍ରସିଦ୍ଧୟା ଅଚିନ୍ତ୍ୟଶକ୍ତ୍ୟା ସର୍ବାତ୍ମତାଂ ତସ୍ୟ ଦର୍ଶୟନ୍ନାହ । ସର୍ବତ ଇତି ପଞ୍ଚଭିଃ । ସର୍ବତଃ ସର୍ବତ୍ର ପାଣୟଃ ପାଦାଶ୍ଚ ଯସ୍ୟତତ୍, ସର୍ବତୋଽକ୍ଷୀଣି ଶିରାଂସି ମୁଖାନି ଚ ଯସ୍ୟତତ୍ । ସର୍ବତଃ ଶ୍ରୁତିମଚ୍ଛ୍ରବଣେନ୍ଦ୍ରିୟେ ଯୁକ୍ତଂ ସନ୍ଲୋକେ ସର୍ବମାବୃତ୍ୟ ବ୍ୟାପ୍ୟ ତିଷ୍ଠତି । ସର୍ବପ୍ରାଣିବୃତ୍ତିଭିଃ ପାଣ୍ୟାଦିଭିରୁପାଧିଭିଃ ସର୍ବବ୍ୟବହାରାସ୍ପଦତ୍ୱେନ ତିଷ୍ଠତୀତ୍ୟର୍ଥଃ ।

ବକ୍ତବ୍ୟ—ପରମାତ୍ମାଙ୍କର କ୍ଷେତ୍ରଜ୍ଞସ୍ୱରୂପତା ଏଠାରେ ବର୍ଣ୍ଣିତ ହୋଇଅଛି । ସେ ସର୍ବତ୍ର ପାଣି ଓ ପାଦବିଶିଷ୍ଟ ଅଟନ୍ତି ଅର୍ଥାତ୍ ସବୁ ପ୍ରାଣୀଙ୍କ ଦେହରେ ଯେଉଁ ହସ୍ତପଦ ଅଛି ତହିଁରେ ଶକ୍ତିରୂପରେ ରହି ସେ ସବୁକୁ ସ୍ୱ ସ୍ୱ କାର୍ଯ୍ୟରେ ନିୟୋଜିତ କରୁ ଅଛନ୍ତି । ତାହାଙ୍କର ଚକ୍ଷୁ, ଶିର ଏବଂ ମୁଖ ସର୍ବତ୍ର ବିଦ୍ୟମାନ ଅର୍ଥାତ୍ ସମସ୍ତ ପ୍ରାଣୀଙ୍କର ଚକ୍ଷୁ, ଶିର ଓ ମୁଖର କାର୍ଯ୍ୟକାରିଣୀ ଶକ୍ତିରୂପରେ ସେ ରହିଅଛନ୍ତି, ସେହିପରି ସେ ସମସ୍ତ ପ୍ରାଣୀଙ୍କର ଶ୍ରବଣେନ୍ଦ୍ରିୟର ଶକ୍ତି ଅଟନ୍ତି । ଫଳତଃ ପରମାତ୍ମା କ୍ଷେତ୍ରଜ୍ଞ ଅର୍ଥାତ୍ ଜୀବରୂପରେ ଏ ଶରୀରରେ ରହି ଜ୍ଞାନେନ୍ଦ୍ରିୟ, କର୍ମେନ୍ଦ୍ରିୟ ସମସ୍ତଙ୍କର ଶକ୍ତି ସ୍ୱରୂପ ଅଟନ୍ତି ।

ଏ ଶ୍ଲୋକଟି ଶ୍ୱେତାଶ୍ୱତର ଉପନିଷଦରୁ ଯଥାଯଥରୂପେ ଗୃହୀତ ହୋଇଅଛି ( ଅ ୧୬ ) । ପୁରୁଷସୂକ୍ତ ମନ୍ତ୍ରର 'ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍' ପ୍ରଭୃତି ବର୍ଣ୍ଣନାର ଭାବ ଏହିପରି ।

ସର୍ବେନ୍ଦ୍ରିୟଗୁଣାଭାସଂ ସର୍ବେନ୍ଦ୍ରିୟବିବର୍ଜିତମ୍ ।
ଅସକ୍ତଂ ସର୍ବଭୃଚ୍ଚୈବ ନିର୍ଗୁଣଂ ଗୁଣଭୋକ୍ତୃ ଚ ।୧୪।

ବହିରନ୍ତଶ୍ଚ ଭୂତାନାମଚରଂ ଚରମେବ ଚ
ସୂକ୍ଷ୍ମତ୍ୱାତ୍ ତଦବିଜ୍ଞେୟଂ ଦୂରସ୍ଥଂ ଚାନ୍ତିକେ ଚ ତତ୍ । ୧୫ ।

୧୪ । ଅନ୍ୱୟ ଦୀପିକା—[ ସେ ] ସର୍ବେନ୍ଦ୍ରିୟଗୁଣାଭାସଂ (ସମସ୍ତ ଇନ୍ଦ୍ରିୟ ଓ ସେମାନଙ୍କ ଗୁଣର ପ୍ରକାଶକ) ସର୍ବେନ୍ଦ୍ରିୟବିବର୍ଜିତମ୍ (ସମସ୍ତ ଇନ୍ଦ୍ରିୟ ଶୂନ୍ୟ) ଅସକ୍ତମ୍ (ନିଃସଙ୍ଗ), ସର୍ବଭୃତ୍ ଏବଚ (ଓ ସର୍ବ ବସ୍ତୁର ଆଧାର ସ୍ୱରୂପ), ନିର୍ଗୁଣଂ (ଗୁଣରହିତ), ଗୁଣଭୋକ୍ତୃଚ (ସମସ୍ତ ଗୁଣର ଭୋକ୍ତା) ।

ଅନୁବାଦ—ସେ ଚକ୍ଷୁ ପ୍ରଭୃତି ସମସ୍ତ ଇନ୍ଦ୍ରିୟ ଗୁଣର ପ୍ରକାଶକ ଅଥଚ ସର୍ବେନ୍ଦ୍ରିୟବିବର୍ଜିତ, ନିଃସଙ୍ଗ ଅଥଚ ସକଳ ବସ୍ତୁ ଧାରଣ କରି ରହିଅଛନ୍ତି, ନିର୍ଗୁଣ ଅଥଚ ସତ୍ତ୍ୱାଦି ଗୁଣ ସମୂହର ଭୋକ୍ତା ।

ସୁବୋଧିନୀ ଟୀକା— କିଞ୍ଚ—ସର୍ବେନ୍ଦ୍ରିୟେତି । ସର୍ବେଷାଂ ଚକ୍ଷୁରାଦୀନାମିନ୍ଦ୍ରିୟାଣାଂ ଗୁଣେଷୁ ରୂପାଦ୍ୟାକାରାସୁ ବୃତ୍ତିଷୁ ତତ୍ତଦାକାରେଣ ଭାସତ ଇତି ତଥା । ସର୍ବେନ୍ଦ୍ରିୟାଣି ଗୁଣାଂଶ୍ଚ ତତ୍ତଦ୍‌ବିଷୟାନାଭାସୟତୀତିବା, ସର୍ବୈରିନ୍ଦ୍ରିୟୈର୍ବିବର୍ଜିତଂ ଚ । ତଥାଚ ଶ୍ରୁତିଃ—ଅପାଣିପାଦୋ ଜବନୋ ଗ୍ରହୀତା ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ ଇତ୍ୟାଦି, ଅସକ୍ତଂ ସଙ୍ଗଶୂନ୍ୟମ୍ । ତଥାପି ସର୍ବଂ ବିଭର୍ତ୍ତୀତି ସର୍ବଭୃତ୍, ସର୍ବସ୍ୟାଧାରଭୂତମ୍ । ତଦେବ ନିର୍ଗୁଣଂ ସତ୍ତ୍ୱାଦି ଗୁଣରହିତମ୍, ଗୁଣଭୋକ୍ତୃଚ ଗୁଣାନାଂ ସତ୍ତ୍ୱାଦୀନାଂ ଭୋକ୍ତୃ ପାଳକମ୍ ।

ବିବୃତି—ସେ ନିରାକାର, ତାଙ୍କର କୌଣସି ଇନ୍ଦ୍ରିୟ ନାହିଁ, ଅଥଚ ତାଙ୍କ ଶକ୍ତି ବ୍ୟତିରେକେ ପ୍ରାଣୀମାନଙ୍କର କୌଣସି ଇନ୍ଦ୍ରିୟ ପରିଚାଳିତ ହୁଏନାହିଁ; ଅତଏବ ସେ ସମସ୍ତ ଇନ୍ଦ୍ରିୟ ବୃତ୍ତିର ପ୍ରକାଶକ ଅଟନ୍ତି । ତାଙ୍କର କାହା ସଙ୍ଗରେ କୌଣସି ସମ୍ବନ୍ଧ ନ ଥାଏ, ଅଥଚ ତାହାଙ୍କୁ ଅବଲମ୍ବନ କରି ଜଗତ୍ ବିଦ୍ୟମାନ ଅଛି ଅର୍ଥାତ୍ ସେ ସମସ୍ତଙ୍କର ଧାରକ ଅଟନ୍ତି । ସେ ନିର୍ଗୁଣ ଅର୍ଥାତ୍ ସତ୍ତ୍ୱାଦିଗୁଣମୟୀ ବା ମାୟା ତାଙ୍କୁ ସ୍ପର୍ଶ କରିପାରେ ନାହିଁ ଅଥଚ ସେ ଗୁଣଭୋକ୍ତା ଅର୍ଥାତ୍ ସତ୍ତ୍ୱାଦିଗୁଣର ପାଳକ ।

୧୫ । ଅନ୍ୱୟ ଦୀପିକା—ତତ୍ (ସେ) ଭୂତାନାଂ (ଭୂତମାନଙ୍କର) ବହିଃ (ବାହାରେ) ଅନ୍ତଃ ଚ (ଭିତରେ ମଧ୍ୟ) [ବିଦ୍ୟମାନ ଅଛନ୍ତି] । ଅଚରଂ (ସ୍ଥାବର) ଜଙ୍ଗମଂ ଚ (ଜଙ୍ଗମ ମଧ୍ୟ); ସୂକ୍ଷ୍ମତ୍ୱାତ୍ (ସୂକ୍ଷ୍ମତା ହେତୁରୁ) ଅବିଜ୍ଞେୟମ୍ (କେହି ତାଙ୍କୁ ଜାଣି ପାରନ୍ତି ନାହିଁ); ଦୂରସ୍ଥଂ (ଦୂରସ୍ଥ), ଅନ୍ତିକେ ଚ (ଓ ନିକଟବର୍ତ୍ତୀ) ।

ଅବିଭକ୍ତଂ ଚ ଭୂତେଷୁ ବିଭକ୍ତମିବ ଚ ସ୍ଥିତଂ
ଭୂତଭର୍ତ୍ତୃ ଚ ତଜ୍ଜ୍ଞେୟଂ ଗ୍ରସିଷ୍ଣୁ ପ୍ରଭବିଷ୍ଣୁ ଚ । ୧୭ ।

ଅନୁବାଦ—ସେ ସମସ୍ତ ଭୂତଙ୍କର ବାହାରେ ଅଛନ୍ତି ଓ ଭିତରେ ଅଛନ୍ତି, ସ୍ଥାବର ଓ ଜଙ୍ଗମ ସେହି । ଅତି ସୂକ୍ଷ୍ମ ହେବାରୁ ତାଙ୍କୁ କେହି ଜାଣି-ପାରନ୍ତି ନାହିଁ, ଦୂରସ୍ଥ ହୋଇ ମଧ୍ୟ ସେ ନିକଟବର୍ତ୍ତୀ ।

ସୁବୋଧିନୀ ଟୀକା—କିଞ୍ଚ ବହିରିତି—ଭୂତାନାଂ ଚରାଚରାଣାଂ ସ୍ୱକାର୍ଯ୍ୟାଣାଂ ବହିରନ୍ତଶ୍ଚ ତଦେବ । ସୁବର୍ଣ୍ଣମିବ କଟକକୁଣ୍ଡଳାଦୀନାଂ । ଜଳତରଙ୍ଗାଣା ମନ୍ତର୍ବହିଶ୍ଚ ଜଳମିବ, ଅଚରଂ ସ୍ଥାବରଂ ଜଙ୍ଗମଂ ଚ ଭୂତଜାତଂ ତଦେବ । କାରଣାତ୍ମକତ୍ୱାତ୍ କାର୍ଯ୍ୟସ୍ୟ । ଏବମପି ସୂକ୍ଷ୍ମତ୍ୱାଦ୍ରୂପାଦିହୀନତ୍ୱାତ୍ ତଦବିଜ୍ଞେୟମ୍ । ଇଦଂ ତଦିତି ସ୍ପଷ୍ଟଂ ଜ୍ଞାନାର୍ହଂ ନ ଭବତି, ଅତଏବାବିଦୁଷାଂ ଯୋଜନଲକ୍ଷାନ୍ତରିତମିବ ଦୂରସ୍ଥଂ ଚ । ଅବିକାରସ୍ୟ ପ୍ରକୃତେଃ ପରତ୍ୱାତ୍, ବିଦୁଷାଂ ପୁନଃ ପ୍ରତ୍ୟଗାତ୍ମତ୍ୱାଦନ୍ତିକେ ଚ ତନ୍ନିତ୍ୟଂ ସନ୍ନିହିତଂ, ତଥାଚ ମନ୍ତ୍ରଃ—ତଦେଜତି ତନ୍ନୈଜତି ତଦ୍ଦୂରେ ତଦ୍ୱଦନ୍ତିକେ, ତଦନ୍ତରସ୍ୟ ସର୍ବସ୍ୟ ତଦୁ ସର୍ବସ୍ୟାସ୍ୟ ବାହ୍ୟତଃ, ଇତି । ଏଜତି ଚଳତି, ନୈଜତି ନ ଚଳତି, ତଦ୍ୱ ଅନ୍ତିକେ ଇତିଚ୍ଛେଦଃ ।

ବିବୃତି—ଜଳତରଙ୍ଗର ଭିତରେ ଓ ବାହାରେ ଯେପରି ଜଳଭିନ୍ନ ଅନ୍ୟ କିଛି ନ ଥାଏ, ସୁବର୍ଣ୍ଣ କୁଣ୍ଡଳର ବାହାରେ ଓ ଭିତରେ ସୁବର୍ଣ୍ଣ ଭିନ୍ନ ଅନ୍ୟ ପଦାର୍ଥ ଯେପରି ନ ଥାଏ, ସେହିପରି ଏ ଜଗତର ବାହାରେ ଓ ଭିତରେ ବ୍ରହ୍ମ ଭିନ୍ନ ଅନ୍ୟ କୌଣସି ବସ୍ତୁ ନାହିଁ । ଜଗତରେ ଯେତେ ସ୍ଥାବର ବା ଅଚଳ ବସ୍ତୁ ଏବଂ ଜଙ୍ଗମ ବା ଚଳବସ୍ତୁ ସେ ସମସ୍ତ ବ୍ରହ୍ମ ଭିନ୍ନ ଅନ୍ୟ କିଛି ନୁହନ୍ତି । ସୂକ୍ଷ୍ମ ଅର୍ଥାତ୍ ରୂପାଦିଶୂନ୍ୟ ହୋଇ ଥିବାରୁ ତାହାଙ୍କୁ କେହି ଜାଣି ପାରନ୍ତି ନାହିଁ, ଅଜ୍ଞଜନମାନଙ୍କ ପକ୍ଷରେ ସେ ଦୂରବର୍ତ୍ତୀ ହେଲେହେଁ ଆତ୍ମାରୂପରେ ବିଦ୍ୟମାନ ଥିବାରୁ ଆତ୍ମଜ୍ଞାନୀଙ୍କ ପକ୍ଷରେ ସେ ନିକଟବର୍ତ୍ତୀ ।

୧୭ । ଅନ୍ୱୟ ଦୀପିକା—ତତ୍ (ସେ) ଅବିଭକ୍ତଂ (ଅବିଚ୍ଛିନ୍ନ) [ହୋଇ ମଧ୍ୟ] ଭୂତେଷୁ ଚ (ସର୍ବଭୂତରେ) ବିଭକ୍ତମିବ ସ୍ଥିତଂ (ସତେଯେପରି ଭିନ୍ନ ଭିନ୍ନ ହୋଇ ରହିଅଛନ୍ତି) । [ତାହାଙ୍କୁ] ଭୂତଭର୍ତ୍ତୃ (ସର୍ବଭୂତର ପାଳନ-କର୍ତ୍ତା) ଗ୍ରସିଷ୍ଣୁ (ଗ୍ରାସକର୍ତ୍ତା) ପ୍ରଭବିଷ୍ଣୁ ଚ (ଏବଂ ସୃଷ୍ଟି କର୍ତ୍ତା) ଜ୍ଞେୟଂ (ଜାଣିବ) ।

ଅନୁବାଦ—ସେ ସର୍ବ ଭୂତରେ ଅବିଭକ୍ତ ବା ଅପରିଚ୍ଛିନ୍ନ ହେଲେ-ମଧ୍ୟ ପ୍ରତ୍ୟେକ ପ୍ରାଣୀଠାରେ ଭିନ୍ନ ଭିନ୍ନ ବୋଲି ପ୍ରତୀତ ହୁଅନ୍ତି । ତାହାଙ୍କୁ ଭୂତମାନଙ୍କର ପାଳନ କର୍ତ୍ତା, ସଂହାର କର୍ତ୍ତା ଏବଂ ସୃଷ୍ଟିକର୍ତ୍ତା ବୋଲି ଜାଣିବ ।

ଜ୍ୟୋତିଷାମପି ତଜ୍ଜ୍ୟୋତି ସ୍ତମସଃ ପରମୁଚ୍ୟତେ ।
ଜ୍ଞାନଂ ଜ୍ଞେୟଂ ଜ୍ଞାନଗମ୍ୟଂ ହୃଦି ସର୍ବସ୍ୟ ଧିଷ୍ଠିତଂ । ୧୭ ।

ସୁବୋଧିନୀ ଟୀକା—କିଞ୍ଚ—ଅବିଭକ୍ତ ମିତି—ଭୂତେଷୁ ସ୍ଥାବର ଜଙ୍ଗମାତ୍ମକେଷ୍ୱବିଭକ୍ତଂ କାରଣାତ୍ମନା ଅଭିନ୍ନଂ କାର୍ଯ୍ୟାତ୍ମନା ବିଭକ୍ତଂ ଭିନ୍ନମିବା-ବସ୍ଥିତଂ ଚ, ସମୁଦ୍ରାଜ୍ଜାତଂ ଫେନାଦି-ସମୁଦ୍ରାଦନ୍ୟଦିବବତ, ତତ୍ ସ୍ୱରୂପମେ-ବୋକ୍ତଂ ଜ୍ଞେୟଂ, ଭୂତାନାଂ ଭର୍ତ୍ତୃ ଚ ପୋଷକଂ ସ୍ଥିତିକାଲେ, ପ୍ରଳୟକାଲେ ଚ ଗ୍ରସିଷ୍ଣୁ ଗ୍ରସନଶୀଳଂ, ସୃଷ୍ଟିକାଳେ ଚ ପ୍ରଭବିଷ୍ଣୁ ନାନାକାର୍ଯ୍ୟାତ୍ମନା ପ୍ରଭବନଶୀଳମ୍ ।

୧୭ । ଅନ୍ୱୟ ଦୀପିକା—ତତ୍ ( ସେ ) ଜ୍ୟୋତିଷାମ୍ ଅପି ( ଜ୍ୟୋତିଃ ସମୂହର ଅର୍ଥାତ୍ ସୂର୍ଯ୍ୟ ପ୍ରଭୃତିଙ୍କର ମଧ୍ୟ ) ଜ୍ୟୋତିଃ ( ଜ୍ୟୋତିଃ ), ତମସଃ ( ତମଃ ଶବ୍ଦର ଅର୍ଥାତ୍ ଅବିଦ୍ୟାର ) ପରଂ ( ଅତୀତ ବୋଲି ) ଉଚ୍ୟତେ ( କଥିତ ହୁଅନ୍ତି ), [ସେ] ଜ୍ଞାନଂ ( ଜ୍ଞାନ ) ଜ୍ଞେୟଂ ( ଜ୍ଞାତବ୍ୟ ) ଜ୍ଞାନଗମ୍ୟଂ ( ଜ୍ଞାନଦ୍ୱାରା ଲଭ୍ୟ ); ସର୍ବସ୍ୟ ହୃଦି ( ସମସ୍ତଙ୍କ ହୃଦୟରେ ) ଧିଷ୍ଠିତମ୍ ( ଅଧିଷ୍ଠିତ ) ।

ଅନୁବାଦ—ସେ ସୂର୍ଯ୍ୟାଦି ଜ୍ୟୋତିଷ୍ମାନଙ୍କର ଜ୍ୟୋତିଃ, ତମ ଅର୍ଥାତ୍ ଅବିଦ୍ୟାରୂପ ଅନ୍ଧକାରରୁ ଅତୀତ, ସେ ବୁଦ୍ଧିବୃତ୍ତିରେ ପ୍ରକାଶମାନଜ୍ଞାନ, ସେ ଜ୍ଞେୟତତ୍ତ୍ୱ, ଜ୍ଞାନଦ୍ୱାରାହିଁ ତାହାଙ୍କୁ ଲାଭ କରାଯାଏ, ସେ ସମସ୍ତଙ୍କ ହୃଦୟରେ ଅବସ୍ଥିତ ଅଛନ୍ତି ।

ସୁବୋଧିନୀ ଟୀକା— କିଞ୍ଚ—ଜ୍ୟୋତିଷାମପୀତି, ଜ୍ୟୋତିଷାଂ ସୂର୍ଯ୍ୟାଦୀନା ମପି ଜ୍ୟୋତିଃ ପ୍ରକାଶକଂ ତତ୍, ଯେନ ସୂର୍ଯ୍ୟସ୍ତପତି ତେଜସେଦ୍ଧଃ, ନ ତତ୍ର ସୂର୍ଯ୍ୟୋ ଭାତି ନ ଚନ୍ଦ୍ରତାରକଂ ନେମା ବିଦ୍ୟୁତୋ ଭାନ୍ତି କୁତୋଽୟ-ମଗ୍ନିଃ, ତମେବଭାନ୍ତ ମନୁଭାତି ସର୍ବଂ ତସ୍ୟ ଭାସା ସର୍ବମିଦଂ ବିଭାତି, ଇତ୍ୟାଦି ଶ୍ରୁତେଃ, ଅତଏବ ତମସୋଽଜ୍ଞାନାତ୍ ପରଂ ତେନାସ୍ପୃଷ୍ଟମୁଚ୍ୟତେ, ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ଇତ୍ୟାଦିଶ୍ରୁତେଃ, ଜ୍ଞାନଂ ଚ ତଦେବବୁଦ୍ଧିବୃତ୍ତ୍ୟଭି-ଭବ୍ୟକ୍ତମ୍, ତଦେବ ରୂପାଦ୍ୟାକାରେଣ ଜ୍ଞେୟଂ ଚ ଜ୍ଞାନଗମ୍ୟଂ ଚ, ଅମାନିତ୍ୱାଦି ଲକ୍ଷଣେନ ପୂର୍ବୋକ୍ତଜ୍ଞାନସାଧନେନ ପ୍ରାପ୍ୟମିତ୍ୟର୍ଥଃ, ଜ୍ଞାନଗମ୍ୟଂ ବିଶିନଷ୍ଟି—ସର୍ବସ୍ୟ ପ୍ରାଣିମାତ୍ରସ୍ୟ ହୃଦି ବିଷ୍ଠିତଂ ବିଶେଷଣାପ୍ରଚ୍ୟୁତସ୍ୱରୂପେଣ ନିୟନ୍ତୃତୟା ସ୍ଥିତଂ, ଧିଷ୍ଠିତ ମିତିପାଠେଽଧିଷ୍ଠାୟ ସ୍ଥିତମିତ୍ୟର୍ଥଃ ।

ବିବୃତି—ପୂର୍ବୋକ୍ତ ଶ୍ଳୋକମାନଙ୍କରେ ନିର୍ଗୁଣ ଓ ସଗୁଣ ଉଭୟବିଧ ବ୍ରହ୍ମଙ୍କର ବର୍ଣ୍ଣନା କରାଯାଇଅଛି । ବେଦାନ୍ତ ଏବଂ ଉପନିଷଦମାନଙ୍କରେ ଏହି ଉଭୟ ବିଷୟ ହିଁ କଥିତ ହୋଇଅଛି । ମାୟାଯୁକ୍ତ ହେଲେ ନିର୍ଗୁଣ ବ୍ରହ୍ମଙ୍କୁ

ଇତି କ୍ଷେତ୍ରଂ ତଥା ଜ୍ଞାନଂ ଜ୍ଞେୟଂ ଚୋକ୍ତଂ ସମାସତଃ
ମଦ୍‌ଭକ୍ତ ଏତଦ୍ ବିଜ୍ଞାୟ ମଦ୍‌ଭାବାୟୋପପଦ୍ୟତେ । ୧୮ ।

ସଗୁଣ ବ୍ରହ୍ମ ବୁଝାଯାଏ । ନିର୍ଗୁଣବ୍ରହ୍ମ ଭକ୍ତିର ବିଷୟୀଭୂତ ହୋଇ ପାରନ୍ତି ନାହିଁ । ଜ୍ଞାନବାଦୀ ସନ୍ନ୍ୟାସୀମାନେ ଆତ୍ମସ୍ୱରୂପ ଧ୍ୟାନରେ ତାଙ୍କର ଅସ୍ତିତ୍ୱ ହୃଦୟରେ ଅନୁଭବ ମାତ୍ର କରନ୍ତି । ସେ ଯାହାହେଉ, ଗୀତାରେ ବ୍ୟକ୍ତ ଉପାସନା ବା ଭକ୍ତି ଯେ ପ୍ରତିପାଦିତ ହୋଇଅଛି—ଏଥିରେ କାହାର ସନ୍ଦେହ ହୋଇ ନ ପାରେ ।

ଅଷ୍ଟମ ଅଧ୍ୟାୟର ୯ମରୁ ୧୧ଶ ଶ୍ଳୋକରେ ଯେପରି ଉପନିଷଦ୍ ଭଙ୍ଗିରେ ଅକ୍ଷର ବ୍ରହ୍ମଙ୍କର ବର୍ଣ୍ଣନା ଅଛି ଏ ସବୁ ବର୍ଣ୍ଣନା ସେହିପରି ଉପନିଷଦ୍ ବର୍ଣ୍ଣନାର ଅନୁରୂପ । ମହାଭାରତ ନାରାୟଣୀୟ ପର୍ବାଧ୍ୟାୟରେ ଭାଗବତ ଧର୍ମ ବର୍ଣ୍ଣନାରେ ମଧ୍ୟ ଏହିପରି ସଗୁଣ ନିର୍ଗୁଣ ଉଭୟ ବ୍ରହ୍ମଙ୍କର ବର୍ଣ୍ଣନା ଦେଖାଯାଏ ।

୧୮ । ଅନ୍ୱୟ ଦୀପିକା—ଇତି ( ଏହି ) କ୍ଷେତ୍ରଂ, ତଥା ଜ୍ଞାନଂ, ଜ୍ଞେୟଂଚ ( କ୍ଷେତ୍ର, ଜ୍ଞାନ ଓ ଜ୍ଞେୟ ବିଷୟ ) ସମାସେନ ( ସଂକ୍ଷେପରେ ) ଉକ୍ତ ( କଥିତ ହେଲା ), ମଦ୍‌ଭକ୍ତଃ (ଆମ୍ଭର ଭକ୍ତ) ଏତତ୍ (ଏହା) ବିଜ୍ଞାୟ ( ଜାଣି ) ମଦ୍‌ଭାବାୟ ( ଈଶ୍ୱରଙ୍କ ଭାବ ପାଇବାର ) ଉପପଦ୍ୟତେ ( ଉପଯୁକ୍ତ ହୁଏ ) ।

ଅନୁବାଦ—କ୍ଷେତ୍ର, ଜ୍ଞାନ ଏବଂ ଜ୍ଞେୟ କାହାକୁ କୁହାଯାଏ ଏହିପରି ସଂକ୍ଷେପରେ ଏଠାରେ କଥିତ ହେଲା । ଆମ୍ଭର ଭକ୍ତ ଏହା ଜାଣିପାରି ଆମ୍ଭର ଭାବ ଅର୍ଥାତ୍ ସ୍ୱରୂପ ବୁଝି ପାରନ୍ତି ।

ସୁବୋଧିନୀ ଟୀକା—ଉକ୍ତଂ କ୍ଷେତ୍ରାଦିକମଧିକାରଫଳସହିତମୁପସଂହରତି, ଇତୀତି, ଇତ୍ୟେବଂ କ୍ଷେତ୍ରଂ ମହାଭୂତାଦି ଧୃତ୍ୟନ୍ତମ୍, ତଥାଜ୍ଞାନଂ ଚାମାନିତ୍ୱାଦି ତତ୍ତ୍ୱଜ୍ଞାନାର୍ଥ ଦର୍ଶନାନ୍ତମ୍ । ଜ୍ଞେୟଂ ଚାନାଦିମତ୍ ପରଂ ବ୍ରହ୍ମେତ୍ୟାଦି ହୃଦି ସର୍ବସ୍ୟ ଧିଷ୍ଠିତମିତ୍ୟନ୍ତମ୍ । ବଶିଷ୍ଠାଦିଭିର୍ବିସ୍ତରେଣୋକ୍ତଂ ସର୍ବମପିମୟା ସଂକ୍ଷେପେଣୋକ୍ତମ୍, ଏତଜ୍ଜ୍ଞାତ୍ୱାର୍ଥଂ ? ପୂର୍ବାଧ୍ୟାୟୋକ୍ତଲକ୍ଷଣୋ ମଦ୍‌ଭକ୍ତୋ ବିଜ୍ଞାୟ ମଦ୍‌ଭାବାୟ ବ୍ରହ୍ମତ୍ୱାୟୋପପଦ୍ୟତେ ଯୋଗ୍ୟୋ ଭବତି ।

ବିବୃତି—ଅଧ୍ୟାତ୍ମଶାସ୍ତ୍ର ଅନୁସାରେ ଏଠାରେ କ୍ଷେତ୍ର, ଜ୍ଞାନ ଓ ଜ୍ଞେୟ ବିଷୟକ ବିବୃତି ଶେଷ ହେଲା । ଶେଷରେ ଭଗବାନ୍ କହିଲେ, ଆମ ଭକ୍ତ ଏହା ଜାଣିପାରି ମଦ୍‌ଭାବ ଅର୍ଥାତ୍ ମତ୍‌ସ୍ୱରୂପ ବୁଝି ପାରନ୍ତି । ପୂର୍ବ ଶ୍ଳୋକର ଟିପ୍ପଣୀରେ କୁହାଯାଇ ଅଛି, ନିର୍ଗୁଣ ବ୍ରହ୍ମ ଭକ୍ତିର ବିଷୟୀଭୂତ ହୋଇ ପାରନ୍ତି ନାହିଁ, ମାତ୍ର ଏଠାରେ ଭକ୍ତ ଶବ୍ଦର ପ୍ରୟୋଗରୁ ବୁଝା ଯାଉଅଛି, ଦ୍ୱାଦଶ ଅଧ୍ୟାୟରେ ଯେଉଁ ଭକ୍ତଙ୍କ କଥା କୁହା ଯାଇଅଛି, ଏଠାରେ ତାହାଙ୍କୁ ଲକ୍ଷ୍ୟ କରି ହୋଇଅଛି, ତେଣୁ ଏଥିରୁ ବୁଝାଯାଉଅଛି, ବ୍ରହ୍ମ ନିର୍ଗୁଣ ହେଲେହେଁ ସଗୁଣ ଭାବରେ ଜ୍ଞାନମୂଳକ ଭକ୍ତିଦ୍ୱାରା ଭକ୍ତଙ୍କର ଅଗାଧ ।

ପ୍ରକୃତିଂ ପୁରୁଷଂ ଚୈବ ବିଦ୍ଧ୍ୟନାଦୀ ଉଭାବପି ।
ବିକାରାଂଶ୍ଚ ଗୁଣାଂଶ୍ଚୈବ ବିଦ୍ଧି ପ୍ରକୃତିସମ୍ଭବାନ୍ । ୧୯ ।

୧୯ । ଅନ୍ୱୟ ଦୀପିକା—ପ୍ରକୃତିଂ ( ପ୍ରକୃତି ) ପୁରୁଷଂ ଚ ଏବ ( ଏବଂ ପୁରୁଷ ) ଉଭୌଅପି ( ଉଭୟଙ୍କୁ ) ଅନାଦୀ ( ଅନାଦି ବୋଲି ) ବିଦ୍ଧି ( ଜାଣିବ ) । ବିକାରାନ୍ ( ବିକାରମାନଙ୍କୁ ) ଚ ଗୁଣାନ୍ ( ଏବଂ ଗୁଣମାନଙ୍କୁ ) ପ୍ରକୃତିସମ୍ଭବାନ୍ ( ପ୍ରକୃତିରୁ ଉତ୍ପନ୍ନ ବୋଲି ) ବିଦ୍ଧି ( ଜାଣିବ ) ।

ଅନୁବାଦ—ପ୍ରକୃତି ଓ ପୁରୁଷ ଉଭୟ ଅନାଦି ବୋଲି ଜାଣ । ବିକାର ଅର୍ଥାତ୍ ଦେହ ଇନ୍ଦ୍ରିୟପ୍ରଭୃତି ବିକାର ଓ ଗୁଣ ଅର୍ଥାତ୍ ସତ୍ତ୍ୱ, ରଜଃ, ତମଃ ପ୍ରଭୃତି ପ୍ରକୃତିରୁ ଉତ୍ପନ୍ନ ବୋଲି ଜାଣ ।

ସୁବୋଧିନୀ ଟୀକା—ତଦେବଂ ତତ୍ କ୍ଷେତ୍ରଂ ଯଚ୍ଚ ଯାଦୃକ୍ ଚ ଇତ୍ୟେତାବତ୍ ପ୍ରପଞ୍ଚିତମ୍ । ଇଦାନୀଂ ତୁ ଯଦ୍ ବିକାରି ଯତଶ୍ଚ ଯତ୍, ସ ଚ ଯୋ ଯତ୍ପ୍ରଭାବଶ୍ଚ ଇତ୍ୟେତତ୍ ପୂର୍ବଂ ପ୍ରତିଜ୍ଞାତମେବ ପ୍ରକୃତିପୁରୁଷୟୋଃ ସଂସାରହେତୁତ୍ୱକଥନେନ ପ୍ରପଞ୍ଚୟତି—ପ୍ରକୃତିମିତି ପଞ୍ଚଭିଃ । ତତ୍ର ପ୍ରକୃତି-ପୁରୁଷୟୋରାଦିମତ୍ତ୍ୱେ ତୟୋରପି ପ୍ରକୃତ୍ୟନ୍ତରେଣ ଭାବ୍ୟମିତ୍ୟନବସ୍ଥା-ପତ୍ତିଃ ସ୍ୟାତ୍ । ଅତସ୍ତାବୁଭାବନାଦୀ ବିଦ୍ଧି । ଅନାଦେରୀଶ୍ୱରସ୍ୟ ଶକ୍ତିତ୍ୱାତ୍ ପ୍ରକୃତେରନାଦିତ୍ୱମ୍ । ପୁରୁଷୋଽପି ତଦଂଶତ୍ୱାଦନାଦିରେବ । ଅନେନ ଚ ପରମେଶ୍ୱରସ୍ୟ ତଚ୍ଛକ୍ତୀନାଂ ଗୁଣାଦିତ୍ୱଂ ନିତ୍ୟତ୍ୱଂ ଚ ଶ୍ରୀମଚ୍ଛଙ୍କରଭଗବଦ୍ଭାଷ୍ୟ-କୃଦ୍ଭିରତି ପ୍ରବନ୍ଧେନୋପପାଦିତ ମିତି ଗ୍ରନ୍ଥବାହୁଲ୍ୟାନ୍ନାସ୍ମାଭିଃ ପ୍ରତନ୍ୟତେ । ବିକାରାଂଶ୍ଚ ଦେହେନ୍ଦ୍ରିୟାଦୀନ୍ ଗୁଣାଂଶ୍ଚ ଗୁଣପରିଣାମାନ୍ ସୁଖଦୁଃଖମୋହାଦୀନ୍ ପ୍ରକୃତେଃ ସମ୍ଭୂତାନ୍ ବିଦ୍ଧି ।

ବିବୃତି—ପ୍ରକୃତିରୁ ପଞ୍ଚ ଭୌତିକ ବିକାରଯୁକ୍ତ କ୍ଷେତ୍ର ଉତ୍ପନ୍ନ ହୁଏ । ସାଂଖ୍ୟ ଦର୍ଶନ ଯାହାଙ୍କୁ 'ପୁରୁଷ' କହନ୍ତି, ବେଦାନ୍ତ ମତରେ ତାହା ଆତ୍ମା, ଏହି ହେତୁରୁ କ୍ଷେତ୍ରକ୍ଷେତ୍ରଜ୍ଞବିଚାର ସାଂଖ୍ୟଦୃଷ୍ଟିରେ ପ୍ରକୃତିପୁରୁଷର ବିଚାର । ସାଂଖ୍ୟବାଦୀମାନେ କହନ୍ତି ପ୍ରକୃତି ଓ ପୁରୁଷ ଦୁଇଟି ସ୍ୱତନ୍ତ୍ର ତତ୍ତ୍ୱ, ମାତ୍ର ଗୀତା କହନ୍ତି ( ୭-୪,୫ )—ଏହା ଏକ ପରମେଶ୍ୱରଙ୍କର ଅପରା ଓ ପରା ପ୍ରକୃତି । ଏହି ସତ୍ୟ ଉପରେ ପ୍ରକୃତି ପୁରୁଷ ବିଷୟକ ଦ୍ୱୈତ ସାଂଖ୍ୟ ସିଦ୍ଧାନ୍ତକୁ ଅସ୍ୱୀକାର କରି ଗୀତୋକ୍ତ ପ୍ରକୃତିପୁରୁଷବିଷୟକ ଅଦ୍ୱୈତ ସିଦ୍ଧାନ୍ତ ଅନୁସାରେ ବୁଝାଯାଇଅଛି । ସାଂଖ୍ୟ ମତରେ ପ୍ରକୃତି ଓ ପୁରୁଷ ଉଭୟ ଅନାଦି ଏବଂ ସ୍ୱତନ୍ତ୍ର ମୂଳତତ୍ତ୍ୱ । କିନ୍ତୁ ଗୀତା ମତରେ ପ୍ରକୃତି ସ୍ୱତନ୍ତ୍ର ନୁହେଁ, ଏହା ପରମେଶ୍ୱରଙ୍କଠାରୁ ଉତ୍ପନ୍ନ, ତାଙ୍କର ବିଭବ ମାତ୍ର, ତେଣୁ ଅନାଦି; ପୁରୁଷ ବା ଆତ୍ମା ଭଗବାନଙ୍କର ଅଂଶ, ତେଣୁ ସେ ମଧ୍ୟ ଅନାଦି ।

କାର୍ଯ୍ୟକାରଣକର୍ତ୍ତୃତ୍ୱେ ହେତୁଃ ପ୍ରକୃତିରୁଚ୍ୟତେ ।
ପୁରୁଷଃ ସୁଖ ଦୁଃଖାନାଂ ଭୋକ୍ତୃତ୍ୱେ ହେତୁରୁଚ୍ୟତେ । ୨୦ ।

୨୦ । ଅନ୍ୱୟ ଦୀପିକା—କାର୍ଯ୍ୟକାରଣକର୍ତ୍ତୃତ୍ୱେ ( କାର୍ଯ୍ୟ ଓ କାରଣର କର୍ତ୍ତୃତ୍ୱରେ ) ପ୍ରକୃତିଃ ହେତୁଃ ଉଚ୍ୟତେ ( ପ୍ରକୃତି ହେତୁ ବୋଲି କଥିତ ହୁଅନ୍ତି ), ସୁଖଦୁଃଖାନାଂ ( ସୁଖ ଓ ଦୁଃଖର ) ଭୋକ୍ତୃତ୍ୱେ ( ଭୋଗ ବିଷୟରେ ) ପୁରୁଷଃ ହେତୁଃ ଉଚ୍ୟତେ ( ପୁରୁଷ କାରଣ ବୋଲି କଥିତ ହୁଅନ୍ତି ) ।

ଅନୁବାଦ—କାର୍ଯ୍ୟ ଅର୍ଥାତ୍ ଦେହର ଏବଂ କାରଣ ଅର୍ଥାତ୍ ଇନ୍ଦ୍ରିୟମାନଙ୍କର କର୍ତ୍ତୃତ୍ୱ ବିଷୟରେ ପ୍ରକୃତିହିଁ କାରଣ ବୋଲି କଥିତ ହୁଅନ୍ତି । ସୁଖ ଓ ଦୁଃଖ ଭୋଗ ବିଷୟରେ ପୁରୁଷ ବା କ୍ଷେତ୍ରଜ୍ଞ କାରଣ ବୋଲି ଉକ୍ତ ହୁଅନ୍ତି ।

ସୁବୋଧିନୀ ଟୀକା—ବିକାରାଣାଂ ପ୍ରକୃତିସମ୍ଭବତ୍ୱଂ ଦର୍ଶୟନ୍ ପୁରୁଷସ୍ୟ ସଂସାରହେତୁତ୍ୱଂ ଦର୍ଶୟତି । କାର୍ଯ୍ୟେତି, କାର୍ଯ୍ୟଂ ଶରୀରଂ କାରଣାନି ସୁଖଦୁଃଖାଦିସାଧନାନୀନ୍ଦ୍ରିୟାଣି । ତେଷାଂ କର୍ତ୍ତୃତ୍ୱେ ତଦାକାରପରିଣାମେ ପ୍ରକୃତିର୍ହେତୁରୁଚ୍ୟତେ କପିଳାଦିଭିଃ । ପୁରୁଷୋ ଜୀବସ୍ତୁ ତତ୍କୃତସୁଖଦୁଃଖାନାଂ ଭୋକ୍ତୃତ୍ୱେ ହେତୁରୁଚ୍ୟତେ । ଅୟଂ ଭାବଃ ଯଦ୍ୟପି ଅଚେତନାୟାଃ ପ୍ରକୃତେଃ ସ୍ୱତଃ କର୍ତ୍ତୃତ୍ୱଂ ନ ସମ୍ଭବତି ତଥା ପୁରୁଷସ୍ୟାପ୍ୟବିକାରିଣୋ ଭୋକ୍ତୃତ୍ୱଂ ନ ସମ୍ଭବତି—ତଥାପି କର୍ତ୍ତୃତ୍ୱଂ ନାମ କ୍ରିୟାନିର୍ବର୍ତ୍ତକତ୍ୱଂ । ତଚ୍ଚାଚେତନସ୍ୟାପି ଚେତନାଦୃଷ୍ଟବଶାଚ୍ଚୈତନ୍ୟାଧିଷ୍ଠିତତ୍ୱାତ୍ ସମ୍ଭବତି । ଯଥା ବହ୍ନେରୂର୍ଦ୍ଧ୍ୱଜ୍ୱଲନଂ ବାୟୋସ୍ତିର୍ଯ୍ୟଗ୍ଗମନମ୍ । ବତ୍ସାଦୃଷ୍ଟବଶାତ୍ ସ୍ତନ୍ୟପୟସଃ କ୍ଷରଣମିତ୍ୟାଦି । ଅତଃ ପୁରୁଷସନ୍ନିଧାନାତ୍ ପ୍ରକୃତେଃ କର୍ତ୍ତୃତ୍ୱମୁଚ୍ୟତେ । ଭୋକ୍ତୃତ୍ୱଂ ଚ ସୁଖ-ଦୁଃଖସଂବେଦନମ୍ । ତଚ୍ଚ ଚେତନଧର୍ମ ଏବେତି ପ୍ରକୃତିସନ୍ନିଧାନାତ୍ ପୁରୁଷସ୍ୟ ଭୋକ୍ତୃତ୍ୱ ମୁଚ୍ୟତ ଇତି ।

ବିବୃତ—ଶରୀରକୁ କାର୍ଯ୍ୟ ଏବଂ ସୁଖ ଦୁଃଖାଦିର ସାଧନ ଇନ୍ଦ୍ରିୟ ସମୂହକୁ କାରଣ ବୋଲାଯାଏ । ( କେହି କେହି 'କାରଣ' ସ୍ଥାନରେ 'କରଣ' ଏହିପରି ପାଠ କରନ୍ତି । କରଣ ଅର୍ଥ ଇନ୍ଦ୍ରିୟ—ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ ଓ ମନ, ବୁଦ୍ଧି, ଅହଂ । ତେଣୁ କାର୍ଯ୍ୟକରଣର ଅର୍ଥ ମଧ୍ୟ ଦେହ ଓ ଇନ୍ଦ୍ରିୟ ହୁଏ । ) ଏହି କାର୍ଯ୍ୟ ଓ କାରଣ ଅର୍ଥାତ ଶରୀର ଓ ଇନ୍ଦ୍ରିୟାଦିଙ୍କର କର୍ତ୍ତୃତ୍ୱ ଅର୍ଥାତ୍ କାର୍ଯ୍ୟ ନିର୍ବାହ ବିଷୟରେ ପ୍ରକୃତିହିଁ ହେତୁ । ଅର୍ଥାତ ପ୍ରକୃତିହିଁ କ୍ରିୟାଶକ୍ତିର ମୂଳ । ପ୍ରକୃତି ଜଡ଼ା, ତାହାର ଏହି କ୍ରିୟାଶୀଳତା କାହୁଁ ଆସେ ? ଶ୍ରୀଧର ସ୍ୱାମୀ ଉକ୍ତ ଟୀକାରେ କହନ୍ତି, ପୁରୁଷ ସନ୍ନିଧାନରୁ ପ୍ରକୃତିଠାରେ

ପୁରୁଷଃ ପ୍ରକୃତିସ୍ଥୋ ହି ଭୁଙ୍କ୍ତେ ପ୍ରକୃତିଜାନ୍ ଗୁଣାନ୍ ।
କାରଣଂ ଗୁଣସଙ୍ଗୋଽସ୍ୟ ସଦସଦ୍‌ଯୋନିଜନ୍ମସୁ । ୨୧

ଏହି କର୍ତ୍ତୃତ୍ୱ ସ୍ୱାଭାବିକ । ଅଗ୍ନିର ଉପରକୁ ଶିଖା ଉଠାଇବା, ବାୟୁର ତିର୍ଯ୍ୟଗ୍ ଗମନ କରିବା ଏବଂ ସନ୍ତାନଦର୍ଶନରେ ମାତାର ସ୍ତନରୁ ସ୍ତନ୍ୟ ଦୁଗ୍ଧ କ୍ଷରଣ ହେବା ପ୍ରଭୃତି ଯେପରି ଜଡ଼ ବସ୍ତୁରେ ସ୍ୱାଭାବିକ କ୍ରିୟାଶୀଳତା ଦୃଷ୍ଟ ହୁଏ, ପୁରୁଷ ସମୀପରେ ରହିବାରୁ ପ୍ରକୃତିର ସେହିପରି ସ୍ୱାଭାବିକ କ୍ରିୟା ଦେଖାଯାଏ ।

ପୁରୁଷ ଅକର୍ତ୍ତା, ଅକର୍ତ୍ତା ହେଲେହେଁ ମୁଁ ସୁଖୀ, ମୁଁ ଦୁଃଖୀ ଏହିପରି ଅଭିମାନ କରିବାରୁ ସୁଖ ଦୁଃଖର ଭୋକ୍ତା ବୋଲି ବିବେଚିତ ହୁଅନ୍ତି ।

୨୧ । ଅନ୍ୱୟ ଦୀପିକା—ହି (ଯେଉଁ ହେତୁରୁ) ପୁରୁଷଃ ପ୍ରକୃତିସ୍ଥଃ (ପ୍ରକୃତିରେ ଅବସ୍ଥିତ ହୋଇ) ପ୍ରକୃତିଜାନ୍ (ପ୍ରକୃତିରୁ ଜାତ) ଗୁଣାନ୍ (ସୁଖ ଦୁଃଖାଦି ଗୁଣ ସମୂହ) ଭୁଙ୍କ୍ତେ (ଉପଭୋଗ କରନ୍ତି) ଅସ୍ୟ (ଏହି ପୁରୁଷଙ୍କର) ଗୁଣସଙ୍ଗଃ (ଗୁଣମାନଙ୍କ ସହିତ ସମ୍ପର୍କ) ସଦସଦ୍‌ଯୋନିଜନ୍ମସୁ (ସତ୍ ଅସତ୍ ଯୋନିରେ ଜନ୍ମ ଗ୍ରହଣ କରିବାର) କାରଣମ୍ (ହେତୁ) ।

ଅନୁବାଦ—ପୁରୁଷ ପ୍ରକୃତିରେ ଅଧିଷ୍ଠିତ ହୋଇ ପ୍ରକୃତିର ଗୁଣ-ସମୂହ ଉପଭୋଗ କରନ୍ତି ଏବଂ ଏହି ଗୁଣ ସମୂହର ସଂସର୍ଗହିଁ ପୁରୁଷଙ୍କର ସତ୍ ଓ ଅସତ୍ ଯୋନିରେ ଜନ୍ମ ଗ୍ରହଣର କାରଣ ହୁଏ ।

ସୁବୋଧିନୀ ଟୀକା—ତଥାପ୍ୟବିକାରିଣୋ ଜନ୍ମରହିତସ୍ୟ ଚ ଭୋକ୍ତୃତ୍ୱଂ କଥମିତି ? ଅତ ଆହ ପୁରୁଷ ଇତି, ହି ଯସ୍ମାତ୍ ପ୍ରକୃତିସ୍ଥସ୍ତତ୍କାର୍ଯ୍ୟେ ଦେହେ ତାଦାତ୍ମ୍ୟେନ ସ୍ଥିତଃ ପୁରୁଷଃ, ଅତସ୍ତଜ୍ଜନିତାନ୍ ସୁଖଦୁଃଖାଦୀନ୍ ଭୁଙ୍କ୍ତେ, ଅସ୍ୟ ଚ ପୁରୁଷସ୍ୟ ସତୀଷୁ ଦେବଯୋନିଷ୍ୱସତୀଷୁ ତିର୍ଯ୍ୟଗାଦିଯୋନିଷୁ ଯାନି ଜନ୍ମାନି ତେଷୁ ଗୁଣସଙ୍ଗୋ ଗୁଣୈଃ ଶୁଭାଶୁଭକର୍ମକାରିଭିରିନ୍ଦ୍ରିୟୈଃ ସଙ୍ଗଃ କାରଣମିତ୍ୟର୍ଥଃ ।

ବିବୃତି—ପୁରୁଷ ଅବିକାରୀ, ଜନ୍ମରହିତ, ତାଙ୍କର ସୁଖ ଦୁଃଖର ଭୋକ୍ତୃତ୍ୱ କାହିଁକି ଘଟେ ? ପୁରୁଷ ପ୍ରକୃତି ସଂସର୍ଗରେ ଆସିବାରୁ ପ୍ରକୃତିର ସତ୍ତ୍ୱ ରଜ ଓ ତମୋଗୁଣର ଧର୍ମ ସୁଖ ଦୁଃଖ ମୋହାଦିରେ ଆବଦ୍ଧ ହୋଇ ପଡ଼ନ୍ତି ଏବଂ ଏହି ହେତୁରୁ ଅଭିମାନ ବଶତଃ କର୍ମପାଶରେ ଆବଦ୍ଧ ହୁଅନ୍ତି । କର୍ମର ଫଳ ଭୋଗପାଇଁ ସତ୍ତ୍ୱଗୁଣ ଆଧିକ୍ୟରେ ଦେବଯୋନିରେ, ରଜୋଗୁଣର ଆଧିକ୍ୟରେ ମନୁଷ୍ୟ ଯୋନିରେ ଏବଂ ତମୋଗୁଣର ଆଧିକ୍ୟରେ ପଶ୍ୱାଦିଯୋନିରେ ତାଙ୍କର ଜନ୍ମ ହୁଏ । ପ୍ରକୃତିର ସଂସର୍ଗରୁ ମୁକ୍ତ ନ ହେବାଯାଏ ତାଙ୍କୁ ଜନ୍ମ ବନ୍ଧନରେ ପଡ଼ିବାକୁ ହୁଏ । ତେଣୁ ନିଃସଙ୍ଗ ହୋଇ କର୍ମ କଲେ ଆଉ କର୍ମ ବନ୍ଧନ ହୁଏ ନାହିଁ ।

ଉପଦ୍ରଷ୍ଟାନୁମନ୍ତା ଚ ଭର୍ତ୍ତା ଭୋକ୍ତା ମହେଶ୍ୱରଃ ।
ପରମାତ୍ମେତି ଚାପ୍ୟୁକ୍ତୋ ଦେହେଽସ୍ମିନ୍ ପୁରୁଷଃ ପରଃ ।୨୨।

୨୨ । ଅନ୍ୱୟଦୀପିକା—ଅସ୍ମିନ୍ ଦେହେ ( ଏହି ଦେହରେ ) ପରଃ ପୁରୁଷଃ ( ପରମ ପୁରୁଷ ) ଉପଦ୍ରଷ୍ଟା ( ସାକ୍ଷି ସ୍ୱରୂପ ) ଅନୁମନ୍ତା ( ଅନୁମୋଦନକାରୀ ) ଭର୍ତ୍ତା ( ପୋଷଣକାରୀ ବା ପାଳକ ) ଭୋକ୍ତା ( ଭୋଗକାରୀ ) ମହେଶ୍ୱରଃ ( ମହେଶ୍ୱର ) ପରମାତ୍ମା ଚ ଇତି ( ପରମାତ୍ମା ବୋଲି କଥିତ ହୁଅନ୍ତି ) ।

ଅନୁବାଦ—ଏ ଦେହରେ ପ୍ରକୃତିର ଗୁଣ ସମୂହର ନିକଟବର୍ତ୍ତୀ ଦର୍ଶକ, ଅନୁମୋଦନକାରୀ ଓ ପ୍ରକୃତିର ଗୁଣ ସମୂହର ପରିବର୍ଦ୍ଧକ ଏବଂ ଉପଭୋକ୍ତାଙ୍କୁହିଁ ପରମପୁରୁଷ, ମହେଶ୍ୱର ଓ ପରମାତ୍ମା ବୋଲାଯାଏ ।

ସୁବୋଧିନୀ ଟୀକା—ତଦନେନ ପ୍ରକାରେଣ ପ୍ରକୃତ୍ୟଭେଦେନୈବ ପୁରୁଷସ୍ୟ ସଂସାରଃ । ନତୁ ସ୍ୱରୂପତଃ ଇତ୍ୟାଶୟେନ ତସ୍ୟ ସ୍ୱରୂପମାହ—ଉପଦ୍ରଷ୍ଟେତି । ଅସ୍ମିନ୍ ପ୍ରକୃତିକାର୍ଯ୍ୟେ ଦେହେ ବର୍ତ୍ତମାନୋଽପି ପୁରୁଷଃ ପରେଣ ଏବ । ନ ତଦ୍‌ଗୁଣୈ ର୍ୟୁଜ୍ୟତ ଇତ୍ୟର୍ଥ । ତତ୍ର ହେତବଃ—ଯସ୍ମାଦୁପଦ୍ରଷ୍ଟା ପୃଥଗ୍‌ଭୂତ ଏବ ସମୀପେ ସ୍ଥିତ୍ୱା ଦ୍ରଷ୍ଟା ସାକ୍ଷୀତ୍ୟର୍ଥଃ । ତଥା ଅନୁମନ୍ତା ଅନୁମୋଦଯିତୈବ ସନ୍ନିଧିମାତ୍ରେଣାନୁଗ୍ରାହକଃ । ସାକ୍ଷୀ ଚେତା କେବଲୋ ନିର୍ଗୁଣଶ୍ଚ ଇତ୍ୟାଦିଶ୍ରୁତେଃ । ତଥା—ଐଶ୍ୱରେଣ ରୂପେଣ ଭର୍ତ୍ତା ବିଧାରକ ଇତି ଭୋକ୍ତା । ଭୋକ୍ତା ପାଳକ ଇତି ଚ । ମହାଂଶ୍ଚାସାବୀଶ୍ୱରଶ୍ଚ ସ ବ୍ରହ୍ମାଦୀନାମପି ପତିଶ୍ଚ ପରମାତ୍ମା ଅନ୍ତର୍ଯ୍ୟାମୀତି ଚୋକ୍ତଃ ଶ୍ରୁତ୍ୟା । ତଥାଚ ଶ୍ରୁତିଃ—ଏଷ ସର୍ବେଶ୍ୱର ଏଷଭୂତାଧିପତିରେଷ ଲୋକପାଳଃ ଇତ୍ୟାଦିଃ ।

ବକ୍ତବ୍ୟ—ଦେହରେ ଅବସ୍ଥାନ କାଳରେ ପ୍ରକୃତି ସଙ୍ଗେ ଆତ୍ମାର ସମ୍ବନ୍ଧ ଥିଲେହେଁ ସେ ସ୍ୱରୂପତଃ ସ୍ୱତନ୍ତ୍ର ଓ ନିର୍ଲିପ୍ତ—ଏହାହିଁ ଏ ଶ୍ଳୋକର ବିଷୟ ବସ୍ତୁ । ପ୍ରକୃତି ସମୀପରେ ରହି ଆତ୍ମା ଇନ୍ଦ୍ରିୟମାନଙ୍କର କାର୍ଯ୍ୟ ଦର୍ଶନ କରନ୍ତି ତେଣୁ ସେ ଉପଦ୍ରଷ୍ଟା । ନିକଟରେ ଥିବାରୁ ପ୍ରକୃତିର କାର୍ଯ୍ୟକୁ ଅନୁମୋଦନ କରନ୍ତି ତେଣୁ ସେ ଅନୁମନ୍ତା । ଆତ୍ମାଙ୍କ ସତ୍ତା ବିନା ଦେହ ବା ଇନ୍ଦ୍ରିୟାଦିଙ୍କର ପୁଷ୍ଟି ବା ସ୍ଫୂର୍ତ୍ତି ହୋଇ ପାରେ ନାହିଁ, ତେଣୁ ତାଙ୍କୁ ଭର୍ତ୍ତା ବୋଲାଯାଏ । ସେ ସ୍ୱରୂପତଃ ନିର୍ବିକାର ହୋଇ ସୁଦ୍ଧା ବୁଦ୍ଧି ପ୍ରଭୃତିରେ ପ୍ରତିବିମ୍ବିତ ବିଷୟ ସମୂହକୁ ଅନୁଭବ କରନ୍ତି ବୋଲି ତାଙ୍କୁ ଭୋକ୍ତା ବୋଲାଯାଏ । ବ୍ରହ୍ମା ପ୍ରଭୃତିଙ୍କର ପିତା ବୋଲି ସେ ପରମାତ୍ମା । ସାଂଖ୍ୟଦର୍ଶନରେ ଯାହା ସ୍ୱତନ୍ତ୍ର ପୁରୁଷ ନାମରେ ଅଭିହିତ, ଏଠାରେ ତାହାଙ୍କୁ ପରମାତ୍ମା ବା ମହେଶ୍ୱର କୁହାଗଲା । ଏହି ଭାବରେ ସାଂଖ୍ୟ ଓ ବେଦାନ୍ତ ଦର୍ଶନର ସମନ୍ୱୟ ହୋଇଅଛି ।

ଯ ଏବଂ ବେତ୍ତି ପୁରୁଷଂ ପ୍ରକୃତିଂ ଚ ଗୁଣୈଃସହ ।
ସର୍ବଥା ବର୍ତ୍ତମାନୋଽପି ନ ସ ଭୂୟୋଽଭିଜାୟତେ । ୨୩ ।
ଧ୍ୟାନେନାତ୍ମନି ପଶ୍ୟନ୍ତି କେଚିଦାତ୍ମାନମାତ୍ମନା ।
ଅନ୍ୟେ ସାଂଖ୍ୟେନ ଯୋଗେନ କର୍ମଯୋଗେନ ଚାପରେ ।୨୪।

୨୩ । **ଅନ୍ୱୟ ଦୀପିକା**—ଯଃ ( ଯେ ) ଏବଂ ( ଏହିପରି ) ପୁରୁଷଂ ( ପୁରୁଷଙ୍କୁ ) ଗୁଣୈଃ ସହ ପ୍ରକୃତିଂ ଚ ( ଏବଂ ଗୁଣ ସହିତ ପ୍ରକୃତିଙ୍କୁ ) ବେତ୍ତି (ଜାଣନ୍ତି), ସଃ ସର୍ବଥା ବର୍ତ୍ତମାନଃ ଅପି ( ସେ ଯେ କୌଣସି ଅବସ୍ଥାରେ ରହିଥିଲେ ସୁଦ୍ଧା ) ନ ଅଭିଜାୟତେ ( ଜନ୍ମ ଲାଭ କରନ୍ତି ନାହିଁ ) ।

**ଅନୁବାଦ**—ଯେ ଏହି ଭାବରେ କ୍ଷେତ୍ରଜ୍ଞ ପୁରୁଷଙ୍କୁ ଏବଂ ତ୍ରିଗୁଣ ଗୁଣସହିତ ପ୍ରକୃତିଙ୍କୁ ଜାଣନ୍ତି, ସେ ଯେ କୌଣସି ଅବସ୍ଥାରେ ଥିଲେ ସୁଦ୍ଧା ପୁନର୍ଜନ୍ମ ଲାଭ କରନ୍ତି ନାହିଁ ଅର୍ଥାତ୍ ମୁକ୍ତିର ଅଧିକାରୀ ହୁଅନ୍ତି ।

**ସୁବୋଧିନୀ ଟୀକା**—ଏବଂ ପ୍ରକୃତିପୁରୁଷବିବେକଜ୍ଞାନଂ ସ୍ତୌତି । ଯ ଏବମିତି—ଏବମୁପଦ୍ରଷ୍ଟୃତ୍ୱାଦିରୂପେଣ ପୁରୁଷଂ ଯୋ ବେତ୍ତି ପ୍ରକୃତିଂ ଚ ଗୁଣୈଃସହ ସୁଖଦୁଃଖାଦିପରିଣାମୈଃ ସହିତାଂ ଯୋବେତ୍ତି ସ ପୁରୁଷଃ ସର୍ବଥା ବିଧିମତିଲଂଘ୍ୟ ବର୍ତ୍ତମାନୋଽପି ପୁନର୍ନାଭିଜାୟତେ ମୁଚ୍ୟତେ ଏବ ଇତ୍ୟର୍ଥଃ ।

**ବକ୍ତବ୍ୟ**—ପ୍ରକୃତି ପୁରୁଷ ବିଷୟକ ବିବେକ ଜ୍ଞାନ ବା କ୍ଷେତ୍ର କ୍ଷେତ୍ରଜ୍ଞ ଜ୍ଞାନ—ପ୍ରକୃତରେ ଈଶ୍ୱର ଓ ମାୟା ସମ୍ବନ୍ଧୀୟ ଜ୍ଞାନ । ଯାହାଙ୍କର ଏହି ଜ୍ଞାନ ହୋଇଥାଏ ତାଙ୍କ ପକ୍ଷରେ ବିଧି ନିଷେଧ କିଛି ନ ଥାଏ, କାରଣ ପ୍ରକୃତି ବା ମାୟାର ତତ୍ତ୍ୱ ବୁଝି ପାରିଲେ ଜୀବ ମାୟା ମୁକ୍ତ ହୋଇଯାଏ । ମାୟା ଶୂନ୍ୟ ବା ତ୍ରିଗୁଣାତୀତ ପୁରୁଷହିଁ ପରମାତ୍ମାଙ୍କର ଦର୍ଶନ ଲାଭ କରନ୍ତି, ଏହି ଦର୍ଶନ କିପରି ହୁଏ ପରବର୍ତ୍ତୀ ଦୁଇ ଶ୍ଳୋକରେ ତାହା କୁହାଯିବ ।

୨୪ । **ଅନ୍ୱୟ ଦୀପିକା**—କେଚିତ୍ ( କେହି କେହି ) ଧ୍ୟାନେନ ( ଧ୍ୟାନ ଦ୍ୱାରା ) ଆତ୍ମନି ( ଶରୀରରେ ) ଆତ୍ମନା ( ମନଦ୍ୱାରା ) ଆତ୍ମାନଂ ( ଆତ୍ମାଙ୍କୁ ) ପଶ୍ୟନ୍ତି ( ଦେଖନ୍ତି ); ଅନ୍ୟେ ( ଅନ୍ୟ କେହି କେହି ) ସାଂଖ୍ୟେନ ଯୋଗେନ ( ସାଂଖ୍ୟ ଯୋଗଦ୍ୱାରା ), ଅପରେ ଚ ( ଅନ୍ୟମାନେ ) କର୍ମଯୋଗେନ ( କର୍ମଯୋଗ ଦ୍ୱାରା ) [ ଆତ୍ମଦର୍ଶନ କରନ୍ତି ] ।

**ଅନୁବାଦ**—କେହି କେହି ମନରେ ଧ୍ୟାନ ଦ୍ୱାରା ଆତ୍ମାଙ୍କୁ ଶରୀରମଧ୍ୟରେ ଦେଖନ୍ତି, କେହି ସାଂଖ୍ୟଯୋଗଦ୍ୱାରା, କେହିବା କର୍ମଯୋଗଦ୍ୱାରା ଆତ୍ମଦର୍ଶନ କରନ୍ତି ।

ଅନ୍ୟେ ତ୍ୱେବମଜାନନ୍ତଃ ଶ୍ରୁତ୍ୱାନ୍ୟେଭ୍ୟ ଉପାସତେ ।
ତେଽପି ଚାତିତରନ୍ତ୍ୟେବ ମୃତ୍ୟୁଂ ଶ୍ରୁତିପରାୟଣାଃ । ୨୫ ।

ସୁବୋଧିନୀ ଟୀକା—ଏବମୁତବବକ୍ତ୍ରାପୃଜ୍ଞାନସାଧନବିକଳ୍ପାନ୍ ଆହ, ଧ୍ୟାନେନେତି ଦ୍ୱାଭ୍ୟାମ୍, ଧ୍ୟାନେନାତ୍ମାକାରପ୍ରତ୍ୟୟବୃତ୍ତ୍ୟା ଆତ୍ମନି ଦେହ ଏବ ଆତ୍ମନା ମନସା ଏବମାତ୍ମାନଂ କେଚିତ୍ ପଶ୍ୟନ୍ତି, ଅନ୍ୟେ ତୁ ସାଂଖ୍ୟେନ ପ୍ରକୃତିପୁରୁଷବୈଲକ୍ଷଣ୍ୟାଲୋଚନେନ ଯୋଗେନାଷ୍ଟାଙ୍ଗେନ, ଅପରେ ଚ କର୍ମଯୋଗେନ ପଶ୍ୟନ୍ତୀତି ସର୍ବତ୍ରାନୁଷଙ୍ଗଃ । ଏତେଷାଂ ଚ ଧ୍ୟାନାଦୀନାଂ ଯଥା-ଯୋଗଂ କ୍ରମସମୁଚ୍ଚୟେ ସତ୍ୟପି ତତ୍ତନ୍ନିଷ୍ଠାଭେଦାଭିପ୍ରାୟେଣ ବିକଳ୍ପୋକ୍ତିଃ ।

ବକ୍ତବ୍ୟ—ସଂସ୍କୃତରେ ଆତ୍ମନ୍ ଶବ୍ଦ—ଜୀବାତ୍ମା, ଦେହ, ମନ, ପରମାତ୍ମା ଓ ସ୍ୱଭାବ ଅର୍ଥରେ ପ୍ରଯୁକ୍ତ ହୋଇଥାଏ । ଏ ଶ୍ଳୋକରେ ସେ ଶବ୍ଦ ତିନିଥର ପ୍ରଯୁକ୍ତ ହୋଇଅଛି । ଶ୍ରୀଧରସ୍ୱାମୀଙ୍କ ଟୀକା ଅନୁସାରେ ଅନୁବାଦରେ 'ମନଦ୍ୱାରା ଧ୍ୟାନ ଯୋଗରେ ଦେହ ମଧ୍ୟରେ ଆତ୍ମାଙ୍କୁ ଦେଖନ୍ତି'—ଏହିପରି କରାଯାଇଅଛି, କେତେମାନ୍ୟ ଟୀକାକାର କହନ୍ତି 'ଆପେ ଆପଣାଠାରେ ଧ୍ୟାନଦ୍ୱାରା ଆତ୍ମାଙ୍କୁ ଦେଖନ୍ତି' । ଯାହାହେଉ, ଉଭୟ ସ୍ଥଳରେ ବିଶେଷ କିଛି ଅର୍ଥଗତ ପ୍ରଭେଦ ହୁଏ ନାହିଁ । ମନ ନିର୍ବିଷୟ ହେଲେ ତାହା ଆତ୍ମାକାରାକାରିତ ହୋଇଯାଏ—ଏହାହିଁ ସ୍ୱାମୀଙ୍କ ଉଦ୍ଦେଶ୍ୟ ।

ସାଂଖ୍ୟଯୋଗଦ୍ୱାରା ଏଠାରେ ସର୍ବ କର୍ମ ସନ୍ନ୍ୟାସ ବା ଜ୍ଞାନମାର୍ଗକୁ ଲକ୍ଷ୍ୟ କରାଯାଇ ଅଛି । ପ୍ରକୃତିପୁରୁଷ ପ୍ରଭେଦ ଜ୍ଞାନଦ୍ୱାରା କ୍ଷେତ୍ର ଓ କ୍ଷେତ୍ରଜ୍ଞଙ୍କୁ ଜାଣିପାରିବା ହିଁ ସାଂଖ୍ୟଯୋଗ ।

କର୍ମଯୋଗଦ୍ୱାରା ଆତ୍ମଦର୍ଶନ ଲାଭ କରିବା ଗୀତାର ପ୍ରତିପାଦ୍ୟ ହେଲେହେଁ, ଧ୍ୟାନ ଏବଂ କର୍ମ ସନ୍ନ୍ୟାସ ଦ୍ୱାରା ଯେ ଆତ୍ମଦର୍ଶନ ହୁଏ ତାହା ମଧ୍ୟ ଏଠାରେ କୁହା ଗଲା ।

୨୫ । ଅନ୍ୱୟ ଦୀପିକା—ଅନ୍ୟେ ତୁ ଏବ ( କିନ୍ତୁ ଅନ୍ୟମାନେ ) ଏବମ୍ ଅଜାନନ୍ତଃ ( ଏହିସବୁ ଆତ୍ମଦର୍ଶନ ଉପାୟ ନ ଜାଣି ) ଅନ୍ୟେଭ୍ୟଃ ଶ୍ରୁତ୍ୱା ( ଅନ୍ୟମାନଙ୍କ ଠାରୁ ଶୁଣି ) ଉପାସତେ ( ଉପାସନା କରନ୍ତି ), ତେ ଅପି ( ସେମାନେ ମଧ୍ୟ ) ଶ୍ରୁତିପରାୟଣାଃ ( ଉପଦେଶ ଶ୍ରବଣରେ ଶ୍ରଦ୍ଧାଯୁକ୍ତ ହୋଇ ) ମୃତ୍ୟୁମ୍ ଅତିତରନ୍ତି ଏବ ( ମୃତ୍ୟୁକୁ ଅତିକ୍ରମ କରନ୍ତି ) ।

ଅନୁବାଦ—ଅନ୍ୟ କେହି ଆତ୍ମଦର୍ଶନର ଏହିସବୁ ଉପାୟ ନ ଜାଣି ଅନ୍ୟ ନିକଟରୁ ଶୁଣି ଉପାସନା କରନ୍ତି । ଶ୍ରଦ୍ଧାସହ ଉପଦେଶ ଶୁଣି ଉପାସନା କରିବାରୁ ସେମାନେ ମଧ୍ୟ ମୃତ୍ୟୁକୁ ଅତିକ୍ରମ କରନ୍ତି ।

ସୁବୋଧିନୀ ଟୀକା—ଅତିମନ୍ଦାଧିକାରିଣାଂ ନିସ୍ତାରୋପାୟମାହ, ଅନ୍ୟେତ୍ୱିତି, ଅନ୍ୟେ ତୁ ସାଂଖ୍ୟଯୋଗାଦିମାର୍ଗେଣୈବମ୍ଭୂପଦ୍ରଷ୍ଟୃତ୍ୱାଦିଲକ୍ଷଣ-

ଯାବତ୍ ସଞ୍ଜାୟତେ କିଞ୍ଚିତ୍ ସତ୍ତ୍ୱଂ ସ୍ଥାବରଜଙ୍ଗମମ୍ ।
କ୍ଷେତ୍ରକ୍ଷେତ୍ରଜ୍ଞସଂଯୋଗାତ୍ ତଦ୍‌ବିଦ୍ଧି ଭରତର୍ଷଭ ॥ ୨୬ ॥
ସମଂ ସର୍ବେଷୁ ଭୂତେଷୁ ତିଷ୍ଠନ୍ତଂ ପରମେଶ୍ୱରମ୍ ।
ବିନଶ୍ୟତ୍ସ୍ୱବିନଶ୍ୟନ୍ତଂ ଯଃ ପଶ୍ୟତି ସ ପଶ୍ୟତି ॥ ୨୭ ॥

ମାତ୍ମାନଂ ସାକ୍ଷାତ୍ କର୍ତ୍ତୁମଜାନନ୍ତୋଽନ୍ୟେଭ୍ୟ ଆଚାର୍ଯ୍ୟେଭ୍ୟ ଉପଦେଶତଃ ଶ୍ରୁତ୍ୱା ଉପାସତେ ଧ୍ୟାୟନ୍ତି । ତେଽପି ଚ ଶ୍ରଦ୍ଧୟା ଉପଦେଶଶ୍ରବଣପରାୟଣାଃ ସନ୍ତୋ ମୃତ୍ୟୁଂ ସଂସାରଂ ଶନୈରତିତରନ୍ତ୍ୟେବ ।

ବକ୍ତବ୍ୟ—ପୂର୍ବୋକ୍ତ ଦୁଇଶ୍ଳୋକରେ ପାତଞ୍ଜଳ ଯୋଗ ଅନୁସାରେ ଧ୍ୟାନ, ସାଂଖ୍ୟମାର୍ଗ ଅନୁସାରେ ଜ୍ଞାନ ପରବର୍ତ୍ତୀ କର୍ମସନ୍ନ୍ୟାସ, କର୍ମଯୋଗ ଅନୁସାରେ ନିଷ୍କାମ ଭାବରେ ପରମେଶ୍ୱରାର୍ପଣବୁଦ୍ଧିରେ କର୍ମ କରିବା ଏବଂ ଜ୍ଞାନ ଅଭାବରେ ଶ୍ରଦ୍ଧାଦ୍ୱାରା ଅପ୍ତ ବଚନରେ ବିଶ୍ୱାସ କରି ଭକ୍ତିଦ୍ୱାରା ପରମେଶ୍ୱରଙ୍କୁ ପାଇବା—ଅମୃତ୍ୱଦର୍ଶନର ଏହି ଭିନ୍ନଗୋଟି ବିଭିନ୍ନ ମାର୍ଗ ପ୍ରଦର୍ଶିତ ହୋଇଅଛି । ଯେ କୌଣସି ମାର୍ଗରେ ଗତି କଲେ ଶେଷରେ ଈଶ୍ୱରପ୍ରାପ୍ତି ବା ମୋକ୍ଷଲାଭ ହେବ—ଏହାହିଁ ଗୀତାର ଉଦ୍ଦେଶ୍ୟ ।

୨୬ । ଅନ୍ୱୟ ଦୀପିକା—[ହେ ] ଭରତର୍ଷଭ, ଯାବତ୍ କିଞ୍ଚିତ୍ ( ଯାହାକିଛି ) ସ୍ଥାବର ଜଙ୍ଗମଂ ( ଅଚଳ ଓ ଚଳ ) ସତ୍ତ୍ୱଂ ( ପଦାର୍ଥ ବା ପ୍ରାଣୀ ) ସଞ୍ଜାୟତେ (ଉତ୍ପନ୍ନ ହୁଏ ), ତତ୍ (ତାହା) କ୍ଷେତ୍ରକ୍ଷେତ୍ରଜ୍ଞସଂଯୋଗାତ୍ ( କ୍ଷେତ୍ର ଓ କ୍ଷେତ୍ରଜ୍ଞସଂଯୋଗରୁ ହୁଏ ) [ ଏହା ] ବିଦ୍ଧି ( ଜାଣ ) ।

ଅନୁବାଦ—ହେ ଭରତର୍ଷଭ, ସ୍ଥାବର ଜଙ୍ଗମ ଯେତେ ପଦାର୍ଥ ବା ପ୍ରାଣୀଙ୍କର ଉତ୍ପତ୍ତି ହୁଏ, ତାହା ସବୁ କ୍ଷେତ୍ର ଓ କ୍ଷେତ୍ରଜ୍ଞସଂଯୋଗରୁ ହୋଇଥାଏ, ଏହା ଜାଣିବ ।

ସୁବୋଧିନୀ ଟୀକା—ତତ୍ର କର୍ମଯୋଗସ୍ୟ ତୃତୀୟଚତୁର୍ଥପଞ୍ଚମେଷୁ ପ୍ରପଞ୍ଚିତତ୍ୱାତ୍, ଧ୍ୟାନଯୋଗସ୍ୟ ଚ ଷଷ୍ଠାଷ୍ଟମୟୋଃ ପ୍ରପଞ୍ଚିତତ୍ୱାତ୍ ଧ୍ୟାନାଦୀନ୍ ସାଂଖ୍ୟବିବକ୍ଷାସ୍ୱବିଷୟତ୍ୱାତ୍ ସାଂଖ୍ୟମେବ ପ୍ରପଞ୍ଚୟନ୍ନାହ, ଯାବଦତ ଯାବଦଧ୍ୟାୟସମାପ୍ତି । ଯାବତ୍ କିଞ୍ଚିତ୍ ବସ୍ତୁମାତ୍ରଂ ସମୁତ୍ପଦ୍ୟତେ ତତ୍ସର୍ବଂ କ୍ଷେତ୍ରକ୍ଷେତ୍ରଜ୍ଞୟୋ ର୍ଯୋଗାଦବିବେକକୃତାତ୍ତାଦାତ୍ମ୍ୟାଧ୍ୟାସାଦ୍ ଭବତୀତି ଜାନୀହି ।

୨୭ । ଅନ୍ୱୟ ଦୀପିକା—ସର୍ବେଷୁ ଭୂତେଷୁ ( ସର୍ବଭୂତରେ ) ସମଂ ତିଷ୍ଠନ୍ତଂ (ନିର୍ବିଶେଷରୂପରେ ବା ସମ ଭାବରେ ଅବସ୍ଥିତ), [ସମସ୍ତ ପଦାର୍ଥ] ବିନଶ୍ୟତ୍ସୁ ( ବିନଷ୍ଟ ହେଲେ ମଧ୍ୟ ) ଅବିନଶ୍ୟନ୍ତଂ ( ଅବିନାଶୀ ) ପରମେଶ୍ୱରଂ ( ପରମେଶ୍ୱରଙ୍କୁ ) ଯଃ ( ଯେ ) ପଶ୍ୟତି ( ଦର୍ଶନ କରନ୍ତି ) ସଃ ( ସେ ) [ ଯଥାର୍ଥ ] ପଶ୍ୟତି ( ଦର୍ଶନ କରନ୍ତି ) ।

ସମଂ ପଶ୍ୟନ୍ ହି ସର୍ବତ୍ର ସମବସ୍ଥିତମୀଶ୍ୱରମ୍ ।
ନ ହିନସ୍ତ୍ୟାତ୍ମନାତ୍ମାନଂ ତତୋ ଯାତି ପରାଂ ଗତିମ୍ ।୨୮।

ଅନୁବାଦ—ଯେ ସର୍ବଭୂତରେ ସମାନଭାବରେ ବିଦ୍ୟମାନ ଅଛନ୍ତି ଏବଂ ସମସ୍ତ ବିନଷ୍ଟ ହେଲେହେଁ ଯେ ବିନଷ୍ଟ ହୁଅନ୍ତି ନାହିଁ, ସେହି ପରମେଶ୍ୱରଙ୍କୁ ଯେ ସମ୍ୟକ୍ ଭାବରେ ଦର୍ଶନ କରିଅଛନ୍ତି, ସେ ଏକା ଯଥାର୍ଥଦର୍ଶୀ ।

ସୁବୋଧିନୀ ଟୀକା—ଅବିବେକକୃତଂ ସଂସାରୋଦ୍ଭବମୁକ୍ତ୍ୱା ତନ୍ନିବୃତ୍ତୟେ ବିବିକ୍ତାତ୍ମବିଷୟଂ ସମ୍ୟଗ୍‌ଦର୍ଶନମାହ—ସମମିତି । ସ୍ଥାବରଜଙ୍ଗମାତ୍ମକେଷୁ ଭୂତେଷୁ ନିର୍ବିଶେଷଂ ସଦ୍‌ରୂପେଣ ସମଂ ଯଥା ଭବତ୍ୟେବଂ ତିଷ୍ଠନ୍ତଂ ପରମାତ୍ମାନଂ ଯଃ ପଶ୍ୟତି—ଅତଏବ ତେଷୁ ବିନଶ୍ୟତ୍ସ୍ୱପ୍ୟବିନଶ୍ୟନ୍ତଂ ଯଃ ପଶ୍ୟତି—ସ ଏବ ସମ୍ୟକ୍ ପଶ୍ୟତି । ନାନ୍ୟ ଇତ୍ୟର୍ଥଃ ।

ବିବୃତି—ସମସ୍ତ ପଦାର୍ଥ ନଶ୍ୱର, ଏକମାତ୍ର ପରମେଶ୍ୱର ହିଁ ଅବିନଶ୍ୱର, ସେ ଆତ୍ମାରୂପରେ ସବୁ ପଦାର୍ଥରେ ରହିଅଛନ୍ତି, ସମସ୍ତର ବିନାଶରେ ମଧ୍ୟ ଯାହାଙ୍କର ବିନାଶ ହୁଏ ନାହିଁ—ଏହା ଯେ ଦେଖି ପାରନ୍ତି, ସେ ଏକା ସମ୍ୟଗ୍‌ଦର୍ଶୀ ।

୨୮ । ଅନ୍ୱୟ ଦୀପିକା—ହି ( ଯେହେତୁ ) [ ଜ୍ଞାନୀଲୋକ ] ସର୍ବତ୍ର ସମଂ ( ସର୍ବଭୂତରେ ସମାନ ) ସମବସ୍ଥିତଂ ( ଏକଭାବରେ ଅବସ୍ଥିତ ) ଈଶ୍ୱରଂ ( ଆତ୍ମାଙ୍କୁ ) ପଶ୍ୟନ୍ ( ଦେଖି ) ଆତ୍ମନା (ଆତ୍ମବୁଦ୍ଧିଦ୍ୱାରା) ଆତ୍ମାନଂ ( ଆତ୍ମାଙ୍କୁ ) ନ ହିନସ୍ତି ( ହିଂସା କରନ୍ତି ନାହିଁ ), ତତଃ ( ସେହି ହେତୁରୁ ) ପରାଂ ଗତିଂ ( ପରମଗତି ) ଯାତି ( ପ୍ରାପ୍ତ ହୁଅନ୍ତି ) ।

ଅନୁବାଦ—ଜ୍ଞାନୀ ଲୋକମାନେ ସର୍ବଭୂତରେ ସମାନ ଓ ସମଭାବରେ ଅବସ୍ଥିତ ଈଶ୍ୱରଙ୍କୁ ଦର୍ଶନ କରନ୍ତି, ତେଣୁ ସେ ଆତ୍ମାକୁ ଆତ୍ମାଦ୍ୱାରା ହନନ କରନ୍ତି ନାହିଁ, ସେହି ହେତୁରୁ ପରମଗତି ପ୍ରାପ୍ତହୁଅନ୍ତି ।

ସୁବୋଧିନୀ ଟୀକା—କୁତ ଇତି ? ଅତ ଆହ—ସମମିତି । ସର୍ବତ୍ର ଭୂତମାତ୍ରେ ସମଂ ସମ୍ୟଗପ୍ରଚ୍ୟୁତସ୍ୱରୂପେଣାବସ୍ଥିତଂ ପରମାତ୍ମାନଂ ପଶ୍ୟନ୍—ହି ଯସ୍ମାଦାତ୍ମନା ସ୍ୱେନୈବାତ୍ମାନଂ ନ ହିନସ୍ତି—ଅବିଦ୍ୟୟା ସଚ୍ଚିଦାନନ୍ଦରୂପମାତ୍ମାନଂ ତିରସ୍କୃତ୍ୟ ନ ବିନାଶୟତି—ତତଶ୍ଚ ପରାଂ ଗତିଂ ମୋକ୍ଷଂ ପ୍ରାପ୍ନୋତି, ଯସ୍ତ୍ୱେବଂ ନ ପଶ୍ୟତି ସ ହି ଦେହାତ୍ମଦର୍ଶୀ ଦେହେନ ସହାତ୍ମାନଂ ହିନସ୍ତି । ତଥାଚ ଶ୍ରୁତିଃ—ଅସୁର୍ଯ୍ୟା ନାମ ତେ ଲୋକା ଅନ୍ଧେନ ତମସାବୃତାଃ । ତାଂସ୍ତେ ପ୍ରେତ୍ୟାଭିଗଚ୍ଛନ୍ତି ଯେ କେ ଚାତ୍ମହନୋ ଜନାଃ । ଇତି ।

ବିବୃତି—ଜ୍ଞାନୀମାନେ ଜାଣନ୍ତି ଯେ ପରମାତ୍ମା ସବୁଠାରେ ସମାନ ଭାବରେ ଅଛନ୍ତି; ସମସ୍ତ ଜଗତ୍ ନଷ୍ଟ ହେଲେ ସୁଦ୍ଧା ତାଙ୍କର ବିନାଶ ହୁଏ ନାହିଁ,

ପ୍ରକୃତ୍ୟୈବ ଚ କର୍ମାଣି କ୍ରିୟମାଣାନି ସର୍ବଶଃ ।
ଯଃ ପଶ୍ୟତି ତଥାତ୍ମାନମକର୍ତ୍ତାରଂ ସ ପଶ୍ୟତି । ୨୯ ।
ଯଦା ଭୂତପୃଥଗ୍‌ଭାବମେକସ୍ଥମନୁପଶ୍ୟତି ।
ତତ ଏବ ଚ ବିସ୍ତାରଂ ବ୍ରହ୍ମ ସଂପଦ୍ୟତେ ତଦା । ୩୦ ।

କିନ୍ତୁ ଅଜ୍ଞାନ ଲୋକମାନେ ଶରୀରକୁ ଅତ୍ମା ବୋଲି ଜାଣୁଥିବାରୁ ଶରୀର ବିନାଶରେ ଅତ୍ମାର ବିନାଶ ହୁଏ ବୋଲି ମନେ କରନ୍ତି । ତେଣୁ ସେମାନେ ଅତ୍ମଘାତୀ, ଜ୍ଞାନୀମାନେ ଅତ୍ମାର ଅବିନାଶିତା ଜାଣିଥିବାରୁ ଅତ୍ମଘାତୀ ହୁଅନ୍ତି ନାହିଁ । ଯେଉଁମାନେ ଅତ୍ମଘାତୀ ସେମାନଙ୍କର ମୋକ୍ଷପ୍ରାପ୍ତି ହୁଏ ନାହିଁ । ଶ୍ରୁତିରେ ପ୍ରମାଣ ଅଛି—

ଅସୂର୍ଯ୍ୟାନାମ ତେ ଲୋକା ଅନ୍ଧେନ ତମସା ବୃତାଃ,
ତାଂସ୍ତେ ପ୍ରେତ୍ୟାଭିଗଚ୍ଛନ୍ତି ଯେ କେ ଚାତ୍ମହନୋ ଜନାଃ ।

ଅର୍ଥାତ୍ ଅତ୍ମାଘାତୀ ଲୋକମାନେ ଗାଢ଼ଅନ୍ଧକାରାବୃତ ନରକକୁ ଗମନ କରନ୍ତି । କେହି କେହି କହନ୍ତି, "ଅତ୍ମନା ଅତ୍ମାନଂ ନ ହିନସ୍ତି" ଏହାର ଅର୍ଥ—ସର୍ବତ୍ର ଏକ ଅତ୍ମା ଅବସ୍ଥିତ ଏହା ଜାଣି ଜ୍ଞାନୀମାନେ କୌଣସି ଜୀବ ପ୍ରତି ହିଂସା କରନ୍ତି ନାହିଁ ।

୨୯ । ଅନ୍ୱୟ ଦୀପିକା—ଯଃ ତୁ ( ଯେ ), କର୍ମାଣି ( ସମସ୍ତ କାର୍ଯ୍ୟ ) ପ୍ରକୃତ୍ୟା ଏବ ( ପ୍ରକୃତିଦ୍ୱାରାହିଁ ) ସର୍ବଶଃ ( ସବୁ ଭାବରେ ) କ୍ରିୟମାଣାନି ( କରାହେବା ), ତଥା (ଏବଂ) ଅତ୍ମାନଂ ( ଅତ୍ମାଙ୍କୁ ) ଅକର୍ତ୍ତାରଂ ( ଅକର୍ତ୍ତା ) ପଶ୍ୟତି ( ଦେଖନ୍ତି ), ସଃ ପଶ୍ୟତି ( ସେ ଯଥାର୍ଥଦର୍ଶୀ ) ।

ଅନୁବାଦ—ପ୍ରକୃତିହିଁ ସବୁ ପ୍ରକାରେ ସମସ୍ତ କର୍ମ କରନ୍ତି, ଏବଂ ଅତ୍ମା ଅକର୍ତ୍ତା—ଏହା ଯେ ଦର୍ଶନ କରନ୍ତି, ସେ ଯଥାର୍ଥଦର୍ଶୀ ।

ସୁବୋଧିନୀ ଟୀକା—ନନୁ ଶୁଭାଶୁଭକର୍ମକର୍ତ୍ତୃତ୍ୱେନ ବୈଷମ୍ୟେ ଦୃଶ୍ୟମାନେ କଥମାତ୍ମନଃ ସମତ୍ୱମିତ୍ୟାଶଙ୍କ୍ୟାହ—ପ୍ରକୃତ୍ୟୈବେତି । ପ୍ରକୃତ୍ୟୈବ ଦେହେନ୍ଦ୍ରିୟାକାରେଣ ପରିଣତୟା । ସର୍ବଶଃ ସର୍ବୈଃ ପ୍ରକାରୈଃ । କ୍ରିୟମାଣାନି କର୍ମାଣି ଯଃ ପଶ୍ୟତି । ତଥାତ୍ମାନଂ ଚାକର୍ତ୍ତାରଂ ଦେହାଭିମାନେନୈବାତ୍ମନଃ କର୍ତ୍ତୃତ୍ୱଂ ନ ସ୍ୱତଃ—ଇତ୍ୟେବଂ ଯଃ ପଶ୍ୟତି ସ ଏବ ସମ୍ୟକ୍ ପଶ୍ୟତି । ନାନ୍ୟ ଇତ୍ୟର୍ଥଃ ।

୩୦ । ଅନ୍ୱୟ ଦୀପିକା—ଯଦା ( ଯେତେବେଳେ ) [ ସାଧକ ] ଭୂତପୃଥଗ୍‌ଭାବଂ ( ଭୂତସମୂହର ନାନାତ୍ୱ ) ଏକସ୍ଥଂ ( ଏକ ପ୍ରକୃତିରେ ଅବସ୍ଥିତ ), ତତଃ ଏବ ଚ ( ଏବଂ ସେହି ପ୍ରକୃତିଠାରୁହିଁ ) ବିସ୍ତାରମ୍ ( ବିସ୍ତାର ) ଅନୁପଶ୍ୟତି ( ଦେଖନ୍ତି ), ତଦା ( ସେତେବେଳେ ) ବ୍ରହ୍ମ ସମ୍ପଦ୍ୟତେ ( ବ୍ରହ୍ମସ୍ୱରୂପ ହୁଅନ୍ତି ) ।

ଅନାଦିତ୍ୱାନ୍ନିର୍ଗୁଣତ୍ୱାତ୍ ପରମାତ୍ମାୟମବ୍ୟୟଃ ।
ଶରୀରସ୍ଥୋଽପି କୌନ୍ତେୟ ନ କରୋତି ନ ଲିପ୍ୟତେ । ୩୧ ।

ଅନୁବାଦ—ଯେତେବେଳେ ସାଧକ ଭୂତସମୂହର ପୃଥକ୍ ପୃଥକ୍ ଭାବ ଅର୍ଥାତ୍ ନାନାତ୍ୱ ଏକ ଈଶ୍ୱରଶକ୍ତିରୂପ ପ୍ରକୃତିରେହିଁ ଅବସ୍ଥିତ ଦେଖନ୍ତି ଏବଂ ସେହି ପ୍ରକୃତିରୁ ଏହି ନାନାତ୍ୱର ବିସ୍ତାର ଜାଣି ପାରନ୍ତି, ସେତେବେଳେ ସେ ବ୍ରହ୍ମଭାବ ପ୍ରାପ୍ତ ହୁଅନ୍ତି ।

ସୁବୋଧିନୀ ଟୀକା—ଇଦାନୀଂ ଭୂତାନାମପି ପ୍ରକୃତିତାଦାତ୍ମ୍ୟାତ୍ ତତ୍ତ୍ୱେନାଭେଦାତ୍ ଭୂତଭେଦକୃତମପ୍ୟାତ୍ମନୋ ଭେଦମପଶ୍ୟନ୍ ବ୍ରହ୍ମତ୍ୱମୁପୈତୀତ୍ୟାହ-ଯଦେତି । ଯଦା ଭୂତାନାଂ ସ୍ଥାବରଜଙ୍ଗମାନାଂ ପୃଥଗ୍‌ଭାବଂ ଭେଦଂ ପୃଥକ୍‌ତ୍ୱମେକସ୍ଥମେକସ୍ୟାମେବେଶ୍ୱରଶକ୍ତିରୂପାୟାଂ ପ୍ରକୃତୌ ପ୍ରଳୟେ ସ୍ଥିତମନୁପଶ୍ୟତି ଆଲୋଚୟତି, ଅତଏବ ତସ୍ୟା ଏବ ପ୍ରକୃତେଃ ସକାଶାତ୍ ଭୂତାନାଂ ବିସ୍ତାରଂ ସୃଷ୍ଟିସମୟେଽନୁପଶ୍ୟତି ତଦା ପ୍ରକୃତିତାଦାତ୍ମ୍ୟାତ୍ତ୍ୱେନ ଭୂତାନାମପ୍ୟଭେଦଂ ପଶ୍ୟନ୍ ପରିପୂର୍ଣ୍ଣଂ ବ୍ରହ୍ମ ସମ୍ପଦ୍ୟତେ । ବ୍ରହ୍ମୈବ ଭବତୀତ୍ୟର୍ଥଃ ।

ବକ୍ତବ୍ୟ—ଏକଜଡ଼ର ନାନାପ୍ରକାର ଅବସ୍ଥା ହେଲେ ସୁଦ୍ଧା, ତାହା ଏକସ୍ଥ ଅର୍ଥାତ୍ ଏକ ପରମେଶ୍ୱରଙ୍କ ଶକ୍ତିରୂପ ପ୍ରକୃତିରେ ଅବସ୍ଥିତ; ପୁଣି ସମସ୍ତ ଜଗତ୍ ସୃଷ୍ଟିସମୟରେ ସେହି ପ୍ରକୃତିରୁ ହିଁ ବିସ୍ତାରଲାଭ କରେ, ଏହା ଯେତେବେଳେ ଏହା ଜାଣିପାରନ୍ତି ସେତେବେଳେ ସେ ବ୍ରହ୍ମତ୍ୱ ଲାଭ କରନ୍ତି । ଶ୍ରୀଧରସ୍ୱାମୀଙ୍କ ମତ ଅନୁସାରେ ଏ ବ୍ୟାଖ୍ୟା ପ୍ରଦତ୍ତ ହେଲା, ମାତ୍ର ଶଙ୍କରାଚାର୍ଯ୍ୟ ଏ ଶ୍ଳୋକର ଭାଷ୍ୟରେ କହନ୍ତି ଯେତେବେଳେ ସାଧକ ଜଗତର ନାନାତ୍ୱ ଏକ ପରମେଶ୍ୱରଙ୍କଠାରେ ଅବସ୍ଥିତ ଦେଖନ୍ତି ଏବଂ ସୃଷ୍ଟିସମୟରେ ତାହାଙ୍କଠାରୁହିଁ ଏହାର ବିସ୍ତାର ଜାଣିପାରନ୍ତି, ସେତେବେଳେ ସେ ବ୍ରହ୍ମତ୍ୱଲାଭ କରନ୍ତି ।

୩୧ । ଅନ୍ୱୟ ଦୀପିକା—[ ହେ ] କୌନ୍ତେୟ, ଅନାଦିତ୍ୱାତ୍ ନିର୍ଗୁଣତ୍ୱାତ୍ ( ଅନାଦି ଓ ନିର୍ଗୁଣ ସ୍ୱରୂପ ହୋଇ ) ଅୟମ୍ ଅବ୍ୟୟଃ ପରମାତ୍ମା ( ଏହି ଅବିକାରୀ ପରମାତ୍ମା ) ଶରୀରସ୍ଥଃ ଅପି ( ଶରୀର ମଧ୍ୟରେ ଥିଲେହେଁ ) ନ କରୋତି ( କିଛି କରନ୍ତି ନାହିଁ ), ନ ଲିପ୍ୟତେ ( କାହିଁରେ ବି ଲିପ୍ତ ହୁଅନ୍ତି ନାହିଁ ।

ଅନୁବାଦ—ହେ କୌନ୍ତେୟ, ଅନାଦି ଓ ନିର୍ଗୁଣ ହୋଇ ପରମାତ୍ମା ବିକାରଶୂନ୍ୟ । ସେ ଶରୀରରେ ଥିଲେ ସୁଦ୍ଧା କିଛି କରନ୍ତି ନାହିଁ ଓ କର୍ମଫଳରେ ଲିପ୍ତ ହୁଅନ୍ତି ନାହିଁ ।

ଯଥା ସର୍ବଗତଂ ସୌକ୍ଷ୍ମ୍ୟାଦାକାଶଂ ନୋପଲିପ୍ୟତେ ।
ସର୍ବତ୍ରାବସ୍ଥିତୋ ଦେହେ ତଥାତ୍ମା ନୋପଲିପ୍ୟତେ । ୩୨ ।

ସୁବୋଧିନୀ ଟୀକା—ତଥାପି ପରମେଶ୍ୱରସ୍ୟ ଜୀବାବସ୍ଥାୟାଂ ଦେହସମ୍ବନ୍ଧନିମିତ୍ତୈଃ କର୍ମଭିସ୍ତତ୍‌ଫଳୈଶ୍ଚ ସୁଖଦୁଃଖାଦିଭିର୍ବୈଷମ୍ୟଂ ଦୁଷ୍ପରିହରମିତି । କୁତଃ ସମଦର୍ଶନଂ ? ତତ୍ରାହ—ଅନାଦିତ୍ୱାଦିତି, ଯଦୁତ୍ପତ୍ତିମତ୍ ତଦେବାହି ବ୍ୟେତି । ଯଚ୍ଚ ଗୁଣବଦ୍ ବସ୍ତୁ ତସ୍ୟଗୁଣନାଶେ ବ୍ୟୟୋ ଭବତି । ଅୟଂତୁ ପରମାତ୍ମା ଅନାଦି ର୍ନିର୍ଗୁଣଶ୍ଚ । ଅତୋଽବ୍ୟୟୋଽବିକାରୀତ୍ୟର୍ଥଃ । ତସ୍ମାଚ୍ଛରୀରେ ସ୍ଥିତୋଽପି ନ କିଞ୍ଚିତ୍ କରୋତି । ନଚ କର୍ମଫଳୈର୍ଲିପ୍ୟତେ ।

ବିବୃତି—ଆତ୍ମାଙ୍କର ଆଦି ବା ଉତ୍ପତ୍ତି ନାହିଁ, ତେଣୁ ସେ ଅନାଦି, ନିର୍ଗୁଣାତୀତ ହୋଇଥିବାରୁ ସେ ପ୍ରାକୃତିକ ନିୟମର ମଧ୍ୟ ଅଧୀନ ନୁହନ୍ତି । ଜନ୍ମ ମରଣାଦି ବିକାର ନ ଥିବାରୁ ସେ ଅବ୍ୟୟ । ଜଳ ମଧ୍ୟରେ ସୂର୍ଯ୍ୟଙ୍କ ପ୍ରତିବିମ୍ବ ଯେପରି, ଶରୀରରେ ଆତ୍ମାଙ୍କର ଅଧିଷ୍ଠାନ ସେହିପରି, ଜଳ ଚଞ୍ଚଳ ହେଲେ ସୂର୍ଯ୍ୟ ଯେପରି ଚଞ୍ଚଳ ହୁଅନ୍ତି ନାହିଁ, ଜଳ ଶୁଖିଗଲେ ସୂର୍ଯ୍ୟ ଯେପରି ନଷ୍ଟ ହୁଅନ୍ତି ନାହିଁ, ସେପରି ଶରୀରର ଧର୍ମ ସଙ୍ଗେ ଆତ୍ମାଙ୍କର କୌଣସି ସମ୍ବନ୍ଧ ନାହିଁ ।

୩୨ । ଅନ୍ୱୟ ଦୀପିକା—ଯଥା ( ଯେପରି ) ସର୍ବଗତଂ ( ସର୍ବତ୍ର ଅବସ୍ଥିତ ) ଆକାଶଂ ( ଆକାଶ ) ସୌକ୍ଷ୍ମ୍ୟାତ୍ ( ସୂକ୍ଷ୍ମତ୍ୱ ହେତୁରୁ ) ନ ଉପଲିପ୍ୟତେ ( କାହିଁରେ ଲିପ୍ତ ହୁଏ ନାହିଁ ), ତଥା ( ସେହିପରି ) ସର୍ବତ୍ର ଦେହେ ( ସବୁ ପ୍ରକାର ଶରୀରରେ ) ଅବସ୍ଥିତଃ ଆତ୍ମା ( ଅବସ୍ଥିତ ଆତ୍ମା ) ନ ଉପଲିପ୍ୟତେ ( ଲିପ୍ତ ହୁଅନ୍ତି ନାହିଁ ) ।

ଅନୁବାଦ—ଯେପରି ଆକାଶ ସବୁସ୍ଥାନରେ ଥିଲେ ମଧ୍ୟ ଅତି ସୂକ୍ଷ୍ମତା ହେତୁରୁ କୌଣସି ବସ୍ତୁରେ ଲିପ୍ତହୁଏ ନାହିଁ, ସେହିପରି ଆତ୍ମା ସବୁ ଦେହରେ ଅବସ୍ଥିତ ଥିଲେହେଁ କାହିଁରେ ଲିପ୍ତ ହୁଅନ୍ତି ନାହିଁ ।

ସୁବୋଧିନୀ ଟୀକା—ଅତ୍ରହେତୁଂ ସଦୃଷ୍ଟାନ୍ତ ମାହ ଯଥେତି, ସର୍ବଗତଂ ପଙ୍କାଦିଷ୍ୱପି ସ୍ଥିତମାକାଶଂ ସୌକ୍ଷ୍ମ୍ୟାଦସଙ୍ଗିତ୍ୱାତ୍ ପଙ୍କାଦିଭିର୍ନ ଉପଲିପ୍ୟତେ ତଥା ସର୍ବତ୍ରୋତ୍ତମେ ମଧ୍ୟମେଽଧମେ ବା ଦେହେଽବସ୍ଥିତୋଽପ୍ୟାତ୍ମା ନୋପଲିପ୍ୟତେ । ଦୈହିକୈର୍ଗୁଣ ଦୋଷୈର୍ନଯୁଜ୍ୟତ ଇତ୍ୟର୍ଥଃ ।

ବିବୃତି—ଯେପରି ଆକାଶ ସର୍ବତ୍ର ଥିଲେ ମଧ୍ୟ ଅତି ସୂକ୍ଷ୍ମହେତୁରୁ ସୁଗନ୍ଧ, ଦୁର୍ଗନ୍ଧ ପଙ୍କ ପ୍ରଭୃତିର ଗୁଣଦୋଷରେ ଲିପ୍ତ ହୁଏ ନାହିଁ, ସେହିପରି ଆତ୍ମା ଦେବତା, ମନୁଷ୍ୟ, ପଶୁପକ୍ଷୀ ଆଦି ଦେହରେ ଥିଲେହେଁ ଦୈହିକ ଗୁଣ-ଦୋଷରେ ଲିପ୍ତ ହୁଅନ୍ତି ନାହିଁ ।

ଯଥା ପ୍ରକାଶୟତ୍ୟେକଃ କୃତ୍ସ୍ନଲୋକମିମଂ ରବିଃ ।
କ୍ଷେତ୍ରଂ କ୍ଷେତ୍ରୀ ତଥା କୃତ୍ସ୍ନଂ ପ୍ରକାଶୟତି ଭାରତ । ୩୩ ।
କ୍ଷେତ୍ରକ୍ଷେତ୍ରଜ୍ଞୟୋ ରେବ ମନ୍ତରଂ ଜ୍ଞାନଚକ୍ଷୁଷା,
ଭୂତପ୍ରକୃତିମୋକ୍ଷଂ ଚ ଯେ ବିଦୁର୍ଯାନ୍ତି ତେ ପରମ୍ । ୩୪ ।

ଇତି ଶ୍ରୀ ମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ କ୍ଷେତ୍ର କ୍ଷେତ୍ରଜ୍ଞ ବିଭାଗ-ଯୋଗୋ ନାମ ତ୍ରୟୋଦଶୋଽଧ୍ୟାୟଃ ।

---

୩୩ । ଅନ୍ୱୟ ଦୀପିକା—[ ହେ ] ଭାରତ ! ଯଥା ( ଯେପରି ) ଏକଃ ରବିଃ ( ଏକସୂର୍ଯ୍ୟ ) ଇମଂ ( ଏହି ) କୃତ୍ସ୍ନଂ ( ସମଗ୍ର ) ଲୋକଂ ( ଜଗତକୁ ) ପ୍ରକାଶୟତି ( ପ୍ରକାଶ କରନ୍ତି ), ତଥା ( ସେହିପରି ) କ୍ଷେତ୍ରୀ ( ଆତ୍ମା ) କୃତ୍ସ୍ନଂ କ୍ଷେତ୍ରଂ ( ସମସ୍ତ କ୍ଷେତ୍ର ବା ଦେହକୁ ) ପ୍ରକାଶୟତି ( ପ୍ରକାଶିତ କରନ୍ତି ) ।

ଅନୁବାଦ—ଯେପରି ଏକ ସୂର୍ଯ୍ୟ ସମସ୍ତ ଜଗତକୁ ପ୍ରକାଶ କରନ୍ତି, ସେହିପରି ଏକ କ୍ଷେତ୍ରଜ୍ଞ ( ଆତ୍ମା ) ସମସ୍ତ କ୍ଷେତ୍ର ବା ଦେହକୁ ପ୍ରକାଶ କରନ୍ତି ।

ସୁବୋଧିନୀଟୀକା—ଅସଙ୍ଗତ୍ୱାଲ୍ଲେପୋ ନାସ୍ତୀତ୍ୟାକାଶ ଦୃଷ୍ଟାନ୍ତେନ ଦର୍ଶିତମ୍ । ପ୍ରକାଶକତ୍ୱାଚ୍ଚ ପ୍ରକାଶଧର୍ମୈ ର୍ନଯୁଜ୍ୟତ ଇତି ରବିଦୃଷ୍ଟାନ୍ତେନାହ ଯଥା ପ୍ରକାଶୟତୀତି । ସ୍ପଷ୍ଟୋଽର୍ଥଃ ।

୩୪ । ଅନ୍ୱୟ ଦୀପିକା—ଯେ ( ଯେଉଁମାନେ ) ଏବଂ ( ଏହିପ୍ରକାରେ ) କ୍ଷେତ୍ରକ୍ଷେତ୍ରଜ୍ଞୟୋଃ ଅନ୍ତରଂ ( କ୍ଷେତ୍ର ଓ କ୍ଷେତ୍ରଜ୍ଞର ପ୍ରଭେଦ ) ଭୂତପ୍ରକୃତିମୋକ୍ଷଂ ଚ ( ଭୂତମାନଙ୍କର ପ୍ରକୃତିରୁ ମୋକ୍ଷର ଉପାୟ ) ଜ୍ଞାନଚକ୍ଷୁଷା ( ଜ୍ଞାନରୂପ ଚକ୍ଷୁଦ୍ୱାରା ) ବିଦୁଃ ( ଜାଣି ପାରନ୍ତି ) ତେ ( ସେମାନେ ) ପରଂ ଯାନ୍ତି ( ପରମ ପଦ ପ୍ରାପ୍ତ ହୁଅନ୍ତି ) ।

ଅନୁବାଦ—ଯେଉଁମାନେ ଜ୍ଞାନଚକ୍ଷୁଦ୍ୱାରା କ୍ଷେତ୍ର ଓ କ୍ଷେତ୍ରଜ୍ଞର ପ୍ରଭେଦ ଏବଂ ଭୂତମାନଙ୍କର ପ୍ରକୃତିରୁ ମୋକ୍ଷର ଉପାୟ ଜାଣି ପାରନ୍ତି, ସେମାନେ ପରମପଦ ପ୍ରାପ୍ତ ହୁଅନ୍ତି ।

ସୁବୋଧିନୀଟୀକା—ଅଧ୍ୟାୟାର୍ଥ ମୁପସଂହରତି—କ୍ଷେତ୍ର କ୍ଷେତ୍ରଜ୍ଞୟୋ-ରିତି, ଏବମୁକ୍ତପ୍ରକାରେଣ କ୍ଷେତ୍ରକ୍ଷେତ୍ରଜ୍ଞୟୋରନ୍ତରଂ ଭେଦଂ ବିବେକଜ୍ଞାନ-

ଲକ୍ଷଣେନ ଚକ୍ଷୁଷା ଯେ ବିଦୁଃ, ତଥା ଯେଽମୂର୍ତ୍ତା ଭୂତାନାଂ ପ୍ରକୃତି. ସ୍ତସ୍ୟାଃ ସକାଶାନ୍ମୋକ୍ଷଂ ମୋକ୍ଷୋପାୟଂ ଧ୍ୟାନାଦିକଂ ଚ ଯେ ବିଦୁଃ, ତେ ପରଂ ପଦଂ ଯାନ୍ତି ।

ବିବିକ୍ତୌ ଯେନ ତତ୍ତ୍ୱେନ ମିଶ୍ରୌ ପ୍ରକୃତିପୁରୁଷୌ,
ତଂ ବନ୍ଦେ ପରମାନନ୍ଦଂ ନନ୍ଦନନ୍ଦନମୀଶ୍ୱରମ୍ ।

ବିବୃତି—'ଭୂତପ୍ରକୃତିମୋକ୍ଷଂ ଚ'—ଏହି ପଦର ବ୍ୟାଖ୍ୟାରେ ମତଭେଦ ଦେଖାଯାଏ । କେହି କେହି କହନ୍ତି ଏହାର ଅର୍ଥ 'ଭୂତମାନଙ୍କର ଯାହା ମୂଳ ପ୍ରକୃତି—ଯାହାକୁ ଅବିଦ୍ୟା ବୋଲାଯାଏ, ତହିଁରୁ ଭୂତମାନଙ୍କର ମୋକ୍ଷ, ଅନୁବାଦରେ ଏହି ଅର୍ଥହିଁ ପ୍ରଦତ୍ତ ହୋଇଅଛି । ଅନ୍ୟମାନେ କହନ୍ତି-'ପ୍ରକୃତିର ମୋକ୍ଷ'—ଏଠାରେ ଏହି ଅର୍ଥହିଁ ଅଭିପ୍ରେତ । ସାଂଖ୍ୟ ଦର୍ଶନ ମତରେ ଆତ୍ମା ବା ପୁରୁଷଙ୍କର ବନ୍ଧନ ନାହିଁ ବା ମୋକ୍ଷ ନାହିଁ; କିନ୍ତୁ ପ୍ରକୃତିର ଗୁଣ ସମୂହର ସଙ୍ଗ ବଶତଃ ଏ ଆପଣାଠାରେ କର୍ତ୍ତୃତ୍ୱାଦି ଆରୋପ କରନ୍ତି । ଯେତେବେଳେ ଏହି ଅଜ୍ଞାନ ଦୂର ହୋଇଯାଏ, ସେତେବେଳେ ଏହାଙ୍କ ସଙ୍ଗରେ ସଂଲଗ୍ନ ହୋଇଥିବା ପ୍ରକୃତି ଅଲଗା ହୋଇଯାଏ ଅର୍ଥାତ୍ ତାହାରହିଁ ମୋକ୍ଷ ହୋଇଥାଏ ।

## ତ୍ରୟୋଦଶ ଅଧ୍ୟାୟର ସାରସଂକଳନ

ଦ୍ୱାଦଶ ଅଧ୍ୟାୟରେ ଭଗବାନ୍ ବ୍ୟକ୍ତ ଓ ଅବ୍ୟକ୍ତ ଉପାସନା ସମ୍ବନ୍ଧରେ କହିଅଛନ୍ତି—ବ୍ୟକ୍ତ ଉପାସନା ଠାରୁ ଅବ୍ୟକ୍ତ ଉପାସନା କଷ୍ଟକର; କିନ୍ତୁ ଉଭୟ ଉପାସନାରେ ଭଗବତ୍ପ୍ରାପ୍ତି ହୁଏ । ଅବ୍ୟକ୍ତ ଉପାସନା କି ହେତୁରୁ କଷ୍ଟକର ଏହିକଥା ତ୍ରୟୋଦଶ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି ଅର୍ଥାତ୍ ପ୍ରକୃତି ଓ ପୁରୁଷ, ଦେହ ଓ ଆତ୍ମା, ଜ୍ଞାନ ଓ ଜ୍ଞେୟ ଇତ୍ୟାଦି ତତ୍ତ୍ୱ ଏ ଅଧ୍ୟାୟରେ ବିସ୍ତାରିତ ରୂପେ ବର୍ଣ୍ଣିତ ହୋଇଅଛି ।

ଏହି ଭୋଗାୟତନ ଶରୀରକୁ କ୍ଷେତ୍ର କୁହାଯାଏ; ପୁରୁଷ ବା ଆତ୍ମା—ଯେ ଏ ଦେହରେ ରହି 'ମୁଁ' ବା 'ମୋର'—ଏହି ଅଭିମାନ କରନ୍ତି ତାହାଙ୍କୁ କ୍ଷେତ୍ରଜ୍ଞ କହନ୍ତି । ଭଗବାନ୍ ସବୁ କ୍ଷେତ୍ରରେ କ୍ଷେତ୍ରଜ୍ଞ ବା ଆତ୍ମାରୂପରେ ବିରାଜିତ ଅଛନ୍ତି । ଶରୀର ବା କ୍ଷେତ୍ର ପ୍ରକୃତିର ପରିଣାମ, ପ୍ରକୃତି ଭଗବାନଙ୍କର ଗୋଟିଏ ବିଭାବ ଏବଂ ଆତ୍ମା ଅନ୍ୟ ବିଭାବ, ଏହି କ୍ଷେତ୍ର ଓ କ୍ଷେତ୍ରଜ୍ଞ ତତ୍ତ୍ୱ ଜାଣିବାକୁ ହେଲେ ଜ୍ଞାନର ପ୍ରୟୋଜନ, ଏହି ଜ୍ଞାନ ଲାଭ କରିବାକୁ ହେଲେ କେତେଗୁଡ଼ିଏ ସଦ୍ଗୁଣର ଅଭ୍ୟାସ ଆବଶ୍ୟକ । ଏହି ସଦ୍ଗୁଣମାନଙ୍କ ମଧ୍ୟରେ ଅମାନିତ୍ୱ, ଅଦମ୍ଭିତ୍ୱ, ଅହିଂସା କ୍ଷମା, ସରଳତା ପ୍ରଭୃତି ୨୦ଟି ଗୁଣର ଉଲ୍ଲେଖ ଅଛି । ଏହି ଗୁଣଗୁଡ଼ିକହିଁ ଜ୍ଞାନର ସାଧନ, ଏଗୁଡ଼ିକରେ ଅଭ୍ୟସ୍ତ ହେଲେ ଜ୍ଞାତବ୍ୟ ତତ୍ତ୍ୱ ଜାଣିବାରେ ଲୋକ ସମର୍ଥ ହୁଏ ।

ପରମାତ୍ମତତ୍ତ୍ୱହିଁ ଜ୍ଞେୟ ବା ଜ୍ଞାତବ୍ୟ ତତ୍ତ୍ୱ । ପରମାତ୍ମା ଅନାଦି, ସେ ସତ୍ ନୁହନ୍ତି ବା ଅସତ୍ ନୁହନ୍ତି ଅର୍ଥାତ୍ ସେ ବ୍ୟକ୍ତ ସୃଷ୍ଟି ଓ ଅବ୍ୟକ୍ତ ପ୍ରକୃତିରୁ ଅତୀତ । ସେ ସ୍ୱୟଂ ଇନ୍ଦ୍ରିୟବର୍ଜିତ ହେଲେହେଁ ସବୁ ପ୍ରାଣୀଙ୍କର ହସ୍ତ, ପଦ, ଚକ୍ଷୁ କର୍ଣ୍ଣାଦି ଇନ୍ଦ୍ରିୟ ବୃତ୍ତିର ଚାଳକ, ସେ ବିଶ୍ୱବ୍ୟାପୀ, ନିର୍ଗୁଣ ହେଲେହେଁ ସତ୍ତ୍ୱାଦି ଗୁଣର ପୋଷକ, ସମସ୍ତଙ୍କ ଅନ୍ତରରେ ଓ ବାହାରେ ବିଦ୍ୟମାନ, ଅବିଭକ୍ତ ହେଲେହେଁ ବିଭକ୍ତ ପରି ପ୍ରତୀତ ହୁଅନ୍ତି ।

ଏହି ଜ୍ଞେୟ ବସ୍ତୁହିଁ କ୍ଷେତ୍ରଜ୍ଞ ବା ଆତ୍ମା; ଗୀତାରେ ଯାହା କ୍ଷେତ୍ର ଓ କ୍ଷେତ୍ରଜ୍ଞ, ସାଂଖ୍ୟଦର୍ଶନରେ ତାହାକୁ ପ୍ରକୃତି ଓ ପୁରୁଷ କହନ୍ତି । ପ୍ରକୃତି ଓ ପୁରୁଷ ଉଭୟ ଅନାଦି; କ୍ଷେତ୍ର ବା ଦେହ ଏବଂ ଇନ୍ଦ୍ରିୟମାନେ ପ୍ରକୃତିରୁ ଉତ୍ପନ୍ନ ହୁଅନ୍ତି, ସୁଖଦୁଃଖାଦିଗୁଣସମୂହ ଏହି ପ୍ରକୃତିରହିଁ ବିକାର, ପ୍ରକୃତି ଶାରୀରିକ ସମସ୍ତ କ୍ରିୟା-ଶକ୍ତିର ମୂଳ, ପୁରୁଷ ଅକର୍ତ୍ତା ହେଲେହେଁ ପ୍ରକୃତିର ଗୁଣ ସମୂହରେ ଅଧିଷ୍ଠିତ ହୋଇ ସେ ସବୁ ଉପଭୋଗ କରନ୍ତି । ଏହି ସଂସର୍ଗରୁ ପୁରୁଷଙ୍କର ସଂସାରିତ୍ୱ ଏବଂ ବିଭିନ୍ନ ଯୋନିରେ ଜନ୍ମ ଗ୍ରହଣ; ସାଂଖ୍ୟ ମତରେ ପ୍ରକୃତି ପୁରୁଷହିଁ ମୂଳ ଅଧ୍ୟାତ୍ମ ତତ୍ତ୍ୱ ମାତ୍ର ଗୀତା ମତରେ ପରମାତ୍ମା ହିଁ ମୂଳ ଅଧ୍ୟାତ୍ମ ତତ୍ତ୍ୱ ।

ଏ ଅଧ୍ୟାୟରେ ଆତ୍ମଦର୍ଶନର ଚାରିଗୋଟି ଉପାୟ ବର୍ଣ୍ଣିତ ହୋଇଅଛି । ପ୍ରଥମେ କୁହା ଯାଇଅଛି, ପାତଞ୍ଜଳ ଯୋଗାଭ୍ୟାସଦ୍ୱାରା ଧ୍ୟାନବଳରେ ଆତ୍ମ-ଦର୍ଶନ ହୁଏ । ଦ୍ୱିତୀୟତଃ ଜ୍ଞାନଯୋଗ—ଜ୍ଞାନୀମାନେ ଆତ୍ମା ଓ ଅନାତ୍ମା ବିଚାର ଦ୍ୱାରା ଆତ୍ମଦର୍ଶନ ଲାଭ କରନ୍ତି । ତୃତୀୟତଃ କର୍ମଯୋଗ—କର୍ମଯୋଗୀମାନେ ନିଷ୍କାମକର୍ମର ଅନୁଷ୍ଠାନ ଦ୍ୱାରା ଆତ୍ମଜ୍ଞାନ ଲାଭକରି ସର୍ବତ୍ର ଭଗବଦ୍ଦର୍ଶନ କରନ୍ତି; ଯେଉଁମାନେ ଏସବୁ ଜାଣି ନପାରି ଅନ୍ୟମାନଙ୍କ ଠାରୁ ଆତ୍ମ ତତ୍ତ୍ୱ ଶୁଣି ଏକାନ୍ତ ବିଶ୍ୱାସରେ ଓ ଶ୍ରଦ୍ଧାସହକାରେ ଉପାସନା କରନ୍ତି ସେମାନେ ଭକ୍ତିବଳରେ ଈଶ୍ୱରଙ୍କୁ ପାଇ କୃତାର୍ଥ ହୁଅନ୍ତି, ଏହା ଚତୁର୍ଥ ଉପାୟ । ଜ୍ଞାନକର୍ମମିଶ୍ର ଭକ୍ତି ଗୀତାର ପ୍ରତିପାଦ୍ୟ ହେଲେହେଁ, ସବୁ କର୍ମରେ ହିଁ ଈଶ୍ୱର ପ୍ରାପ୍ତି ହୁଏ—ଏହି ଉଦାର ମତ ଗୀତାରେ ଭଗବାନ୍ ସ୍ପଷ୍ଟରୂପେ ଘୋଷଣା କରି ଅଛନ୍ତି ।

ଅଧ୍ୟାୟ ଶେଷରେ ସଂକ୍ଷେପରେ କୁହାଯାଇ ଅଛି ଯେ, ପ୍ରକୃତି ପୁରୁଷର ସଂଯୋଗରୁ ହିଁ ଏ ସୃଷ୍ଟିର ଉତ୍ପତ୍ତି । ପୁରୁଷ ଅକର୍ତ୍ତା ଓ ନିଃସଙ୍ଗ । ପ୍ରକୃତିଗୁଣ-ସହିତ ସମ୍ପୃକ୍ତ ହୋଇଥିବାରୁ ତାଙ୍କଠାରେ କର୍ତ୍ତୃତ୍ୱାଦି ଆରୋପିତ ହୁଏ । ସମଗ୍ର ବ୍ରହ୍ମାଣ୍ଡପ୍ରତି ଯେଉଁ ସତ୍ୟ ପ୍ରଯୋଜ୍ୟ—ଏହି ପିଣ୍ଡ ବା ଶରୀର ପ୍ରତି ସେହି ସତ୍ୟହିଁ ପ୍ରଯୋଜ୍ୟ । ଏଣୁ କୁହାଯାଏ ଯାହା ପିଣ୍ଡରେ, ତାହାହିଁ ବ୍ରହ୍ମାଣ୍ଡରେ ।

# ଚତୁର୍ଦ୍ଦଶୋଽଧ୍ୟାୟଃ

## ଗୁଣତ୍ରୟବିଭାଗଯୋଗଃ

ଶ୍ରୀ ଭଗବାନୁବାଚ

ପରଂ ଭୂୟଃ ପ୍ରବକ୍ଷ୍ୟାମି ଜ୍ଞାନାନାଂ ଜ୍ଞାନମୁତ୍ତମମ୍
ଯଜ୍ ଜ୍ଞାତ୍ୱା ମୁନୟଃ ସର୍ବେ ପରାଂ ସିଦ୍ଧି ମିତୋଗତାଃ । ୧ ।

୧ । ଅନ୍ୱୟ ଦୀପିକା—ଶ୍ରୀ ଭଗବାନ୍ ଉବାଚ ( ଶ୍ରୀ ଭଗବାନ୍ କହିଲେ ), ଜ୍ଞାନାନାଂ ( ଜ୍ଞାନମାନଙ୍କ ମଧ୍ୟରେ ) ପରମ୍ ( ଉତ୍କୃଷ୍ଟ ) ଉତ୍ତମଂ ଜ୍ଞାନଂ ( ଉତ୍ତମ ଜ୍ଞାନ ) ଭୂୟଃ ( ପୁନର୍ବାର ) ପ୍ରବକ୍ଷ୍ୟାମି (କହିବୁଁ ), ଯତ୍ ଜ୍ଞାତ୍ୱା ( ଯାହା ଜାଣି ) ସର୍ବେ ମୁନୟଃ ( ସମସ୍ତ ମୁନି ) ଇତଃ ( ଏହି ଲୋକରୁ ) ( ପରାଂ ସିଦ୍ଧିଂ ଗତାଃ ( ପରମ ସିଦ୍ଧି ଲାଭ କରିଅଛନ୍ତି ) ।

ଅନୁବାଦ—ଶ୍ରୀ ଭଗବାନ୍ କହିଲେ—ଜ୍ଞାନମାନଙ୍କ ମଧ୍ୟରେ ଉତ୍କୃଷ୍ଟ ସର୍ବୋତ୍ତମ ଜ୍ଞାନକଥା ତୁମ୍ଭଙ୍କୁ ପୁନର୍ବାର କହିବୁଁ । ଯାହାଂ ଜାଣି ମୁନିମାନେ ଇହ ଲୋକରୁ ବା ଦେହ ବନ୍ଧନରୁ ମୁକ୍ତ ହୋଇ ପରମ ସିଦ୍ଧି ବା ମୋକ୍ଷ ଲାଭ କରି ଅଛନ୍ତି ।

ସୁବୋଧିନୀ ଟୀକା—

ପୁଂ ପ୍ରକୃତ୍ୟୋଃ ସ୍ୱତନ୍ତ୍ରତ୍ୱଂ ବାରୟନ୍ ଗୁଣସଙ୍ଗତଃ ।
ପ୍ରାହ ସଂସାରବୈଚିତ୍ର୍ୟଂ ବିସ୍ତରେଣ ଚତୁର୍ଦ୍ଦଶେ ।

ଯାବତ୍ ସଞ୍ଜାୟତେ କିଞ୍ଚିତ୍ ସତ୍ତ୍ୱଂ ସ୍ଥାବରଜଙ୍ଗମଂ, କ୍ଷେତ୍ରକ୍ଷେତ୍ରଜ୍ଞ-ସଂଯୋଗାତ୍ ତଦ୍‌ବିଦ୍ଧି-ଇତ୍ୟୁକ୍ତଂ, ସଚ କ୍ଷେତ୍ରକ୍ଷେତ୍ରଜ୍ଞୟୋଃ ସଂଯୋଗୋ ନିରୀଶ୍ୱର-ସାଂଖ୍ୟାନାମିବ ନ ସ୍ୱାତନ୍ତ୍ର୍ୟେଣ କିନ୍ତ୍ୱୀଶ୍ୱରେଚ୍ଛୟୈବେତି କଥନପୂର୍ବକଂ କାରଣଂ ଗୁଣସଙ୍ଗୋଽସ୍ୟ ସଦସଦ୍‌ଯୋନିଜନ୍ମସ୍ୱିତ୍ୟନେନୋକ୍ତଂ ସତ୍ତ୍ୱାଦିଗୁଣ-କୃତଂ ସଂସାରବୈଚିତ୍ର୍ୟଂ ପ୍ରପଞ୍ଚୟିଷ୍ୟନ୍ନେବଂଭୂତଂ ବକ୍ଷ୍ୟମାଣମର୍ଥଂ ସ୍ତୌତି, ପରଂଭୂୟ ଇତି ଦ୍ୱାଭ୍ୟାମ୍, ପରଂ ପରମାତ୍ମନିଷ୍ଠଂ ଜ୍ଞାୟତେଽନେନେତି ଜ୍ଞାନ-ମୁପଦେଶଂ ଭୂୟୋଽପି ତୁଭ୍ୟଂ ପ୍ରକର୍ଷେଣ ବକ୍ଷ୍ୟାମି କଥମ୍ଭୂତଂ—ଜ୍ଞାନାନାଂ ତପଃକର୍ମାଦିବିଷୟାଣାଂ ମଧ୍ୟେ ଉତ୍ତମଂ ମୋକ୍ଷହେତୁତ୍ୱାତ୍, ତଦେବାହ ଯଜ୍‌ଜ୍ଞାତ୍ୱା ମୁନୟୋ ମନନଶୀଳା ସର୍ବେ ଇତୋ ଦେହବନ୍ଧନାତ୍ ପରାଂସିଦ୍ଧିଂ ମୋକ୍ଷଂ ଗତାଃ ପ୍ରାପ୍ତାଃ ।

ଇଦଂ ଜ୍ଞାନ ମୁପାଶ୍ରିତ୍ୟ ମମ ସାଧର୍ମ୍ମ୍ୟମାଗତାଃ ।
ସର୍ଗେଽପି ନୋପଜାୟନ୍ତେ ପ୍ରଳୟେ ନ ବ୍ୟଥନ୍ତି ଚ । ୨ ।

ବିବୃତି—ତ୍ରୟୋଦଶ ଅଧ୍ୟାୟରେ ବେଦାନ୍ତଦୃଷ୍ଟିରେ ଏବଂ ସାଂଖ୍ୟଦର୍ଶନଦୃଷ୍ଟିରେ କ୍ଷେତ୍ରକ୍ଷେତ୍ରଜ୍ଞ ବିଚାର କରା ଯାଇଅଛି । ତହିଁରେ ପ୍ରତିପାଦିତ ହୋଇଅଛି ଯେ, ସମସ୍ତ କର୍ତ୍ତୃତ୍ୱ ପ୍ରକୃତିର, ପୁରୁଷ ବା କ୍ଷେତ୍ରଜ୍ଞ ଉଦାସୀନ, ପ୍ରକୃତିର ଏହି କର୍ତ୍ତୃତ୍ୱ କିପରି ଚାଲୁଛି—ଏ ବିଚାର ଏପର୍ଯ୍ୟନ୍ତ ହୋଇନାହିଁ, ତେଣୁ ଏ ଅଧ୍ୟାୟରେ ପ୍ରକୃତିର ବିବିଧ ସୃଷ୍ଟି ବିଶେଷତଃ ସଜୀବସୃଷ୍ଟି କିପରି ହୁଏ—ବର୍ଣ୍ଣିତ ହେବ, କେବଳ ଯେବେ ମାନବସୃଷ୍ଟିର ବିଚାର ହୁଏ, ଏହା କ୍ଷେତ୍ର-ବିଚାରର ଅଙ୍ଗୀଭୂତ ହେବ; କିନ୍ତୁ ଯେତେବେଳେ ସ୍ଥାବର ସୃଷ୍ଟି ମଧ୍ୟ ତ୍ରିଗୁଣାତ୍ମକ ପ୍ରକୃତିର ବିସ୍ତାର, ସେତେବେଳେ ଏହା କ୍ଷରାକ୍ଷର ବିଚାରର ଅଂଶ ହୋଇ ପାରିବ । ତେଣୁ ଏହା କ୍ଷେତ୍ରକ୍ଷେତ୍ରଜ୍ଞ ବିଚାର ମଧ୍ୟରେ ନ ଧରି ସପ୍ତମ ଅଧ୍ୟାୟ ପରି ଜ୍ଞାନବିଜ୍ଞାନ ବୋଲି ଭଗବାନ୍ କହୁଅଛନ୍ତି ।

୨ । ଅନ୍ୱୟ ଦୀପିକା—ଇଦଂ ଜ୍ଞାନଂ ( ଏହି ଜ୍ଞାନକୁ ) ଉପାଶ୍ରିତ୍ୟ ( ଆଶ୍ରୟ କରି ) ମମ ସାଧର୍ମ୍ମ୍ୟମ୍ ( ଆମ୍ଭର ସ୍ୱରୂପତା ଅର୍ଥାତ୍ ତ୍ରିଗୁଣାତୀତ ଅବସ୍ଥା ) ଆଗତାଃ ( ପ୍ରାପ୍ତ ହୋଇ ) ସର୍ଗେ ଚ ଅପି ( ସୃଷ୍ଟି କାଳରେ ମଧ୍ୟ ) ନ ଉପଜାୟନ୍ତେ ( ଜନ୍ମ ଗ୍ରହଣ କରନ୍ତି ନାହିଁ ), ପ୍ରଳୟେ ଚ ନ ବ୍ୟଥନ୍ତି ( ଏବଂ ପ୍ରଳୟ କାଳରେ ମଧ୍ୟ ବ୍ୟଥିତ ହୁଅନ୍ତି ନାହିଁ ।

ଅନୁବାଦ—ଏହି ଜ୍ଞାନକୁ ଆଶ୍ରୟ କରି ଯେଉଁମାନେ ଆମ୍ଭର ସ୍ୱରୂପତା ଅର୍ଥାତ୍ ତ୍ରିଗୁଣାତୀତ ଅବସ୍ଥା ପ୍ରାପ୍ତ ହୁଅନ୍ତି, ସେମାନେ ସୃଷ୍ଟି କାଳରେ ମଧ୍ୟ ଜନ୍ମଗ୍ରହଣ କରନ୍ତି ନାହିଁ, ପ୍ରଳୟକାଳରେ ବି ବ୍ୟଥିତ ହୁଅନ୍ତି ନାହିଁ ଅର୍ଥାତ୍ ଜନ୍ମ ମରଣ ଅତିକ୍ରମ କରନ୍ତି ।

ସୁବୋଧିନୀ ଟୀକା—କିଞ୍ଚ—ଇଦମିତି । ଇଦଂ ବକ୍ଷ୍ୟମାଣଂ ଜ୍ଞାନମୁପାଶ୍ରିତ୍ୟେଦଂ ଜ୍ଞାନସାଧନମନୁଷ୍ଠାୟ ମମସାଧର୍ମ୍ମ୍ୟଂ ମଦ୍ରୂପତ୍ୱଂ ପ୍ରାପ୍ତାଃ ସନ୍ତଃ ସର୍ଗେଽପି ବ୍ରହ୍ମାଦିଷୂତ୍ପଦ୍ୟମାନେଷ୍ୱପି ନୋତ୍ପଦ୍ୟନ୍ତେ । ତଥା ପ୍ରଳୟେଽପି ନ ବ୍ୟଥନ୍ତି । ପ୍ରଳୟଦୁଃଖଂ ନାନୁ ଭବନ୍ତି । ପୁନର୍ନାବର୍ତ୍ତନ୍ତ ଇତ୍ୟର୍ଥଃ ।

ବିବୃତି—ପ୍ରକୃତି ସତ୍ତ୍ୱ, ରଜଃ ଓ ତମଃ ଏହି ତିନିଗୁଣ ଦ୍ୱାରା ସୃଷ୍ଟି ବିସ୍ତାର କରିଅଛି । ଯେଉଁମାନେ ଏହା ବୁଝି ପାରିବେ, ସେମାନେ ଏହି ତିନିଗୁଣକୁ ଅତିକ୍ରମ କରିଯିବେ । ଏହି ଗୁଣ ଅତିକ୍ରମ କଲେ ଈଶ୍ୱରଙ୍କ ସାଧର୍ମ୍ମ୍ୟ-ଲାଭ କରିଯାଏ । 'ଈଶ୍ୱର ତ୍ରିଗୁଣାତୀତ', ଯେଉଁମାନେ ସେ ଅବସ୍ଥାକୁ ଆସିବେ ଈଶ୍ୱରଙ୍କ ସ୍ୱରୂପ ପ୍ରାପ୍ତ ହୋଇ ଜନ୍ମ ମରଣରୁ ରକ୍ଷା ପାଇବେ ଅର୍ଥାତ୍ ମୋକ୍ଷର ଅଧିକାରୀ ହେବେ ।

ମମ ଯୋନିର୍ମହଦ୍ ବ୍ରହ୍ମ ତସ୍ମିନ୍ ଗର୍ଭଂ ଦଧାମ୍ୟହମ୍ ।
ସମ୍ଭବଃ ସର୍ବଭୂତାନାଂ ତତୋଭବତି ଭାରତ । ୩ ।

ସର୍ବଯୋନିଷୁ କୌନ୍ତେୟ ମୂର୍ତ୍ତୟଃ ସମ୍ଭବନ୍ତି ଯାଃ ।
ତାସାଂ ବ୍ରହ୍ମ ମହଦ୍‌ଯୋନି ରହଂ ବୀଜପ୍ରଦଃ ପିତା । ୪ ।

୩ । ଅନ୍ୱୟ ଦୀପିକା—[ହେ] ଭାରତ । ମହଦ୍ ବ୍ରହ୍ମ (ପ୍ରକୃତି) ମମଯୋନିଃ (ଗର୍ଭାଧାନ ସ୍ଥାନ); ତସ୍ମିନ୍ ( ତହିଁରେ ) ଅହଂ ( ଆମ୍ଭେ ) ଗର୍ଭଂ ( ସୃଷ୍ଟିର ବୀଜ ) ଦଧାମି ( ନିକ୍ଷେପ କରୁଁ ) । ତତଃ ( ତହିଁରୁ ) ସର୍ବଭୂତାନାଂ ( ସମସ୍ତ ଭୂତର ) ସମ୍ଭବଃ ( ଉତ୍ପତ୍ତି ) ଭବତି ( ହୁଏ ) ।

ଅନୁବାଦ—ହେ ଭାରତ ! ପ୍ରକୃତି ହିଁ ଆମ୍ଭର ଗର୍ଭାଧାନର ସ୍ଥାନ । ଆମ୍ଭେ ତହିଁରେ ସୃଷ୍ଟିର ବୀଜ ନିକ୍ଷେପ କରୁଁ, ତହିଁରୁ ସର୍ବଭୂତର ଉତ୍ପତ୍ତି ହୁଏ ।

ସୁବୋଧିନୀ ଟୀକା—ତଦେବ ପ୍ରଶଂସୟା ଶ୍ରୋତାରମଭିମୁଖୀକୃତ୍ୟ ପରମେଶ୍ୱରାଧୀନୟୋଃ ପ୍ରକୃତିପୁରୁଷୟୋଃ ସର୍ବଭୂତୋତ୍ପତ୍ତିଂ ପ୍ରତି ହେତୁତ୍ୱଂ ନ ତୁ ସ୍ୱତନ୍ତ୍ରୟୋରିତ୍ୟେବଂ ଜ୍ଞାନଂ ବିବକ୍ଷିତମର୍ଥଂ କଥୟତି ମମେତି । ଦେଶତଃ କାଲତଶ୍ଚାପରିଚ୍ଛିନ୍ନତ୍ୱାନ୍ମହତ୍ । ବୃଂହିତତ୍ୱାତ୍ ସ୍ୱକାର୍ଯ୍ୟାଣାଂ ବୃଦ୍ଧିହେତୁତ୍ୱାଦ୍ ବା ବ୍ରହ୍ମ ପ୍ରକୃତିରିତ୍ୟର୍ଥଃ, ତନ୍ମହଦ୍ ବ୍ରହ୍ମ ମମ ପରମେଶ୍ୱରସ୍ୟ ଯୋନିର୍ଗର୍ଭାଧାନସ୍ଥାନଂ । ତସ୍ମିନ୍ନହଂ ଗର୍ଭଂ ଜଗଦ୍ ବିସ୍ତାରହେତୁଂ ଚିଦାଭାସଂ ଦଧାମି ନିକ୍ଷିପାମି । ପ୍ରଳୟେ ମୟି ଲୀନଂ ସନ୍ତମବିଦ୍ୟାକାମକର୍ମାନୁଶୟବନ୍ତଂ କ୍ଷେତ୍ରଜ୍ଞଂ ସୃଷ୍ଟିସମୟେ ଭୋଗଯୋଗ୍ୟେନ କ୍ଷେତ୍ରେଣ ସଂଯୋଜୟାମୀତ୍ୟର୍ଥଃ, ତତୋ ଗର୍ଭାଧାନାତ୍ ସର୍ବଭୂତାନାଂ ବ୍ରହ୍ମାଦୀନାଂ ସମ୍ଭବ ଉତ୍ପତ୍ତିର୍ଭବତି ।

ବକ୍ତବ୍ୟ—'ମହଦ୍ ବ୍ରହ୍ମ' ପ୍ରକୃତିର ଅନ୍ୟ ନାମ । ପ୍ରକୃତିରୁ ସମସ୍ତ ଜଗତର ସୃଷ୍ଟି ହୁଏ—ଏହି ସାଂଖ୍ୟମତକୁ ଖଣ୍ଡନ କରି ଭଗବାନ୍ ଏଠାରେ କହୁଅଛନ୍ତି, ଆମ୍ଭେହିଁ ସୃଷ୍ଟିର ଜନକ, ପ୍ରକୃତିରୂପ ଯୋନିରେ ସୃଷ୍ଟିର ବୀଜ ଆମ୍ଭେ ନିକ୍ଷେପ କଲେ ଚରାଚର ବ୍ରହ୍ମାଣ୍ଡର ଉତ୍ପତ୍ତି ହୁଏ । ଏହାର ତାତ୍ପର୍ଯ୍ୟ ଏହି ଯେ, ଆମ୍ଭେହିଁ ଭୂତମାନଙ୍କୁ ପ୍ରାକ୍ତନ କର୍ମାନୁରୂପେ କ୍ଷେତ୍ର ସହିତ ସଂଯୋଜିତ କରୁଁ । ଏହାହିଁ ଗର୍ଭାଧାନ କ୍ରିୟା । ପ୍ରକୃତ କଥା ପ୍ରକୃତିର ସୃଷ୍ଟି ସାମର୍ଥ୍ୟ ନାହିଁ । ଈଶ୍ୱରଙ୍କ ସୃଷ୍ଟି ସଙ୍କଳ୍ପ ହିଁ ବୀର୍ଯ୍ୟାଧାନ ସ୍ୱରୂପ ।

୪ । ଅନ୍ୱୟ ଦୀପିକା—[ହେ] କୌନ୍ତେୟ ! ସର୍ବଯୋନିଷୁ ( ସମସ୍ତ ଯୋନିରେ ) ଯାଃ ମୂର୍ତ୍ତୟଃ ( ଯେଉଁ ମୂର୍ତ୍ତି ସବୁ ) ସମ୍ଭବନ୍ତି ( ଉତ୍ପନ୍ନ ହୁଏ ), ତାସାଂ ( ସେମାନଙ୍କର ) ମହତ୍ ବ୍ରହ୍ମ ( ପ୍ରକୃତି ) ଯୋନିଃ ( ମାତୃସ୍ଥାନୀୟା ), ଅହଂ ( ଆମ୍ଭେ ) ବୀଜପ୍ରଦଃ ପିତା ( ଗର୍ଭାଧାନକର୍ତ୍ତା ଜନକ )

ସତ୍ତ୍ୱଂ ରଜ ସ୍ତମ ଇତି ଗୁଣାଃ ପ୍ରକୃତିସମ୍ଭବାଃ ।
ନିବଧ୍ନନ୍ତି ମହାବାହୋ ଦେହେ ଦେହିନମବ୍ୟୟମ୍ ।୫।

ଅନୁବାଦ—ହେ କୌନ୍ତେୟ, ଦେବମନୁଷ୍ୟାଦି ସକଳ ଯୋନିରେ ଯେଉଁସବୁ ଶରୀର ଉତ୍ପନ୍ନ ହୁଏ, ପ୍ରକୃତି ସେ ସମସ୍ତର ମାତୃସ୍ଥାନୀୟା, ଏବଂ ଅମ୍ଭେ ସେମାନଙ୍କର ଗର୍ଭାଧାନ କର୍ତ୍ତା ପିତା ବା ଜନକ ।

ସୁବୋଧିନୀ ଟୀକା—ନ କେବଲଂ ସୃଷ୍ଟ୍ୟୁପକ୍ରମ ଏବ ମଦଧିଷ୍ଠିତେନାଭ୍ୟାଂ ପ୍ରକୃତିପୁରୁଷାଭ୍ୟାମୟଂ ଭୂତୋତ୍ପତ୍ତିପ୍ରକାରଃ । ଅପିତୁ ସର୍ବଦୈବେତ୍ୟାହ—ସର୍ବେତି । ସର୍ବାସୁ ଯୋନିଷୁ ମନୁଷ୍ୟାଦ୍ୟାସୁ ଯା ମୂର୍ତ୍ତୟଃ ସ୍ଥାବରଜଙ୍ଗମାତ୍ମିକା ଉତ୍ପଦ୍ୟନ୍ତେ ତାସାଂ ମୂର୍ତ୍ତୀନାଂ ମହଦ୍‌ବ୍ରହ୍ମ ପ୍ରକୃତିର୍ଯୋନିର୍ମାତୃସ୍ଥାନୀୟା । ଅହଂ ଚ ବୀଜପ୍ରଦଃ ପିତା ଗର୍ଭାଧାନକର୍ତ୍ତା ପିତା ।

୫ । ଅନ୍ୱୟ ଦୀପିକା—[ ହେ ] ମହାବାହୋ, ପ୍ରକୃତିସମ୍ଭବାଃ ( ପ୍ରକୃତିରୁ ଜାତ ), ସତ୍ତ୍ୱଂ, ରଜଃ, ତମ ଇତିଗୁଣାଃ ( ସତ୍ତ୍ୱ, ରଜଃ ଓ ତମଃ ଏହି ଗୁଣତ୍ରୟ ) ଦେହେ ( ଦେହ ମଧ୍ୟରେ ) ଅବ୍ୟୟଂ ( ନିର୍ବିକାର ) ଦେହିନଂ ( ଆତ୍ମାକୁ ) ନିବଧ୍ନନ୍ତି ( ବନ୍ଧନ କରନ୍ତି ) ।

ଅନୁବାଦ—ହେ ମହାବାହୋ, ପ୍ରକୃତିଜାତ ସତ୍ତ୍ୱ, ରଜଃ, ତମଃ, ଏହି ଗୁଣତ୍ରୟ ଦେହ ମଧ୍ୟରେ ଅବ୍ୟୟ ଜୀବାତ୍ମାଙ୍କୁ ବନ୍ଧନ କରି ଥାଆନ୍ତି ।

ସୁବୋଧିନୀ ଟୀକା—ତଦେବ ପରମେଶ୍ୱରାଧୀନାଭ୍ୟାଂ ପ୍ରକୃତିପୁରୁଷାଭ୍ୟାଂ ସର୍ବଭୂତୋତ୍ପତ୍ତିଂ ନିରୂପ୍ୟେଦାନୀଂ ପ୍ରକୃତିସଂଯୋଗେନ ପୁରୁଷସ୍ୟ ସଂସାରଂ ପ୍ରପଞ୍ଚୟତି । ସତ୍ତ୍ୱ ମିତ୍ୟାଦି ଚତୁର୍ଦ୍ଦଶଭିଃ । ସତ୍ତ୍ୱଂ ରଜସ୍ତମ ଇତ୍ୟେବଂ ସଞ୍ଜ୍ଞକାସ୍ତ୍ରୟୋଗୁଣାଃ ପ୍ରକୃତି ସମ୍ଭବାଃ । ପ୍ରକୃତେଃ ସମ୍ଭବ ଉଦ୍‌ଭବୋ ଯେଷାଂ ତେ ତଥୋକ୍ତାଃ । ଗୁଣସାମ୍ୟଂ ପ୍ରକୃତିଃ । ତସ୍ୟାଃ ସକାଶାଦ୍ ପୃଥକ୍ ଭୂତାଭିବ୍ୟକ୍ତାଃ ସନ୍ତଃ ପ୍ରକୃତିକାର୍ଯ୍ୟେ ଦେହେ ତାଦାତ୍ମ୍ୟେନ ସ୍ଥିତଂ ଦେହିନଂ ଚିଦଂଶଂ ବସ୍ତୁତୋଽବ୍ୟୟଂ ନିର୍ବିକାରମେବ ସନ୍ତଂ ନିବଧ୍ନନ୍ତି । ସ୍ୱକାର୍ଯ୍ୟୈଃ ସୁଖଦୁଃଖମୋହାଦିଭିଃ ସଂଯୋଜୟନ୍ତୀତ୍ୟର୍ଥଃ ।

ବକ୍ତବ୍ୟ—ଗୁଣତ୍ରୟର ସାମ୍ୟାବସ୍ଥା ହିଁ ପ୍ରକୃତି । ଏହି ପ୍ରକୃତିର ବୈଷମ୍ୟାବସ୍ଥା ତ୍ରିଗୁଣ ନାମରେ କଥିତ ହୁଏ । ଜୀବାତ୍ମା ନିର୍ବିକାର ହେଲେହେଁ ତ୍ରିଗୁଣ ସଙ୍ଗରେ ଦେହାତ୍ମଭାବ ପ୍ରାପ୍ତ ହେବାରୁ ଶୋକଦୁଃଖାଦିରେ ଜଡ଼ିତ ହୋଇପଡନ୍ତି ।

ତତ୍ର ସତ୍ତ୍ୱଂ ନିର୍ମଳତ୍ୱାତ୍ ପ୍ରକାଶକମନାମୟମ୍ ।
ସୁଖ ସଙ୍ଗେନ ବଧ୍ନାତି ଜ୍ଞାନ ସଙ୍ଗେନ ଚାନଘ । ୬ ।
ରଜୋ ରାଗାତ୍ମକଂ ବିଦ୍ଧି ତୃଷ୍ଣାସଙ୍ଗସମୁଦ୍‌ଭବମ୍ ।
ତନ୍ନିବଧ୍ନାତି କୌନ୍ତେୟ କର୍ମସଙ୍ଗେନ ଦେହିନମ୍ । ୭ ।

୬ । ଅନ୍ୱୟ ଦୀପିକା—[ ହେ ] ଅନଘ ! ( ନିଷ୍ପାପ ), ତତ୍ର ( ସେହି ଗୁଣ ସମୂହ ମଧ୍ୟରେ ) ନିର୍ମଳତ୍ୱାତ୍ ( ନିର୍ମଳତ୍ୱ ହେତୁରୁ ) ପ୍ରକାଶକମ୍ ( ପ୍ରକାଶଶୀଳ ) ଅନାମୟଂ ( ନିରୁପଦ୍ରବ ) ସତ୍ତ୍ୱଂ ( ସତ୍ତ୍ୱଗୁଣ ) ସୁଖସଙ୍ଗେନ ଜ୍ଞାନସଙ୍ଗେନ ଚ ( ସୁଖ ଏବଂ ଜ୍ଞାନ ସଙ୍ଗ ଦ୍ୱାରା ବଧ୍ନାତି ( ଆତ୍ମାକୁ ବନ୍ଧନ କରେ ) ।

ଅନୁବାଦ—ହେ ନିଷ୍ପାପ ଅର୍ଜୁନ, ଏହି ତିନିଗୁଣ ମଧ୍ୟରେ ସତ୍ତ୍ୱଗୁଣ ନିର୍ମଳ ହୋଇଥିବାରୁ ପ୍ରକାଶକ ଓ ନିର୍ଦ୍ଦୋଷ । ଏହି ସତ୍ତ୍ୱଗୁଣ ସୁଖସଙ୍ଗ ଓ ଜ୍ଞାନସଙ୍ଗ ଦ୍ୱାରା ଆତ୍ମାକୁ ବନ୍ଧନ କରେ ।

ସୁବୋଧିନୀ ଟୀକା—ତତ୍ର ସତ୍ତ୍ୱସ୍ୟ ଲକ୍ଷଣଂ ବନ୍ଧକତ୍ୱପ୍ରକାରଂ ଚାହ । ତତ୍ରେତି । ତତ୍ର ତେଷାଂ ଗୁଣାନାଂ ମଧ୍ୟେ ସତ୍ତ୍ୱଂ ନିର୍ମଳତ୍ୱାତ୍ ସ୍ୱଚ୍ଛତ୍ୱାତ୍ ସ୍ଫଟିକମଣିରିବ ପ୍ରକାଶକଂ ଭାସ୍ୱରମ୍ । ଅନାମୟଂ ଚ ନିରୁପଦ୍ରବଂ । ଶାନ୍ତମିତ୍ୟର୍ଥଃ । ଅତଃ ଶାନ୍ତତ୍ୱାତ୍ ସ୍ୱକାର୍ଯ୍ୟେଣ ସୁଖେନ ଯଃ ସଙ୍ଗସ୍ତେନ ବଧ୍ନାତି । ପ୍ରକାଶକତ୍ୱାଚ୍ଚ ସ୍ୱକାର୍ଯ୍ୟେଣ ଜ୍ଞାନେନ ଯଃ ସଙ୍ଗସ୍ତେନ ଚ ବଧ୍ନାତି । ହେ ଅନଘ ନିଷ୍ପାପ, ଅହଂ ସୁଖୀ ଜ୍ଞାନୀ ଚେତି ମନୋଧର୍ମାନ୍ତଦଭିମାନିନି କ୍ଷେତ୍ରଜ୍ଞେ ସଂଯୋଜୟତୀତ୍ୟର୍ଥଃ ।

ବିବୃତି—ସତ୍ତ୍ୱ, ରଜଃ ଓ ତମଃ—ଏହି ତିନିଗୁଣ କେବେହେଲେ ହେଲେ ପୃଥକ୍ ପୃଥକ୍ ରହନ୍ତି ନାହିଁ । ସର୍ବଦା ଏକତ୍ରରେ ରହନ୍ତି । କୌଣସି ଭଲକାର୍ଯ୍ୟ କରିବା ସତ୍ତ୍ୱଗୁଣର ଲକ୍ଷଣ ହେଲେହେଁ ଭଲକାର୍ଯ୍ୟ କରିବାର ସେହି ପ୍ରବୃତ୍ତି ରଜୋଗୁଣର ଧର୍ମ । ତେଣୁ ସାତ୍ତ୍ୱିକସ୍ୱଭାବରେ ଅଳ୍ପମାତ୍ରାରେ ହେଉ-ପଛକେ ରଜର ମିଶ୍ରଣ ନିଶ୍ଚୟ ରହିବ । ଏ ଶ୍ଳୋକରେ ସତ୍ତ୍ୱଗୁଣର ଦୁଇଟି ମୁଖ୍ୟ ଧର୍ମକଥା କୁହାଯାଇ ଅଛି । ଏହା ସୁଖ ଓ ଜ୍ଞାନ । ସୁଖ ଦୁଃଖାଦି ଦେହର ଧର୍ମ, ଆତ୍ମାର ଧର୍ମ ନୁହେଁ ଏବଂ ଏ ଜ୍ଞାନ ଆତ୍ମଜ୍ଞାନ ନୁହେଁ । ବସ୍ତୁତଃ ବୁଝିବାକୁ ହେଲେ ମିଶ୍ର ସତ୍ତ୍ୱ ଓ ଶୁଦ୍ଧ ସତ୍ତ୍ୱ ଭେଦରେ ସତ୍ତ୍ୱଗୁଣ ଦୁଇ ପ୍ରକାର । ମିଶ୍ରସତ୍ତ୍ୱ ବା ରଜୋଗୁଣ ମିଶ୍ରିତ ସତ୍ତ୍ୱ ବନ୍ଧନର କାରଣ ହୁଏ କିନ୍ତୁ ଶୁଦ୍ଧସତ୍ତ୍ୱ ତ୍ରିଗୁଣାତୀତ ଅବସ୍ଥା ରୂପରେ ମୋକ୍ଷର ଅଧିକାରୀ କରାଏ ।

୭ । ଅନ୍ୱୟ ଦୀପିକା—[ହେ] କୌନ୍ତେୟ, ରଜଃ (ରଜୋଗୁଣ) ରାଗାତ୍ମକଂ ( ଅନୁରାଗାତ୍ମକ ), ତୃଷ୍ଣାସଙ୍ଗସମୁଦ୍‌ଭବଂ ( ତୃଷ୍ଣା ଓ ଆସକ୍ତିର ଉତ୍ପାଦକ ) ବିଦ୍ଧି (ଜାଣିବ), ତତ୍ (ତାହା) କର୍ମ ସଙ୍ଗେନ (କର୍ମାସକ୍ତିଦ୍ୱାରା) ଦେହିନଂ (ଆତ୍ମାକୁ) ନିବଧ୍ନାତି (ଆବଦ୍ଧ କରେ) ।।

ତମସ୍ତ୍ୱଜ୍ଞାନଜଂ ବିଦ୍ଧି ମୋହନଂ ସର୍ବଦେହିନାମ୍ ।
ପ୍ରମାଦାଲସ୍ୟ ନିଦ୍ରାଭିସ୍ତନ୍ନିବଧ୍ନାତି ଭାରତ ।୮।

ଅନୁବାଦ—ହେ କୌନ୍ତେୟ ! ରଜୋଗୁଣ ଅନୁରାଗାତ୍ମକ, ତହିଁରୁ ତୃଷ୍ଣା (ଅପ୍ରାପ୍ତ ଅର୍ଥରେ ଅଭିଳାଷ) ଓ ସଙ୍ଗ (ପ୍ରାପ୍ତ ଅର୍ଥରେ ଆସକ୍ତି) ଉତ୍ପନ୍ନ ହୁଏ ଏବଂ ତାହା କର୍ମାସକ୍ତି ଦ୍ୱାରା ଦେହୀକୁ ଆବଦ୍ଧ କରେ ।

ସୁବୋଧିନୀ ଟୀକା—ରଜସୋ ଲକ୍ଷଣଂ ବନ୍ଧକତ୍ୱଂ ଚାହ, ରଜ ଇତି । ରଜଃସଞ୍ଜ୍ଞକଂ ଗୁଣଂ ରାଗାତ୍ମକମନୁରଞ୍ଜନରୂପଂ ବିଦ୍ଧି । ଅତଏବ ତୃଷ୍ଣାସଙ୍ଗ ସମୁଦ୍ଭବଂ । ତୃଷ୍ଣାଽପ୍ରାପ୍ତେଽର୍ଥେଽଭିଲାଷଃ ସଙ୍ଗଃ, ପ୍ରାପ୍ତେଽର୍ଥେ ପ୍ରୀତି-ବିଶେଷେଣାସକ୍ତିଃ, ତୟୋସ୍ତୃଷ୍ଣାସଙ୍ଗୟୋଃ ଯସ୍ମାଦୁଦ୍ଭବୋ ଦେହିନଂ ଦୃଷ୍ଟା ଦୃଷ୍ଟାର୍ଥେଷୁ କର୍ମସୁ ସଙ୍ଗେନାସକ୍ତ୍ୟା ନିତରାଂ ବଧ୍ନାତି । ତୃଷ୍ଣାସଙ୍ଗାଭ୍ୟାଂ ହି କର୍ମ-ସ୍ୱାସକ୍ତିର୍ଭବତୀତ୍ୟର୍ଥଃ ।

ବକ୍ତବ୍ୟ—ଅପ୍ରାପ୍ତ ବସ୍ତୁ ପାଇବାକୁ ଯେଉଁ ପ୍ରବଳ ଇଚ୍ଛା ଜାତ ହୁଏ ତାହାର ନାମ ତୃଷ୍ଣା, ପ୍ରାପ୍ତ ବସ୍ତୁ ରକ୍ଷା କରିବାରେ ମନର ଆବେଗକୁ ସଙ୍ଗ କୁହାଯାଏ । ଯେଉଁ ବୃତ୍ତିଦ୍ୱାରା ଚିତ୍ତ ରଞ୍ଜିତ ବା ଆମୋଦିତ ହୁଏ ତାହାର ନାମ ରାଗ । ତୃଷ୍ଣା ଓ ସଙ୍ଗ ଏହି ଅନୁରାଗରୁ ଉତ୍ପନ୍ନ ହୁଏ । ରଜୋଗୁଣ ଜୀବକୁ ଅନୁରାଗର ବଶବର୍ତ୍ତୀ କରି ନାନା କର୍ମରେ ପ୍ରବର୍ତ୍ତିତ କରେ । ତହିଁରେ ଜୀବ ବନ୍ଧନଗ୍ରସ୍ତ ହୁଏ ।

୮ । ଅନ୍ୱୟ ଦୀପିକା—[ହେ] ଭାରତ, ତମଃ ତୁ (ତମୋ ଗୁଣ) ଅଜ୍ଞାନଜଂ ( ଅଜ୍ଞାନରୁ ଜାତ ), ସର୍ବଦେହିନାଂ (ସବୁ ଜୀବଙ୍କର) ମୋହନଂ ( ଭ୍ରାନ୍ତିଜନକ ) ବିଦ୍ଧି (ଜାଣ); ତତ୍ ( ତାହା ) ପ୍ରମାଦାଲସ୍ୟନିଦ୍ରାଭିଃ (ଅନବଧାନତା, ଆଲସ୍ୟ ଓ ନିଦ୍ରା ଦ୍ୱାରା) ନିବଧ୍ନାତି (ଆତ୍ମାକୁ ବନ୍ଧନ କରେ) ।

ଅନୁବାଦ—ହେ ଭାରତ ! ତମୋଗୁଣ ଅଜ୍ଞାନଜାତ ଏବଂ ସମସ୍ତ ପ୍ରାଣୀଙ୍କର ଭ୍ରାନ୍ତି ଜନକ, ଏହା ପ୍ରମାଦ ଅର୍ଥାତ୍ ଅନବଧାନତା, ଆଲସ୍ୟ ଏବଂ ନିଦ୍ରାଦ୍ୱାରା ଜୀବକୁ ଆବଦ୍ଧ କରେ ।

ସୁବୋଧିନୀ ଟୀକା—ତମସୋ ଲକ୍ଷଣଂ ବନ୍ଧକତ୍ୱଂ ଚାହ । ତମ ଇତି, ତମସ୍ତୁ ଜ୍ଞାନାତ୍ମାତମାବରଣଶକ୍ତିପ୍ରଧାନାତ୍ ପ୍ରକୃତ୍ୟଂଶାଦୁଦ୍ଭୂତଂ ବିଦ୍ଧୀତ୍ୟର୍ଥଃ, ଅତଃ ସର୍ବେଷାଂ ଦେହିନାଂ ମୋହନଂ ଭ୍ରାନ୍ତିଜନକମ୍, ଅତଏବ ପ୍ରମାଦେନାଲସ୍ୟେନ ନିଦ୍ରୟାଚ ତତ୍ତମୋ ଦେହିନଂ ନିବଧ୍ନାତି, ତତ୍ର ପ୍ରମାଦୋଽନବଧାନମ୍, ଆଲସ୍ୟମନୁଦ୍ୟମଃ, ନିଦ୍ରା ଚିତ୍ତସ୍ୟାବସାଦାଲ୍ଲୟଃ ।

ସତ୍ତ୍ୱଂ ସୁଖେ ସଞ୍ଜୟତି ରଜଃ କର୍ମଣି ଭାରତ ।
ଜ୍ଞାନମାବୃତ୍ୟ ତୁ ତମଃ ପ୍ରମାଦେ ସଞ୍ଜୟତ୍ୟୁତ ॥ ୯ ॥

ରଜସ୍ତମଶ୍ଚାଭିଭୂୟ ସତ୍ତ୍ୱଂ ଭବତି ଭାରତ ।
ରଜଃ ସତ୍ତ୍ୱଂ ତମଶ୍ଚୈବ ତମଃ ସତ୍ତ୍ୱଂ ରଜସ୍ତଥା ॥ ୧୦ ॥

୯ । ଅନ୍ୱୟ ଦୀପିକା—[ହେ] ଭାରତ, ସତ୍ତ୍ୱଂ (ସତ୍ତ୍ୱଗୁଣ) [ଜୀବକୁ] ସୁଖେ (ସୁଖରେ) ସଞ୍ଜୟତି (ସଂଶ୍ଳିଷ୍ଟ କରେ), ରଜଃ (ରଜୋଗୁଣ) କର୍ମଣି (କର୍ମରେ), ଉତ (ଏବଂ) ତମଃ ତୁ (ତମୋଗୁଣ) ଜ୍ଞାନମ୍ (ଜ୍ଞାନକୁ) ଆବୃତ୍ୟ (ଆବୃତ କରି) ପ୍ରମାଦେ (ପ୍ରମାଦରେ) ସଞ୍ଜୟତି (ସଂଶ୍ଳିଷ୍ଟ କରେ) ।

ଅନୁବାଦ—ହେ ଭାରତ, ସତ୍ତ୍ୱଗୁଣ ଜୀବକୁ ସୁଖରେ ଏବଂ ରଜୋଗୁଣ କର୍ମରେ ସଂଶ୍ଳିଷ୍ଟ କରାଏ ଓ ତମୋଗୁଣ ଜ୍ଞାନକୁ ଆଚ୍ଛାଦିତ କରି କର୍ତ୍ତବ୍ୟ ବିସ୍ମରଣରେ ଆସକ୍ତ କରାଇଥାଏ ।

ସୁବୋଧିନୀ ଟୀକା—ସତ୍ତ୍ୱାଦୀନାମେବଂ ସ୍ୱ ସ୍ୱ କାର୍ଯ୍ୟକରଣେ ସାମର୍ଥ୍ୟାତିଶୟମାହ । ସତ୍ତ୍ୱମିତି, ସତ୍ତ୍ୱଂ ସୁଖେ ସଞ୍ଜୟତି ସଂଶ୍ଳେଷୟତି, ଦୁଃଖ-ଶୋକାଦିକାରଣେ ସତ୍ୟପି ସୁଖାଭିମୁଖମେବ ଦେହିନଂ କରୋତୀତ୍ୟର୍ଥଃ । ଏବଂ ସୁଖାଦିକାରଣେ ସତ୍ୟପି ରଜଃ କର୍ମଣ୍ୟେବ ସଞ୍ଜୟତି, ତମସ୍ତୁ ମହତ୍ସଙ୍ଗେ-ନୋତ୍ପଦ୍ୟମାନମପି ଜ୍ଞାନମାବୃତ୍ୟାଚ୍ଛାଦ୍ୟ ପ୍ରମାଦେ ସଞ୍ଜୟତି, ମହଦ୍ଭିରୁତ୍-ପଦ୍ୟମାନସ୍ୟାର୍ଥସ୍ୟାନବଧାନେ ଯୋଜୟତି, ଉତାପି, ଆଲସ୍ୟାଦାବପି ସଂଯୋଜୟତୀତ୍ୟର୍ଥଃ ।

୧୦ । ଅନ୍ୱୟ ଦୀପିକା—[ହେ] ଭାରତ । ସତ୍ତ୍ୱଂ (ସତ୍ତ୍ୱଗୁଣ) ରଜଃ ତମଃ ଚ (ରଜୋଗୁଣ ଓ ତମୋଗୁଣକୁ) ଅଭିଭୂୟ ( ଅଭିଭୂତ କରି ) ଭବତି (ପ୍ରବଳ ହୁଏ), ରଜଃ (ରଜୋଗୁଣ) ସତ୍ତ୍ୱଂ ତମଃ ଚ (ସତ୍ତ୍ୱ ଓ ତମୋଗୁଣକୁ) [ଅଭିଭୂତ କରି], ତଥା (ଏବଂ) ତମଃ (ତମୋଗୁଣ) ସତ୍ତ୍ୱଂ ରଜଃ ଏବ (ସତ୍ତ୍ୱ ଓ ରଜୋଗୁଣକୁ) [ଅଭିଭୂତ କରି ପ୍ରବଳ ହୁଏ] ।

ଅନୁବାଦ—ହେ ଭାରତ ! ସତ୍ତ୍ୱଗୁଣ ରଜଃ ଓ ତମୋଗୁଣକୁ ଅଭିଭୂତ କରି ପ୍ରବଳ ହୁଏ, ରଜୋଗୁଣ ସତ୍ତ୍ୱ ଓ ତମୋଗୁଣକୁ ଅଭିଭୂତ କରି ପ୍ରବଳ ହୁଏ ଏବଂ ତମୋଗୁଣ ସତ୍ତ୍ୱ ଓ ରଜୋଗୁଣକୁ ଅଭିଭୂତ କରି ପ୍ରବଳ ହୁଏ ।

ସୁବୋଧିନୀ ଟୀକା—ତତ୍ର ହେତୁମାହ—ରଜ ଇତି, ରଜସ୍ତମ-ଶ୍ଚେତି ଗୁଣଦ୍ୱୟମଭିଭୂୟ ତିରସ୍କୃତ୍ୟ ସତ୍ତ୍ୱଂ ଭବତି, ଅଦୃଷ୍ଟବଶାଦୁଦ୍ଭବତି, ତତଃ ସ୍ୱକାର୍ଯ୍ୟେ ସୁଖଜ୍ଞାନାଦୌ ସଞ୍ଜୟତୀତ୍ୟର୍ଥଃ । ଏବଂ ତମୋଽପି ସତ୍ତ୍ୱଂ ତମଶ୍ଚେତି

ସର୍ବଦ୍ୱାରେଷୁ ଦେହେଽସ୍ମିନ୍ ପ୍ରକାଶ ଉପଜାୟତେ ।
ଜ୍ଞାନଂ ଯଦା ତଦା ବିଦ୍ୟାଦ୍ ବିବୃଦ୍ଧଂ ସତ୍ତ୍ୱମିତ୍ୟୁତ । ୧୧ ।

ଗୁଣଦ୍ୱୟମଭିଭୂୟୋଦ୍ଭବତି । ତତଃ ସ୍ୱକାର୍ଯ୍ୟେ ତୃଷ୍ଣାକର୍ମାଦୌ ସଞ୍ଜୟତି । ଏବଂ ତମୋଽପି ସତ୍ତ୍ୱଂ ରଜଶ୍ଚୋଭୟମପି ଗୁଣାବଭିଭୂୟୋଦ୍ଭବତି, ତତଶ୍ଚ-ସ୍ୱକାର୍ଯ୍ୟେ ପ୍ରମାଦାଲସ୍ୟାଦୌ ସଞ୍ଜୟତୀତ୍ୟର୍ଥଃ ।

ବିବୃତି—ପୂର୍ବେ କୁହାଯାଇଅଛି ଏହି ତିନିଗୁଣ ପୃଥକ୍ ପୃଥକ୍ ରହନ୍ତି ନାହିଁ; ଜୀବର ଅଦୃଷ୍ଟ ବଶରୁ ଯେତେବେଳେ ସତ୍ତ୍ୱଗୁଣ ଅନ୍ୟଦୁଇ-ଗୁଣକୁ ଅଭିଭୂତ କରି ଜୀବକୁ ସୁଖରେ ଆସକ୍ତ କରାଏ । ସେହିପରି ରଜୋଗୁଣ ପ୍ରବଳ ହୋଇ କର୍ମରେ ଆସକ୍ତି ଜନ୍ମାଏ, ଯେତେବେଳେ ବା ତମୋଗୁଣ ପ୍ରବଳ ହୋଇ ନିଦ୍ରାଆଳସ୍ୟାଦି ଜାତକରାଏ, ଏହି ହେତୁରୁ ଭିନ୍ନ ଭିନ୍ନ ଜୀବର ସାତ୍ତ୍ୱିକ, ରାଜସିକ, ତାମସିକ ଏହିପରି ବିଭିନ୍ନ ପ୍ରବୃତ୍ତି ଦେଖାଯାଏ ।

୧୧ । ଅନ୍ୱୟ ଦୀପିକା—ଯଦା (ଯେତେବେଳେ) ଅସ୍ମିନ୍ ଦେହେ (ଏହି ଦେହରେ) ସର୍ବଦ୍ୱାରେଷୁ (ସମସ୍ତ ଇନ୍ଦ୍ରିୟଦ୍ୱାରରେ) ଜ୍ଞାନଂ ପ୍ରକାଶଃ (ଜ୍ଞାନରୂପ ପ୍ରକାଶ) ଉପଜାୟତେ (ଉତ୍ପନ୍ନ ହୁଏ) ତଦା ଉତ (ସେତେବେଳେହିଁ) ସତ୍ତ୍ୱଂ ବିବୃଦ୍ଧଂ (ସତ୍ତ୍ୱଗୁଣ ବୃଦ୍ଧି ପାଇଛି) ଇତି (ଏହା) ବିଦ୍ୟାତ୍ (ଜାଣିବ) ।

ଅନୁବାଦ—ଯେତେବେଳେ ଏହି ଦେହର ଶ୍ରୋତ୍ରାଦି ସମସ୍ତ ଇନ୍ଦ୍ରିୟ-ଦ୍ୱାରରେ ଜ୍ଞାନାତ୍ମକ ପ୍ରକାଶ ଅର୍ଥାତ୍ ନିର୍ମଳ ଜ୍ଞାନର ଉଦୟ ହୁଏ, ସେତେବେଳେ ସତ୍ତ୍ୱଗୁଣ ବୃଦ୍ଧି ହୋଇଅଛି—ଜଣାଯାଏ ।

ସୁବୋଧିନୀ ଟୀକା—ଇଦାନୀଂ ସତ୍ତ୍ୱାଦୀନାଂ ବିବୃଦ୍ଧାନାଂ ଲିଙ୍ଗାନ୍ୟାହ । ସର୍ବଦ୍ୱାରେଷ୍ୱିତି ତ୍ରିଭିଃ । ଅସ୍ମିନ୍ ଆତ୍ମନୋ ଭୋଗାୟତନେ ଦେହେ ସର୍ବେଷ୍ୱପି ଦ୍ୱାରେଷୁ ଶ୍ରୋତ୍ରାଦିଷୁ ଯଦା ଶବ୍ଦାଦିଜ୍ଞାନାତ୍ମକଃ ପ୍ରକାଶ ଉପଜାୟତ ଉତ୍ପଦ୍ୟତେ ତଦାନେନ ପ୍ରକାଶଲିଙ୍ଗେନ ସତ୍ତ୍ୱଂ ବିବୃଦ୍ଧଂ ବିଦ୍ୟାତ୍ ଜାନୀୟାତ୍ ଉତଶବ୍ଦାତ୍ ସୁଖାଦିଲିଙ୍ଗେନାପି ଜାନୀୟାଦିତ୍ୟୁକ୍ତମ୍ ।

ବିବୃତି—୧୧ଶ ଠାରୁ ୧୩ଶ ଶ୍ଳୋକ ମଧ୍ୟରେ ଏହି ତିନି ଗୁଣର ଲକ୍ଷଣ କହୁଅଛନ୍ତି—ଏ ଶରୀର ସୁଖ ଦୁଃଖ ଭୋଗର ସ୍ଥାନ, ଇନ୍ଦ୍ରିୟ ଦ୍ୱାରବାଟେ ଶବ୍ଦାଦି ବିଷୟ ସବୁ ଶରୀର ମଧ୍ୟରେ ପ୍ରବେଶ କରି ଏହି ସୁଖ ଦୁଃଖାଦି ଉତ୍ପାଦନ କରନ୍ତି । ଏହି ଇନ୍ଦ୍ରିୟ ଦ୍ୱାରମାନଙ୍କରେ ଯେତେବେଳେ ଜ୍ଞାନରୂପ ପ୍ରକାଶ ଉତ୍ପନ୍ନ ହୁଏ ଅର୍ଥାତ୍ ରୂପରସାଦି ଇନ୍ଦ୍ରିୟମାନଙ୍କ ଦ୍ୱାରା ଗୃହୀତ ହୋଇ ଶରୀର ମଧ୍ୟରେ ପ୍ରବେଶ କଲେ ପବିତ୍ର ଆନନ୍ଦର ଉପଲବ୍ଧି ହୁଏ, ସେତେବେଳେ ସତ୍ତ୍ୱଗୁଣର ଉତ୍ପତ୍ତି ହୋଇଅଛି ବୋଲି ବୁଝିବାକୁ ହେବ, ଅର୍ଥାତ୍ ପାଞ୍ଚଟି

ଲୋଭଃ ପ୍ରବୃତ୍ତିରାରମ୍ଭଃ କର୍ମଣାମଶମଃ ସ୍ପୃହା
ରଜସ୍ୟେତାନି ଜାୟନ୍ତେ ବିବୃଦ୍ଧେ ଭରତର୍ଷଭ । ୧୨ ।
ଅପ୍ରକାଶୋଽପ୍ରବୃତ୍ତିଶ୍ଚ ପ୍ରମାଦୋ ମୋହ ଏବ ଚ ।
ତମସ୍ୟେତାନି ଜାୟନ୍ତେ ବିବୃଦ୍ଧେ କୁରୁନନ୍ଦନ । ୧୩ ।

ହିତକର, ହୃଦ୍ୟ, ମଧୁର କଥାହିଁ ବାହାରିବ ଏବଂ ଅନ୍ୟର କଥା ପ୍ରୀତିଜନକ ହେବ । ଯାହାକିଛି ଦେଖିବ, ତାହା ପବିତ୍ର ଓ ସୁନ୍ଦର ବୋଧ ହେବ । ଇତ୍ୟାଦି ।

୧୨ । ଅନ୍ୱୟ ଦୀପିକା—[ହେ] ଭରତର୍ଷଭ ! ଲୋଭଃ (ପରଦ୍ରବ୍ୟ ଗ୍ରହଣରେ ଇଚ୍ଛା) ପ୍ରବୃତ୍ତିଃ ( ସର୍ବଦା କର୍ମ କରିବା ଇଚ୍ଛା ), କର୍ମଣାମ୍ ଆରମ୍ଭଃ (କର୍ମରେ ଉଦ୍ୟମ), ଅଶମଃ (ଅଶାନ୍ତି), ସ୍ପୃହା ( ବିଷୟାକାଙ୍‍କ୍ଷା ), ଏତାନି (ଏହି ସବୁ) ରଜସି ବିବୃଦ୍ଧେ (ରଜୋଗୁଣ ବୃଦ୍ଧି ରେ) ଜାୟନ୍ତେ (ଜାତ ହୁଏ)।

ଅନୁବାଦ—ହେ ଭରତଶ୍ରେଷ୍ଠ, ରଜୋଗୁଣ ବଢ଼ିଲେ ପର ଦ୍ରବ୍ୟରେ ଲୋଭ, ସର୍ବଦା କର୍ମ ପ୍ରବୃତ୍ତି, କର୍ମରେ ଉଦ୍ୟମ, ଅଶାନ୍ତି ଓ ବିଷୟାକାଙ୍‍କ୍ଷା—ଏହିସବୁ ଜାତ ହୁଏ ।

ସୁବୋଧିନୀ ଟୀକା—କିଞ୍ଚ ଲୋଭଇତି, ଲୋଭୋ ଧନାଦ୍ୟାଗମେ ଜାୟମାନେଽପି ପୁନଃପୁନର୍ବର୍ଦ୍ଧମାନୋଽଭିଲାଷଃ । ପ୍ରବୃତ୍ତିର୍ନିତ୍ୟଂ କୁର୍ବଦ୍‌ରୂପତା, କର୍ମଣାମାରମ୍ଭୋ ମହାଗୃହାଦିନିର୍ମାଣୋଦ୍ୟମଃ । ଅଶମ ଇଦଂ କୃତ୍ୱେଦଂ କରିଷ୍ୟାମୀତ୍ୟାଦି ସଙ୍କଳ୍ପବିକଳ୍ପାନୁପରମଃ । ସ୍ପୃହା—ଉଚ୍ଚାବଚେଷୁ ଦୃଷ୍ଟମାତ୍ରେଷୁ ବସ୍ତୁଷ୍ୱିତସ୍ତତୋ ଜିଘୃକ୍ଷା, ରଜସି ବିବୃଦ୍ଧେ ସତ୍ୟେତାନି ଲିଙ୍ଗାନି ଜାୟନ୍ତେ, ଏଭିର୍ଲିଙ୍ଗୈ ରଜୋଗୁଣସ୍ୟ ବିବୃଦ୍ଧିଂ ଜାନୀୟାଦିତ୍ୟର୍ଥଃ ।

ବିବୃତ—ଯେତେବେଳେ ଦେଖିବ ପରଦ୍ରବ୍ୟରେ ଲୋଭ ଓ ଧନ ବଢ଼ାଇବାରେ ପୂର୍ଣ୍ଣ ଅଭିଳାଷ ଜାତ ହୁଏ, ସବୁବେଳେ କର୍ମ ପ୍ରବୃତ୍ତି, ବଡ଼ ବଡ଼ ଘର ପ୍ରଭୃତି ତିଆରି କରିବାରେ ଉଦ୍ୟମ, ଏକ କାର୍ଯ୍ୟ କରି ସାରି ଅନ୍ୟ କାର୍ଯ୍ୟ କରିବାକୁ ପୁଣି ଉଦ୍ୟମ, ନିରନ୍ତର କର୍ମରେ ଅଶାନ୍ତି ଅନୁଭବ, ଅନ୍ୟର ପଦାର୍ଥ ଦେଖିଲେ ଗ୍ରହଣ କରିବାର ଇଚ୍ଛା ଜାତହୁଏ, ସେତେବେଳେ ରଜୋଗୁଣ ବଢ଼ିଅଛି ବୋଲି ବୁଝିବାକୁ ହେବ ।

୧୩ । ଅନ୍ୱୟ ଦୀପିକା—[ ହେ ] କୁରୁନନ୍ଦନ । ଅପ୍ରକାଶଃ ( ବିବେକ ଭ୍ରଂଶ ) ଅପ୍ରବୃତ୍ତିଃ ( ଆଳସ୍ୟ ) ପ୍ରମାଦଃ ( କର୍ତ୍ତବ୍ୟ ବିସ୍ମୃତି ) ମୋହଃ ( ମିଥ୍ୟାଭିନିବେଶ ) ଏବଚ - ଏତାନି ( ଏ ସମସ୍ତହିଁ ) ତମସି ବିବୃଦ୍ଧେ ଜାୟନ୍ତେ ( ତମୋଗୁଣ ବୃଦ୍ଧି ହେଲେ ଜାତ ହୁଅନ୍ତି ) ।

ଅନୁବାଦ—ହେ କୁରୁନନ୍ଦନ । ତମୋଗୁଣ ବୃଦ୍ଧିହେଲେ ବିବେକ ଭ୍ରଂଶ, ଉଦ୍ୟମ ହୀନତା ବା ଆଳସ୍ୟ ଭାବ, କର୍ତ୍ତବ୍ୟ ଭୁଲିଯିବା, ମୋହ ବା ବୁଦ୍ଧି ବିପର୍ଯ୍ୟୟ—ଏ ସମସ୍ତ ଜାତ ହୁଏ ।

ଯଦା ସତ୍ତ୍ୱେ ପ୍ରବୃଦ୍ଧେ ତୁ ପ୍ରଳୟଂ ଯାତି ଦେହଭୃତ୍ ।
ତଦୋତ୍ତମବିଦାଂ ଲୋକାନମଲାନ୍ ପ୍ରତିପଦ୍ୟତେ । ୧୪ ।
ରଜସି ପ୍ରଳୟଂ ଗତ୍ୱା କର୍ମସଙ୍ଗିଷୁ ଜାୟତେ ।
ତଥା ପ୍ରଲୀନସ୍ତମସି ମୂଢଯୋନିଷୁ ଜାୟତେ । ୧୫ ।

ସୁବୋଧିନୀ ଟୀକା—କିଞ୍ଚ ଅପ୍ରକାଶ ଇତି, ଅପ୍ରକାଶୋ ବିବେକ-ଭ୍ରଂଶଃ, ଅପ୍ରବୃତ୍ତିରନୁଦ୍ୟମଃ, ପ୍ରମାଦଃ କର୍ତ୍ତବ୍ୟାର୍ଥାନନୁସନ୍ଧାନଲକ୍ଷଣମ୍ । ମୋହୋ ମିଥ୍ୟାଭିନିବେଶଃ, ତମସି ବିବୃଦ୍ଧେ ସତ୍ୟେତାନି ଲିଙ୍ଗାନି ଜାୟନ୍ତେ । ଏତୈସ୍ତମସୋ ବୃଦ୍ଧିଂ ଜାନୀୟାଦିତ୍ୟର୍ଥଃ ।

ବକ୍ତବ୍ୟ—ଉପଦେଶ ଶୁଣି ମଧ୍ୟ ଯେବେ ବୁଦ୍ଧି ବିନାଶ ହୁଏ, ତେବେ ତାହାକୁ ଅପ୍ରକାଶ ବୋଲଯାଏ । ସତ୍‌କାର୍ଯ୍ୟ କରିବାରେ ଅଭିଳାଷ ନ ହେବାର ନାମ ଅପ୍ରବୃତ୍ତି । ଉପଯୁକ୍ତ ସମୟରେ କର୍ତ୍ତବ୍ୟ କରିବାକୁ ଭୁଲିଗଲେ ତାହାକୁ ପ୍ରମାଦ କହନ୍ତି, ଅସତ୍‌କର୍ମ କରିବାରେ ଅଭିଳାଷଜାତ ହେବାକୁ ମୋହ ବୋଲଯାଏ, ଏସବୁ ଲକ୍ଷଣ ଦେଖିଲେ ତମୋ ଗୁଣର ବୃଦ୍ଧି ହୋଇଅଛି ବୋଲି ବୁଝିବାକୁ ହେବ ।

୧୪ । ଅନ୍ୱୟ ଦୀପିକା—ଯଦା ସତ୍ତ୍ୱେ ପ୍ରବୃଦ୍ଧେ ( ଯେତେବେଳେ ସତ୍ତ୍ୱଗୁଣ ବୃଦ୍ଧି ପାଇଲେ ) ଦେହଭୃତ୍ ( ଜୀବ ) ପ୍ରଳୟଂ ଯାତି ( ମୃତ୍ୟୁ ପ୍ରାପ୍ତ ହୁଏ ) ତଦା ( ସେତେବେଳେ ) ଉତ୍ତମ ବିଦାଂ ( ଉତ୍ତମ ତତ୍ତ୍ୱଜ୍ଞ ମାନଙ୍କର ) ଅମଲାନ୍ ଲୋକାନ୍ ( ନିର୍ମଳ ଲୋକ ସମୂହ ) ପ୍ରାପ୍ନୋତି ( ପ୍ରାପ୍ତ ହୁଏ ) ।

ଅନୁବାଦ—ଯେତେବେଳେ ସତ୍ତ୍ୱଗୁଣ ବୃଦ୍ଧିରେ ଜୀବର ମୃତ୍ୟୁହୁଏ ସେତେବେଳେ ସେ ଉତ୍ତମ ତତ୍ତ୍ୱବିଦ୍‌ମାନଙ୍କର ପ୍ରାପ୍ୟ ପ୍ରକାଶମୟ ଦିବ୍ୟଲୋକ ପ୍ରାପ୍ତ ହୁଏ ।

ସୁବୋଧିନୀ ଟୀକା—ମରଣସମୟ ଏବ ବିବୃଦ୍ଧାନାଂ ସତ୍ତ୍ୱାଦୀନାଂ ଫଳବିଶେଷମାହ—ଯଦେତିଦ୍ୱାଭ୍ୟାମ୍, ସତ୍ତ୍ୱେ ପ୍ରବୃଦ୍ଧେ ସତି ଯଦାଜୀବୋ ମୃତ୍ୟୁଂ ପ୍ରାପ୍ନୋତି ତଦୋତ୍ତମାନ୍ ହିରଣ୍ୟଗର୍ଭାଦୀନ୍ ବିଦନ୍ତ୍ୟୁପାସତ ଇତ୍ୟୁତ୍ତମ-ବିଦଃ । ତେଷାଂ ଯେଽମଲାଃ ପ୍ରକାଶମୟା ଲୋକାଃ ସୁଖୋପଭୋଗସ୍ଥାନ-ବିଶେଷାସ୍ତାନ୍ ପ୍ରତିପଦ୍ୟତେ ପ୍ରାପ୍ନୋତି ।

୧୫ । ଅନ୍ୱୟ ଦୀପିକା—ରଜସି ( ରଜୋଗୁଣ ବୃଦ୍ଧି କାଳରେ ) ପ୍ରଳୟଂ ଗତ୍ୱା ( ମୃତ୍ୟୁ ପ୍ରାପ୍ତ ହେଲେ ) [ ଜୀବ ] କର୍ମସଙ୍ଗିଷୁ ( କର୍ମାସକ୍ତ ମନୁଷ୍ୟ ଯୋନିରେ ) ଜାୟତେ ( ଜନ୍ମଲାଭ କରେ ), ତଥା ( ଏବଂ ) ତମସି ( ତମୋଗୁଣ ବୃଦ୍ଧିରେ ) ପ୍ରଲୀନଃ ( ମୃତବ୍ୟକ୍ତି ) ମୂଢଯୋନିଷୁ ( ପଶ୍ୱାଦି ଯୋନିରେ ) ଜାୟତେ ( ଜନ୍ମ ଗ୍ରହଣ କରେ ) ।

କର୍ମଣଃ ସୁକୃତସ୍ୟାହୁଃ ସାତ୍ତ୍ୱିକଂ ନିର୍ମଳଂ ଫଳମ୍
ରଜସସ୍ତୁ ଫଳଂ ଦୁଃଖମଜ୍ଞାନଂ ତମସଃ ଫଳମ୍ । ୧୬ ।
ସତ୍ତ୍ୱାତ୍ ସଞ୍ଜାୟତେ ଜ୍ଞାନଂ ରଜସୋ ଲୋଭ ଏବ ଚ ।
ପ୍ରମାଦମୋହୌ ତମସୋ ଭବତୋଽଜ୍ଞାନମେବଚ । ୧୭ ।

**ଅନୁବାଦ**—ରଜୋଗୁଣ ବୃଦ୍ଧିକାଳରେ ଜୀବର ମୃତ୍ୟୁହେଲେ ସେ କର୍ମାସକ୍ତ ମନୁଷ୍ୟଯୋନିରେ ଜନ୍ମ ଗ୍ରହଣ କରେ ଏବଂ ତମୋଗୁଣ ବୃଦ୍ଧି କାଳରେ ମୃତବ୍ୟକ୍ତି ପଶ୍ୱାଦି ମୂଢ଼ ଯୋନିରେ ଜନ୍ମହୁଏ ।

ସୁବୋଧିନୀ ଟୀକା—କିଞ୍ଚ ରଜସୀତି—ରଜସି ପ୍ରବୃଦ୍ଧେ ସତି ମୃତ୍ୟୁଂ ପ୍ରାପ୍ୟ କର୍ମାସକ୍ତେଷୁ ମନୁଷ୍ୟେଷୁ ଜାୟତେ । ତଥା ତମସି ପ୍ରବୃଦ୍ଧେ ସତି ପ୍ରଲୀନୋ ମୃତୋ ମୂଢ଼ଯୋନିଷୁ ପଶ୍ୱାଦିଷୁ ଜାୟତେ ।

୧୬ । ଅନ୍ୱୟଦୀପିକା—[ ଜ୍ଞାନୀମାନେ ] ସୁକୃତସ୍ୟ କର୍ମଣଃ ( ସାତ୍ତ୍ୱିକକର୍ମର ) ସାତ୍ତ୍ୱିକଂ ନିର୍ମଳଂ ଫଳଂ ( ସାତ୍ତ୍ୱିକ ନିର୍ମଳ ଫଳ ) ଆହୁଃ ( କହନ୍ତି ), ରଜସଃ ତୁ ( ରାଜସିକ କର୍ମର ) ଫଳଂ ଦୁଃଖଂ ( ଫଳ ଦୁଃଖ ବୋଲି କହନ୍ତି ), ତମସଃ ତୁ ( ତାମସିକ ଗୁଣରେ ) ଫଳମ୍ ଅଜ୍ଞାନଂ ( ଫଳ ଅଜ୍ଞାନ ବୋଲି କହନ୍ତି ) ।

ଅନୁବାଦ—ଜ୍ଞାନୀମାନେ କହନ୍ତି, ସାତ୍ତ୍ୱିକ କର୍ମର ଫଳ ନିର୍ମଳ ସୁଖ, ରାଜସିକ କର୍ମର ଫଳ ଦୁଃଖ ଏବଂ ତାମସିକ କର୍ମର ଫଳ ଅଜ୍ଞାନ ।

ସୁବୋଧିନୀ ଟୀକା—ଇଦାନୀଂ ସତ୍ତ୍ୱାଦୀନାଂ ସ୍ୱାନୁରୂପକର୍ମଦ୍ୱାରେଣ ବିଚିତ୍ରଫଳହେତୁତ୍ୱମାହ, କର୍ମଣ ଇତି । ସୁକୃତସ୍ୟ ସାତ୍ତ୍ୱିକସ୍ୟ କର୍ମଣଃ ସାତ୍ତ୍ୱିକଂ ସତ୍ତ୍ୱପ୍ରଧାନଂ ନିର୍ମଳଂ ପ୍ରକାଶବହୁଳଂ ସୁଖଂ ଫଳମାହୁଃ କପିଳାଦୟଃ । ରଜସ ଇତି ରାଜସସ୍ୟ କର୍ମଣ ଇତ୍ୟର୍ଥଃ । କର୍ମଫଳକଥନସ୍ୟ ପ୍ରକୃତତ୍ୱାତ୍ । ତସ୍ୟ ଦୁଃଖଂ ଫଳମାହୁଃ । ତମସ ଇତି ତାମସସ୍ୟ କର୍ମଣ ଇତ୍ୟର୍ଥଃ । ତସ୍ୟାଜ୍ଞାନଂ ମୂଢ଼ତ୍ୱଂ ଫଳମାହୁଃ । ସାତ୍ତ୍ୱିକାଦିକର୍ମଲକ୍ଷଣଂ ଚ ନିୟତଂ ସଙ୍ଗରହିତ ମିତ୍ୟାଦିନାଽଷ୍ଟାଦଶାଧ୍ୟାୟେ ବକ୍ଷ୍ୟତି ।

୧୭ । ଅନ୍ୱୟ ଦୀପିକା—ସତ୍ତ୍ୱାତ୍ ( ସତ୍ତ୍ୱଗୁଣରୁ ) ଜ୍ଞାନଂ ସଞ୍ଜାୟତେ ( ଜ୍ଞାନ ଜାତହୁଏ ), ରଜସଃ ( ରଜୋଗୁଣରୁ ) ଲୋଭ ଏବଚ ( ଲୋଭଜାତହୁଏ ), ତମସଃ ( ତମୋଗୁଣରୁ ) ଅଜ୍ଞାନଂ ( ଅଜ୍ଞାନ ), ପ୍ରମାଦମୋହୌ ଏବଚ ( ଏବଂ ପ୍ରମାଦ ଓ ମୋହ ) ଭବତଃ ( ଜାତହୁଏ ) ।

ଅନୁବାଦ—ସତ୍ତ୍ୱଗୁଣରୁ ଜ୍ଞାନ ଜାତହୁଏ, ରଜୋଗୁଣରୁ ଲୋଭ ଜାତହୁଏ ଏବଂ ତମୋ ଗୁଣରୁ ଅଜ୍ଞାନ, ପ୍ରମାଦ ଓ ମୋହ ଜାତ ହୋଇଥାଏ ।

ଊର୍ଦ୍ଧ୍ୱଂ ଗଚ୍ଛନ୍ତି ସତ୍ତ୍ୱସ୍ଥା ମଧ୍ୟେ ତିଷ୍ଠନ୍ତି ରାଜସାଃ ।
ଜଘନ୍ୟଗୁଣବୃତ୍ତିସ୍ଥା ଅଧୋ ଗଚ୍ଛନ୍ତି ତାମସାଃ ॥ ୧୮ ॥

ସୁବୋଧିନୀ ଟୀକା—ତଦେବ ହେତୁମାହ—ସତ୍ତ୍ୱାଦିତି ସତ୍ତ୍ୱାଜ୍ଜ୍ଞାନଂ ଜାୟତେ । ଅତଃ ସାତ୍ତ୍ୱିକସ୍ୟ କର୍ମଣଃ ପ୍ରକାଶବହୁଳଂ ସୁଖଂ ଫଳଂ ଭବତି । ରଜସୋ ଲୋଭୋ ଜାୟତେ । ତସ୍ୟ ଚ ଦୁଃଖହେତୁତ୍ୱାତ୍ ରାଜସସ୍ୟ କର୍ମଣୋ ଦୁଃଖଂ ଫଳଂ ଭବତି । ତମସସ୍ତୁ ପ୍ରମାଦମୋହାଜ୍ଞାନାନି ଭବନ୍ତି । ଅତସ୍ତାମସସ୍ୟ କର୍ମଣୋଽଜ୍ଞାନପ୍ରାପକଂଫଳଂ ଭବତୀତି ଯୁକ୍ତମେବେତ୍ୟର୍ଥଃ ।

୧୮ । ଅନ୍ୱୟ ଦୀପିକା—ସତ୍ତ୍ୱସ୍ଥାଃ ( ସତ୍ତ୍ୱଗୁଣପ୍ରଧାନ ବ୍ୟକ୍ତିମାନେ ) ଊର୍ଦ୍ଧ୍ୱଂ ( ଊର୍ଦ୍ଧ୍ୱଲୋକ ଅର୍ଥାତ୍ ସ୍ୱର୍ଗାଦି ଲୋକକୁ ) ଗଚ୍ଛନ୍ତି ( ଗମନ କରନ୍ତି ) । ରାଜସାଃ ( ରଜୋଗୁଣ ପ୍ରଧାନ ବ୍ୟକ୍ତିମାନେ ) ମଧ୍ୟେ ତିଷ୍ଠନ୍ତି ( ମଧ୍ୟମ ଲୋକ ଅର୍ଥାତ୍ ମନୁଷ୍ୟ ଲୋକରେ ରହନ୍ତି ) । ଜଘନ୍ୟଗୁଣ-ବୃତ୍ତିସ୍ଥାଃ ( ନିକୃଷ୍ଟ ଗୁଣ ବୃତ୍ତିଧାରୀ ) ତାମସାଃ ( ତମୋଗୁଣ ପ୍ରଧାନ ବ୍ୟକ୍ତିମାନେ ) ଅଧଃ ଗଚ୍ଛନ୍ତି ( ଅଧୋଗତି ପ୍ରାପ୍ତ ହୁଅନ୍ତି ) ।

ଅନୁବାଦ—ସତ୍ତ୍ୱଗୁଣ ପ୍ରଧାନ ବ୍ୟକ୍ତିମାନେ ଊର୍ଦ୍ଧ୍ୱଲୋକକୁ ଅର୍ଥାତ୍ ସ୍ୱର୍ଗାଦି ଲୋକକୁ ଗମନ କରନ୍ତି । ରଜୋଗୁଣପ୍ରଧାନ ବ୍ୟକ୍ତିମାନେ ମଧ୍ୟଲୋକ ଅର୍ଥାତ୍ ଭୂଲୋକରେ ରହନ୍ତି ଏବ ନିକୃଷ୍ଟ ଗୁଣଧାରୀ ତମଃପ୍ରଧାନ ବ୍ୟକ୍ତିମାନେ ଅଧୋଗାମୀ ହୁଅନ୍ତି ଅର୍ଥାତ୍ ନରକାଦିରେ ପତିତ ହୁଅନ୍ତି ।

ସୁବୋଧିନୀ ଟୀକା—ଇଦାନୀଂ ସତ୍ତ୍ୱାଦିବୃତ୍ତିଶୀଳାନାଂ ଫଳଭେଦମାହ—ଊର୍ଦ୍ଧ୍ୱମିତି, ସତ୍ତ୍ୱସ୍ଥାଃ ସତ୍ତ୍ୱବୃତ୍ତିପ୍ରଧାନାଃ ଊର୍ଦ୍ଧ୍ୱଂ ଗଚ୍ଛନ୍ତି, ସତ୍ତ୍ୱୋତ୍କର୍ଷତାରତମ୍ୟାଦୁତ୍ତରୋତ୍ତରଶତଗୁଣାନନ୍ଦାନ୍ ମନୁଷ୍ୟଗନ୍ଧର୍ବପିତୃ-ଦେବାଦିଲୋକାନ୍ ସତ୍ୟଲୋକପର୍ଯ୍ୟନ୍ତାନ୍ ପ୍ରାପ୍ନୁବନ୍ତୀତ୍ୟର୍ଥଃ, ରାଜସାସ୍ତୁ ତୃଷ୍ଣାଦ୍ୟାକୁଳା ମଧ୍ୟେ ତିଷ୍ଠନ୍ତି, ମନୁଷ୍ୟଲୋକ ଏବୋତ୍ପଦ୍ୟନ୍ତେ, ଜଘନ୍ୟୋ ନିକୃଷ୍ଟସ୍ତମୋଗୁଣଃ, ତସ୍ୟବୃତ୍ତିଃ ପ୍ରମାଦମୋହାଦିଃ, ତତ୍ସ୍ଥିତା ଅଧୋଗଚ୍ଛନ୍ତି, ତମସୋବୃତ୍ତିତାରତମ୍ୟାତ୍ତାମିସ୍ରାଦିଷୁ ନରକେଷୂତ୍ପଦ୍ୟନ୍ତେ ।

ବିବୃତି—ସତ୍ତ୍ୱଗୁଣ ପ୍ରଧାନ ବ୍ୟକ୍ତିମାନେ ସ୍ୱର୍ଗଲୋକ ପ୍ରାପ୍ତ ହୁଅନ୍ତି, ଏଥିରୁ ଜଣାଯାଏ ସେମାନଙ୍କର ମୋକ୍ଷ ହୁଏନାହିଁ । କାରଣ ପୁଣ୍ୟ ଶେଷରେ ସ୍ୱର୍ଗ ଲୋକରୁ ପୁଣି ଫେରି ଆସିବାକୁ ହୁଏ । ମୋକ୍ଷ ପାଇବା ପାଇଁ ତ୍ରିଗୁଣାତୀତ ଅବସ୍ଥା ଆବଶ୍ୟକ । ପ୍ରକୃତି ପୁରୁଷରୁ ଅତୀତ ପରମାତ୍ମାଙ୍କ ସ୍ୱରୂପ ଅବଗତ ହେଲେ ଲୋକ ତ୍ରିଗୁଣାତୀତ ହୋଇପାରେ । ସେ ଅବସ୍ଥାରେ ହିଁ ମୋକ୍ଷ ଲାଭହୁଏ । ପରବର୍ତ୍ତୀ ଦୁଇ ଶ୍ଳୋକରେ ସେହି କଥାହିଁ କୁହାଯିବ ।

ନାନ୍ୟଂ ଗୁଣେଭ୍ୟଃ କର୍ତ୍ତାରଂ ଯଦାଦ୍ରଷ୍ଟାନୁପଶ୍ୟତି ।
ଗୁଣେଭ୍ୟଶ୍ଚ ପରଂ ବେତ୍ତି ମଦ୍‌ଭାବଂ ସୋଽଧିଗଚ୍ଛତି । ୧୯ ।
ଗୁଣାନେତାନତୀତ୍ୟ ତ୍ରୀନ୍ ଦେହୀ ଦେହସମୁଦ୍‌ଭବାନ୍
ଜନ୍ମମୃତ୍ୟୁଜରାଦୁଃଖୈର୍ବିମୁକ୍ତୋଽମୃତମଶ୍ନୁତେ । ୨୦ ।

୧୯ । ଅନ୍ୱୟ ଦୀପିକା—ଯଦା ଦ୍ରଷ୍ଟା ( ଯେତେବେଳେ ଜୀବାତ୍ମା ) ଗୁଣେଭ୍ୟଃ ( ତ୍ରିଗୁଣରୁ ) ଅନ୍ୟଂ ( ଅନ୍ୟକୁ ) କର୍ତ୍ତାରଂ ( କର୍ତ୍ତା ବୋଲି ) ନ ଅନୁପଶ୍ୟତି ( ନ ଦେଖେ ), ଗୁଣେଭ୍ୟଃ ଚ ପରଂ ( ଗୁଣ ସମୂହରୁ ଅତୀତ ) [ ବ୍ରହ୍ମଙ୍କୁ ] ବେତ୍ତି ( ଜାଣନ୍ତି ), [ ସେତେବେଳେ ] ସଃ ( ସେ ) ମଦ୍‌ଭାବ ( ବ୍ରହ୍ମଭାବ ) ଅଧିଗଚ୍ଛନ୍ତି ( ପ୍ରାପ୍ତ ହୁଅନ୍ତି ) ।

ଅନୁବାଦ—ଯେତେବେଳେ ଜୀବାତ୍ମା ( ଦ୍ରଷ୍ଟା ) ଗୁଣଠାରୁ ଅନ୍ୟ କାହାକୁ ମଧ୍ୟ କର୍ତ୍ତାବୋଲି ନ ଜାଣନ୍ତି ଅର୍ଥାତ୍ ପ୍ରକୃତିର ଗୁଣମାନେହିଁ ସମସ୍ତ କର୍ମ କରନ୍ତି, ମୁଁ କିଛି କରେନାହିଁ ଏହା ବୁଝି ପାରନ୍ତି ଏବଂ ତ୍ରିଗୁଣରୁ ଅତୀତ ବ୍ରହ୍ମବସ୍ତୁକୁ ଜାଣି ପାରନ୍ତି, ସେତେବେଳେ ସେ ମଦ୍‌ଭାବ ବା ବ୍ରହ୍ମଭାବ ପ୍ରାପ୍ତ ହୁଅନ୍ତି ଅର୍ଥାତ୍ ତ୍ରିଗୁଣାତୀତ ହୁଅନ୍ତି ।

ସୁବୋଧିନୀ ଟୀକା—ତଦେବଂ ପ୍ରକୃତିଗୁଣସଙ୍ଗକୃତଂ ସଂସାର-ପ୍ରପଞ୍ଚମୁକ୍ତ୍ୱେଦାନୀଂ ତଦ୍ ବିବେକତୋ ମୋକ୍ଷଂ ଦର୍ଶୟତି—ନାନ୍ୟମିତି, ଯଦା ତୁ ଦ୍ରଷ୍ଟା ବିବେକୀ ଭୂତ୍ୱା ବୁଦ୍ଧ୍ୟାଦ୍ୟାକାରପରିଣତେଭ୍ୟୋ ଗୁଣେଭ୍ୟୋଽନ୍ୟଂ କର୍ତ୍ତାରଂ ନାନୁପଶ୍ୟତି, ଅତଏବ ଗୁଣା ଏବ କର୍ମାଣି କୁର୍ବନ୍ତୀତି ପଶ୍ୟତି ଗୁଣେଭ୍ୟଶ୍ଚ ପରଂ ବ୍ୟତିରିକ୍ତଂ ତତ୍‌ସାକ୍ଷିଣ ମାତ୍ମାନଂ ବେତ୍ତି, ସ ତୁ ମଦ୍‌ଭାବଂ ବ୍ରହ୍ମତ୍ୱମଧିଗଚ୍ଛତି ପ୍ରାପ୍ନୋତି ।

୨୦ । ଅନ୍ୱୟ ଦୀପିକା—ଦେହୀ (ଜୀବାତ୍ମା) ଦେହସମୁଦ୍‌ଭବାନ୍ ( ଦେହୋତ୍ପତ୍ତିର ବୀଜ ସ୍ୱରୂପ ) ଏତାନ୍ ତ୍ରୀନ୍ ଗୁଣାନ୍ ( ଏହି ତିନିଗୁଣକୁ ) ଅତୀତ୍ୟ ( ଅତିକ୍ରମ କରି ) ଜନ୍ମମୃତ୍ୟୁଜରାଦୁଃଖୈଃ ବିମୁକ୍ତଃ ( ଜନ୍ମ ମରଣ ଜରା-ଦୁଃଖରୁ ମୁକ୍ତହୋଇ) ଅମୃତମ୍ ଅଶ୍ନୁତେ (ଅମୃତତ୍ୱ ଅର୍ଥାତ୍ ମୋକ୍ଷଲାଭ କରନ୍ତି) ।

ଅନୁବାଦ—ଜୀବାତ୍ମା ଦେହ ଉତ୍ପତ୍ତିର କାରଣ ସ୍ୱରୂପ ଏହି ତିନି ଗୁଣକୁ ଅତିକ୍ରମ କରି ଜନ୍ମ-ମୃତ୍ୟୁ-ଜରା ଦୁଃଖରୁ ମୁକ୍ତହୋଇ ଅମୃତତ୍ୱ ଅର୍ଥାତ୍ ମୋକ୍ଷଲାଭ କରନ୍ତି ।

ସୁବୋଧିନୀ ଟୀକା—ତତଶ୍ଚ ଗୁଣକୃତସଂସାରାନର୍ଥନିବୃତ୍ତ୍ୟା କୃତାର୍ଥୋ ଭବତୀତ୍ୟାହ, ଗୁଣାନିତି, ଦେହାଦ୍ୟାକାରଃ ସମୁଦ୍‌ଭବଃ ପରିଣାମୋ ଯେଷାଂ ତେ ଦେହସମୁଦ୍‌ଭବାଃ, ତାନେତାଂସ୍ତ୍ରୀନପି ଗୁଣାନତୀତ୍ୟାତିକ୍ରମ୍ୟ ତତ୍କୃତୈର୍ଜନ୍ମାଦିଭିର୍ବିମୁକ୍ତଃ ସନ୍ନମୃତମଶ୍ନୁତେ ପରମାନନ୍ଦଂ ପ୍ରାପ୍ନୋତି ।

ଅର୍ଜ୍ଜୁନ ଉବାଚ

କୈର୍ଲିଙ୍ଗୈସ୍ତ୍ରୀନ୍ ଗୁଣାନେତାନତୀତୋ ଭବତି ପ୍ରଭୋ ।
କିମାଚାରଃ କଥଂ ଚୈତାଂସ୍ତ୍ରୀନ୍ ଗୁଣାନତିବର୍ତ୍ତତେ । ୨୧ ।

ଶ୍ରୀଭଗବାନୁବାଚ

ପ୍ରକାଶଂ ଚ ପ୍ରବୃତ୍ତିଂ ଚ ମୋହମେବଚ ପାଣ୍ଡବ ।
ନ ଦ୍ୱେଷ୍ଟି ସଂପ୍ରବୃତ୍ତାନି ନ ନିବୃତ୍ତାନି କାଙ୍କ୍ଷତି । ୨୨ ।

ବିବୃତ—ସାଂଖ୍ୟବାଦୀମାନେ ଯାହାକୁ ତ୍ରିଗୁଣାତ୍ମକ ପ୍ରକୃତି କହନ୍ତି ଗୀତା ଓ ବେଦାନ୍ତରେ ତାହାହିଁ ମାୟା । ପ୍ରକୃତିର ଗୁଣ ସଙ୍ଗରୁ ଜୀବର ସଂସାର ବନ୍ଧନ, ଏହି ତ୍ରିଗୁଣ ଅତିକ୍ରମ କରି ପାରିଲେ ଅର୍ଥାତ୍ ମାୟାକୁ ଛିନ୍ନ କରି ପାରିଲେ ଜୀବର ମୁକ୍ତିହୁଏ । ସାଂଖ୍ୟମତରେ ପ୍ରକୃତି ପୁରୁଷର ପାର୍ଥକ୍ୟ ଜ୍ଞାନ ହେଲେ ମୁକ୍ତି ମିଳେ ମାତ୍ର ଗୀତା କହନ୍ତି ପ୍ରକୃତି ପୁରୁଷ ମୂଳ ବା ସ୍ୱତନ୍ତ୍ର ତତ୍ତ୍ୱ ନୁହେ । ପ୍ରକୃତି ପୁରୁଷ ଉପରେ ଯେଉଁ ପରମାତ୍ମା ଅଛନ୍ତି ଜୀବ ଯେତେବେଳେ ତାହାଙ୍କୁ ଜାଣିପାରେ ସେତେବେଳେ ସେ ମୋକ୍ଷପ୍ରାପ୍ତ ହୁଏ ।

୨୧ । ଅନ୍ୱୟ ଦୀପିକା—ଅର୍ଜ୍ଜୁନ ଉବାଚ ( ଅର୍ଜ୍ଜୁନ କହିଲେ ); [ହେ] ପ୍ରଭୋ । କୈଃ ଲିଙ୍ଗୈଃ ( କେଉଁ କେଉଁ ଚିହ୍ନଦ୍ୱାରା ) [ଦେହୀ] ଏତାନ୍ ତ୍ରୀନ୍ ଗୁଣାନ୍ ( ଏହି ତିନ ଗୁଣରୁ ) ଅତୀତଃ ଭବତି ( ମୁକ୍ତ ହୁଅନ୍ତି ) । କିମାଚାରଃ ( କିପରି ଆଚାରଯୁକ୍ତ ହୁଅନ୍ତି ? ) କଥଂଚ ( ଓ କିପରି ) ଏତାନ୍ ତ୍ରୀନ୍ ଗୁଣାନ୍ ( ଏହି ଗୁଣତ୍ରୟକୁ ) ଅତିବର୍ତ୍ତତେ ( ଅତିକ୍ରମ କରନ୍ତି ) ।

ଅନୁବାଦ—ଅର୍ଜ୍ଜୁନ କହିଲେ—ହେ ପ୍ରଭୁ । କେଉଁ କେଉଁ ଲକ୍ଷଣରୁ ଜଣାଯାଏ ଯେ, ଜୀବାତ୍ମା ଏହି ତିନଗୁଣ ଅତିକ୍ରମ କରି ଅଛନ୍ତି ? ସେ କିପରି ଆଚରଣ କରନ୍ତି ଏବଂ କି ପ୍ରକାରେ ଏହି ତିନ ଗୁଣକୁ ଅତିକ୍ରମ କରାଯାଏ ?

ସୁବୋଧିନୀ ଟୀକା—ଗୁଣାନେତାନତୀତ୍ୟାମୃତମଶ୍ନୁତ ଇତ୍ୟେତ-ଚ୍ଛ୍ରୁତ୍ୱା ଗୁଣାତୀତସ୍ୟ ଲକ୍ଷଣମାଚାରଂ ଗୁଣାତ୍ୟୟୋପାୟଂଚ ସମ୍ୟଗ୍ ବୁଭୁତ୍ସୁ-ରର୍ଜ୍ଜୁନ ଉବାଚ । କୈରିତି, ହେ ପ୍ରଭୋ କୈର୍ଲିଙ୍ଗୈଃ ଚିହ୍ନୈର୍ଦ୍ଦେହୀତ୍ୟନ୍ୟୁତ୍ପନ୍ନୈ-ସ୍ତ୍ରୀନ୍ଗୁଣାନତୀତୋ ଦେହୀ ଭବତୀତି ଲକ୍ଷଣପ୍ରଶ୍ନ ? କ ଆଚାରୋଽସ୍ୟେତି କିମାଚାରଃ, କଥଂ ବର୍ତ୍ତତ ଇତ୍ୟର୍ଥଃ । କଥଂ ଚ କେନୋପାୟେନୈତାଂ ସ୍ତ୍ରୀନପି ଗୁଣାନତୀତ୍ୟ ବର୍ତ୍ତତେ ? ତତ୍ପ୍ରାପ୍ତୁପାୟଃ ପ୍ରଶ୍ନ ଇତ୍ୟର୍ଥଃ ।

୨୨ । ଅନ୍ୱୟ ଦୀପିକା—ଶ୍ରୀଭଗବାନ୍ ଉବାଚ ( ଶ୍ରୀଭଗବାନ୍ କହିଲେ ) [ହେ] ପାଣ୍ଡବ, ପ୍ରକାଶଂ ଚ ( ପ୍ରକାଶ ଅର୍ଥାତ୍ ଜ୍ଞାନ ) ପ୍ରବୃତ୍ତିଂ ଚ ( କର୍ମ ପ୍ରବୃତ୍ତି ) ମୋହମ୍ ଏବଚ ( ଏବଂ ମୋହ ) ସଂପ୍ରବୃତ୍ତାନି ( ପ୍ରବୃତ୍ତ

ଉଦାସୀନବଦାସୀନୋ ଗୁଣୈର୍ଯୋ ନ ବିଚାଲ୍ୟତେ ।
ଗୁଣା ବର୍ତ୍ତନ୍ତ ଇତ୍ୟେବ ଯୋଽବତିଷ୍ଠତି ନେଙ୍ଗତେ । ୨୩ ।

ହେଲେ ) [ ଯେ ] ନ ଦ୍ୱେଷ୍ଟି ( ଦ୍ୱେଷ କରନ୍ତି ନାହିଁ ), ନିବୃତ୍ତାନି ଚ ( ଏବଂ ନିବୃତ୍ତ ଥିଲେ ) ନ କାଙ୍କ୍ଷତି ( ଆକାଙ୍କ୍ଷା କରନ୍ତି ନାହିଁ ), ( ସେ ଗୁଣାତୀତ ବୋଲି କଥିତ ହୁଅନ୍ତି, ୨୫ଶ ଶ୍ଲୋକ ସହିତ ଅନ୍ୱୟ ) ।

ଅନୁବାଦ—ହେ ପାଣ୍ଡବ, ସତ୍ତ୍ୱ ଗୁଣର ଧର୍ମ ପ୍ରକାଶ ବା ଜ୍ଞାନ, ରଜୋଗୁଣର ଧର୍ମ କର୍ମ ପ୍ରବୃତ୍ତି ଏବଂ ତମୋଗୁଣର ଧର୍ମ ମୋହ । ଏହି ସମସ୍ତ ଗୁଣଧର୍ମ ପ୍ରବୃତ୍ତ ହେଲେହେଁ ଯେ ଦୁଃଖ ବୁଦ୍ଧିରେ ଦ୍ୱେଷ କରନ୍ତି ନାହିଁ, କିଂବା ଏହି ସବୁ କାର୍ଯ୍ୟ ନିବୃତ୍ତ ଥିଲେ ମଧ୍ୟ ଯେ ସୁଖ ବୁଦ୍ଧିରେ ଏ ସବୁକୁ ଆକାଙ୍କ୍ଷା କରନ୍ତି ନାହିଁ, ତାହାଙ୍କୁ ହିଁ ତ୍ରିଗୁଣାତୀତ ବୋଲି କୁହାଯାଏ ।

ସୁବୋଧିନୀ ଟୀକା—ସ୍ଥିତପ୍ରଜ୍ଞସ୍ୟ କାସ୍ତଭାଷେତ୍ୟାଦିନା ଦ୍ୱିତୀୟେଽଧ୍ୟାୟେ ପୃଷ୍ଟମପି ଦତ୍ତୋତ୍ତରମପି ପୁନର୍ବିଶେଷବୁଭୁତ୍ସୟା ପୃଚ୍ଛତୀତି ଜ୍ଞାତ୍ୱା ପ୍ରଶ୍ନାନନ୍ତରେଣ ତସ୍ୟ ଲକ୍ଷଣାଦିକଂ ଶ୍ରୀଭଗବାନୁବାଚ ପ୍ରକାଶଂ ଚେତ୍ୟାଦି-ଷଡ୍ଭିଃ, ତତ୍ରୈକେନ ଲକ୍ଷଣମାହ—ପ୍ରକାଶମିତି । ପ୍ରକାଶଂଚ ସର୍ବଦ୍ୱାରେଷୁ ଦେହେଽସ୍ମିନ୍ନିତି ପୂର୍ବୋକ୍ତଂ ସତ୍ତ୍ୱକାର୍ଯ୍ୟଂ । ପ୍ରବୃତ୍ତିଂଚ ରଜଃ କାର୍ଯ୍ୟମ୍ । ମୋହଂ ଚ ତମଃ କାର୍ଯ୍ୟମ୍, ଉପଲକ୍ଷଣମେତତ୍ ସତ୍ତ୍ୱାଦୀନାଂ । ସର୍ବାଣ୍ୟପି କାର୍ଯ୍ୟାଣି ଯଥାଯଥଂ ସମ୍ପ୍ରବୃତ୍ତାନି ସ୍ୱତଃ ପ୍ରାପ୍ତାନି ସନ୍ତି ଦୁଃଖବୁଦ୍ଧ୍ୟା ଯୋ ନ ଦ୍ୱେଷ୍ଟି । ନିବୃତ୍ତାନି ଚ ସନ୍ତି ସୁଖବୁଦ୍ଧ୍ୟା ଯୋ ନ କାଙ୍କ୍ଷତି ଗୁଣାତୀତଃ ସ ଉଚ୍ୟତ ଇତି ଚତୁର୍ଥେନାନ୍ୱୟଃ ।

ବିବୃତି—କାରଣ ଉପସ୍ଥିତ ହେଲେ ସତ୍ତ୍ୱଗୁଣର କାର୍ଯ୍ୟ ଜ୍ଞାନ, ରଜୋଗୁଣର କାର୍ଯ୍ୟ କର୍ମପ୍ରବୃତ୍ତି ଓ ତମୋଗୁଣର କାର୍ଯ୍ୟ ମୋହ ଜାତ ହୁଏ, ତହିଁରେ ଦୁଃଖ ବୋଧ କରି ଯେ ବିରକ୍ତ ହୁଅନ୍ତି ନାହିଁ, ଏବଂ ସୁଖାନୁଭବ ପାଇଁ ସେଗୁଡ଼ିକ ନିବାରଣ କରିବାକୁ ଇଚ୍ଛା କରନ୍ତି ନାହିଁ, ଅର୍ଥାତ୍ ଯେ ଗୁଣକ୍ରିୟା ସମୂହକୁ ଅଳୀକ ଘଟନାବଳୀପରି ମିଥ୍ୟା ମନେ କରନ୍ତି, ସେ ଗୁଣାତୀତ ପୁରୁଷ । ଦେହଥିବା ଯାଏ ତ୍ରିଗୁଣର କାର୍ଯ୍ୟ ଗୁଡ଼ିକ ହିଁ ରହିବ । ଦେହୀ ଏଥିରେ ଲିପ୍ତ ନ ହେଲେ ତ୍ରିଗୁଣାତୀତ ବୋଲାନ୍ତି । ଏଗୁଡ଼ିକ ଗୁଣାତୀତ ପୁରୁଷଙ୍କର ସ୍ୱସଂବେଦ୍ୟ ଲକ୍ଷଣ ଅର୍ଥାତ୍ ଏଗୁଡ଼ିକ ସେ ନିଜେ ବୁଝି ପାରନ୍ତି ।

୨୩ । ଅନ୍ୱୟଦୀପିକା—ଯଃ ( ଯେ ) ଉଦାସୀନବତ୍ ( ଉଦାସୀନଙ୍କ ପରି ) ଆସୀନଃ ( ଅବସ୍ଥିତ ରହି ) ଗୁଣୈଃ ନ ବିଚାଲ୍ୟତେ ( ଗୁଣ ସମ୍ବନ୍ଧଦ୍ୱାରା ବିଚଳିତ ହୁଅନ୍ତି ନାହିଁ ), ଗୁଣାଃ ବର୍ତ୍ତନ୍ତେ ( ଗୁଣ ସମୂହ

ସମଦୁଃଖସୁଖଃ ସ୍ୱସ୍ଥଃ ସମଲୋଷ୍ଟାଶ୍ମକାଞ୍ଚନଃ ।
ତୁଲ୍ୟପ୍ରିୟାପ୍ରିୟୋ ଧୀରସ୍ତୁଲ୍ୟନିନ୍ଦାତ୍ମସଂସ୍ତୁତିଃ । ୨୪ ।

ସ୍ୱକାର୍ଯ୍ୟରେ ପ୍ରବୃତ୍ତ ହୋଇ ଅଛନ୍ତି ) ଇତ୍ୟେବ ( ଏହା ଜାଣିପାରି ) ଯଃ ( ଯେ ) ଅବତିଷ୍ଠତି ( ଅବସ୍ଥାନ କରନ୍ତି ), ନ ଇଙ୍ଗତେ, ( ଚଞ୍ଚଳ ହୁଅନ୍ତି ନାହିଁ ) । [ ସେ ଗୁଣାତୀତ ବୋଲି ଉକ୍ତ ହୁଅନ୍ତି ]

ଅନୁବାଦ— ଯେ ଉଦାସୀନଙ୍କ ପରି ଅବସ୍ଥାନ କରନ୍ତି, ସୁଖ ଦୁଃଖାଦି ଗୁଣମାନଙ୍କ କାର୍ଯ୍ୟରେ ବିଚଳିତ ହୁଅନ୍ତି ନାହିଁ, ଗୁଣମାନେ ସ୍ୱ ସ୍ୱ କାର୍ଯ୍ୟରେ ପ୍ରବୃତ୍ତ ହୋଇ ଅଛନ୍ତି—ମୋର ସେମାନଙ୍କ ସଙ୍ଗେ କୌଣସି ସମ୍ବନ୍ଧ ନାହିଁ—ଏହା ମନେ କରି ଯେ ଚଞ୍ଚଳ ହୁଅନ୍ତି ନାହିଁ, ସେ ଗୁଣାତୀତ ବୋଲି କଥିତ ହୁଅନ୍ତି ।

ସୁବୋଧିନୀ ଟୀକା—ତଦେବ ସ୍ୱସଂବେଦ୍ୟଂ ଗୁଣାତୀତସ୍ୟ ଲକ୍ଷଣ ମୁକ୍ତ୍ୱା ପରସଂବେଦ୍ୟଂ ତସ୍ୟଲକ୍ଷଣଂ ବକ୍ତୁଂ ଦ୍ୱିତୀୟପ୍ରଶ୍ନସ୍ୟ କମାଗ୍ରହ ଇତ୍ୟସ୍ୟୋତ୍ତରମାହ—ଉଦାସୀନବଦିତି ବିଭିଃ । ଉଦାସୀନବତ୍ ସାକ୍ଷିତୟା-ସୀନଃ ସ୍ଥିତଃ ସନ୍ ଗୁଣୈ ଗୁଣକାର୍ଯ୍ୟୈଃ ସୁଖଦୁଃଖାଦିଭିର୍ଯୋ ବିଚାଲ୍ୟତେ ସ୍ୱରୂପାନ୍ନ ପ୍ରଚ୍ୟାବ୍ୟତେ । ଅପିତୁ ଗୁଣା ଏବ ସ୍ୱକାର୍ଯ୍ୟେଷୁ ବର୍ତ୍ତନ୍ତେ । ଏତୈର୍ମମ ସମ୍ବନ୍ଧ ଏବ ନାସ୍ତୀତି ବିବେକଜ୍ଞାନେନ ଯ ତୁଷ୍ଣୀମବତିଷ୍ଠତି । ପରସ୍ମୈପଦ ମାର୍ଷମ୍ । ନେଙ୍ଗତେ ନ ଚଲତି ।

ବବୃତ—୨୨ଶ ଶ୍ଳୋକରେ ଗୁଣାତୀତ ପୁରୁଷଙ୍କର ସ୍ୱସଂବେଦ୍ୟ ଲକ୍ଷଣ କହି ଏଠାରେ ପରସଂବେଦ୍ୟ ଲକ୍ଷଣ ଅର୍ଥାତ୍ ଯେଉଁ ଲକ୍ଷଣ ଦେଖି ଅନ୍ୟଲୋକେ ତାଙ୍କୁ ଗୁଣାତୀତ ବୋଲି ଚିହ୍ନି ପାରିବେ ତାହା କହୁଅଛନ୍ତି ।

୨୪ । ଅନ୍ୱୟ ଦୀପିକା—[ଯେ] ସମଦୁଃଖସୁଖଃ ( ଦୁଃଖରେ ଓ ସୁଖରେ ସମଜ୍ଞାନ ବିଶିଷ୍ଟ ), ସ୍ୱସ୍ଥଃ ( ସ୍ୱରୂପରେ ଅବସ୍ଥିତ ), ସମଲୋଷ୍ଟାଶ୍ମ-କାଞ୍ଚନଃ ( ମାଟି ପଥର ଓ ସୁନାରେ ଯାହାଙ୍କର ସମାନ ଜ୍ଞାନ ), ତୁଲ୍ୟ ପ୍ରିୟା-ପ୍ରିୟଃ ( ପ୍ରିୟ ଓ ଅପ୍ରିୟ ବିଷୟରେ ଯେ ସମାନବୁଦ୍ଧିଯୁକ୍ତ ), ଧୀରଃ (ବୁଦ୍ଧିମାନ୍), ତୁଲ୍ୟନିନ୍ଦାତ୍ମସଂସ୍ତୁତିଃ ( ନିଜର ନିନ୍ଦା ଓ ସ୍ତୁତିରେ ଯାହାଙ୍କର ସମାନ ଜ୍ଞାନ ) ( ତାହାଙ୍କୁହିଁ ଗୁଣାତୀତ ବୋଲି କୁହାଯାଏ ) ।

ଅନୁବାଦ—ସୁଖ ଓ ଦୁଃଖ ଯାହାଙ୍କ ପକ୍ଷରେ ସମାନ, ଯେ ସ୍ୱରୂପାବସ୍ଥାରେ ଅବସ୍ଥିତ ଅର୍ଥାତ୍ ସର୍ବଦା ପ୍ରସନ୍ନ ରହନ୍ତି, ମାଟି, ପଥର, ସୁନା ଯାହାଙ୍କ ନିକଟରେ ସମାନ, ପ୍ରିୟ ଅପ୍ରିୟ ଯାହାଙ୍କର ସମାନ, ନିଜ ନିନ୍ଦା ଓ ପ୍ରଶଂସାରେ ଯାହାଙ୍କର ସମାନ ଜ୍ଞାନ, ସେହି ଧୈର୍ଯ୍ୟଶୀଳ ପୁରୁଷହିଁ ଗଣାତୀତ ।

ମାନାପମାନୟୋସ୍ତୁଲ୍ୟସ୍ତୁଲ୍ୟୋମିତ୍ରାରିପକ୍ଷୟୋଃ ।
ସର୍ବାରମ୍ଭପରିତ୍ୟାଗୀ ଗୁଣାତୀତଃ ସ ଉଚ୍ୟତେ । ୨୫ ।

ସୁବୋଧିନୀ ଟୀକା—ଅପିଚ ସମେତି । ସମେ ଦୁଃଖସୁଖେ ଯସ୍ୟ । ଯତଃ ସ୍ୱସ୍ଥଃ ସ୍ୱରୂପ ଏବ ସ୍ଥିତଃ । ଅତଏବ ସମାନ ଲୋଷ୍ଟାଶ୍ମକାଞ୍ଚନାନି ଯସ୍ୟ । ତୁଲ୍ୟେ ପ୍ରିୟାପ୍ରିୟେ ସୁଖଦୁଃଖହେତୁଭୂତେ ଯସ୍ୟ । ଧୀରୋଧୀମାନ୍ । ତୁଲ୍ୟା ନିନ୍ଦାତ୍ମସ୍ତୁତିଃ ସଂସ୍ତୁତିଶ୍ଚ ଯସ୍ୟ ।

୨୫ । ଅନ୍ୱୟ ଦୀପିକା—[ ଯେ ] ମାନାପମାନୟୋଃ ତୁଲ୍ୟ (ମାନ ଓ ଅପମାନରେ ସମଭାବାପନ୍ନ), ମିତ୍ରାରିପକ୍ଷୟୋଃ ତୁଲ୍ୟଃ (ମିତ୍ରପକ୍ଷ ଓ ଶତ୍ରୁପକ୍ଷରେ ସମବୁଦ୍ଧିସମ୍ପନ୍ନ ) ସର୍ବାରମ୍ଭପରିତ୍ୟାଗୀ ( ସବୁ ପ୍ରକାର ଉଦ୍ୟମ-ପରିତ୍ୟାଗୀ ) ସଃ ଗୁଣାତୀତଃ ଉଚ୍ୟତେ ( ସେ ଗୁଣାତୀତ ବୋଲି କଥିତ ହୁଅନ୍ତି ) ।

ଅନୁବାଦ—ସମ୍ମାନ ଓ ଅପମାନରେ ଯାହାଙ୍କର ସମାନ ଜ୍ଞାନ, ମିତ୍ରପକ୍ଷ ଓ ଶତ୍ରୁପକ୍ଷ ଉଭୟଙ୍କ ଯାହାଙ୍କର ସମାନ ବୁଦ୍ଧି, ଫଳର ଆକାଂକ୍ଷା ରଖି ଯେ କୌଣସି କାର୍ଯ୍ୟାରମ୍ଭ କରନ୍ତି ନାହିଁ, ଏପରି ଲୋକ ଗୁଣାତୀତ ବୋଲି କଥିତ ହୁଅନ୍ତି ।

ସୁବୋଧିନୀ ଟୀକା—ଅପିଚ—ମାନେତି । ମାନେ ଅପମାନେ ଚ ତୁଲ୍ୟଃ । ମିତ୍ରପକ୍ଷେ ଅରିପକ୍ଷେ ଚ ତୁଲ୍ୟଃ । ସର୍ବାନ୍ ଦୃଷ୍ଟାଦୃଷ୍ଟାର୍ଥାନାରମ୍ଭାନୁଦ୍ୟମାନ୍ ପରିତ୍ୟକ୍ତୁଂ ଶୀଳଂ ଯସ୍ୟ ସଃ । ଏବଂଭୂତାଶ୍ଚରଯୁକ୍ତୋ, ଗୁଣାତୀତ ଉଚ୍ୟତେ ।

ବିବୃତି—ଅର୍ଜୁନଙ୍କ ପ୍ରଶ୍ନର ଉତ୍ତରରେ ଭଗବାନ୍ ଗୁଣାତୀତ ପୁରୁଷଙ୍କର ଯେଉଁ ବର୍ଣ୍ଣନା କଲେ ତହିଁରୁ ଦେଖାଯିବ ଯେ—ଦ୍ୱିତୀୟ ଅଧ୍ୟାୟରେ ବର୍ଣ୍ଣିତ ସ୍ଥିତ ପ୍ରଜ୍ଞର ଲକ୍ଷଣ ଓ ଦ୍ୱାଦଶ ଅଧ୍ୟାୟରେ ବର୍ଣ୍ଣିତ ଭକ୍ତିମାନ୍ ପୁରୁଷଙ୍କ ଲକ୍ଷଣ ସଙ୍ଗେ ଏହା ପ୍ରାୟ ସମାନ, ଏପରିକି ଏ ସବୁ ସ୍ଥଳରେ ସର୍ବାରମ୍ଭ ପରିତ୍ୟାଗୀ, ତୁଲ୍ୟନିନ୍ଦାତ୍ମସଂସ୍ତୁତିଃ, ଉଦାସୀନ ପ୍ରଭୃତି ବିଶେଷଣ ଗୁଡ଼ିକ ଶବ୍ଦଶଃ ପ୍ରଯୁକ୍ତ ହୋଇ ଅଛି । ତ୍ରୟୋଦଶ ଅଧ୍ୟାୟରେ ଈଶ୍ୱରପ୍ରାପ୍ତିର ଯେଉଁ ଗୁଡ଼ିଏ ଗୋଟି ମାର୍ଗ ପ୍ରଦର୍ଶିତ ହୋଇଅଛି ତନ୍ମଧ୍ୟରୁ ଯେ କୌଣସି ମାର୍ଗରେ ସିଦ୍ଧିଲାଭ କରିବା ପୁରୁଷଙ୍କର ଲକ୍ଷଣ, ଅନ୍ୟମାର୍ଗରେ ସିଦ୍ଧ ପୁରୁଷଙ୍କ ଲକ୍ଷଣ ସଙ୍ଗେ ସମାନ । ଗୀତାମତରେ କି ଜ୍ଞାନୀ, କି କର୍ମୀ ସମସ୍ତେ ଭକ୍ତିଦ୍ୱାରାହିଁ ସିଦ୍ଧିଲାଭ କରନ୍ତି, ଏଠାରେ ମଧ୍ୟ ଭକ୍ତିବଳରେ ଲୋକ ତ୍ରିଗୁଣାତୀତ ଅବସ୍ଥା ପ୍ରାପ୍ତ ହୁଏ—ଏହା ପରବର୍ତ୍ତୀ ଶ୍ଳୋକରେ ବୁଝାଯିବ ।

ମାଂ ଚ ଯୋଽବ୍ୟଭିଚାରେଣ ଭକ୍ତିଯୋଗେନ ସେବତେ ।
ସ ଗୁଣାନ୍ ସମତୀତ୍ୟୈତାନ୍ ବ୍ରହ୍ମଭୂୟାୟ କଳ୍ପତେ ।୨୬।
ବ୍ରହ୍ମଣୋ ହି ପ୍ରତିଷ୍ଠାହମମୃତସ୍ୟାବ୍ୟୟସ୍ୟ ଚ ।
ଶାଶ୍ୱତସ୍ୟ ଚ ଧର୍ମସ୍ୟ ସୁଖସ୍ୟୈକାନ୍ତିକସ୍ୟ ଚ ।୨୭।

ଇତି ଶ୍ରୀ ମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍ ଭଗବଦ୍ ଗୀତାସୁପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସଂବାଦେ ଗୁଣତ୍ରୟ ବିଭାଗ ଯୋଗୋ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।

୨୬। ଅନ୍ୱୟଦୀପିକା—ଯଃ (ଯେଉଁ ଲୋକ) ମାଂ (ଆମ୍ଭକୁ) ଅବ୍ୟଭିଚାରେଣ ଭକ୍ତିଯୋଗେନ (ଐକାନ୍ତିକ ଭକ୍ତିଯୋଗରେ) ସେବତେ (ଉପାସନା କରନ୍ତି) ସଃ (ସେ) ଏତାନ୍ (ଏହିସବୁ) ଗୁଣାନ୍ (ଗୁଣକୁ) ସମତୀତ୍ୟ (ଅତିକ୍ରମ କରି) ବ୍ରହ୍ମଭୂୟାୟ (ବ୍ରହ୍ମଭାବ ଲାଭରେ) କଳ୍ପତେ (ସମର୍ଥ ହୁଅନ୍ତି) ।

ଅନୁବାଦ—ଯେଉଁ ଲୋକ ଏକାନ୍ତ ଭକ୍ତିସହକାରେ ଆମ୍ଭକୁ ଉପାସନା କରନ୍ତି ସେ ଏହି ଗୁଣତ୍ରୟକୁ ଅତିକ୍ରମ କରି ବ୍ରହ୍ମଭାବଲାଭରେ ସମର୍ଥ ହୁଅନ୍ତି ।

ସୁବୋଧିନୀ ଟୀକା—କଥଂ ଚୈତାଂସ୍ତ୍ରୀନ୍ ଗୁଣାନତିବର୍ତ୍ତତ ଇତ୍ୟସ୍ୟ ପ୍ରଶ୍ନସ୍ୟୋତ୍ତରମାହ ମାଂ ଚେତି । ଚ ଶବ୍ଦୋଽବଧାରଣାର୍ଥଃ । ମାମେବ ପରମେଶ୍ୱରମବ୍ୟଭିଚାରେଣୈକାନ୍ତେନ ଭକ୍ତିଯୋଗେନ ଯଃ ସେବତେ ସ ଏତାନ୍ ଗୁଣାନ୍ ସମତୀତ୍ୟ ସମ୍ୟଗତିକ୍ରମ୍ୟ ବ୍ରହ୍ମଭୂୟାୟ ବ୍ରହ୍ମତ୍ୱାୟ ମୋକ୍ଷାୟ କଳ୍ପତେ ସମର୍ଥୋ ଭବତି ।

୨୭। ଅନ୍ୱୟଦୀପିକା—ହି (କାରଣ) ଅହଂ (ଆମ୍ଭେ) ବ୍ରହ୍ମଣଃ (ବ୍ରହ୍ମଙ୍କର) ପ୍ରତିଷ୍ଠା (ପ୍ରତିମା, ଆଶ୍ରୟ), ଅବ୍ୟୟସ୍ୟ ଅମୃତସ୍ୟ ଚ (ଏବଂ ଅବ୍ୟୟ ମୋକ୍ଷର), ଶାଶ୍ୱତସ୍ୟ ଧର୍ମସ୍ୟ ଚ (ଏବଂ ସନାତନ ଧର୍ମର), ଐକାନ୍ତିକସ୍ୟ ସୁଖସ୍ୟ ଚ (ଏବଂ ଐକାନ୍ତିକ ସୁଖର) [ପ୍ରତିଷ୍ଠା ଅଟୁଁ] ।

ଅନୁବାଦ—କାରଣ ଆମ୍ଭେ ବ୍ରହ୍ମଙ୍କର, ନିତ୍ୟ ମୋକ୍ଷର, ସନାତନ ଧର୍ମର ଏବଂ ଅଖଣ୍ଡିତ ସୁଖର ଆଶ୍ରୟ ଅଟୁଁ ।

ସୁବୋଧିନୀ ଟୀକା—ତତ୍ର ହେତୁମାହ । ବ୍ରହ୍ମଣୋ ହୀତି । ହି ଯସ୍ମାଦ୍ ବ୍ରହ୍ମଣୋଽହଂ ପ୍ରତିଷ୍ଠା ପ୍ରତିମା ଘନୀଭୂତବ୍ରହ୍ମୈବାହଂ ଯଥା ଘନୀଭୂତ-ପ୍ରକାଶ ଏବ ସୂର୍ଯ୍ୟମଣ୍ଡଳଂ ତଦ୍ୱଦିତ୍ୟର୍ଥଃ । ତଥା ଅବ୍ୟୟସ୍ୟ ନିତ୍ୟସ୍ୟ ଅମୃତସ୍ୟ ଚ ମୋକ୍ଷସ୍ୟ ନିତ୍ୟମୁକ୍ତତ୍ୱାତ୍ ତଥା ତତ୍ସାଧନସ୍ୟ ଶାଶ୍ୱତସ୍ୟ ଧର୍ମସ୍ୟ ଚ ଶୁଦ୍ଧସତ୍ତ୍ୱାତ୍ମକତ୍ୱାତ୍ ତଥୈକାନ୍ତିକସ୍ୟାଖଣ୍ଡିତସ୍ୟ ସୁଖସ୍ୟ ଚ ପ୍ରତିଷ୍ଠାହମ୍, ପରମାନନ୍ଦୈକରୂପତ୍ୱାତ୍, ଅତୋ ମତ୍ସେବକୋ ମଦ୍ଭାବସ୍ୟାବଶ୍ୟମ୍ଭାବିତ୍ୱାଦ୍ ଯୁକ୍ତମେବୋକ୍ତଂ ବ୍ରହ୍ମଭୂୟାୟ କଳ୍ପତ ଇତି ।

ବୃତ୍ତାଧୀନ ଗୁଣା ସଙ୍ଗ ପ୍ରସଞ୍ଜିତତ୍ତ୍ୱବାମ୍ମୁଧ୍ମ୍ ।
ସୁଖଂ ତରଣ ମଦ୍ଭକ୍ତ ଇତ୍ୟକ୍ତି ଚତୁର୍ଦ୍ଦଶେ ।

ବକୃତ—ମାୟା-ମନୁଷ୍ୟ-ରୂପଧାରୀ ଶ୍ରୀକୃଷ୍ଣ ସଗୁଣ । ସଗୁଣ କୃଷ୍ଣଙ୍କ ଭକ୍ତଭାବରେ ସେବା କଲେ ଲୋକ କପର ଗୁଣାତୀତ ହେବେ ? ତେଣୁ ଭଗବାନ୍ ଏଠାରେ କହଲେ, "ଅମ୍ଭେ ବ୍ରହ୍ମଙ୍କର ପ୍ରତିଷ୍ଠା ଅର୍ଥାତ୍ ସୋପାଧିକ ବ୍ରହ୍ମ । ଯେପର ସୂର୍ଯ୍ୟ କରଣର ଘନୀଭୂତ ପ୍ରକାଶକୁ ସୂର୍ଯ୍ୟମଣ୍ଡଳ ବୋଲଯାଏ ବସ୍ତୁତଃ କରଣ ଓ ମଣ୍ଡଳ ମଧ୍ୟରେ କୌଣସି ପ୍ରଭେଦ ନାହିଁ, ସେହପର ନର୍ଗୁଣ ବ୍ରହ୍ମ ମାୟାରୂପ ଉପାଧି ଯୁକ୍ତ ହୋଇ ବାସୁଦେବ ରୂପରେ ପ୍ରକାଶିତ ହୋଇ ଅଛନ୍ତି । ପ୍ରକୃତରେ ସଗୁଣ ନର୍ଗୁଣ ମଧ୍ୟରେ କଛମାତ୍ର ପ୍ରଭେଦ ନାହିଁ । ଏପର ଅବସ୍ଥାରେ ଅମ୍ଭର ସଗୁଣ ମୂର୍ତ୍ତିରେ ଏକାନ୍ତ ଭକ୍ତ କରବା ବ୍ୟକ୍ତ ଯେ ଗୁଣାତୀତ ହେବେ ଏଥିରେ ସନ୍ଦେହ କରଯାଇ ନପାରେ । ଅମ୍ଭେ ମୋକ୍ଷ ସ୍ୱରୂପ ଏବଂ ମୋକ୍ଷ ସାଧନର ଉପାୟ ଅକ୍ଷୟ ଧର୍ମସ୍ୱରୂପ ଅଟୁଁ । ଅମ୍ଭେ ପରମାନନ୍ଦ ସ୍ୱରୂପ ତେଣୁ ଅକ୍ଷୟ ସୁଖର ପ୍ରତିଷ୍ଠାତା ଅଟୁଁ । ଏହ ହେତୁରୁ ଅମ୍ଭଙ୍କୁ ଭକ୍ତ କଲେ ଲୋକ ନଶ୍ଚୟ ଗୁଣାତୀତ ହେବେ ।"

ବ୍ରହ୍ମତ୍ୱ ପ୍ରାପ୍ତି ବା ମୋକ୍ଷପ୍ରାପ୍ତି ସମ୍ବନ୍ଧରେ ଭନ୍ନ ଭନ୍ନ ଦର୍ଶନର ମତ ଭନ୍ନ ଭନ୍ନ । ନରୀଶ୍ୱର ସାଂଖ୍ୟବାଦୀମାନେ କହନ୍ତି, ପଞ୍ଚବିଂଶତ ତତ୍ତ୍ୱର ଜ୍ଞାନ ବା ପ୍ରକୃତ ପୁରୁଷଙ୍କର ପାର୍ଥକ୍ୟ ଜ୍ଞାନ ଦ୍ୱାରା କୈବଲ୍ୟ ମୁକ୍ତ ଲାଭ ହୁଏ । ପାତଞ୍ଜଳ ଯୋଗଦର୍ଶନମତରେ ଧ୍ୟାନ ଧାରଣା ବା ପରଶେଷରେ ସମାଧି ଦ୍ୱାରା ମୁକ୍ତ ମିଳେ, ସାଂଖ୍ୟଦର୍ଶନରେ ଯାହାକୁ ପ୍ରକୃତ କହନ୍ତି ବେଦାନ୍ତ ଦର୍ଶନରେ ତାହା ମାୟାନାମରେ କଥିତ ହୁଏ, ବେଦାନ୍ତ ମତରେ 'ତତ୍ତ୍ୱମସ୍ୟାଦ ମହାବାକ୍ୟର ଶ୍ରବଣମନନନଦଧ୍ୟାସନାଦଦ୍ୱାରା ଏହ ମାୟା କଟିଗଲେ ବ୍ରହ୍ମ ଭାବ ବା ମୋକ୍ଷ ଲାଭ ହୁଏ, କନ୍ତୁ ଗୀତା ମତରେ ଏକାନ୍ତ ଭକ୍ତ ସହକାରେ ଭଗବାନଙ୍କୁ ସେବାକଲେ ମୋକ୍ଷଲାଭ ହୋଇଥାଏ । ଭକ୍ତ ମାର୍ଗହିଁ ସମସ୍ତ ଲୋକଙ୍କ ପକ୍ଷରେ ସୁଲଭ-ଗୀତାରେ ଭଗବାନ୍ ଏହା ସ୍ୱଚ୍ଛନ୍ଦ କହ ଅଛନ୍ତି । ଏହା ବୋଲି ଜ୍ଞାନ-ମାର୍ଗ, କର୍ମ ମାର୍ଗ ବା ଯୋଗମାର୍ଗ ଯେ ତ୍ୟାଜ୍ୟ ଏକଥା ଗୀତାରେ କୌଣସିଠାରେ ନାହିଁ ।

## ଚତୁର୍ଦ୍ଦଶ ଅଧ୍ୟାୟର ସାରସଂକଳନ

ଗୀତା ମତରେ ଏହ ପରଦୃଶ୍ୟମାନ ବ୍ୟକ୍ତ ସୃଷ୍ଟି ପ୍ରକୃତର ପରଣାମ । ପ୍ରକୃତର ନଜର ସୃଷ୍ଟି କ୍ଷମତା ନ ଥାଏ, ପରମେଶ୍ୱରଙ୍କ ଇଚ୍ଛାରେ ହିଁ ପ୍ରକୃତର କ୍ରିୟାଶକ୍ତି । ସୃଷ୍ଟି କ୍ରିୟାରେ ପରମେଶ୍ୱର ପିତୃସ୍ଥାନୀୟ ଓ ପ୍ରକୃତ ମାତୃସ୍ଥାନୀୟା । ଏହାଂସଯୋଗରୁ ଚରାଚର ଭୂତ ସମୂହର ସୃଷ୍ଟି ହୋଇଥାଏ ।

ସତ୍ତ୍ୱ, ରଜଃ ଓ ତମଃ—ପ୍ରକୃତିର ତିନଗୁଣ ଜୀବାତ୍ମାକୁ ସଂସାରରେ ଆବଦ୍ଧ ରଖେ, ସତ୍ତ୍ୱ ଗୁଣର ଧର୍ମ ପ୍ରକାଶ ବା ଜ୍ଞାନ—ଏହାଦ୍ୱାରା ମନୁଷ୍ୟ ସୁଖ ଭୋଗ କରେ, ରଜୋଗୁଣ ଅନୁରାଗାତ୍ମକ, ଏହା ଲୋକକୁ ସଂସାରରେ କର୍ମରେ ପ୍ରବୃତ୍ତ କରାଏ ଏବଂ ଫଳାକାଂକ୍ଷା ଓ ଆସକ୍ତି ବଶତଃ ରଜୋଗୁଣରୁ ମନୁଷ୍ୟ ଦୁଃଖ ଭୋଗ କରେ । ତମୋଗୁଣର ଧର୍ମ ଅଜ୍ଞାନ ଓ ମୋହ । ଏହାଦ୍ୱାରା ଲୋକ ପ୍ରମାଦ, ଆଳସ୍ୟ ଓ ନିଦ୍ରାରେ ଅଭିଭୂତ ହୋଇପଡ଼େ । ଏହି ତିନଗୁଣ ପୃଥକ୍ ପୃଥକ୍ ନ ରହି ମିଶ୍ରିତଭାବରେ ରହନ୍ତି । ସତ୍ତ୍ୱଗୁଣର ଆଧିକ୍ୟରେ ଲୋକ ସାତ୍ତ୍ୱିକ, ରଜୋଗୁଣର ଆଧିକ୍ୟରେ ରାଜସିକ ଓ ତମୋଗୁଣର ଆଧିକ୍ୟରେ ତାମସିକ ବୋଲି ପରିଚିତ ହୁଏ । ସତ୍ତ୍ୱଗୁଣର ପ୍ରାବଲ୍ୟରେ ନିର୍ମଳଜ୍ଞାନ ଉତ୍ପନ୍ନ ହୁଏ, ରଜୋଗୁଣ ପ୍ରବଳ ହେଲେ କର୍ମପ୍ରବୃତ୍ତି ଓ ଅଶାନ୍ତିମୟ ବିଷୟସ୍ପୃହା ଜାତହୁଏ । ତମୋଗୁଣର ପ୍ରବଳତାରେ କର୍ତ୍ତବ୍ୟ ବିସ୍ମୃତି, ଆଳସ୍ୟ ଓ ଉଦ୍ୟମହୀନତା ଉପସ୍ଥିତ ହୁଏ, ସାତ୍ତ୍ୱିକ କର୍ମର ଫଳ ସୁଖ, ରାଜସିକ କର୍ମର ଫଳ ଦୁଃଖ ଓ ତାମସିକ କର୍ମର ଫଳ ଅଜ୍ଞାନ ।

ସତ୍ତ୍ୱଗୁଣବୃଦ୍ଧି କାଳରେ ଯେବେ ଲୋକର ମୃତ୍ୟୁ ହୁଏ ତେବେ ସେ ସ୍ୱର୍ଗାଦି ଲୋକ ଲାଭ କରେ, ରାଜସିକତା ବୃଦ୍ଧି ବେଳେ ମୃତ୍ୟୁ ହେଲେ ମର୍ତ୍ତ୍ୟ ଲୋକରେ ମନୁଷ୍ୟ ଯୋନିରେ ଜନ୍ମ ହୁଏ ଏବଂ ତମୋଗୁଣ ବୃଦ୍ଧି ବେଳେ ମୃତ୍ୟୁ ହେଲେ ପଶୁପକ୍ଷୀ ପ୍ରଭୃତି ନୀଚ ଯୋନିରେ ଜନ୍ମ ଲାଭ କରେ ।

ସତ୍ତ୍ୱଗୁଣ ବୃଦ୍ଧିରେ ସ୍ୱର୍ଗଲାଭ ହୁଏ ସତ୍ୟ, ମାତ୍ର ମୋକ୍ଷ ଲାଭ ହୁଏ ନାହିଁ, ମୋକ୍ଷ ଲାଭ ପାଇଁ ତ୍ରିଗୁଣାତୀତ ହେବା ଆବଶ୍ୟକ । ଦେହ ଥିବାଯାଏ ପ୍ରକୃତିର କାର୍ଯ୍ୟ ଚାଲିଥାଏ, ତେଣୁ ଗୁଣାତୀତଲୋକ ପ୍ରକୃତିକାର୍ଯ୍ୟରେ ଉଦାସୀନ ହୋଇ ସୁଖଦୁଃଖାଦିରେ ଅଭିଭୂତ ହୁଅନ୍ତି ନାହିଁ । ସବୁ ବିଷୟରେ ତାଙ୍କର ସମତ୍ୱବୁଦ୍ଧି । ଶତ୍ରୁ ମିତ୍ର, ନିନ୍ଦା ପ୍ରଶଂସା, ମାନ, ଅପମାନ—ସର୍ବତ୍ର ସେ ସମାନ ରହନ୍ତି ।

ଏକାନ୍ତ ଭକ୍ତିରେ ପରମେଶ୍ୱରଙ୍କର ଶରଣାପନ୍ନ ହେଲେ ଲୋକ ତ୍ରିଗୁଣକୁ ଅତିକ୍ରମ କରନ୍ତି, ପରମାତ୍ମା ତ୍ରିଗୁଣାତୀତ । ତେଣୁ ଲୋକ ଭକ୍ତିରେ ତନ୍ମୟତା ଲାଭକଲେ ତତ୍‌ସ୍ୱରୂପ ତ୍ରିଗୁଣାତୀତ ହୋଇ ପାଆନ୍ତି, ଏକମାତ୍ର ପରମାତ୍ମାହିଁ ମୋକ୍ଷର, ସନାତନ ଧର୍ମର ଏବଂ ଐକାନ୍ତିକ ସୁଖର ପ୍ରତିଷ୍ଠା ।



# ପଞ୍ଚଦଶୋଽଧ୍ୟାୟଃ

## ପୁରୁଷୋତ୍ତମଯୋଗଃ

ଶ୍ରୀ ଭଗବାନୁବାଚ

ଊର୍ଦ୍ଧ୍ୱମୂଳମଧଃଶାଖମଶ୍ୱତ୍ଥଂ ପ୍ରାହୁରବ୍ୟୟମ୍ ।
ଛନ୍ଦାଂସି ଯସ୍ୟ ପର୍ଣ୍ଣାନି ଯସ୍ତଂ ବେଦ ସ ବେଦବିତ୍ ॥ ୧ ॥

୧ । ଅନ୍ୱୟ଼ଦୀପିକା—ଶ୍ରୀ ଭଗବାନ୍ ଉବାଚ ( ଶ୍ରୀ ଭଗବାନ୍ କହିଲେ ) । ଊର୍ଦ୍ଧ୍ୱମୂଳମ୍ ( ଊର୍ଦ୍ଧ୍ୱଦିଗରେ ଯାହାର ମୂଳ ), ଅଧଃଶାଖମ୍ ( ନିମ୍ନ ଦିଗକୁ ଯାହାର ଶାଖା ବିସ୍ତୃତ ) ଅଶ୍ୱତ୍ଥଂ ( ଅଶ୍ୱତ୍ଥକୁ ) [ ବେଦଜ୍ଞମାନେ ] ଅବ୍ୟୟଂ ( ଅବିନାଶୀ ବୋଲି କହନ୍ତି ) । ଛନ୍ଦାଂସି ( ବେଦ ସମୂହ ) ଯସ୍ୟ ପର୍ଣ୍ଣାନି ( ପତ୍ରଗୁଣି ), ତଂ ( ତାହାକୁ ) ଯଃ ବେଦ ( ଯେ ଜାଣନ୍ତି ) ସଃ ବେଦବିତ୍ ( ସେ ବେଦବେତ୍ତା ) ।

ଅନୁବାଦ—ଶ୍ରୀ ଭଗବାନ୍ କହିଲେ—ଏହି ସଂସାରରୂପ ଅଶ୍ୱତ୍ଥ ବୃକ୍ଷର ମୂଳ ଊର୍ଦ୍ଧ୍ୱଦିଗରେ ଅବସ୍ଥିତ ଓ ଶାଖାସମୂହ ନିମ୍ନଆଡ଼କୁ ବିସ୍ତୃତ—ଏହା ବେଦଜ୍ଞମାନେ କହନ୍ତି । ଏହା ଅବିନାଶୀ, ବେଦସମୂହ ଏହାର ପତ୍ରସ୍ୱରୂପ, ଯେ ଏହି ଅଶ୍ୱତ୍ଥ ବୃକ୍ଷକୁ ଜାଣନ୍ତି ସେ ବେଦଜ୍ଞ ।

ସୁବୋଧିନୀ ଟୀକା—

ବୈରାଗ୍ୟେଣ ବିନା ଜ୍ଞାନଂ ନ ଚ ଭକ୍ତିରତଃ ସ୍ଫୁଟମ୍
ବୈରାଗ୍ୟୋପସ୍କୃତଂ ଜ୍ଞାନମୀଶଃ ପଞ୍ଚଦଶେଽବ୍ରବୀତ୍ ।

ପୂର୍ବାଧ୍ୟାୟାନ୍ତେ ମାଂ ଚ ଯୋଽବ୍ୟଭିଚାରେଣ ଭକ୍ତିଯୋଗେନ ସେବତେ ଇତ୍ୟାଦିନା ପରମେଶ୍ୱରମେକାନ୍ତଭକ୍ତ୍ୟା ଭଜତସ୍ତତ୍ପ୍ରସାଦଲବ୍ଧଜ୍ଞାନେନ ବ୍ରହ୍ମଭାବୋ ଭବତୀତ୍ୟୁକ୍ତମ୍ । ନଚୈକାନ୍ତଭକ୍ତିର୍ଜ୍ଞାନଂ ଚ ବିରକ୍ତସ୍ୟ ସମ୍ଭବତି ବୈରାଗ୍ୟପୂର୍ବକଂ ଜ୍ଞାନମୁପଦେଷ୍ଟୁକାମଃ ପ୍ରଥମଂ ତାବତ୍ ସାର୍ଦ୍ଧଶ୍ଳୋକାଭ୍ୟାଂ ସଂସାରସ୍ୱରୂପଂ ବୃକ୍ଷରୂପକାଲଙ୍କାରେଣ ବର୍ଣ୍ଣୟନ୍ ଭଗବାନୁବାଚ ଊର୍ଦ୍ଧ୍ୱମୂଳମିତି । ଊର୍ଦ୍ଧ୍ୱମୁତ୍ତମଃ କ୍ଷରାକ୍ଷରାଭ୍ୟାମୁତ୍କୃଷ୍ଟଃ ପୁରୁଷୋତ୍ତମୋ ମୂଳଂ ଯସ୍ୟ ତମ୍ । ଅଧ ଇତି ତତୋଽର୍ବାଚୀନାଃ କାର୍ଯ୍ୟୋପାଧୟୋ ହିରଣ୍ୟଗର୍ଭାଦୟୋ ଗୃହ୍ୟନ୍ତେ । ତେ ତୁ ଶାଖା ଇବ ଶାଖା ଯସ୍ୟ ତମ୍ । ଅନଶ୍ୱରତ୍ୱେନ ଶ୍ୱଃ ପ୍ରଭୃତିପର୍ଯ୍ୟନ୍ତମପି ନ ସ୍ଥାସ୍ୟତୀତି ବିଶ୍ୱାସାନର୍ହତ୍ୱାଦଶ୍ୱତ୍ଥଂ

ସାତ୍ୱଃ । ପ୍ରବାହରୂପେଣାବିଚ୍ଛେଦାଦବ୍ୟୟଂ ଚ ପ୍ରାହୁଃ । ଊର୍ଦ୍ଧ୍ୱମୂଳୋଽବାକ୍‌ଶାଖ ଏଷୋଽଶ୍ୱତ୍ଥଃ ସନାତନ ଇତ୍ୟାଦ୍ୟାଃ ଶ୍ରୁତୟଃ । ଛନ୍ଦାଂସି ବେଦା ଯସ୍ୟ ପର୍ଣ୍ଣାନି—ଧର୍ମାଧର୍ମପ୍ରତିପାଦନଦ୍ୱାରେଣ ଚ୍ଛାୟାସ୍ଥାନୀୟୈଃ କର୍ମଫଳୈଃ ସଂସାରବୃକ୍ଷସ୍ୟ ସର୍ବଜୀବାଶ୍ରୟଣୀୟତ୍ୱପ୍ରତିପାଦନାତ୍ ପର୍ଣ୍ଣସ୍ଥାନୀୟା ବେଦାଃ ଯସ୍ତମେବଂଭୂତମଶ୍ୱତ୍ଥଂ ବେଦ ସ ଏବ ବେଦାର୍ଥବିତ୍ । ସଂସାରପ୍ରପଞ୍ଚବୃକ୍ଷସ୍ୟ ମୂଳମୀଶ୍ୱରଃ । ବ୍ରହ୍ମାଦୟସ୍ତଦଂଶାଃ ଶାଖାସ୍ଥାନୀୟାଃ ସ ଚ ସଂସାର ବୃକ୍ଷୋ ବିନଶ୍ୱରଃ ପ୍ରବାହରୂପେଣ ନିତ୍ୟଶ୍ଚ । ବେଦୋକ୍ତୈଃ କର୍ମଭିଃ ସେବ୍ୟତାମାପାଦିତଶ୍ଚ । ଇତ୍ୟେତାବାନ୍ ଏବ ବେଦାର୍ଥଃ । ଅତ ଏବଂ ବିଦ୍ୱାନ୍ ବେଦବିଦିତି ସ୍ତୂୟତେ ।

ବିବୃତି—ଚତୁର୍ଦ୍ଦଶ ଅଧ୍ୟାୟ ଶେଷରେ ଭଗବାନ୍ କହିଥିଲେ—ଯେ ଏକାନ୍ତ ଭକ୍ତିସହ ଉପାସନା କରନ୍ତି, ସେ ନିର୍ଗୁଣାତୀତ ହୋଇ ବ୍ରହ୍ମତ୍ୱ ପ୍ରାପ୍ତ ହୁଅନ୍ତି । କିନ୍ତୁ ବୈରାଗ୍ୟ ଓ ଜ୍ଞାନବିନା ଏକାନ୍ତ ଭକ୍ତି ଅସମ୍ଭବ, ତେଣୁ ବୈରାଗ୍ୟପୂର୍ବକ ଜ୍ଞାନ ସମ୍ବନ୍ଧରେ ଉପଦେଶ ଦେବାକୁ ଇଚ୍ଛାକରି ପ୍ରଥମେ ଭଗବାନ୍ ସଂସାରକୁ ଅଶ୍ୱତ୍ଥ ବୃକ୍ଷସଙ୍ଗେ ତୁଳନା କରୁଅଛନ୍ତି । ସଂସାରକୁ ବୃକ୍ଷ ରୂପରେ ବର୍ଣ୍ଣନା କରିବା ଅତି ପ୍ରାଚୀନ କଳ୍ପନା । ଋଗ୍ ବେଦରେ ଏବଂ କଠୋପନିଷଦ୍‌ରେ ଏହିପରି ବର୍ଣ୍ଣନା ଦେଖାଯାଏ । ଏ ବର୍ଣ୍ଣନା କଠୋପନିଷଦରୁହିଁ ଗୃହୀତ ହୋଇଅଛି । କଠୋପନିଷଦରେ (୬ । ୧) ଅଛି :—

ଊର୍ଦ୍ଧ୍ୱମୂଳୋଽବାକ୍‌ଶାଖ ଏଷୋଽଶ୍ୱତ୍ଥଃ ସନାତନଃ
ତଦେବ ଶୁକ୍ରଂ ତଦ୍‌ବ୍ରହ୍ମ ତଦେବାମୃତମୁଚ୍ୟତେ ।

ଏ ଶ୍ଳୋକରେ ଭଗବାନ୍ କହୁଅଛନ୍ତି—ଏ ସଂସାରରୂପ ବିଚିତ୍ର ବୃକ୍ଷର ମୂଳ ଊର୍ଦ୍ଧ୍ୱଦେଶରେ ଓ ଶାଖା ପ୍ରଭୃତି ନିମ୍ନ ଦେଶରେ । ଏହା ସାଧାରଣ ବୃକ୍ଷପରି ନୁହେ, ସାଧାରଣ ବୃକ୍ଷରମୂଳ ନିମ୍ନ ଦେଶରେ ଓ ଶାଖା ଉପରେ ଥାଏ । ଏପରି କହିବା ଉଦ୍ଦେଶ୍ୟ ଏହି ଯେ, ଅବ୍ୟକ୍ତ ପରମେଶ୍ୱର ବା ପୁରୁଷୋତ୍ତମ ବୈକୁଣ୍ଠରେ ବା ଉପରେ ଅଛନ୍ତି ଏବଂ ତାଙ୍କଠାରୁ ଉତ୍ପନ୍ନ ଏହି ବ୍ୟକ୍ତ ସୃଷ୍ଟି ନିମ୍ନଦେଶରେ ବିସ୍ତୃତ । ପୁଣି ଏଥିରେ କୁହାଯାଇ ଅଛି ଯେ, ବେଦ ଏହି ସଂସାରରୂପ ବୃକ୍ଷର ପତ୍ରସ୍ଥାନୀୟ; ପତ୍ରଦ୍ୱାରା ଯେପରି ବୃକ୍ଷର ପୁଷ୍ଟି ସାଧିତ ହୁଏ, ସେହିପରି ବେଦର କର୍ମକାଣ୍ଡଦ୍ୱାରା ସଂସାରର ପୁଷ୍ଟିବିଧାନ ଓ ରକ୍ଷାକାର୍ଯ୍ୟ ସାଧିତ ହେଉଅଛି ଅର୍ଥାତ୍ ବେଦୋକ୍ତ କର୍ମସମୂହର ଅନୁଷ୍ଠାନ ଦ୍ୱାରା ଏ ସଂସାରର ରକ୍ଷା ହୋଇଅଛି । ଏ କଳ୍ପିତ ବୃକ୍ଷକୁ ଅଶ୍ୱତ୍ଥ—ଏହି ନାମ ଦିଆଯାଇ ଅଛି । ଅଶ୍ୱତ୍ଥ ଶବ୍ଦର ଅନ୍ୟଅର୍ଥ ଅଚିରସ୍ଥାୟୀ (ଅ=ନ, ଶ୍ୱଃ= ଆଗାମୀ କାଲି, ସ୍ଥା+ଅ, ସ୍ଥ=ରହିବା ଅର୍ଥାତ୍ ଯାହାର ଅସ୍ତିତ୍ୱ ଆଗାମୀ କାଲି ମଧ୍ୟ ନ ରହିପାରେ) । ଏ ସଂସାର କାଲି ମଧ୍ୟ ନ ରହିପାରେ—ଏହି

ଅଧଶ୍ଚୋର୍ଦ୍ଧ୍ୱଂ ପ୍ରସୃତାସ୍ତସ୍ୟଶାଖା
ଗୁଣପ୍ରବୃଦ୍ଧା ବିଷୟପ୍ରବାଳାଃ ।
ଅଧଶ୍ଚ ମୂଳାନ୍ୟନୁସନ୍ତତାନି,
କର୍ମାନୁବନ୍ଧୀନି ମନୁଷ୍ୟଲୋକେ । ୨ ।

ଉଦ୍ଦେଶ୍ୟରେ ଅଶ୍ୱତ୍ଥ ବୃକ୍ଷସଙ୍ଗେ ତୁଳିତ ହୋଇଅଛି । ଏହାପୁଣି ଅବ୍ୟୟ ଅର୍ଥାତ୍ ପ୍ରବାହ ରୂପରେ ଏହା ଅନାଦିକାଳରୁ ଅବିଚ୍ଛିନ୍ନ ଭାବରେ ରହିଅଛି ।

ଏହି ସଂସାର ବୃକ୍ଷକୁ ଯେ ଜାଣନ୍ତି ସେ ବେଦବିତ୍ ଅର୍ଥାତ୍ ମୂଳ ସହିତ ଏ ସଂସାର ବୃକ୍ଷକୁ ଜାଣିଲେ ବ୍ରହ୍ମ ବା ପୁରୁଷୋତ୍ତମ, ଜଗତ୍ ଓ ଜୀବ— ଏମାନଙ୍କର ପ୍ରକୃତ ସ୍ୱରୂପ ଜଣାଯାଏ । ଅନ୍ୟ କିଛି ଜାଣିବା ଅବଶ୍ୟକ ହୁଏ ନାହିଁ ।

୨ । ଅନ୍ୱୟଦୀପିକା—ତସ୍ୟ (ତାହାର) ଗୁଣପ୍ରବୃଦ୍ଧାଃ (ଗୁଣସମୂହଦ୍ୱାରା ବିଶେଷରୂପେ ବୃଦ୍ଧି ପ୍ରାପ୍ତ ) ବିଷୟପ୍ରବାଳାଃ ( ବିଷୟରୂପ ପଲ୍ଲବ ବିଶିଷ୍ଟ) ଶାଖାଃ ( ଶାଖାସବୁ ) ଅଧଃ ଊର୍ଦ୍ଧ୍ୱଂ ଚ, ( ନିମ୍ନ ଓ ଊର୍ଦ୍ଧ୍ୱ ଅଭିମୁଖେ ) ପ୍ରସୃତାଃ ( ବିସ୍ତୃତ ) । ମନୁଷ୍ୟ ଲୋକେ ( ମର୍ତ୍ତ୍ୟଲୋକରେ ) କର୍ମାନୁବନ୍ଧୀନି ( ଧର୍ମାଧର୍ମରୂପ କର୍ମର ପ୍ରସୂତ ) ମୂଳାନି ( ମୂଳ ସମୂହ ) ଅଧଃ ଚ ( ନିମ୍ନ ଓ ଉପରଆଡେ ମଧ୍ୟ ) ଅନୁସନ୍ତତାନି ( କ୍ରମେ ବିସ୍ତୃତ ହୋଇଅଛି ) ।

ଅନୁବାଦ—ସେହି ସଂସାରରୂପ ବୃକ୍ଷର ଶାଖା ସମୂହ ସତ୍ତ୍ୱାଦି ଗୁଣଦ୍ୱାରା ବିଶେଷରୂପେ ବୃଦ୍ଧିପ୍ରାପ୍ତ ଓ ଶବ୍ଦାଦି ବିଷୟରୂପ ନବପଲ୍ଲବଯୁକ୍ତ ହୋଇ ନିମ୍ନଦେଶରେ ଓ ଊର୍ଦ୍ଧ୍ୱଦେଶରେ ବିସ୍ତୃତ ହୋଇଅଛି । ଏହାର ( ବାସନାରୂପ ) ଚେର ସମୂହ ମନୁଷ୍ୟ ଲୋକରେ ଧର୍ମାଧର୍ମରୂପ କର୍ମର ଜନକରୂପରେ ଅଧଃ ଓ ଊର୍ଦ୍ଧ୍ୱରେ ବିସ୍ତୃତ ହୋଇଅଛି ।

ସୁବୋଧିନୀ ଟୀକା—କିଞ୍ଚ-ଅଧଶ୍ଚେତି, ହିରଣ୍ୟଗର୍ଭାଦୟଃ କାର୍ଯ୍ୟୋପାଧୟୋ ଜୀବାଃ ଶାଖାସ୍ଥାନୀୟାସ୍ତେଷୁ ଯେ ଦୁଷ୍କୃତିନସ୍ତେଽଧଃ ପଶ୍ୱାଦିଯୋନିଷୁ ପ୍ରସୃତା ବିସ୍ତାରଂଗତାଃ, ସୁକୃତିନସ୍ତୂର୍ଦ୍ଧ୍ୱଂ ଦେବାଦିଯୋନିଷୁ ପ୍ରସୃତା ସ୍ତସ୍ୟ ସଂସାରବୃକ୍ଷସ୍ୟ ଶାଖାଃ, କିଞ୍ଚ ଗୁଣୈଃ ସତ୍ତ୍ୱାଦିବୃତ୍ତିଭିର୍ଜ୍ଜଳସେଚନୈରିବ ଯଥାଯଥଂ ପ୍ରବୃଦ୍ଧା ବୃଦ୍ଧିଂପ୍ରାପ୍ତାଃ, କିଞ୍ଚ ବିଷୟା ରୂପାଦୟଃ ପ୍ରବାଳାଃ ପଲ୍ଲବସ୍ଥାନୀୟା ଯାସାଂତାଃ, ଶାଖାଗ୍ରସ୍ଥାନୀୟାଭିରିନ୍ଦ୍ରିୟବୃତ୍ତିଭିଃ ସଂଯୁକ୍ତତ୍ୱାତ୍, କିଞ୍ଚ ଅଧଶ୍ଚ ଚଶବ୍ଦାଦୂର୍ଦ୍ଧ୍ୱଞ୍ଚ ମୂଳାନି ଅନୁସନ୍ତତାନିବିରୂଢ଼ାନି, ମୁଖ୍ୟଂ ମୂଳମୀଶ୍ୱର ଏବ

ଇମାନି ତୃନ୍ତସ୍ଥଳାନି ମୂଳାନି ତଦ୍ଭୋଗବାସନାଲକ୍ଷଣାନି, ତେଷାଂ କାର୍ଯ୍ୟମାହ, ମନୁଷ୍ୟଲୋକେ କର୍ମାନୁବନ୍ଧୀନି ଇତି, କର୍ମ ଏବ ଅନୁବନ୍ଧି ଉତ୍ତରକାଳଭାବି ଯେଷାଂ ତାନି ଊର୍ଦ୍ଧ୍ୱାଧୋଲୋକେଷୁ ଉପଭୁକ୍ତ ତଦ୍ଭୋଗବାସନାଦଭର୍ହି କର୍ମକ୍ଷୟେ ମନୁଷ୍ୟ-ଲୋକପ୍ରାପ୍ତାନାଂ ତଦ୍ଦନୁରୂପେଷୁ କର୍ମସୁ ପ୍ରବୃତ୍ତିର୍ଦର୍ଶନାତ୍, ତସ୍ମିନ୍ନେବ ହି କର୍ମାଧି-କାରେ ନାନ୍ୟେଷୁ ଲୋକେଷୁ ଅତୋ ମନୁଷ୍ୟଲୋକ ଇତ୍ୟୁକ୍ତମ୍ ।

ବିବୃତି—ଏ ସଂସାର ପ୍ରକୃତିର ହିଁ ବିସ୍ତାର, ପୂର୍ବଶ୍ଳୋକରେ ବୈଦିକ ଦୃଷ୍ଟିରେ ସଂସାର ବୃକ୍ଷର ବର୍ଣ୍ଣନା କରି ଏଠାରେ ସାଂଖ୍ୟଦୃଷ୍ଟିରେ ଅର୍ଥାତ୍ ପ୍ରକୃତିର ବିସ୍ତାରଭାବରେ ତାହାର ବର୍ଣ୍ଣନା କରୁଅଛନ୍ତି । ଏହି ସଂସାର ବୃକ୍ଷର ଶାଖା ( ଜୀବ ) ସତ୍ତ୍ୱ, ରଜଃ ଓ ତମଃ ଏହି ତିନିଗୁଣଦ୍ୱାରା ବୃଦ୍ଧିପ୍ରାପ୍ତ । ଯେପରି ଜଳସେଚନ ଦ୍ୱାରା ବୃକ୍ଷର ଶାଖା ବଢ଼େ, ସେହିପରି ସତ୍ତ୍ୱାଦି ତିନିଗୁଣ ଦ୍ୱାରା ଜୀବ ଦେହ ପୁଷ୍ଟିଲାଭ କରେ । ଏହି ଜୀବରୂପ ଶାଖାରେ ରୂପରସାଦି ବିଷୟମାନ ପତ୍ର ସ୍ୱରୂପ । ବୃକ୍ଷର ଶାଖାମାନଙ୍କ ମଧ୍ୟରୁ କେତେକ ଉପରକୁ ଉଠେ, କେତେକ ମଧ୍ୟ ତଳକୁ ଯାଏ । ସଂସାରବୃକ୍ଷର ଶାଖାସ୍ଥାନୀୟ ଜୀବବର୍ଗଙ୍କ ମଧ୍ୟରୁ ଯେଉଁମାନେ ପୁଣ୍ୟକର୍ମାଦିର ଅନୁଷ୍ଠାନ କରନ୍ତି ସେମାନେ ସ୍ୱର୍ଗାଦି ଲୋକରେ ଉତ୍କୃଷ୍ଟ ଜନ୍ମଲାଭ କରନ୍ତି ଏବଂ ଯେଉଁମାନେ ଅସତ୍ କର୍ମ କରନ୍ତି ସେମାନେ ମର୍ତ୍ତ୍ୟଲୋକରେ ପଶୁ ପତଙ୍ଗାଦି ନିକୃଷ୍ଟ ଜନ୍ମଲାଭ କରନ୍ତି । ମନୁଷ୍ୟ ଲୋକରେ ବାସନା ବା ଫଳ କାମନାହିଁ ସମସ୍ତ କର୍ମର ଜନକ, ଏହି ବାସନା ସଂସାର ବୃକ୍ଷର ଚେର ବା ଅବାନ୍ତର ମୂଳ । ପରମାତ୍ମା ଏହି ବୃକ୍ଷର ମୂଳ ବୋଲି ଯାହା କୁହାଯାଇଅଛି ସେଠାରେ ପ୍ରଧାନ ମୂଳ ଲକ୍ଷ୍ୟ; ମାତ୍ର ଏଠାରେ ବାସନା ସବୁ ଅବାନ୍ତର ମୂଳ ବା ଚେର, ଜୀବ ଯେ କୌଣସି ଲୋକରେ କର୍ମଫଳ ଭୋଗ କରୁଥିବାବେଳେ ଯେ ପ୍ରକାର କାମନା କରିଥାଏ, ସେହି ଅନୁସାରେ ସେ ମନୁଷ୍ୟ ଲୋକରେ ଉତ୍କୃଷ୍ଟ ବା ନିକୃଷ୍ଟ ଜନ୍ମ ଧାରଣ କରେ ଓ ବାସନାନୁରୂପ କର୍ମ କରେ, ସୁତରାଂ ବାସନାହିଁ ମର୍ତ୍ତ୍ୟଲୋକରେ କର୍ମର ପ୍ରବର୍ତ୍ତକ ବା ପ୍ରସୂତି । ମର୍ତ୍ତ୍ୟଲୋକଭିନ୍ନ ଅନ୍ୟ ଲୋକରେ କର୍ମ ପ୍ରବୃତ୍ତି ନାହିଁ ବୋଲି ଏଠାରେ 'ମନୁଷ୍ୟ ଲୋକରେ' ଏହିପରି ପଦ ପ୍ରଯୁକ୍ତ ହୋଇଅଛି । ମନୁଷ୍ୟ ଲୋକରେ ଏହି କର୍ମ ପ୍ରବର୍ତ୍ତକ ବାସନା ସଂସାରବୃକ୍ଷର ଚେର ସ୍ୱରୂପ ହୋଇ ତଳେ ଓ ଉପରେ ବିସ୍ତୃତ ହୋଇଅଛି । ଏଥିରୁ ଜଣାଯାଏ ସଂସାରରେ ଅନେକ ଲୋକର ସ୍ୱର୍ଗରେ ଦେବତାଦି ଉତ୍କୃଷ୍ଟ ଯୋନି ଲାଭରେ ବାସନା ଥାଏ ଏବଂ ଅନେକଙ୍କର ନିକୃଷ୍ଟ ବା ମନ୍ଦ ବିଷୟରେ ବାସନା ଥାଏ । ଉତ୍କୃଷ୍ଟ ବାସନା ଊର୍ଦ୍ଧ୍ୱବିସ୍ତୃତ ଚେରରୂପରେ ଓ ନିକୃଷ୍ଟ ବାସନା ନିମ୍ନ ବିସ୍ତୃତ ଚେରରୂପରେ ଏଠାରେ ବର୍ଣ୍ଣିତ ହେଲା ।

ନ ରୂପମସ୍ୟେହ ତଥୋପଲଭ୍ୟତେ
ନାନ୍ତୋ ନ ଚାଦିର୍ନ ଚ ସମ୍ପ୍ରତିଷ୍ଠା ।
ଅଶ୍ୱତ୍ଥମେନଂ ସୁବିରୂଢ଼ମୂଲ—
ମସଙ୍ଗଶସ୍ତ୍ରେଣ ଦୃଢ଼େନ ଛିତ୍ତ୍ୱା । ୩ ।
ତତଃ ପଦଂ ତତ୍ ପରିମାର୍ଗିତବ୍ୟଂ
ଯସ୍ମିନ୍ ଗତା ନ ନିବର୍ତ୍ତନ୍ତି ଭୂୟଃ ।
ତମେବ ଚାଦ୍ୟଂ ପୁରୁଷଂ ପ୍ରପଦ୍ୟେ
ଯତଃ ପ୍ରବୃତ୍ତିଃ ପ୍ରସୃତା ପୁରାଣୀ । ୪ ।

୩ । ଅନ୍ୱୟ ଦୀପିକା—ଇହ ( ଏହି ସଂସାରରେ ) ଅସ୍ୟ ( ଏହି ବୃକ୍ଷର ) ରୂପଂ ( ରୂପ ) ନ ଉପଲଭ୍ୟତେ ( ଜଣାଯାଏ ନାହିଁ ), ତଥା ( ସେହିପରି ) ନ ଅନ୍ତଃ, ନ ଆଦିଃ, ନ ସମ୍ପ୍ରତିଷ୍ଠା ( ଏହାର ଆଦି, ଅନ୍ତ ବା ସ୍ଥିତି ଜଣାଯାଏ ନାହିଁ ), ଏନମ୍ ( ଏହି ) ସୁବିରୂଢ଼ମୂଲମ୍ ( ସୁଦୃଢ଼ ମୂଳ ) ଅଶ୍ୱତ୍ଥମ୍ ( ଅଶ୍ୱତ୍ଥ ବୃକ୍ଷକୁ ) ଦୃଢ଼େନ ଅସଙ୍ଗଶସ୍ତ୍ରେଣ (ତୀବ୍ର ବୈରାଗ୍ୟ ରୂପ ଶସ୍ତ୍ରଦ୍ୱାରା ) ଛିତ୍ତ୍ୱା (ଛେଦନ କରି)-(ପରବର୍ତ୍ତୀ ଶ୍ଳୋକ ସଙ୍ଗେ ଅନ୍ୱିତ ହେବ) ।

ଅନୁବାଦ—ଏହି ସଂସାରବାସୀ ପ୍ରାଣିଗଣ ସଂସାରରୂପ ବୃକ୍ଷର ଊର୍ଦ୍ଧ୍ୱମୂଳାଦିରୂପ ଉପଲବ୍ଧି କରି ପାରନ୍ତି ନାହିଁ, କିମ୍ବା ଏହାର ଆଦି କେଉଁଠାରେ, ଅନ୍ତ କେଉଁଠାରେ ଏବଂ ସ୍ଥିତି ବା କିପରି, ଏହା ବୁଝି ପାରନ୍ତି ନାହିଁ । ଏହି ଦୃଢ଼ମୂଳ ସଂସାର-ରୂପ ବୃକ୍ଷକୁ ତୀବ୍ର ବୈରାଗ୍ୟ ରୂପ ଶସ୍ତ୍ରଦ୍ୱାରା ଛେଦନ କରି-( ପରବର୍ତ୍ତୀ ଶ୍ଳୋକସହିତ ଅନ୍ୱିତ ) ।

ସୁବୋଧିନୀ ଟୀକା—କିଞ୍ଚ ନ ରୂପମିତି—ଇହ ସଂସାରେ ସ୍ଥିତୈଃ ପ୍ରାଣିଭିରସ୍ୟ ସଂସାରବୃକ୍ଷସ୍ୟ ତଥୋର୍ଦ୍ଧ୍ୱମୂଲତ୍ୱାଦିପ୍ରକାରେଣ ରୂପଂ ନୋପଲଭ୍ୟତେ । ନଚାନ୍ତୋଽବସାନମପର୍ଯ୍ୟନ୍ତତ୍ୱାତ୍ । ନଚାଦିରନାଦିତ୍ୱାତ୍ । ନ ଚ ସମ୍ପ୍ରତିଷ୍ଠା ସ୍ଥିତିଃ । କଥଂ ତିଷ୍ଠତୀତି ନୋପଲଭ୍ୟତେ । ଯସ୍ମାଦେବଂଭୂତୋଽୟଂ ସଂସାରବୃକ୍ଷୋ ଦୁରୁଚ୍ଛେଦୋଽନର୍ଥକରଶ୍ଚ ତସ୍ମାଦେବଂ ଦୃଢ଼େନ ବୈରାଗ୍ୟେଣ-ଶସ୍ତ୍ରେଣ ଛିତ୍ତ୍ୱା ତତ୍ତ୍ୱଜ୍ଞାନେ ଯତେତେତ୍ୟାହ । ଅଶ୍ୱତ୍ଥମେନମିତି ସାର୍ଦ୍ଧେନ । ଏନମଶ୍ୱତ୍ଥଂ ସୁବିରୂଢ଼ମୂଲମତ୍ୟନ୍ତଂବଦ୍ଧମୂଲଂ ସନ୍ତମ୍—ଅସଙ୍ଗଃ ସଙ୍ଗରହିତ୍ୟ ମହଂ ମମତାତ୍ୟାଗଃ—ତେନ ଶସ୍ତ୍ରେଣ ଦୃଢ଼େନ ସମ୍ୟଗ୍ ନିଶ୍ଚୟେନ ଛିତ୍ତ୍ୱା ପୃଥକ୍ କୃତ୍ୟ ।

୪ । ଅନ୍ୱୟ ଦୀପିକା—ତତଃ ( ତତ୍ପରେ ) ଯସ୍ମିନ୍ ଗତାଃ ( ଯେଉଁସ୍ଥାନ ପାଇଥିବା ବ୍ୟକ୍ତିମାନେ ) ଭୂୟଃ ( ପୁନର୍ବାର ) ନ ନିବର୍ତ୍ତନ୍ତି ( ଫେରନ୍ତି ନାହିଁ ), ଯତଃ ( ଯାହାଙ୍କ ଠାରୁ ) ଏଷା ପୁରାଣୀ ପ୍ରବୃତ୍ତିଃ ( ଏହି

ନିର୍ମାନମୋହା ଜିତସଙ୍ଗଦୋଷା,
ଅଧ୍ୟାତ୍ମନିତ୍ୟା ବିନିବୃତ୍ତକାମାଃ ।
ଦ୍ୱନ୍ଦ୍ୱୈର୍ବିମୁକ୍ତାଃ ସୁଖଦୁଃଖସଂଜ୍ଞୈ-
ର୍ଗଚ୍ଛନ୍ତ୍ୟମୂଢ଼ାଃ ପଦମବ୍ୟୟଂ ତତ୍ । ୫ ।

ଚିରନ୍ତନୀ ସଂସାର ଗତି ) ପ୍ରସୃତା ( ବିସ୍ତୃତ ହୋଇଅଛି ), ତମ୍ ଏବ ଚ (ସେହି) ଆଦ୍ୟଂ ପୁରୁଷଂ ( ଆଦି ପୁରୁଷଙ୍କୁ ) ପ୍ରପଦ୍ୟେ ( ଶରଣ ରୂପେ ଗ୍ରହଣ କରୁଅଛି ) [ଏହିପରି ସଂକଳ୍ପ କରି] ତତ୍ ପଦଂ ( ସେହି ପଦ ) ପରିମାର୍ଗିତବ୍ୟଂ ( ଅନ୍ୱେଷଣ କରିବାକୁ ହେବ ) ।

**ଅନୁବାଦ**—ତତ୍ପରେ ଯାହାଙ୍କୁ ପାଇଥିବା ଲୋକମାନେ ଆଉ ସଂସାରକୁ ଫେରନ୍ତି ନାହିଁ ( ଅର୍ଥାତ୍ ଯାହାଙ୍କୁ ପାଇଲେ ଆଉ ପୁନର୍ଜନ୍ମ ହୁଏ ନାହିଁ ), ଯାହାଙ୍କ ଠାରୁ ଏହି ଚିରନ୍ତନ ସଂସାର ପ୍ରବୃତ୍ତିର ବିସ୍ତାର ହୋଇଅଛି, 'ମୁଁ ସେହି ଆଦିପୁରୁଷଙ୍କର ଶରଣ ନେଉଅଛି' ଏହିପରି ସଂକଳ୍ପ କରି ତାହାଙ୍କର ଅନ୍ୱେଷଣ କରିବାକୁ ହେବ ।

**ସୁବୋଧିନୀ ଟୀକା**—ତତ ଇତି, ତତସ୍ତସ୍ୟ ମୂଳଭୂତଂ ତତ୍ପଦଂ ବସ୍ତୁ ପରିମାର୍ଗିତବ୍ୟ ମନ୍ୱେଷ୍ଟବ୍ୟମ୍ । କୀଦୃଶଂ ? ଯସ୍ମିନ୍ ଗତା ଯତ୍ପଦଂ ପ୍ରାପ୍ତାଃ ସନ୍ତୋ ଭୂୟୋ ନ ନିବର୍ତ୍ତନ୍ତି । ନାବର୍ତ୍ତନ୍ତେ ଇତ୍ୟର୍ଥଃ, ଅନ୍ୱେଷଣ ପ୍ରକାର ମାହ—ତମେବେତି । ଯତଏଷା ପୁରାଣୀ ଚିରନ୍ତନୀ ସଂସାରପ୍ରବୃତ୍ତିଃ ପ୍ରସୃତା ବିସୃତାଃ । ତମେବାଦ୍ୟଂ ପୁରୁଷଂ ପ୍ରପଦ୍ୟେ ଶରଣଂ ବ୍ରଜାମି, ଇତ୍ୟେବମେକାନ୍ତଭକ୍ତ୍ୟା-ନ୍ୱେଷ୍ଟବ୍ୟମିତ୍ୟର୍ଥଃ ।

**ବିବୃତି**—ପ୍ରଥମ ଓ ଦ୍ୱିତୀୟ ଶ୍ଳୋକରେ ଯେଉଁ ସଂସାର-ବୃକ୍ଷର ବର୍ଣ୍ଣନା କରାହୋଇଅଛି, ମାୟାବଦ୍ଧ ଜୀବ ସେ ବୃକ୍ଷର ଆଦି କେଉଁଠାରେ, ଅନ୍ତ କେଉଁଠାରେ ଓ କାହାକୁ ଅବଲମ୍ବନ କରି ତାହା ରହିଅଛି—ସେ ସବୁ କିଛି ଜାଣି ପାରନ୍ତି ନାହିଁ । ବାସନା ବା କାମନା ସମସ୍ତ ମାୟାର ମୂଳ, ବାସନା ତ୍ୟାଗ ନ ହେଲେ ମାୟା ଦୂର ହୁଏ ନାହିଁ । ମାୟା ଦୂର ନ ହେଲେ ତତ୍ତ୍ୱଜ୍ଞାନ ଜାତ ହୁଏ ନାହିଁ । ତେଣୁ ତୀବ୍ର ବୈରାଗ୍ୟ ଦ୍ୱାରା ପ୍ରଥମେ ମାୟାବନ୍ଧନ କାଟିଦେବା ଆବଶ୍ୟକ, ତତ୍ପରେ ଯାହାଙ୍କଠାରୁ ଏହି ଚିରନ୍ତନ ସଂସାର-ପ୍ରବାହ ବିସ୍ତୃତ ହୋଇଅଛି ସେହି ଭକ୍ତ ଚିନ୍ତାମଣି ଆଦି ପୁରୁଷଙ୍କ ଶରଣାପନ୍ନ ହୋଇ ଏକାନ୍ତ ଭକ୍ତିରେ ତାଙ୍କର ଅନ୍ୱେଷଣ କରିବାକୁ ହେବ । ତାଙ୍କର ଦୟା ନ ହେଲେ ତତ୍ତ୍ୱଜ୍ଞାନ ହେବ ନାହିଁ ବା ଜୀବର ମୁକ୍ତି ହେବ ନାହିଁ ।

୫ । **ଅନ୍ୱୟ ଦୀପିକା**—ନିର୍ମାନମୋହାଃ ( ମାନ ଓ ମୋହ ବର୍ଜିତ ), ଜିତସଙ୍ଗଦୋଷାଃ ( ଆସକ୍ତିଦୋଷଶୂନ୍ୟ ) ଅଧ୍ୟାତ୍ମନିତ୍ୟାଃ

ନ ତଦ୍ ଭାସୟତେ ସୂର୍ଯ୍ୟୋ ନ ଶଶାଙ୍କୋ ନ ପାବକଃ ।

ଯଦ୍‌ଗତ୍ୱା ନ ନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ ॥ ୬ ॥

( ଅଧ୍ୟାତ୍ମଜ୍ଞାନରେ ରତ ) ବିନିବୃତ୍ତକାମାଃ ( କାମନା ବର୍ଜ୍ଜିତ ) ସୁଖଦୁଃଖସଞ୍ଜ୍ଞୈଃ ଦ୍ୱନ୍ଦ୍ୱୈଃ ବିମୁକ୍ତାଃ ( ସୁଖ ଦୁଃଖ ରୂପ ଦ୍ୱନ୍ଦ୍ୱରୁ ବିମୁକ୍ତ ) ଅମୂଢ଼ାଃ ଚ ( ମୋହ-ବର୍ଜ୍ଜିତ ଜ୍ଞାନୀଗଣ ) ତତ୍ ଅବ୍ୟୟଂ ପଦଂ ଗଚ୍ଛନ୍ତି ( ସେହି ଅବ୍ୟୟପଦ ପ୍ରାପ୍ତ ହୁଅନ୍ତି ) ।

ଅନୁବାଦ—ଯାହାଙ୍କର ଅଭିମାନ ବା ମୋହ ନାହିଁ, ବିଷୟାସକ୍ତି ନାହିଁ, ଯେଉଁମାନେ ଅଧ୍ୟାତ୍ମତତ୍ତ୍ୱ ଜାଣିବାକୁ ସର୍ବଦା ଅଭିଳାଷୀ, ଯାହାଙ୍କର କାମନା ନିବୃତ୍ତ ହୋଇଅଛି ଏବଂ ଯେଉଁମାନେ ସୁଖ ଦୁଃଖରୂପ ଦ୍ୱନ୍ଦ୍ୱରୁ ବିମୁକ୍ତ ହୋଇ ଅଛନ୍ତି ସେହିଭଳି ବିବେକୀ ପୁରୁଷମାନେ ହିଁ ସେହି ଅବ୍ୟୟ ପଦ ପ୍ରାପ୍ତ ହୁଅନ୍ତି ।

ସୁବୋଧିନୀ ଟୀକା—ତତ୍ ପ୍ରାପ୍ତୌ ସାଧନାନ୍ତରାଣି ଦର୍ଶୟନ୍ନାହ—ନିର୍ମାନେତି—ନିର୍ଗତୌ ମାନମୋହୌ ଅହଙ୍କାରମିଥ୍ୟାଭିନିବେଶୌ ଯେଭ୍ୟସ୍ତେ । ଜିତଃ ପୁତ୍ରାଦିସଙ୍ଗରୂପୋଦୋଷୋ ଯୈସ୍ତେ । ଅଧ୍ୟାତ୍ମ ଅତ୍ମଜ୍ଞାନେ ନିତ୍ୟାଃ ପରିନିଷ୍ଠିତାଃ । ବିଶେଷେଣ ନିବୃତ୍ତଃ କାମଃ ଯେଭ୍ୟସ୍ତେ । ସୁଖଦୁଃଖ-ହେତୁତ୍ୱାତ୍ ସୁଖଦୁଃଖସଞ୍ଜ୍ଞାନ ଶୀତୋଷ୍ଣାଦୀନ ଦ୍ୱନ୍ଦ୍ୱାନ । ତୈର୍ବିମୁକ୍ତାଃ । ଅତଏବାମୂଢ଼ା ନିବୃତ୍ତାବିଦ୍ୟାଃ ସନ୍ତସ୍ତଦବ୍ୟୟଂ ପଦଂ ଗଚ୍ଛନ୍ତି ।

ବିବୃତି—ଏହି ଭଳି ଅବସ୍ଥା ଥିଲେ ସାଧକ ଜୀବନ୍ମୁକ୍ତ ହୋଇ ଥାଆନ୍ତି । ଏହାହିଁ ମର୍ତ୍ତ୍ୟରେ ଅମୃତତ୍ୱ ଉପଭୋଗ କରିବା ଅବସ୍ଥା । ଭଗବାନ ଗୀତାର ଦ୍ୱିତୀୟ ଅଧ୍ୟାୟରେ ୭୨ମ ଶ୍ଳୋକରେ ସ୍ଥିତପ୍ରଜ୍ଞଙ୍କର ଯେଉଁ ବ୍ରାହ୍ମୀସ୍ଥିତି-ନାମ ପ୍ରଥମରୁ ଦେଇଥିଲେ, ଏହା ସେହି ଚିତ୍ରର ଉଜ୍ଜ୍ୱଳ ପ୍ରତିବିମ୍ବ । ଏହି ଜୀବରେ ମରଣଶୀଳ ମାନବ ଅମର ଲୋକର ସୁଖ ଉପଲବ୍ଧି କରି ଜୀବନକୁ ଧନ୍ୟ କରେ ।

୬ । ଅନ୍ୱୟ ଦୀପିକା—ଯତ୍ ଗତ୍ୱା ( ଯାହା ପାଇ ) [ ଯୋଗୀମାନେ ] ନ ନିବର୍ତ୍ତନ୍ତେ ( ପ୍ରତ୍ୟାବର୍ତ୍ତନ କରନ୍ତି ନାହିଁ ) ତତ୍ ( ତାହାକୁ ) ସୂର୍ଯ୍ୟଃ-ନ ଭାସୟତେ ( ସୂର୍ଯ୍ୟ ପ୍ରକାଶ କରି ପାରନ୍ତି ନାହିଁ ), ନ ଶଶାଙ୍କଃ ( ଚନ୍ଦ୍ର ମଧ୍ୟ ପ୍ରକାଶ କରି ପାରନ୍ତି ନାହିଁ ), ନ ପାବକଃ ( ଅଗ୍ନି ମଧ୍ୟ ପ୍ରକାଶ କରି ପାରନ୍ତି ନାହିଁ ), ତତ୍ ମମ ପରମଂଧାମ ( ତାହାହିଁ ଆମ୍ଭର ପରମ ସ୍ୱରୂପ ଅଟେ ) ।

ଅନୁବାଦ—ଯେଉଁ ପଦ ପ୍ରାପ୍ତ ହେଲେ ଯୋଗୀମାନଙ୍କୁ ଆଉ ଫେରିବାକୁ ହୁଏ ନାହିଁ, ଯେଉଁ ପଦକୁ ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନି ପ୍ରକାଶକରି ପାରନ୍ତି ନାହିଁ, ତାହାହିଁ ଆମ୍ଭର ପରମ ସ୍ୱରୂପ ।

ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ ।
ମନଃଷଷ୍ଠାନୀନ୍ଦ୍ରିୟାଣି ପ୍ରକୃତିସ୍ଥାନି କର୍ଷତି । ୭ ।

ସୁବୋଧିନୀ ଟୀକା—ତଦେବ ଗନ୍ତବ୍ୟଂ ପଦଂ ବିଶିନଷ୍ଟି । ନ ତଦିତି । ତତ୍‌ପଦଂ ସୂର୍ଯ୍ୟାଦୟୋ ନ ପ୍ରକାଶୟନ୍ତି । ଯତ୍ ପ୍ରାପ୍ୟ ନ ନିବର୍ତ୍ତନ୍ତେ ଯୋଗିନଃ । ତଦ୍ଧାମ ସ୍ୱରୂପଂ ପରମଂ ମମ । ଅନେନ ସୂର୍ଯ୍ୟାଦ୍ୟପ୍ରକାଶ୍ୟତ୍ୱେନ ଜଡ଼ତ୍ୱଶୀତୋଷ୍ଣାଦି ଦୋଷପ୍ରସଙ୍ଗୋ ନିରସ୍ତଃ ।

ବିବୃତି—ପରଂବ୍ରହ୍ମ ଚୈତନ୍ୟମୟ ସୁତରାଂ ସ୍ୱପ୍ରକାଶ । ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି ପ୍ରଭୃତି ଜଡ଼ ପଦାର୍ଥ ତାଙ୍କୁ କିପରି ପ୍ରକାଶ କରି ପାରିବେ ? ଶ୍ରୁତିରେ ପ୍ରମାଣ ଅଛି :—

ନ ତତ୍ର ସୂର୍ଯ୍ୟୋ ଭାତି ନ ଚନ୍ଦ୍ରତାରକଂ ନେମା ବିଦ୍ୟୁତୋ ଭାନ୍ତି କୁତୋଽୟମଗ୍ନିଃ
ତମେବ ଭାନ୍ତମନୁଭାତି ସର୍ବଂ ତସ୍ୟ ଭାସା ସର୍ବମିଦଂ ବିଭାତି ।

"ସେହି ପରମବ୍ରହ୍ମଙ୍କୁ ସୂର୍ଯ୍ୟ, ଚନ୍ଦ୍ର, ତାରକା ବିଦ୍ୟୁତ୍ କେହି ପ୍ରକାଶ କରି ପାରନ୍ତି ନାହିଁ । ଏହି ଅଳ୍ପଶକ୍ତି ବିଶିଷ୍ଟ ଅଗ୍ନି କଥା ବା କଣ ପଚାରୁ ? ସେହି ପରଂବ୍ରହ୍ମଙ୍କ-ପ୍ରକାଶରେ ଜଗତ୍ ପ୍ରକାଶିତ ଏବଂ ସମସ୍ତ ବିଭାସିତ ହୁଏ ।"

ଏ ମନ୍ତ୍ରଟି ଶ୍ୱେତାଶ୍ୱତର (୬।୧୪), ମୁଣ୍ଡକ (୨।୨।୨୦) ଏବଂ କଠ (୫।୧୫)—ଏହି ତିନିଉପନିଷଦରେ ଦେଖାଯାଏ ।

୭ । ଅନ୍ୱୟ ଦୀପିକା—ମମ ଏବ ସନାତନଃ ଅଂଶଃ (ଆମର ସନାତନ ଅଂଶ) ଜୀବଭୂତଃ (ଜୀବ ସ୍ୱରୂପ ହୋଇ) ପ୍ରକୃତିସ୍ଥାନି (ପ୍ରକୃତିରେ ଅବସ୍ଥିତ) ମନଃଷଷ୍ଠାନି ଇନ୍ଦ୍ରିୟାଣି (ମନ ସହିତ ପଞ୍ଚ ଇନ୍ଦ୍ରିୟକୁ) ଜୀବଲୋକେ କର୍ଷତି (ସଂସାରକୁ ଆକର୍ଷଣ କରିଥାଏ) ।

ଅନୁବାଦ—ଜୀବ ଆମର ସନାତନ ଅଂଶ; ପ୍ରକୃତିରେ ଅବସ୍ଥିତ ମନ ଓ ପଞ୍ଚଇନ୍ଦ୍ରିୟକୁ ସଂସାରରୂପ କର୍ମଭୂମିକୁ ଆକର୍ଷଣ କରିଥାଏ ।

ସୁବୋଧିନୀ ଟୀକା—ନନୁ ଚ ତ୍ୱଦ୍ଧାମ ପ୍ରାପ୍ତାଃ ସନ୍ତୋ ଯଦି ନ ନିବର୍ତ୍ତନ୍ତେ ତର୍ହିସତି ସଂସାରୀ ନ ଭବେୟୁଃ ସତି ସଂସାର୍ଯ୍ୟାଦୟ ଇତ୍ୟାଦି ଶ୍ରୁତେଃ ସୁଷୁପ୍ତିପ୍ରଳୟୟୋରିବ ତତ୍ ପ୍ରାପ୍ତିଃ ସର୍ବେଷାମସ୍ତୀତି କୋ ନାମ ସଂସାରୀ ସ୍ୟାଦିତ୍ୟାଶଙ୍କ୍ୟ ସଂସାରିଣଂ ଦର୍ଶୟତି ମମୈବେତି ପଞ୍ଚଭିଃ, ମମୈବାଂଶୋ ଯୋଽୟମବିଦ୍ୟୟା ଜୀବଭୂତଃ; ସନାତନଃ ସର୍ବଦା ସଂସାରିତ୍ୱେନ ପ୍ରସିଦ୍ଧଃ, ଅସୌ ସୁଷୁପ୍ତିପ୍ରଳୟୟୋଃ ପ୍ରକୃତୌ ଲୀନତୟା, ସ୍ଥିତାନି ମନଃ ଷଷ୍ଠଂ ଯେଷାଂ ତାନୀନ୍ଦ୍ରିୟାଣି ପୁନର୍ଜୀବଲୋକେ ସଂସାରୋପଭୋଗାର୍ଥମାକର୍ଷତି, ଏତଚ୍ଚ କର୍ମେନ୍ଦ୍ରିୟାଣାଂ ପ୍ରାଣସ୍ୟ ଚୋପଲକ୍ଷଣାର୍ଥମ୍ ଅୟଂଭାବଃ—ସତ୍ୟଂ ସୁଷୁପ୍ତି-ପ୍ରଳୟୟୋରପି ମଦଂଶତ୍ୱାତ୍ ସର୍ବସ୍ୟାପି ଜୀବମାତ୍ରସ୍ୟ ମୟି ଲୟାଦସ୍ତ୍ୟେବ

ମତ୍‌ପ୍ରାପ୍ତିଃ, ତଥାପ୍ୟବିଦ୍ୟୟାବୃତସ୍ୟ ସାନୁଶୟସ୍ୟ ସପ୍ରବୃତ୍ତକେ ମଯ୍ୟୈଲୟଃ, ନ ତୁ ଶୁଦ୍ଧେ. ତଦୁକ୍ତଂ—ଅବ୍ୟକ୍ତାଦ୍ ବ୍ୟକ୍ତୟଃ ସର୍ବାଃ ପ୍ରଭବନ୍ତୀତ୍ୟାଦ୍ରିନା, ଅତଃସ୍ତୁପୁନଃ ସଂସାରସ୍ୟ ନିର୍ଗଚ୍ଛନ୍ତଦ୍ୱାରାନ୍ ପ୍ରବୃତୌ ଲୀନତୟା ସ୍ଥିତାନ ସ୍ୱୋପାଧିଭୂତା- ନାନ୍ତ୍ରିୟାଣ୍ୟାକର୍ଷତି, ଯଦୁକ୍ତଂ ତୁ ଶୁଦ୍ଧସ୍ୱରୂପପ୍ରାପ୍ତେ ର୍ନାବୃତ୍ତିରିତି ।

ବିବୃତି—ପୂର୍ବଶ୍ଳୋକରେ କୁହାଯାଇ ଅଛି ଯେ, ମୋତେ ପାଇଲେ ଜୀବର ଆଉ ପୁନରାବର୍ତ୍ତନ ହୁଏନାହିଁ । ମୋକ୍ଷ ବା ଈଶ୍ୱରପ୍ରାପ୍ତି ନ ହେବାଯାଏ ଜୀବକୁ ଜନ୍ମ ମରଣ ଯନ୍ତ୍ରଣା ଭୋଗ କରିବାକୁ ହୁଏ । ଏହିକଥା ବୁଝାଇବା ପାଇଁ ଜୀବର ସ୍ୱରୂପ କଅଣ ଏବଂ ତାହା କିପରି ଏକ ଘଟରୁ ଯାଇ ଅନ୍ୟ ଘଟରେ ଆଶ୍ରୟ କରେ ଇତ୍ୟାଦି ବିଷୟ ଏଠାରେ ବୁଝାଇଅଛନ୍ତି ।

ଗୀତାରେ ଭଗବାନ୍ ଅନେକ ପ୍ରସଙ୍ଗରେ କହିଅଛନ୍ତି ଯେ, ଜୀବ ଓ ବ୍ରହ୍ମ ଏକ, ଦ୍ୱିତୀୟ ଅଧ୍ୟାୟର ୧୭ଶରୁ ୨୫ଶ ଶ୍ଳୋକ ମଧ୍ୟରେ ଜୀବାତ୍ମାଙ୍କର ଯେଉଁ ଯେଉଁ ଲକ୍ଷଣ ନିର୍ଦ୍ଦିଷ୍ଟ ହୋଇଅଛି, ସେସବୁ ପରମାତ୍ମାଙ୍କ ଲକ୍ଷଣର ଅନୁରୂପ । ଦଶମ ଅଧ୍ୟାୟର ବିଭୂତିବର୍ଣ୍ଣନା ପ୍ରସଙ୍ଗରେ ପ୍ରଥମେ ଭଗବାନ୍ କହିଅଛନ୍ତି, 'ଅହମାତ୍ମା ଗୁଡ଼ାକେଶ ସର୍ବଭୂତାଶୟସ୍ଥିତଃ' ଅର୍ଥାତ୍ ଆମ୍ଭେ ସମସ୍ତ ଭୂତଙ୍କ ହୃଦୟସ୍ଥିତ ଆତ୍ମା, ମାତ୍ର ଏଠାରେ କହିଲେ ଜୀବ ମୋହର ଅଂଶ', ଏ ଅଂଶ ପର୍ବତର ଅଂଶ ପ୍ରସ୍ତର ଖଣ୍ଡ ପରି ନୁହେ, ଘଟ ମଧ୍ୟରେ ଥିବା ଆକାଶ ଯେପରି ମହାକାଶର ଅଂଶ—ସେହିପରି, ଘଟ ନଷ୍ଟହେଲେ ଘଟାକାଶ ଯେପରି ମହାକାଶରେ ମିଶିଯାଏ, ସ୍ଥୂଳଶରୀର ନାଶରେ ମୁକ୍ତ ଜୀବାତ୍ମା ଅପରିଚ୍ଛିନ୍ନ ବ୍ରହ୍ମସତ୍ତାରେ ମିଶିଯାଏ । ତ୍ରିଗୁଣାତୀତ ଅବସ୍ଥାରେ ଏହାହିଁ ବ୍ରହ୍ମସାରୂପ୍ୟ ପ୍ରାପ୍ତି । କେହି କେହି କହନ୍ତି ଜୀବ ଓ ବ୍ରହ୍ମ ଉଭୟେ ଚିଦ୍‌ରୂପ, ଚେତନାଂଶରେ ଦୁହେଁ ଏକ, ତଥାପି ବ୍ରହ୍ମ ପ୍ରକାଣ୍ଡ ଅଗ୍ନିକୁଣ୍ଡ, ଜୀବ ତାହାର ସ୍ଫୁଲିଙ୍ଗ ପରି ।

"ଯଥା ସୁଦୀପ୍ତାତ୍ ପାବକାଦ୍ ବିସ୍ଫୁଲିଙ୍ଗାଃ ସହସ୍ରଶଃ ପ୍ରଭବନ୍ତେ ସରୂପାଃ"

(ମୁଣ୍ଡକ)

ଯେପରି ସ୍ଫୁଲିଙ୍ଗ ଅଗ୍ନିକଣା ମାତ୍ର, ସେହିପରି ଜୀବ ବ୍ରହ୍ମକଣାମାତ୍ର । ଆଚାର୍ଯ୍ୟ ଶଙ୍କର ମଧ୍ୟ ଏହି ଭାବରେ ଜୀବ ବ୍ରହ୍ମର ପାର୍ଥକ୍ୟ ନିର୍ଦ୍ଦେଶ କରିଅଛନ୍ତି । ଗୌଡ଼ୀୟ ବୈଷ୍ଣବ ସମ୍ପ୍ରଦାୟ ମଧ୍ୟ ଏହି ମତାବଲମ୍ବୀ । ବସ୍ତୁତଃ ଅଂଶ ଓ ଅଂଶୀ ସ୍ୱରୂପତଃ ଏକ, ତେବେ ଜୀବର ମାୟା ବନ୍ଧନ ଥିବାରୁ ସେ ବଦ୍ଧ; କିନ୍ତୁ ବ୍ରହ୍ମ ନିତ୍ୟମୁକ୍ତ ।

ଜୀବ ଯେତେବେଳେ ଶରୀର ଗ୍ରହଣ କରନ୍ତି ବା ଏକ ଶରୀର ତ୍ୟାଗକରି ଅନ୍ୟଶରୀର ଆଶ୍ରୟ କରନ୍ତି ସେତେବେଳେ ସ୍ଥୂଳ ଶରୀର ନଷ୍ଟ ହୋଇଯାଏ ସତ, ମାତ୍ର ସୂକ୍ଷ୍ମ ଶରୀର ଜୀବର ଅନୁବର୍ତ୍ତନ କରେ, ଏହି କଥା ପରବର୍ତ୍ତୀ ଶ୍ଳୋକମାନଙ୍କରେ କୁହାଯିବ ।

ଶରୀରଂ ଯଦବାପ୍ନୋତି ଯଚ୍ଚାପ୍ୟୁତ୍କ୍ରାମତୀଶ୍ୱରଃ ।
ଗୃହୀତ୍ୱୈତାନି ସଂଯାତି ବାୟୁର୍ଗନ୍ଧାନିବାଶୟାତ୍ । ୮ ।
ଶ୍ରୋତ୍ରଂ ଚକ୍ଷୁଃ ସ୍ପର୍ଶନଞ୍ଚ ରସନଂ ଘ୍ରାଣମେବ ଚ ।
ଅଧିଷ୍ଠାୟ ମନଶ୍ଚାୟଂ ବିଷୟାନୁପସେବତେ । ୯ ।

୮ । **ଅନ୍ୱୟ ଦୀପିକା**—ଈଶ୍ୱରଃ ( ଜୀବାତ୍ମା ) ଯତ୍ ( ଯେତେବେଳେ ) ଶରୀରଂ ( ଶରୀରକୁ ) ଅବାପ୍ନୋତି ( ପ୍ରାପ୍ତ ହୁଅନ୍ତି ), ଯତ୍ ଚ ଅପି ( ଏବଂ ଯେତେବେଳେ ) ଉତ୍କ୍ରାମତି ( ଶରୀରତ୍ୟାଗ କରନ୍ତି ) [ ସେତେବେଳେ ] ବାୟୁଃ ( ବାୟୁ ) ଆଶୟାତ୍ ( ପୁଷ୍ପାଦି ଆଧାରରୁ ) ଗନ୍ଧାନ୍ ଇବ ( ଗନ୍ଧକଣା ସମୂହକୁ ନେଲାପରି ) ଏତାନି ( ଏହି ଛଅ ଇନ୍ଦ୍ରିୟଙ୍କୁ ) ଗୃହୀତ୍ୱା ( ଗ୍ରହଣ କରି ) ସଂଯାତି ( ଗମନ କରନ୍ତି ) ।

**ଅନୁବାଦ**—ଯେପରି ବାୟୁ ପ୍ରବାହିତ ହେବାବେଳେ ପୁଷ୍ପ ପ୍ରଭୃତିରୁ ଗନ୍ଧକଣା ସମୂହକୁ ଆକର୍ଷଣ କରି ସଙ୍ଗରେ ନେଇଯାଏ, ସେହିପରି ଜୀବାତ୍ମା ଏକ ଶରୀର ଛାଡି ଅନ୍ୟ ଶରୀର ପାଇବାବେଳେ ଏ ସମସ୍ତଙ୍କୁ ଅର୍ଥାତ୍ ମନ ସହିତ ପଞ୍ଚ ଇନ୍ଦ୍ରିୟଙ୍କୁ ସଙ୍ଗରେ ନେଇ ଯାଆନ୍ତି ।

**ସୁବୋଧିନୀ ଟୀକା**—ତାନ୍ୟାକୃଷ୍ୟ କିଂ କରୋତୀତି ? ଅତାହ-ଶରୀରମିତି । ଯଦ୍ୟଦା ଶରୀରାନ୍ତରଂ କର୍ମବଶାଦବାପ୍ନୋତି ଯଚ୍ଚ ଶରୀରାଦୁତ୍କ୍ରାମତୀଶ୍ୱରୋ ଦେହାଦୀନାଂସ୍ୱାମୀ ତଦା ପୂର୍ବସ୍ମାଚ୍ଛରୀରାଦେତାନି ଗୃହୀତ୍ୱା ଉତ୍ତରଶରୀରଂ ସମ୍ୟଗ୍ ଯାତି । ଶରୀରେ ସତ୍ୟପୀନ୍ଦ୍ରିୟଗ୍ରହଣେ ଦୃଷ୍ଟାନ୍ତଃ । ଆଶୟାତ୍ ସ୍ୱସ୍ଥାନାତ୍ କୁସୁମାଦେଃ ସକାଶାତ୍ ଗନ୍ଧାନ୍ ଗନ୍ଧବତଃ ସୂକ୍ଷ୍ମାଂଶାନ୍ ଗୃହୀତ୍ୱା ବାୟୁର୍ଯଥା ଗଚ୍ଛତି ତଦ୍ବତ୍ ।

୯ । **ଅନ୍ୱୟ ଦୀପିକା**—ଅୟଂ ( ଏହି ଜୀବାତ୍ମା ) ଶ୍ରୋତ୍ରଂ ( କର୍ଣ୍ଣ ) ଚକ୍ଷୁଃ ( ଆଖି ) ସ୍ପର୍ଶନଂ ଚ ( ଏବଂ ଚର୍ମ ), ରସନଂ ( ଜିଭ ), ଘ୍ରାଣମ୍ ଏବ ଚ ( ନାସିକା ) ମନଃ ଚ ( ଏବଂ ମନକୁ ) ଅଧିଷ୍ଠାୟ ( ଆଶ୍ରୟ କରି ) ବିଷୟାନ୍ ଉପସେବତେ ( ବିଷୟ ସବୁ ଭୋଗ କରନ୍ତି ) ।

**ଅନୁବାଦ**—ଜୀବାତ୍ମା କର୍ଣ୍ଣ, ଚକ୍ଷୁ, ତ୍ୱକ୍ ବା ଚର୍ମ, ଜିହ୍ୱା, ନାସିକା ଏବଂ ମନ—ଏ ସବୁକୁ ଆଶ୍ରୟ କରି ବିଷୟ ଭୋଗ କରି ଥାଆନ୍ତି ।

**ସୁବୋଧିନୀ ଟୀକା**—ତାନ୍ୟେବେନ୍ଦ୍ରିୟାଣି ଦର୍ଶୟନ୍ ଯଦର୍ଥଂ ଗୃହୀତ୍ୱା ଗଚ୍ଛତି ତଦାହ—ଶ୍ରୋତ୍ରମିତି । ଶ୍ରୋତ୍ରାଦୀନି ବାହ୍ୟେନ୍ଦ୍ରିୟାଣି ମନଶ୍ଚାନ୍ତଃ-କରଣମଧିଷ୍ଠାୟାଶ୍ରିତ୍ୟ ଶବ୍ଦାଦୀନ୍ ବିଷୟାନୟଂ ଜୀବ ଉପଭୁଙ୍କ୍ତେ ।

୮—୯ । **ବିବୃତି**—ଜୀବାତ୍ମା ଯେଉଁ ଶରୀର ତ୍ୟାଗ କରନ୍ତି ସେହି ସ୍ଥୂଳ ଶରୀର ନଷ୍ଟ ହୋଇଯାଏ, ମାତ୍ର ଲିଙ୍ଗ ଶରୀର ବା ସୂକ୍ଷ୍ମ ଶରୀରକୁ ଜୀବାତ୍ମା

ଉତ୍କ୍ରାମନ୍ତଂ ସ୍ଥିତଂ ବାପି ଭୁଞ୍ଜାନଂ ବା ଗୁଣାନ୍ୱିତମ୍ ।
ବିମୂଢ଼ା ନାନୁପଶ୍ୟନ୍ତି ପଶ୍ୟନ୍ତି ଜ୍ଞାନଚକ୍ଷୁଷଃ । ୧୦ ।

ସାଙ୍ଗରେ ନେଇ ଯାଆନ୍ତି । ସେହି ଲିଙ୍ଗଶରୀରରେହିଁ ଜୀବାତ୍ମା ପୂର୍ବଶରୀର କୃତ ପାପ ପୁଣ୍ୟର ଫଳ ଭୋଗ କରନ୍ତି । ସ୍ଥୂଳ ଶରୀର କ୍ଷିତି, ଅପ୍, ତେଜଃ, ମରୁତ୍, ବ୍ୟୋମ—ଏହି ପାଞ୍ଚ ମହାଭୂତରେ ନିର୍ମିତ ଏବଂ ଚର୍ମଚକ୍ଷୁର ଗୋଚରୀଭୂତ । ମାତ୍ର ସୂକ୍ଷ୍ମଶରୀର ଆଖିରେ ଦେଖାଯାଏ ନାହିଁ—ଏଥିରେ ମନ ଓ ସୂକ୍ଷ୍ମ ପଞ୍ଚଇନ୍ଦ୍ରିୟ ଥାଏ । ପୂର୍ବେ କୁହାଯାଇ ଅଛି ଯେ ଏହି କ୍ଷେତ୍ର ବା ଶରୀରର ଉପାଦାନ ୨୪ ଗୋଟି । ତନ୍ମଧ୍ୟରୁ କ୍ଷିତି ପ୍ରଭୃତି ୫ ଗୋଟି ସ୍ଥୂଳ ପଦାର୍ଥ । ବାକି ୧୯ଟି ମଧ୍ୟରୁ ପ୍ରକୃତି ଅତି ସୂକ୍ଷ୍ମାନୁସୂକ୍ଷ୍ମ ପଦାର୍ଥ—ଏହାକୁ କାରଣ ଶରୀର କୁହାଯାଏ । ପଞ୍ଚତନ୍ମାତ୍ର, ପଞ୍ଚଜ୍ଞାନେନ୍ଦ୍ରିୟ, ବୁଦ୍ଧି ଓ ଅହଂକାର ମିଶି ୧୨ ଗୋଟି, ପୂର୍ବୋକ୍ତ ମନ ଓ ସୂକ୍ଷ୍ମ ପଞ୍ଚେନ୍ଦ୍ରିୟ ସହିତ—ଏହି ୧୮ଗୋଟିକୁ ସୂକ୍ଷ୍ମ ଶରୀର କୁହାଯାଏ । ଜୀବାତ୍ମା ଶରୀର ତ୍ୟାଗ କଲାବେଳେ ଏହି ୧୮ଗୋଟି ସୂକ୍ଷ୍ମ ଉପାଦାନ ବିଶିଷ୍ଟ ସୂକ୍ଷ୍ମ ଶରୀରକୁ ସଙ୍ଗରେ ନେଇ ଯାଆନ୍ତି, ମୂଳ ଶ୍ଳୋକରେ ପଞ୍ଚେନ୍ଦ୍ରିୟର ସୂକ୍ଷ୍ମାଂଶ ସହିତ ମନକୁ ସଙ୍ଗରେ ନେଇଯାନ୍ତି ବୋଲି ଯାହା କୁହା ଯାଇଅଛି ତନ୍ମଧ୍ୟରେ ଅବଶିଷ୍ଟ ୧୨ ଗୋଟି ଅନ୍ତର୍ଭୁକ୍ତ । ୯ମ ଶ୍ଳୋକରେ 'ମନଃ ଚ, ଘ୍ରାଣମ୍ ଏବ ଚ' ଏ ଦୁଇଟି 'ଚ' କାର ବ୍ୟବହାରରୁ ଏହା ସୂଚିତ ହୋଇଅଛି ।

ମୃତ୍ୟୁପରେ ପଞ୍ଚଭୂତାତ୍ମକ ସ୍ଥୂଳ ଶରୀର ତ୍ୟାଗ କରି ଜୀବାତ୍ମା ଉତ୍କ୍ରମଣ କରନ୍ତି ଏବଂ ପୂର୍ବକର୍ମାନୁଯାୟୀ ନୂତନ ସ୍ଥୂଳ ଶରୀର ମଧ୍ୟରେ ପଶନ୍ତି । ଅଳ୍ପ ମଧ୍ୟ ସେହି ଶରୀରରେ ପାପପୁଣ୍ୟାଦି ଫଳ ଭୋଗ କରନ୍ତି । ସୂକ୍ଷ୍ମଶରୀରରେ ମନ-ବୁଦ୍ଧି ପ୍ରଭୃତି ଥିବାରୁ ସେଠାରେ ତାଙ୍କର ଧର୍ମାଧର୍ମାଦି ସଂସ୍କାର ପୂର୍ବ କର୍ମାନୁରୂପ ହୋଇଥାଏ । ଏଥିରୁ ବୁଝାଯାଉଅଛି ସ୍ଥୂଳଶରୀର ତ୍ୟାଗ କରିବା ଦ୍ୱାରା ଜୀବର ମୁକ୍ତି ହୁଏ ନାହିଁ । ସୂକ୍ଷ୍ମ ଶରୀର ଲୋପ ହେଲେ ଜୀବର ପରମପଦ ପ୍ରାପ୍ତି ହୁଏ ।

ଯୋଗୀମାନେ ସ୍ଥୂଳ ଦେହରୁ ସୂକ୍ଷ୍ମଶରୀରକୁ ଯୋଗବଳରେ ବାହାର କରି ନେଇ ଅନ୍ୟ ଶରୀରରେ ପ୍ରବେଶ କରନ୍ତି । ଶଙ୍କରାଚାର୍ଯ୍ୟ ପ୍ରୟୋଜନ ଉପସ୍ଥିତ ହେବାରୁ ଥରେ ଏପରି କରିଥିଲେ ବୋଲି ତାଙ୍କ ଜୀବନଚରିତରେ ଲେଖାଅଛି ।

୧୦ । ଅନ୍ୱୟ ଦୀପିକା—ଉତ୍କ୍ରାମନ୍ତଂ ( ଏକଦେହରୁ ଅନ୍ୟଦେହକୁ ଗମନଶୀଳ ), ସ୍ଥିତଂ ବା ଅପି ( ଅଥବା ଦେହରେ ସ୍ଥିତ ), ଭୁଞ୍ଜାନଂ ବା ( ବିଷୟ ଭୋଗକାରୀ ), ଗୁଣାନ୍ୱିତଂ ( ସତ୍ତ୍ୱାଦିଗୁଣ ସଂଯୁକ୍ତ ) [ ଜୀବକୁ ] ବିମୂଢ଼ାଃ ( ମୂଢ଼ବ୍ୟକ୍ତିମାନେ ) ନ ଅନୁପଶ୍ୟନ୍ତି ( ଦେଖି ପାରନ୍ତି

ଯତନ୍ତୋ ଯୋଗିନଶ୍ଚୈନଂ ପଶ୍ୟନ୍ତ୍ୟାତ୍ମନ୍ୟବସ୍ଥିତମ୍ ।
ଯତନ୍ତୋଽପ୍ୟକୃତାତ୍ମାନୋ ନୈନଂ ପଶ୍ୟନ୍ତ୍ୟଚେତସଃ । ୧୧ ।

ନାହିଁ ), ଜ୍ଞାନଚକ୍ଷୁଷଃ ( ଜ୍ଞାନଚକ୍ଷୁ ବିଶିଷ୍ଟ ବିବେକୀ ମାନେହିଁ ) ପଶ୍ୟନ୍ତି ( ଦେଖନ୍ତି ) ।

ଅନୁବାଦ—ଜୀବାତ୍ମା କିପରି ଏକ ଦେହରୁ ଅନ୍ୟ ଦେହକୁ ଗମନ କରନ୍ତି, ବା ଦେହରେ ଅବସ୍ଥାନ କରନ୍ତି, କିପରି ବିଷୟ ଉପଭୋଗ କରନ୍ତି ବା ଇନ୍ଦ୍ରିୟାଦିଗୁଣ ଯୁକ୍ତହୋଇଥାଅନ୍ତି—ତାହା ଅଜ୍ଞମାନେ ଦେଖି ପାରନ୍ତି ନାହିଁ, ଜ୍ଞାନୀମାନେହିଁ ତାହା ଦେଖନ୍ତି ।

ସୁବୋଧିନୀ ଟୀକା—ନନ୍ୱ କାର୍ଯ୍ୟ କାରଣସଙ୍ଘାତବ୍ୟତିରେକେଣୈବନ୍ଭୂତମାତ୍ମାନଂ ସର୍ବେଽପି କିଂ ନ ପଶ୍ୟନ୍ତି ? ତତ୍ରାହ—ଉତ୍କ୍ରାମନ୍ତମିତି, ଉତ୍କ୍ରାମନ୍ତଂ ଦେହାତ୍ ଦେହାନ୍ତରଂ ଗଚ୍ଛନ୍ତଂ ତସ୍ମିନ୍ନେବ ଦେହେ ସ୍ଥିତଂ ବା ବିଷୟାନ୍ ଭୁଞ୍ଜାନଂ ବା ଗୁଣାନ୍ୱିତ ମିନ୍ଦ୍ରିୟାଦିଯୁକ୍ତଂ ଜୀବ ବିମୂଢ଼ା ନାନୁପଶ୍ୟନ୍ତି ନାଲୋକୟନ୍ତି । ଜ୍ଞାନମେବ ଚକ୍ଷୁର୍ଯେଷାଂତେ ବିବେକିନଃ ପଶ୍ୟନ୍ତି ।

୧୧ । ଅନ୍ୱୟ ଦୀପିକା—ଯତନ୍ତଃ ( ଯତ୍ନଶୀଳ ) ଯୋଗିନଃଚ ( ଯୋଗୀମାନେ ) ଏନଂ ( ଏହି ଆତ୍ମାଙ୍କୁ ) ଆତ୍ମନି ( ନିଜ ଦେହରେ ) ଅବସ୍ଥିତଂ ( ଅବସ୍ଥିତ ) ପଶ୍ୟନ୍ତି ( ଦେଖନ୍ତି ), ଯତନ୍ତଃ ଅପି ( ଯତ୍ନକର ମଧ୍ୟ ) ଅକୃତାତ୍ମାନଃ ( ଅବିଶୁଦ୍ଧ ଚିତ୍ତ ) ଅଚେତସଃ ( ଅବିବେକୀମାନେ ) ଏନଂ ନ ପଶ୍ୟନ୍ତି ( ଏହାକୁ ଦେଖି ପାରନ୍ତି ନାହିଁ ) ।

ଅନୁବାଦ—ଯୋଗୀମାନେ ଧ୍ୟାନାଦିଦ୍ୱାରା ଯତ୍ନକରି ଆତ୍ମାଙ୍କୁ ନିଜ ଦେହରେ ଅବସ୍ଥିତ ଥିବା ଦେଖି ପାରନ୍ତି । କିନ୍ତୁ ଯେଉଁମାନଙ୍କର ଚିତ୍ତମଳିନ ସେହି ଅବିବେକୀମାନେ ଯତ୍ନକରି ତାହାଙ୍କୁ ଦେଖି ପାରନ୍ତି ନାହିଁ ।

ସୁବୋଧିନୀ ଟୀକା—ଦୁର୍ଜ୍ଞେୟଶ୍ଚାୟଂ ଯତୋ ବିବେକିନ୍ୱପି କେଚତ୍ ପଶ୍ୟନ୍ତି କେଚିନ୍ନ ପଶ୍ୟନ୍ତୀତ୍ୟାହ, ଯତନ୍ତ ଇତି । ଯତନ୍ତୋ ଧ୍ୟାନାଦିଭିଃ ପ୍ରଯତମାନା ଯୋଗିନଃ କେଚନୈନମାତ୍ମାନମାତ୍ମନି ଦେହେଽବସ୍ଥିତଂ ବିବିକ୍ତଂ ପଶ୍ୟନ୍ତି । ଶାସ୍ତ୍ରାଭ୍ୟାସାଦିଭିଃ ପ୍ରଯତ୍ନଂ କୁର୍ବାଣା ଅପ୍ୟକୃତାତ୍ମାନୋଽବିଶୁଦ୍ଧଚିତ୍ତା ଅତଏବା ଚେତସୋ ମନ୍ଦମତୟ ଏନଂ ନ ପଶ୍ୟନ୍ତି ।

ବିବୃତି—ଜୀବାତ୍ମା କିପରି ଏକ ଶରୀରତ୍ୟାଗ କରି ଅନ୍ୟ ଶରୀରକୁ ଗମନ କରନ୍ତି, କିପରି ବା ଦେହରେ ଅବସ୍ଥାନ କରି ଇନ୍ଦ୍ରିୟାଦିର ଗୁଣଦ୍ୱାରା ସଂଯୁକ୍ତ ହୋଇ ବିଷୟ ଭୋଗ କରନ୍ତି, ଏସବୁର ତତ୍ତ୍ୱ ବଡ଼ ଦୁର୍ଜ୍ଞେୟ । କେବଳ ଶାସ୍ତ୍ରାଧ୍ୟୟନ ଦ୍ୱାରା ଏ ତତ୍ତ୍ୱ ଜଣାଯାଏ ନାହିଁ । ଯେଉଁ ଯୋଗୀମାନେ ନିଷ୍କାମ

ଯଦାଦିତ୍ୟଗତଂ ତେଜୋ ଜଗଦ୍ଭାସୟତେଽଖିଳମ୍ ।
ଯଚ୍ଚନ୍ଦ୍ରମସି ଯଚ୍ଚାଗ୍ନୌ ତତ୍ତେଜୋ ବିଦ୍ଧି ମାମକମ୍ ॥ ୧୨ ॥
ଗାମାବିଶ୍ୟ ଚ ଭୂତାନି ଧାରୟାମ୍ୟହମୋଜସା ।
ପୁଷ୍ଣାମି ଚୌଷଧୀଃ ସର୍ବାଃ ସୋମୋ ଭୂତ୍ୱା ରସାତ୍ମକଃ ॥ ୧୩ ॥

କର୍ମ ଅନୁଷ୍ଠାନରେ ହୃଦୟକୁ ନିର୍ମଳ କରି ଥାଆନ୍ତି, କେବଳ ସେହିମାନେହିଁ ଧ୍ୟାନାଦି ଉପାୟ ଦ୍ୱାରା ଯତ୍ନ କରି ଏସବୁ ଜାଣି ପାରନ୍ତି । ଯେଉଁମାନେ ଅକୃତାତ୍ମା ଅର୍ଥାତ୍ ଯେଉଁମାନଙ୍କର ଚିତ୍ତଶୁଦ୍ଧି ହୋଇ ନାହିଁ, ସେମାନେ କେବଳ ଶାସ୍ତ୍ରାଧ୍ୟୟନ-ଦ୍ୱାରା ଆତ୍ମାକୁ ଜାଣି ପାରନ୍ତି ନାହିଁ । ଚିତ୍ତଶୁଦ୍ଧି ବା ଇନ୍ଦ୍ରିୟ ସଂଯମହିଁ ଆତ୍ମଦର୍ଶନର ଏକମାତ୍ର ଉପାୟ—ତଦ୍‌ଭିନ୍ନ ଶତଚେଷ୍ଟାରେ ମଧ୍ୟ ଆତ୍ମଦର୍ଶନ ହୁଏ ନାହିଁ ।

୧୨ । ଅନ୍ୱୟ ଦୀପିକା—ଆଦିତ୍ୟଗତଂ (ସୂର୍ଯ୍ୟସ୍ଥିତ) ଯତ୍ ତେଜଃ (ଯେଉଁ ତେଜ), ଅଖିଳଂ ଜଗତ୍ (ସମଗ୍ର ସଂସାରକୁ) ଭାସୟତେ (ପ୍ରକାଶ କରେ), ଚନ୍ଦ୍ରମସି ଚ ଯତ୍ (ଚନ୍ଦ୍ରଙ୍କଠାରେ ଯେଉଁ ତେଜ) ଅଗ୍ନୌ ଚ ଯତ୍ (ଏବଂ ଅଗ୍ନିଙ୍କଠାରେ ଯେଉଁ ତେଜ) ତତ୍ ସର୍ବଂ (ସେ ସମସ୍ତ) ମାମକଂ ବିଦ୍ଧି (ଆମ୍ଭର ବୋଲି ଜାଣ) ।

ଅନୁବାଦ—ସୂର୍ଯ୍ୟଙ୍କଠାରେ ଥାଇ ଯେଉଁ ତେଜ ସମସ୍ତ ଜଗତକୁ ଆଲୋକିତ କରେ, ଯେଉଁ ତେଜ ଚନ୍ଦ୍ରଙ୍କଠାରେ ଏବଂ ଅଗ୍ନିରେ ଅଛି ସେସବୁ ଆମ୍ଭର ତେଜ ବୋଲି ଜାଣିବ ।

ସୁବୋଧିନୀଟୀକା—ତଦେବଂ ନ ତଦ୍ଭାସୟତେ ସୂର୍ଯ୍ୟ ଇତ୍ୟାଦିନା ପାରମେଶ୍ୱରଂ ପରଂ ଧାମ ଉକ୍ତମ୍ । ତତ୍ ପ୍ରାପ୍ତାନାଂ ଚ ପୁନରାବୃତ୍ତିରୁକ୍ତା । ତଦେତ ସଂସାରଶୋଽଭିବମାଣଙ୍କ୍ୟ ସଂସାରସ୍ୱରୂପଂ ଦେହାଦିବ୍ୟତିରିକ୍ତଂ ଦର୍ଶିତଂ । ଇଦାନୀଂ ତଦେବ ପାରମେଶ୍ୱରଂ ରୂପମନନ୍ତଶକ୍ତିତ୍ୱେନ ନିରୂପୟତି—ଯଦାଦିତ୍ୟାଦି ଚତୁର୍ଭିଃ, ଆଦିତ୍ୟାଦିସ୍ଥିତଂ ଯଦନେକପ୍ରକାରଂ ତେଜୋ ବିଶ୍ୱଂ ପ୍ରକାଶୟତି ତତ୍ସର୍ବଂ ତେଜୋ ମଦୀୟମେବ ଜାନୀହି ।

୧୩ । ଅନ୍ୱୟ ଦୀପିକା—ଅହଂ ଚ (ଆମ୍ଭେ) ଓଜସା (ତେଜଦ୍ୱାରା) ଗାମ୍ (ପୃଥିବୀରେ) ଆବିଶ୍ୟ (ପ୍ରବିଷ୍ଟ ହୋଇ) ଭୂତାନି (ଭୂତଗଣଙ୍କୁ) ଧାରୟାମି (ଧାରଣ କରୁଅଛୁଁ), ରସାତ୍ମକଃ (ରସମୟ) ସୋମଃ ଚ ଭୂତ୍ୱା (ଚନ୍ଦ୍ରରୂପ ହୋଇ) ସର୍ବାଃ (ସମସ୍ତ) ଓଷଧୀଃ (ବ୍ରୀହି ଯବାଦି ଓଷଧିକୁ) ପୁଷ୍ଣାମି (ପରିପୁଷ୍ଟ କରୁଅଛୁଁ) ।

ଅନୁବାଦ—ଆମ୍ଭେ ନିଜ ପ୍ରଭାବରେ ପୃଥିବୀରେ ଅନୁପ୍ରବିଷ୍ଟ ହୋଇ ସମସ୍ତ ଭୂତଙ୍କୁ ଧାରଣ କରୁଅଛୁଁ ଏବଂ ରସମୟ ଚନ୍ଦ୍ର ରୂପ ଧାରଣକରି ବ୍ରୀହି-ଯବାଦି ଓଷଧିମାନଙ୍କୁ ପରିପୁଷ୍ଟ କରୁଅଛୁଁ ।

ଅହଂ ବୈଶ୍ୱାନରୋ ଭୂତ୍ୱା ପ୍ରାଣିନାଂ ଦେହମାଶ୍ରିତଃ ।
ପ୍ରାଣାପାନସମାଯୁକ୍ତଃ ପଚାମ୍ୟନ୍ନଂ ଚତୁର୍ବିଧମ୍ । ୪ ।

ସୁବୋଧିନୀ ଟୀକା—କିଞ୍ଚ ଗାମିତି । ଗାଂ ପୃଥ୍ୱୀମୋଜସା ବଳେନାଧିଷ୍ଠାୟାହମେବ ଚରାଚରାଣି ଭୂତାନି ଧାରୟାମି । ଅହମେବ ରସମୟଃ ସୋମୋ ଭୂତ୍ୱା ବ୍ରୀହ୍ୟାଦ୍ୟୋଷଧୀଃ ସର୍ବାଃ ପୁଷ୍ଣାମି ।

ବିବୃତି—ଐଶୀଶକ୍ତି ପ୍ରଭାବରେ ପୃଥିବୀ ସ୍ଥିର ହୋଇ ରହିଅଛି ଓ ତହିଁରେ ଭୂତସମୂହ ସ୍ଥିର ରହି ଅଛନ୍ତି । ତା ନ ଥିଲେ ପୃଥିବୀ ସୂର୍ଯ୍ୟ ଆଡ଼କୁ ଧାବିତ ହୋଇ ଭସ୍ମୀଭୂତ ହୋଇ ଯାଆନ୍ତା ଅଥବା ରସାତଳଗାମୀ ହୋଇ ଯାଆନ୍ତା । ଚନ୍ଦ୍ରଙ୍କଠାରେ ସୁଧାରସ ଥିବାରୁ ତାଙ୍କର ନାମ ସୋମ । ଏହି ଅମୃତଦ୍ୱାରା ପରିପୁଷ୍ଟ ହେବାରୁ ଔଷଧାଦିର ରୋଗ ନାଶିବାର ଶକ୍ତି ଦେଖାଯାଏ । ଏହା ସେହି ଐଶୀଶକ୍ତିର ଅଂଶ ।

୧୪ । ଅନ୍ୱୟ ଦୀପିକା—ଅହଂ ବୈଶ୍ୱାନରଃ ଭୂତ୍ୱା ( ଅମ୍ଭେ ଜଠରାଗ୍ନି ହୋଇ ) ପ୍ରାଣିନାଂ ( ପ୍ରାଣୀମାନଙ୍କର ) ଦେହମ୍ ଆଶ୍ରିତ୍ୟ ( ଦେହକୁ ଆଶ୍ରୟ କରି ) ପ୍ରାଣାପାନସମାଯୁକ୍ତଃ ( ପ୍ରାଣ ଓ ଅପାନ ବାୟୁ ସହିତ ମିଳିତ ହୋଇ ) ଚତୁର୍ବିଧମ୍ ( ଚାରିପ୍ରକାର ) ଅନ୍ନମ୍ ( ଖାଦ୍ୟକୁ ) ପଚାମି ( ପରିପାକ କରୁଁ ) ।

ଅନୁବାଦ—ଅମ୍ଭେ ଜଠରାଗ୍ନି ରୂପରେ ପ୍ରାଣୀମାନଙ୍କ ଦେହରେ ଅବସ୍ଥାନ କରି ଏବଂ ପ୍ରାଣ ଓ ଅପାନ ବାୟୁ ସଙ୍ଗେ ମିଳିତ ହୋଇ ଚାରି ପ୍ରକାର ଖାଦ୍ୟ ପରିପାକ କରୁଁ ।

ସୁବୋଧିନୀ ଟୀକା—କିଞ୍ଚ—ଅହମିତି—ଅହମୀଶ୍ୱର ଏବ ବୈଶ୍ୱାନରୋ ଜଠରାଗ୍ନିର୍ଭୂତ୍ୱା ପ୍ରାଣିନାଂ ଦେହସ୍ୟାନ୍ତଃ ପ୍ରବିଶ୍ୟ ପ୍ରାଣାପାନାଭ୍ୟାଂ ଚ ତଦ୍ଦୁଦ୍ଦୀପକାଭ୍ୟାଂ ସହିତଃ ପ୍ରାଣିଭିର୍ଭୁକ୍ତଂ ଭକ୍ଷ୍ୟଂ, ଭୋଜ୍ୟଂ, ଲେହ୍ୟଂ, ଚୋଷ୍ୟଂ ଚେତି ଚତୁର୍ବିଧମନ୍ନଂ ପଚାମି । ତତ୍ର ଯଦ୍ଦନ୍ତୈରବଖଣ୍ଡ୍ୟାବଖଣ୍ଡ୍ୟ ଭକ୍ଷ୍ୟତେ ଅପୂପାଦି ତଦ୍ଭକ୍ଷ୍ୟମ୍ । ଯତ୍ତୁ କେବଳଂ ଜିହ୍ୱୟା ବିଲୋଡ୍ୟ ନିଗୀର୍ଯ୍ୟତେ ପାୟସାଦି ତଦ୍ ଭୋଜ୍ୟମ୍ । ଯଦ୍ ଜିହ୍ୱାୟାଂ ନିକ୍ଷିପ୍ୟ ରସାସ୍ୱାଦେନ କ୍ରମଶୋ ନିଗୀର୍ଯ୍ୟତେ ଦ୍ରବୀଭୂତଂ ଗୁଡ଼ାଦି ତଲ୍ଲେହ୍ୟମ୍ । ଯତ୍ତୁ ଦନ୍ତୈର୍ନିଷ୍ପୀଡ୍ୟ ସାରାଂଶଂ ନିଗୀର୍ଯ୍ୟାବଶିଷ୍ଟଂ ତ୍ୟଜ୍ୟତ ଇକ୍ଷୁଦଣ୍ଡାଦି ତଚ୍ଚୋଷ୍ୟମିତି ଚତୁର୍ବିଧାନ୍ନସ୍ୟ ଭେଦଃ ।

ବିବୃତି—ଖାଦ୍ୟ ଚାରି ପ୍ରକାର—ଶ୍ରୀଧର ସ୍ୱାମୀଙ୍କ ମତରେ ଭକ୍ଷ୍ୟ, ଭୋଜ୍ୟ, ଲେହ୍ୟ, ଓ ଚୋଷ୍ୟ । ପିଠା ପ୍ରଭୃତି ଯେଉଁ ସବୁ ଖାଦ୍ୟ ଦାନ୍ତ ସାହାଯ୍ୟରେ ଖଣ୍ଡ ଖଣ୍ଡ କରି ଖିଆଯାଏ, ସେ ସବୁ ଭକ୍ଷ୍ୟ । ପାୟସାଦି ଯେଉଁ ସବୁ ଖାଦ୍ୟ କେବଳ ଜିହ୍ୱା ସାହାଯ୍ୟରେ ଗିଳାଯାଏ ତାହା ଭୋଜ୍ୟ । ମଧୁ-

ସର୍ବସ୍ୟ ଚାହଂ ହୃଦି ସନ୍ନିବିଷ୍ଟୋ—
ମତ୍ତଃସ୍ମୃତିର୍ଜ୍ଞାନମପୋହନଞ୍ଚ ।
ବେଦୈଶ୍ଚ ସର୍ବୈ ରହମେବ ବେଦ୍ୟୋ
ବେଦାନ୍ତକୃଦ୍‌ବେଦବିଦେବ ଚାହମ୍ ।୧୫।

ପ୍ରକୃତ ଯାହା ଚୁଷି ଚୁଷି ଖିଆଯାଏ ତାହା ଲେହ୍ୟ; ଅର୍ଥାତ୍ ପ୍ରକୃତ ଯେଉଁ ସବୁ ଖାଦ୍ୟ ଦାନ୍ତରେ ଚୋବାଇ ରସାଂଶ ମାତ୍ର ଗ୍ରହଣ କରାଯାଏ ତାହା ଚୋଷ୍ୟ । ଅନ୍ୟ କେହ କେହ କହନ୍ତି ଚର୍ବ୍ୟ, ଚୋଷ୍ୟ, ଲେହ୍ୟ ଓ ପେୟ ଭେଦରେ ଖାଦ୍ୟ ଚତୁର୍ବିଧ । ଅନ୍ୟ କେତେକ କହନ୍ତି ପାର୍ଥିବ, ଜଳୀୟ, ତୈଜସ, ବାୟବୀୟ ଭେଦରେ ଖାଦ୍ୟ ଚାରି ପ୍ରକାର—ବ୍ରୀହି ଯବାଦି ମାନବୀୟ ଖାଦ୍ୟ ପାର୍ଥିବ, ମେଘମୁକ୍ତଜଳଧାରାଦି ଚାତକାଦିଙ୍କର ଖାଦ୍ୟ ଜଳୀୟ, ବାଲଖିଲ୍ୟାଦି ଋଷିମାନଙ୍କର ଖାଦ୍ୟ ସୂର୍ଯ୍ୟ କିରଣାଦି—ତୈଜସ, ସର୍ପାଦିଙ୍କର ଖାଦ୍ୟ ବାୟୁ ବାୟବୀୟ ।

ଅମ୍ଭେମାନେ ଭାତ, ତରକାରୀ ପ୍ରଭୃତି ଯାହା ଖାଉଁ ତାହା ଉଦର ମଧ୍ୟକୁ ଗଲେ ରକ୍ତରେ ପରିଣତ ହୁଏ । ଏହା କି ପ୍ରକ୍ରିୟାରେ ଦେହାଭ୍ୟନ୍ତରରେ ସିଦ୍ଧ ହୁଏ ତାହା ଜଡ଼ ବିଜ୍ଞାନ କହିବ । ମାତ୍ର ଯେଉଁ ଶକ୍ତିବଳରେ ଏ କାର୍ଯ୍ୟ ହୁଏ ତାହା ଐଶ୍ୱରିକ; ଜଡ଼ ବିଜ୍ଞାନ ଏହା କହି ପାରିବ ନାହିଁ ।

୧୫ । ଅନ୍ୱୟ ଦୀପିକା—ଅହଂ ଚ ( ଅମ୍ଭେ ) ସର୍ବସ୍ୟ ହୃଦି ( ସମସ୍ତଙ୍କ ହୃଦୟରେ ) ସନ୍ନିବିଷ୍ଟଃ ( ପ୍ରବିଷ୍ଟ ହୋଇଅଛୁଁ ) ମତ୍ତଃ ( ଅମ୍ଭଠାରୁ ହିଁ ) ସ୍ମୃତିଃ, ଜ୍ଞାନଂ, ଅପୋହନଂ ଚ ( ସ୍ମୃତି, ଜ୍ଞାନ ଏବଂ ସେ ଦୁହିଙ୍କର ଅଭାବ ହୁଏ ) । ଅହମ୍ ଏବ ( ଅମ୍ଭେ ହିଁ ) ସର୍ବୈଃ ବେଦୈଃ ( ସମସ୍ତ ବେଦରେ ) ବେଦ୍ୟଃ ( ଜ୍ଞାତବ୍ୟ ତତ୍ତ୍ୱ ), ବେଦାନ୍ତକୃତ୍ ( ବେଦାନ୍ତ ରଚୟିତା ) ବେଦବିତ୍ ( ବେଦାର୍ଥବେତ୍ତା ) ଅହମ୍ ଏବ ( ଅମ୍ଭେହିଁ ) ।

ଅନୁବାଦ—ଅମ୍ଭେ ହିଁ ଅନ୍ତର୍ଯ୍ୟାମୀ ରୂପରେ ସବୁ ପ୍ରାଣୀଙ୍କ ହୃଦୟରେ ଅଧିଷ୍ଠିତ ଅଛୁ, ଅମ୍ଭଠାରୁ ସ୍ମରଣ ଶକ୍ତି ଓ ଜ୍ଞାନ ଉତ୍ପନ୍ନ ହୋଇଥାଏ ଏବଂ ସେ ଦୁହିଙ୍କର ବିଲୋପ ମଧ୍ୟ ଅମ୍ଭଠାରୁ ହୋଇଥାଏ । ଅମ୍ଭେହିଁ ସବୁ ବେଦର ଏକମାତ୍ର ଜ୍ଞାତବ୍ୟ ତତ୍ତ୍ୱ । ଅମ୍ଭେହିଁ ବେଦାନ୍ତଶାସ୍ତ୍ରର ଅର୍ଥପ୍ରକାଶକ ଓ ବେଦାର୍ଥର ପରିଜ୍ଞାତା ।

ସୁବୋଧିନୀ ଟୀକା—କିଞ୍ଚ—ସର୍ବସ୍ୟେତି—ସର୍ବସ୍ୟ ପ୍ରାଣିଜାତସ୍ୟ ହୃଦି ସମ୍ୟଗନ୍ତର୍ଯ୍ୟାମିରୂପେଣ ପ୍ରବିଷ୍ଟୋଽହମ୍ । ଅତଏବ ମତ୍ତ ଏବ ହେତୋଃ ପ୍ରାଣିମାତ୍ରସ୍ୟ ପୂର୍ବାନୁଭୂତାର୍ଥବିଷୟା ସ୍ମୃତିର୍ଭବତି । ଜ୍ଞାନଂ ଚ ବିଷୟେନ୍ଦ୍ରିୟ ସଂଯୋଗଜଂ ଭବତି । ଅପୋହନଂ ଚ ତୟୋଃ ପ୍ରମୋଷୋ ଭବତି ବେଦୈଶ୍ଚ

ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବଚ,
କ୍ଷରଃ ସର୍ବାଣି ଭୂତାନି କୂଟସ୍ଥୋଽକ୍ଷର ଉଚ୍ୟତେ । ୧୬ ।
ଉତ୍ତମଃ ପୁରୁଷ ସ୍ତ୍ୱନ୍ୟଃ ପରମାତ୍ମେତ୍ୟୁଦାହୃତଃ,
ଯୋ ଲୋକତ୍ରୟମାବିଶ୍ୟ ବିଭର୍ତ୍ତ୍ୟବ୍ୟୟ ଈଶ୍ୱରଃ । ୧୭ ।

ସର୍ବୈସ୍ତୈରେବଦେବତାଦିରୂପେଣାହମେବ ବେଦ୍ୟଃ । ବେଦାନ୍ତକୃଦ୍ ତତ୍ସମ୍ପ୍ରଦାୟ-ପ୍ରବର୍ତ୍ତକଶ୍ଚ । ଜ୍ଞାନଦୋଗୁରୁରହମିତ୍ୟର୍ଥଃ । ବେଦବିଦେବ ଚ ବେଦାର୍ଥବିଦପ୍ୟ-ହମେବ ।

ଅନୁବାଦ—ମାୟାଶ୍ରିତ ଚୈତନ୍ୟ ଜୀବାତ୍ମା ରୂପରେ ସମସ୍ତଙ୍କ ହୃଦୟରେ ବିଦ୍ୟମାନ ଅଛନ୍ତି । ତାହାଙ୍କ ପ୍ରଭାବରୁ ହୃଦୟରେ ଜ୍ଞାନ ଓ ସ୍ମୃତି ଜାଗରୂକ ଥାଏ । ଯେଉଁ ମୋହ ପ୍ରଭାବରୁ ସ୍ମୃତି ଓ ଜ୍ଞାନର ଅଭାବ ହୁଏ ସେହି ମୋହ ମଧ୍ୟ ତାଙ୍କଠାରୁ ଜାତ । ସମସ୍ତ ବେଦ ଏକମାତ୍ର ସେହି ପରମାତ୍ମାଙ୍କୁ ଜାଣିବା ପାଇଁ ଉପଦେଶ କରି ଅଛନ୍ତି । ବେଦବ୍ୟାସାଦି ରୂପରେ ସେହି ଏକା ବେଦାର୍ଥର ଉପଦେଷ୍ଟା ଏବଂ ବେଦର ପ୍ରକୃତ ଅର୍ଥ ସେହି ଏକା ବୁଝନ୍ତି ।

୧୬ । ଅନ୍ୱୟ ଦୀପିକା—କ୍ଷରଃ ଚ ଅକ୍ଷରଃ ଚ ( କ୍ଷର ଏବଂ ଅକ୍ଷର ) ଦ୍ୱୌ ଏବ ଇମୌ ପୁରୁଷୌ ( ଏହି ଦୁଇ ପୁରୁଷ) ଲୋକେ (ସଂସାରରେ ପ୍ରସିଦ୍ଧ ଅଛନ୍ତି ) । [ ସେମାନଙ୍କ ମଧ୍ୟରୁ ] ସର୍ବାଣି ( ସମସ୍ତ ) ଭୂତାନି ( ଭୂତ ) କ୍ଷରଃ ( ନଶ୍ୱର ପୁରୁଷ ) । କୂଟସ୍ଥଃ ( ଅବିକାରୀ ଆତ୍ମା ) ଅକ୍ଷରଃ ( ଅବିନାଶୀ ପୁରୁଷ ଅଟନ୍ତି ) ।

ଅନୁବାଦ—ସଂସାରରେ କ୍ଷର ଓ ଅକ୍ଷର—ଏହି ଦୁଇ ପୁରୁଷ ପ୍ରସିଦ୍ଧ ଅଟନ୍ତି । ସେମାନଙ୍କ ମଧ୍ୟରେ ସର୍ବଭୂତ କ୍ଷର ପୁରୁଷ ଏବଂ କୂଟସ୍ଥ ଅକ୍ଷର ପୁରୁଷ ନାମରେ କଥିତ ହୁଅନ୍ତି ।

ସୁବୋଧିନୀ ଟୀକା—ଇଦାନୀଂ ତଦ୍ଧାମ ପରମଂ ମମେତି ଯଦୁକ୍ତଂ ସ୍ୱକୀୟଂ ସର୍ବୋତ୍ତମଂ ସ୍ୱରୂପଂ ତଦ୍ଦର୍ଶୟତି—ଦ୍ୱାବିତି ତ୍ରିଭିଃ । କ୍ଷରଶ୍ଚାକ୍ଷରଶ୍ଚେତି ଦ୍ୱାବିମୌ ପୁରୁଷୌ ଲୋକେ ପ୍ରସିଦ୍ଧୌ । ତାବେବାହ—ତତ୍ର କ୍ଷରଃ ପୁରୁଷୋ ନାମ ସର୍ବାଣି ଭୂତାନି । ବ୍ରହ୍ମାଦସ୍ତାବରାନ୍ତାନି ପୁରୁଷାଣି । ଅବିବେକ-ଲୋକସ୍ୟ ଶରୀରେଷ୍ୱେବ ପୁରୁଷତ୍ୱପ୍ରସିଦ୍ଧେଃ । କୂଟୋରାଶିଃ ଶିଳାରାଶିଃ, ପର୍ବତ ଇବ ଦେହେଷୁ ନଶ୍ୟତ୍ସ୍ୱପି ନିର୍ବିକାରତୟା ତିଷ୍ଠତୀତି କୂଟସ୍ଥଃଚେତ-ନୋଭୋକ୍ତା । ସ ତ୍ୱକ୍ଷରଃ ପୁରୁଷ ଉଚ୍ୟତେ ବିବେକିଭିଃ ।

୧୭ । ଅନ୍ୱୟ ଦୀପିକା—ଅନ୍ୟଃ ତୁ ( କ୍ଷର ଓ ଅକ୍ଷରଠାରୁ ଭିନ୍ନ ) ଉତ୍ତମଃ ପୁରୁଷଃ ( ଉତ୍ତମ ପୁରୁଷ ) ପରମାତ୍ମା ଇତି ଉଦାହୃତଃ ( ପରମାତ୍ମା ବୋଲି କଥିତ ହୁଅନ୍ତି ) । ଯଃ ( ଯେଉଁ ) ଈଶ୍ୱରଃ ଅବ୍ୟୟଃ

ଯସ୍ମାତ୍ କ୍ଷରମତୀତୋଽହମକ୍ଷରାଦପି ଚୋତ୍ତମଃ
ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ । ୧୮ ।

( ଈଶ୍ୱର ଓ ନର୍ବିକାର ) ଲୋକତ୍ରୟମ୍ ( ତିନ ଲୋକରେ ) ଆବଶ୍ୟ ( ପ୍ରବିଷ୍ଟହୋଇ ) ବିଭର୍ତ୍ତି ( ପାଳନ କରୁ ଅଛନ୍ତି ) ।

ଅନୁବାଦ—ଅନ୍ୟ ପରମୋତ୍କୃଷ୍ଟ ଚୈତନ୍ୟମୟ ପୁରୁଷ ପରମାତ୍ମା ନାମରେ କଥିତ ହୁଅନ୍ତି ? ସେ ତିନିଲୋକରେ ପ୍ରବିଷ୍ଟହୋଇ ସମସ୍ତଙ୍କୁ ପ୍ରତିପାଳନ କରୁଅଛନ୍ତି । ସେ ଅବ୍ୟୟ ଓ ସେ ଈଶ୍ୱର ।

ସୁବୋଧିନୀ ଟୀକା—ଯଦର୍ଥ ମେତୌ ଲକ୍ଷିତୌ ତମାହ । ଉତ୍ତମ ଇତି । ଏତାଭ୍ୟାଂ କ୍ଷରାକ୍ଷରାଭ୍ୟାମନ୍ୟୋ ବିଲକ୍ଷଣସ୍ତୂତ୍ତମଃ ପୁରୁଷଃ । ବୈଲକ୍ଷଣ୍ୟମେବାହ—ପରମଶ୍ଚାସାବାତ୍ମା ଚେତ୍ୟୁଦାହୃତ ଉକ୍ତଃ ଶ୍ରୁତିଭିଃ ଅଚେତନ କ୍ଷରାଦଚେତନାତ୍ ବିଲକ୍ଷଣଃ । ପରମତ୍ୱେନାକ୍ଷରାଚ୍ଚେତନାଦ୍-ଭୋକ୍ତୁ ର୍ବିଲକ୍ଷଣ ଇତ୍ୟର୍ଥଃ । ପରମାତ୍ମତ୍ୱମେବ ଦର୍ଶୟତି—ଯୋ ଲୋକତ୍ରୟମିତି, ଯ ଈଶ୍ୱର ଈଶନଶୀଳୋଽବ୍ୟୟଶ୍ଚ ନର୍ବିକାର ଏବ ସନ୍ ଲୋକତ୍ରୟଂ କୃତ୍ସ୍ନମାବିଶ୍ୟ ବିଭର୍ତ୍ତି ପାଳୟତି ।

୧୮ । ଅନ୍ୱୟ ଦୀପିକା—ଯସ୍ମାତ୍ ( ଯେଉଁ ହେତୁରୁ ) ଅହଂ (ଅମ୍ଭେ) କ୍ଷରମ୍ ଅତୀତଃ (କ୍ଷରର ଅତୀତ) ଅକ୍ଷରାତ୍ ଅପି (ଅକ୍ଷରଠାରୁ ମଧ୍ୟ) ଉତ୍ତମଃ ( ଉତ୍କୃଷ୍ଟ ) ଅତଃ ( ଏହି ହେତୁରୁ ) ଲୋକେ ( ଲୋକରେ ) ବେଦେଚ ( ଏବଂ ବେଦରେ ) ପୁରୁଷୋତ୍ତମ ଇତିପ୍ରଥିତଃ ଅସ୍ମି ( ପୁରୁଷୋତ୍ତମ ବୋଲି କଥିତ ହେଉଁ ) ।

ଅନୁବାଦ—ଯେଉଁ ହେତୁରୁ ଅମ୍ଭେ କ୍ଷରରୁ ଅତୀତ ଏବଂ ଅକ୍ଷର ଠାରୁ ମଧ୍ୟ ଉତ୍ତମ, ସେହି ହେତୁରୁ ଅମ୍ଭେ ଲୋକମାନଙ୍କମଧ୍ୟରେ ଏବଂ ବେଦରେ ପୁରୁଷୋତ୍ତମ ବୋଲି ପ୍ରସିଦ୍ଧ ଅଟୁଁ ।

ସୁବୋଧିନୀ ଟୀକା—ଏବଂଭୂତଂ ପୁରୁଷୋତ୍ତମତ୍ୱମାତ୍ମନୋ-ନାମନିର୍ବଚନେନ ଦର୍ଶୟତି—ଯସ୍ମାଦିତି । ଯସ୍ମାତ୍ କ୍ଷରଂ ଜଡ଼ବର୍ଗ-ମତୀତୋଽହଂ ନିତ୍ୟମୁକ୍ତତ୍ୱାତ୍ । ଅକ୍ଷରାତ୍ ଚେତନବର୍ଗାଦପ୍ୟୁତ୍ତମଶ୍ଚ ନିୟନ୍ତୃତ୍ୱାତ୍ । ଅତୋ ଲୋକେ ବେଦେଚ ପୁରୁଷୋତ୍ତମ ଇତି ପ୍ରଥିତଃ ପ୍ରଖ୍ୟାତୋଽସ୍ମି । ତଥାଚଶ୍ରୁତିଃ—ସ ଏଷ ସର୍ବସ୍ୟେଶାନଃ ସର୍ବସ୍ୟାଧିପତିଃ ସର୍ବମିଦଂ ପ୍ରଶାସ୍ତୀତ୍ୟାଦି ।

୧୬—୧୮ । ବକ୍ତୃତା—ଏହି ପୁରୁଷୋତ୍ତମ ତତ୍ତ୍ୱ ଗୀତାର ସର୍ବଶ୍ରେଷ୍ଠ ଅଂଶ । ଗୀତା ଭଗବଦ୍ଧର୍ମସମ୍ବନ୍ଧୀୟ ଗ୍ରନ୍ଥ ହେଲେହେଁ, ବେଦାନ୍ତ ଦର୍ଶନୋକ୍ତ ଅଦ୍ୱୈତ ବ୍ରହ୍ମତତ୍ତ୍ୱ ଉପରେ ଗୀତାର ମତ ପ୍ରତିଷ୍ଠିତ । ବେଦାନ୍ତ ଦର୍ଶନ ବା

ଉପନିଷଦ୍‌ରେ ଯେଉଁ ବ୍ରହ୍ମତତ୍ତ୍ୱ ବର୍ଣ୍ଣିତ ଅଛି, ତହିଁରେ କର୍ମ ଓ ଭକ୍ତିର ସ୍ଥାନ ନାହିଁ; କର୍ମତ୍ୟାଗ ନ କଲେ ମୁକ୍ତି ମିଳେନାହିଁ—ଏହାହିଁ ଜ୍ଞାନବାଦୀ ମାନଙ୍କର ସ୍ଥିରସିଦ୍ଧାନ୍ତ, ବିଶେଷତଃ ନିର୍ଗୁଣ ବ୍ରହ୍ମଙ୍କପ୍ରତି ଭକ୍ତିର ଉଦ୍ରେକ ବା ହେବ କିପରି ? ଏ ସମସ୍ତ ଅଲୋଚନାପୂର୍ବକ ଭଗବାନ୍ ଜ୍ଞାନବାଦୀଙ୍କର ଜ୍ଞାନସଙ୍ଗରେ କର୍ମ ଓ ଭକ୍ତିର ସମନ୍ୱୟ ବିଧାନକରି ଏହି ଧର୍ମମତ ପ୍ରଚାରକରି ଅଛନ୍ତି। ବେଦାନ୍ତବାଦୀମାନେ ଯାହାଙ୍କୁ ପରମାତ୍ମା ବା ପରଂବ୍ରହ୍ମ ରୂପରେ ନିର୍ଦ୍ଦେଶ କରନ୍ତି, ଏଠାରେ ତାହାଙ୍କୁହିଁ ପୁରୁଷୋତ୍ତମ ନାମରେ ଅଭିହିତ କରାଯାଇ ଅଛି, ବ୍ରହ୍ମ ନିର୍ଗୁଣ, ମାତ୍ର ଏ ପୁରୁଷୋତ୍ତମ ନିର୍ଗୁଣ ଓ ସଗୁଣ । ଏକପକ୍ଷରେ ସେ ଯେପରି ଶମ, ଶାନ୍ତ, ନିର୍ଗୁଣ ଓ ଅଖିଳାତ୍ମା, ଅନ୍ୟ ପକ୍ଷରେ ସେ ସେହିପରି ଜୀବର ଗତି, ଭର୍ତ୍ତା, ପ୍ରଭୁ, ସାକ୍ଷୀ, ଶରଣ, ଯଜ୍ଞତପସ୍ୟାର ଭୋକ୍ତା ଓ କର୍ମର ଫଳ ବିଧାତା । ଏଥିରୁ ଜଣାଯାଏ ଯେ ସର୍ବଭୂତପ୍ରୀତି ଓ ପରମାତ୍ମାଙ୍କଠାରେ ସର୍ବସ୍ୱବରେ ଆତ୍ମସମର୍ପଣହିଁ ପୁରୁଷୋତ୍ତମ ତତ୍ତ୍ୱଜ୍ଞାନ । ଏହିସ୍ୱବରେ ଭଗବାନ୍ ଗୀତାରେ ଜ୍ଞାନ, କର୍ମ ଓ ଭକ୍ତିର ସମନ୍ୱୟ ବିଧାନକରି ସଂସାରରେ ମନୁଷ୍ୟର ଅନୁଷ୍ଠାନୋପଯୋଗୀ ଧର୍ମମତ ପ୍ରଚାର କରିଅଛନ୍ତି । ସଂକ୍ଷିପ୍ତ କେତୋଟି ଶ୍ଳୋକରେ ସେହି ସର୍ବତତ୍ତ୍ୱସାର ପୁରୁଷୋତ୍ତମତତ୍ତ୍ୱର ବିଶେଷଣ କରି ଭଗବାନ୍ କହୁଅଛନ୍ତି:—

ଏହି ବ୍ୟକ୍ତ ସୃଷ୍ଟି ବା ଚେତନା ଚେତନାତ୍ମକ ଜଗତ୍—ବ୍ରହ୍ମାଙ୍କଠାରୁ ସ୍ଥାବରପର୍ଯ୍ୟନ୍ତ ସମସ୍ତ ଶରୀର—କ୍ଷରଭାବ; ସାଧାରଣତଃ ଲୋକେ ଶରୀରରେ ପୁରୁଷତ୍ୱ ଆରୋପ କରୁଥିବାରୁ ଏହାକୁ କ୍ଷର ପୁରୁଷ ନାମରେ ଅଭିହିତ କରାଯାଇଅଛି । ଦେହ ନଷ୍ଟ ହୋଇଗଲେ ମଧ୍ୟ ଯେ ନିର୍ବିକାର ଭାବରେ ଅବସ୍ଥାନ କରନ୍ତି, ସେହି ଚେତନ ଭୋକ୍ତା ଅକ୍ଷର ପୁରୁଷ ନାମରେ ପରିଚିତ, ପୁରୁଷୋତ୍ତମ ଭାବରେ ସେ କ୍ଷର ପୁରୁଷ ଓ ଅକ୍ଷର ପୁରୁଷଙ୍କଠାରୁ ସ୍ୱତନ୍ତ୍ର ଏବଂ ଜଗତର ପାଳକ ଓ ରକ୍ଷକ । ଏହାର ସ୍ଥୂଳକଥା—କ୍ଷର କହିଲେ ପ୍ରକୃତିଙ୍କୁ ଓ ଅକ୍ଷର କହିଲେ ଜୀବାତ୍ମାଙ୍କୁ ବୁଝାଏ, ଏହି ଉଭୟରୁ ଅତୀତ ପରମାତ୍ମାହିଁ ପୁରୁଷୋତ୍ତମ । ଏହା ଶ୍ରୀଧରସ୍ୱାମୀଙ୍କ ମତ; ଲୋକମାନ୍ୟ ତିଲକ କହନ୍ତି—"ଷୋଡ଼ଶ ଶ୍ଳୋକରେ 'କ୍ଷର' ଓ 'ଅକ୍ଷର' ଶବ୍ଦ ବ୍ୟକ୍ତ ସୃଷ୍ଟି ଓ ଅବ୍ୟକ୍ତ ପ୍ରକୃତି ଅର୍ଥରେ ପ୍ରଯୁକ୍ତ ହୋଇଅଛି । ଏହା ମଧ୍ୟରେ ନଶ୍ୱର ପଞ୍ଚଭୂତାତ୍ମକ ବ୍ୟକ୍ତ ପଦାର୍ଥହିଁ କ୍ଷର । 'ଅକ୍ଷର' ଶବ୍ଦ ଗୀତାର ଅନେକ ସ୍ଥଳରେ ପରବ୍ରହ୍ମଙ୍କର ବିଶେଷଣ ରୂପେ ପ୍ରଯୁକ୍ତ ହୋଇଥିଲେ ହେଁ, ଏଠାରେ ଅକ୍ଷର ପ୍ରକୃତିଅର୍ଥରେ ପ୍ରଯୁକ୍ତ ହୋଇଅଛି । ସାରକଥା—ବ୍ୟକ୍ତ ସୃଷ୍ଟି ଓ ଅବ୍ୟକ୍ତ ପ୍ରକୃତିରୁ ଅତୀତ ଅକ୍ଷର ବ୍ରହ୍ମ ଏବଂ କ୍ଷର ଓ ଅକ୍ଷରରୁ ଶ୍ରେଷ୍ଠ ପୁରୁଷୋତ୍ତମ—ଏକୁହେଁ ଏକ ।" ଅଉ କେହି କେହି କହନ୍ତି ଅବିଦ୍ୟା ବା ମାୟାର କଳ୍ପ ମୂର୍ତ୍ତିରେ ଅବସ୍ଥିତ ଯେ ଚୈତନ୍ୟ ସେ କ୍ଷରଜୀବ,

ମାୟାର ଏକ ମୂର୍ତ୍ତିରେ ଅବସ୍ଥିତ ଯେ ଚୈତନ୍ୟ ସେ ଅକ୍ଷର ପୁରୁଷ ଏବଂ ଯେ ମାୟାତୀତ ସେ ପୁରୁଷୋତ୍ତମ ବା ପରବ୍ରହ୍ମ, ଇତ୍ୟାଦି । ନିଜ ନିଜ ସମ୍ପ୍ରଦାୟରେ ପ୍ରତିଷ୍ଠିତ ମତକୁ ଅକ୍ଷୁଣ୍ଣ ରଖିବା ପାଇଁ ଭିନ୍ନ ଭିନ୍ନ ଟୀକାକାର ଏ ସମ୍ବନ୍ଧରେ ବହୁଭିନ୍ନ ମତ ପ୍ରଚାର କରିଥିଲେହେଁ, ମୂଳ ଶ୍ଳୋକରେ ବ୍ୟବହୃତ ଶବ୍ଦାବଳୀରୁ ଯେଉଁ ଅର୍ଥ ପ୍ରକାଶିତ ହେଉଅଛି, ପୂଜ୍ୟପାଦ ଶ୍ରୀଧର ସ୍ୱାମୀ ତାହା ପ୍ରକାଶ କରି ଅଛନ୍ତି ଏବଂ ତାହାହିଁ ସର୍ବଥା ଗ୍ରହଣୀୟ ।

ଯୋଗୀ ଅରବିନ୍ଦ କହନ୍ତି :—ନିତ୍ୟ ପରିବର୍ତ୍ତନଶୀଳ ପ୍ରକୃତିର ଲୀଳା ମଧ୍ୟରେ ଯେଉଁ ପୁରୁଷ ଅବଶ ଏବଂ ଭର୍ତ୍ତା ଭୋକ୍ତା ରୂପରେ ଯେ ଅନିତ୍ୟ ଆନନ୍ଦ ଉପଭୋଗ କରନ୍ତି—ସେ କ୍ଷର ପୁରୁଷ । ପ୍ରକୃତିର ବନ୍ଧନରୁ ମୁକ୍ତ ଯେଉଁ ପୁରୁଷ ସେ ଅକ୍ଷର ପୁରୁଷ । ଯାହାଙ୍କଠାରେ କ୍ଷର ଓ ଅକ୍ଷର ପୁରୁଷ ଯୁଗପତ୍ ସ୍ଥାନ ପାଇଅଛନ୍ତି, ସେ ପୁରୁଷୋତ୍ତମ ।

## ପୁରୁଷୋତ୍ତମ କ୍ଷେତ୍ର

ଅସ୍ମମାନଙ୍କର ଏହି ଉତ୍କଳ ପ୍ରଦେଶରେ 'ପୁରୀ' ପ୍ରାଚୀନ ପୁରାଣ ମାନଙ୍କରେ ପୁରୁଷୋତ୍ତମ କ୍ଷେତ୍ର ନାମରେ ପରିଚିତ, ଏବେ ମଧ୍ୟ ଉତ୍କଳର ଅନେକ ପୁରୁଣା ଲୋକ ପୁରୀକୁ 'ପୁରୁଷୋତ୍ତମ' ବୋଲି କହନ୍ତି, କିଏ କେବେ ଏ କ୍ଷେତ୍ର ପ୍ରତିଷ୍ଠା କରିଥିଲେ, ଏହା ଜାଣିବାର ଉପାୟ ନାହିଁ; ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ନାମରେ ତିନିଗୋଟି ମୂର୍ତ୍ତି ଏ କ୍ଷେତ୍ରରେ ପ୍ରତିଷ୍ଠିତ ଥିଲେହେଁ 'ଜଗନ୍ନାଥ'ଙ୍କ ନାମରେ ଏ ସ୍ଥାନ ସମଗ୍ର ପୃଥିବୀରେ ପ୍ରସିଦ୍ଧ । ଏହି ଜଗନ୍ନାଥ ହିଁ କ୍ଷେତ୍ରର ଅଧିଷ୍ଠାତ୍ରୀ ଦେବତା—'ପୁରୁଷୋତ୍ତମ' । ନୀଳ ପର୍ବତ କନ୍ଦରରେ ଜରା ଶବର ଦ୍ୱାରା ପୂଜିତ ନୀଳମାଧବ ମୂର୍ତ୍ତି ସ୍ୱତଃ ଅନ୍ତର୍ହିତ ହୋଇଯିବାରୁ ମହାରାଜ ଇନ୍ଦ୍ରଦ୍ୟୁମ୍ନ, ସମୁଦ୍ରରେ ଭାସି ଆସି ତଟବର୍ତ୍ତୀ ବାଙ୍କିମୁହାଣରେ ଲାଗିଥିବା କାଷ୍ଠଦ୍ୱାରା ଏହି ତିନିମୂର୍ତ୍ତି ନିର୍ମାଣ କରାଇବାକୁ ଜଣେ ବଢ଼େଇକୁ ଆଦେଶ ଦେଲେ । ବଢ଼େଇ ୨୧ଦିନ ମଧ୍ୟରେ ମୂର୍ତ୍ତି ନିର୍ମାଣ କରିଦେବାକୁ ଅଙ୍ଗୀକାର କରି ମନ୍ଦିର ମଧ୍ୟରେ ପ୍ରବେଶ କଲେ ଏବଂ ତତ୍ପୂର୍ବରୁ କେହି ମନ୍ଦିର ଦ୍ୱାର ଖୋଲିବେ ନାହିଁ, ରାଜାଙ୍କଠାରୁ ଏହି ସ୍ୱୀକୃତି ନେଇ ମନ୍ଦିର ଦ୍ୱାର ବନ୍ଦକରି ଭିତରେ ଏକାକୀ ମୂର୍ତ୍ତି ଗଠନରେ ଲାଗିଲେ, ଅଳ୍ପଦିନ ପରେ ମନ୍ଦିର ମଧ୍ୟରୁ କୌଣସି ଶବ୍ଦ ଶୁଣା ନ ଯିବାରୁ ରାଜାଦେଶରେ ଦ୍ୱାର ଖୋଲାଗଲା, ମାତ୍ର ଦେହିରେ ଏହି ହସ୍ତପାଦହୀନ ଅର୍ଥାତ୍ ଅପୂର୍ଣ୍ଣ ହୋଇଥିବା ମୂର୍ତ୍ତି ଦେଖାଗଲେ, ମାତ୍ର କାରିଗର ବଢ଼େଇ ଦେଖାଗଲେ ନାହିଁ; ସେହି ଅପୂର୍ଣ୍ଣ ମୂର୍ତ୍ତିଙ୍କୁ ରାଜା ପ୍ରତିଷ୍ଠା କରି ପୂଜାକଲେ, ଏହାହିଁ ପ୍ରାଚୀନ କିଂବଦନ୍ତୀ ।

ଅଧୁନାତ ଐତିହାସିକମାନେ କହନ୍ତି ଅତୀତ ଏ ଦେଶରେ ବୌଦ୍ଧଧର୍ମ ପ୍ରଚଳିତ ଥିଲା, ଯେତେବେଳେ ହିନ୍ଦୁଧର୍ମ ପୁନଃ ପ୍ରବର୍ତ୍ତିତ ହେଲା ସେତେବେଳେ କୌଦ୍ଧଧର୍ମର ବୁଦ୍ଧ, ଧର୍ମ ଓ ସଙ୍ଘ—ଏହି ତିନିତତ୍ତ୍ୱ ପରବର୍ତ୍ତିରେ ଏହି ତିନି ମୂର୍ତ୍ତିର ପ୍ରତିଷ୍ଠା ହେଲା, ଏହାଦ୍ୱାରା ବୌଦ୍ଧ ମତ ଓ ନୂତନ ଧର୍ମ ମତର ସମନ୍ୱୟ ସାଧନ କରାଯାଇ ଅଛି, ବୁଦ୍ଧଦେବଙ୍କ ଦନ୍ତ ଏହି ମୂର୍ତ୍ତିଙ୍କ ମଧ୍ୟରେ ରକ୍ଷିତ ହୋଇଥିବାରୁ ଏ ସ୍ଥାନର ଅନ୍ୟନାମ 'ଦନ୍ତପୁର' ।

ପାଶ୍ଚାତ୍ୟଦେଶର ଲୋକମାନେ ମୂର୍ତ୍ତିଗୁଡ଼ିକରେ ସୌନ୍ଦର୍ଯ୍ୟ ବା ମାଧୁର୍ଯ୍ୟ ନ ଦେଖି କହନ୍ତି, ଏସବୁ ମୂର୍ତ୍ତି ପ୍ରଥମାବସ୍ଥାରେ ଅନାର୍ଯ୍ୟମାନେ ପୂଜା କରୁଥିଲେ, ସେମାନଙ୍କର ସୌନ୍ଦର୍ଯ୍ୟ ଜ୍ଞାନ ନ ଥିବାରୁ ସେମାନେ ନିଜ ରୁଚି ଓ କଳ୍ପନା ଅନୁରୂପରେ ଏହିପରି କଦାକାର ମୂର୍ତ୍ତି ନିର୍ମାଣ କରିଥିଲେ ଏବଂ ସେ ସବୁ ମୂର୍ତ୍ତିକୁ ସେହି ସମୟରୁ ଆର୍ଯ୍ୟମାନେ ଦେବତା ବିଶ୍ୱାସରେ ପୂଜା କରୁଅଛନ୍ତି, ଇତ୍ୟାଦି ।

ପୁରାଣ ବା କିଂବଦନ୍ତୀରୁ କାଳନିର୍ଣ୍ଣୟ କରିବା ସହଜ କଥା ନୁହେ । ପୁରୀର ଜଗନ୍ନାଥ ମୂର୍ତ୍ତି ଯେ ଅତି ପ୍ରାଚୀନ—ଏତିକି ମାତ୍ର ପୁରାଣ ମାନଙ୍କରୁ ଜଣାପଡେ । ଐତିହାସିକମାନଙ୍କ ମତରେ ଶଙ୍କରାଚାର୍ଯ୍ୟ ଅଷ୍ଟମ ଶତାବ୍ଦୀର ଲୋକ । ସେ ପୁରୀକୁ ଆସି ସେ ସମୟରେ ପୁରୀରେ ଗୋଟିଏ ମଠ ପ୍ରତିଷ୍ଠା କରିଥିଲେ । ଅଦ୍ୟାପି ସେ ମଠ 'ବାଲିମଠ' ବା 'ଶଙ୍କରାଚାର୍ଯ୍ୟ ମଠ' ନାମରେ ପରିଚିତ । ଏଥିରୁ ଜଣାଯାଉଅଛି, ଖ୍ରୀଷ୍ଟ. ଅଷ୍ଟମ ଶତାବ୍ଦୀ ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ରର ଉତ୍ପତ୍ତି ହୋଇଥିଲା ଓ ସେଠାରେ ଦେବତା ପ୍ରତିଷ୍ଠିତ ଥିଲେ । ଶଙ୍କରାଚାର୍ଯ୍ୟ ଜ୍ଞାନବାଦୀ ସନ୍ନ୍ୟାସୀ, ଶ୍ରୀମଦ୍ଭଗବଦ୍‌ଗୀତାର ସୁପ୍ରସିଦ୍ଧ ପ୍ରାଚୀନତମ ଭାଷ୍ୟକାର । ତାଙ୍କର ଏ ସ୍ଥାନପ୍ରତି ଆକର୍ଷଣରୁ ଜଣାଯାଏ, ବର୍ତ୍ତମାନ ଯେଉଁ ମୂର୍ତ୍ତିତ୍ରୟ ମନ୍ଦିର ମଧ୍ୟରେ ପୂଜିତ ହେଉ ଅଛନ୍ତି, ସେ ସବୁ ପୌରାଣିକ ମୂର୍ତ୍ତି ନୁହନ୍ତି—ଦର୍ଶନ ଶାସ୍ତ୍ରରେ ପ୍ରତିପାଦିତ ପରମାତ୍ମାଙ୍କର ପ୍ରତିମା । ଏହି ପଞ୍ଚଦଶ ଅଧ୍ୟାୟରେ କ୍ଷର, ଅକ୍ଷର ଓ ପୁରୁଷୋତ୍ତମ—ଏହି ଯେଉଁ ପୁରୁଷତ୍ରୟର ବର୍ଣ୍ଣନା କରାଯାଇଅଛି—ପୁରୀ ଶ୍ରୀ ମନ୍ଦିରର ମୂର୍ତ୍ତିତ୍ରୟ ସେହି ପୁରୁଷ ତ୍ରୟଙ୍କର ପ୍ରତିମୂର୍ତ୍ତି । ଦର୍ଶନ ମତରେ ପ୍ରକୃତି କର୍ତ୍ତ୍ରୀ ଓ ପୁରୁଷ ନିଷ୍କ୍ରିୟ, ଉଦାସୀନ ଓ ଦ୍ରଷ୍ଟା ମାତ୍ର । ତେଣୁ ପ୍ରକୃତିରୂପିଣୀ 'ସୁଭଦ୍ରା' ହସ୍ତପଦ ବିହୀନ । ପୁରୁଷ ରୂପୀ ବଳରାମ ହସ୍ତଯୁକ୍ତ ହେଲେହେଁ ଅନ୍ୟ ଅବୟବଶୂନ୍ୟ. ଶେଷରେ 'ଜଗନ୍ନାଥ' ବା ପୁରୁଷୋତ୍ତମ 'ଚକାଡୋଳା' ଦ୍ରଷ୍ଟା-ମାତ୍ର, ଏହାହିଁ ମୂର୍ତ୍ତିତ୍ରୟର ରହସ୍ୟପରି ମନେ ହୁଏ । ପରବର୍ତ୍ତୀ କାଳରେ ବୌଦ୍ଧ, ଜୈନ, ଶାକ୍ତ ଓ ବୈଷ୍ଣବ ଧର୍ମ ପ୍ରଭାବରେ ସେହି ଦର୍ଶନ ଶାସ୍ତ୍ରୋକ୍ତ ବ୍ରହ୍ମ ପ୍ରତିମାଙ୍କ ଉଦ୍ଦେଶ୍ୟରେ ନାନା ଉତ୍ସବ, ଯାତ୍ରା, ପର୍ବ ପ୍ରଭୃତି ସୃଷ୍ଟି

ହୋଇଥିବ, ମାତ୍ର ମୌଳିକ ପ୍ରତିମାଙ୍କର କୌଣସି ପରିବର୍ତ୍ତନ ହୋଇନାହିଁ— ଏହିପରି ମନେ କରାଯାଏ । ବର୍ତ୍ତମାନର ପୁରୀମନ୍ଦିର ତ୍ରୟୋଦଶ ଶତାବ୍ଦୀରେ ନିର୍ମିତ, ସେତେବେଳେ ରାଜା ବିଷ୍ଣୁଭକ୍ତ ଥିଲେ, ତେଣୁ ବିଷ୍ଣୁଙ୍କର ଶେଷ ଅବତାର କୃଷ୍ଣଙ୍କୁ ଜଗନ୍ନାଥ ରୂପେ ଏବଂ ତାଙ୍କ ଅଗ୍ରଜ ବଳରାମ ଓ କନିଷ୍ଠା ଭଗିନୀ ସୁଭଦ୍ରାଙ୍କୁ ଅନ୍ୟ ଦୁଇ ମୂର୍ତ୍ତିରୂପେ ପରିଚିତ କରାଇଥିବେ; ଏଠାରେ ଅବଶ୍ୟ ମନେରଖିବାକୁ ହେବ ଯେ କୃଷ୍ଣ, ବଳରାମଙ୍କପରି ସୁଭଦ୍ରାଙ୍କର ଉପାସ୍ୟ ଦେବତାଙ୍କ ସ୍ଥାନରେ ଅଧିଷ୍ଠିତ ହେବା କୌଣସି ପୁରାଣରେ ସୂଚନା ନାହିଁ । ଯେବେ କୃଷ୍ଣ ଓ ବଳରାମଙ୍କ ମୂର୍ତ୍ତି କଳି ଯୁଗରେ ପୂଜ୍ୟ, ତେବେ ତାହା ମଥୁରା ବା ଦ୍ୱାରକାରେ ନ ହୋଇ ପୁରୀରେ ହେଲା କାହିଁକି ?

ଅଧିକନ୍ତୁ ମଧ୍ୟ ଦେଖାଯାଏ ଯେ ପୌରାଣିକ ମୂର୍ତ୍ତିମାନେ ସବୁ ସ୍ତ୍ରୀ ପୁରୁଷ ବା ପ୍ରକୃତି ପୁରୁଷ ରୂପରେ ପୂଜିତ ହୁଅନ୍ତି । ଶିବଦୁର୍ଗା, ହରଗୌରୀ; ରାଧାକୃଷ୍ଣ, ଲକ୍ଷ୍ମୀନାରାୟଣ ପ୍ରଭୃତି ମୂର୍ତ୍ତିରେ ପୂର୍ବୋକ୍ତ ସମ୍ବନ୍ଧ ସୁସ୍ପଷ୍ଟ, ମାତ୍ର ଏଠାରେ ଜଣେ ଦୁଇ କନିଷ୍ଠା ଭଗିନୀଙ୍କୁ ସ୍ତ୍ରୀ ବା ପ୍ରକୃତି ସ୍ଥାନରେ କିପରି ପୂଜା କରାଯାଉଅଛି ? ଏହା ମଧ୍ୟ ଆମ୍ଭ ମାନଙ୍କ ମତର ଅନ୍ୟ ଗୋଟିଏ ପରିପୋଷକ ସୂତ୍ର ।

କୃଷ୍ଣ ବା ବଳରାମ ବିଷ୍ଣୁଙ୍କ ଅବତାର, ମାତ୍ର ନାନା ସାଂପ୍ରଦାୟିକ ବିବାଦପୂର୍ଣ୍ଣ ଆର୍ଯ୍ୟଧର୍ମରେ ତାଙ୍କ ପ୍ରତିମାର ଶ୍ରେଷ୍ଠତ୍ୱ ପ୍ରତିପାଦିତ ହୋଇପାରେ କି ? ଅଥଚ ଜଗନ୍ନାଥ କ୍ଷେତ୍ରରେ ସବୁ ସାମ୍ପ୍ରଦାୟିକ ଧର୍ମମତର ସମନ୍ୱୟ ହୋଇଅଛି; ଶୈବ, ସୌର, ଗାଣପତ୍ୟ, ଶାକ୍ତ, ବ୍ରହ୍ମଜ୍ଞ-ସମସ୍ତଙ୍କର ଏ ଦେବତା ନମସ୍ୟ ଏବଂ 'ମହାପ୍ରସାଦ' ସବୁ ସମ୍ପ୍ରଦାୟି ଲୋକଙ୍କର ସେବ୍ୟ; ଏପରି ହୋଇ ନ ଥିଲେ ମହାପ୍ରସାଦକୁ ଜାତିଯୁତାର କଟକରେ ଅବଦ୍ଧ ଆର୍ଯ୍ୟଭୂମି ଭାରତରେ ଅଗୃଣ୍ଡାଳ ବ୍ରାହ୍ମଣ ସମସ୍ତେ ଏକତ୍ର ସେବା କରୁ ନ ଥାନ୍ତେ ।

'ପୁରୁଷୋତ୍ତମ କ୍ଷେତ୍ର'—ସ୍ଥାନର ଏପରି ନାମ କରଣ, ମୂର୍ତ୍ତିମାନଙ୍କର ବିକଳତା ଏବଂ ସର୍ବପ୍ରକାର ସାଂପ୍ରଦାୟିକ ମତବାଦର ସମନ୍ୱୟ ଦେଖି ଏ ଧାରଣା ଦୃଢ଼ ହୋଇଅଛି ଯେ—ପ୍ରାଗୈତିହାସିକ ଯୁଗରେ ମହାରାଜ ଇନ୍ଦ୍ରଦ୍ୟୁମ୍ନ ଗୀତାର ଏହି ପଞ୍ଚଦଶ ଅଧ୍ୟାୟରେ ବର୍ଣ୍ଣିତ କ୍ଷର, ଅକ୍ଷର ଓ ପୁରୁଷୋତ୍ତମ— ଏହି ପୁରୁଷତ୍ରୟଙ୍କର ଦର୍ଶନଶାସ୍ତ୍ରୋକ୍ତ ମୂର୍ତ୍ତି ଏଠାରେ ନିର୍ମାଣ କରାଇ ଆର୍ଯ୍ୟ ଭାରତରେ ଧର୍ମର ଗୋଟିଏ ଅଭିନବ ଜ୍ୟୋତିଃ ପ୍ରକାଶ କରିଥିଲେ । ସେହି- କାଳରୁ ଅଦ୍ୟାବଧି ଧର୍ମର ସେହି ଅମ୍ଳାନ ଜ୍ୟୋତିଃ କୋଟି କୋଟି ଭାରତୀୟ ଆର୍ଯ୍ୟଙ୍କର ହୃଦୟ କନ୍ଦରକୁ ଆଲୋକିତ କରୁଅଛି ।

ଯୋ ମାମେବ ମସଂମୂଢ଼ୋ ଜାନାତି ପୁରୁଷୋତ୍ତମମ୍ ।
ସ ସର୍ବବିଦ୍ ଭଜତି ମାଂ ସର୍ବଭାବେନ ଭାରତ । ୧୯ ।
ଇତି ଗୁହ୍ୟତମଂ ଶାସ୍ତ୍ରମିଦମୁକ୍ତଂ ମୟାଽନଘ ।
ଏତଦ୍ ବୁଦ୍ଧ୍ୱା ବୁଦ୍ଧିମାନ୍ ସ୍ୟାତ୍ କୃତକୃତ୍ୟଶ୍ଚ ଭାରତ ।୨୦।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍ ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ପୁରୁଷୋତ୍ତମ ଯୋଗୋ ନାମ ପଞ୍ଚଦଶୋଽଧ୍ୟାୟଃ ।

---

୧୯ । **ଅନ୍ୱୟ ଦୀପିକା**—[ ହେ ] ଭାରତ, ଯଃ ( ଯେ ) ଏବଂ ( ଏହିପରି ) ଅସଂମୂଢ଼ ( ମୋହ ଶୂନ୍ୟ ହୋଇ ) ମାଂ ପୁରୁଷୋତ୍ତମଂ ଜାନାତି ( ଆମ୍ଭକୁ ପୁରୁଷୋତ୍ତମ ବୋଲି ଜାଣନ୍ତି ), ସଃ (ସେ) ସର୍ବଭାବେନ (ସର୍ବତୋଭାବରେ) ମାଂ ଭଜତି ( ଆମ୍ଭର ଉପାସନା କରନ୍ତି ), [ ତପୂରେ ] ସର୍ବବିତ୍ ( ସର୍ବଜ୍ଞ ) [ ହୁଅନ୍ତି ] ।

ଅନୁବାଦ—ହେ ଭାରତ, ଯେ ମୋହଶୂନ୍ୟ ହୋଇ ଏହିଭାବରେ ଆମ୍ଭକୁ ପୁରୁଷୋତ୍ତମ ବୋଲି ଜାଣିପାରନ୍ତି, ସେ ସର୍ବତୋଭାବରେ ଆମ୍ଭରହିଁ ଉପାସନା କରନ୍ତି ଓ ତପୂରେ ସର୍ବଜ୍ଞ ହୁଅନ୍ତି ।

**ସୁବୋଧିନୀ ଟୀକା**—ଏବମ୍ଭୂତେଶ୍ୱରସ୍ୟ ଜ୍ଞାନଃ ଫଳମାହ— ଯ ଇତି । ଏବମୁକ୍ତପ୍ରକାରେଣାସଂମୂଢ଼ୋ ନିଶ୍ଚିତମତିଃ ସନ୍ ଯୋ ମାଂ ପୁରୁଷୋତ୍ତମଂ ଜାନାତି ସ ସର୍ବଭାବେନ ସର୍ବପ୍ରକାରେଣ ମା ମେବ ଭଜତି, ତତଶ୍ଚ ସର୍ବବିତ୍ ସର୍ବଜ୍ଞୋ ଭବତି ।

ବିବୃତି—ମୋହ ଅପସାରିତ ନ ହେଲେ ମାୟାମନୁଷ୍ୟରୂପଧାରୀ ଶ୍ରୀକୃଷ୍ଣଙ୍କୁ କେହି ପୁରୁଷୋତ୍ତମ ବୋଲି ଜାଣି ପାରନ୍ତି ନାହିଁ । ଯେ ସେପରି ଜାଣି ପାରନ୍ତି, ତାଙ୍କ ନିକଟରେ ସାକାର ନିରାକାର, ସଗୁଣ ନିର୍ଗୁଣ ଓ ଦ୍ୱୈତ ଅଦ୍ୱୈତ ଏଭଳି ଭେଦଜ୍ଞାନ ରହି ପାରେ ନାହିଁ; ସେ ବୁଝି ପାରନ୍ତି ଭଗବାନ୍ ଅନ୍ତର୍ଯାମୀ, ଭଗବାନ୍ ବିଶ୍ୱରୂପଧାରୀ, ଭଗବାନ୍ ସଗୁଣ ଓ ଭଗବାନହିଁ ନିର୍ଗୁଣ ଇତ୍ୟାଦି ।

୨୦ । **ଅନ୍ୱୟ ଦୀପିକା**—[ ହେ ] ଅନଘ ( ନିଷ୍ପାପ ) ଭାରତ, ଇତି ଗୁହ୍ୟତମମ୍ ( ଏହିପରି ଅତି ଗୋପନୀୟ ) ଇଦଂ ଶାସ୍ତ୍ରଂ ( ଏହି ଶାସ୍ତ୍ର ) ମୟା ଉକ୍ତମ୍ (ଆମ୍ଭଦ୍ୱାରା କଥିତ ହେଲା); ଏତଦ୍ ବୁଦ୍ଧ୍ୱା (ଏହା ବୁଝି ପାରିଲେ) [ ଲୋକ ] ବୁଦ୍ଧିମାନ୍, କୃତ କୃତ୍ୟଃ ଚ ( ଜ୍ଞାନୀ ଓ କୃତାର୍ଥ ) ସ୍ୟାତ୍ ( ହୁଏ ) ।

ଅନୁବାଦ—ହେ ନିଷ୍ପାପ ଭାରତ । ଅମ୍ଭେ ଅତି ଗୋପନୀୟ ତତ୍ତ୍ୱ ତୁମ୍ଭକୁ କହିଲୁଁ; ଯେଉଁ ଲୋକ ଏହା ଜାଣନ୍ତି, ସେ ଜ୍ଞାନୀ ଓ କୃତାର୍ଥ ହୁଅନ୍ତି ।

ସୁବୋଧିନୀ ଟୀକା— ଅଧ୍ୟାୟାର୍ଥମୁପସଂହରତି—ଇତୀତି । ଇତ୍ୟନେନ ସଂକ୍ଷେପପ୍ରକାରେଣ ଗୁହ୍ୟତମମତିରହସ୍ୟଂ ସମ୍ପୂର୍ଣ୍ଣଶାସ୍ତ୍ରମେବ ମୟୋକ୍ତମ୍ । ନତୁ ପୁନର୍ବିଂଶତିଶ୍ଳୋକମଧ୍ୟାୟମାତ୍ରଂ, ହେ ଅନଘ ବ୍ୟସନଶୂନ୍ୟ, ଅତ ଏତଦ୍‌ବୁଦ୍ଧ୍ୱା ଶାସ୍ତ୍ରଂ ବୁଦ୍ଧ୍ୱା ବୁଦ୍ଧିମାନ୍ ସମ୍ୟଗ୍ ଜ୍ଞାନୀ ସ୍ୟାତ୍ । କୃତକୃତ୍ୟଶ୍ଚ ସ୍ୟାତ୍ । ଯୋଽପି କୋଽପି ହେ ଭାରତ । ତ୍ୱଂ କୃତକୃତ୍ୟୋଽସୀତି କିଂ ବକ୍ତବ୍ୟମିତିଭାବଃ ।

ସଂସାରଶାଖିନଂ ଛିତ୍ତ୍ୱା ସ୍ପଷ୍ଟଂ ପଞ୍ଚଦଶେ ବିଭୁଃ,
ପୁରୁଷୋତ୍ତମଯୋଗାଖ୍ୟଂ ପରଂ ପଦମୁପାଦିଶତ୍ ।

ତତ୍ତ୍ୱ—ସମଗ୍ର ଗୀତା ଶାସ୍ତ୍ରରେ ଯେଉଁ ତତ୍ତ୍ୱ ଭିନ୍ନ ଭିନ୍ନ ସ୍ଥାନରେ ବିଶଦରୂପରେ ବ୍ୟାଖ୍ୟା କରାଯାଇଅଛି, ଏ ଅଧ୍ୟାୟରେ ସେ ସମସ୍ତ ତତ୍ତ୍ୱ ସଂକ୍ଷେପରେ କୁହାଗଲା । କେବଳ ଗୀତା ଶାସ୍ତ୍ରର ଅର୍ଥ ନୁହେଁ, ସମଗ୍ର ବେଦର ଅର୍ଥ ମଧ୍ୟ ଏହି ଅଧ୍ୟାୟରେ ସମାପ୍ତ ହେଲା ବୋଲି ଆଚାର୍ଯ୍ୟ ଶଙ୍କର ତାଙ୍କ ଭାଷ୍ୟରେ କହି ଅଛନ୍ତି । ଉପଯୁକ୍ତ ଗୁରୁ ମୁଖରୁ ଯେ କୌଣସି ଲୋକ ଯଥାର୍ଥ ଭାବରେ ଏ ଶାସ୍ତ୍ର ଶୁଣିଲେ ଜ୍ଞାନୀ ଓ କୃତାର୍ଥ ହେବେ । ଏ ଶ୍ଳୋକରେ ଅର୍ଜୁନଙ୍କୁ ଅନଘ ଓ ଭାରତ ବୋଲି ସମ୍ବୋଧନ କରି ଭଗବାନ୍ ସଙ୍କେତ କଲେ—ତୁମ୍ଭେ ପାପଶୂନ୍ୟ ଏବଂ ପବିତ୍ର ଭରତ ବଂଶରେ ଜାତ, ତେଣୁ ତୁମ୍ଭେ ଏ ଶାସ୍ତ୍ର ଶୁଣି ଯେ କୃତକୃତ୍ୟ ହୋଇଅଛ ଓ ତତ୍ତ୍ୱଜ୍ଞାନର ଯେ ସମ୍ପୂର୍ଣ୍ଣ ଅଧିକାରୀ—ଏଥିରେ ଆଉ ସନ୍ଦେହ କଅଣ ?

## ପଞ୍ଚଦଶ ଅଧ୍ୟାୟର ସାର ସଂକଳନ

ଏ ଅଧ୍ୟାୟରେ ସମଗ୍ର ଗୀତା ଶାସ୍ତ୍ରର ଓ ବେଦାର୍ଥର ସାର ସଙ୍କଳନ କରାଯାଇ ଅଛି ବୋଲି ଭାଷ୍ୟକାର ମହାମନୀଷୀ ଆଚାର୍ଯ୍ୟ ଶଙ୍କର ଓ ପୂଜ୍ୟପାଦ ଟୀକାକାର ଶ୍ରୀଧରସ୍ୱାମୀ ଉଭୟେ ଉଲ୍ଲେଖ କରିଅଛନ୍ତି । ତ୍ରିଗୁଣାତୀତ ଅବସ୍ଥା ନ ଆସିଲେ ସାଧକଙ୍କର ଈଶ୍ୱର ପ୍ରାପ୍ତି ହୁଏ ନାହିଁ—ଚତୁର୍ଦ୍ଦଶ ଅଧ୍ୟାୟ ଶେଷରେ ଏହା କହି ଭଗବାନ୍ ସଙ୍କେତ କରିଥିଲେ ଯେ, ଯେଉଁଲୋକ ଅନନ୍ୟ ଭାବରେ ଆମ୍ଭର ଭଜନା କରିବେ ସେହି ଏକା ତ୍ରିଗୁଣାତୀତ ହୋଇ ପାରିବେ । ସଂସାରର ମାୟାଜାଲକୁ ଛିନ୍ନ କରିବାହିଁ ତ୍ରିଗୁଣାତୀତ ଅବସ୍ଥା । ଏହି ମାୟାଜାଲ ଛିନ୍ନ କରିବାକୁ ହେଲେ ସଂସାରର ସ୍ୱରୂପ ଜାଣିବା ଆବଶ୍ୟକ—ଏହି ତତ୍ତ୍ୱ ସ୍ପଷ୍ଟରୂପେ ବୁଝାଇବା ପାଇଁ ଅଧ୍ୟାୟ ଆରମ୍ଭରେ ପ୍ରାଚୀନ ଉପନିଷଦ ମାନଙ୍କରେ ପ୍ରଦର୍ଶିତ ପ୍ରଣାଳୀରେ ଭଗବାନ୍ ସଂସାରକୁ ଗୋଟିଏ ଅଶ୍ୱତ୍ଥ-ବୃକ୍ଷ ରୂପକରେ ବ୍ୟାଖ୍ୟା କରିଅଛନ୍ତି । ଏହି ଅଶ୍ୱତ୍ଥ ବୃକ୍ଷର ପ୍ରଧାନ ମୂଳ ଊର୍ଦ୍ଧ୍ୱଦିଗରେ । ପରଂବ୍ରହ୍ମହିଁ

ଏଠାରେ ମୂଳ ରୂପରେ ଲକ୍ଷ୍ୟ କରାଯାଇଅଛି । ଏହି ବୃକ୍ଷର ଶାଖା ଉପର ଅଡ଼କୁ ଏବଂ ତଳ ଅଡ଼କୁ ବିସ୍ତୃତ, ଊର୍ଦ୍ଧ୍ୱରେ ଦେବାଦିଯୋନି ଓ ନିମ୍ନରେ ମନୁଷ୍ୟ ପଶୁ ପ୍ରଭୃତି ଯୋନି ଏହି ରୂପକରେ ଲକ୍ଷିତ ହୋଇ ଅଛନ୍ତି । ଯେପରି ପତ୍ର ସମୂହ ବୃକ୍ଷର ରକ୍ଷକ, ସେହିପରି ଧର୍ମାଧର୍ମ ନିରୂପକ ବେଦମାନେ ଏ ସଂସାରର ରକ୍ଷକ, ତେଣୁ ବେଦ ସଂସାର ବୃକ୍ଷର ପତ୍ରସ୍ଥାନୀୟ । ଶବ୍ଦସ୍ପର୍ଶାଦି-ବିଷୟ ସମୂହ ଏହି ବୃକ୍ଷର କୋମଳ ପତ୍ର, ଇତ୍ୟାଦି । ଯେତେକାଳ ଜୀବ ମାୟାଜାଲରେ ଆବଦ୍ଧ ଥାଏ, ସେତେକାଳ ସେ ଏ ସଂସାରର ପ୍ରକୃତ ସ୍ୱରୂପ ଜାଣି ପାରେ ନାହିଁ । ତୀବ୍ର ବୈରାଗ୍ୟ ଆସିଲେ ଅର୍ଥାତ୍ ସଂସାରର ନଶ୍ୱରତା ସମ୍ବନ୍ଧରେ ଦୃଢ଼ଜ୍ଞାନ ଆସିଲେ ମନୁଷ୍ୟ ସେହି ପରମପଦ ଅନ୍ୱେଷଣରେ ବହିର୍ଗତ ହୁଏ ।

ଏହା କହିସାରି ଭଗବାନ୍ ଜୀବାତ୍ମାର ପ୍ରକୃତ ସ୍ୱରୂପ ବର୍ଣ୍ଣନା ପ୍ରସଙ୍ଗରେ କହି ଅଛନ୍ତି—ଜୀବାତ୍ମା ପରମାତ୍ମାଙ୍କରହିଁ ଅଂଶ । କର୍ମଫଳ ଭୋଗ କରିବା ପାଇଁ ସେ ଉତ୍କୃଷ୍ଟ ବା ନିକୃଷ୍ଟ ଯୋନିରେ ଜନ୍ମଗ୍ରହଣ କରିଥାଆନ୍ତି । ମୃତ୍ୟୁରେ ସ୍ଥୂଳ ଶରୀର ନଷ୍ଟ ହୋଇଯାଏ, ମାତ୍ର ସୂକ୍ଷ୍ମ ଶରୀର ନଷ୍ଟ ହୁଏ ନାହିଁ, ସୂକ୍ଷ୍ମ ଶରୀରରେ ମନ ଓ ସୂକ୍ଷ୍ମ ଇନ୍ଦ୍ରିୟ ବୃତ୍ତିମାନଙ୍କର ସଂସ୍କାର ଅକ୍ଷୁଣ୍ଣ ଥାଏ । ସ୍ଥୂଳ ଶରୀର ତ୍ୟାଗକରି ଜୀବାତ୍ମା ସୂକ୍ଷ୍ମଶରୀର ସହ ଅନ୍ୟ ଘଟ ଆଶ୍ରୟ କରେ ଏବଂ ସେଠାରେ ପୁଣି ବିଷୟ ଭୋଗ କରିବାକୁ ଆରମ୍ଭ କରେ । ଜୀବର ଏହି ଉତ୍କ୍ରମଣ, ଅବସ୍ଥିତି ଓ ଗୁଣ ସଂଯୋଗ କେବଳ ଜ୍ଞାନଦୃଷ୍ଟିରେ ଦେଖାଯାଏ । ସାଧାରଣ ଲୋକେ ଏହା ଜାଣି ପାରନ୍ତି ନାହିଁ ।

ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନିରେ ଯେଉଁ ଜ୍ୟୋତିଃ ବା ତେଜ ଦେଖାଯାଏ ସେ ସମସ୍ତହିଁ ଈଶ୍ୱରଙ୍କ ବିଭୂତି, ସମସ୍ତଙ୍କ ହୃଦୟରେ ଅନ୍ତର୍ଯ୍ୟାମିରୂପରେ ଅଧିଷ୍ଠିତ ରହି ପରମାତ୍ମା ଜୀବ ଜଗତକୁ ପରିଚାଳିତ କରୁଅଛନ୍ତି ଏବଂ ପୃଥିବୀକୁ ଧାରଣ କରିଅଛନ୍ତି; ସୁଧାମୟ ଜ୍ୟୋତ୍ସ୍ନା ରୂପରେ ସେହି ଏକା ଔଷଧିରେ ଶକ୍ତି ସଂଚାର କରନ୍ତି । ପରମାତ୍ମାହିଁ ଜଠରାଗ୍ନି ରୂପରେ ଖାଦ୍ୟବସ୍ତୁ ଜୀର୍ଣ୍ଣ କରନ୍ତି । ସମସ୍ତ ବେଦର ଜ୍ଞାତବ୍ୟ ତତ୍ତ୍ୱ, ବେଦ ରଚୟିତା ଓ ବେଦର ଅର୍ଥଜ୍ଞ-ସେହି ପରମପୁରୁଷ ।

ସ୍ଥାବରଜଙ୍ଗମାତ୍ମକ ବିନଶ୍ୱର ସୃଷ୍ଟି ବା ପରିଦୃଶ୍ୟମାନ ପ୍ରକୃତି କ୍ଷରପୁରୁଷ ବୋଲନ୍ତି । ତନ୍ମଧ୍ୟବର୍ତ୍ତୀ କୂଟସ୍ଥ ପୁରୁଷ ବା ଚୈତନ୍ୟମୟ ଭୋକ୍ତା ବା ଜୀବାତ୍ମାଙ୍କୁ ଅକ୍ଷର ପୁରୁଷ କୁହାଯାଏ । ଯେ ଏହି କ୍ଷର ଓ ଅକ୍ଷର ପୁରୁଷଙ୍କଠାରୁ ସ୍ୱତନ୍ତ୍ର ସେହି ଏକା 'ପୁରୁଷୋତ୍ତମ' । ଏହି ପୁରୁଷୋତ୍ତମହିଁ ଜଗତର ରକ୍ଷକ, ପାଳକ ଏବଂ ଶାସକ । ଭଗବାନଙ୍କର ଏହି ପୁରୁଷୋତ୍ତମ ସ୍ୱରୂପ ଜାଣି ପାରିଲେ ସାଧକଙ୍କ ପକ୍ଷରେ ଅନ୍ୟ କିଛି ଜାଣିବା ଆବଶ୍ୟକ ହୁଏ ନାହିଁ ଏବଂ ତାଙ୍କର ମାନବ ଜନ୍ମ ଧାରଣ ସାର୍ଥକ ହୁଏ ।

---

# ଷୋଡ଼ଶୋଽଧ୍ୟାୟଃ

## ଦୈବାସୁରସମ୍ପଦ୍‌ବିଭାଗଯୋଗଃ

ଶ୍ରୀ ଭଗବାନୁବାଚ

ଅଭୟଂ ସତ୍ତ୍ୱସଂଶୁଦ୍ଧିର୍ଜ୍ଞାନଯୋଗବ୍ୟବସ୍ଥିତିଃ ।
ଦାନଂ ଦମଶ୍ଚ ଯଜ୍ଞଶ୍ଚ ସ୍ୱାଧ୍ୟାୟସ୍ତପ ଆର୍ଜବଂ । ୧ ।
ଅହିଂସା ସତ୍ୟମକ୍ରୋଧସ୍ତ୍ୟାଗଃ ଶାନ୍ତିରପୈଶୁନଂ ।
ଦୟା ଭୂତେଷ୍ୱଲୋଲୁପ୍ତ୍ୱଂ ମାର୍ଦ୍ଦବଂ ହ୍ରୀରଚାପଳଂ । ୨ ।
ତେଜଃ କ୍ଷମା ଧୃତିଃ ଶୌଚମଦ୍ରୋହୋ ନାତିମାନିତା ।
ଭବନ୍ତି ସମ୍ପଦଂ ଦୈବୀମଭିଜାତସ୍ୟ ଭାରତ । ୩ ।

୧।୨।୩ । ଅନ୍ୱୟ ଦୀପିକା—ଶ୍ରୀଭଗବାନ୍ ଉବାଚ (ଶ୍ରୀଭଗବାନ୍ କହିଲେ ), ଅଭୟଂ ( ନିର୍ଭୀକତା ), ସତ୍ତ୍ୱ-ସଂଶୁଦ୍ଧିଃ ( ଚିତ୍ତର ସୁପ୍ରସନ୍ନତା ), ଜ୍ଞାନଯୋଗବ୍ୟବସ୍ଥିତିଃ ( ଜ୍ଞାନ ଓ କର୍ମ ଯୋଗରେ ନିଷ୍ଠା ), ଦାନଂ ( ଉପାର୍ଜ୍ଜିତ ପଦାର୍ଥର ଯଥାସମ୍ଭବ ବିତରଣ ), ଦମଃ ( ବାହ୍ୟେନ୍ଦ୍ରିୟ ସଂଯମ ), ଯଜ୍ଞଃ ଚ ( ଅଗ୍ନିହୋତ୍ରାଦି ଯଜ୍ଞର ଅନୁଷ୍ଠାନ ), ସ୍ୱାଧ୍ୟାୟଃ ( ଶାସ୍ତ୍ର ପାଠ ବା ଜପଯଜ୍ଞ ), ତପଃ ( ତପସ୍ୟା ), ଆର୍ଜବ ( ସରଳତା ), ଅହିଂସା ( ପରପୀଡ଼ା ବର୍ଜ୍ଜନ ), ସତ୍ୟ ( ସତ୍ୟ ), ଅକ୍ରୋଧଃ ( କ୍ରୋଧଶୂନ୍ୟତା ), ତ୍ୟାଗଃ ( ଫଳ କାମନା-ତ୍ୟାଗ ), ଶାନ୍ତିଃ (ଅନ୍ତଃକରଣର ସ୍ଥିରତା), ଅପୈଶୁନମ୍ ( ପର ନିନ୍ଦା ବର୍ଜ୍ଜନ ବା ଉଦାରତା ) ଭୂତେଷୁ ଦୟା (ଜୀବଦୟା), ଅଲୋଲୁପ୍ତ୍ୱଂ ( ଲୋଭଶୂନ୍ୟତା ), ମାର୍ଦ୍ଦବଂ ( ମୃଦୁତା ), ହ୍ରୀଃ ( ମନ୍ଦ କାର୍ଯ୍ୟରେ ଲୋକଲଜ୍ଜା ), ଅଚାପଳଂ ( ଔଦ୍ଧତ୍ୟର ଅଭାବ ), ତେଜଃ ( ତେଜସ୍ୱିତା ), କ୍ଷମା ( କ୍ଷମା ), ଧୃତିଃ ( ଧୈର୍ଯ୍ୟ ), ଶୌଚମ୍ ( ବାହ୍ୟ ଓ ଅଭ୍ୟନ୍ତର ଶୁଦ୍ଧି ), ଅଦ୍ରୋହଃ ( ଦ୍ରୋହ ନ କରିବା, ଅବିରୋଧ ), ନାତିମାନିତା ( ଅନଭିମାନ ), [ହେ] ଭାରତ [ଏହି ସମସ୍ତ ଗୁଣ ] ଦୈବୀଂ ସମ୍ପଦଂ ଅଭିଜାତସ୍ୟ ( ଦୈବୀ ସମ୍ପଦ ଅଭିମୁଖରେ ଜାତ ବ୍ୟକ୍ତି ଅର୍ଥାତ୍ ଦୈବୀସମ୍ପଦ୍ ପ୍ରାପ୍ତ ବ୍ୟକ୍ତିଙ୍କର ) ଭବନ୍ତି ( ହୋଇଥାଏ ) ।

ଅନୁବାଦ—ନିର୍ଭୀକତା, ଚିତ୍ତଶୁଦ୍ଧି, ଆତ୍ମଜ୍ଞାନ ଓ କର୍ମଯୋଗରେ ନିଷ୍ଠା, ଉପାର୍ଜ୍ଜିତ ବସ୍ତୁଦାନକର ଯଥା ସମ୍ଭବ ବିତରଣ, ବାହ୍ୟେନ୍ଦ୍ରିୟ ସଂଯମ, ଅଗ୍ନିହୋତ୍ରାଦି ଯଜ୍ଞ ସଂପାଦନ, ଶାସ୍ତ୍ର ଅଧ୍ୟୟନ ଓ ମନ୍ତ୍ରାଦିଜପ, ତପସ୍ୟା,

ସରଳତା, ଅହିଂସା, ସତ୍ୟ, ଅକ୍ରୋଧ, କର୍ମଫଳ ତ୍ୟାଗ, ଅନ୍ତଃକରଣ ସ୍ଥିରତା, ପରନିନ୍ଦାବର୍ଜନ, ଜୀବପ୍ରତିଦୟା, ଲୋଭଶୂନ୍ୟତା, ମୃଦୁତା (କ୍ରୂରତାର ଅଭାବ), ମନ୍ଦକର୍ମରେ ଲୋକଲଜ୍ଜା, ଅଚଞ୍ଚଳତା ବା ବୃଥା ବ୍ୟବହାର ନ କରିବା, ତେଜସ୍ୱିତା, କ୍ଷମା, ଧୃତି, ବାହ୍ୟ ଏବଂ ଅଭ୍ୟନ୍ତର ଶୁଦ୍ଧି, କାହାର ପ୍ରତି ବିରୋଧ ନ କରିବା, ନିରଭିମାନ ଭାବ—ହେ ଭାରତ, ଦୈବୀସଂପଦଅଭିମୁଖରେ ଜାତ ବ୍ୟକ୍ତିଙ୍କଠାରେ ଏସବୁ ଲକ୍ଷଣ ବା ଗୁଣ ଦେଖାଯାଏଁ ଅର୍ଥାତ୍ ଯେଉଁ ବ୍ୟକ୍ତି ପୂର୍ବାଦୃଷ୍ଟବଶରୁ ଭାବକଲ୍ୟାଣ ଲାଭର ଉପଯୁକ୍ତ ସେହି ଏ ସବୁ ଗୁଣର ଅଧିକାରୀ ହୁଅନ୍ତି ।

ସୁବୋଧିନୀ ଟୀକା—

ଆସୁରଂ ସଂପଦଂ ତ୍ୟକ୍ତ୍ୱା ଦୈବୀମେବାଶ୍ରିତା ନରାଃ,
ମୁଚ୍ୟନ୍ତ ଇତି ନିର୍ଣ୍ଣେତୁଂ ତଦ୍ୱିବେକୋଽଥ ଷୋଡ଼ଶେ ।

ପୂର୍ବାଧ୍ୟାୟାନ୍ତେ ଏତଦ୍ ବୁଦ୍ଧ୍ୱା ବୁଦ୍ଧିମାନ୍ ସ୍ୟାତ୍ କୃତକୃତ୍ୟଶ୍ଚ ଭାରତେ-ତ୍ୟୁକ୍ତଂ, ତତ୍ର କ ଏତତ୍ ତତ୍ତ୍ୱଂ ବୁଧ୍ୟତେ କୋବା ନ ବୁଧ୍ୟତ ଇତ୍ୟପେକ୍ଷାୟାଂ ତତ୍ତ୍ୱଜ୍ଞାନେଽଧିକାରିଣୋଽନଧିକାରିଣଶ୍ଚ ବିବେକାର୍ଥଂ ଷୋଡ଼ଶାଧ୍ୟାୟସ୍ୟାରମ୍ଭଃ । ନିରୂପିତେ ହି କାର୍ଯ୍ୟାର୍ଥେ ଗ୍ରନ୍ଥାଧିକାରିଜିଜ୍ଞାସା ଭବତି, ତଦୁକ୍ତଂ ଭଟ୍ଟୈଃ । ଜ୍ଞାତେ ଯୋ ଯେନାଽବୋଦ୍ଧବ୍ୟଃ ସ ପ୍ରାଗାଚୋଦିତୋ ଯଦା, ତଦା ତସ୍ୟ ବୋଦ୍ଧେତି ଶକ୍ୟଂ କର୍ତ୍ତୁଂ ନିରୂପଣମିତି । ତତ୍ରାଧିକାରିବିଶେଷଣଭୂତାଂ ଦୈବୀଂ ସମ୍ପଦମାହ ଅଭୟମିତି ତ୍ରିଭିଃ । ଅଭୟଂ ଭୟାଭାବଃ, ସତ୍ତ୍ୱସ୍ୟ ଚିତ୍ତସ୍ୟ ସଂଶୁଦ୍ଧିଃ ସୁପ୍ରସନ୍ନତା, ଜ୍ଞାନଯୋଗ, ଆତ୍ମଜ୍ଞାନୋପାୟେ ବ୍ୟବସ୍ଥିତିଃ ପରିନିଷ୍ଠା, ଦାନଂ ସ୍ୱଭୋଜ୍ୟସ୍ୟାନ୍ନାଦେର୍ଯଥୋଚିତସଂବିଭାଗଃ, ଦମୋ ବାହ୍ୟେନ୍ଦ୍ରିୟସଂଯମଃ, ଯଜ୍ଞୋ ଯଥାଧିକାରଂ ଦର୍ଶପୌର୍ଣ୍ଣମାସ୍ୟାଦିଃ । ସ୍ୱାଧ୍ୟାୟୋ ବ୍ରହ୍ମଯଜ୍ଞାଦିଃ, ତପ ଉତ୍ତରାଧ୍ୟାୟେ ବକ୍ଷ୍ୟମାଣଂ ଶାରୀରାଦି । ଆର୍ଜ୍ଜବମବକ୍ରତା । ୧ ।

କିଞ୍ଚ ଅହିଂସେତି—ଅହିଂସା ପରପୀଡ଼ାବର୍ଜ୍ଜନଂ, ସତ୍ୟଂ ଯଥାଦୃଷ୍ଟାର୍ଥଭାଷଣଂ ଅକ୍ରୋଧଃ ତାଡିତସ୍ୟାପି ଚିତ୍ତେ କ୍ରୋଧାନୁତ୍ପତ୍ତିଃ । ତ୍ୟାଗଃ ଔଦାର୍ଯ୍ୟଂ, ଶାନ୍ତିଶ୍ଚିତ୍ତୋପରତିଃ, ପୈଶୁନଂ ପରୋକ୍ଷେ ପରଦୋଷପ୍ରକାଶନଂ ତଦ୍ୱର୍ଜ୍ଜନମପୈଶୁନଂ, ଭୂତେଷୁ ଦୀନେଷୁ ଦୟା, ଅଲୋଲୁପ୍ତ୍ୱଂ ଲୋଭାଭାବଃ, ଅବର୍ଣ୍ଣଲୋପସ୍ତ୍ୱାର୍ଷଃ, ମାର୍ଦ୍ଦବଂ ମୃଦୁତ୍ୱଂ ଅକ୍ରୂରତା, ହ୍ରୀରକାର୍ଯ୍ୟପ୍ରବୃତ୍ତୌ ଲୋକଲଜ୍ଜା, ଅଚାପଲଂ ବ୍ୟର୍ଥକ୍ରିୟାରାହିତ୍ୟମ୍ । ୨ ।

କିଞ୍ଚ ତେଜଇତି । ତେଜଃ ପ୍ରାଗଲ୍ଭ୍ୟଂ, କ୍ଷମା ପରିଭବାଦିଷୂତ୍-ପଦ୍ୟମାନେଷୁ କ୍ରୋଧପ୍ରତିବନ୍ଧଃ, ଧୃତି ଦୁଃଖାଦିଭିରବସାଦେ ଚିତ୍ତସ୍ୟ ସ୍ଥିରୀକରଣଂ ଶୌଚଂ ବାହ୍ୟାଭ୍ୟନ୍ତରଶୁଦ୍ଧିଃ । ଅଦ୍ରୋହୋ ଜିଘାଂସାରାହିତ୍ୟଂ, ଅତିମାନିତା ଆତ୍ମନ୍ୟତିପୂଜ୍ୟତାଭିମାନଃ ତଦଭାବୋ ନାତିମାନିତା, ଏତାନ୍ୟଭୟାଦୀନି

ଦମ୍ଭୋ ଦର୍ପୋଽଭିମାନଶ୍ଚ କ୍ରୋଧଃ ପାରୁଷ୍ୟମେବଚ,
ଅଜ୍ଞାନଂ ଚାଭିଜାତସ୍ୟ ପାର୍ଥ ସମ୍ପଦମାସୁରୀମ୍ । ୪ ।

ଏତତ୍ ବଂଶତପ୍ରକାରାଣି ଲକ୍ଷଣାନି ଦୈବୀଂ ସମ୍ପଦମଭିଜାତସ୍ୟ ଭବନ୍ତି । ଦେବଯୋଗ୍ୟାଂ ସାତ୍ତ୍ୱିକୀଂ ସମ୍ପଦମଭିଲକ୍ଷ୍ୟ ତଦାଭିମୁଖ୍ୟେନ ଜାତସ୍ୟ ଭାବିକଲ୍ୟାଣସ୍ୟ ପୁଂସୋ ଭବନ୍ତୀତ୍ୟର୍ଥଃ । ୩ ।

ବକ୍ତବ୍ୟ—ସପ୍ତମ ଅଧ୍ୟାୟରେ ଯେଉଁ ଜ୍ଞାନ-ବିଜ୍ଞାନ ଯୋଗ ବ୍ୟାଖ୍ୟା କରିବାପାଇଁ ଭଗବାନ୍ ସୂଚନା ଦେଇଥିଲେ, ପଞ୍ଚଦଶ ଅଧ୍ୟାୟରେ ପୁରୁଷୋତ୍ତମ ଯୋଗ ବ୍ୟାଖ୍ୟାଦ୍ୱାରା ସେ ସବୁ ଶେଷ କରିଦେଲେ । ପଞ୍ଚଦଶ ଅଧ୍ୟାୟ ଶେଷରେ ଭଗବାନ୍ କହିଲେ, ଯେ ଏହିସବୁ ଗୁହ୍ୟତତ୍ତ୍ୱ ଜାଣି ଲୋକ ଜ୍ଞାନୀ ଓ କୃତାର୍ଥ ହୁଅନ୍ତି । ମାତ୍ର ସମସ୍ତେ ତ ଏ ସବୁ ତତ୍ତ୍ୱ ବୁଝି ପାରିବେ ନାହିଁ, ତେବେ କେଉଁମାନେ ଏ ତତ୍ତ୍ୱ ଜାଣିବାର ଅଧିକାରୀ ଓ କେଉଁମାନେ ଅଧିକାରୀ ନୁହନ୍ତି, ଏହା କହିବା ଉଦ୍ଦେଶ୍ୟରେ ଷୋଡ଼ଶ ଅଧ୍ୟାୟ ଆରମ୍ଭ କରାଯାଇଅଛି । ନବମ ଅଧ୍ୟାୟର ୧୧ଶ ରୁ ୧୩ଶ ଶ୍ଳୋକ ମଧ୍ୟରେ ଭଗବାନ୍ ଅତି ସଂକ୍ଷେପରେ କହିଥିଲେ, ଆସୁରୀପ୍ରକୃତି ବିଶିଷ୍ଟ ଲୋକମାନେ ଆମ୍ଭଙ୍କୁ ଚିହ୍ନି ପାରନ୍ତି ନାହିଁ । ଯେଉଁମାନେ ଦୈବୀପ୍ରକୃତି ବିଶିଷ୍ଟ ସେହିମାନେହିଁ ଏକାନ୍ତ ଭକ୍ତିରେ ଆମ୍ଭର ଉପାସନା କରନ୍ତି । ସେହି ଆସୁରୀ ପ୍ରକୃତିକ ଲୋକମାନେ ଈଶ୍ୱରତତ୍ତ୍ୱ ଜାଣିବାରେ ଅନଧିକାରୀ ଓ ଦୈବୀ ପ୍ରକୃତିବିଶିଷ୍ଟ ଲୋକମାନେ ବା ସାତ୍ତ୍ୱିକପ୍ରକୃତିବିଶିଷ୍ଟ ଲୋକମାନେ ଅଧିକାରୀ—ଏହା ଏ ଅଧ୍ୟାୟରେ ଭଗବାନ୍ ବିସ୍ତାରିତ ରୂପେ ବୁଝାଇବେ ।

ଏହି ୩ ଗୋଟି ଶ୍ଳୋକରେ ଦୈବୀ ସମ୍ପଦ୍ ବା ସାତ୍ତ୍ୱିକ ଲୋକର ଲକ୍ଷଣ ରୂପେ ୨୬ ଗୋଟି ଗୁଣର ଉଲ୍ଲେଖ ହୋଇଅଛି । ଏହି ୨୬ ଗୁଣ ଓ ତ୍ରୟୋଦଶ ଅଧ୍ୟାୟରେ ଜ୍ଞାନୀଙ୍କ ଲକ୍ଷଣ ରୂପେ ଉକ୍ତ ହୋଇଥିବା ୨୦ ଗୁଣ ପ୍ରାୟ ସମାନ । ଏହି ୨୬ ଗୁଣ ମଧ୍ୟରୁ "ଜ୍ଞାନଯୋଗ ବ୍ୟବସ୍ଥିତିଃ" ଅର୍ଥରେ ଶଙ୍କର ଓ ସ୍ୱାମୀ ଶ୍ରୀଧର ଏହାର ଅର୍ଥ କରିଛନ୍ତି— ଜ୍ଞାନଯୋଗରେ ଏକାନ୍ତନିଷ୍ଠା; ମାତ୍ର ଲୋକମାନ୍ୟ ତିଲକ ୪ର୍ଥ ଅଧ୍ୟାୟର ୪୧ମ ୪୨ମ ଶ୍ଳୋକର ବ୍ୟାଖ୍ୟାର ଭିତ୍ତିରେ ଏହାର ଅର୍ଥ କରିଛନ୍ତି—ଜ୍ଞାନ ଓ କର୍ମ ଯୋଗରେ ସମକାଳୀନ ଐକାନ୍ତିକ ନିଷ୍ଠା ।

୪ । ଅନ୍ୱୟ ଦୀପିକା—[ ହେ ] ପାର୍ଥ, ଦମ୍ଭଃ ( ଧର୍ମଧ୍ୱଜତା ) ଦର୍ପ ( ଧନ ଓ ବିଦ୍ୟା ହେତୁରୁ ଚିତ୍ତରେ ଉନ୍ମାଦ ), ଅଭିମାନଃ ଚ ( ଏବଂ ଅଭିମାନ ) କୋଧଃ ( କୋପ ), ପାରୁଷ୍ୟମ୍ ( ନିଷ୍ଠୁରତା ) ଅଜ୍ଞାନଂ ଚ ଏବ (ଏବଂ ଅଜ୍ଞାନ ) ଆସୁରୀଂ ସମ୍ପଦଂ ( ଆସୁରୀ ସମ୍ପଦ ) ଅଭିଜାତସ୍ୟ (ଅଭିମୁଖରେ ଜାତ ବ୍ୟକ୍ତିର ) ହୋଇଥାଏ ] ।

ଦୈବୀ ସଂପଦ୍ ବିମୋକ୍ଷାୟ ନିବନ୍ଧାୟାସୁରୀ ମତା,
ମା ଶୁଚଃ ସଂପଦଂ ଦୈବୀ ମଭିଜାତୋଽସି ପାଣ୍ଡବ । ୫ ।
ଦ୍ୱୌ ଭୂତସର୍ଗୌ ଲୋକେଽସ୍ମିନ୍ ଦୈବ ଆସୁର ଏବ ଚ ।
ଦୈବୋ ବିସ୍ତରଶଃ ପ୍ରୋକ୍ତଃ ଆସୁରଂ ପାର୍ଥ ମେ ଶୃଣୁ । ୬ ।

ଅନୁବାଦ—ହେ ପାର୍ଥ, ଦମ୍ଭ, ଦର୍ପ, ଅଭିମାନ, କ୍ରୋଧ, ନିଷ୍ଠୁରତା ଏବଂ ଅଜ୍ଞାନ-ଆସୁରୀ ସଂପଦ୍ ଅଭିମୁଖରେ ଜାତ ବ୍ୟକ୍ତିଙ୍କଠାରେ ଦେଖାଯାଏ ଅର୍ଥାତ୍ ରଜ ଏବଂ ତମୋଗୁଣମୟ ପୁରୁଷ ମାନଙ୍କଠାରେ ଏହି ସବୁ ଲକ୍ଷଣ ଦେଖାଯାଏ ।

ସୁବୋଧିନୀ ଟୀକା—ଆସୁରୀଂ ସଂପଦମାହ—ଦମ୍ଭଇତି । ଦମ୍ଭୋ ଧର୍ମଧ୍ୱଜିତ୍ୱଂ । ଦର୍ପୋ ଧନବିଦ୍ୟାଦିନିମିତ୍ତଶ୍ଚିତ୍ତସ୍ୟୋତ୍ସେକଃ । ଅଭିମାନୋ ବ୍ୟାଖ୍ୟାତ ଏବ । କ୍ରୋଧଃ ପ୍ରସିଦ୍ଧଃ । ପାରୁଷ୍ୟଂ ନିଷ୍ଠୁରତ୍ୱଂ । ଅଜ୍ଞାନମବିବେକଃ । ଆସୁରୀମିତ୍ୟୁପଲକ୍ଷଣମ୍ । ଅସୁରାଣାଂ ରକ୍ଷସାନାଂ ଚ ଯା ସଂପଦ୍ ତାମଭିଲକ୍ଷ୍ୟ ଜାତସ୍ୟୈତାନି ଦମ୍ଭାଦୀନି ଭବନ୍ତୀତ୍ୟର୍ଥଃ ।

ବକ୍ତବ୍ୟ—ଏ ଶ୍ଳୋକରେ 'ଅଭିମାନଃ' ଶ୍ରୀଧର ସ୍ୱାମୀଙ୍କ ଟୀକା ଅନୁରୂପ ଗୃହୀତ ହୋଇଅଛି । ଅଗ୍ରଣୀ ଶଙ୍କର, ଲୋକମାନ୍ୟ ତିଲକ ଓ ଶ୍ରୀ କୃଷ୍ଣାନନ୍ଦ ସ୍ୱାମୀ ଏହି 'ଅଭିମାନଃ' ସ୍ଥାନରେ 'ଅତିମାନଃ' ପାଠ ଗ୍ରହଣ କରି ଅଛନ୍ତି ।

୫ । ଅନ୍ୱୟ ଦୀପିକା—ଦୈବୀ ସଂପଦ୍ ବିମୋକ୍ଷାୟ ( ଦୈବୀ ସଂପଦ୍ ମୋକ୍ଷ ନିମିତ୍ତ ), ଆସୁରୀ ସଂପଦ୍ ନିବନ୍ଧାୟ ମତା ( ଏବଂ ଆସୁରୀ ସଂପଦ୍ ବନ୍ଧନ ନିମିତ୍ତ ଅଭିପ୍ରେତ ) । [ ହେ ] ପାଣ୍ଡବ, ମା ଶୁଚଃ ( ଶୋକ କରନାହିଁ ), ଦୈବୀଂ ସଂପଦଂ ଅଭିଜାତଃ ଅସି ( କାରଣ ତୁମ୍ଭେ ଦୈବୀ ସଂପଦ ଅଭିମୁଖରେ ଜନ୍ମିଅଛ ) ।

ଅନୁବାଦ—ଦୈବୀ ସଂପଦ୍ ମୋକ୍ଷର କାରଣ ଏବଂ ଆସୁରୀ ସଂପଦ୍ ବନ୍ଧନର କାରଣ । ହେ ପାଣ୍ଡବ, ଶୋକ କରନାହିଁ, କାରଣ ତୁମ୍ଭେ ଦୈବୀ ସଂପଦ୍ ସହିତ ଜନ୍ମିଅଛ ।

ସୁବୋଧିନୀ ଟୀକା—ଏତୟୋଃ ସଂପଦୋଃ କାର୍ଯ୍ୟଂ ଦର୍ଶୟନ୍ନାହ-ଦୈବୀତି । ଦୈବୀ ଯା ସଂପତ୍ ତୟା ପ୍ରକ୍ରୋ ମତ୍ୟୋପଦଷ୍ଟେ ତତ୍ତ୍ୱଜ୍ଞାନେଽଧିକାରୀ । ଆସୁରୀ ସଂପଦା ଯୁକ୍ତସ୍ତୁ ନିତ୍ୟଂ ସଂସାରାର୍ଥଃ । ଏତଚ୍ଛ୍ରୁତ୍ୱା କ ମହମଧିକ ସ୍ତ ନ ବେତି ସନ୍ଦେହବ୍ୟାକୁଳଚିତ୍ତମର୍ଜୁନମାଶ୍ୱାସୟତି—ହେ ପାଣ୍ଡବ, ମାଶୁଚଃ, ଶୋକମାକାର୍ଷୀଃ । ଯତସ୍ତ୍ୱଂ ଦୈବୀଂ ସମ୍ପଦମଭି ଜାତୋଽସି ।

୬ । ଅନ୍ୱୟଦୀପିକା—[ ହେ ] ପାର୍ଥ, ଅସ୍ମିନ୍ ଲୋକେ ( ଏ ସଂସାରରେ ) ଦୈବଃ ଆସୁରଃ ଚ ( ଦୈବ ଓ ଆସୁର ) ଦ୍ୱୌ ଭୂତସର୍ଗୌ

ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ ଜନା ନ ବିଦୁରାସୁରାଃ ।
ନ ଶୌଚଂ ନାପି ଚାଚାରୋ ନ ସତ୍ୟଂ ତେଷୁ ବିଦ୍ୟତେ । ୭ ।

( ଦୁଇଗୋଟି ଭୂତସୃଷ୍ଟି ) [ ଅଛି ] । ଦୈବଃ ( ଦୈବସୃଷ୍ଟି ) ବିସ୍ତରଶଃ ( ବିସ୍ତୃତଭାବରେ ) ପ୍ରୋକ୍ତଃ ( କୁହା ହୋଇ ଅଛି ) । ଆସୁରଂ ( ଅସୁର ସୃଷ୍ଟିକଥା ) ମେ ( ଆମଠାରୁ ) ଶୃଣୁ ( ଶୁଣ ) ।

ଅନୁବାଦ—ହେ ପାର୍ଥ, ଏ ସଂସାରରେ ଦୈବ ଓ ଅସୁର—ଏହି ଦୁଇ ପ୍ରକାର ପ୍ରାଣୀଙ୍କର ସୃଷ୍ଟି ହୋଇଅଛି । ଦୈବୀପ୍ରକୃତି ବିଷୟ ଆମ୍ଭେ ଏଥି-ପୂର୍ବେ ତୁମ୍ଭକୁ ବିସ୍ତୃତ ଭାବରେ କହିଅଛୁଁ । ବର୍ତ୍ତମାନ ଆସୁରୀ ପ୍ରକୃତି ବିଷୟ ଆମଠାରୁ ଶୁଣ ।

ସୁବୋଧିନୀ ଟୀକା—ଆସୁରୀ ସମ୍ପଦ୍ ସବାସନା ବର୍ଜୟିତ-ବ୍ୟେତ୍ୟେତଦର୍ଥମାସୁରୀଂ ସମ୍ପଦଂ ପ୍ରପଞ୍ଚୟିତୁମାହ—ଦ୍ୱାବିତି । ଦ୍ୱୌ ଦ୍ୱିପ୍ରକାରୌ ଭୂତାନାଂ ସର୍ଗୌ ମେ ମଦ୍ବଚନାତ୍ ଶୃଣୁ । ଅସୁରସ୍ୱଭାବ-ପ୍ରକୃତ୍ୟୋରେକୈକଶେନ ଦ୍ୱାବିତ୍ୟୁକ୍ତମ୍ । ଅତୋ ସ୍ୱଭାବମାସୁରୀଂ ଚୈବ ପ୍ରକୃତିଂ ମୋହନୀଂ ଶ୍ରିତା ଇତ୍ୟାଦିନା ନବମାଧ୍ୟାୟୋକ୍ତପ୍ରକୃତିଦ୍ୱୈବିଧ୍ୟେନାବିରୋଧଃ । ସ୍ପଷ୍ଟମନ୍ୟତ୍ ।

ବକ୍ତବ୍ୟ—ଦ୍ୱିତୀୟ ଅଧ୍ୟାୟରେ ସ୍ଥିତପ୍ରଜ୍ଞଙ୍କ ବର୍ଣ୍ଣନା, ଦ୍ୱାଦଶ ଅଧ୍ୟାୟରେ ଭଗବଦ୍ଭକ୍ତଙ୍କ ବର୍ଣ୍ଣନା ଏବଂ ତ୍ରୟୋଦଶ ଅଧ୍ୟାୟରେ ଜ୍ଞାନୀଙ୍କ ଲକ୍ଷଣବର୍ଣ୍ଣନା, ଚତୁର୍ଦ୍ଦଶ ଅଧ୍ୟାୟରେ ତ୍ରିଗୁଣାତୀତ ପୁରୁଷଙ୍କ ବର୍ଣ୍ଣନା ଓ ଏ ଅଧ୍ୟାୟର ପ୍ରଥମ ତିନିଶ୍ଳୋକରେ ଦୈବୀପ୍ରକୃତିର ବର୍ଣ୍ଣନା—ଏ ସମସ୍ତ ଦୈବ ସମ୍ପଦର ବର୍ଣ୍ଣନା, ଆସୁରୀ ସମ୍ପଦର ସଂକ୍ଷିପ୍ତ ବର୍ଣ୍ଣନା ନବମ ଅଧ୍ୟାୟର ୧୧ ଶ ଓ ୧୨ଶ ଶ୍ଳୋକରେ କରାଯାଇ ଅଛି । ଏଠାରେ ତାହା ବିସ୍ତାରିତ ଭାବରେ କରାଯିବ ।

୭ । ଅନ୍ୱୟ ଦୀପିକା—ଆସୁରାଃ ( ଅସୁରପ୍ରକୃତିବିଶିଷ୍ଟ ) ଜନାଃ ( ଲୋକମାନେ ) ପ୍ରବୃତ୍ତିଂଚ ( ଧର୍ମ କାର୍ଯ୍ୟରେ ପ୍ରବୃତ୍ତି ) ନିବୃତ୍ତିଂ ଚ ( ଓ ଅଧର୍ମ କାର୍ଯ୍ୟରୁ ନିବୃତ୍ତି ) ନ ବିଦୁଃ ( ଜାଣନ୍ତି ନାହିଁ ); [ ଏହି ହେତୁରୁ ] ତେଷୁ (ସେମାନଙ୍କ ମଧ୍ୟରେ) ନ ଶୌଚଂ (ଶୌଚ ନ ଥାଏ), ନ ଚ ଆଚାରଃ ( ଓ ଆଚାର ନ ଥାଏ ) ନ ଅପି ସତ୍ୟଂ ବିଦ୍ୟତେ ( ସତ୍ୟ ମଧ୍ୟ ନ ଥାଏ ) ।

ଅନୁବାଦ—ଧର୍ମକାର୍ଯ୍ୟରେ ପ୍ରବୃତ୍ତି କାହାକୁ କହନ୍ତି ଓ ଅଧର୍ମ କାର୍ଯ୍ୟରୁ ନିବୃତ୍ତି କାହାକୁ କହନ୍ତି—ଅସୁର ସ୍ୱଭାବ ବିଶିଷ୍ଟ ଲୋକମାନେ ଏହା ଜାଣନ୍ତି ନାହିଁ । ସେହି ହେତୁରୁ ସେମାନଙ୍କ ମଧ୍ୟରେ ଶୌଚ ନ ଥାଏ, ଆଚାର ନ ଥାଏ ଏବଂ ସତ୍ୟ ମଧ୍ୟ ନ ଥାଏ ।

ଅସତ୍ୟମପ୍ରତିଷ୍ଠଂ ତେ ଜଗଦାହୁରନୀଶ୍ୱରମ୍ ।
ଅପରସ୍ପରସମ୍ଭୂତଂ କିମନ୍ୟତ୍ କାମହୈତୁକମ୍ । ୮ ।

ସୁବୋଧିନୀ ଟୀକା—ଆସୁରୀଂ ବିସ୍ତରତଶ୍ଚ ନିରୂପୟତି—ପ୍ରବୃତ୍ତିମିତ୍ୟାଦି ଦ୍ୱାଦଶଭିଃ । ଧର୍ମେ ପ୍ରବୃତ୍ତିମଧର୍ମାନ୍ନିବୃତ୍ତିଂ ଚାସୁରସ୍ୱଭାବା ଜନା ନ ଜାନନ୍ତି । ଅତଃ ଶୌଚମାଚାରଃ ସତ୍ୟଂ ଚ ତେଷୁ ନାସ୍ତ୍ୟେବ ।

୮ । ଅନ୍ୱୟ ଦୀପିକା—ତେ ( ସେମାନେ ) ଜଗତ୍ (ଜଗତକୁ) ଅସତ୍ୟଂ ( ମିଥ୍ୟା ବ୍ୟବହାରପୂର୍ଣ୍ଣ ), ଅପ୍ରତିଷ୍ଠମ୍ ( ଧର୍ମାଧର୍ମବ୍ୟବସ୍ଥାଶୂନ୍ୟ ) ଅନୀଶ୍ୱରମ୍ ( ଈଶ୍ୱରବିହୀନ ) ଅପରସ୍ପରସମ୍ଭୂତଂ ( ସ୍ତ୍ରୀ ପୁରୁଷ ସଂଯୋଗ ଜାତ ), କିମ୍ ଅନ୍ୟତ୍ ( ଅନ୍ୟ କିଛି କାରଣ ନାହିଁ ) [ କେବଳ ] କାମହୈତୁକଂ ( କାମ ଜନିତ ) ଆହୁଃ ( କହୁଥାଆନ୍ତି ) ।

ଅନୁବାଦ—ସେମାନେ ଅର୍ଥାତ୍ ସେହି ଅସୁରପ୍ରକୃତିବିଶିଷ୍ଟ ଲୋକମାନେ କହନ୍ତି ଯେ, ଏ ଜଗତରେ ବେଦପୁରାଣାଦି କିଛି ସତ୍ୟ ନୁହେଁ, ସମସ୍ତହିଁ ଅସତ୍ୟ; ଧର୍ମ ଓ ଅଧର୍ମର ବ୍ୟବସ୍ଥାପକ ଈଶ୍ୱର ବୋଲି କେହି ନାହାନ୍ତି; ଏହା କେବଳ ସ୍ତ୍ରୀ ପୁରୁଷଙ୍କ ସଂଯୋଗରୁ ଜାତ । ସ୍ତ୍ରୀ ପୁରୁଷଙ୍କ କାମହିଁ ଏହାର ଏକମାତ୍ର କାରଣ ।

ସୁବୋଧିନୀ ଟୀକା—ନନୁ ବେଦୋକ୍ତୟୋଃ ଧର୍ମାଧର୍ମୟୋଃ ପ୍ରବୃତ୍ତିଂ ଚ କଥଂ ନ ବିଦୁଃ । କୁତୋ ବା ଧର୍ମାଧର୍ମୟୋରନଙ୍ଗୀକାରେ ଜଗତଃ ସୁଖ-ଦୁଃଖାଦିବ୍ୟବସ୍ଥା ସ୍ୟାତ୍, କଥଂ ବା ଶୌଣ୍ଡିଗୃହାଦିବଦପ୍ୟାମୀଶ୍ୱରଜ୍ଞମନ୍ତ-ବର୍ତ୍ତେରନ୍ ? ଈଶ୍ୱରାନଙ୍ଗୀକାରେ ଚ କୁତୋ ଜଗଦୁତ୍ପତ୍ତିଃ ସ୍ୟାତ୍ ? ଅତ ଆହ ଅସତ୍ୟମିତି । ନାସ୍ତି ସତ୍ୟଂ ବେଦପୁରାଣାଦିପ୍ରମାଣଂ ଯସ୍ମିଂସ୍ତାଦୃଶଂ ଜଗଦାହୁଃ । ବେଦାଦୀନାଂ ପ୍ରାମାଣ୍ୟଂ ନ ମନ୍ୟନ୍ତ ଇତ୍ୟର୍ଥଃ । ତଦୁକ୍ତଂ ହ୍ୟେ-ବେଦସ୍ୟ କର୍ତ୍ତାରେ ଭଣ୍ଡଧୂର୍ତ୍ତନିଶାଚରେ ଇତ୍ୟାଦି । ଅତ ଏବ ନାସ୍ତି ଧର୍ମାଧର୍ମରୂପା ପ୍ରତିଷ୍ଠା ବ୍ୟବସ୍ଥାହେତୁର୍ଯସ୍ୟ ତତ୍ । ସ୍ୱାଭାବିକଂ ଜଗଦ୍‌ବୈଚିତ୍ର୍ୟମାହୁ ରିତ୍ୟର୍ଥଃ । ଅତ ଏବ ନାସ୍ତୀଶ୍ୱରଃ କର୍ତ୍ତା ବ୍ୟବସ୍ଥାପକଶ୍ଚ ଯସ୍ୟ ତାଦୃଶଂ ଜଗଦାହୁଃ । ତର୍ହି କୁତୋଽସ୍ୟ ଜଗତ ଉତ୍ପତ୍ତିଂ ବଦନ୍ତୀତି ? ଅତ ଆହ—ଅପରସ୍ପରସମ୍ଭୂତ-ମିତି । ଅପରଶ୍ଚ ପରଶ୍ଚେତ୍ୟପରସ୍ପରମ୍ । ଅପରସ୍ପରତୋଽନ୍ୟୋନ୍ୟତଃ ସ୍ତ୍ରୀ ପୁରୁଷୟୋର୍ମିଥୁନାତ୍ ସମ୍ଭୂତଂ ଜଗତ୍ । କିମନ୍ୟତ୍ ? କାରଣମସ୍ୟ ନାସ୍ତ୍ୟନ୍ୟତ୍ କିଞ୍ଚିତ୍ । କିନ୍ତୁ କାମହୈତୁକମେବ, ସ୍ତ୍ରୀପୁରୁଷୟୋରୁଭୟୋଃ କାମ ଏବ ପ୍ରବାହରୂପେଣ ହେତୁ ରସ୍ୟେତ୍ୟାହୁ ରିତ୍ୟର୍ଥଃ ।

ବିବୃତି—ଶ୍ରୀଧର ସ୍ୱାମୀ ଓ ଶଙ୍କରଙ୍କ ବ୍ୟାଖ୍ୟା ଅନୁସାରେ ଏ ଶ୍ଳୋକର ଅନୁବାଦ କରାହେଲା । ଏ ଶ୍ଳୋକରେ ପ୍ରଦତ୍ତ ଅନ୍ୟାନ୍ୟ ପଦର

ଏତାଂ ଦୃଷ୍ଟିମବଷ୍ଟଭ୍ୟ ନଷ୍ଟାତ୍ମାନୋଽଲ୍ପବୁଦ୍ଧୟଃ ।
ପ୍ରଭବନ୍ତ୍ୟୁଗ୍ରକର୍ମାଣଃ କ୍ଷୟାୟ ଜଗତୋଽହିତାଃ । ୯ ।

ବ୍ୟାଖ୍ୟାରେ ମତଦ୍ୱୈଧ ନ ଥିଲେହେଁ 'ଅପରସ୍ପର ସମ୍ଭୂତମ୍' ଓ 'କାମହୈତୁକମ୍' ପଦଦ୍ୱୟର ବ୍ୟାଖ୍ୟାରେ କେତେକମାନ୍ୟ ତିଳକଙ୍କ ମତ ଭିନ୍ନପ୍ରକାର । ସେ କହନ୍ତି, 'ଅପରଶ୍ଚ ପରଶ୍ଚ' ଏପରି ବ୍ୟାସ ବାକ୍ୟଦ୍ୱାରା 'ଅପରସ୍ପର' ପଦସିଦ୍ଧ ହୋଇପାରେ ନାହିଁ । ବ୍ୟାକରଣ ନିୟମରେ ଏହା 'ଅପରପର' ହେବ । ମଝିରେ 'ସ'କାର ଆଗମ ହେବ ନାହିଁ । ତେଣୁ ଏହା ନ+ପରସ୍ପର ଏହି ନଞ୍ ସମାସ ସିଦ୍ଧପଦ; ସୃଷ୍ଟିର ଉତ୍ପତ୍ତିକ୍ରମସମ୍ବନ୍ଧରେ ଉପନିଷଦରେ ଯେଉଁ କ୍ରମ ବର୍ଣ୍ଣିତ ଅଛି ( ଅର୍ଥାତ୍ 'ଆତ୍ମନ ଆକାଶଃ ସଂଭୂତଃ, ଆକାଶାଦ୍ ବାୟୁଃ, ବାୟୋରଗ୍ନିଃ, ଅଗ୍ନେରାପଃ, ଅଦ୍ଭ୍ୟଃ ପୃଥିବୀ, ପୃଥିବ୍ୟା ଓଷଧୟଃ, ଓଷଧିଭ୍ୟଃ ଅନ୍ନମ୍, ଅନ୍ନାତ୍ ପୁରୁଷଃ ଅର୍ଥାତ୍ ପରମାତ୍ମାଙ୍କଠାରୁ ପ୍ରଥମେ ଆକାଶ ଜାତ ହେଲା, ଆକାଶରୁ ବାୟୁ, ବାୟୁରୁ ଅଗ୍ନି, ଅଗ୍ନିରୁ ଜଳ, ଜଳରୁ ପୃଥିବୀ, ପୃଥିବୀରୁ ଓଷଧି, ଓଷଧିରୁ ଅନ୍ନ ଓ ଅନ୍ନରୁ ପୁରୁଷ ଏହି ପରମ୍ପରା କ୍ରମରେ ସୃଷ୍ଟି ହୋଇଅଛି)— ଏ ସୃଷ୍ଟି ସେପରି ପରସ୍ପର କ୍ରମ ଅନୁସାରେ ହୋଇନାହିଁ । କିମ୍ବା ସାଂଖ୍ୟ ଶାସ୍ତ୍ରୋକ୍ତ କ୍ରମରେ ହୋଇନାହିଁ ।

'କାମ ହୈତୁକମ୍' ପଦର ବାଖ୍ୟାରେ ତିଳକ କହନ୍ତି, ମନୁଷ୍ୟର କାମନା ବା ବାସନା ତୃପ୍ତ କରିବା ପାଇଁ ଜଗତର ସମସ୍ତ ପଦାର୍ଥ ସୃଷ୍ଟ ହୋଇଅଛି । କାମନା ଛଡ଼ା ଏହାର ଅନ୍ୟ କଅଣ ହେତୁ ହୋଇପାରେ ?

୯ । ଅନ୍ୱୟ ଦୀପିକା—ଏତାଂ ଦୃଷ୍ଟିଂ (ଏ ଭଳିମତ ବା ଦୃଷ୍ଟିଭଙ୍ଗୀ) ଅବଷ୍ଟଭ୍ୟ ( ଅଶ୍ରୟ କରି ) ନଷ୍ଟାତ୍ମାନଃ ( ବିକୃତବୁଦ୍ଧିଯୁକ୍ତ ) ଅଲ୍ପବୁଦ୍ଧୟଃ ( କ୍ଷୁଦ୍ର ଚେତା ) ଉଗ୍ରକର୍ମାଣଃ ( କ୍ରୂରକର୍ମା ) ଅହିତାଃ ( ଅମଙ୍ଗଳକାରୀ ) [ ବ୍ୟକ୍ତିମାନେ ] ଜଗତଃ ( ସଂସାରର ) କ୍ଷୟାୟ ( ବିନାଶ ପାଇଁ ) ପ୍ରଭବନ୍ତି ( ଜନ୍ମନିଅନ୍ତି ) ।

ଅନୁବାଦ—ପୂର୍ବୋକ୍ତ ଦୃଷ୍ଟିଭଙ୍ଗୀ ଅର୍ଥାତ୍ ନାସ୍ତିକର ମତବାଦ ଆଶ୍ରୟକରି ବିକୃତବୁଦ୍ଧିଯୁକ୍ତ, କ୍ଷୁଦ୍ରଚେତା, କ୍ରୂରକର୍ମୀ ବ୍ୟକ୍ତିମାନେ ଜଗତର ଅହିତାଚରଣରେ ନିଯୁକ୍ତ ହୁଅନ୍ତି ଏବଂ ସଂସାର ଲୋକଙ୍କର ବିନାଶ ପାଇଁ ଜନ୍ମ ଗ୍ରହଣ କରନ୍ତି ଅର୍ଥାତ୍ ପରଜନ୍ମରେ ବ୍ୟାଘ୍ର ସର୍ପାଦି ଯୋନିରେ ଜାତ ହୁଅନ୍ତି ।

ସୁବୋଧିନୀ ଟୀକା—କିଞ୍ଚ ଏତାମିତି-ଏତାଂ ଲୋକାୟତିକାନାଂ ଦୃଷ୍ଟିଂ ଦର୍ଶନମାଶ୍ରିତ୍ୟ ନଷ୍ଟାତ୍ମାନୋ ମଲୀମସଚିତ୍ତାଃ ସନ୍ତୋଽଲ୍ପବୁଦ୍ଧୟୋ ଦୃଷ୍ଟାର୍ଥମାତ୍ରମତୟଃ । ଅତଏବୋଗ୍ରଂ ହିଂସ୍ରଂ କର୍ମ ଯେଷାଂ ତେ ଅହିତା ବୈରିଣୋ ଭୂତ୍ୱା ଜଗତଃ କ୍ଷୟାୟ ପ୍ରଭବନ୍ତି, ଉଦ୍ଭବନ୍ତୀତ୍ୟର୍ଥଃ ।

କାମମାଶ୍ରିତ୍ୟ ଦୁଷ୍ପୂରଂ ଦମ୍ଭମାନମଦାନ୍ୱିତାଃ ।
ମୋହାଦ୍‌ଗୃହୀତ୍ୱାଽସଦ୍‌ଗ୍ରାହାନ୍ ପ୍ରବର୍ତ୍ତନ୍ତେଽଶୁଚିବ୍ରତାଃ ।୧୦।
ଚିନ୍ତାମପରିମେୟାଂ ଚ ପ୍ରଳୟାନ୍ତାମୁପାଶ୍ରିତାଃ ।
କାମୋପଭୋଗପରମା ଏତାବଦିତି ନିଶ୍ଚିତାଃ ।୧୧।
ଆଶାପାଶଶତୈର୍ବଦ୍ଧାଃ କାମକ୍ରୋଧପରାୟଣାଃ ।
ଈହନ୍ତେ କାମଭୋଗାର୍ଥମନ୍ୟାୟେନାର୍ଥସଞ୍ଚୟାନ୍ ।୧୨।

୧୦ । ଅନ୍ୱୟ ଦୀପିକା—[ ଏମାନେ ] ଦୁଷ୍ପୂରଂ ( ଦୁଷ୍ପୂରଣୀୟ ) କାମମ୍ ( କାମନାକୁ ) ଅଶ୍ରିତ୍ୟ ( ଆଶ୍ରୟ କରି ) ଦମ୍ଭମାନ ମଦାନ୍ୱିତାଃ (ଦମ୍ଭ, ମାନ ଓ ଗର୍ବରେ ମତ୍ତହୋଇ ) ମୋହାତ୍ ( ମୋହବଶତଃ ) ଅସଦ୍ ଗ୍ରାହାନ୍ ( ମନଗଢ଼ା କଳ୍ପନାକୁ ) ଗୃହୀତ୍ୱା ( ଗ୍ରହଣ କରି ) ଅଶୁଚିବ୍ରତାଃ ( ଅପବିତ୍ର ବ୍ରତ ପରାୟଣ ହୋଇ ) ପ୍ରବର୍ତ୍ତନ୍ତେ ( କାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି ) ।

ଅନୁବାଦ—ଯେଉଁ କାମନା କେବେ ହେଲେ ପୂର୍ଣ୍ଣ ହୋଇ ପାରେ ନାହିଁ, ତାହାକୁ ଅଶ୍ରୟ କରି ଦମ୍ଭ, ଅଭିମାନ ଓ ଗର୍ବରେ ମତ୍ତହୋଇ ଏହି ଅସୁରୀ ପ୍ରକୃତିକ ଲୋକମାନେ ମୋହବଶତଃ ମିଥ୍ୟା ବିଶ୍ୱାସ ବା ମନଗଢ଼ା କଳ୍ପନା କରି କ୍ଷୁଦ୍ର ଦେବତା ଉପାସନାଦିକର୍ମରେ ପ୍ରବୃତ୍ତ ହୁଅନ୍ତି ।

ସୁବୋଧିନୀ ଟୀକା—ଅପିଚ. କାମମାଶ୍ରିତ୍ୟେତି, ଦୁଷ୍ପୂରଂ ପୂରୟିତୁମଶକ୍ୟଂ କାମମାଶ୍ରିତ୍ୟ ଦମ୍ଭାଦିଭିର୍ୟୁକ୍ତାଃ ସନ୍ତଃ କ୍ଷୁଦ୍ରଦେବତାରାଧନାଦୌ ପ୍ରବର୍ତ୍ତନ୍ତେ । କଥଂ ଅସଦ୍‌ଗ୍ରାହାନ୍‌ଗୃହୀତ୍ୱା । ଅନେନ ମନ୍ତ୍ରେଣୈତାଂ ଦେବତାମାରାଧ୍ୟ ମହାନିଧୀନ୍ ସାଧୟିଷ୍ୟାମ ଇତ୍ୟାଦୀନ୍ ଦୁରାଗ୍ରହାନ୍ ମୋହ-ମାତ୍ରେଣ ସ୍ୱୀକୃତ୍ୟ ପ୍ରବର୍ତ୍ତନ୍ତେ । ଅଶୁଚିବ୍ରତାଃ—ଅଶୁଚୀନି ମଦ୍ୟମାଂସାଦି ବିଷୟାଣି ବ୍ରତାନି ଯେଷାଂ ତେ ।

୧୧ । ୧୨ । ଅନ୍ୱୟ ଦୀପିକା—ପ୍ରଳୟାନ୍ତାଂ ( ପ୍ରଳୟକାଳ ଅର୍ଥାତ୍ ମୃତ୍ୟୁକାଳ ପର୍ଯ୍ୟନ୍ତ ସ୍ଥିତିଶୀଳ ) ଅପରିମେୟାଂ ( ଅସଂଖ୍ୟ ) ଚିନ୍ତାମ୍ ଉପାଶ୍ରିତାଃ ( ବିଷୟ ଚିନ୍ତାକୁ ଅଶ୍ରୟ କରି ) କାମୋପଭୋଗ ପରମାଃ ( ବିଷୟ ଭୋଗକୁ ପରମ ପୁରୁଷାର୍ଥ ବୋଲି ମନେ କରୁଥିବା ) ଏତାବତ୍ ଇତି ନିଶ୍ଚିତାଃ ( ଏହାହିଁ ଠିକ୍ ଏହିପରି ନିଶ୍ଚୟ କରିଥିବା ), ଆଶାପାଶଶତୈଃବଦ୍ଧାଃ ( ଶତ ଶତ ଆଶାରୂପ ପାଶରେ ଆବଦ୍ଧ ଥିବା ) କାମ କ୍ରୋଧ ପରାୟଣାଃ ( କାମ ଓ କ୍ରୋଧ ପରାୟଣ ବ୍ୟକ୍ତିମାନେ ) କାମ ଭୋଗାର୍ଥଂ ( ବିଷୟଭୋଗ ପାଇଁ ) ଅନ୍ୟାୟେନ ( ଅନ୍ୟାୟ ଭାବରେ ) ଅର୍ଥ ସଞ୍ଚୟାନ୍ ( ଅର୍ଥ ସଞ୍ଚୟ କରିବାକୁ ) ଈହନ୍ତେ ( ଇଚ୍ଛା କରନ୍ତି ) ।

ଇଦମଦ୍ୟ ମୟା ଲବ୍ଧମିମଂ ପ୍ରାପ୍ସ୍ୟେ ମନୋରଥମ୍ ।
ଇଦମସ୍ତୀଦମପି ମେ ଭବିଷ୍ୟତି ପୁନର୍ଦ୍ଧନମ୍ ॥ ୧୩ ॥
ଅସୌ ମୟା ହତଃ ଶତ୍ରୁର୍ହନିଷ୍ୟେ ଚାପରାନପି ।
ଈଶ୍ୱରୋଽହମହଂ ଭୋଗୀ ସିଦ୍ଧୋଽହଂ ବଳବାନ୍ ସୁଖୀ ॥ ୧୪ ॥
ଆଢ୍ୟୋଽଭିଜନବାନସ୍ମି କୋଽନ୍ୟୋଽସ୍ତି ସଦୃଶୋ ମୟା ।
ଯକ୍ଷ୍ୟେ ଦାସ୍ୟାମି ମୋଦିଷ୍ୟ ଇତ୍ୟଜ୍ଞାନବିମୋହିତାଃ ॥ ୧୫ ॥
ଅନେକଚିତ୍ତବିଭ୍ରାନ୍ତା ମୋହଜାଲସମାବୃତାଃ ।
ପ୍ରସକ୍ତାଃ କାମଭୋଗେଷୁ ପତନ୍ତି ନରକେଽଶୁଚୌ ॥ ୧୬ ॥

ଅନୁବାଦ—ମୃତ୍ୟୁ ପର୍ଯ୍ୟନ୍ତ ଅସଂଖ୍ୟ ବିଷୟ ଚିନ୍ତାରେ ଆସକ୍ତ ରହି ଓ ବିଷୟ ଭୋଗକୁ ପରମ ପୁରୁଷାର୍ଥ ମନେ କରି ସେମାନେ ସ୍ଥିର କରନ୍ତି ଯେ—ଏହି ବିଷୟ ଭୋଗହିଁ ପରମ ପୁରୁଷାର୍ଥ, ଏହା ଛଡ଼ା ଅନ୍ୟ କିଛି ଜୀବନର ଲକ୍ଷ୍ୟ ନାହିଁ; ତେଣୁ ସେମାନେ ଶତ ଶତ ଆଶା ହୃଦୟରେ ଧରି କାମକ୍ରୋଧ-ପରାୟଣ ହୋଇ ଅନ୍ୟାୟ ମାର୍ଗ ଅବଲମ୍ବନ ପୂର୍ବକ ଅର୍ଥ ସଞ୍ଚୟ କରିବାକୁ ଚେଷ୍ଟା କରନ୍ତି ।

ସୁବୋଧିନୀ ଟୀକା—କିଞ୍ଚ ଚିନ୍ତାମିତି—ପ୍ରଳୟୋ ମରଣମେବାନ୍ତୋ ଯସ୍ୟାସ୍ତାମ୍ । ଅପରିମେୟାଂ ପରିମାତୁମଶକ୍ୟାଂ ଚିନ୍ତାମାଶ୍ରିତାଃ । ନିତ୍ୟଂ ଚିନ୍ତାପରା ଇତ୍ୟର୍ଥଃ । କାମୋପଭୋଗ ଏବ ପରମୋ ଯେଷାଂ ତେ । ଏତାବଦିତି—କାମୋପଭୋଗ ଏବ ପରମଃ ପୁରୁଷାର୍ଥୋ ନାନ୍ୟଦସ୍ତୀତି କୃତନିଶ୍ଚୟାଃ । ଅର୍ଥସଞ୍ଚୟାର୍ଥମନ୍ୟାୟେନ ଉଦ୍ୟତା ଇତ୍ୟର୍ଥଃ । ତଥା ଚ ବାର୍ହସ୍ପତ୍ୟସୂତ୍ରଂ—କାମ ଏବୈକଃ ପୁରୁଷାର୍ଥ ଇତି, ଚୈତନ୍ୟବିଶିଷ୍ଟଃ କାୟଃ ପୁରୁଷ ଇତି ଚ ।

ଅତଏବ ଆଶେତି, ଆଶା ଏବ ପାଶାସ୍ତେଷାଂ ଶତୈର୍ବଦ୍ଧା ଇତସ୍ତତ ଆକୃଷ୍ୟମାଣାଃ । କାମ କ୍ରୋଧ ପରାୟଣାଃ—କାମକ୍ରୋଧୌ ପରମୟନମାଶ୍ରୟୋ-ଯେଷାଂ ତେ, କାମଭୋଗାର୍ଥ ମନ୍ୟାୟେନ ଚୌର୍ଯ୍ୟାଦିନା ଅର୍ଥାନାଂ ସଞ୍ଚୟାନ୍ କର୍ତ୍ତୁମୀହନ୍ତେ ଇଚ୍ଛନ୍ତି ।

୧୩, ୧୪, ୧୫, ୧୬ । ଅନ୍ୱୟ ଦୀପିକା—ଅଦ୍ୟ (ଅଜି) ମୟା ( ମୋ ଦ୍ୱାରା ) ଇଦଂ ଲବ୍ଧମ୍ ( ଏହା ଲାଭ ହେଲା ) ଇମଂ ମନୋରଥଂ ( ଏହି ବାଞ୍ଛିତ ବସ୍ତୁ ) ଲପ୍‌ସ୍ୟେ ( ପରେ ଲାଭ କରିବି ) ଇଦମ୍ ଅସ୍ତି ( ଏହା ଅଛି ) ଇଦମ୍ ଧନମ୍ ଅପି ( ଏ ଧନ ମଧ୍ୟ ) ମେ ପୁନଃ ( ମୋର ପୁଣି ) ଭବିଷ୍ୟତି ( ହେବ ), ଅସୌ ( ସେହି ) ଶତ୍ରୁଃ ( ଶତ୍ରୁ ) ମୟା ହତଃ ( ମୋ ଦ୍ୱାରା ନିହତ ହେଲା ), ଅପରାନ୍ ଅପି ଚ ( ଅନ୍ୟ ଶତ୍ରୁମାନଙ୍କୁ ମଧ୍ୟ )

ହନିଷ୍ୟେ (ହତ୍ୟା କରିବି), ଅହମ୍ (ମୁଁ) ଈଶ୍ୱରଃ (ପ୍ରଭୁ) ଅହଂ ଭୋଗୀ (ମୁଁ ଭୋଗୀ ଲୋକ) ଅହଂ ସିଦ୍ଧଃ (ମୁଁ ସିଦ୍ଧି ଲାଭକର ଅଛି), ବଳବାନ୍, ସୁଖୀ (ବଳବାନ୍ ଓ ସୁଖୀ ଅଟେଁ), ଆଢ୍ୟଃ (ଧନଶାଳୀ), ଅଭିଜନବାନ୍ ଅସ୍ମି (କୁଳୀନ ଅଟେଁ), ମୟା ସଦୃଶଃ (ମୋ ପରି) ଅନ୍ୟଃ କଃ ଅସ୍ତି (ଆଉ କିଏ ଅଛି ?) ଯକ୍ଷ୍ୟେ (ମୁଁ ଯଜ୍ଞ କରିବି), ଦାସ୍ୟାମି (ଦାନ ଦେବି), ମୋଦିଷ୍ୟେ (ମଉଜ କରିବି), ଇତି ଅଜ୍ଞାନବିମୋହିତାଃ (ଏହିପରି ଅଜ୍ଞାନବିମୂଢ଼) ଅନେକଚିତ୍ତବିଭ୍ରାନ୍ତାଃ (ଅନେକ ପ୍ରକାର କାଳ୍ପନିକ ଚିନ୍ତାରେ ବିକ୍ଷୁବ୍ଧ) ମୋହଜାଲସମାବୃତାଃ (ମୋହ ଜାଲରେ ସମାଚ୍ଛନ୍ନ) କାମଭୋଗେଷୁ ପ୍ରସକ୍ତାଃ (ବିଷୟ ଭୋଗରେ ଅତ୍ୟାସକ୍ତ) [ଲୋକମାନେ]. ଅଶୁଚୌ (ଅପବିତ୍ର) ନରକେ (ନରକରେ) ପତନ୍ତି (ପଡ଼ନ୍ତି) ।

ଅନୁବାଦ—ଆଜି ଆମର ଏତିକି ଲାଭ ହେଲା, ପରେ ଏହି ଅଭିଳଷିତ ବସ୍ତୁ ପାଇବୁଁ, ଏତିକି ଧନ ଆମର ଅଛି, ଏହି ଧନ ପୁଣି ଆମର (ଅଧିକ) ହେବ, ସେହି ଶତ୍ରୁକୁ ଆମ୍ଭେ ହତ୍ୟା କରିଅଛୁଁ, ଅନ୍ୟମାନଙ୍କୁ ମଧ୍ୟ ହତ୍ୟା କରିବୁଁ; ଆମ୍ଭେହିଁ ସମସ୍ତଙ୍କର ପ୍ରଭୁ, ସକଳ ଭୋଗର ଅଧିକାରୀ, ଆମ୍ଭେ ସିଦ୍ଧଲୋକ, ବଳବାନ୍, ସୁଖୀ, ଧନବାନ୍ ଓ ସଦ୍‌ବଂଶ ଜାତ, ଆମ୍ଭପରି ଆଉ କିଏ ଅଛି ? ଆମ୍ଭେ ଯଜ୍ଞ କରିବୁଁ, ଦାନ ଦେବୁଁ, ଆମୋଦ ପ୍ରମୋଦ କରିବୁଁ—ଏହି ଭାବରେ ଅଜ୍ଞାନ ବିମୋହିତ, ନାନାପ୍ରକାର କାଳ୍ପନିକ ଚିନ୍ତାରେ ବ୍ୟାକୁଳ, ମୋହଜାଲରେ ସମାବୃତ, ବିଷୟଭୋଗରେ ଅତ୍ୟାସକ୍ତ ଲୋକମାନେ ଅପବିତ୍ର ନରକରେ ପତିତ ହୁଅନ୍ତି ।

ସୁବୋଧିନୀ ଟୀକା—ତେଷାଂ ମନୋରଥଂ କଥୟନ୍ ନରକପ୍ରାପ୍ତିମାହ । ଇଦମଦ୍ୟେତି ଚତୁର୍ଭିଃ; ପ୍ରାପ୍ସ୍ୟେ ପ୍ରାପ୍ସ୍ୟାମି, ମନୋରଥଂ ମନସଃ ପ୍ରିୟଂ, ସ୍ପଷ୍ଟମନ୍ୟତ୍ । ଏତେଷାଂ ଚ ତ୍ରୟାଣାଂ ଶ୍ଳୋକାନାଂ ମିତ୍ୟଜ୍ଞାନବିମୋହିତାଃ ସନ୍ତୋ ନରକେ ପତନ୍ତୀତି ଚତୁର୍ଥେନାନ୍ୱୟଃ ।

ବଶ୍ଚି ଅସ୍ୱାବିତ, ସିଦ୍ଧଃ କୃତକୃତ୍ୟଃ, ସ୍ପଷ୍ଟମନ୍ୟତ୍

ବଶ୍ଚ ଆଢ୍ୟ ଇତି, ଆଢ୍ୟୋ ଧନାଦି ସମ୍ପନ୍ନଃ, ଅଭିଜନବାନ୍ କୁଳୀନଃ । ଯକ୍ଷ୍ୟେ ଯାଗାଦ୍ୟନୁଷ୍ଠାନେନାପି ଦୀକ୍ଷିତାନ୍ତରେଭ୍ୟଃ ସକାଶାତ୍ ମହତୀଂ ପ୍ରତିଷ୍ଠାଂ ପ୍ରାପ୍ସ୍ୟାମି, ଦାସ୍ୟାମି ସ୍ତାବକେଭ୍ୟଃ, ମୋଦିଷ୍ୟେ ହର୍ଷଂ ପ୍ରାପ୍ସ୍ୟାମି, ଇତ୍ୟେବମଜ୍ଞାନେନ ବିମୋହିତା ମିଥ୍ୟାଭିନିବେଶଂ ପ୍ରାପିତାଃ ।

ଏବମ୍ଭୂତା ଯତ୍ ପ୍ରାପ୍ନୁବନ୍ତି ତଚ୍ଛୃଣୁ—ଅନେକେତି, ଅନେକେଷୁ ମନୋରଥେଷୁ ପ୍ରବୃତ୍ତଂ ଚିତ୍ତମନେକଚିତ୍ତମ୍ । ତେନ ବିଭ୍ରାନ୍ତା ବିକ୍ଷିପ୍ତାଃ । ଅତଏବ ମୋହମୟେନ ଜାଲେନ ସମାବୃତାଃ । ମତ୍ସ୍ୟା ଇବ ସୂତ୍ରମୟେନ ଜାଲେନ ଯନ୍ତ୍ରିତାଃ । ଏବଂ କାମଭୋଗେଷୁ ପ୍ରସକ୍ତା ଅଭିନିବିଷ୍ଟାଃ ସନ୍ତୋଽଶୁଚୌ କଶ୍ମଲେ ନରକେ ପତନ୍ତି ।

ଆତ୍ମସମ୍ଭାବିତାଃ ସ୍ତବ୍‌ଧା ଧନମାନମଦାନ୍ୱିତାଃ
ଯଜନ୍ତେ ନାମ ଯଜ୍ଞୈସ୍ତେ ଦମ୍ଭେନାବିଧିପୂର୍ବକମ୍ । ୧୭ ।
ଅହଂକାରଂ ବଲଂ ଦର୍ପଂ କାମଂ କ୍ରୋଧଂ ଚ ସଂଶ୍ରିତାଃ,
ମାମାତ୍ମପରଦେହେଷୁ ପ୍ରଦ୍ୱିଷନ୍ତୋଽଭ୍ୟସୂୟକାଃ । ୧୮ ।

୧୭ । ଅନ୍ୱୟ ଦୀପିକା—ଆତ୍ମସମ୍ଭାବିତାଃ (ଆତ୍ମ ପ୍ରଶଂସାକାରୀ) ସ୍ତବ୍‌ଧାଃ ( ଉଦ୍ଧତ ପ୍ରକୃତି ଯୁକ୍ତ ) ଧନମାନମଦାନ୍ୱିତାଃ ( ଧନ ହେତୁରୁ ଅଭିମାନ ଓ ଅହଂକାର ବିଶିଷ୍ଟ ) ତେ ( ସେହି ଅସୁର ପ୍ରକୃତିକ ଲୋକମାନେ ) ଦମ୍ଭେନ ( ଦମ୍ଭ ସହିତ ) ନାମଯଜ୍ଞୈଃ ( ନାମମାତ୍ର ଯଜ୍ଞଦ୍ୱାରା ) ଅବିଧି ପୂର୍ବକଂ ଯଜନ୍ତେ ( ଅବିଧିରେ ଯଜ୍ଞ କରନ୍ତି )

ଅନୁବାଦ—ଆତ୍ମପ୍ରଶଂସାକାରୀ, ଉଦ୍ଧତସ୍ୱଭାବଯୁକ୍ତ, ଧନ ହେତୁରୁ ଅଭିମାନୀ ଓ ଅହଂକାରୀ ସେହି ଅସୁର ପ୍ରକୃତି ବିଶିଷ୍ଟ ଲୋକମାନେ ଦମ୍ଭ ପ୍ରକାଶ କରି ଅବିଧିରେ ନାମ ମାତ୍ର ଯଜ୍ଞ କରନ୍ତି ।

ସୁବୋଧିନୀ ଟୀକା—ଯଷ୍ଟ୍ୟ ଇତି ଚ ଯନ୍ତେଷାଂ ମନୋରଥ ଉକ୍ତଃ ସ କେବଳଂ ଦମ୍ଭାହଂକାରାଦପ୍ରଧାନ ଏବ ନତୁ ସାତ୍ତ୍ୱିକ ଇତ୍ୟଭିପ୍ରାୟେଣ- ଆହେତି ଦ୍ୱାଭ୍ୟାମ୍, ଆତ୍ମନୈବ ସମ୍ଭାବିତାଃ ପୂଜ୍ୟତାଂ ନୀତାଃ, ନ ତୁ, ସାଧୁଭିଃ କୈଶ୍ଚିତ୍, ଅତ ଏବ ସ୍ତବ୍‌ଧା ଅନମ୍ରାଃ । ଧନେନ ଯୋ ମାନୋ ମଦଶ୍ଚ ତାଭ୍ୟାଂ ସମନ୍ୱିତାଃ ସନ୍ତସ୍ତେ, ନାମମାତ୍ରେଣ ଯେ ଯଜ୍ଞାଃ ସ୍ତେ ନାମଯଜ୍ଞାଃ । ଯଦ୍‌ବା ଦୀକ୍ଷିତଃ ସୋମଯାଜୀତ୍ୟେବମାଦନାମମାତ୍ରପ୍ରସିଦ୍ଧୟେ ଯେ ଯଜ୍ଞ ସ୍ତୈ ର୍ଯଜନ୍ତେ, କଥଂ ? ଦମ୍ଭେନ, ନତୁ ଶ୍ରଦ୍ଧୟା, ଅବିଧିପୂର୍ବକଂ.ଚ ଯଥା ଭବତି ତଥା ।

୧୮ । ଅନ୍ୱୟ ଦୀପିକା—ଅହଂକାରଂ, ବଲଂ, ଦର୍ପଂ, କାମଂ କ୍ରୋଧଂ ଚ ( ଅହଂକାର, ବଳ, ଦର୍ପ, କାମ ଏବଂ କ୍ରୋଧର ) ସଂଶ୍ରିତାଃ ( ବଶୀଭୂତ ହୋଇ ) [ ସେମାନେ ] ଆତ୍ମପରଦେହେଷୁ ( ନିଜ ଦେହରେ ସ୍ଥିତ ଓ ପର ଦେହରେ ସ୍ଥିତ ) ମାଂ ( ଆମ୍ଭକୁ ) ପ୍ରଦ୍ୱିଷନ୍ତଃ ( ଦ୍ୱେଷକରି ) ଅଭ୍ୟସୂୟକାଃ ( ଅସୂୟାକାରୀ ) [ ହୁଅନ୍ତି ] ।

ଅନୁବାଦ—ସାଧୁମାନଙ୍କର ଅସୂୟାକାରୀ ସେହି ଅସୁର ପ୍ରକୃତିକ ଲୋକମାନେ ଅହଂକାର, ବଳ, ଦର୍ପ, କାମ, କ୍ରୋଧର ବଶୀଭୂତ ହୋଇ ନିଜ ଦେହ ଓ ପର ଦେହରେ ଅବସ୍ଥିତ ଅନ୍ତର୍ଯ୍ୟାମୀ ଆମ୍ଭକୁ ଦ୍ୱେଷ କରନ୍ତି ।

ସୁବୋଧିନୀ ଟୀକା—ଅବିଧିପୂର୍ବକତ୍ୱମେବ ପ୍ରପଞ୍ଚୟତି—ଅହଂକାର ମିତି, ଅହଂକାରାଦୀନ୍ ସଂଶ୍ରିତାଃ ସନ୍ତ ଆତ୍ମ ପରଦେହେଷ୍ୱାତ୍ମଦେହେ ପରଦେହେଷୁ ଚ ଚିଦଂଶେନ ସ୍ଥିତଂ ମାଂ ପ୍ରଦ୍ୱିଷନ୍ତୋ ଯଜନ୍ତେ । ଦମ୍ଭଯଜ୍ଞେଷୁ ଶ୍ରଦ୍ଧାୟା ଅଭାବାଦାତ୍ମନୋ ବୃଥୈବ ପୀଡ଼ା ଭବତି । ତଥା ପଶ୍ୱାଦୀନାମପ୍ୟ-

ତାନହଂ ଦ୍ୱିଷତଃ କ୍ରୂରାନ୍ ସଂସାରେଷୁ ନରାଧମାନ୍
କ୍ଷିପାମ୍ୟଜସ୍ରମଶୁଭାନ୍ ଆସୁରୀଷ୍ୱେବ ଯୋନିଷୁ । ୧୯ ।

ଅଧୁନା ହିଂସାୟାଂ ଚୈତନ୍ୟଦ୍ରୋହ ଏବାବଶିଷ୍ୟତ ଇତି ପ୍ରଦ୍ୱିଷନ୍ତ ଇତ୍ୟୁକ୍ତମ୍ ।
ଅଭ୍ୟସୂୟକାଃ ସନ୍ମାର୍ଗବର୍ତ୍ତିନାଂ ଗୁଣେଷୁ ଦୋଷାରୋପକାଃ ।

ବିବୃତି—ପୂର୍ବ ଶ୍ଳୋକରେ ଅସୁରପ୍ରକୃତିକ ଲୋକମାନେ ଅବିଧିପୂର୍ବକ ଯଜ୍ଞ କରନ୍ତି ବୋଲି ଯାହା କୁହା ଯାଇଅଛି, ଏ ଶ୍ଳୋକରେ ତାହାହିଁ ବ୍ୟାଖ୍ୟା କରାଯାଇଅଛି । ଅହଂକାରାଦି ଆଶ୍ରୟରେ ସେମାନେ ଦମ୍ଭ ପୂର୍ବକ ଯଜ୍ଞାନୁଷ୍ଠାନ କରନ୍ତି । ଆମ୍ଭେ ସମସ୍ତଙ୍କ ଦେହରେ ଅନ୍ତର୍ଯାମୀରୂପରେ ରହିଅଛୁଁ । ଶ୍ରଦ୍ଧା ଅଭାବରୁ ଦମ୍ଭ ଯଜ୍ଞରେ ଆତ୍ମପୀଡ଼ା ହୁଏ, ଅର୍ଥାତ୍ ତାଙ୍କ ନିଜଦେହସ୍ଥିତ ଆତ୍ମାଙ୍କୁ ସେମାନେ କଷ୍ଟ ଦଅନ୍ତି । ଅବିଧିରେ ଯଜ୍ଞ କରିବାରୁ ପଶୁ ହିଂସାରେ ପରଦେହସ୍ଥିତ ଆତ୍ମାଙ୍କର ଦ୍ରୋହ ମଧ୍ୟ ହୁଏ । ସାଧୁଲୋକମାନଙ୍କର ଗୁଣରେ ଦୋଷାରୋପ କରିବାରୁ ସେମାନଙ୍କୁ ଅଭ୍ୟସୂୟକ ବୋଲି କୁହା ଯାଇଅଛି ।

୧୯ । ଅନ୍ୱୟ ଦୀପିକା—ଅହଂ ( ଆମ୍ଭେ ) ଦ୍ୱିଷତଃ ( ଦ୍ୱେଷପରବଶ ) କ୍ରୂରାନ୍ ( କ୍ରୂରକର୍ମୀ ) ଅଶୁଭାନ୍ ( ଅମଙ୍ଗଳକାରୀ ) ତାନ୍ ( ସେହି ) ନରାଧମାନ୍ ( ନରାଧମମାନଙ୍କୁ ) ସଂସାରେଷୁ ( ସଂସାର ମଧ୍ୟରେ ) ଆସୁରୀଷୁ ଯୋନିଷୁ ( ହିଂସ୍ରକ-ସ୍ୱଭାବ ପାପଯୋନିରେ ) ଅଜସ୍ରଂ ( ବାରଂବାର ) କ୍ଷିପାମି ( ନିକ୍ଷେପ କରୁଁ ) ।

ଅନୁବାଦ—ଆମ୍ଭେ ଦ୍ୱେଷ ପରବଶ କ୍ରୂରକର୍ମୀ ଅମଙ୍ଗଳକାରୀ ସେହି ନରାଧମମାନଙ୍କୁ ସଂସାରରେ ( ବ୍ୟାଘ୍ର ସର୍ପାଦି ହିଂସ୍ରକ ସ୍ୱଭାବ ) ପାପ ଯୋନିରେ ପୁନଃ ପୁନଃ ନିକ୍ଷେପ କରୁଁ ।

ସୁବୋଧିନୀ ଟୀକା—ତେଷାଂ ଚ 'କଦାଚିଦପ୍ୟାସୁରସ୍ୱଭାବଂ ପ୍ରତ୍ୟୁତର୍ନିବର୍ତ୍ତତେ' ଇତ୍ୟାହ, ତାନିତିଦ୍ୱାଭ୍ୟାମ୍, ତାନହଂ ମାଂ ଦ୍ୱିଷତଃ କ୍ରୂରାନ୍ ସଂସାରେଷୁ ଜନ୍ମମୃତ୍ୟୁମାର୍ଗେଷୁ ତତ୍ରାପ୍ୟାସୁରୀଷ୍ୱେବାତିକ୍ରୂରାସୁ ବ୍ୟାଘ୍ରସର୍ପାଦି ଯୋନିଷ୍ୱଜସ୍ରମନବରତଂ କ୍ଷିପାମି । ତେଷାଂ ପାପକର୍ମଣାଂ ତାଦୃଶଂ ଫଳଂ ଦଦାମୀତ୍ୟର୍ଥଃ ।

ବିବୃତି—ନବମ ଅଧ୍ୟାୟ ୨୯ମ ଶ୍ଳୋକରେ ଭଗବାନ୍ କହିଅଛନ୍ତି, 'ଆମ୍ଭେ ସମସ୍ତଙ୍କ ପ୍ରତି ସମାନ, ଆମ୍ଭର କେହି ଶତ୍ରୁ ବା କେହି ମିତ୍ର ନାହାନ୍ତି' । ଏଠାରେ କହିଲେ, 'ସେହି ଅସୁର ସ୍ୱଭାବ ଲୋକମାନଙ୍କୁ ଆମ୍ଭେ ବାରଂବାର ବ୍ୟାଘ୍ର ସର୍ପାଦି ଯୋନିରେ ନିକ୍ଷେପ କରୁଁ । ଏହି ଦୁଇ ଉକ୍ତି ପରସ୍ପର ବିରୁଦ୍ଧ

ଆସୁରୀଂ ଯୋନିମାପନ୍ନା ମୂଢ଼ା ଜନ୍ମନି ଜନ୍ମନି ।
ମାମପ୍ରାପ୍ୟୈବ କୌନ୍ତେୟ ତତୋ ଯାନ୍ତ୍ୟଧମାଂ ଗତିମ୍ ॥ ୨୦ ॥

ଏହି ମତେ ହେଉଥିଲେ ହେଁ ପ୍ରକୃତରେ ଈଶ୍ୱର ବିରୁଦ୍ଧ ନୁହେଁ । କର୍ମର ଫଳ ଲୋକଙ୍କୁ ଭୋଗିବାକୁ ହୁଏ, ଏହାକୁ ହିଁ ଅଦୃଷ୍ଟ କହନ୍ତି । ଯେ ଯେପରି କର୍ମ କରେ ତାହାର ସ୍ୱଭାବ ସେହିପରି ଭାବରେ ଗଠିତ ହୁଏ ଏବଂ ତାହାର ସୂକ୍ଷ୍ମ ଶରୀର ତଦନୁରୂପ ସଂସ୍କାର ବିଶିଷ୍ଟ ହୁଏ । ପର ଜନ୍ମରେ ଲୋକ ସେହି ସଂସ୍କାର ଅନୁସାରେ ଶରୀର ଧାରଣ କରିଥାଏ । ଏହା ହିଁ ଦାର୍ଶନିକ ମତବାଦ ଓ ପ୍ରକୃତିର ନିୟମ । କର୍ମ ଅବଶ୍ୟ ଅଚେତନ ବସ୍ତୁ, ସେ ସ୍ୱତଃ କିପରି 'ଅଦୃଷ୍ଟ' ଗଠନ କରିବ ? ଭଗବାନ୍ ସୃଷ୍ଟିକର୍ତ୍ତା ଓ ରକ୍ଷକ, ପ୍ରକୃତିର ନିୟମ ରକ୍ଷାକରିବା ତାଙ୍କର କାର୍ଯ୍ୟ । ବୃଷ୍ଟି ବୃକ୍ଷ ବା ଫଳର ସାକ୍ଷାତ୍ କାରଣ ନୁହେ ସତ୍ୟ, ବୀଜହିଁ ତାହାର ମୁଖ୍ୟ କାରଣ; କିନ୍ତୁ ବୃଷ୍ଟି ବ୍ୟତୀତ ବୀଜ ଅଙ୍କୁରିତ ହୋଇପାରେ ନାହିଁ, ତେଣୁ ଅନ୍ୟ ଭାବରେ ବିଚାର କଲେ ବୃଷ୍ଟି ହିଁ ବୃକ୍ଷର ଗୌଣ କାରଣ । ସେହିପରି ଈଶ୍ୱର ସୁଖ ଦୁଃଖ ଭୋଗର ସାକ୍ଷାତ୍ କାରଣ ନୁହନ୍ତି, ସେ ସର୍ବଥା ସମଭାବାପନ୍ନ; କିନ୍ତୁ ତାଙ୍କର ସତ୍ତାପ୍ରଭାବରେ ଜୀବର ଅଦୃଷ୍ଟ ଫଳପ୍ରସବ କରିଥାଏ ।

୨୦ । ଅନ୍ୱୟ ଦୀପିକା— [ହେ] କୌନ୍ତେୟ, ମୂଢ଼ାଃ (ମୂଢ଼ ଲୋକମାନେ) ଜନ୍ମନି ଜନ୍ମନି (ପ୍ରତି ଜନ୍ମରେ) ଆସୁରୀଂ ଯୋନିମ୍ (ଆସୁରୀ ଯୋନି) ଆପନ୍ନାଃ (ପ୍ରାପ୍ତହୋଇ) ମାମ୍ ଅପ୍ରାପ୍ୟ (ଆମ୍ଭକୁ ନପାଇ) ତତଃ (ତାହାଠାରୁ) ଅଧମାଂ ଗତିଂ (ଅଧୋଗତି) ଯାନ୍ତି (ଲାଭ କରନ୍ତି) ।

ଅନୁବାଦ—ହେ କୌନ୍ତେୟ, ମୂଢ଼ ଲୋକମାନେ ପ୍ରତି ଜନ୍ମରେ ଆସୁରୀ ଯୋନି ପ୍ରାପ୍ତ ହୁଅନ୍ତି ଏବଂ ଆମ୍ଭକୁ ନ ପାଇ ଶେଷରେ ତାହାଠାରୁ ଅଧିକ ନିକୃଷ୍ଟ ଜନ୍ମ (କୃମିକୀଟାଦି ଜନ୍ମ) ଲାଭ କରନ୍ତି ।

ସୁବୋଧିନୀ ଟୀକା—କିଞ୍ଚ—ଆସୁରୀମିତି, ତେ ଚ ମାମ-ପ୍ରାପ୍ୟୈବେତ୍ୟେବକାରେଣ ମତ୍ ପ୍ରାପ୍ତିଶଙ୍କାପି କୁତସ୍ତେଷାମ୍ ? ମତ୍ପ୍ରାପ୍ତ୍ୟୁପାୟଂ ସନ୍ମାର୍ଗମପ୍ରାପ୍ୟ ତତୋଽପ୍ୟଧମାଂ କୃମିକୀଟାଦିଗତିଂ ଯାନ୍ତୀତ୍ୟୁକ୍ତମ୍, ଶେଷଂ ସ୍ପଷ୍ଟମ୍ ।

ବିବୃତି—ଆସୁରୀ ପ୍ରକୃତିବିଶିଷ୍ଟ ଲୋକମାନେ ରାଜସିକ ଓ ତାମସିକ, ସତ୍ତ୍ୱଗୁଣ ନ ଆସିବା ଯାଏ ଈଶ୍ୱର ବିଷୟକ ବିବେକ ବୁଦ୍ଧିର ଉଦ୍ରେକ ହୁଏନାହିଁ । ଥରେ ଏହିଭଳି ନୀଚ ଯୋନିରେ ଜନ୍ମ ହେଲେ ସହଜରେ ତହିଁରୁ ଉଦ୍ଧାର ମିଳେନାହିଁ, ତେଣୁ ଯଥାଶକ୍ତି ଚେଷ୍ଟା କରି ରଜଃ ଏବଂ ତମୋଗୁଣ ତ୍ୟାଗ କରିବାକୁ ହେବ ।

ତ୍ରିବିଧଂ ନରକସ୍ୟେଦଂ ଦ୍ୱାରଂ ନାଶନମାତ୍ମନଃ ।
କାମଃ କ୍ରୋଧସ୍ତଥା ଲୋଭସ୍ତସ୍ମାଦେତତ୍ତ୍ରୟଂ ତ୍ୟଜେତ୍ । ୨୧ ।
ଏତୈର୍ବିମୁକ୍ତଃ କୌନ୍ତେୟ ତମୋଦ୍ୱାରୈସ୍ତ୍ରିଭିର୍ନରଃ ।
ଆଚରତ୍ୟାତ୍ମନଃ ଶ୍ରେୟସ୍ତତୋ ଯାତି ପରାଂ ଗତିମ୍ । ୨୨ ।

୨୧ । ଅନ୍ୱୟଦୀପିକା—କାମଃ, କ୍ରୋଧଃ, ତଥା ଲୋଭଃ (କାମ, କ୍ରୋଧ ଏବଂ ଲୋଭ )—ଇଦଂ ( ଏହି ) ତ୍ରିବିଧଂ ( ତିନି ପ୍ରକାର ) ନରକସ୍ୟ ଦ୍ୱାରଂ ( ନରକର ଦ୍ୱାର ), ଆତ୍ମନଃ ନାଶନଂ (ଆତ୍ମାର ବିନାଶକ ), [ତେଣୁ] ଏତତ୍ ତ୍ରୟଂ ତ୍ୟଜେତ୍ ( ଏ ତିନିକୁ ତ୍ୟାଗ କରିବ ) ।

ଅନୁବାଦ—କାମ, କ୍ରୋଧ ଓ ଲୋଭ—ଏ ତିନିଗୋଟି ନରକର ଦ୍ୱାର ସ୍ୱରୂପ ଏବଂ ଆତ୍ମନାଶର ମୂଳ ଅଟନ୍ତି ଅର୍ଥାତ୍ ଜୀବର ଅଧୋଗତିର କାରଣ ଅଟନ୍ତି । ସୁତରାଂ ଏ ତିନିଗୋଟିକୁ ତ୍ୟାଗ କରିବାକୁ ହେବ ।

ସୁବୋଧିନୀ ଟୀକା—ଉକ୍ତାନାମାସୁରଦୋଷାଣାଂ ମଧ୍ୟେ ସକଳ-ଦୋଷମୂଳଭୂତଂ ଦୋଷତ୍ରୟଂ ସର୍ବଥା ବର୍ଜ୍ଜନୀୟମିତ୍ୟାହ, ତ୍ରିବିଧମିତି, କାମଃ କ୍ରୋଧୋ ଲୋଭଶ୍ଚେତୀଦଂ ତ୍ରିବିଧଂ ନରକସ୍ୟ ଦ୍ୱାରମ୍ । ଅତଏବାତ୍ମନୋ ନାଶନଂ, ନୀଚଯୋନିପ୍ରାପକମ୍ । ତସ୍ମାଦେତତ୍ ତ୍ରୟଂ ସର୍ବାତ୍ମନା ତ୍ୟଜେତ୍ ।

୨୨ । ଅନ୍ୱୟଦୀପିକା— [ହେ] କୌନ୍ତେୟ, ଏତୈଃ ( ଏହି ) ତ୍ରିଭିଃ ( ତିନିଗୋଟି ) ତମୋଦ୍ୱାରୈଃ ( ନରକର ଦ୍ୱାରରୁ ) ମୁକ୍ତଃ ନରଃ ( ମୁକ୍ତ ଲୋକ ) ଆତ୍ମନଃ ( ଆପଣାର ) ଶ୍ରେୟଃ ( ମଙ୍ଗଳ ) ଆଚରତି ( ଆଚରଣ କରନ୍ତି ), ତତଃ ( ତତ୍ପରେ ) ପରାଂ ଗତିଂ ଯାତି ( ପରମ ଗତି ପ୍ରାପ୍ତ ହୁଅନ୍ତି ) ।

ଅନୁବାଦ—ହେ କୌନ୍ତେୟ, ଲୋକ ଏହି ତିନିଗୋଟି ନରକ ଦ୍ୱାରରୁ ମୁକ୍ତହୋଇ ନିଜର ମଙ୍ଗଳ ସାଧନ ପୂର୍ବକ ପରମଗତି ପ୍ରାପ୍ତ ହୁଅନ୍ତି ।

ସୁବୋଧିନୀ ଟୀକା—ତ୍ୟାଗେ ଚ ଵକ୍ଷିଷ୍ୟଂ ଫଳମାହ, ଏତୈରିତି, ତମସୋ ନରକସ୍ୟ ଦ୍ୱାରଭୂତୈ ରେତୈସ୍ତ୍ରିଭିଃ କାମାଦିଭିର୍ବିମୁକ୍ତୋ ନର ଆତ୍ମନଃ ଶ୍ରେୟଃସାଧନଂ ତପୋଯୋଗାଦିକ ମାଚରତି, ତତଶ୍ଚ ମୋକ୍ଷଂ ପ୍ରାପ୍ନୋତି ।

ବକ୍ତବ୍ୟ—୨୧ଶ ଓ ୨୨ଶ ଶ୍ଲୋକରେ ଆସୁର ସ୍ୱଭାବର କାରଣ ଏବଂ ତହିଁରୁ ମୁକ୍ତ ହେବାର ଉପାୟ ବର୍ଣ୍ଣିତ ହେଲା, ଦମ୍ଭ, ଦର୍ପ, ଅଭିମାନ ପ୍ରଭୃତି ଯେଉଁସବୁ ଆସୁର ସ୍ୱଭାବର ଲକ୍ଷଣ ପୂର୍ବେ ଉକ୍ତ ହୋଇଅଛି କାମ, କ୍ରୋଧ ଓ ଲୋଭ—ସେ ସମସ୍ତର ମୂଳ କାରଣ, ଏ ତିନିଗୋଟି ନରକ ଦ୍ୱାରରୁ ରକ୍ଷା ପାଇଲେ ଲୋକ ଶ୍ରେୟଃ ପଥରେ ପଥିକ ହୁଅନ୍ତି ଅର୍ଥାତ୍ ତପସ୍ୟା ଓ ଯୋଗାଦି ଅଭ୍ୟାସ କରି ମୁକ୍ତିଲାଭ କରନ୍ତି ।

ଯଃ ଶାସ୍ତ୍ରବିଧିମୁତ୍ସୃଜ୍ୟ ବର୍ତ୍ତତେ କାମକାରତଃ,*
ନ ସ ସିଦ୍ଧି ମବାପ୍ନୋତି ନ ସୁଖଂ ନ ପରାଂ ଗତିମ୍ । ୨୩ ।

ତସ୍ମାଚ୍ଛାସ୍ତ୍ରଂ ପ୍ରମାଣଂ ତେ କାର୍ଯ୍ୟାକାର୍ଯ୍ୟ ବ୍ୟବସ୍ଥିତୌ,
ଜ୍ଞାତ୍ୱା ଶାସ୍ତ୍ରବିଧାନୋକ୍ତଂ କର୍ମକର୍ତ୍ତୁମିହାର୍ହସି । ୨୪ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି
ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ
ଶ୍ରୀକୃଷ୍ଣାର୍ଜ୍ଜୁନସଂବାଦେ ଦୈବାସୁରସଂପଦ୍ ବିଭାଗଯୋଗୋ
ନାମ ଷୋଡ଼ଶୋଽଧ୍ୟାୟଃ ।

---

୨୩ । ଅନ୍ୱୟ ଦୀପିକା—ଯଃ (ଯେ) ଶାସ୍ତ୍ରବିଧିମ୍ (ଶାସ୍ତ୍ରବିଧିକୁ) ଉତ୍ସୃଜ୍ୟ (ପରିତ୍ୟାଗ କରି) କାମକାରତଃ (ସ୍ୱେଚ୍ଛାଗ୍ରସ୍ତ ହୋଇ) ବର୍ତ୍ତତେ (କର୍ମରେ ପ୍ରବୃତ୍ତ ହୁଏ) ସଃ (ସେ) ସିଦ୍ଧିଂ (ସିଦ୍ଧି) ନ ଅବାପ୍ନୋତି (ପ୍ରାପ୍ତ ହୁଏନାହିଁ), ନ ସୁଖଂ (ନା ସୁଖ) ନ ପରାଂ ଗତିଂ (ନା ପରମଗତି) [ପ୍ରାପ୍ତ ହୁଏ] ।

ଅନୁବାଦ—ଯେ ଶାସ୍ତ୍ର ବିଧିକୁ ତ୍ୟାଗକରି ସ୍ୱେଚ୍ଛାଗ୍ରସ୍ତ ହୋଇ କର୍ମରେ ପ୍ରବୃତ୍ତ ହୁଏ, ତାହାଙ୍କର ସିଦ୍ଧିଲାଭ ହୁଏ ନାହିଁ, ଶାନ୍ତି ସୁଖ ହୁଏ ନାହିଁ, ମୋକ୍ଷଲାଭ ମଧ୍ୟ ହୁଏ ନାହିଁ ।

ସୁବୋଧିନୀ ଟୀକା—କାମାଦିତ୍ୟାଗଶ୍ଚ ସ୍ୱଧର୍ମାଚରଣଂ ବିନା ନ ସମ୍ଭବତୀତ୍ୟାହ । ଯ ଇତି । ଶାସ୍ତ୍ରବିଧିଂ ବେଦବିହିତଂ ଧର୍ମମୁତ୍ସୃଜ୍ୟ ଯଃ କାମକାରତୋ ଯଥେଷ୍ଟଂ ବର୍ତ୍ତତେ ସ ସିଦ୍ଧିଂ ତତ୍ତ୍ୱଜ୍ଞାନଂ ନ ପ୍ରାପ୍ନୋତି, ନ ଚ ପରାଂଗତିଂ ମୋକ୍ଷଂ ପ୍ରାପ୍ନୋତି ।

୨୪ । ଅନ୍ୱୟ ଦୀପିକା—ତସ୍ମାତ୍ (ସେହି ହେତୁରୁ) କାର୍ଯ୍ୟାକାର୍ଯ୍ୟବ୍ୟବସ୍ଥିତୌ (କାର୍ଯ୍ୟ ଓ ଅକାର୍ଯ୍ୟର ନିରୂପଣ ବିଷୟରେ) ଶାସ୍ତ୍ରଂ ତେ ପ୍ରମାଣଂ (ଶାସ୍ତ୍ର ତୁମ୍ଭର ପ୍ରମାଣ ଅଟେ); ଶାସ୍ତ୍ରବିଧାନୋକ୍ତଂ (ଶାସ୍ତ୍ରୀୟ ବ୍ୟବସ୍ଥା) ଜ୍ଞାତ୍ୱା (ଜାଣି) ଇହ (ଏହି ସଂସାରରେ) କର୍ମ କର୍ତ୍ତୁମ ଅର୍ହସି (କର୍ତ୍ତବ୍ୟ କର୍ମରେ ପ୍ରବୃତ୍ତ ହୁଅ) ।

---

* କାମ ମୋହିତଃ—ଇତି ଶ୍ରୀଧର ସ୍ୱାମିଧୃତଃ ପାଠଃ ।

ଅନୁବାଦ—ସେହି ହେତୁରୁ କାର୍ଯ୍ୟାକାର୍ଯ୍ୟ ନିରୂପଣ ବିଷୟରେ ଶାସ୍ତ୍ରହିଁ ତୁମ୍ଭର ପ୍ରମାଣ, ତେଣୁ ତୁମ୍ଭେ ଶାସ୍ତ୍ରୀୟ ବ୍ୟବସ୍ଥା ଜାଣି ଏହି ସଂସାରରେ ଯଥାଧିକାର କର୍ମ କରିବାରେ ପ୍ରବୃତ୍ତ ହୁଅ ।

ସୁବୋଧିନୀ ଟୀକା—ଫଳିତ ମାହ—ତସ୍ମାଦିତି, ଇଦଂ କାର୍ଯ୍ୟମିଦମକାର୍ଯ୍ୟମିତ୍ୟସ୍ୟାଂ ବ୍ୟବସ୍ଥାୟାଂ ତେ ତବ ଶାସ୍ତ୍ରଂ ଶ୍ରୁତିସ୍ମୃତିପୁରାଣାଦିକମେବ ପ୍ରମାଣମ୍ । ଅତଃ ଶାସ୍ତ୍ରବିଧାନୋକ୍ତଂ କର୍ମ ଜ୍ଞାତ୍ୱେହ କର୍ମାଧିକାରେ ବର୍ତ୍ତମାନୋ ଯଥାଧିକାରଂ କର୍ମ କର୍ତ୍ତୁମର୍ହସି, ତଦ୍ଦ୍ବାରା ସତ୍ତ୍ୱଶୁଦ୍ଧିସମ୍ୟଗ୍‌ଜ୍ଞାନ ମୁକ୍ତୀନାମିତ୍ୟର୍ଥଃ ।

ଦେବଦୈତ୍ୟେୟ ସଂପତ୍ତି ସଂକ୍ଷେପେଣ ଷୋଡ଼ଶେ ।
ତତ୍ତ୍ୱଜ୍ଞାନେଽଧିକାରଶ୍ଚ ସାତ୍ତ୍ୱିକସ୍ୟେତି ଦର୍ଶିତମ୍ ।

ବିବୃତି—କି ଉପାୟରେ ଆସୁର ପ୍ରକୃତିରୁ ଲୋକ ମୁକ୍ତ ପାଇବ, ଶେଷ ଦୁଇ ଶ୍ଳୋକରେ ତାହାହିଁ ଉପଦେଶ ଦିଆଯାଇଅଛି । ଶ୍ରୁତି ଅର୍ଥାତ୍ ବେଦ, ସ୍ମୃତି ଓ ପୁରାଣ ପ୍ରଭୃତିକୁ ଶାସ୍ତ୍ର ବୋଲାଯାଏ । କର୍ତ୍ତବ୍ୟ କଅଣ, ଅକର୍ତ୍ତବ୍ୟ କଅଣ ଏହା ଜାଣିବାପାଇଁ ଶାସ୍ତ୍ରହିଁ ପ୍ରମାଣ । ଶାସ୍ତ୍ର ପ୍ରମାଣ ଜାଣି ନିଜ କର୍ତ୍ତବ୍ୟ ସଂପାଦନ କରିବା ଉଚିତ । ଶାସ୍ତ୍ରାନୁରୂପ କର୍ତ୍ତବ୍ୟ ନ କରି ଯେଉଁ ଲୋକ ସ୍ୱଇଚ୍ଛାରେ କାମ କରେ, କାମ କ୍ରୋଧ ଲୋଭର କବଳରୁ ସେ ରକ୍ଷା ପାଏନାହିଁ । ସ୍ୱଧର୍ମାଚରଣଦ୍ୱାରା ଆତ୍ମଶୁଦ୍ଧି ହେଲେ ଲୋକ ଜ୍ଞାନ ଓ ମୋକ୍ଷର ଅଧିକାରୀ ହୁଏ ।

## ଷୋଡ଼ଶ ଅଧ୍ୟାୟର ସାରସଂକଳନ

ପଞ୍ଚଦଶ ଅଧ୍ୟାୟ ଶେଷରେ ଭଗବାନ୍ କହିଥିଲେ, ଯେ ଆମ୍ଭ ପୁରୁଷୋତ୍ତମ ସ୍ୱରୂପର ପ୍ରକୃତ ତତ୍ତ୍ୱ ବୁଝିପାରନ୍ତି ସେ ସର୍ବଜ୍ଞ ହୁଅନ୍ତି । କିପରି ଅବସ୍ଥାରେ ଲୋକ ସେ ତତ୍ତ୍ୱର ଅଧିକାରୀ ହୁଅନ୍ତି, ତାହା ବୁଝାଇବା ପାଇଁ ଷୋଡ଼ଶ ଅଧ୍ୟାୟ ପ୍ରଥମରେ ଭଗବାନ୍ ଦୈବୀ ପ୍ରକୃତିବିଶିଷ୍ଟ ଲୋକଙ୍କର ଲକ୍ଷଣ ନିର୍ଦ୍ଦେଶ କରିଅଛନ୍ତି । ଅଭୟ, ଅନୃଶଂସ୍ୟତା, ଶତଶୁଦ୍ଧି, ଅସୂୟାଭାବ ପ୍ରଭୃତି ୨୬ଟି ଦୈବୀ ପ୍ରକୃତିର ଲକ୍ଷଣ ନିର୍ଦ୍ଦେଶ କରି ଭଗବାନ୍ କହିଲେ ଯେ ଏ ସଂସାରରେ ଦୁଇପ୍ରକାର ପ୍ରକୃତି ବିଶିଷ୍ଟ ଲୋକର ସୃଷ୍ଟି ହୋଇଅଛି । ଦୈବୀ ପ୍ରକୃତିକ ଲୋକଙ୍କ ବିଷୟ ପୂର୍ବେ ଅନେକ ପ୍ରସଙ୍ଗରେ ଏବଂ ଏ ଅଧ୍ୟାୟ ପ୍ରଥମରେ ବୁଝାଯାଇଅଛି । ଦୈବୀ ପ୍ରକୃତିକ ଲୋକମାନେହିଁ ମୋକ୍ଷର ଅଧିକାରୀ ହୁଅନ୍ତି ଏବଂ ଆସୁରୀ ପ୍ରକୃତିକ ଲୋକମାନଙ୍କର ସେ ଆଶା ନ ଥାଏ । ସେମାନେ ସତ୍‌କର୍ମରେ ପ୍ରବୃତ୍ତି ଓ ଅସତ

କର୍ମରୁ ନିବୃତ୍ତି ବୁଝନ୍ତି ନାହିଁ । ସେମାନଙ୍କର ଶୌଚାଶୌଚ, ଆଚାର ଓ ସତ୍ୟ ସମ୍ବନ୍ଧରେ ଧାରଣା ମଧ୍ୟ ନ ଥାଏ । ସେମାନଙ୍କ ମତରେ ସ୍ତ୍ରୀ ପୁରୁଷ ସଂସର୍ଗରୁହିଁ ସୃଷ୍ଟିର ଉତ୍ପତ୍ତି, ଈଶ୍ୱର ବିଶ୍ୱାସ ମଧ୍ୟ ସେମାନଙ୍କର ନ ଥାଏ । ସେମାନେ କହନ୍ତି ଜାଗତିକ କାର୍ଯ୍ୟରେ କୌଣସି ଶୃଙ୍ଖଳା ନାହିଁ ଏବଂ ଧର୍ମ ଓ ଅଧର୍ମ ଏ ସବୁ କେବଳ ମାନବୀ କଳ୍ପନା, ଇତ୍ୟାଦି; ତେଣୁ ସେମାନେ ବିବିଧ କାମନାର ବଶବର୍ତ୍ତୀ ହୋଇ ଅନ୍ୟାୟ ପୂର୍ବକ କେବଳ ଅର୍ଥ ସଂଚୟରେ ଲାଗି ଥାଆନ୍ତି । ଧନ, ଜନ ଓ ଆଭିଜାତ୍ୟ ଗର୍ବରେ ଉତ୍‌ଫୁଲ୍ଲ ହୋଇ ସନ୍ମାର୍ଗଗାମୀ ସାଧୁଲୋକଙ୍କୁ ପୀଡ଼ା ଦିଅନ୍ତି ଏବଂ ନାମତଃ ଯଜ୍ଞାନୁଷ୍ଠାନ କରି ସ୍ୱଶରୀରସ୍ଥ ଆତ୍ମାଙ୍କୁ କଷ୍ଟ ଦିଅନ୍ତି ଏବଂ ଯନ୍ତ୍ରଣାମରେ ଜୀବହତ୍ୟା କରି ଜୀବଦେହରେ ଅନ୍ତର୍ଯାମିରୂପରେ ଅବସ୍ଥିତ ଆତ୍ମାଙ୍କୁ ମଧ୍ୟ କଷ୍ଟ ଦିଅନ୍ତି, ଏହିସବୁ ଆଚରଣରୁ ପରିଣାମରେ ସେମାନଙ୍କର ନରକ ଗତିହିଁ ହୋଇଥାଏ । ଏହି ନରାଧମମାନେ ସର୍ପ ବ୍ୟାଘ୍ରାଦି ନୀଚ ଯୋନିରେ ଜନ୍ମ ଗ୍ରହଣ କରି ଈଶ୍ୱରଙ୍କୁ ପାଇ ପାରନ୍ତି ନାହିଁ ।

ସେମାନେ ରଜଃ ଓ ତମୋଗୁଣର ପ୍ରାବଲ୍ୟରେ ଯେଉଁସବୁ କର୍ମ କରନ୍ତି କାମ, କ୍ରୋଧ ଓ ଲୋଭ ସେ ସବୁର ମୂଳ । ଏହି ତିନି ଶତ୍ରୁଙ୍କ କବଳରୁ ରକ୍ଷା ପାଇଲେ ଲୋକର ସ୍ୱଭାବ ସଂଶୋଧିତ ହୁଏ ଏବଂ ସେ ଶ୍ରେୟୋଲାଭରେ ଯତ୍ନ କରେ ।

ବେଦ, ପୁରାଣ, ଧର୍ମଶାସ୍ତ୍ର ପ୍ରଭୃତି ପାଠଦ୍ୱାରା କଅଣ ମନୁଷ୍ୟର କର୍ତ୍ତବ୍ୟ ଓ କଅଣ ଅକର୍ତ୍ତବ୍ୟ ଏହା ଜଣାଯାଏ, ଏହା ଜାଣିପାରି ଯଥା ନିର୍ଦ୍ଦିଷ୍ଟ କର୍ତ୍ତବ୍ୟରେ ଲାଗି ପଡ଼ିଲେ କାମ, କ୍ରୋଧ ଓ ଲୋଭ କ୍ରମେ ଅପସାରିତ ହୋଇ ଯାଆନ୍ତି ।

---

# ସପ୍ତଦଶୋଽଧ୍ୟାୟଃ

## ଶ୍ରଦ୍ଧାତ୍ରୟବିଭାଗଯୋଗଃ

### ଅର୍ଜୁନ ଉବାଚ

ଯେ ଶାସ୍ତ୍ର ବିଧି ମୁତ୍‌ସୃଜ୍ୟ ଯଜନ୍ତେ ଶ୍ରଦ୍ଧୟାନ୍ୱିତାଃ ।
ତେଷାଂ ନିଷ୍ଠା ତୁ କା କୃଷ୍ଣ ସତ୍ତ୍ୱମାହୋ ରଜସ୍ତମଃ । ୧ ।

୧ । ଅନ୍ୱୟ ଦୀପିକା—ଅର୍ଜୁନଃ ଉବାଚ ( ଅର୍ଜୁନ କହିଲେ ) [ ହେ ] କୃଷ୍ଣ, ଯେ ( ଯେଉଁମାନେ ) ଶାସ୍ତ୍ରବିଧିମ୍ ( ଶାସ୍ତ୍ର ବିଧିକୁ ) ଉତ୍ସୃଜ୍ୟ ( ତ୍ୟାଗକରି ) ଶ୍ରଦ୍ଧୟା ଅନ୍ୱିତାଃ ( ଶ୍ରଦ୍ଧାଯୁକ୍ତ ହୋଇ ) ଯଜନ୍ତେ ( ପୂଜାଦି କରନ୍ତି ), ତେଷାଂ ନିଷ୍ଠା କା ( ସେମାନଙ୍କର ନିଷ୍ଠା କିପରି ? ) ସତ୍ତ୍ୱଂ ( ସାତ୍ତ୍ୱିକୀ ) ରଜଃ ( ରାଜସୀ ? ); ଅହୋ ( ଅଥବା ) ତମଃ ( ତାମସୀ ? );

• ଅନୁବାଦ—ଅର୍ଜୁନ ପଚାରିଲେ, ହେ କୃଷ୍ଣ, ଯେଉଁମାନେ ଶାସ୍ତ୍ରବିଧି ତ୍ୟାଗକରି ଶ୍ରଦ୍ଧା ପୂର୍ବକ ପୂଜାଦି କରନ୍ତି ସେମାନଙ୍କର ନିଷ୍ଠା କିପରି ? ସାତ୍ତ୍ୱିକୀ, ରାଜସୀ ଅଥବା ତାମସୀ ?

ସୁବୋଧିନୀ ଟୀକା—

ଉକ୍ତାଧିକାରହେତୂନାଂ ଶ୍ରଦ୍ଧା ମୁଖ୍ୟା ତୁ ସାତ୍ତ୍ୱିକୀ
ଇତି ସପ୍ତଦଶେ ଗୌଣଶ୍ରଦ୍ଧାଭେଦସ୍ତିଧୋଚ୍ୟତେ ।

ପୂର୍ବାଧ୍ୟାୟାନ୍ତେ ଯଃ ଶାସ୍ତ୍ରବିଧିମୁତ୍‌ସୃଜ୍ୟ ବର୍ତ୍ତିତେ କାମକାରତଃ, ନ ସ ସିଦ୍ଧିମବାପ୍ନୋତୀତ୍ୟନେନ ଶାସ୍ତ୍ରୋକ୍ତ ବିଧିମୁତ୍‌ସୃଜ୍ୟ କାମକାରେଣ ବର୍ତ୍ତମାନସ୍ୟ ଜ୍ଞାନେଽଧିକାରେନାସ୍ତୀତ୍ୟୁକ୍ତମ୍, ତତ୍ର ଶାସ୍ତ୍ରବିଧିମୁତ୍‌ସୃଜ୍ୟ କାମକାରଂ ବିନା ଶ୍ରଦ୍ଧୟା ବର୍ତ୍ତମାନାନାଂ କିମଧିକାରୋଽସ୍ତି ନାସ୍ତି ବେତି ବୁଭୁତ୍ସୟା ଅର୍ଜୁନ ଉବାଚ । ଯ ଇତି । ଅନ୍ୟ ଚ ଶାସ୍ତ୍ରବିଧିମୁତ୍‌ସୃଜ୍ୟ ଯଜନ୍ତ ଇତ୍ୟନେନ ଶାସ୍ତ୍ରାର୍ଥଂ ବୁଦ୍ଧ୍ୱା ତମୁଲ୍ଲଂଘ୍ୟ ବର୍ତ୍ତମାନା ନ ଗୃହ୍ୟନ୍ତେ । ତେଷାଂ ଶ୍ରଦ୍ଧୟା ଯଜନାନୁପପତ୍ତେଃ । ଅସ୍ତିକ୍ୟବୁଦ୍ଧିର୍ହି ଶ୍ରଦ୍ଧା । ନ ଚାସୌ 'ଶାସ୍ତ୍ରବରୁଦ୍ଧେଽର୍ଥେ ଶାସ୍ତ୍ରଜ୍ଞାନବତାଂ ସମ୍ଭବତି । ତାନେବାଧିକୃତ୍ୟ ତ୍ରିବିଧା ଭବତି ଶ୍ରଦ୍ଧେତି । ଯଜନ୍ତେ ସାତ୍ତ୍ୱିକା ଦେବାନିତ୍ୟାଦ୍ୟୁତ୍ତରଂ ଚୋପପଦ୍ୟେତ । ଅତ୍ର ନାତ୍ର ଶାସ୍ତ୍ରୋଲ୍ଲଂଘିନୋ ଗୃହ୍ୟନ୍ତେ ଅପିତୁ କ୍ଳେଶବୁଦ୍ଧ୍ୟାଲସ୍ୟାଦ ବା ଶାସ୍ତ୍ରାର୍ଥଜ୍ଞାନେ ପ୍ରଯତ୍ନମକୃତ୍ୱା କେବଳମାଚାର

ଶ୍ରୀ ଭଗବାନୁବାଚ

ତ୍ରିବିଧା ଭବତି ଶ୍ରଦ୍ଧା ଦେହିନାଂ ସା ସ୍ୱଭାବଜା ।
ସାତ୍ତ୍ୱିକୀ ରାଜସୀ ଚୈବ ତାମସୀ ଚେତି ତାଂ ଶୃଣୁ ॥ ୨ ॥

ପରଂପରାବଶେନ ଶ୍ରଦ୍ଧୟା କ୍ୱଚଦେବତାପ୍ରଧାନାଦୌ ପ୍ରବର୍ତ୍ତମାନା ଦୃଶ୍ୟନ୍ତେ । ଅତୋଽୟମର୍ଥଃ । ‐ ଯେ ଶାସ୍ତ୍ରବିଧିମୁତ୍ସୃଜ୍ୟ ଦୁଃଖବୁଦ୍ଧ୍ୟାଲସ୍ୟାଦ୍ୱା ଅନାଦୃତ୍ୟ କେବଳମାଗ୍ରହପ୍ରାମାଣ୍ୟେନ ଶ୍ରଦ୍ଧୟାନ୍ୱିତାଃ ସନ୍ତୋ ଯଜନ୍ତେ ତେଷାଂ ତୁ କାନିଷ୍ଠା ? କା ସ୍ଥିତିଃ ? କ ଆଶ୍ରୟଃ ? ତାମେବ ବିଶେଷେଣ ପୃଚ୍ଛତି । କିମ୍ ସତ୍ତ୍ୱମ୍ ? ଅହୋ କିଂ ବା ରଜଃ ? ଅଥବା ତମ ଇତି ? ତେଷାଂ ତାଦୃଶୀ ଦେବପୂଜାଦିପ୍ରବୃତ୍ତିଃ କିଂ ସତ୍ତ୍ୱସଂଶ୍ରିତା ? ରଜଃସଂଶ୍ରିତା ବା ? ତମଃ ସଂଶ୍ରିତା ବେତ୍ୟର୍ଥଃ । ଶ୍ରଦ୍ଧାୟାଃ ସାତ୍ତ୍ୱିକତ୍ୱାତ୍ କ୍ଲେଶବୁଦ୍ଧ୍ୟାଲସ୍ୟେନ ଚ ଶାସ୍ତ୍ରାନାଦରସ୍ୟ ରାଜସତାମସତ୍ୱାଦ୍ୱୈଧା ସନ୍ଦେହଃ । ଯଦି ସତ୍ତ୍ୱସଂଶ୍ରିତା ତର୍ହିତେଷାମପି ସାତ୍ତ୍ୱିକତ୍ୱାଦ୍ ଯଥୋକ୍ତାଧିଷ୍ଠାନେଽଧିକାରଃସ୍ୟାତ୍ ? ଅନ୍ୟଥାନେତି ପ୍ରଶ୍ନତାତ୍ ପର୍ଯ୍ୟାର୍ଥଃ ।

ବକ୍ତବ୍ୟ—ପୂର୍ବ ଅଧ୍ୟାୟ ଶେଷରେ ଭଗବାନ୍ କହିଲେ, ଯେ ଶାସ୍ତ୍ରବିଧି ତ୍ୟାଗ କରି ନିଜ ଇଚ୍ଛାନୁସାରେ ଚଳନ୍ତି, ସେମାନେ ସିଦ୍ଧିଲାଭ କରି ପାରନ୍ତି ନାହିଁ । କିନ୍ତୁ ସଂସାରରେ ଏପରି ଲୋକ ଅନେକ ଅଛନ୍ତି ଯେଉଁମାନେ ଶାସ୍ତ୍ର ବିଧାନକୁ ଅନାଦର କରନ୍ତି ନାହିଁ ଅଥଚ ଶାସ୍ତ୍ରଜ୍ଞାନ ଅଭାବରୁ ଅଥବା ଆଳସ୍ୟ ହେତୁରୁ ଶାସ୍ତ୍ରବିଧି ପାଳନ କରନ୍ତି ନାହିଁ କିନ୍ତୁ ଶ୍ରଦ୍ଧା ବା ଆସ୍ତିକ୍ୟ ବୁଦ୍ଧି-ଦ୍ୱାରା ଚାଳିତ ହୋଇ ନିଜ ଇଚ୍ଛାନୁସାରେ କାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି, ଶାସ୍ତ୍ର ଉପେକ୍ଷା କରିବାରୁ ସେମାନଙ୍କର ଅସୁର ଭାବ ଓ ଶ୍ରଦ୍ଧା ବା ଆସ୍ତିକ୍ୟ ବୁଦ୍ଧି ଥିବାରୁ ଦେବଭାବ ଥାଏ । ଏପରି ମନୁଷ୍ୟମାନେ କେଉଁ ସମ୍ପ୍ରଦାୟଭୁକ୍ତ ? ଏହି ସଂଶୟ ଦୂର କରିବା ପାଇଁ ଅର୍ଜ୍ଜୁନ ପଚାରିଲେ, ଯେଉଁମାନେ ଶାସ୍ତ୍ରପ୍ରତି ଶ୍ରଦ୍ଧା ନ କରି ପିତୃ ପିତାମହାଦିଙ୍କ ଆଚରିତ ଅଥବା ସ୍ୱେଚ୍ଛାନୁମୋଦିତ କାର୍ଯ୍ୟର ଶ୍ରଦ୍ଧାପୂର୍ବକ ଅନୁଷ୍ଠାନ କରନ୍ତି, ସେମାନଙ୍କ ନିଷ୍ଠା ସାତ୍ତ୍ୱିକ, ରାଜସିକ ନା ତାମସିକ ? ଯେଉଁମାନେ ଶାସ୍ତ୍ରପ୍ରତି ଅବଜ୍ଞା କରି ସ୍ୱେଚ୍ଛାଚାରୀ ହୁଅନ୍ତି, ସେମାନଙ୍କ କଥା ଓ ଅସୁରଭାବାପନ୍ନ ଲୋକମାନଙ୍କ କଥା ଏଠାରେ ପୁଚ୍ଛାଯାଉ ନାହିଁ ।

୨ । ଅନ୍ୱୟ ଦୀପିକା—ଶ୍ରୀ ଭଗବାନ୍ ଉବାଚ ( ଶ୍ରୀଭଗବାନ୍ କହିଲେ ) । ଦେହିନାଂ ( ଦେହାଭିମାନୀ ବ୍ୟକ୍ତିମାନଙ୍କର ) ସାତ୍ତ୍ୱିକୀ ( ସତ୍ତ୍ୱଗୁଣ ପ୍ରଧାନା ) ରାଜସୀ ( ରଜୋଗୁଣପ୍ରଧାନା ) ତାମସୀ ଚ ( ଓ ତମୋଗୁଣ ପ୍ରଧାନା ), ଇତି ( ଏହିପରି ) ତ୍ରିବିଧା ଏବ ( ତିନି ପ୍ରକାର ଶ୍ରଦ୍ଧା ) ଭବତି ( ହୁଏ ) । ସା ସ୍ୱଭାବଜା ( ତାହା ସ୍ୱାଭାବିକ ଅର୍ଥାତ୍ ତାହା ପୂର୍ବ ଜନ୍ମ ସଂସ୍କାରରୁ ଜାତ ), ତାଂ ଶୃଣୁ ( ତାହା ଶୁଣ ) ।

ସତ୍ତ୍ୱାନୁରୂପା ସର୍ବସ୍ୟ ଶ୍ରଦ୍ଧା ଭବତି ଭାରତ,
ଶ୍ରଦ୍ଧାମୟୋଽୟଂ ପୁରୁଷୋ ଯୋ ଯଚ୍ଛ୍ରଦ୍ଧଃ ସ ଏବ ସଃ । ୩ ।

ଅନୁବାଦ—ଶ୍ରୀଭଗବାନ୍ କହିଲେ, ଦେହାଭିମାନୀମାନଙ୍କର ସାତ୍ତ୍ୱିକୀ, ରାଜସୀ ଓ ତାମସୀ—ଏହି ତିନି ପ୍ରକାର ଶ୍ରଦ୍ଧା ହୁଏ. ସେ ସବୁ ସ୍ୱଭାବଜ ଅର୍ଥାତ୍ ପୂର୍ବଜନ୍ମ ସଂସ୍କାରରୁ ଜାତ, ସେ ସବୁ ବିସ୍ତାରିତ ଭାବରେ କହୁଅଛି, ଶୁଣ ।

ସୁବୋଧିନୀ ଟୀକା—ଅତ୍ରୋତ୍ତରଂ ଶ୍ରୀଭଗବାନୁବାଚ । ତ୍ରିବିଧେତି ଅୟମର୍ଥଃ—ଶାସ୍ତ୍ରତତ୍ତ୍ୱଜ୍ଞାନତଃ ପ୍ରବର୍ତ୍ତିମାନାନାଂ ପରମେଶ୍ୱରପୂଜାବିଷୟା ସାତ୍ତ୍ୱିକ୍ୟେକବିଧୈବ ଭବତିଶ୍ରଦ୍ଧା । ଲୋକାଚାରମାତ୍ରେଣ ତୁ ପ୍ରବର୍ତ୍ତିମାନାନାଂ ଦେହିନାଂ ଯା ଶ୍ରଦ୍ଧା ସା ତୁ ସାତ୍ତ୍ୱିକୀ, ରାଜସୀ, ତାମସୀ ଚେତି ତ୍ରିବିଧା ଭବତି । ତତ୍ର ହେତୁଃ ସ୍ୱଭାବଜା । ସ୍ୱଭାବଃ ପୂର୍ବକର୍ମସଂସ୍କାରଃ । ତସ୍ମାଜ୍ଜାତାସ୍ୱଭାବ-ମନ୍ୟଥାକର୍ତ୍ତୁଂ ସମର୍ଥଂ ହି ଶାସ୍ତ୍ରୋତ୍ଥଂ ବିବେକଜ୍ଞାନଂ । ତତ୍ତୁ ତେଷାଂନାସ୍ତି । ଅତଃ କେବଲଂ ପୂର୍ବସ୍ୱଭାବେନ ଭବନ୍ତୀ ଶ୍ରଦ୍ଧା ତ୍ରିବିଧା ଭବତି । ତା ଇମାଂ ତ୍ରିବିଧାଂ ଶ୍ରଦ୍ଧାଂ ଶୃଣ୍ୱିତି । ତଦୁକ୍ତଂ ବ୍ୟବସାୟାତ୍ମିକା ବୁଦ୍ଧିରେକେହ କୁରୁନନ୍ଦନେତ୍ୟାଦିନା ।

ବିବୃତ—ଶାସ୍ତ୍ରର ତତ୍ତ୍ୱ ଜାଣି ଯେଉଁମାନେ ଦେବତାରାଧନାଦିଦ୍ୱାରା ପୂଜା କରନ୍ତି ସେମାନଙ୍କର ତାହା ସାତ୍ତ୍ୱିକୀ ଶ୍ରଦ୍ଧା । ଲୋକାଚାରବଶତଃ ଯେଉଁମାନେ ପୂଜା କରନ୍ତି ସେମାନଙ୍କର ଶ୍ରଦ୍ଧା ସାତ୍ତ୍ୱିକ, ରାଜସିକ, ତାମସିକ ଭେଦରେ ତିନି ପ୍ରକାର ହୋଇଥାଏ । ଏ ଶ୍ରଦ୍ଧା ସ୍ୱଭାବଜା ଅର୍ଥାତ୍ ପୂର୍ବଜନ୍ମ କର୍ମସଂସ୍କାରରୁ ଜାତ ହୋଇଥାଏ । ଶାସ୍ତ୍ରୋକ୍ତ ବିବେକଜ୍ଞାନଦ୍ୱାରା ସ୍ୱଭାବର ପରିବର୍ତ୍ତନ ହୋଇଥାଏ ମାତ୍ର ସେମାନଙ୍କର ଶାସ୍ତ୍ର ଜ୍ଞାନ ନ ଥାଏ । ତେଣୁ କେବଳ ପୂର୍ବସ୍ୱଭାବବଶତଃ ଯେଉଁ ଶ୍ରଦ୍ଧା ହୁଏ, ତାହା ତିନି ପ୍ରକାର ହୋଇଥାଏ ।

୩ । ଅନ୍ୱୟ ଦୀପିକା—[ହେ] ଭାରତ ! ସର୍ବସ୍ୟ ଶ୍ରଦ୍ଧା ( ସମସ୍ତଙ୍କର ଶ୍ରଦ୍ଧା ) ସତ୍ତ୍ୱାନୁରୂପା ( ଅନ୍ତଃକରଣ ବୃତ୍ତିର ପ୍ରକୃତି ଅନୁରୂପ ) ଭବତି ( ହୋଇଥାଏ ), ଅୟଂ ପୁରୁଷଃ ( ଏହି ଜୀବ ବା ମନୁଷ୍ୟ ) ଶ୍ରଦ୍ଧାମୟଃ ( ଶ୍ରଦ୍ଧାମୟ ), ଯଃ ( ଯେ ) ଯଚ୍ଛ୍ରଦ୍ଧଃ ( ଯେଉଁପରି ଶ୍ରଦ୍ଧାଯୁକ୍ତ ) ସଃ ଏବ ସଃ ( ସେ ସେହିପରି ହୋଇଥାଏ ) ।

ଅନୁବାଦ—ହେ ଭାରତ, ସମସ୍ତଙ୍କର ଶ୍ରଦ୍ଧା ନିଜ ନିଜ ସ୍ୱଭାବ ବା ଅନ୍ତଃକରଣ ବୃତ୍ତି ଅନୁରୂପ ହୋଇଥାଏ । ମନୁଷ୍ୟ ଶ୍ରଦ୍ଧାମୟ, ଯେ ଯେପରି ଶ୍ରଦ୍ଧାଯୁକ୍ତ ସେ ସେହିପରି ହୋଇଥାଏ ।

ଯଜନ୍ତେ ସାତ୍ତ୍ୱିକା ଦେବାନ୍ ଯକ୍ଷରକ୍ଷାଂସି ରାଜସାଃ,
ପ୍ରେତାନ୍ ଭୂତଗଣାଂ ଶ୍ଚାନ୍ୟେ ଯଜନ୍ତେ ତାମସା ଜନାଃ ।୪।

ସୁବୋଧିନୀ ଟୀକା—ନନୁ ଚ ଶ୍ରଦ୍ଧା ସାତ୍ତ୍ୱିକ୍ୟେବ ସତ୍ତ୍ୱକାର୍ଯ୍ୟତ୍ୱେନ ଶ୍ରୁତ୍ୟୈବ ଶ୍ରୀଭଗବତା ଭକ୍ତିପ୍ରକରଣନିର୍ଦ୍ଦିଷ୍ଟତ୍ୱାତ୍, ଯଥୋକ୍ତଂ—ଶମୋ ଦମସ୍ତିତିକ୍ଷେକ୍ଷା ତପଃ ସତ୍ୟଂ ଦୟା ସ୍ମୃତିଃ, ତୁଷ୍ଟିସ୍ତ୍ୟାଗୋଽସ୍ପୃହା ଶ୍ରଦ୍ଧା ହ୍ରୀର୍ଦୟାଦିଃ ସ୍ୱନିର୍ବୃତିଃ, ଇତ୍ୟେତାଃ ସତ୍ତ୍ୱସ୍ୟ ବୃତ୍ତୟ ଇତି, ଅତଃ କଥଂ ତସ୍ୟା ସ୍ତ୍ରୈବିଧ୍ୟମୁଚ୍ୟତେ ? ସତ୍ୟମ୍, ତଥାପି ରଜସ୍ତମୋଯୁକ୍ତପୁରୁଷାଶ୍ରୟତ୍ୱେନ ରଜସ୍ତମୋମିଶ୍ରିତତ୍ୱେନ ସତ୍ତ୍ୱସ୍ୟ ତ୍ରୈବିଧ୍ୟାତ୍ ଶ୍ରଦ୍ଧାୟା ଅପି ତ୍ରୈବିଧ୍ୟଂ ଘଟତ ଇତ୍ୟାହ, ସତ୍ତ୍ୱାନୁରୂପେତି, ସତ୍ତ୍ୱାନୁରୂପା ସତ୍ତ୍ୱତାରତମ୍ୟାନୁସାରିଣୀ ସର୍ବସ୍ୟ ବିବେକିନୋଽବିବେକିନୋ ବା ଲୋକସ୍ୟ ଶ୍ରଦ୍ଧା ଭବତି, ତସ୍ମାଦୟଂ ପୁରୁଷୋ-ଲୌକିକଃ ଶ୍ରଦ୍ଧାମୟଃ, ଶ୍ରଦ୍ଧାବିକାରସ୍ତ୍ରୈବିଧ୍ୟା ଶ୍ରଦ୍ଧୟା ବିନିର୍ମିତ ଇତ୍ୟର୍ଥଃ, ତଦେବାହ ଯୋଯଚ୍ଛ୍ରଦ୍ଧଃ—ଯାଦୃଶୀ ଶ୍ରଦ୍ଧା ଯସ୍ୟ—ସ ଏବ ସଃ, ତାଦୃଶ-ଶ୍ରଦ୍ଧାଯୁକ୍ତ ଏବ ସଃ, ଯଃ ପୂର୍ବଂ ସତ୍ତ୍ୱୋତ୍କର୍ଷେଣ ସାତ୍ତ୍ୱିକଶ୍ରଦ୍ଧୟାଯୁକ୍ତଃ ପୁରୁଷଃ ସ ପୁନସ୍ତାଦୃଶଃ ସ୍ୱସଂସ୍କାରେଣ ସାତ୍ତ୍ୱିକଶ୍ରଦ୍ଧୟାଯୁକ୍ତ ଏବ ଭବତି, ଯସ୍ତୁ ରଜସ ଉତ୍କର୍ଷେଣ ରାଜସଶ୍ରଦ୍ଧୟାଯୁକ୍ତଃ ସ ପୁନସ୍ତାଦୃଶ ଏବ ଭବତି, ଯସ୍ତୁତମସ ଉତ୍କର୍ଷେଣ ତାମସଶ୍ରଦ୍ଧୟାଯୁକ୍ତଃ ସ ପୁନସ୍ତାଦୃଶ ଏବ ଭବତୀତି, ଲୋକାସ୍ତୁର-ମାନେନ ପ୍ରବୃତ୍ତିମାନେନୈବଂ ସାତ୍ତ୍ୱିକରାଜସତାମସଶ୍ରଦ୍ଧାବ୍ୟବସ୍ଥା, ଶାସ୍ତ୍ରଜନିତ-ବିବେକଜ୍ଞାନଯୁକ୍ତାନାଂ ତୁ ସ୍ୱଭାବବିଜୟେନ ସାତ୍ତ୍ୱିକୀ—ଏକୈବ ଶ୍ରଦ୍ଧେତି ପ୍ରକରଣାର୍ଥଃ ।

ବିବୃତି—'ସତ୍ତ୍ୱ' ଶବ୍ଦର ଅର୍ଥ ପ୍ରକୃତି ବା ସ୍ୱଭାବ, ଏହି ପ୍ରକୃତିରୁହିଁ ବୁଦ୍ଧି ଓ ଅନ୍ତଃକରଣ ଉତ୍ପନ୍ନ ହୁଏ । ଯାହାର ଯେପରି ବୁଦ୍ଧି, ସେ ସେହିପରି ଫଳ ଲାଭକରେ । ବୁଦ୍ଧି ପ୍ରକୃତି ବା ସ୍ୱଭାବର ଅଧୀନ, ଅଭ୍ୟାସ ଓ ବୈରାଗ୍ୟ ଦ୍ୱାରା ଦେହର ଏହି ସ୍ୱଭାବ କ୍ରମେ ବଦଳା ଯାଇପାରେ । ପ୍ରକୃତି ଯେତେବେଳେ ସତ୍ତ୍ୱ, ରଜଃ ଓ ତମଃ—ଏହି ତିନଗୁଣଯୁକ୍ତ ସେତେବେଳେ ପ୍ରତ୍ୟେକ ମନୁଷ୍ୟଠାରେ ଶ୍ରଦ୍ଧା ମଧ୍ୟ ସେହିପରି ତିନପ୍ରକାର ହୁଏ ।

୪ । ଅନ୍ୱୟ ଦୀପିକା—ସାତ୍ତ୍ୱିକାଃ ( ସାତ୍ତ୍ୱିକ ପ୍ରକୃତିର ଲୋକମାନେ ) ଦେବାନ୍ ( ଦେବତାମାନଙ୍କୁ ) ଯଜନ୍ତେ ( ପୂଜା କରନ୍ତି ), ରାଜସାଃ ( ରାଜସିକ ପ୍ରକୃତି ବିଶିଷ୍ଟ ଲୋକମାନେ ) ଯକ୍ଷରକ୍ଷାଂସି ( ଯକ୍ଷ ଓ ରାକ୍ଷସମାନଙ୍କୁ ), ଅନ୍ୟେ ତାମସାଃ ଚ ( ଏବଂ ଅନ୍ୟ ତାମସିକ ପ୍ରକୃତିର ଲୋକମାନେ) ପ୍ରେତାନ୍ ଭୂତଗଣାନ୍ ଚ ( ପ୍ରେତ ଓ ଭୂତମାନଙ୍କୁ ) ଯଜନ୍ତେ ( ପୂଜା କରନ୍ତି ) ।

ଅଶାସ୍ତ୍ରବିହିତଂ ଘୋରଂ ତପ୍ୟନ୍ତେ ଯେ ତପୋ ଜନାଃ ।
ଦମ୍ଭାହଂକାରସଂଯୁକ୍ତାଃ କାମରାଗବଲାନ୍ୱିତାଃ । ୫ ।
କର୍ଶୟନ୍ତଃ ଶରୀରସ୍ଥଂ ଭୂତଗ୍ରାମମଚେତସଃ ।
ମାଂ ଚୈବାନ୍ତଃଶରୀରସ୍ଥଂ ତାନ୍ ବିଦ୍ଧ୍ୟାସୁରନିଶ୍ଚୟାନ୍ । ୬ ।

ଅନୁବାଦ—ସାତ୍ତ୍ୱିକ ପ୍ରକୃତିର ଲୋକମାନେ ଦେବତାଙ୍କ ପୂଜା କରନ୍ତି, ରାଜସିକମାନେ ଯକ୍ଷ ରକ୍ଷସମାନଙ୍କୁ ଏବଂ ତାମସିକମାନେ ଭୂତପ୍ରେତଙ୍କୁ ପୂଜା କରନ୍ତି ।

ସୁବୋଧିନୀ ଟୀକା— ସାତ୍ତ୍ୱିକାଦିଭେଦମେବ କାର୍ଯ୍ୟଭେଦେନ ପ୍ରପଞ୍ଚୟତି, ଯଜନ୍ତ ଇତି, ସାତ୍ତ୍ୱିକାଜନାଃ ସତ୍ତ୍ୱପ୍ରକୃତୟଃ ଦେବାନେବ ଯଜନ୍ତେ ପୂଜୟନ୍ତି । ରାଜସାସ୍ତୁ ରଜଃପ୍ରକୃତୟଃ ଯକ୍ଷାନ୍ ରକ୍ଷାଂସି ଯଜନ୍ତେ; ଏତେଭ୍ୟୋଽନ୍ୟେ ବିଲକ୍ଷଣା ତାମସା ଜନା ତାମସାନେବ ପ୍ରେତାନ୍ ଭୂତଗଣାଂଶ୍ଚ ଯଜନ୍ତେ, ସତ୍ତ୍ୱାଦିପ୍ରକୃତିନାଂ ତତ୍ତଦେବାଶ୍ରିନାଂ ପୂଜାଭୂରଭି ଦ୍ରଷ୍ଟବ୍ୟ ପୂଜକାନାଂ ସାତ୍ତ୍ୱିକାଦିତ୍ୱଂ ଜ୍ଞାତବ୍ୟ ମିତ୍ୟର୍ଥଃ ।

ବକ୍ତବ୍ୟ—ଯେଉଁମାନଙ୍କର ଶାସ୍ତ୍ରଜ୍ଞାନ ନାହିଁ ଅଥଚ ଫଳପ୍ରାପ୍ତି ଆଶାରେ ଶ୍ରଦ୍ଧା ସହକାରେ ଦେବତାମାନଙ୍କର ଉପାସନା କରନ୍ତି ସେମାନେ ମିଶ୍ରସାତ୍ତ୍ୱିକ; ଶୁଦ୍ଧ ସାତ୍ତ୍ୱିକଙ୍କଠାରୁ ଏମାନେ ଭିନ୍ନ, ତେଣୁ ସେମାନେ ସ୍ୱର୍ଗ ଲାଭ କରନ୍ତି ମାତ୍ର ମୋକ୍ଷ ପାଆନ୍ତି ନାହିଁ । ଶୁଦ୍ଧ ସାତ୍ତ୍ୱିକ ଲୋକମାନେହିଁ ନିଷ୍କାମଭାବରେ ଈଶ୍ୱରୋପାସନା କରି ମୋକ୍ଷର ଅଧିକାରୀ ହୋଇ ଥାଆନ୍ତି । ଦାନ, ଯଜ୍ଞ, ତପସ୍ୟା ପ୍ରଭୃତି ସମସ୍ତ ସତ୍‌କର୍ମର ଜୀବନହିଁ ଶ୍ରଦ୍ଧା, ଏହି ଶ୍ରଦ୍ଧାରୁ ଅନୁରାଗ ଓ ପ୍ରେମର ଉଦୟ ହୁଏ ।

ଶ୍ରଦ୍ଧା ମନର ଧର୍ମ, ସୁବୁଦ୍ଧିଦ୍ୱାରା ଗୃହୀତ ହେଲେ ମନ ସାତ୍ତ୍ୱିକତା ପ୍ରାପ୍ତ ହୁଏ ଏବଂ କାର୍ଯ୍ୟତଃ ଶ୍ରଦ୍ଧାମଧ୍ୟ ସାତ୍ତ୍ୱିକ ହୋଇପାରେ ।

୫—୬ । ଅନ୍ୱୟ ଦୀପିକା—ଦମ୍ଭାହଂକାରସଂଯୁକ୍ତାଃ (ଦମ୍ଭ ଓ ଅହଂକାର ଯୁକ୍ତ) କାମରାଗବଲାନ୍ୱିତାଃ (କାମ, ଆସକ୍ତି ଓ ବଳ ବିଶିଷ୍ଟ) ଯେ ଅଚେତସଃ ଜନାଃ (ଯେଉଁ ଅବିବେକୀ ଲୋକମାନେ) ଶରୀରସ୍ଥଂ ଭୂତଗ୍ରାମଂ (ଶରୀରରେ ଥିବା ପଞ୍ଚଭୂତଙ୍କୁ), ଅନ୍ତଃଶରୀରସ୍ଥଂ ମାଂ ଚ ଏବ (ଶରୀର ମଧ୍ୟରେ ଆତ୍ମା ରୂପରେ ଅବସ୍ଥିତ ଥିବା ଆମ୍ଭକୁ ମଧ୍ୟ) କର୍ଶୟନ୍ତଃ (କ୍ଲିଷ୍ଟକରି) ଅଶାସ୍ତ୍ର ବିହିତଂ (ଶାସ୍ତ୍ର ବିରୁଦ୍ଧ) ଘୋରଂ ତପଃ ତପ୍ୟନ୍ତେ (ଘୋର ତପସ୍ୟା କରନ୍ତି) ତାନ୍ (ସେମାନଙ୍କୁ) ଆସୁରନିଶ୍ଚୟାନ୍ (ଆସୁରବୁଦ୍ଧିବିଶିଷ୍ଟ ବୋଲି) ବିଦ୍ଧି (ଜାଣ) ।

**ଅହାରସ୍ତ୍ୱପି ସର୍ବସ୍ୟ ତ୍ରିବିଧୋ ଭବତି ପ୍ରିୟଃ ।**
**ଯଜ୍ଞସ୍ତପସ୍ତଥା ଦାନଂ ତେଷାଂ ଭେଦମିମଂ ଶୃଣୁ ।୭।**

ଅନୁବାଦ—ଦମ୍ଭ, ଅହଂକାର, କାମନା ଓ ଆସକ୍ତିଯୁକ୍ତ ଏବଂ ବଳଗର୍ବିତ ହୋଇ ଯେଉଁ ଅବିବେକୀ ଲୋକମାନେ ଶରୀରସ୍ଥ ପଞ୍ଚଭୂତଙ୍କୁ ଏବଂ ଦେହ ମଧ୍ୟରେ ଅନ୍ତର୍ଯାମିରୂପରେ ( ଆତ୍ମାରୂପେ ) ବିଦ୍ୟମାନ ଥିବା ଆମ୍ଭକୁ କୃଶ କରି ଅର୍ଥାତ୍ କଷ୍ଟଦେଇ ଶାସ୍ତ୍ର ବିରୁଦ୍ଧ ଘୋର ତପସ୍ୟା କରନ୍ତି ସେମାନଙ୍କୁ ଅସୁରବୁଦ୍ଧିବିଶିଷ୍ଟ ଲୋକବୋଲି ଜାଣିବ ।

ସୁବୋଧିନୀ ଟୀକା—ରାଜସତାମସେଷ୍ୱପି ପୁନର୍ବିଶେଷାନ୍ତର-ମାହ । ଅଶାସ୍ତ୍ର ବିହିତମିତି ଦ୍ୱାଭ୍ୟାମ୍, ଶାସ୍ତ୍ରବିଧିମଜାନନ୍ତୋଽପି କେଚିତ୍ ପ୍ରାଚୀନପୁଣ୍ୟସଂସ୍କାରବିଶେଷେଣୋତ୍ତମାଃ ସାତ୍ତ୍ୱିକା ଏବ ଭବନ୍ତି । କେଚିନ୍ମଧ୍ୟମା ରାଜସା ଭବନ୍ତି, ଅଧମାସ୍ତୁ ତାମସା ଭବନ୍ତି, ଯେ ପୁନରତ୍ୟନ୍ତଂ ମନ୍ଦଭାଗ୍ୟାସ୍ତେ ଗତାନୁଗତ୍ୟା ପାଷଣ୍ଡସଙ୍ଗେନ ଚ ତଦାଗ୍ରହାନୁବର୍ତ୍ତିନଃ ସନ୍ତୋଽଶାସ୍ତ୍ରବିହିତଂ ଘୋରବୃତଭୟଙ୍କରଂ ତପସ୍ତପ୍ୟନ୍ତେ କୁର୍ବନ୍ତି, ତତ୍ର ହେତବଃ ଦମ୍ଭାହଂକାରାଭ୍ୟାଂ ସଂଯୁକ୍ତାଃ, ତଥା କାମୋଽଭିଲାଷଃ, ରାଗ ଆସକ୍ତିଃ,ବଲମାଗ୍ରହଃ, ଏତୈରନ୍ୱିତାଃ-ସନ୍ତଃ; ତାନାସୁରନିଶ୍ଚୟାନ୍ ବିଦ୍ଧୀତ୍ୟୁତ୍ତରେଣାନ୍ୱୟଃ ।

କିଞ୍ଚ—କର୍ଶୟନ୍ତ ଇତି, ଶରୀରସ୍ଥଂ ପ୍ରାରମ୍ଭକତ୍ୱେନ ଦେହେ ସ୍ଥିତଂ ଭୂତାନାଂ ପୃଥିବ୍ୟାଦୀନାଂ ଗ୍ରାମଂ ସମୂହଂ କର୍ଶୟନ୍ତଃ ବୃଥୈବୋପବାସାଦିଭିଃ କୃଶଂ କୁର୍ବନ୍ତୋଽଚେତସୋଽବିବେକିନଃ, ମାଂ ଚାନ୍ତର୍ଯାମିତୟା ଅନ୍ତଃ ଶରୀରସ୍ଥଂ ଦେହମଧ୍ୟେ ସ୍ଥିତଂ ମଦାଜ୍ଞାଲଙ୍ଘନେନୈବ କର୍ଶୟନ୍ତଃ ଏବଂ ଯେ ତପସ୍ତରନ୍ତି ତାନାସୁରନିଶ୍ଚୟାନ୍, ଆସୁରୋଽତିକ୍ରୂରୋ ନିଶ୍ଚୟୋ ଯେଷାଂ ତାନ୍—ବି

ବିବୃତ—ଶାସ୍ତ୍ରରେ ଅଶ୍ରଦ୍ଧାବାନ୍, କାମ ପରାୟଣ ଓ ଦାମ୍ଭିକ ଲୋକମାନେ କେଉଁ ଶ୍ରେଣୀର ଅନ୍ତର୍ଗତ ? ଶାସ୍ତ୍ରବିଧି ଜାଣି ନ ଥିବାରୁ ଓ କାମନା-ଶୂନ୍ୟ ହୋଇ ନ ଥିବାରୁ ଏମାନେ ଯେ ସାତ୍ତ୍ୱିକ ନୁହନ୍ତି—ଏହା ସ୍ପଷ୍ଟ । କର୍ମ କରିବା ପ୍ରବୃତ୍ତି ଥିବାରୁ ଏମାନେ ଖାଣ୍ଟି ତାମସିକ ମଧ୍ୟ ନୁହନ୍ତି । କର୍ମକରିବା ରଜୋଗୁଣର ଧର୍ମ, ତେବେ ଏମାନେ ପ୍ରଧାନ ତିନିଶ୍ରେଣୀ ମଧ୍ୟରେ ଯାଇ-ନାହାନ୍ତି । ତେଣୁ ସେମାନଙ୍କୁ ଦୈବ ଓ ଅସୁର ଏହି ଦୁଇଶ୍ରେଣୀ ମଧ୍ୟରୁ ଅସୁର ଶ୍ରେଣୀର ଅନ୍ତର୍ଗତ କରାଯାଏ ।

୭ । ଅନ୍ୱୟ ଦୀପିକା—ସର୍ବସ୍ୟ ( ସମସ୍ତଙ୍କର ) ଆହାରଃ ତୁ ଅପି ( ଆହାର ମଧ୍ୟ ) ତ୍ରିବିଧଃ ପ୍ରିୟଃ ଭବତି ( ତିନ ପ୍ରକାର ପ୍ରିୟ ହୁଏ ) । ତଥା ( ଏବଂ ) ଯଜ୍ଞଃ, ତପଃ, ଦାନଂ ଚ ( ଯଜ୍ଞ, ତପସ୍ୟା ଓ ଦାନ ମଧ୍ୟ ) [ ତିନ ପ୍ରକାର ହୁଏ ] ତେଷାଂ ( ସେମାନଙ୍କର ) ଇମଂ ଭେଦଂ ଶୃଣୁ ( ଏହି ପ୍ରଭେଦ ଶୁଣ ) ।

ଆୟୁଃସତ୍ତ୍ୱବଳାରୋଗ୍ୟସୁଖପ୍ରୀତିବିବର୍ଦ୍ଧନାଃ ।
ରସ୍ୟାଃ ସ୍ନିଗ୍ଧାଃ ସ୍ଥିରା ହୃଦ୍ୟା ଆହାରାଃ ସାତ୍ତ୍ୱିକପ୍ରିୟାଃ । ୮ ।

**ଅନୁବାଦ**— ସମସ୍ତଙ୍କ ଖାଦ୍ୟ ମଧ୍ୟ ପ୍ରକୃତି ଅନୁସାରେ ତିନପ୍ରକାର ହୁଏ ଏବଂ ଯଜ୍ଞ, ତପସ୍ୟା, ଦାନ ମଧ୍ୟ ତିନ ପ୍ରକାର ହୁଏ । ଏମାନଙ୍କ ମଧ୍ୟରେ ଯେଉଁ ଭଳି ପ୍ରଭେଦ ଅଛି—ତାହା ଏବେ ଶୁଣ ।

**ସୁବୋଧିନୀ ଟୀକା**—ଆହାରାଦିଭେଦାଦପି ସାତ୍ତ୍ୱିକାଦିଭେଦଂ ଦର୍ଶୟିତୁମାହ । ଆହାରସ୍ତ୍ୱିତ୍ୟାଦି ତ୍ରୟୋଦଶଭିଃ । ସର୍ବସ୍ୟାପି ଜନସ୍ୟ ଯ ଆହାରୋଽନ୍ନାଦିଃ ସ ତୁ ଯଥାଯଥଂ ତ୍ରିବିଧଃ ପ୍ରିୟୋ ଭବତି । ତଥା ଯଜ୍ଞ-ତପୋଦାନାନି ଚ ତ୍ରିବିଧାନି ଭବନ୍ତି । ତେଷାଂ ବକ୍ଷ୍ୟମାଣଂ ଭେଦମିମଂ ଶୃଣୁ, ଏତଚ୍ଚ ରାଜସତାମସାହାରଯଜ୍ଞାଦିପରିତ୍ୟାଗେନ ସାତ୍ତ୍ୱିକାହାରଯଜ୍ଞାଦିସେବୟା ସତ୍ତ୍ୱବୃଦ୍ଧୌ ଯତ୍ନଃ କର୍ତ୍ତବ୍ୟ ଇତ୍ୟେତଦର୍ଥଂ କଥ୍ୟତେ ।

୮ । **ଅନ୍ୱୟଦୀପିକା**—ଆୟୁଃସତ୍ତ୍ୱବଳାରୋଗ୍ୟସୁଖପ୍ରୀତିବିବର୍ଦ୍ଧନାଃ ( ପରମାୟୁ, ଉତ୍ସାହ, ବଳ, ଆରୋଗ୍ୟ, ସୁଖ, ପ୍ରୀତି—ଏ ସମସ୍ତର ବୃଦ୍ଧିକାରୀ ), ରସ୍ୟାଃ ( ସରସ ) ସ୍ନିଗ୍ଧାଃ ( ଘୃତାଦି ସ୍ନେହ ଯୁକ୍ତ ) ସ୍ଥିରାଃ ( ସାରବାନ୍ ), ହୃଦ୍ୟାଃ ( ହୃଦୟାନନ୍ଦ କର ) ଆହାରାଃ ( ଖାଦ୍ୟଦ୍ରବ୍ୟ ସବୁ ) ସାତ୍ତ୍ୱିକ ପ୍ରିୟାଃ ( ସାତ୍ତ୍ୱିକ ବ୍ୟକ୍ତିମାନଙ୍କର ପ୍ରିୟ ଅଟେ ) ।

**ଅନୁବାଦ**—ଯେଉଁ ବସ୍ତୁ ପରମାୟୁ ବର୍ଦ୍ଧକ, ଉତ୍ସାହ ବର୍ଦ୍ଧକ, ବଳକର, ଆରୋଗ୍ୟପ୍ରଦ, ସୁଖ ଜନକ ଓ ରୁଚିକର ଏବଂ ସରସ, ସ୍ନେହଯୁକ୍ତ, ସାରବାନ୍ ଏବଂ ପ୍ରୀତିକର—ଏହିଭଳି ଖାଦ୍ୟ ସାତ୍ତ୍ୱିକ ଲୋକଙ୍କର ପ୍ରିୟ ଅଟେ ।

**ସୁବୋଧିନୀ ଟୀକା**—ତମାହାରତ୍ରୈବିଧ୍ୟମାହ—ଆୟୁରିତି ତ୍ରିଭିଃ । ଆୟୁର୍ଜୀବିତଂ, ସତ୍ତ୍ୱମୁତ୍ସାହଃ । ବଳଂ ଶକ୍ତିଃ, ଆରୋଗ୍ୟଂ ରୋଗରାହିତ୍ୟମ୍ । ସୁଖଂ ଚିତ୍ତପ୍ରସାଦଃ, ପ୍ରୀତିରଭିରୁଚିଃ । ଆୟୁରାଦୀନାଂ ବିବର୍ଦ୍ଧନାଃ ବିଶେଷେଣ ବୃଦ୍ଧିକରାଃ । ତେ ଚ ରସ୍ୟା ରସବନ୍ତଃ, ସ୍ନିଗ୍ଧାଃ ସ୍ନେହଯୁକ୍ତାଃ । ସ୍ଥିରା ଦେହେ ସାରାଂଶେନ ଚିରକାଳାବସ୍ଥାୟିନଃ, ହୃଦ୍ୟା ଦୃଷ୍ଟିମାତ୍ରାଦେବ ହୃଦୟଙ୍ଗମାଃ । ଏବମ୍ଭୂତା ଆହାରା ଭକ୍ଷ୍ୟଭୋଜ୍ୟାଦୟଃ ସାତ୍ତ୍ୱିକପ୍ରିୟାଃ ।

ବକ୍ତବ୍ୟ—ଯାହା ଖାଇଲେ ପରମାୟୁ ବଢ଼େ, ଉତ୍ସାହ ବଢ଼େ, ବଳ ବଢ଼େ, ଶରୀର ନୀରୋଗ ହୁଏ, ଚିତ୍ତ ପ୍ରସନ୍ନ ହୁଏ ଏବଂ ରୁଚି ଅଧିକ ହୁଏ, ଯାହା ସ୍ୱାଦୁ, ଚିକ୍କଣ ପଦାର୍ଥ ଯୁକ୍ତ, ସାରବାନ୍ ଓ ଆନନ୍ଦ ବଢ଼ାଏ—ସେ ସବୁ ସାତ୍ତ୍ୱିକ ବ୍ୟକ୍ତିଙ୍କର ଖାଦ୍ୟ, ଅର୍ଥାତ୍ ଏପରି ଖାଦ୍ୟ ଯେ ଖାଆନ୍ତି ସେମାନେ ସତ୍ତ୍ୱ ଗୁଣଯୁକ୍ତ ବୋଲି ବୁଝିବାକୁ ହେବ ।

କଟ୍ୱମ୍ଳଲବଣାତ୍ୟୁଷ୍ଣ ତୀକ୍ଷ୍ଣ ରୂକ୍ଷବିଦାହିନଃ ।
ଆହାରା ରାଜସସ୍ୟେଷ୍ଟା ଦୁଃଖଶୋକାମୟପ୍ରଦାଃ । ୯ ।
ଯାତଯାମଂ ଗତରସଂ ପୂତି ପର୍ଯ୍ୟୁଷିତଂ ଚ ଯତ୍
ଉଚ୍ଛିଷ୍ଟମପି ଚାମେଧ୍ୟଂ ଭୋଜନଂ ତାମସପ୍ରିୟମ୍ । ୧୦ ।

୯ । ଅନ୍ୱୟ ଦୀପିକା—କଟ୍ୱମ୍ଳଲବଣାତ୍ୟୁଷ୍ଣତୀକ୍ଷ୍ଣରୂକ୍ଷବିଦାହିନଃ- ( ଅତି କଟୁ, ଅତି ଅମ୍ଳ, ଲବଣାକ୍ତ, ଅତି ଉଷ୍ଣ, ଅତି ତିକ୍ତ ଓ ପ୍ରଦାହ- କାରୀ ) ଦୁଃଖଶୋକାମୟପ୍ରଦାଃ ( ଦୁଃଖ, ଶୋକ ଓ ରୋଗଜନକ ) ଆହାରାଃ ( ଆହାର ସବୁ ) ରାଜସସ୍ୟ ଇଷ୍ଟାଃ ( ରାଜସିକ ଲୋକମାନଙ୍କର ପ୍ରିୟ ।

ଅନୁବାଦ—ଅତି ରାଗ, ଅତି ଅମ୍ବିଳା, ଅତି ଲୁଣିଆ, ଅତି ଗରମ, ଅତି ପିତା, ଅତି ରୁକ୍ଷ ଅର୍ଥାତ୍ ରସହୀନ ଏବଂ ଦୁଃଖ, ଶୋକ ଓ ରୋଗ ଜନକ— ଏସବୁ ଖାଦ୍ୟ ରାଜସ ବ୍ୟକ୍ତିମାନଙ୍କର ପ୍ରିୟ ଅଟେ ।

ସୁବୋଧିନୀ ଟୀକା—ତଥା କଟ୍ୱିତି—ଅତିଶବ୍ଦଃ କଟ୍ୱାଦିଷୁ ସପ୍ତସ୍ୱପି ସମ୍ବଧ୍ୟତେ । ତେନାତିକଟୁର୍ନିମ୍ବାଦି, ଅତ୍ୟମ୍ଳୋଽତି- ଲବଣୋଽତ୍ୟୁଷ୍ଣଶ୍ଚ ପ୍ରସିଦ୍ଧଃ । ଅତିତୀକ୍ଷ୍ଣୋ ମରୀଚ୍ୟାଦିଃ । ଅତିରୂକ୍ଷଃ କଙ୍ଗୁ- କୋଦ୍ରବାଦି, ଅତି ବିଦାହୀ ସର୍ଷପାଦିଃ । ଅତିକଟ୍ୱାଦୟ ଆହାରା ରାଜସସ୍ୟେଷ୍ଟାଃ ପ୍ରିୟାଃ । ଦୁଃଖଂ ତାତ୍କାଳିକହୃଦୟସନ୍ତାପାଦି, ଶୋକଃ ପଶ୍ଚାଦ୍‌ଭାବି ଦୌର୍ମନସ୍ୟମ୍ । ଆମୟୋ ରୋଗଃ, ଏତାନ୍ ପ୍ରଦଦତି ପ୍ରଯଚ୍ଛନ୍ତୀତି ତଥା ।

ବକ୍ତବ୍ୟ—'ଅତି' ଶବ୍ଦ ମୂଳ ଶ୍ଳୋକରେ ଥରେ ମାତ୍ର ବ୍ୟବହୃତ ହୋଇଅଛି ମାତ୍ର ଏହା କଟୁ ପ୍ରଭୃତି ସାତଟିର ପୂର୍ବରେ ପ୍ରଯୁକ୍ତ ହେବ । ଶ୍ରୀଧର ସ୍ୱାମୀ କଟୁ ଶବ୍ଦକୁ ତିକ୍ତ ବା ପିତା ଅର୍ଥରେ ଓ ତୀକ୍ଷ୍ଣ ଶବ୍ଦକୁ ରାଗ ଅର୍ଥରେ ଗ୍ରହଣ କରିଅଛନ୍ତି ମାତ୍ର ତିଳକ କହନ୍ତି ବାଗ୍‌ଭଟ୍ଟ ଅନୁସାରେ କଟୁ ଅର୍ଥ ରାଗ ଓ ତୀକ୍ଷ୍ଣ ଅର୍ଥ ପିତା, ଲଙ୍କାମରିଚ ପ୍ରଭୃତି ଅତି ରାଗ, ଅତି ଲୁଣିଆ, ଅତି ଗରମ, ଅତି ପିତା ନିମ୍ବାଦି, ଅତି ରୁକ୍ଷ କୋଦୁଅ ପ୍ରଭୃତି, ଅତି ବିଦାହୀ ସୋରିଷ ପ୍ରଭୃତି ଖାଦ୍ୟ ରାଜସିକ ଲୋକଙ୍କର ପ୍ରିୟ; ଏ ସବୁ ଦୁଃଖ, ଶୋକ ଓ ରୋଗପ୍ରଦ ।

୧୦ । ଅନ୍ୱୟ ଦୀପିକା—ଯାତଯାମଂ ( ଅନେକ ସମୟ ପୂର୍ବେ ରନ୍ଧା ହୋଇଥିବା ) ଗତରସଂ ( ରସଶୂନ୍ୟ ) ପୂତି ( ଦୁର୍ଗନ୍ଧ ) ପର୍ଯ୍ୟୁଷିତଂ ( ବାସି ), ଉଚ୍ଛିଷ୍ଟଂ (ଅଇଁଠା) ଅପି ଚ ଅମେଧ୍ୟଂ (ଅତ୍ୟନ୍ତ ମଧ ଅପବିତ୍ର ବସ୍ତୁ) ତାମସପ୍ରିୟଂ ( ଏ ସବୁ ତାମସ ବ୍ୟକ୍ତିଙ୍କର ପ୍ରିୟ ) ।

ଅନୁବାଦ—ଅନେକ ସମୟ ଆଗରୁ ଯାହା ରନ୍ଧା ହୋଇ ଥଣ୍ଡା ହୋଇ ଯାଇଥାଏ, ଯେଉଁ ସବୁ ଖାଦ୍ୟରୁ ରସ ଶୁଖି ଯାଇଥାଏ, ଦୁର୍ଗନ୍ଧ ଓ ବାସି ଜିନିଷ ତାମସିକ ଲୋକଙ୍କର ପ୍ରିୟ ଖାଦ୍ୟ ।

ଅଫଳାକାଙ୍କ୍ଷିଭିର୍ଯଜ୍ଞୋ ବିଧିଦୃଷ୍ଟୋ ଯ ଇଜ୍ୟତେ ।
ଯଷ୍ଟବ୍ୟମେବେତି ମନଃ ସମାଧାୟ ସ ସାତ୍ତ୍ୱିକଃ ॥ ୧୧ ॥

ସୁବୋଧିନୀ ଟୀକା—ତଥା ଯାତଯାମମିତି, ଯାତୋ ଯାମଃ ପ୍ରହରୋ ଯସ୍ୟ ପକ୍ୱସ୍ୟୌଦନାଦେସ୍ତଦ୍ୟାତଯାମମ୍ । ଶୈତ୍ୟାବସ୍ଥାଂ ପ୍ରାପ୍ତମିତ୍ୟର୍ଥଃ । ଗତରସଂ ନିଷ୍ପୀଡ଼ିତସାରମ୍ । ପୂତି ଦୁର୍ଗନ୍ଧମ୍, ପର୍ଯ୍ୟୁଷିତଂ ଦିନାନ୍ତରପକ୍ୱମ୍, ଉଚ୍ଛିଷ୍ଟମ୍ ଅନ୍ୟଭୁକ୍ତାବଶିଷ୍ଟମ୍, ଅମେଧ୍ୟମ୍ ଅଭକ୍ଷ୍ୟଂ କଳଞ୍ଜାଦି, ଏବମ୍ଭୂତଂ ଭୋଜନଂ ଭୋଜ୍ୟଂ ତାମସସ୍ୟ ପ୍ରିୟମ୍ ।

ବିବୃତି—ଯେଉଁ ଖାଦ୍ୟ ରନ୍ଧା ହେବା ପରେ ଏକ ପ୍ରହର ଅତୀତ ହୋଇ ଯାଇଥାଏ ସେ ସବୁକୁ ଯାତଯାମଖାଦ୍ୟ କୁହାଯାଏ, ଯହିଁରୁ ରସ ଶୁଖିଯାଇଥାଏ ବା ବାହାର କରି ନିଆଯାଇଥାଏ ତାହାକୁ ଗତରସ ଖାଦ୍ୟ କୁହାଯାଏ, ଏ ସବୁ ଏବଂ ଦୁର୍ଗନ୍ଧଯୁକ୍ତ ବସ୍ତୁ ଓ ବାସି ଜିନିଷ ତାମସିକ ଲୋକଙ୍କର ଖାଦ୍ୟ । ପର୍ଯ୍ୟୁଷିତ, ଶୁଖୁଆ ଓ ବାସି ପଖାଳ—ଖାଇବାକୁ ଯେଉଁମାନେ ସୁଖ ପାଆନ୍ତି, ସେମାନେ ତାମସିକ ପ୍ରକୃତିବିଶିଷ୍ଟ ବୋଲି ବୁଝିବାକୁ ହେବ ।

ଧର୍ମମୟ ଜୀବନ ଯାପନ କରିବାକୁ ହେଲେ ଆହାର ବିଷୟରେ ସଯତ୍ନ ହେବାକୁ ହେବ, କାରଣ ଖାଦ୍ୟ ପଦାର୍ଥ ଜୀର୍ଣ୍ଣ ହୋଇ ଶରୀରକୁ ରକ୍ଷା କରେ ଓ ତଦ୍ୱାରା ମନ ଓ ବୁଦ୍ଧିର ପୁଷ୍ଟି ହୁଏ । ଛାନ୍ଦୋଗ୍ୟ ଉପନିଷଦରେ କୁହାଯାଇ ଅଛି ଯେ "ଆହାରଶୁଦ୍ଧୌ ସତ୍ତ୍ୱଶୁଦ୍ଧିଃ" (ଛା ୭।୨୬।୨) । ମନ ଓ ବୁଦ୍ଧି ପ୍ରକୃତିର ବିକାର, ତେଣୁ ଯେ ସାତ୍ତ୍ୱିକ ଖାଦ୍ୟ ଖାଆନ୍ତି ତାଙ୍କର ମନ ଓ ବୁଦ୍ଧି ସାତ୍ତ୍ୱିକ ହୋଇଯାଏ ।

ରାମାନୁଜାଚାର୍ଯ୍ୟଙ୍କ ମତରେ ଖାଦ୍ୟ ସମ୍ବନ୍ଧରେ ତିନିଗୋଟି ଦୋଷ ପ୍ରତି ଦୃଷ୍ଟି ରଖିବାକୁ ହେବ, ୧—ଜାତିଦୋଷ—ମଦ୍ୟ, ମାଂସ, ରସୁଣ, ପିଆଜ ପ୍ରଭୃତି ଉତ୍ତେଜକ, ତେଣୁ ଏ ଜାତୀୟ ଖାଦ୍ୟ ତ୍ୟାଗ କରିବାକୁ ହେବ, ୨—ଆଶ୍ରୟଦୋଷ—ଅଶୁଚି, ଅତି କୃପଣ, କୁତ୍ସିତରୋଗଗ୍ରସ୍ତ ଅପବିତ୍ର ଖାଦ୍ୟ ବିକ୍ରେତା, ପାଚକ ଓ ଦାତା ପ୍ରଭୃତି ଏହି ଶ୍ରେଣୀୟ । ଏମାନଙ୍କ ଠାରୁ ଖାଦ୍ୟ ଗ୍ରହଣ କରିବ ନାହିଁ । ୩—ନିମିତ୍ତ ଦୋଷ—ଅର୍ଥାତ୍ ଧୂଳି, ମାଛି ପ୍ରଭୃତି ଅପବିତ୍ର ବସ୍ତୁ ସ୍ପର୍ଶରେ ଦୁଷ୍ଟ ଖାଦ୍ୟ ଗ୍ରହଣୀୟ ନୁହେ ।

ଏ ଶ୍ଳୋକରେ ଉଚ୍ଛିଷ୍ଟକୁ ତାମସିକ ଆହାର କୁହାଗଲା । ମନୁ ମଧ୍ୟ କହି ଅଛନ୍ତି "ନୋଚ୍ଛିଷ୍ଟଂ କସ୍ୟଚିଦ୍ଦଦ୍ୟାତ୍" କାହାରିକୁ ଉଚ୍ଛିଷ୍ଟ ଦେବ ନାହିଁ ।

୧୧ । ଅନ୍ୱୟ ଦୀପିକା— ଅଫଳାକାଙ୍କ୍ଷିଭିଃ (ଫଳାକାଙ୍କ୍ଷା ନ ଥିବା ବ୍ୟକ୍ତିମାନଙ୍କ ଦ୍ୱାରା) ଯଷ୍ଟବ୍ୟମ୍ ଏବ (ଯଜ୍ଞହିଁ କରିବ୍ୟ) ଇତି (ଏହି ଜ୍ଞାନରେ) ମନଃ ସମାଧାୟ (ମନକୁ ସମାହିତ କରି),

ଅଭିସନ୍ଧାୟ ତୁ ଫଳଂ ଦମ୍ଭାର୍ଥମପି ଚୈବ ଯତ୍
ଇଜ୍ୟତେ ଭରତଶ୍ରେଷ୍ଠ ତଂ ଯଜ୍ଞଂ ବିଦ୍ଧି ରାଜସମ୍ । ୧୨ ।
ବିଧିହୀନମସୃଷ୍ଟାନ୍ନଂ ମନ୍ତ୍ରହୀନମଦକ୍ଷିଣମ୍ ।
ଶ୍ରଦ୍ଧାବିରହିତଂ ଯଜ୍ଞଂ ତାମସଂ ପରିଚକ୍ଷତେ । ୧୩ ।

ବିଧିଦୃଷ୍ଟଃ ( ଶାସ୍ତ୍ର ବିହିତ ) ଯଃ ଯଜ୍ଞଃ ଇଜ୍ୟତେ ( ଯେଉଁ ଯଜ୍ଞ ଅନୁଷ୍ଠିତ ହୁଏ ) ସଃ ( ତାହା ) ସାତ୍ତ୍ୱିକଃ ( ସାତ୍ତ୍ୱିକଯଜ୍ଞ ) ।

ଅନୁବାଦ—ଫଳାକାଙ୍କ୍ଷା ତ୍ୟାଗ ପୂର୍ବକ 'ଯଜ୍ଞ କରିବା କର୍ତ୍ତବ୍ୟ' ଏହି ଜ୍ଞାନରେ ମନକୁ ସମାହିତ କରି ଶାସ୍ତ୍ରୋକ୍ତ ବିଧାନ ଅନୁସାରେ ଯେଉଁ ଯଜ୍ଞ କରାଯାଏ ତାହାକୁ ସାତ୍ତ୍ୱିକ ଯଜ୍ଞ କୁହାଯାଏ ।

ସୁବୋଧିନୀ ଟୀକା—ଯଜ୍ଞୋଽପି ତ୍ରିବିଧଃ । ତତ୍ର ସାତ୍ତ୍ୱିକଂ ଯଜ୍ଞମାହ- ଅଫଳାକାଙ୍କ୍ଷିଭିରିତି, ଫଳାକାଙ୍କ୍ଷାରହିତୈଃ ପୁରୁଷୈର୍ବିଧିନାଦୃଷ୍ଟ ଅବଶ୍ୟକତୟା ବିହିତୋ ଯୋ ଯଜ୍ଞ ଇଜ୍ୟତେଽନୁଷ୍ଠୀୟତେ, ସ ସାତ୍ତ୍ୱିକୋ ଯଜ୍ଞଃ । କଥମିଜ୍ୟତେ ? ଯଷ୍ଟବ୍ୟ ମେବେତି । ଯଜ୍ଞାନୁଷ୍ଠାନମେବ କାର୍ଯ୍ୟଂ । ନାନ୍ୟତ୍ ଫଳଂ ସାଧନୀୟମିତ୍ୟେବଂ ମନଃ ସମାଧାୟୈକାଗ୍ରଂ କୃତ୍ୱେତ୍ୟର୍ଥଃ ।

୧୨ । ଅନ୍ୱୟ ଦୀପିକା—ଫଳମ୍ ଅଭିସନ୍ଧାୟ ତୁ ( କିନ୍ତୁ ଫଳ କାମନା ରଖି ) ଅପି ଚ ଦମ୍ଭାର୍ଥମ୍ ଏବ ( ଏବଂ ନିଜ ମହତ୍ତ୍ୱ ପ୍ରକାଶ ପାଇଁ ) ଯତ୍ ଇଜ୍ୟତେ ( ଯେଉଁ ଯଜ୍ଞ ଅନୁଷ୍ଠିତ ହୁଏ ), [ ହେ ] ଭରତ ଶ୍ରେଷ୍ଠ, ତଂ ଯଜ୍ଞଂ ରାଜସଂ ବିଦ୍ଧି ( ସେହି ଯଜ୍ଞକୁ ରାଜସ ବୋଲି ମନେ କରିବ ) ।

ଅନୁବାଦ—ଫଳ ପାଇବା ଇଚ୍ଛାରେ ଏବଂ ନିଜ ଧାର୍ମିକତା ଓ ମହତ୍ତ୍ୱ ଦେଖାଇବା ପାଇଁ ଯେଉଁ ଯଜ୍ଞ ଅନୁଷ୍ଠିତ ହୁଏ, ହେ ଭରତ ଶ୍ରେଷ୍ଠ, ସେ ଯଜ୍ଞ ରାଜସିକ ବୋଲି ଜାଣ ।

ସୁବୋଧିନୀ ଟୀକା—ରାଜସଂ ଯଜ୍ଞମାହ—ଅଭିସନ୍ଧାୟେତି । ଫଳ- ମଭିସନ୍ଧାୟୋଦ୍ଦିଶ୍ୟ ତୁ ଯଦିଜ୍ୟତେ ଯଜ୍ଞଃ କ୍ରିୟତେ । ଦମ୍ଭାର୍ଥଂ ଚ ସ୍ୱମହତ୍ତ୍ୱ- ଖ୍ୟାପନାର୍ଥଂ ଚ । ତଂ ଯଜ୍ଞଂ ରାଜସଂ ବିଦ୍ଧି ।

୧୩ । ଅନ୍ୱୟ ଦୀପିକା—ବିଧିହୀନଂ ( ଶାସ୍ତ୍ରୀୟ ବିଧିଶୂନ୍ୟ ) ଅସୃଷ୍ଟାନ୍ନଂ ( ଅନ୍ନଦାନ ବିହୀନ ) ମନ୍ତ୍ରହୀନମ୍ ( ମନ୍ତ୍ର ବର୍ଜିତ ), ଅଦକ୍ଷିଣଂ ( ଦକ୍ଷିଣା ଶୂନ୍ୟ ) ଶ୍ରଦ୍ଧା ବିରହିତଂ ( ଶ୍ରଦ୍ଧା ବିହୀନ ) ଯଜ୍ଞଂ ( ଯଜ୍ଞକୁ ) ତାମସଃ ପରିଚକ୍ଷତେ ( ତାମସ ବୋଲି କୁହାଯାଏ ) ।

ଅନୁବାଦ—ଯେଉଁ ଯଜ୍ଞ ଶାସ୍ତ୍ରବିଧି ବର୍ଜିତ, ଯହିଁରେ ଅନ୍ନଦାନ ହୁଏ ନାହିଁ କିମ୍ବା ଶାସ୍ତ୍ରୋକ୍ତ ମନ୍ତ୍ର ନାହିଁ ଏବଂ ଦକ୍ଷିଣା ଦିଆଯାଏ ନାହିଁ ଏବଂ ଯାହା ଶ୍ରଦ୍ଧା ସହକାରେ ଅନୁଷ୍ଠିତ ହୁଏ ନାହିଁ, ତାହାକୁ ତାମସ ଯଜ୍ଞ କୁହାଯାଏ ।

ଦେବଦ୍ୱିଜଗୁରୁପ୍ରାଜ୍ଞପୂଜନଂ ଶୌଚମାର୍ଜ୍ଜବମ୍ ।
ବ୍ରହ୍ମଚର୍ଯ୍ୟମହିଂସା ଚ ଶାରୀରଂ ତପ ଉଚ୍ୟତେ । ୧୪ ।
ଅନୁଦ୍‌ବେଗକରଂ ବାକ୍ୟଂ ସତ୍ୟଂ ପ୍ରିୟହିତଂ ଚ ଯତ୍ ।
ସ୍ୱାଧ୍ୟାୟାଭ୍ୟସନଂ ଚୈବ ବାଙ୍‌ମୟଂ ତପ ଉଚ୍ୟତେ ।୧୫।

ସୁବୋଧିନୀ ଟୀକା—ତାମସଂ ଯଜ୍ଞମାହ-ବିଧିହୀନମିତି, ବିଧିହୀନଂ ଶାସ୍ତ୍ରୋକ୍ତବିଧିଶୂନ୍ୟମ୍, ଅସୃଷ୍ଟାନ୍ନଂ ବ୍ରାହ୍ମଣାଦିଭ୍ୟୋ ନ ସୃଷ୍ଟଂ ନ ଦତ୍ତମନ୍ନଂ ଯସ୍ମିଂସ୍ତଂ । ମନ୍ତ୍ରହୀନମ୍, ଯଥୋକ୍ତଦକ୍ଷିଣାରହିତଂ । ଶ୍ରଦ୍ଧାଶୂନ୍ୟଂ ଚ ଯଜ୍ଞଂ ତାମସଂ ପରିଚକ୍ଷତେ କଥୟନ୍ତି ଶିଷ୍ଟାଃ ।

୧୪ । ଅନ୍ୱୟଦୀପିକା—ଦେବଦ୍ୱିଜଗୁରୁପ୍ରାଜ୍ଞପୂଜନଂ ( ଦେବତା, ବ୍ରାହ୍ମଣ, ଗୁରୁ ଓ ବିଦ୍ୱାନ ବ୍ୟକ୍ତିଙ୍କର ପୂଜା ), ଶୌଚମ୍ ( ଶୌଚ ) ଆର୍ଜ୍ଜବଂ ( ସରଳତା ) ବ୍ରହ୍ମଚର୍ଯ୍ୟଂ ( ବ୍ରହ୍ମଚର୍ଯ୍ୟ ) ଅହିଂସା ଚ ( ଏବଂ ଅହିଂସା ) ଶାରୀରଂ ତପଃ ଉଚ୍ୟତେ ( ଶାରୀରିକ ତପସ୍ୟା ବୋଲି କୁହାଯାଏ ) ।

ଅନୁବାଦ—ଦେବ, ଦ୍ୱିଜ, ଗୁରୁ ଓ ବିଦ୍ୱାନ ମାନଙ୍କର ପୂଜା ଶୌଚ, ସରଳତା, ବ୍ରହ୍ମଚର୍ଯ୍ୟ ଓ ଅହିଂସା—ଏ ସମସ୍ତକୁ ଶାରୀରିକ ତପସ୍ୟା କୁହାଯାଏ ।

ସୁବୋଧିନୀ ଟୀକା—ତପସଃ ସାତ୍ତ୍ୱିକାଦିଭେଦଂ ଦର୍ଶୟିତୁଂ ପ୍ରଥମଂ ତାବଚ୍ଛାରୀରାଦିଭେଦେନ ତସ୍ୟ ତ୍ରୈବିଧ୍ୟମାହ, ଦେବେତ୍ୟାଦିଭିସ୍ତ୍ରିଭିଃ, ତତ୍ର ଶାରୀରମାହ, ଦେବେତି, ପ୍ରାଜ୍ଞା ଗୁରୁବ୍ୟତିରିକ୍ତା ଅନ୍ୟେଽପି ତତ୍ତ୍ୱବିଦଃ । ଦେବବ୍ରାହ୍ମଣାଦିପୂଜନଂ ଶୌଚାଦିକଂ ଚ ଶାରୀରଂ ଶରୀରନିର୍ବର୍ତ୍ତ୍ୟଂ ତପ ଉଚ୍ୟତେ ।

ବିଶେଷତ—ବଣରେ ବସି ଶରୀରକୁ କଷ୍ଟ ଦେଇ ମନ୍ତ୍ର ଜପ କରିବା ବା ଯୋଗାଭ୍ୟାସ କରିବାକୁ ଗୀତାରେ ତପସ୍ୟା କୁହାଯାଇ ନାହିଁ; ଯଜ୍ଞାଦି କର୍ମ, ବେଦାଧ୍ୟୟନ, ବର୍ଣ୍ଣାଶ୍ରମ କର୍ତ୍ତବ୍ୟକୁ ଭଗବାନ୍ ତପସ୍ୟା ବୋଲି କହିଅଛନ୍ତି ।

୧୫ । ଅନ୍ୱୟ ଦୀପିକା—ଅନୁଦ୍‌ବେଗକରଂ ( ଯାହା ଦ୍ୱାରା ଅନ୍ୟ ମନରେ ଉଦ୍‌ବେଗ ବା କଷ୍ଟ ହୁଏ ନାହିଁ ) ସତ୍ୟଂ ( ସତ୍ୟ ) ପ୍ରିୟହିତଂ ଚ ( ପ୍ରିୟ ଓ ହିତଜନକ ) ଯତ୍ ବାକ୍ୟଂ ( ଯେଉଁ ବାକ୍ୟ ) ସ୍ୱାଧ୍ୟାୟାଭ୍ୟସନଂ ଚ ଏବ ( ଏବଂ ବେଦାଭ୍ୟାସ ) ବାଙ୍‌ମୟଂ ତପଃ ( ବାଚିକ ତପସ୍ୟା ବୋଲି ) ଉଚ୍ୟତେ ( କଥିତ ହୁଏ ) ।

ଅନୁବାଦ—ଯେଉଁ ବାକ୍ୟଦ୍ୱାରା ଅନ୍ୟ ମନରେ ଉଦ୍‌ବେଗ ବା କଷ୍ଟ ହୁଏ ନାହିଁ, ଯାହା ସତ୍ୟ, ପ୍ରିୟ ଏବଂ ହିତକର—ଏପରି ବାକ୍ୟ ଓ ବେଦାଭ୍ୟାସ—ଏହାକୁ ବାଚିକ ତପସ୍ୟା କୁହାଯାଏ ।

ସୁବୋଧିନୀ ଟୀକା—ବାଚିକଂ ତପ ଆହ, ଅନୁଦ୍‌ବେଗକରମିତି, ଉଦ୍‌ବେଗଂ ଭୟଂ ନ କରୋତୀତ୍ୟନୁଦ୍‌ବେଗକରଂ ବାକ୍ୟମ୍ । ସତ୍ୟଂ, ଶ୍ରୋତୁଃ

ମନଃପ୍ରସାଦଃ ସୌମ୍ୟତ୍ୱଂ ମୌନମାତ୍ମବିନିଗ୍ରହଃ ।
ଭାବସଂଶୁଦ୍ଧିରିତ୍ୟେତତ୍ତପୋ ମାନସମୁଚ୍ୟତେ । ୧୬ ।
ଶ୍ରଦ୍ଧୟା ପରୟା ତପ୍ତଂ ତପସ୍ତତ୍ ତ୍ରିବିଧଂ ନରୈଃ ।
ଅଫଳାକାଙ୍କ୍ଷିଭିର୍ଯୁକ୍ତୈଃ ସାତ୍ତ୍ୱିକଂ ପରିଚକ୍ଷତେ । ୧୭ ।

ପ୍ରିୟଂ । ହିତଂ ଚ ପରିଣାମେ ସୁଖକରମ୍, ସ୍ୱାଧ୍ୟାୟାଭ୍ୟସନଂ ବେଦାଭ୍ୟାସଶ୍ଚ ବାଙ୍ମୟଂ ବାଚ୍ୟ ନିର୍ବର୍ତ୍ତ୍ୟଂ ତପଃ ।

ବିବୃତ—ମନୁସଂହିତାରେ ( ୪-୧୩୮ ) ଅଛି :—

ସତ୍ୟଂ ବ୍ରୂୟାତ୍ ପ୍ରିୟଂ ବ୍ରୂୟାନ୍ନ ବ୍ରୂୟାତ୍ ସତ୍ୟମପ୍ରିୟମ୍
ପ୍ରିୟଂ ନ ନାନୃତଂ ବ୍ରୂୟାଦେଷ ଧର୍ମଃ ସନାତନଃ ।

ଏହା ସନାତନ ଧର୍ମ ଯେ, ସତ୍ୟ ଏବଂ ପ୍ରିୟ କଥାହିଁ କହିବ, ଅପ୍ରିୟ ସତ୍ୟ କଥା କହିବା ଉଚିତ ନୁହେଁ । ମିଥ୍ୟା ପ୍ରିୟକଥା ମଧ୍ୟ ତ୍ୟାଜ୍ୟ ।

ଏ ଶ୍ଲୋକରେ ଏହାହିଁ କୁହାଯାଇଅଛି, ଅପ୍ରିୟ ସତ୍ୟ ଅର୍ଥାତ୍ ଯାହା ସତ୍ୟ ହେଲେହେଁ ଅପ୍ରିୟ—ଏପରି କଥା କହିବ ନାହିଁ, କିନ୍ତୁ ଲୋକ ହିତ-ନିମିତ୍ତ କେବେ କେବେ ଅପ୍ରିୟ ସତ୍ୟ ମଧ୍ୟ କୁହାଯାଏ କିନ୍ତୁ ସେଥିପାଇଁ ସତ୍ସାହସ ଲୋଡ଼ା । ସେହି ହେତୁରୁ ମହାଭାରତରେ ବିଦୁର ଦୁର୍ଯୋଧନଙ୍କୁ କହି ଅଛନ୍ତି— "ଅପ୍ରିୟସ୍ୟ ଚ ପଥ୍ୟସ୍ୟ ଶ୍ରୋତାବକ୍ତା ସୁଦୁର୍ଲଭଃ" । ଅପ୍ରିୟ ସତ୍ୟ ଓ ହିତକଥା କହିବା ଓ ଶୁଣିବା ଲୋକ ଦୁର୍ଲଭ ।

୧୬ । ଅନ୍ୱୟ ଦୀପିକା— ମନଃପ୍ରସାଦଃ ( ଚିତ୍ତର ପ୍ରସନ୍ନତା ), ସୌମ୍ୟତ୍ୱଂ ( ଅକ୍ରୂରତା ) ମୌନଂ (ମୌନ ଭାବ) ଆତ୍ମବିନିଗ୍ରହଃ (ମନଃ ସଂଯମ) ଭାବସଂଶୁଦ୍ଧିଃ ( ଚିତ୍ତଶୁଦ୍ଧି ) ଇତି ଏତତ୍ ( ଏ ସମସ୍ତ ) ମାନସଂ ତପଃ ( ମାନସିକ ତପସ୍ୟା ) ଉଚ୍ୟତେ ( କୁହାଯାଏ ) ।

ଅନୁବାଦ—ମନର ପ୍ରସନ୍ନତା, ଅକ୍ରୂରତା, ବାକ୍ସଂଯମ, ମନଃସଂଯମ ଏବଂ ବ୍ୟବହାରରେ କପଟତାରହିତ୍ୟ ଏଗୁଡ଼ିକୁ ମାନସ ତପସ୍ୟା କୁହାଯାଏ ।

ସୁବୋଧିନୀଟୀକା—ମାନସଂ ତପ ଆହ—ମନସଃ ପ୍ରସାଦଇତି । ମନସଃ ପ୍ରସାଦଃ ସ୍ୱଚ୍ଛତା । ସୌମ୍ୟତ୍ୱମ୍ ଅକ୍ରୂରତା । ମୌନଂ ମୁନେର୍ଭାବଃ । ମନନମିତ୍ୟର୍ଥଃ । ଆତ୍ମନୋ ମନସୋ ବିନିଗ୍ରହଃ ବିଷୟେଭ୍ୟଃ ପ୍ରତ୍ୟାହାରଃ । ଭାବସଂଶୁଦ୍ଧିର୍ବ୍ୟବହାରେ ମାୟାରହିତ୍ୟମ୍ । ଇତ୍ୟେତନ୍ମାନସଂ ତପଃ ।

୧୭ । ଅନ୍ୱୟ ଦୀପିକା—ଅଫଳାକାଙ୍କ୍ଷିଭିଃ ( ଫଳାକାଙ୍କ୍ଷା-ରହିତ ) ଯୁକ୍ତୈଃ (ଏକାଗ୍ର ଚିତ୍ତ) ନରୈଃ ( ମନୁଷ୍ୟଙ୍କ ଦ୍ୱାରା ), ପରୟା ଶ୍ରଦ୍ଧୟା ତପ୍ତଂ (ପରମ ଶ୍ରଦ୍ଧାସହକାର ଅନୁଷ୍ଠିତ) ତତ୍ ତ୍ରିବିଧଂ ତପଃ (ଉକ୍ତ ତିନ ପ୍ରକାର ତପସ୍ୟାକୁ ) ସାତ୍ତ୍ୱିକଂ ପରିଚକ୍ଷତେ ( ସାତ୍ତ୍ୱିକ କୁହାଯାଏ ) ।

ସତ୍କାରମାନପୂଜାର୍ଥଂ ତପୋ ଦମ୍ଭେନ ଚୈବ ଯତ୍ ।
କ୍ରିୟତେ ତଦିହ ପ୍ରୋକ୍ତଂ ରାଜସଂ ଚଳ ମଧ୍ରୁବମ୍ । ୧୮ ।

ଅନୁବାଦ—ପୂର୍ବୋକ୍ତ ତିନି ପ୍ରକାର ତପସ୍ୟା ଯେବେ ଫଳାକାଙ୍କ୍ଷା ରହିତ, ଈଶ୍ୱରଙ୍କଠାରେ ଏକାଗ୍ରଚିତ୍ତ ହେବାଦ୍ୱାରା ଅନୁଷ୍ଠିତ ହୁଏ, ତେବେ ସେସବୁକୁ ସାତ୍ତ୍ୱିକ ତପସ୍ୟା ବୋଲାଯାଏ।

ସୁବୋଧିନୀ ଟୀକା—ତଦେବଂ ଶରୀରବାଙ୍ମନୋଭିର୍ନିର୍ବର୍ତ୍ତ୍ୟଂ ତ୍ରିବିଧଂ ତପୋ ଦର୍ଶିତଂ, ତସ୍ୟ ତ୍ରିବିଧସ୍ୟାପି ତପସଃ ସାତ୍ତ୍ୱିକାଦିଭେଦେନ ତ୍ରୈବିଧ୍ୟମାହ । ଶ୍ରଦ୍ଧୟେତ୍ୟାଦିତ୍ରିଭିଃ, ତତ୍ ତ୍ରିବିଧମପି ତପଃ ପରୟା ଶ୍ରଦ୍ଧୟା ଫଳାକାଙ୍କ୍ଷାଶୂନ୍ୟୈର୍ୟୁକ୍ତୈ ରେକାଗ୍ରଚିତ୍ତୈର୍ନରୈସ୍ତପ୍ତଂ ସାତ୍ତ୍ୱିକଂ କଥୟନ୍ତି ।

ବିବୃତି—ପୂର୍ବ ତିନି ଶ୍ଳୋକରେ ଶାରୀରିକ, ବାଚିକ ଓ ମାନସିକ ଭେଦରେ ତ୍ରିବିଧ ତପସ୍ୟାଭେଦ ବର୍ଣ୍ଣିତ ହୋଇଅଛି, ସେହି ତ୍ରିବିଧ ତପସ୍ୟା ସାତ୍ତ୍ୱିକାଦି ଭେଦରେ ତିନି ପ୍ରକାର, ଏହା ପର ତିନି ଶ୍ଳୋକରେ କୁହାଯିବ ।

୧୮ । ଅନ୍ୱୟ ଦୀପିକା—ସତ୍କାର ମାନପୂଜାର୍ଥଂ ( ସତ୍କାର, ମାନ, ପୂଜାଲାଭ ପାଇଁ ) ଦମ୍ଭେନଚ ଏବ ( ଏବଂ ଦମ୍ଭପୂର୍ବକ ) ଯତ୍ ତପଃ କ୍ରିୟତେ ( ଯେଉଁ ତପସ୍ୟା ଅନୁଷ୍ଠିତ ହୁଏ ) ଇହ ( ଏହି ସଂସାରରେ ) ଚଳଂ ( ଚଞ୍ଚଳ ) ଅଧ୍ରୁବଂ ( ଅନିଶ୍ଚିତ ) ତତ୍ ( ସେହି ) ତପଃ ( ତପସ୍ୟା ) ରାଜସଂ ପ୍ରୋକ୍ତମ୍ ( ରାଜସ ବୋଲି କଥିତ ହୁଏ ) ।

ଅନୁବାଦ—ସତ୍କାର, ମାନ ଓ ପୂଜାଲାଭ ପାଇଁ ଯେଉଁ ତପସ୍ୟା ଦମ୍ଭପୂର୍ବକ ଅନୁଷ୍ଠିତ ହୁଏ, ସେହି ଚଞ୍ଚଳ ବା ଅସ୍ଥିର ତପସ୍ୟାକୁ ଶାସ୍ତ୍ରରେ ରାଜସ ବୋଲାଯାଏ ।

ସୁବୋଧିନୀ ଟୀକା—ରାଜସମାହ, ସତ୍କାରେତି, ସାଧୁରୟମିତି; ତାପସୋଽୟମିତ୍ୟାଦିବାକ୍ପୂଜା, ମାନଃ ପ୍ରତ୍ୟୁତ୍ଥାନାଭିବାଦନାଦିର୍ଦେହସ୍ୟ ପୂଜା, ପୂଜାଽର୍ଥଲାଭଃ । ଏତଦର୍ଥଂ ଦମ୍ଭେନ ଚ ଯତ୍ତପଃ କ୍ରିୟତେ । ଅତଏବ ଚଳମନିୟତମ୍ ଅଧ୍ରୁବଂ ଚ କ୍ଷଣିକମ୍, ଯଦେବମ୍ଭୂତଂ ତପ ଇହ ରାଜସଂ ପ୍ରୋକ୍ତମ୍ ।

ବିବୃତି—ଏପରି ଲୋକ ସଂସାରରେ ଅଳ୍ପ ନାହାନ୍ତି—ଯେଉଁମାନେ ସତ୍କାର ବା ସାଧୁବାଦ ଲାଭ କରିବା ପାଇଁ ଅର୍ଥାତ୍ ଏ ଲୋକ ବଡ଼ ସାଧୁ, ଏହିଭଳି ଲୋକ ପ୍ରଶଂସା ଶୁଣିବା ପାଇଁ ତପସ୍ୟା କରନ୍ତି ଅଥବା ସମ୍ମାନ ଲାଭ ପାଇଁ ଅଥବା ପୂଜା ଅର୍ଥାତ୍ ଧନ ଏବଂ ଭୋଜନ ଲାଭ ଆଶାରେ ଦମ୍ଭପୂର୍ବକ ତପସ୍ୟା କରନ୍ତି; ସେ ତପସ୍ୟାରେ କୌଣସି ସ୍ଥାୟୀ ଫଳ ମିଳେ ନାହିଁ, ପରନ୍ତୁ ତାହା ଅସ୍ଥିର ଏବଂ ଅନିଶ୍ଚିତ । ଏହିଭଳି ତପସ୍ୟା ରାଜସ ।

ମୂଢ଼ଗ୍ରାହେଣାତ୍ମନୋ ଯତ୍ ପୀଡ଼ୟା କ୍ରିୟତେ ତପଃ ।
ପରସ୍ୟୋତ୍ସାଦନାର୍ଥଂ ବା ତତ୍ତାମସମୁଦାହୃତମ୍ ॥୧୯॥
ଦାତବ୍ୟମିତି ଯଦ୍ଦାନଂ ଦୀୟତେଽନୁପକାରିଣେ ।
ଦେଶେ କାଳେ ଚ ପାତ୍ରେ ଚ ତଦ୍ଦାନଂ ସାତ୍ତ୍ୱିକଂ ସ୍ମୃତମ୍ ॥୨୦॥

୧୯ । ଅନ୍ୱୟଦୀପିକା—ମୂଢ଼ଗ୍ରାହେଣ ( ଅବିବେକ ପୂର୍ବକ ) ଆତ୍ମନଃ ପୀଡ଼ୟା ( ନିଜକୁ କଷ୍ଟ ଦେଇ ), ପରସ୍ୟ ( ଅନ୍ୟର ) ଉତ୍ସାଦନାର୍ଥଂ ବା ( ବା ପରର ବିନାଶ ପାଇଁ ) ଯତ୍ ତପଃ କ୍ରିୟତେ ( ଯେଉଁ ତପସ୍ୟା କରାଯାଏ ) ତତ୍ ତାମସମ୍ ଉଦାହୃତଂ ( ତାହା ତାମସ ଅଟେ ) ।

ଅନୁବାଦ—ଦୁରାଗ୍ରହ ପୂର୍ବକ ଶରୀରାଦିକୁ ପୀଡ଼ା ଦେଇ ଅଥବା ଅନ୍ୟ ପ୍ରାଣୀର ବିନାଶ ପାଇଁ ଯେଉଁ ତପସ୍ୟା କରାଯାଏ, ତାହା ତାମସ ।

ସୁବୋଧିନୀ ଟୀକା—ତାମସଂ ତପ ଆହ—ମୂଢ଼େତି । ମୂଢ଼ଗ୍ରାହେଣା-ବିବେକକୃତେନ ଦୁରାଗ୍ରହେଣାତ୍ମନଃ ପୀଡ଼ୟା ଯତ୍ତପଃ କ୍ରିୟତେ । ପରସ୍ୟୋତ୍-ସାଦନାର୍ଥଂ ବାନ୍ୟସ୍ୟ ବିନାଶାର୍ଥମଭିଚାରରୂପଂ ତତ୍ତାମସମୁଦାହୃତଂ କଥିତମ୍ ।

ବିବୃତି—ରାଜାହେବା ପାଇଁ ବା କୁବେରଙ୍କପରି ଧନ ଜମା ରଖିବା-ପାଇଁ ବା ଅନ୍ୟ ଲୋକର ବିନାଶ ପାଇଁ ଅଭିଚାର ରୂପ ଯେଉଁ ତପସ୍ୟା ଲୋକ ଦୁରାଗ୍ରହ ବଶତଃ କରେ, ତାହାକୁ ତାମସ ତପସ୍ୟା ବୋଲାଯାଏ, ରାଜସ ଓ ତାମସ ତପସ୍ୟା ସର୍ବଥା ପରିତ୍ୟାଜ୍ୟ ।

୨୦ । ଅନ୍ୱୟ ଦୀପିକା—ଅନୁପକାରିଣେ ( ପ୍ରତ୍ୟୁପକାର କରିବାରେ ଅସମର୍ଥ ଲୋକକୁ ) ଦାତବ୍ୟମ୍ ଇତି ( ଦେବା କର୍ତ୍ତବ୍ୟ—ଏହି ବୁଦ୍ଧିରେ ) ଦେଶେ କାଳେ ଚ ପାତ୍ରେ ଚ ( ଉପଯୁକ୍ତ ସ୍ଥାନରେ, ଉପଯୁକ୍ତ ସମୟରେ ଓ ଉପଯୁକ୍ତ ପାତ୍ରରେ ) ଯତ୍ ଦାନଂ ଦୀୟତେ ( ଯେଉଁ ଦାନ ଦିଆଯାଏ ), ତତ୍ ଦାନଂ ( ସେହି ଦାନ ) ସାତ୍ତ୍ୱିକଂ ସ୍ମୃତଂ ( ସାତ୍ତ୍ୱିକ ବୋଲି କଥିତ ହୁଏ ) ।

ଅନୁବାଦ—ଯାହାଙ୍କଠାରୁ ପ୍ରତ୍ୟୁପକାର ମିଳିବାର ଆଶା ନ ଥାଏ, ସେପରି ଲୋକଙ୍କୁ କର୍ତ୍ତବ୍ୟ ପ୍ରେରଣାରେ ଉପଯୁକ୍ତ ସ୍ଥଳରେ, ଉପଯୁକ୍ତ ସମୟରେ ଓ ଉପଯୁକ୍ତ ପାତ୍ରରେ ଯେଉଁ ଦାନ ଦିଆଯାଏ ତାହାହିଁ ସାତ୍ତ୍ୱିକ ଦାନ ।

ସୁବୋଧିନୀ ଟୀକା—ପୂର୍ବଂ ପ୍ରତିଜ୍ଞାତମେବ ଦାନସ୍ୟ ତ୍ରୈବିଧ୍ୟ-ମାହ—ଦାତବ୍ୟମିତି, ଦାତବ୍ୟମେବେତ୍ୟେବଂ ନିଶ୍ଚୟେନ ଯଦ୍ଦାନଂ ଦୀୟତେଽନୁପକାରିଣେ ପ୍ରତ୍ୟୁପକାରାସମର୍ଥାୟ । ଦେଶେ କୁରୁକ୍ଷେତ୍ରାଦୌ । କାଳେ ଗ୍ରହଣାଦୌ, ପାତ୍ରେ ଚେତି ଦେଶକାଳ ସାହଚର୍ଯ୍ୟାତ୍ ସପ୍ତମୀ ପ୍ରୟୁକ୍ତା ।

ପାତ୍ରେ ତାଦୃଶାୟ ତପଃଶ୍ରୁତାଦିସମ୍ପନ୍ନାୟ ବ୍ରାହ୍ମଣାୟେତ୍ୟର୍ଥଃ । ଯଦ୍ୱା ପାତ୍ରେ ଇତ୍ୟ ଲୁପ୍ତଚତୁର୍ଥୀ । ରକ୍ଷକାୟେତ୍ୟର୍ଥଃ । ଚତୁର୍ଥ୍ୟର୍ଥେ ସପ୍ତମୀ, ସତି ସର୍ବସ୍ମାଦାପଦ୍‌ଗଣାଦ୍ଦାତାରଂ ପାଳୟତି ପାତା, ତସ୍ମୈ ଯଦ୍ଦେୟଂ ଦତ୍ତଂ ଦାନଂ ତତ୍ ସାତ୍ତ୍ୱିକମ୍ ।

ବିବୃତ—ସାତ୍ତ୍ୱିକ ଦାନର ସ୍ୱରୂପ ଏଠାରେ କୁହାଯାଇଅଛି । ପ୍ରଥମତଃ କର୍ତ୍ତବ୍ୟର ପ୍ରେରଣାରେ ଦାନ ଦେବାକୁ ହେବ । ଯାହାଙ୍କର ଧନ ଥାଏ—ସେ ପ୍ରଥମେ ସତ୍ ପାତ୍ରରେ ବିନିଯୋଗ କରିବା ପାଇଁ ସଙ୍କଳ୍ପ କରିବେ-ଏହାହିଁ କର୍ତ୍ତବ୍ୟର ପ୍ରେରଣା । ଏହି ପ୍ରେରଣାରେ କୌଣସି ପ୍ରକାର ଫଳସ୍ୱରୂପ ଆଶା ନଥିବ, ଦ୍ୱିତୀୟତଃ ଯାହାଙ୍କୁ ଦାନ ଦିଆଯିବ ତାଙ୍କଠାରୁ କୌଣସି ପ୍ରକାର ଉପକାର ପାଇବାର ଆଶା ନ ଥିବ । ଯେବେ ସେପରି ଆଶାରେ ଦାନ କରାଯାଏ ତେବେ ତାହା ଦାନପଦବାଚ୍ୟ ହୁଏ ନାହିଁ, ବିନିମୟ ବା ଆଦାନ ପ୍ରଦାନ—ଏହି ନାମରେ ତାହା ଅଭିହିତ ହୋଇପାରେ । ତୃତୀୟତଃ ଉପଯୁକ୍ତ ଦେଶ ଓ ପାତ୍ରରେ ଦାନ ଦେବାକୁ ହେବ । ପ୍ରାଚୀନ ଟୀକାକାରମାନଙ୍କ ମତରେ ଏଠାରେ ଦେଶର ଅର୍ଥ କୁରୁକ୍ଷେତ୍ରାଦି ତୀର୍ଥସ୍ଥାନ, କାଳର ଅର୍ଥ ଗ୍ରହଣାଦି ପୁଣ୍ୟକାଳ ଓ ପାତ୍ରର ଅର୍ଥ ବେଦଜ୍ଞ ବ୍ରାହ୍ମଣ । ଯେଉଁ କାଳରେ ଏସବୁ ଭାଷ୍ୟ ବା ଟୀକା ଲିଖିତ ହୋଇଥିଲା, ସେ କାଳରେ ଲୋକମାନଙ୍କର ସେହିପରି ଦୃଷ୍ଟିଭଙ୍ଗୀ ଥିଲା ବା ସମାଜର ଅବସ୍ଥା ବର୍ତ୍ତମାନ ଭଳି ଜଟିଳ ନ ଥିଲା, ତେଣୁ ସେମାନେ ସେହିପରି ଅର୍ଥ କରିଯାଇ ଅଛନ୍ତି । କିନ୍ତୁ ବର୍ତ୍ତମାନ ସମାଜ ଯେଉଁ ଅବସ୍ଥାରେ ଅଛି ତାହା ଦେଖି ଏ ଯୁଗର ମନସ୍ୱୀମାନେ ଦେଶ, କାଳ ଓ ପାତ୍ରର ଭିନ୍ନ ପ୍ରକାର ଅର୍ଥ କରନ୍ତି; ଆଧୁନିକମାନଙ୍କ ମତରେ 'ଦେଶ'ର ଅର୍ଥ ଯେଉଁ ସ୍ଥାନରେ ଲୋକଙ୍କର ଅଭାବ ଦେଖାଯାଏ ଅର୍ଥାତ୍ ଯେଉଁ ସ୍ଥାନର ଲୋକେ ଦୁର୍ଭିକ୍ଷ, ଅତିବୃଷ୍ଟି, ଅନାବୃଷ୍ଟି ପ୍ରଭୃତିରେ କ୍ଳିଷ୍ଟ, ସେହି ଦେଶର ଲୋକଙ୍କୁ ଦାନ ଦିଆଯିବ । 'କାଳ'ର ଅର୍ଥ ରୋଗାଦିର ପ୍ରାଦୁର୍ଭାବ ସମୟରେ ଅର୍ଥାତ୍ ସଂକ୍ରାମକରୋଗପ୍ରଭୃତି ପ୍ରବଳ ହୋଇଥିବା ବେଳେ ବା ଦୁର୍ଭିକ୍ଷାଦି ଦୁଃସମୟରେ ଦାନ ଦେବା ଉଚିତ । ପାତ୍ରର ଅର୍ଥ ଉପଯୁକ୍ତ ଲୋକ, ଆଗେ ତପଃ ସ୍ୱାଧ୍ୟାୟନିରତ ବ୍ରାହ୍ମଣମାନେ ହିଁ ଧନୋପାର୍ଜନର ଅନ୍ୟ ଉପାୟ ନ କରି ମାନବ ସମାଜର ଉପକାର ପାଇଁ ନିତ୍ୟ ଈଶ୍ୱର ଉପାସନାରେ ଅଭିନିବିଷ୍ଟ ରହୁଥିଲେ, ସେମାନଙ୍କୁ ଦାନ ଦେବା କର୍ତ୍ତବ୍ୟ ବିବେଚିତ ହେଉଥିଲା । ବର୍ତ୍ତମାନ ଅବଶ୍ୟ ସେ ଭଳି ବ୍ରାହ୍ମଣ ଦାନ ଗ୍ରହଣର ପାତ୍ର ବୋଲି ବିବେଚିତ ହେବେ । ସେମାନଙ୍କ ଛଡ଼ା ନିଃସ୍ୱ, ରୋଗୀ, ଲୋକମାନେ ଯେ ବର୍ତ୍ତମାନ ସମାଜରେ ଦାନର ଉପଯୁକ୍ତ ପାତ୍ର ଏହା କେହି ଅସ୍ୱୀକାର କରିବେ ନାହିଁ ।

ଯତ୍ତୁ ପ୍ରତ୍ୟୁପକାରାର୍ଥଂ ଫଲମୁଦ୍ଦିଶ୍ୟ ବା ପୁନଃ ।
ଦୀୟତେ ଚ ପରିକ୍ଲିଷ୍ଟଂ ତଦ୍ଦାନଂ ରାଜସଂ ସ୍ମୃତମ୍ । ୨୧ ।
ଅଦେଶକାଲେ ଯଦ୍ଦାନମପାତ୍ରେଭ୍ୟଶ୍ଚ ଦୀୟତେ ।
ଅସତ୍କୃତମବଜ୍ଞାତଂ ତତ୍ତାମସମୁଦାହୃତଂ । ୨୨ ।
ଓଁ ତତ୍ସଦିତି ନିର୍ଦ୍ଦେଶୋ ବ୍ରହ୍ମଣସ୍ତ୍ରିବିଧଃ ସ୍ମୃତଃ ।
ବ୍ରାହ୍ମଣାସ୍ତେନ ବେଦାଶ୍ଚ ଯଜ୍ଞାଶ୍ଚ ବିହିତାଃ ପୁରା । ୨୩ ।

୨୧ । ଅନ୍ୱୟ ଦୀପିକା—ପୁନଃ ( ପୁଣି ) ଯତ୍ତୁ ( ଯାହା ) ପ୍ରତ୍ୟୁପକାରାର୍ଥଂ ( ପ୍ରତ୍ୟୁପକାର ଆଶାରେ ) ଫଲମ୍ ଉଦ୍ଦିଶ୍ୟ ବା ( ଅଥବା ଫଳ କାମନାରେ ) ପରିକ୍ଲିଷ୍ଟଂ (ମନଃ କଷ୍ଟ ସହିତ ଅର୍ଥାତ୍ ଅନିଚ୍ଛା ସତ୍ତ୍ୱେ) ଦୀୟତେ ( ଦିଆ ହୁଏ ) ତଦ୍ଦାନଂ ରାଜସଂ ସ୍ମୃତମ୍ ( ତାହାକୁ ରାଜସ ଦାନ କୁହାଯାଏ ) ।

ଅନୁବାଦ—ପୁଣି ପ୍ରତ୍ୟୁପକାର ଆଶାରେ ବା ସ୍ୱର୍ଗାଦିଫଳକାମନାରେ ଅନିଚ୍ଛାରେ ଯେଉଁ ଦାନ କରାଯାଏ ତାହାକୁ ରାଜସ ଦାନ ବୋଲାଯାଏ ।

ସୁବୋଧିନୀ ଟୀକା—ରାଜସଦାନମାହ ଯଦିତି । କାଳାନ୍ତରେ-ଽୟଂ ମାଂ ପ୍ରତ୍ୟୁପକରିଷ୍ୟତୀତ୍ୟେବମର୍ଥଂ ଫଳଂ ବା ସ୍ୱର୍ଗାଦିକମୁଦ୍ଦିଶ୍ୟ ଯତ୍ ପୁନର୍ଦ୍ଦାନଂ ଦୀୟତେ ପରିକ୍ଲିଷ୍ଟଂ ଚିତ୍ତକ୍ଲେଶଯୁକ୍ତଂ ଯଥାଭବତ୍ୟେବମ୍ଭୂତଂ ତଦ୍ଦାନଂ ରାଜସମୁଦାହୃତଂ କଥିତମ୍ ।

୨୨ । ଅନ୍ୱୟ ଦୀପିକା—ଅଦେଶକାଲେ ( ଅନୁପଯୁକ୍ତ ସ୍ଥାନରେ ଓ ସମୟରେ ) ଅପାତ୍ରେଭ୍ୟଃ ଚ ( ଏବଂ ଅପାତ୍ରମାନଙ୍କୁ ) ଅସତ୍କୃତଂ ( ଅନାଦରରେ ) ଅବଜ୍ଞାତଂ ( ଅବଜ୍ଞା ସହିତ ) ଯତ୍ ଦାନଂ ( ଯେଉଁ ଦାନ ) ଦୀୟତେ ( ଦିଆହୁଏ ), ତତ୍ ତାମସମ୍ ଉଦାହୃତମ୍ ( ତାହା ତାମସ ବୋଲି କଥିତ ହୁଏ ) ।

ଅନୁବାଦ—ଯେଉଁ ଦାନ ଅସ୍ଥାନରେ, ଅନୁପଯୁକ୍ତ ସମୟରେ ଓ ଅପାତ୍ରରେ ସତ୍କାରରହିତ ଅବଜ୍ଞାପୂର୍ବକ ଦିଆଯାଏ ତାହା ତାମସ ଦାନ ।

ସୁବୋଧିନୀ ଟୀକା—ତାମସଂ ଦାନମାହ—ଅଦେଶେତି । ଅଦେଶେଽଶୁଚିସ୍ଥାନେ, ଅକାଲେଽଶୌଚାଦିସମୟେ, ଅପାତ୍ରେଭ୍ୟୋ ନଟନଟ-ନର୍ତ୍ତକାଦିଭ୍ୟଃ ଯଦ୍ଦାନଂ ଦୀୟତେ ଦେଶକାଳପାତ୍ରସମ୍ପତ୍ତାବପ୍ୟସତ୍କୃତଂ ପାଦପ୍ରକ୍ଷାଳନାଦିସତ୍କାରଶୂନ୍ୟମ୍ । ଅବଜ୍ଞାତଂ ପାତ୍ରତିରସ୍କାରଯୁକ୍ତମ୍ । ଏବମ୍ଭୂତଂ ଦାନଂ ତାମସମୁଦାହୃତମ୍ ।

୨୩ । ଅନ୍ୱୟ ଦୀପିକା—ଓଁ ତତ୍ସତ୍ ଇତି ତ୍ରିବିଧଃ ( ଓଁ ତତ୍ସତ୍—ଏହି ତିନି ପ୍ରକାର ) ବ୍ରହ୍ମଣଃ ନିର୍ଦ୍ଦେଶଃ ( ବ୍ରହ୍ମଙ୍କର ନାମନିର୍ଦ୍ଦେଶ )

ତସ୍ମାଦୋମିତ୍ୟୁଦାହୃତ୍ୟ ଯଜ୍ଞଦାନତପଃକ୍ରିୟାଃ ।
ପ୍ରବର୍ତ୍ତନ୍ତେ ବିଧାନୋକ୍ତାଃ ସତତଂ ବ୍ରହ୍ମବାଦିନାମ୍ ॥ ୨୪ ॥

ସ୍ମୃତଃ ( ଶାସ୍ତ୍ରରେ କଥିତ ହୋଇଅଛି ) । ତେନ ( ତଦ୍ଦ୍ୱାରା ) ବ୍ରାହ୍ମଣାଃ ( ବ୍ରହ୍ମଜ୍ଞମାନେ ), ବେଦାଃ ( ବେଦ ସମୂହ ) ଯଜ୍ଞାଶ୍ଚ ( ଓ ଯଜ୍ଞ ସମୂହ ) ପୁରା ( ପୂର୍ବକାଳରେ ) ବିହିତାଃ ( ସୃଷ୍ଟ ହୋଇ ଅଛନ୍ତି ) ।

ଅନୁବାଦ—( ଶାସ୍ତ୍ରରେ ) "ଓଁ ତତ୍ ସତ୍" ଏହି ତିନି ପ୍ରକାରେ ପରବ୍ରହ୍ମଙ୍କର ନାମ ନିର୍ଦ୍ଦେଶ କରାଯାଇଅଛି । ଏହି ନିର୍ଦ୍ଦେଶଦ୍ୱାରା ପୂର୍ବକାଳରେ ବେଦଜ୍ଞ ବ୍ରାହ୍ମଣ, ବେଦ ଓ ଯଜ୍ଞ ସୃଷ୍ଟ ହୋଇ ଅଛନ୍ତି ।

ସୁବୋଧିନୀ ଟୀକା—ନନ୍ୱେବଂ ରଜୋଗୁଣମାଣେ ସର୍ବମପି ଯଜ୍ଞତପୋଦାନାଦି ରାଜସତାମସପ୍ରାୟମେବେତି ବ୍ୟର୍ଥୋ ଯଜ୍ଞାଦିପ୍ରୟାସ ଇତ୍ୟାଶଙ୍କ୍ୟ ତଥାବିଧସ୍ୟାପି ସାତ୍ତ୍ୱିକତ୍ୱୋପପାଦନାତ୍ ପ୍ରକାରଂ ଦର୍ଶୟିତୁମାହ । ଓମିତି । ଓଁ ତତ୍ସଦିତି ତ୍ରିବିଧୋ ବ୍ରହ୍ମଣଃ ପରମାତ୍ମନୋ ନିର୍ଦ୍ଦେଶୋ ନାମବ୍ୟପଦେଶଃ ସ୍ମୃତଃ ଶିଷ୍ଟୈଃ । ତତ୍ର ତାବଦୋମିତି ବ୍ରହ୍ମ ଇତ୍ୟାଦି ଶ୍ରୁତିପ୍ରସିଦ୍ଧେ ରୋମିତି ବ୍ରହ୍ମଣୋ ନାମ । ଜଗତ୍ କାରଣତ୍ୱେନାତି ପ୍ରସିଦ୍ଧତ୍ୱାଦବାଦ୍ମଙ୍ମନସାଂ ପରୋକ୍ଷତ୍ୱାଚ ତଚ୍ଛବ୍ଦୋଽପି ବ୍ରହ୍ମଣୋ ନାମ । ପରମାର୍ଥସତ୍ତ୍ୱସାଧୁତ୍ୱପ୍ରଶସ୍ତତ୍ୱାଦିଭିଃ ସଚ୍ଛବ୍ଦୋଽପି ବ୍ରହ୍ମଣୋ ନାମ । ସଦେବ ସୌମ୍ୟେଦମଗ୍ର ଆସୀଦିତ୍ୟାଦି ଶ୍ରୁତେଃ । ଅୟଂ ତ୍ରିବିଧୋଽପି ନାମନିର୍ଦ୍ଦେଶୋ ବିଗୁଣମପି ସଗୁଣୀକର୍ତ୍ତୁଂ ସମର୍ଥ ଇତ୍ୟାଶୟେନ ସ୍ତୌତି । ତେନ ତ୍ରିବିଧେନ ବ୍ରହ୍ମଣୋ ନିର୍ଦ୍ଦେଶେନ ବ୍ରାହ୍ମଣାଶ୍ଚ ବେଦାଶ୍ଚ ଯଜ୍ଞାଶ୍ଚ ପୁରା ସୃଷ୍ଟ୍ୟାଦୌ ବିହିତା ବିଧାତ୍ରା ନିର୍ମିତାଃ । ସଗୁଣୀକୃତା ଇତି ବା । ଯଥା ଯସ୍ୟାୟଂ ତ୍ରିବିଧୋ ନିର୍ଦ୍ଦେଶସ୍ତେନ ପରମାତ୍ମନା ବ୍ରାହ୍ମଣାଦୟଃ ପବିତ୍ରତମାଃ ସୃଷ୍ଟାଃ । ତସ୍ମାଦୁତ୍ସାହ୍ୟଂ ତ୍ରିବିଧୋ ନିର୍ଦ୍ଦେଶୋଽତିପ୍ରଶସ୍ତ ଇତ୍ୟର୍ଥଃ ।

୨୪ । ଅନ୍ୱୟ ଦୀପିକା—ତସ୍ମାତ୍ ( ସେହି ହେତୁରୁ ) ଓଁ ଇତି ( ଓଁ ଏହିଶବ୍ଦ ) ଉଦାହୃତ୍ୟ ( ଉଚ୍ଚାରଣ କରି ) ବେଦବାଦିନାମ୍ (ବ୍ରହ୍ମଜ୍ଞମାନଙ୍କର) ବିଧାନୋକ୍ତ ( ଶାସ୍ତ୍ରୋକ୍ତ ) ଯଜ୍ଞଦାନତପଃକ୍ରିୟାଃ ( ଯଜ୍ଞ, ଦାନ ଓ ତପସ୍ୟାଦି କର୍ମ ) ସତତଂ ପ୍ରବର୍ତ୍ତନ୍ତେ ( ସର୍ବଦା ଅନୁଷ୍ଠିତ ହୁଏ ) ।

ଅନୁବାଦ—ଏହି ହେତୁରୁ 'ଓଁ' ଏହା ଉଚ୍ଚାରଣ କରି ବେଦବାଦୀମାନେ ଶାସ୍ତ୍ରୋକ୍ତ ଯଜ୍ଞ, ଦାନ, ତପସ୍ୟା ପ୍ରଭୃତି କାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି ।

ସୁବୋଧିନୀ ଟୀକା—ଇଦାନୀଂ ପ୍ରତ୍ୟେକମୋଙ୍କାରାଦୀନାଂ ପ୍ରାଶସ୍ତ୍ୟଂ ଦର୍ଶୟିଷ୍ୟନ୍ନୋଙ୍କାରସ୍ୟ ତଦେବାହ—ତସ୍ମାଦିତି, ଯସ୍ମାଦେବଂ ବ୍ରାହ୍ମଣୋ ନିର୍ଦ୍ଦେଶଃ ପ୍ରଶସ୍ତସ୍ତସ୍ମାଦୋମିତ୍ୟୁଦାହୃତ୍ୟୋଚ୍ଚାର୍ଯ୍ୟ କୃତା ବେଦବାଦିନାଂ

ତଦିତ୍ୟନଭିସନ୍ଧାୟ ଫଳଂ ଯଜ୍ଞତପଃ କ୍ରିୟାଃ ।
ଦାନକ୍ରିୟାଶ୍ଚ ବିବିଧାଃ କ୍ରିୟନ୍ତେ ମୋକ୍ଷକାଙ୍‌କ୍ଷିଭିଃ । ୨୫ ।
ସଦ୍‌ଭାବେ ସାଧୁଭାବେ ଚ ସଦିତ୍ୟେତତ୍ ପ୍ରଯୁଜ୍ୟତେ,
ପ୍ରଶସ୍ତେ କର୍ମଣି ତଥା ସଚ୍ଛବ୍ଦଃ ପାର୍ଥ ଯୁଜ୍ୟତେ । ୨୬ ।

ଯଜ୍ଞାଦ୍ୟାଃ ଶାସ୍ତ୍ରୋକ୍ତାଃ କ୍ରିୟାଃ ସତତଂ ସର୍ବଦା ଅଙ୍ଗବୈକଲ୍ୟେଽପି ପ୍ରବର୍ତ୍ତେଣ ବର୍ତ୍ତନ୍ତେ, ସଗୁଣା ଭବନ୍ତୀତ୍ୟର୍ଥଃ ।

ବକ୍ତବ୍ୟ—'ଓଁ' ଶବ୍ଦଟି ଭଗବାନଙ୍କର ଗୋଟିଏ ବିଶେଷ ନାମ । ବେଦଜ୍ଞମାନେ କୌଣସି ଶାସ୍ତ୍ରୋକ୍ତ କର୍ମ ଅନୁଷ୍ଠାନ କଲାବେଳେ 'ଓଁ' ଏହି ନାମ ପ୍ରଥମରୁ ଉଚ୍ଚାରଣ କରନ୍ତି । ଏହି ନାମ ମାହାତ୍ମ୍ୟରୁ କର୍ମର ସମସ୍ତ ଦୋଷ ଦୂରୀଭୂତ ହୋଇଯାଏ ।

୨୫ । ଅନ୍ୱୟ ଦୀପିକା—ତତ୍ ଇତି ('ତତ୍' ଶବ୍ଦ) [ଉଚ୍ଚାରଣ କରି] ଫଳମ୍ ଅନଭିସନ୍ଧାୟ (ଫଳାକାଙ୍‌କ୍ଷା ନ ରଖି) ମୋକ୍ଷକାଙ୍‌କ୍ଷିଭିଃ (ମୋକ୍ଷାଭିଳାଷୀମାନଙ୍କ ଦ୍ୱାରା) ବିବିଧାଃ (ନାନାପ୍ରକାର) ଯଜ୍ଞତପଃକ୍ରିୟାଃ ଦାନକ୍ରିୟାଃ ଚ (ଯଜ୍ଞ, ତପସ୍ୟା ଓ ଦାନକ୍ରିୟା) କ୍ରିୟନ୍ତେ (ଅନୁଷ୍ଠିତ ହୁଏ) ।

ଅନୁବାଦ—ମୋକ୍ଷାଭିଳାଷୀମାନେ ଫଳ କାମନା ତ୍ୟାଗ କରି 'ତତ୍' ଏହି ଶବ୍ଦ ଉଚ୍ଚାରଣ ପୂର୍ବକ ନାନାବିଧ ଯଜ୍ଞ, ତପସ୍ୟା ଓ ଦାନାଦି କର୍ମ ସମ୍ପାଦନ କରନ୍ତି ।

ସୁବୋଧିନୀ ଟୀକା—ଦ୍ୱିତୀୟଂ ନାମ ପ୍ରଶଂସତି, ତଦିତି, ତଦିତ୍ୟୁଦାହୃତ୍ୟେତି ପୂର୍ବସ୍ୟାନୁଷଙ୍ଗଃ, ତଦିତ୍ୟୁଦାହୃତ୍ୟୋଚାର୍ଯ୍ୟ ଶୁଦ୍ଧଚିତ୍ତୈ-ର୍ମୋକ୍ଷକାଙ୍‌କ୍ଷିଭିଃ ପୁରୁଷୈଃ ଫଳାଭିସନ୍ଧିମକୃତ୍ୱା ଯଜ୍ଞାଦ୍ୟାଃ କ୍ରିୟାଃ କ୍ରିୟନ୍ତେ, ଅତଶ୍ଚିତ୍ତଶୋଧନଦ୍ୱାରେଣ ଫଳସଙ୍କଳ୍ପତ୍ୟାଜନେନ ମୁମୁକ୍ଷତ୍ୱସମ୍ପାଦକତ୍ୱା-ତ୍ତଚ୍ଛବ୍ଦ ନିର୍ଦ୍ଦେଶଃ ପ୍ରଶସ୍ତ ଇତ୍ୟର୍ଥଃ ।

ବକ୍ତବ୍ୟ—'ତତ୍' ଶବ୍ଦମଧ୍ୟ ବ୍ରହ୍ମ ନିର୍ଦ୍ଦେଶକ, ଏହି ଶବ୍ଦ ଉଚ୍ଚାରଣ କରି କର୍ମାନୁଷ୍ଠାନ କଲେ ଫଳାକାଙ୍‌କ୍ଷା ନିବୃତ୍ତ ହୁଏ । ତେଣୁ ନିଷ୍କାମ କର୍ମରେ ଏହି ଶବ୍ଦ ଉଚ୍ଚାରିତ ହୁଏ ।

୨୬ । ଅନ୍ୱୟ ଦୀପିକା—[ହେ] ପାର୍ଥ, ସଦ୍‌ଭାବେ (ଅଛି—ଏହି ଅର୍ଥରେ ଅର୍ଥାତ୍ ଅସ୍ତିତ୍ୱ ବୁଝାଇବା ଅର୍ଥରେ) ସାଧୁଭାବେ ଚ (ଏବଂ ସାଧୁଭାବ ବୁଝାଇବା ପାଇଁ) ସତ୍ ଇତି ଏତତ୍ (ସତ୍ ଏହି ଶବ୍ଦ) ପ୍ରଯୁଜ୍ୟତେ (ପ୍ରଯୁକ୍ତ ହୁଏ), ତଥା ପ୍ରଶସ୍ତେ କର୍ମଣି ଏବ (ଏବଂ ମଙ୍ଗଳଜନକ କାର୍ଯ୍ୟରେ) ସଚ୍ଛବ୍ଦଃ ଯୁଜ୍ୟତେ (ସତ୍‌ଶବ୍ଦ ବ୍ୟବହୃତ ହୁଏ) ।

ଯଜ୍ଞେ ତପସି ଦାନେ ଚ ସ୍ଥିତିଃ ସଦିତି ଚୋଚ୍ୟତେ,
କର୍ମ ଚୈବ ତଦର୍ଥୀୟଂ ସଦିତ୍ୟେବାଭିଧୀୟତେ । ୨୭ ।

ଅନୁବାଦ—ହେ ପାର୍ଥ, ସଦ୍ଭାବ, ସାଧୁଭାବ ଏବଂ ମଙ୍ଗଳଜନକ କାର୍ଯ୍ୟରେ 'ସତ୍' ଏହି ଶବ୍ଦ ଉଚ୍ଚାରଣ କରାଯାଏ ।

ସୁବୋଧିନୀ ଟୀକା—ସଚ୍ଛବ୍ଦସ୍ୟ ପ୍ରାଶସ୍ତ୍ୟ ମାହ—ସଦ୍ଭାବ ଇତି ଦ୍ୱାଭ୍ୟାମ୍; ସଦ୍ଭାବେଽସ୍ତିତ୍ୱେ । ଦେବଦତ୍ତସ୍ୟ ପୁତ୍ରାଦିକମସ୍ତୀତ୍ୟସ୍ମିନ୍ନର୍ଥେ, ସଦିତ୍ୟେତତ୍ ପଦଂ ପ୍ରଯୁଜ୍ୟତେ, ପ୍ରଶସ୍ତେ ମାଙ୍ଗଳ୍ୟେ ବିବାହାଦିକର୍ମଣି ଚ ସଦିଦଂ କର୍ମେତି ସଚ୍ଛବ୍ଦୋ ଯୁଜ୍ୟତେ ପ୍ରଯୁଜ୍ୟତେ, ଗଚ୍ଛତ ଇତି ବା ।

ବିବୃତି—'ସଦେବ ସୌମ୍ୟେଦମଗ୍ର ଆସୀତ୍'—ଏହି ଶ୍ରୁତି ବାକ୍ୟରେ 'ସତ୍' ଶବ୍ଦ ବ୍ରହ୍ମଙ୍କର ନାମ ବୋଲି ଗୃହୀତ ହୋଇଅଛି । 'ଏହି ବସ୍ତୁ ଅଛି'—ଅସ୍ତିତ୍ୱ ବୁଝାଇବା ଅର୍ଥରେ, ପବିତ୍ରତା ଅର୍ଥରେ ଏବଂ ବିବାହାଦି ମଙ୍ଗଳ କାର୍ଯ୍ୟରେ ମଧ୍ୟ ଏହି 'ସତ୍' ଶବ୍ଦ ପ୍ରଯୁକ୍ତ ହୁଏ ।

୨୭ । ଅନ୍ୱୟଦୀପିକା—ଯଜ୍ଞେ, ତପସି, ଦାନେ ଚ (ଯଜ୍ଞରେ, ତପସ୍ୟାରେ, ଦାନରେ) ସ୍ଥିତିଃ (ନିଷ୍ଠା) ସତ୍ ଇତି ଉଚ୍ୟତେ (ସତ୍ ବୋଲି କଥିତ ହୁଏ) ତଦର୍ଥୀୟଂ କର୍ମ ଚ (ଏହି ସମସ୍ତ ଉଦ୍ଦେଶ୍ୟରେ କରାଯାଇ ଥିବା କର୍ମ କିମ୍ବା ଈଶ୍ୱରାର୍ଥ କର୍ମ) ସତ୍ ଇତି (ସତ୍ ବୋଲି) ଅଭିଧୀୟତେ (କଥିତ ହୁଏ) ।

ଅନୁବାଦ—ଯଜ୍ଞ, ତପସ୍ୟା ଓ ଦାନରେ ନିଷ୍ଠା ଅର୍ଥାତ୍ ତତ୍ପର ହେବାକୁ ସତ୍ ବୋଲାଯାଏ । ଏ ସମସ୍ତ ପାଇଁ ଯେଉଁ କର୍ମ କରାଯାଏ ବା ଭଗବତ୍-ପ୍ରୀତିପାଇଁ ଯେଉଁସବୁ କର୍ମ କରାଯାଏ ତାହା 'ସତ୍' ବୋଲି କଥିତ ହୁଏ ।

ସୁବୋଧିନୀ ଟୀକା—କିଞ୍ଚ ଯଜ୍ଞ ଇତି, ଯଜ୍ଞାଦିଷୁ ଚ ଯା ସ୍ଥିତିସ୍ତାତ୍ପର୍ଯ୍ୟେଣାବସ୍ଥାନଂ ତଦପି ସଦିତ୍ୟୁଚ୍ୟତେ । ଯସ୍ୟେଦଂ ନାମତ୍ରୟଂ ସ ଏବ ପରମାର୍ଥଃ ଫଳଂ ଯସ୍ୟ ତଦର୍ଥଂ କର୍ମ ପୂଜୋପହାରଗୃହାଙ୍ଗନ-ପରିମାର୍ଜନୋପଲେପନରଙ୍ଗମାଳିକାଦିକ୍ରିୟା ତତ୍ସିଦ୍ଧ୍ୟର୍ଥଂ ଯଦନ୍ୟତ୍ କର୍ମ କ୍ରିୟତ ଉଦ୍ୟାନଶାଳକ୍ଷେତ୍ରଧନାର୍ଜନାଦିରୂପଂ ତତ୍ କର୍ମ ତଦର୍ଥୀୟମ୍, ତାଚାତବ୍ୟବହୃତମପି ସଦିତ୍ୟେବାଭିଧୀୟତେ, ତସ୍ମାଦେବମତିପ୍ରଶସ୍ତ-ମେତନ୍ନାମତ୍ରୟଂ ତସ୍ମାଦେତତ୍ ସର୍ବକର୍ମସାଦ୍ଗୁଣ୍ୟାର୍ଥଂ କୀର୍ତ୍ତୟେଦିତି ତାତ୍ପର୍ଯ୍ୟାର୍ଥଃ, ଅତ୍ର ଗୃଥବାଦାନୁପପତ୍ତ୍ୟା ବିଧିଃ କଲ୍ପ୍ୟତେ । ଧ୍ୟେୟଂ ସ୍ତୂୟତେ ଲକ୍ଷ୍ମ୍ୟୈ ତନ୍ନ୍ୟାୟ୍ୟାତ୍ । ଅପରେତୁ ପ୍ରବର୍ତ୍ତନ୍ତେ ବିଧାନୋକ୍ତାଃ କ୍ରିୟନ୍ତେ ମୋକ୍ଷକାଙ୍କ୍ଷିଭିରିତ୍ୟାଦିବର୍ତ୍ତମାନୋପଦେଶଃ ସମିଧୋ ଯଜତୀତ୍ୟାଦିବଦ୍

ବିଧିତଯ୍ତ୍ରା ପରଣମନ୍ତାସୁ ଇତ୍ୟାହୁଃ । ତଥ୍ୟ ସଦ୍ଭାବେ ସାଧୁଭାବେ ଚେତ୍ୟାଦ୍ୟ ପ୍ରାପ୍ତାର୍ଥିତ୍ୱାନ୍ନ ସଗଚ୍ଛତ ଇଡ ପୂର୍ବୋକ୍ତକ୍ରମେଣ ବଧିକଲ୍ପନୈବ ଜ୍ୟାୟସୀ ।

ବିବୃତି—୨୪ଶ ଶ୍ଳୋକରେ ବ୍ରହ୍ମବାଦୀମାନଙ୍କର ଯେଉଁ ଯଜ୍ଞ, ଦାନ ତପସ୍ୟାଦି କ୍ରିୟା ବର୍ଣ୍ଣିତ ହୋଇଅଛି, ତହିଁରେ 'ଓଁ' ଶବ୍ଦ ପ୍ରଯୋଜ୍ୟ । ୨୫ଶ ଶ୍ଳୋକରେ ମୋକ୍ଷାଭିଳାଷୀମାନଙ୍କର ଯେଉଁ ନିଷ୍କାମ କର୍ମ କଥା ଉଲ୍ଲିଖିତ ହୋଇଅଛି—ତହିଁରେ 'ତତ୍' ଶବ୍ଦ ପ୍ରଯୋଜ୍ୟ ଏବଂ ୨୬ଶ ଶ୍ଳୋକରେ ବର୍ଣ୍ଣିତ ସଦ୍‌ବୃଦ୍ଧିମାନଙ୍କର କର୍ମରେ ଓ ୨୭ଶ ଶ୍ଳୋକୋକ୍ତ ଈଶ୍ୱରୋଦ୍ଦେଶ୍ୟରେ କୃତ ସଦ୍‌ବୃଦ୍ଧି କର୍ମରେ ଓ ଯଜ୍ଞାଦି କର୍ମରେ ମଧ୍ୟ 'ସତ୍' ଶବ୍ଦ ପ୍ରଯୋଜ୍ୟ, ଏହିସବୁ ଶବ୍ଦ ପରମାତ୍ମାଙ୍କର ନାମନିର୍ଦ୍ଦେଶକ, ତେଣୁ ଯେ କୌଣସି କର୍ମରେ ଏ ଶବ୍ଦମାନଙ୍କର ଉଚ୍ଚାରଣରେ ବିଗୁଣ କର୍ମ ମଧ୍ୟ ସାତ୍ତ୍ୱିକ କର୍ମ ହୋଇଯାଏ ।

ଗୀତାର ୩ୟ ଅଧ୍ୟାୟରେ କୁହାଯାଇ ଅଛି ଯେ, ବ୍ରାହ୍ମଣ, ବେଦ ଓ ଯଜ୍ଞ—ଏଗୁଡ଼ିକ ଆଦ୍ୟ ସୃଷ୍ଟି । ଯେଉଁ ପରବ୍ରହ୍ମ ଏ ସମସ୍ତର ସ୍ରଷ୍ଟା, ତାହାଙ୍କର ସ୍ୱରୂପ 'ଓଁ ତତ୍ ସତ୍,' ଏହି ତିନି ଶବ୍ଦରେ ଅଛି । 'ଓଁ ତତ୍ ସତ୍' ଏହି ସଙ୍କଳ୍ପହିଁ ସମସ୍ତ ସୃଷ୍ଟିର ମୂଳ ।

ଯଜ୍ଞ, ତପସ୍ୟା ଓ ଦାନ—ଏ ଗୁଡ଼ିକ ଧର୍ମସଙ୍କ୍ରାନ୍ତ ପ୍ରଧାନ କର୍ମ । ଏଥିପାଇଁ ଯେତେ କର୍ମ କରାଯାଏ ସେ ସମସ୍ତକୁ ଯଜ୍ଞାର୍ଥ କର୍ମ କହନ୍ତି । ଫଳାଶା ଥିଲେ ମଧ୍ୟ ଏ ସମସ୍ତ କର୍ମ 'ସତ୍' ଶ୍ରେଣୀର ଅନ୍ତର୍ଗତ ଏବଂ ସମସ୍ତ ନିଷ୍କାମ କର୍ମ 'ତତ୍' ଶ୍ରେଣୀୟ । ସମସ୍ତ କର୍ମ ଆରମ୍ଭରେ 'ଓଁ ତତ୍ ସତ୍' ଏହି ବ୍ରହ୍ମନାମ ଉଚ୍ଚାରଣ କରିବା ସର୍ବଦା କର୍ତ୍ତବ୍ୟ ।

ଏହି ବ୍ରହ୍ମ ସଙ୍କଳ୍ପ 'ଓଁ ତତ୍ ସତ୍'—ଏହାର ଅର୍ଥ ସମ୍ବନ୍ଧରେ ଲୋକମାନ୍ୟ ତିଳକ କହନ୍ତି, 'ଓଁ' ଗୂଢ଼ାକ୍ଷରରୂପୀ ବୈଦିକ ମନ୍ତ୍ର । ଉପନିଷଦରେ ଏହାର ଅନେକ ପ୍ରକାର ବ୍ୟାଖ୍ୟା ଅଛି ( ପ୍ରଶ୍ନୋପନିଷଦ୍ ୫; ଛାନ୍ଦୋଗ୍ୟ ୧ । ୧ ) । 'ତତ୍' ଶବ୍ଦର ଅର୍ଥ ତାହା ବା ଦୃଶ୍ୟ ଜଗତର ଅତୀତ, ଦୂରବର୍ତ୍ତୀ ଅନିର୍ବାଚ୍ୟ ତତ୍ତ୍ୱ ଏବଂ 'ସତ୍'ର ଅର୍ଥ ଚକ୍ଷୁର ସମ୍ମୁଖସ୍ଥ ଦୃଶ୍ୟ ଜଗତ୍ । ଏହି ସମସ୍ତ ମିଶି ବ୍ରହ୍ମ, ଏହାହିଁ ଏହି ସଙ୍କଳ୍ପର ଅର୍ଥ ।

'ଓଁ ତତ୍ ସତ୍'—ଏହାକୁହିଁ ଶବ୍ଦ ବ୍ରହ୍ମ କୁହାଯାଏ, 'ଓଁକାର'ରୁ ସମସ୍ତ ଜଗତର ସୃଷ୍ଟି, ଜଗତର ଧାରଣ ପୋଷଣ ପାଇଁ ଯଜ୍ଞର ସୃଷ୍ଟି, ଯଜ୍ଞ ଶବ୍ଦ ପ୍ରଶସ୍ତ ଅର୍ଥରେ ବ୍ରାହ୍ମଣାଦି ଚତୁର୍ବର୍ଣ୍ଣର ସମସ୍ତ କର୍ମକୁ ବୁଝାଏ, ଯଜ୍ଞକୁ ରକ୍ଷା କରିବା ବ୍ରାହ୍ମଣର ପ୍ରଧାନ କର୍ମ । ବେଦରେ ଯଜ୍ଞ ଓ ଯଜ୍ଞ ରକ୍ଷାର ବିଧି ମଧ୍ୟ ବର୍ଣ୍ଣିତ ଅଛି, ତେଣୁ ୨୩ଶ ଶ୍ଳୋକରେ 'ଓଁ ତତ୍ ସତ୍' ଏହି ବ୍ରହ୍ମ ସଙ୍କଳ୍ପରୁ ବ୍ରାହ୍ମଣ, ଯଜ୍ଞ ଓ ବେଦ—ଏହି ତିନିଙ୍କର ଉତ୍ପତ୍ତି ବୋଲି

ଅଶ୍ରଦ୍ଧୟା ହୁତଂ ଦତ୍ତଂ ତପସ୍ତପ୍ତଂ କୃତଂ ଚ ଯତ୍ ।
ଅସଦିତ୍ୟୁଚ୍ୟତେ ପାର୍ଥ ନ ଚ ତତ୍ ପ୍ରେତ୍ୟ ନୋ ଇହ । ୨୮ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି
ଶ୍ରୀମଦ୍ ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ
ଶ୍ରୀକୃଷ୍ଣାର୍ଜୁନ ସଂବାଦେ ଶ୍ରଦ୍ଧାତ୍ରୟବିଭାଗଯୋଗୋ
ନାମ ସପ୍ତଦଶୋଽଧ୍ୟାୟଃ ।

---

ବୁଝାଯାଇ ଅଛି । 'ଯଜ୍ଞ' ଦ୍ୱାରାହିଁ ସୃଷ୍ଟି ରକ୍ଷା ହୁଏ, ଯଜ୍ଞହିଁ କର୍ମ । ସୁତରାଂ 'ଓଁ ତତ୍ ସତ୍' ଏହି ସଙ୍କଳ୍ପ ଦ୍ୱାରା ସମସ୍ତ କର୍ମ କରିବାକୁ ହୁଏ, ତେଣୁ କର୍ମ କୌଣସି ଅବସ୍ଥାରେ ମଧ୍ୟ ତ୍ୟାଜ୍ୟ ନୁହେ, ଏହାହିଁ କର୍ମରେ ବ୍ରହ୍ମନିର୍ଦ୍ଦେଶ ।

୨୮ । ଅନ୍ୱୟ ଦୀପିକା—ଅଶ୍ରଦ୍ଧୟା ( ଅଶ୍ରଦ୍ଧାରେ ) ହୁତଂ ( ହୋମ ), ଦତ୍ତଂ ( ଦାନ ), ତପ୍ତଂ ( ଅନୁଷ୍ଠିତ ) ତପଃ ( ତପସ୍ୟା ), ଯତ୍ ଚ କୃତଂ ( ଅନ୍ୟ ଯାହା କିଛି କରାଯାଏ ) [ତାହା] ଅସତ୍ ଇତି ଉଚ୍ୟତେ ( ଅସତ୍ ବୋଲି କୁହାଯାଏ ) [ ହେ ] ପାର୍ଥ, ତତ୍ ( ତାହା ) ନୋଇହ ( ନା ଇହ ଲୋକରେ ) ନଚ ପ୍ରେତ୍ୟ ( ନା ପର ଲୋକରେ ) [ ଫଳ ଦାନ କରେ ] ।

ଅନୁବାଦ—ଅଶ୍ରଦ୍ଧାରେ ଯେଉଁ ଯଜ୍ଞ, ଦାନ, ତପସ୍ୟା ବା ଅନ୍ୟକର୍ମ ଅନୁଷ୍ଠିତ ହୁଏ, ସେ ସମସ୍ତହିଁ ଅସତ୍ ବୋଲି କଥିତ ହୁଏ । ହେ ପାର୍ଥ, ଶ୍ରଦ୍ଧାବିହୀନ କର୍ମ ଇହଲୋକରେ ବା ପର ଲୋକରେ କୌଣସି ଫଳ ପ୍ରଦାନ କରିପାରେ ନାହିଁ ।

'ସୁବୋଧିନୀ ଟୀକା—ଇଦାନୀଂ ସର୍ବକର୍ମସୁ ଶ୍ରଦ୍ଧୈବ ପ୍ରବୃତ୍ତ୍ୟର୍ଥମଶ୍ରଦ୍ଧୟା କୃତଂ ସର୍ବଂ ନିନ୍ଦତି—ଅଶ୍ରଦ୍ଧୟେତି । ଅଶ୍ରଦ୍ଧୟାହୁତଂ ହବନଂ, ଦତ୍ତଂ ଦାନଂ, ତପସ୍ତପ୍ତମ୍ ନିର୍ବର୍ତ୍ତିତମ୍ । ଯଚ୍ଚାନ୍ୟଦପି କୃତଂ କର୍ମ । ତତ୍ ସର୍ବମସଦିତ୍ୟୁଚ୍ୟତେ । ଯତସ୍ତତ୍ ପ୍ରେତ୍ୟ ଲୋକାନ୍ତରେ ନ ଫଳତି, ବିଗୁଣତ୍ୱାତ୍ । ନୋ ଇହ ନଶ୍ୱସ୍ମିନ୍ ଲୋକେ ଫଳତି, ଅଯଶସ୍କରତ୍ୱାତ୍ ।

ରଜସ୍ତମୋମୟୀଂ ତ୍ୟକ୍ତ୍ୱା ଶ୍ରଦ୍ଧାଂ ସତ୍ତ୍ୱମୟୀଂ ଶ୍ରିତଃ,
ତତ୍ତ୍ୱଜ୍ଞାନେଽଧିକାରୀ ସ୍ୟାଦିତି ସପ୍ତଦଶେ ସ୍ଥିତମ୍ ।

ବିବୃତି—ପୂର୍ବେ କୁହାଯାଇ ଅଛି ଯେ—'ଶ୍ରଦ୍ଧା' ଅର୍ଥ ଆସ୍ତିକ୍ୟ-ବୁଦ୍ଧି; ସାତ୍ତ୍ୱିକ ବୁଦ୍ଧିରେ ଯେଉଁ କର୍ମ କରାଯାଏ ତାହା କେବଳ ଶ୍ରଦ୍ଧାଯୁକ୍ତ ଥାଏ । ମାତ୍ର ରାଜସ ଓ ତାମସ ବୁଦ୍ଧିରେ କର୍ମ କରି ତହିଁରେ 'ଓଁ ତତ୍ ସତ୍' ଏହି ବ୍ରହ୍ମ ସଙ୍କଳ୍ପ ଉଚ୍ଚାରଣ କଲେ କୌଣସି ଫଳ ହୁଏ ନାହିଁ । କାରଣ ସେ ସମସ୍ତ 'ଅଶ୍ରଦ୍ଧା' ବା ଆସ୍ତିକ୍ୟବୁଦ୍ଧିଶୂନ୍ୟତା ଦ୍ୱାରା ଦୂଷିତ ହୋଇଥାଏ, ତେଣୁ ଅଶ୍ରଦ୍ଧାଯୁକ୍ତ ସମସ୍ତ କର୍ମ ଇହ ଲୋକରେ ତଥା ପର ଲୋକରେ କୌଣସି ଫଳ ଦିଏ ନାହିଁ ।

## ସପ୍ତଦଶ ଅଧ୍ୟାୟର ସାର ସଂକଳନ

ସତ୍ତ୍ୱ, ରଜଃ ଓ ତମଃ—ପ୍ରକୃତିର ଏହି ଗୁଣତ୍ରୟର ଅଧିକ୍ୟ ଓ ଅଳ୍ପତା ହେତୁରୁ ସଂସାରରେ ମନୁଷ୍ୟର ସ୍ୱଭାବ ଭିନ୍ନ ଭିନ୍ନ ଦେଖାଯାଏ—ଏହା ଚତୁର୍ଦ୍ଦଶ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି। ଷୋଡ଼ଶ ଅଧ୍ୟାୟ ଶେଷରେ ଭଗବାନ୍ କହିଥିଲେ, ଶାସ୍ତ୍ର ବିଧି ଲଂଘନ କରି କର୍ମକଲେ ଲୋକର ସିଦ୍ଧି ଲାଭ ହୁଏ ନାହିଁ, ତେଣୁ ଏ ଅଧ୍ୟାୟ ଆରମ୍ଭରେ ଅର୍ଜ୍ଜୁନ ପ୍ରଶ୍ନକଲେ, ଅନେକ ଲୋକଙ୍କର ଶାସ୍ତ୍ରଜ୍ଞାନ ନ ଥାଏ କିନ୍ତୁ ଧର୍ମାଚରଣରେ ଆନ୍ତରିକ ଶ୍ରଦ୍ଧା ଥାଏ। ଏମାନଙ୍କର ନିଷ୍ଠା ସାତ୍ତ୍ୱିକ, ରାଜସିକ ନା ତାମସିକ? ତେଣୁ ୧୪ ଶ ଅଧ୍ୟାୟୋକ୍ତ ଗୁଣତ୍ରୟ ଭେଦରେ ଏ ଅଧ୍ୟାୟରେ ଶ୍ରଦ୍ଧାତ୍ରୟ ଭେଦର ବର୍ଣ୍ଣନା ହୋଇଅଛି।

ପୂର୍ବ ଜନ୍ମର ସଂସ୍କାର ଅନୁସାରେ ମନୁଷ୍ୟର ଶ୍ରଦ୍ଧା ଭିନ୍ନ ଭିନ୍ନ ହୁଏ। ସାତ୍ତ୍ୱିକପ୍ରକୃତିବିଶିଷ୍ଟ ଲୋକମାନେ ଦେବତାଙ୍କର ପୂଜା କରନ୍ତି। ରାଜସିକ ମାନେ ଯକ୍ଷ ଓ ରାକ୍ଷସଙ୍କର ପୂଜା କରନ୍ତି, ଏବଂ ତାମସିକ ଲୋକମାନେ ଭୂତ ପ୍ରେତାଦିଙ୍କର ପୂଜା କରନ୍ତି; ତମଃ ପ୍ରଧାନ ଲୋକମାନେ ସାଧାରଣତଃ ରାକ୍ଷସ-ପ୍ରକୃତିକ। ସେମାନେ ଶରୀରକୁ ନାନା ପ୍ରକାର କଷ୍ଟଦେଇ କାମନାଦିର ବଶବର୍ତ୍ତୀ ହୋଇ କଠୋର ତପସ୍ୟା କରନ୍ତି। ତଦ୍ୱାରା ସେମାନଙ୍କର କଷ୍ଟ ଭୋଗ ମାତ୍ର ହୁଏ କିନ୍ତୁ କୌଣସି ଫଳଲାଭ ହୁଏ ନାହିଁ। ପ୍ରକୃତି ଭେଦରେ ଆହାର ମଧ୍ୟ ତିନି ପ୍ରକାର; ସେହିପରି ଯଜ୍ଞ, ତପସ୍ୟା ଓ ଦାନ ମଧ୍ୟ ତିନି ପ୍ରକାର, କାୟିକ, ବାଚିକ ଓ ମାନସିକ—ଏହିପରି ପ୍ରଭେଦରେ ତପସ୍ୟା ମଧ୍ୟ ତିନିପ୍ରକାର ହୋଇଥାଏ।

ସୃଷ୍ଟି ସଙ୍ଗେ ସଙ୍ଗେ ଯଜ୍ଞରୂପ କର୍ମର ସୃଷ୍ଟି, ବ୍ରହ୍ମହିଁ ଏ ସମସ୍ତର ସ୍ରଷ୍ଟା; 'ଓଁ ତତ୍‌ସତ୍'—ଏହି ତିନି ଶବ୍ଦ ଦ୍ୱାରା ପରବ୍ରହ୍ମଙ୍କୁ ନିର୍ଦ୍ଦେଶ କରାଯାଏ। 'ଓଁ' ଏହି ଏକାକ୍ଷର ରୂପୀ ବ୍ରହ୍ମଙ୍କ ନାମ ଉଚ୍ଚାରଣ କରି ବ୍ରହ୍ମଜ୍ଞମାନେ ସଂସାରରେ ଧର୍ମକ୍ରିୟାର ଅନୁଷ୍ଠାନ କରନ୍ତି। ମୋକ୍ଷାଭିଳାଷୀ ମାନେ 'ତତ୍' ଶବ୍ଦ ଉଚ୍ଚାରଣ କରି ସର୍ବବିଧ ନିଷ୍କାମକର୍ମ କରି ଥାଆନ୍ତି। 'ସତ୍' ଶବ୍ଦ ବ୍ରହ୍ମଙ୍କୁ ବୁଝାଏ ଏବଂ ଅସ୍ତିତ୍ୱ ଏବଂ ସାଧୁତା ଅର୍ଥ ମଧ୍ୟ ପ୍ରକାଶ କରେ, ତେଣୁ ସୃଷ୍ଟିରକ୍ଷାର୍ଥ କରାଯାଉଥିବା ବିବାହାଦି ଶୁଭ କର୍ମରେ ଏହି ଶବ୍ଦ ପ୍ରଯୁକ୍ତ ହୋଇଥାଏ।

ଶ୍ରଦ୍ଧା ବା ଆସ୍ତିକ୍ୟ ବୁଦ୍ଧି ସମସ୍ତ ଧର୍ମ କର୍ମର ପ୍ରାଣସ୍ୱରୂପ। ଶ୍ରଦ୍ଧା ସହିତ ଯେଉଁ କର୍ମ କରାଯାଏ ତାହା କଲ୍ୟାଣ କର ହୁଏ ଏବଂ ଅଶ୍ରଦ୍ଧାରେ କୃତ ଦାନ, ତପସ୍ୟା, ଯଜ୍ଞ ପ୍ରଭୃତି ସମସ୍ତ ନିଷ୍ଫଳ ହୁଏ।

---

# ଅଷ୍ଟାଦଶୋଽଧ୍ୟାୟଃ

ଅର୍ଜୁନ ଉବାଚ

ସନ୍ନ୍ୟାସସ୍ୟ ମହାବାହୋ ତତ୍ତ୍ୱମିଚ୍ଛାମି ବେଦିତୁମ୍ ।
ତ୍ୟାଗସ୍ୟ ଚ ହୃଷୀକେଶ ପୃଥକ୍ କେଶିନିଷୂଦନ । ୧ ।

**୧ । ଅନ୍ୱୟଦୀପିକା**—ଅର୍ଜୁନଃ ଉବାଚ (ଅର୍ଜୁନ କହିଲେ), [ହେ] ମହାବାହୋ, ହୃଷୀକେଶ, କେଶିନିସୂଦନ, ସନ୍ନ୍ୟାସସ୍ୟ (ସନ୍ନ୍ୟାସର) ତ୍ୟାଗସ୍ୟ ଚ (ଏବଂ ତ୍ୟାଗର) ତତ୍ତ୍ୱଂ (ତତ୍ତ୍ୱ) ପୃଥକ୍ (ସ୍ୱତନ୍ତ୍ର ଭାବରେ) ବେଦିତୁମ୍ (ଜାଣିବାକୁ) ଇଚ୍ଛାମି (ଇଚ୍ଛା କରୁଅଛି) ।

**ଅନୁବାଦ**—ଅର୍ଜୁନ କହିଲେ, ହେ ମହାବାହୋ, ହେ ହୃଷୀକେଶ, ହେ କେଶୀନାମକ ଦୈତ୍ୟର ବିନାଶକାରି, ସନ୍ନ୍ୟାସ ଓ ତ୍ୟାଗର ପାର୍ଥକ୍ୟ ଜାଣିବାକୁ ମୋର ଇଚ୍ଛା ହେଉଅଛି । ଏ ସମ୍ବନ୍ଧରେ ପ୍ରକୃତ ତତ୍ତ୍ୱ ମୋତେ କହ ।

**ସୁବୋଧିନୀ ଟୀକା**—

ନ୍ୟାସତ୍ୟାଗ ବିଭାଗେନ ସର୍ବଗୀତାର୍ଥସଂଗ୍ରହମ୍,
ସ୍ପଷ୍ଟମଷ୍ଟାଦଶେ ପ୍ରାହ ପରମାର୍ଥବିନିର୍ଣ୍ଣୟେ ।

ଅନନ୍ତ—ସର୍ବକର୍ମାଣି ମନସା ସନ୍ନ୍ୟସ୍ୟାସ୍ତେ ସୁଖଂ ବଶୀ । ସନ୍ନ୍ୟାସଯୋଗଯୁକ୍ତାତ୍ମେତ୍ୟାଦିଷୁ କର୍ମ-ସନ୍ନ୍ୟାସ ଉପଦିଷ୍ଟଃ । ତଥା ତ୍ୟକ୍ତ୍ୱା କର୍ମଫଲାସଙ୍ଗଂ ନିତ୍ୟତୃପ୍ତୋ ନିରାଶ୍ରୟଃ । ସର୍ବକର୍ମଫଲତ୍ୟାଗଂ ତତଃ କୁରୁ ଯତାତ୍ମବାନ୍ । ଇତ୍ୟାଦିଷୁ ଚ ଫଳମାତ୍ରଂ ତ୍ୟାଗେନ କର୍ମାନୁଷ୍ଠାନମୁପଦିଷ୍ଟମ୍ । ନ ଚ ପରସ୍ପରଂ ବିରୁଦ୍ଧଂ ସର୍ବଜ୍ଞଃ ପରମକାରୁଣିକୋ ଭଗବାନୁପଦିଶେତ୍ । ଅତଃ କର୍ମ-ସନ୍ନ୍ୟାସସ୍ୟ ତଦନୁଷ୍ଠାନସ୍ୟ ଚାବିରୋଧ ପ୍ରକାରଂ ବୁଭୁତ୍ସୁରର୍ଜୁନ ଉବାଚ । ସନ୍ନ୍ୟାସସ୍ୟେତି । ହେ ହୃଷୀକେଶ, ସର୍ବେନ୍ଦ୍ରିୟନିୟାମକ, ହେ କେଶିନିସୂଦନ, କେଶିନାମ୍ନୋ ମହତୋ ହୟାକୃତେ ର୍ଦୈତ୍ୟସ୍ୟ ଯୁଦ୍ଧେ ମୁଖଂ ବ୍ୟାଦାୟ ଭକ୍ଷୟିତୁ-ମାଗଚ୍ଛତୋ ଅତ୍ୟନ୍ତଂ ବ୍ୟାତ୍ତେ ମୁଖେ ବାମବାହୁଂ ପ୍ରବେଶ୍ୟ ତତ୍କ୍ଷଣମେବ ବିବୃଦ୍ଧେନ ତେନୈବ ବାହୁନା କର୍କଟିକା ଫଲବତ୍ତଂ ବିଦାର୍ଯ୍ୟ ନିସୂଦିତବାନ୍ । ଅତ ଏବ ହେ ମହାବାହୋ ଇତି ସମ୍ବୋଧନମ୍ । ସନ୍ନ୍ୟାସସ୍ୟ ତ୍ୟାଗସ୍ୟ ଚ ତତ୍ତ୍ୱଂ ପୃଥଗ୍‌ବିବେକେନ ବେଦିତୁମିଚ୍ଛାମି ।

**ବିବୃତି**—ଗୀତା ଶାସ୍ତ୍ରର ୧ମରୁ ୧୭ଶ ଅଧ୍ୟାୟ ଶେଷଯାଏ ଯେଉଁ ସବୁ ତତ୍ତ୍ୱର ଆଲୋଚନା କରାହୋଇଅଛି ଏହି ଅଷ୍ଟାଦଶ ଅଧ୍ୟାୟରେ ସେ ସମସ୍ତର ସାର ସଂଗ୍ରହ କରି ଭଗବାନ୍ ଉପସଂହାର କରିବେ । ପ୍ରଥମେ ଅର୍ଜୁନ ପ୍ରଶ୍ନ କରୁ

ଶ୍ରୀ ଭଗବାନୁବାଚ

କାମ୍ୟାନାଂ କର୍ମଣାଂ ନ୍ୟାସଂ ସନ୍ନ୍ୟାସଂ କବୟୋ ବିଦୁଃ ।
ସର୍ବକର୍ମଫଳତ୍ୟାଗଂ ପ୍ରାହୁସ୍ତ୍ୟାଗଂ ବିଚକ୍ଷଣାଃ ।୨।

ଅଛନ୍ତି—ସନ୍ନ୍ୟାସ ଓ ତ୍ୟାଗ ଶବ୍ଦ ଏଥିପୂର୍ବେ ଆପଣ ଅନେକ ସ୍ଥାନରେ ପ୍ରୟୋଗ କରିଅଛନ୍ତି, କିପରି ଭାବରେ ଏହି ଦୁଇ ଶବ୍ଦର ଅର୍ଥ ମୁଁ ଗ୍ରହଣ କରିବି ? ସନ୍ନ୍ୟାସ ଓ ତ୍ୟାଗ ଏ ଦୁହିଙ୍କର ଅର୍ଥ 'ଛାଡ଼ିବା,' କିନ୍ତୁ ସନ୍ନ୍ୟାସ ଶବ୍ଦର ଆଉ ଗୋଟିଏ ବିଶେଷ ଅର୍ଥ—ସମସ୍ତ କର୍ମ ତ୍ୟାଗକରି ଚତୁର୍ଥାଶ୍ରମ ଅବଲମ୍ବନ କରିବା, ଏ ଅର୍ଥ ମଧ୍ୟ ଶାସ୍ତ୍ରାନୁମୋଦିତ ଏବଂ ସୁପ୍ରଚଳିତ । ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ ଓ ଯତିବ୍ରତ ଶେଷରେ ମୁମୁକ୍ଷୁମାନେ ସନ୍ନ୍ୟାସ ଅର୍ଥାତ୍ ସର୍ବକର୍ମ ତ୍ୟାଗ କରିବେ—ମନ୍ୱାଦି ଧର୍ମଶାସ୍ତ୍ରମାନଙ୍କରେ ଏହିଳି ଉପଦେଶ ଅଛି । କିନ୍ତୁ ଗୀତାରେ ଏପର୍ଯ୍ୟନ୍ତ ଭଗବାନ୍ ଏ ଭାବରେ ସର୍ବକର୍ମତ୍ୟାଗରୂପ ସନ୍ନ୍ୟାସ ଗ୍ରହଣ କରିବାକୁ କୌଣସିଠାରେ କହି ନାହାନ୍ତି । ଏଥିରେ ଅର୍ଜ୍ଜୁନଙ୍କର ସନ୍ଦେହ ହେବା ସ୍ୱାଭାବିକ, ତେଣୁ ସନ୍ନ୍ୟାସ ଓ ତ୍ୟାଗ—ଏ ଦୁହିଙ୍କର ପୃଥକ୍ ତତ୍ତ୍ୱ ଜାଣିବା ଉଦ୍ଦେଶ୍ୟରେ ପ୍ରଥମରୁ ପ୍ରଶ୍ନ କଲେ ।

୨ । **ଅନ୍ୱୟଦୀପିକା**—ଶ୍ରୀଭଗବାନ୍ ଉବାଚ (ଶ୍ରୀଭଗବାନ୍ କହିଲେ) କବୟଃ ( ପଣ୍ଡିତମାନେ ) କାମ୍ୟାନାଂ କର୍ମଣାଂ ( କାମ୍ୟକର୍ମମାନଙ୍କର ) ନ୍ୟାସଂ ( ତ୍ୟାଗକୁ ) ସନ୍ନ୍ୟାସଂ ବିଦୁଃ ( ସନ୍ନ୍ୟାସ ବୋଲି ଜାଣନ୍ତି ), ବିଚକ୍ଷଣାଃ ( ତତ୍ତ୍ୱଦର୍ଶୀ ବିଚକ୍ଷଣମାନେ ) ସର୍ବକର୍ମଫଳତ୍ୟାଗଂ ( ସର୍ବବିଧ କର୍ମର ଫଳ ତ୍ୟାଗକୁ ) ତ୍ୟାଗଂ ପ୍ରାହୁଃ ( ତ୍ୟାଗ ବୋଲି କହନ୍ତି ) ।

**ଅନୁବାଦ**—ଶ୍ରୀ ଭଗବାନ୍ କହିଲେ, କାମ୍ୟକର୍ମତ୍ୟାଗକୁ ପଣ୍ଡିତମାନେ ସନ୍ନ୍ୟାସ ବୋଲି ଜାଣନ୍ତି । ସମସ୍ତ କର୍ମର ଫଳତ୍ୟାଗକୁ ହିଁ ସୂକ୍ଷ୍ମଦର୍ଶୀମାନ ତ୍ୟାଗ କହନ୍ତି ।

**ସୁବୋଧିନୀ ଟୀକା**—ଅତ୍ରୋତ୍ତରଂ ଶ୍ରୀ ଭଗବାନୁବାଚ—କାମ୍ୟାନାମିତି । କାମ୍ୟାନାଂ—ପୁତ୍ରକାମୋ ଯଜେତ ସ୍ୱର୍ଗକାମୋ ଯଜେତେତ୍ୟାଦିକାମୋପବନ୍ଧେନ ବିହିତାନାଂ କର୍ମଣାଂ ନ୍ୟାସଂ ପରିତ୍ୟାଗଂ ସନ୍ନ୍ୟାସଂ କବୟୋ ବିଦୁଃ । ସମ୍ୟକ୍ ଫଳୈଃ ସହ ସର୍ବକର୍ମଣାମପିନ୍ୟାସଂ ସନ୍ନ୍ୟାସଂ ପଣ୍ଡିତା ବିଦୁଃ ଜାନନ୍ତୀତ୍ୟର୍ଥଃ । ସର୍ବେଷାଂ କାମ୍ୟାନାଂ ନିତ୍ୟନୈମିତ୍ତିକାନାଂ ଚ କର୍ମଣାଂ ଫଳମାତ୍ରତ୍ୟାଗଂ ପ୍ରାହୁଃ ତ୍ୟାଗଂ ବିଚକ୍ଷଣା ନିପୁଣାଃ, ନ ତୁ ସ୍ୱରୂପତଃ କର୍ମତ୍ୟାଗମ୍ ।

ନନୁ ନିତ୍ୟନୈମିତ୍ତିକାନାଂ ଫଳାଶ୍ରବଣାଦବିଦ୍ୟମାନସ୍ୟ ଫଳସ୍ୟ କଥଂ ତ୍ୟାଗଃ ସ୍ୟାତ୍ । ନ ହି ବନ୍ଧ୍ୟାୟାଃ ପୁତ୍ର ତ୍ୟାଗଃ ସମ୍ଭବତି ।

ଉଚ୍ୟତେ—ଯଦ୍ୟପି ସ୍ୱର୍ଗକାମଃ ପଶୁକାମ ଇତ୍ୟାଦିବଦଗ୍ନିହୋତ୍ରଂ ସନ୍ଧ୍ୟା-ମୁପାସୀତ 'ଯାବଜ୍ଜୀବମଗ୍ନିହୋତ୍ରଂ ଜୁହୋତୀତ୍ୟାଦିଷୁ ଫଳବିଶେଷୋ ନ ଶ୍ରୂୟତେ ତଥାପ୍ୟପୂର୍ବତ୍ବାର୍ଥେ ବ୍ୟାପାରେ ପ୍ରେକ୍ଷାବତାଂ ପ୍ରବୃତ୍ତିର୍ଯ୍ୟନୁମଶକ୍ୟବତ୍ ବିଧିର୍ବିଶ୍ୱଜିତା ଯଜେତ ଇତ୍ୟାଦିଷ୍ୱିବ ସାମାନ୍ୟତଃ କମପି ଫଳମାକ୍ଷିପତ୍ୟେବ । ନ ତୃଗୀବ ଗୁରୁମତଶ୍ରଦ୍ଧୟା ସ୍ୱସିଦ୍ଧିରେବ ବିଧେଃ ପ୍ରଯୋଜନମିତି ମନ୍ତବ୍ୟମ୍ । ପୁରୁଷପ୍ରବୃତ୍ତ୍ୟ-ନୁପପତ୍ତେର୍ଦୁଷ୍ପରିହରତ୍ୱାତ୍ । ଶ୍ରୂୟତେ ଚ ଜିତ୍ୟାଦିଷ୍ୱପି 'ଫଳଂ—ସର୍ବ ଏତେ ପୁଣ୍ୟଲୋକା ଭବନ୍ତୀତି । କର୍ମଣା ପିତୃଲୋକ ଇତି । ଧର୍ମେଣ ପାପମପନୁଦନ୍ତି ଇତ୍ୟେବମାଦିଷୁ । ତସ୍ମାଦ୍ୟୁକ୍ତମୁକ୍ତଂ—ସର୍ବକର୍ମଫଳତ୍ୟାଗଂ ପ୍ରାହୁସ୍ତ୍ୟାଗଂ ବିଚକ୍ଷଣା ଇତି ।

ନନୁ ଫଳତ୍ୟାଗେନ ପୁନରପି କଷ୍ଟଲେଷୁ କର୍ମସୁ ପ୍ରବୃତ୍ତିରେବ ନ ସ୍ୟାତ୍ ଇତି । ସର୍ବେଷାମପି କର୍ମଣାଂ ସଂଯୋଗପୃଥକ୍ତ୍ୱେନ ବିବିଦିଷାର୍ଥତୟା ବିନିଯୋଗାତ୍ । ତଥା ଚ ଶ୍ରୁତିଃ—ତମେତଂ ବେଦାନୁବଚନେନ ବ୍ରାହ୍ମଣା ବିବିଦିଷନ୍ତି ଯଜ୍ଞେନ ଦାନେନ ତପସା ଅନାଶକେନେତି । ଅତଶ୍ଚ ଶ୍ରୁତି ପଦୋକ୍ତଂ ସର୍ବଂ ଫଳଂ ବନ୍ଧକତ୍ୱେନ ତ୍ୟକ୍ତ୍ୱା ବିବିଦିଷାର୍ଥଂ ସର୍ବକର୍ମାନୁଷ୍ଠାନଂ ଘଟତ ଏବ । ବିବିଦିଷା ଚ ନିତ୍ୟାନିତ୍ୟବସ୍ତୁବିବେକେନ ନିବୃତ୍ତଦେହାଦ୍ୟଭିମାନତୟା ବୁଦ୍ଧେଃ ପ୍ରତ୍ୟକ୍ ପ୍ରବଣତା । ତାବତ୍ 'ପର୍ଯ୍ୟନ୍ତଂ ଚ ସତ୍ତ୍ୱଶୁଦ୍ଧ୍ୟର୍ଥଂ ଜ୍ଞାନାବିରୁଦ୍ଧଂ ଯଥୋଚିତମାବଶ୍ୟକଂ କର୍ମ କୁର୍ବତ ସ୍ତତ୍ଫଳତ୍ୟାଗ ଏବ କର୍ମତ୍ୟାଗୋ ନାମ । ନ ସ୍ୱରୂପେଣ । ତଥା ଚ ଶ୍ରୁତିଃ—କୁର୍ବନ୍ନେବେହ କର୍ମାଣି ଜିଜୀବିଷେଚ୍ଛତଂ ସମା ଇତି । ତତଃ ପରଂ ତୁ ସର୍ବକର୍ମନିବୃତ୍ତିଃ ସ୍ୱତ ଏବ ଭବତି । ତଦୁକ୍ତଂ ନୈଷ୍କର୍ମ୍ୟ-ସିଦ୍ଧୌ—ପ୍ରତ୍ୟକ୍ ପ୍ରବଣତାଂ ବୁଦ୍ଧେଃ କର୍ମାଣ୍ୟୁତ୍ପାଦ୍ୟ ଶୁଦ୍ଧିତଃ, କୃତାର୍ଥାନ୍ୟସ୍ତ-ମାୟାନ୍ତି ପ୍ରାବୃଡନ୍ତେ ଘନା ଇବ । ଇତି । ଉକ୍ତଂ ଚ ଭଗବତା—ଯସ୍ତ୍ୱାତ୍ମରତିରେବ ସ୍ୟାଦିତି । ବଶିଷ୍ଠେନେ ଚୋକ୍ତଂ—ନ କର୍ମାଣି ତ୍ୟଜେଦ୍ୟୋଗୀ କର୍ମଭିସ୍ତ୍ୟଜ୍ୟତେ ହ୍ୟସୌ । କର୍ମଣୋ ମୂଲଭୂତସ୍ୟ ସଙ୍କଳ୍ପସ୍ୟୈବ ନାଶତଃ । ଇତି । ଜ୍ଞାନନିଷ୍ଠା ବିକ୍ଷେପକତ୍ୱମାଲକ୍ଷ୍ୟ ତ୍ୟଜେଦ୍ ବା । ତଦୁକ୍ତଂ ଶ୍ରୀଭାଗବତେ—ତାବତ୍ କର୍ମାଣି କୁର୍ବୀତ ନ ନିର୍ବିଦ୍ୟେତ ଯାବତା । ମତ୍କଥା ଶ୍ରବଣାଦୌ ବା ଶ୍ରଦ୍ଧାଯାବନ୍ନ ଜାୟତେ । ଜ୍ଞାନନିଷ୍ଠୋ ବିରକ୍ତୋ ବା ମଦ୍ଭକ୍ତୋ ବାନପେକ୍ଷକଃ । ସଲିଙ୍ଗାନା-ଶ୍ରମାଂସ୍ତ୍ୟକ୍ତ୍ୱାଚରେଦବିଧିଗୋଚରଃ । ଇତ୍ୟାଦି । ଅଲମତିପ୍ରସଙ୍ଗେନ ପ୍ରକୃତମନୁସରାମଃ ।

ବିବୃତି—ଏ ଶ୍ଳୋକରେ ଭଗବାନ୍ କହୁଅଛନ୍ତି କାମ୍ୟକର୍ମକୁ ସ୍ୱରୂପତଃ ତ୍ୟାଗକରିବା ହିଁ ସନ୍ନ୍ୟାସ ଏବଂ ସମସ୍ତ କର୍ମର ଫଳକୁ ତ୍ୟାଗ କରିବା ହିଁ ଅର୍ଥାତ୍ ସବୁକର୍ମର ଫଳ ଈଶ୍ୱରଙ୍କପାରେ ଅର୍ପଣ କରିବା ହିଁ ତ୍ୟାଗ । କର୍ମଯୋଗୀଙ୍କ

ତ୍ୟାଜ୍ୟଂ ଦୋଷବଦିତ୍ୟେକେ କର୍ମ ପ୍ରାହୁର୍ମନୀଷିଣଃ ।
ଯଜ୍ଞଦାନତପଃକର୍ମ ନ ତ୍ୟାଜ୍ୟମିତି ଚାପରେ ॥ ୩ ॥

ପକ୍ଷରେ କାମ୍ୟ ଓ ନିଷ୍କାମ ଭେଦରେ କର୍ମ ଦୁଇ ପ୍ରକାର । ତେଣୁ କର୍ମଯୋଗୀ ଅଶ୍ୱମେଧ, ପୁତ୍ରେଷ୍ଟି ପ୍ରଭୃତି କର୍ମକୁ ସ୍ୱରୂପତଃ ତ୍ୟାଗ କରିବେ ଏବଂ ଅନ୍ୟ ସମସ୍ତ କର୍ମ କରିବେ ମାତ୍ର ତାହାର ଫଳ ପ୍ରତି ଆକାଂକ୍ଷା ରଖିବେ ନାହିଁ । ସୂକ୍ଷ୍ମଦର୍ଶୀ ପଣ୍ଡିତମାନଙ୍କ ମତରେ ଫଳତ୍ୟାଗହିଁ ପ୍ରକୃତ ତ୍ୟାଗ । ସୁତରାଂ ଯେ ଫଳତ୍ୟାଗ କରନ୍ତି ସେ କର୍ମକଲେ ମଧ୍ୟ ପ୍ରକୃତ ସନ୍ନ୍ୟାସୀ । ଗୀତା ୬ଷ୍ଠ ଅଧ୍ୟାୟ ପ୍ରଥମ ଓ ଦ୍ୱିତୀୟ ଶ୍ଳୋକରେ ଏହା କୁହାଯାଇଅଛି । ଏ ସମ୍ବନ୍ଧରେ ସନ୍ନ୍ୟାସମାର୍ଗୀ ଟୀକାକାରମାନଙ୍କର ମତ ଭିନ୍ନପ୍ରକାର, ତେଣୁ ସେମାନେ ଏ ଶ୍ଳୋକକୁ ଅନ୍ୟ ଭାବରେ ବ୍ୟାଖ୍ୟାକରି ନାନା ଯୁକ୍ତିତର୍କର ଅବତାରଣା କରିଅଛନ୍ତି । ପରବର୍ତ୍ତୀ ଶ୍ଳୋକମାନଙ୍କ ଭାବରୁ ଏହା ସ୍ପଷ୍ଟୀକୃତ ହେବ—ତେଣୁ ଏଠାରେ ସେ ସମ୍ବନ୍ଧରେ ବିସ୍ତାରିତ ଆଲୋଚନା କରାଗଲା ନାହିଁ ।

୩ । **ଅନ୍ୱୟଦୀପିକା**—ଏକେ ମନୀଷିଣଃ (ପଣ୍ଡିତମାନଙ୍କ ମଧ୍ୟରୁ କେତେକ) କର୍ମ ଦୋଷବତ୍ (କର୍ମ ଦୋଷଯୁକ୍ତ) ଇତି (ଏହି ହେତୁରୁ) ତ୍ୟାଜ୍ୟଂ ପ୍ରାହୁଃ (ତ୍ୟାଜ୍ୟ ବୋଲି କହନ୍ତି) । ଅପରେ ଚ (ଅନ୍ୟ କେତେକ ପଣ୍ଡିତ) ଯଜ୍ଞ, ଦାନ, ତପଃକର୍ମ (ଯଜ୍ଞ, ଦାନ ଓ ତପସ୍ୟାରୂପ କର୍ମ) ନ ତ୍ୟାଜ୍ୟଂ (ତ୍ୟାଜ୍ୟ ନୁହେ) ଇତି (ଏହିପରି କହନ୍ତି) ।

**ଅନୁବାଦ**—କେତେକ ପଣ୍ଡିତ କହନ୍ତି, କର୍ମ ମାତ୍ରକେ ଦୋଷଯୁକ୍ତ ଅତଏବ ତ୍ୟାଜ୍ୟ । ଅନ୍ୟ କେତେକ ପଣ୍ଡିତ କହନ୍ତି—ଯଜ୍ଞ, ଦାନ, ତପସ୍ୟାରୂପ କର୍ମ ତ୍ୟାଜ୍ୟ ନୁହେ ।

**ସୁବୋଧିନୀ ଟୀକା**—ଅବଧୂତଃ ଫଳତ୍ୟାଗ ମାତ୍ରମେବ ତ୍ୟାଗ ଶବ୍ଦାର୍ଥଃ । ନ କର୍ମତ୍ୟାଗ ଇତି । ଏତଦେବ ମତାନ୍ତରନିରାସେନ ଦୃଢ଼ୀକର୍ତ୍ତୁଂ ମତଭେଦଂ ଦର୍ଶୟତି । ତ୍ୟାଜ୍ୟମିତି । ଦୋଷବତ୍ ହିଂସାଦଦୋଷବତ୍ତ୍ୱେନ କେବଳବନ୍ଧକମିତିହେତୋଃ ସର୍ବମପି କର୍ମତ୍ୟାଜ୍ୟମିତ୍ୟେକେ ସାଂଖ୍ୟାଃ ପ୍ରାହୁର୍ମନୀଷିଣ ଇତ୍ୟର୍ଥ ଅସ୍ୟାୟଂ ଭାବଃ—ମା ହିଂସ୍ୟାତ୍ ସର୍ବଭୂତାନୀତିନିଷେଧଃ—ପୁରୁଷସ୍ୟାନର୍ଥହେତୁର୍ହିଂସାଇତ୍ୟାହ । ଅଗ୍ନିଷୋମୀୟଂ ପଶୁମାଲଭେତ ଇତ୍ୟାଦ ପ୍ରାକରଣିକୋ ବିଧିସ୍ତୁ ହିଂସାୟାଃ କ୍ରତୂପକାରକତ୍ୱମାହ । ଅତୋ ଭିନ୍ନବିଷୟତ୍ୱେନ ସାମାନ୍ୟବିଶେଷନ୍ୟାୟାଗୋଚରତ୍ୱାତ୍ ବାଧ୍ୟବାଧକତା ନାସ୍ତି ।

ଦ୍ରବ୍ୟସାଧ୍ୟେଷୁ ଚ ସର୍ବେଷ୍ୱପି କର୍ମସୁ ହିଂସାଦେଃ ସମ୍ଭବାତ୍ ସର୍ବମପି କର୍ମ-ତ୍ୟାଜ୍ୟ ମେବେତି । ତଦୁକ୍ତଂ—ଦୃଷ୍ଟବଦାନୁଶ୍ରବିକଃ ସ ହ୍ୟବିଶୁଦ୍ଧିକ୍ଷୟାତିଶୟଯୁକ୍ତ

ନିଶ୍ଚୟଂ ଶୃଣୁ ମେ ତତ୍ର ତ୍ୟାଗେ ଭରତସତ୍ତମ ।
ତ୍ୟାଗୋ ହି ପୁରୁଷବ୍ୟାଘ୍ର ତ୍ରିବିଧଃ ସଂପ୍ରକୀର୍ତ୍ତିତଃ । ୪ ।

ଇତି । ଅସ୍ୟାର୍ଥଃ—ଗୁରୁପାଠାଦନୁଶ୍ରୂୟତ ଇତି ଅନୁଶ୍ରବୋ ବେଦଃ । ତଦ୍ବୋଧିତ ଉପାୟୋ ଜ୍ୟୋତିଷ୍ଟୋମାଦିରାନୁଶ୍ରବିକଃ । ଅବିଶୁଦ୍ଧି ହିଂସା । ତଥା କ୍ଷୟୋ ବିନାଶଃ ଅଗ୍ନିହୋତ୍ରଜ୍ୟୋତିଷ୍ଟୋମାଦିଜନ୍ୟେଷୁ ସ୍ୱର୍ଗେଷୁ ତାରତମ୍ୟଂ ଚ ବର୍ତ୍ତତେ । ପରୋତ୍କର୍ଷସ୍ତୁ ସର୍ବାନ୍ ଦୁଃଖୀକରୋତି ।

ଅପରେ ତୁ ମୀମାଂସକା ଯଜ୍ଞାଦିକଂ କର୍ମ ନ ତ୍ୟାଜ୍ୟମିତି ପ୍ରାହୁଃ । ଅୟଂ ଭାବଃ । କ୍ରତ୍ୱର୍ଥାପି ସତୀୟଂ ହିଂସା ପୁରୁଷେଣୈବ କର୍ତ୍ତବ୍ୟା । ସା କ୍ରତ୍ୱନ୍ୟୋଦ୍ଦେଶେନାପି କୃତା ପୁରୁଷସ୍ୟ ପ୍ରତ୍ୟବାୟହେତୁରେବ । ଯଥାହି ବିଧିର୍ବିଧେୟସ୍ୟ ତଦୁଦ୍ଦେଶେନାନୁଷ୍ଠାନଂ ବୋଧୟେତ୍ । ତାଦର୍ଥ୍ୟଲକ୍ଷଣତ୍ୱାଚ୍ଛେଷସ୍ୟ । ନତ୍ୱେବ ନିଷେଧୋ ନିଷେଧ୍ୟସ୍ୟ । ତାଦର୍ଥ୍ୟମପେକ୍ଷତେ ପ୍ରାପ୍ତିମାତ୍ରାପେକ୍ଷିତତ୍ୱାତ୍ ଅନ୍ୟଥାଽଜ୍ଞାନପ୍ରମାଦାଦକୃତେ ଦୋଷାଭାବ ପ୍ରସଙ୍ଗାତ୍ । ତଦେବ ସମାନବିଷୟତ୍ୱେନ ସାମାନ୍ୟଶାସ୍ତ୍ରସ୍ୟ ବିଶେଷେଣ ବାଧାଭାବାତ୍ତି ଦୋଷବତ୍ତ୍ୱଂ । ଅତୋ ନିତ୍ୟଂ ଯଜ୍ଞାଦିକର୍ମ ନ ତ୍ୟାଜ୍ୟମିତି । ଅନେନ ବିଧିନିଷେଧୟୋଃ ସମାନ ବଲତା ଖ୍ୟାପିତେ ସାମାନ୍ୟବିଶେଷନ୍ୟାୟଂ ସଂପାଦୟିତୁମ୍ ।

୪ । **ଅନ୍ୱୟଦୀପିକା**—[ହେ] ଭରତସତ୍ତମ, ତତ୍ର ତ୍ୟାଗେ (ସେହି ତ୍ୟାଗ ବିଷୟରେ) ମେ (ଆମ୍ଭର) ନିଶ୍ଚୟଂ (ସିଦ୍ଧାନ୍ତ) ଶୃଣୁ (ଶୁଣ) । ପୁରୁଷବ୍ୟାଘ୍ର (ହେ ପୁରୁଷଶ୍ରେଷ୍ଠ) ତ୍ୟାଗଃ ହି (ତ୍ୟାଗ) ତ୍ରିବିଧଃ ସଂପ୍ରକୀର୍ତ୍ତିତଃ (ତିନ ପ୍ରକାର ବୋଲି କୁହାଯାଏ) ।

**ଅନୁବାଦ**—ହେ ଭରତକୁଳଶ୍ରେଷ୍ଠ, ତ୍ୟାଗ ବିଷୟରେ ଆମ୍ଭର ସିଦ୍ଧାନ୍ତ ଶୁଣ । ତ୍ୟାଗ ତିନପ୍ରକାର ବୋଲି କୁହାଯାଏ ।

**ସୁବୋଧିନୀ ଟୀକା**—ଏବଂ ମତଭେଦମୁପନ୍ୟସ୍ୟ ସ୍ୱମତଂ କଥୟିତୁମାହ—ନିଶ୍ଚୟମିତି । ତତ୍ରୈବଂ ବିପ୍ରତିପନ୍ନେ ତ୍ୟାଗେ ନିଶ୍ଚୟଂ ମେ ବଚନାଚ୍ଛୃଣୁ । ତ୍ୟାଗସ୍ୟ ଲୋକପ୍ରସିଦ୍ଧତ୍ୱାତ୍ କିମତ୍ର ଶ୍ରୋତବ୍ୟମିତି ମାଽବମଂସ୍ଥାଃ ଇତ୍ୟାହ—ହେ ପୁରୁଷବ୍ୟାଘ୍ର ପୁରୁଷଶ୍ରେଷ୍ଠ ତ୍ୟାଗୋଽୟଂ ଦୁର୍ବୋଧଃ । ହି ଯସ୍ମାଦୟଂ କର୍ମତ୍ୟାଗସ୍ତତ୍ତ୍ୱବିଦ୍ଭିସ୍ତାମସାଦିଭେଦେନ ତ୍ରିବିଧଃ ସମ୍ୟଗ୍ୱିବେକେନ ପ୍ରକୀର୍ତ୍ତିତଃ । ତ୍ରୈବିଧ୍ୟଂ ଚ ନିୟତସ୍ୟ ତୁ ସନ୍ନ୍ୟାସ କର୍ମଣ ଇତ୍ୟାଦିନା ବକ୍ଷ୍ୟତି ।

ଯଜ୍ଞଦାନତପଃ କର୍ମ ନ ତ୍ୟାଜ୍ୟଂ କାର୍ଯ୍ୟମେବ ତତ୍ ।
ଯଜ୍ଞୋଦାନଂ ତପଶ୍ଚୈବ ପାବନାନି ମନୀଷିଣାମ୍ ।୫।
ଏତାନ୍ୟପି ତୁ କର୍ମାଣି ସଙ୍ଗଂତ୍ୟକ୍ତ୍ୱା ଫଳାନି ଚ ।
କର୍ତ୍ତବ୍ୟାନୀତି ମେ ପାର୍ଥ ନିଶ୍ଚିତଂ ମତମୁତ୍ତମମ୍ ।୬।

୫ । **ଅନ୍ୱୟଦୀପିକା**—ଯଜ୍ଞଦାନତପଃ କର୍ମ (ଯଜ୍ଞ, ଦାନ ଓ ତପସ୍ୟା-ରୂପ କର୍ମ) ନ ତ୍ୟାଜ୍ୟଂ (ତ୍ୟାଜ୍ୟ ନୁହେ); ତତ୍ (ତାହା) କାର୍ଯ୍ୟଂ ଏବ (କରିବା ହିଁ କର୍ତ୍ତବ୍ୟ), [କାରଣ] ଯଜ୍ଞଃ, ଦାନଂ ତପଃ ଚ ଏବ (ଯଜ୍ଞ, ଦାନ ଓ ତପସ୍ୟା) ମନୀଷିଣାଂ (ବିବେକୀ ଲୋକଙ୍କର) ପାବନାନି (ଚିତ୍ତଶୁଦ୍ଧିକର) ।

**ଅନୁବାଦ**—ଯଜ୍ଞ, ଦାନ ଓ ତପସ୍ୟାଦି କର୍ମ ତ୍ୟାଜ୍ୟ ନୁହେ, ଏସବୁ କରିବାହିଁ କର୍ତ୍ତବ୍ୟ; କାରଣ ଯଜ୍ଞ, ଦାନ ଓ ତପସ୍ୟା ବିଦ୍ୱାନ୍ ଲୋକଙ୍କର ଚିତ୍ତଶୁଦ୍ଧିକର ।

**ସୁବୋଧିନୀ ଟୀକା**—ପ୍ରଥମଂ ତାବନ୍ନିଶ୍ଚୟମାହ—ଯଜ୍ଞେତିଦ୍ୱାଭ୍ୟାମ୍ । ମନୀଷିଣାଂ ବିବେକିନାଂ ପାବନାନି (ଚିତ୍ତ ଶୁଦ୍ଧିକରାଣି) ।

୬ । **ଅନ୍ୱୟଦୀପିକା**—[ହେ] ପାର୍ଥ, ତୁ (କିନ୍ତୁ) ଏତାନି କର୍ମାଣି ଅପି (ଏହି କର୍ମମାନଙ୍କୁ ମଧ୍ୟ) ସଙ୍ଗଂ (ଆସକ୍ତି) ଫଳାନି ଚ (ଏବଂ ଫଳ କାମନା) ତ୍ୟକ୍ତ୍ୱା (ତ୍ୟାଗ କରି) କର୍ତ୍ତବ୍ୟାନି (କରିବା ଉଚିତ) ଇତି ମେ ନିଶ୍ଚିତଂ ଉତ୍ତମଂ ମତଂ (ଏହା ଆମ୍ଭର ସ୍ଥିର ସିଦ୍ଧାନ୍ତ) ।

**ଅନୁବାଦ**—ହେ ପାର୍ଥ, କିନ୍ତୁ ଏହି ସମସ୍ତ କର୍ମକୁ ମଧ୍ୟ ଉକ୍ତିତ୍ୱାଭିମାନ ଓ ଫଳ କାମନା ତ୍ୟାଗକରି କରିବା କର୍ତ୍ତବ୍ୟ, ଏହାହିଁ ଆମ୍ଭର ଉତ୍କୃଷ୍ଟ ମତ ବା ସ୍ଥିରସିଦ୍ଧାନ୍ତ ।

**ସୁବୋଧିନୀ ଟୀକା**—ଯେନ ପ୍ରକାରେଣ କୃତାନ୍ୟେତାନି ପାବନାନି ଭବନ୍ତି ତଂ ପ୍ରକାରଂ ଦର୍ଶୟନ୍ନାହ । ଏତାନୀତି । ଯାନି ଯଜ୍ଞାଦୀନି କର୍ମାଣି ମୟା ପାବନାନୀତ୍ୟୁକ୍ତ ମେତାନ୍ୟପ୍ୟେବ କର୍ତ୍ତବ୍ୟାନି । କଥଂ ? ସଙ୍ଗଂ କର୍ତ୍ତୃତ୍ୱାଭିନିବେଶଂ ତ୍ୟକ୍ତ୍ୱା କେବଳମୀଶ୍ୱରାରାଧନତୟା କର୍ତ୍ତବ୍ୟାନୀତି । ଫଳାନି ଚ ତ୍ୟକ୍ତ୍ୱା କର୍ତ୍ତବ୍ୟାନୀତି ଚ ମେ ମତଂ ନିଶ୍ଚିତମ୍ । ଅତ ଏବୋତ୍ତମମ୍ ।

**ବିବୃତି**—୩ୟ ଶ୍ଳୋକଠାରୁ ୬ଷ୍ଠ ଶ୍ଳୋକ ମଧ୍ୟରେ ଭଗବାନ ସନ୍ନ୍ୟାସ ଓ ତ୍ୟାଗ ସମ୍ବନ୍ଧରେ ଯେଉଁ ବିବରଣ ଦେଲେ ତାହାର ସ୍ଥୂଳମର୍ମ ଏହିପରି:— ସାଂଖ୍ୟବାଦୀମାନେ କହନ୍ତି—ହିଂସାଦି ଦୋଷଦୁଷ୍ଟ ହୋଇଥିବାରୁ ସର୍ବବିଧ କର୍ମ ସର୍ବଥା ତ୍ୟାଜ୍ୟ । କିନ୍ତୁ ମୀମାଂସକମାନେ କହନ୍ତି ଯଜ୍ଞାଦି କର୍ମ ପରିତ୍ୟାଗ କରିବା ଉଚିତ ନୁହେ । କର୍ମର ଦୋଷ ବା ବନ୍ଧକତା କର୍ମରେ ନ ଥାଏ,

ନିୟତସ୍ୟ ତୁ ସନ୍ନ୍ୟାସଃ କର୍ମଣୋ ନୋପପଦ୍ୟତେ ।
ମୋହାତ୍ତସ୍ୟ ପରିତ୍ୟାଗସ୍ତାମସଃ ପରିକୀର୍ତ୍ତିତଃ । ୭ ।

ଫଳାଶାରେ ଥାଏ । ଏ କଥା ପୂର୍ବେ ଅନେକ ଥର କୁହାଯାଇଅଛି ଏବଂ ସିଦ୍ଧାନ୍ତ ହୋଇଅଛି ଯେ, ଫଳର ଆଶା ତ୍ୟାଗ କରି ଈଶ୍ୱରାର୍ପଣ ବୁଦ୍ଧିରେ ସମସ୍ତ କର୍ତ୍ତବ୍ୟ କର୍ମ କରିବାକୁ ହେବ । କର୍ମ ଦୋଷଯୁକ୍ତ ସୁତରାଂ ତ୍ୟାଜ୍ୟ—ସାଂଖ୍ୟବାଦୀମାନଙ୍କର ଏ ମତ ଗ୍ରହଣୀୟ ନୁହେ । ଦ୍ୱିତୀୟ ଶ୍ଳୋକରେ ଭଗବାନ୍ କହିଅଛନ୍ତି—କେବଳ କାମ୍ୟକର୍ମ ସନ୍ନ୍ୟାସ କରିବାକୁ ହେବ ଏବଂ ଯେବେ ଏପରି ହୁଏ ତେବେ ଧର୍ମଶାସ୍ତ୍ରରେ ନିର୍ଦ୍ଦିଷ୍ଟଥିବା ସମସ୍ତ କାମ୍ୟକର୍ମର ସନ୍ନ୍ୟାସ କରିବାକୁ ହେବ । ତେବେ ଯଜ୍ଞଚକ୍ର ବା ସୃଷ୍ଟିରକ୍ଷା ବ୍ୟାପାର ବନ୍ଦ ହୋଇଯିବ ଏବଂ ସୃଷ୍ଟିର ଧ୍ୱଂସ ହେବ । ଗୀତା ଏହାର ସମାଧାନରେ କହନ୍ତି—ଧର୍ମଶାସ୍ତ୍ର ନିର୍ଦ୍ଦିଷ୍ଟ ସମସ୍ତ କର୍ମ ସମସ୍ତେ ଯେ ସ୍ୱର୍ଗାଦିଫଳ କାମନାରେ କରିବେ—ଏପରି କୌଣସି କଥା ନାହିଁ । ଲୋକସଂଗ୍ରହ ପାଇଁ ଯଜ୍ଞକରିବା, ଦାନ କରିବା ବା ତପସ୍ୟା କରିବା ପ୍ରତ୍ୟେକର କର୍ତ୍ତବ୍ୟ । ଏ ସମସ୍ତ ନିଷ୍କାମବୁଦ୍ଧିରେ ବା କର୍ତ୍ତବ୍ୟ ପ୍ରେରଣାରେ ନ ହେବ କାହିଁକି ? ଅତଏବ ଲୋକସଂଗ୍ରହ ପାଇଁ ସ୍ୱଧର୍ମ ଅନୁସାରେ ଯେପରି ଅନ୍ୟାନ୍ୟ କାର୍ଯ୍ୟ କରାଯାଏ ସେହିପରି ଯଜ୍ଞଦାନାଦିକର୍ମ ଫଳାଶା ଓ ଆସକ୍ତି ଛାଡ଼ି କରିବା ଉଚିତ । କାରଣ ଏଗୁଡ଼ିକ ପାବନ ଅର୍ଥାତ୍ ଚିତ୍ତ ଶୁଦ୍ଧିକର ଓ ପରୋପକାର ବୁଦ୍ଧିବର୍ଦ୍ଧକ । ମୂଳ ଶ୍ଳୋକରେ 'ଏତାନ୍ୟପି' 'ଏ ସମସ୍ତ ମଧ୍ୟ'—ଏପରି ପ୍ରୟୋଗ ଅଛି । ତାହାର ଅର୍ଥ ଅନ୍ୟ ନିଷ୍କାମ କର୍ମ ପରି ଯଜ୍ଞଦାନାଦି କର୍ମ ମଧ୍ୟ କରିବା ଉଚିତ । ଏ ଭାବରେ ଈଶ୍ୱରାର୍ପଣ ବୁଦ୍ଧିରେ କର୍ମ କଲେ ସୃଷ୍ଟିଚକ୍ର ଚଳିବାରେ ବାଧା ହେବ ନାହିଁ ଏବଂ କର୍ତ୍ତାର ବୁଦ୍ଧିରେ ଫଳାଶା ନ ଥିବାରୁ ମୋକ୍ଷପ୍ରାପ୍ତିରେ ମଧ୍ୟ ବାଧା ଆସିବ ନାହିଁ ।

୭ । **ଅନ୍ୱୟଦୀପିକା**—ନିୟତସ୍ୟ କର୍ମଣଃ ତୁ (ସ୍ୱଧର୍ମାନୁସାରେ ନିର୍ଦ୍ଦିଷ୍ଟ ହୋଇଥିବା କର୍ମର ଅର୍ଥାତ୍ କର୍ତ୍ତବ୍ୟ କର୍ମର) ସନ୍ନ୍ୟାସଃ (ତ୍ୟାଗ) ନ ଉପପଦ୍ୟତେ (ଯୁକ୍ତିଯୁକ୍ତ ନୁହେ) । ମୋହାତ୍ (ମୋହବଶତଃ) ତସ୍ୟ ପରିତ୍ୟାଗଃ (ସେହି ନିୟତ କର୍ମର ପରିତ୍ୟାଗ) ତାମସଃ ପରିକୀର୍ତ୍ତିତଃ (ତାମସିକ ବୋଲି କଥିତ ହୁଏ) ।

**ଅନୁବାଦ**—ଯାହାର ପେଇଁକର୍ମ ସ୍ୱଭାବନିୟତ ଅର୍ଥାତ୍ କର୍ତ୍ତବ୍ୟରୂପରେ ନିର୍ଦ୍ଦିଷ୍ଟ ସେ କର୍ମ ତ୍ୟାଗ କରିବା ଯୁକ୍ତିଯୁକ୍ତ ନୁହେ । ମୋହବଶତଃ ସେକର୍ମ ତ୍ୟାଗ କରିବାକୁ ତାମସିକ ତ୍ୟାଗ କୁହାଯାଏ ।

**ସୁବୋଧିନୀ ଟୀକା**—ପ୍ରତିଜ୍ଞାତଂ ତ୍ୟାଗସ୍ୟ ତ୍ରୈବିଧ୍ୟମିଦାନୀଂ ଦର୍ଶୟତି । ନିୟତସ୍ୟେତି ତ୍ରିଭିଃ । କାମ୍ୟସ୍ୟ କର୍ମଣୋ ବନ୍ଧକତ୍ୱାତ୍

ଦୁଃଖମିତ୍ୟେବ ଯତ୍ କର୍ମ କାୟକ୍ଲେଶଭୟାତ୍ ତ୍ୟଜେତ୍ ।
ସ କୃତ୍ୱା ରାଜସଂ ତ୍ୟାଗଂ ନୈବ ତ୍ୟାଗଫଳଂ ଲଭେତ୍ । ୮ ।
କାର୍ଯ୍ୟମିତ୍ୟେବ ଯତ୍ କର୍ମ ନିୟତଂ କ୍ରିୟତେଽର୍ଜ୍ଜୁନ ।
ସଙ୍ଗଂ ତ୍ୟକ୍ତ୍ୱା ଫଳଞ୍ଚୈବ ସ ତ୍ୟାଗଃ ସାତ୍ତ୍ୱିକୋ ମତଃ । ୯ ।

ସନ୍ନ୍ୟାସୋଽଯୁକ୍ତଃ । ନିୟତସ୍ୟ ତୁ ନିତ୍ୟସ୍ୟ ପୁନଃ କର୍ମଣଃ ସନ୍ନ୍ୟାସସ୍ତ୍ୟାଗୋ ନୋପପଦ୍ୟତେ । ସତ୍ତ୍ୱଶୁଦ୍ଧିଦ୍ୱାରା ମୋକ୍ଷହେତୁତ୍ୱାତ୍ । ଅତସ୍ତସ୍ୟ ପରିତ୍ୟାଗ ଉପାଦେୟେଽପି ତ୍ୟାଜ୍ୟମିତ୍ୟେବଂ ଲକ୍ଷଣାନ୍ମୋହାଦେବ ଭବେତ୍ । ସ ଚ ମୋହସ୍ୟ ତାମସତ୍ୱାତ୍ତାମସଃ ପରିକୀର୍ତ୍ତିତଃ ।

**ବିବୃତି**—୯ ଶ୍ଳୋକର ଟୀକାରେ କେହି କେହି ଟୀକାକାର 'ନିୟତ' ଶବ୍ଦର ଅର୍ଥ କରନ୍ତି—ନିତ୍ୟ ନୈମିତ୍ତିକାଦି କର୍ମଭେଦ ମଧ୍ୟରୁ 'ନିତ୍ୟ' କର୍ମ । ପରବର୍ତ୍ତୀ ନବମ ଶ୍ଳୋକରେ ଏହି 'ନିୟତ' ଶବ୍ଦ 'କାର୍ଯ୍ୟ' ଶବ୍ଦ ସହିତ ଏକତ୍ର ପ୍ରଯୁକ୍ତ ହୋଇଅଛି ଓ ଏ ଅଧ୍ୟାୟର ୪୭ଶ ଶ୍ଳୋକରେ 'ସ୍ୱଭାବନିୟତଂ' ମଧ୍ୟ ଏହି ଅର୍ଥରେ ବ୍ୟବହୃତ ହୋଇଅଛି । ସୁତରାଂ ଶାସ୍ତ୍ରାନୁସାରେ ନିର୍ଦ୍ଦିଷ୍ଟ ଯଥା-ବିହିତ କର୍ମ ହିଁ ନିୟତକର୍ମ ।

**୮ । ଅନ୍ୱୟଦୀପିକା**—[ଯେଉଁ ଲୋକ] କର୍ମ ଦୁଃଖମ୍ ଇତି ଏବ ଯତ୍ ( କର୍ମ ଦୁଃଖକର ବୋଲି ) କାୟକ୍ଲେଶ ଭୟାତ୍ ( କାୟିକ କ୍ଲେଶ ଭୟରେ ) ତ୍ୟଜେତ୍ ( ତ୍ୟାଗ କରନ୍ତି ) ସଃ ରାଜସ ତ୍ୟାଗଂ କୃତ୍ୱା ( ସେ ରାଜସ ତ୍ୟାଗ କରି ) ତ୍ୟାଗଫଳଂ ନ ଲଭେତ୍ ( ତ୍ୟାଗର ଫଳ ଲାଭ କରନ୍ତି ନାହିଁ ) ।

**ଅନୁବାଦ**—ଯେଉଁ ଲୋକ କର୍ମ ଅନୁଷ୍ଠାନକୁ ଦୁଃଖକର ମନେକରି କାୟିକକ୍ଲେଶ ଭୟରେ କର୍ମତ୍ୟାଗ କରନ୍ତି ତାହା ରାଜସତ୍ୟାଗ । ରାଜସତ୍ୟାଗ-ଦ୍ୱାରା ତ୍ୟାଗର ପ୍ରକୃତ ଫଳଲାଭ ହୁଏ ନାହିଁ ।

**ସୁବୋଧିନୀ ଟୀକା**—ରାଜସତ୍ୟାଗମାହ—ଦୁଃଖମିତି । ଯଂ କଶ୍ଚିତ୍ ଅପ୍ରବୋଧଂ ବିନା—କେବଳଂ ଦୁଃଖମିତ୍ୟେବ ମତ୍ୱା ଶରୀରାୟାସଭୟାନ୍ନିତ୍ୟଂ କର୍ମ ତ୍ୟଜେଦିତି ଯତ୍ତଦ୍ଗୁଣସ୍ତ୍ୟାଗୋ ରାଜସଃ । ଦୁଃଖସ୍ୟ ରାଜସତ୍ୱାତ୍ । ଅତସ୍ତଂ ରାଜସ ତ୍ୟାଗଂ କୃତ୍ୱା ସ ରାଜସଃ ପୁରୁଷସ୍ତ୍ୟାଗସ୍ୟ ଫଳଂ ଜ୍ଞାନନିଷ୍ଠାଲକ୍ଷଣଂ ନୈବ ଲଭତ ଇତ୍ୟର୍ଥଃ ।

**୯ । ଅନ୍ୱୟଦୀପିକା**—[ହେ] ଅର୍ଜ୍ଜୁନ, ସଙ୍ଗଂ ଫଳଂ ଚ ଏବ (ସଙ୍ଗ ଓ ଫଳକାମନା) ତ୍ୟକ୍ତ୍ୱା (ତ୍ୟାଗକରି) କାର୍ଯ୍ୟଂ ଇତି ଏବ (କେବଳ କର୍ତ୍ତବ୍ୟ ଏହା ଭାବି) ଯତ୍ ନିୟତଂ କର୍ମ (ଯାହା ସ୍ୱଧର୍ମାନୁସାରେ ନିର୍ଦ୍ଦିଷ୍ଟ କର୍ମ) କ୍ରିୟତେ (କରାଯାଏ) ସଃ ତ୍ୟାଗଃ (ସେହି ତ୍ୟାଗ) ସାତ୍ତ୍ୱିକଃ ମତଃ (ସାତ୍ତ୍ୱିକ ନାମରେ କଥିତ ହୁଏ) ।

ନ ଦ୍ୱେଷ୍ଟ୍ୟକୁଶଳଂ କର୍ମ କୁଶଳେ ନାନୁଷଜ୍ଜତେ ।
ତ୍ୟାଗୀ ସତ୍ତ୍ୱସମାବିଷ୍ଟୋ ମେଧାବୀ ଛିନ୍ନସଂଶୟଃ । ୧୦ ।
ନହି ଦେହଭୃତା ଶକ୍ୟଂ ତ୍ୟକ୍ତୁଂ କର୍ମାଣ୍ୟଶେଷତଃ ।
ଯସ୍ତୁ କର୍ମଫଳତ୍ୟାଗୀ ସ ତ୍ୟାଗୀତ୍ୟଭିଧୀୟତେ । ୧୧ ।

**ଅନୁବାଦ**—ହେ ଅର୍ଜୁନ, କର୍ତ୍ତୃତ୍ୱାଭିମାନ ଓ ଫଳକାମନା ତ୍ୟାଗକରି କେବଳ କର୍ତ୍ତବ୍ୟ ଜ୍ଞାନରେ ଯେଉଁ ବିହିତ କର୍ମ କରାଯାଏ ତାହାକୁ ସାତ୍ତ୍ୱିକ ତ୍ୟାଗ କୁହାଯାଏ ।

**ସୁବୋଧିନୀ ଟୀକା**—ସାତ୍ତ୍ୱିକଂ ତ୍ୟାଗମାହ, କାର୍ଯ୍ୟମିତି । କାର୍ଯ୍ୟମିତ୍ୟେବ ବୁଦ୍ଧ୍ୱା ନିୟତମବଶ୍ୟକର୍ତ୍ତବ୍ୟତୟା ବିହିତଂ କର୍ମ ସଙ୍ଗଂ ଫଳଂ ଚ ତ୍ୟକ୍ତ୍ୱା କ୍ରିୟତେ ଇତି ଯତ୍ତାଦୃଶସ୍ତ୍ୟାଗଃ ସାତ୍ତ୍ୱିକୋମତଃ ।

**ବିବୃତି**—ଏ ଶ୍ଳୋକରେ 'ନିୟତ' କର୍ମର ଅର୍ଥ କର୍ତ୍ତବ୍ୟ କର୍ମ, ତାହା ସ୍ୱରୂପତଃ ତ୍ୟାଗ କରିବାକୁ ହେବ ନାହିଁ, ତାହାର ଫଳକାମନା ଓ କର୍ତ୍ତୃତ୍ୱାଭିମାନମାତ୍ର ତ୍ୟାଗ କରିବାକୁ ହେବ ।

**୧୦ । ଅନ୍ୱୟଦୀପିକା**—ସତ୍ତ୍ୱସମାବିଷ୍ଟଃ (ସତ୍ତ୍ୱଗୁଣ ବିଶିଷ୍ଟ) ଛିନ୍ନସଂଶୟଃ (ସଂଶୟ ରହିତ) ମେଧାବୀ (ଜ୍ଞାନୀ) ତ୍ୟାଗୀ (ତ୍ୟାଗୀ ଲୋକ) ଅକୁଶଳଂ (ଦୁଃଖକର) କର୍ମ ନ ଦ୍ୱେଷ୍ଟି (କର୍ମକୁ ଦ୍ୱେଷ କରନ୍ତି ନାହିଁ) କୁଶଳେ (ସୁଖକର କର୍ମରେ) ନ ଅନୁଷଜ୍ଜତେ (ଆସକ୍ତ ହୁଅନ୍ତି ନାହିଁ) ।

**ଅନୁବାଦ**—ସତ୍ତ୍ୱଗୁଣବିଶିଷ୍ଟ, ଜ୍ଞାନୀ, ସଂଶୟଶୂନ୍ୟ ତ୍ୟାଗୀ ପୁରୁଷ ଦୁଃଖକର କର୍ମକୁ ଦ୍ୱେଷ କରନ୍ତି ନାହିଁ କିମ୍ବା ସୁଖକର କର୍ମରେ ଆସକ୍ତ ହୁଅନ୍ତି ନାହିଁ ।

**ସୁବୋଧିନୀ ଟୀକା**—ଏବମ୍ଭୂତସାତ୍ତ୍ୱିକତ୍ୟାଗପରିନିଷ୍ଠିତସ୍ୟ ଲକ୍ଷଣମାହ, ନ ଦ୍ୱେଷ୍ଟୀତ୍ୟାଦି, ସତ୍ତ୍ୱସମାବିଷ୍ଟଃ ସତ୍ତ୍ୱେନ ସଂବ୍ୟାପ୍ତଃ ସାତ୍ତ୍ୱିକତ୍ୟାଗୀ । ଅକୁଶଳଂ ଦୁଃଖାବହଂ ଶିଶିରେ ପ୍ରାତଃସ୍ନାନାଦିକଂ କର୍ମ ନ ଦ୍ୱେଷ୍ଟି । କୁଶଳେ ଚ ସୁଖକରେ କର୍ମଣି ନିଦାଘେ ମଧ୍ୟାହ୍ନ ସ୍ନାନାଦୌ ନାନୁଷଜ୍ଜତେ ପ୍ରୀତିଂ ନ କରୋତି । ତତ୍ରହେତୁଃ—ମେଧାବୀ ସ୍ଥିରବୁଦ୍ଧିଃ । ଯତ ଏବଂ ପରପରମ୍ପରାବାଧ ମଜ୍ଜଦପି ଦୁଃଖଂ ସହତେ ସ୍ୱର୍ଗାଦିସୁଖଂ ଚ ତ୍ୟଜତି ତତ କ୍ଷୟିଦେତଦ୍ଭୋତ୍କାଳିକଂ ସୁଖଂ ଦୁଃଖଂ ଚେତ୍ୟେବମନୁସନ୍ଧାନବାନିତ୍ୟର୍ଥଃ । ଅତଏବ ଛିନ୍ନସଂଶୟୋ ମିଥ୍ୟାଜ୍ଞାନଂ ଛିତ୍ତ୍ୱୈବ ସୁଖଦୁଃଖୟୋରୁପଦତ୍ସାପରିତ୍ୟାଗୀ ଲକ୍ଷଣଂ ଯସ୍ୟ ସଃ ।

**୧୧ । ଅନ୍ୱୟଦୀପିକା**—ଦେହଭୃତା ( ଦେହାଭିମାନୀ ଲୋକ ) ଅଶେଷତଃ ( ନିଃଶେଷରୂପରେ ) କର୍ମାଣି ତ୍ୟକ୍ତୁଂ ନ ହି ଶକ୍ୟଂ ( କର୍ମସମୂହ

ଅନିଷ୍ଟମିଷ୍ଟଂ ମିଶ୍ରଂ ଚ ତ୍ରିବିଧଂ କର୍ମଣଃ ଫଳମ୍ ।
ଭବତ୍ୟତ୍ୟାଗିନାଂ ପ୍ରେତ୍ୟ ନ ତୁ ସନ୍ନ୍ୟାସିନାଂ କ୍ୱଚିତ୍ ॥ ୧୨ ॥

ତ୍ୟାଗକରି ପାରନ୍ତି ନାହିଁ) । ଯଃ ତୁ (କିନ୍ତୁ ଯେ) କର୍ମଫଳତ୍ୟାଗୀ (କର୍ମଫଳ ତ୍ୟାଗ କରିଅଛନ୍ତି) ସଃ ତ୍ୟାଗୀ ଇତି ଅଭିଧୀୟତେ (ସେହି ଏକା ତ୍ୟାଗୀ ବୋଲି ଅଭିହିତ ହୁଅନ୍ତି) ।

**ଅନୁବାଦ**—ଦେହାଭିମାନୀ ପୁରୁଷ କେତେବେଳେ ହେଲେ କର୍ମ ସମ୍ପୂର୍ଣ୍ଣରୂପେ ତ୍ୟାଗ କରି ପାରନ୍ତି ନାହିଁ, କିନ୍ତୁ ଯେ କର୍ମକରି ମଧ୍ୟ କର୍ମର ଫଳ ତ୍ୟାଗକରନ୍ତି, ତାହାଙ୍କୁ ହିଁ ପ୍ରକୃତ ତ୍ୟାଗୀ କୁହାଯାଏ ।

**ସୁବୋଧିନୀ ଟୀକା** — ନନ୍ୱେବଂଭୂତାତ୍ କର୍ମଫଳତ୍ୟାଗାଦ୍‌ବରଂ ସର୍ବକର୍ମତ୍ୟାଗଃ । ତଥା ସତି କର୍ମବିକ୍ଷେପାଭାବେନ ଜ୍ଞାନନିଷ୍ଠା ସୁଖଂ ସମ୍ପଦ୍ୟତେ, ତତ୍ରାହ—ନ ହୀତି । ଦେହଭୃତା ଦେହାତ୍ମାଭିମାନବତା ନିଃଶେଷେଣ ସର୍ବାଣି ତ୍ୟକ୍ତୁଂ ନ ହି ଶକ୍ୟମ୍ । ତଦୁକ୍ତଂ ନ ହି କଶ୍ଚିତ୍ କ୍ଷଣମପି ଜାତୁ ତିଷ୍ଠତ୍ୟକର୍ମକୃଦିତ୍ୟାଦିନା । ତସ୍ମାଦ୍ ଯସ୍ତୁ କର୍ମାଣି କୁର୍ବନ୍ନପି କର୍ମଫଳତ୍ୟାଗୀ ସ ଏବ ମୁଖ୍ୟସ୍ତ୍ୟାଗୀତ୍ୟଭିଧୀୟତେ ।

**୧୨ । ଅନ୍ୱୟଦୀପିକା**—ଅତ୍ୟାଗିନାଂ ( ସକାମ ଲୋକମାନଙ୍କର ) ପ୍ରେତ୍ୟ (ପରଲୋକରେ) ଅନିଷ୍ଟଂ (ଅକଲ୍ୟାଣକର) ଇଷ୍ଟଂ (କଲ୍ୟାଣକର) ମିଶ୍ରଂ (ଇଷ୍ଟାନିଷ୍ଟ ଉଭୟ ମିଶ୍ରିତ) ତ୍ରିବିଧଂ କର୍ମଣଃ ଫଳଂ (କର୍ମର ତିନି ପ୍ରକାର ଫଳ) ଭବତି (ହୋଇଥାଏ); ତୁ ସନ୍ନ୍ୟାସିନାଂ (ଫଳତ୍ୟାଗୀମାନଙ୍କର) ନ କ୍ୱଚିତ୍ (କେତେବେଳେ ହୁଏ ନାହିଁ) ।

**ଅନୁବାଦ**—ଯେଉଁମାନେ ଫଳକାମନା ତ୍ୟାଗକରି ନ ଥାନ୍ତି, ସେହି ଅତ୍ୟାଗୀ ଲୋକମାନଙ୍କର ମୃତ୍ୟୁ ପରେ ଅନିଷ୍ଟ, ଇଷ୍ଟ ଓ ଇଷ୍ଟାନିଷ୍ଟ—ଏହି ତିନିପ୍ରକାର ଫଳ ହୁଏ । କିନ୍ତୁ ଯେଉଁମାନେ ସନ୍ନ୍ୟାସୀ ଅର୍ଥାତ୍ କର୍ମଫଳ ତ୍ୟାଗୀ—ସେମାନଙ୍କର କେବେହେଲେ ଏପରି ହୁଏ ନାହିଁ ।

**ସୁବୋଧିନୀ ଟୀକା**—ଏବଂଭୂତସ୍ୟ କର୍ମଫଳ ତ୍ୟାଗସ୍ୟଫଳମାହ—ଅନିଷ୍ଟମିତି । ଅନିଷ୍ଟଂ ନାରକିତ୍ୱଂ, ଇଷ୍ଟଂ ଦେବତ୍ୱଂ, ମିଶ୍ରଂ ମନୁଷ୍ୟତ୍ୱମ୍, ଏବଂ ତ୍ରିବିଧଂ ପାପସ୍ୟ, ପୁଣ୍ୟସ୍ୟ ଉଭୟମିଶ୍ରସ୍ୟ ଚ କର୍ମଣୋ ଯତ୍ଫଳଂ ପ୍ରସିଦ୍ଧମ୍—ତତ୍ସର୍ବମତ୍ୟାଗିନାଂ ସକାମାନାମେବ ପ୍ରେତ୍ୟ ପରତ୍ର ଭବତି । ତେଷାଂ ତ୍ରିବିଧକର୍ମସମ୍ଭବାତ୍ । ନ ତୁ ସନ୍ନ୍ୟାସିନାଂ କ୍ୱଚିଦପି ଭବତି । ସନ୍ନ୍ୟାସିଶବ୍ଦେନାତ୍ର ଫଳତ୍ୟାଗସାମ୍ୟାତ୍ ପ୍ରକୃତାଃ କର୍ମଫଳତ୍ୟାଗିନୋଽପି ଗୃହ୍ୟନ୍ତେ । ଅନାଶ୍ରିତଃ କର୍ମଫଳଂ କାର୍ଯ୍ୟଂ କର୍ମ କରୋତି ଯଃ । ସ ସନ୍ନ୍ୟାସୀ ଚ

ପଞ୍ଚୈତାନି ମହାବାହୋ କାରଣାନି ନିବୋଧ ମେ
ସାଂଖ୍ୟେ କୃତାନ୍ତେ ପ୍ରୋକ୍ତାନି ସିଦ୍ଧୟେ ସର୍ବକର୍ମଣାମ୍ ।୧୩।

ଯୋଗୀ ତେଭ୍ୟୋଽବମାଦୌ ଚ କର୍ମଫଲତ୍ୟାଗିଷୁ ସନ୍ନ୍ୟାସିଶବ୍ଦପ୍ରୟୋଗଦର୍ଶନାତ୍ । ତେଷାଂ ସାତ୍ତ୍ୱିକାନାଂ ପାପାସମ୍ଭବାଦୀଶ୍ୱରାର୍ପଣେନ ଚ ପୁଣ୍ୟଫଲସ୍ୟ ତ୍ୟକ୍ତତ୍ୱାତ୍ ତ୍ରିବିଧମପି କର୍ମଫଲଂ ନ ଭବତୀତ୍ୟର୍ଥଃ ।

**ବିବୃତି**—ଇହ ଲୋକରେ କୃତ କର୍ମର ଫଳ ମୃତ୍ୟୁ ପରେ ଭୋଗ କରିବାକୁ ହୁଏ । ଯେଉଁମାନେ ସକାମକର୍ମୀ ସେମାନେ ସ୍ୱକୃତ ପୁଣ୍ୟକର୍ମର ଆଧିକ୍ୟରେ ଦେବଲୋକ ପ୍ରାପ୍ତ ହୁଅନ୍ତି, ପାପ କର୍ମର ଆଧିକ୍ୟରେ ନରକଭୋଗ କରନ୍ତି ଏବଂ ପାପପୁଣ୍ୟର ମିଶ୍ରଣରେ ମନୁଷ୍ୟ ଲୋକ ପାଆନ୍ତି । ମାତ୍ର ଯେଉଁମାନେ କର୍ମର ଫଳକାମନା ତ୍ୟାଗ କରିଥାଆନ୍ତି, ସେମାନେ ମୋକ୍ଷର ଅଧିକାରୀ ହୁଅନ୍ତି । ଏ ଶ୍ଳୋକରେ ସନ୍ନ୍ୟାସୀ ଶବ୍ଦ କର୍ମଫଳ ତ୍ୟାଗୀ ଅର୍ଥରେ ପ୍ରଯୁକ୍ତ ହୋଇଅଛି । (ସ୍ୱାମୀଙ୍କ ଟୀକା ଦେଖ) ।

**୧୩ । ଅନ୍ୱୟଦୀପିକା**—[ହେ] ମହାବାହୋ, ସାଂଖ୍ୟେ କୃତାନ୍ତେ (ବେଦାନ୍ତ ଶାସ୍ତ୍ରରେ) ସର୍ବକର୍ମଣାଂ ସିଦ୍ଧୟେ (ସମସ୍ତ କର୍ମ ସମ୍ପାଦନ ପକ୍ଷରେ) ପ୍ରୋକ୍ତାନି (କଥିତ) ଏତାନି ପଞ୍ଚକାରଣାନି (ଏହି ପାଞ୍ଚଗୋଟି କାରଣ) ମେ (ଆମ୍ଭଠାରୁ) ନିବୋଧ (ଅବଗତ ହୁଅ) ।

**ଅନୁବାଦ**—ହେ ମହାବାହୋ, କୌଣସି କର୍ମ ସମ୍ପାଦନ ପକ୍ଷରେ ବେଦାନ୍ତ ଶାସ୍ତ୍ରରେ ପାଞ୍ଚଗୋଟି କାରଣ ବର୍ଣ୍ଣିତ ଅଛି, ତାହା ଆମ୍ଭଠାରୁ ଅବଗତ ହୁଅ ।

**ସୁବୋଧିନୀ ଟୀକା**—ନନୁ କର୍ମ କୁର୍ବତଃ କର୍ମଫଲଂ କଥଂ ନ ଭବେଦିତ୍ୟାଶଙ୍କ୍ୟ ସଙ୍ଗତ୍ୟାଗିନୋ ନିରହଙ୍କାରସ୍ୟ ସ୍ୱତଃ କର୍ମଫଲେ ନ ଲେପୋ ନାସ୍ତୀତ୍ୟୁପପାଦୟିତୁମାହ—ପଞ୍ଚେତି ପଞ୍ଚଭିଃ । ସର୍ବକର୍ମଣାଂ ସିଦ୍ଧୟେ ନିଷ୍ପତ୍ତୟେ ଇମାନି (ଏତାନି) ବକ୍ଷ୍ୟମାଣାନି ପଞ୍ଚ କାରଣାନି ମେ ବଚନାନ୍ନିବୋଧ ଜାନୀହି । ଆତ୍ମନଃ କର୍ତ୍ତୃତ୍ୱାଭିମାନନିବୃତ୍ତ୍ୟର୍ଥମବଶ୍ୟମେତାନି ଜ୍ଞାତବ୍ୟାନୀତ୍ୟେବମ୍ । ତେଷାଂ ସ୍ତୁତ୍ୟର୍ଥମେବାହ—ସାଂଖ୍ୟ ଇତି । ସମ୍ୟକ୍ ଖ୍ୟାୟତେ ପ୍ରକାଶ୍ୟତେ ପରମାତ୍ମା ଅନେନେତି ସାଂଖ୍ୟଂ ତତ୍ତ୍ୱଜ୍ଞାନମ୍ । ପ୍ରକାଶମାନ ଆତ୍ମବୋଧଃ ସାଂଖ୍ୟମ୍, ତସ୍ମିନ୍, କୃତଂ କର୍ମ ତସ୍ୟାନ୍ତଃ ସମାପ୍ତିର୍ଯସ୍ମିନ୍ନିତି କୃତାନ୍ତଃ । ତସ୍ମିନ୍ । ବେଦାନ୍ତ ସିଦ୍ଧାନ୍ତ ଇତ୍ୟର୍ଥଃ । ଯଦ୍ୱା ସଂଖ୍ୟାୟନ୍ତେ ଗଣ୍ୟନ୍ତେ ତତ୍ତ୍ୱାନ୍ୟସ୍ମିନ୍ନିତି ସାଂଖ୍ୟମ୍ । କୃତୋଽନ୍ତୋ ନିର୍ଣ୍ଣୟୋଽସ୍ମିନ୍ନିତି କୃତାନ୍ତଂ ସାଂଖ୍ୟଶାସ୍ତ୍ରମେବ ତସ୍ମିନ୍ ପ୍ରୋକ୍ତାନି । ଅତଃ ସମ୍ୟଙ୍ନିବୋଧେତ୍ୟର୍ଥଃ ।

ଅଧିଷ୍ଠାନଂ ତଥା କର୍ତ୍ତା କରଣଂ ଚ ପୃଥଗ୍‌ବିଧମ୍ ।
ବିବିଧାଶ୍ଚ ପୃଥକ୍ ଚେଷ୍ଟା ଦୈବଂ ଚୈବାତ୍ର ପଞ୍ଚମମ୍ । ୧୪ ।

**ବିବୃତି**—ସଙ୍ଗ ତ୍ୟାଗୀ ନିରହଂକାର ଲୋକଙ୍କର କର୍ମଫଳରେ **ଆସକ୍ତି** ନ ଥାଏ । ତେଣୁ କର୍ମ କଲେ ମଧ୍ୟ ତାଙ୍କର କର୍ମର ଫଳ ହୁଏ ନାହିଁ । ପ୍ରତ୍ୟେକ କର୍ମ କପର ସମ୍ପାଦିତ ହୁଏ—ଏହା ଜାଣିପାରିଲେ କର୍ତ୍ତୃତ୍ୱାଭିମାନ ନିବୃତ୍ତ ହୁଏ—ଏହା ବୁଝାଇବା ପାଇଁ ଏ ଶ୍ଳୋକର ଅବତାରଣା । ପରବର୍ତ୍ତୀ ଦୁଇ ଶ୍ଳୋକରେ ମଧ୍ୟ ଏହା ଆଲୋଚିତ ହେବ ।

କେହି କେହି କହନ୍ତି, ଏ ଶ୍ଳୋକରେ ବ୍ୟବହୃତ "ସାଂଖ୍ୟେ କୃତାନ୍ତେ" ଏହାର ଅର୍ଥ ବେଦାନ୍ତ ସିଦ୍ଧାନ୍ତ, ଅନ୍ୟ କେହି କେହି ଏହାର ଅର୍ଥ ସାଂଖ୍ୟଦର୍ଶନ ବୋଲି କହନ୍ତି (ସ୍ୱାମୀଙ୍କ ଟୀକା ଦେଖ) ।

**୧୪ । ଅନ୍ୱୟଦୀପିକା**—ଅଧିଷ୍ଠାନଂ (ଦେହ), ତଥା କର୍ତ୍ତା (ଅହଂକାର), ପୃଥଗ୍‌ବିଧଂ କରଣଂ (ପୃଥକ୍ ପୃଥକ୍ ସାଧନ ଅର୍ଥାତ୍ ଇନ୍ଦ୍ରିୟ) ବିବିଧାଃ (ନାନାପ୍ରକାର) ପୃଥକ୍ ଚେଷ୍ଟାଃ (ପୃଥକ୍ ପୃଥକ୍ ବ୍ୟାପାର) ଅତ୍ର (ଏହି କାରଣମାନଙ୍କ ମଧ୍ୟରେ) ପଞ୍ଚମଂ (ପଞ୍ଚମ ସ୍ଥାନୀୟ) ଦୈବମ୍ ଏବ ଚ (ଦୈବ) ।

**ଅନୁବାଦ**—ଦେହ, କର୍ତ୍ତା, କରଣ ଅର୍ଥାତ୍ ସାଧନ (ଯନ୍ତ୍ର), କର୍ତ୍ତାର ଅନେକ ପ୍ରକାର ଚେଷ୍ଟା ବା ବ୍ୟାପାର ଏବଂ ପଞ୍ଚମ କାରଣ ଦୈବ ।

**ସୁବୋଧିନୀ ଟୀକା**—ଇତ୍ୟେବାହ—ଅଧିଷ୍ଠାନମିତି । ଅଧିଷ୍ଠାନଂ ଶରୀରମ୍ । କର୍ତ୍ତା ଚିଦଚିଦ୍‌ଗ୍ରନ୍ଥିରହଂକାରଃ । ପୃଥଗ୍‌ବିଧମନେକପ୍ରକାରଂ । କରଣଂ ଚକ୍ଷୁଃ ଶ୍ରୋତ୍ରାଦି । ବିବିଧାଃ କାର୍ଯ୍ୟତଃ ସ୍ୱରୂପତଶ୍ଚ । ପୃଥଗ୍‌ଭୂତାଶ୍ଚେଷ୍ଟାଃ ପ୍ରାଣାପାନାଦୀନାଂ ବ୍ୟାପାରାଃ । ଅତ୍ରୈତେଷ୍ୱେବ ପଞ୍ଚମଂ କାରଣଂ ଦୈବମ୍ । ଚକ୍ଷୁରାଦ୍ୟନୁଗ୍ରାହକମାଦିତ୍ୟାଦି । ସର୍ବ ପ୍ରେରକୋଽନ୍ତର୍ଯ୍ୟାମୀ ବା ।

**ବିବୃତି**—କୌଣସି କାର୍ଯ୍ୟ କରିବାକୁ ହେଲେ ସ୍ଥାନ, କର୍ତ୍ତା, କରଣ ବା ସାଧନ, କର୍ତ୍ତାର ନାନାବିଧ ଚେଷ୍ଟା ଆବଶ୍ୟକ ହୋଇଥାଏ । ବେଦାନ୍ତ ଶାସ୍ତ୍ର ମତରେ ଏ ଶରୀର ହିଁ ସ୍ଥାନ । ଅହଂକାରର ନାମ କର୍ତ୍ତା, ଚକ୍ଷୁ କର୍ଣ୍ଣପ୍ରଭୃତି ଇନ୍ଦ୍ରିୟ କରଣ ବା ସାଧନଯନ୍ତ୍ର ଏବଂ ପ୍ରାଣାପାନାଦି ବ୍ୟାପାର ଚେଷ୍ଟା । ଏ ସମସ୍ତର ସହାୟତାରେ କର୍ମ ନିଷ୍ପନ୍ନ ହୁଏ । ଏ ସମସ୍ତ ଛଡ଼ା 'ଦୈବ'—କର୍ମ ସମ୍ପାଦନର ପଞ୍ଚମ କାରଣ ରୂପେ ଏଠାରେ କଥିତ ହୋଇଅଛି । ଏ ଦୈବ କଅଣ ? କେହି କେହି କହନ୍ତି—ଚକ୍ଷୁପ୍ରଭୃତି ଇନ୍ଦ୍ରିୟଗଣଙ୍କର ପ୍ରେରକ ଦେବତାମାନଙ୍କୁ ଏଠାରେ ଦୈବ ନାମରେ ଲକ୍ଷ୍ୟ କରାଯାଇଅଛି । ଚକ୍ଷୁର ଦେବତା ସୂର୍ଯ୍ୟ, ଶରୀରର

ଦେବତା ପୃଥିବୀ, ମନର ଦେବତା ଚନ୍ଦ୍ର—ଇତ୍ୟାଦି । କେହି କେହି କହନ୍ତି ଏଠାରେ ଦୈବର ଅର୍ଥ ଧର୍ମାଧର୍ମସଂସ୍କାର । ଅନ୍ୟମାନଙ୍କ ମତରେ 'ଦୈବ'ର ଅର୍ଥ ସର୍ବପ୍ରେରକ ଅନ୍ତର୍ଯାମୀ, ଇତ୍ୟାଦି । ଏ ଶବ୍ଦର ଅର୍ଥରେ ଏଭଳି ବିଭିନ୍ନ ମତ ଥିଲେହେଁ ସମସ୍ତ ଅର୍ଥ ଯେ ଏକ ଭାବର ଅଭିବ୍ୟକ୍ତି—ଏହା ଭାବିଲେ ଜାଣି ହୁଏ । ମନୁଷ୍ୟର କର୍ମ ପ୍ରବୃତ୍ତିର ହେତୁ କଏ ? ଏହି ଅଧ୍ୟାୟର ୪୬ଶ ଶ୍ଳୋକରେ ଭଗବାନ୍ ସ୍ୱୟଂ କହିଅଛନ୍ତି—"ଯତଃ ପ୍ରବୃତ୍ତିର୍ଭୂତାନାଂ ଯେନ ସର୍ବମିଦଂ ତତମ୍, ସ୍ୱକର୍ମଣା ତମଭ୍ୟର୍ଚ୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ ।" ଅର୍ଥାତ୍ ଯାହାଙ୍କଠାରୁ ପ୍ରାଣୀମାନଙ୍କର ପ୍ରବୃତ୍ତି ଓ ଯେ ସମଗ୍ର ବ୍ରହ୍ମାଣ୍ଡରେ ବ୍ୟାପ୍ତ ହୋଇ ରହିଅଛନ୍ତି, ନିଜ କର୍ତ୍ତବ୍ୟ କର୍ମଦ୍ୱାରା ତାହାଙ୍କୁ ପୂଜା କଲେ ଲୋକର ସିଦ୍ଧି ଲାଭ ହୁଏ । ସୁତରାଂ ମନୁଷ୍ୟର ପ୍ରତ୍ୟେକ କର୍ମ ସମ୍ପାଦନରେ ଅନ୍ତର୍ଯାମୀ ପୁରୁଷଙ୍କର ପ୍ରେରଣା ଥାଏ—ଏହା ସ୍ପଷ୍ଟ ଜଣାଯାଉଅଛି । ଶ୍ରୀମଦ୍ଭାଗବତରେ ଅଛି (୫।୧।୧୪)—

"ସର୍ବେ ବୟାମୋ ବଳମୀଶ୍ୱରାୟ ପ୍ରୋତା ନସୀବ ଦ୍ୱିପଦେ ଚତୁଷ୍ପଦଃ"

ବଳଦ ପ୍ରଭୃତି ଚତୁଷ୍ପଦ ଜନ୍ତୁ ଯେପରି ନାକରେ ବନ୍ଧା ଥିବା ରଜ୍ଜୁଦ୍ୱାରା ବାଧ୍ୟ ହୋଇ ମନୁଷ୍ୟ ପାଇଁ କର୍ମ କରନ୍ତି, ଆମ୍ଭେମାନେ ସେହିପରି ନିଗୁଣରେ ବଦ୍ଧ ହୋଇ ଈଶ୍ୱରେଚ୍ଛାରେ କର୍ମ କରୁଁ । ଆମ ଓଡ଼ିଆରେ ମଧ୍ୟ କହନ୍ତି, 'ଦଉଡ଼ି ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରେ ତେଣିକି ଯାଇ', ଏପରି ଅବସ୍ଥାରେ ସେହି ଅନ୍ତର୍ଯାମୀଙ୍କ ପ୍ରେରଣାରେ ଆମ୍ଭେମାନେ କର୍ମ କରୁଥାଉଁ । ସୁତରାଂ ଏଠାରେ 'ଦୈବ'ର ଅର୍ଥ ସର୍ବପ୍ରେରକ ଅନ୍ତର୍ଯାମୀ । ପୁରୁଷକାର ରୂପରେ ସେହି ମଧ୍ୟ ଅଦୃଷ୍ଟକୁ ଖଣ୍ଡନ କରିବାକୁ ପ୍ରେରଣା ଦିଅନ୍ତି ।

ଏହି ଆଲୋଚନାରୁ ଜଣାଯାଏ ଯେ ଯେଉଁସବୁ କର୍ମ ମନୁଷ୍ୟ ନିଜର କୃତ ବୋଲି ମନେକରେ, ପ୍ରକୃତରେ ସେ ସବୁ ତାହାର ନିଜ ଚେଷ୍ଟାର ଫଳ ନୁହେ । ପ୍ରକୃତ ପକ୍ଷରେ କର୍ମସବୁ ମନୁଷ୍ୟର ନିଜ ଚେଷ୍ଟା ଓ ଅନ୍ୟର ସହାୟତାର ଫଳ । ଯେପରି କୃଷି କେବଳ ମନୁଷ୍ୟର ନିଜ ଚେଷ୍ଟା ଉପରେ ନିର୍ଭର କରେ ନାହିଁ, ପରନ୍ତୁ ସେଥିପାଇଁ ଜମି, ବିହନ, ବଳଦ, ଖତ ପ୍ରଭୃତି ଅନ୍ୟ ସାହାଯ୍ୟ ଲୋଡ଼ା ହୁଏ, ସେହିପରି କୌଣସି କାର୍ଯ୍ୟ ସାଧନ ଲାଗି ଜଗତର ଅନ୍ୟାନ୍ୟ ବ୍ୟାପାରର ସହାୟତା ଦରକାର ହୁଏ । ତନ୍ମଧ୍ୟରୁ କେତେଗୁଡ଼ିଏ ବ୍ୟାପାର ସେ ଜାଣି ସେମାନଙ୍କ ସହାୟତାରେ କର୍ମ କରେ; କିନ୍ତୁ ମନୁଷ୍ୟର ଜ୍ଞାନ ବାହାରେ ସୃଷ୍ଟିର ଅତୁଳ କେତେକ ବ୍ୟାପାର ଅଛି, ଯାହା ସେ ଜାଣେ ନାହିଁ । ତାହାହିଁ ଏଠାରେ ଦୈବ ନାମରେ କଥିତ ହୋଇଅଛି । ଯେତେବେଳେ କାର୍ଯ୍ୟ ସିଦ୍ଧି ପାଇଁ ଯାହା ଯାହା ଦରକାର ସେଥିମଧ୍ୟରୁ କେତେକ ତାହାର ଜ୍ଞାନଗୋଚର ନୁହେ

ଶରୀରବାଙ୍‌ମନୋଭିର୍ଯତ୍‌ କର୍ମ ପ୍ରାରଭତେ ନରଃ ।
ନ୍ୟାଯ୍ୟଂ ବା ବିପରୀତଂ ବା ପଞ୍ଚୈତେ ତସ୍ୟ ହେତବଃ । ୧୫ ।
ତତ୍ରୈବଂ ସତି କର୍ତ୍ତାରମାତ୍ମାନଂ କେବଳଂ ତୁ ଯଃ ।
ପଶ୍ୟତ୍ୟକୃତବୁଦ୍ଧିତ୍ୱାନ୍ନ ସ ପଶ୍ୟତି ଦୁର୍ମତିଃ । ୧୬ ।

ସେତେବେଳେ 'ମୁଁ ଏହା କଲି' ଏପରି ଅଭିମାନ କରିବା ମୂର୍ଖତା ଭିନ୍ନ ଅନ୍ୟ କିଛି ନୁହେ ।

୧୫ । **ଅନ୍ୱୟଦୀପିକା**—ନରଃ (ମନୁଷ୍ୟ) ଶରୀର ବାଙ୍‌ମନୋଭିଃ (ଶରୀର, ବାକ୍ୟ ଓ ମନଦ୍ୱାରା) ଯତ୍‌ (ଯେଉଁ) ନ୍ୟାଯ୍ୟଂ (ଧର୍ମାନୁମୋଦିତ) ବିପରୀତଂ ବା ( ଅଧର୍ମାନୁମୋଦିତ ) କର୍ମ ପ୍ରାରଭତେ (କର୍ମ ଆରମ୍ଭ କରେ), ଏତେ ପଞ୍ଚ (ଏହି ପାଞ୍ଚଗୋଟି) ତସ୍ୟ ହେତବଃ (ତାହାର କାରଣ) ।

**ଅନୁବାଦ**—ମନୁଷ୍ୟ ଶରୀର, ବାକ୍ୟ ଓ ମନଦ୍ୱାରା ନ୍ୟାୟସଙ୍ଗତ ବା ଅନ୍ୟାୟସଙ୍ଗତ ଯେଉଁ କର୍ମ କରେ ପୂର୍ବୋକ୍ତ ପାଞ୍ଚଟି ତାହାର କାରଣ ।

**ସୁବୋଧିନୀ ଟୀକା**— ଏତେଷାମେବ ସର୍ବକର୍ମହେତୁତ୍ୱମାହ । ଶରୀରେତି । ଯଥୋକ୍ତୈଃ ପଞ୍ଚଭିଃ ପ୍ରାରଭ୍ୟମାଣଂ କର୍ମ ତ୍ରିଷ୍ୱେବାନ୍ତର୍ଭାବ୍ୟଶରୀର-ବାଙ୍‌ମନୋଭିରିତ୍ୟୁକ୍ତମ୍‌ । ଶାରୀରଂ, ବାଚିକଂ ମାନସ ଚ ତ୍ରିବିଧଂ କର୍ମେତି ପ୍ରସିଦ୍ଧେଃ । ଶରୀରାଦିଭିର୍ଯଦ୍‌ଯତ୍‌କର୍ମ ଧର୍ମ୍ୟମଧର୍ମ୍ୟଂ ବା କରୋତି ନରସ୍ତସ୍ୟ କର୍ମଣ ଏତେ ପଞ୍ଚ ହେତବଃ ।

୧୬ । **ଅନ୍ୱୟଦୀପିକା**— ତତ୍ର ଏବଂ ସତି (କର୍ମ ସମ୍ପାଦନର ଏହି ପାଞ୍ଚଟି ହିଁ କାରଣ—ଏପରି ସ୍ଥିର ହୁଅନ୍ତେ) ଯଃ ତୁ (ଯେଉଁ ଲୋକ) କେବଳମ୍‌ (ନିଃସଙ୍ଗ) ଆତ୍ମାନଂ (ଆତ୍ମାକୁ) କର୍ତ୍ତାରଂ ପଶ୍ୟତି (କର୍ତ୍ତା ବୋଲି ଦେଖେ) ଅକୃତ-ବୁଦ୍ଧିତ୍ୱାତ୍‌ (ବୁଦ୍ଧି ମାର୍ଜିତ ହୋଇ ନ ଥିବାରୁ) ସଃ ଦୁର୍ବୁଦ୍ଧି (ସେହି ଦୁର୍ବୁଦ୍ଧି ଲୋକ) ନ ପଶ୍ୟତି (ସମ୍ୟକ୍‌ରୂପେ ଦେଖେ ନାହିଁ) ।

**ଅନୁବାଦ**—ପୂର୍ବୋକ୍ତ ପାଞ୍ଚଟି କର୍ମ ସମ୍ପାଦନର କାରଣ ବୋଲି ନିରୂପିତ ହେଲେହେଁ ଯେଉଁ ବ୍ୟକ୍ତି ଅସଙ୍ଗ ଓ ନିର୍ଲିପ୍ତ ଆତ୍ମାଙ୍କୁ କର୍ତ୍ତା ବୋଲି ମନେକରେ, ବୁଦ୍ଧି ପରିମାର୍ଜିତ ହୋଇ ନ ଥିବାରୁ ସେ ସମ୍ୟକ୍‌ରୂପେ ପ୍ରକୃତ ତତ୍ତ୍ୱ ଦେଖିପାରେ ନାହିଁ ।

**ସୁବୋଧିନୀ ଟୀକା**—ତତଃ କିମ୍‌ । ଅତ ଆହ ତତ୍ରୈତି । ତତ୍ର ସର୍ବସ୍ମିନ୍‌ କର୍ମଣ୍ୟେତେ ପଞ୍ଚହେତବ ଇତି । ଏବଂ ସତି କେବଳଂ ନିରୂପାଧି-ମସଙ୍ଗମାତ୍ମାନଂ ତୁ ଯଃ କର୍ତ୍ତାରଂ ପଶ୍ୟତି ଶାସ୍ତ୍ରାଚାର୍ଯ୍ୟୋପଦେଶାଭ୍ୟାମସଂସ୍କୃତ-ବୁଦ୍ଧିତ୍ୱାଦ୍‌ଦୁର୍ମତିରସୌ ସମ୍ୟଙ୍‌ ନ ପଶ୍ୟତି ।

ଯସ୍ୟ ନାହଂକୃତୋ ଭାବୋ ବୁଦ୍ଧିର୍ଯସ୍ୟ ନ ଲିପ୍ୟତେ ।
ହତ୍ୱାପି ସ ଇମାଁଲ୍ଲୋକାନ୍ ନ ହନ୍ତି ନ ନିବଧ୍ୟତେ । ୧୭ ।

**୧୭ । ଅନ୍ୱୟଦୀପିକା**—ଯସ୍ୟ ( ଯାହାଙ୍କର ) ଅହଂକୃତଃ ଭାବଃ (ମୁଁ କର୍ତ୍ତା—ଏହି ଭାବ) ନ (ନାହିଁ), ଯସ୍ୟ ବୁଦ୍ଧିଃ ନ ଲିପ୍ୟତେ ( ବିଷୟରେ ଆସକ୍ତ ହୁଏ ନାହିଁ ) ସଃ (ସେ) ଇମାନ୍ ଲୋକାନ୍ (ଏହି ଲୋକ ସମସ୍ତଙ୍କୁ) ହତ୍ୱା ଅପି (ହତ୍ୟାକଲେ ମଧ୍ୟ) ନ ହନ୍ତି (ହତ୍ୟା କରନ୍ତି ନାହିଁ) ନ ଲିପ୍ୟତେ (ସେଥିପାଇଁ ଆବଦ୍ଧ ହୁଅନ୍ତି ନାହିଁ) ।

**ଅନୁବାଦ**—"ମୁଁ କର୍ତ୍ତା" ଯାହାଙ୍କର ଏ ଭାବ ନାହିଁ, ଯାହାଙ୍କର ବୁଦ୍ଧି କାର୍ଯ୍ୟରେ ଲିପ୍ତ ହୁଏ ନାହିଁ, ସେ ସମସ୍ତ ଲୋକଙ୍କୁ ହତ୍ୟା କଲେ ମଧ୍ୟ କାହାରିକୁ ହତ୍ୟା କରନ୍ତି ନାହିଁ ଏବଂ ତାହାର ଫଳରେ ମଧ୍ୟ ଆବଦ୍ଧ ହୁଅନ୍ତି ନାହିଁ ।

**ସୁବୋଧିନୀ ଟୀକା**—କ ତର୍ହି ମୁକ୍ତ ଯସ୍ୟ କର୍ମଲେପୋ ନାସ୍ତୀତ୍ୟୁକ୍ତମିତ୍ୟପେକ୍ଷାୟାମାହ । ଯସ୍ୟେତି, ଅହମିତି କୃତୋଽହଂ କର୍ତ୍ତେତ୍ୟେବଂଭୂତୋ ଭାବଃ । ଯଦ୍ୱା—ଅହଂକୃତୋଽହଂକାରସ୍ୟ ଭାବଃ ସ୍ୱଭାବଃ କର୍ତ୍ତୃତ୍ୱାଭିନିବେଶୋ ଯସ୍ୟ ନାସ୍ତି । ଶରୀରାଦୀନାମେବ କର୍ମକର୍ତ୍ତୃତ୍ୱାଲୋଚନାଦିତ୍ୟର୍ଥଃ, ଅତଏବ ଯସ୍ୟ ବୁଦ୍ଧିର୍ନ ଲିପ୍ୟତେ ଇଷ୍ଟାନିଷ୍ଟବୁଦ୍ଧ୍ୟା କର୍ମସୁ ନ ସଜ୍ଜତେ । ସ ଏବଂଭୂତୋ ଦେହାଦିବ୍ୟତିରିକ୍ତାତ୍ମଦର୍ଶୀ ଇମାଁଲ୍ଲୋକାନ୍ ସର୍ବାନପି ପ୍ରାଣିନୋ ଲୋକଦୃଷ୍ଟ୍ୟା ହତ୍ୱାପି ବସ୍ତୁତସ୍ତୁ ସ୍ୱଦୃଷ୍ଟ୍ୟା ନ ହନ୍ତି । ନ ଚ ତତ୍ଫଳୈର୍ନିବଧ୍ୟତେ ବନ୍ଧଂ ନ ପ୍ରାପ୍ନୋତି । କିଂ ପୁନଃ ସତ୍ତ୍ୱଶୁଦ୍ଧିଦ୍ୱାରା ପରୋକ୍ଷଜ୍ଞାନୋତ୍ପତ୍ତିହେତୁଭୂତଃ କର୍ମଭିସ୍ତସ୍ୟ ବନ୍ଧନଶଙ୍କେତ୍ୟର୍ଥଃ । ତଦୁକ୍ତଂ—ବ୍ରହ୍ମଣ୍ୟାଧାୟ କର୍ମାଣି ସଙ୍ଗଂ ତ୍ୟକ୍ତ୍ୱା କରୋତି ଯଃ, ଲିପ୍ୟତେ ନ ସ ପାପେନ ପଦ୍ମପତ୍ରମିବାମ୍ଭସା । ଇତି ।

**ବିବୃତି**—ସାଧାରଣତଃ ଲୋକେ ସ୍ୱାର୍ଥ ବୁଦ୍ଧିରେ କର୍ମ କରନ୍ତି, ସେହି ହେତୁରୁ ସେମାନଙ୍କ କର୍ମ ଅନୁଚିତ ହୋଇପଡ଼େ; କିନ୍ତୁ ଯାହାଙ୍କର ସ୍ୱାର୍ଥ ବୁଦ୍ଧି ନ ଥାଏ ବା ଫଳାଶା ସମ୍ପୂର୍ଣ୍ଣ ଲୋପ ହୋଇ ଯାଇଥାଏ ଏବଂ ଯାହାଙ୍କ ଦୃଷ୍ଟିରେ ସବୁ ପ୍ରାଣୀ ସମାନ ତାଙ୍କ ଦ୍ୱାରା କାହାର କୌଣସି ଅମଙ୍ଗଳ ହୁଏ ନାହିଁ । ପ୍ରକୃତରେ ବୁଝିଲେ ଦୋଷ କର୍ମରେ ନ ଥାଏ, ବୁଦ୍ଧିରେ ହିଁ ଥାଏ; ତେଣୁ ଯାହାଙ୍କର ବୁଦ୍ଧି ଶୁଦ୍ଧ ଓ ପବିତ୍ର ସେ କେବେହେଲେ ଅନ୍ୟର ଅମଙ୍ଗଳକର କୌଣସି କାର୍ଯ୍ୟ କରନ୍ତି ନାହିଁ । ଏ ଭଳି ଲୋକଙ୍କୁ ତ୍ରିଗୁଣାତୀତ ବା ସ୍ଥିତପ୍ରଜ୍ଞ କୁହାଯାଏ । ସେମାନଙ୍କ ସମ୍ବନ୍ଧରେ ପୁଣ୍ୟପାପ ବା ଗତି ଅଗତି ବିଚାର କରାଯାଏ ନାହିଁ । ଶଙ୍କରାଚାର୍ଯ୍ୟ ଯଥାର୍ଥରେ କହିଅଛନ୍ତି, "ନିସ୍ତ୍ରୈଗୁଣ୍ୟେ ପଥିବିଚରତାଂ କୋ ବିଧିଃ କୋ ନିଷେଧଃ ?"

ଜ୍ଞାନଂ ଜ୍ଞେୟଂ ପରିଜ୍ଞାତା ତ୍ରିବିଧା କର୍ମଚୋଦନା ।
କରଣଂ କର୍ମ କର୍ତ୍ତେତି ତ୍ରିବିଧଃ କର୍ମସଂଗ୍ରହଃ ॥ ୧୮ ॥

୧୮ । **ଅନ୍ୱୟଦୀପିକା**—ଜ୍ଞାନଂ, ଜ୍ଞେୟଂ, ପରିଜ୍ଞାତା (ଜ୍ଞାନ, ଜ୍ଞେୟ ଓ ପରିଜ୍ଞାତା) [ଏହି] ତ୍ରିବିଧା କର୍ମଚୋଦନା (ତିନିପ୍ରକାର କର୍ମ ପ୍ରବୃତ୍ତିର ହେତୁ); କରଣଂ, କର୍ମ, କର୍ତ୍ତା (କରଣ, କର୍ମ ଓ କର୍ତ୍ତା) ଇତି ତ୍ରିବିଧଃ (ଏହି ତିନିଗୋଟି) କର୍ମସଂଗ୍ରହଃ ( କର୍ମର ଆଶ୍ରୟ )

**ଅନୁବାଦ**—ଜ୍ଞାନ, ଜ୍ଞେୟ ଓ ପରିଜ୍ଞାତା—ଏହି ତିନିଗୋଟି କର୍ମ ପ୍ରବୃତ୍ତିର ହେତୁ ଏବଂ କରଣ, କର୍ମ ଓ କର୍ତ୍ତା—ଏହି ତିନିଗୋଟି କର୍ମସଂଗ୍ରହ ବା କ୍ରିୟାର ଆଶ୍ରୟ ।

**ସୁବୋଧିନୀ ଟୀକା**—ହତ୍ୱାପି ନ ହନ୍ତି ନ ନିବଧ୍ୟତେ—ଇତ୍ୟେତଦେବୋପପାଦୟିତୁଂ କର୍ମଚୋଦନାୟାଃ କର୍ମାଶ୍ରୟସ୍ୟ ଚ କର୍ମଫଳାଦୀନାଂ ଚ ତ୍ରିଗୁଣାତ୍ମକତ୍ୱାନ୍ନିର୍ଗୁଣସ୍ୟାତ୍ମନସ୍ତତ୍‌ସମ୍ବନ୍ଧୋ ନାସ୍ତୀତ୍ୟଭିପ୍ରାୟେଣ କର୍ମଚୋଦନାଂ କର୍ମାଶ୍ରୟଂ ଚାହ । ଜ୍ଞାନମିତି । ଜ୍ଞାନମିଷ୍ଟସାଧନମେତଦିତିବୋଧଃ । ଜ୍ଞେୟମିଷ୍ଟସାଧନଂ କର୍ମ । ପରିଜ୍ଞାତା—ଏବମ୍ଭୂତ ଜ୍ଞାନାଶ୍ରୟଃ । ଏବଂ ତ୍ରିବିଧା କର୍ମଚୋଦନା । ଚୋଦ୍ୟତେ ପ୍ରବର୍ତ୍ତ୍ୟତେଽନୟେତି ଚୋଦନା । ଜ୍ଞାନାଦି ତ୍ରିତୟଂ କର୍ମପ୍ରବୃତ୍ତିହେତୁରିତ୍ୟର୍ଥଃ । ଯଦ୍ୱା ଚୋଦନେତି ବିଧିରୁଚ୍ୟତେ । ତଦୁକ୍ତଂ ଭଟ୍ଟୈଃ—ଚୋଦନା ଚୋପଦେଶଶ୍ଚ ବିଧିଶ୍ଚୈକାର୍ଥବାଚିନଃ । ଇତି । ତତଶ୍ଚାୟମର୍ଥଃ—ଉକ୍ତ ଲକ୍ଷଣଂ ତ୍ରିଗୁଣାତ୍ମକଂ ଜ୍ଞାନାଦିତ୍ରୟମବଲମ୍ବ୍ୟ କର୍ମବିଧିଃ ପ୍ରବର୍ତ୍ତତ ଇତି । ତଦୁକ୍ତଂ—ତ୍ରୈଗୁଣ୍ୟବିଷୟା ବେଦା ଇତି, ତଥା ଚ କରଣଂ ସାଧକତମମ୍ । କର୍ମ ଚ କର୍ତ୍ତୁରୀପ୍‌ସିତତମମ୍ । କର୍ତ୍ତା କ୍ରିୟା ନିବର୍ତ୍ତକଃ । କର୍ମ ସଂଗୃହ୍ୟତେଽସ୍ମିନ୍ନିତି କର୍ମସଂଗ୍ରହଃ । କରଣାଦି ତ୍ରିବିଧଂ କାରକଂ । କ୍ରିୟାଶ୍ରୟ ଇତ୍ୟର୍ଥଃ । ସମ୍ପ୍ରଦାନାଦି କାରକତ୍ରୟଂ ତୁ ପରମ୍ପରୟା କ୍ରିୟାପ୍ରବର୍ତ୍ତକମେବ କେବଳମ୍ । ନତୁ ସାକ୍ଷାତ୍ କ୍ରିୟାୟା ଆଶ୍ରୟଃ । ଅତଃ କରଣାଦିତ୍ରୟମେବ କ୍ରିୟାଶ୍ରୟ ଇତ୍ୟୁକ୍ତମ୍ ।

**ବିବୃତି**—ଏ ଅଧ୍ୟାୟ ୧୭ଶ ଶ୍ଳୋକରେ ଭଗବାନ୍ କହିଲେ—ଯାହାଙ୍କର ଅହଂକୃତ ଭାବ ବା କର୍ତ୍ତୃତ୍ୱାଭିମାନ ନାହିଁ ସେ ସମସ୍ତ ଲୋକଙ୍କୁ ହତ୍ୟାକଲେ ମଧ୍ୟ କାହାରିକୁ ହତ୍ୟା କରନ୍ତି ନାହିଁ ବା କର୍ମଫଳରେ ଆବଦ୍ଧ ହୁଅନ୍ତି ନାହିଁ । କର୍ମଚୋଦନା, କର୍ମାଶ୍ରୟ ଓ କର୍ମଫଳାଦି ତ୍ରିଗୁଣାତ୍ମକ ବିଷୟ, ନିର୍ଗୁଣ ଆତ୍ମାଙ୍କର ତତ୍‌ସମ୍ବନ୍ଧ ନ ଥାଏ । ଯେ ଆତ୍ମଜ୍ଞ ବା ତ୍ରିଗୁଣାତୀତ ତାଙ୍କର ମଧ୍ୟ ତ୍ରିଗୁଣାତ୍ମକ ବିଷୟରେ ସମ୍ବନ୍ଧ ନ ଥାଏ । ତେଣୁ ଏଠାରେ ସେହି କର୍ମଚୋଦନା ବା କର୍ମପ୍ରବୃତ୍ତିର କାରଣ ଏବଂ କର୍ମସଂଗ୍ରହ ବା କର୍ମର ଆଶ୍ରୟ କଅଣ—କହୁଅଛନ୍ତି ।

ଜ୍ଞାନଂ କର୍ମ ଚ କର୍ତ୍ତା ଚ ତ୍ରିଧୈବ ଗୁଣଭେଦତଃ ।
ପ୍ରୋଚ୍ୟତେ ଗୁଣସଂଖ୍ୟାନେ ଯଥାବଚ୍ଛୃଣୁ ତାନ୍ୟପି । ୧୯ ।

କର୍ମଚୋଦନା ଓ କର୍ମସଂଗ୍ରହ—ଏ ଦୁଇଟି ଦାର୍ଶନିକ ପରିଭାଷା । କୌଣସି କର୍ମ କରିବା ପୂର୍ବରୁ ମନରେ ଗୋଟିଏ ପ୍ରେରଣା ଅନୁଭୂତ ହୁଏ; ଏହାର ନାମ କର୍ମଚୋଦନା । ତାହା ସ୍ୱଭାବତଃ ଜ୍ଞାନ, ଜ୍ଞେୟ ଓ ଜ୍ଞାତା ଭେଦରେ ତିନି ପ୍ରକାର ହୁଏ । ଉଦାହରଣ ଯଥା—କୌଣସି କଳସ ନିର୍ମାଣ କରିବା ପୂର୍ବରୁ କୁମ୍ଭାର ମନରେ କଳସନିର୍ମାଣର ଯେଉଁ ଉତ୍ସାହବୋଧ ଆସେ ତାହାହିଁ ଜ୍ଞାନ, କୁମ୍ଭାର ଜ୍ଞାତା, କଳସ ଜ୍ଞେୟ । ଏହି ପ୍ରେରଣାରୁ କର୍ତ୍ତା କୁମ୍ଭାର, ମାଟିଚକ ପ୍ରଭୃତି କରଣ ବା ସାଧନ ସଂଗ୍ରହକରି କର୍ମସ୍ୱରୂପ କଳସ ତିଆରି କରେ। ଏହାର ନାମ କର୍ମସଂଗ୍ରହ । କର୍ମଚୋଦନା କର୍ମବିଷୟକ ମାନସିକ ବ୍ୟାପାର ଓ କର୍ମସଂଗ୍ରହ—ତାହାର ବହିଃପ୍ରକାଶ ।

୧୯ । **ଅନ୍ୱୟଦୀପିକା**—ଗୁଣସଂଖ୍ୟାନେ (ସାଂଖ୍ୟ ଶାସ୍ତ୍ରରେ) ଜ୍ଞାନଂ, କର୍ମ ଚ, କର୍ତ୍ତା ଚ (ଜ୍ଞାନ, କର୍ମ ଓ କର୍ତ୍ତା) ଗୁଣଭେଦତଃ (ଗୁଣଭେଦ ଅନୁସାରେ) ତ୍ରିଧା ଏବ (ତିନିପ୍ରକାର ବୋଲି) ପ୍ରୋଚ୍ୟତେ (କଥିତ ହୁଏ) । ତାନି ଅପି (ସେ ସମସ୍ତ ମଧ୍ୟ) ଯଥାବତ୍ ଶୃଣୁ (ଯଥାଯଥରୂପରେ ଶ୍ରବଣ କର) ।

**ଅନୁବାଦ**—ସାଂଖ୍ୟ ଶାସ୍ତ୍ରରେ ଜ୍ଞାନ, କର୍ମ ଓ କର୍ତ୍ତା ସତ୍ତ୍ୱାଦି ଗୁଣଭେଦରେ ତିନିପ୍ରକାର ବୋଲି କଥିତ ହୋଇଅଛି । ଅମୁଠାରୁ ସେ ସମସ୍ତ ଯଥାଯଥରୂପେ ଶ୍ରବଣ କର ।

**ସୁବୋଧିନୀ ଟୀକା**—ତତଃ କିମ୍ ? ଅତ ଆହ—ଜ୍ଞାନମିତି । ଗୁଣାଃ ସମ୍ୟକ୍ କାର୍ଯ୍ୟଭେଦେନ ଖ୍ୟାୟନ୍ତେ ପ୍ରତିପାଦ୍ୟନ୍ତେଽସ୍ମିନ୍ନିତି ଗୁଣସଂଖ୍ୟାନଂ ସାଂଖ୍ୟଶାସ୍ତ୍ରମ୍ । ତସ୍ମିନ୍ ଜ୍ଞାନଂ ଚ କର୍ମ ଚ କର୍ତ୍ତା ଚ ପ୍ରତ୍ୟେକଂ ସତ୍ତ୍ୱାଦିଗୁଣଭେଦେନ ତ୍ରିଧୈବୋଚ୍ୟତେ । ତାନ୍ୟପି ଜ୍ଞାନାଦୀନି ବକ୍ଷ୍ୟମାଣାନି ଯଥାବଚ୍ଛୃଣୁ । ତ୍ରିଧୈବେତ୍ୟେବକାରେ ଗୁଣତ୍ରୟୋପାଧିବ୍ୟତିରେକେଣାତ୍ମନଃ ସ୍ୱତଃ କର୍ମାଦିପ୍ରତିଷେଧାର୍ଥଃ । ଚତୁର୍ଦ୍ଦଶେଽଧ୍ୟାୟେ—ତତ୍ର ସତ୍ତ୍ୱଂ କର୍ମଲକ୍ଷ୍ମାଦତ୍ୟାଦିନା ଗୁଣାନାଂ ବନ୍ଧକତ୍ୱପ୍ରକାରେ ନିରୂପିତଃ । ସପ୍ତଦଶେଽଧ୍ୟାୟେ—ଯଜନ୍ତେ ସାତ୍ତ୍ୱିକା ଦେବାନିତ୍ୟାଦିନା ଗୁଣକୃତତ୍ରିବିଧସ୍ୱଭାବନିରୂପଣେନ ରଜସ୍ତମଃସ୍ୱଭାବଂ ପରିତ୍ୟଜ୍ୟ ସାତ୍ତ୍ୱିକାହାରାଦିସେବୟା ସାତ୍ତ୍ୱିକଃ ସ୍ୱଭାବଃ ସଂପାଦନୀୟଃ ଇତ୍ୟୁକ୍ତମ୍ । ଇହ ତୁ କ୍ରିୟାକାରକ ଫଳାଦୀନାମାତ୍ମସମ୍ବନ୍ଧୋ ନାସ୍ତୀତି ଦର୍ଶୟିତୁଂ ସର୍ବେଷାଂ ତ୍ରିଗୁଣାତ୍ମକତ୍ୱମୁଚ୍ୟତ ଇତି ବିଶେଷୋଽବଗନ୍ତବ୍ୟଃ ।

**ବିବୃତି**—ପୂର୍ବ ଶ୍ଳୋକରେ ଜ୍ଞାନ, ଜ୍ଞେୟ ଓ ଜ୍ଞାତା—ଏ ତିନୋଟିକୁ କର୍ମଚୋଦନା ଓ କରଣ, କର୍ମ ଓ କର୍ତ୍ତା—ଏ ତିନୋଟିକୁ କର୍ମ ସଂଗ୍ରହ ବୋଲି

ସର୍ବଭୂତେଷୁ ଯେନୈକଂ ଭାବମବ୍ୟୟମୀକ୍ଷତେ ।
ଅବିଭକ୍ତଂ ବିଭକ୍ତେଷୁ ତଜ୍‌ଜ୍ଞାନଂ ବିଦ୍ଧି ସାତ୍ତ୍ୱିକମ୍ । ୨୦ ।

ପୃଥକ୍‌ତ୍ୱେନ ତୁ ଯଜ୍‌ଜ୍ଞାନଂ ନାନାଭାବାନ୍ ପୃଥଗ୍‌ବିଧାନ୍ ।
ବେତ୍ତି ସର୍ବେଷୁ ଭୂତେଷୁ ତଜ୍‌ଜ୍ଞାନଂ ବିଦ୍ଧି ରାଜସମ୍ । ୨୧ ।

କୁହାଯାଇଅଛି । ତନ୍ମଧ୍ୟରୁ କର୍ତ୍ତା, କର୍ମ ଓ ଜ୍ଞାନର ଗୁଣଭେଦ ଏଠାରେ କୁହାଯାଉଅଛି । ପରନ୍ତୁ ତାଙ୍କ କର୍ତ୍ତାର ଏବଂ ଜ୍ଞେୟକୁ ଜ୍ଞାନର ଅନ୍ତର୍ନିବିଷ୍ଟ କରାଯାଏ । କରଣ ବା ଇନ୍ଦ୍ରିୟାଦି ଧୃତି ଓ ବୁଦ୍ଧିର ଅନ୍ତର୍ଗତ । ସୁତରାଂ ସେ ତିନିଟିର ଗୁଣଭେଦ ନିଷ୍ପ୍ରୟୋଜନ ।

୨୦ । **ଅନ୍ୱୟଦୀପିକା**—ଯେନ (ଯାହାଦ୍ୱାରା) [ମନୁଷ୍ୟ] ବିଭକ୍ତେଷୁ (ଭିନ୍ନ ଭିନ୍ନ ରୂପରେ ଅବସ୍ଥିତ) ସର୍ବଭୂତେଷୁ (ସର୍ବଭୂତରେ) ଅବିଭକ୍ତମ୍ (ଅବିଭକ୍ତ ଭାବରେ ଥିବା) ଏକଂ ଅବ୍ୟୟଂ ଭାବ (ଏକ ଅକ୍ଷୟ ସ୍ୱରୂପକୁ) ଈକ୍ଷତେ (ଦେଖନ୍ତି) ତତ୍ ଜ୍ଞାନଂ (ସେହି ଜ୍ଞାନକୁ) ସାତ୍ତ୍ୱିକଂ ବିଦ୍ଧି (ସାତ୍ତ୍ୱିକ ବୋଲି ଜାଣ) ।

**ଅନୁବାଦ**—ଯେଉଁ ଜ୍ଞାନଦ୍ୱାରା ମନୁଷ୍ୟ ଭିନ୍ନ ଭିନ୍ନ ଭୂତସମୂହରେ ଅବିଭକ୍ତଭାବରେ ପ୍ରତୀୟମାନ ଏକ ଅବ୍ୟୟ ବସ୍ତୁ ପରମାତ୍ମାଙ୍କୁ ଉପଲବ୍ଧି କରେ ତାହାହିଁ ସାତ୍ତ୍ୱିକଜ୍ଞାନ ।

**ସୁବୋଧିନୀ ଟୀକା**—ତତ୍ର ଜ୍ଞାନସ୍ୟ ସାତ୍ତ୍ୱିକାଦି ତ୍ରୈବିଧ୍ୟମାହ । ସର୍ବଭୂତେଷ୍ୱିତି ଦ୍ୱୟେନ । ସର୍ବେଷୁ ଭୂତେଷୁ ବ୍ରହ୍ମାଦି ସ୍ଥାବରାନ୍ତେଷୁ ବିଭକ୍ତେଷୁ ପରସ୍ପରଂ ବ୍ୟାବୃତ୍ତେଷ୍ୱବିଭକ୍ତମନୁସ୍ୟୂତମେକମବ୍ୟୟଂ ନିର୍ବିକାରଂ ଭାବ ପରମାତ୍ମ-ତତ୍ତ୍ୱଂ ଯେନ ଜ୍ଞାନେନେକ୍ଷତ ଆଲୋଚୟତି ତଜ୍‌ଜ୍ଞାନଂ ସାତ୍ତ୍ୱିକଂ ବିଦ୍ଧି ।

**ବିବୃତି**—ସୂକ୍ଷ୍ମ, ସ୍ଥୂଳ, ବ୍ୟଷ୍ଟି, ସମଷ୍ଟି ଭେଦରେ ଏ ସଂସାରରେ ଭୂତ-ସମୂହ ଭିନ୍ନ ଭିନ୍ନ ନାମରୂପ ଧାରଣ କରି ରହିଅଛନ୍ତି, ଏହି ନାନାତ୍ୱମଧ୍ୟରେ ଏକତ୍ୱ ଦର୍ଶନହିଁ ପ୍ରକୃତ ଜ୍ଞାନ । ଏକ ବ୍ରହ୍ମବସ୍ତୁ ସର୍ବବ୍ୟାପୀ—ଅର୍ଥାତ୍ 'ସର୍ବଂ ବ୍ରହ୍ମମୟଂ ଜଗତ୍' ଏ ସତ୍ୟ ଯେତେବେଳେ ମନୁଷ୍ୟ ଉପଲବ୍ଧି କରେ, ସେତେବେଳେ ତାହାର ଦ୍ୱୈତବୁଦ୍ଧି ଦୂର ହୋଇଯାଏ । ଏହି ସାତ୍ତ୍ୱିକ ଜ୍ଞାନହିଁ ଜୀବପକ୍ଷରେ ପରମ ନିଃଶ୍ରେୟସ ବା ମୁକ୍ତି । ସର୍ବତ୍ର ସମଦର୍ଶନ, ଆତ୍ମଜ୍ଞାନ ପ୍ରଭୃତି ଏହାର ନାମାନ୍ତର । ଏହି ଜ୍ଞାନ ଜାତ ହେଲେ କର୍ମଯୋଗୀ ନିଷ୍କାମ କର୍ମ କରି କୃତାର୍ଥ ହୁଅନ୍ତି ।

୨୧ । **ଅନ୍ୱୟଦୀପିକା**—ପୃଥକ୍‌ତ୍ୱେନ ତୁ (ପୃଥକ୍ ପୃଥକ୍ ରୂପେ) ଯତ୍ ଜ୍ଞାନଂ (ଯେଉଁ ଜ୍ଞାନ) ସର୍ବେଷୁ ଭୂତେଷୁ (ସର୍ବ ଭୂତରେ), ପୃଥଗ୍‌ବିଧାନ୍

ଯତ୍ ତୁ କୃତ୍ସ୍ନବଦେକସ୍ମିନ୍ କାର୍ଯ୍ୟେ ସକ୍ତମହୈତୁକମ୍ ।
ଅତତ୍ତ୍ୱାର୍ଥବଦଳ୍ପଂ ଚ ତତ୍ ତାମସମୁଦାହୃତମ୍ । ୨୨ ।

(ଭିନ୍ନ ଭିନ୍ନ ) ନାନାଭାବାନ୍ (ନାନାପ୍ରକାର ଭାବ) ବେତ୍ତି (ଜାଣେ) ତତ୍ ଜ୍ଞାନଂ ରାଜସଂ ବିଦ୍ଧି (ସେହି ଜ୍ଞାନକୁ ରାଜସ ବୋଲି ଜାଣିବ) ।

**ଅନୁବାଦ**—ଯେଉଁ ଜ୍ଞାନ ଦ୍ୱାରା ଭିନ୍ନ ଭିନ୍ନ ଭୂତରେ ବିଭିନ୍ନ ପ୍ରକାରର ଅନେକ ଭାବ ଅଛି—ଏହି ପୃଥକ୍‌ତ୍ୱ ବୋଧହୁଏ, ତାହାକୁ ରାଜସ ଜ୍ଞାନ ବୋଲି ଜାଣିବ ।

**ସୁବୋଧିନୀ ଟୀକା**—ରାଜସଂ ଜ୍ଞାନମାହ—ପୃଥକ୍ତ୍ୱେନେତି । ପୃଥକ୍ତ୍ୱେନ ତୁ ଯଜ୍ଜ୍ଞାନଂ—ଇତ୍ୟସ୍ୟୈବ ବିବରଣଂ । ସର୍ବେଷୁ ଭୂତେଷୁ ନାନାଭାବାନ୍ ବସ୍ତୁତ ଏବାନେକାନ୍ କ୍ଷେତ୍ରଜ୍ଞାନ୍ ପୃଥଗ୍‌ବିଧାନ୍ ସୁଖିତ୍ୱ-ଦୁଃଖିତ୍ୱାଦିରୂପେଣ ବିଲକ୍ଷଣାନ୍ ଯେନ ଜ୍ଞାନେନ ବେତ୍ତି ତଜ୍ଜ୍ଞାନଂ ରାଜସଂ ବିଦ୍ଧି ।

**ବିବୃତି**—ଭିନ୍ନ ଭିନ୍ନ ଜୀବ ଦେହରେ ଆତ୍ମା ଭିନ୍ନ ଭିନ୍ନ—ଏହି ଭେଦ ଜ୍ଞାନହିଁ ରାଜସଜ୍ଞାନ । ଏହି ରାଜସ ଜ୍ଞାନବଳରେ ହିଁ ସଂସାରର ସମସ୍ତକାର୍ଯ୍ୟ ପରିଚାଳିତ ହେଉଅଛି । ଏହି ଭାବର ପ୍ରାବଲ୍ୟରୁ ଆଜି ସମାଜରେ ଦରିଦ୍ର ପଦ-ଦଳିତ, ଧନୀ ସମାଦୃତ; କ୍ରୋଧ, ଅହଂକାର, ଦମ୍ଭ, ଦର୍ପାଦି ସର୍ବବିଧ ପାପାତ୍ମକ କ୍ରିୟାକଳାପର ମୂଳ ଏହି ରାଜସଜ୍ଞାନ ।

୨୨ । **ଅନ୍ୱୟଦୀପିକା**—ଯତ୍ ତୁ (ଯେଉଁ ଜ୍ଞାନ) ଏକସ୍ମିନ୍ କାର୍ଯ୍ୟେ (କୌଣସି ଗୋଟିଏ ବିଷୟରେ) କୃତ୍ସ୍ନବତ୍ (ସମ୍ପୂର୍ଣ୍ଣରୂପେ) ସକ୍ତମ୍ (ଆସକ୍ତ) ଅହୈତୁକଂ ( ଅଯୌକ୍ତିକ ) ଅତତ୍ତ୍ୱାର୍ଥବତ୍ (ଅଯଥାର୍ଥ) ଅଳ୍ପଂ ଚ ( ଓ ତୁଚ୍ଛ ) ତତ୍ (ସେହି ଜ୍ଞାନ) ତାମସମ୍ ଉଦାହୃତଂ (ତାମସ ବୋଲି କଥିତ ହୁଏ) ।

**ଅନୁବାଦ**—ଯେଉଁ ଜ୍ଞାନ ପ୍ରକୃତତତ୍ତ୍ୱ ନ ବୁଝି—ଏହା ହିଁ ସବୁ ବିଶ୍ୱର ଚିହ୍ନିରେ ସମ୍ପୂର୍ଣ୍ଣରୂପେ ଆସକ୍ତ ଥାଏ ସେହି ଯୁକ୍ତିବର୍ଜିତ ଅଯଥାର୍ଥ ତୁଚ୍ଛଜ୍ଞାନକୁ ତାମସଜ୍ଞାନ ବୋଲିଯାଏ ।

**ସୁବୋଧିନୀ ଟୀକା**—ତାମସଂ ଜ୍ଞାନମାହ ଯଦିତି—ଏକସ୍ମିନ୍‌କାର୍ଯ୍ୟେ ଦେହେ ପ୍ରତିମାଦୌ ବା କୃତ୍ସ୍ନବତ୍ ପରିପୂର୍ଣ୍ଣବତ୍ ସକ୍ତଂ—ଏତାବାନେବାତ୍ମେ-ଶ୍ୱରୋ ବା ଇତ୍ୟଭିନିବେଶଯୁକ୍ତମ୍, ଅହୈତୁକଂ ନିରୁପପତ୍ତିକମ୍ । ଅତତ୍ତ୍ୱାର୍ଥବତ୍ ପରମାର୍ଥାବଲମ୍ବନଶୂନ୍ୟମ୍ । ଅତଏବାଳ୍ପଂ ତୁଚ୍ଛମ୍ । ଅଳ୍ପବିଷୟତ୍ୱାତ୍, ଅଳ୍ପ-ଫଳତ୍ୱାଚ, ଯଦେବଂଭୂତଂ ଜ୍ଞାନଂ ତତ୍ତାମସମୁଦାହୃତମ୍ ।

**ବିବୃତି**—ଅଖଣ୍ଡ ପରିପୂର୍ଣ୍ଣ ଆତ୍ମାକୁ କୌଣସି ନିର୍ଦ୍ଦିଷ୍ଟ ମୂର୍ତ୍ତି, ପ୍ରସ୍ତରଖଣ୍ଡ ବା ବୃକ୍ଷରେ ଆବଦ୍ଧ ରଖି ତାହାକୁ ହିଁ ଏକ ମାତ୍ର ଈଶ୍ୱର ମନେ କରିବା

ନିୟତଂ ସଙ୍ଗରହିତମରାଗଦ୍ୱେଷତଃ କୃତମ୍ ।
ଅଫଲପ୍ରେପ୍ସୁନା କର୍ମ ଯତ୍ ତତ୍ ସାତ୍ତ୍ୱିକମୁଚ୍ୟତେ । ୨୩ ।
ଯତ୍ତୁ କାମେପ୍ସୁନା କର୍ମ ସାହଂକାରେଣ ବା ପୁନଃ ।
କ୍ରିୟତେ ବହୁଳାୟାସଂ ତଦ୍ରାଜସମୁଦାହୃତମ୍ । ୨୪ ।

ତାମସିକ ଜନ । ଏଭଳି ତାମସିକ ଲୋକଙ୍କର ଈଶ୍ୱରଙ୍କର ସର୍ବବ୍ୟାପିତ୍ୱରେ ଧାରଣା ନ ଥାଏ । ଯେଉଁମାନଙ୍କର ଚିନ୍ତା ନିଜ ସ୍ତ୍ରୀ ପୁତ୍ରଙ୍କଠାରେ ହିଁ ଅବଦ୍ଧ ଥାଏ, ନିଜ ଦେହ ବା ପରିବାରର ସୁଖସ୍ୱାଚ୍ଛନ୍ଦ୍ୟଛଡ଼ା ଅନ୍ୟମାନଙ୍କପ୍ରତି ଯାହାଙ୍କର ଦୃଷ୍ଟି ନ ଥାଏ ସେମାନେ ମଧ୍ୟ ଏହିପରି ତାମସଶ୍ରେଣୀ ।

୨୩ । **ଅନ୍ୱୟଦୀପିକା —** ଅଫଲପ୍ରେପ୍ସୁନା ( ଫଳାକାଂକ୍ଷାଶୂନ୍ୟ ଲୋକଙ୍କ ଦ୍ୱାରା ) ନିୟତଂ (କର୍ତ୍ତବ୍ୟରୂପରେ ନିର୍ଦ୍ଦିଷ୍ଟ) ସଙ୍ଗରହିତମ୍ (ଅସକ୍ତିଶୂନ୍ୟ ଭାବରେ) ଅରାଗଦ୍ୱେଷତଃ ( ଅନୁରାଗ ଓ ଦ୍ୱେଷଶୂନ୍ୟ ହୋଇ ) କୃତଂ ( ଅନୁଷ୍ଠିତ ) ଯତ୍ କର୍ମ ( ଯେଉଁ କର୍ମ ) ତତ୍ ( ତାହା ) ସାତ୍ତ୍ୱିକମ୍ ଉଚ୍ୟତେ ( ସାତ୍ତ୍ୱିକ ବୋଲି କଥିତ ହୁଏ ) ।

**ଅନୁବାଦ—**ଫଳକାମନାଶୂନ୍ୟ ଲୋକ ଅନୁରାଗ ଓ ଦ୍ୱେଷବର୍ଜିତ ହୋଇ କର୍ତ୍ତବ୍ୟ ରୂପରେ ନିର୍ଦ୍ଦିଷ୍ଟ ହୋଇଥିବା ଯେଉଁ କର୍ମ ଅନାସକ୍ତ ଭାବରେ କରନ୍ତି ତାହାକୁ ସାତ୍ତ୍ୱିକ କର୍ମ କୁହାଯାଏ ।

**ସୁବୋଧିନୀ ଟୀକା—**ଇଦାନୀଂ ତ୍ରିବିଧଂ କର୍ମାହ । ନିୟତମିତିତ୍ରିଭିଃ । ନିୟତଂ ନିତ୍ୟତୟା ବିହିତଂ । ସଙ୍ଗରହିତମଭିନିବେଶଶୂନ୍ୟମ୍ । ଅରାଗ-ଦ୍ୱେଷତଃ ପୁତ୍ରାଦପ୍ରୀତ୍ୟା ବା ଶତ୍ରୁଦ୍ୱେଷେଣ ବା ଯତ୍ କୃତଂ ନ ଭବତି । ଫଳଂ ପ୍ରାପ୍ତୁମିଚ୍ଛତୀତି ଫଲପ୍ରେପ୍ସୁଃ । ତଦ୍‌ବିଲକ୍ଷଣେନ ନିଷ୍କାମେଣ କର୍ତ୍ତ୍ରା ଯତ୍ କୃତଂ କର୍ମ ତତ୍ ସାତ୍ତ୍ୱିକମୁଚ୍ୟତେ ।

**ବିବୃତି—**ଏହି ସାତ୍ତ୍ୱିକ କର୍ମହିଁ ନିଷ୍କାମକର୍ମ । ଏ ବିଷୟ ଚତୁର୍ଥ ଅଧ୍ୟାୟରେ ବିସ୍ତାରିତ ରୂପେ ଆଲୋଚିତ ହୋଇଅଛି ।

୨୪ । **ଅନ୍ୱୟଦୀପିକା—**ପୁନଃ ତୁ ( ଅଧିକ ) କାମେପ୍ସୁନା ( ଫଳାଭିଳାଷୀ ଲୋକଦ୍ୱାରା ), ସାହଂକାରେଣ ବା ( ଅଥବା ଅହଂକାରୀ ଲୋକଦ୍ୱାରା ) ବହୁଳାୟାସଂ ( ବହୁ ପରିଶ୍ରମ ସହିତ ) ଯତ୍ କର୍ମ କ୍ରିୟତେ ( ଯେଉଁ କର୍ମ କରାଯାଏ ) ତତ୍ ରାଜସମ୍ ଉଦାହୃତଂ ( ତାହା ରାଜସ ବୋଲି କଥିତ ହୁଏ ) ।

**ଅନୁବାଦ—**ଅଧିକ ମଧ୍ୟ ଫଳ ଆକାଙ୍‌କ୍ଷା ରଖି ଅଥବା ଅହଂକାର-ସହିତ ବହୁ ପରିଶ୍ରମରେ ଯେଉଁ କର୍ମ କରାଯାଏ ତାହାକୁ ରାଜସକର୍ମ କହନ୍ତି ।

ଅନୁବନ୍ଧଂ କ୍ଷୟଂ ହିଂସାମନପେକ୍ଷ୍ୟ ଚ ପୌରୁଷମ୍ ।
ମୋହାଦାରଭ୍ୟତେ କର୍ମ ଯତ୍ତତ୍ତାମସମୁଚ୍ୟତେ । ୨୫ ।

**ସୁବୋଧିନୀ ଟୀକା**—ରାଜସଂ କର୍ମାହ—ଯଦିତି । ଯତ୍ କର୍ମ କାମେପ୍ସୁନା ଫଳଂ ପ୍ରାପ୍ତୁମିଚ୍ଛତା ସାହଂକାରେଣ ବା ମତ୍ସମଃ କୋଽନ୍ୟଃ ଶ୍ରୋତ୍ରିୟୋଽସ୍ତୀତ୍ୟେବଂ ନିରୂଢ଼ାହଂକାରଯୁକ୍ତେନ ଚ କ୍ରିୟତେ । ଯତ ପୁନର୍ବହୁଳାୟାସମତିକ୍ଲେଶଯୁକ୍ତଂ ତତ୍କର୍ମ ରାଜସମୁଦାହୃତମ୍ ।

**ବିବୃତି**—ଯେତେବେଳଯାଏ କାମନା ଦୂର ହୋଇ ନ ଥାଏ, ସେ ପର୍ଯ୍ୟନ୍ତ ଚିତ୍ତରେ ଦୁଶ୍ଚିନ୍ତା ରହିଥାଏ । ଅହଂକାରୀ ଲୋକ ସର୍ବଦା ସ୍ୱାର୍ଥଚିନ୍ତାରେ ବ୍ୟାକୁଳ । ସ୍ୱାର୍ଥସାଧନ ପାଇଁ ଲୋକ କୁକର୍ମ କରିବାରେ ମଧ୍ୟ ପଶ୍ଚାତ୍‌ପଦ ହୁଏ ନାହିଁ ଏବଂ ନାନାପ୍ରକାର କଷ୍ଟ, ଯତ୍ନ ଓ ପରିଶ୍ରମ କରିବାକୁ ବାଧ୍ୟ ହୁଏ । ଏହି ହେତୁରୁ ରାଜସକର୍ମ ବହୁପରିଶ୍ରମସାଧ୍ୟ ।

**୨୫ । ଅନ୍ୱୟଦୀପିକା**—ଅନୁବନ୍ଧଂ ( ଭବିଷ୍ୟତ୍ ଫଳ ), କ୍ଷୟଂ ( ବିତ୍ତାଦିର ନାଶ ), ହିଂସା ( ପରପୀଡ଼ା ), ପୌରୁଷଂ ଚ ( ଏବଂ ଆତ୍ମସାମର୍ଥ୍ୟ ) ଅନପେକ୍ଷ୍ୟ ( ବିଚାର ନ କରି ) ମୋହାତ୍ ( ମୋହବଶତଃ ) ଯତ୍ କର୍ମ ଆରଭ୍ୟତେ ( ଯେଉଁ କର୍ମ ଆରମ୍ଭ କରାଯାଏ ), ତତ୍ ତାମସମ୍ ଉଚ୍ୟତେ ( ତାହାକୁ ତାମସକର୍ମ କୁହାଯାଏ )

**ଅନୁବାଦ**—ଭବିଷ୍ୟତ୍ ଫଳ କଅଣ ହେବ, ଶକ୍ତି ଓ ଅର୍ଥର କ୍ଷୟ ହେବ କି ନାହିଁ, ପରପୀଡ଼ା ହେବ କି ନାହିଁ, ଏହା ସମ୍ପନ୍ନ କରିବାରେ ନିଜର ସାମର୍ଥ୍ୟ ଅଛି କି ନାହିଁ—ଏସବୁ କଥା ବିଚାର ନ କରି ମୋହବଶତଃ ଯେଉଁସବୁ କର୍ମ ଆରମ୍ଭ କରାଯାଏ ତାହାକୁ ତାମସ କର୍ମ କୁହାଯାଏ ।

**ସୁବୋଧିନୀ ଟୀକା**—ତାମସଂ କର୍ମାହ—ଅନୁବନ୍ଧମିତି । ଅନୁବଧ୍ୟତ ଇତ୍ୟନୁବନ୍ଧଃ, ପଶ୍ଚାଦ୍‌ଭାବି ଶୁଭାଶୁଭମ୍ । କ୍ଷୟଂ ବିତ୍ତବ୍ୟୟଂ । ହିଂସାଂ ପରପୀଡ଼ାମ୍ ପୌରୁଷଂ ଚ ସ୍ୱସାମର୍ଥ୍ୟମନବେକ୍ଷ୍ୟାପର୍ଯ୍ୟାଲୋଚ୍ୟ କେବଳଂ ମୋହାଦେବ ଯତ୍କର୍ମାରଭ୍ୟତେ ତତ୍ତାମସମୁଚ୍ୟତେ ।

**ବିବୃତି**—୨୩ଶ, ୨୪ଶ, ୨୫ଶ ଶ୍ଳୋକରେ କର୍ମର ଯେଉଁ ଶ୍ରେଣୀ ବିଭାଗ କରାଗଲା, ତହିଁରେ ସର୍ବବିଧ କର୍ମର ସମାବେଶ ହେଲା । ଏହିସବୁ କର୍ମ ବିଭାଗର ପ୍ରକୃତ ଆଲୋଚନା କଲେ ଜଣାଯାଏ ଯେ ସର୍ବତ୍ର କର୍ତ୍ତାର ବୁଦ୍ଧି ପ୍ରତି ଲକ୍ଷ୍ୟ କରା ଯାଇଅଛି । କର୍ମର ବାହ୍ୟ ପ୍ରକୃତି ବା ପରିଣାମ—ଏଠାରେ ଲକ୍ଷ୍ୟ ନୁହେ । ଗୀତା ମତରେ କର୍ମ ଅପେକ୍ଷା କର୍ତ୍ତାର ବୁଦ୍ଧି ଶ୍ରେଷ୍ଠ । ସାତ୍ତ୍ୱିକ କର୍ମ ହିଁ ନିଷ୍କାମ କର୍ମ, ରାଜସ ଓ ତାମସ ଉଭୟବିଧ କର୍ମ ସକାମ । ୨୫ଶ ଶ୍ଳୋକରୁ

ମୁକ୍ତସଙ୍ଗୋଽନହଂବାଦୀ ଧୃତ୍ୟୁତ୍ସାହସମନ୍ୱିତଃ ।
ସିଦ୍ଧ୍ୟସିଦ୍ଧ୍ୟୋର୍ନିର୍ବିକାରଃ କର୍ତ୍ତା ସାତ୍ତ୍ୱିକ ଉଚ୍ୟତେ । ୨୬ ।

ଏହା ମଧ୍ୟ ବୁଝାଯାଉଅଛି ଯେ ନିଷ୍କାମ କର୍ମ ବା ଫଳାଶା ବର୍ଜିତକର୍ମ ସ୍ୱେଚ୍ଛାଚାରମୂଳକ ନୁହେ । କର୍ମର ଭୂବୀ ଫଳାଫଳ, ନିଜର ସାମର୍ଥ୍ୟ ଓ ଲକ୍ଷ୍ୟ ପ୍ରତି ଦୃଷ୍ଟିରଖି ନିଷ୍କାମ କର୍ମ ମଧ୍ୟ କରିବାକୁ ହେବ । ଏପରି ହେଲେ ଯୁଦ୍ଧାଦି ହିଂସାମୂଳକ କର୍ମ ସମୟରେ ସାତ୍ତ୍ୱିକକର୍ମ ହୋଇଥାଏ । ଯୁଦ୍ଧରେ ପରାଜୟ ହେବ—ଏହା ଜାଣିସୁଦ୍ଧା ଯୁଦ୍ଧରେ ଅର୍ଜ୍ଜୁନଙ୍କୁ ପ୍ରବୃତ୍ତ କରାଇବା ସାତ୍ତ୍ୱିକ କର୍ମ ବୋଲି ଭଗବାନ୍ ସ୍ଥିର କରିଥିଲେ । କାରଣ ତାହା ଅର୍ଜ୍ଜୁନଙ୍କର 'ସ୍ୱଭାବନିୟତ କର୍ମ', ଅବଶ୍ୟ ଦୁର୍ଯ୍ୟୋଧନାଦିଙ୍କ ପକ୍ଷରେ ଏ ଯୁଦ୍ଧକର୍ମ ତାମସିକ, କାରଣ ସେମାନେ ଏହାର ଭାବୀଫଳ, କ୍ଷୟ ଓ ହିଂସା ପ୍ରଭୃତି ପ୍ରତି ଲକ୍ଷ୍ୟ ନ କରି ଏଥିରେ ପ୍ରବୃତ୍ତ ହୋଇଥିଲେ । ଏଥିରୁ ଜଣାଯାଏ ଯେ, କୌଣସି କର୍ମ ଜଣକପକ୍ଷରେ ସାତ୍ତ୍ୱିକହେଲେ ଅନ୍ୟପକ୍ଷରେ ତାହା ଯେ ସାତ୍ତ୍ୱିକ ହେବ —ଏପରି ନୁହେ । କର୍ତ୍ତାର ବୁଦ୍ଧି ହିଁ ସାତ୍ତ୍ୱିକତା ଓ ରାଜସିକତାଦିର ମୂଳ ।

୨୬ । **ଅନ୍ୱୟଦୀପିକା**—ମୁକ୍ତସଙ୍ଗଃ ( ଆସକ୍ତିଶୂନ୍ୟ) ଅନହଂବାଦୀ ( ଅହଙ୍କାରଶୂନ୍ୟ ) ଧୃତ୍ୟୁତ୍ସାହ-ସମନ୍ୱିତଃ (ଧୈର୍ଯ୍ୟଶୀଳ ଓ ଉତ୍ସାହୀ) ସିଦ୍ଧ୍ୟ-ସିଦ୍ଧ୍ୟୋଃ ( ସିଦ୍ଧି ଓ ଅସିଦ୍ଧିରେ ) ନିର୍ବିକାରଃ ( ହର୍ଷବିଷାଦଶୂନ୍ୟ ) କର୍ତ୍ତା ସାତ୍ତ୍ୱିକ ଉଚ୍ୟତେ (ଏପରି କର୍ତ୍ତାଙ୍କୁ ସାତ୍ତ୍ୱିକକର୍ତ୍ତା କୁହାଯାଏ) ।

**ଅନୁବାଦ**—କର୍ମରେ ଯାହାଙ୍କର ଆସକ୍ତି ନ ଥାଏ, ଯେ 'ମୁଁ' 'ମୋର' ଏପରି କହନ୍ତି ନାହିଁ, ଯେ ଧୈର୍ଯ୍ୟ ଏବଂ ଉତ୍ସାହସହିତ କର୍ମ କରନ୍ତି ଏବଂ କର୍ମର ସିଦ୍ଧି ଓ ଅସିଦ୍ଧିରେ ଯେ ହର୍ଷବିଷାଦଶୂନ୍ୟ—ଏହିଭଳି କର୍ତ୍ତାଙ୍କୁ ସାତ୍ତ୍ୱିକ କର୍ତ୍ତା ବୋଲାଯାଏ ।

**ସୁବୋଧିନୀ ଟୀକା**—କର୍ତ୍ତାରଂ ତ୍ରିବିଧମାହ—ମୁକ୍ତସଙ୍ଗଃ ଇତି ତ୍ରିଭିଃ । ମୁକ୍ତସଙ୍ଗସ୍ତ୍ୟକ୍ତାଭିନିବେଶଃ । ଅନହଂବାଦୀ ଗର୍ବୋକ୍ତିରହିତଃ । ଧୃତିର୍ଧୈର୍ଯ୍ୟମ୍, ଉତ୍ସାହ ଉଦ୍ୟମଃ, ତାଭ୍ୟାଂ ସମନ୍ୱିତଃ ସଂଯୁକ୍ତଃ । ଆରବ୍ଧସ୍ୟ କର୍ମଣଃ ସିଦ୍ଧାବସିଦ୍ଧୌ ଚ ନିର୍ବିକାରେ ହର୍ଷବିଷାଦଶୂନ୍ୟଃ । ଏବମ୍ଭୂତଃ କର୍ତ୍ତା ସାତ୍ତ୍ୱିକ ଉଚ୍ୟତେ ।

**ବିବୃତି**—ସାତ୍ତ୍ୱିକାଦି କର୍ମର ଲକ୍ଷଣ କହିସାରି ବର୍ତ୍ତମାନ କର୍ତ୍ତାର ଲକ୍ଷଣ କହୁଅଛନ୍ତି । ସାତ୍ତ୍ୱିକ କର୍ତ୍ତାହିଁ ନିଷ୍କାମ କର୍ମଯୋଗୀ । 'ମୁଁ କଲି' 'ମୁଁ ଦେଲି'—ଏ ଭାବ ତାଙ୍କର ନ ଥାଏ । ଶତବାଧାବିଘ୍ନରେ ସୁଦ୍ଧା ତାଙ୍କର ଉତ୍ସାହ ବା ଧୈର୍ଯ୍ୟ କମେ ନାହିଁ । 'କର୍ମ କରିବି'—ଏ ବିଚାରରେ ତାହାଙ୍କର

ରାଗୀ କର୍ମଫଳପ୍ରେପ୍ସୁର୍ଲୁବ୍ଧୋ ହିଂସାତ୍ମକୋଽଶୁଚିଃ ।
ହର୍ଷଶୋକାନ୍ୱିତଃ କର୍ତ୍ତା ରାଜସଃ ପରିକୀର୍ତ୍ତିତଃ । ୨୭ ।
ଅଯୁକ୍ତଃ ପ୍ରାକୃତଃ ସ୍ତବ୍ଧଃ ଶଠୋ ନୈଷ୍କୃତିକୋଽଲସଃ ।
ବିଷାଦୀ ଦୀର୍ଘସୂତ୍ରୀ ଚ କର୍ତ୍ତା ତାମସ ଉଚ୍ୟତେ । ୨୮ ।

ବୁଦ୍ଧି ସ୍ଥିର ହୋଇଥାଏ ଅର୍ଥାତ୍ କର୍ମର ଭଲମନ୍ଦ ଫଳକୁ ଅପେକ୍ଷା ନ କରି ସେ କର୍ତ୍ତବ୍ୟ ଜ୍ଞାନରେ କର୍ମରେ ଲାଗିଥାଆନ୍ତି ।

୨୭ । **ଅନ୍ୱୟଦୀପିକା**—ରାଗୀ (ବିଷୟାନୁରାଗୀ), କର୍ମଫଳପ୍ରେପ୍ସୁଃ (କର୍ମଫଳାଭିଳାଷୀ), ଲୁବ୍ଧଃ (ପରଧନାଭିଳାଷୀ), ହିଂସାତ୍ମକଃ (ହିଂସ୍ରକ), ଅଶୁଚିଃ (ଶୌଚାଚାରଶୂନ୍ୟ), ହର୍ଷଶୋକାନ୍ୱିତଃ (ଲାଭାଲାଭରେ ହର୍ଷଶୋକଯୁକ୍ତ) କର୍ତ୍ତା (କର୍ତ୍ତା) ରାଜସଃ ପରିକୀର୍ତ୍ତିତଃ (ରାଜସ ବୋଲି କଥିତ ହୁଏ) ।

**ଅନୁବାଦ**—ଯେଉଁ ଲୋକ ବିଷୟାସକ୍ତ, କର୍ମର ଫଳ ପାଇବାକୁ ଅଭିଳାଷୀ, ପରଧନ ଗ୍ରହଣରେ ଇଚ୍ଛୁକ, ହିଂସ୍ରକ ସ୍ୱଭାବବିଶିଷ୍ଟ, ଶୌଚାଚାରଶୂନ୍ୟ, ସିଦ୍ଧିଲାଭରେ ଆନନ୍ଦିତ ଓ ଅସିଦ୍ଧିରେ ଦୁଃଖିତ ହୁଅନ୍ତି—ଏପରି କର୍ତ୍ତାଙ୍କୁ ରାଜସ କର୍ତ୍ତା କୁହାଯାଏ ।

**ସୁବୋଧିନୀ ଟୀକା**—ରାଜସ କର୍ତ୍ତାରମାହ—ରାଗୀତି । ରାଗୀ ପୁତ୍ରାଦିଷୁ ପ୍ରୀତିମାନ୍, କର୍ମଫଳପ୍ରେପ୍ସୁଃ କର୍ମଫଳକାମୀ । ଲୁବ୍ଧଃ ପରସ୍ୱାଭିଳାଷୀ, ହିଂସାତ୍ମକୋ ମାରକସ୍ୱଭାବଃ, ଲାଭାଲାଭୟୋର୍ହର୍ଷଶୋକାଭ୍ୟାମନ୍ୱିତଃ କର୍ତ୍ତା ରାଜସଃ ପରିକୀର୍ତ୍ତିତଃ ।

୨୮ । **ଅନ୍ୱୟଦୀପିକା**—ଅଯୁକ୍ତଃ (ଅସାବଧାନ) ପ୍ରାକୃତଃ (ଅମାର୍ଜିତ ବୁଦ୍ଧି ବା ବିବେକଶୂନ୍ୟ), ସ୍ତବ୍ଧଃ (ଅବିନୀତ) ଶଠଃ (ମାୟାବୀ, ଠକ), ନୈଷ୍କୃତିକଃ (ପରର ଅମଙ୍ଗଳକାରୀ) ଅଲସଃ (ଅଳସୁଆ), ବିଷାଦୀ (ଅବସନ୍ନ-ସ୍ୱଭାବ), ଦୀର୍ଘସୂତ୍ରୀ ଚ (ଏବଂ ଅଳ୍ପ ସମୟସାଧ୍ୟ କାର୍ଯ୍ୟକୁ ବହୁ ସମୟରେ ସମ୍ପନ୍ନକାରୀ) କର୍ତ୍ତା ତାମସଃ ଉଚ୍ୟତେ (କର୍ତ୍ତା ତାମସ ବୋଲି ଉକ୍ତ ହୁଏ) ।

**ଅନୁବାଦ**—ଯେଉଁ ଲୋକ ଅସାବଧାନ, ପ୍ରକୃତିପରବଶ, ଅବିନୀତ, ଠକ, ପରର ଅନିଷ୍ଟକାରୀ, ଉଦ୍ୟମଶୂନ୍ୟ ବା ଅଳସୁଆ, ଅବସନ୍ନସ୍ୱଭାବ ଏବଂ ଦୀର୍ଘସୂତ୍ରୀ ସେ ଲୋକ ତାମସକର୍ତ୍ତାରୂପରେ ପରିଗଣିତ ହୁଏ ।

**ସୁବୋଧିନୀ ଟୀକା** — ତାମସ କର୍ତ୍ତାରମାହ—ଅଯୁକ୍ତ ଇତି । ଅଯୁକ୍ତୋଽନବହିତଃ । ପ୍ରାକୃତଃ ବିବେକଶୂନ୍ୟଃ । ସ୍ତବ୍ଧୋଽନମ୍ରଃ । ଶଠଃ ଶକ୍ତିଗୂହନକାରୀ, ନୈଷ୍କୃତିକଃ ପରବୃତ୍ତିଚ୍ଛେଦନପରଃ, ଅଲସୋଽନୁଦ୍ୟମଶୀଳଃ । ବିଷାଦୀ ଶୋକଶୀଳଃ । ଯଦଦ୍ୟ ବା ଶ୍ୱୋ ବା କର୍ତ୍ତବ୍ୟଂ ତନ୍ମାସେନାପି ନ ସମ୍ପାଦୟତି ସଃ

ବୁଦ୍ଧେର୍ଭେଦଂ ଧୃତେଶ୍ଚୈବ ଗୁଣତସ୍ତ୍ରିବିଧଂ ଶୃଣୁ ।
ପ୍ରୋଚ୍ୟମାନମଶେଷେଣ ପୃଥକ୍‌ତ୍ୱେନ ଧନଞ୍ଜୟ ॥ ୨୯ ॥
ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ କାର୍ଯ୍ୟାକାର୍ଯ୍ୟେ ଭୟାଭୟେ ।
ବନ୍ଧଂ ମୋକ୍ଷଂ ଚ ଯା ବେତ୍ତି ବୁଦ୍ଧିଃ ସା ପାର୍ଥ ସାତ୍ତ୍ୱିକୀ ॥ ୩୦ ॥

ସ ଦୀର୍ଘସୂତ୍ରୀ । ଏବଂଭୂତଃ କର୍ତ୍ତା ତାମସ ଉଚ୍ୟତେ । କର୍ତ୍ତୃତ୍ରୈବିଧ୍ୟେନୈବ ଜ୍ଞାତୃରପି ତ୍ରୈବିଧ୍ୟମୁକ୍ତଂ ଭବତି । କର୍ମତ୍ରୈବିଧ୍ୟେନ ଚ ଜ୍ଞେୟସ୍ୟାପି ତ୍ରୈବିଧ୍ୟମୁକ୍ତଂ ଜ୍ଞାତବ୍ୟମ୍ । ବୁଦ୍ଧେସ୍ତ୍ରୈବିଧ୍ୟେନ କରଣସ୍ୟାପି ତ୍ରୈବିଧ୍ୟମୁକ୍ତଂ ଭବିଷ୍ୟତି ।

**ବିବୃତି**—ଏ ଶ୍ଳୋକରେ 'ନୈଷ୍କୃତିକ' ସ୍ଥାନରେ 'ନୈକୃତିକ' ପାଠାନ୍ତର ଶ୍ରୀଧରସ୍ୱାମୀ ଗ୍ରହଣ କରିଅଛନ୍ତି, ତାହାର ଅର୍ଥ ପରର ଅପମାନକାରୀ ।

**୨୯ । ଅନ୍ୱୟଦୀପିକା**—[ହେ] ଧନଞ୍ଜୟ ! ବୁଦ୍ଧେଃ ଧୃତେଃ ଚ ( ବୁଦ୍ଧିର ଏବଂ ଧୃତିର ) ଗୁଣତଃ ଏବ ( ଗୁଣାନୁସାରେ ) ତ୍ରିବିଧଂ ଭେଦଂ ( ତିନ ପ୍ରକାର ଭେଦ ) ପୃଥକ୍‌ତ୍ୱେନ ( ପୃଥକ୍ ପୃଥକ୍ ରୂପେ ) ଅଶେଷେଣ ( ସମଗ୍ରରୂପେ ) ପ୍ରୋଚ୍ୟମାନଂ ( ଯାହା କୁହା ଯାଉଅଛି ତାହା ) ଶୃଣୁ (ଶୁଣ) ।

**ଅନୁବାଦ**—ହେ ଧନଞ୍ଜୟ, ଗୁଣ ଅନୁସାରେ ବୁଦ୍ଧି ଏବଂ ଧୃତିର ଯେଉଁ ତିନପ୍ରକାର ପ୍ରଭେଦ ହୁଏ ତାହା ପୃଥକ୍ ପୃଥକ୍ କରି ସମ୍ପୂର୍ଣ୍ଣ ରୂପେ କହୁଅଛି, ଶୁଣ ।

**ସୁବୋଧିନୀ ଟୀକା**—ଇଦାନୀଂ ବୁଦ୍ଧେ ର୍ଧୃତେଶ୍ଚ ତ୍ରୈବିଧ୍ୟଂ ପ୍ରତିଜାନୀତେ । ବୁଦ୍ଧେର୍ଭେଦମିତି । ସ୍ପଷ୍ଟୋର୍ଥଃ ।

**୩୦ । ଅନ୍ୱୟଦୀପିକା**—[ହେ] ପାର୍ଥ, ପ୍ରବୃତ୍ତିଂ (ଧର୍ମରେ ବା ସତ୍‌କର୍ମରେ ପ୍ରବୃତ୍ତି ), ନିବୃତ୍ତିଂ ଚ ( ଅଧର୍ମରେ ବା ଅସତ୍‌କର୍ମରେ ନିବୃତ୍ତି ) କାର୍ଯ୍ୟାକାର୍ଯ୍ୟେ (କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ) ଭୟାଭୟେ (ଭୟ ଓ ଅଭୟ) ବନ୍ଧଂ ମୋକ୍ଷଂ ଚ (ବନ୍ଧନ ଓ ମୁକ୍ତି) ଯା ବେତ୍ତି (ଯେ ଜାଣେ) ସା ବୁଦ୍ଧିଃ (ସେହି ବୁଦ୍ଧି ହିଁ) ସାତ୍ତ୍ୱିକୀ (ସାତ୍ତ୍ୱିକବୁଦ୍ଧି ଅଟେ) ।

**ଅନୁବାଦ**—ହେ ପାର୍ଥ, ଯେଉଁ ବୁଦ୍ଧିଦ୍ୱାରା ପ୍ରବୃତ୍ତି ଓ ନିବୃତ୍ତି, କାର୍ଯ୍ୟ ଅକାର୍ଯ୍ୟ, ଭୟ ଓ ଅଭୟ, ବନ୍ଧନ ଓ ମୁକ୍ତି ଜଣାଯାଏ ତାହାକୁ ସାତ୍ତ୍ୱିକୀ ବୁଦ୍ଧି କହନ୍ତି ।

**ସୁବୋଧିନୀ ଟୀକା**— ତତ୍ର ବୁଦ୍ଧେ ସ୍ତ୍ରୈବିଧ୍ୟମାହ—ପ୍ରବୃତ୍ତିମିତି ତ୍ରିଭିଃ । ପ୍ରବୃତ୍ତିଂ ଧର୍ମେ । ନିବୃତ୍ତିମଧର୍ମେ । ଯସ୍ମିନ୍ ଦେଶେ କାଲେ ଚ ଯତ୍ କାର୍ଯ୍ୟମକାର୍ଯ୍ୟଂ ଚ । ଭୟାଭୟେ କାର୍ଯ୍ୟାକାର୍ଯ୍ୟ ନିମିତ୍ତାବର୍ଥାନର୍ଥୌ । କଥଂ ବନ୍ଧଃ

ଯୟା ଧର୍ମମଧର୍ମଂ ଚ କାର୍ଯ୍ୟଂ ଚାକାର୍ଯ୍ୟମେବ ଚ ।
ଅଯଥାବତ୍ ପ୍ରଜାନାତି ବୁଦ୍ଧିଃ ସା ପାର୍ଥ ରାଜସୀ । ୩୧ ।
ଅଧର୍ମଂ ଧର୍ମମିତି ଯା ମନ୍ୟତେ ତମସାବୃତା ।
ସର୍ବାର୍ଥାନ୍ ବିପରୀତାଂଶ୍ଚ ବୁଦ୍ଧିଃ ସା ପାର୍ଥ ତାମସୀ । ୩୨ ।

କଥଂ ବା ମୋକ୍ଷ ଇତି ଯା ବୁଦ୍ଧିରନ୍ତଃକରଣଂ ବେତ୍ତି ସା ସାତ୍ତ୍ୱିକୀ । ଯୟା ପ୍ରମାତ୍ର ବେତ୍ତୀତି ବକ୍ତବ୍ୟେ କରଣେ କର୍ତ୍ତୃତ୍ୱୋପଚାରଃ କାଷ୍ଠାନି ପଚନ୍ତୀତିବତ୍ ।

**ବିବୃତି**—ଅନ୍ତଃକରଣ ବୃତ୍ତିବିଶେଷକୁ ବୁଦ୍ଧି କୁହାଯାଏ । ମନୁଷ୍ୟ ଏହି ବୁଦ୍ଧି ସାହାଯ୍ୟରେ ଭଲମନ୍ଦ ବିଚାରକରି କରିବା ନିର୍ଣ୍ଣୟ କରେ । ଏ ବୁଦ୍ଧି ଯେତେବେଳେ **ଅସ୍ୱଚ୍ଛ** ହୁଏ, ସେତେବେଳେ ସେ ଯଥାର୍ଥ ବିଚାର କରିପାରେ । ରାଜସୀ ଓ ତାମସୀ ବୁଦ୍ଧି ଅସ୍ୱଚ୍ଛ ହୁଏ । ତେଣୁ ସେ ସବୁ ଭଲମନ୍ଦ ବିଚାରକରି ପାରେ ନାହିଁ । ଯେଉଁ ସାଧୁମାନେ ଯଥାର୍ଥରେ ଅନ୍ତରରେ ଶ୍ରୀଶ୍ରୀପ୍ରେରଣା ଅନୁଭବ କରନ୍ତି ସେମାନଙ୍କ ବୁଦ୍ଧି କେବେହେଲେ ବିପଥଗାମୀ ହୁଏ ନାହିଁ ।

୩୧ । **ଅନ୍ୱୟଦୀପିକା**—[ହେ] ପାର୍ଥ, ଯୟା (ଯେଉଁ ବୁଦ୍ଧିଦ୍ୱାରା) ଧର୍ମଂ ଅଧର୍ମଂ ଚ (ଧର୍ମ ଏବଂ ଅଧର୍ମ) କାର୍ଯ୍ୟମ୍ ଅକାର୍ଯ୍ୟଂ ଚ ଏବ (କାର୍ଯ୍ୟ ଏବଂ ଅକାର୍ଯ୍ୟ) [ମନୁଷ୍ୟ] ଅଯଥାବତ୍ ( ଅଯଥାର୍ଥରୂପରେ ) ପ୍ରଜାନାତି (ଜାଣେ) ସା ରାଜସୀ ବୁଦ୍ଧିଃ (ତାହା ରାଜସୀ ବୁଦ୍ଧି ଅଟେ) ।

**ଅନୁବାଦ**—ହେ ପାର୍ଥ, ଯେଉଁ ବୁଦ୍ଧିଦ୍ୱାରା ଧର୍ମ ଅଧର୍ମ **ଓ କାର୍ଯ୍ୟ** ଅକାର୍ଯ୍ୟ ଯଥାର୍ଥ ରୂପରେ ଜଣାଯାଏ ନାହିଁ ସେହି ବୁଦ୍ଧିକୁ ରାଜସିକ ବୁଦ୍ଧି ବୋଲି ଜାଣିବ ।

**ସୁବୋଧିନୀ ଟୀକା**—ରାଜସୀବୁଦ୍ଧିମାହ—ଯୟେତି । ଅଯଥାବତ୍ ସନ୍ଦେହାସ୍ପଦତ୍ୱେନେତ୍ୟର୍ଥଃ । ସ୍ପଷ୍ଟମନ୍ୟତ୍ ।

୩୨ । **ଅନ୍ୱୟଦୀପିକା**—[ହେ] ପାର୍ଥ, ଯା (ଯେଉଁ ବୁଦ୍ଧି) ଅଧର୍ମଂ ଧର୍ମମ୍ ଇତି ମନ୍ୟତେ ( ଅଧର୍ମକୁ ଧର୍ମ ବୋଲି ମନେକରେ ) ସର୍ବାର୍ଥାନ୍ ( ସବୁ ବିଷୟକୁ ) ବିପରୀତାନ୍ ଚ ( ବିପରୀତ ବୋଲି ପ୍ରତିପନ୍ନ କରେ ) ତମସା ଆବୃତା ( ଅଜ୍ଞାନ ଅନ୍ଧକାରଦ୍ୱାରା ଆବୃତ ) ସା ବୁଦ୍ଧିଃ ତାମସୀ ( ସେ ବୁଦ୍ଧି ତାମସୀ ଅଟେ) ।

**ଅନୁବାଦ**—ଯେଉଁ ବୁଦ୍ଧି ଅଜ୍ଞାନ ଅନ୍ଧକାରଦ୍ୱାରା ଆବୃତ ଥିବାରୁ ଅଧର୍ମକୁ ଧର୍ମ ବୋଲି ମନେକରେ ଏବଂ ସବୁ ବିଷୟକୁ ବିପରୀତଭାବରେ ବୁଝେ ସେ ବୁଦ୍ଧି ତାମସୀ ଅଟେ ।

**ସୁବୋଧିନୀ ଟୀକା**—ତାମସୀଂ ବୁଦ୍ଧିମାହ—ଅଧର୍ମମିତି । ବିପରୀତ-ଗ୍ରାହିଣୀ ବୁଦ୍ଧିସ୍ତାମସୀତ୍ୟର୍ଥଃ । ବୁଦ୍ଧିରନ୍ତଃକରଣଂ ପୂର୍ବୋକ୍ତମ୍ । ଇଦାନୀଂ ତୁ ତଦ୍-

ଧୃତ୍ୟା ଯୟା ଧାରୟତେ ମନଃ ପ୍ରାଣେନ୍ଦ୍ରିୟକ୍ରିୟାଃ ।
ଯୋଗେନାବ୍ୟଭିଚାରିଣ୍ୟା ଧୃତିଃ ସା ପାର୍ଥ ସାତ୍ତ୍ୱିକୀ । ୩୩ ।
ଯୟା ତୁ ଧର୍ମକାମାର୍ଥାନ୍ ଧୃତ୍ୟା ଧାରୟତେଽର୍ଜୁନ ।
ପ୍ରସଙ୍ଗେନ ଫଳାକାଂକ୍ଷୀ ଧୃତିଃ ସା ପାର୍ଥ ରାଜସୀ । ୩୪ ।

ବୃତ୍ତିଃ । ଧୃତିରପି ତଦ୍‌ବୃତ୍ତିରେବ । ଯଦ୍‌ବା—ଅନ୍ତଃକରଣସ୍ୟ ଧର୍ମିଣୋ ବୁଦ୍ଧିରପ୍ୟଧ୍ୟବସାୟଲକ୍ଷଣାବୃତ୍ତିରେବ । ଇଚ୍ଛାଦ୍ୱେଷାଦୀନାଂ ତଦ୍‌ବୃତ୍ତୀନାଂ ବହୁତ୍ୱେଽପି ଧର୍ମାଧର୍ମୈକ୍ୟସାଧନତ୍ୱେନ ପ୍ରାଧାନ୍ୟାଦେତାସାଂ ତ୍ରୈବିଧ୍ୟମୁକ୍ତମ୍ । ଉପଲକ୍ଷଣଂ ଚୈତଦନ୍ୟାସାମ୍ ।

୩୩ । **ଅନ୍ୱୟଦୀପିକା**—[ହେ] ପାର୍ଥ, ଯୋଗେନ (ଏକାଗ୍ରତା-ବଶତଃ) ଅବ୍ୟଭିଚାରିଣ୍ୟା (ଐକାନ୍ତିକ) ଯୟା ଧୃତ୍ୟା (ଯେଉଁ ଧୃତିଦ୍ୱାରା) ମନଃପ୍ରାଣେନ୍ଦ୍ରିୟକ୍ରିୟାଃ ( ମନ, ପ୍ରାଣ ଓ ଇନ୍ଦ୍ରିୟର କ୍ରିୟା ସମସ୍ତ ) ଧାରୟତେ (ଧରିହୁଏ ବା ନିୟମିତ ହୁଏ) ସା ଧୃତିଃ ସାତ୍ତ୍ୱିକୀ (ସେହି ଧୃତି ସାତ୍ତ୍ୱିକୀ ଅଟେ) ।

**ଅନୁବାଦ**—ହେ ପାର୍ଥ, ଯେଉଁ ଅବିଚଳିତ-ଧୃତି ଚିତ୍ତର ଏକାଗ୍ରତା-ବଶତଃ ମନ, ପ୍ରାଣ ଓ ଇନ୍ଦ୍ରିୟର କ୍ରିୟାଗୁଡ଼ିକୁ ନିୟମିତ କରେ ତାହା ହିଁ ସାତ୍ତ୍ୱିକୀ ଧୃତି ।

**ସୁବୋଧିନୀ ଟୀକା**—ଇଦାନୀଂ ଧୃତେସ୍ତ୍ରୈବିଧ୍ୟମାହ—ଧୃତ୍ୟେତି ତ୍ରିଭିଃ। ଯୋଗେନ ଚିତ୍ତୈକାଗ୍ର୍ୟେଣ ହେତୁନା ଅବ୍ୟଭିଚାରିଣ୍ୟା ବିଷୟାନ୍ତରମଧାରୟନ୍ତ୍ୟା ଯୟା ଧୃତ୍ୟା ମନସଃ ପ୍ରାଣାନାମ୍ ଇନ୍ଦ୍ରିୟାଣାଂ ଚ କ୍ରିୟା ଧାରୟତେ ନିୟଚ୍ଛତି ସା ଧୃତିଃ ସାତ୍ତ୍ୱିକୀ ।

**ବିବୃତି**—ଧୃତି ଶବ୍ଦର ସାଧାରଣ ଅର୍ଥ ଧୈର୍ଯ୍ୟ । ମାତ୍ର ଏ ସ୍ଥଳରେ ତାହାର ଅର୍ଥ ମନର ଦୃଢ଼ ନିଶ୍ଚୟ । ବୁଦ୍ଧି ଯାହା ନିଶ୍ଚୟ କରେ ଯେଉଁ ଶକ୍ତିଦ୍ୱାରା ତାହା ସ୍ଥିର ଥାଏ ଏବଂ ଇନ୍ଦ୍ରିୟମାନେ ଅବିଚଳିତଭାବରେ ଯହିଁରେ ସ୍ଥିର ରହି ବୁଦ୍ଧିର ନିଶ୍ଚୟ ଅନୁସାରେ କାର୍ଯ୍ୟ କରନ୍ତି ତାହା ହିଁ ଧୃତି । ସାତ୍ତ୍ୱିକୀ ବୁଦ୍ଧିର ନିଶ୍ଚୟ ଅନୁସାରେ ଏହି ଧୃତି ଯୋଗଦ୍ୱାରା ଅର୍ଥାତ୍ ଚିତ୍ତର ଏକାଗ୍ରତା ଦ୍ୱାରା ବା କର୍ମଫଳ ତ୍ୟାଗଜନିତ ଶାନ୍ତିଦ୍ୱାରା ମନ, ପ୍ରାଣ ଓ ଇନ୍ଦ୍ରିୟର କାର୍ଯ୍ୟକୁ ନିୟମିତ କରେ ।

୩୪ । **ଅନ୍ୱୟଦୀପିକା**—[ହେ] ପାର୍ଥ, [ହେ] ଅର୍ଜୁନ ! [ମନୁଷ୍ୟ] ଯୟା ଧୃତ୍ୟା (ଯେଉଁ ଧୃତିଦ୍ୱାରା) ଧର୍ମକାମାର୍ଥାନ୍ (ଧର୍ମ, କାମ ଓ ଅର୍ଥକୁ ) ଧାରୟତେ ( ଧାରଣ କରିଥାଏ) ପ୍ରସଙ୍ଗେନ ଫଳାକାଂକ୍ଷୀ (ଏବଂ ପ୍ରସଙ୍ଗକ୍ରମେ ଫଳ ପାଇବାକୁ ଆକାଂକ୍ଷା ରଖିଥାଏ ), ସା ରାଜସୀ ଧୃତି (ତାହା ରାଜସୀ ଧୃତି) ।

ଯୟା ସ୍ୱପ୍ନଂ ଭୟଂ ଶୋକଂ ବିଷାଦଂ ମଦମେବ ଚ ।
ନ ବିମୁଞ୍ଚତି ଦୁର୍ମେଧା ଧୃତିଃ ସା ପାର୍ଥ ତାମସୀ । ୩୫ ।
ସୁଖଂ ତ୍ୱିଦାନୀଂ ତ୍ରିବିଧଂ ଶୃଣୁ ମେ ଭରତର୍ଷଭ ।
ଅଭ୍ୟାସାଦ୍ରମତେ ଯତ୍ର ଦୁଃଖାନ୍ତଂ ଚ ନିଗଚ୍ଛତି । ୩୬ ।

**ଅନୁବାଦ**—ହେ ପାର୍ଥ, ହେ ଅର୍ଜ୍ଜୁନ, ଯେଉଁ ଧୃତିଦ୍ୱାରା ମନୁଷ୍ୟ କର୍ତ୍ତବ୍ୟମାନ ରଖି ଧର୍ମ, କାମ ଓ ଅର୍ଥ ଭୋଗ କରୁଥାଏ ଏବଂ ସେ ସବୁ ପ୍ରସଙ୍ଗରେ ଫଳ ପାଇବାର ଇଚ୍ଛା ରଖିଥାଏ—ତାହା ରାଜସୀ ଧୃତି ।

**ସୁବୋଧିନୀ ଟୀକା**—ରାଜସୀଂ ଧୃତିମାହ—ଯୟାତ୍ୱିତି । ଯୟା ତୁ ଧୃତ୍ୟା ଧର୍ମାର୍ଥକାମାନ୍ ପ୍ରାଧାନ୍ୟେନ ଧାରୟତେ ନ ବିମୁଞ୍ଚତି ତତ୍ପ୍ରସଙ୍ଗେନ ଫଳାକାଙ୍କ୍ଷୀ ଚ ଭବତି ସା ରାଜସୀ ଧୃତି ।

୩୫ । **ଅନ୍ୱୟଦୀପିକା**—[ହେ] ପାର୍ଥ, ଦୁର୍ମେଧାଃ (ଦୁର୍ବୁଦ୍ଧି ଲୋକ) ଯୟା (ଯାହାଦ୍ୱାରା) ସ୍ୱପ୍ନଂ, ଭୟଂ, ଶୋକଂ, ବିଷାଦଂ, ମଦଂ ଏବ ଚ (ନିଦ୍ରା, ଭୟ, ଶୋକ, ବିଷାଦ ଏବଂ ଗର୍ବ) ନ ବିମୁଞ୍ଚତି (ତ୍ୟାଗ କରେ ନାହିଁ) ସା ଧୃତିଃ ତାମସୀ (ସେ ଧୃତି ତାମସୀ ଅଟେ) ।

**ଅନୁବାଦ**—ହେ ପାର୍ଥ, ଦୁର୍ବୁଦ୍ଧି ଲୋକ ଯେଉଁ ଧୃତିଦ୍ୱାରା ନିଦ୍ରା, ଭୟ, ଶୋକ, ବିଷାଦ ଓ ଗର୍ବ ତ୍ୟାଗ କରେ ନାହିଁ ତାହା ତାମସୀ ଧୃତି ।

**ସୁବୋଧିନୀ ଟୀକା**—ତାମସୀଂ ଧୃତିମାହ—ଯୟେତି । ଦୁଷ୍ଟା ଅବିବେକବହୁଳା ମେଧା ଯସ୍ୟ ସ ଦୁର୍ମେଧାଃ ପୁରୁଷୋ ଯୟା ଧୃତ୍ୟା ସ୍ୱପ୍ନାଦୀନ୍ ନ ବିମୁଞ୍ଚତି ପୁନଃପୁନଃ ଆବର୍ତ୍ତୟତି—ସ୍ୱପ୍ନୋଽତ୍ର ନିଦ୍ରା ସା ଧୃତି ସ୍ତାମସୀ ।

୩୬ । **ଅନ୍ୱୟଦୀପିକା**—[ହେ] ଭରତର୍ଷଭ (ହେ ଭରତକୁଳଶ୍ରେଷ୍ଠ ଅର୍ଜ୍ଜୁନ) ଇଦାନୀଂ (ବର୍ତ୍ତମାନ) ତ୍ରିବିଧଂ ସୁଖଂ ମେ ଶୃଣୁ (ତିନି ପ୍ରକାର ସୁଖ ବିଷୟ ଅମ୍ଭଠାରୁ ଶୁଣ) ।

( ଏ ଶ୍ଳୋକର ଶେଷାର୍ଦ୍ଧ ପରବର୍ତ୍ତୀ ଶ୍ଳୋକ ସଙ୍ଗେ ଅନ୍ୱିତ )

**ଅନୁବାଦ**—ହେ ଅର୍ଜ୍ଜୁନ, ବର୍ତ୍ତମାନ ତ୍ରିବିଧ ସୁଖ ବିଷୟ ଅମ୍ଭଠାରୁ ଶୁଣ ।

**ସୁବୋଧିନୀ ଟୀକା**—ଇଦାନୀଂ ସୁଖସ୍ୟ ତ୍ରୈବିଧ୍ୟଂ ପ୍ରତିଜାନୀତେଽର୍ଦ୍ଧେନ । ସୁଖମିତି । ସ୍ପଷ୍ଟୋଽର୍ଥଃ ।

**ବିବୃତି**—କ୍ରିୟା ଓ କର୍ତ୍ତାର ଗୁଣଭେଦ ଅନୁସାରେ ପ୍ରକାରଭେଦ କହସାରବା ପରେ ବର୍ତ୍ତମାନ କର୍ମର ଫଳ ସ୍ୱରୂପ ଯେଉଁ ସୁଖ ମିଳେ ତାହାର ତ୍ରିବିଧ ଭେଦ ବର୍ଣ୍ଣନା କରହେବ ।

ଯତ୍ତଦଗ୍ରେ ବିଷମିବ ପରିଣାମେଽମୃତୋପମମ୍ ।
ତତ୍ ସୁଖଂ ସାତ୍ତ୍ୱିକଂ ପ୍ରୋକ୍ତମାତ୍ମବୁଦ୍ଧିପ୍ରସାଦଜମ୍ ॥ ୩୭ ॥
ବିଷୟେନ୍ଦ୍ରିୟସଂଯୋଗାଦ୍ୟତ୍ତଦଗ୍ରେଽମୃତୋପମମ୍ ।
ପରିଣାମେ ବିଷମିବ ତତ୍ସୁଖଂ ରାଜସଂ ସ୍ମୃତମ୍ ॥ ୩୮ ॥

୩୭ । **ଅନ୍ୱୟଦୀପିକା**—[ ମନୁଷ୍ୟ ] ଯତ୍ର ( ଯେଉଁ ସୁଖରେ ) ଅଭ୍ୟାସାତ୍ ରମତେ ( କ୍ରମେ ଅଭ୍ୟାସଦ୍ୱାରା ପ୍ରୀତିଲାଭ କରେ ) ଦୁଃଖାନ୍ତଂ ଚ ( ଦୁଃଖର ଅବସାନ ) ନିଗଚ୍ଛତି ( ପ୍ରାପ୍ତ ହୁଏ ), ଯତ୍ତତ (ଯେଉଁ ସୁଖ) ଅଗ୍ରେ (ପ୍ରଥମେ ) ବିଷମ୍ ଇବ ( ବିଷପରି ), ପରିଣାମେ ( ଶେଷରେ ) ଅମୃତୋପମମ୍ ( ଅମୃତ ତୁଲ୍ୟ ), ଆତ୍ମବୁଦ୍ଧି ପ୍ରସାଦଜଂ ( ଆତ୍ମନିଷ୍ଠ ବୁଦ୍ଧିର ପ୍ରସନ୍ନତାରୁ ଜାତ ) ତତ୍ସୁଖଂ (ସେହି ସୁଖ) ସାତ୍ତ୍ୱିକଂ ପ୍ରୋକ୍ତମ୍ (ସାତ୍ତ୍ୱିକ ବୋଲି କଥିତ ହୁଏ) ।

**ଅନୁବାଦ**—ଅଭ୍ୟାସ କଲେ ଯେଉଁ ସୁଖରେ କ୍ରମେ ଆନନ୍ଦଲାଭ ହୁଏ, ଯାହା ପାଇଲେ ଦୁଃଖର ଶେଷ ହୋଇଯାଏ, ଯାହା ପ୍ରଥମେ ବିଷପରି ଜଣାଯାଏ କିନ୍ତୁ ପରିଣାମରେ ଅମୃତ ପରି ହୁଏ, ଯାହା ଆତ୍ମନିଷ୍ଠବୁଦ୍ଧିର ପ୍ରସନ୍ନତାରୁ ଜାତ ହୁଏ—ତାହାହିଁ ସାତ୍ତ୍ୱିକ ସୁଖ ।

**ସୁବୋଧିନୀ ଟୀକା**—ତତ୍ର ସାତ୍ତ୍ୱିକଂ ସୁଖମାହ—ଅଭ୍ୟାସାଦିତି-ସାର୍ଦ୍ଧେନ । ଯତ୍ର ଯସ୍ମିନ୍ସ୍ତୁ ସୁଖେଽଭ୍ୟାସାଦତିପରିଚୟାଦ୍ରମତେ । ନ ତୁ ବିଷୟସୁଖ ଇବ ସହସା ରତିଂ ପ୍ରାପ୍ନୋତି । ଯସ୍ମିନ୍ ରମମାଣଶ୍ଚ ଦୁଃଖସ୍ୟାନ୍ତମବସାନଂ ନିତରାଂ ଗଚ୍ଛତି ପ୍ରାପ୍ନୋତି । କିଦୃଶଂ ତତ୍ ? ଯତ୍ତଦିତି । ଯତ୍ତତ୍ କିମପ୍ୟଗ୍ରେ ପ୍ରଥମଂ ବିଷମିବ ମନଃସଂଯମାଧୀନତ୍ୱାଦ୍ଦୁଃଖାବହମିବ ଭବତି । ପରିଣାମେ ତ୍ୱମୃତସଦୃଶମ୍ । ଆତ୍ମବିଷୟା ବୁଦ୍ଧିରାତ୍ମବୁଦ୍ଧିଃ, ତସ୍ୟାଃ ପ୍ରସାଦୋ ରଜସ୍ତମୋମଲ-ତ୍ୟାଗେନ ସ୍ୱଚ୍ଛତୟାବସ୍ଥାନମ୍ । ତତୋଜାତଂ ଯତ୍ ସୁଖଂ ତତ୍ ସାତ୍ତ୍ୱିକଂ ପ୍ରୋକ୍ତଂ ଯୋଗିଭିଃ ।

୩୮ । **ଅନ୍ୱୟଦୀପିକା**—ବିଷୟେନ୍ଦ୍ରିୟସଂଯୋଗାତ୍ ( ବିଷୟ ଏବଂ ଇନ୍ଦ୍ରିୟ ସଂଯୋଗରୁ ଉତ୍ପନ୍ନ ) ଯତ୍ତତ୍ ( ଯେଉଁ ସୁଖ ) ଅଗ୍ରେ ଅମୃତୋପମଂ ( ପ୍ରଥମେ ଅମୃତ ପରି ) [କିନ୍ତୁ] ପରିଣାମେ (ଶେଷରେ) ବିଷମ୍ଇବ (ବିଷପରି) ତତ୍ ସୁଖଂ ( ସେହି ସୁଖ ) ରାଜସଂ ସ୍ମୃତମ୍ ( ରାଜସ ବୋଲି କଥିତ ହୁଏ ) ।

**ଅନୁବାଦ**—ବିଷୟ ଓ ଇନ୍ଦ୍ରିୟ ସଂଯୋଗରୁ ଯେଉଁ ସୁଖର ଉତ୍ପତ୍ତି ହୁଏ ଏବଂ ଯେଉଁ ସୁଖ ପ୍ରଥମେ ଅମୃତପରି କିନ୍ତୁ ଶେଷରେ ବିଷପରି ବୋଧହୁଏ ସେ ସୁଖକୁ 'ରାଜସସୁଖ' କୁହାଯାଏ ।

ଯଦଗ୍ରେ ଚାନୁବନ୍ଧେ ଚ ସୁଖଂ ମୋହନମାତ୍ମନଃ ।
ନିଦ୍ରାଲସ୍ୟ ପ୍ରମାଦୋତ୍ଥଂ ତତ୍ତାମସମୁଦାହୃତମ୍ । ୩୯ ।
ନ ତଦସ୍ତି ପୃଥିବ୍ୟାଂ ବା ଦିବି ଦେବେଷୁ ବା ପୁନଃ ।
ସତ୍ତ୍ୱଂ ପ୍ରକୃତିଜୈର୍ମୁକ୍ତଂ ଯଦେଭିଃ ସ୍ୟାତ୍ତ୍ରିଭିର୍ଗୁଣୈଃ । ୪୦ ।

**ସୁବୋଧିନୀ ଟୀକା**—ରାଜସଂ ସୁଖମାହ—ବିଷୟେତି । ବିଷୟାଣାମିନ୍ଦ୍ରିୟାଣାଂ ଚ ସଂଯୋଗାଦ୍ ଯତ୍ତତ୍ ପ୍ରସିଦ୍ଧଂ ସ୍ତ୍ରୀସଂସର୍ଗାଦିସୁଖମମୃତମୁପମା ଯସ୍ୟ ତାଦୃଶଂ ଭବତ୍ୟଗ୍ରେ ପ୍ରଥମମ୍ । ପରିଣାମେ ତୁ ବିଷତୁଲ୍ୟଂ । ଇହାମୁତ୍ର ଚ ଦୁଃଖହେତୁତ୍ୱାତ୍ । ତତ୍ସୁଖଂ ରାଜସଂ ସ୍ମୃତମ୍ ।

**୩୯ । ଅନ୍ୱୟଦୀପିକା**—ଯତ୍ ଚ ସୁଖଂ (ଯେଉଁ ସୁଖ) ଅଗ୍ରେ (ପ୍ରଥମେ) ଅନୁବନ୍ଧେ ଚ (ଏବଂ ପରିଣାମରେ) ଆତ୍ମନଃ ମୋହନଂ (ବୁଦ୍ଧିର ମୋହଜନକ) ନିଦ୍ରାଲସ୍ୟ ପ୍ରମାଦୋତ୍ଥଂ (ନିଦ୍ରା, ଆଳସ୍ୟ ଓ ଅନବଧାନତାରୁ ଉତ୍ପନ୍ନ) ତତ୍ (ସେହି ସୁଖ) ତାମସମ୍ ଉଦାହୃତଂ (ତାମସ ବୋଲି କଥିତ ହୁଏ)।

**ଅନୁବାଦ**—ଯେଉଁ ସୁଖ ପ୍ରଥମେ ଏବଂ ଶେଷରେ ମଧ୍ୟ ଆତ୍ମା ବା ବୁଦ୍ଧିର ମୋହଜନକ ଏବଂ ଯାହା ନିଦ୍ରା, ଆଳସ୍ୟ ବା ଅସାବଧାନତାରୁ ଜାତ ହୁଏ ତାହା ତାମସସୁଖ ।

**ସୁବୋଧିନୀ ଟୀକା**—ତାମସଂ ସୁଖମାହ—ଯଦିତି । ଅଗ୍ରେ ଚ ପ୍ରଥମକ୍ଷଣେଽନୁବନ୍ଧେ ଚ ପଶ୍ଚାଦପି ଯତ୍ ସୁଖମାତ୍ମନୋମୋହକରମ୍ । ତଦେବାହ—ନିଦ୍ରା ଆଳସ୍ୟଂ ଚ ପ୍ରମାଦଶ୍ଚ କର୍ତ୍ତବ୍ୟାର୍ଥାବଧାରଣରାହିତ୍ୟେନ ମନୋଗ୍ରାହ୍ୟମେତେଭ୍ୟ ଉତ୍ତିଷ୍ଠତି ଯତ୍ସୁଖଂ ତତ୍ତାମସମୁଦାହୃତମ୍ ।

**ବିବୃତି**—୩୬ଶ ଶ୍ଳୋକରୁ ୩୯ଶ ଶ୍ଳୋକରେ ସାତ୍ତ୍ୱିକାଦି ସୁଖର ଯେଉଁ ବିବରଣ ଦିଆଗଲା, ତହିଁରୁ ଦେଖାଯିବ ଯେ ସାତ୍ତ୍ୱିକ ସୁଖ ହିଁ ଆତ୍ମନିଷ୍ଠ ବୁଦ୍ଧିରୁ ଜାତ ଏବଂ ତାହା ହିଁ ନିତ୍ୟ ଏବଂ ପ୍ରକୃତ ସୁଖ । ରାଜସ ସୁଖ ବୈଷୟିକସୁଖ ବା ଆଧିଭୌତିକ ସୁଖ । ଏ ସୁଖ ପ୍ରଥମେ ଅମୃତ ପରି ବୋଧହୁଏ କିନ୍ତୁ ପରିଣାମରେ ବିଷ ଭଳି ଲାଗେ । ବିଷୟ ସଂସର୍ଗଜ ସୁଖ ସହସା ମିଳେ କିନ୍ତୁ ସାତ୍ତ୍ୱିକ ସୁଖ ଦୃଢ଼ ବୈରାଗ୍ୟ ଅଭ୍ୟାସଦ୍ୱାରା ବହୁକାଳ ପରେ ଅନୁଭୂତ ହୋଇଥାଏ । ତାମସ ସୁଖ ଏ ଦୁଇ ସୁଖରୁ ସ୍ୱତନ୍ତ୍ର । ଶୋଇ ଶୋଇ ଲୋକେ ଯେଉଁ ଆନନ୍ଦ ଅନୁଭବ କରନ୍ତି ତାହାକୁ ତାମସିକ ଆନନ୍ଦ କୁହାଯାଏ ।

**୪୦ । ଅନ୍ୱୟଦୀପିକା**—ପୃଥିବ୍ୟାଂ ବା (ପୃଥିବୀରେ) ଦିବି (ଆକାଶରେ) ଦେବେଷୁ ବା (ସ୍ୱର୍ଗରେ ଦେବତାମାନଙ୍କ ମଧ୍ୟରେ ବା)

ବ୍ରାହ୍ମଣକ୍ଷତ୍ରିୟବିଶାଂ ଶୂଦ୍ରାଣାଂ ଚ ପରନ୍ତପ ।
କର୍ମାଣି ପ୍ରବିଭକ୍ତାନି ସ୍ୱଭାବ ପ୍ରଭବୈର୍ଗୁଣୈଃ । ୪୧ ।

ତତ୍ ସତ୍ତ୍ୱଂ ନ ଅସ୍ତି ( ଏପରି ପ୍ରାଣୀ ବା ବସ୍ତୁ ନାହିଁ ) ଯତ୍ ( ଯେ ) ଏଭିଃ ( ଏହି ) ପ୍ରକୃତିଜୈଃ ( ପ୍ରକୃତିଜାତ ) ତ୍ରିଭିଃ ଗୁଣୈଃ ( ତିନିଗୁଣରୁ ) ମୁକ୍ତଃ ସ୍ୟାତ୍ ( ମୁକ୍ତ ହୋଇଅଛି ) ।

**ଅନୁବାଦ**—ପୃଥିବୀରେ, ଆକାଶରେ ବା ସ୍ୱର୍ଗରେ ଦେବତାମାନଙ୍କ ମଧ୍ୟରେ ଏପରି ପ୍ରାଣୀ ବା ବସ୍ତୁ ନାହିଁ ଯାହା ପ୍ରକୃତି ଜାତ ଏହି ସତ୍ତ୍ୱାଦି ଗୁଣରୁ ମୁକ୍ତ ।

**ସୁବୋଧିନୀ ଟୀକା**—ଅନୁକ୍ତମପି ସଂଗୃହ୍ଣନ୍ ପ୍ରକରଣାର୍ଥମୁପସଂହରତି । ନ ତଦସ୍ତି । ଏଭିଃ । ପ୍ରକୃତିସମ୍ଭବୈଃ ସତ୍ତ୍ୱାଦିଭିସ୍ତ୍ରିଭିର୍ଗୁଣୈର୍ମୁକ୍ତଂ ପ୍ରାଣିଜାତମ୍ । ଅନ୍ୟଦ୍ୱା ଯତ୍ ସ୍ୟାତ୍ ତତ୍ । ପୃଥିବ୍ୟାଂ ମନୁଷ୍ୟଲୋକାଦିଷୁ ଦିବି ଦେବେଷୁ ବା କ୍ୱାପି ନାସ୍ତୀତ୍ୟର୍ଥଃ ।

**ବିବୃତି**—ଅଷ୍ଟାଦଶ ଶ୍ଳୋକରୁ ଏ ପର୍ଯ୍ୟନ୍ତ ଜ୍ଞାନ, କର୍ମ, କର୍ତ୍ତା, ବୁଦ୍ଧି, ଧୃତି ଓ ସୁଖର ଗୁଣଭେଦରେ କିପରି ପାର୍ଥକ୍ୟ ହୁଏ ତାହା ବର୍ଣ୍ଣନା କରି ଭଗବାନ୍ ଯେଉଁ ଶିକ୍ଷା ଦେଖାଇଲେ, ତହିଁରୁ ବୁଝାଯିବ ଯେ ଏ ସମସ୍ତ ଭେଦ ମଧ୍ୟରେ ସାତ୍ତ୍ୱିକ ଭେଦ ହିଁ ଶ୍ରେଷ୍ଠ । ପ୍ରତ୍ୟେକ ଲୋକ ରାଜସିକ ଓ ତାମସିକ ପ୍ରକୃତି ତ୍ୟାଗ କରି ସାତ୍ତ୍ୱିକ ପ୍ରକୃତି ଧାରଣ କରିବାକୁ ଚେଷ୍ଟା କରିବ ।

ଗୁଣତ୍ରୟର ସାମ୍ୟାବସ୍ଥା ହିଁ ପ୍ରକୃତି । ପ୍ରକୃତିର ବୈଷମ୍ୟ ହେଲେ ଗୁଣ ତ୍ରୟର ସ୍ଫୁରଣ ହୁଏ । ଏହା ହିଁ ସୃଷ୍ଟି ଉତ୍ପତ୍ତିର ହେତୁ । ପୃଥିବୀରେ ଅର୍ଥାତ୍ ଏହି ଭୂଲୋକରେ, ଆକାଶରେ ଅର୍ଥାତ୍ ଭୁବଲୋକରେ, ସ୍ୱର୍ଗରେ ଅର୍ଥାତ୍ ସ୍ୱର୍ଲୋକରେ ଏପରି ପ୍ରାଣୀ ବା ବସ୍ତୁ ନାହିଁ ଯାହା ଏହି ପ୍ରକୃତିଜାତ ଗୁଣତ୍ରୟରୁ ମୁକ୍ତ ।

**୪୧ । ଅନ୍ୱୟଦୀପିକା**—[ହେ] ପରନ୍ତପ (ଶତ୍ରୁବିନାଶକ), ବ୍ରାହ୍ମଣ କ୍ଷତ୍ରିୟବିଶାଂ (ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କର) ଶୂଦ୍ରାଣାଂ ଚ (ଏବଂ ଶୂଦ୍ର-ମାନଙ୍କର) କର୍ମାଣି ( କର୍ମସମୂହ ) ସ୍ୱଭାବ-ପ୍ରଭବୈଃ (ସ୍ୱଭାବଜାତ) ଗୁଣୈଃ (ଗୁଣ ଅନୁସାରେ) ପ୍ରବିଭକ୍ତାନି (ବିଭକ୍ତ ହୋଇଅଛି) ।

**ଅନୁବାଦ**—ହେ ପରନ୍ତପ, ସ୍ୱଭାବ ଜାତ ଗୁଣ ଅନୁସାରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର—ଏମାନଙ୍କର କର୍ମ ପୃଥକ୍ ପୃଥକ୍ ରୂପେ ବ୍ୟବସ୍ଥିତ ହୋଇଅଛି ।

**ସୁବୋଧିନୀ ଟୀକା**—ନନୁ ଚ ଯଦ୍ୟେବଂ ସର୍ବମପି କ୍ରିୟାକାରକ-ଫଳାଦିକଂ ପ୍ରାଣିଜାତଂ ଚ ତ୍ରିଗୁଣାତ୍ମକମେବ ତର୍ହି କଥମସ୍ୟ ମୋକ୍ଷ ଇତ୍ୟ-

ପେକ୍ଷାୟାଂ ସ୍ୱସ୍ୱାଧିକାରେଣ ବିହିତୈଃ କର୍ମଭିଃ ପରମେଶ୍ୱରାରାଧନାତ୍ ତତ୍-ପ୍ରସାଦଲବ୍ଧଜ୍ଞାନେନୈବେତ୍ୟେବଂ ସର୍ବଗୀତାର୍ଥସାରଂ ସଂଗୃହ୍ୟ ପ୍ରଦର୍ଶୟିତୁଂ ପ୍ରକରଣାନ୍ତରମାରଭତେ—ବ୍ରାହ୍ମଣେତ୍ୟାଦି ଯାବଦଧ୍ୟାୟସମାପ୍ତି । ହେ ପରନ୍ତପ, ହେ ଶତ୍ରୁତାପନ । ବ୍ରାହ୍ମଣାନାଂ କ୍ଷତ୍ରିୟାଣାଂ ବିଶାଂ ଚ ଶୂଦ୍ରାଣାଂ ଚ କର୍ମାଣି ପ୍ରବିଭକ୍ତାନି ପ୍ରକର୍ଷେଣ ବିଭାଗତୋ ବିହିତାନି, ଶୂଦ୍ରାଣାଂ ସମାସାତ୍ ପୃଥକ୍ କରଣଂ ଦ୍ୱିଜତ୍ୱାଭାବେନ ବୈଲକ୍ଷଣ୍ୟାତ୍ । ବିଭାଗୋପଲକ୍ଷଣମାହ—ସ୍ୱଭାବଃ ସାତ୍ତ୍ୱିକାଦିଃ ପ୍ରଭବତି ପ୍ରାଦୁର୍ଭବତି ଯେଭ୍ୟସ୍ତୈର୍ଗୁଣୈରୁପଲକ୍ଷଣଭୂତୈଃ । ଯଦ୍ ବା ସ୍ୱଭାବଃ ପୂର୍ବଜନ୍ମସଂସ୍କାରଃ । ତସ୍ମାତ୍ ପ୍ରାଦୁର୍ଭୂତୈରିତ୍ୟର୍ଥଃ । ତତ୍ର ସତ୍ତ୍ୱପ୍ରଧାନା ବ୍ରାହ୍ମଣାଃ, ସତ୍ତ୍ୱୋପସର୍ଜନରଜଃପ୍ରଧାନାଃ କ୍ଷତ୍ରିୟାଃ । ତମ ଉପସର୍ଜନ ରଜଃପ୍ରଧାନା ବୈଶ୍ୟାଃ । ରଜଉପସର୍ଜନତମଃପ୍ରଧାନାଃ ଶୂଦ୍ରାଃ ।

**ବିବୃତି**—ପୂର୍ବ ଶ୍ଳୋକରେ ଭଗବାନ୍ କହିଲେ ପୃଥିବୀ, ଆକାଶ, ସ୍ୱର୍ଗ—ସର୍ବତ୍ର ପ୍ରାଣୀ ଓ ବସ୍ତୁସମୂହ ତ୍ରିଗୁଣାତ୍ମକ । ଏପରି ଅବସ୍ଥାରେ କିପରି ସେମାନଙ୍କର ମୋକ୍ଷ ହେବ ? ଏହାର ସମାଧାନ ଉଦ୍ଦେଶ୍ୟରେ ଭଗବାନ୍ ସମଗ୍ର ଗୀତାଶାସ୍ତ୍ରର ସାରସଂଗ୍ରହ କରି, ନିଜ ନିଜ କର୍ତ୍ତବ୍ୟରୂପରେ ବିହିତ କର୍ମ କରିବା ଦ୍ୱାରା ପରମେଶ୍ୱରଙ୍କ ଅନୁଗ୍ରହ ଲବ୍ଧ ଜ୍ଞାନବଳରେ ଲୋକ ମୋକ୍ଷଲାଭ କରି ପାରିବ ଏହା କହୁଅଛନ୍ତି ।

ଏଥିପୂର୍ବେ ଚତୁର୍ଥ ଅଧ୍ୟାୟର ୧୩ଶ ଶ୍ଳୋକରେ ଭଗବାନ୍ ବ୍ରାହ୍ମଣାଦି ଶୂଦ୍ର ବର୍ଣ୍ଣର ଗୁଣକର୍ମ ବିଭାଗରେ ସୃଷ୍ଟି ହେବା ବିଷୟ ବର୍ଣ୍ଣନ କରି ପରେ କହିଅଛନ୍ତି ଯେ କର୍ତ୍ତବ୍ୟ ଅକର୍ତ୍ତବ୍ୟର ନିର୍ଦ୍ଧାରଣ ଶାସ୍ତ୍ରବିଧି ଅନୁସାରେ କରିବା ଉଚିତ । ଶାସ୍ତ୍ରବିଧି ଅନୁସାରେ କାହାର କର୍ତ୍ତବ୍ୟ କଅଣ ଏ ପର୍ଯ୍ୟନ୍ତ ତାହା କୁହାଯାଇ ନ ଥିଲା । ଯେଉଁ ସଂସ୍ଥାଦ୍ୱାରା ସମାଜରେ ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ ନିୟତ ହୁଏ ଅର୍ଥାତ୍ ସ୍ଥିର କରାଯାଏ, ଗୁଣତ୍ରୟ ବିଭାଗ ଅନୁସାରେ ସେହି ବ୍ରାହ୍ମଣାଦି ଶୂଦ୍ର ବର୍ଣ୍ଣର କର୍ତ୍ତବ୍ୟ ଏଠାରେ ବର୍ଣ୍ଣନା କରାଯିବ ।

ପୂର୍ବେ କୁହାଯାଇଅଛି ଯେ ( ୪।୧୩ ବିବୃତି ଦେଖ ) ବର୍ଣ୍ଣ ଓ ଜାତି ଏକ କଥା ନୁହେ । ବର୍ଣ୍ଣାଶ୍ରମଧର୍ମ ବୈଦିକ ଯୁଗରୁ ପ୍ରଚଳିତ ଥିଲା । ପରେ ବ୍ୟବସାୟ ଭେଦରେ ଜାତି ବିଭାଗର ସୃଷ୍ଟି ହେଲା । ଏବେ ଆମ ସମାଜରେ ବର୍ଣ୍ଣ ଚାରିଗୋଟି ମାତ୍ର ଜାତି ଅସଂଖ୍ୟ । ଚାରିବର୍ଣ୍ଣର ଆଶ୍ରମ ଧର୍ମ ମଧ୍ୟ ଏଯୁଗରେ ପୂର୍ବ ପରି ନାହିଁ । କାଳର ଗତିରେ ପରିବର୍ତ୍ତନ ଅସ୍ୱାଭାବିକ ନୁହେ । ବ୍ରାହ୍ମଣ ବଂଶରେ ଜନ୍ମଗ୍ରହଣ କଲେ ସମସ୍ତେ ଯେ ବ୍ରାହ୍ମଣଙ୍କ ପାଇଁ ନିୟତ ହୋଇଥିବା କର୍ତ୍ତବ୍ୟ କରିବେ—ଏପରି ନୁହେ । ମହାଭାରତୀୟ ଯୁଗରୁ ମଧ୍ୟ ଏହାର ପରିବର୍ତ୍ତନ ଦେଖାଯାଏ । ଦ୍ରୋଣ, କୃପ, ଅଶ୍ୱତ୍ଥାମା—ଏମାନେ ବ୍ରାହ୍ମଣ କିନ୍ତୁ କ୍ଷତ୍ରିୟ ବିହିତ

ଶମୋଦମସ୍ତପଃ ଶୌଚଂ କ୍ଷାନ୍ତିରାର୍ଜବମେବ ଚ ।
ଜ୍ଞାନଂ ବିଜ୍ଞାନମାସ୍ତିକ୍ୟଂ ବ୍ରହ୍ମକର୍ମ ସ୍ୱଭାବଜମ୍ । ୪୨ ।
ଶୌର୍ଯ୍ୟଂ ତେଜୋଧୃତିର୍ଦାକ୍ଷ୍ୟଂ ଯୁଦ୍ଧେ ଚାପ୍ୟପଲାୟନମ୍ ।
ଦାନମୀଶ୍ୱରଭାବଶ୍ଚ କ୍ଷାତ୍ରଂ କର୍ମ ସ୍ୱଭାବଜମ୍ । ୪୩ ।

କର୍ମ କରି ସମାଜରେ ପ୍ରତିଷ୍ଠିତ ଥିଲେ । ଅନ୍ୟ ବର୍ଣ୍ଣମାନଙ୍କର ଏ ଭଳି କର୍ତ୍ତବ୍ୟ ପରିବର୍ତ୍ତନର ବହୁ ଉଦାହରଣ ମଧ୍ୟ ଶାସ୍ତ୍ରରେ ଦେଖାଯାଏ । ଏଥିରୁ ଜଣାଯାଉଅଛି ଯେ, ଗୁଣକର୍ମ ବିଭାଗ ବ୍ୟକ୍ତିଗତ ସ୍ୱଭାବ ଅନୁରୂପ ଏହା ବଂଶଗତ ବା ବାଧତାମୂଳକ ନୁହେ । ଗୁରବର୍ଣ୍ଣର ସଂସ୍ଥା ସ୍ଥିର ନ ରହିଲେ କୌଣସି ସମାଜ ତିଷ୍ଠିପାରେ ନାହିଁ । ତେଣୁ ପ୍ରତ୍ୟେକ ବର୍ଣ୍ଣର ସ୍ୱଭାବଜାତ କର୍ମ ଏଠାରେ କୁହାଯାଉଅଛି ।

୪୨ । **ଅନ୍ୱୟଦୀପିକା**—ଶମଃ ( ଚିତ୍ତଶାନ୍ତି ), ଦମଃ ( ଇନ୍ଦ୍ରିୟ-ସଂଯମ ), ତପଃ ( ତପସ୍ୟା ), ଶୌଚ ( ବାହ୍ୟ ଏବଂ ଅଭ୍ୟନ୍ତରର ପବିତ୍ରତା ) କ୍ଷାନ୍ତିଃ ( କ୍ଷମା ), ଆର୍ଜବଂ ( ସରଳତା ), ଜ୍ଞାନଂ ( ଶାସ୍ତ୍ରପାଣ୍ଡିତ୍ୟ ) ବିଜ୍ଞାନଂ ( ଆତ୍ମତତ୍ତ୍ୱର ଅନୁଭବ ), ଆସ୍ତିକ୍ୟଂ ( ପରଲୋକ ବିଶ୍ୱାସ ) ସ୍ୱଭାବଜଂ ବ୍ରାହ୍ମଂ କର୍ମ ( ଏ ଗୁଡ଼ିକ ବ୍ରାହ୍ମଣର ସ୍ୱାଭାବିକ କର୍ମ ) ।

**ଅନୁବାଦ**—ଚିତ୍ତ ଶାନ୍ତି, ବାହ୍ୟେନ୍ଦ୍ରିୟ ସଂଯମ, ତପସ୍ୟା, ବାହ୍ୟ ଏବଂ ଅଭ୍ୟନ୍ତର ଶୁଦ୍ଧି, ସରଳତା, ଶାସ୍ତ୍ରପାଣ୍ଡିତ୍ୟ, ଆତ୍ମାନୁଭବ, ପରଲୋକ ବିଶ୍ୱାସ—ଏଗୁଡ଼ିକ ବ୍ରାହ୍ମଣଙ୍କର ସ୍ୱାଭାବିକ କର୍ମ ।

**ସୁବୋଧିନୀ ଟୀକା**—ତତ୍ର ବ୍ରାହ୍ମଣସ୍ୟ ସ୍ୱଭାବିକାନି କର୍ମାଣ୍ୟାହ । ଶମ ଇତି । ଶମଶ୍ଚିତ୍ତୋପରମଃ । ଦମୋ ବାହ୍ୟେନ୍ଦ୍ରିୟୋପରମଃ । ତପଃ ପୂର୍ବୋକ୍ତଂ ଶାରୀରାଦି । ଶୌଚଂ ବାହ୍ୟାଭ୍ୟନ୍ତରମ୍ । କ୍ଷାନ୍ତିଃ କ୍ଷମା, ଆର୍ଜବ-ମବକ୍ରତା, ଜ୍ଞାନଂ ଶାସ୍ତ୍ରୀୟଂ । ବିଜ୍ଞାନମନୁଭବଃ । ଆସ୍ତିକ୍ୟମସ୍ତିପରଲୋକ ଇତି ନିଶ୍ଚୟଃ । ଏତଚ୍ଛମାଦି ବ୍ରାହ୍ମଣସ୍ୟ ସ୍ୱଭାବାଜ୍ଜାତଂ କର୍ମ ।

**ବିବୃତି**—ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ, ଦାନ ଓ ପ୍ରତିଗ୍ରହ—ଏଗୁଡ଼ିକ ଏ ଶ୍ଳୋକ ନିର୍ଦ୍ଦିଷ୍ଟ ବ୍ରାହ୍ମଣର କର୍ମ ବୋଲି ବୁଝିବାକୁ ହେବ । ଅଯାଚିତଭାବରେ କେହି ଦେଲେ ତାହା ଗ୍ରହଣକରିବା ହିଁ ପ୍ରତିଗ୍ରହ ।

୪୩ । **ଅନ୍ୱୟଦୀପିକା**—ଶୌର୍ଯ୍ୟଂ (ପରାକ୍ରମ), ତେଜଃ (ବୀର୍ଯ୍ୟ) ଧୃତିଃ (ଧୈର୍ଯ୍ୟ) ଦାକ୍ଷ୍ୟଂ (କାର୍ଯ୍ୟରେ କୌଶଳ), ଯୁଦ୍ଧେ ଚ ଅପି ଅପଲାୟନଂ ( ଯୁଦ୍ଧରେ ଅପରାଙ୍ମୁଖତା ) ଦାନଂ ( ଉଦାରତା ), ଈଶ୍ୱରଭାବଃ ( ପ୍ରଭୁଭକ୍ତି ପ୍ରକାଶ )—ସ୍ୱଭାବଜଂ କ୍ଷାତ୍ରଂ କର୍ମ (ଏଗୁଡ଼ିକ କ୍ଷତ୍ରିୟର ସ୍ୱାଭାବିକ କର୍ମ) ।

କୃଷି ଗୌରକ୍ଷ୍ୟ ବାଣିଜ୍ୟଂ ବୈଶ୍ୟଂ କର୍ମ ସ୍ୱଭାବଜମ୍ ।
ପରିଚର୍ଯ୍ୟାତ୍ମକଂ କର୍ମ ଶୂଦ୍ରସ୍ୟାପି ସ୍ୱଭାବଜମ୍ । ୪୪ ।

**ଅନୁବାଦ**—ପରାକ୍ରମ, ତେଜସ୍ୱିତା, ଧୈର୍ଯ୍ୟ, କର୍ମକୁଶଳତା, ଯୁଦ୍ଧରେ ଅପରାଙ୍ମୁଖତା, ଦାନରେ ଉଦାରତା, ଶାସନଦକ୍ଷତା—ଏଗୁଡ଼ିକ କ୍ଷତ୍ରିୟର ସ୍ୱାଭାବିକ କର୍ମ ।

**ସୁବୋଧିନୀ ଟୀକା**—କ୍ଷତ୍ରିୟସ୍ୟ ସ୍ୱାଭାବିକାନି କର୍ମାଣ୍ୟାହ । ଶୌର୍ଯ୍ୟମିତି । ଶୌର୍ଯ୍ୟଂ ପରାକ୍ରମଃ, ତେଜଃ ପ୍ରାଗଲ୍‌ଭ୍ୟଂ, ଧୃତି ଧୈର୍ଯ୍ୟଂ । ଦାକ୍ଷ୍ୟଂ କୌଶଳଂ । ଯୁଦ୍ଧେଽପ୍ୟପଲାୟନମପରାଙ୍ମୁଖତା । ଦାନ ମୌଦାର୍ଯ୍ୟମ୍ । ଈଶ୍ୱରଭାବୋ ନିୟମନଶକ୍ତିଃ ଏତତ୍ କ୍ଷତ୍ରିୟସ୍ୟ ସ୍ୱାଭାବିକଂ କର୍ମ ।

୪୪ । **ଅନ୍ୱୟଦୀପିକା**—କୃଷିଗୌରକ୍ଷ୍ୟବାଣିଜ୍ୟଂ (କୃଷି, ଗୋରକ୍ଷା ଓ ବାଣିଜ୍ୟ) ସ୍ୱଭାବଜଂ ( ସ୍ୱାଭାବିକ ) ବୈଶ୍ୟଂ କର୍ମ ( ବୈଶ୍ୟର କର୍ମ ), ଶୂଦ୍ରସ୍ୟ ଅପି (ଏବଂ ଶୂଦ୍ରର) ପରିଚର୍ଯ୍ୟାତ୍ମକଂ କର୍ମ (ସେବା ରୂପ କର୍ମ), ସ୍ୱଭାବଜମ୍ (ସ୍ୱାଭାବିକ ଅଟେ) ।

**ଅନୁବାଦ**—କୃଷିକର୍ମ, ଗୋପାଳନ, ବାଣିଜ୍ୟ, ବ୍ୟବସାୟ—ଏଗୁଡ଼ିକ ବୈଶ୍ୟର ସ୍ୱାଭାବିକ କର୍ମ ଏବଂ ଅନ୍ୟର ସେବା କରିବା ଅର୍ଥାତ୍ ଭୃତ୍ୟଭାବରେ କାର୍ଯ୍ୟକରିବା ଶୂଦ୍ରର ସ୍ୱାଭାବିକ କର୍ମ ।

**ସୁବୋଧିନୀ ଟୀକା**—ବୈଶ୍ୟଶୂଦ୍ରୟୋଃ କର୍ମାଣ୍ୟାହ । କୃଷୀତି, କୃଷିଃ କର୍ଷଣଂ । ଗାଂରକ୍ଷତୀତି ଗୋରକ୍ଷଃ ତସ୍ୟ ଭାବୋ ଗୌରକ୍ଷ୍ୟଂ । ପାଶୁପାଲ୍ୟମିତ୍ୟର୍ଥଃ । ବାଣିଜ୍ୟଂ କ୍ରୟବିକ୍ରୟାଦି । ଏତଦ୍ ବୈଶ୍ୟସ୍ୟ ସ୍ୱଭାବଜଂ କର୍ମ । ତ୍ରୈବର୍ଣ୍ଣିକପରିଚର୍ଯ୍ୟାତ୍ମକଂ ଶୂଦ୍ରସ୍ୟାପି ସ୍ୱଭାବଜଂ କର୍ମ ।

**ବିବୃତି**—ପ୍ରତ୍ୟେକ ଲୋକଠାରେ ସତ୍ତ୍ୱ, ରଜଃ, ତମଃ ପ୍ରକୃତିର ଏହି ତିନି ଗୁଣ ଅଳ୍ପାଧିକ ପରିମାଣରେ ବିଦ୍ୟମାନ ଅଛି । ଯାହାଙ୍କଠାରେ ସତ୍ତ୍ୱଗୁଣର ଆଧିକ୍ୟ ସେ ବ୍ରାହ୍ମଣ, ଶମଦମାଦି ତାଙ୍କର ପ୍ରଧାନ ଲକ୍ଷଣ । ତଦନୁସାରେ ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ, ଦାନ, ପ୍ରତିଗ୍ରହ—ଏହି ଛଅ ପ୍ରକାର କର୍ମ ତାଙ୍କ ପାଇଁ ନିର୍ଦ୍ଦିଷ୍ଟ । ଅଯାଚିତ ଭାବରେ ଦାନଗ୍ରହଣ ହିଁ ପ୍ରତିଗ୍ରହ । ସତ୍ତ୍ୱମିଶ୍ରିତ ରଜୋଗୁଣ କ୍ଷତ୍ରିୟର ପ୍ରକୃତିସିଦ୍ଧ ଏବଂ ଶୌର୍ଯ୍ୟ ବୀର୍ଯ୍ୟାଦି ପ୍ରକାଶ ତାହାର ଲକ୍ଷଣ । ସତ୍ତ୍ୱଗୁଣ ସଙ୍ଗେ ସମ୍ପୃକ୍ତ ଥିବାରୁ ବ୍ରାହ୍ମଣ ପାଇଁ ବିହିତକର୍ମର ମଧ୍ୟ ସେ ଅଧିକାରୀ । ବୈଶ୍ୟ ପ୍ରକୃତିରେ ତମଃ ସମ୍ମିଶ୍ରିତ ରଜୋଗୁଣର ଆଧିକ୍ୟ, ତେଣୁ କୃଷି ବାଣିଜ୍ୟାଦି ତାହାର ସ୍ୱଭାବସିଦ୍ଧ କର୍ମ । ଯେଉଁମାନଙ୍କ ପ୍ରକୃତିରେ ସତ୍ତ୍ୱଗୁଣର ପ୍ରକାଶ ଅତ୍ୟଳ୍ପ ଏବଂ ତମୋଗୁଣ ଅଧିକ ସେମାନଙ୍କର ବୃଦ୍ଧି

ସ୍ୱେ ସ୍ୱେ କର୍ମଣ୍ୟଭିରତଃ ସଂସିଦ୍ଧିଂ ଲଭତେ ନରଃ ।
ସ୍ୱକର୍ମନିରତଃ ସିଦ୍ଧିଂ ଯଥାବିନ୍ଦତି ତଚ୍ଛୃଣୁ । ୪୫ ।
ଯତଃ ପ୍ରବୃତ୍ତିର୍ଭୂତାନାଂ ଯେନ ସର୍ବମିଦଂ ତତମ୍ ।
ସ୍ୱକର୍ମଣା ତମଭ୍ୟର୍ଚ୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ । ୪୬ ।

ନିଷ୍ଠେଷ୍ଟ ବା ଜଡ଼ । ସେପରି ଲୋକ ପକ୍ଷରେ ଅନ୍ୟ ଲୋକଙ୍କର ସେବା କରିବା ବା ଭୃତ୍ୟତ୍ୱ କରିବା ସ୍ୱାଭାବିକ । ସେମାନେ ଶୂଦ୍ରପଦବାଚ୍ୟ । ପ୍ରାଚୀନ ଭାରତରେ ବ୍ରାହ୍ମଣର ଧର୍ମଜ୍ଞାନ, କ୍ଷତ୍ରିୟର ପରାକ୍ରମ, ବୈଶ୍ୟର ଧନାର୍ଜ୍ଜନ ଓ ଶୂଦ୍ରର ସେବାକର୍ମ ଦ୍ୱାରା ସମାଜ ସୁଦୃଢ଼ ଥିଲା । ସମାଜରକ୍ଷାର ଅନୁକୂଳ ସ୍ୱକର୍ତ୍ତବ୍ୟ କର୍ମ କରିବା ଦ୍ୱାରା ପ୍ରତ୍ୟେକ ଲୋକ ପରମେଶ୍ୱରଙ୍କ ଅନୁଗ୍ରହ ଲାଭ କରି ଶେଷରେ ପରମପଦର ଅଧିକାରୀ ହୋଇପାରନ୍ତି—ଏହା ହିଁ ଏଠାରେ ବ୍ୟକ୍ତ କରାଗଲା ।

ଏହି ଗୁଣଭୂବର୍ଣ୍ଣ୍ୟ ବ୍ୟବସ୍ଥା ପ୍ରାଚୀନ ଆର୍ଯ୍ୟ ଭାରତରେ ନିର୍ଦ୍ଦିଷ୍ଟ ଥିଲା । ଏ ପ୍ରକାରରେ ନ ହେଲେ ସୁଦ୍ଧା ଅନ୍ୟ ପ୍ରକାରରେ ଏ ପ୍ରଥା ପ୍ରତ୍ୟେକ ମାନବ ସମାଜରେ ଦେଖାଯାଏ । ତେଣୁ ଗୀତୋକ୍ତ ଧର୍ମମତ ସାର୍ବଜନୀନ ବୋଲି ବୁଝାଯାଏ ।

୪୫ । **ଅନ୍ୱୟଦୀପିକା**—ସ୍ୱେ ସ୍ୱେ (ନିଜ ନିଜ) କର୍ମଣି (କର୍ମରେ) ଅଭିରତଃ (ତତ୍ପର) ନରଃ (ମନୁଷ୍ୟ) ସଂସିଦ୍ଧିଂ ଲଭତେ (ସିଦ୍ଧିଲାଭ କରେ) । ସ୍ୱକର୍ମ ନିରତଃ (ନିଜ ନିଜ କର୍ମରେ ନିଷ୍ଠାଯୁକ୍ତ ବ୍ୟକ୍ତି) ଯଥା (ଯେପରି) ସିଦ୍ଧିଂ ବିନ୍ଦତି (ସିଦ୍ଧିଲାଭ କରେ) ତତ୍ (ତାହା) ଶୃଣୁ (ଶୁଣ) ।

**ଅନୁବାଦ**—ମନୁଷ୍ୟ (ସ୍ୱଭାବଜନ୍ୟ ଗୁଣାନୁସାରେ ପ୍ରାପ୍ତ) ନିଜ ନିଜ କର୍ମରେ ନିଷ୍ଠାବାନ୍ ହେଲେ ସିଦ୍ଧିଲାଭ କରେ । ନିଜ କର୍ମରେ ତତ୍ପର ଥିଲେ କିପରି ସିଦ୍ଧିଲାଭ ହୁଏ ତାହା ଶୁଣ ।

**ସୁବୋଧିନୀ ଟୀକା**—ଏବଂଭୂତସ୍ୟ ବ୍ରାହ୍ମଣାଦେ କର୍ମଣୋ ଜ୍ଞାନ ହେତୁତ୍ୱ ମାହ—ସ୍ୱେ ସ୍ୱ ଇତି । ସ୍ୱ ସ୍ୱାଧିକାରବିହିତେ କର୍ମଣ୍ୟଭିରତଃ ପରି-ନିଷ୍ଠିତୋ ନରଃ ସଂସିଦ୍ଧିଂ ଜ୍ଞାନଯୋଗ୍ୟତାଂ ଲଭତେ । କର୍ମଣାଂ ଜ୍ଞାନପ୍ରାପ୍ତି-ପ୍ରକାରମାହ । ସ୍ୱସ୍ୱକର୍ମୈତ ସାର୍ଦ୍ଧେନ, ସ୍ୱକର୍ମ ପରିନିଷ୍ଠିତୋ ଯଥା ଯେନ ପ୍ରକାରେଣ ତତ୍ତ୍ୱଜ୍ଞାନଂ ଲଭତେ ତତ୍ପ୍ରକାରଂ ଶୃଣୁ ।

୪୬ । **ଅନ୍ୱୟଦୀପିକା**—ଯତଃ (ଯାହାଙ୍କଠାରୁ) ଭୂତାନାଂ ପ୍ରବୃତ୍ତିଃ (କର୍ମଚେଷ୍ଟା), ଯେନ (ଯାହାଙ୍କଦ୍ୱାରା) ଇଦଂ ସର୍ବଂ (ଏହି ସମଗ୍ର ବିଶ୍ୱ) ତତମ୍ (ବ୍ୟାପ୍ତ ହୋଇଅଛି) ମାନବଃ (ମନୁଷ୍ୟ) ସ୍ୱକର୍ମଣା (ନିଜ କର୍ମ ଦ୍ୱାରା) ତମ୍ (ସେହି ଈଶ୍ୱରଙ୍କୁ) ଅଭ୍ୟର୍ଚ୍ଚ୍ୟ (ପୂଜାକରି) ସିଦ୍ଧିଂ ବିନ୍ଦତି (ସିଦ୍ଧିଲାଭ କରିଥାଏ) ।

ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ ସ୍ୱନୁଷ୍ଠିତାତ୍ ।
ସ୍ୱଭାବନିୟତଂ କର୍ମ କୁର୍ବନ୍ନାପ୍ନୋତି କିଲ୍ବିଷମ୍ । ୪୭ ।

**ଅନୁବାଦ**—ଯେଉଁ ଅନ୍ତର୍ଯାମୀଙ୍କଠାରୁ ପ୍ରାଣୀମାନଙ୍କର କର୍ମଚେଷ୍ଟା, ଯେ ଏହି ବିଶ୍ୱବ୍ରହ୍ମାଣ୍ଡକୁ ବ୍ୟାପିଅଛନ୍ତି, ମନୁଷ୍ୟ ନିଜ କର୍ମଦ୍ୱାରା ତାହାଙ୍କୁ ଅର୍ଚ୍ଚନା କରି ସିଦ୍ଧିଲାଭ କରିଥାଏ ।

**ସୁବୋଧିନୀ ଟୀକା**—ତମେବାହ—ଯତଇତି । ଯତୋଽନ୍ତର୍ଯାମିଣଃ ପରମେଶ୍ୱରାଦ୍ଭୂତାନାଂ ପ୍ରାଣିନାଂ ପ୍ରବୃତ୍ତିଃ ଚେଷ୍ଟା ଭବତି । ଯେନ ଚ କାରଣାତ୍ମନା ସର୍ବମିଦଂ ବିଶ୍ୱଂ ତତଂ ବ୍ୟାପ୍ତମ୍ ତମୀଶ୍ୱରଂ ସ୍ୱକର୍ମଣାଭ୍ୟର୍ଚ୍ୟ ପୂଜୟିତ୍ୱା ସିଦ୍ଧିଂ ଲଭତେ ମନୁଷ୍ୟଃ ।

**ବିବୃତି**—ତୃତୀୟ ଅଧ୍ୟାୟରେ ଭଗବାନ୍ କହିଅଛନ୍ତି ଏ ସଂସାରରେ ପ୍ରଜାସୃଷ୍ଟି ସଙ୍ଗେ ସଙ୍ଗେ କର୍ମର ସୃଷ୍ଟି ହୋଇଅଛି । କର୍ମ ସ୍ୱଭାବନିୟତ । ନିଜ ନିଜ ସ୍ୱଭାବଗୁଣରେ ଯେ ଯେଉଁ କର୍ମ କରିବେ ତାହା ନିଷ୍କାମ ବୁଦ୍ଧିରେ ଅଥବା ପରମେଶ୍ୱରାର୍ପଣବୁଦ୍ଧିରେ ସମ୍ପାଦନ କଲେ ତଦ୍ୱାରା ସେହି ବ୍ରହ୍ମାଣ୍ଡବ୍ୟାପୀ ବିରାଟ ପୁରୁଷଙ୍କର ଏକ ପ୍ରକାର ଅର୍ଚ୍ଚନା କରାଯାଏ । କାରଣ ସ୍ୱଭାବ ନିୟତ କର୍ମରେ ହିଁ ସୃଷ୍ଟିରକ୍ଷା ହୁଏ । ଏହି ସୃଷ୍ଟିରକ୍ଷାଂ କର୍ମ ହିଁ ଲୋକସଂଗ୍ରହନାମରେ ପରିଚିତ । ଯେଉଁମାନେ ଲୋକସଂଗ୍ରହ ଦୃଷ୍ଟିରେ କର୍ମର ଅନୁଷ୍ଠାନ କରନ୍ତି ସେମାନେ ହିଁ ସିଦ୍ଧିଲାଭ କରନ୍ତି । ଏଥିରୁ ଦେଖାଯିବ ଆମ୍ଭମାନଙ୍କ ଧର୍ମଜୀବନ ଓ କର୍ମ-ଜୀବନ ଏକ ।

୪୭ । **ଅନ୍ୱୟଦୀପିକା**—ବିଗୁଣଃ (ଦୋଷଯୁକ୍ତ ହେଲେ ମଧ୍ୟ) ସ୍ୱଧର୍ମଃ (ନିଜ ପ୍ରକୃତି ଗୁଣରେ ଗୃହୀତ କର୍ମ) ସ୍ୱନୁଷ୍ଠିତାତ୍ (ଉତ୍ତମରୂପେ ଅନୁଷ୍ଠିତ) ପରଧର୍ମାତ୍ (ଅନ୍ୟର ସ୍ୱଭାବଜ କର୍ମ ଅପେକ୍ଷା) ଶ୍ରେୟାନ୍ (ଶ୍ରେଷ୍ଠ), ସ୍ୱଭାବନିୟତଂ (ସ୍ୱାଭାବିକ ଗୁଣାନୁଗତ) କର୍ମ କୁର୍ବନ୍ (କର୍ମ କଲେ) [ମନୁଷ୍ୟ] କିଲ୍ବିଷଂ (ପାପ) ନ ଆପ୍ନୋତି (ପ୍ରାପ୍ତ ହୁଏ ନାହିଁ) ।

**ଅନୁବାଦ**—ସମ୍ୟଗ୍ରୂପେ ଅନୁଷ୍ଠିତ ପରଧର୍ମ ଅପେକ୍ଷା ନିଜଧର୍ମ ଦୋଷଯୁକ୍ତ ହେଲେ ମଧ୍ୟ ଶ୍ରେଷ୍ଠ । କାରଣ ସ୍ୱଭାବଜ କର୍ମ ଅନୁଷ୍ଠାନ କଲେ ମନୁଷ୍ୟକୁ ପାପଭାଗୀ ହେବାକୁ ହୁଏ ନାହିଁ ।

**ସୁବୋଧିନୀ ଟୀକା**—ସ୍ୱକର୍ମଣେତି ବିଶେଷଣସ୍ୟ ଫଳମାହ । ଶ୍ରେୟାନିତି । ବିଗୁଣୋଽପି ସ୍ୱଧର୍ମଃ ସମ୍ୟଗନୁଷ୍ଠିତାଦପି ପରଧର୍ମାଚ୍ଛ୍ରେୟାନ୍ ଶ୍ରେଷ୍ଠଃ । ନ ଚ ବନ୍ଧୁବଧାଦ୍ୟୁକ୍ତାତ୍ ଯୁଦ୍ଧାଦେଃ ସ୍ୱଧର୍ମାଦ୍ଭିକ୍ଷାଟନାଦପରଧର୍ମଃ ଶ୍ରେଷ୍ଠ ଇତି ମନ୍ତବ୍ୟମ୍ । ଯତଃ ସ୍ୱଭାବେନ ପୂର୍ବୋକ୍ତେନ ନିୟତଂ ନିୟୁକ୍ତମେବୋକ୍ତଂ କର୍ମକୁର୍ବନ୍ କିଲ୍ବିଷଂ ନାପ୍ନୋତି ।

ସହଜଂ କର୍ମ କୌନ୍ତେୟ ସଦୋଷମପି ନ ତ୍ୟଜେତ୍ ।
ସର୍ବାରମ୍ଭା ହି ଦୋଷେଣ ଧୂମେନାଗ୍ନିରିବାବୃତାଃ ॥ ୪୮ ॥

**ବିବୃତି**—କୁରୁକ୍ଷେତ୍ର ଯୁଦ୍ଧରେ ବନ୍ଧୁବଧାଦି ହେତୁରୁ ପାପଭାଗୀ ହେବାକୁ ହେବ, ତେଣୁ କ୍ଷତ୍ରିୟଧର୍ମାନୁମୋଦିତ ଯୁଦ୍ଧକର୍ମ ତ୍ୟାଗକରି ବ୍ରାହ୍ମଣୋଚିତ ଭିକ୍ଷାଟନାଦି କର୍ମ କରିବା ଉଚିତ—ଅର୍ଜୁନଙ୍କ ଏହି ଅଭିପ୍ରାୟ ପ୍ରଥମ ଅଧ୍ୟାୟରେ ପ୍ରକାଶ ପାଇଥିଲା । ଏଠାରେ ଭଗବାନ୍ ଯାହା କହିଲେ, ତହିଁରୁ ଜଣାଗଲା ସ୍ୱଧର୍ମ ଦୋଷଯୁକ୍ତ ହେଲେହେଁ ତାହାର ଅନୁଷ୍ଠାନରେ ମନୁଷ୍ୟ କେବେହେଁ ପାପଭାଗୀ ହୁଏ ନାହିଁ ।

୪୮ । **ଅନ୍ୱୟଦୀପିକା**—[ ହେ ] କୌନ୍ତେୟ, ସଦୋଷମ୍ ଅପି ( ଦୋଷଯୁକ୍ତ ହେଲେ ମଧ୍ୟ ) ସହଜଂ କର୍ମ ( ସ୍ୱଭାବଜାତ କର୍ମ ) ନ ତ୍ୟଜେତ୍ ( ତ୍ୟାଗ କରିବା ଉଚିତ ନୁହେ ), ହି ( ଯସ୍ମାତ୍ ) ସର୍ବାରମ୍ଭାଃ (ସମସ୍ତକର୍ମ ହିଁ) ଧୂମେନ ( ଧୂମଦ୍ୱାରା ) ଅଗ୍ନିଃ ଇବ ( ଅଗ୍ନିପରି ) ଦୋଷେଣ ( ଦୋଷଦ୍ୱାରା ) ଆବୃତାଃ ( ଆବୃତ ଥାଏ ) ।

**ଅନୁବାଦ**— ହେ କୌନ୍ତେୟ, ସ୍ୱଭାବଜାତ କର୍ମ ଦୋଷଯୁକ୍ତ ହେଲେ ମଧ୍ୟ ତାହା ତ୍ୟାଗ କରିବା ଉଚିତ ନୁହେ । କାରଣ, ଅଗ୍ନି ଯେପରି ଧୂମଦ୍ୱାରା ଆବୃତ ଥାଏ ସେହିପରି କର୍ମମାତ୍ରକେ ଦୋଷଯୁକ୍ତ ।

**ସୁବୋଧିନୀ ଟୀକା**—ଯଦି ପୁନଃ ସାଂଖ୍ୟଦୃଷ୍ଟ୍ୟା ସ୍ୱଧର୍ମେ ହିଂସା-ଲକ୍ଷଣଂ ଦୋଷଂ ମତ୍ୱା ପରଧର୍ମଂ ଶ୍ରେଷ୍ଠଂ ମନ୍ୟସେ ତର୍ହି ସଦୋଷତ୍ୱଂ ପରଧର୍ମେଽପି ତୁଲ୍ୟମିତ୍ୟାଶୟେନାହ । ସହଜମିତି । ସହଜଂ ସ୍ୱଭାବବିହିତଂ କର୍ମ ସଦୋଷମପି ନ ତ୍ୟଜେତ୍ । ହି ଯସ୍ମାତ୍ ସର୍ବେଽପ୍ୟାରମ୍ଭା ଦୃଷ୍ଟାଦୃଷ୍ଟାର୍ଥାନି ସର୍ବାଣ୍ୟପି କର୍ମାଣି ଦୋଷେଣ କେନଚିଦାବୃତା ବ୍ୟାପ୍ତା ଏବ । ଯଥା ସହଜେନ ଧୂମେନାଗ୍ନି-ରାବୃତସ୍ତଦ୍‌ବତ୍ । ଅତୋ ଯଥାଗ୍ନେର୍ଧୂମରୂପଂ ଦୋଷମପାକୃତ୍ୟ ପ୍ରତାପ ଏବ ତମଃଶୀତାଦିନିବୃତ୍ତୟେ ସେବ୍ୟତେ ତଥା କର୍ମଣୋଽପି ଦୋଷାଂଶଂ ବିହାୟ ଗୁଣାଂଶ ଏବ ସତ୍ତ୍ୱଶୁଦ୍ଧୟେ ସେବ୍ୟତ ଇତ୍ୟର୍ଥଃ ।

**ବିବୃତି**—ଯୁଦ୍ଧ ଓ କୃଷିକର୍ମ ପ୍ରଭୃତିରେ ପ୍ରାଣିହିଂସା ଅନିବାର୍ଯ୍ୟ । ଏପରି ଅବସ୍ଥାରେ ଯୋଦ୍ଧା ଓ କୃଷକ ପକ୍ଷରେ ନିଜ ନିଜ କର୍ମ ତ୍ୟାଗକରି ପ୍ରାଣି-ହିଂସା ହେଉ ନ ଥିବା ଭଳି ଅନ୍ୟର କର୍ମ ଗ୍ରହଣ କରିବା ଅନୁଚିତ । ଅନ୍ୟ ଯେଉଁ କର୍ମ ଗ୍ରହଣ କରିବ, ତାହା ଯେ ଦୋଷଶୂନ୍ୟ ଏହା କିଏ କହିବ ? ଯେପରି ଅଗ୍ନି ତାହାର ସହଜାତ ଧୂମଦ୍ୱାରା ଆବୃତ ହୋଇଥାଏ ସେହିପରି ପ୍ରତ୍ୟେକ କର୍ମ କୌଣସି ନା କୌଣସି ଦୋଷଦ୍ୱାରା ଆବୃତ ଥାଏ । କର୍ମକୁ

ଅସକ୍ତବୁଦ୍ଧିଃ ସର୍ବତ୍ର ଜିତାତ୍ମା ବିଗତସ୍ପୃହଃ ।
ନୈଷ୍କର୍ମ୍ୟସିଦ୍ଧିଂ ପରମାଂ ସନ୍ନ୍ୟାସେନାଧିଗଚ୍ଛତି । ୪୯ ।

କି ଉପାୟରେ ଦୋଷଶୂନ୍ୟ କରାଯାଇପାରେ ତାହା ତୃତୀୟ ଅଧ୍ୟାୟ ୪ର୍ଥ ଶ୍ଳୋକରେ କୁହାଯାଇଅଛି । ବର୍ତ୍ତମାନ ପରବର୍ତ୍ତୀ ଶ୍ଳୋକରେ ତାହାହିଁ ଅନ୍ୟ ଭାବରେ ଭଗବାନ୍ କହୁଅଛନ୍ତି ।

୪୯ । **ଅନ୍ୱୟଦୀପିକା**—ସର୍ବତ୍ର ( ସବୁ ବିଷୟରେ ) ଅସକ୍ତବୁଦ୍ଧିଃ ( ଆସକ୍ତିଶୂନ୍ୟ ), ଜିତାତ୍ମା ( ସଂଯତ ଚିତ୍ତ ) ବିଗତସ୍ପୃହଃ ( ସ୍ପୃହାଶୂନ୍ୟ ବ୍ୟକ୍ତି ) ସନ୍ନ୍ୟାସେନ ( କର୍ମଫଳତ୍ୟାଗରୂପ ସନ୍ନ୍ୟାସ ଦ୍ୱାରା ) ପରମାଂ ନୈଷ୍କର୍ମ୍ୟସିଦ୍ଧିଂ ( କର୍ମ ବନ୍ଧନ କ୍ଷୟରୂପ ପରମ ସିଦ୍ଧି ) ଅଧିଗଚ୍ଛତି ( ପ୍ରାପ୍ତ ହୁଅନ୍ତି ) ।

**ଅନୁବାଦ**—( ଅତଏବ ) ସବୁ ବିଷୟରେ ଆସକ୍ତିଶୂନ୍ୟ ହୋଇ ମନକୁ ବଶକରି ନିଷ୍କାମ ବୁଦ୍ଧିରେ ଚଳିଲେ କର୍ମଫଳ ତ୍ୟାଗରୂପ ସନ୍ନ୍ୟାସଦ୍ୱାରା କର୍ମବନ୍ଧନକ୍ଷୟରୂପ ପରମସିଦ୍ଧି ଲବ୍ଧ କରାଯାଏ ଅର୍ଥାତ୍ କର୍ମବନ୍ଧନରୁ ମୁକ୍ତିଲାଭ କରାଯାଏ ।

**ସୁବୋଧିନୀ ଟୀକା**—ନନୁ କର୍ମଣି କ୍ରିୟମାଣେ କଥଂ ଦୋଷାଂଶ ପ୍ରହାଣେନ ଗୁଣାଂଶ ଏବ ସମ୍ପଦ୍ୟତ ଇତ୍ୟପେକ୍ଷାୟାମାହ । ଅସକ୍ତବୁଦ୍ଧିରିତି । ଅସକ୍ତା ସଙ୍ଗଶୂନ୍ୟା ବୁଦ୍ଧିର୍ଯସ୍ୟ । ଜିତାତ୍ମା ନିରହଂକାରଃ । ବିଗତସ୍ପୃହଃ ବିଗତା ସ୍ପୃହା ଫଲବିଷୟେଚ୍ଛା ଯସ୍ମାତ୍ ସଃ । ଏବମ୍ଭୂତେନ—ସଙ୍ଗଂ ତ୍ୟକ୍ତ୍ୱା ଫଲଂ ଚୈବ ସ ତ୍ୟାଗଃ ସାତ୍ତ୍ୱିକୋ ମତଃ—ଇତ୍ୟେବଂ ପୂର୍ବୋକ୍ତେନ କର୍ମାସକ୍ତିଫଲୟୋସ୍ତ୍ୟାଗ-ଲକ୍ଷଣେନ ସଂନ୍ୟାସେନ ନୈଷ୍କର୍ମ୍ୟସିଦ୍ଧିଂ ସର୍ବକର୍ମନିବୃତ୍ତିଲକ୍ଷଣାଂ ସତ୍ତ୍ୱଶୁଦ୍ଧି-ମଧିଗଚ୍ଛତି । ଯଦ୍ୟପି ସଙ୍ଗଫଲୟୋସ୍ତ୍ୟାଗେନ କର୍ମାନୁଷ୍ଠାନମପି ନୈଷ୍କର୍ମ୍ୟ-ମେବ । କର୍ତ୍ତୃତ୍ୱାଭିନିବେଶାଭାବାତ୍ । ତଦୁକ୍ତଂ—ନୈବ କିଞ୍ଚିତ୍ କରୋମୀତି ଯୁକ୍ତୋ ମନ୍ୟେତ ତତ୍ତ୍ୱବିଦିତ୍ୟାଦି ଶ୍ଳୋକଚତୁଷ୍ଟୟେନ । ତଥାପ୍ୟନେନୋକ୍ତ-ଲକ୍ଷଣେନ ସନ୍ନ୍ୟାସେନ ପରମାଂ ନୈଷ୍କର୍ମ୍ୟସିଦ୍ଧିଂ ସର୍ବକର୍ମାଣି ମନସା ସନ୍ନ୍ୟସ୍ୟାସ୍ତେ ସୁଖଂ ବଶୀତ୍ୟେବଂଲକ୍ଷଣାଂ ପାରମହଂସ୍ୟାପରପର୍ଯ୍ୟାୟାମାପ୍ନୋତି ।

**ବିବୃତି**—ପୂର୍ବ ଶ୍ଳୋକରେ କୁହାଯାଇଅଛି ଯେ, ପ୍ରତ୍ୟେକ କର୍ମରେ କିଛି ନା କିଛି ଦୋଷ ଥାଏ । ଏପରି ଅବସ୍ଥାରେ ସ୍ୱଭାବଜାତ କର୍ମ ତ୍ୟାଗକରି ଅନ୍ୟର କର୍ମ ଗ୍ରହଣ କରିବା କାହାରି ପକ୍ଷରେ ଉଚିତ ନୁହେ । କର୍ମ ବନ୍ଧନର କାରଣ, କର୍ମତ୍ୟାଗ ନ କଲେ ଜୀବର ମୁକ୍ତିଲାଭ ଅସମ୍ଭବ—ସନ୍ନ୍ୟାସମାର୍ଗୀମାନଙ୍କର ଏ ମତ ଅବଶ୍ୟ ଭ୍ରମପୂର୍ଣ୍ଣ ନୁହେ । କିନ୍ତୁ କର୍ମ ସମ୍ପୂର୍ଣ୍ଣ ଛାଡ଼ିବା କୌଣସିମତେ ସମ୍ଭବପର ନୁହେ । ତୃତୀୟ ଅଧ୍ୟାୟ ୫ମ ଶ୍ଳୋକରେ

ଏବଂ ଏ ଅଧ୍ୟାୟର ୧୧ଶ ଶ୍ଳୋକରେ ଏହା ସ୍ପଷ୍ଟରୂପେ ନିର୍ଦ୍ଦେଶ କରାଯାଇ ଅଛି । ମୁକ୍ତି ହିଁ ସନ୍ନ୍ୟାସୀମାନଙ୍କର ଜୀବନର ଏକମାତ୍ର ଲକ୍ଷ୍ୟ, ମାତ୍ର ଗୀତାମତରେ କେବଳ ମୁକ୍ତି ନୁହେଁ ସୃଷ୍ଟିରକ୍ଷା ବା ଲୋକସଂଗ୍ରହ ମଧ୍ୟ ପ୍ରତ୍ୟେକ ଜୀବନରେ ଅନ୍ୟତର ଲକ୍ଷ୍ୟ ହେବା ଉଚିତ । ଯଦି କର୍ମ ନ ଛାଡ଼ିଲେ ମୁକ୍ତି ମିଳିବ ନାହିଁ, ତେବେ ସଂସାରରେ ସମସ୍ତେ କର୍ମତ୍ୟାଗ କଲେ ସୃଷ୍ଟିରକ୍ଷା ହେବ କି ? ଏପରି ଅବସ୍ଥାରେ କର୍ମ କେବେ ହେଲେ ପରିତ୍ୟାଜ୍ୟ ନୁହେଁ । କର୍ମ ଯେତେବେଳେ କରିବାକୁ ହେବ, ସେତେବେଳେ କିପରି ଭାବରେ କଲେ ତଦ୍ୱାରା ମୁକ୍ତିଲାଭ ହେବ ତାହା ହିଁ ଏ ଶ୍ଳୋକରେ ଭଗବାନ୍ କହୁଅଛନ୍ତି । ୩ୟ ଅଧ୍ୟାୟର ୪ର୍ଥ ଶ୍ଳୋକରେ ସେ ଏହି କଥା ବୁଝାଇଥିଲେ । ଏହି ଉପସଂହାର ଅଧ୍ୟାୟରେ ତାହାହିଁ ଭିନ୍ନ ଭାଷାରେ କହୁଅଛନ୍ତି । ଏ ଶ୍ଳୋକରେ ପ୍ରଯୁକ୍ତ 'ସଂନ୍ୟାସେନ' ଶବ୍ଦର ଅର୍ଥ କର୍ମ-ତ୍ୟାଗଦ୍ୱାରା ନୁହେଁ । କର୍ମଫଳରେ ଆସକ୍ତି ନ ରଖିବା ଦ୍ୱାରା ବା କର୍ମଫଳ ତ୍ୟାଗ ଦ୍ୱାରା; ସ୍ୱରୂପତଃ ସବୁକର୍ମ ତ୍ୟାଗକରି ନିଷ୍କର୍ମୀ ହୋଇ ବସିରହିବା ନୈଷ୍କର୍ମ୍ୟସିଦ୍ଧି ନୁହେଁ । କର୍ମରେ ଆସକ୍ତି ନ ରଖିଲେ, କର୍ତ୍ତୃତ୍ୱାଭିମାନ ତ୍ୟାଗ କଲେ—ମୋଟ କଥା କର୍ତ୍ତବ୍ୟ ପ୍ରେରଣାରେ ଓ ଈଶ୍ୱରାର୍ପଣ ବୁଦ୍ଧିରେ କର୍ମ କଲେ, ସେହି କର୍ମ ହିଁ ନୈଷ୍କର୍ମ୍ୟରେ ପରିଣତ ହୋଇଯାଏ । ବାସନା ବା ଆସକ୍ତି କର୍ମର ବନ୍ଧକତ୍ୱର କାରଣ, ସେହି ଆସକ୍ତି ତ୍ୟାଗ କରି କର୍ମ କଲେ ଆଉ ତାହାର ବନ୍ଧକତ୍ୱ ରହିବ କିପରି ? ସମାଜ ରକ୍ଷାପାଇଁ ଆମ୍ଭଙ୍କ ପୁରୁଷ, ଯୋଦ୍ଧା, କୃଷକ, ଶ୍ରମଜୀବୀ ସମସ୍ତଙ୍କର କର୍ମ ଆବଶ୍ୟକ । ଆମ୍ଭେ ପୁରୁଷ ଯେପରି ମୋକ୍ଷର ଅଧିକାରୀ ହୁଅନ୍ତି, ପୂର୍ବୋକ୍ତ ପ୍ରଣାଳୀରେ ଆସକ୍ତି ତ୍ୟାଗକରି କର୍ମ କଲେ ଏମାନେ ସମସ୍ତେ ମୋକ୍ଷର ଅଧିକାରୀ ହୁଅନ୍ତି । ଏଥିରେ ସନ୍ଦେହର କାରଣ ନାହିଁ । ଏଠାରେ ମନେରଖିବାକୁ ହେବ ଯେ ମନୁଷ୍ୟର ମହତ୍ତ୍ୱ ଓ ଲଘୁତ୍ୱ ତାହାର ବ୍ୟବସାୟ ଉପରେ ନିର୍ଭର କରେ ନାହିଁ କିନ୍ତୁ ଯେଉଁ ବୁଦ୍ଧିରେ ସେ ଏହି ବ୍ୟବସାୟ କରେ ସେହି ବୁଦ୍ଧି ଉପରେ ତାହାର ଯୋଗ୍ୟତା ଅଧ୍ୟାତ୍ମଦୃଷ୍ଟିରେ ଅବଲମ୍ବିତ ଥାଏ । ଶ୍ରୀମଦ୍‌ଭାଗବତରେ ଅଛି, ( ୧୧।୩-୪୬ )—

ବେଦୋକ୍ତମେବ କୁର୍ବାଣୋ ନିଃସଙ୍ଗୋଽର୍ପିତମୀଶ୍ୱରେ,
ନୈଷ୍କର୍ମ୍ୟଂ ଲଭତେ ସିଦ୍ଧିଂ ରୋଚନାର୍ଥା ଫଲଶ୍ରୁତିଃ ।

ଅର୍ଥାତ୍ ଆସକ୍ତିଶୂନ୍ୟ ହୋଇ ଫଳ ଈଶ୍ୱରଙ୍କଠାରେ ସମର୍ପଣ କରି କର୍ମ କଲେ ନୈଷ୍କର୍ମ୍ୟସିଦ୍ଧି ଲାଭ ହୁଏ ।

ଏପରି ଅବସ୍ଥାରେ ଏ ଶ୍ଳୋକରେ ପ୍ରଯୁକ୍ତ 'ନୈଷ୍କର୍ମ୍ୟସିଦ୍ଧି'ର ଅର୍ଥ ସ୍ୱରୂପତଃ କର୍ମ ତ୍ୟାଗ ନୁହେଁ, କର୍ମରେ ଆସକ୍ତି ତ୍ୟାଗ ମାତ୍ର ।

ସିଦ୍ଧିଂ ପ୍ରାପ୍ତୋ ଯଥାବ୍ରହ୍ମ ତଥାପ୍ନୋତି ନିବୋଧମେ ।
ସମାସେନୈବ କୌନ୍ତେୟ ନିଷ୍ଠା ଜ୍ଞାନସ୍ୟ ଯା ପରା । ୫୦ ।
ବୁଦ୍ଧ୍ୟା ବିଶୁଦ୍ଧୟା ଯୁକ୍ତୋ ଧୃତ୍ୟାତ୍ମାନଂ ନିୟମ୍ୟ ଚ ।
ଶବ୍ଦାଦୀନ୍ ବିଷୟାଂସ୍ତ୍ୟକ୍ତ୍ୱା ରାଗଦ୍ୱେଷୌ ବ୍ୟୁଦସ୍ୟ ଚ । ୫୧ ।
ବିବିକ୍ତସେବୀ ଲଘ୍ୱାଶୀ ଯତବାକ୍ କାୟମାନସଃ ।
ଧ୍ୟାନଯୋଗପରୋନିତ୍ୟଂ ବୈରାଗ୍ୟଂ ସମୁପାଶ୍ରିତଃ । ୫୨ ।
ଅହଂକାରଂ ବଳଂ ଦର୍ପଂ କାମଂ କ୍ରୋଧଂ ପରିଗ୍ରହମ୍ ।
ବିମୁଚ୍ୟ ନିର୍ମମଃ ଶାନ୍ତୋ ବ୍ରହ୍ମଭୂୟାୟ କଳ୍ପତେ । ୫୩ ।

୫୦ । **ଅନ୍ୱୟଦୀପିକା**—[ହେ] କୌନ୍ତେୟ । ସିଦ୍ଧିଂ ପ୍ରାପ୍ତଃ (ସିଦ୍ଧି ପ୍ରାପ୍ତ ଲୋକ) ଯଥା (ଯେପରି) ବ୍ରହ୍ମ ଆପ୍ନୋତି (ପ୍ରାପ୍ତ ହୁଅନ୍ତି), ଯା (ଯେଉଁ ବ୍ରହ୍ମ ପ୍ରାପ୍ତି) ଜ୍ଞାନସ୍ୟ ପରାନିଷ୍ଠା (ଜ୍ଞାନର ପରିସମାପ୍ତି ), ତଥା (ତାହା) ସମାସେନ (ସଂକ୍ଷେପରେ) ମେ ନିବୋଧ (ଆମ୍ଭଠାରୁ ଶୁଣ) ।

**ଅନୁବାଦ**—ହେ କୌନ୍ତେୟ ପୂର୍ବୋକ୍ତପ୍ରକାରେ ନୈଷ୍କର୍ମ୍ୟସିଦ୍ଧି ପ୍ରାପ୍ତ ହୋଇଥିବା ଲୋକ ଯେପରି ବ୍ରହ୍ମଭାବ ପ୍ରାପ୍ତ ହୁଅନ୍ତି, ଯାହା ଜ୍ଞାନର ପରିସମାପ୍ତି, ତାହା ଏବେ ଆମ୍ଭଠାରୁ ଶ୍ରବଣ କର ।

**ସୁବୋଧିନୀ ଟୀକା**—ଏବଂଭୂତସ୍ୟ ପରମହଂସସ୍ୟ ଜ୍ଞାନନିଷ୍ଠାୟା ବ୍ରହ୍ମଭାବ ପ୍ରକାର ମାହ—ସିଦ୍ଧିଂ ପ୍ରାପ୍ତ ଇତି ଷଡ଼୍ଭିଃ । ନୈଷ୍କର୍ମ୍ୟସିଦ୍ଧିଂ ପ୍ରାପ୍ତଃ ସନ୍ ଯଥା ଯେନ ପ୍ରକାରେଣ ବ୍ରହ୍ମ ପ୍ରାପ୍ନୋତି ତଥା ତଂ ପ୍ରକାରଂ ସଂକ୍ଷେପେଣୈବ ମେ ବଚନାନ୍ନିବୋଧ । ପ୍ରତିଷ୍ଠିତା ଯା ବ୍ରହ୍ମପ୍ରାପ୍ତି ସ୍ତାମିମାଂ ତଥା ଦର୍ଶୟିତୁମାହ । ନିଷ୍ଠା ଜ୍ଞାନସ୍ୟ ଯା ପରେତି, ନିଷ୍ଠା ପର୍ଯ୍ୟବସାନଂ ପରିସମାପ୍ତି ରିତ୍ୟର୍ଥଃ ।

**ବିବୃତି**—ପୂର୍ବ ଶ୍ଳୋକରେ କୁହାଯାଇ ଅଛି, ଦୋଷଯୁକ୍ତ ହେଲେହେଁ ପ୍ରତ୍ୟେକ ଲୋକ ସ୍ୱଭାବଜାତ କର୍ମ କରିବେ ଏବଂ ସେ କର୍ମ ଆସକ୍ତି, ଫଳାଶା ଓ କର୍ତ୍ତୃତ୍ୱାଭିମାନ ତ୍ୟାଗ କରି ଈଶ୍ୱରାର୍ପଣବୁଦ୍ଧିରେ କଲେ ତଦ୍ଦ୍ୱାରା ନୈଷ୍କର୍ମ୍ୟ ସିଦ୍ଧି ଲାଭ ହେବ । ନୈଷ୍କର୍ମ୍ୟ ସିଦ୍ଧି ଲାଭ ହିଁ ବ୍ରହ୍ମ ପ୍ରାପ୍ତିର ଉପାୟ । କି ଭାବରେ ସାଧନ କଲେ ନୈଷ୍କର୍ମ୍ୟ ସିଦ୍ଧି ପାଇଥିବା ଲୋକ ବ୍ରହ୍ମ ସାକ୍ଷାତ୍କାର ଲାଭ କରନ୍ତି ପରବର୍ତ୍ତୀ ୩ଗୋଟି ଶ୍ଳୋକରେ ତାହା କୁହାଯିବ ।

୫୧।୫୨।୫୩ । **ଅନ୍ୱୟଦୀପିକା**—ବିଶୁଦ୍ଧୟା (ପବିତ୍ର) ବୁଦ୍ଧ୍ୟା (ବୁଦ୍ଧି ଦ୍ୱାରା) ଯୁକ୍ତଃ (ଯୁକ୍ତ ହୋଇ) ଧୃତ୍ୟା (ଧୈର୍ଯ୍ୟ ଦ୍ୱାରା) ଆତ୍ମାନଂ ନିୟମ୍ୟ (ସେହି ବୁଦ୍ଧିକୁ ନିଶ୍ଚଳ କରି) ଶବ୍ଦାଦୀନ୍ ବିଷୟାନ୍ ତ୍ୟକ୍ତ୍ୱା (ଶବ୍ଦାଦି ବିଷୟ ସମୂହ ତ୍ୟାଗ କରି) ରାଗଦ୍ୱେଷୌ ଚ ବ୍ୟୁଦସ୍ୟ (ଏବଂ ରାଗଦ୍ୱେଷ ପରିତ୍ୟାଗ

କରି) ବିବିକ୍ତ ସେବୀ (ନିର୍ଜନ ସ୍ଥାନ ବାସୀ), ଲଘ୍ୱାଶୀ ( ପରିମିତାହାରୀ ହୋଇ ) ଯତବାକ୍‌କାୟମାନସଃ ( ବାକ୍ୟ, ଶରୀର ଓ ମନକୁ ସଂଯତ କରି ), ନିତ୍ୟଂ ଧ୍ୟାନ ଯୋଗପରଃ (ସର୍ବଦା ଧ୍ୟାନରେ ନିବିଷ୍ଟ ହୋଇ) ବୈରାଗ୍ୟଂ ସମୁପାଶ୍ରିତଃ (ବୈରାଗ୍ୟ ଅବଲମ୍ବନ କରି) ଅହଂକାରଂ (ମୁଁ ଭାବ), ବଳଂ (କାମରାଗାଦିଯୁକ୍ତ ସାମର୍ଥ୍ୟ) ଦର୍ପଂ, କାମଂ, କ୍ରୋଧଂ (ଦର୍ପ, କାମ ଓ କ୍ରୋଧ), ପରିଗ୍ରହଂ (ବାହ୍ୟ ଭୋଗ ସାଧନଭୂତ ପ୍ରତିଗ୍ରହ) ବିମୁଚ୍ୟ (ତ୍ୟାଗ କରି), ନିର୍ମମଃ (ମମତ୍ୱ ବୁଦ୍ଧିହୀନ) ଶାନ୍ତଃ ( ଶାନ୍ତିପୂର୍ଣ୍ଣ ) [ହେଲେ] [ସାଧକ] ବ୍ରହ୍ମଭୂୟାୟ କଳ୍ପତେ (ବ୍ରହ୍ମଭାବ ପ୍ରାପ୍ତିର ଉପଯୁକ୍ତ ହୁଅନ୍ତି) ।

**ଅନୁବାଦ**—ନିର୍ମଳ ସାତ୍ତ୍ୱିକ ବୁଦ୍ଧିଯୁକ୍ତ ହୋଇ ଧୈର୍ଯ୍ୟ ଦ୍ୱାରା ସେହି ବୁଦ୍ଧିକୁ ନିଶ୍ଚଳ ରଖି, ଶବ୍ଦାଦି ବିଷୟ ସମୂହ ତ୍ୟାଗ କରି, ଅନୁରାଗ ଓ ବିଦ୍ୱେଷ ବିସର୍ଜନ ପୂର୍ବକ ନିର୍ଜନ ସ୍ଥାନରେ ବାସ କରିବ । ଅଳ୍ପ ଆହାର ଗ୍ରହଣ କରି, ବାକ୍ୟ, ଶରୀର ଓ ମନକୁ ସଂଯତ କରି, ସର୍ବଦା ଧ୍ୟାନ ପରାୟଣ ହୋଇ ବୈରାଗ୍ୟ (ଅର୍ଥାତ୍ ବିଷୟ ପ୍ରତି ବିତୃଷ୍ଣା) ଅବଲମ୍ବନ କରିବ ଏବଂ ମୁଁ ଭାବ, ବଳ (ପାଶବିକ ଶକ୍ତିର ବ୍ୟବହାର) ଦର୍ପ, କାମ, କ୍ରୋଧ, ଭୋଗ ସାଧନ ଦାନାଦି-ଗ୍ରହଣ ତ୍ୟାଗ କରି ମମତା ଶୂନ୍ୟ ହୋଇ ପ୍ରଶାନ୍ତ ଭାବରେ ଅବସ୍ଥାନ କରିବ; ଏପରି ହେଲେ ସାଧକ ବ୍ରହ୍ମଭାବ ପ୍ରାପ୍ତ ହେବେ ।

**ସୁବୋଧିନୀ ଟୀକା**—ତଦେବାହ. ବୁଦ୍ଧ୍ୟେତି । ଉକ୍ତେନ ପ୍ରକାରେଣ ବିଶୁଦ୍ଧୟା ପୂର୍ବୋକ୍ତୟା ସାତ୍ତ୍ୱିକୟା ବୁଦ୍ଧ୍ୟା ଯୁକ୍ତୋ ଧୃତ୍ୟା ସାତ୍ତ୍ୱିକ୍ୟାତ୍ମାନଂ ତାମେବ ବୁଦ୍ଧିଂ ନିୟମ୍ୟ ନିଶ୍ଚଳାଂ କୃତ୍ୱା ଶବ୍ଦାଦୀନ୍ ବିଷୟାଂସ୍ତ୍ୟକ୍ତ୍ୱା ତଦ୍‌ବିଷୟୌ ରାଗଦ୍ୱେଷୌ ଚ ବ୍ୟୁଦସ୍ୟବୁଦ୍ଧ୍ୟାବିଶୁଦ୍ଧୟାଯୁକ୍ତ ଇତ୍ୟାଦୀନାଂ ବ୍ରହ୍ମଭୂୟାୟ କଳ୍ପତ ଇତ ତୃତୀୟେନାନ୍ୱୟଃ ।

କିଞ୍ଚ ବିବିକ୍ତେତି । ବିବିକ୍ତସେବୀ ଶୁଚିଦେଶାବସ୍ଥାୟୀ, ଲଘ୍ୱାଶୀ ମିତଭୋଜୀ । ଏତୈରୁପାୟୈର୍ଯତବାକ୍‌କାୟମାନସଃ ସଂଯତବାଗ୍‌ଦେହଚିତ୍ତୋ ଭୂତ୍ୱା ନିତ୍ୟଂ ସର୍ବଦା ଧ୍ୟାନେନ ଯୋ ଯୋଗୋ ବ୍ରହ୍ମସଂସ୍ପର୍ଶ ସ୍ତତ୍‌ପରଃ ସନ୍ ଧ୍ୟାନାଦ୍ୟବିଚ୍ଛେଦାର୍ଥଂ ପୁନଃ ପୁନର୍ଦୃଢ଼ଂ ବୈରାଗ୍ୟଂ ସମ୍ୟଗୁପାଶ୍ରିତୋ ଭୂତ୍ୱା ।

କିଞ୍ଚ—ଅହଙ୍କାରମିତି । ତତଶ୍ଚ ବରକ୍ତୋଽହମିତ୍ୟାଦ୍ୟହଂକାରମ୍ । ବଳଂ ଦୁରାଗ୍ରହଂ । ଦର୍ପଂ ଯୋଗବଳାଦୁନ୍ମାର୍ଗପ୍ରବୃତ୍ତିଲକ୍ଷଣମ୍ । ପ୍ରାରବ୍ଧବଶାତ୍ ପ୍ରାପ୍ୟମାଣେଷ୍ୱପି ବିଷୟେଷୁ କାମଂ । କ୍ରୋଧଂ ପରିଗ୍ରହଂ ଚ ବିମୁଚ୍ୟ ବିଶେଷେଣ-ତ୍ୟକ୍ତ୍ୱା ; ବଳାଦାପତେଷୁ ନିର୍ମମଃ ସନ୍ । ଶାନ୍ତଃ ପରମା ମୁପଶାନ୍ତିଂ ପ୍ରାପ୍ତଃ । ବ୍ରହ୍ମଭୂୟାୟ ବ୍ରହ୍ମାହମିତି ନୈଷ୍ଠ୍ୟେନାବସ୍ଥାନାୟ । କଳ୍ପତେ ଯୋଗ୍ୟୋ ଭବତି ।

ବ୍ରହ୍ମଭୂତଃ ପ୍ରସନ୍ନାତ୍ମା ନ ଶୋଚତି ନ କାଙ୍କ୍ଷତି ।
ସମଃ ସର୍ବେଷୁ ଭୂତେଷୁ ମଦ୍‌ଭକ୍ତିଂ ଲଭତେ ପରାମ୍ ।୫୪।

**ବିବୃତି**—ଏହି ତିନିଗୋଟି ଶ୍ଳୋକରେ ସାଧକଙ୍କର ଯେଉଁ ଅବସ୍ଥା ବର୍ଣ୍ଣିତ ହେଲା ତାହା ଷଷ୍ଠ ଅଧ୍ୟାୟରେ ଯୋଗୀଙ୍କର, ଦ୍ୱାଦଶ ଅଧ୍ୟାୟରେ ଜ୍ଞାନୀ ଭକ୍ତଙ୍କର ଏବଂ ଚତୁର୍ଦ୍ଦଶ ଅଧ୍ୟାୟରେ ଗୁଣାତୀତ ପୁରୁଷଙ୍କର ବର୍ଣ୍ଣନାର ପ୍ରାୟ ଅନୁରୂପ । ଏ ବର୍ଣ୍ଣନା ଜ୍ଞାନୀ ସନ୍ନ୍ୟାସୀମାନେ କେବଳ ତାଙ୍କ ସମ୍ପ୍ରଦାୟର ବର୍ଣ୍ଣନା ବୋଲି ଯାହା କହନ୍ତି ତାହା ଠିକ ନୁହେ । କର୍ମଯୋଗୀ ମଧ୍ୟ ସାଧନାବସ୍ଥାରେ ଏହି ଭାବରେ ରହିଲେ ବ୍ରହ୍ମତ୍ୱ ପ୍ରାପ୍ତ ହୁଅନ୍ତି । ଏହା ଅବଶ୍ୟ ସମାଧିଅବସ୍ଥାର ବର୍ଣ୍ଣନା । ଏ ଅବସ୍ଥାରେ କର୍ମର ସ୍ଥାନ ନାହିଁ ସତ୍ୟ ମାତ୍ର ବ୍ୟୁତ୍ଥାନ ଅବସ୍ଥାରେ ଅର୍ଥାତ୍ ସମାଧିଭଙ୍ଗ ପରେ ସନ୍ନ୍ୟାସୀଙ୍କୁ ଅବଶ୍ୟ କର୍ମ କରିବାକୁ ହେବ । କାରଣ କର୍ମତ୍ୟାଗ କରି ନିଷ୍କର୍ମା ହୋଇ ବସିରହିବା ଗୀତାରେ କୌଣସିଠାରେ ନାହିଁ । ପରବର୍ତ୍ତୀ ୫୬ ଶ୍ଳୋକରେ ଭଗବାନ୍ ପୁଣି କହୁଅଛନ୍ତି, ସର୍ବକର୍ମ କରି ମଧ୍ୟ ସେହି ବ୍ରହ୍ମଭୂତବ୍ୟକ୍ତି ଆମ୍ଭର ଅନୁଗ୍ରହରୁ ମୋକ୍ଷର ଅଧିକାରୀ ହୁଏ ।

୫୪ । **ଅନ୍ୱୟଦୀପିକା**—ବ୍ରହ୍ମଭୂତଃ (ବ୍ରହ୍ମତ୍ୱ ପ୍ରାପ୍ତ ବ୍ୟକ୍ତି) ପ୍ରସନ୍ନାତ୍ମା (ପ୍ରସନ୍ନ ଚିତ୍ତ ହୋଇ) ନ ଶୋଚତି (ଶୋକ କରନ୍ତି ନାହିଁ) ନ କାଙ୍କ୍ଷତି ଚ (କିମ୍ବା କୌଣସି ବିଷୟ ପାଇବାକୁ ଆକାଂକ୍ଷା ରଖନ୍ତି ନାହିଁ); ସର୍ବଭୂତେଷୁ ସମଃ (ସର୍ବଭୂତରେ ସମଦର୍ଶୀ ହୋଇ) ପରାଂ ମଦ୍‌ଭକ୍ତିଂ (ଆମ୍ଭଠାରେ ପରମ ଭକ୍ତି) ଲଭତେ (ଲାଭ କରନ୍ତି) ।

**ଅନୁବାଦ**—ବ୍ରହ୍ମଭାବ ପାଇଥିବା ଲୋକଙ୍କର ଚିତ୍ତ ସର୍ବଦା ପ୍ରସନ୍ନ ରହେ । ସେ ପ୍ରାପ୍ତବସ୍ତୁ ବିନାଶରେ ଶୋକ କରନ୍ତି ନାହିଁ କି ଅପ୍ରାପ୍ତବସ୍ତୁ ପାଇବା ପାଇଁ ଆକାଂକ୍ଷା କରନ୍ତି ନାହିଁ । ସେ ସର୍ବଭୂତରେ ସମଦୃଷ୍ଟିସଂପନ୍ନ ହୁଅନ୍ତି ଏବଂ ଆମ୍ଭଠାରେ ପରମ ଭକ୍ତି ଲାଭ କରନ୍ତି ।

**ସୁବୋଧିନୀ ଟୀକା** — 'ବ୍ରହ୍ମାହମ୍' ଇତ୍ୟେବଂ ନୈଷ୍କର୍ମ୍ୟେଣା-ବସ୍ଥାନସ୍ୟ ଫଳମାହ—ବ୍ରହ୍ମେତି । ବ୍ରହ୍ମଭୂତୋ ବ୍ରହ୍ମଣ୍ୟବସ୍ଥିତଃ । ପ୍ରସନ୍ନଚିତ୍ତଃ, ନଷ୍ଟଂ ନ ଶୋଚତି । ନ ଚାପ୍ରାପ୍ତଂ କାଙ୍କ୍ଷତି । ଦେହାଦ୍ୟଭିମାନାଭାବାତ୍ । ଅତଏବ ସର୍ବେଷ୍ୱପି ଭୂତେଷୁ ସମଃ ସନ୍ ରାଗଦ୍ୱେଷାଦିକୃତବିକ୍ଷେପାଭାବାତ୍ ସର୍ବଭୂତେଷୁ ମଦ୍‌ଭାବନାଲକ୍ଷଣାଂ ପରାଂ ମଦ୍‌ଭକ୍ତିଂ ଲଭତେ ।

ଭକ୍ତ୍ୟା ମାମଭିଜାନାତି ଯାବାନ୍ ଯଶ୍ଚାସ୍ମି ତତ୍ତ୍ୱତଃ ।
ତତୋ ମାଂ ତତ୍ତ୍ୱତୋ ଜ୍ଞାତ୍ୱା ବିଶତେ ତଦନନ୍ତରମ୍ ।୫୫।
ସର୍ବକର୍ମାଣ୍ୟପି ସଦା କୁର୍ବାଣୋ ମଦ୍‌ବ୍ୟପାଶ୍ରୟଃ ।
ମତ୍ପ୍ରସାଦାଦବାପ୍ନୋତି ଶାଶ୍ୱତଂ ପଦମବ୍ୟୟମ୍ ।୫୬।

୫୫ । **ଅନ୍ୱୟଦୀପିକା—** [ ସେହି ବ୍ରହ୍ମଭାବ ପ୍ରାପ୍ତ ବ୍ୟକ୍ତି ] ଭକ୍ତ୍ୟା ( ପରାଭକ୍ତିବଳରେ ) ଯାବାନ୍ ଯଃ ଚ ଅସ୍ମି ( ଆମ୍ଭେ ଯେପରି ଓ ଯାହା ଅଟୁଁ ) ତତ୍ତ୍ୱତଃ (ସ୍ୱରୂପତଃ) ମାମ୍ (ଆମ୍ଭଙ୍କୁ) ଅଭିଜାନାତି ( ଜାଣିପାରନ୍ତି ) ତତଃ (ତତ୍ପରେ) ମାଂ (ଆମ୍ଭଙ୍କୁ) ତତ୍ତ୍ୱତଃ (ଯଥାର୍ଥରୂପେ) ଜ୍ଞାତ୍ୱା ( ଜାଣି ) ତଦନନ୍ତରଂ (ତା ପରେ) ବିଶତେ ( ଆମ୍ଭଠାରେ ପ୍ରବେଶ କରନ୍ତି ) ।

**ଅନୁବାଦ—**ସେହି ବ୍ରହ୍ମଭାବପ୍ରାପ୍ତ ବ୍ୟକ୍ତି ପରାଭକ୍ତିବଳରେ—ଆମ୍ଭେ କିଏ ଓ ଆମ୍ଭର ପ୍ରକୃତସ୍ୱରୂପ କିପରି—ଏହା ସ୍ୱରୂପତଃ ଜାଣି ପାରନ୍ତି । ଏହିପରି ଆମ୍ଭଙ୍କୁ ସ୍ୱରୂପତଃ ଜାଣିବାପରେ ଆମ୍ଭଠାରେ ପ୍ରବେଶ କରନ୍ତି ।

**ସୁବୋଧିନୀ ଟୀକା—**ତତଶ୍ଚ—ଭକ୍ତ୍ୟେତି । ତୟା ଚ ପରୟାଭକ୍ତ୍ୟା ତତ୍ତ୍ୱତୋ ମାମଭିଜାନାତି, କଥଂ ଭୂତମ୍ ? ଯାବାନ୍ ସର୍ବବ୍ୟାପୀ ଯଶ୍ଚାସ୍ମି ସଚ୍ଚିଦାନନ୍ଦରୂପ ସ୍ତଥାଭୂତମ୍ । ତତଶ୍ଚ ମାମେବ ତତ୍ତ୍ୱତୋ ଜ୍ଞାତ୍ୱା ତଦନନ୍ତରଂ ତସ୍ୟ ଜ୍ଞାନସ୍ୟୋପରମେ ସତି ମାଂ ବିଶତେ । ପରମାନନ୍ଦରୂପୋ ଭବତୀତ୍ୟର୍ଥଃ ।

୫୬ । **ଅନ୍ୱୟଦୀପିକା—**[ସେ] ସଦା (ସର୍ବଦା) ସର୍ବକର୍ମାଣି କୁର୍ବାଣଃ ଅପି (ସମସ୍ତ କର୍ମ କରି ମଧ୍ୟ) ମଦ୍‌ବ୍ୟପାଶ୍ରୟଃ (ଆମ୍ଭଙ୍କୁ ଆଶ୍ରୟ କରି) ମତ୍ ପ୍ରସାଦାତ୍ (ମୋ ଅନୁଗ୍ରହରୁ) ଶାଶ୍ୱତଂ (ନିତ୍ୟ) ଅବ୍ୟୟଂ ପଦମ୍ (ଅକ୍ଷୟ ସ୍ଥାନ) ଅବାପ୍ନୋତି (ପ୍ରାପ୍ତ ହୁଅନ୍ତି) ।

**ଅନୁବାଦ—**( ସେହି ବ୍ରହ୍ମଭୂତ ପ୍ରସନ୍ନାତ୍ମା ବ୍ୟକ୍ତି ) ସର୍ବଦା ସମସ୍ତ କର୍ମର ଅନୁଷ୍ଠାନ କଲେ ମଧ୍ୟ ଆମ୍ଭ ଆଶ୍ରୟରେ ଥିବାରୁ ଆମ୍ଭ ଅନୁଗ୍ରହ ଲାଭକରି ଶାଶ୍ୱତ ଅବ୍ୟୟ ପଦ ପ୍ରାପ୍ତ ହୁଅନ୍ତି ।

**ସୁବୋଧିନୀ ଟୀକା—**ସ୍ୱକର୍ମଭିଃ ପରମେଶ୍ୱରାରାଧନାଦୁକ୍ତଂ ମୋକ୍ଷ-ପ୍ରକାରମୁପସଂହରତି । ସର୍ବକର୍ମାଣୀତି । ସର୍ବକର୍ମାଣି ସର୍ବାଣି ନିତ୍ୟାନି ନୈମିତ୍ତିକାନି କାମ୍ୟାନି ଚ କର୍ମାଣି ପୂର୍ବୋକ୍ତ କ୍ରମେଣ ମଦବ୍ୟପାଶ୍ରୟଃ ସନ୍ ସର୍ବଦା କୁର୍ବାଣଃ । ମଦ୍‌ବ୍ୟପାଶ୍ରୟଃ—ଅହମେବ ବ୍ୟପାଶ୍ରୟ ଆଶ୍ରୟଣୀୟଃ, ନ ତୁ ସ୍ୱର୍ଗାଦିଫଳଂ ଯସ୍ୟ ସଃ । ମତ୍ପ୍ରସାଦାଚ୍ଛାଶ୍ୱତମନାଦି, ଅବ୍ୟୟଂ ନିତ୍ୟଂ, ସର୍ବୋତ୍କୃଷ୍ଟଂ ପଦଂ ପ୍ରାପ୍ନୋତି ।

**ବିବୃତି—**ବ୍ରାହ୍ମଣାଦି ଚାରି ବର୍ଣ୍ଣର ଲୋକମାନେ ସ୍ୱଭାବଜାତ କର୍ମ କରି କିପରି ମୋକ୍ଷର ଅଧିକାରୀ ହୁଅନ୍ତି—ଏହା ଏ ଅଧ୍ୟାୟର ୪୧ଶ ଶ୍ଳୋକଠାରୁ

ଭଗବାନ୍ କୁହାଉଅଛନ୍ତି ଏବଂ ଏହି ଶ୍ଳୋକଟି ତାଙ୍କ ସମଗ୍ର ଉକ୍ତିର ଉପସଂହାର । ତାଙ୍କର ସମସ୍ତ ଉକ୍ତିର ସାରମର୍ମ ଏହିପରି:—

ପ୍ରକୃତିର ଗୁଣ ଅନୁସାରେ ପ୍ରତ୍ୟେକ ଲୋକର ସ୍ୱଭାବ ଭିନ୍ନ ଭିନ୍ନ, ତେଣୁ ବର୍ଣ୍ଣାଶ୍ରମବିଭାଗ ସମାଜରେ ପ୍ରଚଳିତ ହୋଇଅଛି । ଏହି ଗୁଣଭେଦରୁ ବିଭିନ୍ନ ବର୍ଣ୍ଣ ପାଇଁ ଭିନ୍ନ ଭିନ୍ନ କର୍ମ ନିର୍ଦ୍ଦିଷ୍ଟ ଅଛି । ଏହି କର୍ମକୁ ସ୍ୱଭାବନିୟତ କର୍ମ କୁହାଯାଏ । ପ୍ରତ୍ୟେକ ଲୋକ ନିଜ ନିଜ ସ୍ୱଭାବନିୟତ କର୍ମ ସମ୍ପାଦନ ନ କଲେ ସୃଷ୍ଟିରକ୍ଷା ଅସମ୍ଭବ । ନିଜ ନିଜ କର୍ତ୍ତବ୍ୟ ସମ୍ପାଦନ ଦ୍ୱାରା ଜଗତର ସ୍ରଷ୍ଟା ପରମାତ୍ମାଙ୍କର ଏକପ୍ରକାର ଅର୍ଚ୍ଚନା ହୁଏ ।

କର୍ମ କଲେ କର୍ମର ଫଳ ମନୁଷ୍ୟକୁ ଭୋଗ କରିବାକୁ ପଡ଼ିବ, "ନାଭୁକ୍ତଂ କ୍ଷୀୟତେ କର୍ମ କଳ୍ପକୋଟିଶତୈରପି"; ତେଣୁ ଜ୍ଞାନବାଦୀ ସନ୍ନ୍ୟାସୀମାନେ କର୍ମ ସମ୍ପୂର୍ଣ୍ଣରୂପେ ତ୍ୟାଗ କରନ୍ତି, ଏହାହିଁ ସେମାନଙ୍କର ନୈଷ୍କର୍ମ୍ୟସିଦ୍ଧି । ଏହି ନୈଷ୍କର୍ମ୍ୟସିଦ୍ଧି ବଳରେ ସେମାନେ ମୋକ୍ଷର ଅଧିକାରୀ ହୁଅନ୍ତି; କିନ୍ତୁ ଗୀତା ମତରେ କର୍ମ ତ୍ୟାଗ କରିବା କେବେହେଁ ଉଚିତ ନୁହେଁ । କର୍ମ ବନ୍ଧନର କାରଣ ନୁହେଁ; କର୍ମରେ ଆସକ୍ତି ବା ଫଳାକାଙ୍କ୍ଷା ହିଁ ମୁକ୍ତିର ବିରୋଧୀ, ତେଣୁ ସ୍ୱଭାବନିୟତ କର୍ମ କର୍ତ୍ତବ୍ୟପ୍ରେରଣାରେ ବା ନିଷ୍କାମଭାବରେ ସଂପାଦନ କଲେ ଫଳାସକ୍ତିରୂପ ଦୋଷ ତହିଁରୁ କଟିଯାଏ । ଶେଷରେ କର୍ମର ଫଳ ଭଗବାନଙ୍କଠାରେ ଅର୍ପଣ କଲେ ସେହି ନୈଷ୍କର୍ମ୍ୟସିଦ୍ଧି ଲାଭ କରାଯାଇଥାଏ । ସନ୍ନ୍ୟାସୀମାନେ କର୍ମ ତ୍ୟାଗ କରି ଯେଉଁ ଫଳଲାଭ କରନ୍ତି ସାଧାରଣ ଲୋକେ ସ୍ୱଭାବନିୟତ କର୍ମ କରି ମଧ୍ୟ ସେହି ଫଳ ଅର୍ଥାତ୍ ମୋକ୍ଷଲାଭ କରନ୍ତି ।

ଏହି ନୈଷ୍କର୍ମ୍ୟ ସିଦ୍ଧି ଲାଭ କରିସିବା ପରେ ସାତ୍ତ୍ୱିକୀ ବୁଦ୍ଧିର ଉଜ୍ଜ୍ୱଳ ଆଲୋକରେ ଅନ୍ତଃକରଣ ବୃତ୍ତି ବିଶୁଦ୍ଧ ହୋଇଯାଏ । ଅହଂକାର, ବଳ, ଦର୍ପ, କାମ, କ୍ରୋଧ ଲୋପପ୍ରାପ୍ତ ହୁଏ । ବିଷୟବାସନା ଭସ୍ମୀଭୂତ ହୁଏ, ସମାଧି ଫଳରେ ଯୋଗୀ ଆତ୍ମସାକ୍ଷାତ୍କାର ଲାଭ କରି କୃତାର୍ଥ ହୁଅନ୍ତି । ଏ ଅବସ୍ଥାରେ ଉପନୀତ ହେଲେ ଜ୍ଞାନମିଶ୍ର ଭକ୍ତିର ଉତ୍ସ ହୃଦୟରୁ ସ୍ୱତଃ ସ୍ଫୁରିତ ହୁଏ ଏବଂ ସେହି ଭକ୍ତିବଳରେ ଭଗବାନଙ୍କର ପ୍ରକୃତ ସ୍ୱରୂପ ସେ ବୁଝିପାରି ତାଙ୍କ ଅନୁଗ୍ରହରୁ ପରମପଦ ବା ମୋକ୍ଷର ଅଧିକାରୀ ହୁଅନ୍ତି ।

ଏଥିରୁ ଜଣା ଯାଉଅଛି ଜ୍ଞାନ ଓ ପରାଭକ୍ତି—ଏ ଦୁହିଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଜ୍ଞାନୀମାନେ ଯେଉଁ ସ୍ଥାନ ଲାଭ କରନ୍ତି କର୍ମଯୋଗୀ ଭକ୍ତିବଳରେ ସେହି ସ୍ଥାନ ହିଁ ଲାଭ କରନ୍ତି । ସମଗ୍ର ଗୀତାଶାସ୍ତ୍ର ଆଲୋଚନାରୁ ଜଣାଯାଏ ଯେ ଜ୍ଞାନମିଶ୍ରାଭକ୍ତି ହିଁ ଭଗବତ୍ପ୍ରାପ୍ତିର ପରମ ସାଧନ ।

ଚେତସା ସର୍ବକର୍ମାଣି ମୟି ସନ୍ନ୍ୟସ୍ୟ ମତ୍ପରଃ ।
ବୁଦ୍ଧିଯୋଗମୁପାଶ୍ରିତ୍ୟ ମଚ୍ଚିତ୍ତଃ ସତତଂ ଭବ । ୫୭ ।
ମଚ୍ଚିତ୍ତଃ ସର୍ବଦୁର୍ଗାଣି ମତ୍ପ୍ରସାଦାତ୍ ତରିଷ୍ୟସି ।
ଅଥଚେତ୍ତ୍ୱମହଂକାରାନ୍ନ ଶ୍ରୋଷ୍ୟସି ବିନଙ୍କ୍ଷ୍ୟସି । ୫୮ ।

୫୭ । **ଅନ୍ୱୟଦୀପିକା**—ଚେତସା (ମନେ ମନେ) ସର୍ବ କର୍ମାଣି (ସମସ୍ତ କର୍ମ) ମୟି ସନ୍ନ୍ୟସ୍ୟ (ଆମ୍ଭଠାରେ ଅର୍ପଣ କରି) ମତ୍ପରଃ (ମତ୍‌ପରାୟଣ ହୋଇ) ବୁଦ୍ଧିଯୋଗମ୍ (ସମତ୍ୱ ବୁଦ୍ଧିରୂପ ଯୋଗ) ଉପାଶ୍ରିତ୍ୟ (ଅଶ୍ରୟ କରି) ସତତଂ ମଚ୍ଚିତ୍ତଃ ଭବ (ସର୍ବଦା ଆମ୍ଭଠାରେ ଚିତ୍ତ ଦିଅ) ।

**ଅନୁବାଦ**—ମନେ ମନେ ସମସ୍ତ କର୍ମ ଆମ୍ଭଠାରେ ସମର୍ପଣ କରି ସମତା ବୁଦ୍ଧିରୂପ ଯୋଗ ଅବଲମ୍ବନପୂର୍ବକ ସବୁବେଳେ ଆମ୍ଭଠାରେ ଚିତ୍ତ ସନ୍ନିବେଷ୍ଟ କର ।

**ସୁବୋଧିନୀ ଟୀକା**—ଯସ୍ମାଦେବଂ ତସ୍ମାତ୍—ଚେତସେତି । ସର୍ବ କର୍ମାଣି ଚେତସା ମୟି ସନ୍ନ୍ୟସ୍ୟ ସମର୍ପ୍ୟ । ମତ୍ପରଃ—ଅହମେବ ପରଃ ପ୍ରାପ୍ୟଃ ପୁରୁଷାର୍ଥୋ ଯସ୍ୟ ସଃ । ବ୍ୟବସାୟାତ୍ମିକୟା ବୁଦ୍ଧ୍ୟା ଯୋଗମୁପାଶ୍ରିତ୍ୟ । ସତତଂ କର୍ମାନୁଷ୍ଠାନକାଲେଽପି । ବ୍ରହ୍ମାର୍ପଣଂ ବ୍ରହ୍ମ ହବିରିତି ନ୍ୟାୟେନ ମୟ୍ୟେବ ଚିତ୍ତଂ ଯସ୍ୟ ତଥାଭୂତୋ ଭବ ।

**ବିବୃତି**—ଦ୍ୱିତୀୟ ଅଧ୍ୟାୟର ୪୯ଶ ଶ୍ଲୋକରେ ଯେଉଁ ବୁଦ୍ଧିଯୋଗ କଥା କୁହାଯାଇଥିଲା, ଏଠାରେ ସେହି ବୁଦ୍ଧିକୁ ଲକ୍ଷ୍ୟ କରାଯାଇଅଛି । ଫଳାଶାରେ ବୁଦ୍ଧି ନ ରଖି କର୍ମ କରିବାର ଯୁକ୍ତି ବା ସମତ୍ୱ ବୁଦ୍ଧିକୁ ସେଠାରେ ବୁଦ୍ଧିଯୋଗ କୁହାଯାଇଅଛି ।

୫୮ । **ଅନ୍ୱୟଦୀପିକା**—ମଚ୍ଚିତ୍ତଃ ତ୍ୱଂ (ତୁମ୍ଭେ ମଦ୍‌ଗତ ଚିତ୍ତ ହେଲେ) ମତ୍ପ୍ରସାଦାତ୍ (ଆମ୍ଭ ଅନୁଗ୍ରହରୁ) ସର୍ବଦୁର୍ଗାଣି (ସମସ୍ତ ଦୁଃଖ କଷ୍ଟରୁ) ତରିଷ୍ୟସି (ଉତ୍ତୀର୍ଣ୍ଣହେବ), ଅଥଚେତ୍ (ଆଉ ଯେବେ) ଅହଂକାରାତ୍ (ଅହଂକାରବଶତଃ) ନ ଶ୍ରୋଷ୍ୟସି (ଆମ୍ଭ କଥା ନ ଶୁଣିବ) [ତେବେ] ବିନଙ୍କ୍ଷ୍ୟସି (ବିନାଶ ପ୍ରାପ୍ତ ହେବ)

**ଅନୁବାଦ**—ଆମ୍ଭଠାରେ ମନ ନିବିଷ୍ଟ କଲେ ତୁମ୍ଭେ ଆମ୍ଭ ଅନୁଗ୍ରହରୁ ସାଂସାରିକ ସମସ୍ତ ଦୁଃଖରୁ ଉତ୍ତୀର୍ଣ୍ଣ ହୋଇଯିବ । ଆଉ ଯେବେ ଅହଂକାରବଶତଃ ଆମ୍ଭ କଥା ନ ଶୁଣିବ, ତେବେ ବିନାଶ ପ୍ରାପ୍ତ ହେବ ।

**ସୁବୋଧିନୀ ଟୀକା**—ତତୋ ଯଦ୍ ଭବିଷ୍ୟତି ତଚ୍ଛୃଣୁ । ମଚ୍ଚିତ୍ତ ଇତି । ମଚ୍ଚିତ୍ତଃ ସନ୍ ମତ୍ପ୍ରସାଦାତ୍ ସର୍ବାଣ୍ୟପି ଦୁର୍ଗାଣି ସାଂସାରିକ ଦୁଃଖାନି

ଯଦହଂକାରମାଶ୍ରିତ୍ୟ ନ ଯୋତ୍ସ୍ୟ ଇତି ମନ୍ୟସେ ।
ମିଥ୍ୟୈଷ ବ୍ୟବସାୟସ୍ତେ ପ୍ରକୃତିସ୍ତ୍ୱାଂ ନିଯୋକ୍ଷ୍ୟତି । ୫୯ ।
ସ୍ୱଭାବଜେନ କୌନ୍ତେୟ ନିବଦ୍ଧଃ ସ୍ୱେନ କର୍ମଣା ।
କର୍ତ୍ତୁଂ ନେଚ୍ଛସି ଯନ୍ମୋହାତ୍ କରିଷ୍ୟସ୍ୟବଶୋଽପି ତତ୍ ।୬୦।

ତରିଷ୍ୟସି । ବିପକ୍ଷେ ଦୋଷମାହ—ଅଥ ଚେତ୍ ଯଦି ତ୍ୱମହଙ୍କାରାତ୍ ଜ୍ଞାତୃତ୍ୱାଭିମାନାନ୍ମଦୁକ୍ତ ମେତନ୍ନ ଶ୍ରୋଷ୍ୟସି ତର୍ହି ବିନଙ୍କ୍ଷ୍ୟସି ପୁରୁଷାର୍ଥାଦ୍ ଭ୍ରଷ୍ଟୋ ଭବିଷ୍ୟସି ।

୫୯ । **ଅନ୍ୱୟଦୀପିକା**—ଅହଂକାରମ୍ (ଅହଂକାରକୁ) ଆଶ୍ରିତ୍ୟ (ଆଶ୍ରୟକରି) ନ ଯୋତ୍ସ୍ୟେ (ଯୁଦ୍ଧ କରିବି ନାହିଁ) ଇତି ଯତ୍ ମନ୍ୟସେ (ଏପରି ଯାହା ମନେ କରୁଅଛ) ତେ (ତୁମ୍ଭର) ଏଷଃ ବ୍ୟବସାୟଃ (ଏହି ନିଷ୍ଚୟ) ମିଥ୍ୟା (ମିଥ୍ୟା, ଭ୍ରମପୂର୍ଣ୍ଣ) । ପ୍ରକୃତିଃ ତ୍ୱାଂ (ପ୍ରକୃତିହିଁ ତୁମ୍ଭଙ୍କୁ) ନିଯୋକ୍ଷ୍ୟତି (ପ୍ରବର୍ତ୍ତିତ କରିବ) ।

**ଅନୁବାଦ**—ତୁମ୍ଭେ ଅହଂକାରବଶତଃ ଯାହା ମନେ କରୁଛ—ମୁଁ ଯୁଦ୍ଧ କରିବି ନାହିଁ, ତୁମ୍ଭର ଏ ନିଷ୍ଚୟ ବୃଥା । କାରଣ ପ୍ରକୃତି ତୁମ୍ଭଙ୍କୁ ଯୁଦ୍ଧରେ ପ୍ରବୃତ୍ତ କରାଇବ ।

**ସୁବୋଧିନୀ ଟୀକା**—କିଂମ୍ ବିନଙ୍କ୍ଷ୍ୟାମି ନହି କର୍ତ୍ତବ୍ୟମିତି କରିଷ୍ୟାମୀତି ଚେତ୍ ? ତତ୍ରାହ—ଯଦହଂକାରମିତି । ମଦୁକ୍ତମନାଦୃତ୍ୟ କେବଳମହଂକାର-ମବଲମ୍ବ୍ୟ ଯୁଦ୍ଧଂ ନ କରିଷ୍ୟାମୀତି ଯନ୍ମନ୍ୟସେ ତ୍ୱମଧ୍ୟବସ୍ୟସି । ଏଷତେ ବ୍ୟବସାୟୋ ମିଥ୍ୟୈବ । ଅସ୍ୱତନ୍ତ୍ରତ୍ୱାତ୍ତବ, ତଦେବାହ । ପ୍ରକୃତିସ୍ତ୍ୱାଂ ରଜୋଗୁଣରୂପେଣ ପରିଣତା ସତୀ ନିଯୋକ୍ଷ୍ୟତି ଯୁଦ୍ଧେ ପ୍ରବର୍ତ୍ତୟିଷ୍ୟତ୍ୟେବ ।

୬୦ । **ଅନ୍ୱୟଦୀପିକା** — [ହେ] କୌନ୍ତେୟ ! ମୋହାତ୍ (ମୋହବଶତଃ) ଯତ୍ କର୍ତ୍ତୁଂ (ଯାହା କରିବାକୁ) ନ ଇଚ୍ଛସି (ଇଚ୍ଛା କରୁନାହଁ), ସ୍ୱଭାବଜେନ ସ୍ୱେନ କର୍ମଣା ( ସ୍ୱଭାବଜାତ ସ୍ୱୀୟ କର୍ମଦ୍ୱାରା ) ନିବଦ୍ଧଃ ( ଆବଦ୍ଧ ହୋଇଥିବାରୁ ) ଅବଶଃ (ଅସ୍ୱାଧୀନ ଭାବରେ) ତତ୍ ଅପି (ତାହା ହିଁ) କରିଷ୍ୟସି ( କରିବ ) ।

**ଅନୁବାଦ**—ହେ କୌନ୍ତେୟ, ମୋହ ହେତୁରୁ ତୁମ୍ଭେ ଯାହା କରିବାକୁ ଇଚ୍ଛା କରୁନାହଁ, ସ୍ୱଭାବଜାତ ସ୍ୱୀୟ କର୍ମଦ୍ୱାରା ଅର୍ଥାତ୍ କ୍ଷତ୍ରିୟ ପ୍ରକୃତିର ବଶୀଭୂତ ହୋଇଥିବାରୁ ବାଧ୍ୟହୋଇ ତୁମ୍ଭଙ୍କୁ ତାହା କରିବାକୁ ହେବ ।

**ସୁବୋଧିନୀ ଟୀକା**—କିଞ୍ଚ ସ୍ୱଭାବଜେନେତି, ସ୍ୱଭାବଃ କ୍ଷତ୍ରିୟତ୍ୱ-ହେତୁଃ ପୂର୍ବକର୍ମସଂସ୍କାରଃ । ତସ୍ମାଜ୍ଜାତେନ ସ୍ୱୀୟେନ କର୍ମଣା ଶୌର୍ଯ୍ୟାଦିନା ପୂର୍ବୋକ୍ତେନ ନିବଦ୍ଧୋ ଯନ୍ତ୍ରିତସ୍ତ୍ୱଂ ମୋହାଦ୍ ଯତ୍କର୍ମ ଯୁଦ୍ଧଲକ୍ଷଣଂ କର୍ତ୍ତୁଂ ନେଚ୍ଛସ୍ୟବଶଃ ସଂସ୍ତତ୍କର୍ମ କରିଷ୍ୟସ୍ୟେବ ।

ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେଽର୍ଜୁନ ତିଷ୍ଠତି ।
ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢ଼ାନି ମାୟୟା । ୬୧ ।
ତମେବ ଶରଣଂ ଗଚ୍ଛ ସର୍ବଭାବେନ ଭାରତ ।
ତତ୍ ପ୍ରସାଦାତ୍ ପରାଂ ଶାନ୍ତିଂ ସ୍ଥାନଂ ପ୍ରାପ୍ସ୍ୟସି ଶାଶ୍ୱତମ୍ । ୬୨ ।

**୬୧ । ଅନ୍ୱୟଦୀପିକା**—[ହେ] ଅର୍ଜୁନ, ଈଶ୍ୱରଃ (ଈଶ୍ୱର) ମାୟୟା (ମାୟା ଦ୍ୱାରା) ସର୍ବଭୂତାନି ( ପ୍ରାଣିସମୂହକୁ ) ଯନ୍ତ୍ରାରୂଢ଼ାନି [ଇବ] ( ଯନ୍ତ୍ରାରୂଢ଼ ପୁତ୍ତଳିକା ପରି ) ଭ୍ରାମୟନ୍ ( ଭ୍ରମଣ କରାଇ ) ସର୍ବ ଭୂତାନାଂ ହୃଦ୍ଦେଶେ ( ସବୁ ଜୀବଙ୍କ ହୃଦ୍ଦେଶରେ ) ତିଷ୍ଠତି ( ଅଧିଷ୍ଠାନ କରୁଅଛନ୍ତି ) ।

**ଅନୁବାଦ**—ହେ ଅର୍ଜୁନ, ଈଶ୍ୱର ସବୁ ପ୍ରାଣୀଙ୍କ ହୃଦୟରେ ଅଧିଷ୍ଠିତ ହୋଇ ଯନ୍ତ୍ରାରୂଢ଼ ପୁତ୍ତଳିକା ପରି ମାୟାଦ୍ୱାରା ସମସ୍ତଙ୍କୁ ଭ୍ରମଣ କରାଉଅଛନ୍ତି ।

**ସୁବୋଧିନୀ ଟୀକା**—ତଦେବଂ ଶ୍ଲୋକଦ୍ୱୟେନ ସଂଖ୍ୟାଦମତେନ ପ୍ରକୃତିପାରତନ୍ତ୍ର୍ୟଂ ସ୍ୱଭାବପାରତନ୍ତ୍ର୍ୟଂ ଚୋକ୍ତମ୍, ଇଦାନୀଂ ସ୍ୱମତମାହ । ଈଶ୍ୱର ଇତି ଦ୍ୱାଭ୍ୟାମ୍ । ସର୍ବଭୂତାନାଂ ହୃଦ୍ଦେଶେ ହୃଦୟ ମଧ୍ୟେ ଈଶ୍ୱରୋଽନ୍ତର୍ଯାମୀ ତିଷ୍ଠତି । କିଂ କୁର୍ବନ୍ ? ସର୍ବାଣି ଭୂତାନି ମାୟୟା ନିଜଶକ୍ତ୍ୟା ଭ୍ରାମୟଂ ସ୍ତତ୍ତଜ୍ କର୍ମସୁ ପ୍ରବର୍ତ୍ତୟନ୍ । ଯଥା ଦାରୁଯନ୍ତ୍ରମାରୂଢ଼ାନି କୃତ୍ରିମାଣି ଭୂତାନି ସୂତ୍ରଧାରୋ ଲୋକେ ଭ୍ରାମୟତି ତଦ୍‌ବଦିତ୍ୟର୍ଥଃ ତଥା ଚ ଶ୍ୱେତାଶ୍ୱତରାଣାଂ ମନ୍ତ୍ରଃ—ଏକୋ ଦେବଃ ସର୍ବଭୂତେଷୁ ଗୂଢ଼ଃ ସର୍ବବ୍ୟାପୀ ସର୍ବଭୂତାନ୍ତରାତ୍ମା, କର୍ମାଧ୍ୟକ୍ଷଃ । ସର୍ବଭୂତାଧିବାସଃ ସାକ୍ଷୀ ଚେତାଃ କେବଳୋ ନିର୍ଗୁଣଶ୍ଚ । ଇତି । ଅନ୍ତର୍ଯାମି-ବ୍ରାହ୍ମଣଂ ଚ—ଯ ଆତ୍ମନି ତିଷ୍ଠନ୍ନାତ୍ମାନମନ୍ତରୋ ଯମୟତି ଯମାତ୍ମା ନ ବେଦ ଯସ୍ୟାତ୍ମା ଶରୀରମେଷତ ଆତ୍ମାଽନ୍ତର୍ଯାମ୍ୟମୃତଃ । ଇତ୍ୟାଦି ।

(ପର ଶ୍ଳୋକରେ ଏହାର ବକ୍ତବ୍ୟ ଦେଖ)

**୬୨ । ଅନ୍ୱୟଦୀପିକା**—[ହେ] ଭାରତ, ସର୍ବଭାବେନ (ସର୍ବତୋ-ଭାବରେ) ତମ୍ ଏବ (ତାହାଙ୍କଠାରେ ହିଁ) ଶରଣଂ ଗଚ୍ଛ (ଶରଣାଗତ ହୁଅ); ତତ୍ ପ୍ରସାଦାତ୍ (ତାହାଙ୍କ ଅନୁଗ୍ରହରୁ) ପରାଂ ଶାନ୍ତିଂ (ପରମ ଶାନ୍ତି) ଶାଶ୍ୱତଂ ସ୍ଥାନଂ (ଏବଂ ନିତ୍ୟଧାମ) ପ୍ରାପ୍ସ୍ୟସି (ପ୍ରାପ୍ତ ହେବ) ।

**ଅନୁବାଦ**—ହେ ଭାରତ ! ସର୍ବତୋଭାବରେ ତାହାଙ୍କଠାରେ ଶରଣ ପଶ; ତାଙ୍କ ଅନୁଗ୍ରହରୁ ତୁମ୍ଭେ ପୂର୍ଣ୍ଣ ଶାନ୍ତି ଏବଂ ଶାଶ୍ୱତଧାମ ପ୍ରାପ୍ତ ହେବ ।

**ସୁବୋଧିନୀ ଟୀକା**—ଚସ୍ମାତ୍, ଯସ୍ମାଦେବଂ ସର୍ବେଜୀବାଃ ପରମେଶ୍ୱର ପରତନ୍ତ୍ରସ୍ତସ୍ମାଦହଂକାରଂ ପରିତ୍ୟଜ୍ୟ ସର୍ବଭାବେନ ସର୍ବାତ୍ମନା ତମୀଶ୍ୱରମେବ ଶରଣଂ ଗଚ୍ଛ । ତତସ୍ତସ୍ୟୈବ ପ୍ରସାଦାତ୍ ପରମୁତ୍ତମାଂ ଶାନ୍ତିଂ ସ୍ଥାନଂ ଚ ପରମେଶ୍ୱରଂ ଶାଶ୍ୱତଂ ନିତ୍ୟଂ ପ୍ରାପ୍ସ୍ୟସି ।

ବିବୃତି—ପୂର୍ବୋକ୍ତ ୫୯ମ ଓ ୬୦ମ ଶ୍ଲୋକରେ କୁହାଗଲା ଯେ ତୁମେ ଯୁଦ୍ଧକରିବାକୁ ଇଚ୍ଛା ନ କଲେ ମଧ୍ୟ ପ୍ରକୃତି ତୁମକୁ ନିଶ୍ଚୟ ଯୁଦ୍ଧରେ ପ୍ରବୃତ୍ତ କରାଇବ । ଯୁଦ୍ଧ କରିବା ତୁମର ସ୍ୱଭାବସିଦ୍ଧ କର୍ମ, ଅତଏବ ଏଥିରୁ ବୁଝାଯାଉଅଛି ଆମେ ଯେଉଁ ସବୁ କର୍ମ କରୁଁ ତାହା ଆମ ଆତ୍ମସ୍ୱାତନ୍ତ୍ର୍ୟରୁ କରୁ ନାହିଁ । ପ୍ରକୃତିର ପ୍ରେରଣା ହିଁ ଆମ ସମସ୍ତ କର୍ମର ମୂଳ । ଆତ୍ମା ସ୍ୱତନ୍ତ୍ର କିନ୍ତୁ ପ୍ରକୃତିର ବ୍ୟବହାର ଦେଖିଲେ ଜଣାଯାଏ ଯେ, ଯେଉଁ କର୍ମଚକ୍ର ଅନାଦି କାଳରୁ ଚାଲି ଆସୁଅଛି ତାହା ଉପରେ ଆତ୍ମାର କୌଣସି କର୍ତ୍ତୃତ୍ୱ ନାହିଁ । ମୁଁ ଯାହା ଇଚ୍ଛା କରେ ନାହିଁ, ଏପରି କି ଯାହା ମୋ ଇଚ୍ଛାର ବିରୁଦ୍ଧ, ଏପରି ଅନେକ ବିଷୟ ମୋ ପାଖରେ ଆସି ଉପସ୍ଥିତ ହୁଏ ଏବଂ ତାହାର ଫଳ ମଧ୍ୟ ମୋତେ ଭୋଗ କରିବାକୁ ପଡ଼େ । ଏପରି ଅବସ୍ଥାରେ ଜ୍ଞାନୀ ଲୋକମାନେ ସୁଖଦୁଃଖକୁ ସମାନ ଜ୍ଞାନ କରି ନିଜ ବୁଦ୍ଧିକୁ ସ୍ଥିର ରଖି ସେ ସବୁ କର୍ମ କରି ଯାଆନ୍ତି । କିନ୍ତୁ ମୂର୍ଖ ଲୋକେ ଏହି ସବୁ କର୍ମ ପାଶରେ ଆବଦ୍ଧ ହୋଇ ନାନା ଦୁଃଖ ଯନ୍ତ୍ରଣା ଭୋଗ କରନ୍ତି । ତୃତୀୟ ଅଧ୍ୟାୟର ୩୩ଶ ଶ୍ଲୋକରେ ଭଗବାନ୍ ସ୍ପଷ୍ଟ କହିଅଛନ୍ତି 'ପ୍ରକୃତିଂ ଯାନ୍ତି ଭୂତାନି ନିଗ୍ରହଃ କିଂ କରିଷ୍ୟତି ।' ଅର୍ଥାତ୍ ପ୍ରତ୍ୟେକ ପ୍ରାଣୀ ପ୍ରକୃତିଦ୍ୱାରା ନିୟନ୍ତ୍ରିତ ହୋଇ କର୍ମ କରେ, ଏପରି ଅବସ୍ଥାରେ ନିଗ୍ରହ କଅଣ କରିବ ? ଜ୍ଞାନ ଦୃଷ୍ଟିରୁ ଦେଖିଲେ କର୍ମରେ ଆସକ୍ତି ଛାଡ଼ିବା ଭିନ୍ନ ଏହାର ଅନ୍ୟ ଉପାୟ ନାହିଁ । ସାଂଖ୍ୟାଦି ନ୍ୟାୟ-ଦର୍ଶନ ମତରେ ଏହି ବିଚାର କରାଗଲା । ମାତ୍ର ଭକ୍ତି ଦୃଷ୍ଟିରେ ଏହା ଅନ୍ୟ ଭାବରେ ବୁଝିବାକୁ ହୁଏ । ୫୯ମ ଓ ୬୦ମରେ ଦର୍ଶନଶାସ୍ତ୍ର ସମ୍ମତ ଜ୍ଞାନ ଦୃଷ୍ଟିରେ ଭଗବାନ୍ ଏହା କହିସାରି ପରବର୍ତ୍ତୀ ଦୁଇ ଶ୍ଲୋକରେ ଅର୍ଥାତ୍ ୬୧ମ ଓ ୬୨ମ ଶ୍ଲୋକରେ ଭକ୍ତି ଦୃଷ୍ଟିରେ ଏହା ବ୍ୟାଖ୍ୟା କରି ଅଛନ୍ତି । ପ୍ରକୃତି ଈଶ୍ୱରଙ୍କର ବିଭୂତି । ଜ୍ଞାନ ଦୃଷ୍ଟିରେ ଦେଖିଲେ ପ୍ରକୃତି ଯାହା କରେ ଭକ୍ତ ଦୃଷ୍ଟିରେ ଦେଖିଲେ ଈଶ୍ୱର ହିଁ ତାହା କରନ୍ତି । ତେଣୁ ୬୧ମ ଶ୍ଲୋକରେ କୁହାଗଲା ଆତ୍ମାର କୌଣସି ସ୍ୱାତନ୍ତ୍ର୍ୟ ନାହିଁ । ପରମାତ୍ମାଙ୍କ ହାତରେ ମନୁଷ୍ୟ କ୍ରୀଡ଼ା ପୁତ୍ତଳିକା ପରି । ଯେପରି କୃତ୍ରିମ ପୁତ୍ତଳିକା (କଳ ଘୋଡ଼ା, ବୁଢ଼ାବୁଢ଼ୀ, ରଜାରାଣୀ ମୂର୍ତ୍ତି) ମଧ୍ୟରେ ମନୁଷ୍ୟ ପଶି ତାହାକୁ ନିଜ ଇଚ୍ଛାରେ ଚଳାଏ, ସେହିପରି ଅନ୍ତର୍ଯ୍ୟାମୀ ଆମ ହୃଦୟରେ ରହି ଆମକୁ ତାଙ୍କ ନିଜ ଇଚ୍ଛା ଅନୁକୂଳରେ ଚଳାଉଅଛନ୍ତି । ତେଣୁ ସର୍ବ ଭାବରେ ତାଙ୍କର ଆଶ୍ରୟ ନେଲେ ସେ ଚିରଶାନ୍ତି ପ୍ରଦାନ କରିବେ । ସେ ଜୀବର ଗତି, ଭର୍ତ୍ତା, ପ୍ରଭୁ, ଶରଣ ଓ ସୁହୃଦ୍ । ତାଙ୍କର କୃପା ଲାଭ କରିବାକୁ ହେଲେ ହୃଦୟର ଅନ୍ତରତମ ପ୍ରଦେଶର ପ୍ରେରଣା ଓ ଦୃଢ଼ବିଶ୍ୱାସ ଲୋଡ଼ା । ତେଣୁ କୁହାଯାଏ, 'ବିଶ୍ୱାସେ ପାଇବେ କୃଷ୍ଣ ତର୍କେ ବହୁଦୂର ।'

ଇତି ତେ ଜ୍ଞାନମାଖ୍ୟାତଂ ଗୁହ୍ୟାଦ୍‌ଗୁହ୍ୟତରଂ ମୟା ।
ବିମୃଶ୍ୟୈତଦଶେଷେଣ ଯଥେଚ୍ଛସି ତଥା କୁରୁ । ୬୩ ।
ସର୍ବଗୁହ୍ୟତମଂ ଭୂୟଃ ଶୃଣୁ ମେ ପରମଂ ବଚଃ ।
ଇଷ୍ଟୋଽସି ମେ ଦୃଢମିତି ତତୋ ବକ୍ଷ୍ୟାମି ତେ ହିତମ୍ । ୬୪ ।

ଏଠାରେ ସ୍ମରଣ ରଖିବାକୁ ହେବ ଯେ ଏହି ପରମପବିତ୍ର ଗୀତାଶାସ୍ତ୍ରରେ ଜ୍ଞାନ ଅପେକ୍ଷା ଭକ୍ତିର ମହତ୍ତ୍ୱ ଅଧିକ ବୋଲି ଭଗବାନ୍ ପ୍ରମାଣ କରିଅଛନ୍ତି । ଶେଷର ଉପସଂହାର ଅଂଶ ହିଁ ତାହାର ପ୍ରମାଣ ।

୬୩ । **ଅନ୍ୱୟଦୀପିକା**—ଇତି (ଏହି) ଗୁହ୍ୟାତ୍‌ଗୁହ୍ୟତରଂ (ଗୁହ୍ୟଠାରୁ ଅତିଗୁହ୍ୟ) ଜ୍ଞାନଂ (ତତ୍ତ୍ୱଜ୍ଞାନ) ତେ (ତୁମ୍ଭ ନିକଟରେ) ମୟା ଆଖ୍ୟାତମ୍ (ଆମ୍ଭେ ବ୍ୟାଖ୍ୟା କଲୁଁ) । ଅଶେଷେଣ (ଉତ୍ତମରୂପେ) ଏତତ୍ (ଏହାକୁ) ବିମୃଶ୍ୟ (ବିଚାରକରି) ଯଥା ଇଚ୍ଛସି ତଥା କୁରୁ (ଯେପରି ଇଚ୍ଛା ସେପରି କର) ।

**ଅନୁବାଦ**—ତୁମ୍ଭ ନିକଟରେ ଆମ୍ଭେ ଅତି ଗୋପନୀୟ ତତ୍ତ୍ୱଜ୍ଞାନ ବ୍ୟାଖ୍ୟାକଲୁଁ, ତୁମ୍ଭେ ଏହା ଉତ୍ତମରୂପେ ପର୍ଯ୍ୟାଲୋଚନା କରି ଯେପରି ଇଚ୍ଛା ସେପରି କର ।

**ସୁବୋଧିନୀ ଟୀକା**—ସର୍ବଗୀତାର୍ଥମୁପସଂହରିଷ୍ୟନ୍ନାହ — ଇତୀତି । ଇତ୍ୟନେନପ୍ରକାରେଣ ତେ ତୁଭ୍ୟଂ ସର୍ବଜ୍ଞେନ ପରମକାରୁଣିକେନ ମୟା ଜ୍ଞାନମାଖ୍ୟାତମୁପଦିଷ୍ଟମ୍ । କଥମ୍ଭୂତଂ ? ଗୁହ୍ୟାଦ୍ ଗୋପ୍ୟାଦ୍ ରହସ୍ୟମନ୍ତ୍ରଯୋଗାଦିଜ୍ଞାନାଦପି ଗୁହ୍ୟତରମ୍ । ଏତନ୍ମୟୋପଦିଷ୍ଟଂ ଗୀତାଶାସ୍ତ୍ରମଶେଷତୋ ବିମୃଶ୍ୟ ପର୍ଯ୍ୟାଲୋଚ୍ୟ ପଶ୍ଚାଦ୍ ଯଥେଚ୍ଛସି ତଥାକୁରୁ, ଏତସ୍ମିନ୍ ପର୍ଯ୍ୟାଲୋଚିତେ ସତି ତବମୋହୋ ନିବର୍ତ୍ତିଷ୍ୟତ ଇତିଭାବଃ ।

**ବିବୃତି**—ସମଗ୍ର ଗୀତାଶାସ୍ତ୍ରରେ ଜ୍ଞାନମାର୍ଗ, କର୍ମମାର୍ଗ ଓ ଭକ୍ତିମାର୍ଗ ବିଶେଷରୂପେ ଆଲୋଚିତ ହୋଇଅଛି । ବର୍ଣ୍ଣାଶ୍ରମୋଚିତ କର୍ମ ନିଷ୍କାମଭାବରେ ଅନୁଷ୍ଠାନ କରି ଜ୍ଞାନମିଶ୍ରଭକ୍ତି ଦ୍ୱାରା ମନୁଷ୍ୟ ମୋକ୍ଷପଦ ଲାଭର ଅଧିକାରୀ ହୁଏ, ଏହା ହିଁ ଗୀତାଶାସ୍ତ୍ରର ଶେଷ ସିଦ୍ଧାନ୍ତ । ଜ୍ଞାନ ଓ ଭକ୍ତିଦ୍ୱାରା ଯେତେବେଳେ ବୁଦ୍ଧି ସାମ୍ୟାବସ୍ଥାରେ ପହଞ୍ଚେ, ସେତେବେଳେ ଇଚ୍ଛାର ସ୍ୱାଧୀନତା ରହିପାରେ ନାହିଁ, ଏପରି ଅବସ୍ଥାରେ ଜ୍ଞାନୀ ବା ଭକ୍ତ କୌଣସିପ୍ରକାର ଅମଙ୍ଗଳଜନକ କାର୍ଯ୍ୟ କରିପାରନ୍ତି ନାହିଁ । ତେଣୁ ଭଗବାନ୍ କହିଲେ ଆମ୍ଭ ଉପଦେଶ ଭଲକରି ବିଚାର କଲେ ତୁମ୍ଭର ଅସଦିଚ୍ଛା ଲୋପ ପାଇଯିବ । ସୁତରାଂ ତୁମ୍ଭେ ଯାହା କରିବ ତାହା ଧର୍ମାନୁମୋଦିତ ପ୍ରମାଣସ୍ୱରୂପ ହେବ ।

୬୪ । **ଅନ୍ୱୟଦୀପିକା**—ସର୍ବଗୁହ୍ୟତମଂ (ସର୍ବାପେକ୍ଷା ଗୋପନୀୟ) ମେ ପରମଂ ବଚଃ (ଆମ୍ଭର ଶ୍ରେଷ୍ଠକଥା) ଭୂୟଃ ଶୃଣୁ (ପୁଣି ଶୁଣ), ତ୍ୱଂ ମେ

ମନ୍ମନା ଭବ ମଦ୍‌ଭକ୍ତୋ ମଦ୍‌ଯାଜୀ ମାଂ ନମସ୍କୁରୁ ।
ମାମେବୈଷ୍ୟସି ସତ୍ୟଂ ତେ ପ୍ରତିଜାନେ ପ୍ରିୟୋଽସି ମେ । ୬୫ ।
ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।
ଅହଂ ତ୍ୱା ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ । ୬୬ ।

(ତୁମ୍ଭେ ଅମ୍ଭର) ଦୃଢ଼ମ୍ (ଅତ୍ୟନ୍ତ) ଇଷ୍ଟଃ ଅସି (ପ୍ରିୟ ଅଟ), ତତଃ (ସେହି ହେତୁରୁ) ତେ ହିତଂ ବକ୍ଷ୍ୟାମି (ତୁମ୍ଭଙ୍କୁ ହିତ କଥା କହୁଛୁଁ) ।

**ଅନୁବାଦ**—ତୁମ୍ଭେ ଅମ୍ଭର ଅତ୍ୟନ୍ତ ପ୍ରିୟ, ସେହିହେତୁରୁ ତୁମ୍ଭ ହିତ ପାଇଁ ଅମ୍ଭେ ସର୍ବାପେକ୍ଷା ଗୁହ୍ୟକଥା ତୁମ୍ଭଙ୍କୁ ପୁନର୍ବାର କହୁଛୁଁ, ଶୁଣ ।

**ସୁବୋଧିନୀ ଟୀକା**—ଅତିଗମ୍ଭୀରଂ ଗୀତାଶାସ୍ତ୍ରମଶେଷତଃ ପର୍ଯ୍ୟାଲୋଚୟିତୁମଶକ୍ନୁବତଃ କୃପୟା ସ୍ୱୟମେବ ତସ୍ୟ ସାରଂ ସଂଗୃହ୍ୟ କଥୟତି । ସର୍ବଗୁହ୍ୟତମମିତି ତ୍ରିଭିଃ । ସର୍ବେଭ୍ୟୋଽପି ଗୁହ୍ୟେଭ୍ୟୋ ଗୁହ୍ୟତମଂ ମେ ବଚସ୍ତଚ୍ଚ ତତ୍ରୋକ୍ତମପି ଭୂୟଃ ପୁନରପି ବକ୍ଷ୍ୟମାଣଂ ଶୃଣୁ । ପୁନଃ ପୁନଃ କଥନେ ହେତୁମାହ । ଦୃଢ଼ମତ୍ୟନ୍ତଂ ମମ ତ୍ୱମିଷ୍ଟଃ ପ୍ରିୟୋଽସୀତିମତ୍ୱା । ତତ ଏବ ହେତୋସ୍ତେ ହିତଂ ବକ୍ଷ୍ୟାମି । ଯଦ୍ୱା, ମମ ତ୍ୱମିଷ୍ଟୋଽସି । ମୟା ବକ୍ଷ୍ୟମାଣଂ ଦୃଢ଼ଂ ସର୍ବପ୍ରମାଣୋପେତମିତି ଜ୍ଞାତ୍ୱା ତତସ୍ତେ ବକ୍ଷ୍ୟାମୀତ୍ୟର୍ଥଃ । ଦୃଢ଼ମତିରତି କ୍ୱଚିତ୍ ପାଠଃ ।

୬୫ । **ଅନ୍ୱୟଦୀପିକା**—[ତୁମ୍ଭେ] ମନ୍ମନାଃ (ମଦେକଚିତ୍ତ), ମଦ୍‌ଭକ୍ତଃ (ଅମ୍ଭର ଭକ୍ତ), ମଦ୍‌ଯାଜୀ (ଅମ୍ଭର ପୂଜକ) ଭବ (ହୁଅ) । ମାଂ ନମସ୍କୁରୁ (ଅମ୍ଭଙ୍କୁ ନମସ୍କାର କର) । [ତାହାହେଲେ] ମାମ୍ ଏବ (ଅମ୍ଭଙ୍କୁ ହିଁ) ଏଷ୍ୟସି (ପ୍ରାପ୍ତହେବ) । ଅହଂ (ଅମ୍ଭେ) ତେ (ତୁମ୍ଭ ପାଖରେ) ସତ୍ୟଂ ପ୍ରତିଜାନେ (ସତ୍ୟ ପ୍ରତିଜ୍ଞା କରୁଅଛୁଁ), [କାରଣ] ମେ ପ୍ରିୟଃ ଅସି (ତୁମ୍ଭେ ଅମ୍ଭର ପ୍ରିୟ ଅଟ) ।

**ଅନୁବାଦ**—ତୁମ୍ଭେ ଏକମାତ୍ର ଅମ୍ଭଠାରେ ମନ ରଖ, ଅମ୍ଭଙ୍କୁ ଭକ୍ତି କର, ଅମ୍ଭର ପୂଜାକର, ଅମ୍ଭଙ୍କୁ ନମସ୍କାର କର, ଅମ୍ଭେ ସତ୍ୟ-ପ୍ରତିଜ୍ଞା କରୁଅଛୁଁ, ତୁମ୍ଭେ ନିଶ୍ଚେ ଅମ୍ଭଙ୍କୁ ପାଇବ । କାରଣ ତୁମ୍ଭେ ଅମ୍ଭର ପ୍ରିୟ ଅଟ ।

**ସୁବୋଧିନୀ ଟୀକା**—ତଦେବାହ—ମନ୍ମନା ଇତି । ମନ୍ମନା ଭବ, ମଚ୍ଚିତ୍ତୋ ଭବ, ମଦ୍‌ଭକ୍ତୋ ମଦ୍‌ଭଜନଶୀଲୋ ଭବ । ମଦ୍‌ଯାଜୀ ମଦ୍‌ଯଜନଶୀଲୋ ଭବ, ମାମେବ ନମସ୍କୁରୁ ଏବଂ ବର୍ତ୍ତମାନସ୍ତ୍ୱଂ ମତ୍ପ୍ରସାଦଲବ୍ଧଜ୍ଞାନେନ ମାମେବୈଷ୍ୟସି ପ୍ରାପ୍ସ୍ୟସି, ଅତ୍ର ସଂଶୟଂ ମାକାର୍ଷୀଃ । ତ୍ୱଂ ହି ମେ ପ୍ରିୟୋଽସି, ଅତଃ ସତ୍ୟଂ ଯଥାଭବତ୍ୟେବଂ ତୁଭ୍ୟମହଂ ପ୍ରତିଜାନେ ପ୍ରତିଜ୍ଞାଂ କରୋମି ।

୬୬ । **ଅନ୍ୱୟଦୀପିକା**—ସର୍ବଧର୍ମାନ୍ (ସମସ୍ତ ଧର୍ମ) ପରିତ୍ୟଜ୍ୟ (ତ୍ୟାଗକରି) ଏକଂ ମାଂ (ଏକମାତ୍ର ଅମ୍ଭଙ୍କୁ) ଶରଣଂ ବ୍ରଜ (ଆଶ୍ରୟ କର) ।

ଅହଂ ( ଅମ୍ଭେ ) ତ୍ୱା ( ତୁମ୍ଭଙ୍କୁ ) ସର୍ବପାପେଭ୍ୟଃ ( ସମସ୍ତ ପାପରୁ ) ମୋକ୍ଷୟିଷ୍ୟାମି ( ମୁକ୍ତ ପ୍ରଦାନ କରିବୁଁ ); ମା ଶୁଚଃ ( ଶୋକ କର ନାହିଁ ) ।

**ଅନୁବାଦ**—ସମସ୍ତ ଧର୍ମତ୍ୟାଗକରି ତୁମ୍ଭେ ଏକମାତ୍ର ଅମ୍ଭର ଶରଣାଗତ ହୁଅ । ଅମ୍ଭେ ତୁମ୍ଭଙ୍କୁ ସବୁ ପାପରୁ ମୁକ୍ତ ଦେବୁଁ । ଶୋକ କର ନାହିଁ ।

**ସୁବୋଧିନୀ ଟୀକା**—ତତୋଽପି ଗୁହ୍ୟତମମାହ । ସର୍ବେତି । ମଦ୍‌ଭକ୍ତ୍ୟୈବ ସର୍ବଂ ଭବିଷ୍ୟତୀତି ଦୃଢ଼ବିଶ୍ୱାସେନ ବିଧିକୈଙ୍କର୍ଯ୍ୟଂ ତ୍ୟକ୍ତ୍ୱା ମଦେକଶରଣୋ ଭବ । ଏବଂ ବର୍ତ୍ତମାନଃ କର୍ମତ୍ୟାଗନିମିତ୍ତଂ ପାପଂ ସ୍ୟାଦିତି ମା ଶୁଚଃ ଶୋକଂ ମାକାର୍ଷୀଃ । ଯତସ୍ତ୍ୱାଂ ମଦେକଶରଣଂ ସର୍ବପାପେଭ୍ୟୋଽହଂ ମୋକ୍ଷୟିଷ୍ୟାମି ।

**ବିବୃତି**—ଏଠାରେ ଭଗବାନ୍ କହୁଅଛନ୍ତି 'ସବୁ ଧର୍ମ ତ୍ୟାଗକରି ଏକମାତ୍ର ଅମ୍ଭର ଶରଣାଗତ ହୁଅ' । 'ସବୁଧର୍ମ' କହିଲେ କଅଣ ବୁଝାଯାଏ ? ଈଶ୍ୱର ପ୍ରାପ୍ତି, ସ୍ୱର୍ଗଲାଭ ବା ପାରଲୌକିକ ସଦ୍‌ଗତି ଲାଭ ଉଦ୍ଦେଶ୍ୟରେ ଯେଉଁ ସବୁ କର୍ମ କରାଯାଏ ସେ ସବୁକୁ ସାଧାରଣତଃ ଧର୍ମ କହନ୍ତି । ସେଥିପାଇଁ ବେଦ, ଉପନିଷଦ୍, ସ୍ମୃତି ପ୍ରଭୃତି ନାନା ଶାସ୍ତ୍ର ପ୍ରଣୀତ ହୋଇଅଛି । ଭିନ୍ନ ଭିନ୍ନ ଶାସ୍ତ୍ରକାର ଧର୍ମଲାଭ କରିବା ପାଇଁ ନାନା ବିଧି ଓ ନିଷେଧର ଉପଦେଶ ଦେଇଅଛନ୍ତି । ଉଦାହରଣ ସ୍ୱରୂପ କୁହାଯାଏ ଯେ ଗାର୍ହସ୍ଥ୍ୟ ଧର୍ମର ବିଧି ସନ୍ନ୍ୟାସଧର୍ମଠାରୁ ପୃଥକ୍ । ବେଦୋକ୍ତ କର୍ମକାଣ୍ଡାତ୍ମକଧର୍ମ ଉପନିଷଦୁକ୍ତ ଜ୍ଞାନମୂଳକ ଧର୍ମଠାରୁ ପୃଥକ୍ । ଏସବୁ ଛଡ଼ା ରାଜଧର୍ମ, ପାତିବ୍ରତ୍ୟ ଧର୍ମ, ଦାନଧର୍ମ, ଅହିଂସାଧର୍ମ ପ୍ରଭୃତି ନାନାବିଧ ଧର୍ମ ଆମ ଧର୍ମଶାସ୍ତ୍ରମାନଙ୍କରେ ବ୍ୟବସ୍ଥାପିତ ହୋଇଅଛି । ଏ ସବୁ ବିଭିନ୍ନ ଧର୍ମ ମତର ଗଣ୍ଡଗୋଳରେ ପଡ଼ିଲେ ଅନେକ ସମୟରେ ମନୁଷ୍ୟ କାତରଣା ହୋଇ କର୍ତ୍ତବ୍ୟ ନିର୍ଣ୍ଣୟ କରି ପାରେ ନାହିଁ । ତେଣୁ ଧର୍ମର ଅତି ଗୋପନୀୟ ସାରାଂଶରୂପେ ଭଗବାନ୍ କହୁଅଛନ୍ତି—ଶ୍ରୁତି, ସ୍ମୃତି, ଲୋକାଚାରମୂଳକ ନାନାଧର୍ମର ବିଧିନିଷେଧରୂପ ଦାସତ୍ୱ ତ୍ୟାଗ କରି ଏକମାତ୍ର ଅମ୍ଭର ଶରଣ ନିଅ । ପୂଜ୍ୟପାଦ ଟୀକାକାର ଶ୍ରୀଧରସ୍ୱାମୀ ତାଙ୍କ ଟୀକାରେ ଏହା ହିଁ କହୁଅଛନ୍ତି—"ମଦ୍‌ଭକ୍ତ୍ୟୈବ ସର୍ବଂ ଭବିଷ୍ୟତୀତି ଦୃଢ଼ବିଶ୍ୱାସେନ ବିଧିକୈଙ୍କର୍ଯ୍ୟଂ ତ୍ୟକ୍ତ୍ୱା ମଦେକ ଶରଣୋ ଭବ ।" ଅର୍ଥାତ୍ ଅମ୍ଭଙ୍କୁ 'ଭକ୍ତିକଲେ ସବୁ ହୋଇଯିବ, ଏହି ଦୃଢ଼ବିଶ୍ୱାସରେ ବିଧିର ଦାସତ୍ୱ ତ୍ୟାଗକରି ଅମ୍ଭର ଶରଣାପନ୍ନ ହୁଅ' ।

ଏହା ହିଁ ସମଗ୍ର ଗୀତାଶାସ୍ତ୍ରର ଉପସଂହାରକାଳୀନ ଉପଦେଶ ଏବଂ ଏହି ଉପଦେଶ ଯେ ଭକ୍ତିମୂଳକ ବା ଭକ୍ତିରସାପ୍ଲୁତ ଏଥିରେ ସନ୍ଦେହ ହୁଏ ନାହିଁ । ବିଶେଷତଃ ଭୂଭାର ହରଣ ଉଦ୍ଦେଶ୍ୟରେ ବ୍ୟକ୍ତରୂପରେ ଅବତୀର୍ଣ୍ଣ ଶ୍ରୀକୃଷ୍ଣ ଯେତେବେଳେ 'ମାମ୍' ଅର୍ଥାତ୍ 'ଅମ୍ଭଙ୍କୁ' ( ବ୍ୟକ୍ତରୂପୀ )— ନିଜ

ଇଦଂ ତେ ନାତପସ୍କାୟ ନାଭକ୍ତାୟ କଦାଚନ ।
ନଚାଶୁଶ୍ରୂଷବେ ବାଚ୍ୟଂ ନ ଚ ମାଂ ଯୋଽଭ୍ୟସୂୟତି । ୬୭ ।

ବ୍ୟକ୍ତରୂପ ପ୍ରତି ହିଁ ଲକ୍ଷ୍ୟକରିଅଛନ୍ତି ସେତେବେଳେ ବ୍ୟକ୍ତ ଉପାସନା ଯେ ଅବ୍ୟକ୍ତ ଉପାସନାଠାରୁ ଶ୍ରେଷ୍ଠ—ଏଥିରୁ ଏହା ପ୍ରମାଣିତ ହେଉଅଛି । ଦ୍ୱାଦଶ ଅଧ୍ୟାୟର ୫ମ ଶ୍ଳୋକରେ ବ୍ୟକ୍ତୋପାସନା ସୁଲଭ ଓ ଶ୍ରେଷ୍ଠ ବୋଲି ମଧ୍ୟ ଭଗବାନ୍ ସ୍ପଷ୍ଟରୂପେ ନିର୍ଦ୍ଦେଶ କରିଅଛନ୍ତି ।

ମାତ୍ର ଜ୍ଞାନମାର୍ଗୀୟ ଟୀକାକାରମାନେ ଏ ଭକ୍ତିମୂଳକ ଉପସଂହାରକୁ ଗ୍ରହଣ ନ କରି ଏହାର ଜ୍ଞାନମୂଳକ ଅର୍ଥ କରନ୍ତି । ସେଥିପାଇଁ ସେମାନେ ଧର୍ମ ଶବ୍ଦରେ ଅଧର୍ମ ଅଧ୍ୟାହାର ଥିବା କହନ୍ତି—( ଧର୍ମଶବ୍ଦେନାତ୍ର ଅଧର୍ମୋଽପି ଗୃହ୍ୟତେ, ନୈଷ୍କର୍ମ୍ୟସ୍ୟ ବିବକ୍ଷିତତ୍ୱାତ୍—ଶଙ୍କର) ଧର୍ମ ଓ ଅଧର୍ମ ପ୍ରବୃତ୍ତିର, ପୁରୁଷ ତହିଁରୁ ଅତୀତ । ଧର୍ମାଧର୍ମ ତ୍ୟାଗର ଅର୍ଥ—ପ୍ରକୃତିରୁ ମୁକ୍ତ ହୋଇ ସର୍ବ କର୍ମ ତ୍ୟାଗପୂର୍ବକ ଧର୍ମାଧର୍ମର ଅତୀତ ନିର୍ଗୁଣ ବ୍ରହ୍ମଙ୍କର ଆଶ୍ରୟ ନେବା । ଇତ୍ୟାଦି । ମାତ୍ର ଏ ବ୍ୟାଖ୍ୟାରେ ସମସ୍ତଙ୍କର ମନଃପୂତ ହେବ ନାହିଁ, କାରଣ ଏଠାରେ 'ଆମ୍ଭର ଶରଣାଗତ ହୁଅ' 'ଇତ୍ୟାଦି ଅନ୍ୟ ଯେଉଁ ସବୁ ଉପଦେଶ ଅଛି ତାହା ନିର୍ଗୁଣ ବ୍ରହ୍ମଙ୍କଠାରେ ପ୍ରଯୋଜ୍ୟ ହୋଇ ପାରିବ ନାହିଁ ।

ଏ ଶ୍ଳୋକର ଟିପ୍ପଣୀରେ ଲୋକମାନ୍ୟ ତିଲକ ଲେଖିଅଛନ୍ତି—"ଏଠାରେ ଭଗବାନ୍ ଶ୍ରୀକୃଷ୍ଣ ନିଜ ବ୍ୟକ୍ତସ୍ୱରୂପ ବିଷୟ ହିଁ କହୁଅଛନ୍ତି । ଏହି ହେତୁରୁ ଆମ୍ଭର ଦୃଢ଼ ମତ ଏହି ଯେ ଏ ଉପସଂହାର ଭକ୍ତିପ୍ରଧାନ । ଅର୍ଥାତ୍ ଏଠାରେ ନିର୍ଗୁଣ ବ୍ରହ୍ମବିବକ୍ଷିତ ନୁହନ୍ତି । କିନ୍ତୁ ଏଠାରେ ଗୀତାର ପ୍ରତିପାଦ୍ୟ ଧର୍ମର ଅନୁରୋଧରେ ଭଗବାନଙ୍କର କହିବାର ଉପଦେଶ ଏହି ଯେ—ଏକମାତ୍ର ଆମ୍ଭକୁ ହିଁ ଭଜନା କର, ଆମ୍ଭେ ତୁମ୍ଭର ଉଦ୍ଧାର ସାଧନ କରିବୁଁ, ଭୟ କର ନାହିଁ । ଏହା ହିଁ ସାର ଯେ—ଶେଷରେ ଅର୍ଜୁନଙ୍କୁ ନିମିତ୍ତ କରି ଭଗବାନ୍ ସମସ୍ତଙ୍କୁ ଆଶ୍ୱାସ ଦେଉଅଛନ୍ତି ଯେ ଆମ୍ଭଠାରେ ଦୃଢ଼ଭକ୍ତି ରଖି ମତ୍ପରାୟଣ ବୁଦ୍ଧିରେ ସ୍ୱଧର୍ମାନୁସାରେ ପ୍ରାପ୍ତ କର୍ମ କରୁଥିଲେ ଇହଲୋକରେ ଓ ପରଲୋକରେ ଉଭୟତ୍ର ତୁମ୍ଭର କଲ୍ୟାଣ ହେବ, ଭୟ କର ନାହିଁ । ଏହାକୁ ହିଁ କର୍ମଯୋଗ କୁହାଯାଏ ଏବଂ ଏହା ହିଁ ସମସ୍ତ ଗୀତାଧର୍ମର ସାର ।"

୬୭ । **ଅନ୍ୱୟଦୀପିକା**—ଇଦଂ ( ଏହା ) ତେ ( ତୁମ୍ଭର ) ଅତପସ୍କାୟ ( ତପସ୍ୟା ବର୍ଜିତ ଲୋକକୁ ଅର୍ଥାତ୍ ସ୍ୱଧର୍ମାନୁଷ୍ଠାନରହିତ ଲୋକକୁ ) ନ ବାଚ୍ୟମ୍ ( କହିବା ଉଚିତ ନୁହେ ), ନ ଅଭକ୍ତାୟ ( ଭକ୍ତି ହୀନକୁ ମଧ୍ୟ ନୁହେ), ନ ଚ ଅଶୁଶ୍ରୂଷବେ (ଶୁଣିବାକୁ ଇଚ୍ଛା କରୁ ନ ଥିବା ଲୋକକୁ ମଧ୍ୟ ନୁହେ)

ଯ ଇଦଂ ପରମଂ ଗୁହ୍ୟଂ ମଦ୍‌ଭକ୍ତେଷ୍ୱଭିଧାସ୍ୟତି ।
ଭକ୍ତିଂ ମୟି ପରାଂ କୃତ୍ୱା ମାମେବୈଷ୍ୟତ୍ୟସଂଶୟଃ । ୬୮ ।

ଯଃ ଚ ମାଂ ( ଅଭ ଯେ ଅମ୍ଭଙ୍କୁ ) ଅଭ୍ୟସୂୟତି ( ଅସୂୟା କରେ ) [ତାଙ୍କୁ ମଧ୍ୟ] ନ ( ନୁହେ ) ।

**ଅନୁବାଦ**—ଯେଉଁ ଲୋକ ତପସ୍ୟା ଅର୍ଥାତ୍ ସ୍ୱଧର୍ମାନୁଷ୍ଠାନ କରେ ନାହିଁ, ଯେ ଭକ୍ତ ନୁହେ, ଯାହାର ଶୁଣିବାକୁ ଇଚ୍ଛା ନ ଥାଏ ବା ଯେ ଗୁରୁସେବା ନ କରୁ ଥାଏ ଏବଂ ଯେ ଅମ୍ଭଙ୍କୁ ନିନ୍ଦା କରେ, ଏହିଳି ଲୋକକୁ ତୁମ୍ଭେ ଏ ଗୀତା ଶାସ୍ତ୍ର କହିବ ନାହିଁ ।

**ସୁବୋଧିନୀ ଟୀକା**—ଏବଂ ଗୀତାର୍ଥତତ୍ତ୍ୱମୁପଦିଶ୍ୟ ତତ୍ ସମ୍ପ୍ରଦାୟ-ପ୍ରବର୍ତ୍ତିନେ ନିୟମମାହ ଇଦମିତି । ଇଦଂ ଗୀତାର୍ଥତତ୍ତ୍ୱଂ ତେ ତ୍ୱୟାଽତପସ୍କାୟ ସ୍ୱଧର୍ମାନୁଷ୍ଠାନରହିତାୟ ନ ବାଚ୍ୟମ୍ । ନ ଚାଭକ୍ତାୟ ଗୁରୌ ଈଶ୍ୱରେ ଚ ଭକ୍ତିଶୂନ୍ୟାୟ କଦାଚଦପି ବାଚ୍ୟମ୍ । ନ ଚ ଶୁଶ୍ରୂଷବେ ପରିଚର୍ଯ୍ୟାମକୁର୍ବତେ ଶ୍ରୋତୁମନିଚ୍ଛତେ ବା ବାଚ୍ୟମ୍ । ମାଂ ପରମେଶ୍ୱରଂ ଯୋଽଭ୍ୟସୂୟତି ମନୁଷ୍ୟଦୃଷ୍ଟ୍ୟା ଦୋଷାରୋପେଣ ନିନ୍ଦତି ତସ୍ମୈ ଚ ନ ବାଚ୍ୟମ୍ ।

**ବିବୃତି**—ସମସ୍ତ ଲୋକଙ୍କୁ ଧର୍ମର ସୂକ୍ଷ୍ମତତ୍ତ୍ୱ ବୁଝାଯାଏ ନାହିଁ, କାରଣ ସେମାନେ ପ୍ରକୃତ ତତ୍ତ୍ୱ ବୁଝି ନପାରି ବିକୃତ ଅର୍ଥ ଗ୍ରହଣ କରନ୍ତି । ଗୀତା ଶାସ୍ତ୍ରରେ ଧର୍ମର ଯେଉଁ ସୂକ୍ଷ୍ମତତ୍ତ୍ୱ ଆଲୋଚିତ ହୋଇଅଛି, ଯେ କୌଣସି ଲୋକ ପକ୍ଷରେ ତାହାର ଭାବ ଗ୍ରହଣ ଅସମ୍ଭବ । ସେହି ହେତୁରୁ ଯେ କୌଣସି ଲୋକକୁ ବେଦ ଶୁଣାଇବ ନାହିଁ ବୋଲି ଶାସ୍ତ୍ରକାରମାନେ ନିର୍ଦ୍ଦେଶ କରି ଯାଇଅଛନ୍ତି । ଗୀତା ସର୍ବତ୍ର ଭକ୍ତିରସରେ ଆପ୍ଲୁତ, ତେଣୁ ଯେ ଅଭକ୍ତ, ଈଶ୍ୱରବିମୁଖ, ସ୍ୱଧର୍ମଭ୍ରଷ୍ଟ ଓ ଅଗ୍ରହଶୂନ୍ୟ—ସେପରି ଲୋକ ଏ ଶାସ୍ତ୍ର ଶୁଣିବାରେ ଅନଧିକାରୀ ।

୬୮ । **ଅନ୍ୱୟଦୀପିକା**—ଯଃ (ଯେଉଁ ବ୍ୟକ୍ତି) ଇଦଂ ପରମଂ ଗୁହ୍ୟଂ ( ଏହି ପରମ ଗୋପନୀୟ ଶାସ୍ତ୍ରକୁ ) ମଦ୍‌ଭକ୍ତେଷୁ ( ଅମ୍ଭ ଭକ୍ତମାନଙ୍କ ମଧ୍ୟରେ ) ଅଭିଧାସ୍ୟତି (ବ୍ୟାଖ୍ୟା କରିବେ) [ସେ] ମୟି (ଅମ୍ଭଠାରେ) ପରାଂ ଭକ୍ତିଂ କୃତ୍ୱା ( ପରମ ଭକ୍ତି କରି ) ଅସଂଶୟଃ ( ସନ୍ଦେହ ଶୂନ୍ୟ ହୋଇ ) ମାମ୍ ଏବ ଏଷ୍ୟତି (ଅମ୍ଭଙ୍କୁ ହିଁ ପ୍ରାପ୍ତ ହେବେ) ।

**ଅନୁବାଦ**—ଯେଉଁ ବ୍ୟକ୍ତି ଅମ୍ଭଠାରେ ଏକାନ୍ତ ଭକ୍ତିଯୁକ୍ତ ହୋଇ ଅମ୍ଭ ଭକ୍ତମାନଙ୍କ ମଧ୍ୟରେ ଏହି ପରମ ଗୋପନୀୟ ଶାସ୍ତ୍ର ବ୍ୟାଖ୍ୟା କରିବେ ସେ ନିଶ୍ଚୟ ଅମ୍ଭଙ୍କୁ ପାଇବେ, ଏଥିରେ ସନ୍ଦେହ ନାହିଁ ।

**ସୁବୋଧିନୀ ଟୀକା**—ଏତୈର୍ଦ୍ଦୋଷୈର୍ବିରହିତେଭ୍ୟୋ ମଦ୍‌ଭକ୍ତେଭ୍ୟୋ ଗୀତାଶାସ୍ତ୍ରୋପଦେଷ୍ଟୁଃ ଫଳମାହ । ଯ ଇଦମିତି, ମଦ୍‌ଭକ୍ତେଷ୍ୱଭିଧାସ୍ୟତି

ନ ଚ ତସ୍ମାନ୍ମନୁଷ୍ୟେଷୁ କଶ୍ଚିନ୍ମେ ପ୍ରିୟକୃତ୍ତମଃ ।
ଭବିତା ନ ଚ ମେ ତସ୍ମାଦନ୍ୟଃ ପ୍ରିୟତରୋ ଭୁବି । ୬୯ ।

ଅଧ୍ୟେଷ୍ୟତେ ଚ ଯ ଇମଂ ଧର୍ମ୍ୟଂ ସଂବାଦମାବୟୋଃ ।
ଜ୍ଞାନଯଜ୍ଞେନ ତେନାହ ମିଷ୍ଟଃ ସ୍ୟାମିତି ମେ ମତିଃ । ୭୦ ।

ମଦ୍‌ଭକ୍ତେଭ୍ୟୋ ଯୋ କଥୟତି ସ ମଯି ପରଂ ଭକ୍ତିଂ କରୋତି । ତତୋ ନିଃସଂଶୟଃ ସନ୍ ମାମେବ ପ୍ରାପ୍ନୋତୀତ୍ୟର୍ଥଃ ।

୬୯ । **ଅନ୍ୱୟଦୀପିକା**—ମନୁଷ୍ୟେଷୁ (ମନୁଷ୍ୟମାନଙ୍କ ମଧ୍ୟରେ) ତସ୍ମାତ୍ (ତାଙ୍କଠାରୁ ଅର୍ଥାତ୍ ସେହି ଗୀତାବ୍ୟାଖ୍ୟାକାରୀଙ୍କଠାରୁ) କଶ୍ଚିତ୍ (କେହି) ମେ (ଆମ୍ଭର) ପ୍ରିୟକୃତ୍ତମଃ (ଅଧିକ ପ୍ରିୟକାରୀ) ନ (ନାହାନ୍ତି), ତସ୍ମାତ୍ ଅନ୍ୟଃ (ତାଙ୍କଠାରୁ ଅନ୍ୟ କେହି) ମେ ପ୍ରିୟତରଃ ଚ (ଆମ୍ଭର ଅଧିକ ପ୍ରିୟକାରୀ) ଭୁବି (ପୃଥିବୀରେ) ନ ଭବିତା (ହେବେ ନାହିଁ) ।

**ଅନୁବାଦ**—ମନୁଷ୍ୟମାନଙ୍କ ମଧ୍ୟରେ ଗୀତାବ୍ୟାଖ୍ୟାକାରୀଙ୍କ ଅପେକ୍ଷା ଆମ୍ଭର ଅନ୍ୟ କେହି ପ୍ରିୟତମ ନାହାନ୍ତି ଏବଂ ପୃଥିବୀରେ ତାଙ୍କ ଅପେକ୍ଷା ଅନ୍ୟ କେହି ଅଧିକ ପ୍ରିୟ ମଧ୍ୟ ହେବେ ନାହିଁ ।

**ସୁବୋଧିନୀ ଟୀକା**—କିଞ୍ଚ ନ ଚେତି, ତସ୍ମାନ୍ମଦ୍‌ଭକ୍ତେଭ୍ୟୋ ଗୀତାଶାସ୍ତ୍ରବ୍ୟାଖ୍ୟାତୁଃ ସକାଶାଦନ୍ୟୋ ମନୁଷ୍ୟେଷୁ ମଧ୍ୟେ କଶ୍ଚିଦପି ମମ ପ୍ରିୟକୃତ୍ତମୋଽତ୍ୟନ୍ତଂ ପରିତୋଷକର୍ତ୍ତା ନାସ୍ତି । ନ ଚ କାଳାନ୍ତରେ ଭବିତା ଭବିଷ୍ୟତି । ମଦାପି ତସ୍ମାଦନ୍ୟଃ ପ୍ରିୟତରୋଽଧୁନାଭୁବି ତାବନ୍ନାସ୍ତି, ନ ଚ ଭବିଷ୍ୟତୀତ୍ୟର୍ଥଃ ।

୭୦ । **ଅନ୍ୱୟଦୀପିକା**—ଯଃ ଚ (ଅଭ ଯେଉଁ ଲୋକ) ଆବୟୋଃ (ଆମ ଦୁହଙ୍କର) ଇମଂ ଧର୍ମ୍ୟଂ ସଂବାଦଂ (ଏହି ଧର୍ମ ବିଷୟକ କଥୋପକଥନ) ଅଧ୍ୟେଷ୍ୟତେ (ଅଧ୍ୟୟନ କରିବେ) ତେନ ( ତାଙ୍କ ଦ୍ୱାରା ) ଅହଂ (ଆମ୍ଭେ) ଜ୍ଞାନଯଜ୍ଞେନ (ଜ୍ଞାନଯଜ୍ଞଦ୍ୱାରା) ଇଷ୍ଟଃ (ପୂଜିତ) ସ୍ୟାମ୍ (ହେବୁଁ), ଇତି ମେ ମତିଃ (ଏହା ଆମ୍ଭର ଅଭିପ୍ରାୟ) ।

**ଅନୁବାଦ**—ଯେଉଁ ଲୋକ ଆମ୍ଭ ଦୁହଙ୍କର ଏହି ଧର୍ମ ବିଷୟକ କଥୋପକଥନ ଅଧ୍ୟୟନ କରିବେ ତାଙ୍କ ଦ୍ୱାରା ଆମ୍ଭେ ଜ୍ଞାନଯଜ୍ଞରେ ପୂଜିତ ହେବୁଁ—ଏହା ଆମ୍ଭର ଅଭିପ୍ରାୟ ।

**ସୁବୋଧିନୀ ଟୀକା**—ପଠତଃ ଫଳମାହ—ଅଧ୍ୟେଷ୍ୟତ ଇତି । ଆବୟୋଃ କୃଷ୍ଣାର୍ଜ୍ଜୁନୟୋ ଋମଂ ଧର୍ମ୍ୟଂ ଧର୍ମାଦନପେତଂ ସଂବାଦଂ ଯୋଽଧ୍ୟେଷ୍ୟତେ ଜପରୂପେଣ ପଠିଷ୍ୟତି ତେନ ପୁଂସା ସର୍ବଯଜ୍ଞେଭ୍ୟଃ ଶ୍ରେଷ୍ଠେନ ଜ୍ଞାନଯଜ୍ଞେନାହ-

ଶ୍ରଦ୍ଧାବାନନସୂୟଶ୍ଚ ଶୃଣୁୟାଦପି ଯୋ ନରଃ ।
ସୋଽପିମୁକ୍ତଃ ଶୁଭାଁଲ୍ଲୋକାନ୍ ପ୍ରାପ୍ନୁୟାତ୍ ପୁଣ୍ୟକର୍ମଣାମ୍ । ୭୧ ।
କଚ୍ଚିଦେତଚ୍ଛ୍ରୁତଂ ପାର୍ଥ ତ୍ୱୟୈକାଗ୍ରେଣ ଚେତସା ।
କଚ୍ଚିଦଜ୍ଞାନସମ୍ମୋହଃ ପ୍ରନଷ୍ଟସ୍ତେ ଧନଞ୍ଜୟ । ୭୨ ।

ମିଙ୍କଃ ସ୍ୟାତ୍ ଭବେଯୁମିତ ମେ ମତଃ, ଯଦ୍ୟପ୍ୟସୌ ଗୀତାର୍ଥମବୁଧ୍ୟମାନ ଏବ କେବଳଂ ଜପତ୍ର ତଥାପି ମମ ତଚ୍ଛୃଣ୍ୱତୋ ମାମେବାସୌ ପ୍ରକାଶଯତୀତ ବୁଦ୍ଧିର୍ଭବତ । ଯଥାଲୋକେ ଯଦୃଚ୍ଛୟାପି ଯଦା କଶ୍ଚିତ୍ କସ୍ୟଚନ୍ନାମ ଗୃହ୍ଣାତ ତଦାସୌ ମାମେବାୟମାହ୍ୱୟତୀତ ମତ୍ୱା ତତପାର୍ଶ୍ୱମାଗଚ୍ଛତ ତଥାହମପି ତସ୍ୟ ସନ୍ନିହିତୋ ଭବେୟମ୍, ଯଥାଜାମିଲଧ୍ୱଜବନ୍ଧୁପ୍ରମୁଖାଣାଂ କଥଞ୍ଚନ୍ନାମୋ-ଚାରଣ ମାତ୍ରେଣ ତୁଷଲୋଽସ୍ମି ତଥୈବ ତସ୍ୟାପି ପ୍ରସନ୍ନୋ ଭବେୟ ମିତଭାବଃ ।

୭୧ । **ଅନ୍ୱୟଦୀପିକା**—ଶ୍ରଦ୍ଧାବାନ୍ ( ଶ୍ରଦ୍ଧାଯୁକ୍ତ ) ଅନସୂୟଃ ଚ ( ଏବଂ ଅସୂୟାଶୂନ୍ୟ ) ଯଃ ନର ଶୃଣୁୟାତ୍ ଅପି (ଯେଉଁ ଲୋକ କେବଳ ଶ୍ରବଣ କରେ) ସଃ ଅପି (ସେ ମଧ୍ୟ) ମୁକ୍ତଃ (ପାପମୁକ୍ତ ହୋଇ) ପୁଣ୍ୟକର୍ମଣାଂ (ପୁଣ୍ୟାତ୍ମାମାନଙ୍କର) ଶୁଭାନ୍ ଲୋକାନ୍ (ଶୁଭ ଲୋକ) ପ୍ରାପ୍ନୁୟାତ୍ (ପ୍ରାପ୍ତ ହୁଅନ୍ତି) ।

**ଅନୁବାଦ**—ଯେଉଁ ବ୍ୟକ୍ତି ଶ୍ରଦ୍ଧାବାନ୍ ଏବଂ ଅସୂୟାଶୂନ୍ୟ ହୋଇ ଏହି ଗୀତାଶାସ୍ତ୍ର କେବଳ ମାତ୍ର ଶ୍ରବଣ କରନ୍ତି ସେ ମଧ୍ୟ ପାପମୁକ୍ତ ହୋଇ ପୁଣ୍ୟାତ୍ମାମାନଙ୍କର ଭୋଗ୍ୟ ପୁଣ୍ୟଲୋକ ସକଳ ପ୍ରାପ୍ତ ହୁଅନ୍ତି ।

**ସୁବୋଧିନୀ ଟୀକା**—ଅନ୍ୟସ୍ୟ ଜପତୋ ଯୋଽନ୍ୟଃ କଶ୍ଚିଚ୍ଛୃଣୋତି ତସ୍ୟାପି ଫଳମାହ—ଶ୍ରଦ୍ଧାବାନିତ, ଯୋ ନରଃ ଶ୍ରଦ୍ଧାଯୁକ୍ତଃ କେବଳଂ ଶୃଣୁୟାଦପି, ଶ୍ରଦ୍ଧାବାନପି ଯଃ କଶ୍ଚିତ୍ କୁମର୍ଥମଯୁମୂଢୈର୍ଜପତ ଅବଦ୍ଧଂ ବା ଜପଗୀତ ଦୋଷଦୃଷ୍ଟିଂ କରୋତ ତଦ୍‌ବ୍ୟାବୃତ୍ତ୍ୟର୍ଥମାହ— ଅନସୂୟଶ୍ଚ, ଅସୂୟାରହିତୋ ଯଃ ଶୃଣୁୟାତ୍ ସୋଽପି ସର୍ବୈଃ ପାପୈର୍ମୁକ୍ତଃ ସନଶ୍ୱମେଧାଦ-ପୁଣ୍ୟକୃତାଂ ଲୋକାନାପ୍ନୁୟାତ୍ ।

୭୨ । **ଅନ୍ୱୟଦୀପିକା**—[ହେ] ପାର୍ଥ ! ତ୍ୱୟା ( ତୁମ୍ଭ ଦ୍ୱାରା ) ଏକାଗ୍ରେଣ ଚେତସା ( ଏକାଗ୍ର ଚିତ୍ତରେ ) ଏତତ୍ ଶ୍ରୁତଂ କଚ୍ଚିତ୍ ? ( ଏହା ଶୁଣା-ହୋଇ ଅଛି ତ ? ); [ହେ] ଧନଞ୍ଜୟ ! ତେ ( ତୁମ୍ଭର ) ଅଜ୍ଞାନ-ସମ୍ମୋହଃ (ଅଜ୍ଞାନଜନିତ ମୋହ) ପ୍ରନଷ୍ଟଃ କଚ୍ଚିତ୍ ( ବିନଷ୍ଟ ହେଲା ତ ? )

**ଅନୁବାଦ**—ହେ ପାର୍ଥ, ତୁମେ ଏକାଗ୍ରଚିତ୍ତରେ ଏହା ଶୁଣିଲ କି ? ହେ ଧନଞ୍ଜୟ ! ତୁମ୍ଭର ଅଜ୍ଞାନଜନିତ ମୋହ ନଷ୍ଟ ହେଲା ତ ?

ଅର୍ଜୁନ ଉବାଚ

ନଷ୍ଟୋ ମୋହଃ ସ୍ମୃତିର୍ଲବ୍ଧା ତ୍ୱତ୍ପ୍ରସାଦାନ୍ମୟାଚ୍ୟୁତ ।
ସ୍ଥିତୋଽସ୍ମି ଗତସନ୍ଦେହଃ କରିଷ୍ୟେ ବଚନଂ ତବ । ୭୩ ।

ସଞ୍ଜୟ ଉବାଚ

ଇତ୍ୟହଂ ବାସୁଦେବସ୍ୟ ପାର୍ଥସ୍ୟ ଚ ମହାତ୍ମନଃ ।
ସଂବାଦମିମମଶ୍ରୌଷମଦ୍ଭୁତଂ ରୋମହର୍ଷଣମ୍ । ୭୪ ।

**ସୁବୋଧିନୀ ଟୀକା**—ସମ୍ୟଗ୍ ବୋଧାନୁତ୍ପତ୍ତୌ ପୁନରୁପଦେକ୍ଷ୍ୟାମୀତ୍ୟାଶୟେନାହ କଚ୍ଚିଦେତ । କଚ୍ଚିଦେତ ପ୍ରଶ୍ନାର୍ଥେ । ଅଜ୍ଞାନସମ୍ମୋହସ୍ତତ୍ତ୍ୱାଜ୍ଞାନକୃତୋ ବିପର୍ଯ୍ୟୟଃ । ସ୍ପଷ୍ଟମନ୍ୟତ୍ । ॰

**୭୩ । ଅନ୍ୱୟଦୀପିକା**—ଅର୍ଜୁନଃ ଉବାଚ ( ଅର୍ଜୁନ କହିଲେ ) [ହେ] ଅଚ୍ୟୁତ, ତ୍ୱତ୍ ପ୍ରସାଦାତ୍ (ତୁମ୍ଭ ଅନୁଗ୍ରହରୁ) ମୋହଃ ନଷ୍ଟଃ (ମୋହ ଦୂର ହୋଇଗଲା), ମୟା (ମୋର ) ସ୍ମୃତିଃ ଲବ୍ଧା (କର୍ତ୍ତବ୍ୟ ଜ୍ଞାନମୂଳକ ସ୍ମୃତି ଲାଭ ହେଲା ) ! ଗତସନ୍ଦେହଃ ( ସନ୍ଦେହଶୂନ୍ୟ ହୋଇ ) ସ୍ଥିତଃ ଅସ୍ମି (ସ୍ଥିର ହୋଇଅଛି) । ତବ ବଚନଂ କରିଷ୍ୟେ ( ତୁମ୍ଭ କଥା ଅନୁସାରେ କାର୍ଯ୍ୟ କରିବି ) ।

**ଅନୁବାଦ**—ଅର୍ଜୁନ କହିଲେ, ହେ ଅଚ୍ୟୁତ, ତୁମ୍ଭ ଅନୁଗ୍ରହରୁ ମୋର ମୋହ ଦୂର ହୋଇଅଛି । କର୍ତ୍ତବ୍ୟଜ୍ଞାନମୂଳକ ସ୍ମୃତି ଲାଭ କରିଅଛି । ମୁଁ ସନ୍ଦେହଶୂନ୍ୟ ହୋଇ ସ୍ଥିର ହୋଇଅଛି । ଏବେ ତୁମ୍ଭ କଥା ଅନୁସାରେ ଯୁଦ୍ଧ କରିବି ।

**ସୁବୋଧିନୀ ଟୀକା**—କୃତାର୍ଥଃ ସନ୍ନର୍ଜୁନ ଉବାଚ ନଷ୍ଟ ଇତି । ଅସ୍ମିନ୍ ବିଷୟେ ମୋହୋ ନଷ୍ଟଃ । ଯତୋଽୟମହମସ୍ମୀତି ସ୍ୱରୂପାନୁସନ୍ଧାନରୂପା ସ୍ମୃତିସ୍ତ୍ୱତ୍ପ୍ରସାଦାନ୍ମୟା ଲବ୍ଧା । ଅତଃ ସ୍ଥିତୋଽସ୍ମି ଯୁଦ୍ଧାୟୋଦ୍ୟତୋଽସ୍ମି । ଗତୋ ଧର୍ମବିଷୟଃ ସନ୍ଦେହୋ ଯସ୍ୟ ସୋଽହଂ ତବାଜ୍ଞାଂ କରିଷ୍ୟ ଇତି ।

**୭୪ । ଅନ୍ୱୟଦୀପିକା**—ସଞ୍ଜୟଃ ଉବାଚ (ସଞ୍ଜୟ କହିଲେ), ଅହମ୍ ଇତି (ମୁଁ ଏହିପରି) ବାସୁଦେବସ୍ୟ (ବାସୁଦେବଙ୍କର) ମହାତ୍ମନଃ ପାର୍ଥସ୍ୟ ଚ (ମହାତ୍ମା ଅର୍ଜୁନଙ୍କର), ଇମଂ (ଏହି) ରୋମହର୍ଷଣମ୍ (ରୋମାଞ୍ଚକର) ଅଦ୍ଭୁତଂ (ଆଶ୍ଚର୍ଯ୍ୟଜନକ) ସଂବାଦମ୍ (କଥାବାର୍ତ୍ତା) ଅଶ୍ରୌଷମ୍ (ଶୁଣିଅଛି) ।

**ଅନୁବାଦ**—ସଞ୍ଜୟ କହିଲେ, ବାସୁଦେବ ଓ ମହାତ୍ମା ଅର୍ଜୁନଙ୍କର ଏହି ରୋମାଞ୍ଚକର ଆଶ୍ଚର୍ଯ୍ୟଜନକ କଥୋପକଥନ ମୁଁ ଶୁଣିଲି ।

ବ୍ୟାସପ୍ରସାଦାଚ୍ଛ୍ରୁତବାନିମଂ ଗୁହ୍ୟମହଂ ପରମ୍ ।
ଯୋଗଂ ଯୋଗେଶ୍ୱରାତ୍ କୃଷ୍ଣାତ୍ ସାକ୍ଷାତ୍ କଥୟତଃ ସ୍ୱୟମ୍ । ୭୫ ।

ରାଜନ୍ ସଂସ୍ମୃତ୍ୟ ସଂସ୍ମୃତ୍ୟ ସଂବାଦମିମମଦ୍‌ଭୁତମ୍ ।
କେଶବାର୍ଜୁନୟୋଃ ପୁଣ୍ୟଂ ହୃଷ୍ୟାମି ଚ ମୁହୁର୍ମୁହୁଃ । ୭୬ ।

**ସୁବୋଧିନୀ ଟୀକା**—ତଦେବଂ ଧୃତରାଷ୍ଟ୍ରଂ ପ୍ରତି ଶ୍ରୀକୃଷ୍ଣାର୍ଜୁନସଂବାଦଂ କଥୟିତ୍ୱା ପ୍ରସ୍ତୁତାଂ କଥାମନୁସନ୍ଦଧାନଃ ସଞ୍ଜୟ ଉବାଚ । ଇତୀତି । ରୋମହର୍ଷଣଂ ରୋମାଞ୍ଚକରଂ ସଂବାଦମଶ୍ରୌଷଂ ଶ୍ରୁତବାନହମ୍ । ସ୍ପଷ୍ଟମନ୍ୟତ୍ ।

**ବିବୃତି**—୭୩ମ ଶ୍ଳୋକରେ ଶ୍ରୀକୃଷ୍ଣ ଅର୍ଜୁନଙ୍କ ସଂବାଦ ଶେଷ ହେଲା । ପ୍ରଥମ ଅଧ୍ୟାୟ ପ୍ରଥମରୁ ଧୃତରାଷ୍ଟ୍ରଙ୍କ ପ୍ରଶ୍ନରେ ସଞ୍ଜୟ ଯୁଦ୍ଧର ଯେଉଁ ବର୍ଣ୍ଣନା କହିବାକୁ ଆରମ୍ଭ କରିଥିଲେ ଶେଷରେ ସଞ୍ଜୟ ତାହା କହି ବିବରଣ ସମାପ୍ତ କରିବେ ।

**୭୫ । ଅନ୍ୱୟଦୀପିକା**— ବ୍ୟାସପ୍ରସାଦାତ୍ (ବ୍ୟାସଦେବଙ୍କ ଦୟାରୁ) ଅହଂ (ମୁଁ) ଏତତ୍ ପରଂ ଗୁହ୍ୟଂ (ଏହି ପରମ ଗୋପନୀୟ) ଯୋଗଂ (ଯୋଗଶାସ୍ତ୍ର) ସାକ୍ଷାତ୍ କଥୟତଃ (ପ୍ରତ୍ୟକ୍ଷଭାବରେ କହୁଥିବା) ସ୍ୱୟଂ ଯୋଗେଶ୍ୱରାତ୍ କୃଷ୍ଣାତ୍ (ସ୍ୱୟଂ ଯୋଗେଶ୍ୱର ଶ୍ରୀକୃଷ୍ଣଙ୍କ ମୁହଁରୁ) ଶ୍ରୁତବାନ୍ (ଶୁଣିଲି) ।

**ଅନୁବାଦ**—ବ୍ୟାସଦେବଙ୍କ ଅନୁଗ୍ରହରେ ପ୍ରତ୍ୟକ୍ଷଭାବରେ ଉପଦେଶ ଦେଉଥିବା ସ୍ୱୟଂ ଯୋଗେଶ୍ୱର ଶ୍ରୀକୃଷ୍ଣଙ୍କ ମୁହଁରୁ ମୁଁ ଏହି ଯୋଗଶାସ୍ତ୍ର ଶୁଣିଅଛି ।

**ସୁବୋଧିନୀ ଟୀକା**—ଅସ୍ମନସ୍ତସ୍ୟ ଶ୍ରବଣେ ସମ୍ଭାବନାମାହ—ବ୍ୟାସପ୍ରସାଦାଦିତି । ଭଗବତାବ୍ୟାସେନ ଦିବ୍ୟଂ ଚକ୍ଷୁଃ ଶ୍ରୋତ୍ରାଦି ମହ୍ୟଂ ଦତ୍ତମ୍ । ତତୋ ବ୍ୟାସସ୍ୟ ପ୍ରସାଦାଦେତଦହଂ ଶ୍ରୁତବାନସ୍ମି । କିଂ ତଦତ୍ୟପେକ୍ଷାୟାମାହ—ପରଂ ଯୋଗଂ । ପରତ୍ୱମାବିଷ୍କରୋତି ଯୋଗେଶ୍ୱରାତ୍ ଶ୍ରୀକୃଷ୍ଣାତ୍ ସ୍ୱୟମେବ ସାକ୍ଷାତ୍ କଥୟତଃ ଶ୍ରୁତବାନତି ।

**୭୬ । ଅନ୍ୱୟଦୀପିକା**—ରାଜନ୍ ( ହେ ମହାରାଜ ) କେଶବାର୍ଜୁନୟୋଃ (କେଶବ ଓ ଅର୍ଜୁନଙ୍କର ) ଇମଂ ( ଏହି ) ପୁଣ୍ୟଂ ( ପୁଣ୍ୟଜନକ ) ଅଦ୍‌ଭୁତଂ ସଂବାଦଂ ( ଅଦ୍‌ଭୁତ ସଂବାଦ ) ସଂସ୍ମୃତ୍ୟ ସଂସ୍ମୃତ୍ୟ ( ବାରଂବାର ସ୍ମରଣ କରି ) ମୁହୁର୍ମୁହୁଃ ହୃଷ୍ୟାମି ( ପ୍ରତିକ୍ଷଣରେ ଆନନ୍ଦିତ ହେଉଅଛି ) ।

**ଅନୁବାଦ**—ହେ ମହାରାଜ ! ଶ୍ରୀକୃଷ୍ଣ ଅର୍ଜୁନଙ୍କର ଏହି ପୁଣ୍ୟଜନକ ଅଦ୍‌ଭୁତ ସଂବାଦ ପୁନଃପୁନଃ ସ୍ମରଣ କରି ମୋର ରୋମାଞ୍ଚ ଜାତ ହେଉଅଛି ।

ତଚ୍ଚ ସଂସ୍ମୃତ୍ୟ ସଂସ୍ମୃତ୍ୟ ରୂପମତ୍ୟଦ୍ଭୁତଂ ହରେଃ ।
ବିସ୍ମୟୋ ମେ ମହାନ୍ ରାଜନ୍ ହୃଷ୍ୟାମି ଚ ପୁନଃପୁନଃ । ୭୭ ।

ଯତ୍ର ଯୋଗେଶ୍ୱରଃ କୃଷ୍ଣୋ ଯତ୍ର ପାର୍ଥୋ ଧନୁର୍ଦ୍ଧରଃ ।
ତତ୍ର ଶ୍ରୀର୍ବିଜୟୋଭୂତିର୍ଧ୍ରୁବା ନୀତିର୍ମତିର୍ମମ । ୭୮ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି
ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ
ଶ୍ରୀକୃଷ୍ଣାର୍ଜ୍ଜୁନ ସଂବାଦେ ମୋକ୍ଷଯୋଗୋ ନାମା-
ଷ୍ଟାଦଶୋଽଧ୍ୟାୟଃ ।

**ସୁବୋଧିନୀ ଟୀକା**—କିଞ୍ଚ—ରାଜନ୍ନିତି—ହୃଷ୍ୟାମି ରୋମାଞ୍ଚିତୋ ଭବାମି । ହର୍ଷଂ ପ୍ରାପ୍ନୋମୀତିବା, ସ୍ପଷ୍ଟମନ୍ୟତ୍ ।

୭୭ । **ଅନ୍ୱୟଦୀପିକା**—ରାଜନ୍ ( ହେ ରାଜନ୍ ) ହରେଃ ( ହରିଙ୍କର ) ତତ୍ ( ସେହି ) ଅତ୍ୟଦ୍‌ଭୁତଂ ( ଅତି ଅଦ୍ଭୁତ ) ରୂପଂ ( ରୂପ ) ସଂସ୍ମୃତ୍ୟ ସଂସ୍ମୃତ୍ୟ ଚ ( ପୁନଃ ପୁନଃ ସ୍ମରଣକରି ) ମେ ( ମୋର ) ମହାନ୍ ବିସ୍ମୟଃ ( ଅତ୍ୟନ୍ତ ବିସ୍ମୟ ଜାତ ହେଉଅଛି ) । ପୁନଃପୁନଃ ( ବାରଂବାର ) ହୃଷ୍ୟାମି ( ରୋମାଞ୍ଚିତ ହେଉଅଛି ) ।

**ଅନୁବାଦ**—ହେ ରାଜନ୍, ହରିଙ୍କର ସେହି ଅଦ୍‌ଭୁତ ବିଶ୍ୱରୂପ ବାରଂବାର ମୋ ମନରେ ପଡ଼ିବାରୁ ମୋର ବିସ୍ମୟ ଜାତ ହେଉଅଛି ଏବଂ ପୁନଃ ପୁନଃ ରୋମାଞ୍ଚ ଜାତ ହେଉଅଛି ।

**ସୁବୋଧିନୀ ଟୀକା**—କିଞ୍ଚ ତଚ୍ଚେତି । ତଦତି ବିଶ୍ୱରୂପଂ ନିର୍ଦ୍ଦିଶତି, ସ୍ପଷ୍ଟମନ୍ୟତ୍ ।

୭୮ । **ଅନ୍ୱୟଦୀପିକା**—ଯତ୍ର ( ଯେଉଁ ପକ୍ଷରେ ) ଯୋଗେଶ୍ୱରଃ କୃଷ୍ଣଃ ( ଯୋଗେଶ୍ୱର କୃଷ୍ଣ ଅଛନ୍ତି ), ଯତ୍ର ( ଯେଉଁ ପକ୍ଷରେ ) ଧନୁର୍ଦ୍ଧରଃ ପାର୍ଥଃ ( ଧନୁର୍ଦ୍ଧର ଅର୍ଜ୍ଜୁନ ଅଛନ୍ତି ) ତତ୍ର ଶ୍ରୀଃ ( ସେହି ସ୍ଥାନରେ ହିଁ ରାଜଶ୍ରୀ ), ବିଜୟଃ (ବିଜୟ), ଭୂତିଃ (ଅଭ୍ୟୁଦୟ), ଧ୍ରୁବା ନୀତିଃ (ଅଖଣ୍ଡିତ ରାଜନୀତି); ଇତି ମେ ମତିଃ (ଏହା ମୋର ମତ) ।

**ଅନୁବାଦ**—ଯେଉଁ ପକ୍ଷରେ ଯୋଗେଶ୍ୱର କୃଷ୍ଣ ରହିଅଛନ୍ତି ଏବଂ ଧନୁର୍ଦ୍ଧର ଅର୍ଜ୍ଜୁନ ରହିଅଛନ୍ତି, ସେହି ପକ୍ଷରେ ରାଜଲକ୍ଷ୍ମୀ, ବିଜୟ, ଐଶ୍ୱର୍ଯ୍ୟବୃଦ୍ଧି, ଅଖଣ୍ଡିତ ରାଜନୀତି—ଏହା ମୋର ମତ ।

**ସୁବୋଧିନୀ ଟୀକା**—ଅତସ୍ତ୍ୱଂ ପୁତ୍ରାଣାଂ ରାଜ୍ୟାଦଶାଂ ପରି-ତ୍ୟଜେତ୍ୟାଶୟେନାହ । ଯତ୍ରେତି—ଯତ୍ର ଯେଷାଂ ପକ୍ଷେ ଯୋଗାନାମୀଶ୍ୱରଃ

କୃଷ୍ଣୋ ବର୍ତ୍ତତେ । ଯତ୍ର ଚ ପାର୍ଥୋ ଗାଣ୍ଡୀବଧନୁର୍ଦ୍ଧରଃ । ତତ୍ରୈବ ଶ୍ରୀ ରାଜଲକ୍ଷ୍ମୀଃ । ତତ୍ରୈବ ଚ ବିଜୟଃ । ତତ୍ରୈବ ଚ ଭୂତିରୁତ୍ତରୋତ୍ତରାଭିବୃଦ୍ଧିଶ୍ଚ । ନୀତିର୍ନୟୋଽପି ତତ୍ରୈବ । ଧ୍ରୁବା ନିଶ୍ଚିତେତି ସର୍ବତ୍ର ସମ୍ବଧ୍ୟତେ । ଇତି ମମ ମତିର୍ନିଶ୍ଚୟଃ । ଅତ ଇଦାନୀମପି ତାବତ୍ ସପୁତ୍ରସ୍ତ୍ୱଂ ଶ୍ରୀକୃଷ୍ଣଂ ଶରଣମୁପେତ୍ୟ ପାଣ୍ଡବାନ୍ ପ୍ରସାଦ୍ୟ ସର୍ବସ୍ୱଂ ତେଭ୍ୟୋ ନିବେଦ୍ୟ ପୁତ୍ରପ୍ରାଣରକ୍ଷାଂ କୁର୍ବିତି ଭାବଃ ।

ଭଗବଦ୍ ଭକ୍ତିଯୁକ୍ତସ୍ୟ ତତ୍ପ୍ରସାଦାତ୍ମବୋଧତଃ
ସୁଖଂ ବନ୍ଧବିମୁକ୍ତିଃ ସ୍ୟାଦିତି ଗୀତାର୍ଥସଂଗ୍ରହଃ ।

ଇତି ଶ୍ରୀ ଶ୍ରୀଧର ସ୍ୱାମିକୃତାୟାଂ ଭଗବଦ୍‌ଗୀତାଟୀକାୟାଂ ସୁବୋଧିନ୍ୟାଂ
ପରମାର୍ଥନିର୍ଣ୍ଣୟୋ ନାମାଷ୍ଟାଦଶୋଽଧ୍ୟାୟଃ ।

ତଥାହ ପୁରୁଷଃ ସ ପରଃ ପାର୍ଥ ଭକ୍ତ୍ୟା ଲଭ୍ୟସ୍ତ୍ୱନନ୍ୟୟା । ଭକ୍ତ୍ୟା ତ୍ୱନନ୍ୟୟା ଶକ୍ୟଃ ଅହମେବଂବିଧୋଽର୍ଜ୍ଜୁନ । ଇତ୍ୟାଦୌ ଭଗବଦ୍‌ଭକ୍ତେର୍ମୈକ୍ଷଂ ପ୍ରତିସାଧକତ୍ୱମତ୍ୱଶ୍ରବଣାତ୍ ତଦେକାନ୍ତଭକ୍ତେରେବ ତତ୍ ପ୍ରସାଦୋତ୍ଥ-ଜ୍ଞାନାବାନ୍ତର ବ୍ୟାପାର ମାତ୍ରଯୁକ୍ତା ମୋକ୍ଷହେତୁତ୍ୱମିତି ସ୍ଫୁଟଂ ପ୍ରତୀୟତେ । ଜ୍ଞାନସ୍ୟ ଚ ଭକ୍ତ୍ୟବାନ୍ତରବ୍ୟାପାରତ୍ୱମେବଯୁକ୍ତମ୍ । ତେଷାଂ ସତତଯୁକ୍ତାନାଂ ଭଜତାଂ ପ୍ରୀତିପୂର୍ବକମ୍ । ଦଦାମି ବୁଦ୍ଧିଯୋଗଂ ତଂ ଯେନମାମୁପଯାନ୍ତିତେ । ମଦ୍‌ଭକ୍ତ ଏତଦ୍‌ବିଜ୍ଞାୟ ମଦ୍‌ଭାବାୟୋପପଦ୍ୟତେ । ଇତ୍ୟାଦି ବଚନାତ୍ ।

ନ ଚ ଜ୍ଞାନମେବ ଭକ୍ତିରିତ୍ୟୁକ୍ତମ୍ । ସମଃ ସର୍ବେଷୁଭୂତେଷୁ ମଦ୍‌ଭକ୍ତିଂ ଲଭତେ ପରାମ୍ । ଭକ୍ତ୍ୟାମାମଭିଜାନାତି ଯାବାନ୍ ଯଶ୍ଚାସ୍ମି ତତ୍ତ୍ୱତଃ, ଇତ୍ୟାଦୌ ଭେଦେନନିର୍ଦ୍ଦେଶାତ୍ । ନ ଚୈବଂ ସତି ତମେବ ବିଦିତ୍ୱାତିମୃତ୍ୟୁମେତି, ନାନ୍ୟଃପନ୍ଥା ବିଦ୍ୟତେଽୟନାୟ । ଇତି ଶ୍ରୁତିବିରୋଧଃ ଶଙ୍କନୀୟଃ । ଭକ୍ତ୍ୟବାନ୍ତର ବ୍ୟାପାରତ୍ୱାଜ୍ଜ୍ଞାନସ୍ୟ, ନ ହି କାଷ୍ଠୈଃ ପଚତୀତ୍ୟୁକ୍ତେ ଜ୍ୱାଳାନାମସାଧାନତ୍ୱ ମୁକ୍ତଂ ଭବତି ।

କିଞ୍ଚ ଯସ୍ୟ ଦେବେ ପରାଭକ୍ତିର୍ଯଥାଦେବେ ତଥାଗୁରୌ । ତସ୍ୟୈତେ-କଥିତା ହ୍ୟର୍ଥାଃ ପ୍ରକାଶନ୍ତେ ମହାତ୍ମନଃ । ଦେହାନ୍ତେ ଦେବଃ ପରଂବ୍ରହ୍ମତାରକଂ ବ୍ୟାଚଷ୍ଟେ । ଯମେବୈଷ ବୃଣୁତେ ତେନ ଲଭ୍ୟଃ । ଇତ୍ୟାଦି ଶ୍ରୁତିସ୍ମୃତି-ପୁରାଣବଚନାନ୍ୟେବଂ ସତି ସମଞ୍ଜସାନି ଭବନ୍ତି । ତସ୍ମାଦ୍ ଭଗବଦ୍‌ଭକ୍ତିରେବ ମୋକ୍ଷହେତୁରିତି ସିଦ୍ଧମ୍ ।

ତେନୈବ ଦତ୍ତୟାମତ୍ୟା ତଦ୍‌ଗୀତା ବିବୃତିଃ କୃତା
ସ ଏବ ପରମାନନ୍ଦ ସ୍ତୟା ପ୍ରୀଣାତୁ ମାଧବଃ ।

ପରମାନନ୍ଦଶ୍ରୀପାଦରଜଃ ଶ୍ରୀଧାରଣାଧୁନା
ଶ୍ରୀଧରସ୍ୱାମିଯତିନା କୃତା ଗୀତା ସୁବୋଧିନୀ ।
ସ୍ୱପ୍ରାଗ୍‌ଲଭ୍ୟ ବଲାଦ୍‌ବିଲୋଡ଼୍ୟ ଭଗବଦ୍‌ଗୀତାଂ ତଦନ୍ତର୍ଗତଂ
ତତ୍ତ୍ୱଂ ପ୍ରେପ୍ସୁରୁପୈତି,କଂ ଗୁରୁକୃପାପୀୟୂଷଦୃଷ୍ଟିଂ ବିନା ।
ଅସ୍ତୁ ସ୍ୱାଞ୍ଜଲିନା ବିଗସ୍ୟ ଜଲଧେର୍ଯଦ୍ୱତ୍ ସୁଧର୍ମଣୀ—
ନାବର୍ତ୍ତିଷ୍ଣୁ ନ କଂ ନିମଜ୍ଜତି ଜନଃ ସତ୍‌କର୍ଣ୍ଣଧାରଂ ବିନା ।

ଇତିଶ୍ରୀ ଶ୍ରୀଧରସ୍ୱାମି ଯତିକୃତା ଭଗବଦ୍‌ଗୀତା ସୁବୋଧିନୀ ସମାପ୍ତା ।

**ବିବୃତି**—ଗୀତାରେ ସନ୍ନ୍ୟାସ ଧର୍ମ ବିବୃତ ହୋଇଅଛି, ଅଥବା ଗୀତା ସଂସାର ଛାଡ଼ି ସନ୍ନ୍ୟାସ ଧର୍ମ ଗ୍ରହଣ କରିବାକୁ ଉପଦେଶ ଦେଇଅଛନ୍ତି—ଯେଉଁମାନେ ଏହା କହନ୍ତି ପୂର୍ବବର୍ତ୍ତୀ ୭୩ମ ଶ୍ଲୋକରୁ ସେମାନଙ୍କର ସେ ଭ୍ରମ ଦୂର ହେବ । ଶ୍ରୀକୃଷ୍ଣଙ୍କ ଉପଦେଶ ଶୁଣି ଅର୍ଜ୍ଜୁନ ଯୁଦ୍ଧ କରିବେ ବୋଲି କହିବା ଦ୍ୱାରା ସ୍ପଷ୍ଟ ଜଣାଯାଏ ଯେ ଗୀତାର ଧର୍ମ ପ୍ରବୃତ୍ତିମୂଳକ ଓ ଗୃହସ୍ଥାଶ୍ରମୀଙ୍କ ପାଇଁ ଉଦ୍ଦିଷ୍ଟ । ପ୍ରସଙ୍ଗକ୍ରମେ ଏଥିରେ ସନ୍ନ୍ୟାସ ଧର୍ମର ତତ୍ତ୍ୱ ବ୍ୟାଖ୍ୟା କରାଯାଇଛି ସତ୍ୟ ମାତ୍ର ଏହା ଯେ ନିଷ୍କାମକର୍ମଯୋଗ ପ୍ରତିପାଦକ ଶାସ୍ତ୍ର ଏଥିରେ ସନ୍ଦେହ ନାହିଁ । ଦ୍ୱିତୀୟ ଅଧ୍ୟାୟର ସପ୍ତମ ଶ୍ଲୋକରେ ଅର୍ଜ୍ଜୁନ କହିଥିଲେ 'ପୃଚ୍ଛାମି ତ୍ୱାଂ ଧର୍ମସମ୍ମୂଢ଼ଚେତାଃ' ଅର୍ଥାତ୍ ଅର୍ଜ୍ଜୁନ ନିଜର ଧର୍ମ ବା କର୍ତ୍ତବ୍ୟ କର୍ମ ବୁଝି ନ ପାରି ପ୍ରକୃତ ଧର୍ମତତ୍ତ୍ୱ ବୁଝିବା ପାଇଁ ଭଗବାନଙ୍କର ଶରଣାପନ୍ନ ହୋଇଥିଲେ । ଭଗବାନ୍ ପ୍ରକୃତ ଧର୍ମ ତାଙ୍କ ପକ୍ଷରେ କଅଣ—ଏହା ବୁଝାଇ ଦେବାରୁ ସେ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଲେ । ସୁତରାଂ ଗୀତା ପ୍ରବୃତ୍ତିମୂଳକ ଧର୍ମଗ୍ରନ୍ଥ—ଏହା ସ୍ପଷ୍ଟ ଜଣାଯାଏ । ତେଣୁ ୭୮ମ ଶ୍ଲୋକରେ ପ୍ରଯୁକ୍ତ 'ଯୋଗ' ଶବ୍ଦ ଦ୍ୱାରା କର୍ମଯୋଗ ହିଁ ବୁଝାଯାଏ । ତେଣୁ ଗୀତାରେ କର୍ମଯୋଗ ହିଁ ପ୍ରତିପାଦନ ହୋଇଅଛି ।

୭୮ମ ଶ୍ଲୋକରେ ସଞ୍ଜୟଙ୍କ ଉକ୍ତିରୁ ଜଣାଯାଏ ଯେ ଯୁଦ୍ଧରେ କୌରବ ପକ୍ଷର ଜୟର ଆଶା ନାହିଁ; ତେଣୁ ସନ୍ଧି କରିବାକୁ ପ୍ରସ୍ତାବ କରିବା ଉଚିତ । ଯୁଦ୍ଧରେ ଜୟାଶା ନ ଥିବାର କାରଣ ରୂପେ ସେ କୃଷ୍ଣଙ୍କର ବିଶେଷଣରୂପେ 'ଯୋଗେଶ୍ୱର' ପଦ ଓ ଅର୍ଜ୍ଜୁନଙ୍କ ବିଶେଷଣରୂପେ 'ଧନୁର୍ଦ୍ଧର' ପଦ ପ୍ରୟୋଗ କରିଅଛନ୍ତି, ଏ ଦୁଇଟି ସାର୍ଥକ ବିଶେଷଣ । 'ଯୋଗ' ଶବ୍ଦର ଅର୍ଥ କର୍ମ କରିବାର କୌଶଳ—ଏହା ୨ୟ ଅଧ୍ୟାୟର ୫୦ଶ ଶ୍ଲୋକରେ ଭଗବାନ୍ ନିଜେ କହିଅଛନ୍ତି । ତେଣୁ ଯୋଗେଶ୍ୱର ଶବ୍ଦର ଅର୍ଥ କୌଶଳଶ୍ରେଷ୍ଠ ବା ଯୁଦ୍ଧନୀତିରେ ସୁନିପୁଣ ।

'ଧନୁର୍ଦ୍ଧର' ଶବ୍ଦର ଅର୍ଥ ଅସାଧାରଣ ଶକ୍ତିଶାଳୀ । ଯୁଦ୍ଧରେ ଜୟ କରିବାକୁ ହେଲେ ନୀତି ଓ ଶକ୍ତି ଉଭୟ ଆବଶ୍ୟକ । କେବଳ ବଳରେ ଯୁଦ୍ଧ ଜୟ ହୁଏ ନାହିଁ, କେବଳ ନୀତିରେ ମଧ୍ୟ ତାହା ହୁଏ ନାହିଁ । ଯେତେବେଳେ ପାଣ୍ଡବ ପକ୍ଷରେ ନୀତି ଓ ଶକ୍ତି ଉଭୟ ଅଛି, ସେତେବେଳେ ଜୟଲକ୍ଷ୍ମୀ ଯେ ସେ ପକ୍ଷକୁ ଆଶ୍ରୟ କରିବେ ଏଥିରେ ଆଉ ସନ୍ଦେହ କଅଣ ?

---

## ଅଷ୍ଟାଦଶ ଅଧ୍ୟାୟର ସାରସଙ୍କଳନ

ଏ ଅଧ୍ୟାୟର ନାମ ମୋକ୍ଷଯୋଗ । ସମଗ୍ର ଗୀତା ଗ୍ରନ୍ଥରେ ମୋକ୍ଷଲାଭର ନାନା ଉପାୟ ବର୍ଣ୍ଣିତ ହୋଇଥିଲେ ହେଁ ଏହି ଉପସଂହାରମୂଳକ ଅଧ୍ୟାୟରେ ଭଗବାନ୍ ତାଙ୍କର ନିଜ ମତ ବ୍ୟକ୍ତ କରିଅଛନ୍ତି । ତେଣୁ ଅଧ୍ୟାୟର ଶେଷଭାଗରେ ସେ ବିଷୟର ଆଲୋଚନା ଅଛି । ଅଧ୍ୟାୟ ଆରମ୍ଭରେ ଅର୍ଜ୍ଜୁନଙ୍କ ପ୍ରଶ୍ନର ଉତ୍ତରରେ ଭଗବାନ୍ କହିଲେ—'ସନ୍ନ୍ୟାସ'ର ଅର୍ଥ ସକାମକର୍ମର ତ୍ୟାଗ ଓ 'ତ୍ୟାଗ'ର ଅର୍ଥ କର୍ମଫଳର ତ୍ୟାଗ । ଏଥିରୁ ବୁଝାଯାଏ ଯେ, ଯେ ଫଳତ୍ୟାଗୀ ସେ ପ୍ରକୃତ ସନ୍ନ୍ୟାସୀ । ବେଦାନ୍ତ, ଉପନିଷଦ୍ ପ୍ରଭୃତି ଜ୍ଞାନପ୍ରଧାନ ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ହୋଇଅଛି ଯେ କର୍ମ କଲେ ମୁକ୍ତି ମିଳେ ନାହିଁ । କର୍ମ ହିଁ ବନ୍ଧନର କାରଣ । ସୁତରାଂ କର୍ମ ସମ୍ପୂର୍ଣ୍ଣରୂପେ ତ୍ୟାଗକରି ନିବୃତ୍ତିମାର୍ଗ ଅବଲମ୍ବନ କରିବା ହିଁ ମୋକ୍ଷର ଏକମାତ୍ର ସାଧନ । କର୍ମ ତ୍ୟାଗକଲେ ସୃଷ୍ଟିରକ୍ଷା ହେବ ନାହିଁ, ତେଣୁ ଗୀତାର ଉପଦେଶ—କର୍ମ ତ୍ୟାଗ ନ କରି କର୍ମ କରିବାକୁ ହେବ, କିନ୍ତୁ କର୍ମଫଳର କାମନା ତ୍ୟାଗ କରିବାକୁ ହେବ । ତାହା ହେଲେ କର୍ମ ତ୍ୟାଗ କରିବା ଦ୍ୱାରା ଯେଉଁ ଫଳ ମିଳେ ନିଷ୍କାମ କର୍ମ ଦ୍ୱାରା ସେହି ଫଳ ମିଳିବ । ଏପରି ଅବସ୍ଥାରେ କର୍ମ ତ୍ୟାଗ ଆଦୌ ଉଚିତ ନୁହେ । ଯଜ୍ଞ, ଦାନ, ତପସ୍ୟା—ଏଗୁଡ଼ିକ କର୍ମ । ଏହା ପରିତ୍ୟାଜ୍ୟ ନୁହେ, କାରଣ ଏ ସବୁର ଅନୁଷ୍ଠାନଦ୍ୱାରା ଚିତ୍ତଶୁଦ୍ଧି ହୁଏ । ତେଣୁ ଫଳକାମନା ତ୍ୟାଗ କରି ଏ ସବୁର ଅନୁଷ୍ଠାନ କର୍ତ୍ତବ୍ୟ । କେବଳ ସେତିକି ନୁହେ—ଯାହାର ଯାହା ସ୍ୱଧର୍ମ ସେ ସେସବୁ କର୍ମ ମଧ୍ୟ ନିଷ୍କାମଭାବରେ ଅନୁଷ୍ଠାନ କଲେ ମୋକ୍ଷଲାଭ କରିବେ ।

କୌଣସି କର୍ମ କରିବାକୁ ହେଲେ—ଅଧିଷ୍ଠାନ, କର୍ତ୍ତା, କରଣ, ବିବିଧ ଚେଷ୍ଟା ଓ ଦୈବ—ଏହି ପଞ୍ଚବିଧ ହେତୁ ବିଦ୍ୟମାନ ଥାଏ । ଏପରି

ଅବସ୍ଥାରେ ନିର୍ଲିପ୍ତ ଅତ୍ମାକୁ ଯେ କର୍ମର ହେତୁ ବୋଲି ମନେକରନ୍ତି ସେ ନିର୍ବୋଧ । 'ମୁଁ ଏହା କଲି'—ଏ ଜ୍ଞାନ ମୂଢ଼ତାପ୍ରସୂତ । ତେଣୁ ଯେ କର୍ତ୍ତୃତ୍ୱାଭିନିବେଶ ତ୍ୟାଗ କରିଅଛନ୍ତି, ସେ କର୍ମର ଶୁଭାଶୁଭ ଫଳରୁ ମୁକ୍ତ ହୁଅନ୍ତି । ଜ୍ଞାନ, ଜ୍ଞେୟ ଓ ଜ୍ଞାତା—ଏ ତିନି ଗୋଟି କର୍ମର ପ୍ରେରଣା ଏବଂ କର୍ତ୍ତା, କର୍ମ ଓ କରଣ ଏ ତିନି ଗୋଟି କର୍ମ ବା କ୍ରିୟାର ଆଶ୍ରୟ । ତନ୍ମଧ୍ୟରୁ ଜ୍ଞାନ, କର୍ମ ଓ କର୍ତ୍ତା ଗୁଣଭେଦରେ ତ୍ରିବିଧ ଏବଂ କର୍ତ୍ତାର ବୁଦ୍ଧି, ଧୃତି ଏବଂ ଯେଉଁ ସୁଖ ଆଶାରେ କର୍ମ କରାଯାଏ ସେସବୁ ମଧ୍ୟ ଗୁଣଭେଦରେ ତ୍ରିବିଧ । ତାମସିକ, ରାଜସିକ ଓ ସାତ୍ତ୍ୱିକ—ଏହି ତିନିଗୁଣ ମଧ୍ୟରୁ ସାତ୍ତ୍ୱିକଗୁଣ ହିଁ ଶ୍ରେଷ୍ଠ, ତେଣୁ ରାଜସିକ ଓ ତାମସିକ ଭାବ ତ୍ୟାଗକରି ସାତ୍ତ୍ୱିକ ବୁଦ୍ଧି, ସାତ୍ତ୍ୱିକ ଧୃତି ଓ ସାତ୍ତ୍ୱିକ ସୁଖର ଅଧିକାରୀ ହେଲେ ନିର୍ମଳ ଆତ୍ମପ୍ରସାଦ ଲାଭ ହୁଏ । ଇତ୍ୟାଦି ।

ପ୍ରାଚୀନ ଭାରତରେ ସମାଜରକ୍ଷାପାଇଁ ଗୁଣଭେଦରେ ଭିନ୍ନ ଭିନ୍ନ ଲୋକଙ୍କ ପାଇଁ ବିଭିନ୍ନ କର୍ମର ବ୍ୟବସ୍ଥା କରାଯାଇଥିଲା । ସୁତରାଂ ଯାହାର ପ୍ରକୃତି ଯେପରି ତା ପକ୍ଷରେ ନିର୍ଦ୍ଦିଷ୍ଟ ହୋଇଥିବା କର୍ମ ତାହାର ସ୍ୱଭାବ ନିୟତକର୍ମ । ସ୍ୱଭାବନିୟତ କର୍ମ ବା ସ୍ୱଧର୍ମ କର୍ତ୍ତବ୍ୟପ୍ରେରଣାରେ କଲେ ଲୋକ ପରମପଦ ପାଏ । କୌଣସି ଲୋକର ସ୍ୱଧର୍ମରେ କୌଣସି ଦୋଷ ଥିଲେ ମଧ୍ୟ ତାହା ତ୍ୟାଗ କରିବା ତା ପକ୍ଷରେ ଉଚିତ ନୁହେ । କାରଣ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ କର୍ମ ସଂସାରରେ ଦେଖାଯାଏ ନାହିଁ ।

ଜ୍ଞାନବାଦୀମାନେ କହନ୍ତି କର୍ମ ସଂପୂର୍ଣ୍ଣରୂପେ ତ୍ୟାଗ କଲେ 'ନୈଷ୍କର୍ମ୍ୟସିଦ୍ଧି' ଲାଭ ହୁଏ, ମାତ୍ର ଗୀତାମତରେ ସ୍ୱଭାବନିୟତ କର୍ମର ଫଳକାମନା ତ୍ୟାଗ କଲେ ତଦ୍ୱାରା ନୈଷ୍କର୍ମ୍ୟ ସିଦ୍ଧିଲାଭ ହୋଇଥାଏ । ଏହି ସିଦ୍ଧିଲାଭ ହେଲେ କର୍ମଯୋଗୀଙ୍କ ମନରୁ ରାଗଦ୍ୱେଷ ଦୂର ହୁଏ ଏବଂ ସେ ବ୍ରହ୍ମଭାବାପନ୍ନ ହୋଇଯାଆନ୍ତି । ବ୍ରହ୍ମଭାବପ୍ରାପ୍ତି ପରେ ସମଦର୍ଶନ ଓ ନିର୍ମଳ ଚିତ୍ତପ୍ରସାଦ ଲାଭ ହୁଏ ଏବଂ କାର୍ଯ୍ୟତଃ ଭଗବଦ୍‌ଭକ୍ତିର ଉତ୍ସ ହୃଦୟକନ୍ଦରରୁ ସ୍ଫୁରିତ ହୁଏ । ଭକ୍ତିବଳରେ ଭଗବାନଙ୍କର ପ୍ରକୃତ ସ୍ୱରୂପ ପ୍ରକଟିତ ହୋଇ ଉଠେ ଏବଂ ଭକ୍ତ ସର୍ବକର୍ମର ଫଳ ତାଙ୍କ ଶ୍ରୀଚରଣରେ ସମର୍ପଣ କରି ଶେଷରେ ତନ୍ମୟତ୍ୱ ଲାଭ କରନ୍ତି ।

ପରିଶେଷରେ ଭଗବାନ୍ କହୁଅଛନ୍ତି ମୋକ୍ଷ ଲାଭ ପାଇଁ ନାନା ଧର୍ମମାର୍ଗ ଶାସ୍ତ୍ରମାନଙ୍କରେ ନିର୍ଦ୍ଦିଷ୍ଟ ଅଛି । ସେସବୁ ଗଣ୍ଡଗୋଳ ମଧ୍ୟରେ ନ ପଶି ଏକମାତ୍ର ଆମ୍ଭର ଶରଣ ନେଲେ ଆମ୍ଭେ ସମସ୍ତ ପାପରୁ ଭକ୍ତଙ୍କୁ ଉଦ୍ଧାର କରି ଆଶ୍ରୟ ଦେବୁଁ, ଏଥିରେ ସନ୍ଦେହ ନାହିଁ ।

ଏହିଠାରେ ଗୀତାର ଉପଦେଶ ଶେଷ ହେଲା । ଭକ୍ତି ଯେ ଈଶ୍ୱରପ୍ରାପ୍ତିର ପରମ ସାଧନ—ଏହା ହିଁ ଉପସଂହାରରୁ ସ୍ପଷ୍ଟ ଜଣାଯାଏ । ଜ୍ଞାନୀ ହୁଅ, କର୍ମୀ ହୁଅ, ଯୋଗୀ ହୁଅ—ଭକ୍ତି ଛଡ଼ା ଈଶ୍ୱର ଲାଭ ହେବ ନାହିଁ—ଏହା ଗୀତା ଶାସ୍ତ୍ରର ଶେଷ ଉପଦେଶ ।

ଶେଷରେ ଗୀତାଶ୍ରବଣର ଅଧିକାରୀ, ଗୀତା ପାଠର ଫଳ, ଗୀତାବ୍ୟାଖ୍ୟାର ଫଳ ପ୍ରଭୃତି କୁହାଯାଇଅଛି ଏବଂ ଅର୍ଜୁନଙ୍କ ମୋହ ନିବୃତ୍ତି ଓ ଯୁଦ୍ଧ କରିବାରେ ସ୍ୱୀକୃତି ବର୍ଣ୍ଣିତ ହୋଇଅଛି ।

ଧୃତରାଷ୍ଟ୍ର ଓ ସଂଜୟଙ୍କ କଥୋପକଥନରୁ ଏ ଗୀତାଶାସ୍ତ୍ର ଆରମ୍ଭ ହୋଇଥିଲା । ସଂଜୟ ଧୃତରାଷ୍ଟ୍ରଙ୍କୁ ଏ ସମସ୍ତ କଥା କହି ଶେଷରେ କହିଲେ ବ୍ୟାସଦେବଙ୍କ ଦୟାରୁ ମୁଁ ଦିବ୍ୟଦୃଷ୍ଟି ଓ ଦିବ୍ୟ ଶ୍ରବଣଶକ୍ତି ଲାଭକରି ଯାହା ଶୁଣିଲି ଓ ଦେଖିଲି ତାହା ସ୍ମରଣ କରି ମୋର ବାରମ୍ବାର ରୋମାଞ୍ଚ ହେଉଅଛି । ଅତଏବ ମୋ ମତରେ ଜୟଲକ୍ଷ୍ମୀ ପାଣ୍ଡବ ପକ୍ଷକୁ ଆଶ୍ରୟ କରିବେ ।

ଓଁ ତତ୍‌ସତ୍

ଶ୍ରୀକୃଷ୍ଣାର୍ପଣମସ୍ତୁ

ସ ମା ପ୍ତ



# ପରିଶିଷ୍ଟ

## ଗୀତା ମାହାତ୍ମ୍ୟମ୍

ଓଁ ନମୋ ଭଗବତେ ବାସୁଦେବାୟ

ଶୌନକ ଉବାଚ

ଗୀତାୟାଶ୍ଚୈବ ମାହାତ୍ମ୍ୟଂ ଯଥାବତ୍ ସୁତ ମେ ବଦ ।
ପୁରା ନାରାୟଣକ୍ଷେତ୍ରେ ବ୍ୟାସେନ ମୁନିନୋଦିତମ୍ । ୧ ।

ସୁତ ଉବାଚ

ଭଦ୍ରଂ ଭଗବତା ପୃଷ୍ଟଂ ଯଦ୍ଧି ଗୁପ୍ତତମଂ ପରମ୍ ।
ଶକ୍ୟତେ କେନ ତଦ୍‌ବକ୍ତୁଂ ଗୀତାମାହାତ୍ମ୍ୟ ମୁତ୍ତମମ୍ । ୨ ।
କୃଷ୍ଣୋଜାନାତିବୈ ସମ୍ୟକ୍ କଞ୍ଚିତ୍ କୁନ୍ତୀସୁତଃ ଫଲମ୍ ।
ବ୍ୟାସୋ ବା ବ୍ୟାସପୁତ୍ରୋ ବା ଯାଜ୍ଞବଲ୍କ୍ୟୋଽଥ ମୈଥିଳଃ । ୩ ।
ଅନ୍ୟେ ଶ୍ରବଣତଃ ଶ୍ରୁତ୍ୱାଲେଶଂ ସଙ୍କୀର୍ତ୍ତୟନ୍ତିଚ ।
ତସ୍ମାତ୍ କଞ୍ଚିଦ୍ ବଦାମ୍ୟତ୍ର ବ୍ୟାସସ୍ୟାସ୍ୟାନ୍ମୟା ଶ୍ରୁତମ୍ । ୪ ।

ଶୌନକ କହିଲେ—ହେ ସୁତ ! ପୂର୍ବକାଳରେ ନାରାୟଣ କ୍ଷେତ୍ରରେ ବ୍ୟାସଦେବଙ୍କ ଦ୍ୱାରା ଗୀତା ମାହାତ୍ମ୍ୟ ଯେପରି କୀର୍ତ୍ତିତ ହୋଇଥିଲା ଆପଣ ତାହା ଯଥାଯଥ ଭାବରେ ବର୍ଣ୍ଣନ କରନ୍ତୁ । ୧ ।

ସୁତ କହିଲେ—ହେ ଭଗବନ୍, ଆପଣ ଭଲକଥା ପଚାରିଅଛନ୍ତି, ଏହା ପରମ ଗୁହ୍ୟତମ; ଏହି ଗୀତା ମାହାତ୍ମ୍ୟ ସୁନ୍ଦର ରୂପେ ବ୍ୟାଖ୍ୟା କରିବାକୁ କିଏ ସମର୍ଥ ? ୨ ।

ଶ୍ରୀକୃଷ୍ଣ ହିଁ ଏହା ଉତ୍ତମରୂପେ ଜାଣନ୍ତି; କୁନ୍ତୀସୁତ ଅର୍ଜ୍ଜୁନ, ବ୍ୟାସଦେବ, ବ୍ୟାସଙ୍କ ପୁତ୍ର ଶୁକଦେବ, ଯାଜ୍ଞବଲ୍କ୍ୟ ଓ ମିଥିଳାଧିପ ଜନକ କିଛି କିଛି ଜାଣନ୍ତି । ୩ ।

ଅନ୍ୟମାନେ କାହାର କାହାରଠାରୁ ଶୁଣି କିଛି କିଛି ଘୋଷିନ କରନ୍ତି । ବ୍ୟାସଦେବଙ୍କ ମୁହଁରୁ ମୁଁ ମଧ୍ୟ ଯେପରି ଶୁଣିଅଛି ଏଠାରେ ତାହାହିଁ କିଛି କହୁଅଛି । ୪ ।

ସର୍ବୋପନିଷଦୋ ଗାବୋ ଦୋଗ୍ଧା ଗୋପାଳନନ୍ଦନଃ ।
ପାର୍ଥୋବତ୍ସଃ ସୁଧୀର୍ଭୋକ୍ତା ଦୁଗ୍ଧଂ ଗୀତାମୃତଂ ମହତ୍ । ୫ ।
ସାରଥ୍ୟମର୍ଜ୍ଜୁନସ୍ୟାଦୌ କୁର୍ବନ୍ ଗୀତାମୃତଂ ଦଦୌ ।
ଲୋକତ୍ରୟୋପକାରାୟ ତସ୍ମୈ କୃଷ୍ଣାତ୍ମନେ ନମଃ । ୬ ।
ସଂସାର ସାଗରଂ ଘୋରଂ ତର୍ତ୍ତୁମିଚ୍ଛତି ଯୋ ନରଃ ।
ଗୀତାନାବଂ ସମାସାଦ୍ୟ ପାରଂଯାତି ସୁଖେନ ସଃ । ୭ ।
ଗୀତାଜ୍ଞାନଂ ଶ୍ରୁତଂ ନୈବ ସଦୈବାଭ୍ୟାସଯୋଗତଃ ।
ମୋକ୍ଷମିଚ୍ଛନ୍ତି ମୂଢ଼ାତ୍ମା ଯାନ୍ତି ବାଳକହାସ୍ୟତାଂ । ୮ ।
ଯେ ଶୃଣ୍ୱନ୍ତି ପଠନ୍ତ୍ୟେବଂ ଗୀତାଶାସ୍ତ୍ରମହର୍ନିଶମ୍ ।
ନ ତେବୈମାନୁଷା ଜ୍ଞେୟା ଦେବରୂପା ନ ସଂଶୟଃ । ୯ ।
ଗୀତା ଜ୍ଞାନେନ ସମ୍ବୋଧଂ କୃଷ୍ଣଃ ପ୍ରାହାର୍ଜ୍ଜୁନାୟବୈ ।
ଭକ୍ତିତତ୍ତ୍ୱଂ ପରଂ ତତ୍ର ସଗୁଣଂ ଚାଥ ନିର୍ଗୁଣମ୍ । ୧୦ ।

ସମଗ୍ର ଉପନିଷଦ୍ ଗାଈ ସ୍ୱରୂପ, ଗୋପାଳନନ୍ଦନ ଭଗବାନ୍ ଶ୍ରୀକୃଷ୍ଣ ଦୋହନକର୍ତ୍ତା, ଅର୍ଜ୍ଜୁନ ବତ୍ସ, ଏବଂ ଗୀତାମୃତ ଦୁଗ୍ଧ ସ୍ୱରୂପ । ସୁଧୀ ଅର୍ଥାତ୍ ପଣ୍ଡିତମାନେ ଏହା ପାନକରନ୍ତି । ୫ ।

ଯେ ପ୍ରଥମେ ଅର୍ଜ୍ଜୁନଙ୍କ ସାରଥ୍ୟ ସ୍ୱୀକାର କରି ତିନି ଲୋକର ଉପକାର କରିବା ପାଇଁ ଏହି ଗୀତାମୃତ ପ୍ରଦାନ କରି ଅଛନ୍ତି, ସେହି ପରମାତ୍ମା ଶ୍ରୀକୃଷ୍ଣଙ୍କୁ ନମସ୍କାର କରୁଅଛି । ୬ ।

ଯେଉଁ ଲୋକ ଘୋର ସଂସାରସାଗରରୁ ଉତ୍ତୀର୍ଣ୍ଣ ହେବାକୁ ଇଚ୍ଛା କରନ୍ତି, ସେ ଗୀତାରୂପ ନୌକାର ଆଶ୍ରୟ ଗ୍ରହଣ କଲେ ସୁଖରେ ପାରହୋଇ ପାରନ୍ତି । ୭ ।

ଯେଉଁ ଲୋକ ପୁନଃପୁନଃ ଶ୍ରବଣ ଓ ଅଭ୍ୟାସ ଦ୍ୱାରା ଗୀତାଜ୍ଞାନ ଲାଭକରି ନାହାନ୍ତି, ଯେବେ ସେ ମୋକ୍ଷ ଇଚ୍ଛା କରନ୍ତି ତେବେ ସେ ବାଳକ ନିକଟରେ ମଧ୍ୟ ଉପହାସାସ୍ପଦ ହୁଅନ୍ତି । ୮ ।

ଯେଉଁମାନେ ଦିବାନିଶି ଗୀତାଶାସ୍ତ୍ର ଶ୍ରବଣ ବା ଅଧ୍ୟୟନ କରନ୍ତି ସେମାନଙ୍କୁ ମନୁଷ୍ୟ ବୋଲି ମନେକରିବ ନାହିଁ, ସେ ନିଃସଂଶୟରେ ଦେବତା ଅଟନ୍ତି । ୯ ।

ଶ୍ରୀକୃଷ୍ଣ ଯେଉଁ ଗୀତାଜ୍ଞାନ ଦ୍ୱାରା ଅର୍ଜ୍ଜୁନଙ୍କୁ ପ୍ରବୋଧ ଦେଇଥିଲେ ତହିଁରେ ସଗୁଣ ଅଥବା ନିର୍ଗୁଣ ଉତ୍କୃଷ୍ଟ ଭକ୍ତିତତ୍ତ୍ୱ ବ୍ୟାଖ୍ୟାତ ହୋଇଅଛି । ୧୦ ।

ସୋପାନାଷ୍ଟାଦଶୈରେବଂ ଭକ୍ତିମୁକ୍ତି ସମୁଚ୍ଛ୍ରିତୈଃ ।
କ୍ରମଶୋ ଚିତ୍ତଶୁଦ୍ଧିଃସ୍ୟାତ୍ ପ୍ରେମଭକ୍ତ୍ୟାଦି କର୍ମଣି । ୧୧ ।
ସାଧୋର୍ଗୀତାମ୍ଭସି ସ୍ନାନଂ ସଂସାରମଳନାଶନମ୍ ।
ଶ୍ରଦ୍ଧାହୀନସ୍ୟ ତତ୍କାର୍ଯ୍ୟଂ ହସ୍ତିସ୍ନାନଂ ବୃଥୈବ ତତ୍ । ୧୨ ।
ଗୀତାୟାଶ୍ଚ ନ ଜାନାତି ପଠନଂ ନୈବ ପାଠନମ୍ ।
ସ ଏବ ମାନୁଷେ ଲୋକେ ମୋଘକର୍ମକରୋ ଭବେତ୍ । ୧୩ ।
ତସ୍ମାଦ୍ ଗୀତାଂ ନ ଜାନାତି ନାଧମସ୍ତତ୍ପରୋ ଜନଃ ।
ଧିକ୍ତସ୍ୟ ମାନୁଷଂ ଦେହଂ ବିଜ୍ଞାନଂ କୁଲଶୀଳତାମ୍ । ୧୪ ।
ଗୀତାର୍ଥଂ ନ ବିଜାନାତି ନାଧମସ୍ତତ୍ପରୋ ଜନଃ ।
ଧିକ୍ ଶରୀରଂ ଶୁଭଂ ଶୀଳଂ ବିଭବଂ ତଦ୍‌ଗୃହାଶ୍ରମମ୍ । ୧୫ ।
ଗୀତାଶାସ୍ତ୍ରଂ ନ ଜାନାତି ନାଧମସ୍ତତ୍ପରୋ ଜନଃ ।
ଧିକ୍ ପ୍ରାରବ୍ଧଂ ପ୍ରତିଷ୍ଠାଂ ଚ ପୂଜାଂ ମାନଂ ମହତ୍ତମମ୍ । ୧୬ ।
ଗୀତା ଶାସ୍ତ୍ରେ ମତିର୍ନାସ୍ତି ସର୍ବଂ ତତ୍ ନିଷ୍ଫଳଂ ଜଗୁଃ ।
ଧିକ୍ ତସ୍ୟ ଜ୍ଞାନଦାତାରଂ ବ୍ରତଂ ନିଷ୍ଠାଂ ତପୋଯଶଃ । ୧୭ ।

ଗୀତାର ଭକ୍ତିମୁକ୍ତିପ୍ରଧାନ ଅଷ୍ଟାଦଶଅଧ୍ୟାୟରୂପ ସୋପାନଦ୍ୱାରା କ୍ରମଶଃ ପ୍ରେମଭକ୍ତି ଆଦି କର୍ମରେ ଚିତ୍ତଶୁଦ୍ଧି ହୁଏ । ୧୧ ।

ଗୀତାରୂପ ଜଳରେ ସ୍ନାନ କଲେ ସାଧୁମାନଙ୍କର ସଂସାରରୂପ ମଳ ବିନଷ୍ଟ ହୋଇଯାଏ; ମାତ୍ର ଶ୍ରଦ୍ଧାହୀନ ଲୋକର ଏ କାର୍ଯ୍ୟ ହସ୍ତି-ସ୍ନାନପରି ବିଫଳ ହୋଇଥାଏ । ୧୨ ।

ଯେଉଁ ଲୋକ ଗୀତାଶାସ୍ତ୍ରର ଅଧ୍ୟୟନ ଓ ଅଧ୍ୟାପନା କରି ନାହାନ୍ତି ମନୁଷ୍ୟଲୋକରେ ସେ ବୃଥା କର୍ମ କରନ୍ତି । ୧୩ ।

ତେଣୁ ଯେ ଗୀତା ଶାସ୍ତ୍ର ଜାଣନ୍ତି ନାହିଁ ତାଙ୍କ ଅପେକ୍ଷା ଅନ୍ୟ କେହି ଅଧମ ନାହାନ୍ତି, ତାଙ୍କର ମନୁଷ୍ୟଦେହ, ଜ୍ଞାନ ଓ କୁଳଶୀଳକୁ ଧିକ୍ । ୧୪ ।

ଗୀତାର୍ଥ ଯେ ଜାଣନ୍ତି ନାହିଁ ତାଙ୍କଠାରୁ ଅଳ୍ପ ଅଧମ କେହି ନାହାନ୍ତି; ତାଙ୍କର ଶରୀର, ସତ୍‌ସ୍ୱଭାବ, ବିଭବ ଓ ଗୃହାଶ୍ରମକୁ ଧିକ୍ । ୧୫ ।

ଗୀତା ଶାସ୍ତ୍ର ଯେ ଜାଣନ୍ତି ନାହିଁ ତାଙ୍କ ଅପେକ୍ଷା ଅନ୍ୟ କେହି ଅଧମ ନାହାନ୍ତି, ତାଙ୍କର ଅଦୃଷ୍ଟ, ପ୍ରତିଷ୍ଠା, ପୂଜା, ମାନ, ମହତ୍ତ୍ୱକୁ ଧିକ୍ । ୧୬ ।

ଗୀତା ଶାସ୍ତ୍ରରେ ଯାହାଙ୍କର ମନ ନାହିଁ ତାହାଙ୍କର ସବୁ ବୃଥା; ତାଙ୍କର ଶିକ୍ଷାଦାତାଙ୍କୁ ଧିକ୍, ତାଙ୍କର ବ୍ରତନିଷ୍ଠା, ତପସ୍ୟା ଓ ଯଶକୁ ଧିକ୍ । ୧୭ ।

ଗୀତାର୍ଥପଠନଂ ନାସ୍ତି ନଧମସ୍ତତ୍‌ପରେ ଜନଃ ।
ଗୀତା ଗୀତଂ ନ ଯଜ୍ଜ୍ଞାନଂ ତଦ୍‌ବିଦ୍ଧ୍ୟା ସୁରସମ୍ମତମ୍ । ୧୮ ।
ତନ୍ମୋଘଂ ଧର୍ମରହିତଂ ବେଦବେଦାନ୍ତଗର୍ହିତମ୍ ।
ତସ୍ମାଦ୍ଧର୍ମମୟୀ ଗୀତା ସର୍ବଜ୍ଞାନପ୍ରଯୋଜିକା ।
ସର୍ବ ଶାସ୍ତ୍ର ସାରଭୂତା ବିଶୁଦ୍ଧା ସା ବିଶିଷ୍ୟତେ । ୧୯ ।
ଯୋଽଧୀତେ ବିଷ୍ଣୁପର୍ବାହେ ଗୀତାଂ ଶ୍ରୀହରି ବାସରେ ।
ସ୍ୱପନ୍ ଜାଗ୍ରନ୍ ଚଲଂ ସ୍ତିଷ୍ଠନ୍ ଶତ୍ରୁଭିର୍ନ ସ ହୀୟତେ । ୨୦ ।
ଶାଲଗ୍ରାମ ଶିଳାୟାଂ ବା ଦେବାଗାରେ ଶିବାଳୟେ ।
ତୀର୍ଥେ ନଦ୍ୟାଂ ପଠେଦ୍ ଗୀତାଂ ସୌଭାଗ୍ୟଂ ଲଭତେ ଧ୍ରୁବମ୍ ।୨୧
ଦେବକୀନନ୍ଦନଃ କୃଷ୍ଣୋ ଗୀତା ପାଠେନ ତୁଷ୍ୟତି ।
ଯଥା ନ ବେଦୈର୍ଦାନେନ ଯଜ୍ଞତୀର୍ଥ ବ୍ରତାଦିଭିଃ । ୨୨ ।
ଗୀତାଧୀତା ଚ ଯେନାପି ଭକ୍ତିଭାବେନ ଚେତସା ।
ବେଦଶାସ୍ତ୍ର ପୁରାଣାନି ତେନାଧୀତାନି ସର୍ବଶଃ । ୨୩ ।

ଯେ ଗୀତାର୍ଥ ପଢ଼ି ନାହାନ୍ତି, ତାଙ୍କ ଅପେକ୍ଷା ଅନ୍ୟ କେହି ଅଧମ ନାହାନ୍ତି, ଯେଉଁ ଜ୍ଞାନ ଗୀତା ସମ୍ମତ ନୁହେଁ ତାହା ଅସୁର ଜ୍ଞାନ, ତାହା ନିଷ୍ଫଳ, ଧର୍ମରହିତ ଏବଂ ବେଦବେଦାନ୍ତ ଗର୍ହିତ, ସେହି ହେତୁରୁ ଧର୍ମମୟୀ ଗୀତା ସର୍ବଜ୍ଞାନ ପ୍ରଦାୟିକା, ଗୀତା ସର୍ବଶାସ୍ତ୍ରର ସାର ଭୂତ ଓ ବିଶୁଦ୍ଧ, ଏହାହିଁ ଗୀତାର ବିଶିଷ୍ଟତା । ୧୮-୧୯ ।

ଯେଉଁ ବ୍ୟକ୍ତି ବିଷ୍ଣୁପର୍ବ ଦିବସରେ ବା ଏକାଦଶୀରେ ଗୀତାପାଠ କରନ୍ତି, ସେ ସ୍ୱପ୍ନରେ, ଜାଗରଣରେ, ଗମନରେ, ଅଥବା ଅବସ୍ଥାନରେ—ଯେ କୌଣସି ଅବସ୍ଥାରେ ଶତ୍ରୁଦ୍ୱାରା ପୀଡ଼ିତ ହୁଅନ୍ତି ନାହିଁ । ୨୦ ।

ଶାଲଗ୍ରାମ ଶିଳା ନିକଟରେ, ଦେବାଳୟରେ, ଶିବମନ୍ଦିରରେ ତୀର୍ଥ ସ୍ଥାନରେ ବା ନଦୀତଟରେ ଗୀତାପାଠ କଲେ ନିଶ୍ଚୟ ସୌଭାଗ୍ୟଲାଭ ହୁଏ । ୨୧ ।

ଦେବକୀନନ୍ଦନ ଶ୍ରୀକୃଷ୍ଣ ଯେପରି ଗୀତାପାଠରେ ତୁଷ୍ଟ ହୁଅନ୍ତି, ବେଦ-ପାଠରେ, ଦାନରେ, ଯଜ୍ଞରେ, ତୀର୍ଥପ୍ରାପ୍ତିରେ, ବ୍ରତାନୁଷ୍ଠାନ ପ୍ରଭୃତିରେ ସେପରି ତୁଷ୍ଟ ହୁଅନ୍ତି ନାହିଁ । ୨୨ ।

ଯେଉଁ ଲୋକ ଭକ୍ତିଭାବରେ ଗୀତାପାଠ କରନ୍ତି ସେ ବେଦ, ପୁରାଣାଦି ସମସ୍ତ ଶାସ୍ତ୍ରପାଠର ଫଳ ପ୍ରାପ୍ତ ହୁଅନ୍ତି । ୨୩ ।

ଯୋଗସ୍ଥାନେ ସିଦ୍ଧପୀଠେ ଶିଳାଗ୍ରେ ସତ୍‌ସଭାସୁ ଚ ।
ଯଜ୍ଞେ ଚ ବିଷ୍ଣୁଭକ୍ତାଗ୍ରେ ପଠନ୍‌ସିଦ୍ଧିଂ ପରାଂ ଲଭେତ୍ । ୨୪ ।
ଗୀତାପାଠଂ ଚ ଶ୍ରବଣଂ ଯଃ କରୋତି ଦିନେ ଦିନେ ।
କ୍ରତବୋ ବାଜିମେଧାଦ୍ୟାଃ କୃତାସ୍ତେନ ସଦକ୍ଷିଣାଃ । ୨୫ ।
ଯଃ ଶୃଣୋତି ଚ ଗୀତାର୍ଥଂ କୀର୍ତ୍ତୟତ୍ୟେବ ଯଃ ପରମ୍ ।
ଶ୍ରାବୟେଚ୍ଚ ପରାର୍ଥଂ ବୈ ସ ପ୍ରୟାତି ପରଂ ପଦମ୍ । ୨୬ ।
ଗୀତାୟାଃ ପୁସ୍ତକଂ ଶୁଦ୍ଧଂ ଯୋଽର୍ପୟତ୍ୟେବ ସାଦରାତ୍ ।
ବିଧିନା ଭକ୍ତିଭାବେନ ତସ୍ୟ ଭାର୍ଯ୍ୟା ପ୍ରିୟା ଭବେତ୍ । ୨୭ ।
ଯଶଃ ସୌଭାଗ୍ୟ ମାରୋଗ୍ୟଂ ଲଭତେ ନାତ୍ର ସଂଶୟଃ ।
ଦୟିତାନାଂ ପ୍ରିୟୋ ଭୂତ୍ୱା ପରମଂ ସୁଖ ମଶ୍ନୁତେ । ୨୮ ।
ଅଭିଚାରୋଦ୍‌ଭବଂ ଦୁଃଖଂ ବରଶାପାଗତଂ ଚ ଯତ୍ ।
ନୋପସର୍ପନ୍ତି ତତ୍ରୈବ ଯତ୍ର ଗୀତାର୍ଚ୍ଚନଂ ଗୃହେ । ୨୯ ।
ତାପତ୍ରୟୋଦ୍‌ଭବା ପୀଡ଼ା ନୈବ ବ୍ୟାଧିର୍ଭବେତ୍ କ୍ୱଚିତ୍ ।
ନ ଶାପୋ ନୈବ ପାପଂ ଚ ଦୁର୍ଗତିର୍ନରକଂ ନ ଚ ।୩୦ ।

ଯୋଗସ୍ଥାନରେ, ସିଦ୍ଧପୀଠରେ କିମ୍ବା ଶାଳଗ୍ରାମ ଶିଳା ସମ୍ମୁଖରେ ଅଥବା ସଜ୍ଜନ ସମାଜରେ ଯଜ୍ଞସ୍ଥାନରେ କିମ୍ବା ଭଗବଦ୍ ଭକ୍ତଙ୍କ ନିକଟରେ ଯେ ଗୀତା ପାଠ କରନ୍ତି, ତାଙ୍କର ପରମସିଦ୍ଧି ଲାଭ ହୋଇଥାଏ । ୨୪ ।

ଯେ ପ୍ରତିଦିନ ଗୀତାପାଠ ବା ଶ୍ରବଣ କରନ୍ତି ସେ ଦକ୍ଷିଣାସହ ଅଶ୍ୱମେଧାଦି ଯଜ୍ଞ କରନ୍ତି କହିବାକୁ ହେବ । ୨୫ ।

ଯେ ଗୀତାର୍ଥ ଶ୍ରବଣ କରନ୍ତି, କୀର୍ତ୍ତନ କରନ୍ତି କିମ୍ବା ଅନ୍ୟ ଲୋକକୁ ଶୁଣାନ୍ତି, ସେ ପରମପଦ ଲାଭ କରନ୍ତି । ୨୬ ।

ଯେ ଯଥାବିଧି ଶୁଦ୍ଧ ଗୀତାପୁସ୍ତକ ଭକ୍ତି ସହିତ ଆଦରରେ ଦାନ କରନ୍ତି ତାହାଙ୍କର ଭାର୍ଯ୍ୟା ପ୍ରିୟ ହୁଅନ୍ତି ଏବଂ ସେ ଯଶଃ ସୌଭାଗ୍ୟ ଓ ଆରୋଗ୍ୟ ଲାଭ କରି ଦୟିତାମାନଙ୍କର ପ୍ରିୟହୋଇ ପରମସୁଖ ଭୋଗ କରନ୍ତି—ଏଥିରେ ସନ୍ଦେହ ନାହିଁ ।୨୭-୨୮।

ଯେଉଁ ଗୃହରେ ଗୀତାର ଅର୍ଚ୍ଚନ ହୁଏ ସେଠାରେ ହିଂସା ବା ବଯ୍ୟାନର ଅଭିଶାପଜନିତ କୌଣସି ଦୁଃଖ ଉପସ୍ଥିତ ହୁଏ ନାହିଁ । ୨୯ ।

ସେଠାରେ ତ୍ରିତାପଜନିତ ପୀଡ଼ା, କୌଣସି ପ୍ରକାର ରୋଗ, ଅଭିଶାପ, ପାପ, ଦୁର୍ଗତି ବା ନରକପ୍ରାପ୍ତି ହୁଏ ନାହିଁ; ଦେହରେ ବିସ୍ଫୋଟକାଦି କୌଣସି

ବିସ୍ଫୋଟକାଦୟୋ ଦେହେ ନ ବାଧନ୍ତେ କଦାଚନ ।
ଲଭେତ୍ କୃଷ୍ଣପଦେ ଦାସ୍ୟଂ ଭକ୍ତିଂ ଚ ବ୍ୟଭିଚାରିଣୀମ୍ । ୩୧ ।
ଜାୟତେ ସତତଂ ସଖ୍ୟଂ ସର୍ବଜୀବଗଣୈଃ ସହ ।
ପ୍ରାରବ୍ଧଂ ଭୁଞ୍ଜତୋବାପି ଗୀତାଭ୍ୟାସରତସ୍ୟ ଚ । ୩୨ ।
ସ ମୁକ୍ତଃ ସ ସୁଖୀ ଲୋକେ କର୍ମଣା ନୋପଲିପ୍ୟତେ ।
ମହାପାପାତିପାପାନି ଗୀତାଧ୍ୟାୟୀ କରୋତି ଚେତ୍
ନ କିଞ୍ଚିତ୍ ସ୍ପୃଶ୍ୟତେ ତସ୍ୟ ନଳିନୀଦଳମମ୍ଭସା । ୩୩ ।
ଅନାଚାରୋଦ୍ଭବଂ ପାପମବାଚ୍ୟାଦି କୃତଂ ଚ ଯତ୍ ।
ଅଭକ୍ଷ୍ୟଭକ୍ଷଜଂ ଦୋଷ ମସ୍ପୃଶ୍ୟ ସ୍ପର୍ଶଜଂ ତଥା । ୩୪ ।
ଜ୍ଞାନାଜ୍ଞାନକୃତଂ ନିତ୍ୟମିନ୍ଦ୍ରିୟୈର୍ଜନିତଂ ଚ ଯତ୍ ।
ତତ୍ସର୍ବଂ ନାଶମାୟାତି ଗୀତା ପାଠେନ ତତ୍କ୍ଷଣାତ୍ । ୩୫ ।
ସର୍ବତ୍ର ପ୍ରତିଭୋକ୍ତା ଚ ପ୍ରତିଗୃହ୍ୟ ଚ ସର୍ବଶଃ ।
ଗୀତାପାଠଂ ପ୍ରକୁର୍ବାଣୋ ନଲିପ୍ୟତେ କଦାଚନ । ୩୬ ।

ପ୍ରକାର ରୋଗ ଉତ୍ପନ୍ନ ହୁଏ ନାହିଁ, ବରଂ ତଦ୍ଧାରା ଶ୍ରୀକୃଷ୍ଣ ଚରଣରେ ଦାସତ୍ୱ ଓ ଅବ୍ୟଭିଚାରିଣୀ ଭକ୍ତି ଲାଭ ହୁଏ । ୩୦-୩୧ ।

ଯେଉଁ ଲୋକ ନିତ୍ୟ ଗୀତା ଅଭ୍ୟାସ କରୁଥାଆନ୍ତି, ସେ ସମସ୍ତ ଜୀବଙ୍କ ସହମିତାରେ ଅବସ୍ଥ ରହନ୍ତି ଏବଂ ପ୍ରାରବ୍ଧକର୍ମଭୋଗର ଅଧୀନ ଥିଲେହେଁ ମୁକ୍ତ ଓ ସୁଖ ଲାଭ କରିଥାଆନ୍ତି, କୌଣସି କର୍ମ ତାହାଙ୍କୁ ବନ୍ଧନ କରିପାରେ ନାହିଁ । ୩୨ ।

ଗୀତା ଅଧ୍ୟୟନକାରୀ ମହାପାପ ଓ ଅତିପାପ କଲେ ମଧ୍ୟ, ପଦ୍ମପତ୍ରକୁ ଜଳ ଯେପରି ସ୍ପର୍ଶ କରିପାରେ ନାହିଁ, ପାପ ତାହାଙ୍କୁ ସ୍ପର୍ଶ କରିପାରେ ନାହିଁ । ୩୩ ।

ଅନାଚାରୋଦ୍ଭୂତ, ଅବାଚ୍ୟ ଭାଷଣଜନିତ ପାପସକଳ, ଅଭକ୍ଷ୍ୟ-ଭକ୍ଷଣଜନିତ ଓ ଅସ୍ପୃଶ୍ୟସ୍ପର୍ଶଜନିତ ଦୋଷମାନ, ଜ୍ଞାନକୃତ, ଅଜ୍ଞାନକୃତ ବା ଇନ୍ଦ୍ରିୟଜନିତ ଯେ କୌଣସି ଦୋଷ ଗୀତାପାଠ କରିବା ମାତ୍ରକେ ନଷ୍ଟ ହୋଇଯାଏ । ୩୪-୩୫ ।

ସର୍ବତ୍ର ଭୋଜନ ଓ ସର୍ବତ୍ର ପ୍ରତିଗ୍ରହ କଲେ ମଧ୍ୟ ଯେଉଁ ପାପ ହୁଏ ଗୀତା ପାଠକାରୀକୁ ତାହା ସ୍ପର୍ଶ କରିପାରେ ନାହିଁ । ୩୬ ।

ରତ୍ନପୂର୍ଣ୍ଣାଂ ମହୀଂ ସର୍ବାଂ ପ୍ରତିଗୃହ୍ୟାବିଧାନତଃ ।
ଗୀତାପାଠେନ ଚୈକେନ ଶୁଦ୍ଧସ୍ଫଟିକବତ୍ ସଦା । ୩୭ ।
ଯସ୍ୟାନ୍ତଃକରଣଂ ନିତ୍ୟଂ ଗୀତାୟାଂ ରମତେ ସଦା ।
ସ ସାଗ୍ନିକଃ ସଦା ଜାପୀ କ୍ରିୟାବାନ୍ ସ ଚ ପଣ୍ଡିତଃ । ୩୮ ।
ଦର୍ଶନୀୟଃ ସ ଧନବାନ୍ ସ ଯୋଗୀ ଜ୍ଞାନବାନପି ।
ସ ଏବ ଯାଜ୍ଞିକୋ ଯାଜୀ ସର୍ବବେଦାର୍ଥଦର୍ଶକଃ । ୩୯ ।
ଗୀତାୟାଃ ପୁସ୍ତକଂ ଯତ୍ର ନିତ୍ୟପାଠଶ୍ଚ ବର୍ତ୍ତତେ ।
ତତ୍ର ସର୍ବାଣି ତୀର୍ଥାନି ପ୍ରୟାଗାଦୀନି ଭୂତଲେ । ୪୦ ।
ନିବସନ୍ତି ସଦାଦେହେ ଦେହଶେଷେଽପି ସର୍ବଦା ।
ସର୍ବେ ଦେବାଶ୍ଚ ଋଷୟୋ ଯୋଗିନୋ ଦେହରକ୍ଷକାଃ । ୪୧ ।
ଗୋପାଲୋ ବାଲକୃଷ୍ଣୋଽପି ନାରଦଧ୍ରୁବପାର୍ଷଦୈଃ ।
ସହାୟୋ ଜାୟତେ ଶୀଘ୍ରଂ ଯତ୍ରଗୀତା ପ୍ରବର୍ତ୍ତତେ । ୪୨ ।
ଯତ୍ରଗୀତା ବିଚାରଶ୍ଚ ପଠନଂ ପାଠନଂ ତଥା ।
ମୋଦତେ ଭଗବାଂସ୍ତତ୍ର କୃଷ୍ଣୋରାଧିକୟା ସହ । ୪୩ ।

ଯେବେ ବିଧିଲଙ୍ଘନ କରି କେହ ରତ୍ନପୂର୍ଣ୍ଣ ବସୁନ୍ଧରା ପ୍ରତିଗ୍ରହ କରନ୍ତି ଗୀତାପାଠ ମାତ୍ରକେ ସେ ବ୍ୟକ୍ତି ସ୍ଫଟିକବତ୍ ସ୍ୱଚ୍ଛ ହୋଇଯାଆନ୍ତି । ୩୭ ।

ଯାହାଙ୍କ ହୃଦୟ ସର୍ବଦା ଗୀତାରେ ଅନୁରକ୍ତ ଥାଏ ତାହାଙ୍କୁ ହିଁ ସାଗ୍ନିକ, ଜାପକ, କ୍ରିୟାବାନ୍, ପଣ୍ଡିତ, ଦର୍ଶନୀୟ, ଧନବାନ୍, ଯୋଗୀ, ଜ୍ଞାନବାନ୍, ଯାଜ୍ଞିକ, ଯାଜକ ଓ ସର୍ବ ବେଦାର୍ଥଦର୍ଶୀ କୁହାଯାଏ । ୩୮-୩୯ ।

ଯେଉଁଠାରେ ସର୍ବଦା ଗୀତା ପଠିତ ହେଉଥାଏ, ଭୂତଳରେ ପ୍ରୟାଗାଦି ସମସ୍ତ ତୀର୍ଥ ସେଠାରେ ବିଦ୍ୟମାନ ଥାଏ । ୪୦ ।

ଯାହାଙ୍କ ଗୃହରେ ଗୀତା ପଠିତ ହୁଏ ତାହାଙ୍କର ଜୀବିତ ଥିବା କାଳରେ ଓ ମରଣ ପରେ ମଧ୍ୟ ସମସ୍ତ ଦେବତା, ଋଷି ଓ ଯୋଗୀ ତାହାଙ୍କର ଦେହ ରକ୍ଷକ ହୋଇ ବାସ କରନ୍ତି ଏବଂ ନାରଦ, ଧ୍ରୁବ ଓ ପାରିଷଦମାନଙ୍କ ସହ ବାଳ ଗୋପାଳ ଶ୍ରୀକୃଷ୍ଣ ତାହାଙ୍କର ସହାୟ ହୁଅନ୍ତି । ୪୧-୪୨ ।

ଯେଉଁଠାରେ ଗୀତାଶାସ୍ତ୍ରର ବିଚାର, ଅଧ୍ୟୟନ ଓ ଅଧ୍ୟାପନ, ଶ୍ରୀରାଧିକାଙ୍କ ସହିତ ଭଗବାନ୍ ଶ୍ରୀକୃଷ୍ଣ ସେ ସ୍ଥାନରେ ଆନନ୍ଦରେ ବିରାଜିତ ରହନ୍ତି । ୪୩ ।

ଶ୍ରୀ ଭଗବାନୁବାଚ

ଗୀତା ମେ ହୃଦୟଂ ପାର୍ଥ ଗୀତା ମେ ସାରମୁତ୍ତମମ୍ ।
ଗୀତା ମେ ଜ୍ଞାନମତ୍ୟୁଗ୍ରଂ ଗୀତା ମେ ଜ୍ଞାନମବ୍ୟୟମ୍ । ୪୪ ।
ଗୀତା ମେ ଚୋତ୍ତମଂ ସ୍ଥାନଂ ଗୀତା ମେ ପରମଂ ପଦମ୍ ।
ଗୀତା ମେ ପରମଂ ଗୁହ୍ୟଂ ଗୀତା ମେ ପରମୋ ଗୁରୁଃ । ୪୫ ।
ଗୀତାଶ୍ରୟେଽହଂ ତିଷ୍ଠାମି ଗୀତା ମେ ପରମଂ ଗୃହମ୍ ।
ଗୀତାଜ୍ଞାନଂ ସମାଶ୍ରିତ୍ୟ ତ୍ରିଲୋକୀଂ ପାଲୟାମ୍ୟହମ୍ । ୪୬ ।
ଗୀତା ମେ ପରମା ବିଦ୍ୟା ବ୍ରହ୍ମରୂପା ନ ସଂଶୟଃ ।
ଅର୍ଦ୍ଧମାତ୍ରାପରା ନିତ୍ୟମନିର୍ବାଚ୍ୟ ପଦାତ୍ମିକା । ୪୭ ।
ଗୀତାନାମାନି ବକ୍ଷ୍ୟାମି ଗୁହ୍ୟାନି ଶୃଣୁ ପାଣ୍ଡବ ।
କୀର୍ତ୍ତନାତ୍ ସର୍ବପାପାନି ବିଲୟଂ ଯାନ୍ତି ତତ୍କ୍ଷଣାତ୍ । ୪୮ ।
ଗଙ୍ଗା ଗୀତା ଚ ସାବିତ୍ରୀ ସୀତା ସତ୍ୟା ପତିବ୍ରତା ।
ବ୍ରହ୍ମାବଲି ର୍ବ୍ରହ୍ମବିଦ୍ୟା ତ୍ରିସନ୍ଧ୍ୟା ମୁକ୍ତ ଗେହିନୀ । ୪୯ ।
ଅର୍ଦ୍ଧମାତ୍ରା ଚିଦାନନ୍ଦା ଭବଘ୍ନୀ ଭ୍ରାନ୍ତି ନାଶିନୀ ।
ବେଦତ୍ରୟୀ ପରାନନ୍ଦା ତତ୍ତ୍ୱାର୍ଥ ଜ୍ଞାନ ମଞ୍ଜରୀ । ୫୦ ।

ଶ୍ରୀ ଭଗବାନ୍ କହିଲେ—ହେ ପାର୍ଥ, ଗୀତା ଅମ୍ଭର ହୃଦୟ ସ୍ୱରୂପ, ଗୀତା ଅମ୍ଭର ସାର ସର୍ବସ୍ୱ, ଗୀତା ଅମ୍ଭର ଅତ୍ୟୁଗ୍ର ଓ ଅବ୍ୟୟ ଜ୍ଞାନସ୍ୱରୂପ । ୪୪ ।

ଗୀତାହିଁ ଅମ୍ଭର ପରମ ସ୍ଥାନ, ପରମପଦ, ଗୀତା ଅମ୍ଭର ପରମଗୁହ୍ୟ, ଗୀତା ଅମ୍ଭର ପରମ ଗୁରୁ । ୪୫ ।

ଅମ୍ଭେ ଗୀତାକୁ ଆଶ୍ରୟ କରି ରହିଥାଉଁ, ଗୀତା ଅମ୍ଭର ପରମଗୃହ; ଗୀତାଜ୍ଞାନକୁ ଆଶ୍ରୟକରି ଅମ୍ଭେ ତ୍ରିଲୋକ ପ୍ରତିପାଳନ କରୁଁ । ୪୬ ।

ଗୀତା ଅମ୍ଭର ବ୍ରହ୍ମରୂପା ପରମାବିଦ୍ୟା, ଏଥିରେ ସଂଶୟ ନାହିଁ, ଅର୍ଦ୍ଧମାତ୍ରାରୂପିଣୀ ଗୀତା ନିତ୍ୟା, ପରାତ୍ପରା ଓ ଅନିର୍ବଚନୀୟ ପଦସ୍ୱରୂପିଣୀ । ୪୭ ।

ହେ ପାଣ୍ଡବ, ଗୀତାର ଗୁହ୍ୟ ନାମ ସବୁ କହୁଅଛୁଁ, ଶୁଣ; ଏହି ନାମ ସବୁ ଶ୍ରବଣ କଲେ ପାପରାଶି ତତ୍କ୍ଷଣାତ୍ ବିନଷ୍ଟ ହୋଇଯାଏ । ୪୮ ।

ଗଙ୍ଗା, ଗୀତା, ସାବିତ୍ରୀ, ସୀତା, ସତ୍ୟା, ପତିବ୍ରତା, ବ୍ରହ୍ମାବଳି, ବ୍ରହ୍ମବିଦ୍ୟା, ତ୍ରିସନ୍ଧ୍ୟା, ମୁକ୍ତଗେହିନୀ, ଅର୍ଦ୍ଧମାତ୍ରା, ଚିଦାନନ୍ଦା, ଭବଘ୍ନୀ, ଭ୍ରାନ୍ତି ନାଶିନୀ, ବେଦତ୍ରୟୀ, ପରାନନ୍ଦା, ତତ୍ତ୍ୱାର୍ଥଜ୍ଞାନମଞ୍ଜରୀ । ୪୯-୫୦ ।

ଇତ୍ୟେତାନି ଜପନ୍ନିତ୍ୟଂ ନରୋ ନିଶ୍ଚଳମାନସଃ ।
ଜ୍ଞାନସିଦ୍ଧିଂ ଲଭେନ୍ନିତ୍ୟଂ ତଥାନ୍ତେ ପରମଂ ପଦମ୍ । ୫୧ ॥
ପାଠେଽସମର୍ଥଃ ସମ୍ପୂର୍ଣ୍ଣେ ତଦର୍ଦ୍ଧଂ ପାଠମାଚରେତ୍ ।
ତଦା ଗୋଦାନଜଂ ପୁଣ୍ୟଂ ଲଭତେ ନାତ୍ର ସଂଶୟଃ । ୫୨ ।
ତ୍ରିଭାଗଂ ପଠମାନସ୍ତୁ ସୋମଯାଗଫଳଂ ଲଭେତ୍ ।
ଷଡଂଶଂ ଜପମାନସ୍ତୁ ଗଙ୍ଗାସ୍ନାନଫଳଂ ଲଭେତ୍ । ୫୩ ।
ତଥାଧ୍ୟାୟଦ୍ୱୟଂ ନିତ୍ୟଂ ପଠମାନୋ ନିରନ୍ତରମ୍ ।
ଇନ୍ଦ୍ରଲୋକମବାପ୍ନୋତି କଳ୍ପମେକଂ ବସେଦ୍ ଧ୍ରୁବମ୍ । ୫୪ ।
ଏକମଧ୍ୟାୟକଂ ନିତ୍ୟଂ ପଠତେ ଭକ୍ତିସଂଯୁତଃ ।
ରୁଦ୍ରଲୋକମବାପ୍ନୋତି ଗଣୋ ଭୂତ୍ୱା ବସେଚ୍ଚିରମ୍ । ୫୫ ।
ଅଧ୍ୟାୟାର୍ଦ୍ଧଂ ଚ ପାଦଂ ବା ନିତ୍ୟଂ ଯଃ ପଠତେ ଜନଃ ।
ପ୍ରାପ୍ନୋତି ରବିଲୋକଂ ସ ମନ୍ୱନ୍ତରସମାଃ ଶତମ୍ । ୫୬ ।
ଗୀତାୟାଃ ଶ୍ଲୋକଦଶକଂ ସପ୍ତ ପଞ୍ଚ ଚତୁଷ୍ଟୟମ୍ ।
ତ୍ରିଦ୍ୱ୍ୟେକମେକମର୍ଦ୍ଧଂ ବା ଶ୍ଲୋକାନାଂ ଯଃ ପଠେନ୍ନରଃ ।
ଚନ୍ଦ୍ରଲୋକମବାପ୍ନୋତି ବର୍ଷାଣାମୟୁତଂ ତଥା । ୫୭ ।

ଏହି ନାମ ସବୁ ଯେଉଁ ଲୋକ ନିଶ୍ଚଳ ଚିତ୍ତରେ ନିତ୍ୟଜପ କରନ୍ତି ସେ ଜ୍ଞାନ ସିଦ୍ଧି ଲାଭକରି ଶେଷରେ ପରମପଦ ଲାଭ କରନ୍ତି । ୫୧ ।

ଯେଉଁ ବ୍ୟକ୍ତି ଗୀତା ସମ୍ପୂର୍ଣ୍ଣରୂପେ ପାଠକରି ନ ପାରି ଅର୍ଦ୍ଧ ଅଂଶମାତ୍ର ପାଠ କରନ୍ତି, ସେ ନିଃସଂଶୟ ଗୋଦାନର ଫଳ ଲାଭ କରନ୍ତି । ୫୨ ।

ତିନିଭାଗରୁ ଏକଭାଗ ପାଠ କଲେ ସୋମ ଯଜ୍ଞର ଫଳ ଏବଂ ଛଅଭାଗରୁ ଏକଭାଗ ପାଠକଲେ ଗଙ୍ଗାସ୍ନାନ ଫଳ ଲାଭ ହୋଇଥାଏ । ୫୩ ।

ସେହିପରି ଯେ ପ୍ରତିଦିନ ଦୁଇ ଅଧ୍ୟାୟ ପାଠ କରନ୍ତି ସେ ନିଶ୍ଚୟ ଏକକଳ୍ପ କାଳ ଇନ୍ଦ୍ରଲୋକରେ ବାସ କରନ୍ତି । ୫୪ ।

ଯେ ଭକ୍ତିଯୁକ୍ତ ହୋଇ ଏକ ଅଧ୍ୟାୟ ପାଠ କରନ୍ତି ସେ ଗଣ ମଧ୍ୟରେ ପରିଗଣିତ ହୋଇ ଚିରକାଳ ରୁଦ୍ରଲୋକରେ ବାସ କରନ୍ତି । ୫୫ ।

ଯେ ଅଧ୍ୟାୟର ଅର୍ଦ୍ଧ ବା ଏକପାଦ ମାତ୍ର ନିତ୍ୟ ପାଠ କରନ୍ତି ସେ ଶତମନ୍ୱନ୍ତର ପର୍ଯ୍ୟନ୍ତ ସୂର୍ଯ୍ୟଲୋକରେ ବାସକରନ୍ତି । ୫୬ ।

ଯେ ଗୀତାର ଦଶଗୋଟି, ସାତଗୋଟି, ପାଞ୍ଚଗୋଟି, ଚାରିଗୋଟି, ତିନିଗୋଟି, ଦୁଇଗୋଟି, ଗୋଟିଏ ବା ଅର୍ଦ୍ଧ ଶ୍ଲୋକ ମାତ୍ର ପାଠକରନ୍ତି, ସେ ଅଯୁତ ବର୍ଷ ପର୍ଯ୍ୟନ୍ତ ଚନ୍ଦ୍ରଲୋକରେ ବାସ କରନ୍ତି । ୫୭ ।

ଗୀତାର୍ଥ ମେକପାଦଂ ଚ ଶ୍ଳୋକମଧ୍ୟାୟମେବଚ ।
ସ୍ମରଂସ୍ତ୍ୟକ୍ତ୍ୱା ଜନୋ ଦେହଂ ପ୍ରଯାତି ପରମଂ ପଦମ୍ । ୫୮ ।
ଗୀତାର୍ଥ ମପି ପାଠଂ ବା ଶୃଣୁୟାଦନ୍ତକାଳତଃ ।
ମହାପାତକଯୁକ୍ତୋଽପି ମୁକ୍ତିଭାଗୀ ଭବେଜ୍ଜନଃ । ୫୯ ।
ଗୀତାପୁସ୍ତକସଂଯୁକ୍ତଃ ପ୍ରାଣାଂ ସ୍ତ୍ୟକ୍ତ୍ୱା ପ୍ରୟାତ ଯଃ ।
ସ ବୈକୁଣ୍ଠ ମବାପ୍ନୋତି ବିଷ୍ଣୁନା ସହ ମୋଦତେ । ୬୦ ।
ଗୀତାଧ୍ୟାୟସମାଯୁକ୍ତୋ ମୃତୋ ମାନୁଷତାଂ ବ୍ରଜେତ୍ ।
ଗୀତାଭ୍ୟାସ ପୁନଃ କୃତ୍ୱା ଲଭତେ ମୁକ୍ତିମୁତ୍ତମାମ୍ ।
ଗୀତେତ୍ୟୁଚ୍ଚାରସଂଯୁକ୍ତୋ ମ୍ରିୟମାଣୋ ଗତିଂ ଲଭେତ୍ । ୬୧ ।
ଯଦ୍‌ଯତ୍ କର୍ମ ଚ ସର୍ବତ୍ର ଗୀତା ପାଠ ପ୍ରକୀର୍ତ୍ତିମତ୍ ।
ତତ୍ତତ୍‌କର୍ମ ଚ ନିର୍ଦ୍ଦୋଷଂ ଭୂତ୍ୱା ପୂର୍ଣ୍ଣତ୍ୱମାପ୍ନୁୟାତ୍ । ୬୨ ।
ପିତୃନୁଦ୍ଦିଶ୍ୟ ଯଃ ଶ୍ରାଦ୍ଧେ ଗୀତାପାଠଂ କରୋତି ହି ।
ସନ୍ତୁଷ୍ଟାଃ ପିତରସ୍ତସ୍ୟ ନିରୟାଦ୍ୟାନ୍ତି ସ୍ୱର୍ଗତିମ୍ । ୬୩ ।

ଯେ ଗୀତାର ଏକ ଅଧ୍ୟାୟର, ଏକ ଶ୍ଳୋକର ବା ଏକ ପାଦର ଅର୍ଥ ସ୍ମରଣ କରି କରି ଦେହତ୍ୟାଗ କରନ୍ତି ସେ ପରମପଦ ଲାଭ କରନ୍ତି । ୫୮ ।

ଯେ ମରଣ କାଳରେ ଗୀତାର ଅର୍ଥ ଶ୍ରବଣ କରନ୍ତି ବା ପାଠକରନ୍ତି ସେ ମହାପାପୀ ହେଲେହେଁ ମୁକ୍ତିଭାଗୀ ହୁଅନ୍ତି । ୫୯ ।

ଗୀତାପୁସ୍ତକସଂଯୁକ୍ତ ହୋଇ ଯେ ପ୍ରାଣତ୍ୟାଗ କରନ୍ତି ସେ ବୈକୁଣ୍ଠ ବାସୀ ହୋଇ ବିଷ୍ଣୁଙ୍କ ସଙ୍ଗେ ଆନନ୍ଦରେ ବାସକରନ୍ତି । ୬୦ ।

ମୃତ୍ୟୁ ସମୟରେ ଏକଅଧ୍ୟାୟଯୁକ୍ତ ଗୀତା ଯାହାଙ୍କ ପାଖରେ ଥାଏ, ସେ ମନୁଷ୍ୟ ଜନ୍ମ ପୁନର୍ବାର ଲାଭ କରନ୍ତି, ସେ ଜନ୍ମରେ ଗୀତା ଅଭ୍ୟାସକରି ମୁକ୍ତିଲାଭ କରନ୍ତି । ମୃତ୍ୟୁ ସମୟରେ 'ଗୀତା' ଏ ଶବ୍ଦ ମାତ୍ର ଉଚ୍ଚାରଣ କଲେ ଲୋକ ମୁକ୍ତିପ୍ରାପ୍ତ ହୁଏ । ୬୧ ।

ମନୁଷ୍ୟ ଯେତେବେଳେ କୌଣସି କର୍ମର ଅନୁଷ୍ଠାନ କରନ୍ତି, ସେ ସମୟରେ ଗୀତା ପାଠକଲେ ସେ ସମସ୍ତ କର୍ମ ନିର୍ଦ୍ଦୋଷ ହୋଇ ସମ୍ପୂର୍ଣ୍ଣ ଫଳଦାନରେ ସମର୍ଥ ହୁଏ । ୬୨ ।

ଶ୍ରାଦ୍ଧକାଳରେ, ପିତୃଗଣଙ୍କ ଉଦ୍ଦେଶ୍ୟରେ ଗୀତା ପାଠ ହେଲେ, ସେମାନେ ନରକରେ ଥିଲେ ମଧ୍ୟ ଆନନ୍ଦିତ ହୋଇ ସ୍ୱର୍ଗକୁ ଗମନ କରନ୍ତି । ୬୩ ।

ଗୀତାପାଠେନ ସନ୍ତୁଷ୍ଟାଃ ପିତରଃ ଶ୍ରାଦ୍ଧତର୍ପିତାଃ ।
ପିତୃଲୋକଂ ପ୍ରଯାନ୍ତ୍ୟେବ ପୁତ୍ରାଶୀର୍ବାଦତତ୍ପରାଃ । ୬୪ ।
ଗୀତାପୁସ୍ତକଦାନଂ ଚ ଧେନୁପୁଚ୍ଛସମନ୍ୱିତମ୍ ।
କୃତ୍ୱା ଚ ତଦ୍ଦିନେ ସମ୍ୟକ୍ କୃତାର୍ଥୋ ଜାୟତେ ଜନଃ । ୬୫ ।
ପୁସ୍ତକଂ ହେମସଂଯୁକ୍ତଂ ଗୀତାୟାଃ ପ୍ରକରୋତି ଯଃ ।
ଦତ୍ତ୍ୱା ବିପ୍ରାୟ ବିଦୁଷେ ଜାୟତେ ନ ପୁନର୍ଭବଃ । ୬୬ ।
ଶତପୁସ୍ତକଦାନଂ ଚ ଗୀତାୟାଃ ପ୍ରକରୋତି ଯଃ ।
ସ ଯାତି ବ୍ରହ୍ମସଦନଂ ପୁନରାବୃତ୍ତିଦୁର୍ଲଭମ୍ । ୬୭ ।
ଗୀତାଦାନପ୍ରଭାବେଣ ସପ୍ତକଳ୍ପମିତାଃ ସମାଃ ।
ବିଷ୍ଣୁଲୋକମବାପ୍ୟାନ୍ତେ ବିଷ୍ଣୁନା ସହମୋଦତେ । ୬୮ ।
ସମ୍ୟକ୍ ଶ୍ରୁତ୍ୱା ଚ ଗୀତାର୍ଥଂ ପୁସ୍ତକଂ ଯଃ ପ୍ରଦାପୟେତ୍ ।
ତସ୍ମୈ ପ୍ରୀତଃ ଶ୍ରୀଭଗବାନ୍ ଦଦାତି ମାନସେପ୍ସିତମ୍ । ୬୯ ।
ଦେହଂ ମାନୁଷମାଶ୍ରିତ୍ୟ ଚାତୁର୍ବର୍ଣ୍ଣେଷୁ ଭାରତ ।
ନ ଶୃଣୋତି ନ ପଠତି ଗୀତାମମୃତରୂପିଣୀମ୍ ।
ହସ୍ତାତ୍ତ୍ୟକ୍ତ୍ୱାମୃତଂ ପ୍ରାପ୍ତଂ ସ ନରୋ ବିଷମଶ୍ନୁତେ । ୭୦ ।

ଗୀତାପାଠ ଦ୍ୱାରା ଶ୍ରାଦ୍ଧ ତର୍ପଣରେ ସନ୍ତୁଷ୍ଟ ପିତୃଗଣ ପୁତ୍ରକୁ ଆଶୀର୍ବାଦ କରି ସନ୍ତୁଷ୍ଟ ଚିତ୍ତରେ ପିତୃଲୋକକୁ ଗମନ କରନ୍ତି । ୬୪ ।

ଯେ ଧେନୁ ପୁଚ୍ଛ ସହିତ ଗୀତା ପୁସ୍ତକ ଦାନ କରନ୍ତି ସେ ସେହି ଦିନରେହିଁ ସମ୍ୟକ୍ ରୂପେ କୃତାର୍ଥ ହୁଅନ୍ତି । ୬୫ ।

ଯେ ସୁବର୍ଣ୍ଣସଂଯୁକ୍ତ କରି ଗୀତା ପୁସ୍ତକ ବିଦ୍ୱାନ୍ ବିପ୍ରକୁ ଦାନ କରନ୍ତି ତାଙ୍କର ଆଉ ପୁନର୍ଜନ୍ମ ହୁଏ ନାହିଁ । ୬୬ ।

ଯେ ଶତ ଖଣ୍ଡ ଗୀତା ପୁସ୍ତକ ଦାନ କରନ୍ତି, ସେ ବ୍ରହ୍ମଲୋକ ପ୍ରାପ୍ତ ହୁଅନ୍ତି, ତାଙ୍କର ଆଉ ପୁନରାବୃତ୍ତି ହୁଏ ନାହିଁ । ୬୭ ।

ଗୀତା ଦାନ ପ୍ରଭାବରେ ଦାତା ବିଷ୍ଣୁଲୋକ ପ୍ରାପ୍ତ ହୋଇ ସପ୍ତକଳ୍ପ ପରିମିତ କାଳ ବିଷ୍ଣୁଙ୍କ ସହିତ ପରମ ସୁଖରେ ଅତିବାହିତ କରନ୍ତି । ୬୮ ।

ଗୀତାର ଅର୍ଥ ସମ୍ୟକ୍ ରୂପେ ଶ୍ରବଣ କରି ଯେ ଗୀତା ଦାନ କରନ୍ତି, ଭଗବାନ ପ୍ରୀତ ହୋଇ ତାଙ୍କୁ ବାଞ୍ଛିତ ଅର୍ଥ ଦାନ କରନ୍ତି । ୬୯ ।

ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରକୁଳରେ ମନୁଷ୍ୟ ଦେହ ଧାରଣ କରି ଯେଉଁ ଲୋକ ଅମୃତରୂପିଣୀ ଗୀତାପାଠ ବା ଶ୍ରବଣ କରନ୍ତି ନାହିଁ, ସେ ହସ୍ତସ୍ଥିତ ଅମୃତ ତ୍ୟାଗ କରି ବିଷଭକ୍ଷଣ କରନ୍ତି । ୭୦ ।

ଜନଃ ସଂସାରଦୁଃଖାର୍ତ୍ତୋ ଗୀତାଜ୍ଞାନଂ ସମାଲଭେତ୍ ।
ପୀତ୍ୱା ଗୀତାମୃତଂ ଲୋକେ ଲବ୍‌ଧ୍ୱା ଭକ୍ତିଂ ସୁଖୀ ଭବେତ୍ । ୭୧ ।
ଗୀତାମାଶ୍ରିତ୍ୟ ବହବୋ ଭୂଭୁଜୋ ଜନକାଦୟଃ ।
ନିର୍ଧୂତକଲ୍ମଷା ଲୋକେ ଗତାସ୍ତେ ପରମଂ ପଦମ୍ । ୭୨ ।
ଗୀତାସୁ ନ ବିଶେଷୋଽସ୍ତି ଜନେଷୂଚ୍ଚାବଚେଷୁ ଚ ।
ଜ୍ଞାନେଷ୍ୱେବ ସମଗ୍ରେଷୁ ସମା ବ୍ରହ୍ମସ୍ୱରୂପିଣୀ । ୭୩ ।
ଯୋଽଭିମାନେନ ଗର୍ବେଣ ଗୀତାନିନ୍ଦାଂ କରୋତି ଚ ।
ସ ଯାତି ନରକଂ ଘୋରଂ ଯାବଦାଭୂତସଂପ୍ଲବମ୍ । ୭୪ ।
ଅହଂକାରେଣ ମୂଢ଼ାତ୍ମା ଗୀତାର୍ଥଂ ନୈବ ମନ୍ୟତେ ।
କୁମ୍ଭୀପାକେଷୁ ପଚ୍ୟେତ ଯାବତ୍ କଳ୍ପକ୍ଷୟୋ ଭବେତ୍ । ୭୫ ।
ଗୀତାର୍ଥଂ ବାଚ୍ୟମାନଂ ଯୋ ନ ଶୃଣୋତି ସମୀପତଃ ।
ସ ଶୂକରଭବାଂ ଯୋନିମନେକାମଧିଗଚ୍ଛତି । ୭୬ ।
ଚୌର୍ଯ୍ୟଂ କୃତ୍ୱା ତୁ ଗୀତାୟାଃ ପୁସ୍ତକଂ ଯଃ ସମାନୟେତ୍ ।
ନ ତସ୍ୟ ସଫଳଂ କିଞ୍ଚିତ୍ ପଠନଂ ଚ ବୃଥା ଭବେତ୍ । ୭୭ ।

ସଂସାରଦୁଃଖାର୍ତ୍ତ ବ୍ୟକ୍ତି ଗୀତାଜ୍ଞାନ ଲାଭ କଲେ ଏବଂ ଗୀତାମୃତ ପାନ କଲେ ଭକ୍ତିଯୁକ୍ତ ହୋଇ ସୁଖୀ ହୁଅନ୍ତି । ୭୧ ।

ଜନକାଦି ରାଜାମାନେ ଗୀତା ଆଶ୍ରୟ କରି ନିଷ୍ପାପ ହୋଇ ପରମପଦ ଲାଭ କରିଅଛନ୍ତି । ୭୨ ।

ଗୀତା ପାଠ ବିଷୟରେ ବା ଗୀତାର ସମଗ୍ର ଜ୍ଞାନଲାଭ ବିଷୟରେ ଉଚ୍ଚ ନୀଚ ବା ଇତରବିଶେଷ ଭେଦଭାବ ନାହିଁ । କାରଣ ବ୍ରହ୍ମସ୍ୱରୂପିଣୀ ଗୀତା ସମସ୍ତଙ୍କ ପକ୍ଷରେ ସମାନ । ୭୩ ।

ଅଭିମାନ ଓ ଅହଙ୍କାରପୂର୍ବକ ଯେ ଗୀତାର ନିନ୍ଦା କରନ୍ତି, ସେ ପ୍ରଳୟକାଳପର୍ଯ୍ୟନ୍ତ ଘୋର ନରକରେ ବାସ କରନ୍ତି । ୭୪ ।

ଯେଉଁ ମୂଢ଼ଲୋକ ଅହଙ୍କାରବଶତଃ ଗୀତାର୍ଥର ଅବମାନନା କରନ୍ତି ସେ କଳ୍ପକ୍ଷୟ ପର୍ଯ୍ୟନ୍ତ କୁମ୍ଭୀପାକ ନରକରେ କଷ୍ଟଭୋଗ କରନ୍ତି । ୭୫ ।

ନିକଟରେ ଗୀତାର୍ଥବ୍ୟାଖ୍ୟା କରାଯାଉଥିଲେ ମଧ୍ୟ ଯେଉଁ ଲୋକ ତାହା ନ ଶୁଣେ ସେ ଅନେକ ବାର ଶୂକର ଯୋନିପ୍ରାପ୍ତ ହୁଏ । ୭୬ ।

ଯେଉଁ ଲୋକ ଗୀତାପୁସ୍ତକ ଚୋରି କରିଆଣେ, ତାହାର କୌଣସି କାର୍ଯ୍ୟ ସଫଳ ହୁଏ ନାହିଁ ଓ ଗୀତାପାଠ ବୃଥା ହୁଏ । ୭୭ ।

ଯଃ ଶ୍ରୁତ୍ୱା ନୈବ ଗୀତାର୍ଥଂ ମୋଦତେ ପରମାର୍ଥତଃ ।
ନୈବ ତସ୍ୟ ଫଳଂ ଲୋକେ ପ୍ରମତ୍ତସ୍ୟ ଯଥାଶ୍ରମଃ । ୭୮ ।
ଗୀତାଂ ଶ୍ରୁତ୍ୱା ହିରଣ୍ୟଂ ଚ ଭୋଜ୍ୟଂ ପଟ୍ଟାମ୍ବରଂ ତଥା ।
ନିବେଦୟେତ୍ ପ୍ରଦାନାର୍ଥଂ ପ୍ରୀତୟେ ପରମାତ୍ମନଃ । ୭୯ ।
ବାଚକଂ ପୂଜୟେଦ୍ଭକ୍ତ୍ୟା ଦ୍ରବ୍ୟବସ୍ତ୍ରାଦ୍ୟୁପସ୍କରୈଃ ।
ଅନେକୈର୍ବହୁଧା ପ୍ରୀତ୍ୟା ତୁଷ୍ୟତାଂ ଭଗବାନ୍ ହରିଃ । ୮୦ ।

ସୂତଉବାଚ

ମାହାତ୍ମ୍ୟମେତଦ୍‌ଗୀତାୟାଃ କୃଷ୍ଣପ୍ରୋକ୍ତଂ ପୁରାତନମ୍ ।
ଗୀତାନ୍ତେ ପଠତେ ଯସ୍ତୁ ଯଥୋକ୍ତଫଳଭାଗ୍‌ଭବେତ୍ । ୮୧ ।
ଗୀତାୟାଃ ପଠନଂ କୃତ୍ୱା ମାହାତ୍ମ୍ୟଂ ନୈବ ଯଃ ପଠେତ୍ ।
ବୃଥା ପାଠଫଳଂ ତସ୍ୟ ଶ୍ରମ ଏବ ହ୍ୟୁଦାହୃତଃ । ୮୨ ।
ଏତନ୍ମାହାତ୍ମ୍ୟସଂଯୁକ୍ତଂ ଗୀତାପାଠଂ କରୋତି ଯଃ ।
ଶ୍ରଦ୍ଧୟା ଯଃ ଶୃଣୋତ୍ୟେବ ପରମାଂ ଗତିମାପ୍ନୁୟାତ୍ । ୮୩ ।
ଶ୍ରୁତ୍ୱା ଗୀତାମର୍ଥଯୁକ୍ତାଂ ମାହାତ୍ମ୍ୟଂ ଯଃ ଶୃଣୋତି ଚ ।
ତସ୍ୟ ପୁଣ୍ୟଫଳଂ ଲୋକେ ଭବେତ୍ ସର୍ବସୁଖାବହମ୍ । ୮୪ ।

ଇତି ଶ୍ରୀବୈଷ୍ଣବୀୟତନ୍ତ୍ରସାରେ ଶ୍ରୀମଦ୍‌ଭଗବଦ୍‌ଗୀତାମାହାତ୍ମ୍ୟଂ ସମାପ୍ତମ୍ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

ଯେଉଁ ଲୋକ ଗୀତାର୍ଥ ଶ୍ରବଣ ନକରି ପରମାର୍ଥଲାଭରେ ଚେଷ୍ଟାକରେ, ଉନ୍ମତ୍ତର ବୃଥା ଶ୍ରମଭଳି ତାହାର ତହିଁରେ କୌଣସି ଫଳଲାଭ ହୁଏ ନାହିଁ ।୭୮।

ଗୀତା ଶ୍ରବଣ ଶେଷରେ ପରମାତ୍ମାଙ୍କ ପ୍ରୀତି ଉଦ୍ଦେଶ୍ୟରେ ସୁବର୍ଣ୍ଣ, ଭୋଜ୍ୟ, ପଟ୍ଟବସ୍ତ୍ର ନିବେଦନ କରିବ । ୭୯ ।

ଗୀତା ବ୍ୟାଖ୍ୟାକାରୀଙ୍କୁ ନାନାଦ୍ରବ୍ୟ ଓ ବସ୍ତ୍ରାଦି ଉପକରଣ ଦ୍ୱାରା ପ୍ରୀତି ଓ ଭକ୍ତିପୂର୍ବକ ପୂଜାକରିବ, ତଦ୍ୱାରା ଭଗବାନ୍ ହରି ପ୍ରୀତ ହେବେ । ୮୦ ।

ସୂତ କହିଲେ—ଯେଉଁ ଲୋକ ଶ୍ରୀକୃଷ୍ଣୋକ୍ତ ଏହି ପୁରାତନ ଗୀତାମାହାତ୍ମ୍ୟ ଗୀତା ପାଠ ଶେଷରେ ପାଠ କରନ୍ତି ସେ ଯଥୋକ୍ତ ଫଳଭାଗୀ ହୁଅନ୍ତି । ୮୧ ।

ଗୀତା ପାଠକରି ଯେ ଗୀତା ମାହାତ୍ମ୍ୟ ପାଠ କରନ୍ତି ନାହିଁ, ତାଙ୍କର ପାଠଫଳ ବୃଥା ହୁଏ, କେବଳ ପରିଶ୍ରମ ହିଁ ସାର ହୁଏ । ୮୨ ।

ଯେ ଏହି ମାହାତ୍ମ୍ୟ ସହିତ ଗୀତା ପାଠ କରନ୍ତି ଏବଂ ଯେ ଶ୍ରଦ୍ଧାପୂର୍ବକ ଏହା ଶ୍ରବଣ କରନ୍ତି ସେ ଦୁହେଁ ପରମଗତି ପ୍ରାପ୍ତ ହୁଅନ୍ତି । ୮୩ ।

ଅର୍ଥ ସହିତ ଗୀତା ଶ୍ରବଣ କରି ସାରି ଯେ ଏହି ମାହାତ୍ମ୍ୟ ଶ୍ରବଣ କରନ୍ତି ତାହାଙ୍କର ସର୍ବ ସୁଖପ୍ରଦ ପୁଣ୍ୟଫଳ ଲାଭହୁଏ । ୮୪ ।

# ଶ୍ଳୋକ-ସୂଚୀ

## ଅ

## ଆ



ମୁଦ୍ରାକର—ଶ୍ରୀ ଉମାଚରଣ ମହାନ୍ତି, କଟକ ପବ୍ଲିଶିଂ ପ୍ରେସ, କଟକ
୧୯୫୫